# ଯଶୋଦେହେ ଆୟୁଷ୍ମାନ୍

## ପ୍ରଥମ ଭାଗ

[ପ୍ରାଗୈତିହାସିକ ଯୁଗରୁ ଉନବିଂଶ ଶତାବ୍ଦୀ ଶେଷ ପର୍ଯ୍ୟନ୍ତ]

ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକ

ବିଦ୍ୟାପୁରୀ

# ଆମୁଖ

ଡଃ ପ୍ରଫୁଲ୍ଲ କୁମାର ପଟ୍ଟନାୟକ 'ଯଶୋଦେହେ ଆୟୁଷ୍ମାନ୍' ନାମକ ପୁସ୍ତକରେ ଓଡ଼ିଶାର ଯଶସ୍ୱୀ ସନ୍ତାନମାନଙ୍କର ଜୀବନଚରିତ ଲିପିବଦ୍ଧ କରିଛନ୍ତି । ଏହି ବହିଟି ଯେଉଁଭଳି ଉପାଦେୟ, ସେହିଭଳି ଶିକ୍ଷାପ୍ରଦ । ଓଡ଼ିଶାର ରାଜନୀତି ଓ ସ୍ୱନାମଧନ୍ୟ ରାଷ୍ଟ୍ରପୁରୁଷ ଖାରବେଳ, ନରସିଂହଦେବ, କପିଳେନ୍ଦ୍ର ଓ ପୁରୁଷୋତ୍ତମଦେବ ପ୍ରଭୃତିଙ୍କଠାରୁ ଆରମ୍ଭ କରି କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବିଶିଷ୍ଟ ଅବଦାନ ଯୋଗୁଁ ଯେଉଁମାନେ ଚିରସ୍ମରଣୀୟ ହୋଇ ରହିଛନ୍ତି ଓ ରହିବେ, ସେମାନଙ୍କର ଯଶୋଗାଥା ସେ ସରଳ ଓ ସାବଲୀଳ ଓଡ଼ିଆ ଭାଷାରେ ବର୍ଣ୍ଣନା କରିଛନ୍ତି ।

ଡଃ ପଟ୍ଟନାୟକ ଖୋରଧାର ଜଣେ ଶିକ୍ଷାପ୍ରେମୀ ଅଧ୍ୟାପକ ଭାବରେ ସର୍ବତ୍ର ସୁପରିଚିତ । ସେ ପ୍ରାଚୀନ ଐତିହ୍ୟ ଉପରେ ଗବେଷଣା କରି ସୁନାମ ଅର୍ଜନ କରିଥିଲେ । ତାଙ୍କର ଏଥି ପୂର୍ବରୁ ପ୍ରକାଶିତ ପୁସ୍ତକ 'Forgotten Chapter of Orissan History' (ପ୍ରକାଶକ – କଲିକତାର ପୁଞ୍ଛି ପୁସ୍ତକ) ପ୍ରକାଶ ପାଇ ଓଡ଼ିଶା ତଥା ଭାରତର ସୁଧୀ ମହଲରେ ଆଦୃତ ହୋଇଅଛି । ଏହି ପୁସ୍ତକରେ ସେ ଓଡ଼ିଶାର ସମର କୀର୍ତ୍ତି ଉପରେ ଯଥେଷ୍ଟ ଆଲୋକପାତ କରିଛନ୍ତି ।

ଡଃ ପଟ୍ଟନାୟକ ଏବେ କର୍ମକ୍ଷେତ୍ରରୁ ଅବସରନେବାପରେ ସାହିତ୍ୟ ସେବାରେ ଯେ ମନଃପ୍ରାଣ ଢାଳି ଦେଇଛନ୍ତି ତାହା ବାସ୍ତବିକ ପ୍ରଶଂସନୀୟ । ଓଡ଼ିଶାର କାଳଜୟୀ କୃତୀ ବ୍ୟକ୍ତିମାନଙ୍କର ମହନୀୟ କୀର୍ତ୍ତିକଳାପକୁ ସେ ସୁନ୍ଦର ଭାବରେ ରୂପ ଦେଇଛନ୍ତି । ସେ ଇତିହାସର ଅନ୍ଧକାରମୟ ଇଲାକାରୁ ବହୁ ଅମୂଲ୍ୟ ରତ୍ନ ଖୋଜିଆଣି ଆଜି ଓଡ଼ିଶାବାସୀଙ୍କ ଆଗରେ ଉପସ୍ଥାପିତ କରିଛନ୍ତି । ବହୁ ଐତିହାସିକ ତଥ୍ୟ ଓ ପୌରାଣିକ ବିଷୟକୁ ଗଳ୍ପ ଛଳରେ ସେମାନଙ୍କର ଜୀବନଚରିତରେ ଏପରି ପ୍ରକାଶ କରିଛନ୍ତି ଯେ ସାଧାରଣ ଛାତ୍ରଠାରୁ ଆରମ୍ଭ କରି ବୟସ୍କ ପର୍ଯ୍ୟନ୍ତ ସମସ୍ତଙ୍କର ଏହା ଆଦରଣୀୟ ହେବ ।

ତାଙ୍କର ବହିଟି ଦୁଇଟି ଭାଗରେ ବିଭକ୍ତ । ଏହି ଭାଗରେ ସେ ପ୍ରାଗୈତିହାସିକ ଯୁଗରୁ ୧୯୦୦ ଖ୍ରୀ.ଅ. ପର୍ଯ୍ୟନ୍ତ ଓଡ଼ିଶାର ମହାନ୍ ସନ୍ତାନମାନଙ୍କର ଚିନ୍ତା, କର୍ମ ଓ କୃତି ଉପରେ ଆଲୋକପାତ କରିଛନ୍ତି । ପୁସ୍ତକର ଦ୍ୱିତୀୟ ଭାଗରେ ସେ ବିଂଶଶତାବ୍ଦୀର କୃତୀ ଓଡ଼ିଆମାନଙ୍କ ସମ୍ବନ୍ଧରେ ଆଲୋଚନା କରିଛନ୍ତି । ତାଙ୍କର ଏହି ଅନନ୍ୟ ଉଦ୍ୟମ ଓ ସାଫଲ୍ୟ ଯୋଗୁଁ ସେ ଆମ ସମସ୍ତଙ୍କର ଧନ୍ୟବାଦାର୍ହ । ମୁଁ ଆଶା କରୁଛି ଗଭୀର ନିଷ୍ଠା ଓ ସାହିତ୍ୟ ସାଧନା ଯୋଗୁଁ ଡଃ ପ୍ରଫୁଲ୍ଲ ପଟ୍ଟନାୟକ ଚିରଦିନ ଓଡ଼ିଆ ପାଠକ-ପାଠିକା ମହଲରେ ସ୍ମରଣୀୟ ହୋଇ ରହିବେ ।

ମୁଁ ତାଙ୍କର ଉଜ୍ଜ୍ୱଳ ଭବିଷ୍ୟତ୍ ଏବଂ ତାଙ୍କ ସାହିତ୍ୟକର୍ମର ସାଫଲ୍ୟ କାମନା କରୁଛି ।

ତା. ୨୫.୧୨.୯୬ **ସଚ୍ଚିଦାନନ୍ଦ ରାଉତରାୟ**
ମିସନରୋଡ୍, କଟକ

# ପ୍ରାଗ୍ ଭାଷ

ଉତ୍କଳ ହେଉଛି ଏକ ମହାନ୍ ଦେଶ । ପ୍ରାଚୀନ ଏହାର ଇତିହାସ । ଏହି ଇତିହାସ ପୃଷ୍ଠାରେ ଉତ୍କଳୀୟ ନରପତିମାନଙ୍କ ଗୌରବଗାଥା ଲିପିବଦ୍ଧ ହୋଇଅଛି । ବଳ, ବୀର୍ଯ୍ୟ ଓ ପରାକ୍ରମରେ ଏହି ନରପତିମାନେ ପଡ଼ୋଶୀ ରାଜ୍ୟର ନରପତିମାନଙ୍କଠାରୁ କୌଣସି ଗୁଣରେ ନ୍ୟୂନ ନ ଥିଲେ । ଅଧିକନ୍ତୁ ସେମାନଙ୍କ ମଧ୍ୟରୁ କେତେକ ରାଜ୍ୟ ପରେ ରାଜ୍ୟ ଜୟ କରି ଉତ୍କଳର ସୀମା-ସରହଦ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ କରି ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ପ୍ରଭୃତି ଉପାଧିରେ ନିଜକୁ ଭୂଷିତ କରିଥିଲେ । କେବଳ ସେତିକି ନୁହେଁ, କଳିଙ୍ଗର ଜଣେ ରାଜା ନିଃଶଙ୍କ ମଲ୍ଲ ସିଂହଳରେ ଏକ ରାଜବଂଶ ପ୍ରତିଷ୍ଠା କରିଥିବା ଗବେଷକମାନଙ୍କ ଉଦ୍ୟମରୁ ଏବେ ଲୋକଲୋଚନକୁ ଆସିଲାଣି ।

ଉତ୍କଳ ଦେଶ ଯେପରି ବିଶାଳ, ତାହାର ସାହିତ୍ୟ ମଧ୍ୟ ସେହିପରି ପୁରାତନ, ଉନ୍ନତ ଓ ସମୃଦ୍ଧ । ଜଣେ ଉତ୍କଳୀୟ କବି ଜୟଦେବ ସଂସ୍କୃତ ଭାଷାରେ କାନ୍ତ-କୋମଳ ପଦ୍ୟାବଳୀରେ 'ଗୀତଗୋବିନ୍ଦ' ରଚନା କରି କେବଳ ଏହି ରାଜ୍ୟର କବିମାନଙ୍କର ନୁହେଁ, ସମଗ୍ର ଦେଶର କବିମାନଙ୍କର ଆଦର୍ଶ ହୋଇଗଲେ । ଉତ୍କଳର ରୀତି ଯୁଗର କବିମାନେ ବିଭିନ୍ନ ଅନୁପ୍ରାସ, ଭିନ୍ନ ଭିନ୍ନ ଯମକ, ଶ୍ଳେଷ ପ୍ରଭୃତି ଅଳଙ୍କାର ପ୍ରୟୋଗରେ ଯେଉଁସବୁ କାବ୍ୟସୌଧ ଗଢ଼ିଛନ୍ତି, ତାହା ବାସ୍ତବରେ ମନରେ ବିସ୍ମୟ ସୃଷ୍ଟି କରେ । ପୁଣି ସେଇ କବିମାନଙ୍କର ଶବ୍ଦବିଭବ ଯେପରି ଅସୀମ ଥିଲା, ଭାବବିଭବ ଓ ଅର୍ଥବିଭବ ସେହିପରି ଅପରିସୀମ ଥିଲା । କେତେକ କବିଙ୍କ ରଚନାର ପଦଲାଳିତ୍ୟ ଓ କମନୀୟତା ସାଧାରଣ ପାଠକଙ୍କୁ ବିମୋହିତ କରେ । ପାଲା, ଦାସକାଠିଆ ପ୍ରଭୃତିମାନଙ୍କରେ ଅଭୂତପୂର୍ବ ଜନସମାଗମ ଓ ତନ୍ମୟତା ଏହାର ପ୍ରମାଣ ଦିଏ । ପୁଣି ଯୁଗ ପରେ ଯୁଗ ବିତିଗଲେ ମଧ୍ୟ ସେହି ଗୀତିକବିତାଗୁଡ଼ିକର ଆଦର ଏପର୍ଯ୍ୟନ୍ତ ହ୍ରାସ ପାଇ ନାହିଁ ।

ଓଡ଼ିଆ ଭାଷାର ଘୋର ଦୁର୍ଦ୍ଦିନରେ ଫକୀରମୋହନଙ୍କ ଭଳି କଥାକାର ଆବିର୍ଭାବ ହୋଇ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ସେନାପତି ସାଜିଛନ୍ତି । ସେ ଓଡ଼ିଆ ଗଦ୍ୟସାହିତ୍ୟର ସ୍ରଷ୍ଟା ହୋଇଛନ୍ତି । କେବଳ ସ୍ରଷ୍ଟା ନୁହନ୍ତି, ଗଦ୍ୟସାହିତ୍ୟକୁ ବଳିଷ୍ଠ ଓ ସମୃଦ୍ଧ କରିଛନ୍ତି । ଉତ୍କଳୀୟ ଜନତାର ସୁଖ ଦୁଃଖକୁ ସରଳ ଓ ସ୍ୱାଭାବିକଭାବେ ପ୍ରକାଶ କରି ସର୍ବପ୍ରଥମ ଓ ସର୍ବପ୍ରଧାନ ଗଣ-ସାହିତ୍ୟିକର ମର୍ଯ୍ୟାଦା ଲାଭ କରିଛନ୍ତି । ସେହିପରି ସରଳ ହାସ୍ୟ

ରସ ସୃଷ୍ଟିରେ ଓ ଆଶୁ କବିତ୍ୱରେ ଯଦୁମଣି ମହାପାତ୍ର ଅସାଧାରଣ ଶକ୍ତିମତ୍ତା ପ୍ରଦର୍ଶନ କରି ପ୍ରବାଦ-ପୁରୁଷ (Legend)ରେ ପରିଣତ ହୋଇଯାଇଛନ୍ତି ।

ଉତ୍କଳୀୟ ଶିଳ୍ପ କଳା ମଧ ଉନ୍ନତିର ଚରମ ସୋପାନରେ ଉପନୀତ ହୋଇଥିଲା । ଅନ୍ୟାନ୍ୟ ଶିଳ୍ପ ମଧ୍ୟରେ ପାଷାଣ ଖୋଦିତ ଶିଳ୍ପ ଥିଲା ସର୍ବୋତ୍କୃଷ୍ଟ । ପୁଣି ପାଷାଣ ଶିଳ୍ପ ମଧ୍ୟରେ ଗୁମ୍ଫା ହେଉଛି ସବୁଠାରୁ ପୁରାତନ । ଏଗୁଡ଼ିକ ଜୈନ ଓ ବୌଦ୍ଧ ଯୁଗରେ ଖୋଦିତ ହୋଇଥିବା ଜଣାଯାଏ । ଗୁମ୍ଫା ନିର୍ମାଣ କେବଳ ଯେ କଷ୍ଟସାଧ ଥିଲା ତାହା ନୁହେଁ, ସେଗୁଡ଼ିକ ଗାଣିତିକ ନିୟମ ଅନୁଯାୟୀ ନିର୍ମିତ ହୋଇଥିଲା । ଗୁମ୍ଫାମାନଙ୍କରେ ଖୋଦିତ ମୂର୍ତ୍ତିଗୁଡ଼ିକ ଅତି ବାସ୍ତବ ତଥା ଅତି ଜୀବନ୍ତ ଅଟେ । ଭୁବନେଶ୍ୱରର ଲିଙ୍ଗରାଜ ବା ରାଜାରାଣୀ ବା ମୁକ୍ତେଶ୍ୱର ମନ୍ଦିର, ପୁରୀର ଜଗନ୍ନାଥ ମନ୍ଦିର ବା ଅର୍କତୀର୍ଥର କୋଣାର୍କ ମନ୍ଦିରମାନଙ୍କରେ ଓଡ଼ିଆ ଶିଳ୍ପୀ, ଓଡ଼ିଆ କାରିଗରମାନେ ଶିଳ୍ପ ନୈପୁଣ୍ୟର ପରାକାଷ୍ଠା ଦେଖାଇଛନ୍ତି । କୋଣାର୍କ କେବଳ ଓଡ଼ିଶା ବା ଭାରତବର୍ଷ ନୁହେଁ, ପୃଥିବୀରେ ପାଷାଣ ଶିଳ୍ପକଳାର ସର୍ବୋତ୍କୃଷ୍ଟ ନିଦର୍ଶନ । କୋଣାର୍କର ଭଗ୍ନାବଶେଷ ମାତ୍ର ଏବେ ରହିଅଛି, ମନ୍ଦିରଟି ପୂର୍ଣ୍ଣ ଅବସ୍ଥାରେ ଥିଲେ ବି ଶୋଭା ପାଉଥାନ୍ତା ତାହା କେବଳ ଅନୁଭବ କରିହେବ । କେବଳ କଳା ମନୋହାରିତାରେ ଏହା ଶ୍ରେଷ୍ଠ ନ ଥିଲା, ଉଚ୍ଚତାରେ କି ଉତ୍କଳ, କି ଭାରତ, କି ପୃଥିବୀ – ସର୍ବତ୍ର ତାହା ଅଦ୍ୱିତୀୟ ଥିଲା । ଅତ୍ୟୁଚ୍ଚ ୨୩୦ଫୁଟ କୌଣସି ଦେଉଳ ଅଧୁନା କେଉଁଠାରେ ଦେଖାଯାଏ ନାହିଁ କିମ୍ବା କେଉଁଠି ଥିଲା ତାହା ଶୁଣାଯାଏ ନାହିଁ । ସେହି ଯୁଗର ନରପତିମାନେ ବିଳାସ ବ୍ୟସନରେ ରାଜ୍ୟର ଆୟ ବ୍ୟୟ ନ କରି ମନ୍ଦିର ପ୍ରଭୃତି ନିର୍ମାଣର ପୃଷ୍ଠପୋଷକତା କରି କାଳ ବକ୍ଷରେ ଜ୍ୟୋତିସ୍ତମ୍ଭ ଭଳି ରହିଛନ୍ତି ।

ଉତ୍କଳରେ ମଧ ଭକ୍ତ ପରମ୍ପରା ଓ ଭକ୍ତିବାଦର ଧାରା ପ୍ରବଳଭାବରେ ପ୍ରବାହିତ ହୋଇଅଛି । ପୁରା କାଳରୁ ଉତ୍କଳ ପୁଣ୍ୟଭୂମି ଭାବେ ଖ୍ୟାତି ଲାଭ କରିଆସିଅଛି । ଏହି ପୁଣ୍ୟଭୂମିରେ ବହୁ ସାଧୁ, ସନ୍ଥ ଓ ସିଦ୍ଧ ଜନ୍ମଗ୍ରହଣ କରି ନିଜର ସାଧନା ବଳରେ ଅଲୌକିକ ଶକ୍ତିର ଅଧିକାରୀ ହୋଇଛନ୍ତି । ଏଠାରେ ସାଧୁସନ୍ଥମାନଙ୍କର ଆରାଧ ଦେବତା ହେଉଛନ୍ତି ଓଡ଼ିଆ ସଂସ୍କୃତିର ପ୍ରାଣକେନ୍ଦ୍ର – ଶ୍ରୀଜଗନ୍ନାଥ । ସେହି ଜଗନ୍ନାଥଙ୍କଠାରେ ଭକ୍ତମାନେ କାୟ ମନୋବାକ୍ୟରେ ତାଙ୍କର ଜୀବନ ସମର୍ପଣ କରିଦେଇଛନ୍ତି । ପ୍ରଭୁଙ୍କର ଭକ୍ତ ପାଇଁ ମଧ ଅଦେୟ କିଛି ନାହିଁ । ସେ ଭକ୍ତ ହାତରୁ ଶ୍ରୀଫଳ ଗ୍ରହଣ କରିଛନ୍ତି । ଘୋର ବିପତ୍ତିରୁ କେବଳ ଭକ୍ତକୁ ଉଦ୍ଧାର କରି ନାହାନ୍ତି, ଭକ୍ତପାଇଁ ମାନବ ବେଶ ଧାରଣ କରି ଯୁଦ୍ଧ କରିବାକୁ ଯାଇଛନ୍ତି । କବିମାନଙ୍କ ଲେଖନୀରେ ସେହି ସବୁ ଅଦ୍ଭୁତ ରହସ୍ୟମୟ ଘଟଣା ଅପରୂପ ରୂପରେଖ ଲାଭ କରିଅଛି ।

କେବଳ ଭକ୍ତିବାଦର ପ୍ରଚାର ବା ପ୍ରସାର ଉତ୍କଳରେ ହୋଇ ନାହିଁ, ଭକ୍ତ, ସାଧୁ ଓ ସନ୍ଥମାନେ ଅନବଦ୍ୟ ସାହିତ୍ୟ ସୃଷ୍ଟି କରିଛନ୍ତି । ଏହା ଫଳରେ ଓଡ଼ିଆ ସାହିତ୍ୟ

ବଳିଷ୍ଠ ଓ ସମୃଦ୍ଧ ହୋଇଛି । ଭକ୍ତକବିମାନେ ଯେଉଁ ଅସଂଖ୍ୟ ଭଜନ ଓ ଜଣାଣ ରଚନା କରିଯାଇଛନ୍ତି, ତାହା ଓଡ଼ିଶାର ଗ୍ରାମ, ନଗର ଜନପଦଗୁଡ଼ିକୁ ଭକ୍ତିରସରେ ପ୍ଲାବିତ କରିଦେଇଅଛି ।

ସାରା ଓଡ଼ିଶାରେ ପଠାଣି ସାମନ୍ତ ଭାବେ ପରିଚିତ ଜଣେ ଓଡ଼ିଆପୁଅ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ର ବିଜ୍ଞାନ ଜଗତର ବିସ୍ମୟ ହୋଇ ରହିଛନ୍ତି । ଏକ ଅଖ୍ୟାତ ଗଡ଼ଜାତ ଅଞ୍ଚଳରେ ଜନ୍ମଗ୍ରହଣ କରି ଆଧୁନିକ ଯନ୍ତ୍ରର ବିନା ବ୍ୟବହାରରେ ସେ ତାଙ୍କ ଗବେଷଣାଲବ୍ଧ ତଥ୍ୟାବଳୀ 'ସିଦ୍ଧାନ୍ତ ଦର୍ପଣ' ନାମକ ଗ୍ରନ୍ଥ ଲେଖିଛନ୍ତି, ତାହା ତାଙ୍କୁ ଆର୍ଯ୍ୟଭଟ୍ଟ, ବରାହମିହିର, ଭାସ୍କରାଚାର୍ଯ୍ୟଙ୍କ ପରେ ବିଖ୍ୟାତ ଜ୍ୟୋତିର୍ବିତ୍‌ର ଆସନ ଦେଇଛି ।

ବୀରମାଟି ଉତ୍କଳ ମଧ୍ୟ ଅନେକ ବୀର, ବିପ୍ଳବୀ ଓ ସଂଗ୍ରାମୀମାନଙ୍କୁ ଜନ୍ମ ଦେଇ ଧନ୍ୟା ହୋଇଛି । ଦୁର୍ଦ୍ଧର୍ଷ ଇଂରେଜମାନଙ୍କୁ ଖୋର୍ଦ୍ଧା ମାଟିରେ ପ୍ରବେଶ କରିବାର ତୀବ୍ର ବିରୋଧ କରିବାରୁ ଜୟୀ ରାଜଗୁରୁଙ୍କୁ ଯେପରି ଜଘନ୍ୟ ଭାବରେ ଫାଶୀ ଦିଆଯାଇଛି, ତା'ର ପଟାନ୍ତର ସଭ୍ୟ ଜଗତ୍‌ରେ ବିରଳ । ପୁଣି ଜନ୍ମ ମାଟିରୁ ବ୍ରିଟିଶ ଶକ୍ତିକୁ ବିତାଡ଼ିତ କରିବାପାଇଁ ବହୁ ବିପ୍ଳବୀ ପ୍ରାଣବଳି ଦେଇଛନ୍ତି । ସମ୍ବଲପୁରର ସୁରେନ୍ଦ୍ର ସାଏ ମାତ୍ର ଅଠର ବର୍ଷ ବୟସରୁ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ଆରମ୍ଭ କରିଥିଲେ । ଶେଷରେ ଜନ୍ମଭୂମିଠାରୁ କାହିଁ କେତେ ଦୂରରେ ଅସୀରଗଡ଼ ଜେଲର ରୁଦ୍ଧକୋଠରି ମଧ୍ୟରେ ଦୀର୍ଘ ୩୬ବର୍ଷ କାଳ ଅତିବାହିତ କରି ଶେଷ ନିଃଶ୍ୱାସ ତ୍ୟାଗ କଲେ । ଦେଶପାଇଁ ଏପରି ଜୀବନ ଉତ୍ସର୍ଗ କମ୍ ଗୌରବମୟ ନୁହେଁ । ସେମାନେ ଚିରଦିନପାଇଁ ଓଡ଼ିଆଙ୍କ ପ୍ରାଣରେ ଧ୍ରୁବତାରା ହୋଇ ରହିବେ । ପରବର୍ତ୍ତୀ ଓଡ଼ିଆମାନେ ତାଙ୍କୁ ନେଇ ଯେ ଗୌରବାନ୍ୱିତ ମନେକରିବେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଜୀବନୀ ଓ ଲେଖାବଳୀ ମନୁଷ୍ୟମାନଙ୍କ ପକ୍ଷେ ପ୍ରଦୀପ ଭଳି । ସେଥିରୁ ପାଠକମାନେ ଆଲୋକ ପାଇଥାନ୍ତି । ଉତ୍କଳର ବହୁ ବିଶିଷ୍ଟ ନରପତି, କବି, ଲେଖକ, ଭକ୍ତ ବା ଦେଶପ୍ରେମୀଙ୍କ ଉପରେ ବହୁ ଜୀବନୀ ରଚିତ ହୋଇଅଛି । ଅନେକ ବିଦ୍ୱାନ୍ ବହୁ କବି ତଥା ସାହିତ୍ୟିକମାନଙ୍କର କୃତିଗୁଡ଼ିକର ମୂଲ୍ୟାଙ୍କନ କରିଛନ୍ତି । ସେଗୁଡ଼ିକ ମଧ୍ୟ ଉଚ୍ଚକୋଟୀର ହୋଇଛି । ତାହାଦ୍ୱାରା ଅନୁପ୍ରାଣିତ ହୋଇ ମୁଁ ଏଥିରେ ହାତ ଦେଇଛି । ଅବଶ୍ୟ ସାହିତ୍ୟରଥୀମାନଙ୍କର ସାହିତ୍ୟର ମୂଲ୍ୟ ନିର୍ଦ୍ଧାରଣପାଇଁ ଯେଉଁ ପରିମାଣରେ ପାଣ୍ଡିତ୍ୟର ପ୍ରୟୋଜନ, ତାହା ମୋର ନାହିଁ । ତେବେ ଉତ୍କଳୀୟମାନଙ୍କୁ ସେମାନଙ୍କର ଗରିମାମୟ ଓ ଗୌରବୋଜ୍ଜ୍ୱଳ ଅତୀତ ପ୍ରତି ଆକୃଷ୍ଟ କରାଇବାପାଇଁ ମୁଖ୍ୟତଃ ମୁଁ ଆଗ୍ରହୀ ହୋଇଛି । ସେହି ଆଗ୍ରହଟିକୁ କେହି ଯେପରି ଉପହାସ ନ କରନ୍ତି ।

ବିଷୟ ନିର୍ବାଚନ ମୋର ନିଜସ୍ୱ । ସବୁ ଯଶସ୍ୱୀ ବ୍ୟକ୍ତିଙ୍କୁ ମୁଁ ଯେ ପୁସ୍ତକରେ ସ୍ଥାନ ଦେଇଛି, ତାହା କହି ହେବ ନାହିଁ । ବହୁ ପ୍ରଖ୍ୟାତନାମା ବ୍ୟକ୍ତି – ସେ ଶାସକ, ଭକ୍ତ ବା ଦେଶପ୍ରେମୀ ହୁଅନ୍ତୁ – ଅଲକ୍ଷ୍ୟରେ ହୁଏତ ବାଦ୍ ପଡ଼ିଛନ୍ତି । ସେହିପରି ବହୁ ସ୍ୱନାମଧନ୍ୟ କବି, ଲେଖକ, କଳାକାର ହୁଏତ ସ୍ଥାନ ପାଇ ନାହାନ୍ତି । ସେଥିପାଇଁ ବାଦବିସମ୍ବାଦର ସମ୍ଭାବନାକୁ ମଧ ଏଡ଼ାଇ ଦେଇ ହେବ ନାହିଁ । ସହୃଦୟ ପାଠକଙ୍କ ନିକଟରୁ ତେଣୁ କ୍ଷମା ମାଗି ନେଉଛି । ତେବେ ଅତି ଗୁରୁତର ତ୍ରୁଟିବିଚ୍ୟୁତି ଦୃଷ୍ଟିକୁ ଆସିଲେ ବା ଅଣାଗଲେ ତାହା ପରବର୍ତ୍ତୀ ସଂସ୍କରଣରେ ଦୂର କରିବାକୁ ଚେଷ୍ଟା କରିବି ।

ରଚନାରେ ମଧ ମୌଳିକତା ଆଶା କରିବା ବୃଥା । ଅଦ୍ୟାବଧି ଏହିସବୁ ମନୀଷୀମାନଙ୍କ ଉପରେ ପ୍ରକାଶିତ ପ୍ରାୟ ସମସ୍ତ ପୁସ୍ତକ ମୁଁ ବିଚାରକୁ ନେଇଛି । ବହୁ ବିଷୟ ଓ ଘଟଣାର ପୁନରାବୃତ୍ତି ହୋଇଛି । ବହୁ ଆଲୋଚକ ଓ ଗବେଷକମାନଙ୍କର ମତାମତ ଏଥିରେ ଉଦ୍ଧୃତ ହୋଇଅଛି । କେତେକ ସ୍ଥାନରେ ମତାମତ ଉଦ୍ଧୃତ ହୋଇ ନ ଥିଲେ ମଧ ସେଗୁଡ଼ିକର ଭାବ ଓ ଏପରିକି ଭାଷା ଉପସ୍ଥାପିତ କରିଛି । ମୋର ନିଜସ୍ୱ ମତ ମଧ ଅଛି । ତାହା ଅବଶ୍ୟ ସଂପୂର୍ଣ୍ଣ ଅଭ୍ରାନ୍ତ ବା ସର୍ବଶେଷ ବୋଲି କହିହେବ ନାହିଁ । ମୋର ବିଶ୍ୱାସ, ଆଲୋଚକ ଓ ଗବେଷକମାନେ ଗବେଷଣାର ଧାରାକୁ ଯେ ଅବ୍ୟାହତ ରଖିବେ ତାହା ନୁହେଁ, ବରଂ ଅଗ୍ରଗାମୀ କରିବାରେ ବ୍ରତୀ ହେବେ ।

ଗ୍ରନ୍ଥର ରଚନା ଦିଗରେ ଜ୍ଞାନୀ ଓ ଗୁଣୀ ବ୍ୟକ୍ତିଙ୍କ ସାହାଯ୍ୟ ଓ ସହଯୋଗ ଲାଭ କରିଛି । ଖୋର୍ଦ୍ଧା ମହିଳା ମହାବିଦ୍ୟାଳୟର ଅଧ୍ୟାପିକା ଡଃ ଗୀତା ରାୟ ମୋର ପାଣ୍ଡୁଲିପିଟି ଆମୂଳଚୂଳ ପଢ଼ି ସୁଚିନ୍ତିତ ପରାମର୍ଶ ଯୋଗାଇ ଦେଇଛନ୍ତି । ଏହାକୁ ସର୍ବାଙ୍ଗସୁନ୍ଦର କରିବାପାଇଁ ବହୁ ଶ୍ରମ ସ୍ୱୀକାର କରିଥିବାରୁ ମୋର ଆନ୍ତରିକ କୃତଜ୍ଞତା ଜଣାଉଛି । ଏହି ଅବସରରେ ମୁଁ ତାଙ୍କର ଉତ୍ତରୋତ୍ତର ଉନ୍ନତି କାମନା କରୁଛି । ସେହିପରି କଟକ, ବିଦ୍ୟାପୁରୀରେ କାର୍ଯ୍ୟରତ ଶ୍ରଦ୍ଧେୟ ଶ୍ରୀ କୈଳାସ ଚନ୍ଦ୍ର ବାରିକ ଏହାକୁ ସଂଶୋଧନ କରିଥିବାରୁ ଧନ୍ୟବାଦାର୍ହ ଏବଂ ଏହାର ଲିପି ସଂଯୋଜନ କରିଛନ୍ତି ଶ୍ରୀ ବାଦଲ କୁମାର ବେହେରା, ଶ୍ରୀମତୀ ଜ୍ୟୋତିର୍ମୟୀ ଦାଶ ଓ ସନ୍ଧ୍ୟାରାଣୀ ଜେନା । ସମସ୍ତଙ୍କୁ ମୋର ହାର୍ଦ୍ଦିକ ଶୁଭେଚ୍ଛା ।

ଓଡ଼ିଶାର ବିଶିଷ୍ଟ ପୁସ୍ତକ ପ୍ରକାଶକ ଶ୍ରୀଯୁକ୍ତ ପୀତାମ୍ବର ମିଶ୍ର ପୁସ୍ତକଟିର କେବଳ ପ୍ରକାଶନ ଦାୟିତ୍ୱ ନେଇଛନ୍ତି ତାହା ନୁହେଁ, ବହୁ କ୍ଷେତ୍ରରେ ମୂଲ୍ୟବାନ୍ ପରାମର୍ଶ ଦେଇଥିବାରୁ ମୁଁ ମୋର ହାର୍ଦ୍ଦିକ କୃତଜ୍ଞତା ଜଣାଉଛି ।

ଶେଷରେ ଆଜିର ଯୁବସମାଜ ତଥା ଆଗାମୀ ଦିନର ଜନମାନସପାଇଁ ଏହା କିଛି ପରିମାଣରେ ପ୍ରୋତ୍ସାହନର ପାଥେୟ ଯୋଗାଇଲେ ଶ୍ରମ ସାର୍ଥକ ହେଲା ବୋଲି ବିଚାର କରିବି ।

ଦୋଳ ପୂର୍ଣ୍ଣିମା, ଖୋର୍ଦ୍ଧା

**ପ୍ରଫୁଲ୍ଲ କୁମାର ପଟ୍ଟନାୟକ**

# ସୂଚୀପତ୍ର

## ପ୍ରଥମ ପରିଚ୍ଛେଦ : ଶାସକ



## ଦ୍ୱିତୀୟ ପରିଚ୍ଛେଦ : କବି

# ମହାମେଘବାହନ
# ସମ୍ରାଟ୍ ଖାରବେଳ

ପୃଥିବୀ ଇତିହାସରେ ଯେଉଁ କେତେଜଣ ସମ୍ରାଟ୍‌ଙ୍କ ନାମ ଦିଗ୍‌ବିଜୟୀ ହିସାବରେ ସ୍ଥାନ ଅଧିକାର କରିଅଛି, ସେମାନଙ୍କ ମଧ୍ୟରେ କଳିଙ୍ଗର ରାଜଚକ୍ରବର୍ତ୍ତୀ ଖାରବେଳଙ୍କ ନାମ ଉଲ୍ଲେଖଯୋଗ୍ୟ । କେବଳ ଦିଗ୍‌ବିଜୟ ନୁହେଁ, ଉତ୍ତମ ଶାସନ, ପ୍ରଜାନୁରଞ୍ଜନ, ଧର୍ମନୀତି, କଳା ଓ ଭାସ୍କର୍ଯ୍ୟରେ ନୈପୁଣ୍ୟ ପ୍ରଦର୍ଶନ କରି ସେ ଓଡ଼ିଶା କାହିଁକି ଭାରତ ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ସୃଷ୍ଟି କରିଛନ୍ତି ।

## ପୃଷ୍ଠଭୂମି

ସମ୍ରାଟ୍ ଅଶୋକଙ୍କ ମୃତ୍ୟୁ ପରେ ମଗଧ ସାମ୍ରାଜ୍ୟ ଦୁର୍ବଳ ହୋଇପଡ଼ିଲା । ଏହାର ସୁଯୋଗ ନେଇ କୋଶଳ ଅଞ୍ଚଳରେ ଚେଦି ରାଜବଂଶ ଦ୍ୱିତୀୟ ଶତାବ୍ଦୀରେ ଓଡ଼ିଶାର ଏକ ବିସ୍ତୃତ ଅଞ୍ଚଳରେ ଚେଦି ରାଷ୍ଟ୍ର ଗଠନ କରିଥିଲେ । ଏହାର ପ୍ରଥମ ରାଜା ଥିଲେ ଅଭିଚନ୍ଦ୍ର । ପୁତ୍ର ଓ ଉତ୍ତରାଧିକାରୀ ବସୁ ଜଣେ ଧର୍ମପରାୟଣ ରାଜା ଥିବାର ଜୈନ ସାହିତ୍ୟରୁ ଜଣାଯାଏ । ହାତୀଗୁମ୍ଫା ଅଭିଲେଖରେ ଖାରବେଳ ରାଜର୍ଷି ବସୁଙ୍କ କୁଳରେ ଜନ୍ମଗ୍ରହଣ କରିଥିବାର ଉଲ୍ଲେଖ ଅଛି । ବସୁଙ୍କ ପରେ ଚେଦି ବଂଶର ରାଜା ହେଲେ ମହାମେଘବାହନ । ସେ ଖାରବେଳଙ୍କ ପିତାମହ ଥିଲେ । ଏହି ମହାମେଘବାହନ କଳିଙ୍ଗକୁ ମଗଧ ଆଧିପତ୍ୟରୁ ମୁକ୍ତ କରିଥିଲେ । ତେଣୁ ସେ କଳିଙ୍ଗ ରାଜବଂଶର ପ୍ରଥମ ରାଜା ବୋଲି ଅଭିହିତ ହୁଅନ୍ତି । ଖାରବେଳ ମଧ୍ୟ ନିଜକୁ ମହାମେଘବାହନ ନାମରେ ଅଭିହିତ କରିଥିଲେ ।

ମହାମେଘବାହନଙ୍କର ପୁତ୍ର ଥିଲେ ଚେତରାଜ ବା ଚୈତ୍ୟରାଜା । କବି ଧନପାଳଙ୍କ ରଚିତ 'ତିଳକମଞ୍ଜରୀ'ରୁ ଜଣାଯାଏ ଯେ ମେଘବାହନ ନାମରେ ଜଣେ ଜୈନ ରାଜା ଅପରାଜିତା ମନ୍ତ୍ରରେ ଏକ ଶକ୍ତିଶାଳୀ ସନ୍ତାନଙ୍କର ଜନକ ହେଲେ । ଏହି ସନ୍ତାନ ଅଷ୍ଟବିଦ୍ୟା ମନ୍ତ୍ର ସାଧନ କରି ବିଦ୍ୟା ନରେନ୍ଦ୍ର ପଦ ହାସଲ କରିଥିଲେ । ସୁତରାଂ ଖାରବେଳଙ୍କ ପିତା ଚୈତ୍ୟରାଜା ସମ୍ଭବତଃ ଜଣେ ଜୈନ ସାଧକ ଥିଲେ ।

ପିତା ନବଜାତ ପୁତ୍ରକୁ ଜ୍ୟୋତିଷଙ୍କ ପାଖେ ଦେଖାଇଥିଲେ । ସେମାନେ ତା'ର କପାଳ, କର ପ୍ରଭୃତିରେ ଶଙ୍ଖ ଚକ୍ର ପ୍ରଭୃତି ଶୁଭ ଲକ୍ଷଣମାନ ଦେଖି ସେ ଭବିଷ୍ୟତ୍‌ରେ ଏକାଙ୍ଗଚକ୍ରବର୍ତ୍ତୀ ସମ୍ରାଟ୍ ହେବେ ବୋଲି ଭବିଷ୍ୟଦ୍‌ବାଣୀ କରିଥିଲେ ।

'ଖାରବେଳ' ଅର୍ଥ ସମୁଦ୍ର ବା ସମୁଦ୍ରବେଷ୍ଟିତ ଦେଶ । ହାତୀଗୁମ୍ଫା ଅଭିଲେଖରୁ ଜଣାଯାଏ ଯେ, ଖାରବେଳ ଥିଲେ ପିଙ୍ଗଳବର୍ଣ୍ଣବିଶିଷ୍ଟ ରୂପବାନ୍ ପୁରୁଷ ।

ଶୈଶବ ଅବସ୍ଥାରେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଥିଲେ । କ୍ରମେ ସେ ବାଲ୍ୟାବସ୍ଥାରେ ପଦାର୍ପଣ କଲେ । ପୁତ୍ରର ଶିକ୍ଷାପାଇଁ ପିତା ପଣ୍ଡିତମାନଙ୍କୁ ନିଯୁକ୍ତ କଲେ । ତାଙ୍କର ସ୍ମରଣଶକ୍ତି ପ୍ରଖର ଥିଲା । ସେ ଅଳ୍ପକାଳ ମଧ୍ୟରେ ଲିଖନ, ପଠନ, ସଙ୍ଗୀତ ପ୍ରଭୃତିରେ ଦକ୍ଷତା ଲାଭ କଲେ । କ୍ରୀଡ଼ା, ବ୍ୟାୟାମ ପ୍ରଭୃତି ମଧ୍ୟ ଶିକ୍ଷା କଲେ । ରାଜପ୍ରାସାଦରେ ନାନାଦେଶରୁ ଆସୁଥିବା ଋଷି, ଶ୍ରମଣ ଓ ଭିକ୍ଷୁମାନଙ୍କ ସାନ୍ନିଧ ଲାଭ ଫଳରେ ତାଙ୍କର ନୈତିକ ଅଭିବୃଦ୍ଧି ଘଟିଲା । ହାତୀଗୁମ୍ଫା ଶିଳାଲେଖରୁ ଜଣାଯାଏ ଯେ, ସେ ୧୫ ବର୍ଷଠାରୁ ୨୪ ବର୍ଷ ପର୍ଯ୍ୟନ୍ତ କଳିଙ୍ଗରେ ରହି ବହୁ ବିଷୟ ଶିକ୍ଷା କରିଥିଲେ । ଏହି ନଅ ବର୍ଷ ମଧ୍ୟରେ ସେ ଲେଖ, ରୂପ, ଗଣନା, ବ୍ୟବହାର, ବିଧି, ଗନ୍ଧର୍ବ ବେଦ, ଧନୁର୍ବେଦ, ଯୁଦ୍ଧବିଦ୍ୟା ଓ ଅନ୍ୟାନ୍ୟ କଳା ବିଦ୍ୟାରେ ପାରଙ୍ଗମ ହୋଇଉଠିଥିଲେ । ବିଦ୍ୟାଶିକ୍ଷା ସଙ୍ଗେ ସଙ୍ଗେ ନିଜର ବହୁ ଶାସ୍ତ୍ର ଦର୍ଶନ, ଅଭିଜ୍ଞତା ଓ ରାଜ୍ୟଶାସନ ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିଥିଲେ । ଯୁବରାଜ ପଦବୀରେ ପ୍ରତିଷ୍ଠିତ ଥାଇ ସେ ରାଜ୍ୟର ମନ୍ତ୍ରୀ, ସେନାପତି, କୋଷାଧ୍ୟକ୍ଷ ପ୍ରଭୃତି କର୍ମଚାରୀମାନଙ୍କର କାର୍ଯ୍ୟକଳାପ ତତ୍ତ୍ୱାବଧାନ କରୁଥିଲେ ।

୨୪ ବର୍ଷ ବୟସରେ ଖାରବେଳଙ୍କ ପିତାଙ୍କ ପରଲୋକ ହୋଇଥିଲା । ପିତାଙ୍କ ଅନ୍ତ୍ୟେଷ୍ଟିକ୍ରିୟା ଯଥାବିଧି ସମାପନ ହେଲା । ଏହା ପରେ ତାଙ୍କର ରାଜ୍ୟାଭିଷେକ ଉତ୍ସବ ମହା ଆଡ଼ମ୍ବରରେ କଳିଙ୍ଗନଗରରେ ପାଳିତ ହେଲା । ଏହା ସମ୍ଭବତଃ ଖ୍ରୀ.ପୂ. ୪୦ରେ ହୋଇଥିଲା । ସମଗ୍ର ରାଜ୍ୟରେ ପୂଜା ଆରାଧନା ପ୍ରଭୃତି କରାଯାଇଥିଲା । ନାନାପ୍ରକାର ଉତ୍ସବ ଓ ସମାଜମାନ ଅନୁଷ୍ଠିତ ହୋଇଥିଲା । ଦରିଦ୍ର ନିଃସ୍ୱମାନଙ୍କୁ ବହୁ ଦାନ ଦକ୍ଷିଣା ଦିଆଗଲା । ପ୍ରଜାମାନଙ୍କ ଉପରୁ ନାନା କର ଓ ଶୁଳ୍କ ଉଠାଇ ଦିଆଗଲା ।

**ରାଜ୍ୟଜୟ**

ଖାରବେଳଙ୍କ ରାଜତ୍ୱର ପ୍ରଧାନ ଘଟଣା ହେଲା ରାଜ୍ୟଜୟ । କେହି କେହି ଐତିହାସିକଙ୍କ ମତରେ ଖାରବେଳଙ୍କ ରାଜ୍ୟଜୟ ପ୍ରସିଦ୍ଧ ଗ୍ରୀକ୍ ବୀର

ଆଲେକ୍‌ଜାଣ୍ଡର, ରୋମୀୟ ବିଜେତା ସିଜର୍, ବିଶ୍ୱବିଜୟୀ ନେପୋଲିୟନ୍ ବା ମୌର୍ଯ୍ୟ ଓ ଗୁପ୍ତ ଯୁଗର ସମ୍ରାଟ୍ ଯଥାକ୍ରମେ ଚନ୍ଦ୍ରଗୁପ୍ତ ଓ ସମୁଦ୍ରଗୁପ୍ତଙ୍କ ଦିଗ୍‌ବିଜୟଠାରୁ କୌଣସି ଗୁଣରେ ନ୍ୟୂନ ନ ଥିଲା ।

ଅଭିଷେକ ପରେ ଖାରବେଳ ପୂର୍ବକାଳର ମାନ୍ଧାତା, ଭରତ, ରଘୁ ପ୍ରଭୃତି ନରପତିମାନଙ୍କ ପରି ଧରାର ଅଧୀଶ୍ୱର ହେବାକୁ ବସିଲେ । ସେ ଏଥିପାଇଁ ବିପୁଳ ଆୟୋଜନ କଲେ । ରାଜଧାନୀ କଳିଙ୍ଗନଗରରେ ସେ ଏଥିପାଇଁ ସମାବେଶ କଲେ । ବିପୁଳ ଅସ୍ତ୍ରଶସ୍ତ୍ର, ଖାଦ୍ୟସମ୍ଭାର ଓ ଯାନବାହନ ମହଜୁଦ୍ କରି ରଖିଲେ । ଦେଶରକ୍ଷାର ସମସ୍ତ ବ୍ୟବସ୍ଥା କରି ସେ ରାଜ୍ୟଜୟରେ ବାହାରିଲେ ।

ଖାରବେଳଙ୍କ ରାଜତ୍ୱ ପୂର୍ବରୁ ମହାରାଷ୍ଟ୍ରରେ ଆନ୍ଧ୍ରର ସାତବାହନବଂଶୀୟ ରାଜାମାନେ କ୍ଷମତାଶାଳୀ ହୋଇଉଠିଥିଲେ । ଏହି ରାଜବଂଶ ସିମୁକ ପ୍ରତିଷ୍ଠା କରିଥିଲେ । ତାଙ୍କ ପୁତ୍ର ସାତକର୍ଣ୍ଣୀ ଖାରବେଳଙ୍କ ସାମସମୟିକ ଥିଲେ । ସେ ବହୁ ରାଜ୍ୟ ଜୟ କରି ଦକ୍ଷିଣାପଥର ଅଧିପତି ହୋଇପାରିଥିଲେ । ଗୋଦାବରୀ ନିକଟବର୍ତ୍ତୀ ପୈଥାନ ବା ପ୍ରତିଷ୍ଠାନ ତାଙ୍କର ରାଜଧାନୀ ଥିଲା । ପୂର୍ବରୁ ଆନ୍ଧ୍ର ସାତବାହନ ଓ ଚେତ ମେଘବାହନଙ୍କ ମଧ୍ୟରେ ଶତ୍ରୁତା ଲାଗି ରହିଥିଲା । ଖାରବେଳ ରାଜତ୍ୱର ଦ୍ୱିତୀୟ ବର୍ଷରେ ନର, ଗଜ, ହୟ, ରଥ ଏମିତି ଚତୁରଙ୍ଗ ସେନାବାହିନୀ ନେଇ ଗୋଦାବରୀ ନଦୀ ପାରହୋଇ ସାତକର୍ଣ୍ଣୀଙ୍କୁ ଭ୍ରୂକ୍ଷେପ ନ କରି କୃଷ୍ଣାନଦୀ ପର୍ଯ୍ୟନ୍ତ ଅଗ୍ରସର ହେଲେ ଓ ଅସିକନଗରୀ ଉପରେ ଆକ୍ରମଣ କଲେ । ଖାରବେଳ ଏହି ଅଭିଯାନରେ ବିଶେଷ ସଫଳତା ହାସଲ କରିପାରି ନ ଥିବା ଜଣାଯାଏ । ସେ କଳିଙ୍ଗନଗରୀକୁ ଫେରିଆସିଥିଲେ । ଏହା ପରେ ସେ ଅବିଜିତ ବିଦ୍ୟାଧର ରାଜ୍ୟର ଲୋକଙ୍କୁ ସଙ୍ଗଠିତ କରିଥିଲେ । ସେନାବାହିନୀ ଏହା ଫଳରେ ଅଧିକ ଶକ୍ତିଶାଳୀ ହେବା ସ୍ୱାଭାବିକ । ଖାରବେଳ ରାଜତ୍ୱର ଚତୁର୍ଥ ବର୍ଷରେ ଏହି ସେନାବାହିନୀର ନେତୃତ୍ୱ ନେଇ ପୁଣି ଥରେ ସାତବାହନ ରାଜ୍ୟ ଆକ୍ରମଣ କଲେ । ମାତ୍ର ସେତେବେଳକୁ ସାତକର୍ଣ୍ଣୀଙ୍କର ଅକାଳ ମୃତ୍ୟୁ ହୋଇଯାଇଥିଲା । ସାତକର୍ଣ୍ଣୀଙ୍କର ଦୁଇ ପୁତ୍ର ନାବାଳକ ଥିଲେ । ସୁତରାଂ ବିଧବା ରାଣୀ ନୟନିକା ରାଜ୍ୟର ଶାସନ ଚଳାଉଥିଲେ । ରାଣୀ ନୟନିକା ଖାରବେଳଙ୍କ ଆକ୍ରମଣର ମୁକାବିଲା କରିବାପାଇଁ ରାଷ୍ଟ୍ରିକ ଓ ଭୋଜକ ରାଜ୍ୟର ଅଧିପତିମାନଙ୍କ ନେତୃତ୍ୱରେ ଦଳେ ସୈନ୍ୟ ପଠାଇଲେ । ମାତ୍ର ସେମାନେ ପରାସ୍ତ ହେଲେ ।

ରାଷ୍ଟ୍ରିକ ଓ ଭୋଜକମାନେ ମଧ୍ୟପ୍ରଦେଶର ପଶ୍ଚିମାଞ୍ଚଳରେ ନର୍ମଦା ନଦୀ କୂଳରେ ବାସ କରୁଥିଲେ । ଏମାନେ ପରାକ୍ରମଶାଳୀ ଥିବା ଶିଳାଲେଖରୁ

ଜଣାଯାଏ । ଏହି ଆକ୍ରମଣ ଫଳରେ ସମଗ୍ର ଦକ୍ଷିଣାଞ୍ଚଳ ତାଙ୍କର ଅଧୀନସ୍ଥ ହେଲା । ଆନ୍ଧ୍ର ସାତବାହନ ବଂଶର କ୍ଷମତାର ଲୋପ ପାଇବା ମଧ୍ୟ ସ୍ୱାଭାବିକ ।

ଦାକ୍ଷିଣାତ୍ୟ ଅଭିଯାନ ପରେ ଖାରବେଳ ତିନି ବର୍ଷ କାଳ ସାମରିକ ଅଭିଯାନ ବନ୍ଦ ରଖିଥିଲେ । ସେହି ସମୟ ମଧ୍ୟରେ ସେ କଳିଙ୍ଗର ପାରମ୍ପରିକ ଶତ୍ରୁ ମଗଧ ବିରୋଧରେ ଯୁଦ୍ଧ ପ୍ରସ୍ତୁତି କାର୍ଯ୍ୟ ଚଳାଇଥିବା ସମ୍ଭବ । ସେତେବେଳେ ମଗଧ ଧନ, ଜନ ଓ ଶକ୍ତିରେ ଶୀର୍ଷସ୍ଥାନ ଅଧିକାର କରିଥିଲା । ରାଜତ୍ୱର କେତେକ ବର୍ଷ ପୂର୍ବେ ମଗଧ ଅଧିପତି ଭାରତ ସମ୍ରାଟ୍ ଅଶୋକ କଳିଙ୍ଗ ଯୁଦ୍ଧରେ ଜୟଲାଭ କରିଥିଲେ । ଖାରବେଳ ତା'ର ପ୍ରତିଶୋଧ ନେବାକୁ ମଗଧରାଜ୍ୟ ଆକ୍ରମଣ କରିବାକୁ ବଦ୍ଧପରିକର ହେଲେ । ମଗଧର ସମ୍ରାଟ୍ ଥିଲେ ବୃହସ୍ପତି ମିତ୍ର । ସେ ମଧ୍ୟ ଖୁବ୍ ପରାକ୍ରମଶାଳୀ ଥିଲେ । ମଗଧ ଅଭିଯାନ ପୂର୍ବରୁ ଖାରବେଳ ନିଜର ସାମରିକ ଶକ୍ତି ବୃଦ୍ଧି କରିଥିଲେ । ଅସି, ଛତ୍ର, ଧ୍ୱଜ, ରକ୍ଷୀ, ତୁରଙ୍ଗ, ହସ୍ତୀ, ରଥ ପ୍ରଭୃତିର ସଂଖ୍ୟା ବୃଦ୍ଧି କରିଥିଲେ । ରାଜତ୍ୱର ଅଷ୍ଟମ ବର୍ଷରେ ସେ ଚତୁରଙ୍ଗ ବାହିନୀ ନେଇ ମଗଧ ଅଭିଯାନରେ ବାହାରିଲେ । କିନ୍ତୁ ସେ କଳିଙ୍ଗରୁ ହଠାତ୍ ମଗଧର ରାଜଧାନୀ ପାଟଳିପୁତ୍ରକୁ ଆକ୍ରମଣ କରି ନ ଥିଲେ । ସେ ଉତ୍ତର ଭାରତ ଅଭିଯାନରେ ବାହାରି ଗୋରଥଗିରି ଉପରେ ଆକ୍ରମଣ କଲେ । ଏହି ଗୋରଥଗିରି ଏକ ଦୁର୍ଗ ଥିଲା । ଏହା ପାଟଳିପୁତ୍ର ଓ ଗୟା ମଧ୍ୟରେ ଖଲ୍ଲଳିକ ପର୍ବତ ନିକଟରେ ଅବସ୍ଥିତ ଥିଲା । ଏହାର ଆଧୁନିକ ନାମ ବାରବାର ପର୍ବତ । ଗୋରଥଗିରି ଦୁର୍ଗ ଅଧିକାର କଲା ପରେ ସେ ଇତିହାସ ପ୍ରସିଦ୍ଧ ରାଜଗୃହ ଅଭିମୁଖେ ସୈନ୍ୟ ଚାଳନା କଲେ । ପାଟଳିପୁତ୍ର ପ୍ରତିଷ୍ଠାର ବହୁ ପୂର୍ବରୁ ରାଜଗୃହ ପ୍ରାଚୀନକାଳରୁ ମଗଧର ରାଜଧାନୀ ଥିଲା । ମହାଭାରତୀୟ ଯୁଗର ଜଣେ ବିରାଟ ଯୋଦ୍ଧା ଜରାସନ୍ଧ ଏଠାରେ ରାଜତ୍ୱ କରିଥିବାର ପୁରାଣରୁ ଜଣାଯାଏ । ଏହି ରାଜଗୃହ ଗୟା ନିକଟରେ ଅବସ୍ଥିତ । ଏହାର ଚାରି ଦିଗରେ ବେଭାର, ପାଣ୍ଡବ, ବେପୁଳ, ଗୃଧ୍ରକୂଟ ଓ ଋଷଗିରି ନାମକ ପାଞ୍ଚୋଟି ପର୍ବତ ପ୍ରାଚୀର ଭଳି ରହିଥିଲା । ଖାରବେଳଙ୍କୁ ଏହି ରାଜଗୃହକୁ ଅବରୋଧ କରିବାକୁ ପଡ଼ିଲା । ମଗଧର ସୈନ୍ୟ ବହୁଦିନ ଧରି ଏହାର ପ୍ରତିରୋଧ କଲେ । ଏଥିରେ ରାଜଗୃହର ଅଧିବାସୀମାନେ ଆତଙ୍କିତ ହୋଇପଡ଼ିବା ସ୍ୱାଭାବିକ । ଶେଷରେ ମଗଧସେନା ପରାସ୍ତ ହେଲେ । ରାଜଗୃହକୁ ବର୍ତ୍ତମାନ ବିହାରର ନାଳନ୍ଦା ଜିଲ୍ଲାରେ ଥିବା ରାଜଗିରିକୁ ଚିହ୍ନିତ କରାଯାଉଅଛି । ଏଥର ଖାରବେଳ କୌଣସି କାରଣରୁ ପାଟଳିପୁତ୍ର ଉପରେ ଆକ୍ରମଣ କରି ନ ଥିବା ଜଣାଯାଏ । ସମ୍ଭବତଃ, ସେ ରାଜଗୃହରେ ଥିବାବେଳେ ଜନୈକ ଯବନ ରାଜା ମଥୁରା

ଆକ୍ରମଣ କରି ଏହାକୁ ଅଧିକାର କରିନେଲେ । ସେ ଯବନରାଜା ଏହାପରେ ପାଟଳିପୁତ୍ର ଅଭିଯାନରେ ବାହାରିଲେ । ମାତ୍ର ଖାରବେଳଙ୍କ ରାଜଗୃହ ଅବରୋଧ କରିଥିବା ଶୁଣି ସେ ଆଉ ଆଗେଇବାକୁ ସାହସ କଲେ ନାହିଁ । ସେ ପୁଣି ମଥୁରା ପ୍ରତ୍ୟାବର୍ତ୍ତନ କଲେ । ଖାରବେଳ ଯବନମାନଙ୍କ ଅନୁଧାବନ କରି ମଥୁରାରେ ପହଞ୍ଚିଲେ ଓ ଯବନରାଜାଙ୍କୁ ହଟାଇଦେଲେ । ଏହି ଯବନରାଜାଙ୍କ ନାମର କେବଳ ମଧ୍ୟମ ଅକ୍ଷର 'ମ' ଅଭିଲେଖରୁ ପାଠ କରାଯାଇଛି । କେହି କେହି ଏହା ଦିମିତ ବା ଡିମେଟ୍ରିଅସ୍ ବୋଲି ମତ ଦେଇଛନ୍ତି । ମଥୁରା ସେତେବେଳେ ଏକ ଜୈନପୀଠ ଥିଲା । ଖାରବେଳ ଏହାକୁ ଯବନମାନଙ୍କ ହାତରୁ ରକ୍ଷା କରିଥିବାରୁ ପ୍ରଶଂସାର ପାତ୍ର ହୋଇଥିବା ସ୍ୱାଭାବିକ । ସେ ଅସଂଖ୍ୟ ହୟ, ଗଜ ଓ ରଥ ପରିବେଷ୍ଟିତ ଜିନମାନଙ୍କ ପବିତ୍ର ବୃକ୍ଷ କଳ୍ପବୃକ୍ଷକୁ ମଧ୍ୟ ନେଇ ଆସିଥିଲେ । ଏହି ଘଟଣାକୁ ଚିରସ୍ମରଣୀୟ କରିବାପାଇଁ ରାଜତ୍ୱର ନବମ ବର୍ଷରେ ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟରେ 'ମହାବିଜୟ ପ୍ରାସାଦ' ନିର୍ମାଣ କରିଥିଲେ ।

ସମ୍ଭବତଃ, ରାଜତ୍ୱର ଦଶମ ବା ଏକାଦଶ ବର୍ଷରେ ସେ ଦାକ୍ଷିଣାତ୍ୟ ରାଜ୍ୟମାନଙ୍କ ଉପରେ ଦୃଷ୍ଟି ପକାଇଥିଲେ । ସେହି ଅଞ୍ଚଳରେ ଚୋଳ, ପାଣ୍ଡ୍ୟ, ସତ୍ୟପୁତ୍ର, କେରଳପୁତ୍ର ଓ ତାମ୍ରପର୍ଣ୍ଣୀ (ସିଂହଳ) ପ୍ରଭୃତି ଏକ ତାମିଲ ମୁଖ୍ୟମାନଙ୍କ ସଂଘ ବହୁକାଳ ପୂର୍ବରୁ ଗଢ଼ା ହୋଇଥିଲା । ହାତୀଗୁମ୍ଫା ଅଭିଲେଖରୁ ଜଣାଯାଏ ଯେ ଏହି ସଂଘ ତେର ଶହ ବର୍ଷ ପର୍ଯ୍ୟନ୍ତ ଶକ୍ତିଶାଳୀ ହୋଇ ରହିଥିଲା । ଦିଗ୍‌ବିଜୟୀ ମହାପଦ୍ମନନ୍ଦ ବା ଚନ୍ଦ୍ରଗୁପ୍ତ ମୌର୍ଯ୍ୟ କେହି ସେମାନଙ୍କୁ ପଦାନତ କରିପାରି ନ ଥିଲେ । ଖାରବେଳଙ୍କ ପରାକ୍ରମରେ ସେମାନେ ନିରାପଦ ମଣି ନ ଥିଲେ । ଖାରବେଳ ମଧ୍ୟ ସେମାନଙ୍କୁ ଆକ୍ରମଣ କଲେ । କଳିଙ୍ଗ ଓ ତାମିଲ ସଂଘ ମଧ୍ୟରେ ଏହି ଯୁଦ୍ଧ ସ୍ଥଳ ଓ ଜଳପଥରେ ହୋଇଥିଲା । ଖାରବେଳ ଏହି ଯୁଦ୍ଧରେ ବହୁସଂଖ୍ୟକ ହସ୍ତୀ ଓ ନାବ ହରାଇଥିବା ଜଣାଯାଏ । ମାତ୍ର ଶେଷରେ ସେ ବିଜୟଶ୍ରୀମଣ୍ଡିତ ହେଲେ । ପାଣ୍ଡ୍ୟରାଜ୍ୟ ସମ୍ଭବତଃ ସେମାନଙ୍କର ମୁଖ୍ୟ ଥିଲେ । ସେ ଖାରବେଳଙ୍କ ନିକଟକୁ ନାନାବିଧ ଆଭରଣ, ମଣିମୁକ୍ତାଦି ରତ୍ନମାନ ଉପହାର ଦେଇ ବଶ୍ୟତା ସ୍ୱୀକାର କରିବାକୁ ବାଧ୍ୟ ହେଲେ । ଖାରବେଳ ଏହି ସମୟରେ ପିଥୁଣ୍ଡ ନାମକ ସହରକୁ ଅଧିକାର କରିନେଇଥିଲେ । ଗଧ ଟାଣୁଥିବା ଗାଡ଼ିରେ ପିଥୁଣ୍ଡ ସହରକୁ ଚାଷଜମିରେ ପରିଣତ କରାଯାଇଥିବାର ଜଣାଯାଏ ।

ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ ପୁଣି ଯୁଦ୍ଧଯାତ୍ରା କରି ଉତ୍ତରାପଥ ରାଜାମାନଙ୍କୁ ଭୟଭୀତ କରିଥିଲେ । ଉତ୍ତରାପଥ ସମ୍ଭବତଃ କେତେଗୁଡ଼ିଏ କ୍ଷୁଦ୍ର କ୍ଷୁଦ୍ର ରାଜ୍ୟରେ ବିଭକ୍ତ ଥିଲା । ଖାରବେଳ ସେମାନଙ୍କୁ ଅକ୍ଳେଶରେ ପରାସ୍ତ

କଲେ ଓ ଉତ୍ତର ପଶ୍ଚିମ ସୀମା ପର୍ଯ୍ୟନ୍ତ ରାଜ୍ୟ ବିସ୍ତାର କରିଥିଲେ । ଉତ୍ତରାପଥ ବିଜୟ ପରେ ସେ ପୁନର୍ବାର ମଗଧ ଆକ୍ରମଣ କଲେ । ସେ ଗଙ୍ଗାନଦୀ କୂଳରେ ସୈନ୍ୟ ସମାବେଶ କରିଥିଲେ । ତେଣୁ ସେ ପାଟଳିପୁତ୍ର ଆକ୍ରମଣ କରିଥିବା ସମ୍ଭବ । ମଗଧ ରାଜା ବୃହସ୍ପତି ମିତ୍ର ପରାସ୍ତ ହୋଇ ଖାରବେଳଙ୍କ ପଦବନ୍ଦନା କରିବାକୁ ବାଧ ହେଲେ । ଏହି ବିଜୟ ଫଳରେ ଖାରବେଳ ଅଶୋକଙ୍କଦ୍ୱାରା କଳିଙ୍ଗ ପରାଜୟର ପ୍ରତିଶୋଧ ନେଇପାରିଲେ । ମହାପଦ୍ମନନ୍ଦ ବହୁ ବର୍ଷ ପୂର୍ବେ କଳିଙ୍ଗକୁ ଜୟ କରି ଅନେକ ଧନରତ୍ନ ଓ କଳିଙ୍ଗ ଜିନ ମୂର୍ତ୍ତି ନେଇଯାଇଥିଲେ । ଖାରବେଳ ମଧ୍ୟ ଅଜସ୍ର ଧନରତ୍ନ ନେଇଆସିଲେ । କେବଳ ସେତିକି ନୁହେଁ, ଖାରବେଳ କଳିଙ୍ଗ ଜିନଙ୍କୁ ଅସଂଖ୍ୟ ଅଶ୍ୱ, ରଥ, ଗଜ ଓ ସୈନ୍ୟଦ୍ୱାରା ପରିବେଷ୍ଟିତ କରି ବିରାଟ ଶୋଭାଯାତ୍ରାରେ କଳିଙ୍ଗକୁ ନେଇଆସିଲେ । ଏହାଦ୍ୱାରା କଳିଙ୍ଗର ହୃତ-ଗୌରବ ଯେ ଫେରିଆସିଲା, ଏଥିରେ ସନ୍ଦେହ ନାହିଁ ।

ଏହିପରି ଖାରବେଳ ବିଜୟ ଲାଭକରି ନିଜକୁ 'ଅପ୍ରତିହତ', 'ଚକ୍ରଧର', 'ଚକ୍ରବାହନ', 'ଗୁପ୍ତଚକ୍ର', 'ପ୍ରବର୍ତ୍ତଚକ୍ର', 'ମହାବିଜୟୀ' ପ୍ରଭୃତି ଉପାଧିରେ ଭୂଷିତ କରିଥିଲେ ।

### ରାଜଧାନୀ

ଉଦୟଗିରିର ହାତୀଗୁମ୍ଫାରେ ଖୋଦିତ ଖାରବେଳଙ୍କ ପ୍ରଶସ୍ତିରୁ ଜଣାଯାଏ ଯେ ସାମ୍ରାଜ୍ୟର ରାଜଧାନୀ କଳିଙ୍ଗନଗରୀ ଥିଲା । ଖାରବେଳଙ୍କ ରାଜତ୍ୱର ପ୍ରଥମବର୍ଷ ବୃତ୍ତାନ୍ତରୁ ଜଣାଯାଏ ଯେ ସେ ରାଜତ୍ୱର ପ୍ରଥମ ବର୍ଷରେ କଳିଙ୍ଗନଗରୀକୁ ସୌନ୍ଦର୍ଯ୍ୟମୟ କରିଥିଲେ । ଏହି ନଗରୀରେ ପୂର୍ବରୁ ଗୋପୁର ନିବେଶନ (ରାଜପ୍ରାସାଦ), ତଡ଼ାଗ, ଉଦ୍ୟାନ ପ୍ରଭୃତି ଥିଲା । ମାତ୍ର ପ୍ରବଳ ବାତ୍ୟା ଫଳରେ ସେଗୁଡ଼ିକର କ୍ଷୟକ୍ଷତି ଘଟିଥିଲା । ଖାରବେଳ ରାଜତ୍ୱର ପ୍ରଥମ ବର୍ଷରେ ଭାଙ୍ଗିଯାଇଥିବା ସୌଧ ଓ ତୋରଣଗୁଡ଼ିକର ପୁନଃନିର୍ମାଣ କରିଥିଲେ । ଦୁର୍ଗ, ପ୍ରାଚୀର ଓ ଅଟ୍ଟାଳିକାମାନଙ୍କର ଉନ୍ନତି ସାଧନ କରିବା ସଙ୍ଗେ ସଙ୍ଗେ ସେ ଜଳାଶୟଗୁଡ଼ିକର ପୁନରୁଦ୍ଧାର କରି ସେଗୁଡ଼ିକୁ ସୁନ୍ଦର ସୋପାନ ଶ୍ରେଣୀରେ ପରିଶୋଭିତ କରିଥିଲେ ଓ ବାତ୍ୟାବିଧ୍ୱସ୍ତ ଉଦ୍ୟାନଗୁଡ଼ିକୁ ନୂତନରୂପେ ନିର୍ମାଣ କରିଥିଲେ । ଏଥିରେ ସର୍ବମୋଟ ୩୫ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା । ରାଜତ୍ୱର ପଞ୍ଚମ ବର୍ଷରେ ସେ ରାଜଧାନୀ କଳିଙ୍ଗନଗରୀପାଇଁ ଜଳସେଚନର ସୁବିଧା କରିଥିଲେ । ପ୍ରାୟ ତିନି ଶହ ବର୍ଷ ତଳେ ନନ୍ଦରାଜା ମହାପଦ୍ମନନ୍ଦ ଏକ କେନାଲ ଖୋଳାଇଥିଲେ । ସେ ସେହି କେନାଲକୁ ବିସ୍ତାରିତ କରି ତିନିସୁଲିଆ ବାଟ ଦେଇ କଳିଙ୍ଗନଗରୀରେ ପ୍ରବେଶ କରାଇଥିଲେ । ଏହାଦ୍ୱାରା କୃଷି କାର୍ଯ୍ୟ

ଓ ପାନୀୟଜଳ ଯୋଗାଇବା କାର୍ଯ୍ୟ ସାଧିତ ହୋଇଥିବା ଜଣାଯାଏ । ଏଥିରେ ମଧ୍ୟ ବହୁ ସହସ୍ର ମୁଦ୍ରା ବ୍ୟୟିତ ହୋଇଥିଲା । ନବମ ବର୍ଷ ବୃତ୍ତାନ୍ତରୁ ଜଣାଯାଏ ଯେ ଖାରବେଳ ବିଜୟର ସ୍ମାରକସ୍ୱରୂପ ଏକ ବୃହତ୍ ମହାବିଜୟ ପ୍ରାସାଦ ନିର୍ମାଣ କରିଥିଲେ । ଏହି ନିର୍ମାଣରେ ଅଷ୍ଟତ୍ରିଂଶ ଲକ୍ଷ ମୁଦ୍ରା ବ୍ୟୟିତ ହୋଇଥିଲା । ସୁତରାଂ ଏହି ରାଜପ୍ରାସାଦର ଗଠନ ଓ କାରୁକାର୍ଯ୍ୟ ଅତି ଉଚ୍ଚକୋଟୀର ହୋଇଥିବ, ଏଥିରେ ସନ୍ଦେହ ନାହିଁ । ରାଜତ୍ୱର ଦ୍ୱାଦଶ ବର୍ଷରେ ଖାରବେଳ କେତେକ ରାସ୍ତା, ଚଉତରା, ତୋରଣ ଓ ଗୋପୁର ପ୍ରଭୃତି ନିର୍ମାଣ କରିଥିଲେ । ସେ ମଧ୍ୟ ଜୈନ ଆର୍ହତମାନଙ୍କପାଇଁ ଅନେକ ଗୁମ୍ଫା ନିର୍ମାଣ କରିଥିଲେ । ସିଂହପଥ ରାଣୀମାନଙ୍କର ଅନୁରୋଧକ୍ରମେ ବିଭିନ୍ନ ସ୍ଥାନରୁ ଆଗତ ଶ୍ରମଣ, ଯତି, ଋଷିମାନଙ୍କର ଆଶ୍ରୟପାଇଁ ଗିରିଗୃହ ନିକଟରେ ଏକ ବିଶାଳ ବିଶ୍ରାମାଗାର ନିର୍ମାଣ କରିଥିଲେ । ଏଥିରେ ବହୁ ଦୂରରୁ ଆସିଥିବା ୩୫ ଲକ୍ଷ ଉନ୍ନତ ପ୍ରସ୍ତରଖଣ୍ଡରେ ଏହି ସୌଧ ନିର୍ମିତ ହୋଇଥିଲା । ଏଥିପାଇଁ ଖାରବେଳଙ୍କୁ ଏକ ଲକ୍ଷ ପାଞ୍ଚ ହଜାର ମୁଦ୍ରା ବ୍ୟୟ କରିବାକୁ ପଡ଼ିଥିଲା । ଏହି ଅଟ୍ଟାଳିକା ରାଜଧାନୀ କଳିଙ୍ଗନଗରୀର ଶୋଭା ଯେ ବର୍ଦ୍ଧନ କରିଥିବ, ଏହା କହିବା ବାହୁଲ୍ୟ ମାତ୍ର ।

## ପ୍ରଜାନୁରଞ୍ଜନ କାର୍ଯ୍ୟ

ପ୍ରଜାମାନଙ୍କର ମନୋରଞ୍ଜନ ଦିଗରେ ଖାରବେଳ ଯେଉଁସବୁ ପଦକ୍ଷେପ ନେଇଥିଲେ ତାହା ସମସ୍ତଙ୍କୁ ଏବେବି ବିସ୍ମୟାଭିଭୂତ କରେ । ସେ ପ୍ରଜାମାନଙ୍କର ଚିତ୍ତ ବିନୋଦନପାଇଁ ମନୋରମ ଉଦ୍ୟାନମାନ ନିର୍ମାଣ କରିଥିଲେ । ରାଜା ନିଜେ ସଙ୍ଗୀତ ବିଦ୍ୟାରେ ନିପୁଣ ଥିଲେ । ନୃତ୍ୟ, ଗୀତ ଓ ବାଦ୍ୟର ଆୟୋଜନ କରି ପ୍ରଜାମାନଙ୍କର ଆନନ୍ଦବର୍ଦ୍ଧନ କରୁଥିଲେ । ରାଣୀଗୁମ୍ଫାରେ ଥିବା ବିଭିନ୍ନ ବାଦ୍ୟଯନ୍ତ୍ର ସହିତ ଚାରି ଜଣ ସଖୀସହ ଜଣେ ନୃତ୍ୟରତା ରମଣୀର ଦୃଶ୍ୟ ଅଛି । ମହାରାଜ ଖାରବେଳ ମଧ୍ୟ ନିଜ ରାଣୀଦ୍ୱୟଙ୍କ ଗହଣରେ ନୃତ୍ୟ ଗୀତ ଉପଭୋଗ କରୁଥିବାର ଚିତ୍ର ଦେଖିବାକୁ ମିଳୁଅଛି । ସେ ନାଗରିକମାନଙ୍କପାଇଁ ନାନାପ୍ରକାର ଭୋଜି, ଉତ୍ସବ, ସମାଜ ଇତ୍ୟାଦିର ବ୍ୟବସ୍ଥା କରିଥିଲେ । ରାଜକର୍ମଚାରୀ, ଗୃହସ୍ଥ, ବ୍ରାହ୍ମଣ, ଶ୍ରମଣ ଓ ଭିକ୍ଷୁମାନେ ଭୋଜିକୁ ନିମନ୍ତ୍ରିତ ହେଉଥିଲେ । ନାଗରିକମାନଙ୍କ କୌତୂହଳ ଚରିତାର୍ଥପାଇଁ ଅନେକ ପ୍ରକାର ବିସ୍ମୟ ଉଦ୍ଦୀପକ ବନ୍ୟ ପଶୁମାନଙ୍କୁ ପ୍ରଦର୍ଶିତ କରାଉଥିଲେ । କ୍ରୀଡ଼ା କସରତ୍ (ଦପ)ପାଇଁ ଖାରବେଳ ଅନେକ ବ୍ୟବସ୍ଥା କରିଥିଲେ । ବେଳେ ବେଳେ ଅସି, ଛତ୍ର, ଘଟ, ପତାକାଧାରୀ ବ୍ୟକ୍ତି, ଗଜ, ଅଶ୍ୱ, ରଥାରୋହୀ, ସୈନ୍ୟସାମନ୍ତ ଓ ଅନୁଚରବୃନ୍ଦଙ୍କ ସହ ନଗର ପରିକ୍ରମାରେ ଯାଉଥିଲେ ।

ପ୍ରଜାମାନଙ୍କ ଉପରୁ ଅନେକ କର ଖାରବେଳ ଉଠାଇଦେଇ ସେମାନଙ୍କ ପ୍ରିୟପାତ୍ର ହୋଇଥିବାର ଜଣାଯାଏ । ସମ୍ଭବତଃ, ରାଣୀ ଅନ୍ତଃସତ୍ତ୍ୱା ହେବା ସମୟରେ ପୌର ତଥା ଜନପଦ ଅଞ୍ଚଳରୁ ଏହି କର ପ୍ରତ୍ୟାହୃତ ହୋଇଥିଲା ।



ରାଣୀଗୁମ୍ଫାର ଭାସ୍କର୍ଯ୍ୟ

## ଦେଶର ବିଭବ

ଖାରବେଳଙ୍କ ରାଜକୋଷ ଅପରିମିତ ଧନରତ୍ନରେ ପୂର୍ଣ୍ଣ ଥିଲା । ସମ୍ରାଟ୍ ପରାଜିତ ନରପତିମାନଙ୍କଠାରୁ ନାନାବିଧ ଧନରତ୍ନ, ପରିଚ୍ଛଦ ଓ ବିପୁଳ ଅର୍ଥ ଗ୍ରହଣ କରି ରାଜକୋଷର ଶ୍ରୀବୃଦ୍ଧି କରିଥିଲେ । ଧନୀ ବ୍ୟବସାୟୀମାନେ ଦୁର୍ଲଭ ମଣିମୁକ୍ତା ପ୍ରଭୃତି ରାଜାଙ୍କୁ ଉପହାର ଦେଉଥିଲେ । ଜାଭା, ସୁମାତ୍ରା, ସିଂହଳ, ବ୍ରହ୍ମ, ଶ୍ୟାମ ପ୍ରଭୃତି ଦେଶମାନଙ୍କ ସହିତ ବାଣିଜ୍ୟ ବ୍ୟବସାୟ ଫଳରେ ଦେଶକୁ ଧନରତ୍ନ ବୋହି ଆସୁଥିଲା । ଲକ୍ଷ ଲକ୍ଷ ଟଙ୍କା ବ୍ୟୟରେ ବୈଦୂର୍ଯ୍ୟମଣ୍ଡିତ ବିଜୟପ୍ରାସାଦ ନିର୍ମାଣ, ଷାଠିଏ ଲକ୍ଷ ମୁଦ୍ରା ବ୍ୟୟରେ ଚୈତ୍ର ନିର୍ମାଣ, ପୟପ୍ରଣାଳୀ ଖନନ, ଜୀର୍ଣ୍ଣ ସୌଧ, ପ୍ରାସାଦ ପ୍ରଭୃତିର ସଂସ୍କାର, ଗୁମ୍ଫା ପ୍ରଭୃତି ନିର୍ମାଣରୁ ଦେଶ ଯେ ଅତି ବିଭବଶାଳୀ ଥିଲା, ଏକଥା ସ୍ପଷ୍ଟ ପ୍ରମାଣିତ ହୁଏ । ଏହାଛଡ଼ା ଅନ୍ୟାନ୍ୟ ପ୍ରଜାହିତକର କାର୍ଯ୍ୟରେ ସେ ଅକାତରରେ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରୁଥିଲେ । ଏହା ତାଙ୍କର ରାଜ୍ୟର ବିପୁଳ ଐଶ୍ୱର୍ଯ୍ୟର ପ୍ରମାଣ ଦିଏ । ବିଦେଶରୁ ଆସୁଥିବା ଧନରେ କୋଷାଗାର ପରିପୂର୍ଣ୍ଣ ଥିବାରୁ ସେ ପ୍ରଜାମାନଙ୍କଠାରୁ ଅନେକ କର ପ୍ରତ୍ୟାହାର କରିନେଇଥିବାର ଜଣାଯାଏ ।

## ପରିବାର

ଭାରତୀୟ ନରପତିମାନଙ୍କ ପରି ଖାରବେଳ ବହୁ ଦାରା ଗ୍ରହଣ କରିଥିଲେ । ନାନା ଦେଶର ରାଜକନ୍ୟା ତାଙ୍କ ଅନ୍ତଃପୁରର ଶୋଭାବର୍ଦ୍ଧନ କରୁଥିଲେ । ଉଦୟଗିରିର ସ୍ୱର୍ଗପୁରୀ ଗୁମ୍ଫାରେ ଖୋଦିତ ଲେଖାରୁ ଜଣାଯାଏ ଯେ ଉକ୍ତ ଗୁମ୍ଫା ତାଙ୍କ ପାଟରାଣୀଙ୍କଦ୍ୱାରା ଖୋଦିତ ହୋଇଥିଲା । ଜୟସ୍ୱାଲଙ୍କ ମତ ଅନୁଯାୟୀ ତାଙ୍କ ପାଟରାଣୀଙ୍କ ନାମ ଧୁସି ଥିଲା । 'ଅଗ୍ରମହିଷୀ' ଶବ୍ଦ ବ୍ୟବହାରରୁ ଜଣାଯାଏ ଯେ, ତାଙ୍କର ଏକାଧିକ ରାଣୀ ଥିଲେ ।

ଖାରବେଳଙ୍କର ଅଭିଷେକ ଉତ୍ସବ ପାଳିତ ହେବା ପୂର୍ବରୁ ତାଙ୍କର ପ୍ରଥମା ରାଣୀଙ୍କ ସହିତ ବିବାହ ସମ୍ପନ୍ନ ହୋଇସାରିଥିଲା । ହାତୀଗୁମ୍ଫା ଅଭିଲେଖରେ ତାଙ୍କୁ ବଜିରଘର କନ୍ୟା ରୂପେ ଚିହ୍ନିତ କରାଯାଇଛି । ଅଭିଲେଖରେ ଦ୍ୱିତୀୟା ରାଣୀଙ୍କୁ ସିଂହପଥ ରାଣୀ ବୋଲି ଉଲ୍ଲେଖ କରାଯାଇଛି । ଖାରବେଳ ଅରଣ୍ୟରେ ଏକଦା ପାରିଧିକୁ ଯାଇଥିବାବେଳେ ଏକ ରୂପସୀ ତରୁଣୀକୁ ବୃକ୍ଷଶାଖାରେ ବସି ଆଶ୍ରୟ ଭିକ୍ଷା କରୁଥିବାର ଦେଖିଲେ । ରାଜା ତାଙ୍କୁ ଉଦ୍ଧାର କରି ରାଜପ୍ରାସାଦକୁ ଆଣିଲେ ଓ ବିବାହ କଲେ । ଏହି ଉପଲକ୍ଷେ କଳିଙ୍ଗନଗରୀରେ ନୃତ୍ୟଗୀତ ସହ ବିବିଧ ଉତ୍ସବର ଆୟୋଜନ ହୋଇଥିଲା ।

ଉଦୟଗିରିର ମଞ୍ଚପୁରୀ, ଯମପୁରୀ ପ୍ରଭୃତି ଗୁମ୍ଫାର ଅଭିଲେଖରୁ ଜଣାଯାଏ ଯେ ତାଙ୍କର କନ୍ଦର୍ପଶ୍ରୀ ଓ ବରେକ୍ଷଶ୍ରୀ ନାମକ ଦୁଇ ପୁତ୍ର ଥିଲେ । କନ୍ଦର୍ପଶ୍ରୀ ମାତାଙ୍କ ପ୍ରତି ଭକ୍ତିର ନିଦର୍ଶନସ୍ୱରୂପ ଗୋଟାଏ ଗୁମ୍ଫା ଖୋଳାଇଥିଲେ । ମୃତ୍ୟୁ ପୂର୍ବରୁ ଖାରବେଳ ଯୁବରାଜ କନ୍ଦର୍ପଶ୍ରୀଙ୍କ ହାତରେ ବିଶାଳ ସାମ୍ରାଜ୍ୟ ଭାର ଦେଇ ପ୍ରାଣ ବିସର୍ଜନ କରିଥିଲେ ।

## ଖାରବେଳଙ୍କ ଧର୍ମ

ଖାରବେଳଙ୍କ ପିତା ଓ ପିତାମହ ପ୍ରଭୃତି ଜୈନ ଧର୍ମାବଲମ୍ବୀ ଥିଲେ । ସୁତରାଂ ଖାରବେଳ ଜୈନ ଧର୍ମର ପୃଷ୍ଠପୋଷକ ହେବା ସ୍ୱାଭାବିକ । ହାତୀଗୁମ୍ଫା ଅଭିଲେଖରେ ଆରମ୍ଭରେ ସେ ଆର୍ହତ ଓ ସିଦ୍ଧମାନଙ୍କୁ ତାଙ୍କର ଭକ୍ତିପୂତ ପ୍ରଣତି ଜଣାଇଛନ୍ତି – 'ନମୋ ଅରଂହତା ନଂ, ନମୋ ସବସିଦ୍ଧାକମ୍' । ଅର୍ଥାତ୍, ଆର୍ହତମାନଙ୍କୁ ମୋର ନମସ୍କାର ଏବଂ ସବୁ ସିଦ୍ଧମାନଙ୍କୁ ମୋର ନମସ୍କାର ।

ଅଭିଲେଖରେ ବଦ୍ଧମଙ୍ଗଳ, ସ୍ୱସ୍ତିକ, ନନ୍ଦିପଦ ଓ ଚୈତ ବୃକ୍ଷର ଚିହ୍ନ ଅଛି । ଏ ସବୁ ଜୈନ ଧର୍ମର ପ୍ରତୀକ । ସୁତରାଂ ଖାରବେଳ ଯେ ଜୈନ ଧର୍ମାବଲମ୍ବୀ, ଥିଲେ ଏହା ନିଃସନ୍ଦେହ ।

ଖାରବେଳ ରାଜତ୍ୱର ଅଷ୍ଟମ ବର୍ଷରେ ମଥୁରାକୁ ଯବନମାନଙ୍କ ହାତରୁ ମୁକ୍ତ କରିଥିଲେ । ମଥୁରା ସେ ସମୟରେ ଏକ ଜୈନ ତୀର୍ଥ ଥିଲା । ସୁତରାଂ ମଥୁରାକୁ ସେମାନଙ୍କ କବଳରୁ ଉଦ୍ଧାର କରିବା ସେ ତାଙ୍କର ପରମ କର୍ତ୍ତବ୍ୟ ବୋଲି ମନେକରିବା ସ୍ୱାଭାବିକ । ସେଠାରୁ ମଧ୍ୟ ସେ କଳ୍ପ ବୃକ୍ଷର ଏକ ପଲ୍ଲବଭରା ଚାରାକୁ ହୟ-ଗଜ-ରଥ-ନର ବେଷ୍ଟିତ କରି ବିରାଟ ଶୋଭାଯାତ୍ରାରେ କଳିଙ୍ଗକୁ ନେଇଆସିଥିଲେ । ଏହା ତାଙ୍କ ଜୈନ ପ୍ରୀତିର ପରିଚାୟକ । ରାଜତ୍ୱର ସପ୍ତମ ବ଼ର୍ଷରେ ହିନ୍ଦୁମାନେ ଉପବାସ କଲାପରି ଅସି, ଛତ୍ର, ରଥ, ରକ୍ଷୀ, କୁରଙ୍ଗ ଓ ଘଟମାନ ସଜ୍ଜିତ କରି ଜୈନ୍ୟ ମଙ୍ଗଳକୃତ୍ୟ କରିଥିଲେ । ଏହାଦ୍ୱାରା ଅତି କଠୋର ଜୈନ ଧର୍ମକୁ ସରସ, ସୁନ୍ଦର ଓ ଲୋକପ୍ରିୟ କରିଥିଲେ । ତାଙ୍କ ସମୟରେ ବହୁଲୋକ ଜୈନ ଧର୍ମ ପ୍ରତି ଆକୃଷ୍ଟ ହୋଇ ଜୈନ ଧର୍ମ ଗ୍ରହଣ କରିଥିବା ଜଣାଯାଏ ।

ଖାରବେଳ ତାଙ୍କ ରାଜତ୍ୱର ଦ୍ୱାଦଶ ବର୍ଷରେ ମଗଧର ନରପତି ବୃହସ୍ପତି ମିତ୍ରଙ୍କୁ ପରାସ୍ତ କରିଥିଲେ ଓ ସେହି ରାଜ୍ୟରୁ କଳିଙ୍ଗ ଜିନଙ୍କ ପ୍ରତିମୂର୍ତ୍ତି କଳିଙ୍ଗକୁ ଫେରାଇ ଆଣିଥିଲେ । ଏହି କଳିଙ୍ଗ ଜିନ ମୂର୍ତ୍ତିକୁ ମଗଧର ନନ୍ଦରାଜା ୩୦୦ବର୍ଷ ପୂର୍ବେ କଳିଙ୍ଗ ବିଜୟ କରି କଳିଙ୍ଗରୁ ନେଇଯାଇଥିଲେ । କୌଣସି ଐତିହାସିକଙ୍କ ମତରେ କଳିଙ୍ଗ ଜିନ ଋଷଭନାଥଙ୍କର ପ୍ରତିମୂର୍ତ୍ତି ଥିଲେ । ସୁତରାଂ ଖାରବେଳ ଜୈନମାନଙ୍କର ପବିତ୍ର ମୂର୍ତ୍ତିକୁ ଫେରାଇଆଣିବାକୁ ପବିତ୍ର କର୍ତ୍ତବ୍ୟ ବୋଲି ଧରିନେଇଥିଲେ । ଏହା ତାଙ୍କ ଜୈନଧର୍ମ ପ୍ରତି ଗଭୀର ନିଷ୍ଠାର ପରିଚୟ ଦିଏ ।

ଐତିହାସିକ କେ. ପି. ଜୟସ୍ୱାଲ ଓ ରାଖାଲ ଦାସ ବାନାର୍ଜୀଙ୍କ ମତ ଅନୁସାରେ ଖାରବେଳ ତାଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷରେ ଜୈନ ଆର୍ହତମାନଙ୍କର ଗୋଟିଏ ସଭା କରିଥିଲେ । ଏଥିରେ ଭାରତର ଅନ୍ୟ ଅଞ୍ଚଳରୁ ଜୈନମାନେ ଯୋଗ ଦେଇଥିଲେ । ସେ ଜୈନମାନଙ୍କ ମଧ୍ୟରେ ଶ୍ୱେତବସ୍ତ୍ର ବଣ୍ଟନ କରିଥିଲେ । ସର୍ବଶେଷରେ ଜୈନମାନଙ୍କର ଧର୍ମଗ୍ରନ୍ଥ 'ସପ୍ତାଙ୍ଗ'ର ପୁନରୁଦ୍ଧାର କରାଯାଇଥିଲା । ସେ ଏହାଦ୍ୱାରା ଜୈନମାନଙ୍କର ଗୋଟିଏ ଅଭାବ ଦୂର କରିପାରିଥିଲେ ।

ହାତୀଗୁମ୍ଫା ଅଭିଲେଖରୁ ଜଣାଯାଏ ଯେ ଖାରବେଳ ତାଙ୍କ ରାଜତ୍ୱର ତ୍ରୟୋଦଶ ବର୍ଷରେ ଶ୍ୱେତାମ୍ବର ଜୈନମାନଙ୍କୁ ଏବଂ ଯାପନୀୟ ନାମକ ଦିଗମ୍ବର ଆର୍ହତମାନଙ୍କୁ ରାଜକୀୟ ପୃଷ୍ଠପୋଷକତା ଦେଇଥିଲେ । କେବଳ ସେତିକି ନୁହେଁ, ସେମାନଙ୍କର ରହିବାପାଇଁ ଗୁମ୍ଫାମାନ ଖୋଦନ କରିଥିଲେ । ସେ ମଧ୍ୟ ସିଂହପଥ ରାଣୀଙ୍କର ଅନୁରୋଧକ୍ରମେ ସମାଗତ ଶ୍ରମଣ ଓ ଋଷିମାନଙ୍କପାଇଁ ଆର୍ହତମାନଙ୍କର ଗିରିଗୃହ ନିକଟରେ ଏକ ବିରାଟ ବିଶ୍ରାମାଗାର ନିର୍ମାଣ

କରିଥିଲେ । ବହୁ ଦୂରରୁ ଅଣାହୋଇଥିବା ୩୫ ଲକ୍ଷ ଉନ୍ନତ ପ୍ରସ୍ତରଖଣ୍ଡରେ ଏହା ନିର୍ମିତ ହୋଇଥିଲା ।

କେବଳ ଖାରବେଳ ଏକା ନୁହନ୍ତି, ତାଙ୍କର ସମସ୍ତ ପରିବାର ଓ ରାଜକର୍ମଚାରୀମାନେ ଜୈନଧର୍ମାବଲମ୍ବୀ ଥିଲେ । ସେମାନେ ବହୁ ଜୈନ ଗୁମ୍ଫା ନିର୍ମାଣ କରିଥିଲେ । ଖାରବେଳଙ୍କ ପାଟରାଣୀ ଧୁସୀ କଳିଙ୍ଗର ଶ୍ରମଣମାନଙ୍କପାଇଁ ବୈକୁଣ୍ଠପୁର ଗୁମ୍ଫା ଖୋଳାଇଥିଲେ । ଖାରବେଳଙ୍କ ପୁତ୍ର କନ୍ଦର୍ପଶ୍ରୀ ମଞ୍ଚପୁରୀ ଗୁମ୍ଫା, ଦ୍ୱିତୀୟ ପୁତ୍ର ବରେକ୍ଷଶ୍ରୀ ବା କୁମାର ବଡୁଖ ଯମପୁରୀ ଗୁମ୍ଫା, ଖାରବେଳଙ୍କ ଜନୈକ କର୍ମଚାରୀ ସର୍ପଗୁମ୍ଫା ବା ହରିଦାସ ଗୁମ୍ଫା, ବ୍ୟାବହାରିକ ଭୂତିଙ୍କଦ୍ୱାରା ବ୍ୟାଘ୍ରଗୁମ୍ଫା, ଖାରବେଳଙ୍କ ପାଦମୂଳିକ ବା ପାଦସେବୀଙ୍କଦ୍ୱାରା ତତ୍ତ୍ୱଗୁମ୍ଫା ପ୍ରଭୃତି ଗୁମ୍ଫା ଖୋଦିତ ହୋଇଥିଲା । ଭାରତରେ ସ୍ୱଧର୍ମ ନିଷ୍ଠାର ଏଭଳି ଦୃଷ୍ଟାନ୍ତ ଯଥାର୍ଥରେ ବିରଳ ।

ଖାରବେଳ ଜୈନ ହେଲେ ମଧ୍ୟ ବ୍ରାହ୍ମଣ ଧର୍ମାବଲମ୍ବୀ ରାଜାମାନଙ୍କ ପରି ବାଲ୍ୟ ଓ ଯୌବନରେ ଶିକ୍ଷା ସମାପ୍ତ କରିଥିଲେ । ତାଙ୍କର ରାଜ୍ୟ ଅଭିଷେକ ବୈଦିକ ରୀତିରେ ହୋଇଥିଲା । ଜୈନ ହେଲେ ମଧ୍ୟ ପ୍ରଜାନୁରଞ୍ଜନପାଇଁ ସେ ନୃତ୍ୟ, ଗୀତ, ସମାଜ, ଉତ୍ସବ ପ୍ରଭୃତିର ଆୟୋଜନ କରୁଥିଲେ ଓ ସେ ସେଥିରେ ସକ୍ରିୟ ଭାଗ ନେଉଥିଲେ । ଜୈନମାନଙ୍କପାଇଁ ବହୁ କୀର୍ତ୍ତି ପ୍ରତିଷ୍ଠା କଲେ ମଧ୍ୟ ଅନ୍ୟ ଧର୍ମର ବିରୋଧୀ ନ ଥିଲେ । ନିଜ ଲେଖରେ ସେ ନିଜକୁ ସର୍ବପାଷଣ୍ଡ ପୂଜକ ଓ ସର୍ବଦେବାୟତନ ସଂସ୍କାରକାରକ ବୋଲି ବର୍ଣ୍ଣନା କରିଛନ୍ତି । ସବୁ ଧର୍ମାବଲମ୍ବୀମାନଙ୍କୁ ସେ ସମାନ ଭାବରେ ସ୍ନେହ ଓ ଶ୍ରଦ୍ଧା କରୁଥିଲେ । ମଥୁରା ବିଜୟ ସମୟରେ ସେ ବ୍ରାହ୍ମଣମାନଙ୍କୁ ଭୂରିଭୋଜନ ଓ ଅର୍ଥଦାନ କରିଥିଲେ । ମୈତ୍ରୀଭାବ ଓ ଧର୍ମ ସମ୍ବନ୍ଧରେ ଉଦାର ନୀତି ଓ ମହାନୁଭବତା ଯୋଗୁଁ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇପାରିଥିଲେ ।

## ରାଜତ୍ୱ ସମୟ

ଖାରବେଳଙ୍କ ସମୟ ବିଷୟରେ ଐତିହାସିକମାନଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ଐତିହାସିକ ଜୟସ୍ୱାଲ ଓ ରାଖାଲ ଦାସ ବାନାର୍ଜୀ ଖାରବେଳ ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀର ଓ ସୁଙ୍ଗ ବଂଶର ପ୍ରତିଷ୍ଠାତା ପୁଷ୍ୟମିତ୍ରଙ୍କର ସାମସମୟିକ ବୋଲି ମତ ଦେଇଛନ୍ତି । ତାଙ୍କ ମତକୁ ଓଡ଼ିଶାର ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସମର୍ଥନ କରନ୍ତି । ତାଙ୍କ ମତରେ ହାତୀଗୁମ୍ଫା ଶିଳାଲେଖର 'ନନ୍ଦରାଜ' ହେଉଛନ୍ତି ସମ୍ରାଟ୍ ଅଶୋକ । ସେ କାଳରେ ଚନ୍ଦ୍ରଗୁପ୍ତ ଓ ଅଶୋକଙ୍କ ବଂଶ

ମୌର୍ଯ୍ୟ ବଂଶରୂପେ ପରିଚିତ ନ ଥିଲେ । ସେମାନେ ପୂର୍ବେ ନନ୍ଦସୁତଭାବେ ନାମିତ ଥିଲେ । ସୁତରାଂ ତାଙ୍କ ମତରେ ହାତୀଗୁମ୍ଫା ଶିଳାଲେଖର 'ନନ୍ଦରାଜ' ଅଶୋକଙ୍କ ବ୍ୟତୀତ ଆଉ କେହି ନୁହେଁ । ଅଶୋକ ଖ୍ରୀ.ପୂ. ୨୬୧ରେ କଳିଙ୍ଗ ବିଜୟ କରିଥିଲେ । ଡଃ ପାଣିଗ୍ରାହୀ ମଧ ଅଭିଲେଖର ଷଷ୍ଠ ଧାଡ଼ିରେ ଥିବା 'ତିବତ ସତ'କୁ ୧୦୩ ବର୍ଷ ବୋଲି ଗ୍ରହଣ କରିଛନ୍ତି । ସୁତରାଂ ଖାରବେଳଙ୍କ ରାଜତ୍ୱର ପଞ୍ଚମ ବର୍ଷକୁ ସେ (୨୬୧-୧୦୩ = ୧୫୮) ବୋଲି ନିରୂପଣ କରିଛନ୍ତି । ସେହି ଦୃଷ୍ଟିରୁ ଖାରବେଳଙ୍କ ଅଭିଷେକ ଖ୍ରୀ.ପୂ. ୧୬୩ରେ ସମ୍ପନ୍ନ ହୋଇଥିଲା । ସ୍ମିଥ୍ ଓ ମାର୍ଶାଲ ପ୍ରଭୃତି ଐତିହାସିକମାନେ ମଧ ଏହି ମତ ଗ୍ରହଣ କରିଛନ୍ତି ।

ମାତ୍ର ଐତିହାସିକ ରାମପ୍ରସାଦ ଚନ୍ଦ୍ର, ହେମଚନ୍ଦ୍ର ରାୟଚୌଧୁରୀ ଓ ବେନିମାଧବ ବରୁଆ ପ୍ରଭୃତି ତାଙ୍କ ମତକୁ ଗ୍ରହଣ ନ କରି ଖାରବେଳ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ସମ୍ରାଟ୍ ବୋଲି ଯୁକ୍ତି କରନ୍ତି । ଓଡ଼ିଶାର ଆଉ ଜଣେ ଐତିହାସିକ ଡଃ ନବୀନକୁମାର ସାହୁ ମଧ ଉପରୋକ୍ତ ମତକୁ ଗ୍ରହଣ କରିଛନ୍ତି । ତାଙ୍କ ମତରେ ହାତୀଗୁମ୍ଫା ଅଭିଲେଖର 'ନନ୍ଦରାଜ'ଙ୍କୁ ଅଶୋକ ବୋଲି ଚିହ୍ନିତ କରିବାର କୌଣସି ନିର୍ଭରଯୋଗ୍ୟ କାରଣ ନାହିଁ । ପ୍ରାଚୀନ ଭାରତର କୌଣସି ଅଭିଲେଖରେ ଅଶୋକ ନନ୍ଦବଂଶର ଶାସକରୂପେ ବର୍ଣ୍ଣିତ ହୋଇ ନାହାନ୍ତି । ହାତୀଗୁମ୍ଫା ଅଭିଲେଖରୁ ମଧ ଜଣାଯାଏ ଯେ ନନ୍ଦ ଓ ମୌର୍ଯ୍ୟ ଶାସନ ବିଷୟ ଖାରବେଳଙ୍କୁ ଅଜ୍ଞାତ ନ ଥିଲା । ଅଭିଲେଖରେ ସେହି ଦୁଇ ରାଜବଂଶର ଏକାଧିକବାର ଉଲ୍ଲେଖ ଅଛି । ସୁତରାଂ ଅଶୋକଙ୍କୁ 'ନନ୍ଦରାଜ' ବୋଲି ଭ୍ରମ କରିବା ସମ୍ଭବ ନୁହେଁ ।

ଡଃ ନବୀନ ସାହୁଙ୍କ ମତରେ, ହାତୀଗୁମ୍ଫା ଅଭିଲେଖର 'ନନ୍ଦରାଜ' ହେଉଛନ୍ତି ନନ୍ଦବଂଶର ରାଜା ମହାପଦ୍ମନନ୍ଦ । 'ତିବ୍ବତସତ' ଅର୍ଥ ମଧ ୩୦୦ବର୍ଷ ବୋଲି ସେ ଗ୍ରହଣ କରିଛନ୍ତି । ମହାପଦ୍ମନନ୍ଦ ଖ୍ରୀ.ପୂ. ୩୫୦ରେ କଳିଙ୍ଗ ଅଧିକାର କରିଥିଲେ । ଏହା ପରେ ପ୍ରଜାମାନଙ୍କର ଅଭାବ ଉପଲବ୍ଧି କରି କେନାଲ ଖୋଳାଇଥିଲେ । ଖ୍ରୀ.ପୂ. ୩୩୫ରେ ତାଙ୍କର ମୃତ୍ୟୁ ହୋଇଥିଲା । ତାହା ପୂର୍ବରୁ କେନାଲ ଖୋଳାଯାଇଥିବା ନିଶ୍ଚିତ । ଖାରବେଳ ମଧ ରାଜତ୍ୱର ପଞ୍ଚମ ବର୍ଷରେ ୩୦୦ ବର୍ଷ ପୂର୍ବେ ଖୋଳା ଯାଇଥିବା କେନାଲର ଅଭିବୃଦ୍ଧି କରିଥିଲେ । ଖାରବେଳଙ୍କ ରାଜତ୍ୱର ପଞ୍ଚମ ବର୍ଷ (ଖ୍ରୀ.ପୂ. ୩୩୫ – ୩୦୦) = ଖ୍ରୀ.ପୂ.୩୫ରେ ତାହା ହୋଇଥିଲା । ସୁତରାଂ ତାଙ୍କ ଅଭିଷେକ ଉତ୍ସବ ଖ୍ରୀ.ପୂ. ୩୫ + ୫ = ଖ୍ରୀ.ପୂ. ୪୦ରେ ହୋଇଥିବା ଯୁକ୍ତିଯୁକ୍ତ । ଖାରବେଳ ଏହି ଦୃଷ୍ଟିରୁ ଖ୍ରୀ.ପୂ. ପ୍ରଥମ ଶତାବ୍ଦୀର ସମ୍ରାଟ୍ ଅଟନ୍ତି ।

ଡଃ ସାହୁ ମଧ୍ୟ ସାତବାହନ ବଂଶର ସମୟ ନିରୂପଣ କରିଛନ୍ତି । ତାଙ୍କ ମତରେ, ବଂଶର ପ୍ରଥମ ରାଜା ସିମୁକ ଖ୍ରୀ.ପୂ. ୮୮ରୁ ଖ୍ରୀ.ପୂ. ୬୫ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଦ୍ୱିତୀୟ ରାଜା କହ୍ନ ଖ୍ରୀ.ପୂ. ୬୫ରୁ ଖ୍ରୀ.ପୂ. ୪୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ତୃତୀୟ ରାଜା ସାତକର୍ଣ୍ଣୀ ଖ୍ରୀ.ପୂ. ୪୭ରୁ ୩୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଖାରବେଳଙ୍କ ରାଜତ୍ୱର ତୃତୀୟ ବର୍ଷରେ ସାତକର୍ଣ୍ଣୀଙ୍କର ମୃତ୍ୟୁ ହୋଇଥିଲା । ତେଣୁ ଖାରବେଳଙ୍କ ରାଜତ୍ୱ ଖ୍ରୀ.ପୂ. ୪୦ରେ ଆରମ୍ଭ ହୋଇଥିବା ଅଧିକ ଯୁକ୍ତିଯୁକ୍ତ ।

## ଶାସନ ପ୍ରଣାଳୀ

ଖାରବେଳ କଳିଙ୍ଗରାଜ୍ୟକୁ ଉନ୍ନତ ଓ ସମୃଦ୍ଧିଶାଳୀ କରିବା ଦିଗରେ ଯତ୍ନଶୀଳ ଥିଲେ । ତେଣୁ ତାଙ୍କର ଶାସନ ବିକାଶମୁଖୀ ହୋଇଥିବାର ଜଣାଯାଏ । ମୌର୍ଯ୍ୟ ଅମଳର କେତେକ ରାଜକର୍ମଚାରୀ ପଦ ତାଙ୍କ ସମୟରେ ପ୍ରଚଳିତ ଥିଲା । ମୌର୍ଯ୍ୟ ଶାସନର 'ମହାମାତ୍ର'ଙ୍କୁ ଖାରବେଳଙ୍କ ସମୟରେ ମହାମଦ କୁହାଯାଉଥିଲା । ସେହି ମହାମଦ ପଦରେ ନାକୀୟ ଅଧିଷ୍ଠିତ ଥିଲେ । ତାଙ୍କ ସମୟରେ ନିର୍ମାଣ ବିଭାଗର କର୍ମଚାରୀଙ୍କୁ କମ୍ମ କୁହାଯାଉଥିଲା । ଦୁର୍ଗ, ପ୍ରାସାଦ ପ୍ରଭୃତି ନିର୍ମାଣ ତାଙ୍କର କାର୍ଯ୍ୟ ଥିଲା । ତାଙ୍କୁ ସାହାଯ୍ୟ କରିବାକୁ ଚୂଳକମ୍ମ ଥିଲେ । ଆଉ ଜଣେ କର୍ମଚାରୀ ଥିଲେ, ଯାହାଙ୍କ ନାମ ପାଦମୂଳିକ । କଳିଙ୍ଗର ପାଦମୂଳିକ ଥିଲେ କୁସୁମ । ସେ ଖଣ୍ଡଗିରିର ତତୁଆ ଗୁମ୍ଫା ଦ୍ୱୟ ଖନନ କରାଇଥିଲେ । ଅନ୍ୟ କର୍ମଚାରୀଙ୍କ ମଧ୍ୟରେ ସେନାପତି, ଭାଣ୍ଡାଗାରିକ, ଦଣ୍ଡପାଣିକ, ଦୌବାରିକ ଓ ପ୍ରତିହାରୀ ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ଦଣ୍ଡପାଣିକ ବର୍ତ୍ତମାନର ପୋଲିସ କର୍ମଚାରୀଙ୍କୁ କୁହାଯାଉଥିଲା । ଦୌବାରିକମାନେ ରାଜପ୍ରାସାଦ ପ୍ରଭୃତିର ସୁରକ୍ଷା ଦାୟିତ୍ୱରେ ଥିଲେ । ଦୌବାରିକମାନଙ୍କର କାର୍ଯ୍ୟ ପ୍ରତିହାରୀ ଦେଖୁଥିଲେ । ପ୍ରତିହାରୀମାନଙ୍କର ଉପରିସ୍ଥ କର୍ମଚାରୀ ଥିଲେ ସେନାନାୟକ । ଭାଣ୍ଡାଗାରିକ ସେନାବାହିନୀର ଯୋଗାଣ ଦାୟିତ୍ୱରେ ଥିବା ଅନୁମାନ କରାଯାଏ । ସୈନ୍ୟବାହିନୀରେ ଥିବା କର୍ମଚାରୀ ହେଲେ ରଥିକ, ହଥିବକ, ଲେହକାରକ, ଧାବକ ପ୍ରଭୃତି । ରଥିକ ରଥ ଦାୟିତ୍ୱରେ ଥିଲେ । ଯାନଶାଳାୟୁଧଘରିକ ସମ୍ଭବତଃ ଆୟୁଧାଗାର ଦାୟିତ୍ୱରେ ରହିଥିଲେ । ହସ୍ତରେ ନେଇ ସମ୍ବାଦଦେବା ବ୍ୟକ୍ତିଙ୍କୁ ଲେହକାରକ ଓ ଦୌଡ଼ିଯାଇ ସମ୍ବାଦଦେବା ବ୍ୟକ୍ତିଙ୍କୁ ଧାବକ କୁହାଯାଉଥିଲା । ଆୟବ୍ୟୟର ହିସାବ ଗଣକ ରଖୁଥିଲେ । ଗୋମଣ୍ଡଳିକ ସମ୍ରାଟ୍‌ଙ୍କ ଗାଈଗୋରୁ ପ୍ରଭୃତି ଗୃହପାଳିତ ପଶୁଙ୍କର

ତତ୍ତ୍ୱାବଧାରକ ଥିଲେ । ରାଜ୍ୟରେ ଶାସନ ଯେ ବିକାଶ ନିମନ୍ତେ ପରିଚାଳିତ ହେଉଥିଲା, ଏହା ଅତି ସ୍ପଷ୍ଟ ।

## 'ଯୁଗର କୀର୍ତ୍ତି

ଖାରବେଳଙ୍କ ଯୁଗର ପ୍ରଧାନ କୀର୍ତ୍ତି ହେଲା ହାତୀଗୁମ୍ଫା । ଏହା ଉଦୟଗିରିର ଗୋଟିଏ ବିଶାଳ ଗିରିଗହ୍ୱର । ଏହାର ଉପରିଭାଗରେ ୧୭ଧାଡ଼ି ବିଶିଷ୍ଟ ଲେଖଟିରେ ଖାରବେଳଙ୍କ ପ୍ରଶସ୍ତି ବର୍ଣ୍ଣିତ ହୋଇଅଛି । ଏହି ଲେଖର ଦକ୍ଷିଣ ଭାଗରେ ବଦ୍ଧମଙ୍ଗଳ, ବୃକ୍ଷଚୈତ । ବାମ ଭାଗରେ ସ୍ୱସ୍ତିକ ଓ ନନ୍ଦୀପଦ ପ୍ରଭୃତି ଜୈନ ସଙ୍କେତମାନ ଖୋଦିତ ହୋଇଅଛି । ଏହି ଲେଖଟି ଓଡ଼ିଶା କାହିଁକି ସମଗ୍ର ଭାରତରେ ଗୋଟିଏ ପ୍ରସିଦ୍ଧ ଜୈନ ଅଭିଲେଖରୂପେ ପରିଗଣିତ ହେଉଅଛି ।



ଖାରବେଳଙ୍କ ପ୍ରଧାନ କୀର୍ତ୍ତି ହାତୀଗୁମ୍ଫା

ହାତୀଗୁମ୍ଫାକୁ ଛାଡ଼ିଦେଲେ ଉଦୟଗିରିରେ ଆହୁରି ଅନେକ ଗୁମ୍ଫା ଦେଖିବାକୁ ମିଳେ । ବୈକୁଣ୍ଠପୁର ବା ସ୍ୱର୍ଗପୁର ଗୁମ୍ଫାରେ ଖାରବେଳଙ୍କ ପାଟରାଣୀଙ୍କ ଅଭିଲେଖ ଦେଖିବାକୁ ମିଳେ । ପାତାଳପୁର ବା ମଞ୍ଚପୁର ଗୁମ୍ଫାରେ କନ୍ଦର୍ପଶ୍ରୀ ବା ଶ୍ରୀକଦମ୍ବ ବା ଶ୍ରୀକୁଦେବଙ୍କ ଅଭିଲେଖ ବିଦ୍ୟମାନ । ଦ୍ୱିତୀୟ ପୁତ୍ର କୁମାର ବଦୁଖଙ୍କ ଲେଖ ଯମପୁର ଗୁମ୍ଫାରେ ଦେଖାଯାଏ । ବଦୁଖଙ୍କ ଆଉ ଏକ ଅଭିଲେଖ ଛୋଟ ହାତୀଗୁମ୍ଫାରେ ଦେଖାଯାଏ । ଖାରବେଳଙ୍କ ଅମାତ୍ୟ ଚୂଳକମ୍ମଙ୍କ ଲେଖ ସର୍ପଗୁମ୍ଫା ଓ ହରିଦାସ ଗୁମ୍ଫାରେ ଦେଖିବାକୁ ମିଳେ । ଏହାଛଡ଼ା

ଅଭିଲେଖଗୁଡ଼ିକ ବ୍ୟାଘ୍ରଗୁମ୍ଫା, ଯମେଶ୍ୱର ଗୁମ୍ଫା, ଅନନ୍ତ ଗୁମ୍ଫାର ବାରଣ୍ଡା ଉପରେ ଓ ତତ୍ତ୍ୱଗୁମ୍ଫାରେ ଖୋଦିତ ହୋଇଅଛି ।

ଖାରବେଳ ମଧ୍ୟ ବହୁ ଶିଳାସ୍ତମ୍ଭ ଓ ଚୈତ୍ୟଗୃହ ନିର୍ମାଣ କରିଥିଲେ । ଏଗୁଡ଼ିକ ଧ୍ୱଂସ ପାଇଯାଇଅଛି । ମାତ୍ର ଉଦୟଗିରି ଶିଖରସ୍ଥିତ ଏକ ଭଙ୍ଗା କୁନ୍ଦ ଖୋଳାଯିବାରୁ କେତେକ ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷ ମିଳୁଛି । ଏଗୁଡ଼ିକ ଚୈତ୍ୟ ହୋଇଥିବା ସମ୍ଭବ ।

ଉଦୟଗିରିର କିଛି ଦୂରରେ ଗୋଟିଏ ପାହାଡ଼ କଟା ଯାଇ କେତେକ ସୁନ୍ଦର ଗୁମ୍ଫା ଖୋଳା ହୋଇଅଛି । ଉଦୟଗିରିର ଖୋଦନଶୈଳୀ ସହିତ ଏହି ଗୁମ୍ଫାଗୁଡ଼ିକର ଖୋଦନଶୈଳୀରେ ବହୁ ସାମଞ୍ଜସ୍ୟ ଦେଖିବାକୁ ମିଳେ ।

ଉଦୟଗିରି ନିକଟରେ ଖଣ୍ଡଗିରି ଅବସ୍ଥିତ । ଏହି ପାହାଡ଼ ଉପରେ ଲଲାଟେନ୍ଦୁ କେଶରୀ ଗୁମ୍ଫା ବିଦ୍ୟମାନ । ଏହି ଗୁମ୍ଫା ନିକଟରେ ଆକାଶଗଙ୍ଗା, ଶ୍ୟାମକୁଣ୍ଡ, ରାଧାକୁଣ୍ଡ, ଗୁପ୍ତ ଗଙ୍ଗା ପ୍ରଭୃତି ଦେଖିବାକୁ ମିଳେ । ସେଗୁଡ଼ିକ ସମ୍ଭବତଃ ଜୈନ କୀର୍ତ୍ତି ଥିଲା । ମାତ୍ର ବ୍ରାହ୍ମଣ ଧର୍ମର ଅଭ୍ୟୁଦୟ ଫଳରେ ସେସବୁ ପ୍ରାଚୀନ କୀର୍ତ୍ତିଗୁଡ଼ିକ ଏଭଳି ନାମକରଣ ହେଲା ବୋଲି କେହି କେହି ଐତିହାସିକ ମତ ଦେଇଛନ୍ତି ।

ଖଣ୍ଡଗିରିର ପ୍ରଧାନ ଗୁମ୍ଫା ହେଲା ଅନନ୍ତ ଗୁମ୍ଫା ଓ ତତୁଆ ଗୁମ୍ଫା । ଅନନ୍ତ ଗୁମ୍ଫା ପାର୍ଶ୍ୱନାଥଙ୍କୁ ଉତ୍ସର୍ଗ କରାଯାଇଥିବା ସମ୍ଭବ । ଏଥିରେ ଜୈନଧର୍ମର ସାଙ୍କେତିକ ଚିହ୍ନମାନ ବିଦ୍ୟମାନ । ଦ୍ୱିତୀୟଟି ହେଲା ତତୁଆ ଗୁମ୍ଫା । ତତୁଆ ପକ୍ଷୀମାନେ ଏହି ଗୁମ୍ଫାର ତୋରଣଦ୍ୱାରରେ ଅଙ୍କିତ ହୋଇଥିବାରୁ ଏହାର ଏପରି ନାମକରଣ ହୋଇଥିବା ଅନୁମାନ କରାଯାଏ । ମଧ୍ୟ ଯୁଗରେ ଆଉ କେତୋଟି ଗୁମ୍ଫା ନିର୍ମିତ ହୋଇଥିଲା । ସେଗୁଡ଼ିକ ହେଲା ଧ୍ୟାନ ଗୁମ୍ଫା, ନବମୁନି ଗୁମ୍ଫା, ବାରଭୁଜୀ ଗୁମ୍ଫା ଓ ତ୍ରିଶୂଳ ଗୁମ୍ଫା । ଧ୍ୟାନ ଗୁମ୍ଫାକୁ ଧ୍ୟାନଘର କୁହାଯାଏ । ନବମୁନି ଗୁମ୍ଫାରେ ନଅଟି ତୀର୍ଥଙ୍କର ପ୍ରତିମା ଖୋଦିତ ହୋଇଅଛି । ବାରଭୁଜୀ ଗୁମ୍ଫାରେ ଦ୍ୱାଦଶ ହସ୍ତ ବିଶିଷ୍ଟ ଜୈନ ଶାସନଦେବୀଙ୍କ ପ୍ରତିମୂର୍ତ୍ତି ଖୋଦିତ ହୋଇଅଛି । ଏଥିରେ ୨୪ଜଣ ତୀର୍ଥଙ୍କରମାନଙ୍କର ଯୋଗାସନ ମୂର୍ତ୍ତି ଦେଖାଯାଏ । ତ୍ରିଶୂଳ ଗୁମ୍ଫାଟି ମଧ୍ୟ ଆର୍ହତମାନଙ୍କର ବାସସ୍ଥଳୀରୂପେ ବ୍ୟବହୃତ ହେଉଥିଲା । ଏହା ପରେ ପଡ଼େ ଏକ ଭଗ୍ନ ଗୁମ୍ଫା – ଯାହାକି ଅମ୍ବିକା ଗୁମ୍ଫା ନାମରେ ପରିଚିତ । ଏହା ପରେ ମିଳେ ଲଲାଟେନ୍ଦୁ କେଶରୀ ଗୁମ୍ଫା । ଏଥିରେ ଋଷଭନାଥ ଓ ପାର୍ଶ୍ୱନାଥଙ୍କର ସୁନ୍ଦର ପ୍ରତିମୂର୍ତ୍ତି ଦେଖାଯାଏ । ଏଥିରେ ମଧ୍ୟ ସୋମବଂଶୀ ରାଜା ଉଦ୍ୟୋତ କେଶରୀଙ୍କ ଏକ ଅଭିଲେଖ ମିଳେ ।

## ଶେଷ ଜୀବନ

ହାତୀଗୁମ୍ଫା ଅଭିଲେଖରେ ଖାରବେଳଙ୍କ ରାଜତ୍ୱର ବିବରଣ ବର୍ଷ ବର୍ଷ ହୋଇ ତ୍ରୟୋଦଶ ବର୍ଷ ଯାଏ ମିଳେ । ରାଜତ୍ୱର ତ୍ରୟୋଦଶ ବର୍ଷ ପରେ ତାଙ୍କ କାର୍ଯ୍ୟକଳାପ ସମ୍ବନ୍ଧରେ କୌଣସି ଉପାଦାନ ଏ ପର୍ଯ୍ୟନ୍ତ ମିଳି ନାହିଁ । ସମ୍ଭବତଃ, ଏହାର ପରେ ପରେ ଖାରବେଳ ମୃତ୍ୟୁବରଣ କଲେ ବା ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଭଳି ସେ ରାଜଗୌରବର ଶୀର୍ଷସ୍ଥାନ ଅଧିକାର କରିଥିଲାବେଳେ ସିଂହାସନ ତ୍ୟାଗ କରି ସନ୍ୟାସ ଜୀବନ ଅବଲମ୍ବନ କରିଥିଲେ । ତାଙ୍କର ଶେଷ ଜୀବନ ତେଣୁ ଇତିହାସର ଅଜ୍ଞାତ ଅଧ୍ୟାୟ ହୋଇ ରହିଅଛି । ସମ୍ଭବତଃ, ତାଙ୍କ ପୁତ୍ର କନ୍ଦର୍ପଶ୍ରୀ ବା କୁଦେପଶିରୀ ଖାରବେଳଙ୍କ ପରେ ଶାସନଭାର ଗ୍ରହଣ କରିଥିଲେ ।

ରୋମର ଜୁଲିଅସ୍ ସିଜର୍, ଗ୍ରୀକ୍ ସମ୍ରାଟ୍ ଆଲେକ୍‌ଜାଣ୍ଡର୍, ତୈମୁରଲଙ୍ଗ ବା ଫରାସୀ ସମ୍ରାଟ୍ ନେପୋଲିୟନ – ଏହି ସମସ୍ତ ସମ୍ରାଟ୍ ଦେଶ ପରେ ଦେଶ ଜୟ କରିଛନ୍ତି, ଧ୍ୱସ୍ତବିଧ୍ୱସ୍ତ କରିଛନ୍ତି; ପ୍ରଜାପୀଡ଼ନ କରିଛନ୍ତି । ତଥାପି ଇତିହାସ ସେମାନଙ୍କ ନାମ ସ୍ମରଣ କରି ରଖିଅଛି – କେବଳ ବିଜେତା ହିସାବରେ । କଳିଙ୍ଗ ସମ୍ରାଟ୍ ଖାରବେଳଙ୍କ ଦିଗ୍‌ବିଜୟ କିନ୍ତୁ ସେମାନଙ୍କ ପରି ନୁହେଁ । ଦିଗ୍‌ବିଜୟ ସଙ୍ଗେ ସଙ୍ଗେ ପ୍ରଜାନୁରଞ୍ଜନ, ଧର୍ମନୀତିର ସୁରକ୍ଷା, ବିଜିତ ରାଜ୍ୟରେ ସମାଜ, ମହୋତ୍ସବ, ନୃତ୍ୟଗୀତାଦି କରାଇ ସର୍ବଶ୍ରେଣୀର ପ୍ରଜାମାନଙ୍କର ହିତସାଧନ ଓ ଆନନ୍ଦବର୍ଦ୍ଧନ କରାଇବାର ଦୃଷ୍ଟାନ୍ତ କେବଳ ତାଙ୍କ ଜୀବନରେ ପରିଦୃଷ୍ଟ ହୁଏ ।

## ପୁଣ୍ୟଶ୍ଳୋକ
# ଯଯାତିକେଶରୀ

ସୋମବଂଶୀ ରାଜାମାନଙ୍କର ଶାସନକାଳ ଓଡ଼ିଶା ଇତିହାସରେ ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଖ୍ରୀଷ୍ଟୀୟ ସପ୍ତମ ଶତାବ୍ଦୀର ଶେଷ ଦଶନ୍ଧିରେ ଏହି ରାଜାମାନେ ଏକ କ୍ଷୁଦ୍ର ରାଜ୍ୟ ସ୍ଥାପନ କରି କ୍ରମେ ତାହାକୁ ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳକୁ ବିସ୍ତାର କଲେ । ସେମାନେ ଶେଷରେ ସମଗ୍ର ଓଡ଼ିଶାର ରାଜା ହେଲେ ଓ ଇତିହାସରେ ଏକ ନୂଆ ଅଧ୍ୟାୟ ସୃଷ୍ଟି କଲେ ।

**ବଂଶାବଳୀ**

ସୋମବଂଶର ପ୍ରଥମ ରାଜା ଥିଲେ ତୀବରଦେବ । ତାଙ୍କର ତାମ୍ର ଶାସନରୁ ଜଣାଯାଏ ଯେ ସେ ଉତ୍କଳ ପର୍ଯ୍ୟନ୍ତ ରାଜ୍ୟ ଅଧିକାର କରିଥିଲେ । ଏହା ପରେ ସେ କଙ୍ଗୋଦରେ ତାଙ୍କର ପ୍ରଭାବ ବିସ୍ତାର କରିବାରେ ଲାଗିପଡ଼ିଲେ । ମାତ୍ର ସେଥିରେ ସେ ସଫଳ ହୋଇପାରି ନ ଥିଲେ । ଏହା ପରେ ତାଙ୍କ ପୁତ୍ର ନନ୍ନରାଜ କୋଶଳର ରାଜା ହେଲେ । ସେ ଅଳ୍ପ କାଳପାଇଁ ରାଜତ୍ୱ କଲା ପରେ ପିତୃବ୍ୟ ଚନ୍ଦ୍ରଗୁପ୍ତଦେବଙ୍କଦ୍ୱାରା ବହିଷ୍କୃତ ହେଲେ । ଚନ୍ଦ୍ରଗୁପ୍ତଙ୍କ ପୁତ୍ର ହର୍ଷଗୁପ୍ତ ଏହା ପରେ କୋଶଳରେ ରାଜା ହେଲେ । ତାଙ୍କର ରାଜଧାନୀ ଶ୍ରୀପୁର ଥିଲା । ୭୫୩ ଖ୍ରୀଷ୍ଟାବ୍ଦ ସମଙ୍ଗଡ଼ ଦାନପତ୍ରରୁ ଜଣାଯାଏ ଯେ ସେ ଅବନ୍ତୀଦୁର୍ଗ, କାଞ୍ଚି, କେରଳ, ଚୋଳ ଓ ପାଣ୍ଡ୍ୟ ଆଦି ରାଜ୍ୟ ଜୟ କରିଥିଲେ । ତାଙ୍କ ପରେ ତାଙ୍କ ପୁତ୍ର ବାଳାର୍ଜୁନ ସିଂହାସନରେ ବସିଲେ । ସେ ମହାଶିବ ଗୁପ୍ତ ଉପାଧି ଧାରଣ କରିଥିଲେ । ତାଙ୍କ ପରେ ମହାଭବ ଗୁପ୍ତ ରାଜଦେବ ଶ୍ରୀପୁରରୁ ରାଜଧାନୀ ଉଠାଇଆଣି ପଶ୍ଚିମ ଓଡ଼ିଶାର କେଶରକେଲାଠାରେ ସ୍ଥାପନ କରିଥିଲେ । ସେ ତାମ୍ର ଶାସନରେ ନିଜକୁ ମହାରାଜାଧିରାଜ ପରମେଶ୍ୱର ପରମଭଟ୍ଟାରକ ତଥା ତ୍ରିକଳିଙ୍ଗାଧିପତି ଉପାଧିରେ ଭୂଷିତ କରିଥିଲେ । ନବମ ଶତାବ୍ଦୀର ମଧ୍ୟଭାଗରେ ଏହି କୋଶଳ ରାଜ୍ୟର ରାଜା ଥିଲେ ମହାଭବ ଗୁପ୍ତ ପ୍ରଥମ ଜନ୍ମେଜୟ । ସେ ବଡ଼ ଯୋଦ୍ଧା ଥିଲେ ଓ ତାଙ୍କ ରାଜ୍ୟ ମଧ୍ୟପ୍ରଦେଶର ପୂର୍ବାଞ୍ଚଳ ଓ ସମଗ୍ର ପଶ୍ଚିମାଞ୍ଚଳକୁ ନେଇ ଗଠିତ ହୋଇଥିଲା । ପରେ ସେ ଉଡ୍ରଦେଶ ବା ଆଧୁନିକ

ବଉଦ ଫୁଲବାଣୀ ଅଞ୍ଚଳ ଅଧିକାର କରି ସୋମବଂଶୀ ସାମ୍ରାଜ୍ୟ ପ୍ରତିଷ୍ଠା କଲେ । ତାଙ୍କ ପୁତ୍ର ଥିଲେ ପ୍ରଥମ ଯଯାତି ମହାଶିବ ଗୁପ୍ତ । ସେ ମଧ ସାମ୍ରାଜ୍ୟକୁ ଅଧିକ ଶକ୍ତିଶାଳୀ କରିଥିଲେ । ତାଙ୍କ ପରେ ଯଥାକ୍ରମେ ଭୀମରଥ, ଧର୍ମରଥ, ନହୁଷ ଓ ଇନ୍ଦ୍ରରଥ ରାଜତ୍ୱ କରିଥିଲେ । ଇନ୍ଦ୍ରରଥଙ୍କ ରାଜତ୍ୱର ଶେଷ ଭାଗରେ ଚୋଳରାଜା ରାଜେନ୍ଦ୍ର ଚୋଳ କୋଶଳ ରାଜ୍ୟ ଆକ୍ରମଣ କରି ଇନ୍ଦ୍ରରଥଙ୍କୁ ପରାସ୍ତ କଲେ । ଫଳରେ ରାଜଧାନୀ ଯଯାତିନଗର ଧ୍ୱଂସ ପାଇଲା । ଇନ୍ଦ୍ରରଥ ମଧ ନିହତ ହେଲେ । ଇନ୍ଦ୍ରରଥ ସିଂହାସନର ପ୍ରକୃତ ଦାୟାଦ ନ ଥିଲେ । ସେ ମଧ ଚୋଳ ରାଜାଙ୍କଦ୍ୱାରା ଶୋଚନୀୟଭାବେ ପରାସ୍ତ ହୋଇଥିଲେ । ତଥାପି ସେ ଦୁଇଟି ମନ୍ଦିର ନିର୍ମାଣ କରି ଅକ୍ଷୟ କୀର୍ତ୍ତି ଅର୍ଜନ କରିଥିଲେ । ପ୍ରଥମଟି ହେଲା ରାଜାରାଣୀ ମନ୍ଦିର ଓ ଦ୍ୱିତୀୟଟି ହେଲା ରାଣୀପୁର-ଝରିଆଲର ଗୋପାଳ ମନ୍ଦିର ।

**ରାଜାରାଣୀ ମନ୍ଦିର**

ରାଜାରାଣୀ ମନ୍ଦିର ପ୍ରଥମେ ଇନ୍ଦ୍ରରଥଙ୍କ ନାମ ଅନୁସାରେ ଇନ୍ଦ୍ର ଲିଙ୍ଗେଶ୍ୱର ମନ୍ଦିର ନାମରେ ପରିଚିତ ଥିଲା । ଏହା ପ୍ରାୟ ଏକ ହଜାର ଖ୍ରୀଷ୍ଟାବ୍ଦରେ ରକ୍ତବର୍ଣ୍ଣ ଚୂନପଥରରେ ନିର୍ମିତ ହୋଇଥିଲା । ଏହି ରକ୍ତବର୍ଣ୍ଣ ଚୂନପଥର ନାମ ରାଜାରାଣୀ ଥିଲା । ତେଣୁ ଏହା ରାଜାରାଣୀ ମନ୍ଦିର ନାମରେ ଅଭିହିତ ହୋଇଛି ବୋଲି ଐତିହାସିକ ମନମୋହନ ଗାଙ୍ଗୁଲୀ ମତ ଦିଅନ୍ତି ।

ଏ ମନ୍ଦିରରେ ଅଧୁନା ବିଗ୍ରହ ନ ଥିବାରୁ କେହି କେହି ଏହାକୁ ରାଜା ଓ ରାଣୀଙ୍କ ପ୍ରମୋଦବିହାରରୂପେ ବ୍ୟବହୃତ ହେଉଥିବାର ମତ ଦିଅନ୍ତି । ମାତ୍ର କଳା ଓ ଭାସ୍କର୍ଯ୍ୟ ଦୃଷ୍ଟିରୁ ଏହା ଯେ ଏକ ମନ୍ଦିର ଥିଲା, ଏହା ନିଃସନ୍ଦେହ । ସବୁ ମନ୍ଦିରରେ ଯେପରି ବିମାନ, ଜଗମୋହନ ପ୍ରଭୃତି ଥାଏ, ରାଜାରାଣୀ ମନ୍ଦିରରେ ସେହିପରି ବିମାନ ଓ ଜଗମୋହନ ଅଛି । ମନ୍ଦିରଗାତ୍ରରେ ଦିଗପାଳ ଓ ନବଗ୍ରହ ପ୍ରଭୃତିର ମୂର୍ତ୍ତି ଅଛି । ସୁତରାଂ ଏହା ଏକ ମନ୍ଦିର ଥିଲା ବୋଲି ଐତିହାସିକ ଡଃ ପାଣିଗ୍ରାହୀ ମତ ଦିଅନ୍ତି ।

ମନ୍ଦିରର ଉପରିଭାଗଟି ପଦ୍ମଫୁଲ ପାଖୁଡ଼ା ଭଳି ହୋଇଥିବାରୁ ଐତିହାସିକ ମନମୋହନ ଗାଙ୍ଗୁଲୀ ଏହା ଏକ ବିଷ୍ଣୁ ମନ୍ଦିର ଥିଲା ବୋଲି ମତ ଦେଇଛନ୍ତି । ମାତ୍ର ଏହି ପଦ୍ମଫୁଲ ହିନ୍ଦୁ ଓ ଏପରିକି ଜୈନ ମନ୍ଦିରମାନଙ୍କରେ ଖୋଦିତ ହେଉଥିବା କଥା ରାଖାଲ ଦାସ ବାନାର୍ଜୀ ଦର୍ଶାଇଛନ୍ତି । ସେ ଏହା ଏକ ଶିବ ମନ୍ଦିର ବୋଲି ମତ ଦେଇଛନ୍ତି । ଐତିହାସିକ ପାଣିଗ୍ରାହୀ ମଧ ଏହି ମତକୁ ସମର୍ଥନ କରିଛନ୍ତି । ଏହାର ଜଗମୋହନର ଦ୍ୱାର ପାର୍ଶ୍ୱରେ ଶିବଙ୍କର ଦୁଇ ଜଣ ଦ୍ୱାରରକ୍ଷୀ ଚଣ୍ଡ ଓ ପ୍ରଚଣ୍ଡରେ

ମୂର୍ତ୍ତି ଦେଖିବାକୁ ମିଳେ । ଦକ୍ଷିଣ ଓ ଉତ୍ତର ଦ୍ୱାରରେ ଥିବା ଦ୍ୱାରପାଳଙ୍କ ହସ୍ତରେ ତ୍ରିଶୂଳ ଓ ବେକରେ ଖପୁରୀର ମାଳ ଓ ସର୍ପ ପ୍ରଭୃତିରୁ ଏହି ମନ୍ଦିର ଶିବଙ୍କର ମନ୍ଦିର ଥିଲା ବୋଲି ଅନୁମାନ କରାଯାଏ । ଲିଙ୍ଗ ପୂଜା ଓ ଶିବ ପାର୍ବତୀଙ୍କର ଅନୁଚରମାନଙ୍କ ମଧ୍ୟରେ ରହି ନୃତ୍ୟ ଓ ଶିବ ପାର୍ବତୀଙ୍କ ବିବାହ ମୂର୍ତ୍ତି ପ୍ରଭୃତି ମଧ୍ୟ ଏହାକୁ ପ୍ରମାଣିତ କରେ । ଏତଦ୍‌ବ୍ୟତୀତ ଏହି ମନ୍ଦିରରେ ଇନ୍ଦ୍ର, ବହ୍ନି, ଯମ, ନୈର୍ଋତ, ବରୁଣ, କୁବେର, ଈଶାନ, ବାୟୁ, ଅଷ୍ଟ ଦିଗପାଳଙ୍କ ଦଣ୍ଡାୟମାନ ମୂର୍ତ୍ତି, କୃଷ୍ଣଙ୍କର ବଂଶୀବାଦନ ଓ ନଟରାଜଙ୍କ ତାଣ୍ଡବ ନୃତ୍ୟ ପ୍ରଭୃତି ଦେଖିବାକୁ ମିଳେ ।



ରାଜାରାଣୀ ମନ୍ଦିର

ମନ୍ଦିରମାନଙ୍କରେ ପରିଶୋଭିତ କାରୁକାର୍ଯ୍ୟଗୁଡ଼ିକ ସେ ଯୁଗର ସାମାଜିକ, ରାଜନୀତିକ ଓ ଧର୍ମଗତ ଚିତ୍ର ପ୍ରଦାନ କରିଥାଏ । ସେ ସମୟରେ ରାଜଦରବାରର ଯୁଦ୍ଧଯାତ୍ରା, ଅଭିସାର, ନାୟକମାନଙ୍କର ବେଶଭୂଷା, ପ୍ରମଦାମାନଙ୍କର ପୁଷ୍ପ ଚୟନ, ସ୍ତ୍ରୀମାନଙ୍କର ପରସ୍ପର କଥୋପକଥନ ପ୍ରଭୃତି ସାଧାରଣ ଜୀବନର ଘଟଣାମାନ ଖୋଦିତ ହୋଇଅଛି । ଦୃଷ୍ଟିପଥାରୂଢ଼ ନ ହେବା ସ୍ଥାନମାନଙ୍କରେ ମିଥୁନ ଚିତ୍ର ଅନେକ ପରିମାଣରେ ଦେଖିବାକୁ ମିଳେ । ପ୍ରସ୍ତର ଉପରେ ଖୋଦିତ ଲତା ଓ ପତ୍ରାବଳୀ ମନ୍ଦିରକୁ ଏକ ଅପାସୋରା ଖଣିରେ ପରିଣତ କରିଛନ୍ତି ।

ମୁକ୍ତେଶ୍ୱର ଭଳି ଏହାକୁ 'ଓଡ଼ିଶା ସ୍ଥାପତ୍ୟର ମଣି' ଭାବେ ଅଭିହିତ କରାଯାଇପାରେ ।

ଇନ୍ଦ୍ରରଥଙ୍କ ପରେ ଦେଶରେ ଅରାଜକତା ଦେଖାଦେଲା । ଚୋଳମାନଙ୍କର ଆକ୍ରମଣ ଫଳରେ ରାଜଧାନୀ ଯଯାତିନଗର ମଧ୍ୟ ଧ୍ୱସ୍ତବିଧ୍ୱସ୍ତ ହୋଇପଡ଼ିଥିଲା । ଏହିପରି ସମୟରେ ସୋମବଂଶୀ ବଂଶରେ ଜଣେ ଶକ୍ତିଶାଳୀ ରାଜା ଦେଖାଦେଲେ । ସେ ହେଲେ ଚଣ୍ଡିହାର-ଯଯାତି ବା ଦ୍ୱିତୀୟ ଯଯାତି ବା ଯଯାତିକେଶରୀ ।

## ସିଂହାସନ ଆରୋହଣ

ଦ୍ୱିତୀୟ ଯଯାତିଙ୍କର ପିତାଙ୍କ ନାମ ଥିଲା ଅଭିମନ୍ୟୁ । ଇନ୍ଦ୍ରରଥଙ୍କ ସମୟରେ ଗୃହଯୁଦ୍ଧ ଲାଗିଥିଲାବେଳେ ଅଭିମନ୍ୟୁ ପ୍ରାଣ ହରାଇଥିଲେ । ନିଜେ ଚଣ୍ଡିହାର ପ୍ରାଣରକ୍ଷାପାଇଁ ଦକ୍ଷିଣକୁ ପଳାଇଥିଲେ । ସେ ଚୋଳ ସେନାବାହିନୀରେ ଯୋଗ ଦେଇଥିଲେ ଏବଂ ନିଜର ଶକ୍ତି ଓ ସାମର୍ଥ୍ୟ ବଳରେ ଚୋଳମାନଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ଚୋଳମାନେ କୋଶଳ ଆକ୍ରମଣ କରିବା ସମୟରେ ସେ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲେ । ଇନ୍ଦ୍ରରଥଙ୍କ ମୃତ୍ୟୁ ପରେ ସେ କୋଶଳ ସିଂହାସନରେ ବସିଲେ । ଏହା ପରେ ସେ ମହାଶିବଗୁପ୍ତ ଯଯାତି ନାମରେ ଅଭିହିତ ହେଲେ ।

ରାଜତ୍ୱର ତୃତୀୟ ବର୍ଷରେ ଯଯାତି ସୁବର୍ଣ୍ଣପୁରରେ ଏକ ଦାନପତ୍ର ପୁଣ୍ୟ ଅମାବାସ୍ୟା ତିଥିରେ ବ୍ରାହ୍ମଣଙ୍କୁ ଦେଇଥିଲେ । ଏହି ସୁବର୍ଣ୍ଣପୁର ତେଲ ଓ ମହାନଦୀର ସଙ୍ଗମ ସ୍ଥଳରେ ଅବସ୍ଥିତ । ଏହିଠାରେ ମଧ୍ୟ ଯଯାତିଙ୍କ ଅଭିଷେକ ଉତ୍ସବ ପାଳିତ ହୋଇଥିଲା । ସମ୍ଭବତଃ, ଚୋଳ ଆକ୍ରମଣ ଫଳରେ ରାଜଧାନୀ ଧ୍ୱସ୍ତବିଧ୍ୱସ୍ତ ହୋଇଯିବା ଫଳରେ ସେ ନୂତନ ରାଜଧାନୀ ସୁବର୍ଣ୍ଣପୁରରେ ସ୍ଥାପନ କରିଥିଲେ । ପରେ ଯଯାତିନଗରକୁ ରାଜଧାନୀ ଉଠାଇ ଆଣିଥିବାର ଅନୁମିତ ହୁଏ ।

ଦ୍ୱିତୀୟ ଯଯାତିଙ୍କ ସୋମବଂଶୀ ରାଜ୍ୟ ପାଞ୍ଚୋଟି କ୍ଷୁଦ୍ର ରାଜ୍ୟକୁ ନେଇ ଗଠିତ ଥିଲା, ଯଥା – କୋଶଳ, ଉତ୍କଳ, କଙ୍ଗୋଦ, କଳିଙ୍ଗ ଓ ଉତ୍ତରଦେଶ । କୋଶଳ ବର୍ତ୍ତମାନ ଓଡ଼ିଶାର ବଲାଙ୍ଗୀର, ସମ୍ବଲପୁର, ସୁନ୍ଦରଗଡ଼ ଓ ଖଡ଼ିଆଳ ଅଞ୍ଚଳକୁ ବୁଝାଉଥିଲା । ଯଯାତିଙ୍କର ପୁତ୍ର ଅଭିମନ୍ୟୁ କୋଶଳର ପ୍ରଶାସକ ଥିଲେ । ବର୍ତ୍ତମାନର ଢେଙ୍କାନାଳ, କେନ୍ଦୁଝର, ମୟୂରଭଞ୍ଜ, ମେଦିନୀପୁର, ବାଲେଶ୍ୱର ଓ କଟକ ଜିଲ୍ଲା ଉତ୍କଳ ନାମରେ ପରିଚିତ ଥିଲା । ଏବେର ପୁରୀ, ଗଞ୍ଜାମର ଉପକୂଳବର୍ତ୍ତୀ ମହାନଦୀରୁ ଋଷିକୁଲ୍ୟା ପର୍ଯ୍ୟନ୍ତ ଅଞ୍ଚଳକୁ କଙ୍ଗୋଦ କୁହାଯାଉଥିଲା । ଋଷିକୁଲ୍ୟାଠାରୁ ଗୋଦାବରୀ ପର୍ଯ୍ୟନ୍ତ କଳିଙ୍ଗ ରାଜ୍ୟ ଥିଲା । ଓଡ୍ରଦେଶ ବର୍ତ୍ତମାନର ନୟାଗଡ଼ ଜିଲ୍ଲା, ଫୁଲବାଣୀ ଓ ଢେଙ୍କାନାଳର କେତେକ ଅଞ୍ଚଳକୁ କୁହାଯାଉଥିଲା । ସୋମବଂଶୀ ରାଜ୍ୟର ରାଜଧାନୀ ଯଯାତିନଗର ଏହି ଓଡ୍ରଦେଶ ଅନ୍ତର୍ଗତ ଥିଲା ।

ଦ୍ୱିତୀୟ ଯଯାତି ପ୍ରଥମେ ରାଜ୍ୟରେ ଆଭ୍ୟନ୍ତରୀଣ ଶାନ୍ତି ରକ୍ଷା ଦିଗରେ ଦୃଷ୍ଟି ଦେଲେ । ଦେଶରେ ଦେଖାଦେଉଥିବା ଅଶାନ୍ତି ଓ ଅରାଜକତା ସେ ଦୂର କଲେ । ଏହା ପରେ ସେ ବହିଃଶତ୍ରୁମାନଙ୍କର ମୁକାବିଲା କରିବାକୁ ବାହାରିଲେ । ପ୍ରଥମେ ସେ କଳଚୁରୀମାନଙ୍କର ଆକ୍ରମଣର ସମ୍ମୁଖୀନ ହେଲେ । ସେତେବେଳେ ତ୍ରିପୁରୀର କଳଚୁରୀ ରାଜା ଥିଲେ ଗାଙ୍ଗେୟଦେବ । ତୁମ୍ମାଣରେ ଆଉ ଏକ କଳଚୁରୀ ରାଜା କମଳରାଜ ରାଜତ୍ୱ କରୁଥିଲେ । ଉଭୟ କଳଚୁରୀ ରାଜା ଉତ୍କଳ ଆକ୍ରମଣ କଲେ । ରାଜା ଯଯାତିଙ୍କୁ ପରାସ୍ତ କରି ବହୁ ଧନସମ୍ପତ୍ତି ନେଇଗଲେ । ଏହା କଳଚୁରୀ ଅଭିଲେଖ ଆମୋଦ ତାମ୍ର ଶାସନରେ ବର୍ଣ୍ଣିତ ଅଛି । ଏଥିରେ ଲେଖାଅଛି ଯେ ମନ୍ଦର ପର୍ବତତୁଲ୍ୟ କମଳରାଜା ଉତ୍କଳ ରାଜାରୂପୀ କ୍ଷୀରସମୁଦ୍ରକୁ ମନ୍ଥନ କଲେ ଓ ଲକ୍ଷ୍ମୀ ହସ୍ତୀ ପ୍ରଭୃତି ନେଇଯାଇଥିଲେ । ମାତ୍ର ଏହା ଅତିରଞ୍ଜିତ ବୋଲି ମନେହୁଏ । ସୋମବଂଶୀ ରାଜ୍ୟର କୌଣସି ଅଞ୍ଚଳ କଳଚୁରୀମାନଙ୍କଦ୍ୱାରା ଅଧିକୃତ ହୋଇଥିବା ବିଷୟ ଜଣାଯାଏ ନାହିଁ ।

ଦ୍ୱିତୀୟ ଯଯାତିଙ୍କ କଳଚୁରୀମାନଙ୍କ ସହିତ ସଂଘର୍ଷ ବହୁକାଳ ସ୍ଥାୟୀ ହୋଇ ନ ଥିବାର ଜଣାଯାଏ । ଯଯାତି ତାଙ୍କ ରାଜତ୍ୱର ଶେଷଭାଗରେ ମାରଞ୍ଜମୁରା ନାମକ ଶାସନ ଦାନ କରିଥିଲେ । ଏଥିରେ ଦହଳ (କଳଚୁରୀ)ମାନେ ଏକ ଶତ୍ରୁରାଜ୍ୟ ଥିବାର ଉଲ୍ଲେଖ ନାହିଁ । କିନ୍ତୁ ରାଜତ୍ୱର ପ୍ରଥମ ଭାଗରେ ସେ କଳଚୁରୀମାନଙ୍କ ସହିତ ଯୁଦ୍ଧ କରିଥିଲେ । ଐତିହାସିକ ପାଣିଗ୍ରାହୀଙ୍କ ମତରେ ଦହଳ ନାମ ଉଲ୍ଲେଖ ନ ଥିବା ବିଶେଷ ତାତ୍ପର୍ଯ୍ୟପୂର୍ଣ୍ଣ । ସମ୍ଭବତଃ, ଦହଳ ରାଜା ଗାଙ୍ଗେୟଦେବଙ୍କ ସହ ସନ୍ଧି କରିଥିଲେ । ଗାଙ୍ଗେୟଦେବ ପରେ ଅଙ୍ଗ ଆକ୍ରମଣ କରିବା ସମୟରେ ଦ୍ୱିତୀୟ ଯଯାତି ତାଙ୍କୁ ସାହାଯ୍ୟ କରିବାକୁ ଯାଇ ଗୌଡ଼ ଓ ରାଢ଼ ଆକ୍ରମଣ କରିଥିଲେ ।

ଦ୍ୱିତୀୟ ଯଯାତି ଗାଙ୍ଗେୟଦେବଙ୍କ ସହିତ ବନ୍ଧୁତା କରିଥିବାରୁ ସାମସମୟିକ ରାଜାମାନେ ତାଙ୍କ ପ୍ରତି ଶତ୍ରୁତା ଆଚରଣ କରିଥିଲେ । ମାରଞ୍ଜମୁରା ତାମ୍ର ଶାସନରୁ ଜଣାଯାଏ ଯେ ସେ କର୍ଣ୍ଣାଟ, ଲତା, ଗୁର୍ଜର, କାଞ୍ଚି ଓ ଚୋଳମାନଙ୍କ ସହିତ ସଂଘର୍ଷରେ ଲିପ୍ତ ଥିଲେ । ବିଶେଷତଃ, ଚୋଳମାନେ ତାଙ୍କର ବଡ଼ ଶତ୍ରୁଭାବେ ଦେଖାଦେଲେ । ସୋମବଂଶୀ ରାଜା ଧର୍ମରଥ ଗଙ୍ଗମାନଙ୍କୁ ପରାସ୍ତ କରି କଳିଙ୍ଗର ବହୁ ଅଞ୍ଚଳ ଅଧିକାର କରିନେଇଥିଲେ । ଏହା ଫଳରେ ଗଙ୍ଗମାନେ କ୍ଷୁଦ୍ର ରାଜ୍ୟରେ ରାଜତ୍ୱ କରୁଥିଲେ । ମାତ୍ର କ୍ରମେ ଗଙ୍ଗମାନେ ଶକ୍ତିଶାଳୀ ହୋଇଉଠିଲେ । ଗଙ୍ଗମାନଙ୍କର ଜଣେ ରାଜା ମଧୁକାମାର୍ଣ୍ଣବ କଳିଙ୍ଗ ଅଧିକାର କରିନେବାପାଇଁ ପ୍ରଗାଢ଼ ଉଦ୍ୟମ କଲେ ମଧ୍ୟ ସଫଳ ହୋଇ ନ ଥିଲେ । ସେ

ଦ୍ୱିତୀୟ ଯଯାତିଙ୍କଦ୍ୱାରା ପରାସ୍ତ ହୋଇଥିଲେ । ମଧୁକାମାର୍ଣ୍ଣବଙ୍କ ପରେ ତାଙ୍କ ପୁତ୍ର ଅନନ୍ତବର୍ମା ବଜ୍ରହସ୍ତଦେବ କଳିଙ୍ଗ ଅଧିକାରପାଇଁ ପ୍ରବଳ ଉଦ୍ୟମ ଚଳାଇଲେ । ସେ ଗଙ୍ଗମାନଙ୍କୁ ଏକାଠି କରି କଳିଙ୍ଗ ଆକ୍ରମଣ କଲେ । ଯୁଦ୍ଧରେ ଦ୍ୱିତୀୟ ଯଯାତି ପରାସ୍ତ ହେଲେ । ଫଳରେ କଳିଙ୍ଗ ଗଙ୍ଗମାନଙ୍କଦ୍ୱାରା ଅଧିକୃତ ହେଲା । ବଜ୍ରହସ୍ତଦେବ କଳିଙ୍ଗାଧିପତି ନାମରେ ଅଭିହିତ ହେଲେ ।

## ଧର୍ମ

ମାରଞ୍ଜମୁରା ତାମ୍ରଶାସନରୁ ଜଣାଯାଏ ଯେ ଦ୍ୱିତୀୟ ଯଯାତି ଜଣେ ଧାର୍ମିକ ରାଜା ଥିଲେ । ସେ ବ୍ରାହ୍ମଣ ଧର୍ମର ଅଭ୍ୟୁଦୟପାଇଁ ଉଦ୍ୟମ କରିଥିଲେ । ସେ ବୈତରଣୀ କୂଳରେ ଏକ ଯଜ୍ଞ କରିଥିଲେ । ସେଥିପାଇଁ କାନ୍ୟକୁବ୍ଜରୁ ଦଶ ହଜାର ବେଦଜ୍ଞ ବ୍ରାହ୍ମଣଙ୍କୁ ଅଣାଇଥିଲେ ବୋଲି ପ୍ରବାଦ ଅଛି । ବୈତରଣୀ ନଦୀ କୂଳରେ ଯଜ୍ଞ ହୋଇଥିବାରୁ ସେ ସ୍ଥାନର ନାମ ଯଜ୍ଞପୁର ବା ଯାଜପୁର ହେଲା ।

କିମ୍ବଦନ୍ତୀ ପୁଣି ଅଛି ଯେ ଯଜ୍ଞ ପରେ ବୈତରଣୀ ନଦୀ ସୁରା ନଦୀରେ ପରିଣତ ହେଲା । ଯେଉଁମାନେ ସେଠାରେ ରହି ସୁରାପାନ କଲେ ସେମାନେ 'ଯାଜପୁର ତ୍ରୟ' ବ୍ରାହ୍ମଣ ହେଲେ ଓ ଯେଉଁମାନେ ସେଠାରୁ ଚାଲିଗଲେ ସେମାନେ ଦକ୍ଷିଣତ୍ରୟ ବ୍ରାହ୍ମଣ ହେଲେ । ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ଏହା ଏକାବେଳକେ ଭିତ୍ତିହୀନ ନୁହେଁ । ପୂର୍ବରୁ ଭୌମ ରାଜବଂଶ ଅମଳରେ ଯାଜପୁର ଅଞ୍ଚଳରେ ତନ୍ତ୍ରବାଦ ପ୍ରବଳ ହୋଇଉଠିଥିଲା । ତେଣୁ ବୈଦିକ ଧର୍ମର ପୁନରୁତ୍‌ଥାନପାଇଁ ଯଯାତି ଏଠାରେ ଯଜ୍ଞ କରାଇଥିବା ସମ୍ଭବ । ସେ ଅଞ୍ଚଳରେ ପୂର୍ବରୁ ବ୍ରାହ୍ମଣମାନେ ଶାକ୍ତ ମତରେ ମଦ୍ୟ ମାଂସ ଖାଉଥିଲେ । କିନ୍ତୁ ଚିରାଚରିତ ଧର୍ମକର୍ମ ଛାଡ଼ିବା ତାଙ୍କ ପକ୍ଷେ ସମ୍ଭବ ନ ଥିଲା । ତେଣୁ ଯାଜପୁର ପ୍ରଧାନତଃ ତନ୍ତ୍ର ପୀଠ ହୋଇରହିଲା । ଓଡ଼ିଶାର ଦକ୍ଷିଣାଞ୍ଚଳରେ ବୈଦିକ ଧର୍ମ ପୁନଃପ୍ରବର୍ତ୍ତିତ ହେଲା ।

ତନ୍ତ୍ରବାଦର ଉଚ୍ଛେଦ କରି ବୈଦିକ ଧର୍ମର ପୁନଃପ୍ରତିଷ୍ଠାପାଇଁ ଯଯାତିଙ୍କର ଚେଷ୍ଟା କରିଥିବା କେବଳ କିମ୍ବଦନ୍ତୀରୁ ନୁହେଁ, ସଂସ୍କୃତ ସାହିତ୍ୟରୁ ପ୍ରମାଣିତ ହୁଏ । ପ୍ରତାପରୁଦ୍ରଦେବଙ୍କ ସଭାପଣ୍ଡିତ କବି ଡିଣ୍ଡିମ ଜୀବଦେବଙ୍କ 'ଭକ୍ତିଭାଗବତ'ରେ ଉଲ୍ଲେଖ ଅଛି ଯେ ଉଦ୍ୟୋତ କେଶରୀଙ୍କ ଗୁରୁ ଭବଦେବ ପୃଥିବୀ ତନ୍ତ୍ରସାଗରରେ ବୁଡ଼ିଯାଉଥିଲାବେଳେ ତାଙ୍କୁ ଉଦ୍ଧାର କରିଥିଲେ । ଉଦ୍ୟୋତକେଶରୀ ଦ୍ୱିତୀୟ ଯଯାତିଙ୍କ ପୁତ୍ର ଥିଲେ । ତେଣୁ ପିତାଙ୍କ ସୃଷ୍ଟି କରିଥିବା ପରମ୍ପରାକୁ ସେ ଅକ୍ଷୁଣ୍ଣ ରଖିବାପାଇଁ ଚେଷ୍ଟା କରିଥିବା ସ୍ୱାଭାବିକ ।

ଏବେବି ଯାଜପୁରରେ ଯଜ୍ଞକୁଣ୍ଡ ଓ ଯଜ୍ଞ ସ୍ତମ୍ଭ ପ୍ରଭୃତିର ଧ୍ୱଂସାବଶେଷ ରହିଛି । ବୈତରଣୀ ନଦୀ କୂଳର ଘାଟ ଏବେବି ଦଶାଶ୍ୱମେଧ ଘାଟ ନାମରେ ପରିଚିତ ।

ଡକ୍ଟର ମହତାବଙ୍କ ମତ ଅନୁଯାୟୀ ଚିଲିକା ନିକଟବର୍ତ୍ତୀ ଚଣ୍ଡେଶ୍ୱର ମନ୍ଦିର ଚଣ୍ଡିହାର ବା ଦ୍ୱିତୀୟ ଯଯାତିଙ୍କଦ୍ୱାରା ନିର୍ମିତ ହୋଇଥିଲା । ମାତ୍ର ୧୯୫୫ ଖ୍ରୀଷ୍ଟାବ୍ଦରେ ବାତ୍ୟାଦ୍ୱାରା ଏହା ଧ୍ୱଂସ ପାଇଥିଲା ।

## ଜଗନ୍ନାଥ ବିଗ୍ରହ ସନ୍ଧାନ ଓ ସ୍ଥାପନ

ଦ୍ୱିତୀୟ ଯଯାତି ଶିବଙ୍କର ପରମ ଭକ୍ତ ଥିଲେ । ତାଙ୍କର ଅଧିଷ୍ଠାତ୍ରୀଦେବୀ ଥିଲେ ଭଦ୍ରାମ୍ବିକା ପାର୍ବତୀ । 'ମାଦଳା ପାଞ୍ଜି' ଓ 'ଓଡ୍ରଦେଶ ରାଜବଂଶାବଳୀ'ରେ ଯଯାତି ଜଗନ୍ନାଥଙ୍କ ବିଗ୍ରହ ସନ୍ଧାନ ଓ ସ୍ଥାପନ କରିଥିଲେ ବୋଲି ବର୍ଣ୍ଣିତ ଅଛି । 'ଓଡ୍ରଦେଶ ରାଜବଂଶାବଳୀ'ରେ ଲେଖାଅଛି –

× × × × ×

ଯାଜପୁର କ୍ଷେତ୍ରର ଯଯାତିକେଶରୀ ରାଜ୍ୟ ପାଇଥିଲେ । ଏହାଙ୍କ ପ୍ରଥମ ଅବସ୍ଥାରେ ରାଜକର୍ମ ଛାଡ଼ି ଯଜ୍ଞ କରିଥିଲେ, ରାଜାଙ୍କର ଏପରି ଭାବ ଦେଖି ଉପସ୍ଥିତ ଥିବା ବ୍ରାହ୍ମଣମାନେ ରାଜାଙ୍କୁ କହିଥିଲେ, ଛାମୁ, ବହୁକାଳରେ ପୁରୁଷୋତ୍ତମ କ୍ଷେତ୍ରରେ ଦକ୍ଷିଣ ମହୋଦଧିରେ ଗୋବିନ୍ଦ ଦ୍ୱାଦଶୀ ନାମକ ସ୍ନାନଯୋଗ ଉପସ୍ଥିତ ହେଉଅଛି । ତାହା ଶୁଣି ରାଜା ବ୍ରାହ୍ମଣମାନଙ୍କ ସହିତ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଲେ । ଫାଲ୍‌ଗୁନ ଶୁକ୍ଳ ଦ୍ୱାଦଶୀରେ ପଡ଼ିଥିବା ଗୋବିନ୍ଦ ଦ୍ୱାଦଶୀ ଯୋଗରେ ସମୁଦ୍ର ନିକଟରେ ବହୁତ ଦାନ ପୁଣ୍ୟ କରିଥିଲେ ।

ତାହା ପରେ କ୍ଷେତ୍ରର ଅବସ୍ଥା ଅତି ଖରାପ ହୋଇଥିବା ଓ ମନ୍ଦିର ଭାଙ୍ଗି ଯାଇଥିବା ଦେଖି ସନ୍ନ୍ୟାସୀ ଓ ବ୍ରାହ୍ମଣ ପ୍ରଭୃତିଙ୍କୁ ପଚାରିଥିଲେ – ଦୁଃଖର କଥା ମନ୍ଦିରଟି ଭାଙ୍ଗିଲାପରି ହୋଇପଡ଼ିଛି, ଭଗବାନ୍‌ଙ୍କର ଶ୍ରୀମୂର୍ତ୍ତି କେଉଁଠାରେ ଅଛି ? ତାହା ଶୁଣି ସେମାନେ କହିଲେ, ଯେତେବେଳେ ରକ୍ତବାହୁ ଆସିଥିଲା ସେହି ଦିନଠାରୁ ଏଠାରୁ ନେଇ ସୁବର୍ଣ୍ଣପୁର ରାଜ୍ୟ ମଧ୍ୟରେ କେଉଁଠି ରଖି ଯାଇଛନ୍ତି ବୋଲି ପରମ୍ପରାକ୍ରମେ ଶୁଣାଯାଏ । ତାହା ଶୁଣି ରାଜା ସେଠାକୁ ଯାଇ ସେଠାକାର ଲୋକଙ୍କୁ ଡାକି ପଚାରିଲେ – ଆହେ କେଉଁଠି ଜଗନ୍ନାଥ ମୂର୍ତ୍ତି ରହିଛନ୍ତି ବୋଲି ଶୁଣିଛ ? ସେମାନେ କହିଲେ, ଆମ୍ଭେମାନେ ଶୁଣି ନାହୁଁ । ତାହା ପରେ ଖଣ୍ଡାଧିପଙ୍କୁ ଡାକି ପଚାରିଥିଲେ, ଶ୍ରୀଜଗନ୍ନାଥ ପ୍ରତିମା କେଉଁଠି ଅଛନ୍ତି ତୁମ୍ଭେମାନେ ଶୁଣିଛ ? ସେମାନେ କହିଲେ, ଆମ୍ଭମାନଙ୍କୁ ଅଜଣା । କିନ୍ତୁ ଆମର ପିତାମହ ପ୍ରଭୃତି କହୁଥିଲେ ଗୋପିବି ଗ୍ରାମରେ ଶ୍ରୀମୂର୍ତ୍ତି ଅଛନ୍ତି । ଏହା

ଶୁଣି ରାଜା ସେଠାକୁ ଗଲେ । ସେଠାରେ ଲୋକମାନଙ୍କୁ ଡାକି ପଚାରିଥିଲେ – ଆହେ, ଶ୍ରୀମୂର୍ତ୍ତି କେଉଁଠି ସ୍ଥାପିତ ହୋଇଅଛନ୍ତି ? ସେମାନେ କହିଲେ ଆମ୍ଭେମାନେ ଶୁଣି ନାହୁଁ । ତାହା ଶୁଣି ଶ୍ରୀମୂର୍ତ୍ତି ଦର୍ଶନ ନ ପାଇବାରୁ ଦୁଃଖରେ ଉପବାସ କରି ଶୋଇରହିଲେ । ସେହି ରାତିରେ ସ୍ୱପ୍ନାଦେଶ ହେଲା ।

ତୁମ୍ଭେ କାଲି ପୋଖରୀ କୂଳରେ ବସିବ । ସେଠାକୁ ଜଣେ ବୁଢ଼ୀ ଗାଧୋଇବାକୁ ଆସିବ, ତାକୁ ପଚାରିବ । ରାଜା ସେହିପରି ସେହି ସମୟରେ କଲେ । ସକାଳେ ଗାଧୋଇବାପାଇଁ ଗୋଟିଏ ବୁଢ଼ୀ ଆସିଲା । ପୋଖରୀରେ ସ୍ନାନ ସାରି ତା' ଉପର ପଟରେ ଥିବା ବରଗଛ ପାଖରେ ମୁଣ୍ଡ ନୁଆଁଇ ପ୍ରଣାମ କଲା । ତାହା ଦେଖି ରାଜା କହିଲେ, ବୃକ୍ଷକୁ ନମସ୍କାର କାହିଁକି କରୁଛ ? ତା'ପରେ ସେ ବୁଢ଼ୀ କହିଲା, ମୋର ବୁଢ଼ାବାପା କହିଛନ୍ତି ଏ ଗଛର ତଳକୁ ପୁରୁଷୋତ୍ତମ ବୋଲି ଜାଣିବ, ଶ୍ରୀଜଗନ୍ନାଥ ମୂର୍ତ୍ତି ଏଠାରେ ରହିଅଛନ୍ତି । ଏହି କାରଣରୁ ମୁଁ ଏଠାରେ ପ୍ରତିଦିନ ପୂଜା ଓ ପ୍ରଣାମ କରେ । ତାହା ଶୁଣି ସେଠାରେ ଥିବା ଆବଶ୍ୟକ ବ୍ରାହ୍ମଣମାନଙ୍କୁ ଡକାଇ ବରଗଛକୁ କଟାଇ ଖୋଳାଇଥିଲେ । ତାହା ପରେ ସୁଧାଲିପ୍ତ ଗୃହ ମଧ୍ୟରେ ଭଗବାନ୍‌ଙ୍କର ଶ୍ରୀମୂର୍ତ୍ତି ଚତୁଷ୍ଟୟଙ୍କୁ ଦେଖି ଆନନ୍ଦିତ ହୋଇଥିଲେ ।

× × × × ×

ଜଗନ୍ନାଥଙ୍କ ମୂର୍ତ୍ତି ଯେ କେବଳ ରାଜା ଠାବ କରିପାରିଥିଲେ ତାହା ନୁହେଁ, ତାହାକୁ ଆଣିବାପାଇଁ ଜଗନ୍ନାଥଙ୍କ କୃପାରୁ ସେବକମାନଙ୍କୁ ଖୋଜି ପାଇଥିଲେ । ଏକଥା ମଧ୍ୟ 'ଓଡ୍ରଦେଶ ରାଜବଂଶାବଳୀ'ରେ ବର୍ଣ୍ଣନା କରାଯାଇଅଛି –

× × × × ×

ତା'ପରେ ପ୍ରତିମାଙ୍କୁ ସେଠାରୁ ଆଣିବାପାଇଁ ସେବକମାନଙ୍କର ଅନ୍ୱେଷଣ କରିଥିଲେ । ତେବେ ସୁଦ୍ଧା ସେବକ ମିଳି ନ ଥିଲେ । ତଦନ୍ତରେ ରାଜା ଭଗବାନ୍‌ଙ୍କୁ ଜଣାଇ ଉପବାସ କରି ରାତିରେ ଶୋଇଲେ । ସେହିପରି ପୁଣି ସ୍ୱପ୍ନାଦେଶ ହେଲା । ଗୋଟିଏ ଗାଈ ଆଣି ତାକୁ ସୁବର୍ଣ୍ଣ ରତ୍ନ ପ୍ରଭୃତିରେ ଭୂଷିତ କରି ଦେଶ ମଧ୍ୟରେ ଭ୍ରମଣ କରାଇବ । ଏହାକୁ ମାରି ରତ୍ନ ପ୍ରଭୃତି ଗ୍ରହଣ କରନ୍ତୁ, ଏହିପରି ନାଗରା (ଡିଣ୍ଡିମ) ଦିଆଯାଉ । ଯେଉଁ ଲୋକ କହିବ ମୁଁ ଏହି କର୍ମ କରିବି, ସେହି ଲୋକ ସେବକ ବୋଲି ଜାଣିବ । ତାହାରି ହସ୍ତରେ ମୋର ଗମନ ହେବ । ରାଜା ତାହା ଶୁଣି ସେହିପରି କଲେ । ଗୋ ଭ୍ରମଣ କରାଉଥିବା ଲୋକମାନେ କହିଲେ, ଏ ଗାଈକୁ ମାରି ଯେଉଁ ଲୋକ ରତ୍ନାଦି ଗ୍ରହଣ କରିବ ସେହି ଭଗବାନ୍‌ଙ୍କର ସେବକ ହେବ । ଏହା କହି ଡିଣ୍ଡିମ ବଜାଇଲେ । ସେହି

ସମୟରେ ଗୋଟିଏ ବାର ବର୍ଷର ବାଳକ ବାଲି ଖେଳରେ ରତ ଥାଇ ଏକଥା ଶୁଣି ମା'ଙ୍କୁ କହିଲା, ଆଲୋ ମା' ! ଉତ୍କଳ ଦେଶର ଗଜପତି ରାଜା ଜଗନ୍ନାଥଙ୍କୁ ଆଣିବାପାଇଁ ଏଠାକୁ ଆସି ରତ୍ନଖଚିତ ଗୋରୁକୁ ବୁଲାଉ ଅଛନ୍ତି ଏବଂ କହୁଛନ୍ତି କିଏ ଏହି ଗୋରୁକୁ ମାରି ରତ୍ନ ଗ୍ରହଣ କରିବ । ତା'ର ମା' କହିଲା, ବାପ, ତୁ କହ ମୁଁ ଏହା କରିପାରିବି । ସେ ଯାଇ ମାର୍ଗରେ ସେହିପରି କହିଲା । ତାହା ଶୁଣି ଗୋ-ରକ୍ଷକମାନେ ରାଜାଙ୍କ ଆଗରେ କହିଲେ । ରାଜା କହିଲେ ସେ ବାଳକକୁ ଆଣ । ସେମାନେ ଯାଇ ସେ ବାଳକକୁ ତା'ର ମା' ସହିତ ଆଣି ରାଜାଙ୍କୁ ଦେଖାଇଲେ । ରାଜା କହିଲେ, ଏ କାର୍ଯ୍ୟ କରିପାରିବ ? ସେ କହିଲା, ମୋର ପିତୃପିତାମହ ପ୍ରଭୃତି ଏ କାର୍ଯ୍ୟ କରୁଥିଲେ । ରାଜା କହିଲେ, ଅନ୍ୟ ସେବକମାନେ କେଉଁଆଡ଼େ ଗଲେ ? ତାହା ଶୁଣି ତା' ମା' କହିଲା, ଏଇ ରାଜ୍ୟରେ ଥିବା ବାରିବନ୍ଧକ ଗ୍ରାମରେ ଅଛନ୍ତି ବୋଲି ଶୁଣାଯାଏ । ତାହା ଶୁଣି ରାଜା ସେଠାକୁ ଭୃତ୍ୟ ପଠାଇଲେ । ସେ ଯାଇ ସେ ଗ୍ରାମରେ ଅନ୍ୱେଷଣ କଲା, ସେଠାରେ ପାଞ୍ଚ ଜଣ ସେବକ ଥିଲେ । ଅନନ୍ତର କିଛି କାଳ ପରେ ଅତି ଜୀର୍ଣ୍ଣ ଶ୍ରୀଭଗବାନ୍‌ଙ୍କର ବିଗ୍ରହ ଚତୁଷ୍ଟୟଙ୍କ ସହିତ ମୋଟ ଏଗାର ଜଣ ସୁଆରିରେ ଥୋଇ ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ଆଣିଥିଲେ ।

× × × × ×

ଏହାପରେ ରାଜା ଦାରୁ ଆଣି ଶ୍ରୀମୂର୍ତ୍ତି ନିର୍ମାଣ କରିଥିଲେ । କାହାଦ୍ୱାରା ମୂର୍ତ୍ତିଗୁଡ଼ିକ ନିର୍ମାଣ କରାଯାଇଥିଲା, ତାହା ମଧ ବର୍ଣ୍ଣିତ ଅଛି –

× × × × ×

ଯଥାବିଧି ବନଯାଗ ବିଧିରେ ଅରଣ୍ୟ ମଧ୍ୟରୁ ଦାରୁ ଆଣି ଶ୍ରୀମୂର୍ତ୍ତି ନିର୍ମାଣ କରିଥିଲେ । ନିର୍ମାଣ ସମୟରେ ଶୀଘ୍ର କାର୍ଯ୍ୟ ସମ୍ପାଦନପାଇଁ ଅଧିକ ସଂଖ୍ୟକ ସେବକ ନେଇଥିଲେ । ସେଠାରେ ବିଦ୍ୟାପତି ବିଶ୍ୱାବସୁ ବଂଶୀୟମାନେ ଛ'ଜଣ, ବିଶ୍ୱକର୍ମା ବଂଶୀୟ ଓ ସେଠାରେ ଆରଣ୍ୟକ ବ୍ରାହ୍ମଣ ପାଞ୍ଚ ଜଣ ଏକାଠି ହୋଇ ଚଉଦ ଜଣ ସେବକ ଶ୍ରୀମୂର୍ତ୍ତି ନିର୍ମାଣ କରାଇଥିଲେ । ବର୍ତ୍ତରିହସ୍ତ ଆରଣ୍ୟକ ବ୍ରାହ୍ମଣର ବୟସ ଗୋତ୍ର ବିଦ୍ୟାପତି ବଂଶଧରମାନେ, କୌଣ୍ଡିନ୍ୟସ ଗୋତ୍ରୀୟ ଶବରବଂଶମାନେ ଓ ଦଇତା ଉପାଧିଧାରୀ କୌଶିକମ୍ ଗୋତ୍ରୀୟ ଏମାନେ ସମସ୍ତେ ଉକ୍ତ ପ୍ରକାର ନିର୍ମିତ ହୋଇଥିବା ଚାରି ମୂର୍ତ୍ତିକୁ ଶଙ୍ଖନାଭି ମଧ୍ୟବର୍ତ୍ତୀ ବଟମୂଳରେ ପଞ୍ଚଶିର ନାମକ ବନ୍ଧରେ ନିର୍ମିତ ପ୍ରାସାଦରେ ସ୍ଥାପନ କରିଥିଲେ । ମନ୍ଦିରରେ ମହାପ୍ରଭୁଙ୍କ ସେବା ପ୍ରଥମଥରପାଇଁ ରାଜା ଆରମ୍ଭ କରିଥିବାର ଜଣାଯାଏ ।

× × × × ×

ରାଜା ଅଠତିରିଶ ହାତ ଉଚ୍ଚ ମନ୍ଦିର ନିର୍ମାଣ କରି ତାହାକୁ ପ୍ରତିଷ୍ଠା କଲେ । ତହିଁରେ ଶ୍ରୀମୂର୍ତ୍ତିଙ୍କୁ ସ୍ଥାପନ କରାଗଲା । ଏହା ପରେ ବିମଳାଦେବୀଙ୍କ ମନ୍ଦିର ନିର୍ମାଣ କରାଗଲା ।

'ମାଦଳାପାଞ୍ଜି'ରେ ମଧ ଯଯାତି ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିବାର ଉଲ୍ଲେଖ ଅଛି । ମାତ୍ର କେତେକ ଐତିହାସିକ ସୋମବଂଶୀ ଇତିହାସରେ ଦୁଇ ଜଣ ଯଯାତି ଥିବା ଦର୍ଶାଇ ଜଗନ୍ନାଥ ମନ୍ଦିର ପ୍ରଥମ ଯଯାତିଙ୍କଦ୍ୱାରା ନିର୍ମିତ ହୋଇଥିବାର ମତ ଦିଅନ୍ତି । ପ୍ରଥମ ଯଯାତି ୮୮୫ ଖ୍ରୀଷ୍ଟାବ୍ଦରୁ ୯୨୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଦ୍ୱିତୀୟ ଯଯାତି ୧୦୨୪ରୁ ୧୦୪୦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । କେତେକ ଐତିହାସିକ ଦ୍ୱିତୀୟ ଯଯାତି ଜଗନ୍ନାଥ ମନ୍ଦିର ୧୦୩୫ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରିଥିବାର ମତ ଦିଅନ୍ତି । ଦ୍ୱିତୀୟ ଯଯାତିଙ୍କଦ୍ୱାରା ଜଗନ୍ନାଥ ମନ୍ଦିର ନିର୍ମାଣ ଓ ଲିଙ୍ଗରାଜ ମନ୍ଦିର ଆରମ୍ଭ ହୋଇଥିବା କଥା 'ଉତ୍ରଦେଶ ରାଜବଂଶାବଳୀ'ରୁ ଜଣାଯାଏ । ସୁତରାଂ ଏହା ଦ୍ୱିତୀୟ ଯଯାତିଙ୍କଦ୍ୱାରା ନିର୍ମିତ ହୋଇଥିବା ଯୁକ୍ତିଯୁକ୍ତ । ସମ୍ଭବତଃ, ଆକାରରେ ଏହା କ୍ଷୁଦ୍ର ଥିଲା । ମାତ୍ର ତାହା ଚାରିଆଡ଼େ ପ୍ରସିଦ୍ଧି ଲାଭ କରିଥିଲା । ବହୁ ଦୂରଦୂରାନ୍ତରୁ ଯାତ୍ରୀ ଜଗନ୍ନାଥଙ୍କ ଦର୍ଶନପାଇଁ ଆସୁଥିଲେ । ସୁତରାଂ ଚୋଡ଼ଗଙ୍ଗଦେବ ପରେ ଏକ ବିରାଟ ଜଗନ୍ନାଥ ମନ୍ଦିର ନିର୍ମାଣ କରାଇଥିବା ସମ୍ଭବ ।

'ଉତ୍ରଦେଶ ରାଜବଂଶାବଳୀ'ରୁ ଜଣାଯାଏ ଯେ ଯଯାତି ଶ୍ରୀଭୁବନେଶ୍ୱର କ୍ଷେତ୍ରରେ ଶ୍ରୀଲିଙ୍ଗରାଜ ମନ୍ଦିରପାଇଁ ଶୁଭ ଦେଲେ ଓ ଲଲାଟକେଶରୀ ଆରମ୍ଭ କରିଥିବା ଲିଙ୍ଗରାଜ ମନ୍ଦିର ନିର୍ମାଣ ଶେଷ କରି ପ୍ରତିଷ୍ଠା କରାଇଥିଲେ । 'ମାଦଳାପାଞ୍ଜି' ଅନୁସାରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର ଯଯାତିକେଶରୀ ଆରମ୍ଭ କଲେ, ଅନନ୍ତକେଶରୀ ନିର୍ମାଣ କାର୍ଯ୍ୟକୁ ଆଗେଇନେଲେ ଓ ଲଲାଟେନ୍ଦୁକେଶରୀଙ୍କ ସମୟରେ ତାହା ସମ୍ପୂର୍ଣ୍ଣ ହେଲା । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଅନନ୍ତ' ଓ 'ଲଲାଟେନ୍ଦୁ' ଉଦ୍ୟୋତକେଶରୀଙ୍କ ଅନ୍ୟ ଦୁଇଟି ନାମ ଥାଇପାରେ ବୋଲି ମନେକରି ମାଦଳାପାଞ୍ଜି ଅନୁସାରେ ଲିଙ୍ଗରାଜ ମନ୍ଦିର ଦ୍ୱିତୀୟ ଯଯାତିଙ୍କଦ୍ୱାରା ଆରମ୍ଭ ଓ ତାଙ୍କ ପୁତ୍ର ଉଦ୍ୟୋତକେଶରୀଙ୍କ ସମୟରେ ଶେଷ ହୋଇଥିଲା ବୋଲି ମତ ଦେଇଛନ୍ତି । ଏହି ମତକୁ ଅନ୍ୟ ଐତିହାସିକମାନେ ସମର୍ଥନ କରନ୍ତି ।

## ଲିଙ୍ଗରାଜ ମନ୍ଦିର

ଲିଙ୍ଗରାଜ ମନ୍ଦିର ଓଡ଼ିଶାର ଶିବ ମନ୍ଦିରମାନଙ୍କ ମଧ୍ୟରେ ଅଦ୍ୱିତୀୟ । ଏହା ଏକ ପ୍ରସିଦ୍ଧ ଶୈବକ୍ଷେତ୍ର । ଏହାର ଭାସ୍କର୍ଯ୍ୟ ମଧ୍ୟ ଅତି ଉଚ୍ଚକୋଟୀର । ସୂକ୍ଷ୍ମ କାରିଗରୀ ବିଦ୍ୟାର ପୂର୍ଣ୍ଣବିକାଶ ଯେ ଏଥିରେ ଲାଭ କରିଛି ଏଥିରେ ସନ୍ଦେହ ନାହିଁ ।

ଏହି ମନ୍ଦିର ୫୨୦ ଫୁଟ ଲମ୍ବ ଓ ୪୬୫ ଫୁଟ ଓସାର ଏକ ବିରାଟ କ୍ଷେତ୍ର ମଧ୍ୟରେ ଦଣ୍ଡାୟମାନ ଅଛି । ଏହାର ଚତୁଃପାର୍ଶ୍ୱରେ ମଧ୍ୟ ଏକ ବିରାଟ ପ୍ରାଚୀର ଅଛି । ପ୍ରାଚୀର ଦେହରେ ତିନି ଗୋଟି ପ୍ରବେଶଦ୍ୱାର ଥିଲେ ମଧ୍ୟ ପୂର୍ବପାର୍ଶ୍ୱର ଦ୍ୱାର ସର୍ବସାଧାରଣଙ୍କ ପ୍ରବେଶଦ୍ୱାର ରୂପେ ବ୍ୟବହୃତ ହୁଏ । କ୍ଷେତ୍ରର ପ୍ରତିଷ୍ଠିତ ଦେବତା ଲିଙ୍ଗ ରୂପରେ ପୂଜା ପାଉଥିବାରୁ ମନ୍ଦିରର ନାମ ଲିଙ୍ଗରାଜ ହୋଇଅଛି । ଏହାଙ୍କର ଅନ୍ୟ ନାମ କୃତ୍ତିବାସ ।

ମନ୍ଦିରଟିର ଆକୃତି ପଞ୍ଚରଥ ଧରଣର । ଏହାର ଚାରି ଗୋଟି ଅଙ୍ଗ, ଯଥା – ବିମାନ, ଜଗମୋହନ, ନାଟମନ୍ଦିର ଓ ଭୋଗମଣ୍ଡପ ଅଛି । ବିମାନଟି ଦ୍ୱିତୀୟ ଯଯାତିଙ୍କଦ୍ୱାରା ନିର୍ମିତ ହୋଇଥିବାର 'ମାଦଳାପାଞ୍ଜି' ଓ 'ଉତ୍ରଦେଶ ରାଜବଂଶାବଳୀ'ରୁ ଜଣାଯାଏ । ଏହାର ଉଚ୍ଚତା ୧୪୭ ଫୁଟ । ମନ୍ଦିରର ମୂଳ ଭାଗଠାରୁ ଆମଳକଶୀଳା ପର୍ଯ୍ୟନ୍ତ ବିରାଟ ଗଣ୍ଡି କ୍ରମେ କୃଶ ହୋଇଆସିଛି । ଏହାର ଶିଖର ଅତି ଉଚ୍ଚ ଓ ଏହା ପ୍ରାୟ ଦଶ ମାଇଲ ଦୂରକୁ ଦୃଶ୍ୟ ହୋଇଥାଏ । ବିମାନ ଓ ଜଗମୋହନରେ ଏକପ୍ରକାର ପ୍ରସ୍ତର ବ୍ୟବହୃତ ହେଉଥିଲା । ସେମାନଙ୍କର ଭାସ୍କର୍ଯ୍ୟ ମଧ୍ୟ ଏକପ୍ରକାର । ଜଗମୋହନ ଯଯାତିକେଶରୀ ବା ତାଙ୍କ ପୁତ୍ର ଉଦ୍ୟୋତକେଶରୀଙ୍କଦ୍ୱାରା ନିର୍ମିତ ହୋଇଥିଲା । ନାଟମନ୍ଦିର ଓ ଭୋଗମଣ୍ଡପରେ ଅନ୍ୟ ପ୍ରକାର ପ୍ରସ୍ତର ବ୍ୟବହୃତ ହୋଇଅଛି । ସେ ଦୁଇଟିର ଭାସ୍କର୍ଯ୍ୟ ମଧ୍ୟ ଭିନ୍ନ । ତେଣୁ ସେ ଦୁଇଟି ସୌଧ ପରବର୍ତ୍ତୀକାଳରେ ନିର୍ମିତ ହୋଇଥିବା ଅନୁମାନ କରାଯାଏ ।

ମନ୍ଦିରର ପାର୍ଶ୍ୱଦେବତା ରୂପେ ଗଣେଶ, କାର୍ତ୍ତିକେୟ ଓ ପାର୍ବତୀଙ୍କ ମୂର୍ତ୍ତି ବିଦ୍ୟମାନ । ଗଣେଶଙ୍କ ମୂର୍ତ୍ତି ଗୋଟିଏ କଳାମୁଗୁନି ପଥରରେ ଗଢ଼ା ହୋଇଅଛି । ଏହା ଅତି ବିଶାଳ ହେଲେ ମଧ୍ୟ ଅତି ସୁନ୍ଦର । ସେହିପରି କାର୍ତ୍ତିକେୟଙ୍କ ମୂର୍ତ୍ତି ବିଶାଳ ଓ କମନୀୟ । ଗୋଟିଏ ପଥରରେ ଗଢ଼ା ପାର୍ବତୀଙ୍କର ଦଣ୍ଡାୟମାନ ମୂର୍ତ୍ତି ଓ ତତ୍‌ସହ ଅପ୍‌ସରାମାନଙ୍କର ନୃତ୍ୟ ଓ ଯନ୍ତ୍ରବାଦନ ଅତି ଜୀବନ୍ତ । ବିଶେଷତଃ, ପାର୍ବତୀଙ୍କ ବସ୍ତ୍ର ଉପରେ ଖୋଦିତ ସୂକ୍ଷ୍ମ କାରୁକାର୍ଯ୍ୟ ଦର୍ଶକକୁ ସ୍ତମ୍ଭୀଭୂତ କରିଦିଏ ।

ଜଗମୋହନର ଦକ୍ଷିଣ ଦ୍ୱାରଦେଶରେ ଶିବ ଓ ପାର୍ବତୀଙ୍କର ବିବାହ ଦୃଶ୍ୟ ଦେଖାଯାଏ । ବର ବେଶରେ ଶିବ ଥାଇ ପାର୍ବତୀଙ୍କୁ ଅଗ୍ନିଦେବତାଙ୍କ ପାଖକୁ



ଲିଙ୍ଗରାଜ ମନ୍ଦିର

ନେବାର ଦୃଶ୍ୟ ଅତି ଚମତ୍କାର ହୋଇଅଛି । ମନ୍ଦିରରେ ଆଉ ଅନେକ ମୂର୍ତ୍ତି, ଯଥା – କେଶପ୍ରସାଧନାରତା ନାରୀ, ଅଭିସାରିକା, ପ୍ରମଦାମାନଙ୍କ ବୀଣାବାଦନ, ପଣ୍ଡିତମାନଙ୍କର ବେଦ ଅଧ୍ୟୟନ, ତରୁଣ ଓ ତରୁଣୀମାନଙ୍କର ଏକାନ୍ତ ମିଳନ ଚିତ୍ର ଖୋଦିତ ହୋଇଅଛି । ଜଗମୋହନରେ ମଧ୍ୟ ଯୁଦ୍ଧଯାତ୍ରା, ପାଣ୍ଡବମାନଙ୍କ ସ୍ୱର୍ଗାରୋହଣ ଓ ଯୁଦ୍ଧହସ୍ତୀମାନଙ୍କ ଚିତ୍ର ଦେଖିବାକୁ ମିଳେ ।

ଲିଙ୍ଗରାଜ ମନ୍ଦିର ବେଢ଼ାରେ ଅନେକ ମନ୍ଦିର ନିର୍ମିତ ହୋଇଅଛି । ପୂର୍ବଦିଗରେ ପ୍ରବେଶ ଦ୍ୱାର ନିକଟରେ ସିଦ୍ଧଗଣେଶ ମନ୍ଦିର ବିଦ୍ୟମାନ । ପାର୍ବତୀଙ୍କ ମନ୍ଦିର ମଧ୍ୟ ଏକ ଅଛି । ଏଥିରେ ବ୍ୟବହୃତ ହୋଇଥିବା ପ୍ରସ୍ତରଗୁଡ଼ିକ ହଳଦିଆ ରଙ୍ଗର । ଏଣୁ ଏହା ଉପରେ ଖୋଦିତ ଚିତ୍ରଗୁଡ଼ିକ ଅତି ମନୋମୁଗ୍ଧକର ଅଟେ । ସମସ୍ତ ପ୍ରକାର କଳାକୁଶଳତା ଓ ସତର୍କତା ଗ୍ରହଣ କରି ଶିଳ୍ପୀ ବିଗ୍ରହରେ ମାତୃହୃଦୟର ସ୍ନେହ ଓ ଅନୁକମ୍ପାକୁ ଯେପରି ଭାବରେ ପରିସ୍ଫୁଟ କରିଅଛନ୍ତି, କଳାଜଗତରେ ତାହାର ପଟାନ୍ତର ନାହିଁ ।

## ଯଯାତିଶ୍ୱର ମନ୍ଦିର

'ବିରଜାକ୍ଷେତ୍ର ମାହାତ୍ମ୍ୟ'ରୁ ଜଣାଯାଏ ଯେ ଯଯାତିଶ୍ୱର ନାମକ ଏକ ମହାଦେବଙ୍କ ମନ୍ଦିର ଏଠାରେ ଥିଲା । ସମ୍ଭବତଃ, ଦ୍ୱିତୀୟ ଯଯାତି ଏହାର ସ୍ଥାପୟିତା ଥିଲେ । କିନ୍ତୁ ଯାଜପୁରରେ ଧର୍ମାନ୍ଧମାନଙ୍କର ଧ୍ୱଂସଲୀଳା ସବୁଠାରୁ

ବେଶି ଭାବରେ ଚାଲିଥିଲା । ଫଳରେ ଯଯାତିଶ୍ୱର ମନ୍ଦିର ସମେତ ବହୁ ପୁରାତନ ମନ୍ଦିର ଧ୍ୱଂସ ପାଇଲା । ତ୍ରିଲୋଚନେଶ୍ୱର, ସିଦ୍ଧେଶ୍ୱର ପ୍ରଭୃତି ଅପେକ୍ଷାକୃତ ଅଳ୍ପ ପ୍ରାଚୀନ ମନ୍ଦିରକୁ ବାଦ୍ ଦେଲେ ଯାଜପୁର ବିରଜା କ୍ଷେତ୍ରରେ ଏବେ ଅନ୍ୟ ପ୍ରାଚୀନ ମନ୍ଦିର ନାହିଁ କହିଲେ ଚଳେ ।

## କୁଶଳେଶ୍ୱର ମନ୍ଦିର

ଜନଶ୍ରୁତିରୁ ଜଣାଯାଏ ଯେ ଯଯାତି କେନ୍ଦୁଝର ଜିଲ୍ଲାର ଆନନ୍ଦପୁର ନିକଟବର୍ତ୍ତୀ ଦେଓଗାଁ ଗ୍ରାମରେ କୁଶଳେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ଏହା 'କୋଶଳେଶ୍ୱର' ନାମର ଅପଭ୍ରଂଶ ବୋଲି ଡଃ ମହତାବ ମତ ଦେଇଛନ୍ତି । ଡଃ ମହତାବଙ୍କ ମତରେ ଯଯାତି କେବଳ ଯେ କୁଶଳେଶ୍ୱର ମନ୍ଦିର ନିର୍ମାଣ କରିଥିଲେ ତା' ନୁହେଁ, ସେ ଖରସ୍ରୋତା କୁଶଭଦ୍ରା ନଦୀର ଉତ୍ତର ପାର୍ଶ୍ୱରେ ଗୋଟିଏ ବିଶାଳ ପଥରବନ୍ଧ ନିର୍ମାଣ କରିଥିଲେ । ଯଯାତି କୋଶଳ ଦେଶରୁ ଆସିଥିବାରୁ ଦେଓଗାଁରେ ମନ୍ଦିର ନିର୍ମାଣ ବା ପଥରବନ୍ଧ ନିର୍ମାଣ କରିଥିବା ସମ୍ଭବପର ମନେହୁଏ ।

ଯଯାତି ବିଶାଳ ଲିଙ୍ଗରାଜ ମନ୍ଦିର ନିର୍ମାଣ କଲା ପରେ ତାଙ୍କ ରାଣୀ କୋଳାବତୀ ଶୋଭାଶାଳୀ ବ୍ରହ୍ମେଶ୍ୱର ମନ୍ଦିର ନିର୍ମାଣ କରିଥିଲେ । ବ୍ରହ୍ମେଶ୍ୱର ମନ୍ଦିରର କାରୁକାର୍ଯ୍ୟ ଓ ଲିଙ୍ଗରାଜ ମନ୍ଦିରର କାରୁକାର୍ଯ୍ୟ ମଧ୍ୟରେ ବହୁ ସାମଞ୍ଜସ୍ୟ ଅଛି । ଲିଙ୍ଗରାଜ ମନ୍ଦିରରେ ଥିବା ଦିଗପାଳଙ୍କର ଗଠନ ବ୍ରହ୍ମେଶ୍ୱର ମନ୍ଦିରର ଦିଗପାଳଙ୍କର ଗଠନ ପ୍ରାୟ ଏକ । ବ୍ରହ୍ମେଶ୍ୱର ମନ୍ଦିରର ଅଭିସାରିକାମାନଙ୍କର ବେଶଭୂଷା, ଅଳଙ୍କାର ଓ ଦଣ୍ଡାୟମାନ ଭଙ୍ଗୀ ଲିଙ୍ଗରାଜ ମନ୍ଦିର ଅଭିସାରିକାମାନଙ୍କର ବେଶଭୂଷା ସହିତ ସମାନ । ବିଶେଷତଃ, ଯୌବନ-ଉନ୍ନତା ଲଳନାମାନଙ୍କର ପୁଷ୍ପଚୟନ ଲିଙ୍ଗରାଜ ମନ୍ଦିରର ଅନୁରୂପ ।

ଯଯାତି ବହୁକାଳ ରାଜତ୍ୱ କରିଥିଲେ ମଧ୍ୟ ତାଙ୍କ ରାଜତ୍ୱର ତୃତୀୟ ବର୍ଷରେ ଦିଆଯାଇଥିବା ଗୋଟିଏ ତାମ୍ରଶାସନ ବ୍ୟତୀତ ଆଉ କିଛି ମିଳେ ନାହିଁ । ତାଙ୍କ ରାଜତ୍ୱ ୧୦୨୪ରୁ ୧୦୪୦ଖ୍ରୀ. ପର୍ଯ୍ୟନ୍ତ ବୋଲି ଜଣାଯାଏ ।

ଯଯାତି ଉତ୍କଳର ଧର୍ମଜୀବନରେ ମହାବିପ୍ଳବ ଆଣିଥିଲେ । ତନ୍ତ୍ରବାଦ ଲୋପ କରି ବୈଦିକ ଧର୍ମର ପୁନଃପ୍ରତିଷ୍ଠାପାଇଁ ସେ ଯେଉଁ ଚେଷ୍ଟା କରିଥିଲେ ତା'ର ତୁଳନା ନାହିଁ । କେତେ ଯେ ମନ୍ଦିର ଓଡ଼ିଶାର ବିଭିନ୍ନ ସ୍ଥାନରେ ସେ ନିର୍ମାଣ କରିଛନ୍ତି ତା'ର କଳନା ନାହିଁ । ସେଥିପାଇଁ ସେ ବହୁ ବର୍ଷ ପୂର୍ବେ ରାଜତ୍ୱ କରୁଥିଲେ ମଧ୍ୟ ଉତ୍କଳର ପୁରପଲ୍ଲୀରେ ସୁପରିଚିତ ହୋଇ ରହିଛନ୍ତି ।

## ଗଙ୍ଗ ମଉଡ଼ମଣି
# ଚୋଡ଼ଗଙ୍ଗଦେବ

ଗଙ୍ଗବଂଶୀୟ ରାଜାମାନେ ଓଡ଼ିଶାରେ ଦୀର୍ଘ ତିନି ଶହ ବର୍ଷରୁ ଊର୍ଦ୍ଧ୍ୱ ରାଜତ୍ୱ କରିଥିଲେ । ଏହି ସମୟରେ ସେମାନେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ଏକ ବିସ୍ତୃତ ଅଞ୍ଚଳକୁ ଅଧିକାର କରିଥିଲେ । ସେମାନେ ମଧ୍ୟ ବଙ୍ଗଦେଶୀୟ ମୁସଲମାନମାନଙ୍କ ଆକ୍ରମଣର ତୀବ୍ର ମୁକାବିଲା କରି ଏକ ଶକ୍ତିଶାଳୀ ହିନ୍ଦୁରାଜ୍ୟ ଗଠନ କରିଥିଲେ । ଏହି ବଂଶର ରାଜତ୍ୱଠାରୁ ଉତ୍କଳ କାହିଁକି ଭାରତରେ ଜଗନ୍ନାଥଙ୍କ ପ୍ରଭାବ ଅପ୍ରତିଦ୍ୱନ୍ଦ୍ୱୀ ହୋଇଉଠିଲା । ଶିଳ୍ପ ରାଜ୍ୟରେ ସେପରି ଜଗନ୍ନାଥ ଓ କୋଣାର୍କ ଭଳି ଅପରୂପ କାରୁକାର୍ଯ୍ୟଖଚିତ ମନ୍ଦିରମାନ ମୁଣ୍ଡ ଟେକି ଉଠିଥିଲା । ବସ୍ତୁତଃ, ଗଙ୍ଗ ଯୁଗକୁ ଓଡ଼ିଶା ଇତିହାସରେ ସୁବର୍ଣ୍ଣ ଯୁଗ ବୋଲି କୁହାଯାଏ ।

### ପୃଷ୍ଠଭୂମି

ଗଙ୍ଗବଂଶର ପ୍ରତିଷ୍ଠାତା ଥିଲେ ଇନ୍ଦ୍ରବର୍ମାଦେବ । ସେ ମହୀଶୂରର ପଶ୍ଚିମ ଗଙ୍ଗବଂଶରେ ଜନ୍ମଗ୍ରହଣ କରିଥିଲେ । ସେ ହରିସେନଙ୍କ ସେନାପତିଭାବେ ଓଡ଼ିଶାକୁ ଆସିଥିଲେ । ହରିସେନଙ୍କ ଆକସ୍ମିକ ମୃତ୍ୟୁ ପରେ ଇନ୍ଦ୍ରବର୍ମାଦେବ ନିଜକୁ ସ୍ୱାଧୀନ ରାଜା ବୋଲି ଘୋଷଣା କଲେ । ସେ ଗଙ୍ଗାବ୍ଦ ନାମକ ଏକ ନୂତନ ଅବ୍ଦ ପ୍ରଚଳନ କରିଥିଲେ । ଏହି ଅବ୍ଦ ସମ୍ଭବତ୍ ୪୯୮ ଖ୍ରୀଷ୍ଟାବ୍ଦରୁ ଆରମ୍ଭ ହୋଇଥିବାର ଜଣାଯାଏ । ସେ ପ୍ରାଚ୍ୟ ଗଙ୍ଗବଂଶ ପ୍ରତିଷ୍ଠା କରିଥିଲେ ।

ପ୍ରାଚ୍ୟ ଗଙ୍ଗବଂଶର ଶେଷ ରାଜା ଥିଲେ ଦେବେନ୍ଦ୍ର ବର୍ମା ପ୍ରଥମ ରାଜରାଜଦେବ । ତାଙ୍କର ଅଭିଷେକ ଉତ୍ସବ ୧୦୭୦ ମସିହା ମେ ମାସ ୨୦ ତାରିଖରେ କଳିଙ୍ଗନଗରରେ ହୋଇଥିଲା । ସେ ବଡ଼ ଯୋଦ୍ଧା ଥିଲେ । ସେ ଉତ୍କଳ, କୋଶଳ, ଖିମିଡ଼ି, ବ୍ରିଡିସିଙ୍ଗି, ବେଙ୍ଗି, ଚୋଳ ପ୍ରଭୃତି ରାଜାମାନଙ୍କୁ ପରାସ୍ତ କରିଥିଲେ । ଶେଷୋକ୍ତ ଯୁଦ୍ଧ ଦେବେନ୍ଦ୍ର ବର୍ମା ରାଜରାଜ ଓ ଚୋଳରାଜା କୁଳୋତ୍ତୁଙ୍ଗ ରାଜେନ୍ଦ୍ରଙ୍କ ମଧ୍ୟରେ ହୋଇଥିଲା । ବେଙ୍ଗିରାଜ୍ୟ ଅଧିକାରପାଇଁ ଏହି ସଂଘର୍ଷ ହୋଇଥିଲା । ୧୦୭୫ ଖ୍ରୀଷ୍ଟାବ୍ଦରେ ସେମାନଙ୍କ ମଧ୍ୟରେ ଏହି

ଯୁଦ୍ଧ ହୋଇ ଶେଷରେ ସନ୍ଧି ହୋଇଥିଲା । ଏହି ସନ୍ଧିରେ ଗଙ୍ଗରାଜା ରାଜରାଜ ଚୋଳରାଜା ରାଜେନ୍ଦ୍ର ଚୋଳଙ୍କ କନ୍ୟା ରାଜସୁନ୍ଦରୀଙ୍କୁ ବିବାହ କଲେ ଓ ବେଙ୍ଗି ରାଜ୍ୟରେ ଚୋଳମାନଙ୍କର ଆଧିପତ୍ୟ ପ୍ରତିଷ୍ଠିତ ହେଲା । ରାଜରାଜଦେବଙ୍କ ପୁତ୍ରର ନାମ ଉଭୟ ବଂଶର ନାମ ଅନୁସାରେ ଚୋଡ଼ଗଙ୍ଗଦେବ ହେଲା । ୧୦୭୭ ମସିହାରେ ରାଜରାଜଦେବଙ୍କ ଅକାଳ ମୃତ୍ୟୁ ହେଲା । ସେହି ସମୟରେ ଜ୍ୟେଷ୍ଠପୁତ୍ର ଚୋଡ଼ଗଙ୍ଗଦେବଙ୍କ ଶୈଶବ ଅବସ୍ଥା । ତଥାପି ତାଙ୍କୁ ସିଂହାସନରେ ଅଭିଷିକ୍ତ କରାଗଲା । ଏହା ୧୦୭୮ ମସିହା ଫେବୃୟାରୀ ମାସ ୧୬ ତାରିଖରେ ହୋଇଥିବାର ଜଣାଯାଏ ।

## ରାଜ୍ୟ ବିସ୍ତାର

ଖ୍ରୀ. ୫୦୦ରୁ ୬୦୦ ବର୍ଷ ପର୍ଯ୍ୟନ୍ତ ଗଙ୍ଗମାନଙ୍କ ରାଜ୍ୟ କଳିଙ୍ଗରେ ଆବଦ୍ଧ ଥିଲା । ସେ ସମୟରେ କଳିଙ୍ଗ ମହେନ୍ଦ୍ରଗିରି ଓ ଗୋଦାବରୀ ମଧ୍ୟରେ ଅବସ୍ଥିତ ଥିଲା । ଚୋଡ଼ଗଙ୍ଗଦେବ ଏହାର ସୀମା ବୃଦ୍ଧିପାଇଁ ଦୃଢ଼ପ୍ରତିଜ୍ଞ ହେଲେ । ଏଥିପାଇଁ ସେ ରାଜ୍ୟ ବିଜୟରେ ବାହାରିଲେ ।

ଗଙ୍ଗ ଓ ଚୋଳମାନଙ୍କ ରାଜ୍ୟ ମଧ୍ୟରେ ବେଙ୍ଗି ରାଜ୍ୟ ଅବସ୍ଥିତ ଥିଲା । ଚୋଡ଼ଗଙ୍ଗଦେବ ପ୍ରଥମେ ବେଙ୍ଗି ଉପରେ ଦୃଷ୍ଟି ପକାଇଲେ । ସେତେବେଳେ ବେଙ୍ଗି ରାଜ୍ୟର ପ୍ରଶାସକ ଥିଲେ ଚୋଳ ରାଜା କୁଲୋତ୍ତୁଙ୍ଗଙ୍କ ଦ୍ୱିତୀୟ ପୁତ୍ର ମୁମ୍ମୁଡି ଚୋଳ । ସେ ବେଙ୍ଗି ରାଜ୍ୟକୁ ସଙ୍ଗଠିତ କରିବାପାଇଁ ଲାଗିପଡ଼ିଥିଲେ । ଏହା ପରେ ମୁମ୍ମୁଡି ଚୋଳଙ୍କ ଭାଇ ବୀରଚୋଡ଼ ବେଙ୍ଗିର ପ୍ରଶାସକ ହେଲେ । ତାଙ୍କ ସମୟରେ କଳିଙ୍ଗ ଓ ଚୋଳମାନଙ୍କର ସମ୍ପର୍କ ଉତ୍ତମ ଥିବାର ଜଣାଯାଏ । ୧୦୧୩ ଖ୍ରୀଷ୍ଟାବ୍ଦରେ ବୀରଚୋଡ଼ଙ୍କ କନ୍ୟା ଚୋଡ଼ଦେବୀଙ୍କ ବିବାହ ଅନୁଷ୍ଠିତ ହୋଇଥିଲା । କିନ୍ତୁ ଚୋଳମାନେ କଳିଙ୍ଗ ସହିତ ଉତ୍ତମ ସମ୍ପର୍କ ରଖିବାକୁ ଚାହୁଁ ନ ଥିଲେ । ଫଳରେ ଚୋଳ ରାଜା କୁଲୋତ୍ତୁଙ୍ଗ ବୀରଚୋଡ଼ଙ୍କୁ ପ୍ରଶାସକ ପଦରୁ ବହିଷ୍କାର କଲେ ଓ ତାଙ୍କର ଆଉ ଏକ ପୁତ୍ର ବିକ୍ରମଚୋଡ଼ଙ୍କୁ ପ୍ରଶାସକ ପଦରେ ନିଯୁକ୍ତ କଲେ । ବୀରଚୋଡ଼ ବେଙ୍ଗିରୁ ପଳାଇଆସି କଳିଙ୍ଗରେ ଆଶ୍ରୟ ନେଲେ । ବିକ୍ରମଚୋଡ଼ଙ୍କ ଚୋଡ଼ଗଙ୍ଗଦେବଙ୍କ ସହ ସଂପର୍କ ତିକ୍ତ ହେଲା । ଶେଷରେ ଦୁହିଁଙ୍କ ମଧ୍ୟରେ ସଂଘର୍ଷ ହେବା ଫଳରେ କଳିଙ୍ଗର ଦକ୍ଷିଣାଞ୍ଚଳ ବେଙ୍ଗି ଅଧୀନକୁ ଚାଲିଗଲା । ଚୋଡ଼ଗଙ୍ଗଦେବ ସେହି ଅଞ୍ଚଳକୁ ଫେରିପାଇବାପାଇଁ ଦ୍ୱିତୀୟଥରପାଇଁ ବେଙ୍ଗି ଆକ୍ରମଣ କଲେ ଓ ଯୁଦ୍ଧରେ ବିଜୟ ଲାଭ କଲେ । ବିଜୟ ଲାଭ କଲେ ମଧ୍ୟ ବେଙ୍ଗି ରାଜ୍ୟ ଗଙ୍ଗମାନେ ଫେରି ପାଇ ନ ଥିଲେ । ୧୧୧୮ ମସିହାରେ

କୁଲୋତ୍ତୁଙ୍ଗଙ୍କ ମୃତ୍ୟୁ ପରେ ବିକ୍ରମଚୋଡ଼ ବେଙ୍ଗି ତ୍ୟାଗ କରି ରାଜସିଂହାସନରେ ବସିବା ଆଶାରେ ଚୋଳ ରାଜଧାନୀକୁ ଗଲେ । ଚୋଡ଼ଗଙ୍ଗଦେବ ଏହି ସୁଯୋଗରେ ବେଙ୍ଗି ଅଧିକାର କରିନେଲେ ।

ଉତ୍ତରରେ ଚୋଡ଼ଗଙ୍ଗଦେବ ସୋମବଂଶୀ ରାଜାମାନଙ୍କ ସହିତ ଯୁଦ୍ଧ କରିଥିଲେ । ସେତେବେଳେ ସୋମବଂଶୀ ରାଜା ଥିଲେ କର୍ଣ୍ଣଦେବ । ସେ ଚୋଡ଼ଗଙ୍ଗଦେବଙ୍କ ଆକ୍ରମଣର ମୁକାବିଲାପାଇଁ ବଙ୍ଗର ପାଳବଂଶୀୟ ରାଜା ରାମପାଳଙ୍କର ସାହାଯ୍ୟ ଲୋଡ଼ିଲେ । ରାମପାଳ ମଧ୍ୟ ଚୋଡ଼ଗଙ୍ଗଦେବଙ୍କର ପ୍ରଭାବ କ୍ଷୁଣ୍ଣ କରିବାପାଇଁ ଚାହୁଁଥିଲେ । ସେ ଦଣ୍ଡଭୁକ୍ତି ନାମକ ଏକ ଭୁକ୍ତିର ପ୍ରଶାସକଙ୍କୁ କର୍ଣ୍ଣଦେବଙ୍କୁ ସାହାଯ୍ୟଦେବାପାଇଁ ଆଦେଶ ଦେଲେ । ଚୋଡ଼ଗଙ୍ଗ ଓ କର୍ଣ୍ଣଦେବଙ୍କ ମଧ୍ୟରେ ଯୁଦ୍ଧ ହେଲା; ମାତ୍ର ସେ ଉତ୍କଳ ଅଧିକାର କରିପାରିଲେ ନାହିଁ । ଚୋଡ଼ଗଙ୍ଗ ଏଥିରେ ହତାଶ ନ ହୋଇ ଉତ୍କଳ ଅଧିକାରପାଇଁ ଚେଷ୍ଟା ଅବ୍ୟାହତ ରଖିଲେ । ଶେଷରେ ୧୧୧୦ ଖ୍ରୀଷ୍ଟାବ୍ଦରେ ସେ କର୍ଣ୍ଣଦେବଙ୍କୁ ପରାସ୍ତ କଲେ । କର୍ଣ୍ଣଦେବ ଚୋଡ଼ଗଙ୍ଗଙ୍କର ସାମନ୍ତ ରାଜା ହୋଇ ରହିଲେ । କର୍ଣ୍ଣଦେବଙ୍କ ମୃତ୍ୟୁ ପରେ ଚୋଡ଼ଗଙ୍ଗଦେବ ଉତ୍କଳ ଅଧିକାର କରିନେଇଥିବାର ଜଣାଯାଏ । ଏହା ୧୧୧୮ ଖ୍ରୀଷ୍ଟାବ୍ଦରେ ହୋଇଥିଲା । ଭିଜାଗାପଟମ୍ ତାମ୍ରଶାସନରେ ଚୋଡ଼ଗଙ୍ଗଦେବ ନିଜକୁ ଉତ୍କଳର ଅଧିପତି ଭାବେ ଅଭିହିତ କରିଥିବାର ଜଣାଯାଏ ।

ଉତ୍କଳ ଅଧିକାର କରିବାପରେ ଚୋଡ଼ଗଙ୍ଗଦେବ ବଙ୍ଗ ଅଧିକାରପାଇଁ ଲାଗିପଡ଼ିଲେ । ବଙ୍ଗ ବା ଗୌଡ଼ ରାଜ୍ୟର ରାଜା ରାମପାଳ ଥିଲେ ବୋଲି ଆଗରୁ କୁହାଯାଇଛି । ରାମପାଳ ଗଙ୍ଗମାନଙ୍କ ବିରୋଧରେ ସୋମବଂଶୀ ରାଜାଙ୍କୁ ସାହାଯ୍ୟ କରିଥିବାରୁ ଚୋଡ଼ଗଙ୍ଗଙ୍କର ଶତ୍ରୁତା ଅର୍ଜନ କରିଥିଲେ । ଉତ୍କଳ ଅଧିକାର କଲା ପରେ ସେ ତେଣୁ ବଙ୍ଗ ୧୧୨୦ରେ ଆକ୍ରମଣ କଲେ । ସେତେବେଳକୁ ରାମପାଳଙ୍କର ମୃତ୍ୟୁ ହୋଇସାରିଥିଲା । ତାଙ୍କର ଉତ୍ତରାଧିକାରୀ ଦୁର୍ବଳ ଥିଲେ । ଏଇ ସୁଯୋଗରେ ଚୋଡ଼ଗଙ୍ଗ ମନ୍ଦାର ଦୁର୍ଗ ଉପରେ ଆକ୍ରମଣ କଲେ ଓ ଏହାର ରାଜଧାନୀ ଆରାମ ଅଧିକାର କଲେ । ଏହା ବର୍ତ୍ତମାନ ଆରାମବାଗ ନାମରେ ଚିହ୍ନିତ ହେଉଅଛି । ଚୋଡ଼ଗଙ୍ଗଦେବଙ୍କୁ ଏ ଯୁଦ୍ଧରେ ରାଢ଼ାର ସେନବଂଶୀୟ ରାଜା ବିଜୟସେନ ସାହାଯ୍ୟ ଦେଇଥିବାର ଜଣାଯାଏ । ସେ ସେଠାରେ ସାମନ୍ତସେନଙ୍କୁ ନିଜର ସାମନ୍ତ ରାଜା ରୂପେ ଅଧିଷ୍ଠିତ କଲେ ।

ଚୋଡ଼ଗଙ୍ଗଦେବ ଏହା ପରେ କୋଶଳ ଅଭିଯାନରେ ବାହାରିଲେ । ମଧ୍ୟପ୍ରଦେଶର ପୂର୍ବାଞ୍ଚଳ ଓ ଓଡ଼ିଶାର ପଶ୍ଚିମାଞ୍ଚଳକୁ ନେଇ ଏଇ କୋଶଳ ରାଜ୍ୟ

ଗଠିତ ହୋଇଥିଲା । ଏଠାରେ ପ୍ରଥମେ ସୋମବଂଶୀୟ ରାଜାମାନେ ଶାସନ କରୁଥିଲେ । ମାତ୍ର ୧୦୫୩ ଆଡ଼କୁ ଏହାର ଗୋଟିଏ ଅଂଶ ତେଲୁଗୁ ଚୋଡ଼ ଓ ଅନ୍ୟ ଗୋଟିଏ ଅଂଶ କଳଚୁରୀମାନେ ଅଧିକାର କରିନେଇଥିଲେ । ଏହି କୋଶଳ ଅଧିକାରପାଇଁ କଳଚୁରୀ ଓ ତେଲୁଗୁ ଚୋଡ଼ମାନଙ୍କ ମଧ୍ୟରେ ସଂଘର୍ଷ ଲାଗି ରହିଥିଲା । ୧୧୧୦ ମସିହାରେ କଳଚୁରୀମାନେ ତେଲୁଗୁ ଚୋଡ଼ମାନଙ୍କୁ ପରାସ୍ତ କରି ଦକ୍ଷିଣ କୋଶଳ ଅଧିକାର କରିନେଲେ । ଚୋଡ଼ଗଙ୍ଗଦେବ ଦକ୍ଷିଣକୋଶଳ ଅଧିକାର କରିବାକୁ ବସିଲେ । ଫଳରେ ଗଙ୍ଗ ନରପତି ଓ କଳଚୁରୀମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ମାତ୍ର ଚୋଡ଼ଗଙ୍ଗ ଏଥିରେ ବିଜୟ ହାସଲ କରିପାରିଲେ ନାହିଁ । କଳଚୁରୀ ଅଭିଲେଖରୁ ଜଣାଯାଏ ଯେ, ଚୋଡ଼ଗଙ୍ଗଦେବ କଳଚୁରୀ ରାଜା ଦ୍ୱିତୀୟ ରତ୍ନଦେବଙ୍କଦ୍ୱାରା ସଂପୂର୍ଣ୍ଣଭାବେ ପରାସ୍ତ ହୋଇଥିଲେ । ସେ ମଧ୍ୟ ଏହା ଫଳରେ ଦଣ୍ଡଭୁକ୍ତି ମଣ୍ଡଳ ଓ ଖିଜିଙ୍ଗକୋଟ ହରାଇଲେ । ପୁଣି ଅବଶ୍ୟ ଚୋଡ଼ଗଙ୍ଗଦେବ ଏ ଦୁଇ ଅଞ୍ଚଳକୁ ପୁନଃଅଧିକାର କରିନେଇଥିଲେ ।

ଚୋଡ଼ଗଙ୍ଗଦେବଙ୍କର ଚୋଳମାନଙ୍କ ସହିତ ଉତ୍ତମ ସମ୍ପର୍କ ନ ଥିଲା । ବିଶେଷତଃ, ବିକ୍ରମଚୋଡ଼ ସିଂହାସନରେ ବସିଲାପରେ ଚୋଳ ଓ ଗଙ୍ଗମାନଙ୍କ ସମ୍ପର୍କ ଆହୁରି ତିକ୍ତ ହୋଇଉଠିଲା । ଚୋଡ଼ରାଜା ବିକ୍ରମଚୋଡ଼ଙ୍କର ଦୃଢ଼ ମୁକାବିଲା କରିବାପାଇଁ ଚୋଡ଼ଗଙ୍ଗଦେବ ଚାଲୁକ୍ୟ ରାଜା ତୃତୀୟ ସୋମେଶ୍ୱରଙ୍କ ସହିତ ଏକ ସାମରିକ ମେଣ୍ଟ ଗଠନ କରିଥିଲେ । ବିକ୍ରମଚୋଡ଼ ୧୧୩୩ ମସିହାରେ ଗଙ୍ଗ ଓ ଚାଲୁକ୍ୟମାନଙ୍କର ମିଳିତ ସେନାବାହିନୀକୁ ପରାସ୍ତ କଲେ । ତେଣୁ ପଶ୍ଚିମରେ ଚୋଡ଼ଗଙ୍ଗଦେବ ଆଉ ରାଜ୍ୟ ବିସ୍ତାର କରିପାରିଲେ ନାହିଁ ।

ଚୋଡ଼ଗଙ୍ଗଦେବ ୧୦୭୮ ମସିହାରୁ ୧୧୪୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ଏହି ସମୟରେ ବହୁ ଯୁଦ୍ଧରେ ବ୍ୟାପୃତ ଥିଲେ ଓ ବିଶାଳ ସାମ୍ରାଜ୍ୟ ସ୍ଥାପନ କରିଥିଲେ । ତାଙ୍କ ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ତାଙ୍କ ସମୟରୁ ଏହା ଉତ୍କଳ ନାମରେ ଅଭିହିତ ହେଲା ।

ଚୋଡ଼ଗଙ୍ଗଦେବଙ୍କ ପୂର୍ବପୁରୁଷର ରାଜଧାନୀ କଳିଙ୍ଗନଗର ଥିଲା । ଏହା ଆଧୁନିକ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାରେ ଅବସ୍ଥିତ ମୁଖଲିଙ୍ଗମ୍ ନାମରେ ପରିଚିତ । ଓଡ଼ିଶା ଅଧିକାର କଲା ପରେ ଚୋଡ଼ଗଙ୍ଗଦେବ କଟକକୁ ରାଜଧାନୀ ଉଠାଇ ଆଣିଲେ । କଟକ ତାଙ୍କର ସୁବିଶାଳ ସାମ୍ରାଜ୍ୟର କେନ୍ଦ୍ରରେ ଅବସ୍ଥିତ ଥିବାରୁ ଏହା ରାଜଧାନୀ ହେବା ସ୍ୱାଭାବିକ । ଏଠାରେ ଗଙ୍ଗବଂଶର ରାଜାମାନେ ବହୁକାଳ ଧରି ରାଜତ୍ୱ କରିଥିବାର ଜଣାଯାଏ । କାଳକ୍ରମେ ସେମାନେ ଓଡ଼ିଶାର ଅଧିବାସୀ ହୋଇପଡ଼ିଲେ ଓ ଓଡ଼ିଆଭାବେ ପରିଚିତ ହେଲେ ।

ଚୋଡ଼ଗଙ୍ଗଦେବ ରାଜ୍ୟର ସୁରକ୍ଷାପାଇଁ ବହୁତ ଦୁର୍ଗ ନିର୍ମାଣ କରିଥିଲେ । ସେଗୁଡ଼ିକ ମଧ୍ୟରେ ଯାଜପୁର ଛତିଆ ନିକଟରେ ଥିବା ଅମରବତି, ଚୌଦ୍ୱାର, କଟକ, ବାରଙ୍ଗ ନିକଟବର୍ତ୍ତୀ ଶାରଙ୍ଗଗଡ଼ ପ୍ରଧାନ । ଏହି ଦୁର୍ଗଗୁଡ଼ିକ ମଧ୍ୟରୁ କେତେକ ଘନ ଜଙ୍ଗଲ ମଧ୍ୟରେ ଅବସ୍ଥିତ ଓ ଆଉ କେତେକ ସାମରିକ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ସ୍ଥାନରେ ଅବସ୍ଥିତ ଥିଲା । ବ୍ରିଟିଶ ଐତିହାସିକ ଷ୍ଟରଲିଙ୍ଗ୍ ୧୮୨୨ ଖ୍ରୀଷ୍ଟାବ୍ଦରେ 'ଓଡ଼ିଶା ବୃତ୍ତାନ୍ତ' ନାମକ ଏକ ପୁସ୍ତକ ଲେଖିଥିଲେ । ସେଥିରେ ଚୋଡ଼ଗଙ୍ଗଦେବ ବାରଙ୍ଗ ନିକଟବର୍ତ୍ତୀ ଶାରଙ୍ଗଗଡ଼ ଓ କଟକ ନିକଟବର୍ତ୍ତୀ ଚୌଦ୍ୱାରଗଡ଼ର ନିର୍ମାତା ବୋଲି ଉଲ୍ଲେଖ କରିଛନ୍ତି । ଶାରଙ୍ଗଗଡ଼ର ଅନ୍ୟ ନାମ ଚୁଡ଼ଙ୍ଗଗଡ଼ ବୋଲି କେହି କେହି ମତ ଦିଅନ୍ତି । ଏହାର ବାହାର ଓ ଭିତର କାନ୍ଥର ଧ୍ୱଂସାବଶେଷ ଏବେବି ବିଦ୍ୟମାନ ଅଛି । ଚନ୍ଦକା ଖୋର୍ଦ୍ଧା ରାସ୍ତାରେ ଓ ଦଲୁଆ ଗ୍ରାମ ନିକଟରେ କସାଇଗଡ଼ ନାମକ ଆଉ ଏକ ଦୁର୍ଗ ଚୋଡ଼ଗଙ୍ଗଦେବ ନିର୍ମାଣ କରିଥିବାର ସ୍ଥାନୀୟ ପ୍ରବାଦ ଅଛି । ଏହି ଦୁର୍ଗଟି ସୈନ୍ୟମାନଙ୍କର ଗୁପ୍ତରେ ରହିବାପାଇଁ ବ୍ୟବହୃତ ହେଉଥିଲା । ଏହି ଦୁର୍ଗ ମଧ୍ୟରେ ସତୀ ସ୍ମୃତିସ୍ତମ୍ଭ ଥିବାର ଜଣାଯାଏ । ଏଠାରେ ଅଧିଷ୍ଠାତ୍ରୀ ଠାକୁରାଣୀ ଚୁଡ଼ଙ୍ଗ ଦାରୀଆଣୀଙ୍କୁ ଗ୍ରାମବାସୀମାନେ ଏବେବି ପୂଜା କରୁଥିବାର ଜଣାଯାଏ । ଏସବୁ ଦୁର୍ଗ ନିର୍ମାଣ ଫଳରେ ରାଜ୍ୟର ସୁରକ୍ଷା ଯେ ବୃଦ୍ଧି ପାଇଥିଲା ତା' ନୁହେଁ, ଏହାଦ୍ୱାରା ଚୋଡ଼ଗଙ୍ଗଦେବଙ୍କ ସାମରିକ ଶକ୍ତି ବହୁଗୁଣରେ ବୃଦ୍ଧି ପାଇଥିଲା । ଏହା ଫଳରେ ଚୋଡ଼ଗଙ୍ଗଦେବ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୀର୍ଣ୍ଣ ଅଞ୍ଚଳର ଅଧୀଶ୍ୱର ହୋଇପାରିଥିଲେ ।

ଚୋଡ଼ଗଙ୍ଗଦେବଙ୍କର ବହୁତ ନାମ ଥିଲା । ଅଭିଲେଖରୁ ଚାଲୁକ୍ୟ ଗଙ୍ଗ, ବିକ୍ରମ ଗଙ୍ଗେଶ୍ୱର, ବୀର ରାଜେନ୍ଦ୍ର, ଗଙ୍ଗେଶ୍ୱରଦେବ ଭୂପ ପ୍ରଭୃତି ତାଙ୍କର ବହୁ ନାମ ଥିବାର ଜଣାଯାଏ । ତାଙ୍କର ମଧ୍ୟ ବହୁ ରାଣୀ ଥିଲେ । ଅଭିଲେଖରେ ତିନି ରାଣୀଙ୍କ ନାମର ଉଲ୍ଲେଖ ଅଛି । ପରମାର୍ଦ୍ଦିଦେବ ନାମକ ଜଣେ ଭାଇ ମଧ୍ୟ ଥିଲେ । ସେ ରାଜା ଉପାଧି ଧାରଣ କରିଥିଲେ । ସେ ସମ୍ଭବତଃ କୌଣସି ଏକ ପ୍ରଦେଶର ଶାସନକର୍ତ୍ତା ଥିଲେ । ପରମାର୍ଦ୍ଦିଦେବଙ୍କର ପୁତ୍ର ଚୋଡ଼ଗଙ୍ଗଦେବ ନାମ ଧାରଣ କରିଥିବାର ଜଣାଯାଏ ।

## ଚୋଡ଼ଗଙ୍ଗଦେବ ଓ କିମ୍ବଦନ୍ତୀ

ଚୋଡ଼ଗଙ୍ଗଦେବଙ୍କୁ ଓଡ଼ିଶାର କିମ୍ବଦନ୍ତୀ ଅତି କଦର୍ଯ୍ୟଭାବେ ଚିତ୍ରଣ କରିଛି । କିମ୍ବଦନ୍ତୀ କହେ ଯେ ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗ ରାଣ୍ଡୀପୁଅ ଥିଲେ ।

ସେ ମଧ୍ୟ ନୀତିହୀନ କାମୁକ ଥିଲେ । ଜନୈକା ନିତେଇ ଧୋବଣୀର ସିଦ୍ଧମନ୍ତ୍ର ବଳରେ ସେ ଉତ୍କଳକୁ ଅଧିକାର କରିଥିଲେ । 'ଲାଙ୍ଗଳେଶ୍ୱର ଇତିହାସ'ରେ ବର୍ଣ୍ଣିତ ଅଛି ଯେ ସାୟନ୍ତନ ନାମକ ଜଣେ ବ୍ରାହ୍ମଣ କୋଳାହଳ ନଗରୀସ୍ଥ ଲାଙ୍ଗଳେଶ୍ୱର ମହାଦେବଙ୍କ ପ୍ରସାଦରୁ ବାସୁଦେବ ଓ ଚୋଡ଼ଗଙ୍ଗ ନାମକ ଦୁଇ ଗୋଟି ପୁତ୍ର ଲାଭ କଲେ । ଏମାନଙ୍କ ମଧ୍ୟରୁ ଚୋଡ଼ଗଙ୍ଗ ବାରବାଟୀ ଧ୍ୱଂସ କରି ନୃସିଂହକେଶରୀଙ୍କୁ ପରାସ୍ତ କରି ଓଡ଼ିଶା ଦଖଲ କରିଥିଲେ । ସମ୍ଭବତଃ, ରାଜା ଚୋଡ଼ଗଙ୍ଗ ସୈନ୍ୟସାମନ୍ତ ଆଣି ନାଟବେଶରେ ବା ଛଦ୍ମବେଶରେ ଯାଇ କଟକ ଅଧିକାର କରିଥିଲେ । ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ମୁଷ୍ଟିମେୟ ସୈନ୍ୟ ଛଦ୍ମବେଶରେ କଟକ ଯାଇ ରାଜଧାନୀ ଅଧିକାର କରିବା ଉଦାହରଣ ଇତିହାସରେ ବିରଳ ନୁହେଁ । କୋଳାହଳପୁର ନଗରର ନାମ ମଧ୍ୟ ଗଙ୍ଗବଂଶୀୟ ରାଜାମାନଙ୍କ ତାମ୍ରଶାସନରେ ଉଲ୍ଲେଖ ଅଛି । ଏହାଛଡ଼ା ଓଡ଼ିଆ ସାହିତ୍ୟର ନବଯୁଗର ସ୍ରଷ୍ଟା କବିବର ରାଧାନାଥ ମଧ୍ୟ ଏକ କାବ୍ୟ 'ନନ୍ଦିକେଶ୍ୱରୀ' ଲେଖିଛନ୍ତି । ସେଥିରେ ସେ ତାଙ୍କୁ କ୍ଷତ୍ରିୟ ବୀରଭାବେ ଚିତ୍ରଣ କରିଛନ୍ତି । ସେ ଲେଖିଛନ୍ତି ଯେ ଶେଷ କେଶରୀ ରାଜାଙ୍କ କନ୍ୟାର ନାମ ଥିଲା ନନ୍ଦିକା । ସେ ଚୋରଗଙ୍ଗଙ୍କ ପ୍ରଣୟପ୍ରାର୍ଥିନୀ ହୋଇଛନ୍ତି । ସେ ଗୁପ୍ତରେ ତାଙ୍କ ଶିବିରରେ ପହଞ୍ଚିଛନ୍ତି; ମାତ୍ର ଚୋଡ଼ଗଙ୍ଗ ସେହି ପ୍ରେମକୁ ପ୍ରତ୍ୟାଖ୍ୟାନ କରିଦେବା ଫଳରେ ନନ୍ଦିକା ଆତ୍ମହତ୍ୟା କରିଛନ୍ତି । ମାତ୍ର ଏଭଳି କିମ୍ବଦନ୍ତୀ 'ମାଦଳା ପାଞ୍ଜି'ରେ ନାହିଁ । ଏହି କାବ୍ୟର ପରିକଳ୍ପନାଟି ରାଧାନାଥ ଗ୍ରୀସ୍ ସାହିତ୍ୟରୁ ଗ୍ରହଣ କରିଥିବା କଥା ଅଧ୍ୟାପକ ରାଉତ ୧୯୫୪ ମସିହା ଝଙ୍କାରରେ ପ୍ରକାଶ କରିଛନ୍ତି । ରାଧାନାଥ ନନ୍ଦିକେଶ୍ୱରୀ ନାମଟି କଟକର ଥିବା ଏକ ପଠାରୁ ପାଇଥିଲେ । ମାତ୍ର ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ପଠାଟିର ମୌଳିକ ନାମ ନନ୍ଦିକେଶ୍ୱର ପଠା ଥିଲା । କାଳକ୍ରମେ ତାହା ନନ୍ଦିକେଶ୍ୱରୀ ହୋଇଅଛି । 'ମାଦଳାପାଞ୍ଜି'ରେ ଗଙ୍ଗେଶ୍ୱରଙ୍କ ସମ୍ବନ୍ଧରେ ଏକ କୁତ୍ସିତ କିମ୍ବଦନ୍ତୀ ଅଛି । ତାହା ହେଲା, ଗଙ୍ଗେଶ୍ୱରଙ୍କ ତାଙ୍କ କନ୍ୟା ସହିତ ପାପ ପ୍ରଣୟ ଥିଲା । ତାହା ଫଳରେ କନ୍ୟାର ପାପଗର୍ଭ ହେଲା । ଗଙ୍ଗେଶ୍ୱର ବ୍ରାହ୍ମଣଙ୍କୁ ଡକାଇ ତାଙ୍କ ଆଗେ ନିଜର ପାପ ପ୍ରକାଶ କଲେ । ବ୍ରାହ୍ମଣମାନେ ପ୍ରାୟଶ୍ଚିତ୍ତ ବିଧାନ କଲେ । କନ୍ୟା କାଖରେ ପାଣିକଳସୀ ଦେଇ ତାକୁ ଚଲାଇ ଚଲାଇ ନିଆଗଲା । ତା' ପାଦରେ ଯେଉଁଠାରେ ରକ୍ତ ବାହାରିଲା, ରାଜା ସେଠାରେ ଗୋଟିଏ ପୁଷ୍କରିଣୀ ଖୋଳାଇଲେ । ତା'ର ଦୀପଦଣ୍ଡିରେ ଗୋଟାଏ ଗୃହ ନିର୍ମାଣ କରି କନ୍ୟାକୁ ସେଠାରେ ରଖାଇଲେ । ଏହି ପୁଷ୍କରିଣୀର ନାମ ଅଧୁନା କୌଶଲ୍ୟାଗଙ୍ଗ ହୋଇଛି ।

କବିବର ରାଧାନାଥ ମଧ୍ୟ 'ମାଦଳାପାଞ୍ଜି' ଅବଲମ୍ବନରେ 'ପାର୍ବତୀ' କାବ୍ୟ ଲେଖିଛନ୍ତି । ସେଥିରେ ଅବଶ୍ୟ କବିର କଳ୍ପନା ଓ ସ୍ୱାଧୀନତା ଅଛି, ମାତ୍ର 'ମାଦଳାପାଞ୍ଜି'ର ମୂଳନାମ ଓ ଘଟଣାବଳୀକୁ ଯଥାସାଧ୍ୟ ଅନୁସରଣ କରିଛନ୍ତି ।

ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି କିମ୍ବଦନ୍ତୀ ସତ୍ୟ ନୁହେଁ ବୋଲି ମତ ଦେଉଛନ୍ତି । ତାଙ୍କ ମତରେ ଧଉଳି ପାହାଡ଼ ନିକଟସ୍ଥ କୌଶଲ୍ୟାଗଙ୍ଗ ଗୋଟିଏ ପୁଷ୍କରିଣୀ ନୁହେଁ; ଏହା ଗୋଟିଏ କ୍ଷୁଦ୍ର ପ୍ରାକୃତିକ ହ୍ରଦ । 'ମାଦଳାପାଞ୍ଜି' ବର୍ଣ୍ଣିତ ଦୀପଦଣ୍ଡି ସେଠାରେ ନାହିଁ କି ପାଞ୍ଜିବର୍ଣ୍ଣିତ ଚୋଡ଼ଗଙ୍ଗଙ୍କ କନ୍ୟାପାଇଁ ନିର୍ମିତ ବାସଗୃହର ଧ୍ୱଂସାବଶେଷ ନାହିଁ । ସୁତରାଂ ଏହାକୁ ସତ୍ୟ ମନେ କରିବାର ଯଥେଷ୍ଟ କାରଣ ନାହିଁ ।

ପୁରୀର ଚୁଡ଼ଙ୍ଗସାହି ଚୋଡ଼ଗଙ୍ଗଙ୍କ ନାମ ଅନୁସାରେ ନାମିତ ବୋଲି ଡଃ ପାଣିଗ୍ରାହୀ ମତ ଦେଇଛନ୍ତି ।

## ଧର୍ମମତ

ଚୋଡ଼ଗଙ୍ଗଦେବ ଜଣେ ଧର୍ମପରାୟଣ ରାଜା ଥିଲେ । ସେ ଭଗବାନ୍ ଶିବଙ୍କର ପରମଉପାସକ ଥିଲେ । ୧୧୨୮ ଖ୍ରୀଷ୍ଟାବ୍ଦରେ ସେ ତାଙ୍କର ଭାଇ ପରମାର୍ଦ୍ଦିଦେବ ଓ ଆତ୍ମୀୟସ୍ୱଜନଙ୍କ ସହ ପୂର୍ବ ଗୋଦାବରୀ ଜିଲ୍ଲାରେ ଥିବା ଦ୍ରାକ୍ଷାଗ୍ରାମର ରାମେଶ୍ୱର ମହାଦେବ ମନ୍ଦିର ପରିଦର୍ଶନରେ ଯାଇଥିଲେ । ରାଣୀ ଜୟଗୋଣ୍ଡଚୋଡ଼ ମହାଦେବୀ, ରାଣୀ ଲାବଣ୍ୟବତୀଦେବୀ, ରାଣୀ କଲ୍ୟାଣଦେବୀ, ରାଣୀ ଶ୍ରୀୟାଦେବୀ, ରାଣୀ ପଦ୍ମଳାଦେବୀ, ରାଣୀ ରାଜଲାଦେବୀ, ରାଣୀ ଲୀଳାବତୀଦେବୀ ପ୍ରଭୃତି ବ୍ରାହ୍ମଣମାନଙ୍କୁ ଦାନ-ଦକ୍ଷିଣା ଦେଇଥିଲେ । ୧୧୩୫ ଖ୍ରୀଷ୍ଟାବ୍ଦରେ ଭିଜାଗାପଟମ ତାମ୍ରଶାସନରେ ସେ ନିଜକୁ ପରମମହେଶ୍ୱର ରୂପେ ଅଭିହିତ କରିଛନ୍ତି । ସୁତରାଂ ଚୋଡ଼ଗଙ୍ଗ ଯେ ଶୈବ ଥିଲେ, ଏଥିରେ ସନ୍ଦେହ ନାହିଁ ।

ଶୈବ ହେଲେ ମଧ୍ୟ ଚୋଡ଼ଗଙ୍ଗଦେବଙ୍କର ବୈଷ୍ଣବ ଧର୍ମ ପ୍ରତି ଗଭୀର ଅନୁରକ୍ତି ଥିଲା । ସେ ସମୟରେ ପୁରୁଷୋତ୍ତମ କ୍ଷେତ୍ର ଏକ ପ୍ରସିଦ୍ଧ ତୀର୍ଥସ୍ଥଳୀ ଥିଲା । ଓଡ଼ିଶା ଓ ଓଡ଼ିଶା ବାହାରୁ ବହୁ ଯାତ୍ରୀ ପୁରୁଷୋତ୍ତମଙ୍କ ଦର୍ଶନପାଇଁ ପୁରୀ ଆସୁଥିଲେ । ମାତ୍ର ମନ୍ଦିରଟି ଜୀର୍ଣ୍ଣ ଅବସ୍ଥାରେ ଥିଲା । ଚୋଡ଼ଗଙ୍ଗଦେବ ମନ୍ଦିରର ଦୁରବସ୍ଥା ଦେଖି ଏହାର ପୁନଃନିର୍ମାଣପାଇଁ ମନ ବଳାଇଲେ । ତାଙ୍କ ଯୁଦ୍ଧ ଅଭିଯାନ ପ୍ରାୟ ଶେଷ ହୋଇ ଆସିଥିଲା । ସେ ଆଉ ଯୁଦ୍ଧବିଗ୍ରହରେ ନ ମାତି ପୁରୀରେ ପୁରୁଷୋତ୍ତମଙ୍କପାଇଁ ଏକ ସୁବିଶାଳ ମନ୍ଦିର ନିର୍ମାଣ ଆରମ୍ଭ

କଲେ । ତୃତୀୟ ରାଜରାଜଦେବଙ୍କର ଦାସଗୋବା ତାମ୍ରଶାସନରୁ ପୁରୀ ଶ୍ରୀମନ୍ଦିର ଚୋଡ଼ଗଙ୍ଗଦେବଙ୍କଦ୍ୱାରା ନିର୍ମିତ ହୋଇଥିବା ଜଣାଯାଏ । ସମ୍ଭବତଃ, ଏହି ମନ୍ଦିର ନିର୍ମାଣ କାର୍ଯ୍ୟ ଚୋଡ଼ଗଙ୍ଗଦେବ ଆରମ୍ଭ କରିଥିଲେ; ମାତ୍ର ତାହା ତାଙ୍କର ପୁତ୍ର ବା ଉତ୍ତରାଧିକାରୀମାନଙ୍କଦ୍ୱାରା ଶେଷ ହୋଇଥିଲା । ଏହି ମନ୍ଦିର ବ୍ୟତୀତ ଚୋଡ଼ଗଙ୍ଗଦେବ ମୁଖଲିଙ୍ଗମ୍‌ର ଶ୍ରୀକୂର୍ମନ ଓ ସୀମାଞ୍ଚଳର କେତେକ ବିଷ୍ଣୁମନ୍ଦିର ନିର୍ମାଣ କରିଥିଲେ । ଏହି ସମୟରୁ ବୈଷ୍ଣବ ଧର୍ମର ଅଭ୍ୟୁଦୟ ହେଲା ବୋଲି କୁହାଯାଇପାରେ ।

## ଜଗନ୍ନାଥ ମନ୍ଦିର

ଜଗନ୍ନାଥ ମନ୍ଦିର କେବେ ନିର୍ମାଣ ହେଲା ସେ ବିଷୟରେ ବହୁ ମତ ଅଛି । ଏକ ପୁରାତନ କିମ୍ବଦନ୍ତୀ ଅନୁଯାୟୀ ରାଜା ଇନ୍ଦ୍ରଦ୍ୟୁମ୍ନ ଏହି ମନ୍ଦିର ନିର୍ମାଣ କରିଥିଲେ । ବାଲି ପୋତି ହୋଇପଡ଼ିଥିବା ମନ୍ଦିରର ପୁନରୁଦ୍ଧାର ଗାଲମାଧବ କରିଥିଲେ । 'ମାଦଳାପାଞ୍ଜି'ରୁ ଜଣାଯାଏ ଯେ ରାଜା ଯଯାତିକେଶରୀ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରିଥିଲେ । କିନ୍ତୁ ପରବର୍ତ୍ତୀକାଳରେ ତାହା ଭାଙ୍ଗି ପଡ଼ିଥିଲା । ଫଳରେ ରାଜା ତୃତୀୟ ଅନଙ୍ଗଭୀମଦେବ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ତିଆରି କରିଥିଲେ । ସେତେବେଳେ ତା'ର ଉଚ୍ଚତା ଥିଲା ୧୯୦ ଫୁଟ । ୧୨୦୫ ଖ୍ରୀଷ୍ଟାବ୍ଦରେ ଏହି ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷ ହୋଇଥିଲା । ଐତିହାସିକ ଷ୍ଟର୍‌ଲିଙ୍ଗଙ୍କ ମତରେ ଅନଙ୍ଗଭୀମଦେବ ୧୧୯୬ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଫର୍ଗୁସନ ମଧ୍ୟ ମନ୍ଦିର ଶିଳ୍ପ ଇତିହାସର ଦ୍ୱିତୀୟ ଭାଗରେ ୧୦୯୮ ଖ୍ରୀଷ୍ଟାବ୍ଦରେ ଶ୍ରୀମନ୍ଦିର ନିର୍ମାଣ ହୋଇଥିବା କଥା ଉଲ୍ଲେଖ କରିଛନ୍ତି । ରାଖାଲଦାସ ବାନାର୍ଜୀ ତାଙ୍କ ଓଡ଼ିଶା ଇତିହାସରେ ବର୍ତ୍ତମାନର ଶ୍ରୀମନ୍ଦିର ଚୋଡ଼ଗଙ୍ଗ ଅନନ୍ତବର୍ମାଙ୍କଦ୍ୱାରା ଏକାଦଶ ଶତାବ୍ଦୀରେ ହୋଇଥିବା ମତ ଦେଇଛନ୍ତି । ପୁରୀର ମନ୍ଦିର ୧୧୭୦ ଖ୍ରୀଷ୍ଟାବ୍ଦରେ ଆରମ୍ଭ ହୋଇ ୧୧୯୮ ଖ୍ରୀଷ୍ଟାବ୍ଦରେ ଶେଷ ହୋଇଥିବା ହଣ୍ଟର ଦର୍ଶାଇଛନ୍ତି । ଜଗବନ୍ଧୁ ସିଂହଙ୍କ ମତରେ ପୁରୀ ମନ୍ଦିର ୧୧୬୭ ଖ୍ରୀଷ୍ଟାବ୍ଦରେ ନିର୍ମାଣ କରାଯାଇଥିଲା । ପଦ୍ମଶ୍ରୀ ପରମାନନ୍ଦ ଆଚାର୍ଯ୍ୟ ଶ୍ରୀମନ୍ଦିର ନିର୍ମାଣ କାର୍ଯ୍ୟ ୧୧୩୩ରୁ ୧୧୪୫ ମଧ୍ୟରେ ହୋଇଥିଲା ବୋଲି ମତ ଦେଇଛନ୍ତି । ସତ୍ୟନାରାୟଣ ରାଜଗୁରୁଙ୍କ ମତରେ ଶ୍ରୀମନ୍ଦିର ଅନନ୍ତବର୍ମା ଚୋଡ଼ଗଙ୍ଗଦେବଙ୍କଦ୍ୱାରା ୧୨୦୦ ଶତାବ୍ଦୀର ପ୍ରଥମ ପାଦରେ ନିର୍ମିତ ହୋଇଥିଲା । ଗଙ୍ଗବଂଶୀୟ ରାଜା ତୃତୀୟ ରାଜରାଜଦେବଙ୍କର ଦାସଗୋବା ତାମ୍ରଶାସନରୁ ଜଗନ୍ନାଥ ମନ୍ଦିର କେବେ ହେଲା ତାହା ଠିକ୍‌ଭାବେ ଜଣାପଡ଼େ । ଏହି ତାମ୍ରଶାସନରୁ

ଜଣାଯାଏ ଯେ ଗଙ୍ଗେଶ୍ୱର ଏହି ମନ୍ଦିର ନିର୍ମାଣ କରିଥିଲେ । ଐତିହାସିକମାନେ ଏହି ଗଙ୍ଗେଶ୍ୱରଙ୍କୁ ଚୋଡ଼ଗଙ୍ଗଦେବ ବୋଲି ଚିହ୍ନିତ କରିଛନ୍ତି । ସେ ୧୧୩୫ ପର୍ଯ୍ୟନ୍ତ ଯୁଦ୍ଧ ଓ ରାଜ୍ୟ ଜୟରେ ବ୍ୟସ୍ତ ଥିଲେ । ସେ ୧୧୪୭ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସୁତରାଂ ୧୧୩୫ଠାରୁ ୧୧୪୭ ବର୍ଷ ମଧ୍ୟରେ ଜଗନ୍ନାଥ ମନ୍ଦିର ନିର୍ମାଣ ହୋଇଥିବା ସମ୍ଭବ ।

ସମ୍ଭବତଃ, ଯଯାତିଙ୍କ ସମୟରେ ପୁରୁଷୋତ୍ତମ ମନ୍ଦିର ନାମକ ଏକ କ୍ଷୁଦ୍ର ମନ୍ଦିର ଥିଲା । ତାହା କ୍ରମେ ଭଗ୍ନ ଅବସ୍ଥାକୁ ଆସିଥିଲା । ଚୋଡ଼ଗଙ୍ଗଦେବ ସେହି ସ୍ଥାନରେ ନୂତନ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରି ବିଗ୍ରହମାନଙ୍କୁ ପୁନଃସ୍ଥାପନ କଲେ । ଗଙ୍ଗରାଜ ତୃତୀୟ ଅନଙ୍ଗଭୀମଦେବ ପୁରୁଷୋତ୍ତମଙ୍କୁ ରାଷ୍ଟ୍ରଦେବତାର ସମ୍ମାନ ଦେଲେ । ସୂର୍ଯ୍ୟବଂଶୀ ଗଜପତି ରାଜାମାନଙ୍କ ସମୟରୁ ପୁରୁଷୋତ୍ତମ ପରିବର୍ତ୍ତେ ଜଗନ୍ନାଥ ନାମ ପ୍ରଚଳିତ ହେଲା । ପୁରୁଷୋତ୍ତମ ମନ୍ଦିର ଜଗନ୍ନାଥ ମନ୍ଦିର ନାମରେ ସୁବିଦିତ ହେଲା ।

ମନ୍ଦିରର ଚତୁଃପାର୍ଶ୍ୱରେ ଯେଉଁ ପ୍ରକାଣ୍ଡ ପ୍ରାଚୀର ଅଛି, ତାହା ମେଘନାଦ ପ୍ରାଚୀର ନାମରେ ଖ୍ୟାତ । ଏହାର ଲମ୍ବ ୬୬୫ ଫୁଟ ଓ ପ୍ରସ୍ଥ ୭୪୪ ଫୁଟ । ଉଚ୍ଚତା ୨୦ ଫୁଟରୁ ୨୪ ଫୁଟ ମଧ୍ୟରେ । ପ୍ରାଚୀରର ଚାରି ପାଖରେ ଚାରୋଟି ପ୍ରବେଶ ଦ୍ୱାର ଅଛି । ପୂର୍ବଦିଗର ଦ୍ୱାର ହେଉଛି ମୁଖ୍ୟ ଦ୍ୱାର । ଏହାକୁ ସିଂହଦ୍ୱାର କୁହାଯାଏ । ଉତ୍ତର, ଦକ୍ଷିଣ ଓ ପଶ୍ଚିମ ଦ୍ୱାରକୁ ଯଥାକ୍ରମେ ହସ୍ତୀଦ୍ୱାର, ଅଶ୍ୱଦ୍ୱାର ଓ ଖଞ୍ଜାଦ୍ୱାର କୁହାଯାଏ ।

ଠାକୁରଙ୍କୁ ଦର୍ଶନ କରିବାକୁ ଗଲାବେଳେ ପ୍ରଥମେ ପଡ଼େ ଅରୁଣସ୍ତମ୍ଭ । ଏହା କଳାମୁଗୁନି ପ୍ରସ୍ତରରେ ନିର୍ମିତ । ଏହାର ଉଚ୍ଚତା ପ୍ରାୟ ୧୦ମିଟର । ଏହି ସ୍ତମ୍ଭ ବା ଖମ୍ବଟିର ୧୬ଟି କୋଣ ବା ପାଖ ଅଛି । ୭ଫୁଟ ୯ଇଞ୍ଚ ଲମ୍ବ, ୬ଫୁଟ ଓସାର ଓ ୬ଫୁଟ ଉଚ୍ଚର ଏକ ପ୍ରସ୍ତର ନିର୍ମିତ ପୀଢ଼ି ଉପରେ ଖମ୍ବଟିକୁ ମଧ୍ୟବର୍ତ୍ତୀ ସ୍ଥାନରେ ରଖାଯାଇଅଛି । ପୀଠର ପତ୍ତନଠାରୁ ଅରୁଣଙ୍କ ଉଚ୍ଚତା ୩୩ଫୁଟ ୮ଇଞ୍ଚ । ଏହା ଗୋଟିଏ ପ୍ରସ୍ତରଖଣ୍ଡରେ ନିର୍ମିତ ବୋଲି କେହି କେହି ମତ ଦିଅନ୍ତି । ମାତ୍ର ଆଉ କେତେକ ଏହି ଖମ୍ବ କେତୋଟି ପ୍ରସ୍ତରଖଣ୍ଡର ସମ୍ମିଶ୍ରଣରେ ନିର୍ମିତ ବୋଲି ମତ ଦିଅନ୍ତି । ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ମରହଟ୍ଟାମାନଙ୍କ ସମୟରେ ଦିବ୍ୟସିଂହଦେବ କୋଣାର୍କରୁ ଆଣି ଏଠାରେ ସ୍ଥାପନା କରିଛନ୍ତି । ନିମ୍ନ ଭାଗସ୍ଥ ପୀଢ଼ିଟି ଚତୁଃସ୍ତରୀୟ । ଏହା ମନୁଷ୍ୟ, ପଶୁପକ୍ଷୀମାନଙ୍କ ବର୍ଣ୍ଣାଢ଼୍ୟ ଚିତ୍ରରେ ପରିପୂର୍ଣ୍ଣ । ଏହା କୋଣାର୍କ କାରୁକାର୍ଯ୍ୟର ପ୍ରତୀକ ।



ପୁରୀ ଜଗନ୍ନାଥ ମନ୍ଦିର

ସିଂହଦ୍ୱାର ଦେଇ ପ୍ରବେଶ ମାର୍ଗର ଅବ୍ୟବହିତ ପରେ ଆରମ୍ଭ ହୁଏ ବିଖ୍ୟାତ ବାଇଶ ପାହାଚ । ଏହି ପାହାଚଗୁଡ଼ିକ ପିତୃଶ୍ରାଦ୍ଧପାଇଁ ପ୍ରସିଦ୍ଧ । ହିନ୍ଦୁ ବିଶ୍ୱାସରେ ଦେବଲୋକକୁ ଯିବା ପୂର୍ବରୁ ପିତୃପୁରୁଷର ଆଶୀର୍ବାଦ ନେବାକୁ ପଡ଼ିଥାଏ । ତେଣୁ ବାଇଶ ପାହାଚର ଯେ ଗୁରୁତ୍ୱ ଅଛି, ଏହା ନିଃସନ୍ଦେହ । ବିଶେଷତଃ, ଦୀପାବଳି ଅମାବାସ୍ୟା ପ୍ରଭୃତିରେ ବାଇଶ ପାହାଚ ଜନସମାଗମରେ ଭରପୂର ହୋଇଉଠେ । ଏହି ୪୪୫ ଫୁଟ ଲମ୍ୱ, ୪୪୫ ଫୁଟ ଚଉଡ଼ା ଓ ୨୦ଫୁଟ ଉଚ୍ଚତା ବିଶିଷ୍ଟ ଜଗନ୍ନାଥାଦି ବିଗ୍ରହମାନଙ୍କର ଅହରହ ସ୍ପର୍ଶ ପାଉଥିବା ମୁକ୍ତିପ୍ରଦାୟକ ବାଇଶ ପାହାଚ ଛୁଇଁଦେଲେ ଯେକୌଣସି ବ୍ୟକ୍ତିର ମନରେ ଅପୂର୍ବ ଐଶ୍ୱରିକ ପ୍ରେମ ଓ ଭକ୍ତିଭାବର ଉଦ୍ରେକ ହୁଏ ।

ବାଇଶ ପାହାଚ ଡେଇଁଗଲେ ପଡ଼େ ମନ୍ଦିରର ଭିତର ବେଢ଼ା । ଏହା ମଧ୍ୟରେ ଅଛି ବିମାନ, ଜଗମୋହନ, ନାଟମଣ୍ଡପ ଓ ଭୋଗମଣ୍ଡପ ।

ବିମାନଟି ୮ଫୁଟ ଲମ୍ବ ଓ ୮ଫୁଟ ଚଉଡ଼ାର ଏକ ବର୍ଗାକାର ପିଷ୍ଟ ଉପରେ ଦଣ୍ଡାୟମାନ । ଏହାର ଉଚ୍ଚତା ୨୧୪ ଫୁଟ ୮ଇଞ୍ଚ । ଏହି ବିମାନ ପଞ୍ଚରଥ ଶୈଳୀରେ ଗଢ଼ାହୋଇଛି । ଏହାର ପ୍ରତ୍ୟେକ ପାର୍ଶ୍ୱରେ ରାହାପାଗ, ଦୁଇ ଅନୁରାହାପାଗ ଓ ଦୁଇ କୌଣିକପାଗ ଅଛି । କୌଣିକପାଗ ଅଙ୍ଗଶିଖରମାନଙ୍କଦ୍ୱାରା ମଣ୍ଡିତ ହୋଇଅଛି । ଦକ୍ଷିଣ, ପଶ୍ଚିମ ଓ ଉତ୍ତର ଦିଗର ରାହାପାଗରେ ଯଥାକ୍ରମେ ବରାହ, ନରସିଂହ ଓ ତ୍ରିବିକ୍ରମ ପାର୍ଶ୍ୱଦେବତା ଭାବେ ଅଛନ୍ତି । ପରେ ପାର୍ଶ୍ୱଦେବତାମାନଙ୍କ ସ୍ଥାନରେ ତିନୋଟି ଛୋଟ ମନ୍ଦିର ନିର୍ମିତ ହୋଇଅଛି । ପାର୍ଶ୍ୱଦେବତାମାନେ ଏବେବି ଅକ୍ଷତ ଅବସ୍ଥାରେ ଅଛନ୍ତି । ଏହାର କାରୁକାର୍ଯ୍ୟ ଅତୀବ ରମଣୀୟ । ଏହା କୋଣାର୍କ ବା ଲିଙ୍ଗରାଜ ମନ୍ଦିରର କାରୁକାର୍ଯ୍ୟ ସହିତ ତୁଳନୀୟ ।

ବିମାନ ବା ମୁଖ୍ୟ ମନ୍ଦିରକୁ ଲାଗି ମୁଖଶାଳା ବା ଜଗମୋହନ । ଏଠି ଭକ୍ତ ଠିଆ ହୋଇ ସରଳ, ତରଳ ପ୍ରାଣରେ ଜଗନ୍ନାଥଙ୍କୁ ଦର୍ଶନ କରେ । ଏ ସ୍ଥାନର ମହିମା ଦେବତାମାନଙ୍କୁ ମଧ୍ୟ ଅଗୋଚର । ସେଇଥିପାଇଁ ଓଡ଼ିଆ କବି ଗାଏ –

''ଜଗମୋହନ ଘର
ଦେବଙ୍କୁ ଆଗୋଚର
ପାପୀଙ୍କୁ ଦିଶେ ପଥର'' ।

ଜଗମୋହନଟି ପଞ୍ଚରଥପୀଢ଼ ଦେଉଳ । ୬ଫୁଟ ୩ଇଞ୍ଚ ଉଚ୍ଚ ଏକ ପୀଠ ଉପରେ ଜଗମୋହନ ନିର୍ମିତ ହୋଇଛି । ତଳ ଜଙ୍ଘାର ଉଚ୍ଚତା ପ୍ରାୟ ଆଠ ଫୁଟ । କୂର୍ମବେଢ଼ାର ଚଟାଣ ଉପରୁ ଜଗମୋହନର ଉଚ୍ଚତା ପ୍ରାୟ ୧୦୦ଫୁଟ । ଜଗମୋହନର ଦୀର୍ଘ ଓ ପ୍ରସ୍ଥ ପ୍ରାୟ ୮୦ ଫୁଟ । ଏ ମନ୍ଦିରଟିର ତିନୋଟି ଦ୍ୱାର ଅଛି । ଉତ୍ତର ଦ୍ୱାରଟି ମହାପ୍ରଭୁଙ୍କର ଭଣ୍ଡାରଘରକୁ ଲାଗିଛି । ଦ୍ୱାର ଉପରୁ ମନ୍ଦିର ଭିତରକୁ ପାଦ ଦେଲେ ଠିକ୍ ଦକ୍ଷିଣପଟକୁ ପଡ଼େ ଭଣ୍ଡାରଘର । ବାମପଟେ ପଡ଼େ ଶଯ୍ୟାଗୃହ । ଏଇ ଶଯ୍ୟାଗୃହରେ ତିନୋଟି ସୁସଜ୍ଜିତ ଶଯ୍ୟା ଦେଖାଯାଏ । ଏବେ ଉତ୍ତର ଦ୍ୱାରଟି ସଂପୂର୍ଣ୍ଣ ବନ୍ଦ ହୋଇଯାଇଛି । ଦକ୍ଷିଣଦ୍ୱାର ଦେଇ ଓହ୍ଲାଇପଡ଼ିଲେ ମୁକ୍ତିମଣ୍ଡପ ପଡ଼େ । ତୃତୀୟ ଦ୍ୱାରଟି ହେଉଛି ଜୟବିଜୟ ଦ୍ୱାର । ନାଟମନ୍ଦିରରୁ ଏଇ ଦ୍ୱାର ଦେଇ ଜଗମୋହନକୁ ଆସି ହୁଏ । ଜୟବିଜୟ ଦ୍ୱାରର ପାହାଚ ଉପରୁ ତିନି ଠାକୁରଙ୍କୁ ପରିଷ୍କାର ଦେଖିହୁଏ । ଦ୍ୱାର ଦୁଇ ପଟ ଓ ଉପରିଭାଗ ସୁନ୍ଦର ମୁଗୁନି ପଥରର ନାନା କାରୁକାର୍ଯ୍ୟଦ୍ୱାରା ସୁଶୋଭିତ ।

ଜଗମୋହନଠାରୁ ବିମାନ ମଧ୍ୟକୁ ଅର୍ଥାତ୍ ଜଗନ୍ନାଥଙ୍କ ସିଂହାସନ ନିକଟକୁ ସିଧାସଳଖ ଯାଇହୁଏ ନାହିଁ । ଜଗମୋହନର ଦକ୍ଷିଣ ଦ୍ୱାର ପାଖରୁ ଏକ ଗଳିରାସ୍ତା ଦେଇ ଭକ୍ତମାନେ ଜଗନ୍ନାଥଙ୍କର ରତ୍ନ ସିଂହାସନ ପରିକ୍ରମା କରିବାକୁ ଯାଆନ୍ତି ।

ଜଗମୋହନର ବାହାର ପଟରେ ଚୂନବାଲିର ଲେପ ଦିଆଯାଇଛି । ଚୂନବାଲି ଲେପଥିବା ସ୍ତ୍ରୀ-ପୁରୁଷଙ୍କର ବିଭିନ୍ନ ବନ୍ଧମାନ ଦେଖିବାକୁ ମିଳେ । ଏବେ ଚୂନ ଛଡ଼ାଯିବା ପରେ ତହିଁରୁ ଅଦ୍ଭୁତ କାରୁକାର୍ଯ୍ୟର ସୂଚନା ମିଳୁଛି ।

ଜଗମୋହନ ଭିତର ସମ୍ପୂର୍ଣ୍ଣ ନିରାଡ଼ମ୍ବର । ଏଥି ମଧ୍ୟରେ ଚିତ୍ର ବା କାରୁକାର୍ଯ୍ୟ ଦେଖାଯାଏ ନାହିଁ । ନାଟମନ୍ଦିର ଜଗମୋହନକୁ ଲାଗି ଏକ ମଣ୍ଡପ । ଏହା ମୁଖ୍ୟ ମନ୍ଦିରର ଏକ ଅଂଶବିଶେଷ ହେଲେ ମଧ୍ୟ ପରବର୍ତ୍ତୀକାଳରେ ଏହା ନିର୍ମିତ ହୋଇଅଛି । 'ମାଦଳାପାଞ୍ଜି' ଅନୁସାରେ ପୁରୁଷୋତ୍ତମଦେବ ନାଟମନ୍ଦିର ଓ ଭୋଗମଣ୍ଡପ ନିର୍ମାଣ କରିଥିଲେ । ଐତିହାସିକ ରାଜେନ୍ଦ୍ରଲାଲଙ୍କ କହିବା ଅନୁସାରେ ପୁରୀର ଭୋଗମଣ୍ଡପ ମରହଟ୍ଟାଙ୍କଦ୍ୱାରା ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ନିର୍ମିତ ହୋଇଥିଲା । ନାଟମନ୍ଦିର ଭୋଗମଣ୍ଡପର ସାମସମୟିକ କୀର୍ତ୍ତି ବୋଲି କେହି କେହି ମତ ଦିଅନ୍ତି । ତେବେ ଦେବଦାସୀ ପ୍ରଥା ପ୍ରଚଳିତ ହେଲା ବେଳେ ନାଟମନ୍ଦିରର ନିର୍ମାଣ ଆବଶ୍ୟକ ପଡ଼ିଲା ବୋଲି କେହି କେହି ମତ ଦେଇଥାନ୍ତି ।

ମୁଖ୍ୟ ଦେଉଳ ବିମାନରେଖା ଦେଉଳ ହୋଇଥିଲାବେଳେ ନାଟମନ୍ଦିର ଓ ମୁଖଶାଳା ପୀଢ଼ଦେଉଳ ଅଟେ ।

ନାଟମନ୍ଦିରର ପୂର୍ବ-ପଶ୍ଚିମ ଚାରି ଧାଡ଼ିରେ ଷୋଳଟି ଖମ୍ବ ଅଛି । ଏହି ଖମ୍ବ ଉପରେ ପୀଢ଼ ଛାତ ହୋଇଛି । ନାଟମନ୍ଦିର ପୂର୍ବ-ପଶ୍ଚିମ ଲମ୍ବ ପ୍ରାୟ ୬୭ଫୁଟ । ଦକ୍ଷିଣ-ଉତ୍ତର ମଧ୍ୟ ଲମ୍ବ ୬୭ ଫୁଟ । ଚାରିକୋଣର ଖମ୍ବମାନଙ୍କର ଓସାର ଛଅ ଫୁଟ । ମଝିର ଓସାର ପ୍ରାୟ ୪ଫୁଟ ୨ ଇଞ୍ଚ । ଦକ୍ଷିଣ ଓ ଉତ୍ତରକୁ ଦୁଇଟି ଦ୍ୱାର ଅଛି । ଏହି ଦୁଆରକୁ ଲାଗି ପାହାଚମାନ ଅଛି । ଦକ୍ଷିଣପୂର୍ବ ଓ ଦକ୍ଷିଣପଶ୍ଚିମରେ ମଧ୍ୟ ଦୁଇଟି ଦ୍ୱାର ଅଛି । ଦକ୍ଷିଣ-ପୂର୍ବଦ୍ୱାର ଦେଇ ରୋଷଘରକୁ ଯାଇହୁଏ । ଭୋଗପାଇଁ ରୋଷଘରୁ ଭୋଗସାମଗ୍ରୀ ଏହି ବାଟେ ମନ୍ଦିର ଭିତରକୁ ଯାଏ । ଏହି ରାସ୍ତାର ବାମ ପଟେ ପଡ଼େ ଗରୁଡ଼ସ୍ତମ୍ଭ । ଏହି ସ୍ତମ୍ଭ ପାଖରେ ଦୀପ ଦିଆହୁଏ । ଗରୁଡ଼ଙ୍କ ଦକ୍ଷିଣ-ପୂର୍ବ କାନ୍ଥରେ ଓ ଭିତର ଛାତରେ ନାନା ବର୍ଣ୍ଣର ଚିତ୍ର ଅଙ୍କାଯାଇଛି । ଗରୁଡ଼ଙ୍କ ଦକ୍ଷିଣ-ପୂର୍ବ କାନ୍ଥରେ କାଞ୍ଚୀଯାତ୍ରାର କେତୋଟି ମୂର୍ତ୍ତି ଚୂନରେ ତିଆରି ହୋଇଛି । ଧଳା ଘୋଡ଼ାରେ ବଳଭଦ୍ର, ଜଗନ୍ନାଥ କଳାଘୋଡ଼ାରେ ଚଢ଼ି କାଞ୍ଚୀ ଅଭିଯାନବେଳେ ଯାଉଥିବା ବାଟରେ ମୁଦି ବନ୍ଧାଦେଇ ମାଣିକ ଗଉଡୁଣୀଠାରୁ ଦହି ଖାଇବା ଦୃଶ୍ୟ ଏଥିରେ ଦିଆଯାଇଛି ।

ମନ୍ଦିର ନିର୍ମାତା ଚୋଡ଼ଗଙ୍ଗଦେବ ଦାକ୍ଷିଣାତ୍ୟ ରୀତି ଅନୁସାରେ ଶ୍ରୀମନ୍ଦିରରେ ଦେବଦାସୀ ନୃତ୍ୟ ଓ ସଙ୍ଗୀତର ଆୟୋଜନ କରିଥିଲେ । ଶ୍ରୀମନ୍ଦିରରେ ଜଗନ୍ନାଥଙ୍କ ସେବାକାଳେ ଶ୍ରୀଗୀତଗୋବିନ୍ଦ ଗାନ ପ୍ରତ୍ୟହ ହେଉଥିଲା । ଗଜପତି ପ୍ରତାପରୁଦ୍ରଦେବଙ୍କ ସମୟରେ ରାମାନନ୍ଦ ନିଜ ରଚିତ 'ଜଗନ୍ନାଥବଲ୍ଲଭ' ନାମକ ଏକ ନାଟକ ଲେଖି ନାଟମନ୍ଦିରରେ ଅଭିନୟ କରି ଦେଖାଇଥିବା ଜଣାଯାଏ । ଜଗନ୍ନାଥଙ୍କର ବହୁ ଉତ୍ସବରେ ନୃତ୍ୟ, ବାଦ୍ୟ ଆଦିର ମିଳିତ ସମାରୋହ ହିଁ ନାଟମନ୍ଦିରର ଗୁରୁତ୍ୱ ପ୍ରତିପାଦନ କରିଥାଏ ।

ଜଗନ୍ନାଥ ମନ୍ଦିରର ଭୋଗମଣ୍ଡପଟି ଲୋହିତବର୍ଣ୍ଣର ପ୍ରସ୍ତରରେ ନିର୍ମିତ । ଏହା ମଧ୍ୟ ଏକ ପୀଢ଼ଦେଉଳ । ଏଠାରେ ଜଗନ୍ନାଥଙ୍କୁ ଭୋଗ ଦିଆଯାଏ । ଏହା ମରହଟ୍ଟାମାନଙ୍କ ସମୟରେ ନିର୍ମିତ ହୋଇଥିଲା ବୋଲି କେହି କେହି ମତ ଦିଅନ୍ତି ।

ଭୋଗମଣ୍ଡପରେ ଚୂନ ଓ ବାଲିର ଲେପ ଦିଆଯାଇ ନାହିଁ । ତଥାପି ମୂର୍ତ୍ତିଗୁଡ଼ିକ ଅକ୍ଷତ ଅବସ୍ଥାରେ ଅଛନ୍ତି । ଏହାର ଦ୍ୱାରବନ୍ଧରେ ଖୋଦିତ ନବଗ୍ରହ ମୂର୍ତ୍ତି ଅତ୍ୟନ୍ତ କମନୀୟ । ମଣ୍ଡପର ବାହାର ପ୍ରାଚୀରରେ ବହୁ ମୂର୍ତ୍ତି ଖୋଦିତ ହୋଇଅଛି । ସେଗୁଡ଼ିକ ମଧ୍ୟରେ ଶ୍ରୀକୃଷ୍ଣଙ୍କ ରଙ୍ଗଖେଳ, ଗୋରୁମାନଙ୍କ ମଧ୍ୟରେ ରହି ବଂଶୀବାଦନ, ନୌକାବିହାର ପ୍ରଭୃତି ପ୍ରଧାନ । ଏହାଛଡ଼ା ଏଥିରେ ଭଗବାନ୍ ରାମଚନ୍ଦ୍ର, ଶିବ ଓ ଇନ୍ଦ୍ରଙ୍କ ମୂର୍ତ୍ତି ଦେଖିବାକୁ ମିଳେ ।

ପ୍ରଧାନ ମନ୍ଦିର ଛାଡ଼ିଦେଲେ ଅନ୍ୟାନ୍ୟ ବହୁ ଦେବଦେବୀଙ୍କର ମନ୍ଦିର ମଧ୍ୟ ଏଠାରେ ଅଛି । ତନ୍ମଧ୍ୟରେ ବିମଳା, କମଳା, ଲକ୍ଷ୍ମୀ, ନବଗ୍ରହ ପ୍ରଭୃତି ମନ୍ଦିର ପ୍ରଧାନ । ବିମଳାଙ୍କ ମନ୍ଦିର ପ୍ରତାପରୁଦ୍ରଦେବଙ୍କ ସମୟରେ ହୋଇଥିଲା ବୋଲି କେହି କେହି ମତ ଦିଅନ୍ତି । ଚୋଡ଼ଗଙ୍ଗଦେବ ମୁଖ୍ୟ ମନ୍ଦିର ସହ ଲକ୍ଷ୍ମୀମନ୍ଦିର ନିର୍ମାଣ କରିଥିଲେ ବୋଲି ଜଣାଯାଏ ।

ଶ୍ରୀମନ୍ଦିରରେ ବିଗ୍ରହ ବା ମୂର୍ତ୍ତି ଭଳି ନାନା କୀର୍ତ୍ତିମାନ ବିଦ୍ୟମାନ, ଯାହାକି ଶ୍ରୀଜଗନ୍ନାଥଙ୍କ ଚେତନା ପରି ଚିର ରହସ୍ୟମୟ ହୋଇ ରହିଆସିଛନ୍ତି । ଏହି କୀର୍ତ୍ତିମାନଙ୍କ ମଧ୍ୟରେ ମୁକ୍ତିମଣ୍ଡପ ଅନ୍ୟତମ ।

ମୁକ୍ତିମଣ୍ଡପ ମାନସିଂହଙ୍କ ପତ୍ନୀ ଗୌରୀରାଣୀଙ୍କଦ୍ୱାରା ୧୫୯୨ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ଷୋଳଟି ସ୍ତମ୍ଭ ଉପରେ ମଣ୍ଡପର ଛାତ ନ୍ୟସ୍ତ ଅଛି । ଏହି ମଣ୍ଡପରେ ବେଦଜ୍ଞ ବ୍ରାହ୍ମଣମଣ୍ଡଳୀ ବେଦାଦିର ନିୟମିତ ଆଲୋଚନା କରୁଥିଲେ । ଗଜପତି ରାଜାମାନଙ୍କର ଶାସନ ସଂକ୍ରାନ୍ତୀୟ ନୀତି ମଧ୍ୟ ଏଠାରେ ଆଲୋଚିତ ହୋଇ ସ୍ଥିର ହେଉଥିଲା । ରାଜ୍ୟର ଯେକୌଣସି କ୍ଷେତ୍ରରେ ଆଧ୍ୟାତ୍ମିକ ତଥା

ସାମାଜିକ ସମସ୍ୟାର ସମାଧାନ ଏହି କ୍ଷେତ୍ରରେ ହେଉଥିଲା । ପାରିବାରିକ, ଜାତିଗତ ତଥା ଗ୍ରାମୀଣ ବିବାଦ ମଧ୍ୟ ମୁକ୍ତିମଣ୍ଡପର ଆଲୋଚନା ପରିସରଭୁକ୍ତ ଥିଲା । ଗଜପତି ରାଜାମାନେ ଏହାର ବିଚାରକୁ ସମ୍ମାନ ଦେଉଥିଲେ । ତେଣୁ ସମଗ୍ର ସମାଜ ଏହି ପଣ୍ଡିତସଭାଦ୍ୱାରା ନିୟନ୍ତ୍ରିତ ହେଉଥିଲା କହିଲେ ଚଳେ । କିନ୍ତୁ କାଳକ୍ରମେ ରାଜଶକ୍ତି ଦୁର୍ବଳ ହୋଇପଡ଼ିବା ସଙ୍ଗେ ସଙ୍ଗେ ଏହା ମଧ୍ୟ ଶକ୍ତିହୀନ ହୋଇପଡ଼ିଲା । ଧର୍ମର ଭୂମିକା ଆଜିର ସମାଜରେ ନ୍ୟୂନ ହୋଇପଡ଼ିଥିଲାବେଳେ ମୁକ୍ତିମଣ୍ଡପ ଭଳି ଏକ ଆଧ୍ୟାତ୍ମିକ ସଂସ୍ଥାର ସ୍ଥାନ ମଧ୍ୟ ଗୌଣ ହୋଇପଡ଼ିବା ସ୍ୱାଭାବିକ । ତେବେ ୧୮୦୫ ଖ୍ରୀଷ୍ଟାବ୍ଦରେ କଲେକ୍ଟର ଗ୍ରୋମ ସେବକ ନିର୍ବାଚନରେ ମୁକ୍ତିମଣ୍ଡପର ଅଖଣ୍ଡ କ୍ଷମତାକୁ ସ୍ୱୀକାର କରିଥିଲେ ଓ ମୁକ୍ତିମଣ୍ଡପଦ୍ୱାରା ନିର୍ବାଚିତ ସେବକମାନେ ହିଁ ଶ୍ରୀମନ୍ଦିରରେ ସେବା ପୂଜା ନିମନ୍ତେ ନିଯୁକ୍ତି ପାଇବାକୁ ହକଦାର ବୋଲି ଉପରିସ୍ଥ କର୍ମକର୍ତ୍ତାମାନଙ୍କୁ ଜଣାଇ ଦେଇଥିଲେ । ଏବେ ପଞ୍ଜିକାରମାନଙ୍କୁ ଅନୁମତିଦେବା ମଧ୍ୟରେ ହିଁ ମୁକ୍ତିମଣ୍ଡପର କାର୍ଯ୍ୟ ସୀମିତ ରହିଛି ।

ଶ୍ରୀମନ୍ଦିରର ଆଉ ଏକ ପବିତ୍ରତମ ଓ ପ୍ରାଚୀନତମ ବସ୍ତୁ ହେଉଛି କଳ୍ପବଟ । ବିରାଟ କାଳ ପରିଧିରେ ବଟବୃକ୍ଷଟି ଜୀବିତ ରହିଥିବାରୁ ଏହାକୁ 'କଳ୍ପବଟ' କୁହାଯାଏ ବୋଲି ହିନ୍ଦୁମାନେ ବିଶ୍ୱାସ କରନ୍ତି । ଏହି ବଟ ସମସ୍ତ ପ୍ରକାର କାମନାପୂରଣକାରୀ ବୃକ୍ଷ ହୋଇଥିବାରୁ ଏହାର ନାମ କଳ୍ପବଟ ବୋଲି ଆଉ କେହି କେହି ମତ ଦିଅନ୍ତି । ମୁକ୍ତିମଣ୍ଡପଠାରୁ ସତ୍ୟନାରାୟଣଙ୍କ ପର୍ଯ୍ୟନ୍ତ ପରିବ୍ୟାପ୍ତ ସ୍ଥାନରେ ତିନୋଟି ବଟବୃକ୍ଷ ଦେଖାଯାଏ । ମାତ୍ର ସତ୍ୟନାରାୟଣଙ୍କ ପଶ୍ଚିମକୁ ଓହଳି ସହଦେବଙ୍କ ଉତ୍ତରକୁ ଯେଉଁ ବଟଗଛ ଅଛି ତାହାହିଁ କଳ୍ପବଟର ଶାଖା । ଏହାର ଚାରିପଟେ ଗୋଟିଏ ପଥର ଚାନ୍ଦିନୀ ତିଆରି ହୋଇଛି ।

ଏହି କଳ୍ପବଟର ସୁଶୀତଳ ଛାୟା ଭକ୍ତ ହୃଦୟରେ ଚନ୍ଦନର ଲେପ ଦିଏ । କାମନା ପୂରଣପାଇଁ ଏଠାରେ ଜନସମାଗମ ବିଶେଷ ହୁଏ । 'ବ୍ରହ୍ମପୁରାଣ'ରୁ ଜଣାଯାଏ ଯେ କଳ୍ପବଟକୁ ନଅ ଥର ପ୍ରଦକ୍ଷିଣ କଲେ ରାଜସୂୟ ଓ ଅଶ୍ୱମେଧ ଯଜ୍ଞର ଫଳ ମିଳେ । ଏହାଦ୍ୱାରା ମାନବ ଉଦ୍ଧାର ପାଇ ବିଷ୍ଣୁଲୋକକୁ ଗମନ କରେ । କଳ୍ପବଟକୁ ଦର୍ଶନ ନ କଲେ ଶ୍ରୀକ୍ଷେତ୍ର ଯାତ୍ରା ସାର୍ଥକ ହୁଏ ନାହିଁ ବୋଲି ସମସ୍ତଙ୍କ ବଦ୍ଧମୂଳ ଧାରଣା ରହିଛି ।

ଉତ୍କଳରେ ବୃକ୍ଷ ପରି ସମୁଦ୍ର ଜଳାଶୟ ପ୍ରଭୃତି ଆଧ୍ୟାତ୍ମିକ ଚେତନାରେ ଅନୁରଞ୍ଜିତ ହୋଇଅଛି । ରୋହିଣୀକୁଣ୍ଡ ସେହି ବିଶ୍ୱାସର ଭାବଧାରା ଉପରେ ପ୍ରତିଷ୍ଠିତ । ବିମଳାଙ୍କ ମନ୍ଦିର ପାଖରେ ଏହା ଅବସ୍ଥିତ । ପୂର୍ବର କୁଣ୍ଡ ବର୍ତ୍ତମାନ

ଲୁପ୍ତ । ତେଣୁ ଏହାକୁ କେହି କେହି ଗୁପ୍ତଗଙ୍ଗା କହନ୍ତି । ଚତୁର୍ଭୁଜ କାକର ଛୋଟ ପଥରମୂର୍ତ୍ତିଟିଏ ଏହି କୁଣ୍ଡ ମଧ୍ୟରେ ରଖାଯାଇଛି । ପୂଜକ ସେଥିରେ କିଛି ପାଣି ପକାଇ ତାହାକୁ କୁଣ୍ଡର ପାଣି କହି ଭକ୍ତଙ୍କ ଅଙ୍ଗରେ ସିଞ୍ଚନ୍ତି । ପ୍ରବାଦ ଅଛି ଯେ, ପ୍ରଳୟ· କାଳରେ ଏହି କୁଣ୍ଡରୁ ଜଳ ବାହାରି ସାରା ଜଗତ୍‌କୁ ବୁଡ଼ାଇଦିଏ । ସେହିପରି ନୂତନ ସୃଷ୍ଟି ବେଳେ ଅପରିମିତ ଜଳରାଶି କୁଣ୍ଡ ମଧ୍ୟରେ ପ୍ରବେଶ କରିଥାଏ । 'ଇନ୍ଦ୍ର ନୀଳମଣି ପୁରାଣ'ରୁ ଜଣାଯାଏ ଯେ ଏଥିରେ ଏକ କାକ ନିପତିତ ହୋଇ ଶାପରୁ ମୁକ୍ତି ପାଇ ନାରାୟଣ ରୂପ ପ୍ରାପ୍ତି ହେଲା । ଏହି ରୋହିଣୀ କୁଣ୍ଡରେ ସ୍ନାନ କଲେ ମଣିଷମାନେ ବୈକୁଣ୍ଠ ଲୋକକୁ ଗମନ କରନ୍ତି ବୋଲି ଲୋକମାନଙ୍କର ବିଶ୍ୱାସ ରହିଛି ।

ଶ୍ରୀମନ୍ଦିରର ଉତ୍ତରଦ୍ୱାର ବା ଖଞ୍ଜାଦ୍ୱାରର ଉତ୍ତରଭାଗରେ ପଶ୍ଚିମକୁ ଶ୍ରୀବିଗ୍ରହଙ୍କର ପ୍ରାଚୀନତମ ଆବିର୍ଭାବ ସ୍ଥାନକୁ କୋଇଲି ବୈକୁଣ୍ଠ କୁହାଯାଏ । ଏହାକୁ କେହି କେହି କୈବଲ୍ୟ ବୈକୁଣ୍ଠ ନାମରେ ଅଭିହିତ କରିଥାନ୍ତି । କୈବଲ୍ୟ ହେଉଛି ଜଗନ୍ନାଥଙ୍କ ମହାପ୍ରସାଦ । ଏହି ମହାପ୍ରସାଦ ସର୍ବପାପହର ଓ ମୁକ୍ତିପ୍ରଦାୟକ । ତେଣୁ ଏହାକୁ କୈବଲ୍ୟ ବୈକୁଣ୍ଠ କହିବା ଯଥାର୍ଥ ।

ଏହି କୋଇଲି ବୈକୁଣ୍ଠରେ ଦ୍ୱିତଳ ପ୍ରାସାଦ ଅଛି । ଏଠାରେ ମିଳିତ ଅନ୍ନଦାନ କମିଟି ଯଥାକ୍ରମେ ସୂପକାର, ପ୍ରତିହାରୀ, ଦଇତାମାନଙ୍କୁ ନିଯୁକ୍ତ କରି ଦୈନନ୍ଦିନ ଆଟିକାବନ୍ଧନ କାର୍ଯ୍ୟ ଚଳାନ୍ତି । ନବକଳେବର ସମୟରେ ଠାକୁରଙ୍କ ଦାରୁ ସଂଗୃହୀତ ହୋଇ ଏହି ଉତ୍ତରଦ୍ୱାରର ପ୍ରବେଶ ପଥରେ କୋଇଲି ବୈକୁଣ୍ଠକୁ ନିଆଯାଏ । ଏଠାରେ ପୂଜା ଆରାଧନା ପରେ ଚତୁର୍ଦ୍ଧାମୂର୍ତ୍ତି ଗଠନ କାର୍ଯ୍ୟ ଆରମ୍ଭ ହୁଏ । କୋଇଲିରୂପୀ ପ୍ରଭୁ ଜଗନ୍ନାଥଙ୍କ ଜୀବ ବ୍ରହ୍ମ ପରମାତ୍ମାଙ୍କ ସହିତ ଏଠାରେ ବିଲୀନ ହୋଇ କୈବଲ୍ୟ ବା ବୈକୁଣ୍ଠପ୍ରାପ୍ତି ହୋଇଥିବାରୁ ଏହାର ନାମ କୋଇଲି ବୈକୁଣ୍ଠ ହେବା ସମ୍ଭବ ।

ଶ୍ରୀମନ୍ଦିରର ଆନନ୍ଦ ବଜାର (ଯେଉଁଠାରେ ମହାପ୍ରସାଦ ବିକ୍ରୟ ହୁଏ) ନିକଟରେ ଅବସ୍ଥିତ ସ୍ନାନମଣ୍ଡପ । ଏହାର ଦୈର୍ଘ୍ୟ ପ୍ରସ୍ଥ ପ୍ରାୟ ୭୫ଫୁଟ । ଏହା ଉପରେ ବିଗ୍ରହମାନଙ୍କପାଇଁ ପୃଥକ୍ ସିଂହାସନ ନିର୍ମାଣ କରାଯାଇଛି । ସିଂହାସନକୁ ଯିବାପାଇଁ ମଧ୍ୟ ବେଦି ଉପରେ ପାହାଚମାନ ଅଛି । ମଣ୍ଡପ ଉପରକୁ ଆନନ୍ଦ ବଜାରରୁ ଯିବାପାଇଁ ସେହିପରି ଉତ୍ତର ଓ ଦକ୍ଷିଣ ଦିଗରେ ପାହାଚମାନ ଅଛି । ଏହି ମଣ୍ଡପଟି ଅତି ଉଚ୍ଚ ହୋଇଥିବାରୁ ସିଂହଦ୍ୱାରର ଯେକୌଣସି ଅଂଶରୁ ପୂରା ମଣ୍ଡପ ଦେଖାଯାଏ । କେବଳ ରଥଯାତ୍ରାରେ ଶ୍ରୀଜଗନ୍ନାଥ ମନ୍ଦିରରୁ ବାହାରି ବିଜେ ହୋଇ ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କୁ ଯେ ଦେଖାଦିଅନ୍ତି ତା'

ନୁହେଁ, ଏହି ସ୍ନାନପୂର୍ଣ୍ଣିମା ଦିନ ଶ୍ରୀମନ୍ଦିରର ବେଷ୍ଟନୀ ଭିତରେ ଥାଇ ସମସ୍ତଙ୍କୁ ଦର୍ଶନ ଦିଅନ୍ତି । ଏହିଦିନ ମଧ୍ୟ ବିଗ୍ରହମାନଙ୍କ ଆଗରେ ସର୍ବସାଧାରଣଙ୍କ ଦୃଷ୍ଟିରେ ଭୋଗ ଦିଆଯାଏ ।

ସ୍ନାନର ସାମାନ୍ୟ ଜଳବିନ୍ଦୁ ସର୍ବପାପ ବିନାଶକ ବୋଲି ବିବେଚିତ ହୁଏ ।

## ଜଗନ୍ନାଥ ଧର୍ମ

ଓଡ଼ିଶାର ଧର୍ମ କହିଲେ ଜଗନ୍ନାଥ ଧର୍ମକୁ ବୁଝାଏ । ଏହି ଜଗନ୍ନାଥ ଧର୍ମ ସର୍ବ ଧର୍ମର ସମନ୍ୱୟ । ଏହି ସମନ୍ୱୟ ପୁଣି ବହୁ ଶତାବ୍ଦୀର ସାଧନା, ସଂଘର୍ଷ, ପରୀକ୍ଷା-ନିରୀକ୍ଷା ଦେଇ ଗତି କରିଆସିଛି । ଏବେ ମଧ୍ୟ ଏହା ନିର୍ଦ୍ଦିଷ୍ଟ ରୂପ ପାଇଛି କହିଲେ ହୁଏତ ଠିକ୍ ହେବ ନାହିଁ । ସେହି ପ୍ରକ୍ରିୟା ଅଦ୍ୟାପି ଚାଲୁ ରହିଛି । ଯୁଗ ଯୁଗ ଧରି ଓଡ଼ିଶାର ଆରାଧ୍ୟଦେବତା ଜଗନ୍ନାଥ ରହସ୍ୟାବୃତ ହୋଇ ରହିଛନ୍ତି ।

ଅତି ପ୍ରାଚୀନ କାଳରେ ବୃକ୍ଷ ପୂଜାର ପ୍ରଚଳନ ଥିଲା । ସେଥିରୁହିଁ ଦାରୁରୂପଧାରୀ ପୁରୁଷୋତ୍ତମଙ୍କ ପରିକଳ୍ପନା କରାଯାଇଥିଲା । ସାୟାଣାଚାର୍ଯ୍ୟଙ୍କ ବେଳକୁ ଦାରୁବ୍ରହ୍ମ ଉପାସନା ଲୋକପ୍ରିୟ ହୋଇଥିଲା । ବୈଦିକ ଯୁଗ ପରେ ଉପନିଷଦ ଯୁଗରେ ପୁରୁଷର ଯେଉଁ ସ୍ୱରୂପ ବର୍ଣ୍ଣିତ ହୋଇଅଛି, ସେଥିରୁ ପୁରୁଷୋତ୍ତମ ଶ୍ରୀଜଗନ୍ନାଥଙ୍କର ସ୍ୱରୂପ ବିଷୟରେ ପ୍ରମାଣ ମିଳେ । ରାମାୟଣରେ ମଧ୍ୟ ପୁରୁଷୋତ୍ତମ ପୂଜା ପାଉଥିବାର ଉଲ୍ଲେଖ ଅଛି । ପୁରୁଷୋତ୍ତମ କ୍ଷେତ୍ରରେ ପୂଜିତ ହେଉଥିବା ବିଭିନ୍ନ ଦେବତାଙ୍କ ନାମ ଉଲ୍ଲେଖ ଥିବାର ଜଣାଯାଏ । ମହାଭାରତରେ ବର୍ଣ୍ଣିତ ବେଦିକୁ ପଣ୍ଡିତମାନେ ଶ୍ରୀଜଗନ୍ନାଥଙ୍କ ରତ୍ନବେଦି ବୋଲି ଚିହ୍ନିତ କରିଛନ୍ତି । ଅଗ୍ନି, ବ୍ରହ୍ମ, ପଦ୍ମ ପ୍ରଭୃତି ପୁରାଣମାନଙ୍କରେ ଶ୍ରୀକ୍ଷେତ୍ର ମାହାତ୍ମ୍ୟର ବର୍ଣ୍ଣନା ଅଛି ।

ମହାଭାରତ ଯୁଦ୍ଧ ପରେ ପୁରୁଷୋତ୍ତମ କ୍ଷେତ୍ର ପ୍ରତିଷ୍ଠା ହେବା ସମ୍ଭବ । କିମ୍ବଦନ୍ତୀ ଅନୁଯାୟୀ ଏକ ନୀଳାଭ ମୂର୍ତ୍ତି ସମୁଦ୍ରରେ ଭାସମାନ ହେଲେ । ଶବରରାଜ ବିଶ୍ୱାବସୁ ତାଙ୍କୁ ଉଦ୍ଧାର କରି ନୀଳମାଧବ ରୂପରେ ପୂଜା କରାଇଲେ । ମାତ୍ର ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କ ଆରାଧନା ନିମନ୍ତେ ଆଗ୍ରହୀ ହେଲେ । ସେ ବିଷ୍ଣୁଙ୍କ ସନ୍ଧାନପାଇଁ ବିଦ୍ୟାପତି ନାମକ ଜଣେ ବ୍ରାହ୍ମଣଙ୍କୁ ପଠାଇଲେ । ସେ ଚାରିଆଡ଼େ ବୁଲି ବୁଲି ଶେଷରେ ପୁରୁଷୋତ୍ତମ କ୍ଷେତ୍ରରେ ପହଞ୍ଚିଲେ । ସେଠାରେ ଶବରରାଜା ବିଶ୍ୱାବସୁଙ୍କ ଆତିଥ୍ୟ ଗ୍ରହଣ କଲେ । କ୍ରମେ ତାଙ୍କ କନ୍ୟା ଲଳିତାଙ୍କ ସହ ପ୍ରଣୟପାଶରେ ଆବଦ୍ଧ ହେଲେ । ଶେଷରେ

ବିଶ୍ୱାସ ଜଣାଇଁ ନୀଳମାଧବଙ୍କୁ ଠାବ କଲେ ଓ ଏ ବିଷୟ ଇନ୍ଦ୍ରଦ୍ୟୁମ୍ନଙ୍କୁ ଜଣାଇଲେ । ରାଜା ସୈନ୍ୟ ସହ ସେଠାରେ ପହଞ୍ଚିଲେ । ମାତ୍ର ରାଜା ଆଉ ନୀଳମାଧବଙ୍କୁ ପାଇଲେ ନାହିଁ । ଦୈବବାଣୀ ହେଲା ଯେ ଏକ ଦାରୁ ଭାସିଆସି ମୁହାଣରେ ଲାଗିବ । ସେହି ଦାରୁରେ ବିଷ୍ଣୁ ମୂର୍ତ୍ତି ହୋଇ ପୂଜା ପାଇବେ । ରାଜା ଦାରୁର ସନ୍ଧାନ ପାଇଲେ । ମାତ୍ର କାରିଗରମାନେ ମୂର୍ତ୍ତି କରିବାକୁ ଅସମର୍ଥ ହେବାରୁ ସ୍ୱୟଂ ବିଷ୍ଣୁ ବିଶ୍ୱକର୍ମା ବେଶରେ ଦାରୁମୂର୍ତ୍ତି ନିର୍ମାଣ କରିବାରେ ଲାଗିଲେ । କିନ୍ତୁ ନିର୍ଦ୍ଦିଷ୍ଟ ସମୟ ପୂର୍ବରୁ ମହାରାଣୀ ଗୁଣ୍ଡିଚାଦେବୀଙ୍କ ଆଦେଶରେ ରୁଦ୍ଧ ଦ୍ୱାର ଖୋଲାଗଲା । ମୂର୍ତ୍ତିଗୁଡ଼ିକ କିନ୍ତୁ ଅର୍ଦ୍ଧନିର୍ମିତ ଅବସ୍ଥାରେ ଥିଲେ । ସେହିଦିନଠାରୁ ବିଗ୍ରହଗୁଡ଼ିକ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ନାମରେ ପୂଜା ପାଇଲେ । ପରେ ଏମାନଙ୍କ ସହିତ ସୁଦର୍ଶନ ଚକ୍ରକୁ ସଂଯୋଗ କରାଗଲା । ଫଳରେ ଶବରଦେବତା ଚତୁର୍ଦ୍ଧାମୂର୍ତ୍ତି ରୂପେ ପୂଜିତ ହେଲେ । ଏବେବି ଶବରଙ୍କ ବଂଶଧରମାନେ ପ୍ରତିବର୍ଷ ଗୋଟିଏ ମାସ ଜଗନ୍ନାଥ ପୂଜାର ଦାୟିତ୍ୱ ଗ୍ରହଣ କରିଥାନ୍ତି । ସେମାନଙ୍କୁ ଦଇତା କୁହାଯାଏ ।

ଅନେକ ଐତିହାସିକ ଶ୍ରୀଜଗନ୍ନାଥଙ୍କୁ ଜୈନଧର୍ମର ଦେବତା ବୋଲି କହନ୍ତି । ଜୈନଧର୍ମର ପ୍ରଥମ ତୀର୍ଥଙ୍କର ଥିଲେ ଋଷଭଦେବ । ତାଙ୍କର ଅନ୍ୟ ନାମ ଥିଲା ଋଷଭନାଥ । ଅନ୍ୟ କେତେଜଣ ତୀର୍ଥଙ୍କରଙ୍କ ନାମ ହେଲା, ଯଥା – ଶାନ୍ତିନାଥ, ନେମିନାଥ । ତୀର୍ଥଙ୍କରମାନଙ୍କର 'ନାଥ' ଉପାଧିରୁ 'ଜଗତନାଥ' ବା 'ଜଗନ୍ନାଥ' ସୃଷ୍ଟି ହୋଇଥିବା ସମ୍ଭବ । ପୁଣି ଜଗନ୍ନାଥଙ୍କ ରଥଯାତ୍ରା ଆଷାଢ଼ ଶୁକ୍ଳ ଦ୍ୱିତୀୟା (ଗୁଣ୍ଡିଚାଯାତ୍ରା) ଦିନ ଅନୁଷ୍ଠିତ ହୁଏ । ଏହି ଦିନଟିକୁ ଜୈନମାନେ ପବିତ୍ର ଦିବସ ବୋଲି ମନେକରନ୍ତି । ଏହି ଦିନ ଋଷଭଦେବଙ୍କ ରଥଯାତ୍ରା ବିଧାନ ଥିବା ଜୈନ ଧର୍ମଗ୍ରନ୍ଥମାନଙ୍କରୁ ଜଣାଯାଏ । ପୁଣି ଜଗନ୍ନାଥଙ୍କ ଭଳି ଜୈନମାନଙ୍କର ସ୍ନାନ ଯାତ୍ରା ବିଧି ଅଛି । କଳିଙ୍ଗକୁ ଖାରବେଳ ଫେରାଇଆଣିଥିବା ଜିନାସନକୁ କେତେକ ଗବେଷକ ଜଗନ୍ନାଥଙ୍କ ପ୍ରସିଦ୍ଧ ରତ୍ନବେଦି ଓ ଜଗନ୍ନାଥ ଧାମର କଳ୍ପବୃକ୍ଷକୁ ଜୈନ କଳ୍ପବୃକ୍ଷ ବୋଲି ମତ ଦେଇଛନ୍ତି । ପୁଣି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଜୈନ ତ୍ରିରତ୍ନ ସମ୍ୟକ୍ ଦର୍ଶନ, ସମ୍ୟକ୍ ଜ୍ଞାନ ଓ ସମ୍ୟକ୍ ଚରିତ୍ର ବୋଲି କେତେକ ଗବେଷକ କୁହନ୍ତି । ଶ୍ରୀମନ୍ଦିରସ୍ଥ ବାଇଶ ପାହାଚକୁ ବାଇଶ ଜଣ ତୀର୍ଥଙ୍କରଙ୍କ ପ୍ରତୀକ ବୋଲି କେହି କେହି ମତ ପ୍ରକାଶ କରନ୍ତି । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦକୁ କୈବଲ୍ୟ କୁହାଯାଏ । ଏହାକୁ ପାଇ ମନୁଷ୍ୟ ନିର୍ବାଣପ୍ରାପ୍ତି ହୁଏ । ଏହି 'କୈବଲ୍ୟ' ଶବ୍ଦ ଜୈନ ଦର୍ଶନରୁ ଆସିଥିବା ଅନୁମାନ କରାଯାଏ ।

ସେହିପରି ଜଗନ୍ନାଥଙ୍କ ବୌଦ୍ଧଧର୍ମ ସହିତ ସମ୍ପର୍କ ଅତି ନିବିଡ଼ ଥିବାର ଜଣାଯାଏ । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବୌଦ୍ଧଧର୍ମର ତିନୋଟି ମୁଖ୍ୟ ପ୍ରତୀକ, ଯଥା – ବୁଦ୍ଧ, ଧର୍ମ ଓ ସଂଘରୁ ଉତ୍ପତ୍ତି ବୋଲି ବୌଦ୍ଧମତବାଦୀମାନେ କହନ୍ତି । ବୌଦ୍ଧଧର୍ମରେ 'ଧର୍ମ' ନାରୀ ରୂପରେ ପରିକଳ୍ପନା କରାଯାଇଛି । ଜଗନ୍ନାଥଙ୍କଠାରେ ବୁଦ୍ଧ, ସୁଭଦ୍ରାଙ୍କଠାରେ ଧର୍ମ ଓ ବଳଭଦ୍ରଙ୍କଠାରେ ସଂଘର ଆରୋପ କରାଯାଇଛି । ଜଗନ୍ନାଥଙ୍କ ରଥଯାତ୍ରା ଓ ସ୍ନାନଯାତ୍ରା ବୌଦ୍ଧ ପୂଜା ବିଧାନର ଏକ ପ୍ରଧାନ ଅଂଶ । ବୁଦ୍ଧଦେବଙ୍କ ଜନ୍ମୋତ୍ସବ ଦିନ ରଥଯାତ୍ରା ପାଳିତ ହେଉଥିବାର ଜଣାଯାଏ । ଜଗନ୍ନାଥ ମନ୍ଦିରର ସିଂହଦ୍ୱାରର ଉପର ବନ୍ଧରେ 'ଦଶାବତାର' ଚିତ୍ର ଅଛି । ଏହି 'ଦଶାବତାର' ଚିତ୍ରରେ ନବମ ଅବତାର ବୁଦ୍ଧଙ୍କ ସ୍ଥାନରେ ଜଗନ୍ନାଥ ହିଁ ଉତ୍କୀର୍ଣ୍ଣ ହୋଇଛନ୍ତି । ସୁତରାଂ ବୁଦ୍ଧ-ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଅବତାର ବୋଲି ଗ୍ରହଣ କରାଯିବା ଦୃଷ୍ଟିରୁ ବୁଦ୍ଧ ଓ ଜଗନ୍ନାଥ ଏକ ବୋଲି ଗୃହୀତ ହୋଇଅଛି । ଅନେକଙ୍କ ମତରେ ଜଗନ୍ନାଥ ମନ୍ଦିର ପୂର୍ବେ ଏକ ମହାଯାନୀ ବୌଦ୍ଧ ପୀଠ ଥିଲା । ଏଠାରେ ବହୁକାଳ ପର୍ଯ୍ୟନ୍ତ ବୁଦ୍ଧଙ୍କ ପବିତ୍ର ଦନ୍ତ ରକ୍ଷିତ ଓ ପୂଜିତ ହେଉଥିଲେ । ଜଗନ୍ନାଥଙ୍କ ବାର ବର୍ଷ ଅନ୍ତରରେ ନବକଳେବର ହୁଏ । ପ୍ରତିମାଗୁଡ଼ିକ ପରିତ୍ୟକ୍ତ ହେଲା ପରେ ନୂତନ ପ୍ରତିମା ସ୍ଥାପନ ହୁଏ । ମନ୍ଦିରର ପୂଜକଙ୍କ ଚକ୍ଷୁ ପ୍ରଥମେ ବସ୍ତ୍ରାବୃତ ହୁଏ । ଏହାପରେ ସେ ପ୍ରାଚୀନ ପ୍ରତିମାର କୁକ୍ଷି-କନ୍ଦରରୁ କୌଣସି ରହସ୍ୟଜନକ ପଦାର୍ଥ କାଢ଼ିଆଣନ୍ତି । ନୂତନ ପ୍ରତିମାମାନଙ୍କର ଠିକ୍ ସେହି ସ୍ଥାନରେ ରଖନ୍ତି । ଏହା ବୁଦ୍ଧଦେବଙ୍କ ସେହି ପବିତ୍ର ଦନ୍ତ ବା ତାଙ୍କର ଦେହାବଶେଷ ବୋଲି କେହି କେହି ପଣ୍ଡିତ ମତ ଦିଅନ୍ତି । ସାରଳାଦାସ ମଧ୍ୟ 'ମହାଭାରତ'ରେ ଜଗନ୍ନାଥଙ୍କୁ ବୌଦ୍ଧାବତାର ବୋଲି ଅନେକ ସ୍ଥାନରେ ବର୍ଣ୍ଣନା କରିଛନ୍ତି । ବୌଦ୍ଧଧର୍ମର ଜାତିଭେଦ ପ୍ରଥା ନ ଥିଲା । ଜଗନ୍ନାଥଙ୍କ ମନ୍ଦିରରେ ବିନା ବାଛବିଚାରରେ ସମସ୍ତେ ପ୍ରସାଦ ସେବନ କରିପାରିବାର ବିଧି ପ୍ରଚଳିତ ଅଛି । ଏଥିରେ ବୌଦ୍ଧଧର୍ମର ପ୍ରଭାବ ସୁସ୍ପଷ୍ଟ ବୋଲି କେତେକ ଗବେଷକ ମତ ଦିଅନ୍ତି ।

ଭୌମକର ରାଜତ୍ୱରେ ଓଡ଼ିଶା ଏକ ତନ୍ତ୍ରକ୍ଷେତ୍ରରୂପେ ପ୍ରସିଦ୍ଧି ଲାଭ କଲା । ଜଗନ୍ନାଥ ମଧ୍ୟ ତାନ୍ତ୍ରିକଦେବତାଭାବେ ପରିଗଣିତ ହେଲେ । ଚଣ୍ଡିବର୍ଣ୍ଣିତ ତ୍ରିମୂର୍ତ୍ତିଭାବେ ଜଗନ୍ନାଥଙ୍କୁ ମହାକାଳୀରୂପେ, ସୁବର୍ଣ୍ଣବର୍ଣ୍ଣା ସୁଭଦ୍ରାଙ୍କୁ ମହାଲକ୍ଷ୍ମୀଭାବେ ଓ ବଳଭଦ୍ରଙ୍କୁ ଶ୍ୱେତବର୍ଣ୍ଣା ସରସ୍ୱତୀରୂପେ ପରିକଳ୍ପନା କରାଗଲା । ଜଗନ୍ନାଥ ମନ୍ଦିରରେ ମଧ୍ୟ ତାନ୍ତ୍ରିକ ପୂଜାବିଧି ରହିଅଛି । ପୁରୁଷୋତ୍ତମ କ୍ଷେତ୍ରରେ ଅଧିଷ୍ଠାତ୍ରୀଦେବୀ ବିମଳାଙ୍କୁ ଓ ଜଗନ୍ନାଥଙ୍କୁ ଭୈରବ ଭାବରେ ଗ୍ରହଣ

କରାଯାଇଅଛି । ଏହା ଏକ ସମୟରେ ଏକ ତନ୍ତ୍ରପୀଠ ହୋଇଥିବାରୁ ପୀଠଦେବୀ ବିମଳାଙ୍କ ପ୍ରାଧାନ୍ୟ ରହିଛି । ସେଥିପାଇଁ ଜଗନ୍ନାଥଙ୍କ ପ୍ରସାଦ କେବଳ ବିମଳାଙ୍କଠାରେ ସମର୍ପଣ କରାଯାଏ । ଏହା ତାଙ୍କ ପାଖରେ ସମର୍ପଣ ନ ହେବାଯାଏଁ ମହାପ୍ରସାଦ ରୂପେ ଗଣ୍ୟ ହୁଏ ନାହିଁ । ସୁଭଦ୍ରା ଜଗନ୍ନାଥଙ୍କ ଭଗିନୀ ବୋଲି ସମସ୍ତେ ମତ ଦିଅନ୍ତି । କିନ୍ତୁ ସୁଭଦ୍ରା ଭଗିନୀରୂପେ ଅବସ୍ଥାନ କରିବା ଯୁକ୍ତିଯୁକ୍ତ ନୁହେଁ । ଭଉଣୀଙ୍କୁ ଶକ୍ତିଭାବରେ ଗ୍ରହଣ କରିବା କେବଳ ତନ୍ତ୍ରଦ୍ୱାରା ସମର୍ଥିତ ହୁଏ । ସୁତରାଂ ଜଗନ୍ନାଥ ଓ ସୁଭଦ୍ରାଙ୍କ ସମାବେଶ ବ୍ରାହ୍ମଣ୍ୟଧର୍ମର ସଙ୍କେତ ନୁହେଁ । ଏଥିରେ ତାନ୍ତ୍ରିକ ପ୍ରଭାବ ସୁସ୍ପଷ୍ଟ । ଜଗନ୍ନାଥଙ୍କ ଭୋଗ ଉପକରଣରେ ମଦ୍ୟ ପରିବର୍ତ୍ତେ କଂସା ପାତ୍ରରେ ପଇଡ଼ପାଣି ଓ ଆମିଷରୂପେ ଗଣ୍ୟ ବିରିପିଠା, ମେଣ୍ଢାମୁଣ୍ଡ ପରିବର୍ତ୍ତେ ମେଣ୍ଢାମୁଣ୍ଡିଆ ଖେଚେଡ଼ିର ଯେଉଁ ବ୍ୟବସ୍ଥା ଅଛି ତାହା ସମ୍ପୂର୍ଣ୍ଣଭାବେ ତାନ୍ତ୍ରିକ । ବିଗ୍ରହମାନଙ୍କ ନାକରେ ଫୁଲର ବସଣୀ ପିନ୍ଧାଯିବା ମଧ୍ୟ ଶାକ୍ତମତର ପ୍ରତିଫଳନ ବୋଲି ମନେହୁଏ ।

ବ୍ରାହ୍ମଣମାନେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ଯଥାକ୍ରମେ ବିଷ୍ଣୁ, ମହେଶ୍ୱର ଓ ବ୍ରହ୍ମାରୂପେ ମନେ କରୁଥିଲେ । ଓଡ଼ିଶାରେ ଏହି ବିଶ୍ୱାସ ଅଧିକ ଥିବା ଜଣାଯାଏ । ପୁରୀକୁ ଭୈରବପୀଠ ବୋଲି କୁହାଯାଉଥିଲା । ବଳଭଦ୍ର ଶିବ ବା ମହେଶ୍ୱର ରୂପରେ ଶ୍ରୀକ୍ଷେତ୍ରରେ ରହିଥିଲେ ବୋଲି ବିଶ୍ୱାସ କରାଯାଏ । ଜଗନ୍ନାଥ ଯେ ସ୍ୱୟଂ ବିଷ୍ଣୁ, ଏକଥା ରାମାନୁଜାଚାର୍ଯ୍ୟ ସ୍ୱୀକାର କରିଛନ୍ତି । ଅନେକ ପଣ୍ଡିତ ସୁଭଦ୍ରାଙ୍କୁ ବ୍ରହ୍ମାଙ୍କ ସହିତ ଚିହ୍ନିତ କରିଥାନ୍ତି । କଥିତଅଛି, ବ୍ରହ୍ମା ବିଷ୍ଣୁଙ୍କର ଗୋବତ୍ସ ଅପହରଣ କରି ନେଇଥିଲେ । ବିଷ୍ଣୁ ତେଣୁ ତାଙ୍କୁ ଅପୂଜା ରହିବେ ବୋଲି ଅଭିଶାପ ଦେଲେ । ପରେ ତାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ନୀଳାଚଳ କ୍ଷେତ୍ରରେ ଭଗିନୀରୂପେ ଗୁପ୍ତରେ ପୂଜା ପାଇବେ ବୋଲି ବରଦାନ କରିଥିଲେ । ବ୍ରହ୍ମା ଅଭିଶାପରେ ସୁଭଦ୍ରା ରୂପ ଧାରଣ କରିଥିବା କଥା ସାରଳାଦାସ ତାଙ୍କ 'ମହାଭାରତ'ରେ ଉଲ୍ଲେଖ କରିଛନ୍ତି ।

ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ମଧ୍ୟ ପୁରାଣ ଯୁଗର କୃଷ୍ଣ, ବଳରାମ ଓ ସୁଭଦ୍ରାଙ୍କ ସହିତ ଚିହ୍ନିତ ହୋଇଛନ୍ତି । ଶ୍ରୀକୃଷ୍ଣଙ୍କ ଅପୋଡ଼ା ଶରୀର ଜଗନ୍ନାଥ ଭାବେ ପୂଜା ପାଉଛନ୍ତି ବୋଲି ଅନେକେ ବିଶ୍ୱାସ କରନ୍ତି । 'ବ୍ରହ୍ମପୁରାଣ'ରେ ମଧ୍ୟ ଜଗନ୍ନାଥଙ୍କୁ କୃଷ୍ଣ ରୂପେ କଳ୍ପନା କରାଯାଇଛି । ସୁତରାଂ ଜଗନ୍ନାଥଙ୍କୁ କୃଷ୍ଣ ରୂପେ ଗ୍ରହଣ କଲା ପରେ ତାଙ୍କ ଭାଇଭଉଣୀଙ୍କୁ ବଳରାମ ଓ ସୁଭଦ୍ରା ନାମରେ ଅଭିହିତ କରାଯିବା ଯଥାର୍ଥ ।

ରାମ ଉପାସକମାନେ ଶ୍ରୀଜଗନ୍ନାଥଙ୍କ ତ୍ରିମୂର୍ତ୍ତିକୁ ରାମ, ଲକ୍ଷ୍ମଣ ଓ ସୀତା ଭାବେ ଗ୍ରହଣ କରନ୍ତି । ଭକ୍ତ ତୁଳସୀ ଦାସ ଶ୍ରୀମନ୍ଦିରରେ ରାମାଭିଷେକର ଅନିର୍ବଚନୀୟ ଦୃଶ୍ୟ ଦେଖିବାକୁ ପାଇଥିଲେ । ଦ୍ୱାଦଶ ଶତାବ୍ଦୀରେ ଓଡ଼ିଆରେ ବୈଷ୍ଣବ ଧର୍ମର ଅଭ୍ୟୁଦୟ ହେଲା । ଚୈତନ୍ୟଙ୍କ ଆଗମନ ପରେ ବୈଷ୍ଣବୀୟ ଭକ୍ତିଧାରା ପ୍ରବାହିତ ହେବାକୁ ଲାଗିଲା । ସେହି ସମୟରେ ଓଡ଼ିଶାରେ ବୈଷ୍ଣବ ଧର୍ମର ଦୁଇଟି ଧାରା ଥିଲା । ଗୋଟିଏ ହେଲା ରାଧାଙ୍କୁ ଆଶ୍ରୟ କରି ବିଶୁଦ୍ଧ ଭକ୍ତି ଓ ଅନ୍ୟଟି ଜଗନ୍ନାଥଙ୍କ ପ୍ରତି ଜ୍ଞାନମିଶ୍ରା ଭକ୍ତି । ଦ୍ୱିତୀୟଟିର ପ୍ରବର୍ତ୍ତକ ଥିଲେ ଓଡ଼ିଶାର ପଞ୍ଚସଖା । ସେମାନେ ଶ୍ରୀଚୈତନ୍ୟଙ୍କ ନିଷ୍ଠା ଓ ସାଧନାରେ ଅଭିଭୂତ ହୋଇପଡ଼ିଥିଲେ ମଧ୍ୟ ଚୈତନ୍ୟ ସଂପ୍ରଦାୟଭୁକ୍ତ ହୋଇ ନ ଥିଲେ । ସେମାନଙ୍କ ଆରାଧ୍ୟଦେବତା ରାଧାକୃଷ୍ଣ ନ ଥିଲେ । ସେମାନେ ଜଗନ୍ନାଥଙ୍କଠାରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିଥିଲେ । ଚୈତନ୍ୟ ମଧ୍ୟ ଶ୍ରୀଜଗନ୍ନାଥଙ୍କୁ ପୂଜା ଓ ଆରାଧନା କରିବାକୁ ଲାଗିଲେ । ସେ ଶେଷ ଜୀବନ ପୁରୀରେ କଟାଇଥିବାର ବିଶ୍ୱାସ । ସୁତରାଂ ଚୈତନ୍ୟଙ୍କ ପ୍ରଚାରିତ ଧର୍ମର ସାରତତ୍ତ୍ୱକୁ ଜଗନ୍ନାଥଙ୍କ ସହିତ ସାମିଲ କରିଦିଆଗଲା । ଜଗନ୍ନାଥ ମହାବୈଷ୍ଣବଦେବତାରେ ପରିଣତ ହୋଇଗଲେ । ସାରଳା ଦାସ ମଧ୍ୟ ତାଙ୍କ ରଚନାରେ ରାଧା ଓ କୃଷ୍ଣଚରିତ ଗୌଣ ଭାବରେ ବର୍ଣ୍ଣନା କରି ଜଗନ୍ନାଥଙ୍କ ମହତ୍ତ୍ୱ ପ୍ରତିପାଦନ କଲେ ।

କେବଳ ଜଗନ୍ନାଥଙ୍କଠାରେ ଅନାର୍ଯ୍ୟ, ଜୈନ, ବୌଦ୍ଧ, ଶୈବ, ଶାକ୍ତ ଓ ବୈଷ୍ଣବ ଧର୍ମ ପ୍ରଭୃତି ଧର୍ମର ସମନ୍ୱୟ ଘଟି ନାହିଁ; ଅନେକେ ଜଗନ୍ନାଥଙ୍କ ସହିତ ଖ୍ରୀଷ୍ଟଧର୍ମର ସମ୍ପର୍କ ସୃଷ୍ଟି କରିବାକୁ ପଛାଇ ନାହାନ୍ତି । ଖ୍ରୀଷ୍ଟଧର୍ମର ପ୍ରବର୍ତ୍ତକ ଯିଶୁଖ୍ରୀଷ୍ଟ ପୁରୀ ଆସି ଜଗନ୍ନାଥଙ୍କଠାରେ ପୂଜା ଆରାଧନା କରିଥିବା କେତେକ ଗବେଷକ ବିଶ୍ୱାସ କରନ୍ତି । ଯିଶୁଙ୍କୁ କ୍ରୁଶବିଦ୍ଧ କରି ହତ୍ୟା କରାଯାଇଥିଲା । ସେହି କ୍ରୁଶକୁ ଖ୍ରୀଷ୍ଟିଆନମାନେ ପୂଜା କରନ୍ତି । କେହି କେହି ସେ କ୍ରୁଶ ବା ଛକକୁ ଜଗନ୍ନାଥଙ୍କ ସାଙ୍କେତିକ ଚିହ୍ନ ଭାବରେ ଗ୍ରହଣ କରିଛନ୍ତି । ଉନବିଂଶ ଶତାବ୍ଦୀରେ କୁଜିବର ମଠର ମହନ୍ତ ସାଧୁସୁନ୍ଦର ଦାସ ଖ୍ରୀଷ୍ଟଧର୍ମକୁ ଜଗନ୍ନାଥ ଧର୍ମରେ ମିଳାଇ ନେବାର ଚେଷ୍ଟା କରିଥିଲେ । ଏଥିରୁ ଜଗନ୍ନାଥ ଧର୍ମର ବ୍ୟାପକତା ଉପଲବ୍ଧି କରିହୁଏ ।

ଆଧୁନିକ ଯୁଗରେ ଜଗନ୍ନାଥଙ୍କ ତ୍ରିମୂର୍ତ୍ତିଙ୍କୁ ମାନବ ଜଗତର ପ୍ରତୀକଭାବେ ଗ୍ରହଣ କରାଯାଇଛି । ଜଗନ୍ନାଥ କୃଷ୍ଣ ବର୍ଣ୍ଣର ହୋଇଥିବାରୁ ସେ କୃଷ୍ଣକାୟ ନିଗ୍ରୋ ଜାତି, ବଳଭଦ୍ର ଶ୍ୱେତକାୟ ହୋଇଥିବାରୁ କକେସୀୟ ଜାତି, ସୁଭଦ୍ରା ପୀତକାୟ ହୋଇଥିବାରୁ ମଙ୍ଗୋଲୀୟ ଜାତି ଓ ସୁଦର୍ଶନ ରକ୍ତବର୍ଣ୍ଣର ପ୍ରତୀକ

ହୋଇଥିବାରୁ ଲୋହିତ ଭାରତୀୟ (ଆମେରିକାବାସୀ)ଙ୍କ ପ୍ରତିନିଧିତ୍ୱ କରୁଛନ୍ତି ବୋଲି କେତେକେ ମତ ଦିଅନ୍ତି । ହିନ୍ଦୁମାନଙ୍କ ମତରେ ଶ୍ୱେତବର୍ଣ୍ଣ ବ୍ରାହ୍ମଣମାନଙ୍କର, ରକ୍ତବର୍ଣ୍ଣ କ୍ଷତ୍ରିୟମାନଙ୍କର, ହରିଦ୍ରାବର୍ଣ୍ଣ ବୈଶ୍ୟମାନଙ୍କର ଓ କୃଷ୍ଣବର୍ଣ୍ଣ ଶୂଦ୍ରମାନଙ୍କର ପ୍ରତୀକ । ଏହି ଚାରି ବର୍ଣ୍ଣ ବା ଜାତି ମଧ୍ୟରେ ଭେଦାଭେଦ ସୂଚିତ ହୋଇ ନାହିଁ । ସେହି କାରଣରୁ ସମ୍ଭବତଃ ଜଗନ୍ନାଥ ଉଭୟ ବ୍ରାହ୍ମଣ ଓ ଶୂଦ୍ର ସେବକଙ୍କଦ୍ୱାରା ପୂଜା ପାଉଛନ୍ତି । ସେଥିପାଇଁ ମଧ୍ୟ ସାର୍ବଜନୀନ ମହାପ୍ରସାଦ ସେବନର ବିଧି ପ୍ରଚଳିତ ଅଛି । ଶ୍ରୀକ୍ଷେତ୍ର ରଥଯାତ୍ରାରେ ମଧ୍ୟ ସବୁ ଜାତି ତଥା ଧର୍ମର ଲୋକେ ଆଗ୍ରହର ସହିତ ଯୋଗ ଦେଇଥାନ୍ତି ।

ବିଭିନ୍ନ ଧର୍ମ ସଂପ୍ରଦାୟ ଜଗନ୍ନାଥଙ୍କୁ ନିଜ ନିଜର ପ୍ରତୀକ ବିଗ୍ରହରୂପେ ପ୍ରତିଷ୍ଠିତ କରିବାକୁ ଯୁଗ ଯୁଗ ଧରି ଚେଷ୍ଟା କରିଆସିଛନ୍ତି । ଯୋଗମାର୍ଗୀଗଣ ତାଙ୍କୁ ସର୍ବାଙ୍ଗ ପୁରୁଷ, ଅମାନବ ପୁରୁଷଭାବେ ଚିହ୍ନିତ କରିଛନ୍ତି । ଅଣାକାରମାନଙ୍କ ଶୂନ୍ୟବାଦରେ ସେ ନିରଞ୍ଜନ, ଶୂନ୍ୟ ଓ ଜ୍ୟୋତି ହୋଇ ରହିଛନ୍ତି । ଶ୍ରୀମଦ୍ ଭଗବଦ୍‌ଗୀତାରେ ସେ ଉତ୍ତମପୁରୁଷ, ଅକ୍ଷୟପୁରୁଷରୂପେ ଅଭିହିତ ହୋଇଛନ୍ତି । ଅନେକେ ପୁଣି ଶ୍ରୀଜଗନ୍ନାଥଙ୍କୁ ବ୍ରହ୍ମ ବୋଲି ବର୍ଣ୍ଣନା କରିଛନ୍ତି । ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ପୁଣି ସଚ୍ଚିଦାନନ୍ଦ (ସତ୍-ଚିତ୍-ଆନନ୍ଦ) ଭାବେ ଗ୍ରହଣ କରାଯାଇଛି ।

ବିଭିନ୍ନ ମତବାଦ ଓ ବିଶ୍ୱାସକୁ ଭିତ୍ତି କରି ଶ୍ରୀଜଗନ୍ନାଥ ମନ୍ଦିରରେ ହରିହର ବେଶ, ଗଣପତି ବେଶ, ଗଜ ଉଦ୍ଧାରଣ ବେଶ, କାଳୀୟ ଦଳନ ବେଶ, ରଘୁନାଥ ବେଶ ପ୍ରଭୃତି ଅଦ୍ୟାବଧି ହେଉଥିବାର ଜଣାଯାଏ । ତେଣୁ ଜଗନ୍ନାଥଙ୍କଠାରେ ବିଭିନ୍ନ ଧର୍ମ ମତବାଦର ଯେ ସମନ୍ୱୟ ଘଟିଛି ଏହା ଅତି ସ୍ପଷ୍ଟ । ଅଧୁନା ତାହା ଜଗନ୍ନାଥ ଧର୍ମ ଭାବେ ବିଶ୍ୱ ଦରବାରରେ ପରିଚିତ ହୋଇଅଛି ।

**ଶେଷ ଜୀବନ**

ଚୋଡ଼ଗଙ୍ଗଦେବଙ୍କ ଜୀବିତାବସ୍ଥାରେ ତାଙ୍କ ଜ୍ୟେଷ୍ଠପୁତ୍ର କାମାର୍ଣ୍ଣବଦେବ ଯୁବରାଜ ହିସାବରେ ଶ୍ରୀଜଗନ୍ନାଥ ମନ୍ଦିରରେ ଅଭିଷିକ୍ତ ହୋଇଥିଲେ । ସମ୍ଭବତଃ, ସେ ରୋଗାକ୍ରାନ୍ତ ହୋଇପଡ଼ିବାରୁ ପୁତ୍ର ହସ୍ତରେ ରାଜ୍ୟର ଶାସନଭାର ଅର୍ପଣ କରିଥିଲେ । ୧୧୪୯ ଖ୍ରୀଷ୍ଟାବ୍ଦରେ ତାଙ୍କର ମୃତ୍ୟୁ ହୋଇଥିଲା ।

ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ କରି ଚୋଡ଼ଗଙ୍ଗଦେବ ଇତିହାସର ଶ୍ରେଷ୍ଠ ପୁରୁଷରେ ପରିଣତ ହୋଇଯାଇଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

# ଶିଳାପଦ୍ମର ସ୍ରଷ୍ଟା
# ନରସିଂହଦେବ

ଗଙ୍ଗବଂଶର ରାଜା ପ୍ରଥମ ନରସିଂହଦେବ ଓଡ଼ିଶାର ଲାଙ୍ଗୁଳା ନରସିଂହଦେବ ନାମରେ ଖ୍ୟାତ । ତାଙ୍କର ପିତା ଥିଲେ ତୃତୀୟ ଅନଙ୍ଗଭୀମଦେବ । ତାଙ୍କର ମାତାଙ୍କ ନାମ ଥିଲା କସ୍ତୁରୀଦେବୀ । ତାଙ୍କ ସମୟରେ ଓଡ଼ିଶା ତଥା ଗଙ୍ଗବଂଶର ଯଶ ଓ ଗୌରବ ଚରମ ସୀମାରେ ଉପନୀତ ହୋଇଥିଲା ।

## ରାଜ୍ୟଜୟ

ନରସିଂହଦେବଙ୍କ ରାଜତ୍ୱ ଆରମ୍ଭବେଳକୁ ସମଗ୍ର ବଙ୍ଗ ମୁସଲମାନମାନଙ୍କଦ୍ୱାରା ଅଧିକୃତ ହୋଇସାରିଥିଲା । ଏହି ସମୟରେ ବଙ୍ଗର ଶାସନକର୍ତ୍ତା ଥିଲେ ତୁଘ୍ରିଲ ତୁଘାନ ଖାଁ । ସେ ଦିଲ୍ଲୀର ସୁଲତାନମାନଙ୍କ ଦୁର୍ବଳତାର ସୁଯୋଗ ନେଇ ନିଜକୁ ସ୍ୱାଧୀନ ବୋଲି ଘୋଷଣା କରିଥିଲେ । ନିଜର ସ୍ଥିତି କ୍ରମେ ଦୃଢ଼ କରି ଓଡ଼ିଶା ଆକ୍ରମଣପାଇଁ ଚେଷ୍ଟା କରୁଥିଲେ । ନରସିଂହଦେବଙ୍କ ପିତା ତୃତୀୟ ଅନଙ୍ଗଭୀମଦେବ ମୁସଲମାନମାନଙ୍କ ଆକ୍ରମଣକୁ ପ୍ରତିହତ କରିପାରିଥିଲେ । ଫଳରେ ସେମାନେ ଓଡ଼ିଶା ଅଧିକାର କରିପାରି ନ ଥିଲେ । ୧୨୩୮ ଖ୍ରୀଷ୍ଟାବ୍ଦରେ ଅନଙ୍ଗଭୀମଦେବଙ୍କ ମୃତ୍ୟୁ ହେଲା । ତାଙ୍କ ପରେ ନରସିଂହଦେବଙ୍କ ସମୟରେ ମୁସଲମାନମାନେ ଆକ୍ରମଣ କରିବାକୁ ବସିଲେ । ବଙ୍ଗର କେତେକ ଅଂଶ ବକ୍ତିଆର ଖିଲିଜ ଅଧିକାର କରିନେଲେ । ସେ ମଧ୍ୟ ଓଡ଼ିଶା ଉପରେ ଲୋଲୁପ ଦୃଷ୍ଟି ପକାଇଲେ ।

ନରସିଂହଦେବ ସିଂହାସନରେ ବସିବାପରେ ମୁସଲମାନମାନଙ୍କ ଆକ୍ରମଣର ମୁକାବିଲା କରିବାକୁ ଉଦ୍ୟମ କଲେ । ତାଙ୍କ ଆଗରେ ଦୁଇଟି ପନ୍ଥା ଥିଲା । ପ୍ରଥମତଃ, ସେ ପିତାଙ୍କ ପରି ମୁସଲମାନମାନଙ୍କ ଆକ୍ରମଣର ପ୍ରତିରୋଧ କରିବା; ଦ୍ୱିତୀୟଟି ହେଲା ନିଜେ ମୁସଲମାନମାନଙ୍କୁ ଆକ୍ରମଣ କରିବା । ସେ ଦ୍ୱିତୀୟ ପନ୍ଥା ଗ୍ରହଣ କଲେ । ସେ ସିଂହାସନରେ ବସିବାର ପଞ୍ଚମ ବର୍ଷରେ ଅର୍ଥାତ୍ ୧୨୪୩ ଖ୍ରୀଷ୍ଟାବ୍ଦରେ ଏକ ବିରାଟ ସେନାବାହିନୀ ନେଇ ବଙ୍ଗଳା ଆକ୍ରମଣ କଲେ । ବଙ୍ଗର ଶାସନକର୍ତ୍ତା ତୁଘ୍ରିଲ ତୁଘାନ ଖାଁ କିନ୍ତୁ ନରସିଂହଦେବଙ୍କ

ଭଳି ଦକ୍ଷ ନ ଥିଲେ । ଓଡ଼ିଶା ସେନାବାହିନୀ ଚତୁରତାର ସହ ପଛଘୁଞ୍ଚା ଦେଇ ମେଦିନୀପୁରର କାଟାସିନ୍ ଦୁର୍ଗରେ ରହିଲେ । ୧୨୪୪ ଖ୍ରୀଷ୍ଟାବ୍ଦରେ ଉଭୟ ସୈନ୍ୟ ମଧ୍ୟରେ ଘୋର ଯୁଦ୍ଧ ହେଲା । ତୁଘ୍ରିଲଙ୍କ ସୈନ୍ୟ ଉତ୍ସାହର ସହ ପ୍ରଥମେ ଯୁଦ୍ଧ କଲେ । ସେମାନେ ମଧ୍ୟ କିଛି ବିଜୟ ଲାଭ କରିଥିଲେ । ମାତ୍ର ଓଡ଼ିଆ ସୈନ୍ୟମାନେ ଅତର୍କିତଭାବେ ଆକ୍ରମଣ କରିବା ଫଳରେ ମୁସଲମାନ ସୈନ୍ୟ ଶୋଚନୀୟଭାବେ ପରାସ୍ତ ହେଲେ । ତୁଘ୍ରିଲ ପ୍ରାଣରକ୍ଷାପାଇଁ ପଳାୟନ କଲେ ।

ତା'ର ପରବର୍ଷ ଅର୍ଥାତ୍ ମାର୍ଚ୍ଚ ୧୨୪୫ ଖ୍ରୀଷ୍ଟାବ୍ଦରେ ନରସିଂହଦେବ ପୁଣି ଏକ ବିରାଟ ସେନାବାହିନୀ ନେଇ ଲାଖନଉତି ଉପରେ ଆକ୍ରମଣ କଲେ ଓ ତୁଘ୍ରିଲ ତୁଘାନଙ୍କୁ ଅବରୋଧ କଲେ । ବଙ୍ଗ ସେନାପତି କରିମୁଦ୍ଦିନ ଲାଘ୍ରି ଶୋଚନୀୟ ଭାବେ ପରାସ୍ତ ହୋଇ ମୃତ୍ୟୁବରଣ କଲେ । ତୁଘ୍ରିଲ ତୁଘାନ ଦିଲ୍ଲୀର ସୁଲତାନଙ୍କ ପାଖକୁ ସାହାଯ୍ୟପାଇଁ ଦୂତ ପଠାଇଲେ । ଦିଲ୍ଲୀ ସୁଲତାନ ମାମୁଦ ଶାହ ବଙ୍ଗ ଅଭିମୁଖେ ଏକ ସେନାବାହିନୀ ପଠାଇବାପାଇଁ ଆଦେଶ ଦେଲେ । ଅଯୋଧ୍ୟାର କାମରୁଦ୍ଦିନ ତମୁର ଖାଁ ମଧ୍ୟ ବଙ୍ଗ ଅଭିମୁଖେ ସୈନ୍ୟ ନେଇ ବାହାରିଲେ । ନରସିଂହଦେବ ଏ ଖବର ପାଇ ଓଡ଼ିଶାକୁ ଫେରିଆସିଲେ ।

ନରସିଂହଦେବଙ୍କର ବଙ୍ଗ ଉପରେ ଦୁଇ ଥର ସଫଳ ଆକ୍ରମଣ ଯେ ଅତ୍ୟନ୍ତ ଗୌରବମୟ ଘଟଣା ଥିଲା, ଏଥିରେ ସନ୍ଦେହ ନାହିଁ । ସେତେବେଳେ ମୁସଲମାନମାନେ ଓଡ଼ିଶାକୁ ବହୁବାର ଆକ୍ରମଣ କରି ଲୁଟ୍‌ତରାଜ ଚଳାଉଥିଲେ । ନରସିଂହଦେବଙ୍କ ପୂର୍ବରୁ କେହି ରାଜା ମୁସଲମାନ ରାଜ୍ୟ ଉପରେ ଆକ୍ରମଣ କରିବାକୁ ସାହସ କରି ନ ଥିଲେ । ନରସିଂହଦେବଙ୍କଦ୍ୱାରା ପରାସ୍ତ ହେବା ଫଳରେ ମୁସଲମାନମାନଙ୍କ ଦୁଃଖଦୁର୍ଦ୍ଦଶାର ସୀମା ରହିଲା ନାହିଁ । ଏକଥା କେନ୍ଦୁପାଟଣା ତାମ୍ରଶାସନରେ ଉଲ୍ଲେଖ ଅଛି – ''ରାଢ଼୍ ଓ ବରେନ୍ଦ୍ରର ଯବନୀମାନଙ୍କ କ୍ରନ୍ଦନ ଫଳରେ ସେମାନଙ୍କର ଆଖିର କଳା ଧୋଇ ହୋଇ ଲୁହରେ ମିଶିଲା । ତାହାଦ୍ୱାରା ଗଙ୍ଗାନଦୀର ଧଳାପାଣି ବହୁଦୂର ଯାଏ କଳା ତଥା ତରଙ୍ଗହୀନ ହୋଇପଡ଼ିଲା । ସତେ ଯେପରି ତାହା ଯମୁନା ନଦୀରେ ପରିଣତ ହୋଇଗଲା !''

ସେତେବେଳେ ବଙ୍ଗପ୍ରଦେଶ ରାଢ଼ ଓ ବରେନ୍ଦ୍ର ଦୁଇ ଅଞ୍ଚଳକୁ ନେଇ ଗଠିତ ହୋଇଥିଲା । ରାଢ଼ର ରାଜଧାନୀ ଲାଖନୋର୍ ଓ ବରେନ୍ଦ୍ରର ରାଜଧାନୀ ଦେବକୋଟ ଥିଲା । ସମଗ୍ର ବଙ୍ଗର ରାଜଧାନୀ ଥିଲା ଲାଖନଉତି । ନରସିଂହଦେବ ଉଭୟ ରାଢ଼ ଓ ବରେନ୍ଦ୍ର ଦୁଇଟି ଅଞ୍ଚଳକୁ ଅଧିକାର କରିନେଇଥିବା ଏଥିରୁ ସ୍ପଷ୍ଟ

ଅନୁମାନ କରାଯାଏ । ଏ ବିଜୟ ଫଳରେ ବଙ୍ଗର ଦକ୍ଷିଣାଞ୍ଚଳ ତାଙ୍କର କର୍ତ୍ତୃତ୍ୱାଧୀନ ହେଲା । ତାଙ୍କ ରାଜ୍ୟ ଏହା ଦ୍ୱାରା ଉତ୍ତରରେ ଗଙ୍ଗାନଦୀଠାରୁ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ହେଲା ।

ଏହାର ପରେ ପରେ ବଙ୍ଗପ୍ରଦେଶର ରାଜନୀତିକ ଚିତ୍ରରେ ପରିବର୍ତ୍ତନ ଘଟିଲା । ୧୨୪୬ ଖ୍ରୀଷ୍ଟାବ୍ଦରେ ଇଖ୍‌ତିୟାରୁଦ୍ଦିନ ୟୁଜବେକ ବଙ୍ଗର ପ୍ରଶାସକ ହେଲେ । ସେ ଜଣେ ଦକ୍ଷ ସେନାପତି ଥିଲେ । ସେ ତୁଘ୍ରିଲଙ୍କ ତୁଳନାରେ ଅଧିକ ବୀରତ୍ୱ ଓ ସାହସ ପ୍ରଦର୍ଶନ କରିଥିଲେ । ସେ ବରେନ୍ଦ୍ରର କର୍ତ୍ତୃତ୍ୱ ନିଜ ଅଧୀନକୁ ଆଣିବାପରେ ରାଢ଼ ଆକ୍ରମଣ କଲେ । ଏଥର ଓଡ଼ିଶା ସେନାବାହିନୀର ନେତୃତ୍ୱ ନେଇଥିଲେ ପରମାର୍ଦ୍ଦିଦେବ । ସେ ତୃତୀୟ ଅନଙ୍ଗଭୀମଦେବଙ୍କର ଜାମାତା ଥିଲେ । ଏହି ଯୁଦ୍ଧ ତିନୋଟି ସ୍ଥାନରେ ହୋଇଥିବାର ଜଣାଯାଏ । ପ୍ରଥମ ଦୁଇଟି ଯୁଦ୍ଧରେ ୟୁଜବେକ କିଛିଟା ସଫଳତା ହାସଲ କଲେ; ମାତ୍ର ତୃତୀୟ ଯୁଦ୍ଧରେ ଶୋଚନୀୟଭାବେ ପରାସ୍ତ ହେଲେ । ବହୁ ମୁସଲମାନ ସୈନ୍ୟ ନିହତ ହେଲେ । ନରସିଂହଦେବ ବିଜୟ ହାସଲ କରିବା ସଙ୍ଗେ ସଙ୍ଗେ ବହୁ ଧନସମ୍ପତ୍ତି ଓ ୟୁଜବେକଙ୍କର ଗୋଟିଏ ଧଳା ହାତୀ ନେଇଗଲେ । ୟୁଜବେକ ଏହାର ପ୍ରତିଶୋଧ ନେବାପାଇଁ ଦିଲ୍ଲୀର ସୁଲତାନଙ୍କୁ ସାହାଯ୍ୟପାଇଁ ନିବେଦନ କଲେ । ଦିଲ୍ଲୀ ସୁଲତାନ ମଧ୍ୟ ଓଡ଼ିଶା ରାଜାଙ୍କୁ ଆକ୍ରମଣ କରିବାପାଇଁ ଏକ ବିରାଟ ସେନାବାହିନୀ ପଠାଇଲେ । ୟୁଜବେକ ଏହି ସେନାବାହିନୀ ସାହାଯ୍ୟରେ ଓଡ଼ିଶା ଆକ୍ରମଣ କଲେ ଓ ଓଡ଼ିଶାର ଉମର୍ଦ୍ଦିନ ଦୁର୍ଗ ପର୍ଯ୍ୟନ୍ତ ଅଗ୍ରସର ହେଲେ । ଶେଷରେ ଓଡ଼ିଆ ସେନାବାହିନୀ ପରାସ୍ତ ହେଲେ । ପରମାର୍ଦ୍ଦିଦେବ ଯୁଦ୍ଧରେ ନିହତ ହେଲେ । ମୁସଲମାନମାନଙ୍କ କର୍ତ୍ତୃତ୍ୱ ରାଢ଼ରେ ପୁଣି ପ୍ରତିଷ୍ଠିତ ହେଲା ।

ମୁସଲମାନ ଐତିହାସିକ ମିନହାଜ ନରସିଂହଦେବ ଓ ମୁସଲମାନମାନଙ୍କ ଯୁଦ୍ଧ ବର୍ଣ୍ଣନା ସୁନ୍ଦରଭାବେ କରିଛନ୍ତି । ସେ ନିଜେ ଯୁଦ୍ଧରେ ଉପସ୍ଥିତ ଥିଲେ । ସୁତରାଂ ତାହା ପ୍ରତ୍ୟକ୍ଷଦର୍ଶୀ ବିବରଣୀ ବୋଲି ଧରାଯାଇପାରେ ।

ସେ ଲେଖିଛନ୍ତି – ''ଓଡ଼ିଶା ରାଜାଙ୍କ ଲାଖନୋର ଆକ୍ରମଣ ବେଳ ପର୍ଯ୍ୟନ୍ତ ତୁଘ୍ରିଲ ତୁଘାନ ଖାଁ ତାଙ୍କ ସୀମା ସୁରକ୍ଷାପାଇଁ କୌଣସି ବନ୍ଦୋବସ୍ତ କରି ନ ଥିଲେ । ୧୨୪୩ ଖ୍ରୀଷ୍ଟାବ୍ଦ ଗ୍ରୀଷ୍ମଋତୁରେ ଓଡ଼ିଆ ସେନାବାହିନୀ ଆକ୍ରମଣ ଆରମ୍ଭ କରିଥିଲେ ହେଁ ମୁସଲମାନ ସୈନ୍ୟମାନେ ସଙ୍ଗଠିତ ହୋଇପାରି ନ ଥିଲେ । ୧୨୪୪ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଏହିପରି ଅବ୍ୟବସ୍ଥା ଲାଗି ରହିଥିଲା । ମାର୍ଚ୍ଚ ମଧ୍ୟଭାଗରେ ତୁଘ୍ରିଲ ଖାଁଙ୍କ ସୈନ୍ୟ ଅଜୟ ଓ ଦାମୋଦର ନଦୀ ପାର ହୋଇ ଲାଖନୋରରେ ପହଞ୍ଚିଲେ । ଏହି ଯୁଦ୍ଧରେ ମୁସଲମାନ ଐତିହାସିକ

ମିନହଜ-ଇ-ସିରାଜ ମଧ୍ୟ ଯୋଗ ଦେଇଥିଲେ । ଏହା ଫଳରେ ଓଡ଼ିଆ ସେନାବାହିନୀ ପଛଘୁଞ୍ଚାଦେବାକୁ ବାଧ୍ୟ ହେଲେ ।''

''୧୨୪୪ ମସିହା ଅପ୍ରେଲ ମାସ ୧୬ ତାରିଖ ଶନିବାର ଦିନ ସକାଳେ ତୁର୍କ ସୈନ୍ୟ କାଟାସିନ୍ ଦୁର୍ଗ ଉପରେ ଆକ୍ରମଣ କଲେ । ଦ୍ୱିପ୍ରହର ସମୟରେ ସେମାନେ ଭୋଜନରେ ବସିଥିଲେ । ଦଳେ ଓଡ଼ିଆ ସୈନ୍ୟ ହଠାତ୍ ଆକ୍ରମଣ କରି ମୁସଲମାନ ସେନାବାହିନୀର ହସ୍ତୀମାନଙ୍କୁ ଧରିନେଲେ । ଦୁଇ ଶହ ପଦାତିକ ଓ ପଚାଶ ଅଶ୍ୱାରୋହୀ ବିଶିଷ୍ଟ ଆଉ ଦଳେ ସୈନ୍ୟ ପଛରୁ ଆକ୍ରମଣ କରି ତୁର୍କ ସୈନ୍ୟମାନଙ୍କୁ ଘଉଡ଼ାଇଦେଲେ । ତୁଘ୍ରିଲଙ୍କଠାରୁ ଓଡ଼ିଶା ରାଜା ଅତି ଦକ୍ଷ ଓ ଶକ୍ତିଶାଳୀ ଥିଲେ । ଓଡ଼ିଆ ରାଜା ଏତେ ଦୂରରୁ ସୈନ୍ୟ ଆଣି ମହଜୁଦ କରି ରଖିଥିଲେ । କେବଳ ସେତିକି ନୁହେଁ, ଆଉ ଦଳେ ସୈନ୍ୟ ଗୁପ୍ତରେ ରଖି ଅଚାନକ ଆକ୍ରମଣ କରି ତୁର୍କ ସୈନ୍ୟମାନଙ୍କୁ ଶୋଚନୀୟଭାବେ ପରାଜିତ କଲେ । ହିନ୍ଦୁସ୍ଥାନରେ ଓ ଏହାପୂର୍ବରୁ କୌଣସି ଭାଗରେ ତୁର୍କ ସୈନ୍ୟ ଏପରି ଶୋଚନୀୟଭାବେ ପରାସ୍ତ ହୋଇ ନ ଥିଲେ ।''

''ଲାଖନଉତିର ଅବସ୍ଥା ମଧ୍ୟ ଗୁରୁତର ଥିଲା । ତୁଘ୍ରିଲ କାଟାସିନ୍ ଦୁର୍ଗରୁ ଫେରି ସର୍ଫ-ଉଲ୍-ମୁଲ୍କ ଆଲ ଆସାନି ଓ କ୍ୱାଦି ଜଲାଲୁଦ୍ଦିନଙ୍କୁ ଦିଲ୍ଲୀ ଦରବାରକୁ ସାହାଯ୍ୟପାଇଁ ପଠାଇଲେ । ଏହାକୁ ମଧ୍ୟ ଦିଲ୍ଲୀର ସୁଲତାନ ମଞ୍ଜୁର କଲେ । ସେ କାରା-ମାଣିକପୁରର ପ୍ରଶାସକ କାରା-କାସ-ଖାଁ ଓ ଅଯୋଧ୍ୟାର ପ୍ରଶାସକ ମାଲିକ ଟାମର ଖାଁଙ୍କୁ ମିଳିତ ସେନାବାହିନୀ ନେଇ ଯାଜନଗରଠାରେ ଥିବା କାଫେରମାନଙ୍କୁ ନିଶ୍ଚିହ୍ନ କରିଦେବାକୁ ଆଦେଶ ଦେଲେ । ଏଥିମଧ୍ୟରେ ଯାଜନଗରର ରାଜା ଲାଖନୋର ଅଧିକାର କରି ସେଠା ଜମିଦାର ଫକର-ଉଲ୍-ମୁଲ୍କ କରିମୁଦ୍ଦିନ ଲାଂଘ୍ରିଙ୍କୁ ହତ୍ୟା କରିଥିଲେ । ବହୁ ମୁସଲମାନ ମଧ୍ୟ ନିହତ ହୋଇଥିଲେ । ରାଢ଼ରେ ମୁସଲମାନ ଶାସନ ଲୋପ ପାଇଲା । ତା'ପର ବର୍ଷ ବରେନ୍ଦ୍ରକୁ ଓଡ଼ିଶା ସୈନ୍ୟ ଆକ୍ରମଣ କଲେ । ୧୨୪୪ ମସିହା ମାର୍ଚ୍ଚ ମାସ ୧୪ ତାରିଖରେ ଓଡ଼ିଆ ପାଇକସେନା ରାଜଧାନୀରେ ପହଞ୍ଚି ତୁଘ୍ରିଲଙ୍କୁ ଆକ୍ରମଣ କଲେ । ତୁଘ୍ରିଲ ଭୟରେ ରାଜଧାନୀରୁ ପଳାଇ ଯାଇ ଲାଖନଉତିର ଫାଟକରେ ଆଶ୍ରୟ ନେଲେ । ଏତିକିବେଳେ ଅଯୋଧ୍ୟା ଓ ମାଣିକପୁରରୁ ଆସୁଥିବା ଗୋଟିଏ ବିରାଟ ମୁସଲମାନ ସେନାବାହିନୀ ବିହାର ଦେଇ ଗଙ୍ଗାନଦୀର ଦକ୍ଷିଣ ପାର୍ଶ୍ୱରେ ପହଞ୍ଚିବା ଖବର ମିଳିଲା । ଫଳରେ ଦୁଇ ଆଡୁ ଓଡ଼ିଆ ସେନାବାହିନୀଙ୍କୁ ଆକ୍ରମଣର ଆଶଙ୍କା ଦେଖାଦେଲା । ସେମାନେ ତେଣୁ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ । ଓଡ଼ିଆ ସେନାବାହିନୀ ଓଡ଼ିଶାକୁ ଫେରିଆସିଲେ । ତୁଘ୍ରିଲ ଏହା

ପରେ ମାଲିକ ଟାମର ଖାଁଙ୍କ ନେତୃତ୍ୱରେ ଆସୁଥିବା ସେନାବାହିନୀକୁ ଫେରିଯିବାକୁ ଚାହିଁଲେ । ମାତ୍ର ଟାମର ଖାଁ ତୁଘ୍ରିଲ ଖାଁକୁ ବଙ୍ଗଳାରୁ ତଡ଼ିଦେବାକୁ ବସିଲେ । ସେ ଲାଖନଉତି ଅବରୋଧ କରି ରଖିଲେ । ତୁଘ୍ରିଲ ଓ ଟାମର ଖାଁଙ୍କ ମଧ୍ୟରେ ଦ୍ୱିପହର ପର୍ଯ୍ୟନ୍ତ ଯୁଦ୍ଧ ହେଲା । ଏହାପରେ ଭୋଜନପାଇଁ ଯୁଦ୍ଧବିରତି ହେଲା । ତୁଘ୍ରିଲଙ୍କ ସୈନ୍ୟମାନେ ଅଶ୍ୱପୃଷ୍ଠରୁ ତଳକୁ ଓହ୍ଲାଇଲେ । କେହି କେହି ସହର ମଧ୍ୟକୁ ଗଲେ । ମାଲିକ ଟାମର ଖାଁ ଏହି ସୁଯୋଗରେ ତୁଘ୍ରିଲଙ୍କ ସୈନ୍ୟଙ୍କ ଉପରେ ଆକ୍ରମଣ କଲେ । ତୁଘ୍ରିଲଙ୍କ ସୈନ୍ୟ ଏହି ଯୁଦ୍ଧପାଇଁ ପ୍ରସ୍ତୁତ ନ ଥିଲେ । ଫଳରେ ସେମାନେ ପରାସ୍ତ ହେଲେ । ତୁଘ୍ରିଲ ପଳାୟନ କରି ନିଜର ଜୀବନ ରକ୍ଷା କଲେ ।''

ନରସିଂହଦେବ ମଧ୍ୟ ଦକ୍ଷିଣରେ କାକତୀୟ ରାଜା ଓ କଳଚୁରୀମାନଙ୍କ ସହିତ ଯୁଦ୍ଧ କରିଥିଲେ । ପୂର୍ବରୁ ଅନଙ୍ଗଭୀମଦେବ ସୋନପୁର ଅଞ୍ଚଳକୁ ନିଜ ରାଜ୍ୟ ଅନ୍ତର୍ଭୁକ୍ତ ବୋଲି ଦାବି କରିବା ଫଳରେ ରତ୍ନପୁରାର କଳଚୁରୀମାନଙ୍କ ସହିତ ଯୁଦ୍ଧ କରିଥିଲେ ଓ ଯୁଦ୍ଧରେ ବିଜୟ ଲାଭ କରିଥିଲେ । ନରସିଂହଦେବ ମଧ୍ୟ ଏହି ଯୁଦ୍ଧରେ ଭାଗ ନେଇ ବିଜୟୀ ହୋଇଥିଲେ । କିନ୍ତୁ ପୂର୍ବ ଗୋଦାବରୀ ଜିଲ୍ଲା ଦାବି କରିବା ଫଳରେ ଅନଙ୍ଗଭୀମଦେବଙ୍କର କାକତୀୟ ରାଜାଙ୍କ ସହିତ ଯୁଦ୍ଧ ହୋଇଥିଲା । ସେତେବେଳେ କାକତୀୟ ରାଜା ଥିଲେ ଗଣପତି । ନରସିଂହଦେବ ଗଣପତିଙ୍କଦ୍ୱାରା ପରାସ୍ତ ହୋଇଥିଲେ । ଏହା ଫଳରେ ପୂର୍ବ ଗୋଦାବରୀ ଜିଲ୍ଲା କାକତୀୟ ରାଜାମାନଙ୍କ ଅଧୀନକୁ ଚାଲିଯାଇଥିଲା । ଲିଙ୍ଗରାଜ ମନ୍ଦିର ଅଭିଲେଖରୁ ଜଣାଯାଏ ଯେ ନରସିଂହଦେବ ଏକ ଖଣ୍ଡାଦ୍ୱାରା କାକତୀୟ ରାଜା ଗଣପତିଙ୍କୁ ଭୟଭୀତ କରିଦେଇଥିଲେ । ଯୁଦ୍ଧରେ ନରସିଂହଦେବ ଯେ ବିଜୟୀ ହେଲେ ଏହା ସ୍ପଷ୍ଟ ଅନୁମାନ କରାଯାଏ । ଫଳରେ ଗଙ୍ଗରାଜା ହରାଇଥିବା ପୂର୍ବ ଗୋଦାବରୀ ଅଞ୍ଚଳ ନରସିଂହଦେବଙ୍କଦ୍ୱାରା ଅଧିକୃତ ହେଲା ।

ନରସିଂହଦେବ ଜୀବନର ଅବଶିଷ୍ଟ ସମୟ ଧର୍ମକାର୍ଯ୍ୟରେ କଟାଇଲେ । ଯୁଦ୍ଧ କ୍ଷେତ୍ରରେ ସେ ଯେପରି ସଫଳତା ହାସଲ କରିଥିଲେ, ଧର୍ମ ଓ ନିର୍ମାଣ କ୍ଷେତ୍ରରେ ମଧ୍ୟ ସେ ସେପରି ପାରଦର୍ଶିତା ଲାଭ କଲେ । ସେ ସୂର୍ଯ୍ୟଦେବତାଙ୍କ ପୂଜାପାଇଁ କୋଣାର୍କ ମନ୍ଦିର ନିର୍ମାଣ କଲେ । ସୀମାଞ୍ଚଳଠାରେ ସେ ମଧ୍ୟ ମନ୍ଦିର ପ୍ରତିଷ୍ଠାର ପରିକଳ୍ପନା କରିଥିଲେ । ସାଧୁସନ୍ଥମାନଙ୍କର ସେ ଉପଯୁକ୍ତ ଯତ୍ନ ନେଉଥିଲେ । ବିଜିତ ରାଜ୍ୟ ରାଢ଼ ଓ ବରେନ୍ଦ୍ରରୁ ଆସୁଥିବା ଶହ ଶହ ସନ୍ନ୍ୟାସୀମାନଙ୍କୁ ସେ ଭୁବନେଶ୍ୱରର ସଦାଶିବ ମଠରେ ରଖି ସେମାନଙ୍କର ପାନ ଓ ଭୋଜନର ବ୍ୟବସ୍ଥା କରିଥିଲେ । ସେମାନଙ୍କପାଇଁ ବହୁ ଗ୍ରାମର ଧାନ

ଖଞ୍ଜା କରିଥିଲେ । ସେ ମଧ୍ୟ ନାଗରିକମାନଙ୍କର ରନ୍ଧନ କାର୍ଯ୍ୟପାଇଁ ଜାଳେଣି କାଠର ବନ୍ଦୋବସ୍ତ କରିଥିଲେ । ଦଣ୍ଡପାଟ ଲୋକଙ୍କୁ ପ୍ରତିଦିନ ସାତଗୋଛା କାଠଦେବାର ବ୍ୟବସ୍ଥା ଅଭିଲେଖରେ ଉଲ୍ଲେଖ ଅଛି । ସେ ରାଜତ୍ୱର ୧୦ ଅଙ୍କରେ ବୈଶାଖ ମାସ ଶୁକ୍ଳପକ୍ଷ ତ୍ରୟୋଦଶୀ ସୋମବାର ଦିନ ଢେଙ୍କାନାଳ ଜିଲ୍ଲାର କପିଳାସ ପାହାଡ଼ସ୍ଥିତ ଶିଖରେଶ୍ୱର ମହାଦେବଙ୍କୁ ଦର୍ଶନ କରିଥିବାର କପିଳାସ ପାହାଡ଼ ଅଭିଲେଖରୁ ଜଣାଯାଏ । ସେ ମଧ୍ୟ ମହାଦେବଙ୍କୁ ଭୀମପୁର ଗ୍ରାମ ଦାନ କରିଥିଲେ । ତାଙ୍କର ତୁଳସୀ ନାମକ ଜଣେ ସେନାପତି ଶିଖରେଶ୍ୱରଙ୍କ ମହାଦେବଙ୍କୁ ରଂପା ଗ୍ରାମ ପ୍ରଦାନ କରିଥିଲେ । ଶ୍ରୀ କୂର୍ମମନ୍ଦିରରେ ଥିବା ଶିଳାଲେଖରୁ ଜଣାଯାଏ ଯେ ତାଙ୍କ ରାଜତ୍ୱ କାଳରେ ସୁଦୂର ସିଂହଳ ଦେଶରୁ ଲୋକମାନେ ଶ୍ରୀକୂର୍ମ ମନ୍ଦିର ଦର୍ଶନ କରିବାପାଇଁ ଆସୁଥିଲେ ଓ ଧୂପ, ଦୀପ ଓ ନୈବେଦ୍ୟର ବ୍ୟବସ୍ଥା କରୁଥିଲେ । ସେ ଦେଶର ରାଜା ଅନକେଶବଦେବଙ୍କ କନ୍ୟା ଭାଗଲ୍ଲଦେବୀ ଶ୍ରୀକୂର୍ମନାଥଙ୍କୁ ଗୋଟିଏ ଅଖଣ୍ଡ ଦୀପ ପ୍ରଦାନ କରିଥିଲେ । ଆଉ ଏକ ଶିଳାଲେଖରୁ ଜଣାଯାଏ ଯେ ଦକ୍ଷିଣ ଦେଶର ସାହାସ ମଲ୍ଲ ନାମକ ଜଣେ ସାମନ୍ତ ରାଜା ଶ୍ରୀ କୂର୍ମନାଥଙ୍କୁ ୧୦୩ ଗୋଟି ସ୍ୱର୍ଣ୍ଣମୁଦ୍ରା ଓ ୫୦ ଗୋଟି ଗାଈ ପୂଜା ନିମନ୍ତେ ପ୍ରଦାନ କରିଥିଲେ । ସେ ମଧ୍ୟ ମନ୍ଦିରରେ ୩୦ଜଣ ଦେବଦାସୀ ଓ ୬ଜଣ ବାଦ୍ୟକାରଙ୍କ ନିମନ୍ତେ ବୃତ୍ତିର ବ୍ୟବସ୍ଥା କରିଥିଲେ । ନରସିଂହଦେବଙ୍କ ଆଦେଶ ଅନୁଯାୟୀ ତାଙ୍କର ଜଣେ ସେନାପତି 'ଆଖତାୟୀ' ନରସିଂହଦେବଙ୍କ ମୃତ୍ୟୁର ଚାରି ବର୍ଷ ପରେ ସୀମାଞ୍ଚଳ ମନ୍ଦିରରେ ଗୋଟିଏ ବିମାନ, କଳସ, ମୁଖଶାଳା ଓ ନାଟମଣ୍ଡପ ନିର୍ମାଣ କରିଥିଲେ । କିନ୍ତୁ ନରସିଂହଦେବଙ୍କ ଅକ୍ଷୟକୀର୍ତ୍ତି ହେଉଛି ବିଶ୍ୱବିଖ୍ୟାତ କୋଣାର୍କ ମନ୍ଦିର ।

## କୋଣାର୍କ ମନ୍ଦିର

ପ୍ରବାଦ ଅଛି ଯେ ଶ୍ରୀକୃଷ୍ଣଙ୍କ ପୁତ୍ର ଶାମ୍ବ ଦୁରାରୋଗ୍ୟ କୁଷ୍ଠରୋଗରେ ଆକ୍ରାନ୍ତ ହୋଇ ଆସି ଏଠାରେ ସୂର୍ଯ୍ୟଙ୍କୁ ଉପାସନା କରିବା ଫଳରେ ରୋଗମୁକ୍ତ ହେଲେ । ରୋଗମୁକ୍ତ ହୋଇ ଦ୍ୱାରିକା ଯିବା ଦିନଠାରୁ କୋଣାର୍କ କ୍ଷେତ୍ରରେ ଚନ୍ଦ୍ରଭାଗାଠାରେ ସୂର୍ଯ୍ୟଦେବତାଙ୍କ ପୂଜା ଏକ ମନ୍ଦିରରେ ଆରମ୍ଭ ହେଲା । ଯୁଗ ଯୁଗ ଧରି ରାଜାମାନେ ସେହିଠାରେ ସୂର୍ଯ୍ୟଦେବତାଙ୍କୁ ପୂଜା କଲେ । କଳିଯୁଗରେ କେତେକ ରାଜା ରାଜତ୍ୱ କଲା ପରେ କେଶରୀବଂଶୀୟ ୪୪ଜଣ ରାଜାଙ୍କ ମଧ୍ୟରୁ ତ୍ରିଂଶତମ ରାଜା ପୁରନ୍ଦର କେଶରୀ ଏହି ସ୍ଥାନରେ ଗୋଟିଏ ମନ୍ଦିର ନିର୍ମାଣ କଲେ । ସୂର୍ଯ୍ୟଙ୍କ ପୂଜା ଆରାଧନା ନିମନ୍ତେ ଆଠ ଗୋଟି ବ୍ରାହ୍ମଣ ଶାସନ ମଧ୍ୟ ବସାଇଲେ ।

ବହୁକାଳ ପରେ ଗଙ୍ଗବଂଶୀୟ ମହାରାଜା ଅନଙ୍ଗଭୀମଦେବ ପୁରୁଷୋତ୍ତମ କ୍ଷେତ୍ରରେ ସବୁଠାରୁ ବୃହତ୍ତମ ମନ୍ଦିର ଜଗନ୍ନାଥଙ୍କ ନିମନ୍ତେ ନିର୍ମାଣ କରାଇବାପାଇଁ ଇଚ୍ଛା କରିଥିଲେ । ମାତ୍ର ମନ୍ଦିରଟି ଇଚ୍ଛା ଅନୁଯାୟୀ ହୋଇପାରି ନ ଥିଲା । ସୁତରାଂ ତାଙ୍କର ପୁତ୍ର ନରସିଂହଦେବ ପୁରନ୍ଦର କେଶରୀଙ୍କ ମନ୍ଦିର ଜୀର୍ଣ୍ଣ ହୋଇଥିବା ଦେଖି ତା'ର ସମ୍ମୁଖରେ ପଦ୍ମତୋଳା ନାମକ ଗଣ୍ଡ ଉପରେ ଗୋଟିଏ ମନ୍ଦିର ନିମନ୍ତେ ଆପଣାର ପାତ୍ର (ଦ୍ୱିତୀୟ ମନ୍ତ୍ରୀ) ଶିବାଇ ସାମନ୍ତରାୟ ମହାପାତ୍ର ବା ଶିବାଇ ସାମନ୍ତରାଙ୍କ ହସ୍ତରେ ନ୍ୟସ୍ତ କଲେ ।

ପ୍ରବାଦ ଅଛି ଯେ ଶିବାଇ ସାନ୍ତରା ମନ୍ଦିର ନିର୍ମାଣ ନିମନ୍ତେ ଗୋଟିଏ ଗଣ୍ଡ ପଥରଦ୍ୱାରା ପୋତାଇବା କାମ ଆରମ୍ଭ କଲେ । ଗଣ୍ଡର କୂଳରୁ ସେ ପଥର ନ ପକାଇ ମଝିରୁ ପକାଉଥିଲେ । ଗଣ୍ଡରେ ଯେତେ ପଥର ପକାଉଥାନ୍ତି, ତାକୁ ରାଘବ ଗିଳିଦେଉଥାଏ । ଏଥିରେ ମର୍ମାହତ ହୋଇ ଶିବାଇ ରାମଚଣ୍ଡୀଙ୍କ ନିକଟରେ ଧାରଣା ଦେଲେ । ଦିନେ ସେ ଏହି ବିପଦ କଥା ନରସିଂହଦେବଙ୍କୁ ଜଣାଇବାକୁ ଯାଉଥିଲେ । ପଥ ମଧ୍ୟରେ ଯାଉ ଯାଉ ସନ୍ଧ୍ୟାରେ ଗୋଟିଏ ଗ୍ରାମରେ ପହଞ୍ଚିଲେ । ସେତିକିବେଳକୁ ଭୟଙ୍କର ଝଡ଼ତୋଫାନ ଆସିଲା । ବାଧ ହୋଇ ସେ ଜଣଙ୍କ ଘରେ ଆଶ୍ରୟ ନେଲେ । ସେ ଘରେ ମଧ ବୁଢ଼ୀଟିଏ ଛଡ଼ା ଆଉ କେହି ନ ଥିଲେ । ରାତିରେ ଶିବାଇ ସାନ୍ତରା ସେଠାରେ ରହିବାକୁ ବାଧ ହେଲେ । ବୁଢ଼ୀଟି ଅତିଥିଚର୍ଚ୍ଚାପାଇଁ ଥାଳିରେ କିଛି ଗରମ କ୍ଷୀରୀ ଆଣି ଦେଲା । କଥିତଅଛି ରାମଚଣ୍ଡୀ ଠାକୁରାଣୀ ନିଜେ ବୁଢ଼ୀ ବେଶରେ ଥାଳିରେ ଭୋଗ ଆଣି ଦେଇଥିଲେ । ଶିବାଇ ମଧ ପରମ ଆନନ୍ଦରେ ସାଙ୍ଗେ ସାଙ୍ଗେ ମଝିରୁ ଖାଇବାକୁ ଆରମ୍ଭ କଲେ । ଗରମ କ୍ଷୀରୀ ଥିବାରୁ ହାତ ଲଗାଇପାରିଲେ ନାହିଁ । ବୁଢ଼ୀଟି ହସି ହସି କହିଲା, ''କିରେ ତୁ କ'ଣ ଶିବାଇ ସାନ୍ତରା ଦେଉଳ ତୋଳାଇଲା ପରି କ୍ଷୀରୀ ମଝିରୁ ଖାଉଚୁ ?'' ସାନ୍ତରା ଆଶ୍ଚର୍ଯ୍ୟ ହୋଇ କଥାଟା କ'ଣ ବୋଲି ପଚାରନ୍ତେ ବୁଢ଼ୀଟି କହିଲା, ''ଶିବାଇ ସାନ୍ତରା କୋଣାର୍କ ମନ୍ଦିର ତୋଳିବାପାଇଁ ଗଣ୍ଡ ମଝିରେ ପଥର ପକାଉଛି ଏବଂ ରାଘବ ସେଗୁଡ଼ିକୁ ଗିଳି ଦେଉଛନ୍ତି । ସେ ଯଦି କୂଳରୁ ପଥର ପକାଇ ଯାଆନ୍ତା, ତା'ହେଲେ ଅକ୍ଳେଶରେ ଗଣ୍ଡ ପୋତା ହୋଇଯାନ୍ତା ।'' ଶିବାଇ ଏଥିରେ ଲଜ୍ଜିତ ହେଲେ । ପରେ ବୁଝିପାରିଲେ ଯେ ମାଆ ରାମଚଣ୍ଡୀ ନିଜେ ବୁଢ଼ୀ ବେଶରେ ତାହାକୁ ମାର୍ଗ ଦେଖାଇଲେ । ସେ ଫେରିଆସି ସେହିପରି ଗଣ୍ଡ ପୋତାଇ ମନ୍ଦିରର ମୂଳପତ୍ତନ ଗଢ଼ିଲେ ।

କୋଣାର୍କ ମନ୍ଦିର ନିର୍ମାଣରେ କେତେ ଖର୍ଚ୍ଚ ହୋଇଥିଲା ତାହା ସମ୍ରାଟ୍ ଆକବରଙ୍କ ରାଜସ୍ୱ ମନ୍ତ୍ରୀ ଆବୁଲଫାଜଲଙ୍କ ଗ୍ରନ୍ଥ 'ଆଇନ-ଇ-ଆକବରୀ'ରେ ଉଲ୍ଲେଖ ଅଛି । ତାଙ୍କ ମତରେ ଓଡ଼ିଶାର ବାର ବର୍ଷର ରାଜସ୍ୱ ଏଥିରେ ବ୍ୟୟିତ ହୋଇଥିଲା ।



କୋଣାର୍କ ମନ୍ଦିର

କେଶରୀ ରାଜତ୍ୱରେ ବାର୍ଷିକ ଆୟ ୩୫ଲକ୍ଷ ମାଢ଼ ସ୍ୱର୍ଣ୍ଣ ଥିଲା । ଭୂମିରୁ ଆୟ ମଧ୍ୟ ୩୫ ଲକ୍ଷ ମାଢ଼ ସ୍ୱର୍ଣ୍ଣ ଥିଲା । ଜଙ୍ଗଲ ରାଜସ୍ୱ ଥିଲା ୪୭୮୮୦୦୦ ମାଢ଼ ସ୍ୱର୍ଣ୍ଣ ଅର୍ଥାତ୍ ୨୩୯୪ ତୋଳା ସ୍ୱର୍ଣ୍ଣ । ଟଙ୍କା ହିସାବରେ ବାର୍ଷିକ ରାଜସ୍ୱ ୪୪୩ ଲକ୍ଷ ୩୩ ହଜାର ୩ ଶହ ୩୩ ଟଙ୍କା ଥିଲା । ଏହି ହିସାବରେ ୧୨ ବର୍ଷର ରାଜସ୍ୱ ଥିଲା ୫୩ କୋଟି ୨୦ ଲକ୍ଷ ଟଙ୍କା ।

ଉଇଲିୟମ ହଣ୍ଟରଙ୍କ ମତରେ ବାର ବର୍ଷର ରାଜସ୍ୱ ୨୨ କୋଟି ୭୫ ଲକ୍ଷ ଟଙ୍କା ଥିଲା । ମନମୋହନ ଗାଙ୍ଗୁଲୀ ବାର୍ଷିକ ରାଜସ୍ୱ ତିନି କୋଟି ଟଙ୍କା ଧରିଛନ୍ତି । ସୁତରାଂ ବାର ବର୍ଷର ରାଜସ୍ୱ ହେଉଛି ୩୬ କୋଟି ଟଙ୍କା । ସେ ଯୁଗରେ ୩୬ କୋଟି ଟଙ୍କା ଯେ କେତେ ବେଶି ଥିଲା, ତାହା କଳ୍ପନା କରି ହୁଏ ନାହିଁ ।

କୋଣାର୍କ ମନ୍ଦିରଟି ୮୭୫ ଫୁଟ ଲମ୍ବ ଓ ୮୪୦ ଫୁଟ ପ୍ରସ୍ଥ ବିଶିଷ୍ଟ ଏକ ଆୟତକ୍ଷେତ୍ର ମଧ୍ୟରେ ଦଣ୍ଡାୟମାନ । ଏହାର ଚାରିପଟେ ଏକ ପ୍ରାଚୀର ଅଛି । ଏହି ପ୍ରାଚୀର କାନ୍ଥର ଉଚ୍ଚତା ୧୪ଫୁଟ ଓ ଓସାର ୫ ଫୁଟ ୪ ଇଞ୍ଚ ଥିଲା ବୋଲି ଐତିହାସିକ ମନମୋହନ ଗାଙ୍ଗୁଲୀ ତାଙ୍କ ପୁସ୍ତକରେ ଉଲ୍ଲେଖ କରିଛନ୍ତି । ଏହାର ପୂର୍ବ ଦିଗର ଦ୍ୱାର ଦେଇ ଗଲେ ପ୍ରଥମେ ପଡ଼େ ବାଲିଦ୍ୱାରା ପୋତି ହୋଇ ପଡ଼ିଥିବା ଏହି ନାଟ ମନ୍ଦିର । ୧୯୦୧ ଖ୍ରୀଷ୍ଟାବ୍ଦରେ ଏହା ପ୍ରଥମେ ଲୋକଲୋଚନକୁ ଆସିଥିଲା । ଏହା ଛାତ–ବିହୀନ । ତେବେ ଜଗମୋହନ ପରି ଏହା ଏକ ପୀଢ଼ଦେଉଳ ଥିଲା ବୋଲି ଅନୁମାନ କରାଯାଏ । ଏହା ଏକ ଉଚ୍ଚ ପିଷ୍ଟ ଉପରେ ଅବସ୍ଥିତ । ଉପରକୁ ଉଠିବାପାଇଁ ଚାରିପାଖରେ ପାହାଚ ଶ୍ରେଣୀ ଅଛି । ପୂର୍ବ ଦିଗର ପାହାଚ ଶ୍ରେଣୀର ଦୁଇ ପାର୍ଶ୍ୱରେ ବିରାଟ ଗଜସିଂହ ମୂର୍ତ୍ତି ବିଦ୍ୟମାନ । ଅତି ବିଶାଳ ହେଲେ ମଧ୍ୟ ଏ ଦୁଇଟି ଅତି କମନୀୟ । ଏଥିରେ ବସ୍ତୁତଃ ବିଶାଳତା ଓ ସୂକ୍ଷ୍ମ କାରୁକାର୍ଯ୍ୟର ଅପୂର୍ବ ସମନ୍ୱୟ ହୋଇଛି । ନାଟମନ୍ଦିରର ସ୍ତମ୍ଭଗୁଡ଼ିକରେ ଓ ତଳଜଙ୍ଘାର ଚତୁଃପାର୍ଶ୍ୱରେ ବାଦ୍ୟଯନ୍ତ୍ର ବଜାଉଥିବା ଅସଂଖ୍ୟ ମୂର୍ତ୍ତି ଖୋଦିତ ହୋଇଅଛି । ସେଗୁଡ଼ିକର କାରୁକାର୍ଯ୍ୟ ମଧ୍ୟ ଅତି ଉଚ୍ଚକୋଟୀର ଅଟେ ।

ନାଟମଣ୍ଡପଠାରୁ ଜଗମୋହନର ଦୂରତା ୩୦ଫୁଟ । ଏହି ଦୁଇ ସୌଧ ମଧ୍ୟରେ ଅରୁଣ ସ୍ତମ୍ଭ ଥିଲା । ମାତ୍ର ଅଷ୍ଟାଦଶ ଶତାବ୍ଦୀରେ ମରହଟ୍ଟାମାନେ ସ୍ତମ୍ଭଟିକୁ ନେଇ ପୁରୀ ଜଗନ୍ନାଥ ମନ୍ଦିର ସମ୍ମୁଖରେ ସ୍ଥାପନ କରିଥିଲେ । ତାହା ଏବେବି ଅକ୍ଷତ ଅବସ୍ଥାରେ ସେଠାରେ ବିଦ୍ୟମାନ ।

କୋଣାର୍କର ବିମାନ ଓ ଜଗମୋହନ ଏକ ପୀଢ଼ଦେଉଳ ଓ ଏହା ପଞ୍ଚରଥ ଶୈଳୀରେ ନିର୍ମିତ ହୋଇଅଛି । ଏହା ୧୫ଫୁଟ ୬ଇଞ୍ଚ ଉଚ୍ଚ ଏକ ପିଷ୍ଟ ଉପରେ ଦଣ୍ଡାୟମାନ । ଏହା ଏକ ବିରାଟ ରଥ ଆକାରରେ ପରିକଳ୍ପନା କରାଯାଇ ନିର୍ମାଣ କରାଯାଇଅଛି । ଏହି ରଥଟି ଚବିଶଟି ଚକ ବିଶିଷ୍ଟ ଓ ଏହା ସାତୋଟି ଅଶ୍ୱଦ୍ୱାରା ଟଣା ହେଉଥିବାର ଦେଖାଯାଏ । ଏହି ଚକଗୁଡ଼ିକର ବ୍ୟାସ ୯ଫୁଟ ୮ ଇଞ୍ଚ । ପ୍ରତି ଚକରେ ଆଠ ଗୋଟି ଫଳି ଅଛି । ପ୍ରତ୍ୟେକ ଫଳିରେ ନାନାବିଧ ମୂର୍ତ୍ତି ଖୋଦିତ ହୋଇଅଛି । ପିଷ୍ଟର ନିମ୍ନଭାଗର ଚାରିପାଖରେ ଗୋଟିଏ ପଂକ୍ତିରେ ହସ୍ତୀମାନଙ୍କ ମୂର୍ତ୍ତି ଅଛି । ଏଥିରେ ଛୋଟ ଛୋଟ ହସ୍ତୀ ଶତ ଶତ ସଂଖ୍ୟାରେ ଓ ଭିନ୍ନ ଭିନ୍ନ ଭଙ୍ଗୀରେ ଖୋଦିତ ହୋଇ ଦର୍ଶକର ନୟନ ମନ ହରଣ କରିନିଏ ।

କୋଣାର୍କର ବିମାନ ବା ଗର୍ଭଗୃହ ଅତି ଉଚ୍ଚ ଥିଲା । ମାତ୍ର ଏହା ଚାରିପାଖରୁ ଭାଙ୍ଗି ପଡ଼ିଅଛି । ଷ୍ଟର୍ଲିଙ୍ଗ ଓ ଫର୍ଗୁସନ ୧୮୩୭ ମସିହାରେ କୋଣାର୍କ ପରିଦର୍ଶନ

କଲାବେଳେ ବିମାନର ଉଚ୍ଚତା ଭଗ୍ନ ଅବସ୍ଥାରେ ୧୨୦ ଫୁଟ ଥିଲା ବୋଲି ମନମୋହନ ଗାଙ୍ଗୁଲୀ ଉଲ୍ଲେଖ କରିଛନ୍ତି । ବର୍ତ୍ତମାନ ଯେଉଁ ଅବଶିଷ୍ଟ ଅଂଶ ଅଛି ସେଥିରୁ ଶିଳ୍ପ ଶାସ୍ତ୍ର ଅନୁଯାୟୀ ଗଣନାରୁ ଜଣାଯାଏ ଯେ ଏହାର ଉଚ୍ଚତା ୨୨୭ ଫୁଟ ଥିଲା । ସେହି ହିସାବରେ ଏହା ବର୍ତ୍ତମାନର ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରଠାରୁ ମଧ୍ୟ ଉଚ୍ଚତମ ଥିଲା ଓ ଓଡ଼ିଶାର ଉଚ୍ଚତମ ମନ୍ଦିର ଥିଲା । ଏବେବି ଭାଙ୍ଗି ପଡ଼ିଥିଲେ ମଧ୍ୟ ଅବଶିଷ୍ଟ ଅଂଶଗୁଡ଼ିକ ବିବିଧ କାରୁକାର୍ଯ୍ୟମଣ୍ଡିତ ହୋଇ ଅପୂର୍ବ ଶୋଭା ପ୍ରଦର୍ଶନ କରୁଛନ୍ତି । ବିମାନର ଉତ୍ତର, ପଶ୍ଚିମ ଓ ଦକ୍ଷିଣ ଭାଗରେ ଉଦୟମାନ ସୂର୍ଯ୍ୟ, ମଧ୍ୟାହ୍ନ ସୂର୍ଯ୍ୟ ଓ ଅସ୍ତଗାମୀ ସୂର୍ଯ୍ୟଙ୍କ ତିନୋଟି ଅନିନ୍ଦ୍ୟ ସୁନ୍ଦର ମୂର୍ତ୍ତି ଦେଖିବାକୁ ମିଳେ । ସେଗୁଡ଼ିକ ଅତି ସୁନ୍ଦର ଓ ଅତି ଉତ୍କୃଷ୍ଟ ନୀଳ ମୁଗୁନି ପଥରରେ ନିର୍ମିତ । ପ୍ରତିମାଗୁଡ଼ିକର ଗଠନ, ଅପୂର୍ବ କମନୀୟ କାନ୍ତି, ସୂକ୍ଷ୍ମ କାରୁକାର୍ଯ୍ୟ ପ୍ରଭୃତି ଓଡ଼ିଶାର ଭାସ୍କର୍ଯ୍ୟ ନୈପୁଣ୍ୟର ପରିଚୟ ଦେଉଅଛି ।

ଗର୍ଭଗୃହ ଏକ ବର୍ଗାକାର କ୍ଷେତ୍ର ଅଟେ । ଏଥିରେ ସୂର୍ଯ୍ୟଦେବଙ୍କର ପରିତ୍ୟକ୍ତ ସିଂହାସନ ବିଦ୍ୟମାନ ଅଛି । ଏହି ରତ୍ନବେଦୀରେ ମଧ୍ୟ ଅନେକ ସୁନ୍ଦର ମୂର୍ତ୍ତି ଖୋଦିତ ହୋଇଅଛି । ସେଥି ମଧ୍ୟରେ ରାଜା ଓ ପୁରୋହିତଙ୍କ ମୂର୍ତ୍ତି ଅଛି । ରାଜା ମୂର୍ତ୍ତିଟି ନରସିଂହଦେବଙ୍କର ବୋଲି ଅନୁମାନ କରାଯାଏ ।

କୋଣାର୍କ ମନ୍ଦିରର ଜଗମୋହନ ଏକ ପୀଢ଼ଦେଉଳ ଅଟେ । ଏହାର ତିନି ସ୍ତରର ପୀଢ଼ ଉପରେ ଏକ ଅର୍ଦ୍ଧଗୋଲକ ଓ ଆମଳକ ଶିଳା ଅଛି । ଏହାର ଗାତ୍ରରେ ଖୋଦିତ କାରୁକାର୍ଯ୍ୟ ଅତୀବ ସୁନ୍ଦର । ଏଥିରେ ପ୍ରଥମେ ମୁଗୁନି ପ୍ରସ୍ତର ନିର୍ମିତ ତିନି ଗୋଟି ଦ୍ୱାର ଥିଲା । ଏବେ ଦୁଇ ଗୋଟି ଦ୍ୱାର ଅଛି । ଏକ ଦ୍ୱାରରୁ ମୂର୍ତ୍ତିଗୁଡ଼ିକ କଢ଼ାଯାଇ ଅନ୍ୟତ୍ର ରଖାଯାଇଅଛି । କେତେକ ପୁରୀ ମନ୍ଦିରର ମୁକ୍ତିମଣ୍ଡପ ଛାତ ଉପରେ ସ୍ଥାପିତ ହୋଇଅଛି । ଜଗମୋହନର ଦୁଇ ଦ୍ୱାରର କାରୁକାର୍ଯ୍ୟ ମଧ୍ୟ ଅତୁଳନୀୟ ।

କୋଣାର୍କ ମନ୍ଦିର ବେଢ଼ା ଭିତରେ ଓ ମନ୍ଦିରର ଦକ୍ଷିଣ-ପଶ୍ଚିମରେ ଆଉ ଏକ ମନ୍ଦିରର ଭଗ୍ନାବଶେଷ ଦେଖାଯାଏ । ପଣ୍ଡିତ କୃପାସିନ୍ଧୁ ମିଶ୍ର ଏହାକୁ ରାମଚଣ୍ଡୀ ମନ୍ଦିର କହିଲାବେଳେ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହାକୁ ଛାୟାଦେବୀଙ୍କ ମନ୍ଦିର ବୋଲି ମତ ଦେଇଛନ୍ତି ।

କୋଣାର୍କ ମନ୍ଦିରର ଆଉ ଏକ ଆକର୍ଷଣୀୟ ବସ୍ତୁ ହେଲା ନବଗ୍ରହ ଶିଳା । ଏଥିରେ ରବି, ସୋମ, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର, ଶନି, ରାହୁ, କେତୁ ପ୍ରଭୃତି ନବଗ୍ରହମାନଙ୍କର ମୂର୍ତ୍ତି ଗୋଟିଏ ମୁଗୁନି ପଥରରେ ଖୋଦିତ ହୋଇଅଛି ।



କୋଣାର୍କର ଶିଳ୍ପ ନୈପୁଣ୍ୟ



କୋଣାର୍କର କାରୁକାର୍ଯ୍ୟପୂର୍ଣ୍ଣ ଚକ୍ର

ଏହାକୁ ଇଂରେଜ ସରକାର ବିଦେଶକୁ ନେବାକୁ ବସିଥିଲେ । ମାତ୍ର ବିଶାଳତା ଯୋଗୁଁ ଏହା ସମ୍ଭବ ହେଲା ନାହିଁ । ଏହାକୁ ଦୁଇ ଖଣ୍ଡ କରି ନେବାର ଚେଷ୍ଟା ମଧ୍ୟ ବିଫଳ ହେଲା । ଗୋଟିଏ ଖଣ୍ଡ ଏବେ ନୂତନ ଗୃହରେ ସ୍ଥାପିତ ହୋଇଅଛି ।

କୋଣାର୍କ ହେଉଛି ଶିଳ୍ପର ସର୍ବଶ୍ରେଷ୍ଠ ନିଦର୍ଶନ । ଶିଳ୍ପ ସମାଲୋଚକ ବିଷନସ୍ୱରୂପ କୋଣାର୍କ ଶିଳ୍ପର ବିଶେଷତ୍ୱ ଦେଖାଇବାକୁ ଯାଇ କହିଛନ୍ତି ଯେ ଓଡ଼ିଶାର କୌଣସି ମନ୍ଦିରରେ କୋଣାର୍କ ଭଳି ଉଚ୍ଚ ଓ ବୃହତ୍ ପୀଠ ଦେଖାଯାଏ ନାହିଁ । ଭୁବନେଶ୍ୱର ମନ୍ଦିରରେ ପୀଠ ଆଦୌ ନାହିଁ । ଦେଉଳର ବାଡ଼ ଏକାବେଳକେ ମୂଳରୁ ଆରମ୍ଭ ହୋଇଅଛି । ପୁରୀ ମନ୍ଦିରରେ ପୀଠ ପ୍ରାୟ ନାହିଁ କହିଲେ ଚଳେ; ଯାହାବା ଅଛି ତାହା ମନ୍ଦିର ତୁଳନାରେ ଅତି ଅଳ୍ପ ଉଚ୍ଚ । କୋଣାର୍କ ଭଳି ପୀଠ ଉପରେ ବାରଣ୍ଡା ମଧ୍ୟ ନାହିଁ । କୋଣାର୍କ ମନ୍ଦିରର ପୀଠ ୧୬ ଫୁଟ ୬ଇଞ୍ଚ ଉଚ୍ଚ । ମନ୍ଦିରର ଆକାର, ବାଡ଼ ଦେହର ପାଗମାନଙ୍କର ଉନ୍ନତି ଓ ଅବନତି ସହିତ ଏହାର ସମ୍ପୂର୍ଣ୍ଣ ସାମଞ୍ଜସ୍ୟ ଅଛି । ଏହି ପୀଠ ଉପରେ ୮ଫୁଟରୁ ୧୨ଫୁଟ ପର୍ଯ୍ୟନ୍ତ ମନ୍ଦିରର ଚତୁର୍ଦ୍ଦିଗରେ ଗୋଟିଏ ବିସ୍ତୃତ ବାରଣ୍ଡା ଅଛି । ସୁତରାଂ ମନ୍ଦିରଟି ପୀଠଠାରୁ ସମ୍ପୂର୍ଣ୍ଣ ପୃଥକ୍ ଜଣାପଡ଼େ । ପୀଠର ଉଚ୍ଚତା, ବିସ୍ତୃତି ଓ ସ୍ୱାତନ୍ତ୍ର୍ୟ ଯୋଗୁଁ ଦର୍ଶକକୁ ମନ୍ଦିରଟି ଶକ୍ତ ଓ ସୁଦୃଢ଼



କୋଣାର୍କ ଅଶ୍ୱ

ଜଣାପଡ଼େ । ଗଠନ ପରିପାଟୀ ମଧ୍ୟ ଚମତ୍କାର ହୋଇଥିବା ଦୃଷ୍ଟିରୁ ଏହା ଦର୍ଶକକୁ ବିମୋହିତ କରେ । ଦ୍ୱିତୀୟରେ, କୋଣାର୍କ ମନ୍ଦିର ଅନ୍ୟାନ୍ୟ ମନ୍ଦିର ଅପେକ୍ଷା ଅଧିକ ଅଳଂକୃତ । ପୁଣି ସମସ୍ତ କାରୁକାର୍ଯ୍ୟ ମଧ୍ୟରେ ଆକାରଗତ ସ୍ୱାତନ୍ତ୍ର୍ୟ ସମ୍ପୂର୍ଣ୍ଣ ସୁରକ୍ଷିତ ଅଛି ।

ଆଉ ଜଣେ ଶିଳ୍ପ ସମାଲୋଚକ ଟି.ବେରୀ କହନ୍ତି ଯେ ମନ୍ଦିର ଶିଳ୍ପର ଆକାର ହେଉଛି ସର୍ବପ୍ରଧାନ ଉପାଦାନ । ଭାରତୀୟ ଶିଳ୍ପୀମାନେ କାରୁକାର୍ଯ୍ୟ ଉପରେ ଗୁରୁତ୍ୱ ଦେଉଥିଲାବେଳେ, ମିଶର ଦେଶର ଶିଳ୍ପୀମାନେ ମନ୍ଦିରର ଆକାର ପ୍ରତି ବିଶେଷ ଧ୍ୟାନ ଦେଇଥାନ୍ତି । ଟି. ବେରୀଙ୍କ ମତରେ ମିଶର ଦେଶର ଆକାରଗତ ବିଶେଷତ୍ୱ କୋଣାର୍କରେ ଅତି ସୁନ୍ଦର ଭାବରେ ସୁରକ୍ଷିତ ଅଛି । କିନ୍ତୁ କୋଣାର୍କରେ ଯେଉଁ କାରୁକାର୍ଯ୍ୟ ଅଛି, ତାହା ମିଶର ଦେଶର ମନ୍ଦିରମାନଙ୍କରେ ନାହିଁ । କୋଣାର୍କ ମନ୍ଦିର ଯେପରି ଅସାଧାରଣ ସୂକ୍ଷ୍ମ କାରୁକାର୍ଯ୍ୟରେ ଭୂଷିତ, ମିଶର ଦେଶର ଶିଳ୍ପୀ ପକ୍ଷରେ ତାହା କଳ୍ପନାତୀତ । ସୁତରାଂ କୋଣାର୍କ ମନ୍ଦିର ମିଶର ଦେଶର ମନ୍ଦିରମାନଙ୍କଠାରୁ ଯେ ବହୁଗୁଣରେ ଉତ୍କୃଷ୍ଟ, ଏହା କହିବା ବାହୁଲ୍ୟମାତ୍ର । ଫର୍ଗୁସନଙ୍କ ମତରେ କୋଣାର୍କ ହେଉଛି ସର୍ବାପେକ୍ଷା ଅଧିକ ଅଳଂକୃତ ମନ୍ଦିର । ମନମୋହନ ଗାଙ୍ଗୁଲୀ ମଧ୍ୟ ଯଥାର୍ଥରେ କୋଣାର୍କକୁ ପୃଥିବୀର ଅଦ୍ୱିତୀୟ ମନ୍ଦିର ବୋଲି ଆଖ୍ୟା ଦେଇଛନ୍ତି ।

କୋଣାର୍କ ଶିଳ୍ପ ଦୃଷ୍ଟିରୁ ଯେପରି ପ୍ରସିଦ୍ଧ, ସ୍ଥାପତ୍ୟ ଦୃଷ୍ଟିରୁ ମଧ୍ୟ ସେହିପରି ଗରୀୟାନ୍ । ଚକର ସାମାନ୍ୟ ଅନିକିଳୀଠାରୁ ବଡ଼ ବଡ଼ ଶିଳାଖଣ୍ଡ ପର୍ଯ୍ୟନ୍ତ ପାଦଠାରୁ ଆରମ୍ଭ କରି ଚୂଡ଼ା ପର୍ଯ୍ୟନ୍ତ ସର୍ବତ୍ର କାରିଗରର ସୂଚିଦ୍ୱାରା ଅତି ସୂକ୍ଷ୍ମଭାବରେ ବିଦ୍ଧ ହୋଇଅଛି । ସେହି ସୂଚିକାମର ସୌନ୍ଦର୍ଯ୍ୟ ଅତୁଳନୀୟ ଓ ଅବର୍ଣ୍ଣନୀୟ ।

କୋଣାର୍କର ସ୍ଥାପତ୍ୟ ମଧ୍ୟରେ ନାନା ଲତା, ଫୁଲ, ଜାଲିକାମ, ନାନା ଜୀବଜନ୍ତୁଙ୍କ କାମ ଓ ମଣିଷଦେବତାମାନଙ୍କର କାମ ପ୍ରସିଦ୍ଧ । ଜାଲି କାମ ଯେ କେତେ ସୂକ୍ଷ୍ମ ତାହା କଳ୍ପନା କରିହୁଏ ନାହିଁ । ଫୁଲ ମଧ୍ୟରେ ପଦ୍ମର ବ୍ୟବହାର ବେଶୀ । କେଉଁଠାରେ ଦେବତା ଆଗ୍ରହରେ କଢ଼ିଟିଏ ହାତରେ ଧରିଛନ୍ତି । କେଉଁଠାରେ ପ୍ରସ୍ଫୁଟିତ ପଦ୍ମ ଫୁଲ ଉପରେ ଦେବତା ଦଣ୍ଡାୟମାନ ହୋଇଛନ୍ତି । ପୀଠର ପାଦରୁ ମନ୍ଦିରର କୁମ୍ଭ ପର୍ଯ୍ୟନ୍ତ ସବୁଆଡ଼ ପଦ୍ମ କାମରେ ମଣ୍ଡିତ ହୋଇଅଛି । ସମ୍ଭବତଃ, କୋଣାର୍କ ପଦ୍ମକ୍ଷେତ୍ର ଥିବାରୁ ପଦ୍ମ କାମର ପ୍ରାଚୁର୍ଯ୍ୟ ଦେଖାଯାଏ ।

ଜୀବଜନ୍ତୁଙ୍କ କାମ ମଧ୍ୟ ଆହୁରି କମନୀୟ ଓ ମନୋମୁଗ୍ଧକର । କୋଣାର୍କର ସିଂହ ମୂର୍ତ୍ତିଗୁଡ଼ିକ ଅତି ବିରାଟ ଓ ଭୟଙ୍କର । ହାତୀର ଦୃଶ୍ୟ ମଧ୍ୟ ଚମତ୍କାର । ମନ୍ଦିରର ତଳପତ୍ତନରୁ ସିଂହାସନ ପର୍ଯ୍ୟନ୍ତ ହାତୀର ଯେଉଁ ପ୍ରତିକୃତି ଖୋଦିତ ହୋଇଅଛି, ସେଗୁଡ଼ିକ ଅତି ଜୀବନ୍ତ ହୋଇଛନ୍ତି । ଜଗମୋହନର ଉତ୍ତରରେ ଦୁଇଟି ପ୍ରକାଣ୍ଡ ହାତୀ ମୂର୍ତ୍ତି ଅଛି । ତାହା ମଧ୍ୟ ଅତି ପ୍ରାକୃତିକ ହୋଇପାରିଛି । କିନ୍ତୁ ମୁଖଶାଳାର ଦକ୍ଷିଣପାର୍ଶ୍ୱରେ ଥିବା ଘୋଡ଼ା ମୂର୍ତ୍ତିଗୁଡ଼ିକ ବିସ୍ମୟ ଜାତ କରନ୍ତି । ସେମାନେ ଦୁଇଟି ଜୀବନ୍ତ ଘୋଡ଼ା ଓ ପ୍ରବଳ ବେଗରେ ଧାବମାନ ହେଉଥିବାର ଜଣାପଡ଼ନ୍ତି । ସ୍ୱନାମଧନ୍ୟ ଶିଳ୍ପ ସମାଲୋଚକ ହାଭେଲ ଲେଖିଛନ୍ତି ଯେ ଦୈବାତ୍ ଯଦି ଏହି ଘୋଡ଼ା ଦୁଇଟି ଗ୍ରୀସୀୟ ଓ ରୋମୀୟ ସ୍ଥାପତ୍ୟ ବୋଲି ପରିଚିତ ହୋଇଯାଆନ୍ତା, ତା'ହେଲେ ଏହି ଚମତ୍କାର କଳାକୌଶଳ ଇଉରୋପ ବା ଆମେରିକାର ରାଜଧାନୀମାନଙ୍କରେ ଥିବା ପ୍ରଧାନ ଯାଦୁଘରମାନଙ୍କରେ ସର୍ବଶ୍ରେଷ୍ଠ ବସ୍ତୁ ହୋଇଥାଆନ୍ତା ।

ସାର୍ ଜନ୍ ମାର୍ଶାଲ ଓଡ଼ିଆ ଶିଳ୍ପୀଙ୍କ ପ୍ରଶଂସା ନ କରି ରହିପାରି ନାହାନ୍ତି । ସେ ଲେଖିଛନ୍ତି – ''ଏହି ଘୋଡ଼ା ଦୁଇଟିରେ ଓଡ଼ିଆମାନେ ଜଗତ୍‌କୁ ଦେଖାଇ ଦେଇଛନ୍ତି କିପରି ସେମାନେ ଇଉରୋପର ସର୍ବଶ୍ରେଷ୍ଠ ଶିଳ୍ପୀମାନଙ୍କ ସଙ୍ଗେ ସମାନ କୌଶଳ ଓ ଦକ୍ଷତା ସହକାରେ ଯୁଦ୍ଧ ଜୟର ଗର୍ବ ଯଥେଷ୍ଟ ଉନ୍ନତ ଓ ଉତ୍ସାହ ସହକାରେ ପ୍ରସ୍ତର ଦେହରେ ଦେଖାଇପାରନ୍ତି ।''

କୋଣାର୍କର ଦେବ-ଦାନବ ମୂର୍ତ୍ତିଗୁଡ଼ିକ ମଧ୍ୟ ସ୍ଥାପତ୍ୟର ଅପୂର୍ବ ନିଦର୍ଶନ । ମୂର୍ତ୍ତିଗୁଡ଼ିକ ଅତି ଜୀବନ୍ତ ଓ ସୁନ୍ଦର । କାଳ କାଳ ଧରି ଖରା ବର୍ଷା ଖାଇ ମଧ୍ୟ ମୂର୍ତ୍ତିଗୁଡ଼ିକ ସେହିଭଳି ନୂତନ ଓ ସଜୀବ ଭଳି ମନେହୁଅନ୍ତି । କୋଣାର୍କ ଶିଳ୍ପୀର ସର୍ବଶ୍ରେଷ୍ଠ କୃତି ହେଉଛି କଳା ମୁଗୁନି ପଥରର ମୂର୍ତ୍ତିଗୁଡ଼ିକ । ଭକ୍ତ, ଗାୟକ, ଶିକାରୀ, ଯୋଦ୍ଧା, ଗୁରୁ ଶିଷ୍ୟ ପ୍ରଭୃତି ମୂର୍ତ୍ତିଗୁଡ଼ିକର ମୁହଁରେ ନାନା ଭାବଭଙ୍ଗୀ ଫୁଟିଉଠିଛି । ସ୍ଥାନେ ସ୍ଥାନେ ଦେବ ଓ ଦାନବ ମୂର୍ତ୍ତିଗୁଡ଼ିକ ଦେହରେ ଯେଉଁ ଅଳଙ୍କାର ଦିଆଯାଇଛି ତାହା ସୂକ୍ଷ୍ମ ସୁନା ଅଳଙ୍କାରକୁ ବି ଟପିଯାଏ । କୋଣାର୍କରେ ସ୍ଥାପତ୍ୟ ଶିଳ୍ପର ଯେ ପରାକାଷ୍ଠା ଦେଖାଯାଏ, ଏହା କହିବା ଅତ୍ୟୁକ୍ତି ମାତ୍ର ।

ସାର୍ ଜନ୍ ମାର୍ଶାଲ କୋଣାର୍କ ଦର୍ଶନରେ ଆତ୍ମହରା ହୋଇଉଠିଥିଲେ । ସେ ଏହାକୁ ହିନ୍ଦୁଧର୍ମର ଶ୍ରେଷ୍ଠ ମନ୍ଦିରଭାବେ ଗ୍ରହଣ କରିଛନ୍ତି । ତାଙ୍କ ଭାଷାରେ – ''ହିନ୍ଦୁ ଧର୍ମରେ ଯେତେ ମନ୍ଦିର ଅଛି ସେମାନଙ୍କ ମଧ୍ୟରୁ କେହି କୋଣାର୍କ ପରି ଏତେ ପ୍ରକାଣ୍ଡ ଓ ଏତେ ସୁନ୍ଦର ଅନୁପାତ ବିଶିଷ୍ଟ ନୁହେଁ... କିମ୍ବା କୌଣସି ଦର୍ଶକର ସ୍ମୃତିରାଜ୍ୟରେ ଏତେ କାଳ ରହି ନ ପାରେ... ।''

କୋଣାର୍କ ଏଡ଼େ ବିରାଟ, ସୁନ୍ଦର, ସୁଦୃଢ଼ ଓ ଏତେ ଅର୍ଥ ଓ ଶ୍ରମ ବ୍ୟୟରେ ନିର୍ମିତ ହୋଇଥିଲେ ମଧ୍ୟ, ବର୍ତ୍ତମାନ ତାହା ଭଗ୍ନ ଅବସ୍ଥାରେ ଅଛି । କୋଣାର୍କର ମୁଖଶାଳା ବ୍ୟତୀତ ଆଉ ସମସ୍ତ ମନ୍ଦିର ଭାଙ୍ଗି ପଡ଼ିଅଛି । ମୁଖଶାଳାର ଯାହା ଅଛି ତାହା ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ମତରେ "ନ ଥିଲା ଭଳି ।"

କୋଣାର୍କ ମନ୍ଦିର ପତନର କାରଣ ସମ୍ପର୍କରେ ବହୁ ମତ ଅଛି । କାହା କାହା ମତରେ, କୋଣାର୍କ ବଡ଼ଦେଉଳର ମସ୍ତକରେ ଗୋଟିଏ ବୃହତ୍ କୁମ୍ଭପଥର ବା ଚୁମ୍ବକ ଥିଲା । ସେହି କୁମ୍ଭପଥର ନିକଟବର୍ତ୍ତୀ ସମୁଦ୍ରରେ ଯାଉଥିବା ଜାହାଜଗୁଡ଼ିକୁ ଟାଣି ଆଣି କୂଳରେ ପକାଇ ଦେଉଥିଲା । ଫଳରେ ଜାହାଜଗୁଡ଼ିକ ଧ୍ୱଂସ ପାଉଥିଲା । ଶେଷରେ ମୋଗଲ ରାଜତ୍ୱରେ ଗୋଟିଏ ଜାହାଜର ମୁସଲମାନ ନାବିକ ଓ ଯାତ୍ରୀମାନେ ଜାହାଜ କୂଳରେ ପଡ଼ିବା ପରେ ଲୁଚି ଲୁଚି ଆସି ମନ୍ଦିରକୁ ଆକ୍ରମଣ କଲେ । ଉପରେ ଥିବା କୁମ୍ଭପଥରଟି ଖସାଇଦେଲେ । ମନ୍ଦିର କ୍ରମେ ଭାଙ୍ଗିପଡ଼ିବା ହେତୁ ପରିତ୍ୟକ୍ତ ହେଲା । ପଣ୍ଡାମାନେ ସୂର୍ଯ୍ୟନାରାୟଣ ମୂର୍ତ୍ତିକୁ ନେଇ ପୁରୀ ଜଗନ୍ନାଥ ମନ୍ଦିରରେ ପ୍ରତିଷ୍ଠା କଲେ ।

କେହିଁ କେହି କହନ୍ତି ଯେ କୋଣାର୍କ ମନ୍ଦିରରେ ଦେବ ପ୍ରତିଷ୍ଠା ଆଦୌ ହୋଇ ନ ଥିଲା । ଏମାନଙ୍କ ମଧ୍ୟରେ ମିଃ ଆର୍ଣ୍ଣେଟ ହେଉଛନ୍ତି ଅଗ୍ରଗଣ୍ୟ । ସେ ଇଂରେଜ ଶାସନ କାଳରେ ମନ୍ଦିରର ଉଦ୍ଧାର କାର୍ଯ୍ୟରେ ନିଯୁକ୍ତ ଥିଲେ । ସେ ତେଣୁ ମନ୍ଦିରକୁ ପୁଙ୍ଖାନୁପୁଙ୍ଖଭାବେ ଦେଖିବାକୁ ସୁବିଧା ପାଇଥିଲେ । ତାଙ୍କ ମତରେ ଦେଉଳର ନିର୍ମାଣ କାର୍ଯ୍ୟ ବାଲିଗଦା ସାହାଯ୍ୟରେ ହେଉଥିଲା । ମନ୍ଦିରର ବାଡ଼ କେତେ ଉଚ୍ଚ ଉଠିବାପରେ ମନ୍ଦିର ବାହାରେ ଓ ଭିତରେ ବାଲି ପୂର୍ଣ୍ଣ କରାଯାଉଥିଲା । ମନ୍ଦିର କାମ ଯେତେ ଉପରକୁ ଉଠେ, ବାଲି ସେତିକି ସେତିକି ପୂର୍ଣ୍ଣ କରାଯାଏ । ଏହି ରୂପେ ସଂପୂର୍ଣ୍ଣ ମନ୍ଦିର ନିର୍ମାଣ ସଙ୍ଗେ ସଙ୍ଗେ ପ୍ରକାଣ୍ଡ ବାଲି ପର୍ବତମାନ ତିଆରି ହେଉଥିଲା । ଏହି ବାଲି ପର୍ବତ ସାହାଯ୍ୟରେ ବିରାଟ ଶିଳାମାନ ଉପରକୁ ଅନାୟାସରେ ଯାଇପାରୁଥିଲା । ନିର୍ମାଣ ଶେଷ ପରେ ବାହାର ଓ ଭିତରୁ ବାଲି ବାହାର କରିଦିଆଯାଉଥିଲା । ମିଃ ଆର୍ଣ୍ଣେଟଙ୍କ ମତରେ କୋଣାର୍କ ଦେଉଳ ମଧ୍ୟରୁ ବାଲି ବାହାର କରିଦେବାପରେ ତାହାର କ୍ରମବକ୍ର କାନ୍ଥ ଭିତର ପଟକୁ ପଡ଼ିଗଲା । କିନ୍ତୁ ଏହି ମତକୁ ଖଣ୍ଡନ କରି ପଣ୍ଡିତ କୃପାସିନ୍ଧୁ ମିଶ୍ର କହିଛନ୍ତି ଯେ ବାଲିଗଦାଦ୍ୱାରା ମନ୍ଦିର ନିର୍ମାଣ ଯୁକ୍ତି ଗ୍ରହଣୀୟ ନୁହେଁ । କାରଣସ୍ୱରୂପ ସେ କହିଛନ୍ତି ଯେ ବାଲି ନ ଥିଲେ ମଧ୍ୟ ଭୁବନେଶ୍ୱରରେ ଅତି ଉଚ୍ଚ ଲିଙ୍ଗରାଜ ମନ୍ଦିର ନିର୍ମାଣ ହୋଇପାରିଛି ।

ଭୂମିକମ୍ପ ବା ବିଦ୍ୟୁତ୍ ପ୍ରବାହରୁ ବଡ଼ଦେଉଳ ଭାଙ୍ଗିଯାଇଥିଲା ବୋଲି ଐତିହାସିକ ଷ୍ଟର୍ଲିଙ୍ଗ ଅନୁମାନ କରନ୍ତି । ମାତ୍ର ଭୂମିକମ୍ପ ହୋଇ ବଡ଼ଦେଉଳ ଭାଙ୍ଗି ଯାଇଥିଲେ ମୁଖଶାଳାର ମଧ୍ୟ ବଡ଼ଦେଉଳ ଭଳି ଦଶା ହୋଇଥାନ୍ତା ବୋଲି ପଣ୍ଡିତ ମିଶ୍ର ମତ ଦେଇଛନ୍ତି । ଭୂମିକମ୍ପ ମଧ୍ୟ କେବଳ କୋଣାର୍କ ବେଢ଼ା ମଧ୍ୟରେ ସୀମାବଦ୍ଧ ଥିବା ବିଶ୍ୱାସଯୋଗ୍ୟ ନୁହେଁ । ଏପରି ଭୂମିକମ୍ପ କେବେ ଏ ଅଞ୍ଚଳରେ ହୋଇଥିବାର ଜନଶ୍ରୁତି ମଧ୍ୟ ନାହିଁ । ସେହିପରି ବିଦ୍ୟୁତ ପ୍ରବାହ ଫଳରେ କୋଣାର୍କର ପତନର ସମ୍ଭାବନା ଅଳ୍ପ । କୋଣାର୍କର ବଡ଼ଦେଉଳର କାନ୍ଥ ୨୦ରୁ ୨୫ଫୁଟ ମୋଟ ହୋଇଥିବାରୁ ବିଦ୍ୟୁତ୍ ପ୍ରବାହ ଏହାକୁ ଭାଙ୍ଗିବାକୁ ଅସମର୍ଥ ବୋଲି ସେ ମତ ଦେଇଛନ୍ତି ।

ଡଃ ରାଜେନ୍ଦ୍ରଲାଲ ମିତ୍ର, ଫର୍ଗୁସନ ଓ ଉଇଲିୟମ ହଣ୍ଟର ପ୍ରଭୃତି ଦେଉଳ ଗଠନରେ ଦୋଷ ଥିବାର ବିଶ୍ୱାସ କରନ୍ତି । ଦେଉଳର ମୂଳପତ୍ତନ ବାଲିସ୍ତର ଭେଦି ଅପେକ୍ଷାକୃତ ଶକ୍ତସ୍ତର ପର୍ଯ୍ୟନ୍ତ ଯାଇ ନ ଥିଲା । ମୁଖଶାଳାରେ ୪୦ଫୁଟ ଉଚ୍ଚ ଏକ ପଥରରେ ନିର୍ମିତ ଚାରି ଗୋଟି ଖମ୍ବ ଥିଲା । ମୂଳପତ୍ତନ ଦବିଯିବା ଫଳରେ ଖମ୍ବଗୁଡ଼ିକ ଦବିଯାଇ ଭାଙ୍ଗିଯାଇଥିବା କଥା ହଣ୍ଟର ମଧ୍ୟ ଉଲ୍ଲେଖ କରିଛନ୍ତି । ତାଙ୍କ ମତରେ କୋଣାର୍କ ମନ୍ଦିର ଶେଷ ନ ହେଉଣୁ ସୂର୍ଯ୍ୟଦେବତାଙ୍କ ପ୍ରତିଷ୍ଠା ପୂର୍ବରୁ କୋଣାର୍କର ଅବସାନ ହୋଇଥିଲା । ମାତ୍ର ବିଷନସ୍ୱରୂପ କହିଛନ୍ତି ଯେ କୋଣାର୍କ ମନ୍ଦିରର ମୂଳପତ୍ତନ ଉପରିସ୍ଥ ବାଲୁକାସ୍ତର ଭେଦ କରି ଶକ୍ତ ନିମ୍ନ ବାଲି ସ୍ତରକୁ ଯାଇଥିଲା । ଏହା ଛଡ଼ା କୋଣାର୍କର କୁଶଳୀ ଶିଳ୍ପୀଗଣ କେବଳ ଉପରିସ୍ଥ ବାଲୁକାଭାଗରେ ଏତେ ଜ୍ଞାନ, ଧନ ଓ ଶ୍ରମ ବ୍ୟୟକରି ପ୍ରକାଣ୍ଡ ମନ୍ଦିର ନିର୍ମାଣ କରିଥିବା ବିଶ୍ୱାସଯୋଗ୍ୟ ନୁହେଁ । ଦେଉଳ କାନ୍ଥ ବା ଦେହରେ କୌଣସି ଫାଟ ହୋଇଥିବାର ମଧ୍ୟ ଦୃଶ୍ୟ ହୁଏ ନାହିଁ ।

ପୁଣି ଐତିହାସିକ ହଣ୍ଟରଙ୍କ ମତରେ ମନ୍ଦିର ନିର୍ମାଣ କାର୍ଯ୍ୟ ଆଦୌ ସମ୍ପୂର୍ଣ୍ଣ ହୋଇ ନ ଥିଲା । ଦେବତାଙ୍କ ପ୍ରତିଷ୍ଠା ମଧ୍ୟ ହୋଇ ନ ଥିଲା । ମାତ୍ର ବିଷନସ୍ୱରୂପ ବିଶ୍ୱାସ କରନ୍ତି ଯେ ମନ୍ଦିର ମଧ୍ୟରେ ବହୁକାଳ ପର୍ଯ୍ୟନ୍ତ ଦେବପୂଜା ଚାଲିଥିଲା । 'ମାଦଳାପାଞ୍ଜି ଓ ନରସିଂହଦେବଙ୍କ ତାମ୍ରଶାସନ'ରୁ ଦେବତାଙ୍କପାଇଁ ଭୋଗବ୍ୟବସ୍ଥା ହୋଇଥିବା କଥା ଜଣାଯାଏ । ଏ ବିଷୟରେ ରାଜେନ୍ଦ୍ରଲାଲ ମିତ୍ର କହନ୍ତି ଯେ ଦେଉଳରେ ଦେବ ପ୍ରତିଷ୍ଠା ନ ହୋଇଥିବା କଥା ପ୍ରଥମେ ସେ ବିଶ୍ୱାସ କରୁଥିଲେ ଓ ସେହି ବିଶ୍ୱାସ ବଳରେ ହଣ୍ଟରଙ୍କୁ ବୁଝାଇଦେଇଥିଲେ । ମାତ୍ର ଦେବତା ପୂଜା ପାଉଥିବା କଥା ସେ ପରେ ଜାଣିବାକୁ ପାଇଲେ ।

ପଣ୍ଡିତ କୃପାସିନ୍ଧୁ ମିଶ୍ର ସ୍ଥାନୀୟ କିମ୍ବଦନ୍ତୀ ସାହାଯ୍ୟରେ ପତନର କାରଣ ନିର୍ଣ୍ଣୟ କରିଛନ୍ତି । ସେହି କିମ୍ବଦନ୍ତୀଟି ହେଲା –

''ଭଲା ରାମଚଣ୍ଡୀ ଭଲାରେ
କଳାପାହାଡ଼କୁ ଦୁଆରେ ବସାଇ
ଭଲା ପାଣି ଆଣି ଗଲାରେ ।''

ତାଙ୍କ ମତରେ ୧୫୬୮ ଖ୍ରୀଷ୍ଟାବ୍ଦରେ ଦ୍ୱିତୀୟ ମୁକୁନ୍ଦଦେବ ଯୁଦ୍ଧରେ ନିହତ ହେଲେ । ଏହାପରେ କଳାପାହାଡ଼ ଓଡ଼ିଶାର ନାନା ମନ୍ଦିର ଧ୍ୱଂସ କରିବାରେ ବ୍ୟାପୃତ ହେଲା । ଯାଜପୁର ଓ ଭୁବନେଶ୍ୱରରେ ଅତ୍ୟାଚାରର ତାଣ୍ଡବଲୀଳା ଚଳାଇଲା । ଏହାପରେ ଓଡ଼ିଶାର ବିରାଟ ଓ ରମଣୀୟ କୋଣାର୍କ ମନ୍ଦିରକୁ ଆକ୍ରମଣ କଲା । ଏକାବେଳକେ ଭୂମିସାତ୍ କରିଦେବାକୁ ମଧ୍ୟ ଚେଷ୍ଟା କଲା । ମାତ୍ର ସେ ଯୁଗର ଅସ୍ତ୍ରଶସ୍ତ୍ର, ଗୁଳି ଗୁଳା କୋଣାର୍କ ମନ୍ଦିରର ୨୦/୨୫ଫୁଟ ମୋଟ କାନ୍ଥ ଭାଙ୍ଗିବାପାଇଁ ଅସମର୍ଥ ଥିଲା । ତେଣୁ ମନ୍ଦିର ଭାଙ୍ଗି ନ ପାରି ତାହାର କଳସ ଓ ଧ୍ୱଜପଦ୍ମକୁ ବାହାର କରିଦେଲା । ସେ ଆମଳକ ଶିଳାକୁ ନେଇଯାଇପାରି ନ ଥିଲେ ମଧ୍ୟ ତାହାକୁ ବିଧ୍ୱସ୍ତ ଓ ସ୍ଥାନଭ୍ରଷ୍ଟ କରିଦେବାରେ ଯେ ସକ୍ଷମ ହେଲା, ଏହା ଅତି ସ୍ପଷ୍ଟ ।

କଳାପାହାଡ଼ ମଧ୍ୟ ରାମଚଣ୍ଡୀ ମନ୍ଦିର ଆକ୍ରମଣ କରିଥିଲା ବୋଲି ପଣ୍ଡିତ ମିଶ୍ର ମତ ଦେଇଛନ୍ତି । ଏହା କଳା-କୌଶଳ, ସୌନ୍ଦର୍ଯ୍ୟରେ କୋଣାର୍କର ପ୍ରାୟ ସମକକ୍ଷ ଥିଲା । କୋଣାର୍କ ମନ୍ଦିର ଭାଙ୍ଗି ନ ପାରି ରାମଚଣ୍ଡୀ ମନ୍ଦିର ଉପରେ ପ୍ରତିହିଂସା ଓ ପାଶବିକ ପ୍ରବୃତ୍ତି ଚରିତାର୍ଥ କରିଥିଲା । ସମ୍ଭବତଃ, ଏଇଥିରୁ ଉପରୋକ୍ତ କିମ୍ବଦନ୍ତୀଟି ସୃଷ୍ଟି ହେଲା ।

ସେ ଯାହାହେଉ, ଆମଳକ ଶିଳାଟି ସ୍ଥାନଚ୍ୟୁତ ହେବାରୁ କୋଣାର୍କ ମନ୍ଦିରଟି ଊର୍ଦ୍ଧ୍ୱଚାପବିହୀନ ହୋଇଗଲା । ଫଳରେ ରେଖାଂଶ ଆପେ ଆପେ ଭାଙ୍ଗିବାକୁ ଆରମ୍ଭ କଲା । ମୁସଲମାନମାନଙ୍କ ଆକ୍ରମଣ ଯୋଗୁଁ ଦେଉଳଟି ଅପବିତ୍ର ହୋଇପଡ଼ିବାରୁ ଭୋଗ ଓ ଯାତ୍ରା ସବୁ ବନ୍ଦ ହେଲା । ଶେଷରେ ସୂର୍ଯ୍ୟନାରାୟଣ ମୂର୍ତ୍ତିକୁ ସ୍ଥାନାନ୍ତରିତ କରାଗଲା । ପରିତ୍ୟକ୍ତ ଅବସ୍ଥାରେ ରହିବାରୁ ରାଜାମାନେ ଯତ୍ନ ନ ନେଇଥିବା ସମ୍ଭବ ।

ପରିତ୍ୟକ୍ତ ଅବସ୍ଥାରେ କୋଣାର୍କ କେତେକାଳ ପର୍ତ୍ତୁଗୀଜ୍ ଜଳଦସ୍ୟୁମାନଙ୍କର ଆଶ୍ରୟସ୍ଥଳ ହେଲା । ତାହା କ୍ରମେ ନିବିଡ଼ ଜଙ୍ଗଲରେ ପରିଣତ ହେବାରୁ ଗଧିଆ, ମାଙ୍କଡ଼ ଓ ଭାଲୁ ପ୍ରଭୃତି ହିଂସ୍ରଜନ୍ତୁଙ୍କ ବାସସ୍ଥଳୀ ହେଲା । ଦୂରରୁ ଏହା

ଘଞ୍ଚ ଅରଣ୍ୟଯୁକ୍ତ କ୍ଷୁଦ୍ର ପର୍ବତ ଭଳି ଦେଖାଗଲା । ଦିନବେଳେ ମଧ୍ୟ ଲୋକେ ସେଠାକୁ ଯିବାକୁ ଭୟ କରୁଥିଲେ ।

## ଉଦ୍ଧାର କାର୍ଯ୍ୟ

୧୮୮୧ ମସିହାରେ ଲେଫ୍ଟନାଣ୍ଟ୍ ଗଭର୍ଣ୍ଣର ସାର୍ ଏସ୍. ସି. ବେଲି ଅଳ୍ପ ବ୍ୟୟରେ କୋଣାର୍କ ଉଦ୍ଧାର କରିବାକୁ ପ୍ରସ୍ତାବ ଦେଇଥିଲେ । କିନ୍ତୁ ଏହା ସମ୍ଭବ ହୋଇ ନ ଥିଲା । ୧୮୯୨ ମସିହାରେ ଭାରତୀୟ ଯାଦୁଘରର କର୍ମକର୍ତ୍ତାମାନେ କୋଣାର୍କ ଉଦ୍ଧାରପାଇଁ ପ୍ରସ୍ତାବ ଦେଲେ । ତାହା ମଧ୍ୟ ଫଳପ୍ରଦ ହେଲା ନାହିଁ । ୧୯୦୧ ମସିହାରେ ସାର୍ ଜନ୍ ଉଡ୍‌ବର୍ଣ୍ଣ ଓଡ଼ିଶାର ଲେଫ୍ଟନାଣ୍ଟ ଗଭର୍ଣ୍ଣର ହୋଇ ଆସିଲେ । ସେହି ବର୍ଷ କୋଣାର୍କର ମୁଖଶାଳାରୁ ବାଲି ଖୋଳା ଆରମ୍ଭ ହେଲା । ପ୍ରଥମେ ରଥର ସପ୍ତାଶ୍ୱ, ତା'ପରେ ନାଟମନ୍ଦିର ଓ କ୍ରମେ ମୁଖଶାଳା ଦେଖାଗଲା । ଗୋଟି ଗୋଟି ହୋଇ ସମସ୍ତ ମନ୍ଦିର ବାହାରିଲା । ୧୯୦୬ ମସିହାରେ ପୁଣି ଉଦ୍ଧାର କାମ ଚାଲିଲା । ବଡ଼ଦେଉଳ, ନାଟମନ୍ଦିର, ରାମଚଣ୍ଡୀ ଦେଉଳ ପ୍ରଭୃତିର ଭଙ୍ଗା କାନ୍ଥ ଉପରେ ଶକ୍ତ ଚୂନ କାମ ହୋଇ ସେଗୁଡ଼ିକ ସୁରକ୍ଷିତ କରାଗଲା ।

## ଗୋପୀନାଥ ମନ୍ଦିର

ବିନୋଦ ଚୈତନ୍ୟ ବାବାଜିଙ୍କ 'ଗୋପୀନାଥ ଚରିତାମୃତ' ନାମକ ଗ୍ରନ୍ଥରେ ଏକ କିମ୍ବଦନ୍ତୀର ଉଲ୍ଲେଖ ଅଛି । ଏହି କିମ୍ବଦନ୍ତୀ ଅନୁଯାୟୀ ଲାଙ୍ଗୁଳା ନରସିଂହଦେବ ଦୀର୍ଘଦିନ ଧରି ଅପୁତ୍ରକ ଥିଲେ । ସେ ତେଣୁ ତୀର୍ଥଯାତ୍ରାରେ ବାହାରିଲେ । ଚିତ୍ରକୂଟରେ ପହଞ୍ଚି ଭଗବାନ୍ ଶ୍ରୀରାମଙ୍କ ସ୍ଥାପିତ ମୂର୍ତ୍ତିକୁ ପୂଜା କଲେ । ତାଙ୍କୁ ସ୍ୱପ୍ନାଦେଶ ହେଲା ଯେ ଭଗବାନ୍ କୌଣସି ରମଣୀୟ ସ୍ଥାନରେ ରହିବେ । ରାଜା ସେ ମୂର୍ତ୍ତି ଧରି ନିଜ ରାଜ୍ୟକୁ ଆସିଲେ । ବହୁ ସ୍ଥାନ ଖୋଜାଖୋଜି ପରେ ସେ ବାଲେଶ୍ୱରରେ ଏକ ରମଣୀୟ ସ୍ଥାନରେ ମନ୍ଦିର ନିର୍ମାଣ କରି ମୂର୍ତ୍ତି ପ୍ରତିଷ୍ଠା କଲେ । ରାଣୀ ତାଙ୍କ ନାମ ଗୋପୀନାଥ ରଖିଲେ । ପରେ ସେ କ୍ଷୀରଚୋରା ଗୋପୀନାଥ ନାମରେ ଖ୍ୟାତ ହେଲେ ।

## ବିଦ୍ୟାନୁରାଗ

ନରସିଂହଦେବ ମଧ୍ୟ ପଣ୍ଡିତ ଓ ବିଦ୍ୟାନୁରାଗୀ ଥିଲେ । ତାଙ୍କ ରାଜସଭାରେ ବିଦ୍ୟାଧର ନାମକ ଏକ ବଡ଼ ପଣ୍ଡିତ ଥିଲେ । ସେ 'ଏକାବଳୀ' ନାମକ ଏକ ଅଳଙ୍କାର ଶାସ୍ତ୍ର ରଚନା କରିଥିଲେ । ଏଥିରେ ୩୬୪ ଗୋଟି ଶ୍ଳୋକ ଅଛି । ଏହି

୩୬୪ ଶ୍ଳୋକ ମଧ୍ୟରୁ ୩୧୪ ଗୋଟି ଶ୍ଳୋକ କେବଳ ରାଜା ନରସିଂହଦେବଙ୍କ ପ୍ରଶଂସା ସମ୍ବଳିତ । ଏ ଗ୍ରନ୍ଥରୁ ନରସିଂହ ଦେବ ଅତି ପରାକ୍ରମଶାଳୀ, ସମରନିପୁଣ, ବିଦ୍ୱାନ୍, ବିଦ୍ୟାନୁରାଗୀ ଓ ଦାନୀ ଥିଲେ ବୋଲି ଜଣାଯାଏ । ତାଙ୍କ ସମୟରେ ସଂସ୍କୃତ ସାହିତ୍ୟ ଉତ୍କର୍ଷ ଲାଭ କରିଥିଲା ।

ନରସିଂହଦେବ 'ଚତୁର୍ଦ୍ଦଶ ଭୁବନାଧିପତି ଶ୍ରୀମତ୍ ପୁରୁଷୋତ୍ତମ ଚରଣାଦେଶତଃ ସମରମୁଖାନେବ ରିପୁଦର୍ପ ମର୍ଦ୍ଦନ ଭୁଜବଳ ପରାକ୍ରମ ପରମମାହେଶ୍ୱର ପରମଭଟ୍ଟାରକ ଶ୍ରୀଦୁର୍ଗା ପୁତ୍ର ଶ୍ରୀପୁରୁଷୋତ୍ତମ ପୁତ୍ରତ୍ରୟୀ ବସୁନ୍ଧରା ସମୁଦ୍ଧରଣ ପ୍ରଚଣ୍ଡ ଦୋର୍ଦ୍ଦଣ୍ଡ ମହାରୋହ ମହାରାଜାଧିରାଜ ପରମେଶ୍ୱର ଗଙ୍ଗାନ୍ୱୟାବଲମ୍ବନସ୍ତମ୍ଭ ଶ୍ରୀଗଜନନ୍ତକର୍ମସମ୍ଭୂତ ବୀର ଶ୍ରୀ ନରସିଂହଦେବ' ଉପାଧିରେ ଭୂଷିତ ହୋଇଥିବାର ଜଣାଯାଏ ।

କାଳର କରାଳ ଗର୍ଭରେ ନରସିଂହଦେବ ଲୀନ ହୋଇଯାଇଛନ୍ତି ସତ୍ୟ; ମାତ୍ର ରହିଅଛି କୋଣାର୍କ ମନ୍ଦିର – ଯାହାକି କେବଳ ହିନ୍ଦୁ କାହିଁକି ସ୍ଥାପତ୍ୟ ଜଗତ୍‌ର ସର୍ବଶ୍ରେଷ୍ଠ ନିଦର୍ଶନ । ଏହାର ପ୍ରସ୍ତରଖଣ୍ଡରେ କେତେ ଯେ ଅସୀମ ଜ୍ଞାନରାଶି, ଚିନ୍ତା ଓ ଅନୁଭବ ବିସ୍ମୃତ ହୋଇ ରହିଛି ତାହା କଳନା କରିହୁଏ ନାହିଁ । ପଣ୍ଡିତ ମିଶ୍ରଙ୍କ ଭାଷାରେ ''ସମସ୍ତ ଜ୍ଞାନ ବିଭବ, ସମସ୍ତ ସୌନ୍ଦର୍ଯ୍ୟ ଓ ଗାମ୍ଭୀର୍ଯ୍ୟ ମଧ୍ୟରେ ପୁଣ୍ୟାତ୍ମା ଲାଙ୍ଗୁଳା ନରସିଂହଦେବ ଏବେବି ତା'ର ଶିଳାଖଣ୍ଡରେ ଦିବ୍ୟ ବପୁରେ ଦର୍ଶକ ସମ୍ମୁଖରେ ବିରାଜିତ ହୋଇଛନ୍ତି ।''

# ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର
# ଶ୍ରୀ କପିଳେନ୍ଦ୍ରଦେବ

ପଞ୍ଚଦଶ ଶତାବ୍ଦୀର ଦ୍ୱିତୀୟଭାଗରେ ଓଡ଼ିଶାରେ ଏକ ନୂତନ ରାଜବଂଶର ଅଭ୍ୟୁଦୟ ହେଲା । ଏହି ନୂତନ ବଂଶର ରାଜାଗଣ ନିଜକୁ ସୂର୍ଯ୍ୟବଂଶୀ ରାଜା ବୋଲି ଅଭିହିତ କରିଥିଲେ । ଗଜପତି ଉପାଧି ଧାରଣ କରୁଥିବାରୁ ଏମାନେ ସୂର୍ଯ୍ୟବଂଶୀ ଗଜପତି ବୋଲି ଖ୍ୟାତ ହେଲେ ।

## ସିଂହାସନ ପ୍ରାପ୍ତି

ଏହି ବଂଶର ପ୍ରତିଷ୍ଠାତା ତଥା ପ୍ରଥମ ରାଜା ଥିଲେ କପିଳେନ୍ଦ୍ରଦେବ । 'ମାଦଳାପାଞ୍ଜି' ଓ 'ଉତ୍ତରଦେଶ ରାଜବଂଶାବଳୀ'ରୁ ଏହାଙ୍କ ବିଷୟରେ ବହୁ ତଥ୍ୟ ମିଳେ । କେଉଁ ଘଟଣାଚକ୍ରରେ ସେ ରାଜସିଂହାସନ ଲାଭ କଲେ ତାହା ଏଥିରେ ବର୍ଣ୍ଣିତ ଅଛି । ମାଦଳାପାଞ୍ଜିରୁ ଜଣାଯାଏ ଯେ ତାଙ୍କର ବାଲ୍ୟ ନାମ କପିଳ ରାଉତ ଥିଲା । ସେ ଅତ୍ୟନ୍ତ ଦରିଦ୍ର ଥିଲେ । ଏପରିକି ସେ ଏକ ବ୍ରାହ୍ମଣ ପରିବାରରେ ଗାଈ ଚରାଇବା କାର୍ଯ୍ୟରେ ନିଯୁକ୍ତ ଥିଲେ । କଥିତ ଅଛି, ସେ ଦିନ ଦ୍ୱିପ୍ରହରରେ ଗାଈ ଗୋଠ ଛାଡ଼ି କ୍ଳାନ୍ତ ହୋଇ ଗଛତଳେ ଶୋଇପଡ଼ିଥିବା ଅବସ୍ଥାରେ ଏକ ନାଗସାପ ତାଙ୍କ ମୁଣ୍ଡ ଉପରେ ଫଣା ଟେକି ରହିଥିଲା । ତାଙ୍କର ସାଙ୍ଗ ପିଲା ଚିତ୍କାର କରି ଡାକନ୍ତେ ସେ ସାପଟି ସେ ସ୍ଥାନ ଛାଡ଼ି ଚାଲିଯାଇଥିଲା । ସେ ଯେ ଭବିଷ୍ୟତରେ ରାଜା ହେବେ, ଏକଥା ସେଦିନୁ ଜଣାପଡ଼ିଥିଲା ।

'ମାଦଳାପାଞ୍ଜି'ରୁ ମଧ୍ୟ ଜଣାଯାଏ ଯେ କପିଳ ବାଲ୍ୟକାଳରେ ଚୋରି କରି ଜୀବିକା ନିର୍ବାହ କରୁଥିଲେ । ତାଙ୍କର କାଶିଆ ବା କାଶି ଦାସ ନାମକ ଏକ ସଙ୍ଗୀ ଥିଲେ । ଦୁହିଁଙ୍କ ମଧ୍ୟରେ ଅଭେଦ ପ୍ରୀତି ଥିଲା । ପରବର୍ତ୍ତୀକାଳରେ କପିଳ ରାଜା ହେବା ପରେ କାଶିକୁ ନିଜର ପୁରୋହିତଭାବେ ନିଯୁକ୍ତ କରିଥିଲେ । ଏବେବି ପ୍ରବାଦ ଅଛି ''କାଶିଆ କପିଳା ଆଉ କି ଭେଟ !''

'ଉତ୍ତରଦେଶ ରାଜବଂଶାବଳୀ'ରେ ମଧ୍ୟ କପିଳେନ୍ଦ୍ରଦେବ କିପରି ରାଜା ହେଲେ ତାହା ବର୍ଣ୍ଣିତ ହୋଇଅଛି –

× × × × ×

''ଏହାପରେ ଗଙ୍ଗବଂଶର ଶେଷରାଜା ମତ୍ତଭାନୁଦେବ ଶ୍ରୀଜଗନ୍ନାଥଙ୍କୁ ନିବେଦନ କଲେ, 'ମୋ ପରେ କିଏ ରାଜା ହେବ ?' ରାତିରେ ସ୍ୱପ୍ନାଦେଶ ହେଲା – କାଲି ବିମଳାଙ୍କ ଆଗରେ ଭଙ୍ଗା ପାତ୍ରଟିଏ ହାତରେ ଧରି ଯେ ତୁମକୁ ଦେଖିବାମାତ୍ରେ ପଳାୟନ କରିବ, ସେ ରାଜା ହେବ । କିଛି ଦିନ ପରେ କପିଳ ବ୍ରାହ୍ମଣଙ୍କ ଗୃହ ପରିତ୍ୟାଗ କରି ଚୌର୍ଯ୍ୟ ବୃତ୍ତି କରୁଥିଲେ । ସେ ଅନ୍ନକଷ୍ଟ ହେତୁ ପୁରୀ ଯାଇ ବିମଳାଙ୍କ ଗମ୍ଭୀରାରେ ଆଶ୍ରୟ ନେଇଥିଲେ । ରାଜା ଭାନୁଦେବ ଜଗନ୍ନାଥ ଦର୍ଶନକୁ ଯାଇଥିଲାବେଳେ ତାଙ୍କୁ ଦେଖିଲେ । ରାଜା ତାଙ୍କୁ ଆଦରରେ ନିଜ ପ୍ରାସାଦରେ ନେଇ ରଖାଇଲେ । ତାଙ୍କର ପୁତ୍ରସନ୍ତାନ ନ ଥିବାରୁ ସେହି ସୁସ୍ଥ ସୁନ୍ଦର କ୍ଷତ୍ରିୟ ବାଳକକୁ ନିଜର ସନ୍ତାନତୁଲ୍ୟ ସ୍ନେହ ଓ ଶ୍ରଦ୍ଧା ଦେଖାଇଲେ । କ୍ରମେ ତାଙ୍କୁ ସୈନ୍ୟ ଚାଳନାର ଭାର ଦେଲେ । ପରେ ସେ ରାଜା ହେଲେ ।''

'ମାଦଳାପାଞ୍ଜି'ରୁ ପୁଣି ଜଣାଯାଏ – ''ଏଥକୁ କପିଳ ରାଉତ ଚାକର ରହିଲେ । ଥୋକାଏ ଦିନ ଉତ୍ତାରୁ ପରମେଶ୍ୱର କପିଳ ରାଉତକୁ ରାଜାକରି ଆଜ୍ଞା ଦେଲେ ।

କେତେଦିନ ଉତ୍ତାରୁ ଓଡ଼ିଶାକୁ ସୁବା ଆସିଲା । ଏହାକୁ ଭେଟି ଯିବାକୁ ପ୍ରସଙ୍ଗ ପଡ଼ିଲା । ସମସ୍ତେ କହିଲେ କପିଳ ରାଉତ ଯାଉ । କପିଳ ରାଉତ କହିଲେ ରାଜା ଯିବେ – ରାଜା ଭାଇ ଯିବେ, ନୋହିଲେ ପାତ୍ର ଯିବ । ଏଥକୁ ରାଜା ଏହାକୁ କପିଳ ଭ୍ରମରବର ପଦ ଦେଲେ । ଭାଇ ବୋଇଲେ ସମସ୍ତ ପାତ୍ରଙ୍କ ପୁଅମାନଙ୍କ ସଙ୍ଗେ ପଠିଆଇଲେ । ଏ ନବାବଙ୍କୁ ଭେଟକୁ ଗଲେ । ନବାବ ଭେଟରେ ସୁଖ କଲେ । ଏଣେ ମତ୍ତଭାନୁଦେବ ଆବାହନ ହୋଇଲେ । ସେହିଠାରେ ନବାବ ତାଙ୍କୁ ରାଜା କଲେ ।''

'ମାଦଳାପାଞ୍ଜି' ବା 'ଉତ୍କଳଦେଶ ରାଜବଂଶାବଳୀ'ରେ ବର୍ଣ୍ଣିତ ବିଷୟ କେତେ ଦୂର ସତ୍ୟ ତାହା କୁହାଯାଇପାରେ ନାହିଁ । ସେ ବିଷୟରେ ଐତିହାସିକ ତଥ୍ୟ ମଧ୍ୟ କିଛି ମିଳେ ନାହିଁ । କପିଳ ବାଲ୍ୟକାଳରେ ଦରିଦ୍ର ଥିବା ହୁଏତ ସତ୍ୟ ହୋଇପାରେ; ମାତ୍ର ତାଙ୍କର ଭିକ୍ଷା ମାଗିବା ଅତିରଞ୍ଜିତ ବୋଲି ମନେହୁଏ । ସେ ଗଙ୍ଗରାଜାଙ୍କ ପୋଷ୍ୟପୁତ୍ର ହୋଇଥିବା ମଧ୍ୟ କୌଣସି ଅଭିଲେଖରୁ ଜଣାଯାଏ ନାହିଁ । ତେବେ ଗବେଷକମାନଙ୍କ ମତରେ କପିଳେନ୍ଦ୍ରଦେବଙ୍କ ପୂର୍ବପୁରୁଷ ଗଙ୍ଗ ରାଜବଂଶ ଅଧୀନରେ କୌଣସି ଏକ କ୍ଷୁଦ୍ର ରାଜ୍ୟର ସାମନ୍ତ ଥିଲେ । କପିଳେନ୍ଦ୍ରଦେବ ସମ୍ଭବତଃ ଗଙ୍ଗ ସେନାବାହିନୀରେ ଯୋଗ ଦେଇଥିଲେ । ହୁସଙ୍ଗ ଶାହ ଆକ୍ରମଣ

ପୂର୍ବରୁ ଭାନୁଦେବ ତାଙ୍କୁ 'ଭ୍ରମରବର' ଉପାଧିରେ ଭୂଷିତ କରିଥିଲେ । କପିଳେନ୍ଦ୍ରଦେବ ତାଙ୍କ ସାମରିକ ଦକ୍ଷତା ହେତୁ ଏହା ପାଇଥିବା ଅନୁମାନ କରାଯାଏ । ହୁସଙ୍ଗ ଶାହଙ୍କ ଘନ ଘନ ଆକ୍ରମଣ ଫଳରେ ଭାନୁଦେବ ଅପ୍ରିୟ ହୋଇପଡ଼ିଥିଲେ । ଏହି ସୁଯୋଗରେ କପିଳେନ୍ଦ୍ରଦେବ ସାମନ୍ତରାଜାମାନଙ୍କ ସମର୍ଥନ ପାଇ ଶକ୍ତିଶାଳୀ ହୋଇପଡ଼ିଲେ । ଭାନୁଦେବ ଦକ୍ଷିଣରେ ରାଜମହେନ୍ଦ୍ରୀଠାରେ ଯୁଦ୍ଧରେ ବ୍ୟାପୃତ ଥିବା ସମୟରେ କପିଳେନ୍ଦ୍ରଦେବ ଓଡ଼ିଶା ସିଂହାସନ ଅଧିକାର କଲେ । ଭାନୁଦେବଙ୍କ ପରବର୍ତ୍ତୀ ରାଜାଙ୍କ ଦରବାରର ଏକ କବି 'ଗଙ୍ଗ-ବଂଶାନୁଚରିତମ' ନାମକ ଏକ କାବ୍ୟ ରଚନା କରିଥିଲେ । ସେଥିରୁ ଜଣାଯାଏ ଯେ ଗୁଡ଼ାରିକଟକର ସ୍ଥାପୟିତା ରାଜା ଦକ୍ଷିଣରେ ଯୁଦ୍ଧରେ ଲିପ୍ତ ଥିବା ବେଳେ କପିଳେନ୍ଦ୍ରଦେବ ସିଂହାସନ ଅଧିକାର କରିନେଲେ । ଭାନୁଦେବ ଏ ସମ୍ବାଦ ପାଇ ରାଜଧାନୀ ଆଡ଼କୁ ଫେରିଆସିଲେ । ମାତ୍ର କପିଳେନ୍ଦ୍ରଦେବଙ୍କ ସେନାବାହିନୀଦ୍ୱାରା ପରାସ୍ତ ହେଲେ । ସେ ଶେଷ ଜୀବନ ଗୁଡ଼ାରିକଟକରେ କଟାଇଲେ ।

ତିନି ଭୁବନର ଅଧିପତି ଜଗନ୍ନାଥଙ୍କ ଆଦେଶ ବଳରେ ସିଂହାସନ ପ୍ରାପ୍ତି ହୋଇଛନ୍ତି ବୋଲି କପିଳେନ୍ଦ୍ରଦେବ ଭାବୁଥିଲେ । ତାହା ଐତିହାସିକ ମନମୋହନ ଚକ୍ରବର୍ତ୍ତୀଙ୍କ ସଂପାଦିତ ଗୋପୀନାଥପୁର ଅଭିଲେଖରୁ ଜଣାଯାଏ । ଏହି ଅଭିଲେଖଟି କପିଳେନ୍ଦ୍ରଦେବଙ୍କ ମନ୍ତ୍ରୀ ଗୋପୀନାଥ ମହାପାତ୍ରଙ୍କ ଆଦେଶରେ ଖୋଦିତ ହୋଇଥିଲା । ଏଥିରେ ଅଛି – "ନୀଳଗିରିର ଅଧିପତିଙ୍କ ଆଦେଶରେ (ଯେ କି ତିନି ଭୁବନର ଅଧିପତି) ଓଡ୍ରଦେଶରେ କପିଳେନ୍ଦ୍ର ନାମକ ଏକ ରାଜା ଜନ୍ମ ହେଲେ । ସେ ସୂର୍ଯ୍ୟ ବଂଶର ମଣିସ୍ୱରୂପ ।"

ଏଥିରୁ ସ୍ପଷ୍ଟ ଜଣାପଡ଼େ ଯେ କପିଳେନ୍ଦ୍ରଦେବ ଜାତିରେ କ୍ଷତ୍ରିୟ ଥିଲେ ଓ ସେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିଲେ । ପୂର୍ବବର୍ତ୍ତୀ ଗଙ୍ଗ ଓ ସୋମବଂଶୀ ରାଜାମାନେ ଦାକ୍ଷିଣାତ୍ୟରୁ ଆସିଥିଲେ । ତେଣୁ ସେ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବା ବିଷୟକୁ ଗୁରୁତ୍ୱ ଦେଇଥିବା ଅନୁମାନ କରାଯାଏ ।

'ମାଦଳାପାଞ୍ଜି' ଅନୁଯାୟୀ କପିଳେନ୍ଦ୍ରଦେବଙ୍କ ଅଭିଷେକ କୃତ୍ତିବାସ କଟକ ବା ଭୁବନେଶ୍ୱରଠାରେ ହୋଇଥିଲା । ଏହି ଅବସରରେ ସେ ନୂତନ ଅଙ୍କ ପ୍ରଚଳନ କରିଥିଲେ । ଏବେବି ଓଡ଼ିଶାର ପାଞ୍ଜିମାନଙ୍କରେ କପିଳାବ୍ଦର ପ୍ରଚଳନ ଅଛି । ଏହା ୧୪୩୫ ଖ୍ରୀଷ୍ଟାବ୍ଦ ଜୁନ୍ ମାସ ୨୯ତାରିଖରୁ ଆରମ୍ଭ ହୋଇଥିଲା ।

## ବିଦ୍ରୋହ ଦମନ

କପିଳେନ୍ଦ୍ରଦେବଙ୍କ ସିଂହାସନ ଆରୋହଣକୁ ସାମନ୍ତ ରାଜାମାନେ ଘୋର ବିରୋଧ କଲେ । ଓଡ଼ାଡ଼ର ମଣ୍ୟ ରାଜାମାନେ, ନନ୍ଦପୁରର ଶିଳାବଂଶୀ ରାଜାମାନେ, ପଞ୍ଚଧାରା (ବର୍ତ୍ତମାନର ଭିଜାଗାପଟମ୍ ଜିଲ୍ଲା) ଓ ଓଡ଼ିଶାର ଅନ୍ୟ ପାର୍ବତୀୟ ରାଜାମାନେ ତାଙ୍କର ଆନୁଗତ୍ୟ ସ୍ୱୀକାର କରି ନ ଥିଲେ । ଲିଙ୍ଗରାଜ ମନ୍ଦିରର ଜଗମୋହନରେ ଥିବା ଅଭିଲେଖରୁ ଜଣାଯାଏ ଯେ ରାଜତ୍ୱର ସାତ ବର୍ଷରେ ସେ ରାଜଗୁରୁ ବାସୁ ମହାପାତ୍ର ଓ ଭୁବନେଶ୍ୱର ମହାପାତ୍ରଙ୍କ ଉପସ୍ଥିତିରେ ଏକ ଆଦେଶନାମା ଜାରି କରିଥିଲେ । ସେଥିରେ ସେ ରାଜ୍ୟର ସାମନ୍ତରାଜାଙ୍କୁ ଏକ ଚେତାବନୀ ଦେଇଥିଲେ – ''ମୋ ରାଜ୍ୟର ରାଜାଗଣ ତାଙ୍କର ସମ୍ରାଟ୍‌ଙ୍କ ଭଲ ନିମନ୍ତେ କାର୍ଯ୍ୟ କରିବେ । ସେମାନେ ମନ୍ଦ ଆଚରଣ କରିବେ ନାହିଁ । ସେମାନେ ସମ୍ରାଟ୍‌ଙ୍କ ପ୍ରତି ମନ୍ଦ ଆଚରଣ କଲେ ସେମାନଙ୍କୁ ରାଜ୍ୟରୁ ଘଉଡ଼ାଇ ଦିଆଯିବ । ସେମାନଙ୍କ ଧନସମ୍ପତ୍ତି ବାଜ୍ୟାପ୍ତ କରିଦିଆଯିବ ।''

'ମାଦଳାପାଞ୍ଜି'ରୁ ମଧ୍ୟ ଜଣାଯାଏ ଯେ କପିଳେନ୍ଦ୍ରଦେବ ଖେମୁଣ୍ଡି ରାଜାଙ୍କ ବିଦ୍ରୋହ ଦମନ କରିଥିଲେ । ସେତେବେଳେ ବୋଧହୁଏ ବର୍ତ୍ତମାନ ଗଞ୍ଜାମ ଜିଲ୍ଲାରେ ଅବସ୍ଥିତ ବଡ଼ଖେମୁଣ୍ଡି, ସାନଖେମୁଣ୍ଡି ଓ ପାରଳାଖେମୁଣ୍ଡି ମିଶି ଖେମୁଣ୍ଡି ରାଜ୍ୟକୁ ବୁଝାଉଥିଲା । ସେ ରାଜ୍ୟର ରାଜା କପିଳେନ୍ଦ୍ରଦେବଙ୍କ ବିରୋଧରେ ବିଦ୍ରୋହ କରିଥିଲେ । ଫଳରେ ସାମନ୍ତ ରାଜାମାନେ କପିଳେନ୍ଦ୍ରଦେବଙ୍କୁ ନିଜର ପ୍ରଭୁ ବୋଲି ସ୍ୱୀକାର କରିବାକୁ ବାଧ୍ୟ ହେଲେ ।

## ରାଜ୍ୟଜୟ

ଗଙ୍ଗବଂଶର ରାଜାମାନେ ବଙ୍ଗର ବିସ୍ତୃତ ଦକ୍ଷିଣ-ପଶ୍ଚିମାଞ୍ଚଳ ଅଧିକାର କରି ରଖିଥିଲେ । ସେହି ବଂଶର ଶେଷ ରାଜାମାନେ ବଙ୍ଗର ସୁଲତାନ ଇଲିୟାସ ଶାହଙ୍କୁ ପରାସ୍ତ କରି ଭାଗୀରଥୀ ନଦୀ ପର୍ଯ୍ୟନ୍ତ ଓଡ଼ିଶା ସୀମାକୁ ବୃଦ୍ଧି କରିଥିଲେ । ଏହା ଫଳରେ କପିଳେନ୍ଦ୍ରଦେବଙ୍କର ଇଲିୟାସଙ୍କ ଜଣେ ବଂଶଧର ନସିରୁଦ୍ଦିନ ଆବୁଲ ମୁଜାଫରଙ୍କ ସହିତ ସଂଘର୍ଷ ଅନିବାର୍ଯ୍ୟ ହୋଇପଡ଼ିଲା । ୧୪୪୭ ମସିହାର ଏକ ଅଭିଲେଖରେ କପିଳେନ୍ଦ୍ରଦେବ ଗୌଡ଼େଶ୍ୱର ଉପାଧି ଗ୍ରହଣ କରିଥିବାର ଉଲ୍ଲେଖ ଅଛି । ସେ ମାଲିକା ପାରିଶାଙ୍କୁ ପରାସ୍ତ କରିଥିଲେ ବୋଲି 'ମାଦଳାପାଞ୍ଜି'ରେ ଉଲ୍ଲେଖ ଅଛି । ସେହି ମାଲିକା ପାରିଶା ଗୌଡ଼ର ସୁଲତାନ ବୋଲି ଐତିହାସିକମାନେ ମତ ଦିଅନ୍ତି । ସେ ଯାହାହେଉ, କପିଳେନ୍ଦ୍ରଦେବ ଗଙ୍ଗା ପର୍ଯ୍ୟନ୍ତ ବଙ୍ଗ ରାଜ୍ୟ ଜୟ କରିଥିବା ଅନୁମାନ କରାଯାଏ ।

କପିଳେନ୍ଦ୍ରଦେବ ଏହା ପରେ ଦାକ୍ଷିଣାତ୍ୟ ଅଭିଯାନରେ ବାହାରିଲେ । ସେ ପ୍ରଥମେ ରାଜମହେନ୍ଦ୍ରୀ ଉପରେ ଦୃଷ୍ଟି ପକାଇଲେ । ସେତେବେଳେ ରାଜମହେନ୍ଦ୍ରୀରେ ରେଡ୍ଡି ବଂଶର ରାଜା ବୀରଭଦ୍ରଦେବ ରାଜତ୍ୱ କରୁଥିଲେ । ସେ ଗଙ୍ଗବଂଶର ଶେଷ ରାଜାମାନଙ୍କ ଦୁର୍ବଳତାର ସୁଯୋଗ ନେଇ ବିସ୍ତୃତ ଉତ୍କଳ ରାଜ୍ୟ ସୀମାଞ୍ଚଳ ପର୍ଯ୍ୟନ୍ତ ଅଧିକାର କରିନେଇଥିଲେ । ମାତ୍ର ଏହାପରେ ରାଜମହେନ୍ଦ୍ରୀ ବିଜୟନଗର ରାଜାଙ୍କ ଅଧୀନକୁ ଚାଲିଯାଇଥିଲା । ବିଜୟନଗରର ରାଜା ଦ୍ୱିତୀୟ ଦେବରାଜ ରାଜମହେନ୍ଦ୍ରୀର ରେଡ୍ଡି ରାଜାଙ୍କ ସାହାଯ୍ୟ ପାଇ ତାଙ୍କ ସେନାପତି ମାଲେପା ଓଡେୟାରଙ୍କ ନେତୃତ୍ୱରେ ଏକ ସେନାବାହିନୀ କପିଳେନ୍ଦ୍ରଦେବଙ୍କ ବିରୋଧରେ ପଠାଇଥିଲେ ।

୧୪୪୪ ଖ୍ରୀଷ୍ଟାବ୍ଦର ଦ୍ରାକଶର୍ମା ଅଭିଲେଖରୁ ଜଣାଯାଏ ଯେ ବିଜୟନଗର ରାଜା ଦ୍ୱିତୀୟଦେବରାୟ ଓ ମାଲେପା ଓଡେୟାର ଦାନ ଦେଇଥିଲେ । ଐତିହାସିକ ସୁବ୍ରମଣ୍ୟମ୍‌ଙ୍କ ମତରେ ବିଜୟନଗର ରାଜା କପିଳେନ୍ଦ୍ରଦେବଙ୍କ ଆକ୍ରମଣର ମୁକାବିଲା କରିବାପାଇଁ ମାଲେପା ଓଡେୟାରଙ୍କୁ ନିଯୁକ୍ତ କରିଥିଲେ । ବିଜୟନଗର ରାଜା ଓ କପିଳେନ୍ଦ୍ରଦେବଙ୍କ ମଧ୍ୟରେ ଯୁଦ୍ଧ ହୋଇଥିବାର କୌଣସି ପ୍ରମାଣ ନାହିଁ । ଦ୍ୱିତୀୟ ଦେବରାୟଙ୍କର ୧୪୪୫ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହେଲା । ତାଙ୍କ ପରେ ମଲିକାର୍ଜୁନ ବିଜୟନଗରର ସମ୍ରାଟ୍ ହେଲେ । ସେ କିନ୍ତୁ ପିତାଙ୍କ ଭଳି ଦକ୍ଷ ନ ଥିଲେ । କପିଳେନ୍ଦ୍ର ଏହି ସୁଯୋଗରେ ତାଙ୍କ ପୁତ୍ର ହମ୍ବୀରଙ୍କ ନେତୃତ୍ୱରେ ଏକ ବିରାଟ ସେନାବାହିନୀ ରାଜମହେନ୍ଦ୍ରୀକୁ ପଠାଇଲେ ଓ ରେଡ୍ଡି ରାଜାଙ୍କୁ ପରାସ୍ତ କଲେ । ୧୪୪୮ ଖ୍ରୀଷ୍ଟାବ୍ଦରେ ରାଜମହେନ୍ଦ୍ରୀ ତାଙ୍କର ଅଧୀନସ୍ଥ ହେଲା । ରଘୁଦେବ ନରେନ୍ଦ୍ର ମହାପାତ୍ର ଏହାର ପ୍ରଶାସକଭାବେ ନିଯୁକ୍ତ ହେଲେ ।

ଏହାପରେ କପିଳେନ୍ଦ୍ରଦେବ କୋଣ୍ଡାଭିଡୁ ଉପରେ ଦୃଷ୍ଟି ପକାଇଲେ । ଏହା ବିଜୟନଗର ସାମ୍ରାଜ୍ୟ ଅନ୍ତର୍ଭୁକ୍ତ ଥିଲା । କିନ୍ତୁ ଦ୍ୱିତୀୟ ଦେବରାୟଙ୍କ ପରେ ମଲିକାର୍ଜୁନଙ୍କ ଦୁର୍ବଳତାର ସୁଯୋଗ ନେଇ ସାମନ୍ତ ରାଜାମାନେ ବିଦ୍ରୋହ କଲେ । ବାପ୍ଟଲା ଓ ନରସରାପେଟ ପ୍ରଭୃତି ରାଜ୍ୟର ସାମନ୍ତ ରାଜା ସ୍ୱାଧୀନତା ଘୋଷଣା କଲେ । କପିଳେନ୍ଦ୍ର ଏହି ସୁଯୋଗରେ କୋଣ୍ଡାଭିଡୁ ଆକ୍ରମଣ କରି ୧୪୫୭ ଖ୍ରୀଷ୍ଟାବ୍ଦରେ ଅଧିକାର କଲେ । ୧୪୫୭ ଖ୍ରୀଷ୍ଟାବ୍ଦରେ ଗଣଦେବଙ୍କ ଅଭିଲେଖରୁ ଜଣାଯାଏ ଯେ ସେ କୋଣ୍ଡାଭିଡୁ, ଅଦାଙ୍କି ଓ ଭିନୁକୋଣ୍ଡାର ପରିଚ୍ଛା ଥିଲେ । ସୁତରାଂ କପିଳେନ୍ଦ୍ରଦେବ ଏହାକୁ ଅଧିକାର କରି ଗଣଦେବଙ୍କୁ ପରିଚ୍ଛାଭାବେ ନିଯୁକ୍ତ କରିଥିବା ଅନୁମାନ କରାଯାଏ ।

କୃଷ୍ଣା ଗୋଦାବରୀ ଅଞ୍ଚଳ ଅଧିକାର କଲା ପରେ କପିଳେନ୍ଦ୍ରଦେବ ତେଲେଙ୍ଗାନା ଅଞ୍ଚଳ ଅଭିଯାନରେ ବାହାରିଲେ । ଏହି ଅଞ୍ଚଳ ରେଡ୍ଡି ଓ ବାହମନୀ ସୁଲତାନଙ୍କ ଅଞ୍ଚଳ ମଧ୍ୟରେ ଅବସ୍ଥିତ ଥିଲା । ସେ ଅଞ୍ଚଳ ବେଲମାମାନଙ୍କ କର୍ତ୍ତୃତ୍ୱରେ ଥିଲା । ବେଲମାମାନଙ୍କର ବାହମନୀ ସୁଲତାନଙ୍କ ସହିତ ବନ୍ଧୁତ୍ୱପୂର୍ଣ୍ଣ ସମ୍ପର୍କ ଥିଲା । ମାତ୍ର ବେଲମାମାନେ ବିଜୟନଗର ରାଜା ଦ୍ୱିତୀୟଦେବରାୟଙ୍କୁ ବାହମନୀ ସୁଲତାନଙ୍କ ବିରୋଧରେ ଯୁଦ୍ଧରେ ସାହାଯ୍ୟ ଦେଇଥିବାରୁ ବାହମନୀ ସୁଲତାନ ଅହମ୍ମଦ ଶାହ  ବେଲମାମାନଙ୍କ ଉପରେ କ୍ରୋଧାନ୍ୱିତ ହୋଇଥିଲେ । ସେମାନେ ମଧ୍ୟ ଅହମ୍ମଦ ଶାହଙ୍କ ବିରୋଧରେ ଦ୍ୱିତୀୟ ଦେବରାୟଙ୍କୁ ୧୪୨୫ ଖ୍ରୀଷ୍ଟାବ୍ଦରେ ସାହାଯ୍ୟ କରିଥିଲେ । ସୁତରାଂ ଅହମଦ ଶାହ ବେଲମାମାନଙ୍କ ବିରୋଧରେ ଖାନ-ଇ-ଅଜିମଙ୍କ ନେତୃତ୍ୱରେ ଏକ ସେନାବାହିନୀ ପଠାଇଲେ । ଖାନ୍-ଇ-ଅଜିମ ଅତିଶୟ ପରାକ୍ରମଶାଳୀ ଥିଲେ । ସେ ଚାରି ମାସ ଯୁଦ୍ଧ ଚଳାଇ ବେଲମାମାନଙ୍କୁ ପରାସ୍ତ କରି ସମଗ୍ର ତେଲେଙ୍ଗାନା ଅଞ୍ଚଳ ଅଧିକାର କରିନେଲେ । ଏହାପରେ ବାହମନୀ ସୁଲତାନ ଇବ୍ରାହିମ ସଞ୍ଜର ଖାଁଙ୍କୁ ଅଧିକୃତ ଅଞ୍ଚଳର ପ୍ରଶାସକଭାବେ ନିଯୁକ୍ତ କରିଥିଲେ ।

ସଞ୍ଜର ଖାଁ ପ୍ରଶାସକଭାବେ ନିଯୁକ୍ତ ହେବାପରେ ହିନ୍ଦୁମାନଙ୍କ ଉପରେ ଅତ୍ୟାଚାର ଚଳାଇଲେ । 'ବୁରହନ୍-ଇ-ମନସିର'ରୁ ଜଣାଯାଏ ଯେ ସେ ହିନ୍ଦୁମାନଙ୍କୁ ମୁସଲମାନ ଦେଶକୁ କ୍ରୀତଦାସଭାବେ ପଠାଉଥିଲେ । କପିଳେନ୍ଦ୍ରଦେବଙ୍କ ଭଳି ରାଜାଙ୍କର ପ୍ରଜାଙ୍କ ଉପରେ ଏତାଦୃଶ ଅତ୍ୟାଚାରକୁ ବାହମନୀ ସୁଲତାନ ଦ୍ୱିତୀୟ ଆଲାଉଦ୍ଦିନ ଅହମ୍ମଦ ଶାହ ମଧ୍ୟ ପସନ୍ଦ କରି ନ ଥିଲେ । ମାତ୍ର ସଞ୍ଜର ଖାଁ ଏଥିପ୍ରତି ଭ୍ରୂକ୍ଷେପ ନ କରି ପୂର୍ବଭଳି ହିନ୍ଦୁବିଦ୍ୱେଷୀ କାର୍ଯ୍ୟକଳାପରେ ଲିପ୍ତ ହେଲେ । ଫଳରେ ଜଲାଲ ଖାଁ ଓ ସିକନ୍ଦର ଖାଁ ନାମକ ଦୁଇ ଜଣ ଅମାତ୍ୟ ବାହମନୀ ସୁଲତାନଙ୍କ ବିରୋଧରେ ବିଦ୍ରୋହ କଲେ । ମାତ୍ର ପରାସ୍ତ ହେଲେ । ସୁଲତାନ ଦ୍ୱିତୀୟ ଆଲାଉଦ୍ଦିନ ୧୪୫୭ ଖ୍ରୀଷ୍ଟାବ୍ଦରେ ମୃତ୍ୟୁବରଣ କଲେ । ତାଙ୍କ ପରେ ତାଙ୍କ ପୁତ୍ର ହୁମାୟନ ବାହମନୀ ସୁଲତାନ ହେଲେ । ସେ ମାଲିକା ଶାହଙ୍କୁ ତେଲେଙ୍ଗାନାର ପ୍ରଶାସକଭାବେ ନିଯୁକ୍ତ କଲେ । ଜଲାଇ ଖାଁଙ୍କ ପୁଅ ସିକନ୍ଦର ଖାଁ ତେଲେଙ୍ଗାନାର ପ୍ରଶାସକ ହେବାକୁ ଚାହୁଁଥିଲେ; ମାତ୍ର ବ୍ୟର୍ଥ ମନୋରଥ ହୋଇ ପିତାଙ୍କ ସହିତ ମିଶି ପୁଣି ବିଦ୍ରୋହ କଲେ । ଦେବରକୋଣ୍ଡାର ବେଲମାମାନଙ୍କ ମୁଖ୍ୟ ଲିଙ୍ଗ ତାଙ୍କୁ ସାହାଯ୍ୟ କରିଥିଲେ । ବାହମନୀ ସୁଲତାନ ସେମାନଙ୍କ ବିରୋଧରେ ମାଲିକ ଶାହଙ୍କର ନେତୃତ୍ୱରେ ଏକ ସେନାବାହିନୀ ପଠାଇଲେ । ମାତ୍ର ସେ ବିଦ୍ରୋହ ଦମନରେ ବିଫଳ ହେବାରୁ ସୁଲତାନ ନିଜେ

ବିଦ୍ରୋହୀମାନଙ୍କ ବିରୋଧରେ ଯୁଦ୍ଧ କଲେ । ଯୁଦ୍ଧରେ ସିକନ୍ଦର ଖାଁ ନିହତ ହେଲେ । ହୁମାୟୁନ ଏହାପରେ ଜଲାଲ ଖାଁଙ୍କୁ ମୃତ୍ୟୁ ପର୍ଯ୍ୟନ୍ତ ବନ୍ଦୀ କରି ରଖିଲେ ।

ବାହମନୀ ସୁଲତାନ ବିଦ୍ରୋହୀମାନଙ୍କୁ ଦମନ କରିବାପରେ ବେଲମାମାନଙ୍କ ମୁଖ୍ୟ ଲିଙ୍ଗଙ୍କ ବିରୋଧରେ ମାଲିକ ଶାହଙ୍କର ନେତୃତ୍ୱରେ ଏକ ବିରାଟ ସେନାବାହିନୀ ପଠାଇଲେ । ବାହମନୀ ସେନାବାହିନୀ ବେଲମା ରାଜଧାନୀ ଦେବରକୋଣ୍ଡାକୁ ଘେରାଉକଲେ । ଫଳରେ ଲିଙ୍ଗ କପିଳେନ୍ଦ୍ରଦେବଙ୍କୁ ସାହାଯ୍ୟପାଇଁ ନିବେଦନ କଲେ । କପିଳେନ୍ଦ୍ର ସଙ୍ଗେ ସଙ୍ଗେ ସୈନ୍ୟବାହିନୀ ନେଇ ଦେବରକୋଣ୍ଡାଠାରେ ପହଞ୍ଚିଲେ । ଅବରୁଦ୍ଧ ଦୁର୍ଗରୁ ବେଲମା ସେନାବାହିନୀ ବାହାରି ଆସିଲେ । ମୁସଲମାନ ସୈନ୍ୟ ଦୁଇ ହିନ୍ଦୁ ସେନାବାହିନୀ ମଧ୍ୟରେ ପଡ଼ିଗଲେ । ଯୁଦ୍ଧରେ ସେମାନେ ଶୋଚନୀୟ ଭାବେ ପରାସ୍ତ ହେଲେ । କପିଳେନ୍ଦ୍ରଦେବଙ୍କ ସାମରିକ ଦକ୍ଷତା ଓ କୌଶଳ ଫଳରେ ମୁସଲମାନ ସୈନ୍ୟମାନେ ଯେ ପରାସ୍ତ ହେଲେ, ଏଥିରେ ସନ୍ଦେହ ନାହିଁ ।

କପିଳେନ୍ଦ୍ରଦେବ ଏହା ପରେ ସମଗ୍ର ତେଲେଙ୍ଗାନା ଅଞ୍ଚଳ ଜୟ କରିବାପାଇଁ ହମ୍ବୀରଙ୍କୁ ପଠାଇଲେ । ହମ୍ବୀର ମଧ୍ୟ ୱାରଙ୍ଗଲ ଦୁର୍ଗ ସମେତ ଅନ୍ୟାନ୍ୟ ଦୁର୍ଗଗୁଡ଼ିକୁ ଅଧିକାର କରିନେଲେ । ୱାରଙ୍ଗଲ ଦୁର୍ଗର ରକ୍ଷା ଦାୟିତ୍ୱରେ ମହମ୍ମଦ ଗୟାନ ଥିଲେ । ହମ୍ବୀର ତାଙ୍କୁ ମଧ୍ୟ ପରାସ୍ତ କଲେ । ୧୪୬୦ ଖ୍ରୀଷ୍ଟାବ୍ଦରେ ହମ୍ବୀରଙ୍କର ଗୋଟିଏ ଅଭିଲେଖ ଏବେବି ୱାରଙ୍ଗଲରେ ଦେଖିବାକୁ ମିଳେ ।

ହୁମାୟୁନଙ୍କର ୧୪୬୧ ଖ୍ରୀଷ୍ଟାବ୍ଦରେ ମୃତ୍ୟୁ ହେଲା । ତାଙ୍କ ପରେ ଆଠ ବର୍ଷର ବାଳକ ନିଜାମ ଶାହ ବାହମନୀ ସୁଲତାନ ହେଲେ । ଏହି ସୁଯୋଗରେ ବହିଃଶତ୍ରୁମାନେ ବାହମନୀ ରାଜ୍ୟ ଆକ୍ରମଣ କଲେ । ତେଲେଙ୍ଗାନାର ହିନ୍ଦୁ ରାଜା ଓ ଓଡ଼ିଶାର କପିଳେନ୍ଦ୍ର ଏକାଠି ମିଶି ବାହମନୀ ରାଜ୍ୟ ଆକ୍ରମଣ କଲେ । କପିଳେନ୍ଦ୍ରଦେବ ଏହି ହିନ୍ଦୁ ସେନାବାହିନୀର ନେତୃତ୍ୱ ନେଇଥିଲେ । ମିଳିତ ସେନାବାହିନୀ ବାହମନୀ ରାଜଧାନୀ ବିଦାର ଅଭିଯାନରେ ବାହାରିଲେ ।

ହିନ୍ଦୁ ସେନା ବିଦାର ଅଭିମୁଖେ ଯାତ୍ରା କଲା ବେଳେ ବାଟରେ ଲୁଟତରାଜ ଚଳାଇଲେ । ସେମାନେ ବିଦାର ନିକଟରେ ପହଞ୍ଚିଲେ । ସଏଦ ଅଲ୍ଲି ଓ ଫେରିସ୍ତା ପ୍ରଭୃତି ମୁସଲମାନ ଐତିହାସିକଙ୍କ ବିବରଣରୁ ଜଣାଯାଏ ଯେ ବାହମନୀ ସୁଲତାନ ସାହାମୋହିବ ଉଲାଙ୍କ ହାତେ ଏକ ବାର୍ତ୍ତା କପିଳେନ୍ଦ୍ରଦେବଙ୍କ ପାଖକୁ ପଠାଇଲେ । ତାଙ୍କ ସାଙ୍ଗରେ ଏକ ଶହ ଷାଠିଏ ଜଣ ରକ୍ଷୀ ଯାଇଥିଲେ ।

ବାହମନୀ ସୁଲତାନ କପିଳେନ୍ଦ୍ରଦେବଙ୍କୁ ସୈନ୍ୟ ସହ ଫେରିଯିବାକୁ ଓ ବାର୍ଷିକ କର ଦେବାକୁ ଲେଖିଥିଲେ । ଏହା ନ କଲେ ତା'ର ପରିଣତି ଭୋଗ କରିବେ ବୋଲି ତାଗିଦ କରିଦେଇଥିଲେ । ଐତିହାସିକମାନଙ୍କ ବିବରଣୀ ଅନୁଯାୟୀ ସେହି ରକ୍ଷୀମାନେ ହିନ୍ଦୁ ସେନାବାହିନୀ ଉପରେ ଏପରି ପ୍ରଚଣ୍ଡ ଆକ୍ରମଣ ଚଳାଇଲେ ଯେ ହିନ୍ଦୁ ସେନାବାହିନୀ ପଛଘୁଞ୍ଚା ଦେବାକୁ ବାଧ ହେଲେ । ସେମାନେ ପଳାଇଯାଇ ଏକ ଦୁର୍ଗରେ ଆଶ୍ରୟ ନେଲେ । ପରେ ଓଡ଼ିଆ ସୈନ୍ୟମାନେ ନିଜ ଦେଶକୁ ଫେରିଗଲେ ।

ମାତ୍ର ମୁସଲମାନ ଐତିହାସିକମାନଙ୍କ ବିବରଣୀକୁ ଅନ୍ୟ ଐତିହାସିକମାନେ ଗ୍ରହଣ କରନ୍ତି ନାହିଁ । ସେମାନଙ୍କ ମତରେ ମାତ୍ର ଏକ ଶହ ଷାଠିଏ ଜଣ ସୈନ୍ୟଙ୍କ ଆକ୍ରମଣ ଫଳରେ ମିଳିତ ସେନା ପରାସ୍ତ ହେବା ଓ ପଛଘୁଞ୍ଚାଦେବା ବିଶ୍ୱାସଯୋଗ୍ୟ ନୁହେଁ । ଐତିହାସିକ ରାଖାଲ ଦାସ ବାନାର୍ଜୀ ଓ ପ୍ରଭାତ ମୁଖାର୍ଜୀ ମଧ୍ୟ ଉକ୍ତ ମତକୁ ସମର୍ଥନ କରିଛନ୍ତି । ଓଡ଼ିଶା ରାଜା ପରାସ୍ତ ହୋଇ ଉତ୍କୋଚ ଦେଇ ସନ୍ଧି ସ୍ଥାପନ କରିବା ତଥ୍ୟଭିତ୍ତିକ ନୁହେଁ । ବରଂ ବାହମନୀ ସୁଲତାନ ଯେ ଓଡ଼ିଶା ରାଜାଙ୍କୁ ଉପଢୌକନ ପ୍ରଭୃତି ଦେଇ ସନ୍ଧି ସ୍ଥାପନ କରିଥିବା ସ୍ପଷ୍ଟ ବୋଲି ରାଖାଲ ଦାସ ବାନାର୍ଜୀ ମତ ଦେଇଛନ୍ତି । ଐତିହାସିକ ସୁବ୍ରମନ୍ୟମ୍ ମଧ୍ୟ ଇଂରାଜୀ ଐତିହାସିକ ବ୍ରିଗ୍‌ଙ୍କର ମତାମତ ଉଦ୍ଧାର କରିଛନ୍ତି – "ଓଡ଼ିଶାରାଜାଙ୍କ ପଛଘୁଞ୍ଚା ଦେବା କାରଣ ବିଷୟରେ ଫେରିସ୍ତା ସେପରି ବିଶେଷ ଗବେଷଣା କରି ନାହାନ୍ତି । ସେ ମଧ୍ୟ ଏ ବିଷୟରେ ଯେପରି ସତର୍କତା ଅବଲମ୍ବନ କରିବାର କଥା ତାହା କରି ନାହାନ୍ତି ।"

ଐତିହାସିକ ସୁବ୍ରମଣ୍ୟମ୍‌ଙ୍କ ମତରେ ଓଡ଼ିଶା ସେନା ବାହମନୀ ରାଜ୍ୟରେ ଅବସ୍ଥାନ କଲାବେଳେ ଜଉନପୁରର ସୁଲତାନ ହୁସେନ ସାର୍କୀଙ୍କ ନେତୃତ୍ୱରେ ଦଳେ ମୁସଲମାନ ସୈନ୍ୟ ଓଡ଼ିଶା ଆକ୍ରମଣ କଲେ । ଫଳରେ ଓଡ଼ିଶା ସୈନ୍ୟମାନେ ଫେରିଆସିବାକୁ ବାଧ ହେଲେ ।

ଏହାପରେ କପିଳେନ୍ଦ୍ରଦେବ ପୁଣି ବିଜୟନଗର ରାଜାଙ୍କ ସହିତ ସଂଘର୍ଷରେ ଲିପ୍ତ ହେଲେ । ପ୍ରଥମଥର ସେ ସୀମାଞ୍ଚଳ ପର୍ଯ୍ୟନ୍ତ ବ୍ୟାପିଥିବା ବିସ୍ତୃତ ଅଞ୍ଚଳ ବିଜୟନଗର ରାଜାଙ୍କଠାରୁ ଫେରିପାଇବାପାଇଁ ଯୁଦ୍ଧ କରିଥିଲେ । ଦ୍ୱିତୀୟଥର ସେ ବିଜୟନଗର ରାଜାଙ୍କ ଅଧୀନରେ ଥିବା ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡୁ ଅଧିକାର କରିଥିଲେ । ଏହାପରେ ସେ ବିଜୟନଗର ରାଜାଙ୍କ ଅନ୍ୟ ଅଞ୍ଚଳଗୁଡ଼ିକୁ ଅଧିକାର କରିବାପାଇଁ ଚେଷ୍ଟା କଲେ । ସେତେବେଳକୁ ଦ୍ୱିତୀୟ ଦେବରାୟଙ୍କର ମୃତ୍ୟୁ ହୋଇଥିଲା । ତାଙ୍କର ଦୁର୍ବଳ ପୁତ୍ର ମାଲିକାର୍ଜୁନ ବିଜୟନଗର ସିଂହାସନରେ

ବସିଥିଲେ । କପିଳେନ୍ଦ୍ରଙ୍କ ପୌତ୍ର ପ୍ରତାପରୁଦ୍ରଦେବଙ୍କ ଅନନ୍ତବରମ୍ ଅଭିଲେଖରୁ ଜଣାଯାଏ ଯେ କପିଳେନ୍ଦ୍ରଦେବ ବିଜୟନଗର ରାଜଧାନୀ ହାମ୍ପି ଅଭିଯାନରେ ତାଙ୍କ ପୁତ୍ର ହମ୍ଵୀରଙ୍କୁ ପଠାଇଲେ । କେହି କେହି ଐତିହାସିକଙ୍କ ମତରେ ହମ୍ଵୀର ମାଲିକାର୍ଜ୍ଜୁନଙ୍କୁ ପରାସ୍ତ କରିଥିଲେ ଓ ହାମ୍ପି ଅଧିକାର କରିନେଲେ । ମାତ୍ର ଗଙ୍ଗାଧରଙ୍କ ରଚିତ 'ଗଙ୍ଗାଦାସ ବିଳାସ ଚରିତମ୍'ରେ ବିଜୟନଗର ରାଜା ମାଲିକାର୍ଜ୍ଜୁନ ଓଡ଼ିଶାର ଗଜପତି ରାଜା ଓ ହୟପତି ରାଜାଙ୍କ ସେନାବାହିନୀକୁ ପରାସ୍ତ କରିଥିବାର ଉଲ୍ଲେଖ ଅଛି । ଡଃ ସୁବ୍ରମଣ୍ୟମ୍‌ଙ୍କ ମତରେ ହମ୍ଵୀର ମାଲିକାର୍ଜ୍ଜୁନଙ୍କ ସୈନ୍ୟଙ୍କୁ ପରାସ୍ତ କଲେ ମଧ୍ୟ ବିଜୟନଗର ରାଜ୍ୟ ଭିତରକୁ ପଶିପାରି ନ ଥିଲେ । ତାଙ୍କର ଲକ୍ଷ୍ୟ ସାଧନ ନ ହେଲେ ମଧ୍ୟ ସେ ଫେରିଆସିବାକୁ ବାଧ୍ୟ ହେଲେ ।

କପିଳେନ୍ଦ୍ରଦେବ ପୁଣି ବିଜୟନଗର ରାଜାଙ୍କର ଗୁରୁତ୍ୱପୂର୍ଣ୍ଣ ଉଦୟଗିରି ଦୁର୍ଗ ଆକ୍ରମଣ କରିବାକୁ ସ୍ଥିର କଲେ । ଉଦୟଗିରି ଦୁର୍ଗ ବିଜୟନଗର ସାମ୍ରାଜ୍ୟର ସବୁଠାରୁ ସୁଦୃଢ଼ ଥିଲା । ଏହାକୁ କପିଳେନ୍ଦ୍ରଦେବଙ୍କ ବିଶ୍ୱସ୍ତ ସହକାରୀ ତମାଭୂପଳଦେବ ୧୪୬୦ ଖ୍ରୀଷ୍ଟାବ୍ଦରେ ଅଧିକାର କଲେ । ଏହା ଉଦୟଗିରି ପର୍ବତ ୧୪୬୦ ଖ୍ରୀଷ୍ଟାବ୍ଦର ଅଭିଲେଖରୁ ଜଣାଯାଏ । ତମାଭୂପାଳଙ୍କ ପୁତ୍ର ବାସବଭୂପାଳ ଏହାର ପ୍ରଶାସକ ଭାବେ ନିଯୁକ୍ତ ହେଲେ ।

ଏହାପରେ କପିଳେନ୍ଦ୍ରଦେବଙ୍କ ସେନାବାହିନୀ ବିଜୟନଗର ସାମ୍ରାଜ୍ୟ ଉପକୂଳବର୍ତ୍ତୀ ଅଞ୍ଚଳ ତାଞ୍ଜୋର ଓ ଦକ୍ଷିଣ ଆରକଟ୍ ପର୍ଯ୍ୟନ୍ତ ଅଧିକାର କରିନେଲେ । ଏଥିରେ କପିଳେନ୍ଦ୍ରଦେବଙ୍କୁ ତାଙ୍କ ପୁତ୍ର ହମ୍ଵୀର ବିଶେଷ ସାହାଯ୍ୟ କରିଥିବାର ଜଣାଯାଏ । ଅଭିଲେଖରୁ ଜଣାଯାଏ ଯେ ୧୪୬୦ ଖ୍ରୀଷ୍ଟାବ୍ଦରେ କପିଳେନ୍ଦ୍ରଦେବ ଶ୍ରୀଶୈଳମ୍‌ଠାରେ ଅବସ୍ଥାନ କରୁଥିଲେ । ସେ ସେଠାରେ ଚନ୍ଦ୍ରଗ୍ରହଣ ତିଥିରେ ଦେବତାମାନଙ୍କୁ ଅର୍ଚ୍ଚନା କରି ଦାନ ଦେଇଥିଲେ । ସେ ବିଜୟର ଚିହ୍ନସ୍ୱରୂପ ଏକ ଜୟ ସ୍ତମ୍ଭ ନିର୍ମାଣ କରିଥିବାର ଜଣାଯାଏ । ଏକ ତେଲୁଗୁ ଗ୍ରନ୍ଥରେ ମଧ୍ୟ କପିଳେନ୍ଦ୍ରଦେବଙ୍କ ରାଜ୍ୟ ଜୟ ବିଷୟ ବର୍ଣ୍ଣିତ ଅଛି ।

ଓଡ଼ିଶା ସୈନ୍ୟ ଉଦୟଗିରି ଦୁର୍ଗକୁ ସାମରିକ ଘାଟି ଭାବେ ବ୍ୟବହାର କରି ବିଜୟନଗର ରାଜ୍ୟ ଉପରେ ପୁଣି ଘନ ଘନ ଆକ୍ରମଣ ଚଳାଇଲେ । ଓଡ଼ିଆ ସେନାବାହିନୀର ନେତୃତ୍ୱ ନେଇଥିଲେ କପିଳେନ୍ଦ୍ରଦେବଙ୍କ ପୁତ୍ର ହମ୍ଵୀର । ବିଜୟନଗର ରାଜା ମଲିକାର୍ଜ୍ଜୁନ ଚନ୍ଦ୍ରଗିରିର ଶାସକଭାବେ ଶାଲୁବ ନରସିଂହଙ୍କୁ ନିଯୁକ୍ତ କରିଥିଲେ । ମାତ୍ର ଶାଲୁବ ନରସିଂହ ନିଜକୁ ସ୍ୱାଧୀନ ବୋଲି ଘୋଷଣା କଲେ । ଫଳରେ ତାଙ୍କୁ କାଢ଼ି ନେଇ ମଲିକାର୍ଜ୍ଜୁନ ଶାଲୁବ ରାମଚନ୍ଦ୍ର ରାୟଙ୍କୁ

ଚନ୍ଦ୍ରଗିରିର ପ୍ରଶାସକଭାବେ ନିଯୁକ୍ତ କଲେ । ସେ ମଧ୍ୟ ସେଭଳି ଶକ୍ତିଶାଳୀ ନ ଥିଲେ । ଓଡ଼ିଶା ସେନାବାହିନୀ ଏହାର ସୁଯୋଗ ନେଇଥିବା ସ୍ୱାଭାବିକ । କପିଳେନ୍ଦ୍ରଦେବଙ୍କ ସୈନ୍ୟବାହିନୀ ଚନ୍ଦ୍ରଗିରି ଦୁର୍ଗ ଆକ୍ରମଣ କରି ଅଧିକାର କରିନେଲେ । ଏହା ୧୪୬୪ ଖ୍ରୀଷ୍ଟାବ୍ଦ ପୂର୍ବରୁ ହୋଇଥିବା ସମ୍ଭବ । ମଲିକାର୍ଜୁନ ହମ୍ବୀରଙ୍କ ଆକ୍ରମଣ ପ୍ରତିହତ କରିବାକୁ ଚେଷ୍ଟା କଲେ ମଧ୍ୟ ସଫଳ ହୋଇ ନ ଥିଲେ । ତ୍ରିଚିନାପଲ୍ଲୀ ନିକଟସ୍ଥ ଶ୍ରୀରଙ୍ଗମ ମନ୍ଦିର ଅଭିଲେଖରୁ ଜଣାଯାଏ ଯେ ଦକ୍ଷିଣ କପିଳେଶ୍ୱର ହମ୍ବୀର କୁମାର ମହାପାତ୍ର ୧୪୬୪ ଖ୍ରୀଷ୍ଟାବ୍ଦରେ ଗୋଦାନ କରିଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଓଡ଼ିଶା ସେନାବାହିନୀ ତାଞ୍ଜୋର ଓ ତ୍ରିଚିନାପଲ୍ଲୀ ପର୍ଯ୍ୟନ୍ତ ଅଞ୍ଚଳ ଅଧିକାର କରି ନେଇଥିଲେ । ଏହା ଫଳରେ ଓଡ଼ିଶା ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ କାବେରୀ ପର୍ଯ୍ୟନ୍ତ ବିସ୍ତୃତ ହେଲା । କପିଳେନ୍ଦ୍ରଦେବ ବିଜିତ ଅଞ୍ଚଳରେ ନିଜର ପୌତ୍ର କୁମାର କପିଳେଶ୍ୱର ମହାପାତ୍ରଙ୍କୁ ପ୍ରଶାସକଭାବେ ୧୪୬୪ ଖ୍ରୀଷ୍ଟାବ୍ଦରେ ନିଯୁକ୍ତ କରିଥିବାର ଜଣାଯାଏ । କେତେକ ଐତିହାସିକଙ୍କ ମତରେ କପିଳେନ୍ଦ୍ରଙ୍କ ପ୍ରତ୍ୟାବର୍ତ୍ତନ ପରେ ସେସବୁ ଅଞ୍ଚଳକୁ ବିଜୟନଗରର ରାଜା ପୁନଃ ଅଧିକାର କରିନେଲେ । ମାତ୍ର ଐତିହାସିକ ରାଖାଲ ଦାସ ବାନାର୍ଜୀ ଏହି ମତକୁ ଗ୍ରହଣ କରି ନାହାନ୍ତି । ତାଙ୍କ ମତରେ ବିଜୟନଗର ରାଜ୍ୟର କାବେରୀ ପର୍ଯ୍ୟନ୍ତ ଉପକୂଳବର୍ତ୍ତୀ ଅଞ୍ଚଳ ଓଡ଼ିଶା ରାଜାଙ୍କ ଅଧୀନରେ ପ୍ରାୟ ଦଶ ବର୍ଷ ପର୍ଯ୍ୟନ୍ତ ରହିଥିଲା । ମାତ୍ର ୧୪୭୦ ଖ୍ରୀଷ୍ଟାବ୍ଦରେ ଓଡ଼ିଶାରେ ପୁରୁଷୋତ୍ତମଦେବ ଭାଇଙ୍କ ମଧ୍ୟରେ ଗୃହଯୁଦ୍ଧ ଲାଗିଲାବେଳେ ଏହି ସବୁ ଅଞ୍ଚଳକୁ ଓଡ଼ିଶା ହରାଇଲା । ସୁତରାଂ ଏସବୁ ଅଞ୍ଚଳ ଓଡ଼ିଶା ରାଜାଙ୍କ ଅଧୀନରେ ପ୍ରାୟ ପାଞ୍ଚ ଛଅ ବର୍ଷ ପର୍ଯ୍ୟନ୍ତ ଯେ ରହିଥିଲା, ଏଥିରେ ସନ୍ଦେହ ନାହିଁ ।

ଗୋପୀନାଥପୁର ଶିଳାଲେଖ ଓ ପ୍ରତାପରୁଦ୍ରଦେବଙ୍କ ତାମ୍ରପଟାରୁ ଜଣାଯାଏ ଯେ କପିଳେନ୍ଦ୍ରଦେବଙ୍କର ମାଳବ ଓ ଦିଲ୍ଲୀ ସୁଲତାନଙ୍କ ସହିତ ସଂଘର୍ଷ ହୋଇଥିଲା । କପିଳେନ୍ଦ୍ରଦେବ ମାଳବ ବା ଦିଲ୍ଲୀ ଅଭିଯାନରେ ଯିବା ସମ୍ଭବ ନୁହେଁ ବୋଲି କେହି କେହି ଐତିହାସିକ ମତ ଦେଇଛନ୍ତି । ମାତ୍ର କପିଳେନ୍ଦ୍ରଦେବଙ୍କର ଉତ୍ତରରେ ଜଉନପୁର ସୁଲତାନ ଓ ଦକ୍ଷିଣରେ ବାହମନୀ ସୁଲତାନଙ୍କ ସହିତ ଯୁଦ୍ଧ ହୋଇଥିଲା । ତାଙ୍କ ସମୟରେ ବାହମନୀ ସୁଲତାନ ଓ ମାଳବର ସୁଲତାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିବାର ଜଣାଯାଏ । ସେହିପରି ଜଉନପୁରର ସୁଲତାନ ଓ ଦିଲ୍ଲୀ ସୁଲତାନଙ୍କ ମଧ୍ୟରେ ଯୁଦ୍ଧ ହୋଇଥିଲା । ଏହି ଯୁଦ୍ଧମାନଙ୍କରେ କପିଳେନ୍ଦ୍ରଦେବ ସୈନ୍ୟ ସାହାଯ୍ୟ ଦେଇଥିବା ଅସମ୍ଭବ ନୁହେଁ ବୋଲି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତ ଦେଇଛନ୍ତି ।

## ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ଉପାଧି

୧୪୬୪ ଖ୍ରୀଷ୍ଟାବ୍ଦ ଆଡ଼କୁ କପିଳେନ୍ଦ୍ରଦେବ ଏକ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ହୋଇପାରିଥିଲେ । ଏହି ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ତ୍ରିଚିନାପଲ୍ଲୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଅଭିଲେଖମାନଙ୍କରୁ ଜଣାଯାଏ ଯେ ସେ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବର୍ଗେଶ୍ୱର ଉପାଧି ଧାରଣ କରିଥିଲେ । ଗଙ୍ଗବଂଶର ଶେଷ ରାଜାମାନେ ଗଜପତି ଉପାଧି ଧାରଣ କରିଥିଲେ । ଗଙ୍ଗମାନଙ୍କୁ ପରାସ୍ତ କରି ସେ ଗଜପତି ଉପାଧି ଧାରଣ କରିଥିବା ଯୁକ୍ତିଯୁକ୍ତ ମନେହୁଏ । ସେ ଗୌଡ଼ ଦେଶର କେତେକ ଅଞ୍ଚଳ ଜୟ କରିଥିଲେ । ତେଣୁ ଗୌଡ଼େଶ୍ୱର ଉପାଧି ଗ୍ରହଣ କରିଥିବା ଯଥାର୍ଥ । ସେ ମଧ୍ୟ ବାହମନୀ ରାଜ୍ୟର ବିସ୍ତୃତ ଅଞ୍ଚଳ ଅଧିକାର କରିନେଇଥିଲେ । ଏହି ବାହମନୀ ରାଜ୍ୟର ପୂର୍ବତନ ରାଜଧାନୀ ଥିଲା ଗୁଲବର୍ଗା । 'କୁଲବର୍ଗ' ଏହି ଗୁଲବର୍ଗା ଶବ୍ଦର ଓଡ଼ିଆ ଅପଭ୍ରଂଶ ମାତ୍ର । ସୁତରାଂ 'କଳବର୍ଗେଶ୍ୱର' ଉପାଧି ଧାରଣ କରିବାରେ ବିଚିତ୍ରତା କିଛି ନାହିଁ । କପିଳେନ୍ଦ୍ରଦେବଙ୍କ ସମୟରେ ବିଜୟନଗର ରାଜ୍ୟ କର୍ଣ୍ଣାଟ ନାମରେ ପରିଚିତ ଥିଲା । ନବକୋଟି ସମ୍ଭବତଃ ବିଜୟନଗର ଓ ବାହମନୀ ରାଜ୍ୟର ନଅ କୋଟି ଲୋକସଂଖ୍ୟାକୁ ବୁଝାଉଥିଲା । ସେମାନଙ୍କୁ ଜୟକରି 'ନବକୋଟି' ଉପାଧି ଧାରଣ କରିଥିବା ମଧ୍ୟ ଯୁକ୍ତିସଙ୍ଗତ ।

## ଶେଷ ଜୀବନ

କପିଳେନ୍ଦ୍ରଦେବଙ୍କ ରାଜତ୍ୱର ଶେଷଭାଗ ଶାନ୍ତିପୂର୍ଣ୍ଣ ନ ଥିଲା । ଉତ୍ତରରେ ବଙ୍ଗ ସୁଲତାନ ରୁକ୍ନୁଦ୍ଦିନ ବାରବାକ୍ ମନ୍ଦର ଦୁର୍ଗ ପୁନଃ ଅଧିକାର କରିନେଲେ । ପୀର ମହମ୍ମଦ ସତାରୀଙ୍କ ରଚିତ 'ରିସାଲତ୍ର ସୁହଦା' ନାମକ ଗ୍ରନ୍ଥରୁ ଏହା ଜଣାଯାଏ । ବାରବାକ୍ ଏହାକୁ ଜୟ କରି ଓଡ଼ିଆମାନଙ୍କୁ ସେଠାରୁ ବିତାଡ଼ିତ କରିଦେଇଥିଲେ । ମନ୍ଦର ଦୁର୍ଗର ଦକ୍ଷିଣରେ ଓଡ଼ିଆମର୍ଦ୍ଦନ ନାମକ ଏକ ଦରଜାରୁ ଅନୁମାନ କରାଯାଏ ଯେ ଏହି ଦୁର୍ଗରେ ଥିବା ଓଡ଼ିଆ ସୈନ୍ୟମାନେ ପରାସ୍ତ ହୋଇଥିଲେ । ଓଡ଼ିଶା ରାଜା ମଧ୍ୟ ବନ୍ଦୀ ହୋଇଥିଲେ ବୋଲି ମୁସଲମାନ ଐତିହାସିକମାନେ ମତ ଦିଅନ୍ତି । ମାତ୍ର ଏହା ସତ୍ୟ ନୁହେଁ । ସମ୍ଭବତଃ, ଦୁର୍ଗରେ ଥିବା ଓଡ଼ିଶା ସେନାଧକ୍ଷ ମୁସଲମାନ ସୈନ୍ୟଙ୍କଦ୍ୱାରା ବନ୍ଦୀ ହୋଇଥିଲେ । ଦକ୍ଷିଣରେ ମଧ୍ୟ ରାଜତ୍ୱର ଶେଷଭାଗରେ କପିଳେନ୍ଦ୍ରଦେବ ରାଜ୍ୟ ପରେ ରାଜ୍ୟ ହରାଇଲେ । ସେତେବେଳକୁ ବିଜୟନଗରର ରାଜା ମାଲିକାର୍ଜୁନଙ୍କର ମୃତ୍ୟୁ ହୋଇଥିଲା । ତାଙ୍କ ପୁତ୍ର ବିରୂପାକ୍ଷ ବିଜୟନଗର ସିଂହାସନରେ ବସିଥିଲେ । ସେ ଚନ୍ଦ୍ରଗିରିର ଶାସନକର୍ତ୍ତା ହିସାବରେ ଶାଲୁବ ନରସିଂହଙ୍କୁ ନିଯୁକ୍ତ କଲେ ।

ସେ ଅତ୍ୟନ୍ତ ଶକ୍ତିଶାଳୀ ହୋଇଉଠିଲେ ଓ ଓଡ଼ିଶା ରାଜାଙ୍କର ଅଧିକାର କରିନେଇଥିବା ଅଞ୍ଚଳକୁ ପୁନରୁଦ୍ଧାରପାଇଁ ଲାଗିପଡ଼ିଲେ । ୧୪୬୬ ଖ୍ରୀଷ୍ଟାବ୍ଦରେ ଶାଲୁବ ନରସିଂହଙ୍କ ଅଭିଲେଖରୁ ଜଣାଯାଏ ଯେ ଶାଲୁବ ନରସିଂହ ଚନ୍ଦ୍ରଗିରିର ଶାସନକର୍ତ୍ତା ଥିଲେ । ସେ ଓଡ଼ିଆମାନଙ୍କୁ ସେ ଅଞ୍ଚଳରୁ ମଧ୍ୟ ବିତାଡ଼ିତ କରିଦେଇଥିଲେ । ଏକ ସଂସ୍କୃତ ଗ୍ରନ୍ଥରୁ ଜଣାଯାଏ ଯେ ଶଲୁବ ନରସିଂହଙ୍କର କଳିଙ୍ଗ ବିରୋଧରେ ଯୁଦ୍ଧ କରିବା ପ୍ରଥମ କାମ ଥିଲା । ସୁତରାଂ ଦକ୍ଷିଣରେ କପିଳେନ୍ଦ୍ରଦେବ ଚନ୍ଦ୍ରଗିରି ହରାଇଥିବା ନିଶ୍ଚିତ । କପିଳେନ୍ଦ୍ରଦେବ ମଧ୍ୟ ବୃଦ୍ଧ ହୋଇଆସୁଥିଲେ । ବହୁକାଳବ୍ୟାପୀ ଯୁଦ୍ଧରେ ଲିପ୍ତ ଥିବା ଯୋଗୁଁ ସେ ଦୁର୍ବଳ ହୋଇପଡ଼ିଥିବା ସ୍ୱାଭାବିକ । ସୁତରାଂ ସେ ମୃତ୍ୟୁ ପୂର୍ବରୁ କାହାକୁ ରାଜା କରିବାକୁ ସମସ୍ତ ପଦକ୍ଷେପ ନେଇଥିଲେ । ହମ୍ୱୀରଙ୍କର ବିଦ୍ରୋହ ମଧ୍ୟ ଏହି ସମୟରେ ଆରମ୍ଭ ହେଲା । ହମ୍ୱୀର କପିଳେନ୍ଦ୍ରଦେବଙ୍କ ଯୋଗ୍ୟତମ ସନ୍ତାନ ଯେ ଥିଲେ, ଏହା ଅତି ସ୍ପଷ୍ଟ । ଦାକ୍ଷିଣାତ୍ୟ ବିଜୟ କେବଳ ତାଙ୍କଦ୍ୱାରା ସମ୍ଭବ ହୋଇଥିଲା । ଏହାସତ୍ତ୍ୱେ ସେ ପୁରୁଷୋତ୍ତମଦେବଙ୍କୁ ସିଂହାସନରେ ବସାଇବାପାଇଁ ନିଷ୍ପତ୍ତି ନେବାରୁ ହମ୍ୱୀର ବିଦ୍ରୋହ କରିବା ସ୍ୱାଭାବିକ । ଏହି ବିଦ୍ରୋହ ଫଳରେ କପିଳେନ୍ଦ୍ରଦେବ ବଡ଼ ଆଘାତ ପାଇଥିଲେ ।

କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ସମ୍ଭବତଃ ୧୪୭୦ ଖ୍ରୀଷ୍ଟାବ୍ଦରେ ହୋଇଥିଲା । 'ବୁରହନ୍-ଇ-ମାସିର୍' ଗ୍ରନ୍ଥରୁ ଜଣାଯାଏ ଯେ ଓଡ଼ିଶା ରାଜାଙ୍କ ମୃତ୍ୟୁ ଖବର ରାଜଧାନୀ ବିଦାରରେ ୧୪୭୦ ଖ୍ରୀଷ୍ଟାବ୍ଦରେ ପହଞ୍ଚିଲା । ସୁତରାଂ କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ୧୪୭୦ ଖ୍ରୀଷ୍ଟାବ୍ଦରେ ହୋଇଥିଲା ବୋଲି ରାଖାଲ ଦାସ ବାନାର୍ଜୀ ମତ ଦିଅନ୍ତି । ପୁରୁଷୋତ୍ତମଦେବ ୧୪୬୫-୬୬ରେ ସିଂହାସନରେ ବସିଥିଲେ ବୋଲି ଐତିହାସିକ ସୁବ୍ରମଣ୍ୟମ୍ ମତ ଦିଅନ୍ତି । କପିଳେନ୍ଦ୍ରଦେବଙ୍କ ଜୀବିତାବସ୍ଥାରେ ପୁରୁଷୋତ୍ତମଦେବଙ୍କ ଅଭିଷେକ ହୋଇଥିଲା । ସୁତରାଂ ୧୪୬୫-୬୬ରୁ ୧୪୭୦ ମଧ୍ୟରେ କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ହୋଇଥିବା ସମ୍ଭବ ।

## ଇତିହାସରେ ସ୍ଥାନ

ଓଡ଼ିଶା ଇତିହାସରେ କପିଳେନ୍ଦ୍ରଦେବ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି । ଅସାଧାରଣ ଶକ୍ତି ବଳରେ ସେ ଜଣେ ସାଧାରଣ ସୈନିକରୁ ସମ୍ରାଟ୍ ହୋଇପାରିଥିଲେ । ତାଙ୍କର ସାମ୍ରାଜ୍ୟ ଗଙ୍ଗାଠାରୁ କାବେରୀ ନଦୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଖାରବେଳଙ୍କ ପରେ ଏଡ଼େ ବିରାଟ ସାମ୍ରାଜ୍ୟର ସେ ହିଁ ଅଧୀଶ୍ୱର ହୋଇପାରିଥିଲେ । ସେ ନସିର-ଉଦ-ଦିନ୍, ହୁମାୟନ ଶାହା ବାହମନୀ,

ଶାଲୁବ ନରସିଂହ ଓ ବିଜୟନଗର ରାଜ୍ୟର ମାଲିକାର୍ଜୁନ ପ୍ରଭୃତି ସାମସମୟିକ ରାଜାମାନଙ୍କୁ ପରାସ୍ତ କରିଥିଲେ । ତାଙ୍କର ପ୍ରଭାବ ଏପରିକି ଜଉନପୁର, ଦିଲ୍ଲୀ, ମାଳବ ପ୍ରଭୃତି ଦେଶରେ ଅନୁଭୂତ ହେଉଥିଲା । ତାଙ୍କର ଅଭିଲେଖରେ ପ୍ରଥମଥରପାଇଁ ଓଡ଼ିଶା ରାଜ୍ୟ ନାମରେ ଅଭିହିତ ହେଲା । ସେହିଦିନଠାରୁ ଏହି ଦେଶ ଓଡ଼ିଶା ନାମରେ ଖ୍ୟାତି ଲାଭ କରିଅଛି ।

କପିଳେନ୍ଦ୍ରଦେବ ପ୍ରଥମଥରପାଇଁ ଓଡ଼ିଆ ଭାଷା ଉପରେ ଗୁରୁତ୍ୱ ଦେଲେ । ତାଙ୍କର ଅଭିଲେଖ ସବୁ ଓଡ଼ିଆ ଭାଷାରେ ଲେଖା ହେଲା । ସେ ନିଜେ ସଂସ୍କୃତ ସାହିତ୍ୟର ଜଣେ ବଡ଼ କବି ଥିଲେ । ତାଙ୍କ ରାଜ୍ୟସଭାକୁ ବହୁ ସଂସ୍କୃତ ପଣ୍ଡିତଙ୍କ ଦ୍ୱାରା ମଣ୍ଡିତ କରିଥିଲେ । ସେ 'ପରଶୁରାମ ବିଜୟ' ନାମକ ସଂସ୍କୃତ ନାଟକ ରଚନା କରିଥିଲେ । ଏଥିରେ ସଂସ୍କୃତ ସଙ୍ଗୀତ ପରିବର୍ତ୍ତେ ରାଣୀ ଚନ୍ଦ୍ରବନ୍ଦନା ଓଡ଼ିଆ ଭାଷାରେ ଗାନ କରିଛନ୍ତି, ଯଥା –

''କେବଣ ମୁନିକୁମର ପରଶୁ ଦକ୍ଷିଣ କର
ବାମେଣ ଶୋଭେ ଧନୁଶରନା
କୋପେଣ ପଳାଇ ବୀର ତା ତୁ ସେ ଭୋ
ବଧିଲୁ ତାତ
ଆଜି ତୋର ଛେଦିବଇଁ ମାଥ ନା ।''

ଏହି ଓଡ଼ିଆ ଗୀତ ସେ କାଳରେ ଦର୍ଶକମାନଙ୍କ ପ୍ରାଣରେ ଆଲୋଡ଼ନ ସୃଷ୍ଟି କରିଥିବା ନିଶ୍ଚିତ ।

ସାରଳାଦାସ ଓଡ଼ିଆ ଭାଷାରେ 'ମହାଭାରତ' ରଚନା କଲେ । ଏହା ସଂସ୍କୃତ ପଣ୍ଡିତମାନଙ୍କଦ୍ୱାରା ପ୍ରତ୍ୟାଖ୍ୟାତ ହୋଇଥିଲେ ମଧ ରାଜାଙ୍କର ସମର୍ଥନ ଲାଭ କଲା । ଫଳରେ ଏହା ସମଗ୍ର ରାଜ୍ୟରେ ପ୍ରଚଳିତ ହେଲା । ମହାରାଜାଙ୍କର ସମର୍ଥନ ବିନା ଏହା ଓଡ଼ିଶାରେ ଯେ ପ୍ରଚଳିତ ହୋଇପାରି ନ ଥାନ୍ତା, ଏଥିରେ ସନ୍ଦେହ ନାହିଁ ।

କପିଳେନ୍ଦ୍ରଦେବ ଜଣେ ଧାର୍ମିକ ରାଜା ଥିଲେ । ସେ ତାଙ୍କର ରାଜ୍ୟକୁ ଜଗନ୍ନାଥଙ୍କ ଚରଣ ତଳେ ସମର୍ପଣ କରିଥିଲେ । ସେ ନିଜକୁ ଜଗନ୍ନାଥଙ୍କ ସେବକ ବୋଲି ମନେ କରୁଥିଲେ । ସେ ତାଙ୍କରି ପ୍ରତିନିଧିଭାବେ ଦେଶ ଶାସନ କରୁଥିଲେ । ଏପରିକି ବିଦ୍ରୋହୀମାନଙ୍କୁ ଦଣ୍ଡବିଧାନ ପୂର୍ବରୁ ସେ ଜଗନ୍ନାଥଙ୍କର ଅନୁମତି ଭିକ୍ଷା କରୁଥିଲେ । ଜଗନ୍ନାଥ ମନ୍ଦିରରେ ଗୋଟିଏ ଶିଳାଲେଖରେ ଏହାର ସ୍ପଷ୍ଟ ଉଲ୍ଲେଖ ଅଛି – ''ତୁମ୍ଭର ଆଦେଶ ହେଲେ ଅତ୍ୟାଚାରୀ

ରାଜଦ୍ରୋହୀମାନଙ୍କୁ ମୁଁ ଯଥାବିହିତ ଦଣ୍ଡଦେବି । ପୁଣି ବ୍ରାହ୍ମଣମାନଙ୍କୁ ଭୂମିଦାନ କରିପାରିବି – ଏ ଅନୁଜ୍ଞା ମତେ ଦିଆଯାଉ ।''

ସେ ଜଗନ୍ନାଥଙ୍କ ନିମନ୍ତେ ବହୁ ଜମି ଖଞ୍ଜା କରିଥିଲେ ଓ ଜଗନ୍ନାଥ ମନ୍ଦିରର ବାହାର ପାଚେରି ନିର୍ମାଣ କରିଥିଲେ । କପିଳ ଭ୍ରମରବର ଓ କପିଳେଶ୍ୱରପୁର ଶାସନ ବସାଇଥିଲେ ।

କେତେକ ଦକ୍ଷିଣ–ଭାରତୀୟ ଅଭିଲେଖରେ କପିଳେନ୍ଦ୍ରଦେବ ବା ତାଙ୍କ ପୁତ୍ର ଦେବ ମନ୍ଦିରମାନଙ୍କର ମରାମତି କାର୍ଯ୍ୟ କରିବା ଫଳରେ ପୂଜା ଧ୍ୱଜା ପ୍ରଭୃତି ବାଧାପ୍ରାପ୍ତ ହୋଇଥିଲା ବୋଲି ବର୍ଣ୍ଣିତ ଅଛି । ମାତ୍ର ଏହା ଭ୍ରମାତ୍ମକ । ଶ୍ରୀରଙ୍ଗମ ମନ୍ଦିର ଅଭିଲେଖରୁ ଜଣାଯାଏ ଯେ କୁମାର କପିଳେଶ୍ୱର ମହାପାତ୍ର ଶ୍ରୀରଙ୍ଗମ ମନ୍ଦିରରେ ସବୁବେଳେ ଦୀପ ଜାଳିବାପାଇଁ ଗାଈ ପ୍ରଭୃତି ଦାନ ଦେଇଥିଲେ । ସେହିପରି ଅନ୍ୟ କେତେକ ଦକ୍ଷିଣ ଭାରତୀୟ ଅଭିଲେଖରେ ହମ୍ମୀରଙ୍କ ପୁତ୍ର ପିତାଙ୍କର ବିଜୟପାଇଁ ଭୋଗର ବ୍ୟବସ୍ଥା କରିଥିବା ବର୍ଣ୍ଣିତ ଅଛି । କପିଳେନ୍ଦ୍ରଦେବଙ୍କ ସମୟରେ ବୀରତ୍ୱ ଓ କୃତିତ୍ୱ ପ୍ରଚାର କରିବାପାଇଁ ଭାଟ ଶ୍ରେଣୀୟ ଗାୟକମାନଙ୍କୁ ନିଯୁକ୍ତ କରାଯାଉଥିଲା । ଦକ୍ଷିଣ–ଭାରତରେ ଦଣ୍ଡ କବି ନାମକ ଗୋଟିଏ ସଂପ୍ରଦାୟ ଏହି କାର୍ଯ୍ୟରେ ନିଯୁକ୍ତ ହୋଇଥିବାର ଜଣାଯାଏ । ସେମାନେ ରାଜାଙ୍କ ଶୌର୍ଯ୍ୟ-ବୀର୍ଯ୍ୟ ସମ୍ବନ୍ଧରେ ପ୍ରଜାମାନଙ୍କୁ ଜଣାଉଥିଲେ । ଫଳରେ ରାଜାଙ୍କ ପ୍ରତି ଯଥେଷ୍ଟ ଭକ୍ତି ଓ ସମ୍ମାନ ବୃଦ୍ଧି ପାଉଥିଲା ।

କେବଳ ସୂର୍ଯ୍ୟବଂଶ ନୁହେଁ, ଓଡ଼ିଶା ଇତିହାସର ପ୍ରଖ୍ୟାତ ରାଜାମାନଙ୍କ ମଧ୍ୟରେ କପିଳେନ୍ଦ୍ରଦେବ ଅନ୍ୟତମ ବୋଲି ଗଣ୍ୟ ହୁଅନ୍ତି ।

# କାଞ୍ଚି-କାବେରୀ ଉପାଖ୍ୟାନର ନାୟକ
# ପୁରୁଷୋତ୍ତମଦେବ

ସୂର୍ଯ୍ୟବଂଶର ପ୍ରତିଷ୍ଠାତା ଓ ପ୍ରଥମ ରାଜା କପିଳେନ୍ଦ୍ରଦେବ ମହାନ୍ ପରାକ୍ରମଶାଳୀ ରାଜା ହେଲେ ମଧ୍ୟ ବହୁ କିମ୍ବଦନ୍ତୀ ଓ ଉପାଖ୍ୟାନର ନାୟକ ଦ୍ୱିତୀୟ ରାଜା ପୁରୁଷୋତ୍ତମଦେବ ସେହି ବଂଶର ଚନ୍ଦ୍ର ଭଳି ଶୋଭା ପାଉଛନ୍ତି । ତାଙ୍କର ମଧ୍ୟ ଶୌର୍ଯ୍ୟ, ବୀର୍ଯ୍ୟ, ଭକ୍ତି ଓ ଅନୁକମ୍ପାର ପଟାନ୍ତର ଓଡ଼ିଶା ଇତିହାସରେ ନାହିଁ ।

## ବଂଶ ପରିଚୟ

କପିଳେନ୍ଦ୍ରଦେବଙ୍କ ବହୁ ପୁତ୍ରଙ୍କ ମଧ୍ୟରେ ପୁରୁଷୋତ୍ତମ ଅନ୍ୟତମ ଥିଲେ । ଏହା ପ୍ରତାପରୁଦ୍ରଦେବଙ୍କ ଅନନ୍ତବରମ ଦାନ ଫଳକରୁ ଜଣାଯାଏ । 'ସରସ୍ୱତୀ ବିଳାସ' କାବ୍ୟରେ ମଧ୍ୟ ପୁରୁଷୋତ୍ତମଦେବଙ୍କ ପିତା କପିଳେନ୍ଦ୍ରଦେବ ଓ ମାତାଙ୍କ ନାମ ପାର୍ବତୀଦେବୀ ବୋଲି ଉଲ୍ଲେଖ ଅଛି । ମାତ୍ର ସେ କି ଧରଣର ପୁତ୍ର ଥିଲେ ସେ ବିଷୟରେ ନାନା ମତ ଅଛି । 'ବାମଣ୍ଡା ରାଜବଂଶାବଳୀ'ରେ ତାଙ୍କୁ ଭୋଗିନୀ ନନ୍ଦନ ବୋଲି କୁହାଯାଇଛି । ଅଧ୍ୟାପକ ପ୍ରଭାତ ମୁଖାର୍ଜୀ ତାଙ୍କୁ ଫୁଲବିବାହୀ ପତ୍ନୀ ବୋଲି ବର୍ଣ୍ଣନା କରିଛନ୍ତି । ମୁସଲମାନ ଐତିହାସିକ ଫେରିସ୍ତା ତାଙ୍କୁ ମଙ୍ଗଳରାୟ ନାମରେ ନାମିତ କରିଛନ୍ତି । କେହି କେହି କହନ୍ତି ଯେ ସେ କପିଳେନ୍ଦ୍ରଦେବଙ୍କ ପୋଷ୍ୟପୁତ୍ର ଥିଲେ । ପରେ ସେ ପୁରୁଷୋତ୍ତମଦେବ ନାମ ଗ୍ରହଣ କରିଥିଲେ । ସେ ଯାହାହେଉ, ପୁରୁଷୋତ୍ତମଦେବ କପିଳେନ୍ଦ୍ରଦେବଙ୍କର ଜ୍ୟେଷ୍ଠପୁତ୍ର ନ ଥିଲେ । ତାଙ୍କର ମାତା ପାର୍ବତୀଦେବୀ ଓ ସେ କପିଳେନ୍ଦ୍ରଦେବଙ୍କର ଫୁଲବିବାହୀ ପତ୍ନୀ ଥିଲେ ଓ ବ୍ରାହ୍ମଣବଂଶୀୟା ମଧ୍ୟ ଥିଲେ । ମାତ୍ର ସେ କପିଳେନ୍ଦ୍ରଦେବଙ୍କର ପ୍ରିୟତମା ରାଣୀ ଥିଲେ । ତେଣୁ ସେ ପୁତ୍ରକୁ ସିଂହାସନରେ ବସାଇବାକୁ ରାଜାଙ୍କୁ ପ୍ରଭାବିତ କରିଥିଲେ । ରାଜ୍ୟର ବ୍ରାହ୍ମଣ ପୁରୋହିତମାନେ ମଧ୍ୟ ଏହାକୁ ସମର୍ଥନ କରିଥିବାର ଜଣାଯାଏ ।

## ସିଂହାସନ୍ ପ୍ରାପ୍ତି

କପିଳେନ୍ଦ୍ରଦେବ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ତାଙ୍କ ଉପରେ କପିଳେନ୍ଦ୍ରଦେବଙ୍କର ପ୍ରଗାଢ଼ ବିଶ୍ୱାସ ଥିଲା । କଥିତଅଛି ଯେ କପିଳେନ୍ଦ୍ରଦେବ ତାଙ୍କ ପରେ କିଏ ସିଂହାସନରେ ବସିବ ତାହା ଜାଣିବାପାଇଁ ଶ୍ରୀଜଗନ୍ନାଥଙ୍କ ପାଖରେ ଅଧିଆ ପଡ଼ିଲେ । କିଛିଦିନ ଅଧିଆ ପଡ଼ିଲା ପରେ ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ ଦେଖାଦେଲେ ଓ କହିଲେ ଯେ ରାଜଗାଦିରେ କିଏ ବସିବ ସେ ବିଷୟରେ ସେ ଚିନ୍ତିତ ହେବା ଦରକାର ନାହିଁ । ସେ ବିଷୟ ସ୍ଥିରୀକୃତ ହୋଇସାରିଛି । ଜଗନ୍ନାଥ ମଧ ସବୁ ପୁତ୍ରଙ୍କୁ ଧରି ମନ୍ଦିର ବେଢ଼ା ଭିତରକୁ ଯିବାକୁ ରାଜାଙ୍କୁ ନିର୍ଦ୍ଦେଶ ଦେଲେ । ଯେଉଁ ପୁତ୍ର ତାଙ୍କ ପିନ୍ଧା କୁଞ୍ଚ ଉଠାଇବେ ସେ ହିଁ ତାଙ୍କର ଉତ୍ତରାଧିକାରୀ ହେବେ । ଏହା କହି ମହାପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ । ତା' ପରଦିନ ପ୍ରଭୁଙ୍କ ନିର୍ଦ୍ଦେଶ ଅନୁଯାୟୀ କପିଳେନ୍ଦ୍ରଦେବ ସବୁ ରାଜପୁତ୍ରଙ୍କୁ ନେଇ ମନ୍ଦିର ବେଢ଼ା ଭିତରକୁ ଗଲେ । ଅରୁଣସ୍ତମ୍ଭ ପାଖରେ ପହଞ୍ଚିଲାବେଳକୁ ଜନସମାଗମ ବୃଦ୍ଧି ପାଇଥିଲା । ବାଇଶ ପାହାଚ ଉପରେ ଚଢ଼ିଲା ବେଳକୁ ହଠାତ୍ ମହାରାଜାଙ୍କ ପିନ୍ଧା ଲୁଗା କାନି ଗୋଡ଼ରେ ଛନ୍ଦି ହୋଇ ତଳକୁ ଖସିପଡ଼ିଲା । ପୁରୁଷୋତ୍ତମଦେବ ସଙ୍ଗେ ସଙ୍ଗେ ତାକୁ ଉଠାଇନେଇ ଅଣ୍ଟାରେ ଖୋସିଦେଲେ । କପିଳେନ୍ଦ୍ରଦେବ ପୁରୁଷୋତ୍ତମଦେବଙ୍କୁ ପାଖକୁ ଟାଣିନେଇ ଉତ୍କଳର ଭାବୀ ଗଜପତି ବୋଲି ଘୋଷଣା କଲେ ।

କପିଳେନ୍ଦ୍ରଦେବଙ୍କ ଜ୍ୟେଷ୍ଠପୁତ୍ରର ନାମ ଥିଲା ରାଜକୁମାର ହମ୍ୱୀର । ସେ ହିଁ କପିଳେନ୍ଦ୍ରଦେବଙ୍କର ପ୍ରକୃତ ଉତ୍ତରାଧିକାରୀ ଥିଲେ । ସେ ମଧ ପିତାଙ୍କୁ ଦାକ୍ଷିଣାତ୍ୟ ଯୁଦ୍ଧରେ ସାହାଯ୍ୟ କରି ନିଜ ଶକ୍ତି ଓ ସାମର୍ଥ୍ୟର ପରିଚୟ ଦେଇଥିଲେ । ମାତ୍ର ଶ୍ରୀଜଗନ୍ନାଥଙ୍କ ଇଚ୍ଛା ବିରୋଧରେ ତାଙ୍କର କିଛି କରିବାର ନ ଥିଲା । ହମ୍ୱୀରଙ୍କର ମଧ ଅନ୍ୟ ଭାଇମାନେ ଥିଲେ । ସେମାନଙ୍କ ହୃଦୟରେ ଈର୍ଷା ଓ ପ୍ରତିହିଂସାର ବହ୍ନି ଜଳିଉଠିଲା । ଗୋପନରେ ପୁରୁଷୋତ୍ତମଦେବଙ୍କର ପ୍ରାଣନାଶପାଇଁ ସମସ୍ତ ଉଦ୍ୟମ କଲେ । ମାତ୍ର ଜଗନ୍ନାଥଙ୍କ ଦୟାରୁ ସମସ୍ତ ବିପଦରୁ ପୁରୁଷୋତ୍ତମଦେବ ରକ୍ଷା ପାଇଲେ । ପ୍ରବାଦ ଅଛି ଯେ ସ୍ୱୟଂ ଜଗନ୍ନାଥ ଭାଇମାନେ ଚକ୍ରାନ୍ତ ଚଳାଇଥିବା କଥା ସ୍ୱପ୍ନରେ ପୁରୁଷୋତ୍ତମଦେବଙ୍କୁ ଜଣାଇଦେଇଥିଲେ । ସେହିଦିନୁ ପୁରୁଷୋତ୍ତମଦେବ ଜଗନ୍ନାଥଙ୍କ ପରମ ଭକ୍ତ ହେଲେ ।

ପୁରୁଷୋତ୍ତମଦେବଙ୍କ ରାଜ୍ୟପ୍ରାପ୍ତି ବିଷୟ 'ଉତ୍ତ୍ରଦେଶ ରାଜବଂଶାବଳୀ'ରେ ମଧ ଉଲ୍ଲେଖ ଅଛି – ''ଏହା ପରେ ପୁରୁଷୋତ୍ତମଦେବ ରାଜା ହେବା ଶୁଣି ଅନ୍ୟ ପୁଅମାନେ କହିଲେ – ଯଦି ଆମ୍ଭମାନଙ୍କ ମଧରେ ସେ ଅଧିକ ଶକ୍ତିଶାଳୀ

ଅଛି ତେବେ ଆମର ଗଦା ପ୍ରହାର ସହିପାରିଲେ ରାଜ୍ୟ ଭୋଗ କରିବ । ଏହା କହି ବଡ଼ଭାଇ ଅଠର ଜଣଯାକ ଗଦା ପ୍ରହାର କଲେ । ଭଗବାନ୍‌ଙ୍କ ଅନୁଗ୍ରହରୁ ତାଙ୍କ ଦେହକୁ ଆଦୌ କଷ୍ଟ ହେଲା ନାହିଁ । ଆମ୍ଭମାନଙ୍କ ଗଦା ପ୍ରହାରରେ କିଛି ହେଲା ନାହିଁ । ତେଣୁ ଏହାଙ୍କ ପ୍ରତି ଭଗବାନ୍‌ଙ୍କ ଅନୁଗ୍ରହ ଅଛି ବୋଲି ମନେକରି ସମସ୍ତେ ଅନ୍ୟ ଦେଶକୁ ଯାଇ ବସବାସ କଲେ ।''

ରାଜତ୍ୱ ଆରମ୍ଭରେ ପୁରୁଷୋତ୍ତମଦେବ ବ୍ରାହ୍ମଣମାନଙ୍କ ଉପରୁ ବହୁ କର ଉଠାଇଦେଲେ । ସେମାନଙ୍କୁ ବହୁ ଜମି ଦାନ କଲେ । ଏହା ଜଗନ୍ନାଥ ମନ୍ଦିରରେ ଥିବା ଅନୁଶାସନରୁ ଜଣାଯାଏ । ଏହା ଫଳରେ ରାଜ୍ୟରେ ତାଙ୍କର ସ୍ଥିତି ଦୃଢ଼ ହୋଇଥିଲା ।

ପୁରୁଷୋତ୍ତମଦେବଙ୍କ ଜ୍ୟେଷ୍ଠ ଭ୍ରାତା ହମ୍ୱୀର ପ୍ରଥମେ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ହୋଇ ଦେଖାଦେଲେ । କପିଁଳେନ୍ଦ୍ରଦେବଙ୍କ ପରେ ରାଜା ହେବାର ତାଙ୍କର ସମସ୍ତ ଯୋଗ୍ୟତା ଥିଲା । ସେ କେବଳ ଦାକ୍ଷିଣାତ୍ୟ ଯୁଦ୍ଧରେ ପିତାଙ୍କୁ ସାହାଯ୍ୟ କରିଥିଲେ ତାହା ନୁହେଁ, ସେ ରାଜ୍ୟର ଦକ୍ଷିଣାଞ୍ଚଳକୁ ନିଜର ଶକ୍ତି ବଳରେ ସୁଦୃଢ଼ ରଖିଥିଲେ । ମାତ୍ର କପିଳେନ୍ଦ୍ରଦେବ ପୁରୁଷୋତ୍ତମଦେବଙ୍କୁ ସିଂହାସନ ଦେବାକୁ ସ୍ଥିର କରନ୍ତେ ହମ୍ୱୀର ବିଦ୍ରୋହ କରିବାର ଆଶଙ୍କା ଦେଖାଦେଲା । ତେଣୁ ରାଜା କପିଳେନ୍ଦ୍ରଦେବ ନିଜ ଜୀବିତାବସ୍ଥାରେ ଏହାର ସମାଧାନ କରିବାକୁ ସ୍ଥିର କଲେ । ସେ ରାଜକୁମାର ପୁରୁଷୋତ୍ତମଦେବଙ୍କୁ ନେଇ ଦାକ୍ଷିଣାତ୍ୟ ଗଲେ । କୃଷ୍ଣା ନଦୀ କୂଳରେ ପୁରୁଷୋତ୍ତମଦେବଙ୍କର ଅଭିଷେକ ହେଲା । ହମ୍ୱୀର ଓଡ଼ିଶାର ଦକ୍ଷିଣାଞ୍ଚଳର ଶାସନ ଦାୟିତ୍ୱ ଗ୍ରହଣ କଲେ । ଏହାର ଅଳ୍ପ କାଳ ପରେ କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ହେଲା ।

## ଗୃହଯୁଦ୍ଧ

କପିଳେନ୍ଦ୍ରଦେବଙ୍କ ମୃତ୍ୟୁ ପରେ ବିଜୟନଗରର ସେନାପତି ଶାଲୁବ ନରସିଂହ ଶକ୍ତିଶାଳୀ ହେଲେ । ସେ ବିଜୟନଗର ଅଧିକାର କଲା ପରେ ଓଡ଼ିଆମାନଙ୍କୁ ସେଠାରୁ ହଟାଇଦେବାକୁ ଚେଷ୍ଟା କଲେ । ହମ୍ୱୀର କପିଳେନ୍ଦ୍ରଦେବଙ୍କଠାରୁ ସୈନ୍ୟ ଓ ଅର୍ଥ ସାହାଯ୍ୟ ପାଉଥିଲେ । ପୁରୁଷୋତ୍ତମଦେବ ରାଜା ହେଲା ପରେ ତାହା ବନ୍ଦ ହୋଇଗଲା । ହମ୍ୱୀର ତେଣୁ ଆବଶ୍ୟକୀୟ ଅର୍ଥ ଓ ସୈନ୍ୟ ପାଇଲେ ନାହିଁ । ଦକ୍ଷିଣରେ ହମ୍ୱୀରଙ୍କର ଶକ୍ତି ବୃଦ୍ଧି ପୁରୁଷୋତ୍ତମଦେବ ନ ଚାହିଁଥିବା ସ୍ୱାଭାବିକ ।

ଏକ ସଂସ୍କୃତ ଗ୍ରନ୍ଥରୁ ଜଣାଯାଏ ଯେ ଶାଲୁବ ନରସିଂହଦେବଙ୍କଦ୍ୱାରା ଓଡ଼ିଆ ରାଜା ପରାଜିତ ହୋଇ ଦୁର୍ଗରେ ଆତ୍ମଗୋପନ କଲେ । ଐତିହାସିକ ସୁବ୍ରମଣ୍ୟମ୍ ଏହାକୁ ଉଦୟଗିରି ଦୁର୍ଗ ବୋଲି ମତ ଦିଅନ୍ତି । ହମ୍ୱୀର ତେଣୁ ଅନ୍ୟ ଉପାୟ ନ ଦେଖି ବିଦ୍ରୋହ କରିବାକୁ ବାଧ ହେଲେ । ସେ ପୁରୁଷୋତ୍ତମଦେବଙ୍କ ବିରୋଧରେ ବାହମନୀ ସୁଲତାନ ମହମ୍ମଦ ଶାହଙ୍କ ସହିତ ଏକ ମେଣ୍ଟ କଲେ । ମହମ୍ମଦ ଶାହ ମଧ ଓଡ଼ିଶା ରାଜାଙ୍କଠାରୁ ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡୁ ଅଧିକାର କରିନେବାକୁ ଚାହୁଁଥିଲେ । ସେ ନିଜାମ-ଉଲ-ମୁଲ୍କଙ୍କ ନେତୃତ୍ୱରେ ଏକ ସେନାବାହିନୀ ଓଡ଼ିଶା ରାଜା ହମ୍ୱୀରଙ୍କ ସାହାଯ୍ୟପାଇଁ ପଠାଇଲେ । ୧୪୭୨ ଖ୍ରୀଷ୍ଟାବ୍ଦରେ ନିଜାମ-ଉଲ-ମୁଲ୍କ ଓ ହମ୍ୱୀରଙ୍କ ମିଳିତ ସେନାବାହିନୀ ଓଡ଼ିଶା ଆକ୍ରମଣ କରି ପୁରୁଷୋତ୍ତମଦେବଙ୍କୁ ପରାସ୍ତ କଲେ । ହମ୍ୱୀର ପିତାଙ୍କ ରାଜ୍ୟ ଅଧିକାର କଲେ । ୧୪୭୨ ଖ୍ରୀଷ୍ଟାବ୍ଦରୁ ୧୪୭୬ ପର୍ଯ୍ୟନ୍ତ ପୁରୁଷୋତ୍ତମଦେବଙ୍କ ଅଭିଲେଖ ଓଡ଼ିଶାର କୌଣସି ଅଞ୍ଚଳରେ ଦେଖିବାକୁ ମିଳେ ନାହିଁ । ସୁତରାଂ ୧୪୭୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ହମ୍ୱୀର ଓଡ଼ିଶା ରାଜସିଂହାସନରେ ବସିଥିଲେ ବୋଲି ଐତିହାସିକ ସୁବ୍ରମଣ୍ୟମ୍ ମତ ଦିଅନ୍ତି ।

ମାତ୍ର ହମ୍ୱୀରଙ୍କ ବିଜୟ ଯେ ବେଶି କାଳ ସ୍ଥାୟୀ ହୋଇ ରହି ନ ଥିଲା, ଏହା ଅତି ସ୍ପଷ୍ଟ । ପୁରୁଷୋତ୍ତମଦେବ ହମ୍ୱୀରଙ୍କ ବିରୋଧରେ ସଂଗ୍ରାମ ଚଳାଇଲେ । ଓଡ଼ିଶାର ସାମନ୍ତରାଜାମାନେ ମଧ ପୁରୁଷୋତ୍ତମଦେବଙ୍କ ପ୍ରତି ଅନୁରକ୍ତ ଥିଲେ । ଜଗନ୍ନାଥଙ୍କ ପ୍ରତିନିଧିଭାବେ ସେ ପୂଜା ପାଉଥିଲେ । ଜନସମର୍ଥନ ହମ୍ୱୀରଙ୍କ ପ୍ରତି ନ ଥିଲା । ସେ ମଧ କ୍ରମେ ବାହମନୀ ସୁଲତାନଙ୍କଠାରୁ ସାହାଯ୍ୟ ପାଇଲେ ନାହିଁ । ଶେଷରେ ହମ୍ୱୀର ପରାସ୍ତ ହେଲେ ଓ ସିଂହାସନରୁ ବିତାଡ଼ିତ ହେଲେ । ପୁରୁଷୋତ୍ତମଦେବ ୧୪୭୬ରେ ପୁଣି ସିଂହାସନରେ ବସିଲେ ।

ରାଖାଲ ଦାସ ବାନାର୍ଜୀ ପ୍ରଭୃତି ଐତିହାସିକମାନେ ହମ୍ୱୀରଙ୍କ ଚାରି ବର୍ଷ ରାଜତ୍ୱକୁ ଗ୍ରହଣ କରି ନାହାନ୍ତି । ସେମାନଙ୍କ ମତରେ ଫେରିସ୍ତାଙ୍କ ବୃତ୍ତାନ୍ତ ସତ୍ୟ ଉପରେ ଆଧାରିତ ନୁହେଁ । ୧୪୭୨ରୁ ୧୪୭୬ ପର୍ଯ୍ୟନ୍ତ ହମ୍ୱୀରଙ୍କର କୌଣସି ଅଭିଲେଖ ମିଳି ନ ଥିବା ସେମାନେ କାରଣସ୍ୱରୂପ ଦର୍ଶାଇଛନ୍ତି । ମାତ୍ର ସୁବ୍ରମଣ୍ୟମ୍‌ଙ୍କ ଭଳି ଆଉ କେତେକ ଐତିହାସିକ ଫେରିସ୍ତାଙ୍କ ବିବରଣୀକୁ ସତ୍ୟ ବୋଲି ଗ୍ରହଣ କରିଛନ୍ତି । ତାଙ୍କ ମତରେ ଦୁଇ ଭ୍ରାତାଙ୍କ ମଧରେ ଶେଷରେ ଏକ ସନ୍ଧି ହେଲା । ହମ୍ୱୀର ଖେମୁଣ୍ଡି ରାଜ୍ୟର ଶାସକଭାବେ ନିଯୁକ୍ତ ହେଲେ । ଏହାପରେ ହମ୍ୱୀରଙ୍କ ବିଷୟରେ ଆଉ କିଛି ଉଲ୍ଲେଖ ନାହିଁ । ସମ୍ଭବତଃ, ସେ ପୁରୁଷୋତ୍ତମଦେବଙ୍କ ଜନୈକ ସୈନ୍ୟଦ୍ୱାରା ନିହତ ହେଲେ ।

## ରାଜ୍ୟଜୟ

ସିଂହାସନ ଫେରିପାଇବାପରେ ପୁରୁଷୋତ୍ତମଦେବ ଓଡ଼ିଶାର ଅଧିକୃତ ଅଞ୍ଚଳଗୁଡ଼ିକୁ ପୁଣି ଅଧିକାର କରିନେବାକୁ ବସିଲେ । କୋଣ୍ଡାଭିଡୁ ଓ ରାଜମହେନ୍ଦ୍ରୀ ଦୁର୍ଗ ବାହମନୀ ସୁଲତାନଙ୍କ ଅଧୀନରେ ଥିଲା । ସେ ସେହି ଅଞ୍ଚଳଗୁଡ଼ିକୁ ପୁନରୁଦ୍ଧାରପାଇଁ ସେଠାର ଓଡ଼ିଆ ସାମନ୍ତମାନଙ୍କ ସହିତ ମେଣ୍ଟ କଲେ । ୧୪୭୬ ଖ୍ରୀଷ୍ଟାବ୍ଦରେ ବାହମନୀ ରାଜ୍ୟରେ ଭୟଙ୍କର ଦୁର୍ଭିକ୍ଷ ପଡ଼ିଲା । ଫେରିସ୍ତାଙ୍କ ବିବରଣୀ ଅନୁଯାୟୀ ବାହମନୀ ସେନାବାହିନୀରେ ବିଦ୍ରୋହ ଦେଖାଦେଲା । ସେମାନେ ଦୁର୍ଗର ଶାସକଙ୍କୁ ହତ୍ୟା କଲେ ଓ ହମ୍ୱୀରଙ୍କୁ ଦୁର୍ଗର ଶାସକଭାବେ ବସାଇଲେ । ହମ୍ୱୀର ଏହି ସୁଯୋଗରେ ଓଡ଼ିଶାର ଦକ୍ଷିଣାଞ୍ଚଳ ପୁନରୁଦ୍ଧାରପାଇଁ ପୁରୁଷୋତ୍ତମଦେବଙ୍କ ପାଖକୁ ଗୁପ୍ତରେ ଏକ ଦୂତ ପ୍ରେରଣ କଲେ । ସେ ବାହମନୀ ସୁଲତାନଙ୍କୁ ତଡ଼ିବାପାଇଁ ସାହାଯ୍ୟ କରିବାକୁ ରାଜି ହେଲେ । ମାତ୍ର ପୁନରୁଦ୍ଧାର ପରେ ତାହା ଦୁଇ ଭ୍ରାତାଙ୍କ ମଧ୍ୟରେ ବଣ୍ଟନ କରିବାକୁ ସର୍ତ୍ତ ରଖିଥିଲେ । ପୁରୁଷୋତ୍ତମ ହମ୍ୱୀରଙ୍କ ଏ ପ୍ରସ୍ତାବରେ ରାଜି ହେଲେ । ସେ ଏକ ବିରାଟ ସେନାବାହିନୀ ନେଇ ଦାକ୍ଷିଣାତ୍ୟ ଅଭିଯାନରେ ବାହାରିଲେ । ସୀମାଞ୍ଚଳ ଅଭିଲେଖରୁ ଜଣାଯାଏ ଯେ ସେ ରାଜମହେନ୍ଦ୍ରୀ ପର୍ଯ୍ୟନ୍ତ ଯାଇଥିଲେ । ସେଠାରେ ସେ ନରସିଂହଦେବଙ୍କର ପୂଜାଅର୍ଚ୍ଚନା କରିଥିଲେ । ସେ ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡୁ ଦୁର୍ଗ ଅଧିକାର କରିନେଲେ । ଏହି ସମୟରେ ଶାଳୁବ ନରସିଂହ ସେନାବାହିନୀ ନେଇ ରାଜମହେନ୍ଦ୍ରୀରେ ପହଞ୍ଚିଲେ । ଦୁଇ ହିନ୍ଦୁ ରାଜା ଏକାଠି ମିଶି ଯୁଦ୍ଧ କରିଥିଲେ ହୁଏତ ବାହମନୀ ସୁଲତାନ ପରାସ୍ତ ହୋଇଥାଆନ୍ତେ । ମାତ୍ର ତାହା ହୋଇ ନ ଥିଲା । ଦୁଇ ହିନ୍ଦୁ ରାଜା ଗୋଦାବରୀ ଅଞ୍ଚଳ ଅଧିକାର କରିନେବାପାଇଁ ଲାଗିପଡ଼ିବା ଫଳରେ ତୃତୀୟ ଶକ୍ତିର ବିଜୟ ହେଲା ।

ପୁରୁଷୋତ୍ତମଦେବ ରାଜମହେନ୍ଦ୍ରୀ ଅବରୋଧ କରିଥିବା ଶୁଣି ତୃତୀୟ ମହମ୍ମଦ ବିରାଟ ସୈନ୍ୟବାହିନୀ ସହ ରାଜମହେନ୍ଦ୍ରୀ ଆକ୍ରମଣ କଲେ । ଫଳରେ ପୁରୁଷୋତ୍ତମଦେବ ରାଜମହେନ୍ଦ୍ରୀ ଛାଡ଼ି ନିଜ ରାଜ୍ୟକୁ ଫେରିଆସିଲେ । ଫେରିସ୍ତାଙ୍କ ବିବରଣୀରୁ ଜଣାଯାଏ ଯେ ମୁସଲମାନ ସୈନ୍ୟ ରାଜମହେନ୍ଦ୍ରୀ ଦୁର୍ଗ ଅଧିକାର କରି ଓଡ଼ିଶା ସେନାଙ୍କ ପଶ୍ଚାଦ୍‌ଧାବନ କଲେ । ଫଳରେ ପୁରୁଷୋତ୍ତମଦେବ ବାହମନୀ ସୁଲତାନଙ୍କ ସହିତ ସନ୍ଧି କରିବାକୁ ବାଧ୍ୟ ହେଲେ । ବାହମନୀ ସୁଲତାନ ପଚିଶଟି ହସ୍ତୀ ସହ ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡୁ ଅଞ୍ଚଳ ଅଧିକାର କରିନେଲେ । ଫଳରେ ପୁରୁଷୋତ୍ତମଦେବଙ୍କ ଦାକ୍ଷିଣାତ୍ୟ ଅଭିଯାନ ଯେ ସଫଳ ହୋଇ ନ ଥିଲା, ଏହା ଅତି ସ୍ପଷ୍ଟ ।

ବାହମନୀ ସୁଲତାନ ତୃତୀୟ ମହମ୍ମଦ ଏହା ପରେ ଶାଳୁବ ନରସିଂହଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ । ୧୪୮୦ ଖ୍ରୀଷ୍ଟାବ୍ଦରେ ବାହମନୀ ସୁଲତାନଙ୍କ ବିରୋଧରେ କୋଣ୍ଡାଭିଡୁରେ ଏକ ବିଦ୍ରୋହ ହୋଇଥିଲା । ସୁଲତାନ ଏହି ବିଦ୍ରୋହକୁ ଦମନ କଲେ । ମାତ୍ର ଏହି ବିଦ୍ରୋହ ଶାଳୁବ ନରସିଂହଙ୍କଦ୍ୱାରା ହୋଇଥିଲା ବୋଲି ସୁଲତାନ ଅନୁମାନ କରିଥିଲେ । ଦ୍ୱିତୀୟରେ, ଶାଳୁବ ନରସିଂହ ତେଲେଙ୍ଗାନାର ହିନ୍ଦୁ ସାମନ୍ତ ରାଜାମାନଙ୍କୁ ବାହମନୀ ସୁଲତାନଙ୍କ ବିରୋଧରେ ସଦାସର୍ବଦା ମତାଉଥିବାର ସେ ଜାଣିପାରିଥିଲେ । ସୁତରାଂ ୧୪୮୧ ଖ୍ରୀଷ୍ଟାବ୍ଦରେ ଶାଳୁବ ନରସିଂହଦେବଙ୍କର ଅନୁପସ୍ଥିତିର ସୁଯୋଗ ନେଇ ସେ କାଞ୍ଚି ଆକ୍ରମଣ କଲେ । ମାତ୍ର ଫେରିବା ସମୟରେ ବିଜୟନଗର ସେନାପତି ଈଶ୍ୱର ନାଏକଙ୍କଦ୍ୱାରା ପରାସ୍ତ ହେଲେ । ଏହାପରେ ସୁଲତାନ ଭଗ୍ନ ହୃଦୟରେ ପ୍ରାଣତ୍ୟାଗ କଲେ । ତାଙ୍କ ପରେ ମାତ୍ର ବାର ବର୍ଷ ବୟସର ପୁତ୍ର ମାମୁଦ ବାହମନୀ ସୁଲତାନ ହେଲେ । ତାଙ୍କ ସମୟରେ ବାହମନୀ ରାଜ୍ୟ ଖଣ୍ଡବିଖଣ୍ଡିତ ହୋଇଗଲା । ଏହି ସୁଯୋଗରେ ୧୪୮୨ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମ ପୁଣି ଦାକ୍ଷିଣାତ୍ୟ ଅଭିଯାନରେ ବାହାରିଲେ ଓ ରାଜମହେନ୍ଦ୍ରୀ ଓ କୋଣ୍ଡାଭିଡୁ ଅଧିକାର କରିନେଲେ । ୧୪୮୪ରେ ତାଙ୍କର ଜଣେ ସେନାପତି ଗୁଣ୍ଟୁର ଜିଲ୍ଲାର ଭିନୁକୋଣ୍ଡା ତାଲୁକରେ ଥିବା ମୁଟ୍ଟୁକୁମୁଲି ଗ୍ରାମକୁ ଚନ୍ଦ୍ରଗ୍ରହଣ ଦିନ ତାଙ୍କର ପ୍ରଭୁ ପୁରୁଷୋତ୍ତମଦେବଙ୍କ ବିଜୟପାଇଁ ଦାନ କରିଥିବାର ଜଣାଯାଏ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ଏହି ଅଞ୍ଚଳ ପୁରୁଷୋତ୍ତମଦେବଙ୍କ ଅଧୀନକୁ ଚାଲିଆସିଥିଲା ।

ପୁରୁଷୋତ୍ତମଦେବ ଅଧିକୃତ ଅଞ୍ଚଳରେ ବିବାହ ଉପରେ ଶୁଳ୍କ ପ୍ରଭୃତି ଉଠାଇ ଦେଇ ସମସ୍ତଙ୍କର ସମର୍ଥନ ଓ ସହାନୁଭୂତି ଲାଭ କରିଥିଲେ ।

ଏହାପରେ ପୁରୁଷୋତ୍ତମଦେବ ଉଦୟଗିରି ରାଜ୍ୟ ଆକ୍ରମଣ କଲେ । ସେତେବେଳେ ଉଦୟଗିରିର ପ୍ରଶାସକ ଥିଲେ ବାସବଭୂପତି । ସେ କପିଳେନ୍ଦ୍ରଦେବଙ୍କଦ୍ୱାରା ନିଯୁକ୍ତ ହୋଇଥିଲେ । ମାତ୍ର ଶାଳୁବ ନରସିଂହଦେବ ଏହାକୁ ଅଧିକାର କଲା ପରେ ବାସବଭୂପତି ତାଙ୍କ ପ୍ରତି ଆନୁଗତ୍ୟ ଦେଖାଇଥିଲେ । ସେ ମଧ୍ୟ ପୁରୁଷୋତ୍ତମଦେବଙ୍କୁ ସମର୍ଥନ କରିଥିଲେ । ଏହା ଫଳରେ ପୁରୁଷୋତ୍ତମଦେବ ଉଦୟଗିରି ଅଧିକାର କରିନେଲେ । ଯୁଦ୍ଧରେ ଶାଳୁବ ନରସିଂହ ପରାସ୍ତ ଓ ବନ୍ଦୀ ହେଲେ । ୧୪୮୯-୯୦ ଖ୍ରୀଷ୍ଟାବ୍ଦରେ ଉଦୟଗିରି ପୁଣି ଓଡ଼ିଶାର ରାଜାଙ୍କ ଅଧୀନସ୍ଥ ହେଲା । ଏହାର ଅଳ୍ପ କାଳ ପରେ ଶାଳୁବ ନରସିଂହଙ୍କର ମୃତ୍ୟୁ ହେଲା । ଉଦୟଗିରି ୧୫୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶା ଅଧୀନରେ ରହିଥିବାର ଜଣାଯାଏ ।

କେହି କେହି ଐତିହାସିକଙ୍କ ମତରେ ହମ୍ମୀର ପୁରୁଷୋତ୍ତମଦେବଙ୍କ ଜନୈକ ସୈନ୍ୟଙ୍କଦ୍ୱାରା ନିହତ ହୋଇଥିଲେ । ମାତ୍ର ପୁରୁଷୋତ୍ତମଦେବ ଜଣେ ଉଦାର ରାଜା ଥିଲେ । ସେ ବିଦ୍ରୋହୀ ଭାଇମାନଙ୍କ ପ୍ରତି ଉଦାର ମନୋଭାବ ପୋଷଣ କରିଥିଲେ । ସେମାନେ ତାଙ୍କର ପ୍ରାଣନାଶପାଇଁ ଚକ୍ରାନ୍ତ କରିଥିଲେ ମଧ୍ୟ ସେ ନିଜ ଉଦାର ଗୁଣରୁ ସେମାନଙ୍କୁ କ୍ଷମା ଦେଇଥିଲେ । ସୁତରାଂ ସେ ହମ୍ମୀରଙ୍କୁ ନିହତ କରିବାକୁ ଚାହିଁ ନ ଥିବା ସ୍ୱାଭାବିକ । ବରଂ ଖିମିଣ୍ଡି ରାଜ୍ୟର ପ୍ରଶାସକଭାବେ ନିଯୁକ୍ତ କରିଥିବା ସମ୍ଭବ । ଐତିହାସିକ ସୁବ୍ରମଣ୍ୟମ୍ ମଧ୍ୟ ସ୍ଥାନୀୟ ନଥିପତ୍ର ଦେଖି ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ।

### କାଞ୍ଚି-କାବେରୀ କାହାଣୀ

ଓଡ଼ିଶାରେ ଗଜପତି ପୁରୁଷୋତ୍ତମଦେବଙ୍କ କାଞ୍ଚି ଅଭିଯାନ କାହାଣୀ ଲୋକମୁଖରେ ଯେପରି ପ୍ରଚଳିତ ଅଛି ଅନ୍ୟ କୌଣସି କାହାଣୀ ବା ଆଖ୍ୟାୟିକା ସେପରି ନାହିଁ । ବର୍ଣ୍ଣନାରେ କେତେକ ପାର୍ଥକ୍ୟ ଥିଲେ ମଧ୍ୟ ମୂଳ କାହାଣୀ ପ୍ରାୟ ଏକ ।

ଓଡ଼ିଶାର ରାଜା ପୁରୁଷୋତ୍ତମଦେବ କାଞ୍ଚି ରାଜଜେମାଙ୍କୁ ଅଭିଷେକ ସମୟରେ କୃଷ୍ଣା ନଦୀ କୂଳରେ ଦେଖି ତାଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହୋଇପଡ଼ିଥିଲେ । ସେ ତେଣୁ ତାଙ୍କୁ ବିବାହ କରିବାପାଇଁ କାଞ୍ଚି ରାଜାଙ୍କ ପାଖକୁ ଦୂତ ପଠାଇଲେ । କାଞ୍ଚି ରାଜା ମଧ୍ୟ ପୁରୁଷୋତ୍ତମଦେବଙ୍କ ବଳ, ବିକ୍ରମ ବିଷୟରେ ଅବଗତ ଥିଲେ । କିନ୍ତୁ ପୂର୍ବରୁ ସେ ଥରେ ପୁରୀ ଯାଇ ରଥଯାତ୍ରା ସମୟରେ ପୁରୁଷୋତ୍ତମଦେବଙ୍କୁ ଜଗନ୍ନାଥଙ୍କ ଛେରାପହଁରା କରୁଥିବାର ଦେଖିଥିଲେ । ସେ ଏହାକୁ ଚଣ୍ଡାଳର କାର୍ଯ୍ୟ ବିଚାରି ପଦ୍ମାବତୀଙ୍କୁ ଏକ ଚଣ୍ଡାଳ ହାତେ ବିବାହଦେବାକୁ ରାଜି ହୋଇ ନ ଥିଲେ । ଦୂତ ରାଜାଙ୍କୁ ଯାଇ ବାରବାଟୀ ଦୁର୍ଗରେ ସମସ୍ତ ବିଷୟ ଜଣାଇଲେ । ପୁରୁଷୋତ୍ତମଦେବ ଏଥିରେ ଅପମାନିତ ବୋଧ କରି କର୍ଣ୍ଣାଟର ରାଜଧାନୀ କାଞ୍ଚି ଅଭିମୁଖେ ଯାତ୍ରା କଲେ । କାଞ୍ଚି ରାଜା ମଧ୍ୟ ଗୋଟିଏ ଶକ୍ତିଶାଳୀ ସେନା ସାହାଯ୍ୟରେ ତାହାର ମୁକାବିଲା କଲେ । ପୁରୁଷୋତ୍ତମଦେବ ଯୁଦ୍ଧରେ ପରାସ୍ତ ହେଲେ ।

ଜଗନ୍ନାଥଙ୍କର ଆଶୀର୍ବାଦ ନ ନେଇ ସେ ପ୍ରଥମଥର ଯୁଦ୍ଧଯାତ୍ରା କରିଥିବାରୁ ପରାଜୟ ଘଟିଲା ବୋଲି ପୁରୁଷୋତ୍ତମଦେବଙ୍କର ହୃଦ୍‌ବୋଧ ହେଲା । ସେ ତେଣୁ ଜଗନ୍ନାଥଙ୍କର ପାଦପଦ୍ମରେ ଶରଣ ପଶିଲେ । ଶେଷରେ ଭକ୍ତର ଡାକ ଭଗବାନ୍ ଶୁଣିଲେ । ପ୍ରଭୁ ନିଜେ ଯୁଦ୍ଧକ୍ଷେତ୍ରକୁ ଯାଇ ସାହାଯ୍ୟ କରିବେ ବୋଲି

ତାଙ୍କୁ ସ୍ୱପ୍ନାଦେଶ ହେଲା । ସେ ନବ ଉନ୍ମାଦନାରେ ପୁଣି ଏକ ବିରାଟ ସେନାବାହିନୀ ନେଇ କାଞ୍ଚି ଅଭିଯାନରେ ବାହାରିଲେ । ତାଙ୍କ ପୂର୍ବରୁ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର କଳା ଓ ଧଳାଘୋଡ଼ାରେ ଚଢ଼ି କାଞ୍ଚି ଅଭିମୁଖେ ଯାତ୍ରା କରିଥିବାର କୁହାଯାଏ । କିମ୍ବଦନ୍ତୀ ଅନୁସାରେ ଦୁଇ ଭାଇ ବାଟରେ ଚିଲିକା ନିକଟବର୍ତ୍ତୀ ଏକ ଗ୍ରାମରେ ତୃଷାଜନିତ କ୍ଲାନ୍ତି ଯୋଗୁଁ ଅଶ୍ୱପୃଷ୍ଠରୁ ଓହ୍ଲାଇ ମାଣିକ ନାମରେ ଏକ ଗଉଡୁଣୀଠାରୁ ଦହି ଖାଇଲେ । ଯିବାକୁ ଉଦ୍ୟତ ହୁଅନ୍ତେ ମାଣିକ ତାଙ୍କଠାରୁ ଦହିର ମୂଲ୍ୟ ମାଗିଲା । ମାତ୍ର ପାଖରେ କଉଡ଼ି ନ ଥିବାରୁ ହାତରୁ ରତ୍ନମୁଦି କାଢ଼ି ଗଉଡୁଣୀକୁ ଦେଲେ । ମହାରାଜା ଆସିଲେ ତାଙ୍କୁ ରତ୍ନ ମୁଦି ଦେଖାଇ ଦହି ମୂଲ୍ୟ ନେବାକୁ କହି ଅଶ୍ୱପୃଷ୍ଠରେ ବସି ଚାଲିଗଲେ । କିଛି ସମୟପରେ ପୁରୁଷୋତ୍ତମଦେବ ସେଠାରେ ସୈନ୍ୟସାମନ୍ତ ସହ ପହଞ୍ଚିଲେ । ମାଣିକ ମଧ୍ୟ ରତ୍ନମୁଦି ଦେଖାଇ ଦହିର ମୂଲ୍ୟ ମାଗିଲା । ତା'ଠାରୁ ସମସ୍ତ ବିଷୟ ମହାରାଜା ଶୁଣିଲେ । ରତ୍ନମୁଦିକୁ ଦେଖି ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଯେ ଯୁଦ୍ଧକୁ ଯାଉଛନ୍ତି ସେଥିରେ ଆଉ ତାଙ୍କର ସନ୍ଦେହ ରହିଲା ନାହିଁ । ମାଣିକ ଉପରେ ପ୍ରସନ୍ନ ହୋଇ, ତା'ର ନାମ ଅନୁସାରେ ଗ୍ରାମର ନାମ ମାଣିକପାଟଣା ରଖିଲେ ।



ଭକ୍ତ ପାଇଁ ଯୁଦ୍ଧଯାତ୍ରା

କାଞ୍ଚିଠାରେ ଦୁଇ ରାଜାଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଶେଷରେ କାଞ୍ଚି ରାଜା ପରାସ୍ତ ହୋଇ କାଞ୍ଚି ରାଜଜେମା ପଦ୍ମାବତୀଙ୍କୁ ପୁରୁଷୋତ୍ତମଦେବଙ୍କ ହସ୍ତରେ ଦେବାପାଇଁ ବାଧ୍ୟ ହେଲେ । ପୁରୁଷୋତ୍ତମଦେବ କାଞ୍ଚି ରାଜଜେମା ପଦ୍ମାବତୀ, କାଞ୍ଚି ରାଜ୍ୟର ଇଷ୍ଟଦେବତା ବିଘ୍ନରାଜ ଗଣେଶ, ସାକ୍ଷୀଗୋପାଳ ମୂର୍ତ୍ତି ଓ ରତ୍ନ ସିଂହାସନ ଧରି ବାରବାଟୀ ଦୁର୍ଗକୁ ପ୍ରତ୍ୟାବର୍ତ୍ତନ କଲେ ।

ପୁରୁଷୋତ୍ତମଦେବ ସାକ୍ଷୀଗୋପାଳ ମୂର୍ତ୍ତିକୁ ପ୍ରଥମେ ବାରବାଟୀ ଦୁର୍ଗ ମଧ୍ୟରେ ରଖିଲେ । ପରେ ତାହା ସାକ୍ଷୀଗୋପାଳ ମନ୍ଦିରରେ ସ୍ଥାପିତ ହେଲା । ରତ୍ନ ସିଂହାସନକୁ ପୁରୀ ମନ୍ଦିରରେ ରଖାଗଲା । ଏବେ ମଧ୍ୟ ସେଇ ରତ୍ନ ସିଂହାସନ ଉପରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ବିରାଜିତ ଅଛନ୍ତି । ଗଣେଶଙ୍କ ବିଗ୍ରହ ମଧ୍ୟ ଶ୍ରୀମନ୍ଦିରରେ ପୂଜା ପାଉଛନ୍ତି ।

ଡଃ କାହ୍ନୁଚରଣ ମିଶ୍ରଙ୍କ ସମ୍ପାଦିତ 'ଉତ୍ତ୍ରଦେଶ ରାଜବଂଶାବଳୀ'ରେ ମଧ୍ୟ ଉକ୍ତ ଘଟଣାଟିର ବର୍ଣ୍ଣନା ଅଛି –

× × × × ×

ଅନନ୍ତର ରାଜା ଦକ୍ଷିଣ ଦିଗକୁ ଯାଇ କାଞ୍ଚିନଗରରେ ପଦ୍ମିନୀ କନ୍ୟା ଥିବାର ଶୁଣି ତାକୁ ଆଣିବାକୁ ଦୂତ ପଠାଇଥିଲେ । ତା'ପରେ ଦୂତ କାଞ୍ଚିନଗରରେ କହିଥିଲା, ଛାମୁ ! ରାଜାଧିରାଜ ଗଜପତି ପୁରୁଷୋତ୍ତମଦେବ ଆପଣଙ୍କର ପଦ୍ମିନୀକନ୍ୟାକୁ ଇଚ୍ଛା କରୁଛନ୍ତି; ତେଣୁ ଆପଣ ଦାନ କରନ୍ତୁ । ତାହା ଶୁଣି କାଞ୍ଚିରାଜା ଅସ୍ୱୀକାର କଲେ । ଅନନ୍ତର ଦୂତ ଯାଇ ରାଜାଙ୍କ ଆଗରେ କହିଲା । ବିନା ଯୁଦ୍ଧରେ କନ୍ୟା ଦେବେ ନାହିଁ । ତାହା ଶୁଣି ରାଜା ସୈନ୍ୟମାନଙ୍କ ସହିତ ସେଠାକୁ ଯାଇ ବହୁ ଯୁଦ୍ଧ କଲେ । କିନ୍ତୁ ଜିଣିପାରିଲେ ନାହିଁ ।

ତାହାପରେ ରାଜା ପରାଙ୍ମୁଖ ହୋଇ ପ୍ରାତଃକାଳରେ ଶ୍ରୀଜଗନ୍ନାଥଙ୍କ ଆଗରେ ଦୁଃଖରେ ଜଣାଇ ଦାସ ମହାସୂପକାର ନିର୍ମିତ ପିଷ୍ଟକକୁ ଭଗବାନ୍‌ଙ୍କ ଆଗରେ ନିବେଦନ କରି କାଞ୍ଚିପତିଙ୍କୁ କିପରି ବଧ କରିବେ, ଏହା କହିଥିଲେ । ସେହି ରାତିରେ ମହାସୂପକାରଙ୍କୁ ସ୍ୱପ୍ନାଦେଶ ହେଲା । ''ତାକୁ ଜୟ କରିବାପାଇଁ ମୁଁ ଆଗରେ ଯାଉଛି, ତୁମ୍ଭେ ପଛରେ ଆସ ବୋଲି କହିବ ।'' ସେ ସୂପକାର ସେହିପରି କହିଲେ । ରାଜା ତାହା ଶୁଣି ନିଜ ସୈନ୍ୟ ଧରି ଦକ୍ଷିଣାଞ୍ଚଳକୁ ଗଲେ । ତାହାପରେ କେତେଦୂର ଯାଉଣୁ ରାଜା ବିଚାରିଲେ । ଈଶ୍ୱରଙ୍କର ତ ଆଦେଶ ହେଲା ପ୍ରଭୁ ଗଲେ କି ନ ଗଲେ ଏହି ସନ୍ଦେହରେ ଥିବାବେଳେ ସ୍ୱୟଂ ଈଶ୍ୱର ମାଣିକନାମ୍ନୀ ଗୋପାଳୁଣୀ ନିକଟରେ ଦହି ଖାଇ ଦହିର ମୂଲ୍ୟସ୍ୱରୂପ

ନିଜ ରତ୍ନମୁଦି ଦେଇ ତାକୁ କହିଲେ – "ରାଜାଙ୍କୁ ଏ ମୁଦି ଦେଇ ତୋ ପାଉଣା ନେବୁ ।" ଅନନ୍ତର ଗଉଡୁଣୀ ରାଜାଙ୍କ ଆଗରେ କହିଲା – "ହଜୁର ! ଆପଣଙ୍କର ଧଳା କଳା ଦୁଇ ଜଣ ସୈନ୍ୟ ଦହି ଖାଇ ତା'ର ମୂଲ୍ୟସ୍ୱରୂପ ଦିବ୍ୟ ରତ୍ନମଚ୍ଛା ମୁଦ୍ରିକା ଦେଇ କହିଗଲେ ଯେ ରାଜାଙ୍କୁ ଦେଇ ତୋର ପାଉଣା ନେବୁ । ତେଣୁ ଆପଣ ଏ ମୁଦିଟି ନେଇ ମୋର ମୂଲ୍ୟ ଦେଇଦିଅନ୍ତୁ ।" ଏହା କହି ମୁଦିଟି ଦେଇଦେଲା । ରାଜା ମୁଦିଟି ଦେଖି ଭାବିଲେ ପ୍ରଭୁ ଗଲେଣି । ତା'ପରେ ରାଜା ଆନନ୍ଦରେ ତାକୁ ବହୁ ସମ୍ମାନ ଦେଇ ପଗଡ଼ି ଭିତରେ ମୁଦିଟି ରଖି ଚାଲିଲେ । ତତ୍ପରେ କାଞ୍ଚିନଗରରେ ପ୍ରବେଶ କରି ରାଜାଙ୍କୁ ଜୟକରି କନ୍ୟାରତ୍ନ ଗ୍ରହଣ କରିଥିଲେ; ସେହିଠାରୁ ସତ୍ୟବାଦୀ ନାମକ କୃଷ୍ଣମୂର୍ତ୍ତି ମଧ୍ୟ ଆଣିଥିଲେ । ଏହିଠାରୁ ଅନ୍ୟ ପ୍ରତିମାମାନ ମଧ୍ୟ ଆଣିଥିଲେ ।

× × × × ×

'ଉତ୍ତରଦେଶ ରାଜବଂଶାବଳୀ' ବିବରଣୀ ଅନୁଯାୟୀ ଫେରିଲାବେଳେ ମଧ୍ୟ ଜଗନ୍ନାଥ ଓ ବଳଭଦ୍ର ପୁରୁଷୋତ୍ତମଦେବଙ୍କ ସଙ୍ଗେ ଆସିଥିଲେ । ରାଜା ମଧ୍ୟ ଏହା ଜାଣିବାକୁ ପାଇଥିଲେ – "ସେଠାରୁ ଆସି କିଛି ଦୂରରେ ବିଚାର କଲେ । ପ୍ରଭୁ ଆଗରେ ଗଲେ କି ନାହିଁ ? ସେହି ସମୟରେ ଗୋଟିଏ ଗୁଡ଼ିଆ ଆସି କହିଲା, "ରାଜନ୍ ! ଆପଣଙ୍କର ଅଶ୍ୱାରୋହୀ ଦୁଇ ଜଣ ଗୁଡ଼ସାରାଦି ନେଇ ପଣାକରି ପିଇ ତା'ର ମୂଲ୍ୟସ୍ୱରୂପ ଚାବୁକଟିଏ ଦେଇ କହିଲେ, ରାଜାଙ୍କୁ ଦେଇ ତୋର ମୂଲ୍ୟ ପାଇବୁ ।" ତାହା ଦେଖି ରାଜା ତାଙ୍କୁ ନିଷ୍କ ପରିମାଣ ସୁବର୍ଣ୍ଣ ଦେଇ ବହୁ ସମ୍ମାନ କରିଥିଲେ ଓ ତୁମ୍ଭ ହସ୍ତ ଜଳ ଅଦ୍ୟାବଧି ସମସ୍ତଙ୍କର ପେୟ ଅଟେ ବୋଲି ଆଦେଶ ଦେଇଥିଲେ ।"

ଜନଶ୍ରୁତି ଅନୁସାରେ ରାଜା ପୁରୁଷୋତ୍ତମଦେବ ପଦ୍ମାବତୀଙ୍କୁ ସଙ୍ଗେ ସଙ୍ଗେ ବିବାହ କରି ନ ଥିଲେ । ସେ କାଞ୍ଚି ରାଜାଙ୍କ ଅପମାନର ପ୍ରତିଶୋଧ ନେବାକୁ ସ୍ଥିର କଲେ । ସେ ଏକ ଚାଣ୍ଡାଳ ସହିତ ପଦ୍ମାବତୀଙ୍କୁ ବିବାହ କରାଇଦେବାପାଇଁ ମନ୍ତ୍ରୀଙ୍କୁ ଆଦେଶ ଦେଲେ । ମନ୍ତ୍ରୀ କିନ୍ତୁ ଅତି ବିଜ୍ଞ ଓ ଚତୁର ଥିଲେ । ରଥଯାତ୍ରାରେ ଛେରାପହଁରା କରୁଥିବା ସମୟରେ ଗଜପତି ରାଜାଙ୍କୁ ଶ୍ରେଷ୍ଠ ଚାଣ୍ଡାଳଭାବେ ଅଭିହିତ କରି ପଦ୍ମାବତୀଙ୍କୁ ବିବାହ କରିବାକୁ ନିବେଦନ କଲେ । ମନ୍ତ୍ରୀଙ୍କ ଉପଦେଶ ଅନୁଯାୟୀ ପଦ୍ମାବତୀ ମଧ୍ୟ ରାଜାଙ୍କ ବେକରେ ବରଣମାଳ ଲମ୍ୱାଇଦେଲେ । ପୁରୁଷୋତ୍ତମଦେବ ମନ୍ତ୍ରୀଙ୍କ ବିଚକ୍ଷଣତାରେ ମୁଗ୍ଧ ହୋଇପଡ଼ିଲେ । ପଦ୍ମାବତୀଙ୍କ ସହିତ ବିବାହ ତାଙ୍କର ଯଥାସମୟରେ ହେଲା । କାଞ୍ଚି ରାଜାଙ୍କୁ ସେ କ୍ଷମା ଦେଲେ ଓ ତାଙ୍କ ରାଜ୍ୟ ତାଙ୍କୁ ଫେରାଇଦେଲେ ।

'ମାଦଳାପାଞ୍ଜି'ରେ ମଧ କାଞ୍ଚି କାବେରୀ ବିଷୟ ବର୍ଣ୍ଣିତ ଅଛି । ଏହା ଅନୁଯାୟୀ କପିଳେନ୍ଦ୍ରଦେବ ତାଙ୍କ ମୃତ୍ୟୁ ପୂର୍ବରୁ କୋଣ୍ଡାମେରୁ ଆକ୍ରମଣ କରିଥିଲେ ଓ ଚନ୍ଦ୍ରାବତୀକୁ ବନ୍ଦିନୀ କରି ଆଣିଥିଲେ । ଏହି କୋଣ୍ଡାମେରୁକୁ ଐତିହାସିକମାନେ କୋଣ୍ଡାଭିଦୁଭାବେ ଚିହ୍ନିତ କରିଛନ୍ତି । ଚନ୍ଦ୍ରାବତୀ ମଧ ପରବର୍ତ୍ତୀକାଳରେ ପଦ୍ମାବତୀ ହୋଇଥିବା ସମ୍ଭବ ।

ଜଗନ୍ନାଥ ମନ୍ଦିରର ଜଗମୋହନରେ କାଞ୍ଚି ବିଜୟର ଚିତ୍ର ଦେଖାଅଛି । ଜଗନ୍ନାଥ, ବଳଭଦ୍ରଙ୍କର ଅଶ୍ୱପୃଷ୍ଠରେ ଯୁଦ୍ଧଯାତ୍ରା, ଗଉଡୁଣୀଠୁ ଦହି ଖାଇବା ପ୍ରଭୃତି ପ୍ରସଙ୍ଗ ସୁନ୍ଦରଭାବେ ଚିତ୍ରିତ କରାଯାଇଛି । ବଳରାମ ଦାସଙ୍କ 'ବେଢ଼ା ପରିକ୍ରମା'ରେ ଏହି କାଞ୍ଚି ବିଜୟ ବର୍ଣ୍ଣିତ ଅଛି । ଏଥିରୁ କାଞ୍ଚି ଅଭିଯାନର ସତ୍ୟତା ପ୍ରତିପାଦିତ ହେଉଅଛି ବୋଲି କେହି କେହି ଐତିହାସିକ ମତ ଦିଅନ୍ତି ।

ଅଧ୍ୟାପକ ରାଖାଲ ଦାସ ବାନାର୍ଜୀ ପୁରୁଷୋତ୍ତମଦେବଙ୍କ କାଞ୍ଚି ଅଭିଯାନକୁ ପ୍ରଣୟ ଆଧାରିତ ଗଳ୍ପ ବୋଲି ଅଭିହିତ କରିଛନ୍ତି । ମାତ୍ର ଐତିହାସିକ ସୁବ୍ରମଣ୍ୟମ୍, ପ୍ରଭାତ ମୁଖାର୍ଜୀ, କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ପ୍ରଭୃତି ଏହା ଏକ ସତ୍ୟ ଘଟଣା ବୋଲି ମତ ଦିଅନ୍ତି । କାଞ୍ଚିର ରାଜା ଶାଳୁବ ନରସିଂହ ପୁରୁଷୋତ୍ତମଦେବଙ୍କ ସାମସମୟିକ ଥିଲେ । ଐତିହାସିକ ତଥ୍ୟ ଅନୁଯାୟୀ ଦୁହିଁଙ୍କ ମଧରେ ଘୋର ଯୁଦ୍ଧ ହୋଇଥିଲା । ଅବଶ୍ୟ କାଞ୍ଚି ରାଜାଙ୍କ ରାଜଧାନୀ କାଞ୍ଚି ନୁହେଁ, ଚନ୍ଦ୍ରଗିରି ଥିଲା । ମାତ୍ର କାଞ୍ଚି ତାଙ୍କ ରାଜ୍ୟର ଏକ ପ୍ରସିଦ୍ଧ ସ୍ଥାନ ଥିଲା । ସୁତରାଂ ଚନ୍ଦ୍ରଗିରି ପରିବର୍ତ୍ତେ କାଞ୍ଚି ପ୍ରବାଦରେ ସ୍ଥାନ ପାଇଅଛି ବୋଲି ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମତ ଦିଅନ୍ତି ।

## ପଦ୍ମାବତୀ ନା ରୂପାମ୍ବିକା ?

ପଦ୍ମାବତୀଙ୍କ ବିଷୟରେ ସେହିପରି ବହୁ ମତ ଅଛି । ବସ୍ତୁତଃ, ପୁରୁଷୋତ୍ତମଦେବଙ୍କର ପଦ୍ମାବତୀ ନାମକ କୌଣସି ରାଣୀ ନ ଥିଲେ । ତାଙ୍କ ରାଣୀଙ୍କ ନାମ ଥିଲା ରୂପାମ୍ବିକା । ଶାଳୁବ ନରସିଂହଦେବଙ୍କର ସେ କନ୍ୟା ହୋଇଥିବା ସମ୍ଭବ । ଶାଳୁବ ନରସିଂହଙ୍କର ମାତାଙ୍କ ନାମ ମାଳମ୍ବିକା ଓ ପତ୍ନୀଙ୍କ ନାମ ତପୋମ୍ବିକା ଥିବାର ଜଣାଯାଏ । ସୁତରାଂ କନ୍ୟା ରୂପାମ୍ବିକାଙ୍କ ନାମ ପରବର୍ତ୍ତୀକାଳରେ ପଦ୍ମାବତୀ ହୋଇଥିବା ସମ୍ଭବ । ଏହା ମଧ ବିବାହ ପରେ ହୋଇଥାଇପାରେ । ଓଡ଼ିଶାରେ କାହିଁକି ଭାରତର ଅନ୍ୟ ଅଞ୍ଚଳରେ ବିବାହ ପରେ କନ୍ୟାର ନାମ ପରିବର୍ତ୍ତନ କରିବା ବହୁକାଳୁ ପ୍ରଚଳିତ ଅଛି । ପ୍ରତାପରୁଦ୍ରଦେବଙ୍କ କନ୍ୟାଙ୍କର କୃଷ୍ଣଦେବ ରାୟଙ୍କ ସହିତ ବିବାହ ପରେ ତାଙ୍କର ନାମ ତୁକା ଦିଆଯାଇଥିଲା । ସୁତରାଂ ବିବାହ ପରେ ରୂପାମ୍ବିକା ନାମ ପରିବର୍ତ୍ତେ ପଦ୍ମାବତୀ ଦିଆଯିବା ଯୁକ୍ତିସଙ୍ଗତ ବୋଲି ଐତିହାସିକ ପାଣିଗ୍ରାହୀ ମତ ଦେଇଛନ୍ତି ।

ପୁଣି ପ୍ରଶ୍ନ ଉଠେ, ପୁରୁଷୋତ୍ତମଦେବଙ୍କ ପଦ୍ମାବତୀଙ୍କ ସହିତ ବିବାହ କେବେ ହୋଇଥିଲା ? ଅଧ୍ୟାପକ ପ୍ରଭାତ ମୁଖାର୍ଜୀଙ୍କ ମତରେ ଏହି ବିବାହ ୧୪୬୯ ଖ୍ରୀଷ୍ଟାବ୍ଦରେ ରାଜତ୍ୱର ପ୍ରଥମ ଭାଗରେ ହୋଇଥିଲା । ମାତ୍ର ସେହି ସମୟରେ ହମ୍ୱୀର ଦକ୍ଷିଣାଞ୍ଚଳରେ ଶାସନ କରୁଥିଲେ । ଉଭୟ ଭ୍ରାତାଙ୍କ ମଧ୍ୟରେ ସେତେବେଳକୁ ଗୃହ ଯୁଦ୍ଧ ଆରମ୍ଭ ହୋଇସାରିଥିଲା । ତେଣୁ ଏହି ସମୟରେ ପୁରୁଷୋତ୍ତମଦେବଙ୍କ କାଞ୍ଚି ଅଭିଯାନ କଳ୍ପନା କରାଯାଇ ନ ପାରେ । ୧୪୮୯ ଖ୍ରୀଷ୍ଟାବ୍ଦରେ ପୁରୁଷୋତ୍ତମଦେବ ଉଦୟଗିରି ଆକ୍ରମଣ କରିଥିଲେ । ସେହି ସମୟରେ ଶାଳୁବ ନରସିଂହଙ୍କ ସହିତ ତାଙ୍କର ଯୁଦ୍ଧ ହୋଇଥିଲା । ସେହି ସମୟରେ ତାଙ୍କର ରୂପାମ୍ବିକାଙ୍କ ସହ ବିବାହ ମଧ୍ୟ ସମ୍ଭବ ନୁହେଁ । କାରଣ ତାଙ୍କର ପୁତ୍ର ପ୍ରତାପରୁଦ୍ର ସେତେବେଳକୁ ତିରିଶ ବର୍ଷର ଯୁବକ ଥିଲେ । ସୁତରାଂ ପୁରୁଷୋତ୍ତମଦେବ ରୂପାମ୍ବିକା ବା ପଦ୍ମାବତୀଙ୍କ ସହ ବିବାହ ୧୪୬୯ ଖ୍ରୀଷ୍ଟାବ୍ଦ ପୂର୍ବରୁ ହୋଇଥିବା ଅନୁମାନ କରାଯାଏ । ସେହି ସମୟରେ କପିଳେନ୍ଦ୍ରଦେବ ଦାକ୍ଷିଣାତ୍ୟ ଅଭିଯାନରେ ଯାଇଥିଲେ । ସମ୍ଭବତଃ, ହମ୍ୱୀରଦେବ ଦକ୍ଷିଣରେ ଥିବା ସମୟରେ ନରସିଂହଙ୍କର ସମର୍ଥନ ପାଇଥିଲେ । ଫଳରେ କପିଳେନ୍ଦ୍ରଦେବ ହମ୍ୱୀରଙ୍କ ବିଦ୍ରୋହ ଦମନପାଇଁ କାଞ୍ଚି ଯାଇଥିଲେ ଓ ଶାଳୁବ ନରସିଂହଙ୍କୁ ପରାସ୍ତ କରିଥିଲେ । ତାଙ୍କ କନ୍ୟାକୁ ପ୍ରିୟ ପୁତ୍ର ପୁରୁଷୋତ୍ତମଦେବଙ୍କ ହସ୍ତେ ଦେବାକୁ ବାଧ କରିଥିଲେ ।

## ବିଜୟସ୍ତମ୍ଭ ନିର୍ମାଣ

କର୍ଣ୍ଣାଟ ଜୟ କଲା ପରେ ପୁରୁଷୋତ୍ତମଦେବ ତୁଙ୍ଗଭଦ୍ରା ନଦୀ କୂଳରେ ଏକ ବିଜୟସ୍ତମ୍ଭ ନିର୍ମାଣ କରିଥିବାର ଜଣାଯାଏ ।

## ଜଗନ୍ନାଥଙ୍କଠାରେ ଭକ୍ତି

ପୁରୁଷୋତ୍ତମଦେବ ଶ୍ରୀଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ତାଙ୍କରି ଅନୁଗ୍ରହରୁ ସେ ସିଂହାସନ ପ୍ରାପ୍ତି ହୋଇଥିଲେ । ତାଙ୍କରି କୃପାରୁ ମଧ୍ୟ ସେ ରାଜ୍ୟ ପରେ ରାଜ୍ୟ ଜୟ କରିଥିଲେ । ତେଣୁ ତାଙ୍କ ପ୍ରତି ଅନୁରକ୍ତ ରହିବା ସ୍ୱାଭାବିକ । ଶ୍ରୀମନ୍ଦିରରେ ଥିବା ଏକ ଅଭିଲେଖରୁ ଜଣାଯାଏ ଯେ, ସେ ରାଜତ୍ୱର ଦ୍ୱିତୀୟ ଅଙ୍କରେ ଅର୍ଥାତ୍ ପ୍ରଥମ ବର୍ଷରେ ଜଗନ୍ନାଥଙ୍କ ସେବାପାଇଁ ରତ୍ନପଲଙ୍କ, ରତ୍ନଚାମର ଓ ରତ୍ନ ସିଂହାସନ ପ୍ରଭୃତି ଦେଇଥିଲେ । ସେ ବ୍ରାହ୍ମଣ୍ୟଧର୍ମର ଉତ୍ଥାନ ନିମନ୍ତେ ବହୁ ପଦକ୍ଷେପ ନେଇଥିଲେ । ବ୍ରାହ୍ମଣମାନଙ୍କୁ ରାଜକୀୟ ବ୍ୟାପାରରେ ଲଗାଇ ଧର୍ମକ୍ଷେତ୍ରରେ ବ୍ୟାଘାତ ସୃଷ୍ଟି ନ କରିବାକୁ ସେ ସାମନ୍ତ ରାଜାମାନଙ୍କୁ ଆଦେଶ ଦେଇଥିଲେ । ତାଙ୍କ ସମୟରେ ବହୁ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରାଯାଇଥିଲା । ତାଙ୍କରି ଆଦର୍ଶରେ ଅନୁପ୍ରାଣିତ ହୋଇ ରାଣୀମାନେ ମଧ୍ୟ ବହୁ କୂପ, ପୁଷ୍କରିଣୀ

ଓ ପାନ୍ଥଶାଳାମାନ ନିର୍ମାଣ କରିଥିଲେ । ଶାସନ କାର୍ଯ୍ୟ ମୁଖ୍ୟତଃ ଧର୍ମଶାସ୍ତ୍ର ଅନୁଯାୟୀ ସମ୍ପାଦିତ ହେଉଥିଲା ।

## ସାହିତ୍ୟ ଅନୁରାଗ

ଉଦୟଗିରି ଜୟ କଲା ପରେ ପୁରୁଷୋତ୍ତମ ଦେବ ଆଉ ସାମରିକ ଅଭିଯାନରେ ବାହାରି ନ ଥିଲେ । ରାଜତ୍ୱର ଶେଷ ଭାଗ ଶାନ୍ତିପୂର୍ଣ୍ଣ ଥିଲା । ସେ ଏହି ସମୟରେ ସାହିତ୍ୟ ସେବାରେ ମନ ଦେଲେ । ସେ ମଧ୍ୟ ଜଣେ ବିଦ୍ୟାନୁରାଗୀ ଓ ପଣ୍ଡିତ ଥିଲେ । ସଂସ୍କୃତ ସାହିତ୍ୟରେ ତାଙ୍କର ଅଗାଧ ଜ୍ଞାନ ଥିଲା । ସେ ନିଜେ 'ତ୍ରିକାଣ୍ଡ କୋଷମ୍' ନାମକ ସଂସ୍କୃତ ଅଭିଧାନ ରଚନା କରିଥିଲେ । 'ଅଭିନବ ଗୀତଗୋବିନ୍ଦ' ନାମକ ଗୋଟିଏ ସଂସ୍କୃତ ଗୀତିକାବ୍ୟ ତାଙ୍କ ସମୟରେ ରଚିତ ହୋଇଥିଲା । ଜଗନ୍ନାଥଙ୍କ ମାହାତ୍ମ୍ୟ ନେଇ ରଚିତ 'ନୀଳାଦ୍ରି ମହୋଦୟ' ମଧ୍ୟ ଏହି ସମୟରେ ପ୍ରଣୀତ ହୋଇଥିଲା । 'ଶାରଦା ଶର ଦର୍ଶନ ପଦ୍ଧତି' ନାମକ ଏକ ଗ୍ରନ୍ଥ ମଧ୍ୟ ସେ ଲେଖାଇଥିଲେ । ତାଙ୍କ ଦରବାରରେ ବିଶିଷ୍ଟ ପଣ୍ଡିତମାନେ ଥିଲେ । ସେମାନଙ୍କ ମଧ୍ୟରେ ବିଶ୍ୱନାଥ ମହାପାତ୍ର ଥିଲେ ଅଗ୍ରଗଣ୍ୟ । ସେ 'ସାହିତ୍ୟ ଦର୍ପଣ' ରଚନା କରିଥିଲେ । ଏହା ଏକ ଅମୂଲ୍ୟ ଗ୍ରନ୍ଥ ରୂପେ ବିବେଚିତ ହୁଏ । ଦିବାକର ମିଶ୍ର ନାମକ ଆଉ ଜଣେ ପଣ୍ଡିତ ଭାରତାମୃତ ନାମକ ମହାକାବ୍ୟ ରଚନା କରିଥିଲେ । ଶ୍ରୀଜଗନ୍ନାଥଙ୍କ ପୂଜା ସମ୍ପର୍କୀୟ ବିଧିବିଧାନ ଗୋଟିଏ ଗ୍ରନ୍ଥରେ ପ୍ରକାଶିତ ହୋଇଥିଲା । ତାଙ୍କ ରାଜତ୍ୱରେ ପଞ୍ଚସଖାମାନଙ୍କର ଆବିର୍ଭାବ ହୋଇଥିଲା । ସେମାନଙ୍କଦ୍ୱାରା ଓଡ଼ିଆ ସାହିତ୍ୟର ବିକାଶ ହୋଇଥିଲା ।

ଗଙ୍ଗାଠାରୁ କାବେରୀ ପର୍ଯ୍ୟନ୍ତ ପୁରୁଷୋତ୍ତମ ଦେବ ବିଶାଳ ସାମ୍ରାଜ୍ୟର ଅଧୀଶ୍ୱର ଥିଲେ । ସେ ତେଣୁ 'ବୀରଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର' ଉପାଧିରେ ଭୂଷିତ ହୋଇଥିଲେ ।

ପ୍ରାୟ ଏକତିରିଶ ବର୍ଷ ରାଜତ୍ୱ କଲା ପରେ ଚିତ୍ରୋତ୍ପଳା ନଦୀ କୂଳରେ ତାଙ୍କର ଦେହାନ୍ତ ହୋଇଥିଲା ।

ଜନ୍ମରୁ ଜଗନ୍ନାଥ ମହାପ୍ରଭୁଙ୍କ କୃପାର ଅଧିକାରୀ ହୋଇ ରାଜା ପୁରୁଷୋତ୍ତମଦେବ ଓଡ଼ିଶାର ରାଜନୀତିକ ତଥା ଧର୍ମଜଗତ୍‌ରେ ଏକ ମହୀୟାନ୍ ସ୍ଥାନ ଅଧିକାର କରିଛନ୍ତି । ସତ୍ୟ, କିମ୍ବଦନ୍ତୀ କିମ୍ବା ଆଖ୍ୟାୟିକା ଯାହାହେଉନା କାହିଁକି – କାଞ୍ଚି ରାଜଜେମା ପଦ୍ମାବତୀଙ୍କ ସହିତ ତାଙ୍କର ନାଟକୀୟ ବିବାହ କିମ୍ବଦନ୍ତୀ ଓଡ଼ିଶାର ଘରେ ଘରେ ଏବେବି ପ୍ରଚଳିତ ଅଛି । ସାକ୍ଷୀ ଗୋପୀନାଥ, ବଟଗଣେଶଙ୍କ ମନ୍ଦିର ବା ମୂର୍ତ୍ତି ସନ୍ଦର୍ଶନ ହିଁ ସେହି ବିଶ୍ୱାସକୁ ଯେ ଆହୁରି ଦୃଢ଼ୀଭୂତ କରେ, ଏହା କହିବା ବାହୁଲ୍ୟ ମାତ୍ର ।

## ଶେଷ ସ୍ୱାଧୀନ ରାଜା
# ଦ୍ୱିତୀୟ ମୁକୁନ୍ଦଦେବ

ବୀରଭୋଗ୍ୟା ଉତ୍କଳ ଜନନୀ ଯୁଗେ ଯୁଗେ ବୀରମାନଙ୍କୁ ନିଜ ଅଙ୍କରେ ସ୍ଥାନ ଦେଇ ଧନ୍ୟ ହୋଇଛି । ଦ୍ୱିତୀୟ ମୁକୁନ୍ଦଦେବ ସେହିପରି ଏକ ଉଜ୍ଜ୍ୱଳମୟ ବ୍ୟକ୍ତିତ୍ୱର ଅଧିକାରୀ । ଉତ୍କଳର ଅଧିବାସୀ ନ ହେଲେ ମଧ୍ୟ ବୀରତ୍ୱ, ନିଷ୍ଠା, ଏକାଗ୍ରତା ଓ ସାହସିକତାପାଇଁ ସେ ଉତ୍କଳ ଇତିହାସ ପୃଷ୍ଠାରେ ଏକ ଗୌରବୋଜ୍ଜ୍ୱଳ ସ୍ଥାନ ଅଧିକାର କରିଛନ୍ତି ।

### ପୂର୍ବପୁରୁଷ

ମୁକୁନ୍ଦଦେବଙ୍କ ପୂର୍ବପୁରୁଷମାନେ ଓଡ଼ିଶାର ଅଧିବାସୀ ନ ଥିଲେ । ତାଙ୍କ ପିତା ସର୍ବରାଜ ମହାପାତ୍ର ଓ ମାତା ସର୍ବାଦେବୀ ସୀମାଞ୍ଚଳ ନିବାସୀ ଥିଲେ । ତାଙ୍କର ପିତାମହ ଗଙ୍ଗାଧର ମହାପାତ୍ର କୁମାର ୟେରମା ନାମରେ ପରିଚିତ ଥିଲେ । ମୁକୁନ୍ଦଦେବ ମଧ୍ୟ ତେଲେଙ୍ଗା ମୁକୁନ୍ଦଦେବ ନାମରେ ପରିଚିତ ।

କଥିତଅଛି ଯେ ମୁକୁନ୍ଦ ହରିଚନ୍ଦନ ଓଡ଼ିଶା ଆସି ରାଜା ପ୍ରତାପରୁଦ୍ରଦେବଙ୍କୁ ଭେଟି ସେନାବାହିନୀରେ ଯୋଗଦେବାକୁ ନିବେଦନ କରିଥିଲେ ଏବଂ ସଙ୍ଗେ ସଙ୍ଗେ ତାଙ୍କୁ ନିଯୁକ୍ତି ମଧ୍ୟ ମିଳିଥିଲା । ସେ ପ୍ରତାପରୁଦ୍ରଦେବଙ୍କ ସେନାବାହିନୀରେ ଜଣେ ସୈନିକଭାବେ କର୍ମମୟ ଜୀବନ ଆରମ୍ଭ କଲେ । ଦାକ୍ଷିଣାତ୍ୟ ଯୁଦ୍ଧରେ ସେ ଅଂଶ ଗ୍ରହଣ କରି ତାଙ୍କର ସାହସ ଓ ବୀରତ୍ୱର ପରିଚୟ ଦେଲେ । ତାଙ୍କର ଦକ୍ଷତା ଓ ବିଚକ୍ଷଣତାରେ ପ୍ରତାପରୁଦ୍ରଦେବ ମୁଗ୍ଧ ହୋଇ ସେନାପତିଭାବେ ତାଙ୍କୁ ନିଯୁକ୍ତି ଦେଲେ । ପ୍ରତାପରୁଦ୍ରଦେବଙ୍କ ପରେ ତାଙ୍କ ପୁଅ କାଳୁଆଦେବ ବର୍ଷେ ପାଞ୍ଚ ମାସ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସେ ମନ୍ତ୍ରୀ ଗୋବିନ୍ଦ ବିଦ୍ୟାଧରଙ୍କଦ୍ୱାରା ନିହତ ହେଲେ । କାଳୁଆଦେବଙ୍କ ପରେ କଖାରୁଆଦେବ ରାଜା ହେଲେ । ସେ ମଧ୍ୟ ଗୋବିନ୍ଦ ବିଦ୍ୟାଧରଙ୍କଦ୍ୱାରା ନିହତ ହେଲେ । ଏହାପରେ ଗୋବିନ୍ଦ ବିଦ୍ୟାଧର ଓଡ଼ିଶା ସିଂହାସନ ଅଧିକାର କଲେ ।

ଗୋବିନ୍ଦ ବିଦ୍ୟାଧରଙ୍କ ସମୟରେ ମୁକୁନ୍ଦ ହରିଚନ୍ଦନ ପ୍ରଶାସକଭାବେ ନିଯୁକ୍ତ ହେଲେ । ତାଙ୍କୁ ମଧ୍ୟ ବାରବାଟୀ ଦୁର୍ଗର ପ୍ରତିରକ୍ଷା ଭାର ଦିଆଗଲା ।

ଗୋବିନ୍ଦ ବିଦ୍ୟାଧର ପ୍ରାୟ ବାର ବର୍ଷ ରାଜତ୍ୱ କରିଥିଲେ । ତାଙ୍କ ରାଜତ୍ୱର ଆରମ୍ଭରେ ଗୋଲକୁଣ୍ଡାର ସୁଲତାନ କୁଲିକୁତବ ଶାହ ରାଜମହେନ୍ଦ୍ରୀ ଆକ୍ରମଣ କଲେ । ଗୋବିନ୍ଦ ବିଦ୍ୟାଧର ସେଠାକୁ ଯାଇ ଦୀର୍ଘ ଚଉଦ ମାସ କାଳ ଯୁଦ୍ଧ କରିଥିଲେ । ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ରଘୁଭଞ୍ଜ ଛୋଟରାୟ ଓ ବାଲ୍ମୀକି ଶ୍ରୀଚନ୍ଦନ ବିଦ୍ରୋହ ଘୋଷଣା କଲେ । ସେମାନେ ଜଗନ୍ନାଥ ମନ୍ଦିର ବଡ଼ପଣ୍ଡାଙ୍କୁ ହତ୍ୟା କଲେ ଓ ବାରବାଟୀ ଦୁର୍ଗର ଦାୟିତ୍ୱରେ ଥିବା ମୁକୁନ୍ଦ ହରିଚନ୍ଦନଙ୍କୁ ପରାସ୍ତ କଲେ । ଏ ଖବର ପାଇ ଗୋବିନ୍ଦ ବିଦ୍ୟାଧର ଦକ୍ଷିଣାଞ୍ଚଳର ପ୍ରତିରକ୍ଷା ଦାୟିତ୍ୱ ଜନାର୍ଦ୍ଦନ ବିଦ୍ୟାଧରଙ୍କ ହସ୍ତେ ନ୍ୟସ୍ତ କରି ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କଲେ । ସେ ରଘୁଭଞ୍ଜଙ୍କ ବିଦ୍ରୋହ ଦମନ କଲେ ; ମାତ୍ର ଗୋଲକୁଣ୍ଡାର ସୁଲତାନଙ୍କ ସହିତ ସନ୍ଧି କରିବାକୁ ବାଧ ହେଲେ । ଗୋଦାବରୀ ଓ କୃଷ୍ଣା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ ଓଡ଼ିଆମାନେ ହରାଇଥିଲେ । ଏହିଠାରୁ ଗୋଦାବରୀ ଓଡ଼ିଶାର ଦକ୍ଷିଣ ସୀମାର ଅନ୍ତର୍ଭୁକ୍ତ ହୋଇ ରହିଲା ।

ଗୋବିନ୍ଦ ବିଦ୍ୟାଧରଙ୍କ ପରେ ତାଙ୍କ ପୁତ୍ର ଚକ୍ରପ୍ରତାପ ଓଡ଼ିଶାର ରାଜା ହେଲେ । ସେ ଜନାର୍ଦ୍ଦନ ବିଦ୍ୟାଧରଙ୍କୁ ପ୍ରଧାନମନ୍ତ୍ରୀଭାବେ ନିଯୁକ୍ତ କଲେ । ତାଙ୍କୁ ମଧ ଦକ୍ଷିଣ ସୀମାନ୍ତର ପ୍ରତିରକ୍ଷା ଭାର ଦିଆଗଲା । ଚକ୍ରପ୍ରତାପ ଜଣେ ଅତ୍ୟାଚାରୀ ରାଜା ଥିଲେ । ସମସ୍ତେ ତାଙ୍କୁ ଘୃଣା କରୁଥିଲେ । ୧୫୫୬ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିରରେ ତାଙ୍କର ଅକାଳ ମୃତ୍ୟୁ ହେଲା । କଥିତ ଅଛି ଯେ ତାଙ୍କ ପୁତ୍ର ନରସିଂହ ଜେନା ତାଙ୍କୁ ବିଷ ଦେଇ ହତ୍ୟା କରିଥିଲେ ।

ଚକ୍ରପ୍ରତାପଙ୍କ ପରେ ନରସିଂହ ଜେନା ସିଂହାସନରେ ବସିଲେ । କିନ୍ତୁ ସାମନ୍ତମାନେ ତାଙ୍କ ବିରୋଧରେ ଷଡ଼୍ୟନ୍ତ୍ର ଆରମ୍ଭ କଲେ । ତେଣୁ ନରସିଂହ ଜେନା ଜନାର୍ଦ୍ଦନ ବିଦ୍ୟାଧରଙ୍କୁ ରାଜଧାନୀକୁ ପ୍ରତ୍ୟାବର୍ତ୍ତନ କରିବାକୁ ଆଦେଶ ଦେଲେ । ଜନାର୍ଦ୍ଦନ ବିଦ୍ୟାଧର ଫେରିଆସିବା ପୂର୍ବରୁ ମୁକୁନ୍ଦ ହରିଚନ୍ଦନ ବିଦ୍ରୋହ ଘୋଷଣା କରିଥିଲେ । ସେ ନାରୀ ବେଶରେ ରାଜପ୍ରାସାଦ ମଧ୍ୟକୁ ଯାଇ ରାଜା ନରସିଂହ ଜେନାଙ୍କୁ ହତ୍ୟା କଲେ । ଏହାପରେ ମୁକୁନ୍ଦ ହରିଚନ୍ଦନ ନରସିଂହ ଜେନାଙ୍କ ସାନଭାଇ ରଘୁରାମ ଛୋଟରାୟଙ୍କୁ ସିଂହାସନରେ ବସାଇ ରାଜ୍ୟ ଶାସନ କରିବାକୁ ଲାଗିଲେ । ଏଥି ମଧ୍ୟରେ ଦନେଇ ବିଦ୍ୟାଧର ଦାକ୍ଷିଣାତ୍ୟରୁ ଆସି ପୁରୀ ନିକଟବର୍ତ୍ତୀ ମଙ୍ଗଳଯୋଡ଼ିଠାରେ ଶିବିର ସ୍ଥାପନ କରି ରହିଥିଲେ । ମୁକୁନ୍ଦଦେବ ତାଙ୍କୁ ଆକ୍ରମଣ କରି ବନ୍ଦୀ କଲେ । ବନ୍ଦିଶାଳାରେ ତାଙ୍କର ମୃତ୍ୟୁ ହେଲା । ତାଙ୍କର ଆଉ ଜଣେ ପ୍ରତିଦ୍ୱନ୍ଦ୍ୱୀ ଥିଲେ ରଘୁଭଞ୍ଜ ଛୋଟରାୟ । ସେ ପୂର୍ବରୁ ଗୋବିନ୍ଦ ବିଦ୍ୟାଧରଙ୍କଦ୍ୱାରା ପରାସ୍ତ ହୋଇ

ବଙ୍ଗଦେଶରେ ଆଶ୍ରୟ ନେଇଥିଲେ । ସେ ସିଂହାସନ ଆଶାରେ ମୁକୁନ୍ଦଦେବଙ୍କୁ ଆକ୍ରମଣ କଲେ । ମାତ୍ର ଶେଷରେ ପରାସ୍ତ ହେଲେ । ମୁକୁନ୍ଦଦେବ ତାଙ୍କୁ ପରାସ୍ତ କରି ହତ୍ୟା କଲେ । ଶେଷରେ ନାମକୁ ମାତ୍ର ରାଜା ରଘୁରାମ ଛୋଟରାୟଙ୍କୁ ହତ୍ୟାକରି ୧୫୫୯ ଖ୍ରୀଷ୍ଟାବ୍ଦରେ ମୁକୁନ୍ଦଦେବ ସିଂହାସନରେ ବସିଲେ ।

ମୁକୁନ୍ଦଦେବଙ୍କ ସମୟରେ ରାଜଧାନୀ କଟକ ଥିଲା । ସେ ବାରବାଟୀ ଦୁର୍ଗରେ ରହୁଥିବାର ଜଣାଯାଏ । ମାତ୍ର ତାହା ସେତେ ସୁଦୃଢ଼ ଓ ନିରାପଦ ନ ଥିବାରୁ ସେ ଦୁର୍ଗ ମଧ୍ୟରେ ଏକ ନବତଳ ପ୍ରାସାଦ ନିର୍ମାଣ କଲେ । ଏହାର ଗଠନ ପ୍ରଣାଳୀ ଅତି ଚମତ୍କାର ଥିଲା ବୋଲି ପ୍ରମାଣ ମିଳେ । ଆବୁଲ ଫାଜଲ ଷୋଡ଼ଶ ଶତାବ୍ଦୀରେ ଓଡ଼ିଶା ଆସିଥିଲେ ଓ ଦୁର୍ଗକୁ ସ୍ୱଚକ୍ଷୁରେ ଦେଖିଥିଲେ । ତାଙ୍କ ବର୍ଣ୍ଣନା ଅନୁଯାୟୀ ବାରବାଟୀ ଦୁର୍ଗ ମଧ୍ୟରେ ରାଜା ମୁକୁନ୍ଦଦେବଙ୍କଦ୍ୱାରା ନିର୍ମିତ ଗୋଟିଏ ନବତଳ ପ୍ରାସାଦ ଥିଲା । ଏହାର ପ୍ରଥମ ମହଲାରେ ଘୋଡ଼ା, ସିଂହ, ଓଟ, ହରିଣ, ଗୋରୁ, ମଇଁଷି ପ୍ରଭୃତି ପଶୁମାନେ ରହୁଥିଲେ । ଦ୍ୱିତୀୟ ମହଲାରେ ଅସ୍ତ୍ର ଶସ୍ତ୍ର, ଗୋଳାଗୁଳି, ବାରୁଦ ପ୍ରଭୃତି ଯୁଦ୍ଧୋପକରଣ ଦ୍ରବ୍ୟ ରହୁଥିଲା । ଦୁର୍ଗର ପ୍ରହରୀ, ଦୁର୍ଗରକ୍ଷକ, ରାଜାଙ୍କ ପାର୍ଶ୍ୱଚର ଓ ଆଜ୍ଞାକାରୀମାନେ ତୃତୀୟ ମହଲାରେ ରହୁଥିଲେ । ଶିଳ୍ପୀ ଓ ଚିତ୍ରକାରମାନେ ଚତୁର୍ଥ ମହଲାରେ ରହୁଥିଲେ । ପଞ୍ଚମ ମହଲାଟି ଅନ୍ତଃପୁରର ରୋଷାଇଘର ରୂପେ ବ୍ୟବହୃତ ହେଉଥିଲା । ଷଷ୍ଠ ମହଲାର ଗୋଟିଏ ଅଂଶ ରାଜାଙ୍କର ବାହାର ବୈଠକଖାନାରୂପେ ବ୍ୟବହୃତ ହେଉଥିଲା । ଅତିଥି-ଅଭ୍ୟାଗତମାନେ ସେ ଅଂଶରେ ମଧ୍ୟ ରହୁଥିଲେ । ଅପରଅଂଶରେ ଦରବାର ହେଉଥିଲା । ସପ୍ତମ ମହଲାରେ ରାଜାଙ୍କ ଗୁପ୍ତ ମନ୍ତ୍ରଣାଗାର ଥିଲା । ଯାବତୀୟ ପାରିବାରିକ ଓ ରାଜ୍ୟ ସଂକ୍ରାନ୍ତୀୟ ଗୋପନୀୟ କାର୍ଯ୍ୟ ଏଠାରେ ସମ୍ପାଦିତ ହେଉଥିଲା । ଅନ୍ତଃପୁର ରାଣୀ ଓ ଅନ୍ୟାନ୍ୟ ନାରୀମାନେ ଅଷ୍ଟମ ମହଲାରେ ରହୁଥିଲେ । ନବମ ମହଲାରେ ମହାରାଜାଙ୍କ ଶୟନାଗାର ଥିଲା । କେବଳ ପୂର୍ବରୁ ପରିଚିତ ଥିବା ବ୍ୟକ୍ତିମାନେ ଏହି ନବତଳ ପ୍ରାସାଦକୁ ଯାତାୟାତ କରିପାରୁଥିଲେ । କଥିତଅଛି ଯେ ନବତଳ ପ୍ରାସାଦକୁ ଲାଗି ଆଉ ଏକ ପ୍ରକାଣ୍ଡ ନଅର ଥିଲା । ଏହା ଅତି ଉଚ୍ଚ ଥିଲା । ରକ୍ଷୀମାନେ ସେଠି ରହି ଚାରି ଦିଗକୁ ଲକ୍ଷ୍ୟ କରୁଥିଲେ ଓ ଶତ୍ରୁ ଆସିବାମାତ୍ରେ ଖବର ଭିତରକୁ ଦେଉଥିଲେ । ଫଳରେ ଅତର୍କିତ ଆକ୍ରମଣ ସମ୍ଭବପର ହେଉ ନ ଥିଲା ।

ମୁକୁନ୍ଦଦେବଙ୍କ ରାଜତ୍ୱବେଳେ ବଙ୍ଗର ସୁଲତାନ୍ ଥିଲେ ଗିୟାସୁଦ୍ଦିନ ଜଲାଲ ସାହୀ । ସେ ସବୁବେଳେ ଓଡ଼ିଶା ଆକ୍ରମଣପାଇଁ ସୁଯୋଗ

ଖୋଲୁଥିଲେ । ସେ ଓଡ଼ିଶାରେ ରାଜାମାନଙ୍କ ମଧ୍ୟରେ ଅନ୍ତର୍ବିବାଦର ସୁଯୋଗ ନେଇ ଓଡ଼ିଶା ଆକ୍ରମଣ କଲେ ଓ ଯାଜପୁର ପର୍ଯ୍ୟନ୍ତ ଓଡ଼ିଶା ଅଧିକାର କରିନେଲେ । ମୟୂରଭଞ୍ଜ ଓ କେନ୍ଦୁଝରର ରାଜାମାନେ ତାଙ୍କୁ ଏଥିରେ ସାହାଯ୍ୟ କରିଥିଲେ । ଗିୟାସୁଦ୍ଦିନ ମଧ୍ୟ ଏକ ମୁଦ୍ରା ପ୍ରଚଳନ କରିଥିବାର ଜଣାଯାଏ । ମୁକୁନ୍ଦଦେବ ଏହି ଆକ୍ରମଣର ପ୍ରତିଶୋଧ ନେବାକୁ ବାହାରିଲେ । ସେ ଗିୟାସୁଦ୍ଦିନଙ୍କୁ ଆକ୍ରମଣ କରି ପରାସ୍ତ କଲେ ଓ ତାଙ୍କର ଅନୁଧାବନ କରି ଗଙ୍ଗାନଦୀ ପର୍ଯ୍ୟନ୍ତ ଅଗ୍ରସର ହେଲେ । ସେ ଗଙ୍ଗାନଦୀ କୂଳରେ ବିଜୟର ସ୍ମାରକୀସ୍ୱରୂପ ଏକ ଘାଟ ନିର୍ମାଣ କରିଥିଲେ । ତାହା ତ୍ରିବେଣୀ ଘାଟ ନାମରେ ଖ୍ୟାତ । କଥିତଅଛି ଯେ ମୁକୁନ୍ଦଦେବଙ୍କ ମାତା ପ୍ରତ୍ୟହ ଗଙ୍ଗାରେ ସ୍ନାନପାଇଁ ଗଙ୍ଗାକୁ କଟକ ଆଣିବାପାଇଁ ଇଚ୍ଛା କଲେ । ହୁଗୁଲିଠାରୁ ଗୋଟିଏ ଧାର ଆଣି ମହାନଦୀ ସହ ମିଶାଇବାପାଇଁ ସେ ପୁତ୍ରକୁ କହିଥିଲେ । ସେହିଦିନଠାରୁ ତ୍ରିବେଣୀ ଘାଟ ପ୍ରୟାଗ ଭଳି ଓଡ଼ିଆମାନଙ୍କର ଏକ ତୀର୍ଥସ୍ଥାନରୂପେ ବିବେଚିତ ହୋଇଥାଏ ।

ମୁକୁନ୍ଦଦେବଙ୍କ ସମୟରେ ଦିଲ୍ଲୀର ମୋଗଲ ଓ ବଙ୍ଗଳାର ଆଫ୍‌ଗାନ୍‌ମାନଙ୍କ ମଧ୍ୟରେ ସଂଘର୍ଷ ଲାଗିରହିଥିଲା । ମୁକୁନ୍ଦଦେବ ମଧ୍ୟ ସେ କଳହରେ ଜଡ଼ିତ ହୋଇପଡ଼ିଲେ । ଦିଲ୍ଲୀର ବାଦଶାହ ଥିଲେ ହୁମାୟୁନ । ଆଫ୍‌ଗାନ ନେତା ଶେରଶାହ ହୁମାୟୁନଙ୍କୁ ବହିଷ୍କାର କରି ଦିଲ୍ଲୀ ଅଧିକାର କଲେ । ମାତ୍ର ୧୫୫୫ ଖ୍ରୀଷ୍ଟାବ୍ଦରେ ହୁମାୟୁନ ପୁଣି ଶେରଶାହଙ୍କୁ ପରାସ୍ତ କରି ଦିଲ୍ଲୀ ସିଂହାସନ ଅଧିକାର କରିନେଲେ । ହୁମାୟନୁଙ୍କ ପରେ ମୋଗଲ ସମ୍ରାଟ୍ ହେଲେ ଆକବର । ସେ ମୋଗଲ ସାମ୍ରାଜ୍ୟକୁ ସୁଦୃଢ଼ କରିବାକୁ ଉଦ୍ୟମ କଲେ । ତାଙ୍କର ଆଫ୍‌ଗାନ ପ୍ରତିଦ୍ୱନ୍ଦ୍ୱୀ ଥିଲେ ଇବ୍ରାହିମ୍ ଖାଁ ସୁର । ସେ ଦିଲ୍ଲୀରୁ ତଡ଼ାଖାଇ ବଙ୍ଗଆଡ଼କୁ ପଳାଇଆସିଲେ । ସେତେବେଳେ ବଙ୍ଗର ସୁଲତାନ ଥିଲେ ଆଫ୍‌ଗାନ ନେତା ସୁଲେମାନ କର୍‌ରାଣି । ସେ କିନ୍ତୁ ଇବ୍ରାହିମ୍‌ଙ୍କୁ ଆଶ୍ରୟ ଦେଲେ ନାହିଁ । ବରଂ ତାଙ୍କୁ ବନ୍ଦୀ କରିବାପାଇଁ ଚେଷ୍ଟା କଲେ । ଇବ୍ରାହିମ୍‌ସୁର ତେଣୁ ଓଡ଼ିଶାକୁ ପଳାଇ ଆସିଲେ । ମୁକୁନ୍ଦଦେବ ତାଙ୍କୁ ଆଶ୍ରୟ ଦେଲେ । ତାଙ୍କର ଭରଣ ପୋଷଣର ବ୍ୟବସ୍ଥା ମଧ୍ୟ କରାଇଲେ । ସୁଲେମାନ କର୍‌ରାଣି ଏଥିରେ କ୍ରୋଧାନ୍ୱିତ ହୋଇପଡ଼ିବା ସ୍ୱାଭାବିକ । ସେ ଓଡ଼ିଶା ଆକ୍ରମଣ କରିବାକୁ ସୁଯୋଗ ଅପେକ୍ଷାରେ ରହିଲେ ।

ଦିଲ୍ଲୀର ମୋଗଲ ସମ୍ରାଟ୍ ଆକବର ମଧ୍ୟ ବଙ୍ଗ ଆକ୍ରମଣ କରିବାକୁ ଚାହୁଁଥିଲେ । ସେ ସେଥିପାଇଁ ଓଡ଼ିଶାର ରାଜା ମୁକୁନ୍ଦଦେବଙ୍କ ସାହାଯ୍ୟ ଲୋଡ଼ିଲେ । ସେ ଏଥିପାଇଁ ତାଙ୍କର ସ୍ୱତନ୍ତ୍ର ଦୂତ ହାସାନ ଖାଁ ଖାଜାଞ୍ଚି ଓ ଦିଲ୍ଲୀ ଦରବାରରୁ

ଜଣେ ଓଡ଼ିଆ ସଙ୍ଗୀତଜ୍ଞ ଭଟ ମହାପାତ୍ରଙ୍କୁ ଏକ ରାଜିନାମାପାଇଁ ମୁକୁନ୍ଦଦେବଙ୍କ ପାଖକୁ ପଠାଇଲେ । ଦିଲ୍ଲୀ ବାଦଶାହ ତାଙ୍କ ସଙ୍ଗେ ବନ୍ଧୁତା କରିବାକୁ ଚାହୁଁଛନ୍ତି ଜାଣି ମୁକୁନ୍ଦଦେବ ଆନନ୍ଦିତ ହେବା ସ୍ୱାଭାବିକ । ଦୁହିଁଙ୍କ ମଧ୍ୟରେ ଏକ ମେଣ୍ଟ ହେଲା । ବିପଦ ବେଳେ ଉଭୟେ ପରସ୍ପରକୁ ସାହାଯ୍ୟ ଦେବେ ବୋଲି ରାଜିନାମା ହେଲା । ମୁକୁନ୍ଦଦେବ ମଧ୍ୟ ତାଙ୍କର ସ୍ୱତନ୍ତ୍ର ଦୂତ ପରମାନନ୍ଦ ରାୟଙ୍କୁ ଦିଲ୍ଲୀ ଦରବାରକୁ ପଠାଇଲେ । ଉଭୟେ ଉଭୟଙ୍କୁ ବହୁମୂଲ୍ୟ ଉପହାର ପ୍ରଦାନ କଲେ । ଆକବର ମଧ୍ୟ ଦୂତଙ୍କ ସମ୍ମାନାର୍ଥେ ଏକ ଭୋଜିର ଆୟୋଜନ କରିଥିଲେ । ଯଥା ସମୟରେ ସୁଲେମାନ କର୍‌ରାଣି ଏ ଖବର ପାଇଲେ । ଆକବର ଓ ମୁକୁନ୍ଦଦେବଙ୍କ ମିଳିତ ସେନାର ପ୍ରତିରୋଧ କରିବା ସମ୍ଭବପର ନୁହେଁ ବୋଲି ଉପଲବ୍ଧି କଲେ । ସେ ତେଣୁ ସମ୍ରାଟ୍ ଆକବରଙ୍କ ଶରଣାପନ୍ନ ହେଲେ । ସେ ମଧ୍ୟ ହୀରାନୀଳାର ବହୁମୂଲ୍ୟ ଉପହାର ସହ ଏକ ଦୂତ ମୋଗଲ ଦରବାରକୁ ପଠାଇଲେ । ଫଳରେ ଆକବର ନିଶ୍ଚିନ୍ତ ହୋଇ ଚିତ୍ତୋର ଆକ୍ରମଣପାଇଁ ଲାଗିପଡ଼ିଲେ । ସୁଲେମାନଙ୍କର ମୁକୁନ୍ଦଦେବଙ୍କ ଉପରେ କ୍ରୋଧ ଆହୁରି ବଢ଼ିଗଲା । ସେ ଏହାର ପ୍ରତିଶୋଧ ନେବାକୁ ପ୍ରତିଜ୍ଞାବଦ୍ଧ ହେଲେ ।

୧୫୬୭ ଖ୍ରୀଷ୍ଟାବ୍ଦରେ ଆକବର ଚିତ୍ତୋର ଅବରୋଧ କଲେ । ସୁଲେମାନଙ୍କୁ ସୁବର୍ଣ୍ଣ ସୁଯୋଗ ମିଳିଲା । ମୁକୁନ୍ଦଦେବ ଏଇ ପରିସ୍ଥିତିରେ କିଛି ସାହାଯ୍ୟ ପାଇପାରିବେ ନାହିଁ ବୋଲି ସେ ହୃଦୟଙ୍ଗମ କଲେ । ସେ ଆଉ କାଳ ବିଳମ୍ବ ନ କରି ଅତର୍କିତ ଭାବେ ଓଡ଼ିଶା ଆକ୍ରମଣ କଲେ । ସେ ନିଜର ସୈନ୍ୟ ଦଳକୁ ଦୁଇଟି ଭାଗରେ ବିଭକ୍ତ କଲେ । ଗୋଟିଏ ଦଳ ଦକ୍ଷିଣମୁହାଁ ହୋଇ ସୁଲେମାନଙ୍କ ନେତୃତ୍ୱରେ ଓଡ଼ିଶା ଅଭିମୁଖେ ଯାତ୍ରା କଲେ । ଆଉ ଗୋଟିଏ ଦଳର ନେତୃତ୍ୱ ନିଜ ପୁତ୍ର ବାୟାଜିଦ୍ ନେଲେ ।

ମୁକୁନ୍ଦଦେବ ପୂର୍ବ ଚୁକ୍ତି ଅନୁଯାୟୀ ମୋଗଲ ଦରବାରକୁ ସେନା ସାହାଯ୍ୟପାଇଁ ଦୂତ ପଠାଇଲେ । ଆକବର ପତ୍ର ପାଇଲେ ମଧ୍ୟ କିଛି ନିଷ୍ପତ୍ତି ନେଲେ ନାହିଁ । ଓଡ଼ିଶାର ଦୂତ ନିର୍ଭର ପ୍ରତିଶ୍ରୁତିପାଇଁ କିଛି ଦିନ ଅପେକ୍ଷା କଲେ । ମାତ୍ର ଉତ୍ତର ନ ପାଇବାରୁ ବିରକ୍ତ ହୋଇ ଫେରିଆସିଲେ । ମୁକୁନ୍ଦଦେବ ବିହାରର ମୋଗଲ ପ୍ରଶାସକ ମୁନିମ୍ ଖାଁଙ୍କଠୁଁ ସାହାଯ୍ୟପାଇଁ ଅନୁରୋଧ କରି ମଧ୍ୟ ନିରାଶ ହେଲେ । ଶେଷରେ ମୁକୁନ୍ଦଦେବ ନିଜ ଶକ୍ତି ଉପରେ ନିର୍ଭର କରିବାପାଇଁ ସ୍ଥିର କଲେ । ସେ ପାଟଣା ରାଜାଙ୍କ ସାହାଯ୍ୟ ଲୋଡ଼ିଲେ । ପାଟଣାର ରାଜା ଥିଲେ ସମ୍ପର୍କୀୟ ହୃଦୟ ନାରାୟଣଦେବ । ସେ ଯୁଦ୍ଧବିଦ୍ୟାରେ ଧୁରନ୍ଧର ଥିଲେ । ସେ ବହୁ ସୈନ୍ୟ ସହ କଟକ ବାରବାଟୀ ଦୁର୍ଗରେ ଆସି ପହଞ୍ଚିଲେ । ବାରବାଟୀ ଦୁର୍ଗ

ହଜାର ହଜାର ସୈନ୍ୟରେ ପୂରି ଉଠିଲା । ଭେରୀ, ତୂରୀ, ଟମକ, କାହାଳୀ ପ୍ରଭୃତି ବୀରବାଦ୍ୟରେ ବାରବାଟୀ ଦୁର୍ଗ କମ୍ପିଉଠିଲା । ହୃଦୟ ନାରାୟଣଙ୍କୁ ସେନାପତି ଭାବେ ବଛାଗଲା । ମୁକୁନ୍ଦଦେବ ମଧ୍ୟ ନିଜେ ଯୁଦ୍ଧକ୍ଷେତ୍ରକୁ ବାହାରିଲେ । ବାଟରେ ବହୁ ବୀର ଉତ୍କଳୀୟ ସେନାବାହିନୀରେ ଯୋଗ ଦେଲେ । ସେତେବେଳେ ଉତ୍କଳ ଓ ବଙ୍ଗ ଉଭୟ ଦେଶର ସୀମା ଗଙ୍ଗା ନଦୀ ପର୍ଯ୍ୟନ୍ତ ଥିଲା । ମୁକୁନ୍ଦଦେବ କୋଟସୀମା ଦୁର୍ଗରେ ସୈନ୍ୟ ଛାଉଣୀ ପକାଇଲେ । ବାୟାଜିଦ୍ ମଧ୍ୟ ନିଜର ସେନାବାହିନୀ ଧରି ଗଙ୍ଗା ନଦୀର ଅପରପାର୍ଶ୍ୱରେ ରହିଥାନ୍ତି । ଉଭୟେ ଉଭୟଙ୍କୁ ଆକ୍ରମଣ କରିବାପାଇଁ ଉପଯୁକ୍ତ ସମୟକୁ ଅପେକ୍ଷା କରି ରହିଲେ ।

ଏହି ସଙ୍କଟମୟ ସମୟରେ ସାରଙ୍ଗଗଡ଼ର ସାମନ୍ତରାଜା ରାମଚନ୍ଦ୍ର ଭଞ୍ଜ ବିଦ୍ରୋହ ଘୋଷଣା କଲେ । ଏ ସମ୍ବାଦ ପାଇ ମୁକୁନ୍ଦଦେବ ପ୍ରଥମେ ଗୃହଶତ୍ରୁର ମୁକାବିଲା କରିବାପାଇଁ ସ୍ଥିର କଲେ । ସେ ସୁଲେମାନ କର୍‌ରାଣିଙ୍କ ସହ ସନ୍ଧି ସ୍ଥାପନ କରି ରାମଚନ୍ଦ୍ର ଭଞ୍ଜଙ୍କ ବିରୋଧରେ ଯୁଦ୍ଧଯାତ୍ରା କଲେ । ଏଥି ମଧ୍ୟରେ ରାମଚନ୍ଦ୍ର ଭଞ୍ଜ ନିଜକୁ ଓଡ଼ିଶାର ଗଜପତି ରାଜା ରୂପେ ଘୋଷଣା କରିସାରିଥାନ୍ତି । ଯାଜପୁର ନିକଟସ୍ଥ ଗୋହିରାଟିକ୍ରିଠାରେ ମୁକୁନ୍ଦଦେବ ଓ ରାମଚନ୍ଦ୍ର ଭଞ୍ଜଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯୁଦ୍ଧରେ ମୁକୁନ୍ଦଦେବ ନିହତ ହେଲେ । ରାମଚନ୍ଦ୍ର ଭଞ୍ଜ ମଧ୍ୟ ବାୟାଜିଦ୍‌ଙ୍କଦ୍ୱାରା ପରାସ୍ତ ହୋଇ ମୃତ୍ୟୁବରଣ କଲେ । ଏହା ପରେ ମୁସଲମାନ ଆକ୍ରମଣର ପ୍ରତିରୋଧ କରିବାପାଇଁ କେହି ନ ଥିଲେ । ଫଳରେ ଉତ୍କଳ ବଙ୍ଗ ସୁଲତାନଙ୍କ ଅଧୀନସ୍ଥ ହେଲା ।

## କଳାପାହାଡ଼ ଆକ୍ରମଣ

କଳାପାହାଡ଼ଙ୍କ ନାମ ଥିଲା କାଳିଦାସ ଗଜଦାନି । ସେ ଥିଲେ ନୈଷ୍ଠିକ ବ୍ରାହ୍ମଣ । ମାତ୍ର ଜଣେ ମୁସଲମାନ ଯୁବତୀର ପ୍ରେମରେ ପଡ଼ି ତାଙ୍କୁ ବିବାହ କରିଥିଲେ । ଫଳରେ ସମାଜଚ୍ୟୁତ ହେଲେ । ପରେ ସେ ହିନ୍ଦୁ ସମାଜର ଅନ୍ତର୍ଭୁକ୍ତ ହେବାପାଇଁ ବହୁ ଚେଷ୍ଟା କରିଥିଲେ । ହିନ୍ଦୁ ଜଗତ୍‌ର ଜଗନ୍ନାଥ ମନ୍ଦିରର ଅଧ୍ୟକ୍ଷ ହିସାବରେ ଓଡ଼ିଶାରାଜାଙ୍କର ମାତ୍ରାଧିକ ପ୍ରତିପତ୍ତି ଅଛି ବୋଲି ବିଚାରି ମୁକୁନ୍ଦଦେବଙ୍କ ସାହାଯ୍ୟ ଲୋଡ଼ିଲେ । ମାତ୍ର ରାଜା ତାହା ପ୍ରତ୍ୟାଖ୍ୟାନ କରିଦେଲେ । ସେ ସବୁଆଡ଼େ ଚେଷ୍ଟା କରି ବିଫଳ ମନୋରଥ ହୋଇ ହିନ୍ଦୁମାନଙ୍କ ଉପରେ ପ୍ରତିହିଂସା ନେବାପାଇଁ ଦୃଢ଼ପରିକର ହେଲେ । ପରେ ସେ ବଙ୍ଗ ସୁଲତାନଙ୍କର ସେନାପତି ଭାବେ ନିଯୁକ୍ତ ହେଲେ । ବାୟାଜିଦ୍ ତାଙ୍କୁ ଓଡ଼ିଶା ଆକ୍ରମଣପାଇଁ ପଠାଇଲେ ।

କଳାପାହାଡ଼ ମୟୂରଭଞ୍ଜ ଓ କେନ୍ଦୁଝରର ନିବିଡ଼ ଅରଣ୍ୟ ଦେଇ ଯାଜପୁରରେ ପହଞ୍ଚିଲେ । କଥିତଅଛି ଯେ ଶିଖି ମନାଇ ନାମକ ଦୁଇ ଜଣ ଦେଶଦ୍ରୋହୀ ତାଙ୍କୁ ଜଙ୍ଗଲ ମଧ୍ୟରେ ରାସ୍ତା ଦେଖାଇ ଦେଇଥିଲେ । ସେ ଯାଜପୁର ଅଧିକାର କରି କଟକର ବାରବାଟୀ ଦୁର୍ଗରେ ପହଞ୍ଚିଲେ । କଳାପାହାଡ଼ଙ୍କୁ ବାଧାଦେବାକୁ କେହି ନ ଥିଲେ । କଥିତଅଛି ଯେ ମୁକୁନ୍ଦଦେବଙ୍କ ରାଣୀ ସୁନାଥାଳିରେ ହୀରା ଆଦି ବହୁମୂଲ୍ୟ ଧନରତ୍ନ କଳାପାହାଡ଼ଙ୍କ ପାଖକୁ ଉପଢୌକନ ସ୍ୱରୂପ ପଠାଇଲେ । ଏବେବି ପ୍ରବାଦ ଅଛି –

ଅଇଲା କଳାପାହାଡ଼ ଭାଙ୍ଗିଲା ଲୁହାର ବାଡ଼
ପିଇଲା ମହାନଦୀ ପାଣି ସୁବର୍ଣ୍ଣ ଥାଳିରେ ହୀରା ପରଷିଲେ
ମୁକୁନ୍ଦଦେବଙ୍କ ରାଣୀ ।

କଳାପାହାଡ଼ ବାରବାଟୀ ଦୁର୍ଗ ଧ୍ୱଂସ କରିଥିବାର ପ୍ରମାଣ ନାହିଁ । ମାତ୍ର ସେ ଗଡ଼ ମଧ୍ୟରେ ପଶି ଉତ୍ପାତ ଆରମ୍ଭ କରିଦେଇଥିବା ସମ୍ଭବ । ରାଣୀ ସମସ୍ତ ନାରୀଙ୍କୁ ଘେନି ଦୁର୍ଗ ମଧ୍ୟରେ ଥିବା ପୋଖରୀକୁ ଡେଇଁ ଆତ୍ମହତ୍ୟା କଲେ ବୋଲି ଲୋକମାନେ ବିଶ୍ୱାସ କରନ୍ତି ।

କଳାପାହାଡ଼ ସେତିକିରେ ସନ୍ତୁଷ୍ଟ ହୋଇ ନ ଥିଲେ । 'ମାଦଳାପାଞ୍ଜି'ରୁ ଜଣାଯାଏ ଯେ କଳାପାହାଡ଼ଙ୍କ ବାରବାଟୀ ଦୁର୍ଗ ଆକ୍ରମଣ ଖବର ପୁରୀର ପଣ୍ଡାମାନେ ପାଇଲେ । ସେମାନେ ଭୟରେ ଜଗନ୍ନାଥଙ୍କ ମୂର୍ତ୍ତିକୁ ପୁରୀ ମନ୍ଦିରରୁ ନେଇଯାଇ ଚିଲିକା ମଧ୍ୟରେ ଥିବା ଏକ ଦ୍ୱୀପରେ ଗୁପ୍ତରେ ରଖିଲେ । କିନ୍ତୁ କଳାପାହାଡ଼ ଏହାର ସୁରାକ ପାଇ ଚିଲିକା ପର୍ଯ୍ୟନ୍ତ ଯାଇ ସେଠାରୁ ବିଗ୍ରହମାନଙ୍କୁ ହସ୍ତୀପୃଷ୍ଠରେ ବସାଇ ବଙ୍ଗଳା ପର୍ଯ୍ୟନ୍ତ ନେଇଯାଇଥିଲେ ଓ ଗଙ୍ଗା ନଦୀକୂଳରେ ବିଗ୍ରହମାନଙ୍କୁ ପୋଡ଼ି ଦେଇଥିଲେ । ବିଶର ମହାନ୍ତି ନାମକ ବୈଷ୍ଣବଭକ୍ତ କଳାପାହାଡ଼ଙ୍କ ପଛେ ପଛେ ବଙ୍ଗ ପର୍ଯ୍ୟନ୍ତ ଯାଇଥିଲେ ଓ ବ୍ରହ୍ମଙ୍କୁ ଉଦ୍ଧାର କରିଥିଲେ । ସେଗୁଡ଼ିକ ଏକ ମୃଦଙ୍ଗ ମଧ୍ୟରେ ରଖି ଓଡ଼ିଶାକୁ ନେଇଆସିଲେ ।

ପୁଣି 'ମାଦଳାପାଞ୍ଜି'ରୁ ଜଣାଯାଏ ଯେ କଳାପାହାଡ଼ ଜଗନ୍ନାଥ ମନ୍ଦିର ଆମଳକ ଶିଳା ପର୍ଯ୍ୟନ୍ତ ଭାଙ୍ଗି ଦେଇଥିଲେ । ପୁଣି ମନ୍ଦିରରେ ଥିବା ମୂର୍ତ୍ତିଗୁଡ଼ିକ ଖଣ୍ଡବିଖଣ୍ଡିତ କରିଥିଲେ । ମାତ୍ର ପୁରୀ ଜଗନ୍ନାଥ ମନ୍ଦିର ଧ୍ୱଂସ ହୋଇଥିବାର କୌଣସି ପ୍ରମାଣ ମିଳେ ନାହିଁ । ଚୋଡ଼ଗଙ୍ଗଦେବଙ୍କ ନିର୍ମିତ ଜଗନ୍ନାଥ ମନ୍ଦିରର ପୁନଃନିର୍ମାଣ ବିଷୟରେ ଇତିହାସ କୌଣସି ସାକ୍ଷ୍ୟ ଦିଏ ନାହିଁ । ବର୍ତ୍ତମାନ ସୁଦ୍ଧା ସେ ମନ୍ଦିର ଅକ୍ଷତ ଅବସ୍ଥାରେ ବିଦ୍ୟମାନ । ତେବେ ଦେଉଳ ବାହାରେ ଥିବା କେତେକ ମୂର୍ତ୍ତି ଯେ ନଷ୍ଟ ହୋଇଯାଇଥିଲା, ଏହା ନିଃସନ୍ଦେହ ।

କଳାପାହାଡ଼ ମଧ୍ୟ ଓଡ଼ିଶାର ଆଉ କେତେକ ହିନ୍ଦୁ ମନ୍ଦିର ଭାଙ୍ଗିଥିବାର ପ୍ରବାଦ ଅଛି । ବସ୍ତୁତଃ ସମସ୍ତ ମନ୍ଦିର ଭାଙ୍ଗିଯିବାର ଏକମାତ୍ର କାରଣ କଳାପାହାଡ଼ ବୋଲି ବହୁ ଉତ୍କଳବାସୀ ବିଶ୍ୱାସ କରନ୍ତି । କଳାପାହାଡ଼ କେତେକ ମନ୍ଦିର ହୁଏତ ଭାଙ୍ଗି ଥାଇପାରନ୍ତି; ମାତ୍ର ଓଡ଼ିଶାର ସବୁ ପ୍ରାନ୍ତକୁ ଯାଇ ମନ୍ଦିର ଭାଙ୍ଗିଥିବା ଆଦୌ ତଥ୍ୟ ସମ୍ବଳିତ ନୁହେଁ । ବହୁ ଐତିହାସିକ ମଧ୍ୟ କଳାପାହାଡ଼ ଜଣେ ଐତିହାସିକ ଚରିତ୍ର ଥିବାର ସନ୍ଦେହ କରନ୍ତି । ପ୍ରଭାତ ମୁଖାର୍ଜୀଙ୍କ ମତରେ କଳାପାହାଡ଼ ଜଣେ ବିଧର୍ମୀ ହିନ୍ଦୁ ନ ଥିଲେ । ସେ ଆଫଗାନ ଥିବାର ମୁସଲମାନ ଐତିହାସିକଙ୍କ ତଥ୍ୟରୁ ଜଣାପଡ଼େ ।

## ବାରବାଟୀ ଦୁର୍ଗ

କେଶରୀବଂଶୀୟ ରାଜାମାନଙ୍କର ଯଥାକ୍ରମେ ପୁରୀ ଓ ଭୁବନେଶ୍ୱର ରାଜଧାନୀ ଥିଲା । ସେମାନଙ୍କ ରାଜତ୍ୱର ପ୍ରଥମ ଭାଗରେ ଯୁଦ୍ଧ-ବିଗ୍ରହାଦିର ଆଶଙ୍କା ନ ଥିଲା । ସେମାନେ ଯଜ୍ଞାଦି କାର୍ଯ୍ୟ, ମନ୍ଦିର ନିର୍ମାଣ ପ୍ରଭୃତିରେ ନିଜକୁ ନିୟୋଜିତ ରଖିଥିଲେ । କିନ୍ତୁ ସେମାନଙ୍କ ରାଜତ୍ୱର ଶେଷଭାଗରେ ବହିଃଶତ୍ରୁମାନେ ଘନ ଘନ ଓଡ଼ିଶା ଆକ୍ରମଣ କଲେ । ଗଙ୍ଗବଂଶୀୟ ନରପତିମାନେ ଦକ୍ଷିଣପଟରୁ ଓଡ଼ିଶା ଆକ୍ରମଣ କଲେ । ସୁତରାଂ ଏହି ବଂଶର ନୃପକେଶରୀ କଟକ ନଗର ସ୍ଥାପନ କଲେ ଓ ବିଡ଼ାନାସୀଠାରେ ଗୋଟିଏ ସୁଦୃଢ଼ ଦୁର୍ଗ ନିର୍ମାଣ କଲେ । ଏହା ପରେ ବାରବାଟୀ ଦୁର୍ଗ ନିର୍ମିତ ହେଲା । 'ଆଇନ-ଇ-ଆକବରୀ' ଗ୍ରନ୍ଥରୁ ଜଣାଯାଏ ଯେ ଗଙ୍ଗବଂଶୀୟ ନରପତି ଅନଙ୍ଗଭୀମଦେବ ରାଜତ୍ୱର ପ୍ରଥମଭାଗରେ ଚୌଦ୍ୱାର ଦୁର୍ଗରେ ବାସ କରୁଥିଲେ । କ୍ରମେ ଉତ୍ତର ଦିଗରୁ ଆଫଗାନମାନଙ୍କର ଆକ୍ରମଣ ଆଶଙ୍କା ଦେଖାଦେଲା । ସେ ତେଣୁ ସୁରକ୍ଷିତ ସ୍ଥାନରେ ଦୁର୍ଗ ନିର୍ମାଣର ଆବଶ୍ୟକତା ଅନୁଭବ କଲେ । ସେ ବହୁ ଦେଶ ଜୟ କରି ନିଜ ରାଜ୍ୟ ଅନ୍ତର୍ଭୁକ୍ତ କରିଥିଲେ । ତେଣୁ ସେ ବିଶାଳ ସାମ୍ରାଜ୍ୟର ସୁରକ୍ଷାପାଇଁ ବାରବାଟୀଠାରେ ଗୋଟିଏ ବଡ଼ ଦୁର୍ଗ ନିର୍ମାଣ କଲେ ।

'ମାଦଳାପାଞ୍ଜି'ରେ ମଧ୍ୟ ଲିଖିତ ଅଛି ଯେ ସେ ପ୍ରଥମେ ଚୌଦ୍ୱାର କଟକରେ ରହୁଥିଲେ । ମାତ୍ର ପରେ ବାରବାଟୀ ଗ୍ରାମରେ ଏକ ନଅର ତୋଳାଇଲେ । ଏହାର ନାମ 'ବାରବାଟୀ କଟକ' ଦେଲେ ଓ ଏ କଟକରେ ରହିଲେ ।

ଐତିହାସିକ ହଣ୍ଟର ମଧ୍ୟ ବାରବାଟୀ ଦୁର୍ଗ ଅନଙ୍ଗଭୀମଙ୍କଦ୍ୱାରା ନିର୍ମିତ ହୋଇଥିବା କଥା ଉଲ୍ଲେଖ କରିଛନ୍ତି ।



ବାରବାଟୀ ଦୁର୍ଗ

ହଣ୍ଟରଙ୍କ ମତରେ ଅନଙ୍ଗଭୀମଦେବ ୧୧୭୫ରୁ ୧୨୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ଷ୍ଟର୍ଲିଙ୍ଗଙ୍କ ମତରେ ସେ ୧୧୭୪ରୁ ୧୨୦୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ରାଜା ଥିଲେ । ଅନଙ୍ଗଭୀମଦେବ ୧୧୮୩ରୁ ୧୨୧୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ୨୭ ବର୍ଷ ରାଜତ୍ୱ କରିଥିବାର ଜଗବନ୍ଧୁ ସିଂହ ମତ ଦିଅନ୍ତି । ସୁତରାଂ ରାଜତ୍ୱର ୧୨ ବର୍ଷ (ଅର୍ଥାତ୍ ୧୫ଅଙ୍କ)ରେ ଅର୍ଥାତ୍ ପ୍ରାୟ ୧୨୦୦ ଖ୍ରୀଷ୍ଟାବ୍ଦରେ ବାରବାଟୀ ଦୁର୍ଗ ନିର୍ମିତ ହୋଇଥିଲା ବୋଲି ପଣ୍ଡିତ କୃପାସିନ୍ଧୁ ମିଶ୍ର ମତ ବ୍ୟକ୍ତ କରିଛନ୍ତି ।

ଅନଙ୍ଗଭୀମଙ୍କ ସମୟରୁ ଓଡ଼ିଶାର ନରପତିମାନେ ବାରବାଟୀ ଦୁର୍ଗରେ ରହି ଓଡ଼ିଶାକୁ ବହିଃଶତ୍ରୁ ଆକ୍ରମଣରୁ ରକ୍ଷା କରିଥିଲେ । ରାଜା ନରସିଂହଦେବ ବାରବାଟୀ ଦୁର୍ଗରୁ ସେନାବାହିନୀ ନେଇ ଦାକ୍ଷିଣାତ୍ୟ ଯାତ୍ରା କରିଥିଲେ ଓ ବାହମନୀ ସୈନ୍ୟଙ୍କୁ ପରାସ୍ତ କରିଥିଲେ । ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବଙ୍କ ସମୟରେ ବାରବାଟୀ ଓଡ଼ିଶାର ରାଜଧାନୀ ଥିଲା । ୧୪୭୦ ଖ୍ରୀଷ୍ଟାବ୍ଦରେ ମଙ୍ଗଳ ରାୟଙ୍କ ସାହାଯ୍ୟ ନିମନ୍ତେ ହମ୍ୱୀରଙ୍କ ବିରୋଧରେ ଏଇ ଦୁର୍ଗରୁ ସୈନ୍ୟ ପଠାଇଥିଲେ । ପୁରୁଷୋତ୍ତମଦେବ ମଧ୍ୟ ବାରବାଟୀ ଦୁର୍ଗରୁ ସେନାବାହିନୀ ସହ କାଞ୍ଚି ଅଭିଯାନରେ ବାହାରିଥିଲେ । ସେ କାଞ୍ଚି ଜୟ କରି ରାଜଜେମା ପଦ୍ମାବତୀଙ୍କ ସହ ଗଣେଶ ଓ ସାକ୍ଷୀଗୋପାଳ ମୂର୍ତ୍ତି ଆଣି ବାରବାଟୀ ଦୁର୍ଗରେ ରଖିଥିଲେ ।

ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସିଥିଲାବେଳେ ଏଠାରେ ସାକ୍ଷୀଗୋପାଳଙ୍କୁ ଦର୍ଶନ କରିଥିବାର ଜଣାଯାଏ । ପ୍ରତାପରୁଦ୍ରଦେବଙ୍କ ସମୟରେ ଶ୍ରୀଚୈତନ୍ୟ ପୁଣି ଓଡ଼ିଶା ଆସିଥିଲେ ଓ ପ୍ରତାପରୁଦ୍ରଦେବଙ୍କୁ ବାରବାଟୀରେ ଦେଖା କରିଥିଲେ । ପୁଣି ପ୍ରତାପରୁଦ୍ରଦେବ ଦାକ୍ଷିଣାତ୍ୟ ଯୁଦ୍ଧରେ ବ୍ୟାପୃତ ଥିଲାବେଳେ ବଙ୍ଗର ନବାବ ହୁସେନ ସାହଙ୍କର ବିଶ୍ୱସ୍ତ ସେନାପତି ଇସ୍‌ମାଇଲ କାଜୀ ନାମକ ଜଣେ ସେନାଧକ୍ଷ ଓଡ଼ିଶା ଆକ୍ରମଣ କରି ବାରବାଟୀ ଦୁର୍ଗ ଅଧିକାର କରିନେଲେ । ପ୍ରତାପରୁଦ୍ରଦେବ ଏ ଖବର ପାଇ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ ଓ ବାରବାଟୀ ଦୁର୍ଗରୁ ଇସ୍‌ମାଇଲ୍‌ଙ୍କୁ ବିତାଡ଼ିତ କଲେ । ମୁକୁନ୍ଦଦେବଙ୍କ ସମୟରେ ବାରବାଟୀ ଦୁର୍ଗର ବହୁ ଉନ୍ନତି ସାଧିତ ହୋଇଥିଲା । ସେ ଏତେ ଉନ୍ନତି ସାଧନ କରିଥିଲେ ଯେ ପରବର୍ତ୍ତୀ କାଳରେ ମୁସଲମାନମାନେ ତାକୁ ମୁକୁନ୍ଦଦେବଙ୍କ ରାଜଧାନୀ ରୂପେ ଅଭିହିତ କଲେ । ଇଂରେଜ ବଣିକମାନେ ବାରବାଟୀ ଦୁର୍ଗକୁ Malkandy Malconder ବା Court of Malkandy (କୋର୍ଟ ଅଫ୍ ମାଲକାଣ୍ଡି) ବୋଲି କହୁଥିଲେ । 'ମୁକୁନ୍ଦଦେବ' ଶବ୍ଦ ଇଂରେଜମାନଙ୍କ ଭାଷାରେ ମାଲକାଣ୍ଡି ହୋଇଥିଲା । ଏଥିରୁ ଜଣାଯାଏ ଯେ ମୁସଲମାନ ରାଜତ୍ୱର ବହୁ କାଳ ପର୍ଯ୍ୟନ୍ତ ଏହି ଦୁର୍ଗ ମୁକୁନ୍ଦଦେବଙ୍କ ନାମ ଅନୁସାରେ ପରିଚିତ ଥିଲା । ତା'ର କାରଣ ମୁକୁନ୍ଦଦେବ ଏହି ଦୁର୍ଗ ମଧ୍ୟରେ ଗୋଟିଏ ସୁରମ୍ୟ ଓ ସୁଶୋଭିତ ନବତଳ ପ୍ରାସାଦ ନିର୍ମାଣ କରି ତହିଁରେ ବାସ କରୁଥିଲେ । ଆକବରଙ୍କ ମନ୍ତ୍ରୀ ଆବୁଲଫାଜଲ ଷୋଡ଼ଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶା ଭ୍ରମଣରେ ଆସିଥିଲେ । ସେ ମୁକୁନ୍ଦଦେବଙ୍କ ନବତଳ ପ୍ରାସାଦ କଥା ତାଙ୍କ ସୁପ୍ରସିଦ୍ଧ ଗ୍ରନ୍ଥ 'ଆଇନ-ଇ-ଆକବରୀ'ରେ ବର୍ଣ୍ଣନା କରିଥିଲେ ।

ରାଜେନ୍ଦ୍ର ଲାଲ ମିତ୍ରଙ୍କ ଭଳି କେତେକ ଐତିହାସିକ ବାରବାଟୀ ଦୁର୍ଗ ବିଷୟରେ କେତେକ ପ୍ରଶ୍ନ ଉଠାଇଛନ୍ତି । ତାଙ୍କ ମତରେ ଏହା ନବତଳ ପ୍ରାସାଦ ନ ହୋଇ ସାଧାରଣ ଗୃହ ଥିଲା । ଏହି ପ୍ରାସାଦ ପୁଣି ନବତଳ ନ ହୋଇ ଶ୍ରେଣୀ ଶ୍ରେଣୀ ବିଶିଷ୍ଟ ଗୃହ ଥିଲା । ଗୋଟିଏ ଶ୍ରେଣୀ ଗୃହ, ତା'ପରେ ଗୋଟିଏ ପ୍ରାଙ୍ଗଣ, ତା'ପରେ ଶ୍ରେଣୀ – ଏହିଭଳି ନଅ ଗୋଟି ଶ୍ରେଣୀ ଗୃହ ଓ ସେମାନଙ୍କ ମଧ୍ୟରେ ଆଠୋଟି ପ୍ରାଙ୍ଗଣ ନିର୍ମିତ ହୋଇଥିଲା । ସେ ମହାଶୟ ମଧ୍ୟ ଆବୁଲ ଫାଜଲଙ୍କ ପ୍ରଣୀତ 'ଆଇନ୍-ଇ-ଆକବରୀ'ରେ ମୁକୁନ୍ଦଦେବ ଗୋଟାଏ ଆସିଆନା ନିର୍ମାଣ କରିଥିବାର ବର୍ଣ୍ଣିତ ଅଛି ବୋଲି ଦର୍ଶାଇଛନ୍ତି । 'ଆସିଆନା' ଗୋଟିଏ ପାରସିକ ଶବ୍ଦ । ଏହାର ଆକ୍ଷରିକ ଅର୍ଥ ଚଟ୍ଟୀଘର । ଏହି 'ଆସିଆନା'କୁ ଫ୍ରାନ୍‌ସି ଗ୍ଲାଡଉଇନ ନବତଳ ପ୍ରାସାଦ ବୋଲି ଭୁଲରେ ଅନୁବାଦ କରିଥିଲେ ଓ

ତାଙ୍କରି ଅନୁବାଦ ଉପରେ ନିର୍ଭର କରି ପରବର୍ତ୍ତୀ ଲେଖକମାନେ ଏହାକୁ ନବତଳ ପ୍ରାସାଦ ବୋଲି ଆଖ୍ୟା ଦେଇଥିବାର ଯୁକ୍ତି ସେ କରିଛନ୍ତି । ତାଙ୍କ ମତରେ ବାରବାଟୀ ଦୁର୍ଗ ମଧ୍ୟରେ ନବତଳ ପ୍ରାସାଦ ନ ଥିଲା । ଆସିଆନା ବା ଚଂଚୀଘର କେବଳ ସେଠାରେ ଏକ ଥିଲା । ମାତ୍ର ଏହା ଭ୍ରମାତ୍ମକ । ପ୍ରଥମରେ ମୁକୁନ୍ଦଦେବଙ୍କ ଭଳି ଏଡ଼େ ପରାକ୍ରମଶାଳୀ ରାଜା ସାମାନ୍ୟ ଚଛୀଘରଟିଏ ନିର୍ମାଣ କରି ରହିବାକୁ ଚାହିଁ ନ ଥିବେ । ସେ ଯେ ବାରବାଟୀ ଦୁର୍ଗ ମଧ୍ୟରେ ତାଙ୍କପାଇଁ ଉପଯୁକ୍ତ ରହିବା ବ୍ୟବସ୍ଥା କରିଥିବେ, ଏହା ନିଃସନ୍ଦେହ । ଦ୍ୱିତୀୟତଃ, ଆବୁଲ ଫାଜଲ ଆକବରଙ୍କ ମନ୍ତ୍ରୀ ଥିଲେ । ସେ ଓଡ଼ିଶାକୁ ପରିବ୍ରାଜକ ଭାବେ ଆସିଥିଲେ । ଏହା ଯଦି ଗୋଟିଏ ସାମାନ୍ୟ ଚଛୀଘର ହୋଇଥାନ୍ତା, ତେବେ ଆବୁଲ ଫାଜଲ ତାଙ୍କ ବର୍ଣ୍ଣନାରେ ଏହାକୁ ସ୍ଥାନ ଆଦୌ ଦେଇ ନ ଥାନ୍ତେ । ତାଙ୍କ ପ୍ରାସାଦ ନିଶ୍ଚୟ ପ୍ରକାଣ୍ଡ ଓ ସୁରମ୍ୟ ହୋଇଥିବାରୁ ଆବୁଲ ଫାଜଲଙ୍କ ଭଳି ଐତିହାସିକଙ୍କର ବିସ୍ମୟ ସୃଷ୍ଟି କରିଥିଲା । ସେହି କାରଣରୁ ସେ ତାଙ୍କ ଗ୍ରନ୍ଥରେ ଏହାର ସବିଶେଷ ବିବରଣୀ ଦେଇଥିଲେ । ତୃତୀୟରେ, ଭାରତର ମନ୍ଦିର ଶିଳ୍ପ ଇତିହାସରେ ଓଡ଼ିଆମାନଙ୍କ ସ୍ଥାନ ଅତି ଉଚ୍ଚରେ ଥିଲା । ଭାରତୀୟ ମନ୍ଦିର ଶିଳ୍ପର ଚରମ ଉନ୍ନତି ଓଡ଼ିଶାର କୋଣାର୍କରେ ପ୍ରଦର୍ଶିତ ହୋଇଅଛି । ଅର୍ଥ ପ୍ରତି ଦୃଷ୍ଟି ନ ଦେଇ ଓଡ଼ିଆ ରାଜାମାନେ ଅକ୍ଷୟ କୀର୍ତ୍ତି ରଖିବା ନିମନ୍ତେ ତତ୍ପର ଥିଲେ । ସେମାନେ ଯେତେଦୂର ସମ୍ଭବ ବୃହତ୍ ଓ ସୂକ୍ଷ୍ମ ଶିଳ୍ପ କାରୁକାର୍ଯ୍ୟରେ ଅଳଙ୍କୃତ କରାଇବାରେ ଲେଶମାତ୍ର ତ୍ରୁଟି କରୁ ନ ଥିଲେ । ପୁରୀ ମନ୍ଦିର, ଭୁବନେଶ୍ୱର ମନ୍ଦିର ସେମାନଙ୍କର ବିରାଟ ଅବଦାନ ଥିଲା । ପ୍ରଶ୍ନଉଠେ, ରାଜା ମୁକୁନ୍ଦଦେବଙ୍କ ପୂର୍ବପୁରୁଷମାନେ ଯେତେବେଳେ ଏଡ଼େ ବୃହତ୍ ଓ ଏତେ ସୁନ୍ଦର କାରୁକାର୍ଯ୍ୟ ବିଶିଷ୍ଟ ଅକ୍ଷୟ କୀର୍ତ୍ତି କରିଗଲେ, ସେ ନିଜେ ବାରବାଟୀ ଦୁର୍ଗ ମଧ୍ୟରେ ଗୋଟିଏ ପ୍ରକାଣ୍ଡ ଓ ସୁଶୋଭିତ ଅଟ୍ଟାଳିକା ନିର୍ମାଣ କରିବାକୁ ପଛାନ୍ତେ କାହିଁକି ? ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କ ମତରେ ଯେଉଁଥିରେ ଯଶ ନାହିଁ କି ବାସ କରିବାର ସୁଖ ସ୍ୱାଚ୍ଛନ୍ଦ୍ୟ ନାହିଁ, ସେଭଳି ଚଛୀଗୃହ ବାରବାଟୀ ଦୁର୍ଗ ମଧ୍ୟରେ ମୁକୁନ୍ଦଦେବ ନିର୍ମାଣ କରିବା ବିଶ୍ୱାସଯୋଗ୍ୟ ନୁହେଁ ।

ଫର୍ଗୁସନ ମଧ୍ୟ ଆବୁଲଫାଜଲଙ୍କ ଲେଖାକୁ ସମର୍ଥନ କରିଛନ୍ତି – ''ଆମ୍ଭେ ବିଶ୍ୱାସ କରୁ ଯେ ଆବୁଲଫାଜଲ ଆକବରଙ୍କ ସାମ୍ରାଜ୍ୟରେ ଭ୍ରମଣ କରୁ କରୁ ଓଡ଼ିଶାରେ ପ୍ରବେଶମାତ୍ରେ ଏହି ନବତଳ ପ୍ରାସାଦକୁ ଦେଖିଥିଲେ । ଏହା ମଧ୍ୟ ତାଙ୍କ ମନୋରାଜ୍ୟରେ ଏକ ଅଭିନବ ଭାବ ଜାଗ୍ରତ କଲା ଏବଂ ସେ ଏହି ପ୍ରାସାଦର ସବିଶେଷ ବିବରଣୀ ନିଜ ଗ୍ରନ୍ଥରେ ଦେଇଥିଲେ ।''

ଐତିହାସିକ ଷ୍ଟର୍ଲିଙ୍ଗ ମଧ୍ୟ ବହୁକାଳ ଓଡ଼ିଶାରେ ବାସ କରିଥିଲେ ଓ ବାରବାଟୀ ଦୁର୍ଗକୁ ତତ୍ତ୍ୱାନୁସନ୍ଧିତ୍ସୁ ଚକ୍ଷୁରେ ଦେଖିଥିଲେ । ସେ ମଧ୍ୟ ଲେଖିଛନ୍ତି – ‘‘ଆଇନ-ଇ-ଆକବରୀରେ ବର୍ଣ୍ଣିତ ରାଜା ମୁକୁନ୍ଦଦେବଙ୍କ ନବତଳ ପ୍ରାସାଦର କୌଣସି ଚିହ୍ନବର୍ଣ୍ଣ ବର୍ତ୍ତମାନ ଦୁର୍ଗର ପ୍ରାଚୀର ମଧ୍ୟରେ ଦେଖାଯାଏ ନାହିଁ । କିନ୍ତୁ ନାନା କାରୁକାର୍ଯ୍ୟ ଖଚିତ କାର୍ଣ୍ଣିସ ପ୍ରଭୃତିର ଯେଉଁ ଭଗ୍ନାବଶେଷ ସମୟ ସମୟରେ ଖୋଳା ହୋଇ ବାହାରୁଅଛି ଏବଂ ବହୁକାଳ ସ୍ଥାୟୀ ସୁନ୍ଦର କ୍ରୋମାଇଟ ପ୍ରସ୍ତର ନିର୍ମିତ ଆଲୋକ ଧାରଣ ନିମନ୍ତେ ନାନା ଶାଖାଯୁକ୍ତ ଯେଉଁ ପ୍ରକାଣ୍ଡ ସ୍ତମ୍ଭ ବିଦ୍ୟମାନ ଅଛି, ତହିଁରୁ ଅନୁମାନ କରାଯାଏ ଯେ ଖୁବ୍ ସମ୍ଭବତଃ ସେହି ସମସ୍ତ କୌଣସି ବୃହତ୍ ଓ ସୁରମ୍ୟ ଅଟ୍ଟାଳିକାର ଭଗ୍ନାବଶେଷ ମାତ୍ର ।’’

ମୁକୁନ୍ଦଦେବଙ୍କ ମୃତ୍ୟୁର ୬୦ବର୍ଷ ପରେ ଇଂରେଜ ବଣିକମାନେ ବାରବାଟୀକୁ ଆସିଥିଲେ ଓ ପ୍ରାସାଦକୁ ନୂତନ ଆକାରରେ ଦେଖିଥିଲେ ।

ବ୍ରୁଟନ୍ ମଧ୍ୟ ଏହା ଆକାରରେ ସୁବିଶାଳ ଓ ଗଠନରେ ସୁମହତ୍ ବୋଲି ଉଲ୍ଲେଖ କରିଛନ୍ତି ।

ଷ୍ଟର୍ଲିଙ୍ଗ ଦୁର୍ଗର ଭଗ୍ନାବଶେଷ ନିମ୍ନୋକ୍ତଭାବେ ବର୍ଣ୍ଣନା କରିଅଛନ୍ତି – ‘‘ବାରବାଟୀ ଦୁର୍ଗର ଦୁଇଟି ପ୍ରସ୍ତର ପ୍ରାଚୀର ଥିଲା । ଗୋଟିଏ ବାହାରେ ଅର୍ଥାତ୍ ବର୍ତ୍ତମାନ ପରିଖାର ଉପରେ ଓ ଅନ୍ୟଟି ଭିତରେ । ଭିତର ପ୍ରାଚୀରର ଦୈର୍ଘ୍ୟ ୨୧୪୧ ଫୁଟ ଓ ପ୍ରସ୍ଥ ୧୮୦୦ ଫୁଟ ଥିଲା । ଭିତର ପ୍ରାଚୀର କ୍ଷେତ୍ରଟି ଆୟତାକାର ଥିଲା । ପ୍ରାଚୀରର ପୂର୍ବଭାଗରେ ଗୋଟିଏ ପ୍ରକାଣ୍ଡ ଦ୍ୱାର ଦେଶ ଥିଲା । ଏହି ଦ୍ୱାର ଅହମ୍ମଦ ଶାହଙ୍କ ରାଜତ୍ୱକାଳରେ ୧୭୪୦ ଖ୍ରୀଷ୍ଟାବ୍ଦରେ ନିର୍ମିତ ହୋଇଥିଲା । ଏହି ଦ୍ୱାର ଦେଶର ଦୁଇ ପାଖରେ ଦୁଇଟି ବର୍ଗ କ୍ଷେତ୍ରାକାର ଅଟ୍ଟାଳିକା ଥିଲା । ବାହାର ପ୍ରାଚୀରର ଚାରି ପାଖରେ ଗୋଟିଏ ପୁରାତନ ପରିଖା ଅଛି । ଏହି ପରିଖାର ପ୍ରସ୍ଥ ୨୨୦ ଫୁଟ ଥିଲା । ମାତ୍ର ତାହା ବର୍ତ୍ତମାନ ୨୨୦ ଫୁଟ ନୁହେଁ । ଦୁର୍ଗର ମଧ୍ୟ ଭାଗରେ ଗୋଟିଏ ବଡ଼ ସ୍ତୁପ ଥିଲା । ସମ୍ଭବତଃ, ଏହା ଗୋଟିଏ ନବତଳ ପ୍ରାସାଦ ଥିଲା । ସେ ପ୍ରାସାଦର ଚିହ୍ନ ବର୍ଣ୍ଣ ଏବେ ନାହିଁ । ସ୍ତୁପ ଉପରେ ଗୋଟିଏ ପତାକା ସ୍ତମ୍ଭ ମଧ୍ୟ ଥିଲା ।’’

ଐତିହାସିକ ହଣ୍ଟର ମଧ୍ୟ ୧୮୬୭ ଖ୍ରୀଷ୍ଟାବ୍ଦରେ ଏହି ଦୁର୍ଗ ଦେଖିବାକୁ ପାଇଥିଲେ ।

ଅଧୁନା ଦୁର୍ଗ ମଧ୍ୟରେ ଯେଉଁ ପୁଷ୍କରିଣୀ ଅଛି ତାହା ରାଜମହିଳାମାନଙ୍କର ସ୍ନାନ ନିମନ୍ତେ ଉଦ୍ଦିଷ୍ଟ ଥିଲା । ଖୁବ୍ ସମ୍ଭବ, ବର୍ତ୍ତମାନର କଟକଚଣ୍ଡୀ ପ୍ରଥମେ

ଏହି ବାରବାଟୀ ଦୁର୍ଗ ମଧ୍ୟରେ ରହି ପୂଜା ପାଉଥିଲେ । ନବତଳ ପ୍ରାସାଦର ଦକ୍ଷିଣ ଦିଗରେ ଗୋଟିଏ ହିନ୍ଦୁ ମନ୍ଦିର ଥିବା 'ଆଇନ-ଇ-ଆକବରୀ'ରେ ମଧ୍ୟ ଉଲ୍ଲେଖ ଅଛି । ସମ୍ଭବତଃ, ଏହି ମନ୍ଦିରରେ କଟକଚଣ୍ଡୀଙ୍କୁ ପୂଜା କରାଯାଉଥିଲା । ମାତ୍ର ଦୁର୍ଗଟି ମୁସଲମାନମାନଙ୍କ ହାତରେ ପଡ଼ିବାରୁ କଟକଚଣ୍ଡୀଙ୍କୁ ସ୍ଥାନାନ୍ତରିତ କରାଗଲା । ପରେ ସାକ୍ଷୀଗୋପାଳଙ୍କୁ ଏଠାରେ ରଖାଯାଇଥିଲା ।

ପ୍ରଶ୍ନ ଉଠେ, ଯେଉଁ ବାରବାଟୀ ଦୁର୍ଗ ଏତେ ବିଶାଳ ଓ ଏଡ଼େ ସୁନ୍ଦର ଥିଲା, ତା'ର ପତନ କିପରି ହେଲା ? କଳାପାହାଡ଼ ଓଡ଼ିଶାର ବହୁ ଦେବଦେବୀ ମନ୍ଦିର ନଷ୍ଟ କରିଥିଲେ, ମାତ୍ର ମୁକୁନ୍ଦଦେବଙ୍କ ରାଣୀଙ୍କଠାରୁ ବହୁ ଉପଢୌକନ ପାଇ ବାରବାଟୀ ଦୁର୍ଗ ଉପରେ ଯେ ଆକ୍ରମଣ କରି ନ ଥିଲେ, ଏହା ନିଶ୍ଚିତ । ମୁସଲମାନମାନଙ୍କ ରାଜତ୍ୱ କାଳରେ ଏହି ଦୁର୍ଗର ବହୁ ଉନ୍ନତି ମଧ୍ୟ ହୋଇଥିଲା । ୧୭୫୦ ଖ୍ରୀଷ୍ଟାବ୍ଦରେ ଅହମ୍ମଦ ଶାହଙ୍କ ସମୟରେ ଦୁର୍ଗର ପୂର୍ବ ଦିଗର ଦ୍ୱାରଦେଶ, ତୋରଣ ପ୍ରଭୃତି ନିର୍ମିତ ହୋଇଥିଲା । ମରହଟ୍ଟାମାନେ ମଧ୍ୟ ଏହି ଦୁର୍ଗକୁ ଭାଙ୍ଗିଦେଇ ନ ଥିଲେ; ବରଂ ଏହାର ସଦ୍‌ବ୍ୟବହାର କରିଥିଲେ । ଉଇଲିୟମ ହଣ୍ଟର ମଧ୍ୟ ଦୁର୍ଗର ପତନ ବିଷୟରେ ନୀରବ ରହିଛନ୍ତି ।

ଇଂରେଜମାନେ କଟକରେ ପ୍ରବେଶ କରିବାମାତ୍ରେ ଏହି ଦୁର୍ଗରୁ ପ୍ରବଳ ପ୍ରତିରୋଧର ସମ୍ମୁଖୀନ ହେଲେ । ଦୁର୍ଗ ଆକ୍ରମଣକାରୀ ଇଂରେଜ ସୈନ୍ୟମାନଙ୍କ ମଧ୍ୟରୁ ଜଣେ ତାଙ୍କ ବନ୍ଧୁଙ୍କ ପାଖକୁ ଦେଇଥିବା ପତ୍ରରୁ ଜଣାଯାଏ ଯେ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗ ଅକ୍ଷୁଣ୍ଣ ଅବସ୍ଥାରେ ଥିଲା । ଇଂରେଜ ସୈନ୍ୟଜଣକ ଲେଖିଥିଲେ –

''ତୋପକୁ ଫାୟାର କରିବା ନିମନ୍ତେ ସୁସଜ୍ଜିତ କରି ରଖି ଦୁର୍ଗ ଆଡ଼କୁ ଅଗ୍ରସର ହେବାକୁ ଇଂରେଜମାନଙ୍କୁ ୯ଦିନ ଲାଗିଲା । ମହାନଦୀର ଦୁଇଟି ଶାଖା ଭିତରେ ଦୃଢ଼ଭାବେ ଅବସ୍ଥିତ ଥିବାରୁ ଏହା ଓଡ଼ିଶା ମଧ୍ୟରେ ଗୋଟିଏ ଦୁର୍ଭେଦ୍ୟ ଦୁର୍ଗ ଥିଲା । ପ୍ରସ୍ତର ପ୍ରାଚୀରମାନଙ୍କଦ୍ୱାରା ବେଷ୍ଟିତ ଆଠୋଟି କ୍ଷୁଦ୍ର ଅଟ୍ଟାଳିକାଦ୍ୱାରା ସୁରକ୍ଷିତ ଏହି ଦୁର୍ଗର ଗୋଟିଏ ଭାଗ ପ୍ରାଚୀନ ଏବଂ ୨୦ରୁ ୩୦ ପାହୁଣ୍ଡ ପ୍ରସ୍ଥ ଏକ ଓ ସ୍ଥାନେ ସ୍ଥାନେ ଦୁଇଟି ପରିଖାରେ ଆବଦ୍ଧ ଥିଲା । ଏହାର ଦୁର୍ବଳତା ମଧ୍ୟରେ କେବଳ ନିକଟସ୍ଥ ପଡ଼ିଆରେ କେତେଗୁଡ଼ିଏ ଗହ୍ୱର ଥିଲା । ଅବରୋଧକାରୀମାନେ ଏହି ଗହ୍ୱରଗୁଡ଼ିକରେ ସୁନ୍ଦର ଆଶ୍ରୟ ପାଇଥିଲେ । ଅକ୍ଟୋବର ୧୦ ତାରିଖ ୧୦ଟା ବେଳେ ଜଣେ ଇଂରେଜୀ ସୈନିକ ଗୁଳିଦ୍ୱାରା ଗୋଟିଏ କ୍ଷୁଦ୍ରଦ୍ୱାର ଉଡ଼ାଇଦେଲେ । ଏହି ଦ୍ୱାର ବାଟେ ଇଂରେଜ ସୈନ୍ୟମାନେ ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ମରହଟ୍ଟାମାନେ ପ୍ରାଚୀରରୁ ଲମ୍ଫ ଦେଇ ଅନ୍ୟ

ଦ୍ୱାର ବାଟେ ଦୁର୍ଗରୁ ପଳାୟନ କଲେ । ସେମାନଙ୍କର ପ୍ରାୟ ୩୦ଟି ମୃତ ଦେହ ବଳଦଗାଡ଼ିରେ ଲଦା ହୋଇ ମହାନଦୀରେ ନିକ୍ଷିପ୍ତ ହେଲା । ଓଡ଼ିଶା ପ୍ରଦେଶ ଇଂରେଜ ରାଜତ୍ୱର ଅନ୍ତର୍ଭୁକ୍ତ ହେଲା ।''

ଆରନଲ୍ଡ ଏ ଟଏନବି ଇଂରେଜ ଶାସନ କାଳରେ ରେଭିନ୍ୟୁ ସୁପରିଣ୍ଟେଣ୍ଡେଣ୍ଟ୍ ଥିଲେ । ସେ ଇଂରେଜ ଶାସନ କାଳର ଇତିହାସ ମଧ୍ୟ ଲେଖିଛନ୍ତି । ସେ ବାରବାଟୀ ଦୁର୍ଗର ଅବକ୍ଷୟପାଇଁ ପି.ଡବ୍ଲ୍ୟୁ. ଡି. ବା ବାରିକମିସ୍ତ୍ରୀ ବିଭାଗକୁ ଦାୟୀ କରିଛନ୍ତି । ଆକ୍ରମଣ ଫଳରେ ପରିଖା ଭିତର ଭୂଭାଗ ପ୍ରସ୍ତର ଜଙ୍ଗଲରେ ପରିଣତ ହୋଇଥିଲା । ଦୁର୍ଗକୁ ଇଂରେଜମାନେ ଅଧିକାର କଲା ପରେ ସମ୍ପୂର୍ଣ୍ଣଭାବେ ଧ୍ୱଂସ କରିଥିବା ଏଥିରୁ ଅନୁମାନ କରାଯାଏ । ବାରିକମିସ୍ତ୍ରୀ ବିଭାଗ ମଧ୍ୟ ଧ୍ୱସ୍ତବିଧ୍ୱସ୍ତ ଦୁର୍ଗର କୌଣସି ଯତ୍ନ ନେଇ ନ ଥିଲେ । ଉତ୍କଳର ଅନ୍ୟାନ୍ୟ କୀର୍ତ୍ତିମାନଙ୍କ ଭଳି ଇଂରେଜମାନେ ୧୮୭୩ ଖ୍ରୀଷ୍ଟାବ୍ଦରେ ସେହି ପଥରକୁ ଡାକ୍ତରଖାନା ନିର୍ମାଣରେ ବ୍ୟବହାର କରିଥିଲେ । କେତେ ପଥର ନେଇ ଫଲ୍ସ ପଏଣ୍ଟର ବତିଘର ଓ ଅନ୍ୟାନ୍ୟ ସରକାରୀ ଗୃହ ନିର୍ମାଣରେ ଲଗାଇଲେ । ଅବଶିଷ୍ଟ ପଥରଖଣ୍ଡକୁ ଷ୍ଟେସନ ପର୍ଯ୍ୟନ୍ତ ଯାଇଥିବା ରାସ୍ତାରେ ପକାଯାଇଥିଲା । ଐତିହାସିକ ହଣ୍ଟର ମଧ୍ୟ କେବଳ ବାରବାଟୀ ଦୁର୍ଗ ନୁହେଁ, ଉତ୍କଳର ପବିତ୍ର ଧର୍ମକ୍ଷେତ୍ର ଯାଜପୁରର ଦେବଦେବୀ ମନ୍ଦିରମାନଙ୍କର ପଥର ସବୁ ସରକାରୀ ଗୃହ ଓ ରାସ୍ତା ନିର୍ମାଣରେ ଲାଗିଥିବାର ଉଲ୍ଲେଖ କରିଛନ୍ତି । ଭଗ୍ନ ଅବସ୍ଥାରେ ରହିଯାଇଥିବା ଦୁର୍ଗର ପୂର୍ବଦ୍ୱାର ସମ୍ପର୍କରେ ପଣ୍ଡିତ କୃପାସିନ୍ଧୁ ମିଶ୍ର ଲେଖିଛନ୍ତି – ''ବାରବାଟୀ ଦୁର୍ଗ ନାହିଁ । ନବତଳ ପ୍ରାସାଦ ମଧ୍ୟ ନାହିଁ । ତଥାପି ଦେଶର କୀର୍ତ୍ତିପୂତ ଗାଥାର ପରିତ୍ୟକ୍ତ ମୂକସାକ୍ଷୀ ସେଇ ପାଷାଣ ପୂର୍ବ ଦ୍ୱାର ଜୀର୍ଣ୍ଣ ହେଲେବି ଏବେ ରହିଅଛି । ଏହା ଅତି ନଗଣ୍ୟ ହେଲେହେଁ ଉତ୍କଳ ଜୀବନର ଗୌରବୋଜ୍ଜ୍ୱଳ ସ୍ମୃତି ଏଥିରେ ପୂରି ରହିଅଛି ।''

ଷୋଡ଼ଶ ଶତାବ୍ଦୀ ଆରମ୍ଭରୁ ଓଡ଼ିଶାର ସାହିତ୍ୟ ଓ ଧର୍ମ କ୍ଷେତ୍ରରେ ଉତ୍କର୍ଷ ସୃଷ୍ଟି ହୋଇଥିଲେ ମଧ୍ୟ ରାଜନୀତିକ କ୍ଷେତ୍ରରେ ପ୍ରବଳ ହିଂସା, ଦ୍ୱେଷ ଓ ରାଜଦ୍ରୋହ ଫଳରେ ଓଡ଼ିଶା ଦୁର୍ବଳ ହୋଇପଡ଼ିଲା । ଏହାର ସୁଯୋଗ ନେଇ ରାଜ୍ୟରେ ଘନ ଘନ ବୈଦେଶିକ ଆକ୍ରମଣ ହେଲା । ତେବେ ସହସ୍ର ବର୍ଷ ଧରି ଶାସନଗତ ଶୃଙ୍ଖଳା ଯୋଗୁଁ ଓଡ଼ିଶାରେ ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ମୁସଲମାନ ରାଜତ୍ୱ ସମ୍ଭବ ହୋଇ ପାରି ନ ଥିଲା । ସେଥିପାଇଁ ମୁକୁନ୍ଦଦେବ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ରୂପେ ଗଣ୍ୟ ହୁଅନ୍ତି । ସେଥିପାଇଁ ସେ ପ୍ରତ୍ୟେକ ଓଡ଼ିଆ ହୃଦୟରେ ଏବେବି ଏକ ବିଶିଷ୍ଟ ସ୍ଥାନ ଅଧିକାର କରିରହିଛନ୍ତି ।

## ଦ୍ୱିତୀ ଇନ୍ଦ୍ରଦ୍ୟୁମ୍ନ

# ପ୍ରଥମ ରାମଚନ୍ଦ୍ରଦେବ

ଭୋଇ ବଂଶର ଅଭ୍ୟୁଦୟ ଓଡ଼ିଶା ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଅଛି କହିଲେ ଚଳେ । ଯେତେବେଳେ ରାଜ୍ୟରେ ଘୋର ଅରାଜକତା ଓ ଧର୍ମ ଉପରେ ଅତ୍ୟାଚାର ଦେଖାଦେଇଥିଲା, ସେତେବେଳେ ଭୋଇ ବଂଶର ରାଜାମାନେ ରାଜ୍ୟର ହୃତଗୌରବ ଫେରାଇଆଣିବାକୁ ଯତ୍ପରୋନାସ୍ତି ଚେଷ୍ଟା କରିଥିଲେ । ଏହି ଭୋଇ ବଂଶର ପ୍ରଥମ ରାଜା ହେଉଛନ୍ତି ରାମଚନ୍ଦ୍ରଦେବ ।

### ବଂଶ ପରିଚୟ

ରାମଚନ୍ଦ୍ରଦେବ ବା ରମାଇ ରାଉତରାୟ ଜନାର୍ଦ୍ଦନ ବିଦ୍ୟାଧର ବା ଦନେଇ ବିଦ୍ୟାଧରଙ୍କ ପୁତ୍ର ଥିଲେ । ଦ୍ୱିତୀୟ ମୁକୁନ୍ଦଦେବଙ୍କ ରାଜତ୍ୱ ସମୟରେ ସେ ସୀମାନ୍ତ ରକ୍ଷା ଦାୟିତ୍ୱରେ ଥିଲେ । ମାତ୍ର ତାଙ୍କୁ ପରେ ପ୍ରତିଦ୍ୱନ୍ଦ୍ୱୀ ଭାବି ବନ୍ଦୀ କରି ରଖିଲେ । ଦ୍ୱିତୀୟ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ରମାଇ ରାଉତରାୟ କୌଣସି ପ୍ରକାରେ ମୁକ୍ତି ଲାଭ କରି ଗୋଟମାଗଡ଼ରେ ଆସି ରହିଥିଲେ । ସେହି ସମୟରେ ଗଡ଼କୋକିଳର ବାଘୁ ପାତ୍ର, ଘୋରଡ଼ିଆର ଝାଡୁ ପରିଡ଼ା ଓ ମଳିପଡ଼ାର ଶରଣୀ ପାତ୍ର ତାଙ୍କୁ ବହୁ ସାହାଯ୍ୟ କରିଥିବାର ଜଣାଯାଏ । ସେମାନଙ୍କ ସାହାଯ୍ୟ ଫଳରେ ରମାଇ ରାଉତରାୟ ରାମଚନ୍ଦ୍ରଦେବ ନାମ ଧାରଣ କରି ଖୋର୍ଦ୍ଧାରେ ଏକ ନୂତନ ରାଜବଂଶ ପ୍ରତିଷ୍ଠା କଲେ ।

ଖୋର୍ଦ୍ଧାରେ ରାଜଧାନୀ ପ୍ରତିଷ୍ଠା କରିବାର ବହୁ କାରଣ ଥିଲା । ପ୍ରଥମତଃ, ଏହା ବରୁଣାଇ ପାଦଦେଶରେ ଘଞ୍ଚ ଜଙ୍ଗଲ ପରିବେଷ୍ଟିତ ଥିଲା । ଦ୍ୱିତୀୟରେ, କଟକ ସେତେବେଳକୁ ଆଫଗାନମାନଙ୍କଦ୍ୱାରା ଅଧିକୃତ ହୋଇସାରିଥିଲା । ଅନଙ୍ଗଭୀମଦେବଙ୍କ ରାଜତ୍ୱର ଆରମ୍ଭରୁ (୧୨୧୧-୩୮) ତେଲେଙ୍ଗା ମୁକୁନ୍ଦଦେବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଏହା ଓଡ଼ିଶାର ରାଜଧାନୀ ଥିଲା । ସୁତରାଂ ରାମଚନ୍ଦ୍ରଦେବ ଏହାର ଉଦ୍ଧାରପାଇଁ ଶକ୍ତି ବ୍ୟୟ ନ କରି ପୁରୀ ଜିଲ୍ଲାର ବରୁଣାଇ ପାହାଡ଼ ତଳେ ଘଞ୍ଚ ଅରଣ୍ୟ ଓ ଚାରି ଦିଗରେ କ୍ଷୁଦ୍ର କ୍ଷୁଦ୍ର ଦୁର୍ଗ ଦ୍ୱାରା ପରିବେଷ୍ଟିତ ଖୋର୍ଦ୍ଧାକୁ ନିଜର ରାଜଧାନୀ କରିବାକୁ ସ୍ଥିର କଲେ । ସେ ଏଥିପାଇଁ

ବଳୀବିକ୍ରମ ସିଂହଙ୍କଠାରୁ ଗୋଟିଏ ପଲ୍ଲୀ ଗ୍ରାମ ମାଗି ତାହାକୁ ଜଗନ୍ନାଥପୁର କଟକରେ ନାମିତ କଲେ ।

ଏ ବିଷୟରେ ଜଗନ୍ନାଥ ମନ୍ଦିରରେ ଥିବା 'ମାଦଳାପାଞ୍ଜି'ରେ ଉଲ୍ଲେଖ ଅଛି – ''ଦନେଇ ବିଦ୍ୟାଧର ପୁଅ ତୋଟମୀଗଡ଼ରେ ଥିଲେ । ରାମଚନ୍ଦ୍ରଦେବ ରାଜା ହୋଇଲେ । ଖୋର୍ଦ୍ଧା ନାଁ ଆଦିରେ ଜଗନ୍ନାଥପୁର କଟକ କରି ରହିଲେ । ବରୁଣାଇ ପର୍ବତ ତଳେ ।''

ସୁଧାକର ପଟ୍ଟନାୟକଙ୍କଦ୍ୱାରା ପ୍ରକାଶିତ 'ଚକଡ଼ା ପୋଥି'ରେ ମଧ୍ୟ ଏହାର ବର୍ଣ୍ଣନା ଅଛି – ''ତହିଁ ଉତ୍ତାରେ ଦକ୍ଷିଣଦିଗେ ଖଣ୍ଡାଇତେ ରାମଚନ୍ଦ୍ର ରାଉତରାୟ ମହାପାତ୍ରକୁ ରାଜା କଲେ । ସେ ତିନି ବର୍ଷ ଗୋଟମାଗଡ଼ରେ ରହିଲେ । ତାଙ୍କୁ ସେଠାରେ ତିନି ଲୋକ ସେବା କରୁଥିଲେ । କୋକଲର ବାଘୁ ପାତ୍ର, ଘୋରଡିଆର ଝାଡୁ ପରିଡ଼ା ଓ ମଲ୍ଲିପଡ଼ାର ଶରଣୀ ପାତ୍ର ଇତ୍ୟାଦି ।''

ରାମଚନ୍ଦ୍ରଦେବ ଖୋର୍ଦ୍ଧାରେ ରାଜା ହେବା ବିଷୟ ସୁଦୂର ବାଲେଶ୍ୱରସ୍ଥିତ ଶ୍ରୀଜଙ୍ଗ ଶିଳାଲିପିରୁ ଜଣାଯାଏ, ଯଥା –

''କଟକ ପଛୀମେ ପରଙ୍ଗ ଖୁରୁଧାଥୀତ କଟକେ
ଶୃଦ୍ର ଗଜପତି ରାଜା ରାମଚନ୍ଦ୍ରଦେବ ୩୪ ଅଙ୍କ ମାହୀ ।''

ଉପରୋକ୍ତ ଶିଳାଲିପିରେ କଟକନଗରୀର ପଶ୍ଚିମ ଦିଗରେ ଖୋର୍ଦ୍ଧା ଅବସ୍ଥିତ ଥିବାର ଉଲ୍ଲେଖ ଅଛି । ମାତ୍ର ଏହା ପ୍ରକୃତରେ କଟକର ଦକ୍ଷିଣ-ପଶ୍ଚିମ ଦିଗରେ ଅବସ୍ଥିତ । ଐତିହାସିକ କେଦାର ନାଥ ମହାପାତ୍ରଙ୍କ ମତରେ ''ସୁଦୂର ବାଲେଶ୍ୱରର ଲିପିକାରମାନଙ୍କର ଖୋର୍ଦ୍ଧା ଦିଗ ନିର୍ଣ୍ଣୟରେ ଭ୍ରମ ଥିବା ଅସ୍ୱାଭାବିକ ନୁହେଁ ।''

ସପ୍ତଦଶ ଶତାବ୍ଦୀରେ ରଚିତ 'ନୀଳ ସୁନ୍ଦର ଗୀତା'ରେ ରାମଚନ୍ଦ୍ରଦେବଙ୍କ ଖୋର୍ଦ୍ଧାରେ ରାଜତ୍ୱ କରିବା ବିଷୟ ବର୍ଣ୍ଣିତ ଅଛି –

''କଳାସିଂହ ଡରେ ପଳାଇବ
ଖୋରଧା କରିବ ସ୍ଥିତି
ପଞ୍ଚପାଟ ଯଦୁବଂଶକୁ ସେ
ନରେନ୍ଦ୍ର ହେବ ଭୂପତି ।''

ଏହି 'କଳାସିଂହ'କୁ କଳାପାହାଡ଼ ଭାବେ ଚିହ୍ନିତ କରାଯାଇପାରେ । ସେହି ବିଧର୍ମୀ ଅତ୍ୟାଚାରୀ କଳାପାହାଡ଼ ଡରରେ ସମ୍ଭବତଃ ରମାଇ ରାଉତରାୟ ଗୋପନରେ ରହିଥିଲେ । ସେ ପଳାଇଯିବା ପରେ ଦକ୍ଷିଣରୁ ଆସି ଖୋର୍ଦ୍ଧାରେ ରାଜବଂଶ ପ୍ରତିଷ୍ଠା କଲେ ।

ଓଡ଼ିଶାର ପ୍ରଖ୍ୟାତ କବି ଦୀନକୃଷ୍ଣ ଦାସ ତାଙ୍କର 'ରସ ବିନୋଦ' ଗ୍ରନ୍ଥରେ ରାମଚନ୍ଦ୍ରଦେବ ଶୁଭରେ ରାଜତ୍ୱ କରିଥିବା କଥା ବର୍ଣ୍ଣନା କରିଛନ୍ତି –

''ଯେ ଦିନ ମାନସିଂହ ସାଜି । ଅଇଲା ଓଡ଼ିଶାକୁ ବାହି
ସେଦିନ ରାମଚନ୍ଦ୍ର ରାଜା    ଶୁଭେ ପାଳନ୍ତି ଜନପ୍ରଜା
ଖୋରଧା କଟକ ନଗର    ରହିଥିଲେ ନୃପବୀର ।''

ନୂତନ ବଂଶ ପ୍ରତିଷ୍ଠା କରି ଓଡ଼ିଶା ଇତିହାସରେ ଏକ ନୂତନ ଅଧ୍ୟାୟ ଆରମ୍ଭ କରିଥିବା ହେତୁ ରାମଚନ୍ଦ୍ରଦେବ 'ମାଦଳାପାଞ୍ଜି' ତଥା ଓଡ଼ିଶାର କବିମାନଙ୍କର କାବ୍ୟକବିତାରେ ସ୍ଥାନ ପାଇବା ସ୍ୱାଭାବିକ ।

## ରାଜ୍ୟ ବିସ୍ତାର

ରାମଚନ୍ଦ୍ର ଏହାପରେ ନିକଟବର୍ତ୍ତୀ ଅଞ୍ଚଳଗୁଡ଼ିକୁ ଅଧିକାର କରିବାରେ ଲାଗିପଡ଼ିଲେ । ଉତ୍ତରରେ କାଠଯୋଡ଼ିଠାରୁ ହୁଗୁଳି ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳ ପ୍ରଥମେ ଆଫଗାନ ଓ ତା'ପରେ ମୋଗଲମାନଙ୍କଦ୍ୱାରା ଅଧିକୃତ ହୋଇସାରିଥିଲା । ଦକ୍ଷିଣରେ ଇଚ୍ଛାପୁରଠାରୁ ଗୋଦାବରୀ ନଦୀ ପର୍ଯ୍ୟନ୍ତ ସମସ୍ତ ଅଞ୍ଚଳ ଗୋଲକୁଣ୍ଡା ସୁଲତାନଙ୍କ ଅଧୀନସ୍ଥ ଥିଲା । ରାମଚନ୍ଦ୍ରଦେବ ତେଣୁ ଅବଶିଷ୍ଟ ଉପକୂଳବର୍ତ୍ତୀ ଅଞ୍ଚଳରେ ନିଜର ଆଧିପତ୍ୟ ବିସ୍ତାର କରିବାରେ ଲାଗିପଡ଼ିଲେ ।

ଐତିହାସିକ ଷ୍ଟର୍ଲିଙ୍ଗଙ୍କ ନଥିରୁ ଜଣାଯାଏ ଯେ ତାଙ୍କ ପ୍ରତ୍ୟକ୍ଷ ଶାସନରେ ୭୧ଟି କିଲା ବା ଗଡ଼ ଥିଲା । ସେଗୁଡ଼ିକ ହେଲା – ଖୁରୁଧା, ରଥିପୁର, ଶିଶୁପାଳଗଡ଼, ଝାରପଡ଼ା, କପିଳପ୍ରସାଦ, ପାତ୍ରପୁର, ନୋନପୁର, କାମୁକୋଳି, ତାପଙ୍ଗ, ତରମା, ଲାଲସିଂହ, ଗଙ୍ଗପଡ଼ା, ମଳିପଡ଼ା, ଡୁମୁଡୁମା, ପଲ୍ଲୀ, ରାମେଶ୍ୱର, ମାଣିବନ୍ଧ, ମାଣିକଗୋଡ଼ା, ମଙ୍ଗୋଇ, କୋରମାଟି, କନ୍ଦଳଗଡ଼, ମଙ୍ଗଳାଯୋଡ଼ି, ଜରିପଡ଼ା, ରୋତଙ୍ଗ, କରମ, ମଳିପଡ଼ା, ନରସିଂହ ପ୍ରସାଦ, ନରଣଗଡ଼, କେରଙ୍ଗ, ମୃତ୍ୟୁଞ୍ଜୟଗଡ଼, କାଇମାଟିଆ, ଉସୁନା, ବରଣ୍ଡା, ବଳଭଦ୍ର ପ୍ରସାଦ, ନଓଲି, ବିନ୍ଧ୍ୟଗିରି, ତରକାଇ, ସେରଣଗଡ଼, ମାଟିଆପଡ଼ା, ବଙ୍ଗୋରୋ, ଭିଙ୍ଗାରେ, କୋକଳ କରକି, ଲେମ୍ବାଇର ଆଠୋଟି କିଲା, ଅନ୍ଧାରୁଆ ଦାରୁଠେଙ୍ଗ, କଳାପଥର, ତେରଟି ସୌରି ଖଣ୍ଡାୟତ ଗଡ଼, ନଖିକୋଟ, କାଇପଦର, ବୋଲଗଡ଼, ଗଙ୍ଗପଡ଼ା, ମୂଳଝର ।

ଏଥିରେ 'ମଳିପଡ଼ା'ର ନାମ ଦୁଇ ଥର ଉଲ୍ଲେଖ କରାଯାଇଛି । 'ନୋନପୁର', 'ତରଣ', 'ଲାଲସିଂହ', 'ମଙ୍ଗୋଇ', 'କୋରମାଟି', 'କରମ', 'ବରଣ୍ଡା', 'ବଙ୍ଗରୋ' ଚିହ୍ନିତ ହୋଇପାରି ନାହିଁ ।

ଷ୍ଟର୍ଲିଙ୍ଗଙ୍କ ନଥିରୁ ଜଣାଯାଏ ଯେ ରାଜାଙ୍କ ଅଧୀନରେ ୨୯ଟି ଜମିଦାରୀ ଥିଲା । ଖୋର୍ଦ୍ଧାର ଉତ୍ତର ଓ ଉତ୍ତର-ପଶ୍ଚିମ ଦିଗରେ ଥିବା ଜମିଦାରୀଗୁଡ଼ିକ ହେଲା – ବାଙ୍କି, ଡମପଡ଼ା, ବଡ଼ମ୍ବା, ତିଗିରିଆ, ନରସିଂହପୁର, ଅନୁଗୁଳ, ତାଳଚେର, ମୁର୍ଦ୍ଦେଶ୍ୱର, ଆଠଗଡ଼, ଢେଙ୍କାନାଳ ଓ ସିରିହିଣ୍ଡା । ପଶ୍ଚିମରେ ଥିବା ଜମିଦାରୀଗୁଡ଼ିକ ହେଲା ଅଟ୍ରି, ନୟାଗଡ଼, ରଣପୁର, ଦଶପଲ୍ଲା । ଦକ୍ଷିଣରେ ଏହା ଖିମେଣ୍ଡି ପର୍ଯ୍ୟନ୍ତ ବିସ୍ତୃତ ହୋଇଥିଲା । ଏହା ମଧ୍ୟରେ ଥିଲା କାଳୁପଡ଼ା, ବଜ୍ରକୋଟ, ଅଞ୍ଚଳକୋଟ, ବାଣପୁର (ଶରଣ, ରୋହରି, ବକେହିର, ପାରିକୁଦ, ଛତ୍ରଗଡ଼ ପ୍ରଭୃତି) ଘୁମୁସର, ଖଲିକୋଟ, କୁର୍ଲୋ ଆଠଗଡ଼ ବା ହାଟଗଡ଼, ଛଗଟି, ମୋହରି, ପାଲୁର ଓ ଟିକାଲି ରଘୁନାଥପୁର । ସେହି ଜମିଦାରୀଗୁଡ଼ିକ ପରବର୍ତ୍ତୀକାଳରେ ଗୋଟିଏ ଗୋଟିଏ କରଦ ରାଜ୍ୟରେ ପରିଣତ ହେଲା ।

ରାମଚନ୍ଦ୍ରଦେବଙ୍କ ରାଜ୍ୟ ତେଣୁ ଉତ୍ତରରେ ମହାନଦୀ, ଦକ୍ଷିଣରେ ଖିମେଣ୍ଡି, ପୂର୍ବରେ ଜଗନ୍ନାଥ ରାସ୍ତା ଓ ଚିଲିକା ହ୍ରଦ, ପଶ୍ଚିମରେ ନୟାଗଡ଼, ଖଣ୍ଡପଡ଼ା ଓ ଦଶପଲ୍ଲା ପର୍ଯ୍ୟନ୍ତ ବିସ୍ତୃତ ଥିଲା । କୋଠଗଡ଼ ବ୍ୟତୀତ ବର୍ତ୍ତମାନର ପୁରୀ ଖୋର୍ଦ୍ଧା ଜିଲ୍ଲାର ଅଧିକାଂଶ ଅଞ୍ଚଳ, କଟକ ଜିଲ୍ଲାର ଆଠଗଡ଼ ଓ ବାଙ୍କି ଅଞ୍ଚଳ, ଢେଙ୍କାନାଳର ଅଧିକାଂଶ ଅଞ୍ଚଳ ଓ ଗଞ୍ଜାମ ଜିଲ୍ଲାର ଉତ୍ତର-ପୂର୍ବାଞ୍ଚଳକୁ ନେଇ ଏହା ଗଠିତ ହୋଇଥିଲା । ଏହାର କ୍ଷେତ୍ରଫଳ ଆନୁମାନିକ ଦଶ ହଜାର ବର୍ଗମାଇଲ ଥିଲା । ରାଜା ରାମଚନ୍ଦ୍ରଦେବ ନିଜ ବାହୁବଳରେ ଏଡ଼େ ବଡ଼ ଅଞ୍ଚଳ ଜୟ କରିବାକୁ ସମର୍ଥ ହୋଇଥିଲେ । ଏହାପରେ ତାଙ୍କ ରାଜ୍ୟର ରାଜଧାନୀ ଖୋର୍ଦ୍ଧା ହେଲା । ସେ ନିଜକୁ ଗଜପତି ରାଜା ବୋଲି ଘୋଷଣା କଲେ ଏବଂ ପୂର୍ବବର୍ତ୍ତୀ ସୂର୍ଯ୍ୟବଂଶୀୟ ରାଜାମାନଙ୍କ ପରି ସମସ୍ତ ଉପାଧି ଗ୍ରହଣ କଲେ । ସେ ମଧ୍ୟ ୧୫୬୮ରେ ଏକ ନୂତନ ଅଙ୍କ ପ୍ରଚଳନ କଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ରାଜବଂଶ ଭୋଇ ବଂଶ ନାମରେ ଖ୍ୟାତ ହେଲା ।

## ନୂତନ ରାଜଗୁରୁ

ସେ ଏହାପରେ ବିଶିଷ୍ଟ କବି ଡିଣ୍ଡିମଙ୍କ ପୁତ୍ର ବର୍ଦ୍ଧନ ମହାପାତ୍ରଙ୍କୁ ରାଜଗୁରୁ ପଦବୀରେ ନିଯୁକ୍ତ କଲେ । ଏହାଦ୍ୱାରା ସେ ରକ୍ଷଣଶୀଳ ବ୍ରାହ୍ମଣ ସମାଜର ଆନୁଗତ୍ୟ ଲାଭ କଲେ ।

## ବିଗ୍ରହମାନଙ୍କ ଅପସାରଣ

୧୫୬୭–୬୮ ମସିହାରେ କୁଖ୍ୟାତ ଯବନ ସେନାପତି କଳାପାହାଡ଼ ଜଗନ୍ନାଥ ମନ୍ଦିର ଆକ୍ରମଣ କରି ଦାରୁବିଗ୍ରହମାନଙ୍କୁ ହସ୍ତୀପୃଷ୍ଠରେ ନେଇ ବଙ୍ଗ ଅଭିମୁଖେ

ଯାଇଥିଲେ । ସେଠାରେ ଗଙ୍ଗାନଦୀ କୂଳରେ ଜ୍ୱଳନ୍ତ ଅଗ୍ନିରେ ବିଗ୍ରହଗୁଡ଼ିକୁ ନିକ୍ଷେପ କରିଥିଲେ । ଦାରୁମୂର୍ତ୍ତିଗୁଡ଼ିକ ଅଗ୍ନିରେ ଦଗ୍ଧ ହେଲେ ମଧ ଅଗ୍ନି ନାଭିବ୍ରହ୍ମଙ୍କୁ ସ୍ପର୍ଶ କରିପାରି ନ ଥିଲା । ଗଙ୍ଗାନଦୀରେ ସେହି ଅର୍ଦ୍ଧଦଗ୍ଧ ବ୍ରହ୍ମ ଭାସିବାକୁ ଲାଗିଲେ । କଳାପାହାଡ଼ଙ୍କ ଅଲକ୍ଷ୍ୟରେ ପରମ ବିଷ୍ଣୁଭକ୍ତ ବିଶର ମହାନ୍ତି ଆସି ସେହି ନାଭିବ୍ରହ୍ମଙ୍କୁ ଜଳରୁ ଉଦ୍ଧାର କଲେ । ତାହାକୁ ଗୋଟିଏ ମୃଦଙ୍ଗ ମଧ୍ୟରେ ରଖି ସମୁଦ୍ର କୂଳେ କୂଳେ ଆସି କୁଜଙ୍ଗଠାରେ ପହଞ୍ଚିଲେ । ସେଠାରେ ଏକ ମନ୍ଦିରରେ ବ୍ରହ୍ମଙ୍କୁ ସଂସ୍ଥାପନ କଲେ । ପରେ କୁଜଙ୍ଗର କ୍ଷେଣ୍ଡ ରାଜା ଏକ ମନ୍ଦିର ନିର୍ମାଣ କରି ଦାରୁମୂର୍ତ୍ତି ସ୍ଥାପନ କଲେ । ସେ ବ୍ରହ୍ମ କୁଞ୍ଜବିହାରୀଭାବେ ପୂଜା ପାଇଲେ ।

### ରାମଚନ୍ଦ୍ରଦେବଙ୍କୁ ସ୍ୱପ୍ନାଦେଶ

ଏଣେ ପୁରୀ ଶ୍ରୀମନ୍ଦିର ବିଗ୍ରହଶୂନ୍ୟ ଅବସ୍ଥାରେ ଥିଲା । ରାମଚନ୍ଦ୍ରଦେବ ରାଜ୍ୟ ପ୍ରତିଷ୍ଠା କଲାପରେ ବିଗ୍ରହମାନଙ୍କ ପୁନଃପ୍ରତିଷ୍ଠା ଦିଗରେ ମନ ଦେଲେ । ସୁଧାକର ପଟ୍ଟନାୟକଙ୍କ ସମ୍ପାଦିତ 'ଚକଡ଼ା ପୋଥି'ରେ ଏହାର ସବିଶେଷ ବିବରଣୀ ଅଛି । ଚକଡ଼ା ପୋଥିରେ ଅଛି – ''ଖୋରଧାଗଡ଼ର ଶୁଭ ହେଲା ଦିନ ରାଜସଭା ହେଲା । ରାଜା ମନ୍ଦିରରେ କେଉଁ ଦେବତାଙ୍କର ପ୍ରତିଷ୍ଠା କରାଯିବ ବୋଲି ପ୍ରଶ୍ନ କଲେ । ମାତ୍ର କେହି ଏହାର ଉତ୍ତର ଦେଇପାରିଲେ ନାହିଁ । ସମସ୍ତେ ବିସ୍ମିତ ନୟନରେ ଗଜପତି ରାଜାଙ୍କ ଆଡ଼କୁ ଅନାଇଲେ । ସେଦିନ ସଭା ଏତିକିରେ ଶେଷ ହେଲା । ରାଜା ଭାଳି ଭାଳି ଶଯ୍ୟା ଗ୍ରହଣ କଲେ ।''

ସେହି ରାତ୍ରିରେ ମହାରାଜାଙ୍କୁ ସ୍ୱପ୍ନାଦେଶ ହେଲା – ''ଆମ୍ଭେ କୁଜଙ୍ଗଗଡ଼ରେ ବିଜେ କରିଛୁ । ସେ ଶଳାଖାକୁ ତୁ ନୂଆକରି ଦାରୁବ୍ରହ୍ମ ମୂର୍ତ୍ତି କରିବୁ । ଭିତର ପୋଟଳରେ ଆମ୍ଭଙ୍କୁ ବିଜେ କରାଇବୁ । ମହା ଅଣସରରେ ବାଲି ନୃସିଂହଠାରୁ ଆମ୍ଭଙ୍କୁ ବିଜେ କରାଇ ନେଇ ଦେଉଳ ଭିତରେ ରତ୍ନ ସିଂହାସନରେ ବିଜେ କରାଇବୁ ।''

ତହିଁ ଆରଦିନ ପୁଣି ସଭା ବସିଲା । ରାଜା ପୂର୍ବ ରାତ୍ରିର ସ୍ୱପ୍ନବୃତ୍ତାନ୍ତ ସମସ୍ତଙ୍କୁ ଜଣାଇଲେ । ସେଠାରେ ପାତ୍ର, ମନ୍ତ୍ରୀ, ସାମନ୍ତ, ଭଟ୍ଟମିଶ୍ର ପ୍ରଭୃତି ଉପସ୍ଥିତ ଥିଲେ । ସେମାନେ ଏହା ଶୁଣି ଆନନ୍ଦରେ ଉତ୍ଫୁଲ୍ଲ ହୋଇଉଠିଲେ । ପୁଣି ଦେବତା ପୂଜା ପାଇବେ ବୋଲି ଆଶା ପ୍ରକାଶ କଲେ । ରାଜା ମୂର୍ତ୍ତିଗୁଡ଼ିକୁ ଆଣିବାପାଇଁ ବଡ଼ ପଦ୍ମନାଭ ପଟ୍ଟନାୟକଙ୍କୁ କୁଜଙ୍ଗ ପଠାଇଲେ । ସେ କୁଜଙ୍ଗରୁ

ମହାପ୍ରଭୁଙ୍କୁ ଆଣିଲେ । 'ସ୍କନ୍ଦ ପୁରାଣ' ବିଧିରେ ଚଉରାଶୀ ଯବରେ ଖୋର୍ଦ୍ଧାରେ ବିଗ୍ରହମାନଙ୍କୁ ନିର୍ମାଣ କରାଗଲା । ରାଜାଙ୍କ ଆଠ ଅଙ୍କ ମିଥୁନ ୧୮ଦିନ ଆଷାଢ଼ ଶୁକ୍ଳ ଦଶମୀ ଗୁରୁବାର ଦିନ ପୁରୀ ଶ୍ରୀମନ୍ଦିରରେ ବିଗ୍ରହମାନେ ବିଜେ ହେଲେ । ରାଜା ମଧ୍ୟ ତିନି ଶାସନ ବସାଇବାକୁ ସଙ୍କଳ୍ପ କଲେ ।

'ମାଦଳାପାଞ୍ଜି'ରେ ଏ ବିଷୟରେ ଉଲ୍ଲେଖ ଅଛି – ''୯ ଅଙ୍କେ ରାଜା କୁଜଙ୍ଗ ଗଡ଼ରୁ ବ୍ରହ୍ମ ଅଣାଇଲେ । ଶ୍ରୀପୁରୁଷୋତ୍ତମ ବଡ଼ଦେଉଳେ ରତ୍ନ ସିଂହାସନେ ବିଜେ କରାଇଲେ । ବ୍ରହ୍ମ ଆଣିବାପାଇଁ ବିଶର ମହାନ୍ତିଙ୍କୁ ନାଏକ କଲେ । ଏ ଦାରୁବ୍ରହ୍ମ ଘେନି ଅଇଲା । ଏ ତା' ଭିତରେ ପଶିବ ବୋଲି ଶାଢ଼ି ଦେଲେ ।''

'ମାଦଳାପାଞ୍ଜି'ରେ ବ୍ରହ୍ମ ଆଣିବା ବ୍ୟକ୍ତିର ନାମ ବିଶର ମହାନ୍ତି ହୋଇଥିଲାବେଳେ, 'ଚକଡ଼ାପୋଥି'ରେ ତାହାଙ୍କ ନାମ ବଡ଼ପଦ୍ମନାଭ ପଟ୍ଟନାୟକ ଅଛି । ସମ୍ଭବତଃ, 'ମାଦଳାପାଞ୍ଜି'ରେ ବିଶର ମହାନ୍ତି ଗଙ୍ଗା କୂଳରୁ ନାଭିବ୍ରହ୍ମଙ୍କୁ ଆଣି କୁଜଙ୍ଗରେ ସ୍ଥାପନ କରିଥିଲେ । କୁଜଙ୍ଗଠାରୁ ପୁରୀ ଆଣିବା ଭାର ବଡ଼ପଦ୍ମନାଭ ପଟ୍ଟନାୟକଙ୍କୁ ଦିଆଯାଇଥିଲା । 'ମାଦଳାପାଞ୍ଜି' ଅନୁସାରେ ବିଗ୍ରହମାନେ ଖୁରୁଧା କଟକେ ନିର୍ମିତ ହେଲା ପରେ ପୁରୀ ମନ୍ଦିରରେ ପୁନଃ ସ୍ଥାପିତ ହେଲେ । 'ଚକଡ଼ାପୋଥି'ରେ ଏହାର ଉଲ୍ଲେଖ ନାହିଁ । ରାମଚନ୍ଦ୍ରଦେବ ଖୋରଧାରେ ଅବସ୍ଥାନ କରୁଥିବାରୁ ନାଭିବ୍ରହ୍ମଙ୍କୁ ଅଣାଯାଇ ଖୁରୁଧା କଟକରେ ନିର୍ମାଣ କରାଯାଇ ପୁରୀରେ ପ୍ରତିଷ୍ଠା କରାଯିବା ଯୁକ୍ତିଯୁକ୍ତ ବୋଲି ମନେହୁଏ । ବ୍ରହ୍ମ ଆଣିବା ସମୟ ସମ୍ବନ୍ଧରେ ମଧ୍ୟ ଉଭୟ ପୋଥିରେ ପାର୍ଥକ୍ୟ ପରିଲକ୍ଷିତ ହୁଏ । 'ଚକଡ଼ାପୋଥି' ଅନୁଯାୟୀ ରାମଚନ୍ଦ୍ରଦେବଙ୍କ ଆଠ ଅଙ୍କରେ ମୂର୍ତ୍ତିଗୁଡ଼ିକ ସ୍ଥାପିତ ହେଲେ । 'ମାଦଳାପାଞ୍ଜି' ଅନୁସାରେ ନଅ ଅଙ୍କରେ ବ୍ରହ୍ମ ଅଣାଯାଇ ଦଶ ଅଙ୍କରେ ପୁନଃ ସ୍ଥାପିତ ହେଲେ । ଐତିହାସିକ କେଦାରନାଥ ମହାପାତ୍ର ମାଦଳାପାଞ୍ଜି ସମୟକୁ ଗ୍ରହଣୀୟ ବୋଲି ମତ ଦେଇଛନ୍ତି ।

## ଦ୍ୱିତୀ ଇନ୍ଦ୍ରଦ୍ୟୁମ୍ନ ବା ନବ ଇନ୍ଦ୍ରଦ୍ୟୁମ୍ନ

ଦ୍ୱିତୀ ଇନ୍ଦ୍ରଦ୍ୟୁମ୍ନ ରାମଚନ୍ଦ୍ରଦେବଙ୍କର ଏହି ମହତ୍ କାର୍ଯ୍ୟ ଯୋଗୁଁ ସମଗ୍ର ରାଜ୍ୟରେ ଆନନ୍ଦ ଉଲ୍ଲାସ ଖେଳି ଯାଇଥିଲା । ବିଶିଷ୍ଟ ବ୍ୟକ୍ତିମାନେ ତାଙ୍କୁ ଦ୍ୱିତୀ ଇନ୍ଦ୍ରଦ୍ୟୁମ୍ନ ବା ଦ୍ୱିତୀୟ ଇନ୍ଦ୍ରଦ୍ୟୁମ୍ନ ପଦବୀରେ ଭୂଷିତ କଲେ । 'ମାଦଳାପାଞ୍ଜି'ରେ ଏ ବିଷୟରେ ଉଲ୍ଲେଖ ଅଛି – ''ସମସ୍ତ ସନ୍ନ୍ୟାସୀ ବ୍ରାହ୍ମଣମାନେ ଶ୍ରୀ ରାମଚନ୍ଦ୍ରଦେବ ମହାରାଜଙ୍କୁ ଦ୍ୱିତୀ ଇନ୍ଦ୍ରଦ୍ୟୁମ୍ନ ବୋଲି ଶାଢ଼ି ଦେଲେ ।''

'ଚକଡ଼ାପୋଥି'ରେ ମଧ୍ୟ ଏହା ସଂକ୍ଷେପରେ ବର୍ଣ୍ଣିତ ଅଛି – "ସମସ୍ତ ବ୍ରାହ୍ମଣ ସାମନ୍ତ ଭଟ୍ଟ ସାମନ୍ତମାନେ ଆଶୀର୍ବାଦ କରି ନବୀନ ଇନ୍ଦ୍ରଦ୍ୟୁମ୍ନ ବୋଲି ଶିରରେ ଦୂର୍ବାକ୍ଷତ ଦେଇ ଚାରୋଟି ଶାସନ ମାଗିଲେ ।"

ରାମଚନ୍ଦ୍ରଦେବଙ୍କ ପରବର୍ତ୍ତୀ ଯୁଗର ଜଣେ ପଣ୍ଡିତ ନିଜ ରଚିତ 'ବସନ୍ତୋତ୍ସବ ମହାକାବ୍ୟମ୍'ର ପ୍ରଥମ ସର୍ଗରେ ରାମଚନ୍ଦ୍ରଦେବଙ୍କୁ ନବ ଇନ୍ଦ୍ରଦ୍ୟୁମ୍ନ ରୂପେ ଅଭିହିତ କରିଛନ୍ତି ।

"ଇନ୍ଦ୍ରଦ୍ୟୁମ୍ନୋ ନବ ଇତି ଯଶଃ ପ୍ରାଗ୍ ଯେଦ୍ଧସ୍ୟାତି ଦିବ୍ୟାଂ
ନବ୍ୟାଂ ଭବ୍ୟା ନୀଳଶୈଳେ ନିବେଶ୍ୟଃ ।"

ରାମଚନ୍ଦ୍ରଦେବଙ୍କ ସାମସମୟିକ ଚାନ୍ଦକବି ଏକ ଓଡ଼ିଆ ଗୀତରେ ତାଙ୍କୁ ଅଭିନବ ଇନ୍ଦ୍ରଦ୍ୟୁମ୍ନ ଆଖ୍ୟା ଦେଇଛନ୍ତି –

"ଅଭିନବ ଇନ୍ଦ୍ରଦ୍ୟୁମ୍ନ ଅବତାର
ଯୁଗେ ଯୁଗେ ରହିଲେ ଏ କୀରତି ବିସ୍ତାର ।"

ରାମଚନ୍ଦ୍ରଦେବଙ୍କ ବଂଶଧରମାନେ ଇନ୍ଦ୍ରଦ୍ୟୁମ୍ନାବତାର ଇତ୍ୟାଦି ଉପାଧି ବ୍ୟବହାର କରୁଥିବା ବିଷୟ ଏହି ବଂଶର ପ୍ରଥମ ବୀରକିଶୋରଦେବଙ୍କ ଏକ ତମ୍ବାପଟାରୁ ଜଣାଯାଏ ।

## ସଙ୍ଖୁଡ଼ି ଭୋଗର ପୁନଃ ପ୍ରଚଳନ

ରାମଚନ୍ଦ୍ରଦେବ ଶ୍ରୀମନ୍ଦିରରେ ମଧ୍ୟ ସଙ୍ଖୁଡ଼ି ଭୋଗର ପୁନଃ ପ୍ରଚଳନ କଲେ । 'ମାଦଳାପାଞ୍ଜି'ରେ ଅଛି ଯେ ବିଗ୍ରହମାନଙ୍କର ପ୍ରତିଷ୍ଠା ହୋଇଥିଲେ ମଧ୍ୟ ସଙ୍ଖୁଡ଼ିଭୋଗ ହୋଇ ନ ଥିଲା । ରାଜା ପୁଣି ଏହା ଆରମ୍ଭ କଲେ । ପ୍ରଥମେ ରୋଷାଇର ବ୍ୟବସ୍ଥା କଲେ । ବ୍ରାହ୍ମଣ, ସାମନ୍ତ, ଭଟ୍ଟମିଶ୍ର ପ୍ରଭୃତିଙ୍କୁ ସଙ୍ଗରେ ଧରି ମନ୍ଦିର ଭିତରକୁ ଗଲେ । ସେତେବେଳକୁ ସକାଳ ଧୂପ ସରିଥାଏ । ସେ ମହାପ୍ରସାଦ ହାତରେ ଧରି ଜୟବିଜୟ ଦ୍ୱାର ଦେଶରେ ଉପସ୍ଥିତ ହେଲେ । ରାମଚନ୍ଦ୍ର ଭଟ୍ଟ, ଗୋବର୍ଦ୍ଧନ ମହାରାଜ, ମିଶ୍ର ଗୋସାଇଁ ଏହି ତିନି ଜଣ ରାଜାଙ୍କ ହାତରୁ ମହାପ୍ରସାଦ ନେଇ ସେବନ କଲେ ଓ ବିଧି ଅନୁଯାୟୀ ମୁଣ୍ଡରେ ହାତ ବୋଳିଲେ । ହରିବୋଲ ଦେଇ ସମସ୍ତ ସନ୍ନ୍ୟାସୀ ବ୍ରହ୍ମଚାରୀମାନେ ମଧ୍ୟ ମହାପ୍ରସାଦ ପାଇଲେ ।

ବିଗ୍ରହ ପ୍ରତିଷ୍ଠା ପରେ ମହାପ୍ରସାଦର ପୁନଃ ପ୍ରଚଳନ କରି ରାମଚନ୍ଦ୍ରଦେବ ଭକ୍ତ ମଣ୍ଡଳୀର ପ୍ରଶଂସାର ପାତ୍ର ହୋଇଥିବା ସ୍ୱାଭାବିକ ।

## ରଥଯାତ୍ରାର ପୁନଃ ପ୍ରବର୍ତ୍ତନ

ବିଗ୍ରହମାନଙ୍କ ଅପସାରଣପରେ ରଥଯାତ୍ରା ବନ୍ଦ ହୋଇଯାଇଥିଲା । ସେସବୁର ପୁନଃପ୍ରତିଷ୍ଠାପରେ ରାମଚନ୍ଦ୍ରଦେବ ରଥଯାତ୍ରା ପୁଣି ଆରମ୍ଭ କଲେ । ଏହା ରାମଚନ୍ଦ୍ରଦେବ ନିଜ ରଚିତ 'ଶ୍ରୀକୃଷ୍ଣ ଭକ୍ତି ବାତ୍ସଲ୍ୟ ଚରିତମ୍'ରେ ଉଲ୍ଲେଖ କରିଛନ୍ତି –

''ପୁଣ୍ଡରିକାକ୍ଷସ୍ୟ ଗୁଣ୍ଡିଚା ମହୋତ୍ସବୋଽୟଂ ତଦନନ୍ତରସ୍ଥ
ଭଗବନ୍ତ ନାନାଦି ମଧନ ମନନ୍ତ – ଜୟସଫଳୟାମି ।''

ପୂର୍ବଭଳି ଗୁଣ୍ଡିଚା ରଥଯାତ୍ରା ଆରମ୍ଭ ତାଙ୍କ ରାଜତ୍ୱର ଏକ ପ୍ରଧାନ କୀର୍ତ୍ତି ବୋଲି ଧରାଯାଏ ।

## ଗୋଲକୁଣ୍ଡା ସୁଲତାନଙ୍କ ସହିତ ସଂଘର୍ଷ

କ୍ରମେ ରାମଚନ୍ଦ୍ରଦେବ ଏକ ବିରାଟ ଶକ୍ତି ଭାବେ ଦେଖାଦେଲେ । ସେହି ସମୟରେ ଦକ୍ଷିଣରେ ଗୋଲକୁଣ୍ଡା ସୁଲତାନ ମଧ୍ୟ ଶକ୍ତିଶାଳୀ ହୋଇଉଠୁଥିଲେ । ସେ ୧୫୭୧ ମସିହାରେ ଉତ୍ତର ଦିଗରେ ଅଭିଯାନ ଚଳାଇ ଚିଲିକା ପର୍ଯ୍ୟନ୍ତ ଅଗ୍ରସର ହେଲେ । କିନ୍ତୁ ଶ୍ରୀକାକୁଳମ ଉତ୍ତରକୁ ତାଙ୍କର ସ୍ଥିତି ସେତେ ଦୃଢ଼ ନ ଥିଲା । ଗୋଲକୁଣ୍ଡା ସୁଲତାନଙ୍କ ଅଧୀନସ୍ଥ କଶିମକୋଟାର ରାଜା ମୁକୁନ୍ଦରାଜ ୧୫୯୦ରୁ ୧୫୯୫ ମସିହା ମଧ୍ୟରେ ବିଦ୍ରୋହ କଲେ । ତାଙ୍କୁ ଦମନ କରିବାପାଇଁ ଗୋଲକୁଣ୍ଡା ସୁଲତାନ ତାଙ୍କ ସେନାପତି ଅମିନ–ଉଲ–ମୁଲ୍କଙ୍କୁ ପଠାଇଲେ । ମୁକୁନ୍ଦରାଜ ପରାସ୍ତ ହେଲେ । ସେ ତେଣୁ ରାମଚନ୍ଦ୍ରଦେବଙ୍କ ଶରଣାପନ୍ନ ହେଲେ । ଏଥିରୁ ପ୍ରମାଣିତ ହୁଏ ଯେ ସେତେବେଳେ ରାମଚନ୍ଦ୍ରଦେବ ଏକ ଶକ୍ତିଶାଳୀ ରାଜା ରୂପେ ପରିଗଣିତ ହେଉଥିଲେ । ଗୋଲକୁଣ୍ଡା ସେନାପତି ତେଣୁ ଖୋର୍ଦ୍ଧା ଆକ୍ରମଣ କଲେ । ରାମଚନ୍ଦ୍ରଦେବ ମଧ୍ୟ ଗୋଲକୁଣ୍ଡା ସେନାବାହିନୀର ମୁକାବିଲାପାଇଁ ବଙ୍ଗପ୍ରଦେଶ ସୀମାନ୍ତରେ ରାଜତ୍ୱ କରୁଥିବା ରାଜା ମଧୁ ସିଂହଙ୍କ ସାହାଯ୍ୟ ଲୋଡ଼ିଲେ । ରାଜା ମଧୁ ସିଂହ ସେତେବେଳେ ଦିଲ୍ଲୀ ସମ୍ରାଟ୍ ଆକବରଙ୍କ ଅଧୀନସ୍ଥ ଥିଲେ । ସେ ମଧ୍ୟ ରାମଚନ୍ଦ୍ରଦେବଙ୍କୁ ସାହାଯ୍ୟ କରିବାପାଇଁ ବହୁ ରାଜପୁତ ସୈନ୍ୟ ସହ ପହଞ୍ଚିଲେ । କିନ୍ତୁ ବିଜୟର ଆଶା ନ ଦେଖି ନିଜ ରାଜ୍ୟକୁ ଫେରିଗଲେ । ମୁସଲମାନ ଐତିହାସିକ ଫେରିସ୍ତାଙ୍କ ବିବରଣୀରୁ ଜଣାଯାଏ ଯେ ଗୋଲକୁଣ୍ଡା ସେନାବାହିନୀ ରାମଚନ୍ଦ୍ରଦେବଙ୍କ ରାଜ୍ୟକୁ ଛାରଖାର କରିଦେଲେ । ସେ ଏପରିକି ଖୋର୍ଦ୍ଧା ପର୍ଯ୍ୟନ୍ତ ଅଗ୍ରସର ହୋଇ ଖୋର୍ଦ୍ଧା ରାଜସିଂହାସନ ଅଧିକାର କରିନେଲେ ଏବଂ ରାମଚନ୍ଦ୍ରଦେବ ଗୋଲକୁଣ୍ଡା ସୁଲତାନଙ୍କ କରଦ ରାଜା ହେଲେ । ମାତ୍ର ଐତିହାସିକ ଫେରିସ୍ତାଙ୍କ ବିବରଣୀ ଅତିରଞ୍ଜିତ ବୋଲି ମନେହୁଏ । କାରଣ ଆଶ୍ରୟ ନେଇଥିବା ମୁକୁନ୍ଦରାଜ ପୁଣି

ରାଜା ରାମଚନ୍ଦ୍ରଦେବଙ୍କ ସହାୟତାରେ କଣିମକୋଟା ଅଧିକାର କରିପାରିଥିଲେ । ସେ ମଧ୍ୟ ବଂଶଧାରା ନଦୀ କୂଳରେ ବ୍ରାହ୍ମଣ ଓ ବୈଷ୍ଣବମାନଙ୍କୁ ଗ୍ରାମ ଦାନ କରିଥିବା ଏକ ତମ୍ବାପଟାରୁ ଜଣାଯାଏ । ସେ ଯାହାହେଉ, ରାମଚନ୍ଦ୍ରଦେବ ଗୋଲକୁଣ୍ଡା ସେନାବାହିନୀ ସହିତ ସଂଘର୍ଷରେ ସେପରି ସଫଳତା ଲାଭ କରିପାରି ନ ଥିବା ସମ୍ଭବ । ସେ ଏହି ସମୟରେ ରାଜମହେନ୍ଦ୍ରୀ ଓ କଳିଙ୍ଗ ଦଣ୍ଡପାଟ ପ୍ରଭୃତି ହରାଇଥିଲେ । ଗୋଲକୁଣ୍ଡା ରାଜ୍ୟର ସୀମାନ୍ତ ଚିଲିକା ଓ ଋଷିକୁଲ୍ୟା ନଦୀ ମଧ୍ୟରେ ରହିଲା ।

ଗୋଲକୁଣ୍ଡା ସୁଲତାନଙ୍କ ସହିତ ଯୁଦ୍ଧ ସମୟରେ ରାମଚନ୍ଦ୍ରଦେବ ଓଡ଼ିଶାର କେତେକ ରାଜାଙ୍କ ସାହାଯ୍ୟ ପାଇଥିଲେ । ସେତେବେଳେ ସମ୍ବଲପୁରର ପରାକ୍ରମଶାଳୀ ରାଜା ଥିଲେ ବଳରାମଦେବ । ସେ ରାମଚନ୍ଦ୍ରଦେବଙ୍କୁ ଯୁଦ୍ଧରେ ସାହାଯ୍ୟ କରିଥିଲେ । ମାତ୍ର ପାଟଣାର ରାଜା ବାଇଜଲଦେବ ତାଙ୍କୁ କୌଣସି ପ୍ରକାର ସାହାଯ୍ୟ ଦେଇ ନ ଥିଲେ । ସେ ପରେ ରାମଚନ୍ଦ୍ରଦେବଙ୍କଦ୍ୱାରା ପରାସ୍ତ ହୋଇଥିଲେ ।

## ମାନସିଂହଙ୍କ ଖୋର୍ଦ୍ଧା ଆକ୍ରମଣ

ରାମଚନ୍ଦ୍ରଦେବ ଖୋର୍ଦ୍ଧା ରାଜ୍ୟ ପ୍ରତିଷ୍ଠା କଲାବେଳକୁ ମୋଗଲ ଓ ଆଫଗାନମାନେ ଓଡ଼ିଶା ଅଧିକାରପାଇଁ ଯୁଦ୍ଧରେ ବ୍ୟାପୃତ ଥିଲେ । ଶେଷରେ ସୁଲେମାନ କର୍‌ରାଣିଙ୍କ ପୁତ୍ର ଦାଉଦ ରାଜମହଲ ଯୁଦ୍ଧରେ ପରାସ୍ତ ଓ ନିହତ ହେଲେ । ଓଡ଼ିଶା ମୋଗଲମାନଙ୍କଦ୍ୱାରା ଅଧିକୃତ ହେଲା । ଆଫଗାନମାନେ କିନ୍ତୁ ସମ୍ପୂର୍ଣ୍ଣ ଭାବେ ପରାସ୍ତ ହୋଇ ନ ଥିଲେ । ଦାଉଦଙ୍କ ଜଣେ ସେନାପତି କୁତୁଲ ଖାଁ ଲୋହାନୀ କେତେକ ସ୍ଥାନରେ ମୋଗଲମାନଙ୍କୁ ପରାସ୍ତ କରିଥିଲେ । ମୋଗଲ ଫୌଜଦାରମାନଙ୍କୁ କେତେକ ସ୍ଥାନରୁ ଘଉଡ଼ାଇ ଦେଇଥିଲେ । ଯଥାସମୟରେ ଏ ଖବର ମୋଗଲ ଦରବାରରେ ପହଞ୍ଚିଲା । ମୋଗଲ ସମ୍ରାଟ୍ ଆକବର ତେଣୁ ସବୁଠାରୁ ଟାଣୁଆ ସେନାପତି ରାଜା ମାନସିଂହଙ୍କୁ ଆଫଗାନମାନଙ୍କୁ ଦମନ କରିବାକୁ ଓଡ଼ିଶା ପଠାଇଲେ ।

ରାଜା ମାନସିଂହ ଅମ୍ବରର ମହାରାଜା ଭଗବାନ ଦାସଙ୍କ ପୁତ୍ର ଥିଲେ । ସେ ଆକବରଙ୍କ ସହିତ ବନ୍ଧୁତା ସୂତ୍ରରେ ଆବଦ୍ଧ ଥିଲେ । ତାଙ୍କୁ ମିରରାଜା ବୋଲି କୁହାଯାଉଥିଲା ।

୧୫୯୦ ଖ୍ରୀଷ୍ଟାବ୍ଦରେ ମାନସିଂହ ଓଡ଼ିଶା ଅଭିମୁଖେ ଯାତ୍ରା କଲେ । ବାଟରେ ସେ ବିଦ୍ରୋହୀ ସାମନ୍ତମାନଙ୍କୁ ପରାସ୍ତ କଲେ । ଆଫଗାନ ଶାସକ

କୁତ୍ଲୁ ମୋଗଲ ସେନାବାହିନୀର ମୁକାବିଲା କରିବାପାଇଁ ବାହାଦୁର ଖୁରାଙ୍କ ନେତୃତ୍ୱରେ ବିଶାଳ ସେନାବାହିନୀ ପଠାଇଲେ । ମୋଗଲ ସେନାପତି ଥିଲେ ଜଗତ୍ ସିଂହ । ମାତ୍ର ସେ ସେପରି ଦକ୍ଷ ସେନାପତି ନ ଥିଲେ । ତାଙ୍କର ସୈନ୍ୟମାନେ ମଧ ଶୃଙ୍ଖଳିତ ନ ଥିଲେ । ମୋଗଲ ସୈନ୍ୟ ଆଫଗାନମାନଙ୍କଦ୍ୱାରା ପରାସ୍ତ ହେଲେ । ଜଗତ୍ ସିଂହ ମଧ ଯୁଦ୍ଧରେ ଆଘାତପ୍ରାପ୍ତ ହେଲେ । କୁତ୍ଲୁ ଖାଁଙ୍କୁ ଓଡ଼ିଶାର ଶାସକଭାବେ ସ୍ୱୀକାର କରିବାକୁ ମୋଗଲମାନେ ବାଧ ହେଲେ ।

କୁତ୍ଲୁ ଖାଁଙ୍କ ମୃତ୍ୟୁ ପରେ ପୁତ୍ର ନସିର ଆଫଗାନ ଶାସକ ହେଲେ । ମାତ୍ର ଯୁଦ୍ଧ କ୍ଷେତ୍ରରେ ତାଙ୍କର ସେପରି ଦକ୍ଷତା ନ ଥିଲା । ସୁତରାଂ ସେ ମୋଗଲମାନଙ୍କ ସହିତ ସନ୍ଧି କରିବାକୁ ବାଧ ହେଲେ । ସନ୍ଧିର ସର୍ତ୍ତ ଅନୁଯାୟୀ ଆଫଗାନମାନେ ଆକବରଙ୍କର ବଶ୍ୟତା ସ୍ୱୀକାର କଲେ । ଜଗନ୍ନାଥ ମନ୍ଦିର ସମେତ ସମସ୍ତ ପୁରୀ ଅଞ୍ଚଳ ମୋଗଲମାନଙ୍କ ଅଧୀନକୁ ଆସିଲା । ଏହି ସନ୍ଧି ୧୫୯୦ ଖ୍ରୀଷ୍ଟାବ୍ଦରେ ହୋଇଥିଲା ।

୧୫୯୦ ମସିହାରେ ହୋଇଥିବା ସନ୍ଧିରେ ଆଫଗାନମାନେ ଖୁସି ନ ଥିଲେ । ଖୋର୍ଦ୍ଧା ରାଜା ରାମଚନ୍ଦ୍ରଦେବ ମଧ ଏହି ସନ୍ଧିରେ କ୍ଷୁବ୍ଧ ହୋଇପଡ଼ିଲେ । ତା'ର କାରଣ, ରାମଚନ୍ଦ୍ରଦେବଙ୍କ ବିଷୟରେ ସନ୍ଧିରେ କିଛି ଉଲ୍ଲେଖ ନ ଥିଲା । ଜଗନ୍ନାଥ ମନ୍ଦିର ପରିଚାଳନା ଭାର ମଧ ତାଙ୍କ ହସ୍ତରେ ନ୍ୟସ୍ତ ହୋଇ ନ ଥିଲା । ଜଗନ୍ନାଥ ମନ୍ଦିର ମୋଗଲମାନଙ୍କ ପ୍ରତ୍ୟକ୍ଷ ଶାସନାଧୀନ ହେବା ଫଳରେ ସେ କ୍ରୋଧାନ୍ୱିତ ହୋଇପଡ଼ିଲେ ।

ଏହି ସନ୍ଧି ଫଳରେ ରାଜନୀତିକ କ୍ଷେତ୍ରରେ ଆଉ ଏକ ପରିବର୍ତ୍ତନ ଘଟିଲା । ଓଡ଼ିଶା ସିଂହାସନପାଇଁ ରାମଚନ୍ଦ୍ରଦେବଙ୍କର ଦୁଇ ଜଣ ପ୍ରତିଦ୍ୱନ୍ଦ୍ୱୀ ବାହାରିଲେ । ସେମାନେ ହେଲେ ଓଡ଼ିଶାର ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କ ଦୁଇ ପୁତ୍ର ତେଲେଙ୍ଗା ରାମଚନ୍ଦ୍ରଦେବ ଓ ଛକଡ଼ି ଭ୍ରମରବର । ସେମାନେ ମୋଗଲ ସମ୍ରାଟ୍‌ଙ୍କ ନିକଟରେ ଖୋର୍ଦ୍ଧା ସିଂହାସନପାଇଁ ଦାବି କଲେ । ଭୋଇବଂଶର ରାମଚନ୍ଦ୍ରଦେବଙ୍କର କୌଣସି ନ୍ୟାଯ୍ୟ ଦାବି ନାହିଁ ବୋଲି ସେମାନେ ଦର୍ଶାଇଲେ । ଏହାର ସତ୍ୟାସତ୍ୟ ନିରୂପଣପାଇଁ ସମ୍ରାଟ୍ ଆକବର ରାଜା ମାନସିଂହଙ୍କୁ ଓଡ଼ିଶା ପଠାଇବାକୁ ସ୍ଥିର କଲେ । ଆଫଗାନମାନେ ମଧ ସନ୍ଧି ଚୁକ୍ତିର ଖିଲାପ କରି ପୁରୀକୁ ଅଧିକାର କରିନେଇଥିଲେ । ଏହି ଉଭୟ କାରଣରୁ ସେ ରାଜା ମାନସିଂହଙ୍କୁ ଦ୍ୱିତୀୟଥର ଓଡ଼ିଶା ପଠାଇଲେ ।



ଜୀର୍ଣ୍ଣ ଖୋର୍ଦ୍ଧା ଗଡ଼ ପ୍ରାଚୀରର ଅବଶିଷ୍ଟାଂଶ

ରାମଚନ୍ଦ୍ରଦେବ ମାନସିଂହଙ୍କ ଓଡ଼ିଶା ଆସିବାର ବିରୋଧ କରିବା ସ୍ୱାଭାବିକ । ତେଲେଙ୍ଗା ରାମଚନ୍ଦ୍ରଦେବଙ୍କ ଦାବିକୁ ସମ୍ରାଟ୍ ସମର୍ଥନ କରୁଥିବା ସେ ଆଶଙ୍କା କରିଥିଲେ । ମୋଗଲମାନେ ଯୁଦ୍ଧରେ ବିଜୟୀ ହେଲେ ତାହା ସୁବିଧା ହୋଇଯିବ ବୋଲି ସେ ଉପଲବ୍ଧି କରିଥିଲେ । ସେ ତେଣୁ ଆଫଗାନମାନଙ୍କୁ ସାହାଯ୍ୟଦେବାକୁ ସ୍ଥିର କଲେ । ସେ ପ୍ରଥମେ ଶାରଙ୍ଗଗଡ଼ ଦୁର୍ଗକୁ ଦୃଢ଼ କଲେ ।

୧୫୯୦ ମସିହା ନଭେମ୍ବର ମାସ ୩ରେ ରାଜା ମାନସିଂହ ଓଡ଼ିଶା ଆସିଲେ । ଆଫଗାନମାନଙ୍କ ସହିତ ତାଙ୍କର ସୁବର୍ଣ୍ଣରେଖା ନଦୀ କୂଳରେ ଘମାଘୋଟ ଯୁଦ୍ଧ ହେଲା । ଯୁଦ୍ଧରେ ଆଫଗାନମାନେ ସମ୍ପୂର୍ଣ୍ଣଭାବେ ପରାସ୍ତ ହେଲେ । ଆଫଗାନ ସୈନ୍ୟମାନେ ଶାରଙ୍ଗଗଡ଼ ଦୁର୍ଗରେ ଆଶ୍ରୟ ନେଲେ ।

ଏହାପରେ ମାନସିଂହ ଆଫଗାନମାନଙ୍କର ମିତ୍ର ରାମଚନ୍ଦ୍ରଦେବଙ୍କୁ ଉଚିତ ଶିକ୍ଷାଦେବାକୁ ସ୍ଥିର କଲେ । ଆଫଗାନ ସୈନ୍ୟମାନେ ଆଶ୍ରୟ ନେଇଥିବା ଶାରଙ୍ଗଗଡ଼ ଦୁର୍ଗ ଆକ୍ରମଣ କଲେ । ଦୁର୍ଗଟି ସେମାନଙ୍କର ଅଧିକୃତ ହେଲା । ଆଫଗାନ ସୈନ୍ୟମାନେ ସେଠାରୁ ପଳାଇଯାଇ ବଣଜଙ୍ଗଲରେ ଆଶ୍ରୟ ନେଲେ ।

## ମାନସିଂହଙ୍କ ପୁରୀ ଯାତ୍ରା

ଶାରଙ୍ଗଗଡ଼ ଦୁର୍ଗ ଅଧିକାର କଲା ପରେ ମାନସିଂହ ପୁରୀ ଯିବାକୁ ସ୍ଥିର କଲେ । ଏହାର ଦୁଇଟି କାରଣ ଥିଲା । ପ୍ରଥମତଃ, ରାମଚନ୍ଦ୍ରଦେବଙ୍କୁ ପରାସ୍ତ କରିବା ସହଜସାଧ ନ ଥିଲା । ଶାରଙ୍ଗଗଡ଼ ଦୁର୍ଗର ଦକ୍ଷିଣ-ପଶ୍ଚିମରେ ଆହୁରି ବହୁତ ଦୁର୍ଗ ଥିବାର ସମ୍ବାଦ ସେ ପାଇଥିଲେ । ସେସବୁ ଦୁର୍ଗରେ ରାମଚନ୍ଦ୍ରଦେବ

ଆଶ୍ରୟ ନେବା ସମ୍ଭାବନା ଥିଲା । ସେ ଏଥିପାଇଁ ପ୍ରଥମେ ଖୋର୍ଦ୍ଧା ଦୁର୍ଗକୁ ଆକ୍ରମଣ କରିବାକୁ ସ୍ଥିର କଲେ । ଦ୍ୱିତୀୟରେ, ତେଲେଙ୍ଗା ମୁକୁନ୍ଦଦେବଙ୍କ ଦୁଇ ପୁତ୍ରଙ୍କ ଦାବି ବିଷୟରେ ନିଷ୍ପତ୍ତି ନେବାର ଆବଶ୍ୟକତା ଥିଲା । ସେ ରାମଚନ୍ଦ୍ରଦେବଙ୍କ ଶତ୍ରୁତା ଆଚରଣରେ କ୍ଷୁବ୍ଧ ଥିଲେ । ସେ ମଧ୍ୟ ତେଲେଙ୍ଗା ମୁକୁନ୍ଦଦେବଙ୍କ ପୁତ୍ର ତେଲେଙ୍ଗା ରାମଚନ୍ଦ୍ର ଦେବଙ୍କୁ ଖୋର୍ଦ୍ଧା ସିଂହାସନରେ ବସାଇବାପାଇଁ ଇଚ୍ଛୁକ ଥିଲେ । ମାତ୍ର ଦୁହିଁଙ୍କ ଦାବି ବିଷୟରେ ଅଧିକ ଅନୁସନ୍ଧାନ କରିବା ଆବଶ୍ୟକତା ସେ ହୃଦୟଙ୍ଗମ କରିଥିଲେ । ସେଥିପାଇଁ ସେ ପୁରୀ ଅଭିମୁଖେ ଯାତ୍ରା କଲେ ।

ବାଟରେ ଶାଳୀଠାରେ ମାନସିଂହ ଅଟକିଲେ । ସେଠାରେ ମୋଗଲସେନା ଓ ରାମଚନ୍ଦ୍ରଦେବଙ୍କ ସୈନ୍ୟମାନଙ୍କ ମଧ୍ୟରେ ଖଣ୍ଡଯୁଦ୍ଧ ହେଲା । ସେଥିରେ ରାମଚନ୍ଦ୍ରଦେବଙ୍କ ସୈନ୍ୟ ବିଶେଷ ସଫଳତା ହାସଲ କରି ନ ଥିଲେ । ରାମଚନ୍ଦ୍ରଦେବ ତେଣୁ ଭୟଭୀତ ହୋଇପଡ଼ିଲେ । ସେ ମାନସିଂହଙ୍କ ସହିତ ଉତ୍ତମ ସମ୍ପର୍କ ରକ୍ଷା କରିବାପାଇଁ ଉଦ୍ୟମ କଲେ । ସେ ଉପହାର ସହ ତାଙ୍କ ପୁତ୍ର ବୀରବରଙ୍କୁ ମାନସିଂହଙ୍କ ପାଖକୁ ପଠାଇଲେ । ମାତ୍ର ମାନସିଂହ ରାମଚନ୍ଦ୍ରଦେବଙ୍କୁ ଭେଟିବାକୁ ନିର୍ଦ୍ଦେଶ ଦେଲେ । ନିଜର ସୁରକ୍ଷାପାଇଁ ରାମଚନ୍ଦ୍ରଦେବ ମାନସିଂହଙ୍କୁ ଭେଟି ନ ଥିବାର ଜଣାଯାଏ ।

ଜଗତ୍ ସିଂହଙ୍କ ନେତୃତ୍ୱରେ ମାନସିଂହ ଦଳେ ସୈନ୍ୟ ରାମଚନ୍ଦ୍ରଦେବଙ୍କ ବିରୋଧରେ ପଠାଇଲେ । ତାଙ୍କ ସଙ୍ଗରେ ସରିଫ ସର୍ମାଦି, ମିରକାଶିମ ବଡ଼କସି, ବର୍କୁନ୍ଦର, ଅବଦୁଲ ବାକା, ମହମ୍ମଦ ବେଗ ସାମଲୁ, ଶାହାବୁଦ୍ଦିନ ଦିଓ୍ୱାନା ପ୍ରଭୃତି ସେନାପତିମାନେ ଯାଇଥିଲେ । ଏହି ମୋଗଲ ସେନାପତିମାନେ ପ୍ରଚଣ୍ଡ ଆକ୍ରମଣ ଚଳାଇ ସହଜପାଳ, ଖାରାଗଡ଼, କାଳୁପଡ଼ା, କୋନନ, ଲୁଣଗଡ଼ ପ୍ରଭୃତି ଅଧିକାର କରିନେଲେ । ରାମଚନ୍ଦ୍ରଦେବ ତାଙ୍କର ସୁରକ୍ଷିତ ଦୁର୍ଗ ମଧ୍ୟରେ ଥାଇ ଯୁଦ୍ଧ ଚଳାଇଲେ ।

ଏଥି ମଧ୍ୟରେ ମୋଗଲ ସମ୍ରାଟ୍ ରାମଚନ୍ଦ୍ରଦେବଙ୍କ ପ୍ରତି ମନୋଭାବ କୋହଳ କରିସାରିଥିଲେ । ରାମଚନ୍ଦ୍ରଦେବ କେବଳ ଖୋର୍ଦ୍ଧାର ରାଜା ନୁହନ୍ତି; ଓଡ଼ିଶାର ଠାକୁରରାଜା ହିସାବରେ ପ୍ରତିଷ୍ଠା ପାଇଥିଲେ । ଓଡ଼ିଶାର ଜନସାଧାରଣଙ୍କ ଅକୁଣ୍ଠ ସମର୍ଥନ ସେ ଲାଭ କରିଥିବା ସମ୍ରାଟ୍ ଉପଲବ୍ଧି କରିଥିଲେ । ତାଙ୍କୁ ଓଡ଼ିଶାର ରାଜା ବୋଲି ସ୍ୱୀକାର କରିବା ମୋଗଲମାନଙ୍କ ପକ୍ଷେ ହିତକର ହେବ ବୋଲି ତାଙ୍କର ଧାରଣ ହେଲା । ସେ ମାନସିଂହଙ୍କ କାର୍ଯ୍ୟକୁ ନିନ୍ଦା କରି ତୁରନ୍ତ ମୋଗଲ ସୈନ୍ୟ ଅପସାରଣପାଇଁ ନିର୍ଦ୍ଦେଶ ଦେଲେ । ମାନସିଂହ ତେଣୁ ଖୋର୍ଦ୍ଧା

ଦୁର୍ଗ ଆକ୍ରମଣ ବନ୍ଦ କଲେ । ରାମଚନ୍ଦ୍ରଦେବ ମଧ ସମ୍ରାଟ୍‌ଙ୍କ ଉଦାରତାରେ ମୁଗ୍ଧ ହୋଇ ତାଙ୍କର ବଶ୍ୟତା ସ୍ୱୀକାର କଲେ ।

## ଖଦିପ୍ରସାଦ ପ୍ରଦାନ

ରାଜା ମାନସିଂହ ରାମଚନ୍ଦ୍ରଦେବ ଓ ତେଲେଙ୍ଗା ରାମଚନ୍ଦ୍ରଦେବଙ୍କୁ ଧରି ଜଗନ୍ନାଥ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ସେତେବେଳକୁ ପୁରୀରେ ଚନ୍ଦନ ଯାତ୍ରା ହେଉଥାଏ । ସେଠାରେ ମୋଗଲ ସମ୍ରାଟ୍‌ଙ୍କ ଆଦେଶକୁ କାର୍ଯ୍ୟକାରୀ କରିବାକୁ ବସିଲେ । 'ମାଦଳାପାଞ୍ଜି'ରେ ଏହାର ସବିଶେଷ ବର୍ଣ୍ଣନା ଅଛି – "ଏ ମହାରାଜାଙ୍କ ୧୨ ଅଙ୍କେ ତେଲେଙ୍ଗା ମୁକୁନ୍ଦଦେବଙ୍କ ପୁଅ ତିର୍ଲ ପାତିଶା ହଜୁରେ ଫେରାଦ ହୋଇଲେ । ପାତିଶା ରାଜା ମାନସିଂହଙ୍କୁ ଓଡ଼ିଶା ପଠିଆଇଲେ । କହିଲେ ଓଡ଼ିଶାକୁ ଯେ ନାୟେବେ ହେବେ ତାହାଙ୍କୁ ରାଜା କରିବ × × × ଏ ଉତାରୁ ଚନ୍ଦନ ଯାତ୍ରା ହୋଇଲେ । ଖଦିପ୍ରସାଦ କାହାକୁ ଦେବ ଏମନ୍ତ ବୋଲି ସେବକେ ମାନସିଂହଙ୍କୁ ପଚାରିଲେ । ମାନସିଂହଙ୍କ ସଙ୍ଗେ ରାମଚନ୍ଦ୍ରଦେବ ଥିଲେ । ମୁକୁନ୍ଦଦେବଙ୍କ ପୁଅ ଥିଲେ । ମାନସିଂହ ପଛକୁ ଏ ଦୁହିଁଙ୍କି ଚାହିଁଲେ । ସେବକକୁ କହିଲେ ଖଦିପ୍ରସାଦ ଆଣ । ସେବକେ ଖଦିପ୍ରସାଦ ଆଣିଲେ । ବିମଳାଇଙ୍କ ଆଗେ ମହାରାଜା ମାନସିଂ ରାମଚନ୍ଦ୍ରଦେବଙ୍କୁ ଖଦିପ୍ରସାଦ ଲାଗିକରାଇଲେ । ଓଡ଼ିଶା ରାଜ୍ୟରେ ରାଜା କଲେ ।"

ରାଜା ମାନସିଂହ ରାମଚନ୍ଦ୍ରଦେବଙ୍କ ପ୍ରତି ଓଡ଼ିଶାର ଜନସାଧାରଣଙ୍କର ସମର୍ଥନ ଥିବାର ଜାଣିପାରିଥିଲେ । ତେଣୁ ତାଙ୍କୁ ତାଙ୍କର ନ୍ୟାୟସଙ୍ଗତ ରାଜପଦ ଅର୍ପଣ କରିବା ଛଡ଼ା ଅନ୍ୟ ବାଟ ନ ଥିଲା । ରାମଚନ୍ଦ୍ରଦେବ ଆଗରୁ ଠାକୁରରାଜାର ସମ୍ମାନ ପାଉଥିଲେ । ଏବେ ମାନସିଂହ ତାଙ୍କୁ ଖଦିପ୍ରସାଦ ଦେଇ ଠାକୁରରାଜା ବୋଲି ସ୍ୱୀକାର କଲେ ।

ମାନସିଂହ ତେଲେଙ୍ଗା ରାମଚନ୍ଦ୍ରଦେବଙ୍କ ଦାବି ଗ୍ରହଣ କରି ନ ଥିଲେ ମଧ ତାଙ୍କୁ ସମ୍ପୂର୍ଣ୍ଣ ହତାଶ କରି ନ ଥିଲେ । ତେଲେଙ୍ଗା ରାମଚନ୍ଦ୍ରଦେବଙ୍କୁ ଆଳିର ରାଜା ଓ ତେଲେଙ୍ଗା ମୁକୁନ୍ଦଦେବଙ୍କ ଦ୍ୱିତୀୟ ପୁତ୍ର ଛକଡ଼ି ଭ୍ରମରବରଙ୍କୁ ପଟିଆର ଜମିଦାର କଲେ ।

## ମାନସିଂହଙ୍କୁ ଲାଞ୍ଚଦେବା ପ୍ରସଙ୍ଗ

ଆଧୁନିକ ଐତିହାସିକ ରାଖାଲ ଦାସ ବାନାର୍ଜୀଙ୍କ ମତରେ ରାମଚନ୍ଦ୍ରଦେବ ସିଂହାସନ ପ୍ରାପ୍ତି ନିମନ୍ତେ ମାନସିଂହଙ୍କୁ ଅଧିକ ଉତ୍କୋଚ ଦେଇଥିଲେ । ଆଉ ଜଣେ ଓଡ଼ିଶାର ଐତିହାସିକ ଡଃ ହରେକୃଷ୍ଣ ମହତାବ ମଧ ଏହି ମତ ପୋଷଣ

କରନ୍ତି । ମାତ୍ର ଏହା ବହୁ କାରଣରୁ ଗ୍ରହଣଯୋଗ୍ୟ ନୁହେଁ । ଦ୍ୱିତୀୟ ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ରାମଚନ୍ଦ୍ରଦେବ ନିଜ ବାହୁ ବଳରେ କାଠଯୋଡ଼ି ଓ ଋଷିକୂଲ୍ୟା ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳରେ ଏକ ଶକ୍ତିଶାଳୀ ରାଜ୍ୟ ପ୍ରତିଷ୍ଠା କରିଥିଲେ । ସେ ଜଗନ୍ନାଥଙ୍କ ବିଗ୍ରହ ପୁନଃପ୍ରତିଷ୍ଠା କରି ସମସ୍ତଙ୍କର ସମ୍ମାନ ଲାଭ କରିଥିଲେ । ସେ ଆଫଗାନମାନଙ୍କର ମିତ୍ର ଥିଲେ ଓ ଆଫଗାନ ସର୍ଦ୍ଦାରମାନଙ୍କୁ ରାଜ୍ୟରେ ଆଶ୍ରୟ ଦେଇଥିଲେ । ସେ ମଧ ମାନସିଂହଙ୍କ ସହିତ ଯୁଦ୍ଧ କରିବାକୁ ପଛାଇ ନ ଥିଲେ । ଆକବରଙ୍କ ନିର୍ଦ୍ଦେଶରେ ମାନସିଂହ ଖୋର୍ଦ୍ଧା ଆକ୍ରମଣରୁ ବିରତ ହେଲେ ଓ ରାମଚନ୍ଦ୍ରଦେବଙ୍କୁ ରାଜା ଭାବେ ସ୍ୱୀକାର କରିବାକୁ ବାଧ ହେଲେ । ମହାନୁଭବ ସମ୍ରାଟ୍ ଆକବର ମଧ ତାଙ୍କୁ ବନ୍ଧୁ ଭାବରେ ଗ୍ରହଣ କରିଥିଲେ । ସୁତରାଂ ରାମଚନ୍ଦ୍ରଦେବଙ୍କର ଲାଞ୍ଛଦେବାର ଆବଶ୍ୟକତା ଯେ ନ ଥିଲା, ଏହା ଅତି ସ୍ପଷ୍ଟ ।

## ବାଣପୁର ଆକ୍ରମଣ

ମୋଗଲ ସେନା ଏହା ପରେ ଓଡ଼ିଶା ଓ ତେଲେଙ୍ଗାନା ମଧରେ ଥିବା ମାନପୁର (ବାଣପୁର ?) ଦୁର୍ଗ ଆକ୍ରମଣ କରି ଅଧିକାର କରିନେଲେ । ଏହା ସମ୍ଭବତଃ ଗୋଲକୁଣ୍ଡା ସୁଲତାନଙ୍କ ଅଗ୍ରଗତିରେ ବାଧାଦେବାପାଇଁ ଉଦ୍ଦିଷ୍ଟ ଥିଲା । ରାମଚନ୍ଦ୍ରଦେବଙ୍କ ସହିତ ମିତ୍ରତା ସ୍ଥାପନ ପରେ ଏହା ତାହାଙ୍କୁ ଦିଆଗଲା ।

## ମାନସିଂହଙ୍କ ଦିଲ୍ଲୀ ପ୍ରତ୍ୟାବର୍ତ୍ତନ

ଏହା ପରେ ରାଜା ମାନସିଂହ ଦିଲ୍ଲୀ ଫେରିଗଲେ । ସେ ତାଙ୍କ ସାଙ୍ଗରେ ରାମଚନ୍ଦ୍ରଦେବଙ୍କ ପୁତ୍ର ପୁରୁଷୋତ୍ତମଦେବ ଓ କାଶୀ ପରିଜାଙ୍କୁ ସାଙ୍ଗରେ ନେଇ ଯାଇଥିଲେ । ୧୫୯୪ ମସିହା ଫେବୃଆରୀ ମାସ ୨୩ ତାରିଖରେ ସେ ଦୁହିଁଙ୍କୁ ଆକବରଙ୍କ ସହିତ ସାକ୍ଷାତ କରାଇଲେ । ସମ୍ରାଟ୍ ରାମଚନ୍ଦ୍ରଦେବଙ୍କୁ ୩୫୦୦ ସୈନ୍ୟଙ୍କ ଉପରେ ମନ୍ସୁବାଦାର ପଦରେ ଭୂଷିତ କଲେ । ରାମଚନ୍ଦ୍ରଦେବ ମଧ ସ୍ୱାଧୀନ ରାଜା ହିସାବରେ ଖୋର୍ଦ୍ଧାରେ ରାଜତ୍ୱ କଲେ ।

## ଷୋଳଶାସନ ପ୍ରତିଷ୍ଠା

ହିନ୍ଦୁ ଧର୍ମର ପ୍ରସାର ନିମନ୍ତେ ରାମଚନ୍ଦ୍ରଦେବ ରାଜ୍ୟରେ କେତୋଟି ଶାସନ ବସାଇଲେ । ତାଙ୍କଦ୍ୱାରା ପ୍ରତିଷ୍ଠିତ ଶାସନଗୁଡ଼ିକ ହେଲା (କ) ବୀର ରାମଚନ୍ଦ୍ରପୁର ଶାସନ (ଚାରି ଖଣ୍ଡ), (ଖ) ଶ୍ରୀରାମଚନ୍ଦ୍ରପୁର ଶାସନ (ଦୁଇ ଖଣ୍ଡ), (ଗ) ପ୍ରତାପ ରାମଚନ୍ଦ୍ରପୁର ଶାସନ (ଦୁଇ ଖଣ୍ଡ), (ଘ) ବିଜୟ ରାମଚନ୍ଦ୍ରପୁର ଶାସନ (ଏକ ଖଣ୍ଡ) (ଙ) ଉଭୟମୁଖୀ ରାମଚନ୍ଦ୍ରପୁର ଶାସନ (ଦୁଇ ଖଣ୍ଡ) । ତାଙ୍କର ପୂର୍ବପୁରୁଷମାନେ ଚାରି ଖଣ୍ଡ ବ୍ରାହ୍ମଣ ଶାସନ ବସାଇଥିଲେ,

ଯଥା – (ଚ) ଗୋବିନ୍ଦ ବିଦ୍ୟାଧର ଶାସନ (ଦୁଇ ଖଣ୍ଡ) ଓ (ଛ) ବୀର ପ୍ରତାପପୁର ଶାସନ (ଦୁଇ ଖଣ୍ଡ) ।

ଏହି ଷୋଳ ଶାସନ ପ୍ରତିଷ୍ଠା କରି ରାମଚନ୍ଦ୍ରଦେବ ଅକ୍ଷୟ କୀର୍ତ୍ତିର ଅଧିକାରୀ ହେଲେ ।

## ରାଜସଭାର ବିଶିଷ୍ଟ ବ୍ୟକ୍ତି

ରାମଚନ୍ଦ୍ରଦେବଙ୍କ ରାଜସଭାର ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଦାସ ବିଦ୍ୟାଧର ଥିଲେ ଅଗ୍ରଗଣ୍ୟ । ସେ ବିଦ୍ୟାଧର ବଂଶରେ ଜନ୍ମ ହୋଇଥିଲେ । ସେ ରାମଚନ୍ଦ୍ରଦେବଙ୍କର ଅତି ପ୍ରିୟ ବ୍ୟକ୍ତି ଥିଲେ । ଚକ୍ର ବିଦ୍ୟାଧର ଆଉ ଜଣେ ବିଶିଷ୍ଟ ବ୍ୟକ୍ତି ଥିଲେ । 'ମାଦଳାପାଞ୍ଜି'ରେ ଆଉ ତିନି ଜଣ ବିଶିଷ୍ଟ ବ୍ୟକ୍ତିଙ୍କ ନାମର ଉଲ୍ଲେଖ ଅଛି । ସେମାନେ ହେଲେ ରାମଚନ୍ଦ୍ର ଭଟ୍ଟ, ଗୋବର୍ଦ୍ଧନ ପ୍ରହରାଜ ଓ ମିଶ୍ରଗୋସାଇଁ ।

## ସାହିତ୍ୟ ଅନୁରାଗ

ରାମଚନ୍ଦ୍ରଦେବ ଜଣେ ପଣ୍ଡିତ ଓ ବିଦ୍ୟାନୁରାଗୀ ଥିଲେ । ସଂସ୍କୃତ 'ଶ୍ରୀକୃଷ୍ଣ ଭକ୍ତ ବାତ୍ସଲ୍ୟ ଚରିତମ୍' ନାଟକର ସେ ରଚୟିତା । ଏହା ଜଗନ୍ନାଥଙ୍କ ପୁନଃପ୍ରତିଷ୍ଠା ପରେ ଗୁଣ୍ଡିଚା ଯାତ୍ରା ସମୟରେ ଅଭିନୀତ ହୋଇଥିଲା । ଏଥିରେ ଶ୍ରୀକୃଷ୍ଣ କିପରି ଦୁର୍ବାସାଙ୍କ ଶାପଜନିତ ଧ୍ୱଂସମୁଖରୁ ଭକ୍ତମାନଙ୍କୁ ରକ୍ଷା କରିଥିଲେ, ତାହା ବର୍ଣ୍ଣିତ ଅଛି । 'ଦୁର୍ଗୋତ୍ସବ ଚନ୍ଦ୍ରିକା' ନାମକ ଏକ ଗ୍ରନ୍ଥ ତାଙ୍କ ନାମରେ ଭଣିତା ହୋଇଅଛି । ଏଥିରେ ଦୁର୍ଗାଙ୍କ ଶୀତକାଳୀନ ପାର୍ବଣ ବିଧିର ବର୍ଣ୍ଣନା ଦେଖିବାକୁ ମିଳେ ।

ରାଜା ରାମଚନ୍ଦ୍ରଦେବ ଜଗନ୍ନାଥଙ୍କ ପରିଚାଳନା ମାଧ୍ୟମରେ ଏକ ରାଜବଂଶ ପ୍ରତିଷ୍ଠା ସଙ୍ଗେ ସଙ୍ଗେ ବିପୁଳ କ୍ଷମତା ଓ ସମ୍ମାନର ଅଧିକାରୀ ହେଲେହେଁ ତାହା ପରବର୍ତ୍ତୀକାଳରେ ବହୁ ପରିମାଣରେ କ୍ଷୁଣ୍ଣ ହୋଇଗଲା । ତା'ର ପ୍ରାୟ ଦେଢ଼ଶହ ବର୍ଷ ପରେ (୧୮୦୭ ଖ୍ରୀଷ୍ଟାବ୍ଦରେ) ଭୋଇ ବଂଶର ରାଜାମାନେ ରାଜ୍ୟ ଉପରୁ କର୍ତ୍ତୃତ୍ୱ ହରାଇଲେ । ଡଃ ଏଚ୍. କୁଲ୍‌କେଙ୍କ ଭାଷାରେ, ''ସେମାନେ ରାଜ୍ୟବିହୀନ ରାଜା ହୋଇଗଲେ ।'' ତଥାପି ଆଧ୍ୟାତ୍ମିକ ଜୀବନରେ ସେହି ରାଜବଂଶର ପ୍ରଭାବ ଏବେବି ଅକ୍ଷୁଣ୍ଣ ଅଛି । ଏବେବି ଜଗନ୍ନାଥଙ୍କ ପୂଜା ଓ ଉତ୍ସବମାନଙ୍କରେ ସେମାନେ ଅନିବାର୍ଯ୍ୟ ହୋଇ ରହିଛନ୍ତି । ଗୋଟାଏ ରାଜ୍ୟ ହରାଇଲେ ମଧ୍ୟ ସମଗ୍ର ହିନ୍ଦୁ ଜଗତ୍‌ର ପୂଜ୍ୟ ହୋଇ ରହିଛନ୍ତି ।



# ସାର୍ ବାସୁଦେବ ସୁଢଳଦେବ

ଦୁଇ ହଜାର ବର୍ଗମାଇଲ ଗଡ଼ଜାତ ରାଜ୍ୟ ବାମଣ୍ଡାର ରାଜା ଥିଲେ ବାସୁଦେବ ସୁଢଳଦେବ । ସେ ବାମଣ୍ଡା ପରି ଏକ ଅନୁନ୍ନତ ଗଡ଼ଜାତ ରାଜ୍ୟକୁ ତାଙ୍କ ଜୀବନକାଳରେ ଏକ ଆଦର୍ଶ ରାଜ୍ୟ ଭାବେ ଗଢ଼ିପାରିଥିଲେ । କେବଳ ସେତିକି ନୁହେଁ, ପ୍ରାଚୀନ ଭଞ୍ଜ ଯୁଗର ସାହିତ୍ୟ ପରେ ଯେଉଁ ନୂତନ ଓଡ଼ିଆ ସାହିତ୍ୟର ସୃଷ୍ଟି ହୋଇଥିଲା – ଯାହାକି ପରେ ରାଧାନାଥ ଯୁଗ ସାହିତ୍ୟ ରୂପେ ପରିଚିତ ହେଲା – ସେହି ଯୁଗର ପ୍ରଧାନ ଆବାହକ ଥିଲେ ସୁଢଳଦେବ । ବାମଣ୍ଡା ରାଜ୍ୟ, ଓଡ଼ିଆ ଭାଷା ଓ ସାହିତ୍ୟ ତଥା ଓଡ଼ିଶା ରାଜ୍ୟର ଗୌରବ ବୃଦ୍ଧିପାଇଁ ସେ ଯାହା କରିଯାଇଛନ୍ତି, ସେଥିପାଇଁ ସେ ଅବିସ୍ମରଣୀୟ ହୋଇ ରହିବେ ।

### ଜନ୍ମ ଓ ଶିକ୍ଷାଲାଭ

ବାସୁଦେବ ସୁଢଳଦେବ ୧୮.୫୦ ମେ ମାସ ୧୬ତାରିଖରେ ବାମଣ୍ଡା ରାଜବଂଶରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ହେଉଛନ୍ତି ବଡ଼କୁମାର ହରିହରଦେବ । ସେ ରାଜା ବ୍ରଜସୁନ୍ଦରଦେବଙ୍କର ଭାଇ ଥିଲେ । ବ୍ରଜସୁନ୍ଦରଙ୍କର ପୁତ୍ରସନ୍ତାନ ନ ହେବାରୁ ସେ ହରିହରଦେବଙ୍କ ପୁତ୍ର ବାସୁଦେବଙ୍କୁ ଉତ୍ତରାଧିକାରୀ ରୂପେ ଗ୍ରହଣ କଲେ । ସେତେବେଳେ ତାଙ୍କୁ ପାଞ୍ଚ ବର୍ଷ ହୋଇଥିଲା । ସେ ଅତ୍ୟନ୍ତ ଚଞ୍ଚଳ ପ୍ରକୃତିର ଥିଲେ । ସେହି ସମୟରୁ ସେ ଅସାମାନ୍ୟ ପ୍ରତିଭାର ପରିଚୟ ଦେଇଥିଲେ ।

ନବମ ବର୍ଷରେ ବାସୁଦେବଙ୍କ ଉପନୟନ କାର୍ଯ୍ୟ ସମ୍ପନ୍ନ ହେଲା । ଏହା ପରେ ସେ ଓଡ଼ିଆ ଓ ସଂସ୍କୃତ ଶିକ୍ଷା ଲାଭ କଲେ । ତାଙ୍କର ଶିକ୍ଷାଗୁରୁ ଥିଲେ ଆନନ୍ଦବ୍ରହ୍ମା ପୁରୁଷୋତ୍ତମ ତର୍କାଳଙ୍କାର ଓ ଭୁବନେଶ୍ୱର ବଡ଼ପଣ୍ଡା । ବାସୁଦେବ କାବ୍ୟ, ନାଟକ, ଅଳଙ୍କାର, ନ୍ୟାୟ, ବେଦ, ବେଦାନ୍ତ ପ୍ରଭୃତି ସମସ୍ତ ଶାସ୍ତ୍ର ଅଧ୍ୟୟନ କଲେ । ସେ ମଧ୍ୟ ଉପଯୁକ୍ତ ଗୁରୁଙ୍କ ସାହାଯ୍ୟରେ ମନୁସ୍ମୃତି, ଦାୟଭାଗା, ମିତାକ୍ଷରା, ଆଇନ, ଶୁକ୍ରନୀତି ପ୍ରଭୃତି ଶାସ୍ତ୍ର ଅଧ୍ୟୟନ କଲେ । ଏହା ତାଙ୍କୁ ରାଜ୍ୟ ଶାସନ ଚଳାଇବାରେ ପାରଙ୍ଗମ କରିଥିଲା ।

## ସିଂହାସନ ଆରୋହଣ

୧୮୬୯ ଖ୍ରୀଷ୍ଟାବ୍ଦରେ ବ୍ରଜସୁନ୍ଦରଦେବଙ୍କର ମୃତ୍ୟୁ ହେଲା । ବାସୁଦେବ ମାତ୍ର ୧୮ ବର୍ଷରେ 'ରାଜା ବାସୁଦେବ ସୁଢଳଦେବ' ନାମ ଗ୍ରହଣ କରି ସିଂହାସନରେ ବସିଲେ । ପ୍ରାପ୍ତବୟସ୍କ ହେବା ପର୍ଯ୍ୟନ୍ତ ପିତା ହରିହରଦେବଙ୍କ ତତ୍ତ୍ୱାବଧାନରେ ଶାସନକାର୍ଯ୍ୟ ଚଳାଇବାର ବ୍ୟବସ୍ଥା ହେଲା । ମାତ୍ର ପିତାଙ୍କ ସଙ୍ଗେ ବହୁ ବିଷୟରେ ତାଙ୍କର ମତଭେଦ ଦେଖାଦେଲା । ଏହି ଅପ୍ରୀତିକର ପରିସ୍ଥିତି ଏଡ଼ାଇବାପାଇଁ ହରିହରଦେବ ରାଜ୍ୟ ତ୍ୟାଗ କରି ଅନ୍ୟ ସ୍ଥାନରେ ବସବାସ କରି ରହିଲେ । ବାସୁଦେବ ଏହା ପରେ ପ୍ରତ୍ୟକ୍ଷ ଶାସନ ଭାର ଗ୍ରହଣ କଲେ ।

## ବିବାହ ଓ ସନ୍ତାନ ଲାଭ

୧୮୭୧ ଖ୍ରୀଷ୍ଟାବ୍ଦରେ ବାସୁଦେବଙ୍କର କଳାହାଣ୍ଡି ମହାରାଜା ଉଦିତ ପ୍ରତାପଦେବଙ୍କ ମଧ୍ୟମା କନ୍ୟା ଗିରିରାଜ କୁମାରୀଙ୍କ ସହିତ ବିବାହ ହେଲା । ଗିରିରାଜ କୁମାରୀ ସଂସ୍କୃତ ଓ ଓଡ଼ିଆ ସାହିତ୍ୟରେ ପ୍ରବୀଣା ଥିଲେ । ସେ ସଂସ୍କୃତରେ ଶ୍ଳୋକ ରଚନା କରିପାରୁଥିଲେ । ସେ ମଧ୍ୟ ସୁନ୍ଦର ଓ ଲଳିତକଣ୍ଠରେ ଗୀତ ଗାଇପାରୁଥିଲେ । ଉଭୟଙ୍କର ଦାମ୍ପତ୍ୟ ଜୀବନ ମଧୁମୟ ଥିଲା । ୧୮୭୨ ମସିହା ମେ ମାସ ୩ ତାରିଖରେ ତାଙ୍କର ପ୍ରଥମ ସନ୍ତାନ ସଚ୍ଚିଦାନନ୍ଦ ଜନ୍ମ ଗ୍ରହଣ କରିଥିଲେ । ଏଥିରେ ସମଗ୍ର ରାଜ୍ୟରେ ଆନନ୍ଦ ଉଲ୍ଲାସ ଖେଳିଗଲା । ରାଣୀଙ୍କର ଅନୁରୋଧ ରକ୍ଷା କରି ରାଜା ପୁତ୍ର ଜନ୍ମ ସମୟରେ ଭେଟିଦେବା ପ୍ରଥାକୁ ବନ୍ଦ କରିଦେଲେ । ଫଳରେ ସମସ୍ତ ପ୍ରଜାଙ୍କର ଆନନ୍ଦ ବୃଦ୍ଧି ପାଇଥିଲା । ସଚ୍ଚିଦାନନ୍ଦଙ୍କୁ ମାତ୍ର କେତେ ମାସ ହୋଇଥିଲାବେଳେ ପତ୍ନୀ ଗିରିରାଜ କୁମାରୀଙ୍କର ମୃତ୍ୟୁ ହେଲା । ରାଜା ଶିଶୁପୁତ୍ରର ଲାଳନ ପାଳନ ଭାର ରାଜମାତାଙ୍କ ହସ୍ତରେ ନ୍ୟସ୍ତ କଲେ ।

## ଦେଶ ଭ୍ରମଣ

ପ୍ରିୟତମା ପତ୍ନୀଙ୍କ ବିୟୋଗରେ ବାସୁଦେବଙ୍କ ଜୀବନ ଦୁର୍ବିଷହ ହୋଇପଡ଼ିବା ସ୍ୱାଭାବିକ । ସେ ନିଜର ମନ ପରିବର୍ତ୍ତନ ଲାଗି ଦେଶ ଭ୍ରମଣରେ ଯିବାକୁ ସ୍ଥିର କଲେ । ସେ ପ୍ରଥମେ ସମ୍ବଲପୁର ଯାଇ ସେଠାରେ ଅବସ୍ଥାପିତ ହୋଇଥିବା ପଲିଟିକାଲ ଏଜେଣ୍ଟ କର୍ଣ୍ଣେଲ ତୁଇଙ୍କ ସହିତ ଦେଖା କଲେ । ତାଙ୍କଠାରୁ ବହୁ ପରାମର୍ଶ ଲାଭ କରି ସେ କଟକ ଗଲେ । ସେତେବେଳେ କଟକକୁ କେବଳ ନଦୀପଥରେ ଯାତ୍ରା କରିବା ସୁବିଧାଜନକ ଥିଲା । ସେ ନୌକାରେ ମହାନଦୀ ଦେଇ ଗଲାବେଳେ ମହାନଦୀ ତୀରର ପ୍ରାକୃତିକ ଶୋଭା ସୌନ୍ଦର୍ଯ୍ୟ ଦେଖି ବିମୋହିତ ହୋଇପଡ଼ିଲେ । ତାଙ୍କର କବି ହୃଦୟ ଥିଲା । ସେ ସୌନ୍ଦର୍ଯ୍ୟରେ ଏତେ ଦୂର ଅଭିଭୂତ ହୋଇପଡ଼ିଲେ ଯେ, ସେ 'ଚିତ୍ରୋତ୍ପଳା' ନାମକ କାବ୍ୟ ରଚନା କଲେ । କଟକରେ ପହଞ୍ଚି ସେ ଉତ୍କଳ ଦୀପିକାର ସମ୍ପାଦକ ଗୌରୀଶଙ୍କର ରାୟଙ୍କୁ ସାକ୍ଷାତ୍ କଲେ । ସେ କଟକ ପ୍ରିଣ୍ଟିଂ କମ୍ପାନୀ ଓ ମିସନ ପ୍ରେସ ପ୍ରଭୃତି ବୁଲି ଦେଖିଲେ । ନିଜ ରାଜ୍ୟରେ ମଧ୍ୟ ସେହିଭଳି ଏକ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରିବାକୁ ମନସ୍ଥ କଲେ । କଟକରେ କମିସନର ଅଫିସ, ଜଜ୍‌କୋର୍ଟ, ଖ୍ରୀଷ୍ଟିଆନମାନଙ୍କ ଧର୍ମପୀଠଗୁଡ଼ିକୁ ପରିଦର୍ଶନ କରିଥିଲେ । ଏହାପରେ ସେ ଚାନ୍ଦବାଲିରୁ ଜାହାଜରେ କଲିକତା ଗଲେ । ସେଠାରେ ବିଖ୍ୟାତ ମନୀଷୀ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କୁ ସାକ୍ଷାତ୍ କଲେ । କଲିକତାରେ ସେ କାଳୀ ମନ୍ଦିର, ସଂସ୍କୃତ କଲେଜ, ପ୍ରେସିଡେନ୍‌ସି କଲେଜ, ଚିଡ଼ିଆଖାନା, ଯାଦୁଘର, ବୋଟାନିକାଲ ଗାର୍ଡେନ ପ୍ରଭୃତି ବୁଲି ଦେଖିଥିଲେ । ଏହାଛଡ଼ା ଶ୍ରୀରାମଚନ୍ଦ୍ରପୁର ଯାଇ ସେଠାରେ ଥିବା ଝୋଟକଳ, କାଗଜକଳ, ଲୁଗାକଳ ପ୍ରଭୃତି ବୁଲି ଦେଖିଥିଲେ ।

କଲିକତାରୁ ସୁତଳଦେବ କାଶୀ ଗଲେ । ସେଠାରେ ମଣିକର୍ଣ୍ଣିକା ଘାଟରେ ସ୍ନାନ କରି ବିଶ୍ୱନାଥ ଓ ଅନ୍ନପୂର୍ଣ୍ଣାଙ୍କୁ ଦର୍ଶନ କଲେ । ସେ କାଶୀର ମାନମନ୍ଦିର ପ୍ରତି ଆକୃଷ୍ଟ ହେଲେ ଓ ନିଜ ରାଜ୍ୟରେ ଏକ ବିଜ୍ଞାନାଗାର ପ୍ରତିଷ୍ଠାପାଇଁ ଇଚ୍ଛା ପୋଷଣ କଲେ । ବାଟରେ ସେ ଅଯୋଧ୍ୟାରେ ଓହ୍ଲାଇ ରାମମନ୍ଦିର ଓ ଅନ୍ୟାନ୍ୟ ତୀର୍ଥସ୍ଥଳୀଗୁଡ଼ିକ ଦର୍ଶନ କରି ଲକ୍ଷ୍ନୌ ଗଲେ । ସେଠାରେ ଦର୍ଶନୀୟ ସ୍ଥାନଗୁଡ଼ିକ ବୁଲିଲାପରେ କାନପୁର ଗଲେ । ସେଠାରେ ଆଧୁନିକ ଲୁଗାକଳ ବୁଲି ଦେଖିଲେ । ସେଠାରୁ ସେ ଦିଲ୍ଲୀ ଗଲେ । ଦିଲ୍ଲୀରେ ଲାଲକିଲ୍ଲା, କୁତବମିନାର ପ୍ରଭୃତି ଐତିହାସିକ ସ୍ଥାନମାନ ପରିଦର୍ଶନ କଲେ । ସେଠାରୁ ଆଗ୍ରା ଆସି ବିଖ୍ୟାତ ତାଜମହଲ ଦେଖିଲେ । ଶ୍ରୀକୃଷ୍ଣଙ୍କ ଲୀଳାଭୂମି ମଥୁରା ଓ ବୃନ୍ଦାବନ ଗଲେ । ଇଲାହାବାଦରେ ଦୁର୍ଗ ପ୍ରଭୃତି ଦେଖି ଗୟା ଆସିଲେ । ପିଣ୍ଡଦାନ କରିବାପରେ

ସେ ବୁଦ୍ଧଗୟା ଗଲେ । ସେଠାରେ ବହୁ ବୌଦ୍ଧମନ୍ଦିର ଓ ବୌଦ୍ଧକୀର୍ତ୍ତି ଦେଖିଲାପରେ ସେ ବୈଦ୍ୟନାଥ ଗଲେ । ଏହାପରେ ସେ ନିଜ ରାଜ୍ୟକୁ ଫେରିଲେ । ଏହିସବୁ ସ୍ଥାନ ପରିଭ୍ରମଣ ଫଳରେ ସେ ସ୍ୱାସ୍ଥ୍ୟ ଲାଭ ସଙ୍ଗେ ସଙ୍ଗେ ପ୍ରଭୂତ ଜ୍ଞାନ ଅର୍ଜନ କରିପାରିଥିଲେ । ସେସବୁର ବିନିଯୋଗ କରି ରାଜ୍ୟର ଶ୍ରୀବୃଦ୍ଧି ସାଧନରେ ବ୍ରତୀ ହେଲେ ।

## ଶାସନ ପ୍ରଣାଳୀ

ପୂର୍ବରୁ ରାଜସଭାକୁ ଦରବାର କୁହାଯାଉଥିଲା । ମାତ୍ର ୧୮୮୦ ଖ୍ରୀଷ୍ଟାବ୍ଦରେ ରାଜା ଏହି 'ଦରବାର' ଶବ୍ଦକୁ ଉଠାଇଦେଇ 'କାଉନସିଲ' ଶବ୍ଦ ବ୍ୟବହାର କରିବାକୁ ଆଦେଶ ଦେଲେ । ଏହି ସଭା ବା କାଉନସିଲରେ ନଅ ଜଣ ସଭ୍ୟ ରହିଲେ ।

ସାର୍ ବାସୁଦେବ ବାମଣ୍ଡାକୁ ତିନୋଟି ତହସିଲ୍‌ରେ ବିଭକ୍ତ କଲେ । ସେଗୁଡ଼ିକ ହେଲା ଦେବଗଡ଼, କୁଚିଣ୍ଡା ଓ ବାରକୋଟ । ଦେବଗଡ଼ ଓ କୁଚିଣ୍ଡାରେ ଜଣେ ପ୍ରଥମ ଶ୍ରେଣୀର ମାଜିଷ୍ଟ୍ରେଟ୍ ଓ ଅନ୍ୟାନ୍ୟ କର୍ମଚାରୀ ଏବଂ ବାରକୋଟପାଇଁ ଜଣେ ଦ୍ୱିତୀୟଶ୍ରେଣୀର ମାଜିଷ୍ଟ୍ରେଟ୍ ଓ ଅନ୍ୟାନ୍ୟ କର୍ମଚାରୀମାନ ନିଯୁକ୍ତ ହେଲେ । ସେମାନେ କଲେକ୍ଟରଙ୍କ କ୍ଷମତା ପାଇଲେ । ସେମାନେ ଉଭୟ ଦେୱାନୀ ଓ ଫୌଜଦାରୀ ମକଦ୍ଦମା ବିଚାର କରିପାରିବାର କ୍ଷମତା ପାଇଲେ । ରାଜଧାନୀ ଦେବଗଡ଼ରେ ଉଚ୍ଚ ଅଦାଲତ ସ୍ଥାପିତ ହେଲା । ଏହାକୁ ଅପିଲ ଅଦାଲତ କୁହାଗଲା । ଏଠାରେ ମଧ୍ୟ ଆଧୁନିକ କାରାଗାର ସ୍ଥାପିତ ହେଲା । ଦେବଗଡ଼, କୁଚିଣ୍ଡା, ବାରକୋଟ, ଗୌଡ଼ପାଲି ଓ ଗୋବିନ୍ଦପୁର ପ୍ରଭୃତି ସ୍ଥାନରେ ପୁଲିସ ଥାନାମାନ ବସାଗଲା ।

ରାଜଧାନୀ ଦେବଗଡ଼ରେ ଥାନା, ବିଚାରାଳୟ ପ୍ରଭୃତିପାଇଁ ଅଟ୍ଟାଳିକାମାନ ନିର୍ମାଣ କରାଗଲା । କାରାଗାରଟି ପୂର୍ବରୁ ମାଟି ପାଚେରିଦ୍ୱାରା ପରିବେଷ୍ଟିତ ହୋଇଥିଲା । ମାତ୍ର ଏହାକୁ ଭଙ୍ଗାଯାଇ ଇଟାରେ ନିର୍ମାଣ କରାଗଲା । ଏଗୁଡ଼ିକ ରାଜଧାନୀର ଶୋଭା ବିଶେଷ ଭାବରେ ବର୍ଦ୍ଧନ କଲା । କ୍ରମେ କୁଚିଣ୍ଡା ଓ ବାରକୋଟରେ କାର୍ଯ୍ୟାଳୟଗୁଡ଼ିକପାଇଁ ଅଟ୍ଟାଳିକାମାନ ନିର୍ମାଣ କରାଗଲା ।

ସାର୍ ବାସୁଦେବ ସୁଢଳଦେବ କୃଷିର ଉନ୍ନତିପାଇଁ ବିଶେଷ ଧ୍ୟାନ ଦେଇଥିଲେ । ରାଜସ୍ୱ ବିଭାଗ ନାମରେ ଏକ ନୂତନ ବିଭାଗ ଗଠିତ ହେଲା । କୃଷିର ଉନ୍ନତି ଏହାର ମୁଖ୍ୟ କାମ ହେଲା । କୃଷି ଉପଯୋଗୀ ସମସ୍ତ ଜମିକୁ ସେ ତିନି ଭାଗରେ ବିଭକ୍ତ କଲେ । ସେଗୁଡ଼ିକର ରାଜସ୍ୱ ନିର୍ଦ୍ଧାରିତ ହେଲା । ଆବାଦୀ

ଜମିକୁ ସର୍ଭେ କରାଯାଇ ଜମାଧାର୍ଯ୍ୟ କରାଗଲା । ପ୍ରତି ଦଶ ବର୍ଷରେ ରାଜ୍ୟର ସମସ୍ତ ଜମିର ଉନ୍ନତି ଓ ଅବନତିକ୍ରମେ ନିର୍ଦ୍ଧାରିତ ରାଜସ୍ୱର ହ୍ରାସ ବୃଦ୍ଧି ହେଲା । ନୂତନ ଆବାଦୀ ଜମିର ପରିମାଣ ନିର୍ଦ୍ଧାରଣ ଓ ଜମା ଧାର୍ଯ୍ୟ ପ୍ରଭୃତିପାଇଁ ଉଚ୍ଚଶ୍ରେଣୀୟ ବନ୍ଦୋବସ୍ତ ଅଫିସରମାନେ ନିଯୁକ୍ତ ହେଲେ । ଫଳରେ ରାଜ୍ୟର ରାଜସ୍ୱ ବୃଦ୍ଧି ପାଇଲା । ସାର୍ ବାସୁଦେବ ରାଜସିଂହାସନ ଆରୋହଣ କଲାବେଳେ ବାମଣ୍ଡା ରାଜ୍ୟର ଆୟ ମାତ୍ର ୬୦୦୦ ଟଙ୍କା ଥିଲା । ୧୮୭୫ ଖ୍ରୀଷ୍ଟାବ୍ଦ ବେଳକୁ ରାଜକୋଷର ଆୟ ୧୮୦୦୦ ଟଙ୍କାକୁ ବୃଦ୍ଧି ପାଇଥିବାର ଜଣାଯାଏ ।

ବାମଣ୍ଡା ରାଜ୍ୟର ଅଭୂତପୂର୍ବ ବିକାଶ ଦେଖି ସେତେବେଳକାର ପଲିଟିକାଲ ଏଜେଣ୍ଟ ଏଚ୍.ଏଚ୍. ପ୍ରିଷ୍ଟି ମନ୍ତବ୍ୟ ଦେଇଥିଲେ – ''ତାଙ୍କ ଶାସନରେ ବାମଣ୍ଡା ରାଜ୍ୟର ଯେଉଁ ଉନ୍ନତି ସାଧିତ ହୋଇଅଛି, ସେଥିପାଇଁ ସେ ପ୍ରଶଂସାର୍ହ । କେବଳ ଓଡ଼ିଶା କାହିଁକି, ଭାରତର ଅନ୍ୟ ପ୍ରାନ୍ତରେ ଥିବା କୌଣସି ଶାସକ ଏତେ କମ୍ ରାଜସ୍ୱଦ୍ୱାରା ଏପରି ବିକାଶ ଘଟାଇଥିବାର ଲକ୍ଷ୍ୟ କରାଯାଏ ନାହିଁ.... ।''

## ଜନହିତକର କାର୍ଯ୍ୟ

ପ୍ରଥମେ ସାର୍ ବାସୁଦେବ ରାଜ୍ୟ ଭିତରେ ଯାତାୟାତର ସୁବିଧାପାଇଁ ବହୁ ରାଜପଥ ନିର୍ମାଣ କରାଇଲେ । ସେଥିପାଇଁ ତାଙ୍କୁ ପ୍ରଚୁର ଅର୍ଥବ୍ୟୟ କରିବାକୁ ପଡ଼ିଲା । ସେତେବେଳେ ଇଞ୍ଜିନିଅରଙ୍କର ଅଭାବ ଥିଲା । ସେ ନିଜେ ମାନଚିତ୍ର ତିଆରି କରି କେଉଁ ପଥ କିପରି ଭାବରେ ନିର୍ମାଣ କଲେ ଅଳ୍ପ ବ୍ୟୟରେ ହୋଇପାରିବ, ତାହା ସ୍ଥିର କଲେ । ସେ ନିର୍ମାଣର ସମସ୍ତ ଦାୟିତ୍ୱ ମଧ ବହନ କରିଥିଲେ । ତାଙ୍କଦ୍ୱାରା ନିର୍ମିତ ହୋଇଥିବା ରାଜପଥମାନଙ୍କ ମଧ୍ୟରୁ କେବଳ ବାମଣ୍ଡା ରେଳ ଷ୍ଟେସନ୍‌ରୁ ଦେବଗଡ଼ ସହର ପର୍ଯ୍ୟନ୍ତ ଯାଇଥିବା ରାଜପଥର ଲମ୍ବ ହେଉଛି ୫୮ ମାଇଲ । ଏହି ପଥ ଅନେକ ସ୍ଥାନରେ ପାହାଡ଼ ଉପର ଦେଇ ଯାଇଅଛି । ପାହାଡ଼ ଉପର ଦେଇ ପଥ ନିର୍ମାଣ କୌଶଳ ଓ ସ୍ଥପତି ଏବେବି ସମସ୍ତଙ୍କୁ ଆଶ୍ଚର୍ଯ୍ୟ କରେ । ସେ ମଧ ଇଟା ଓ ଲୁହାରେ ସେତୁମାନ ନିର୍ମାଣ କରାଇଥିଲେ । ରାଜା ସୁଢଳଦେବ କେବଳ କାମ ବରାଦ କରିଦେଇ ଯେ ସନ୍ତୁଷ୍ଟ ରହୁଥିଲେ ତାହା ନୁହେଁ, ସେ ପ୍ରତ୍ୟେକ କାର୍ଯ୍ୟ ବୁଝାସୁଝା କରୁଥିଲେ । ନିଜେ ମୂଲିଆମାନଙ୍କ ସାଙ୍ଗରେ ରହି କାର୍ଯ୍ୟ ପରିଚାଳନା କରୁଥିଲେ । କୁଚିଣ୍ଡା ନିକଟସ୍ଥ ଗୋଟିଏ ଘାଟି ରାସ୍ତା ନିର୍ମାଣ କଲାବେଳେ ସେ ତିନି ସପ୍ତାହ କାଳ ନିର୍ମାଣ ସ୍ଥାନରେ ରହିଥିବାର ୧୮୯୧ ମସିହା ଇଂରେଜ ପ୍ରଶାସକଙ୍କ ରିପୋର୍ଟରୁ ଜଣାଯାଏ । ବାମଣ୍ଡା ଷ୍ଟେସନରୁ ଦେବଗଡ଼ ସହର ପର୍ଯ୍ୟନ୍ତ ଯାଇଥିବା ରାଜପଥ

ବ୍ୟତୀତ ସେ ଦେବଗଡ଼ଠାରୁ ତାଳଚେର, ରେଢ଼ାଖୋଲ, ପାଲଲହଡ଼ା ଓ ବଣାଇଁର ସୀମାନ୍ତ ପର୍ଯ୍ୟନ୍ତ ରାଜପଥଗୁଡ଼ିକ ନିର୍ମାଣ କରାଇଥିଲେ ।

ରାଜା ମଧ୍ୟ ରେଳରାସ୍ତାର ବିକାଶପାଇଁ ଦୃଷ୍ଟି ଦେଇଥିଲେ । ରାଜ୍ୟରେ ରେଳ ରାସ୍ତାର ପ୍ରସାରପାଇଁ ବେଙ୍ଗଲ-ନାଗପୁର ରେଲୱେକୁ ସହସ୍ରାଧିକ ଏକର ଜମି ଦାନ କରିଥିଲେ ।

କାଶୀ ମାନମନ୍ଦିର ଭଳି ବାସୁଦେବ ସୁଢ଼ଳଦେବ ରାଜ୍ୟରେ ଏକ ମାନମନ୍ଦିର ଓ ବିଜ୍ଞାନାଗାର ସ୍ଥାପନ କରିଥିଲେ । ଏଥିପାଇଁ ତାଙ୍କୁ ରଞ୍ଜନରଶ୍ମି, ଦୂରବୀକ୍ଷଣ ଯନ୍ତ୍ର, ଅଣୁବୀକ୍ଷଣ ଯନ୍ତ୍ର ଓ ତଡ଼ିତ୍ ପ୍ରସ୍ତୁତ କରିବାପାଇଁ ଯନ୍ତ୍ରମାନ କ୍ରୟ କରିବାରେ ଅଜସ୍ର ଅର୍ଥ ବ୍ୟୟ କରିବାକୁ ପଡ଼ିଲା । ସେଗୁଡ଼ିକର ବ୍ୟବହାରପାଇଁ ଗ୍ରନ୍ଥମାନ ମଧ୍ୟ ସେ ସଂଗ୍ରହ କରିଥିଲେ । କଟକ ରେଭେନ୍ସା କଲେଜର ଅଧ୍ୟାପକ ଯୋଗେଶଚନ୍ଦ୍ର ରାୟ ତାଙ୍କ ନିମନ୍ତ୍ରଣକ୍ରମେ ବିଜ୍ଞାନାଗାର ପରିଦର୍ଶନ କରିଥିଲେ । ତାଙ୍କ ପରାମର୍ଶ ଅନୁସାରେ ବିଜ୍ଞାନାଗାରକୁ ସମ୍ପୂର୍ଣ୍ଣ କରିବାପାଇଁ ଆବଶ୍ୟକୀୟ ପଦକ୍ଷେପ ନେଇଥିଲେ ।

୧୮୮୬ ଖ୍ରୀଷ୍ଟାବ୍ଦରେ ରାଜା ଦେବଗଡ଼ଠାରେ ଜଗନ୍ନାଥବଲ୍ଲଭ ନାମରେ ଏକ ମୁଦ୍ରାଯନ୍ତ୍ର ପ୍ରତିଷ୍ଠା କରିଥିଲେ । କିଛି ବର୍ଷ ପରେ ଏହି ପ୍ରେସ୍‌ରୁ 'ସମ୍ବଲପୁର ହିତୈଷିଣୀ' ନାମକ ଏକ ପତ୍ରିକା ତାଙ୍କ ପୃଷ୍ଠପୋଷକତାରେ ବାହାରିଲା । ଏହାର ବହୁ ପୂର୍ବରୁ ରାଜା କଟକରେ 'ସୁଢ଼ଳ' ନାମକ ଏକ ପ୍ରେସ ସ୍ଥାପନ କରିଥିଲେ । ତହିଁରେ ରାଜାଙ୍କ ଓ ଅନ୍ୟାନ୍ୟ ପୁସ୍ତକମାନଙ୍କର ମୁଦ୍ରଣ କାର୍ଯ୍ୟ ହେଉଥିଲା । ଏହାର ଉତ୍ତମ ପରିଚାଳନା ନିମନ୍ତେ ଏକାଂଶ ଦାନ କରି ଅବଶିଷ୍ଟାଂଶ 'ଜଗନ୍ନାଥବଲ୍ଲଭ ପ୍ରେସ'ରେ ମିଶାଇଦେଲେ ।

## ଦାକ୍ଷିଣାତ୍ୟ ପରିଭ୍ରମଣ

ରାଜା ଦ୍ୱିତୀୟଥର ଦେଶ ଭ୍ରମଣରେ ଦକ୍ଷିଣଆଡ଼କୁ ଗଲେ । ସେ ପ୍ରଥମେ ନାଗପୁର ଯାଇ ସେଠାରେ ଅମ୍ବାଚାରୀ ଜଳାଶୟର ନିର୍ମାଣ ପ୍ରଣାଳୀ ଓ ଜଳସେଚନ ବ୍ୟବସ୍ଥାର ଅନୁଧ୍ୟାନ କଲେ । ସେ ନାସିକଠାରେ ଓହ୍ଲାଇ ଗୋଦାବରୀ ନଦୀରେ ସ୍ନାନ ତର୍ପଣ କଲେ । ନାସିକରୁ ବମ୍ବେ ଯାଇ ସେଠାରେ ଏଲିଫ୍ୟାଣ୍ଟା ଦ୍ୱୀପ, ବିଭିନ୍ନ ଉଦ୍ୟାନ ପ୍ରଭୃତି ଦେଖି ବିମୋହିତ ହୋଇପଡ଼ିଥିଲେ । ବିଶେଷତଃ, ସେ ଭିକ୍ଟୋରିଆ ଟର୍ମିନସ ଷ୍ଟେସନର ନିର୍ମାଣ କୌଶଳ ଦେଖି ଅଭିଭୂତ ହୋଇପଡ଼ିଲେ । ବମ୍ବେରୁ ଅହମଦାବାଦ ଯାଇ ଆଧୁନିକ ଲୁଗାକଳ ପ୍ରଭୃତି ଦେଖିଲେ । ପୁନାରେ ଛତ୍ରପତି ଶିବାଜିଙ୍କ ନାନା କୀର୍ତ୍ତିମାନ ଦେଖି ଅପାର

ଆନନ୍ଦ ଅନୁଭବ କଲେ । ବାଙ୍ଗାଲୋର ଯାଇ ସେଠାର ରାଜପଥଗୁଡ଼ିକ ଓ ରାଜପଥର ଉଭୟ ପାର୍ଶ୍ୱରେ ଥିବା ଅଟ୍ଟାଳିକାଗୁଡ଼ିକ ଦେଖି ସେହି ଢାଞ୍ଚାରେ ନିଜ ରାଜଧାନୀରେ ରାସ୍ତାଘାଟ ଓ ଅଟ୍ଟାଳିକାମାନ ନିର୍ମାଣ କରିବାକୁ ମନସ୍ଥ କଲେ । ମହୀଶୂରରେ ସୁନାଖଣି ଦେଖି ସେ ତ୍ରିଭାଙ୍କୁର ଦେଇ ରାମେଶ୍ୱର ଗଲେ । ସେଠାରେ ଦର୍ଶନୀୟ ସ୍ଥାନଗୁଡ଼ିକ ବୁଲି ଦେଖିଲାପରେ ତାଞ୍ଜୋର, କର୍ଣ୍ଣାଟ ଦେଇ ତ୍ରିଚିନାପଲ୍ଲୀ ଗଲେ । ସେଠାରେ ଜରି ଓ ରେଶମ ବସ୍ତ୍ର ବୟନ କାର୍ଯ୍ୟ ପର୍ଯ୍ୟବେକ୍ଷଣ କଲେ । ଏହାପରେ ସେ ମାନ୍ଦ୍ରାଜ ଗଲେ । ସେଣ୍ଟ ଜର୍ଜ ଫୋର୍ଟ, ସମୁଦ୍ର ତଟଭୂମି ବା ମେରାଇନ ବିଚ୍ ପ୍ରଭୃତି ଦେଖି ମୁଗ୍ଧ ହେଲେ । ସେଠାରୁ କାଞ୍ଚନଗର ଓ ମଦୁରାଇ ଗଲେ । ସେଠାର ପ୍ରସିଦ୍ଧ ମୀନାକ୍ଷୀ ମନ୍ଦିର ଓ ପାଣ୍ଡ୍ୟ ରାଜାମାନଙ୍କର ପୁରାତନ ହିନ୍ଦୁ କୀର୍ତ୍ତିମାନ ପରିଦର୍ଶନ କଲେ । ସେ ସମୁଦ୍ର କୂଳରେ ଥିବା ପର୍ବତମାଳା ଉପରେ ଅବସ୍ଥିତ ଭାଇଜାଗପଟମ୍ ସ୍ୱାସ୍ଥ୍ୟ ନିବାସରେ କିଛି କାଳ କଟାଇଲେ । ପରେ ଓଡ଼ିଶାର ଗଜପତି ରାଜା ପୁରୁଷୋତ୍ତମଦେବଙ୍କଦ୍ୱାରା ସ୍ଥାପିତ ସୀମାଞ୍ଚଳ ମନ୍ଦିର ପରିଦର୍ଶନ କଲେ । ସେଠାରୁ ବିଜୟନଗରକୁ ଆସି ପୁଣି ସେଠାରୁ ବେଜୱାଡ଼ା ଦେଇ ହାଇଦ୍ରାବାଦ ଗଲେ । ଗୋଲକୁଣ୍ଡା ଦୁର୍ଗ, ଚାରମିନାର, ହୀରାଖଣି ପ୍ରଭୃତି ଦେଖି ଆନନ୍ଦ ଅନୁଭବ କଲେ । ସେଠାରୁ ଭୁସାୱେଲ ଦେଇ ଜବଲପୁର ଗଲେ । ସେଠାରେ ବିଖ୍ୟାତ ମାର୍ବଲ ପାହାଡ଼ ଓ ବିନ୍ଧ୍ୟପର୍ବତ ନିକଟରେ ନର୍ମଦାର ବିସ୍ତୃତ ଜଳରାଶିର ଶୋଭା ଉପଭୋଗ କଲେ । ଶେଷରେ କଟନି, ବିଳାସପୁର ଦେଇ ନିଜ ରାଜ୍ୟକୁ ଫେରିଲେ । ଦ୍ୱିତୀୟବାର ଭ୍ରମଣ କାଳରେ ସେ ବହୁ ଜ୍ଞାନ ଓ ଅଭିଜ୍ଞତା ହାସଲ କରିଥିଲେ ।

## ଉନ୍ନତିମୂଳକ କାର୍ଯ୍ୟ

ନାଗପୁରରେ କମଳାଲେମ୍ବୁ ଚାଷ ହେଉଥିବାର ସେ ଦେଖିଥିଲେ । ନିଜ ରାଜ୍ୟରେ କମଳା ଚାଷ କରିବାପାଇଁ ଯତ୍ନ ନେଲେ । ଏଥିପାଇଁ ଚାଷ ଉପଯୋଗୀ ଜମି ବାଛି ସେଥିରେ କମଳା ଚାଷ ଆରମ୍ଭ କଲେ । ରାଜ୍ୟରେ କମଳା ଚାହିଦା ମେଣ୍ଟାଇ ଅନ୍ୟ ପ୍ରଦେଶକୁ ପଠାଗଲା । ଫଳରେ ପ୍ରଜାମାନେ ଲାଭବାନ୍ ହେଲେ ।

କୃଷି ରାଜ୍ୟର ପ୍ରଧାନ ଜୀବିକା ନିର୍ବାହ ପନ୍ଥା ହୋଇଥିବାରୁ କୃଷିର ଉନ୍ନତି ଦିଗରେ ସାର୍ ସୁଢଳଦେବ ବିଶେଷ ଦୃଷ୍ଟି ଦେଲେ । ଦେବଗଡ଼ରୁ ଦଶ ମାଇଲ ଦୂରରେ ଥିବା ବଲମ୍ ନାମକ ସ୍ଥାନରେ ଏକ ଆଦର୍ଶ କୃଷିକ୍ଷେତ୍ର ପ୍ରତିଷ୍ଠା କଲେ । ସେଠାରେ ୧୩୬ ପ୍ରକାର ଧାନ ଚାଷ କରାଗଲା । କର୍ମଚାରୀଙ୍କ କାର୍ଯ୍ୟ ତଦାରଖପାଇଁ କୃଷିକ୍ଷେତ୍ରଗୁଡ଼ିକୁ ନିୟମିତଭାବେ ପରିଦର୍ଶନ କଲେ । ଜଳସେଚନର

ବ୍ୟବସ୍ଥା ମଧ୍ୟ ହେଲା । ଫଳରେ ଶସ୍ୟ ଉତ୍ପାଦନ ବୃଦ୍ଧି ପାଇଲା । ଅଭାବ ସମୟରେ ରାଜାଙ୍କ ଆଦେଶ ବିନା ଶସ୍ୟ ବାହାରକୁ ପଠାଇବା ନିଷେଧ ହେଲା ।

ରାଜା ମଧ୍ୟ ସ୍ଥାୟୀ ଜଳସେଚନ ଉପରେ ଗୁରୁତ୍ୱ ଦେଇଥିଲେ । ଦେବଗଡ଼ର ଉତ୍ତର ଦିଗରେ ପ୍ରଧାନପାଟ ଜଳପ୍ରପାତ ଅବସ୍ଥିତ । ଏହାର ଜଳରାଶିକୁ ଆବଦ୍ଧ କରି ଦେବଗଡ଼ର ଅଧିବାସୀମାନଙ୍କ ବ୍ୟବହାରରେ ଲଗାଇବାପାଇଁ ସେ ବ୍ୟବସ୍ଥା କଲେ । ପର୍ବତର ପାଦଦେଶରୁ ଇଟାଦ୍ୱାରା ପ୍ରଣାଳୀମାନ ତିଆରି କରାଇଲେ । ସେହି ବାଟେ ଜଳକୁ ନେଇ ଗୋଟିଏ ସ୍ଥାନରେ ଜମା ରଖାଗଲା । ସେଠାରୁ ନଳଦ୍ୱାରା ସହରକୁ ଜଳଯୋଗାଣ ବ୍ୟବସ୍ଥା କଲେ । ଏହି ପାଟର ଜଳ ଏବେ ରାଜଧାନୀର ସମସ୍ତ କାର୍ଯ୍ୟରେ ବ୍ୟବହୃତ ହେଉଅଛି । ସେ ମଧ୍ୟ ଏଥିପାଇଁ ଆଉ କେତେ ପଦକ୍ଷେପ ନେଲେ । ନାଗପୁରର ଅମ୍ବାଚାରୀ ଜଳାଶୟ ଭଳି ସେ ବାମଣ୍ଡାର କଳାଜିରା ଓ ମତୁଆଳୀ ନାମକ ଦୁଇ ପାହାଡ଼ିଆ ନଦୀରେ ବନ୍ଧ ପକାଇଲେ । ସେହି ଆବଦ୍ଧ ଜଳକୁ ସେ ଆନିକଟ ସାହାଯ୍ୟରେ ଜମିରେ ମଡ଼ାଇବାର ବ୍ୟବସ୍ଥା କଲେ । କୌଣସି ବିଶେଷଜ୍ଞମାନଙ୍କର ସାହାଯ୍ୟ ନ ନେଇ ସେ ଏପରି ବ୍ୟବସ୍ଥା କରାଇ ତାଙ୍କର ଅସାଧାରଣ ଶକ୍ତି ଓ ପ୍ରତିଭାର ପରିଚୟ ଦେଇଥିଲେ ।

ସେତେବେଳକାର ମଧ୍ୟପ୍ରଦେଶର କମିସନରଙ୍କର ଚିଫ୍‌ ସେକ୍ରେଟେରୀ ଏଫ୍‌.ସି. ଆଣ୍ଡରସନ ତାଙ୍କ କାର୍ଯ୍ୟର ପ୍ରଶଂସା କରି ମନ୍ତବ୍ୟ ଦେଇଥିଲେ, ‘‘ବାମଣ୍ଡା ରାଜ୍ୟର ରାଜା ସୁଡ଼ଳଦେବ ନିଜେ ସର୍ବବିଧ କାର୍ଯ୍ୟ ପର୍ଯ୍ୟବେକ୍ଷଣ କରି କେବଳ ବାମଣ୍ଡା ରାଜ୍ୟ ନୁହେଁ, ତାଙ୍କ ପ୍ରତିବେଶୀ ରାଜ୍ୟର ନରପତିମାନଙ୍କର ଆଦର୍ଶ ସ୍ଥାନୀୟ ହୋଇ ରହିଛନ୍ତି... ।’’

ରାଜା ସୁଡ଼ଳଦେବ ବଳମ୍‌ କୃଷିକ୍ଷେତ୍ର ସାଙ୍ଗକୁ ଏକ ଆଦର୍ଶ ଉଦ୍ୟାନ ମଧ୍ୟ ସ୍ଥାପନ କରିଥିଲେ । ସେଠାରେ ପାଟଣା, ମାଲଦା ଓ ଦକ୍ଷିଣର ଭଲ ଭଲ ଚାରା ଆମ୍ବଗଛ ଆଣି ଲଗାଇଲେ । ନାନାପ୍ରକାର ପନିପରିବା ଓ ଶାକସବଜି ମଧ୍ୟ ତହିଁରୁ ଉତ୍ପନ୍ନ ହେଲା । ପାହାଡ଼ର ଢାଲୁ ଦେଶରେ ବିଶ୍ରାମ ନେବାପାଇଁ ସୁନ୍ଦର ସୁନ୍ଦର ଗୃହମାନ ନିର୍ମାଣ କରାଇଲେ । ସେଠାରେ ଯେଉଁ ଦେବମନ୍ଦିର ନିର୍ମିତ ହୋଇଥିଲା, ତାହା ଏପର୍ଯ୍ୟନ୍ତ ଅଛି ।

ରାଜଧାନୀ ଦେବଗଡ଼ରେ ମଧ୍ୟ ଗୋଟିଏ ସୁନ୍ଦର ଉଦ୍ୟାନ ତିଆରି କରିଥିଲେ । ଏଥିରେ ବିଭିନ୍ନ ଦେଶରୁ ଆସିଥିବା ନାନା ଜାତିର ଫୁଲ ଗଛ ଦେଖିବାକୁ ମିଳେ । ବହୁ ରଙ୍ଗର ଓ ବହୁ ଜାତିର ଫୁଲଗଛରେ ଉଦ୍ୟାନଟି ଶୋଭା ପାଉଅଛି । ବହୁ ଜାତିର ଫଳ ଗଛ ମଧ୍ୟ ଲଗା ହୋଇଅଛି । ବିଭିନ୍ନ ଋତୁରେ ଉତ୍ପନ୍ନ ହେଉଥିବା

ଫନିଫଳିବା ଓ ଶାକସବଜି ରାଜ-ପରିବାରର ଚାହିଦା ମେଣ୍ଟାଇଥାଏ । ଉଦ୍ୟାନର ବିଭିନ୍ନ ସ୍ଥାନରେ ହାତୀ, ଘୋଡ଼ା, ବାଘ, ହରିଣ ପ୍ରଭୃତିଙ୍କର ମୂର୍ତ୍ତି ଓ ନାନା ଦେଶର ନରନାରୀଙ୍କର ମୂର୍ତ୍ତି ଦର୍ଶକମାନଙ୍କର ଚିତ୍ତ ହରଣ କରେ ।

ରାଜା ଏହି ଉଦ୍ୟାନରେ ପ୍ରଥମଥରପାଇଁ ଆଳୁ ଚାଷ ଆରମ୍ଭ କଲେ । କାଳକ୍ରମେ ଏହା ଲୋକଙ୍କଦ୍ୱାରା ଆଦୃତ ହୋଇଥିବାର ଜଣାଯାଏ ।

ବନ୍ଦୀମାନଙ୍କର ଶାରୀରିକ ତଥା ବୌଦ୍ଧିକ ଉନ୍ନତିପାଇଁ ସେ ସର୍ବବିଧ ଚେଷ୍ଟା କରିଥିଲେ । ସେମାନଙ୍କର ରହିବାର ସୁବିଧା ନିମନ୍ତେ ପକ୍କା ଗୃହ ନିର୍ମିତ ହେଲା । ଏହି ଗୃହ ଏପରିକି ରାଜ-ପରିବାର ରହୁଥିବା ଗୃହଠାରୁ ଉତ୍ତମ ଥିଲା ବୋଲି ୧୮୯୯ ପ୍ରଶାସନିକ ରିପୋର୍ଟରୁ ଜଣାଯାଏ ।

ରାଜ୍ୟରେ ନିଜର ଡାକବିଭାଗ ପ୍ରତିଷ୍ଠା ରାଜା ସୁଢଳଦେବଙ୍କର ଏକ ମହାନ୍ କୀର୍ତ୍ତି । ରାଜ୍ୟ ଭିତରେ ଚିଠିପତ୍ରଦେବାପାଇଁ ଓ ବାହାର ସହିତ ସମ୍ପର୍କ ରଖିବାପାଇଁ ସାର୍ ସୁଢଳଦେବ ଏହି ବିଭାଗ ସୃଷ୍ଟି କଲେ । ରାଜ୍ୟ ଭିତରେ ଚିଠିପତ୍ରଦେବାପାଇଁ ଦୁଇ ପଇସା ଓ ରାଜ୍ୟ ବାହାରକୁ ଯିବାପାଇଁ ଏକ ଅଣା ଡାକଟିକେଟ ଲଗାଇବାକୁ ପଡୁଥିଲା । ଏହାଦ୍ୱାରା ପ୍ରଜାମାନଙ୍କର ଅଶେଷ ମଙ୍ଗଳ ସାଧିତ ହେଲା । ଭାରତ ସରକାରଙ୍କ ଡାକ କର୍ତ୍ତୃପକ୍ଷ କ୍ରମେ ଏହି ବ୍ୟବସ୍ଥା ନିଜ ହାତକୁ ନେବାକୁ ରାଜାଙ୍କୁ ପ୍ରସ୍ତାବ ଦେଲେ । ରାଜା ପ୍ରଥମେ ଏଥିରେ ଆଗ୍ରହ ଦେଖାଇ ନ ଥିଲେ । ମାତ୍ର ଡାକବିଭାଗ କର୍ତ୍ତୃପକ୍ଷଙ୍କ ବାରମ୍ବାର ଅନୁରୋଧ ଫଳରେ ଏହାର ପରିଚାଳନା ଭାର ଭାରତ ସରକାରଙ୍କ ହସ୍ତରେ ନ୍ୟସ୍ତ କଲେ । ଏହି ନୂତନ ବ୍ୟବସ୍ଥା ୧୮୯୫ ଜାନୁଆରୀ ମାସ ପହିଲାରୁ କାର୍ଯ୍ୟକାରୀ ହେଲା ।

ସାର୍ ସୁଢଳଦେବ ମଧ୍ୟ ରାଜ୍ୟରେ ନିଜ ପକ୍ଷରୁ ଟେଲିଫୋନ ବ୍ୟବସ୍ଥା କରିବାପାଇଁ ଚେଷ୍ଟା କଲେ । ଦେବଗଡ଼ ଓ ଅନ୍ୟାନ୍ୟ ପ୍ରଧାନ ସହରଗୁଡ଼ିକରେ ଟେଲିଫୋନ ସଂଯୋଗପାଇଁ ସେ ଭାରତ ସରକାରଙ୍କର ଅନୁମତି ଲୋଡ଼ିଲେ । ମାତ୍ର କୋଡ଼ିଏ ବର୍ଷ ପର୍ଯ୍ୟନ୍ତ ଏହି ବ୍ୟବସ୍ଥା ନିଜ ହାତରେ ରଖିପାରିବାର ବ୍ୟବସ୍ଥା ଥିବାରୁ ସେ ଭାରତ ସରକାରଙ୍କୁ ଟେଲିଫୋନ୍ ବ୍ୟବସ୍ଥା ପ୍ରବର୍ତ୍ତନ କରିବାକୁ ପ୍ରସ୍ତାବ ଦେଲେ । ସେ ପ୍ରସ୍ତାବକୁ ମଧ୍ୟ ମଞ୍ଜୁର କରାଇଲେ । ସେତେବେଳେ ଦେଶରେ ନୂତନ କରି ଟେଲିଫୋନ ବ୍ୟବସ୍ଥା ଆରମ୍ଭ ହୋଇଥାଏ । ଭାରତର ତେଣୁ ଖୁବ୍ କମ୍ ଅଞ୍ଚଳରେ ଏ ବ୍ୟବସ୍ଥାର ପ୍ରବର୍ତ୍ତନ ହୋଇଥିଲା । ୧୯୦୦ ଖ୍ରୀଷ୍ଟାବ୍ଦରେ ବାମଣ୍ଡାରେ ଟେଲିଫୋନ୍ ବ୍ୟବସ୍ଥାର ପ୍ରବର୍ତ୍ତନ ହେଲା ଓ ଏହା

୧୯୦୧ରେ ଶେଷ ହେଲା । ବାମଣ୍ଡା ସହିତ କୁଚିଣ୍ଡା, ଦେବଗଡ଼ ପ୍ରଭୃତିର ସଂଯୋଗ ସ୍ଥାପିତ ହେଲା । ଏହା ସେତେବେଳେ ଦେଶର ସବୁଠାରୁ ଦୀର୍ଘତମ ଟେଲିଫୋନ୍ ଲାଇନ ବୋଲି ବିବେଚିତ ହୋଇଥିଲା ଓ ଏଥିପାଇଁ ରାଜାଙ୍କୁ କଲିକତାର ସମ୍ବାଦପତ୍ରମାନଙ୍କରେ ପ୍ରଶଂସା କରାଯାଇଥିଲା ।

୧୯୦୩ ଖ୍ରୀଷ୍ଟାବ୍ଦରେ ସାର୍ ସୁଢଳଦେବ ବହୁ ଅର୍ଥ ବ୍ୟୟ କରି ମଟରକାର କ୍ରୟ କରିଥିଲେ ।

ରାଜା ମଧ୍ୟ ରାଜ୍ୟର ଜଙ୍ଗଲ ସମ୍ପଦର ପୂର୍ଣ୍ଣ ବିକାଶ ଘଟାଇଥିଲେ । ବାମଣ୍ଡା ରାଜ୍ୟ ସେତେବେଳେ ଜଙ୍ଗଲ ସମ୍ପଦପାଇଁ ପ୍ରସିଦ୍ଧ ଥିଲା । ତହିଁରୁ ସେ ଅର୍ଥାଗମର ପନ୍ଥା ବାହାର କରିବାକୁ ଉଦ୍ୟମ କଲେ । ସେତେବେଳେ ବେଙ୍ଗଲ-ନାଗପୁର ରେଲକମ୍ପାନୀ ରେଲରାସ୍ତାପାଇଁ କାଠର ସ୍ଲିପର୍ ଦରକାର କରୁଥିଲା । ସାର୍ ସୁଢଳଦେବ ଏହି ସ୍ଲିପର୍ ଯୋଗାଇବାକୁ ଚୁକ୍ତିବଦ୍ଧ ହେଲେ । ଗ୍ରାମ୍ୟ ମିସ୍ତ୍ରିଙ୍କଦ୍ୱାରା ସ୍ଲିପର୍ ତିଆରି କରିବା ଲାଭଜନକ ନ ଥିଲା । ସେଥିପାଇଁ ସେ ବିଲାତରୁ କରତକଳ ଆଣି ରାଜ୍ୟରେ ବସାଇଲେ । ଏଥିପାଇଁ ତାଙ୍କୁ ଅଜସ୍ର ଅର୍ଥବ୍ୟୟ କରିବାକୁ ପଡ଼ିଲା । ସେ ଗ୍ରାମ୍ୟ ମିସ୍ତ୍ରିମାନଙ୍କୁ ଉପଯୁକ୍ତ ତାଲିମଦେବାପାଇଁ ଜଣେ ଇଂରେଜ ମେକାନିକଙ୍କୁ ନିଯୁକ୍ତ କଲେ । ଏହି ସ୍ଲିପର୍ ବ୍ୟବସାୟରୁ ପ୍ରଚୁର ଧନାଗମ ହେଲା । ଉପାର୍ଜିତ ଲକ୍ଷ ଲକ୍ଷ ଟଙ୍କା ହାତୀ ପିଠିରେ ଲଦା ହୋଇ ଅଣାଯାଉଥିଲା । ୧୯୦୨ ଖ୍ରୀଷ୍ଟାବ୍ଦରେ ରାଜ୍ୟର ବାର୍ଷିକ ଆୟ ୧୭୨,୩୧୦ଟଙ୍କା ହୋଇଥିବାର ଜଣାଯାଏ ।

ରାଜ୍ୟର ବାଣିଜ୍ୟ ବ୍ୟବସାୟ ବୃଦ୍ଧିପାଇଁ ରାଜା ଚେଷ୍ଟା କରିଥିଲେ । ସ୍ଥଳପଥ ଅପେକ୍ଷା ଜଳପଥ ସୁବିଧା ଥିବାରୁ ସେ ବ୍ରାହ୍ମଣୀ ନଦୀକୁ ନୌକା ଚଳାଚଳର ଉପଯୋଗୀ କରିଥିଲେ । ଏଥିପାଇଁ ଡିନାମାଇଟ୍‌ଦ୍ୱାରା ନଦୀ ଭିତରର ପାହାଡ଼ଗୁଡ଼ିକୁ ଚୂନା କରିବାକୁ ପଡ଼ିଥିଲା । ଏହି ବାଟରେ ବାମଣ୍ଡାରୁ ଶାଳ କାଠ କଟକ ପଠାଗଲା । ପରେ ପରେ ରାଶି ପ୍ରଭୃତି ତୈଳବୀଜ ଜିନିଷ ନୌକାରେ କଟକ ପଠାଗଲା । କଟକରୁ ମଧ୍ୟ ଲୁଣ, ଲୁଗା ଓ ଅନ୍ୟାନ୍ୟ ନିତ୍ୟ-ବ୍ୟବହାର୍ଯ୍ୟ ପଦାର୍ଥ ବାମଣ୍ଡାକୁ ଆସିଲା । କାଠ କାରବାରପାଇଁ କଲିକତାର ନିମତାଲା ଘାଟରେ ଏକ କେନ୍ଦ୍ର ପ୍ରତିଷ୍ଠା କରାଗଲା ।

ସାର୍ ବାସୁଦେବ ସୁଢଳଦେବଙ୍କ ରାଜତ୍ୱ କାଳରେ କୁଲି ଚାଲାଣ ନିଷିଦ୍ଧ ହେଲା । ବାମଣ୍ଡାର ଲୋକସଂଖ୍ୟା କମ୍ ଥିଲା । ଦ୍ୱିତୀୟରେ, ନିକଟବର୍ତ୍ତୀ ରାଜ୍ୟମାନଙ୍କରୁ ବହୁଲୋକେ ବାମଣ୍ଡାକୁ ଆସି ଜୀବିକା ନିର୍ବାହ କରୁଥିଲେ । ସୁତରାଂ ବାମଣ୍ଡାରୁ ଲୋକେ ଅନ୍ୟତ୍ର ଯିବାର ଆବଶ୍ୟକତା ନ ଥିଲା । ଏହାକୁ

ଆଇନଦ୍ୱାରା ବନ୍ଦ କରାଗଲା । ରାଜ୍ୟରେ ମଦ୍ୟପାନ ବନ୍ଦ ହେଲା । ତେବେ ପର୍ବପର୍ବାଣିରେ ଆଦିବାସୀମାନଙ୍କୁ ମଦ୍ୟପାନ କରିବାକୁ ଅନୁମତି ଦିଆଗଲା । ଅନ୍ୟ ସମୟରେ କାହା ଘରୁ ମଦ ବାହାରିଲେ, ତାକୁ ଦଣ୍ଡଭୋଗ କରିବାକୁ ପଡ଼ିଲା । ଅଫିମ ଖାଇବା ମଧ ଆଇନଦ୍ୱାରା ବନ୍ଦ ହେଲା । ଅଫିମଖୋରମାନଙ୍କ ନାମ ପୁଲିସ ଥାନାରେ ରହିଲା । ସେମାନଙ୍କୁ ନିୟମିତ ପରିମାଣରେ ଅଫିମ କିଣି ଖାଇବାକୁ ଅନୁମତି ମିଳିଲା ।

୧୮୯୪ ଖ୍ରୀଷ୍ଟାବ୍ଦରେ ମଧପ୍ରଦେଶର ସରକାରୀ ରିପୋର୍ଟରେ ଉଲ୍ଲେଖ ଅଛି ଯେ ବାମଣ୍ଡା କେବଳ ଗୋଟିଏ ରାଜ୍ୟ ଯେଉଁଠାରେ କି ଚୋରା ଅଫିମ କାରବାର ସମ୍ପୂର୍ଣ୍ଣଭାବେ ରୋକାଯାଇପାରିଛି । ଏହା ରାଜାଙ୍କ ଉତ୍ତମ ଶାସନର ଆଉ ଏକ ନମୁନା ।

ପି. ଇ. ହର୍ବଟ ନାମକ ଜଣେ ଇଂରେଜ ଧର୍ମଯାଜକ ୧୮୯୭ ମସିହା ଅପ୍ରେଲ ମାସ ୨୬ ତାରିଖରେ ତାଙ୍କ ରିପୋର୍ଟରେ ଲେଖିଥିଲେ – "ରାଜାଙ୍କ ଏହିଭଳି ବିଜ୍ଞ ନୀତି ଯେ ଅତି ପ୍ରଶଂସନୀୟ, ଏହା କହିବା ବାହୁଲ୍ୟମାତ୍ର । ଏହା ସମସ୍ତ ଗଡ଼ଜାତ ରାଜାମାନଙ୍କର ଆଦର୍ଶ ହେବା ଉଚିତ । ବ୍ରିଟିଶ ସରକାର ମଧ ଏଥିରୁ ଉଚିତ ଶିକ୍ଷାଲାଭ କରିବେ ବୋଲି ଆଶା ।"

ରାଜ୍ୟରେ ଦୁଗ୍ଧ ଯୋଗାଣ ନିମନ୍ତେ ରାଜା ଉତ୍ତମ ଜାତୀୟ ଗାଈ ଆଣି ରଖିଲେ । କୃଷିକର୍ମପାଇଁ ଭାଗଲପୁର ଅଞ୍ଚଳରୁ ଉତ୍କୃଷ୍ଟ ଜାତୀୟ ବଳଦ ଅଣାଗଲା । ରାଜ୍ୟରେ ଗୋଚର୍ମ ବିକ୍ରି ବନ୍ଦ ହେଲା । ରାଜା ମଧ ହସ୍ତୀମାନଙ୍କର ଉପଦ୍ରବରୁ ପ୍ରଜାମାନଙ୍କୁ ରକ୍ଷା କରିବା ନିମନ୍ତେ ପଦକ୍ଷେପ ନେଇଥିଲେ । ହସ୍ତୀମାନଙ୍କୁ ପୋଷା ମନାଇ କୃଷି କାର୍ଯ୍ୟ କରାଗଲା । ହାତୀଦାନ୍ତ ବିକ୍ରୟ କରି ରାଜକୋଷର ଆୟ ବୃଦ୍ଧି କରାଗଲା ।

## ରଚନାବଳୀ

ରାଜପରିବାରରେ ଜନ୍ମ ଗ୍ରହଣ କରିଥିଲେ ହେଁ ଉପେନ୍ଦ୍ର ଭଞ୍ଜଙ୍କ ପରି ବାସୁଦେବ ସୁଢଳଦେବ ଥିଲେ ବିଳାସବିମୁଖ । ସେ ବାଣୀ ଉପାସକ ଥିଲେ । ପିଲାଦିନରୁ ରଚନା ଦିଗରେ ଆଗ୍ରହ ଦେଖାଇଥିଲେ । ରାଜା ହେଲାପରେ ମହାନଦୀ ବାଟେ କଟକ ଆସିଲାବେଳେ ନଦୀତଟର ପ୍ରାକୃତିକ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇ ରଚନା କରିଥିଲେ ପ୍ରଥମ କାବ୍ୟ 'ଚିତ୍ରୋତ୍ପଳା' । ତାଙ୍କର ଅନ୍ୟ ଗ୍ରନ୍ଥଗୁଡ଼ିକ ହେଲା 'ବୀରବାମା' ଓ 'ଅଳଙ୍କାର ବୋଧୋଦୟ' । ମାତୃଭାଷାରେ ପ୍ରାଞ୍ଜଳ ଓ ତ୍ରୁଟିଶୂନ୍ୟ ସାହିତ୍ୟ ସୃଷ୍ଟିର ଆବଶ୍ୟକତା ସେ

ଉପଲବ୍ଧି କରିଥିଲେ । କେଉଁ କେଉଁ ଦୋଷତ୍ରୁଟି ରହିଲେ ରଚନା କବିତା ପଦବାଚ୍ୟ ହୋଇପାରେ ନାହିଁ, ତାହା 'ଅଳଙ୍କାର ବୋଧୋଦୟ'ରେ ଦର୍ଶାଇଛନ୍ତି । ସରସଭାଷା, ଯଥାର୍ଥ ଗୁଣରୀତି, ଶବ୍ଦାଳଙ୍କାର ପ୍ରଭୃତି ବ୍ୟବହାର ନିମନ୍ତେ ସେ ଲେଖକମାନଙ୍କୁ ପରାମର୍ଶ ଦେଇଛନ୍ତି ।

## ଅଳଙ୍କାର ବୋଧୋଦୟ

ଏଥିରୁ ସୁଢଳଦେବଙ୍କର ଓଡ଼ିଆ ଓ ସଂସ୍କୃତରେ ପାଣ୍ଡିତ୍ୟର ପରିଚୟ ମିଳେ ।

## ଚିତ୍ରୋତ୍ପଳା

ଏହାର କଳେବର କ୍ଷୁଦ୍ର ହେଲେହେଁ ଏଥିରୁ ତାଙ୍କର ରଚନା ନୈପୁଣ୍ୟ ସ୍ପଷ୍ଟ ଜଣାଯାଏ । ପ୍ରକୃତି ବର୍ଣ୍ଣନା ମଧ୍ୟ ଅତି ଚିତ୍ତାକର୍ଷକ ହୋଇପାରିଛି । ଗୋଟିଏ ଉଦାହରଣ –

''ମୂର୍ତ୍ତିକା-ଚର୍ଚ୍ଚିତ କରିବର ପ୍ରାୟେ
ଭାସୁଛନ୍ତି ଫେନାବଳୀ ।
ନୃଶଂସ ଉରଗ ଉଦରେ ପୂରାଇ
ଆସୁଛନ୍ତି ଢଳି ଢଳି ।''

'ଚିତ୍ରୋତ୍ପଳା' କାବ୍ୟ ସମ୍ପର୍କରେ ଭକ୍ତକବି ମଧୁସୂଦନ ଲେଖିଛନ୍ତି –

ଆନନ୍ଦ ନନ୍ଦନେ ଯଥା ମନ୍ଦାକିନୀ ଜଳେ
× × ×
ଚିତ୍ରୋତ୍ପଳା-ଚିତ୍ର ବକ୍ଷେ ନିରେଖି ତେସନେ ।
× × ×
ଏତେ କାଳେ ମହାଗୀତେ ମୋହିଲେ ସକଳେ ।''

ଛତିଶଗଡ଼ର ସ୍ୱନାମଧନ୍ୟ କବି ପଣ୍ଡିତ ଲୋଚନ ପ୍ରସାଦ ପାଣ୍ଡେୟ ମଧ୍ୟ 'ମହାନଦୀ' କାବ୍ୟରେ ଚିତ୍ରୋତ୍ପଳା କାବ୍ୟର ପ୍ରଶଂସା କରିଛନ୍ତି –

''... ରାଜର୍ଷି ସୁକବି ।
କୌଶଳେ ଚିତ୍ରିଲେ ଚିତ୍ରୋତ୍ପଳା କବି ।''

## ବୀରବାମା

ଝାନ୍‌ସିର ରାଣୀ ଲକ୍ଷ୍ମୀବାଈଙ୍କ ବୀରତ୍ୱ ଓ ଦେଶପାଇଁ ପ୍ରାଣବଳି ସାର୍ ସୁଢଳଙ୍କ ହୃଦୟକୁ ସ୍ପର୍ଶ କରିଥିଲା । ତେଣୁ ସେ 'ବୀରବାମା' କାବ୍ୟ ରଚନା କଲେ । ମହାପ୍ରତାପୀ ଇଂରେଜ ଶାସନ କାଳରେ ଇଂରେଜ ଶାସକମାନଙ୍କର

ଜଣେ ଭାରତୀୟ ହାତରେ ପରାଜୟକୁ ସେ ଯେପରି ଭାବରେ ଚିତ୍ରଣ କରିଛନ୍ତି, ସେଥିରୁ ତାଙ୍କର ନିର୍ଭୀକତା ତଥା ଦେଶପ୍ରୀତିର ପରିଚୟ ମିଳେ । କେବଳ ସେତିକି ନୁହେଁ, ସେଇ ବୀର ଲଳନା ଲକ୍ଷ୍ମୀବାଈଙ୍କର ଏକ ଅଶ୍ୱାରୋହିଣୀ ପ୍ରତିମା ଗଠନ କରି ସେ ନିଜ ଉଦ୍ୟାନରେ ସ୍ଥାପନ କରିଥିଲେ ।

'ବୀରବାମା' ଓ 'ଚିତ୍ରୋତ୍ପଳା'ର କବି ହିସାବରେ ଓଡ଼ିଆ ସାହିତ୍ୟ ଇତିହାସରେ ତାଙ୍କର ସ୍ଥାନ ନିଶ୍ଚିତ ରହିବ ବୋଲି ବିଶିଷ୍ଟ ସାହିତ୍ୟିକ ଡଃ ମାୟାଧର ମାନସିଂହ ମତ ଦେଇଛନ୍ତି ।

## ସଂସ୍କୃତ ପ୍ରତି ଅନୁରାଗ

ସୁଢଳ ଦେବ ସଂସ୍କୃତ ଭାଷାର ପୁନରୁଦ୍ଧାର ଦିଗରେ ଦୃଷ୍ଟି ଦେଇଥିଲେ । ସେ ସମୟରେ ବ୍ରାହ୍ମଣ ସମାଜ ସଂସ୍କୃତ ଭାଷାରେ ଉପଯୁକ୍ତ ଶିକ୍ଷା ଲାଭ ନ କରି ବୈଦିକ କର୍ମ ପ୍ରଭୃତି ସମ୍ପାଦନ କରୁଥିଲେ । ରାଜା ସୁଢଳଦେବ ଏହାର ପରିବର୍ତ୍ତନ ଚାହିଁଲେ । ସେମାନେ ସଂସ୍କୃତ ଶିକ୍ଷା ଲାଭ କରି କିପରି ବିଶୁଦ୍ଧ ଓ ନିଷ୍ଠାପରଭାବେ ବୈଦିକ କର୍ମ କରିବେ, ସେଥିପ୍ରତି ସେ ତୀକ୍ଷ୍ଣ ଦୃଷ୍ଟି ଦେଲେ । ସଂସ୍କୃତ ଶିକ୍ଷାର ପ୍ରସାରପାଇଁ ବିଦ୍ୟାଳୟମାନ ଖୋଲିଲେ । ଯେଉଁମାନେ ସଂସ୍କୃତରେ ପାରଦର୍ଶିତା ଲାଭ କରିପାରୁ ନ ଥିଲେ, ସେମାନଙ୍କର ଧର୍ମାନୁଷ୍ଠାନମାନଙ୍କରେ ପୌରୋହିତ୍ୟ କରିବା ନିଷିଦ୍ଧ ହେଲା । ରାଜା ମଧ 'ଗଦାଧର ସ୍ମୃତି', 'ଦଶକର୍ମ ପଦ୍ଧତି', 'ଜଗନ୍ନାଥ ଅଷ୍ଟକ' ପ୍ରଭୃତିର ପ୍ରକାଶ ଭାର ଗ୍ରହଣ କରିଥିଲେ ।

ରାଜା କେବଳ ଯେ ଉଚ୍ଚକୋଟୀର କବି ଥିଲେ ତାହା ନୁହେଁ, ସେ ଗୁଣୀଲୋକଙ୍କୁ ଆଦର କରୁଥିଲେ । କବିବର ରାଧାନାଥ, ଭକ୍ତକବି ମଧୁସୂଦନ, ସାହିତ୍ୟିକ ବିଶ୍ୱନାଥ, ଫକୀରମୋହନ ସେନାପତି ପ୍ରଭୃତିଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥିଲା । ସେମାନେ ନିୟମିତଭାବେ ତାଙ୍କଦ୍ୱାରା ପ୍ରକାଶିତ 'ହିତୈଷିଣୀ'ରେ ବଳିଷ୍ଠ ଲେଖାମାନ ଲେଖି ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି କରିଥିଲେ । ବିଜ୍ଞାନ ବିଭାଗର ଅଧାପକ ଯୋଗେଶଚନ୍ଦ୍ର ରାୟ ପ୍ରଭୃତି ବହୁ ସମ୍ଭ୍ରାନ୍ତ ତଥା ଗୁଣୀ ବ୍ୟକ୍ତି ରାଜାଙ୍କ ନିମନ୍ତ୍ରଣକ୍ରମେ ବାମଣ୍ଡାକୁ ଆସୁଥିଲେ ଓ ରାଜାଙ୍କ ଆତିଥେୟତାରେ ମୁଗ୍ଧ ହୋଇପଡୁଥିଲେ । ପ୍ରାୟ ପ୍ରତିଦିନ ଉତ୍କଳର ବିଭିନ୍ନ ଅଞ୍ଚଳରୁ ଆସୁଥିବା ପଣ୍ଡିତମାନଙ୍କ ସହ ସାହିତ୍ୟ ଆଲୋଚନାରେ ସେ ସମୟ କଟାଉଥିଲେ । ପଣ୍ଡିତ ଶିରୋମଣି ବକୁଳକବି ଭୁବନେଶ୍ୱର ମିଶ୍ର ତାଙ୍କର ଶିକ୍ଷାଗୁରୁ ଥିଲେ । ପଣ୍ଡିତ ମଧୁସୂଦନ ତର୍କ ବାଚସ୍ପତି ପଣ୍ଡିତସଭାର ଆୟୋଜକ ଥିଲେ । କାଶୀର ଶ୍ରେଷ୍ଠପଣ୍ଡିତ ଶିବକୁମାର ଶାସ୍ତ୍ରୀ ରାଜାଙ୍କ ସହ ଶାସ୍ତ୍ର ଆଲୋଚନାପାଇଁ ବାମଣ୍ଡା

ଆସିଥିଲେ । ତାଙ୍କ ରାଜତ୍ୱରେ ବାମଣ୍ଡା 'ବୁଧହଂସ କେଳିସର' ନାମେ ଖ୍ୟାତିଲାଭ କଲା । କବିବର ରାଧାନାଥ ଯଥାର୍ଥରେ ତାଙ୍କ ରଚିତ 'ମହାଯାତ୍ରା'ରେ ଲେଖିଛନ୍ତି –

''ତୁମ୍ଭ ଶୁଭ ଆବିର୍ଭାବେ ହୋଇଛି ଉତ୍କଳ
ଦେବ ଦୁର୍ଗଦେବ ! ଏବେ ତୀର୍ଥ ସାରସ୍ୱତ
ବୁଧହଂସ କେଳିସରଃ, ଅବିଦ୍ୟା ଉଷରେ ।''

## ନବ ଉତ୍କଳର ନିର୍ମାତା ?

ସେତେବେଳେ ମଧ୍ୟପ୍ରଦେଶର ଅଧୀନରେ ଶାସିତ ହେଉଥିବା ଗଡ଼ଜାତ ରାଜ୍ୟଗୁଡ଼ିକୁ ଛତିଶଗଡ଼ କୁହାଯାଉଥିଲା । ବଣାଇ, ବାମଣ୍ଡା, ସୋନପୁର, ପାଟଣା, କଳାହାଣ୍ଡି, ରେଢ଼ାଖୋଲ ପ୍ରଭୃତି ରାଜ୍ୟଗୁଡ଼ିକ ଏହି ଛତିଶଗଡ଼ ଅନ୍ତର୍ଭୁକ୍ତ ଥିଲା । ଏଗୁଡ଼ିକ ମଧ୍ୟପ୍ରଦେଶର କମିସନରଙ୍କଦ୍ୱାରା ଶାସିତ ହେଉଥିଲା । ଏଗୁଡ଼ିକରେ ମଧ୍ୟ ହିନ୍ଦୀ ଭାଷା ଚଳୁଥିଲା । ମାତ୍ର ସାର୍ ସୁଢଳଦେବଙ୍କ ପ୍ରଚେଷ୍ଟାରୁ ଏହି ସବୁ ରାଜ୍ୟରେ ଓଡ଼ିଆ ଭାଷାର ପ୍ରଚଳନ ହେଲା । ଓଡ଼ିଆ ଭାଷାର ପ୍ରସାରପାଇଁ 'ସମ୍ବଲପୁର ହିତୈଷିଣୀ' ନାମକ ପତ୍ରିକା ତାଙ୍କ ପୃଷ୍ଠପୋଷକତାରେ ପ୍ରକାଶ ପାଇଲା । ଏହାର ସମ୍ପାଦକ ଥିଲେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନ । ସେ ଥିଲେ ବାସୁଦେବ ସୁଢଳଦେବଙ୍କର ଅତି ବିଶ୍ୱସ୍ତ ବନ୍ଧୁ । ଏହି 'ହିତୈଷିଣୀ' ପତ୍ରିକାରେ ରାଧାନାଥ, ଫକୀରମୋହନ, ମଧୁସୂଦନ ପ୍ରଭୃତି ଲେଖାମାନ ଲେଖି ଓଡ଼ିଆଭାଷାକୁ ସମୃଦ୍ଧ କଲେ । ଏଥିରେ ମଧ୍ୟ ପ୍ରାଚୀନ ଓ ଆଧୁନିକ ସାହିତ୍ୟ ଉପରେ ଆଲୋଚନା ଚାଲୁଥିଲା । ଫଳରେ ଲୋକଙ୍କର ମାତୃଭାଷା ପ୍ରତି ଆଗ୍ରହ ସୃଷ୍ଟି ହେଲା ।

ନୀଳମଣି ବିଦ୍ୟାରତ୍ନଙ୍କୁ ଲକ୍ଷ୍ୟ କରି ସେତେବେଳେ ଜଣେ ବିଶିଷ୍ଟ ଓଡ଼ିଆ ସାହିତ୍ୟିକ ଲେଖିଥିଲେ –

''ଭାଷା ଯୋଗେ ଛିନ୍ନଭିନ୍ନ ଥିଲା ଏ ଉତ୍କଳ
ବାନ୍ଧିଲ ଏକତା ସୂତ୍ରେ ତୁମେହିଁ କେବଳ ।''

ମାତ୍ର ଏ ପ୍ରଶଂସା ଥିଲା ବାସ୍ତବରେ ସୁଢଳଦେବଙ୍କ ପ୍ରାପ୍ୟ । ତାଙ୍କର ପ୍ରଚେଷ୍ଟାରୁ କେବଳ ଯେ ଗଡ଼ଜାତ ରାଜ୍ୟମାନଙ୍କରେ ଓଡ଼ିଆଭାଷାର ପ୍ରଚଳନ ହେଲା ତାହା ନୁହେଁ, କାଳକ୍ରମେ ଏହି ରାଜ୍ୟଗୁଡ଼ିକର ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ ସମ୍ଭବ ହେଲା । ସେଥିପାଇଁ କବିବର ରାଧାନାଥ ତାଙ୍କୁ ଲକ୍ଷ୍ୟ କରି ଲେଖିଥିଲେ –

''ମୁଗଲବନ୍ଦୀ ଛତିଶଗଡ଼ ବହୁତ ଅନ୍ତର
ଦୁହିଁଙ୍କୁ ମିଳାଇ ଦେଇ ଅଛ ପରସ୍ପର ।''

## ଧର୍ମ

ରାଜା ବୈଷ୍ଣବ ଧର୍ମାବଲମ୍ବୀ ହୋଇ ମଧ ବହୁ ଦେବଦେବୀଙ୍କୁ ପୂଜା କରୁଥିଲେ । ରାଜାଙ୍କ ପ୍ରାସାଦରେ କାଳୀ ମୂର୍ତ୍ତି ପୂଜା ପାଉଥିଲେ । ସେ ବହୁ ମନ୍ଦିର ମଧ ନିର୍ମାଣ କରିଥିଲେ । ମୁସଲମାନମାନଙ୍କପାଇଁ ମସଜିଦ୍‌ମାନ ନିର୍ମାଣ କରାଇଥିଲେ ।

## ସମ୍ମାନ ଲାଭ

ରାଜ୍ୟର ସର୍ବବିଧ ଉନ୍ନତି ଓ ଶ୍ରୀବୃଦ୍ଧି ନିମନ୍ତେ ସେ ଇଂରେଜ ଶାସକମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହେଉଥିଲେ । ୧୮୮୯ ଖ୍ରୀଷ୍ଟାବ୍ଦରେ ଇଂରେଜ ରାଜଦରବାର ତାଙ୍କୁ ସି.ଆଇ.ଇ. ଉପାଧିରେ ଭୂଷିତ କରିଥିଲେ । ତାଙ୍କ ପୂର୍ବରୁ ଏହି ଉପାଧି ଓଡ଼ିଶାରେ କାହାକୁ ମିଳି ନ ଥିଲା । ୧୮୯୪ ଖ୍ରୀଷ୍ଟାବ୍ଦରେ ସାର୍ ଜନ ଉଡ଼ବର୍ଣ୍ଣ ଗଡ଼ଜାତ ଭ୍ରମଣରେ ଆସି ବାମଣ୍ଡା ଆସିଥିଲେ । ସେ ବାମଣ୍ଡାର ଉଚ୍ଚ ଶାସନ ପଦ୍ଧତି ଦେଖି ତାଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ । ୧୮୯୫ ଜାନୁଆରୀ ମାସ ପହିଲାରେ ଇଂଲଣ୍ଡର ସାମ୍ରାଜ୍ଞୀ ସାର୍ ବାସୁଦେବ ସୁଢଳଦେବଙ୍କୁ କେ.ସି.ଆଇ. ଉପାଧିରେ ସମ୍ମାନିତ କଲେ । ଏହାଦ୍ୱାରା ସେ ଅନ୍ୟ ଗଡ଼ଜାତ ରାଜାମାନଙ୍କର ଆଦର୍ଶ ହୋଇ ରହିବେ ବୋଲି ଇଂରେଜ କର୍ତ୍ତୃପକ୍ଷ ଆଶା ପୋଷଣ କରିଥିଲେ ।

## ଜୁବୁଲି ଗୃହ ନିର୍ମାଣ

୧୮୯୭ ଖ୍ରୀଷ୍ଟାବ୍ଦରେ ମହାରାଣୀ ଭିକ୍ଟୋରିଆଙ୍କର ରାଜତ୍ୱର ହୀରକ ଜୁବୁଲି ଉତ୍ସବ ବାମଣ୍ଡାରେ ମହାସମାରୋହରେ ପାଳିତ ହେଲା । ସାର୍ ସୁଢଳଦେବ ଏହି ଘଟଣାକୁ ସ୍ମରଣୀୟ କରିବାପାଇଁ ଏକ ପ୍ରକାଣ୍ଡ ଅଟ୍ଟାଳିକା ନିର୍ମାଣ କରାଇଥିଲେ । ଏହା 'ଜୁବୁଲି ଗୃହ' ନାମରେ ନାମିତ ହୋଇଅଛି ।

## ଦୁର୍ଭିକ୍ଷ ନିରାକରଣ ବ୍ୟବସ୍ଥା

ଥରେ ଅନାବୃଷ୍ଟି ଯୋଗୁଁ ବାମଣ୍ଡାରେ ଦୁର୍ଭିକ୍ଷ ଦେଖାଦେଲା । ବହୁ ବ୍ୟକ୍ତି ଅନାହାରରେ ମୃତ୍ୟୁବରଣ କଲେ । ରାଜା ସେମାନଙ୍କୁ ରିଲିଫ୍ ଯୋଗାଇବାର ବ୍ୟବସ୍ଥା କରିଥିଲେ । ମହାଜନମାନଙ୍କଠାରୁ ଚାଉଳ କିଣି ଶସ୍ତାରେ ପ୍ରଜାମାନଙ୍କୁ ଯୋଗାଇ ଦିଆଯାଇଥିଲା । ପ୍ରଜାମାନଙ୍କର ରୋଜଗାର ସୁବିଧା କରାଇବାପାଇଁ ପୁଷ୍କରିଣୀ ଖନନ, ରାଜପଥ ନିର୍ମାଣ ପ୍ରଭୃତି ବହୁ କାର୍ଯ୍ୟ ହାତକୁ ନେଇଥିଲେ ।

ଏହି ସମୟରେ ବାମଣ୍ଡା ରାଜ୍ୟରେ ଡକାୟତି ବୃଦ୍ଧି ପାଇଥିଲା । ରାଜାଙ୍କ ଚେଷ୍ଟାରୁ ଡକାଏତମାନେ ଧରାପଡ଼ିଲେ ଓ ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ହେଲା ।

୧୮୯୯ ଖ୍ରୀଷ୍ଟାବ୍ଦରେ ସାର୍ ବାସୁଦେବ ସୁଢଳଦେବ ମଧ୍ୟପ୍ରଦେଶରେ ପାଠ୍ୟପୁସ୍ତକ ନିର୍ବାଚନ ବୈଠକରେ ଯୋଗଦେବାର କାର୍ଯ୍ୟକ୍ରମ ଥିଲା । ମାତ୍ର ଅସୁସ୍ଥତାବଶତଃ ସେ ସେଥିରେ ଯୋଗ ଦେଇପାରି ନ ଥିଲେ ।

## ଶେଷ ଜୀବନ

୧୯୦୨ ଶେଷଆଡ଼କୁ ରାଜା ବାସୁଦେବ ସୁଢଳଦେବ ଅସୁସ୍ଥ ହୋଇପଡ଼ିଲେ । ସେ ଚିକିତ୍ସାପାଇଁ କଲିକତା ଗଲେ । ଫଳରେ ରୋଗର କିଛି ଉପଶମ ହେଲା । ମାତ୍ର ପୁଣି ରୋଗାକ୍ରାନ୍ତ ହୋଇପଡ଼ି ୧୯୦୩ ନଭେମ୍ବର ମାସ ୧୯ ତାରିଖରେ ଇହଧାମ ତ୍ୟାଗ କଲେ ।

ସାର୍ ବାସୁଦେବ ସୁଢଳଦେବ ଥିଲେ ଏକାଧାରରେ ଆଦର୍ଶ ଶାସକ, ପ୍ରଜାବତ୍ସଳ, ଜ୍ଞାନୀ, ବୁଦ୍ଧିମାନ୍, ବିବେକୀ, ଦାର୍ଶନିକ, ଆଳଙ୍କାରିକ, ସାହିତ୍ୟିକ ଓ ଗୁଣଗ୍ରାହୀ ପ୍ରତିଭାସମ୍ପନ୍ନ କବି । ତାଙ୍କର ବହିର୍ମୁଖିତା ଓ ଅସରନ୍ତି କର୍ମଶକ୍ତିରେ କେବଳ ଉତ୍କଳରେ ନୁହେଁ, ପୃଥିବୀ ଇତିହାସରେ ବିଜୟୀ ଓ ସୁଶାସକମାନଙ୍କ ସହିତ ସେ ସମାନ ବୋଲି ମନେ ହୁଅନ୍ତି । କେହି କେହି ତାଙ୍କୁ ରୁଷିଆର ନବ ଯୁଗ ପ୍ରବର୍ତ୍ତକ ରାଜା ପିଟର ଓ ଉତ୍ତମ ଇଂରେଜ ରାଜା ଆଲ୍‌ଫ୍ରେଡ଼ଙ୍କ ସହିତ ତୁଳନା କରିଥାନ୍ତି । ପିଟର ଯେପରି ପାଶ୍ଚାତ୍ୟ ଉନ୍ନତଶୀଳ ଦେଶମାନଙ୍କୁ ଯାଇ ଯେଉଁ ଜ୍ଞାନ ଲାଭ କରୁଥିଲେ ଓ ସେହି ଜ୍ଞାନକୁ ଦେଶର ଉନ୍ନତିପାଇଁ ଖଟାଉଥିଲେ, ବାସୁଦେବ ସୁଢଳଦେବ ମଧ୍ୟ ସେହିପରି ସମଗ୍ର ଦେଶ ଭ୍ରମଣ କରି ଯେଉଁ ଜ୍ଞାନ ଅର୍ଜନ କରୁଥିଲେ ତାକୁ ରାଜ୍ୟର ମଙ୍ଗଳପାଇଁ ଲଗାଇଥିଲେ । ଆଦର୍ଶ ଶାସକ, ବିଦ୍ୟାର ପୃଷ୍ଠପୋଷକ ଓ ମହାନ୍ ବ୍ୟକ୍ତିଭାବେ ସେ ଓଡ଼ିଶା ଇତିହାସରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଛନ୍ତି ।

କବିବର ରାଧାନାଥ ଯଥାର୍ଥରେ ଗାଇଛନ୍ତି –

''କେତେ ଥିଲେ କେତେ ଛନ୍ତି ଗଡ଼ଜାତ ରାଜା
ଉଡ଼ାଉଛି କିଏ ତୁମ୍ଭ ପରି କୀର୍ତ୍ତି ଧ୍ୱଜା ?

× × ×

ଓଡ଼ିଶା ବିକ୍ରମାଦିତ୍ୟ ସୁବର୍ଣ୍ଣ ଅକ୍ଷରେ
ଇତିହାସେ ଲେଖା ରହିଥିବ ଜଗତରେ ।''



# ଆଦର୍ଶ ରାଜା
# ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ

ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ଥିଲେ ଏକ ଯୋଗଜନ୍ମା ପୁରୁଷ । ସେ ମୟୂରଭଞ୍ଜ ରାଜବଂଶରେ ଜନ୍ମ ହୋଇଥିଲେ ମଧ୍ୟ ଯେଉଁ ମହନୀୟ ଗୁଣଗୁଡ଼ିକର ଅଧିକାରୀ ଥିଲେ ତାହା ବଳରେ କେବଳ ସେହି ରାଜବଂଶ କାହିଁକି, ସାମସମୟିକ ରାଜନ୍ୟ ମଣ୍ଡଳୀର ଆଦର୍ଶ ସ୍ଥାନୀୟ ହୋଇପାରିଥିଲେ । ନିଜର ଅସାଧାରଣ ପ୍ରତିଭା ଓ ପ୍ରଚେଷ୍ଟା ଫଳରେ ସେ ସମଗ୍ର ଓଡ଼ିଶାର ରାଜନୀତିକ, ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ହୋଇଗଲେ ଭଗୀରଥ । ସେତେବେଳେ ତାଙ୍କୁ ଲକ୍ଷ୍ୟ କରି ପ୍ରଖ୍ୟାତ କବି ଚିନ୍ତାମଣି ମହାନ୍ତି ଲେଖିଥିଲେ –

''ଉତ୍କଳ ତାହାକୁ କରିଛି ଭରସା
ଫେରାଇବ ସେ ତାହାର ଦୁର୍ଦ୍ଦଶା ।''

## ଜନ୍ମ ଓ ବଂଶ ପରିଚୟ

ଶ୍ରୀରାମଚନ୍ଦ୍ର ଭଞ୍ଜ ୧୮୭୦ ଡିସେମ୍ବର ମାସ ୧୭ ତାରିଖରେ ମୟୂରଭଞ୍ଜର ଭଞ୍ଜବଂଶରେ ଜନ୍ମ ଗ୍ରହଣ କରିଥିଲେ । ଭଞ୍ଜ ବଂଶ ଓଡ଼ିଶାର ଏକ ପ୍ରାଚୀନ ରାଜବଂଶ । ଏହି ବଂଶ ମୌର୍ଯ୍ୟବଂଶସମ୍ଭୂତ ବୋଲି କେହି କେହି ମତ ଦେଇଥାନ୍ତି । ତେବେ 'ମୟୂରଭଞ୍ଜ ବଂଶାବଳୀ'ରୁ ଜଣାଯାଏ ଯେ ଏହା ପ୍ରାୟ ୧୩୫୦

ଖ୍ରୀଷ୍ଟାବ୍ଦରେ ସ୍ଥାପିତ ହୋଇଥିଲା । ୧୮୦୩ ରେ ଇଂରେଜମାନେ ଓଡ଼ିଶା ଅଧିକାର କଲେ । ସେହି ସମୟରେ ମୟୂରଭଞ୍ଜର ମହାରାଜା ମରହଟ୍ଟାମାନଙ୍କ ବିରୋଧରେ ଇଂରେଜମାନଙ୍କୁ ସାହାଯ୍ୟ ଦେଇଥିଲେ । ୧୮୧୦ ଖ୍ରୀଷ୍ଟାବ୍ଦରେ ତ୍ରିବିକ୍ରମ ଭଞ୍ଜ ସିଂହାସନ ଆରୋହଣ କଲେ । ୧୮୧୨ ରେ ସେ ଇଷ୍ଟ ଇଣ୍ଡିଆ କମ୍ପାନୀ ସହିତ ସନ୍ଧିସୂତ୍ରରେ ଆବଦ୍ଧ ହେଲେ । ତାଙ୍କ ପରେ ତାଙ୍କ ପୁତ୍ର ଯଦୁନାଥ ଭଞ୍ଜ ରାଜା ହେଲେ । ୧୮୬୩ ଖ୍ରୀଷ୍ଟାବ୍ଦରେ ଶ୍ରୀନାଥ ଭଞ୍ଜ ରାଜ୍ୟଭାର ଗ୍ରହଣ କରିଥିଲେ । ଶ୍ରୀନାଥ ଭଞ୍ଜ ଅପୁତ୍ରକ ଥିଲେ । ତାଙ୍କ ପରେ ତାଙ୍କର ସାନଭାଇ ସୀତାନାଥ ଭଞ୍ଜ ଛୋଟରାୟଙ୍କ ପୁଅ କୃଷ୍ଣଚନ୍ଦ୍ର ଭଞ୍ଜ ମୟୂରଭଞ୍ଜର ରାଜା ହେଲେ । ସେ ଜଣେ ଦକ୍ଷ ଓ ଉତ୍ତମ ଶାସକ ଥିଲେ । ତାଙ୍କର ପରାମର୍ଶଦାତା ଥିଲେ କଟକର କମିସନର ଟି.ଇ.ରେଭେନ୍‌ସା । ସେ ରାଜ୍ୟରେ ଉତ୍ତମ ଶାସନ ପ୍ରଣାଳୀ ପ୍ରବର୍ତ୍ତନ କରିଥିଲେ । ତାଙ୍କ ସମୟରେ ଫୌଜଦାରୀ ଓ ଦେବାନୀ ଅଦାଲତମାନ ରାଜ୍ୟରେ ସ୍ଥାପିତ ହେଲା । ପ୍ରତ୍ୟେକ ପ୍ରଗଣାରେ ପୋଲିସ ଥାନାମାନ ବସାଗଲା । ଜମିଜମା ବନ୍ଦୋବସ୍ତ ଆରମ୍ଭ ହେଲା । ରାଜସ୍ୱ ଆଦାୟ ବ୍ୟବସ୍ଥା କରାଗଲା । ପୂର୍ତ୍ତବିଭାଗ ମଧ୍ୟ ସୃଷ୍ଟି ହେଲା । ଗମନାଗମନର ସୁବିଧାପାଇଁ ରାସ୍ତାଘାଟ ନିର୍ମାଣ କରାଗଲା । ଶିକ୍ଷାର ପ୍ରସାରପାଇଁ ବହୁ ସ୍ଥାନରେ ବିଦ୍ୟାଳୟମାନ ସ୍ଥାପିତ ହେଲା । ରାଜ୍ୟରେ ମଧ୍ୟ ପ୍ରଥମଥରପାଇଁ ଏକ ଦାତବ୍ୟ ଚିକିତ୍ସାଳୟ ଖୋଲାଗଲା । ସେ ଉଚ୍ଚଶିକ୍ଷାର ବିକାଶପାଇଁ କମିସନର ଟି. ଇ. ରେଭେନ୍‌ସାଙ୍କୁ ୨୭୦୦୦ଟଙ୍କା ଦାନ କରିଥିଲେ । ଫଳରେ କଟକରେ ରେଭେନ୍‌ସା କଲେଜ ସ୍ଥାପିତ ହେଲା । ଇଂରେଜ ସରକାର ମଧ୍ୟ ତାଙ୍କ ଉପରେ ପ୍ରୀତ ହୋଇ ତାଙ୍କୁ ମହାରାଜା ଉପାଧି ଦେଇଥିଲେ ।

ତାଙ୍କର ଉପଯୁକ୍ତ ଦାୟାଦ ଥିଲେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ।

## ବାଲ୍ୟଶିକ୍ଷା

ରାମଚନ୍ଦ୍ରଦେବ ପିତାମାତାଙ୍କଦ୍ୱାରା ଅତି ଆଦରରେ ଲାଳିତ ପାଳିତ ହୋଇଥିଲେ । ପାଞ୍ଚ ବର୍ଷ ବୟସରେ ତାଙ୍କର ବାଲ୍ୟଶିକ୍ଷା ଆରମ୍ଭ ହେଲା । ସେ ସମୟରେ ଆଧୁନିକ ଧରଣର ସ୍କୁଲ ନ ଥିଲା । ତେଣୁ ଅନ୍ୟ ଛାତ୍ରମାନଙ୍କ ପରି ସେ ଅବଧାନଙ୍କ ପାଖରେ ପାଠ ଆରମ୍ଭ କଲେ । ସେ ମେଧାବୀ ଛାତ୍ର ଥିଲେ । ଦୁଇ ବର୍ଷରେ ଚାହାଳି ପାଠ ଶେଷ କଲେ । ଗୃହରେ ଆଉ ଜଣେ ଶିକ୍ଷକ ତାଙ୍କୁ ଓଡ଼ିଆ ଓ ଇଂରାଜୀ ପଢ଼ାଇଥିଲେ । ସେ ଏହାପରେ ବାରିପଦା ମଧ୍ୟଇଂରାଜୀ ବିଦ୍ୟାଳୟରେ ନାମ ଲେଖାଇଲେ । ପରେ ମଧ୍ୟ ସଂସ୍କୃତ ଓ ଅନ୍ୟାନ୍ୟ ବିଷୟ

ଶିକ୍ଷାଦେବାପାଇଁ ତତ୍କାଳୀନ ମୟୂରଭଞ୍ଜ ଓ କେନ୍ଦୁଝର ସ୍କୁଲସମୂହର ପରିଦର୍ଶକ ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ର ନିଯୁକ୍ତ ହେଲେ । ନଅ ବର୍ଷ ବୟସରେ ତାଙ୍କର ଉପନୟନ କାର୍ଯ୍ୟ ମହାସମାରୋହରେ ଅନୁଷ୍ଠିତ ହେଲା । କିଛି କାଳ ପରେ ଶ୍ରୀରାମଚନ୍ଦ୍ର ବସନ୍ତ ରୋଗାକ୍ରାନ୍ତ ହୋଇପଡ଼ିଲେ । ପିତା ଏଥିରେ କାତର ହୋଇପଡ଼ିଲେ । ଯେତେ ଯାହା ଚିକିତ୍ସା କଲେ ମଧ୍ୟ ରୋଗର ଉପଶମ ହେଲା ନାହିଁ । ଶେଷରେ ନିଜର ଜୀବନ ବିନିମୟରେ ପୁତ୍ରର ପ୍ରାଣ ବଞ୍ଚାଇବାକୁ କୃଷ୍ଣଚନ୍ଦ୍ରଦେବ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା କଲେ । ଈଶ୍ୱର ତାଙ୍କର ଗୁହାରି ଶୁଣିଲେ । ମହାରାଜା କୃଷ୍ଣଚନ୍ଦ୍ର ନିଜେ ରୋଗାକ୍ରାନ୍ତ ହେଲେ; ପୁତ୍ର ରାମଚନ୍ଦ୍ର ଭଞ୍ଜ କିନ୍ତୁ କ୍ରମେ ଆରୋଗ୍ୟ ଲାଭ କରିବାକୁ ଲାଗିଲେ । ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଦେବଙ୍କର ମାତ୍ର ୩୪ ବର୍ଷ ବୟସରେ ୧୮୮୭ ଖ୍ରୀଷ୍ଟାବ୍ଦ ମେ ମାସ ୨୯ ତାରିଖରେ ଦେହାନ୍ତ ହେଲା । ବିରହଜନିତ ଦୁଃଖଯନ୍ତ୍ରଣାରେ ମହାରାଣୀ ମଧ୍ୟ ମୃତ୍ୟୁବରଣ କଲେ ।

ଏହି ସମୟରେ ରାମଚନ୍ଦ୍ର ଭଞ୍ଜ ନାବାଳକ ଥିଲେ । ମୟୂରଭଞ୍ଜ ରାଜ୍ୟ ତେଣୁ ସରକାରଙ୍କ ହାତକୁ ଗଲା । ଆଉ ଗୋଟିଏ ବର୍ଷ ସେ ମଧ୍ୟଇଂରାଜୀ ବିଦ୍ୟାଳୟରେ ଅଧ୍ୟୟନ କଲେ । ଏହାପରେ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ତାଙ୍କୁ କଟକରେ ପଢ଼ାଇବାପାଇଁ ସରକାର ସ୍ଥିର କଲେ । ତାଙ୍କର ପିତାମହୀ ତାଙ୍କୁ ପାଖରୁ ଛାଡ଼ିବାକୁ ଆଦୌ ରାଜି ନ ଥିଲେ । ମାତ୍ର ନାତିର ଭବିଷ୍ୟତ୍ ଚିନ୍ତା କରି ଶେଷରେ ସମ୍ମତି ଦେଲେ ।

## ଉଚ୍ଚ ଶିକ୍ଷାଲାଭ

କଟକରେ ରାମଚନ୍ଦ୍ର ଭଞ୍ଜ ମୟୂରଭଞ୍ଜ ଭବନରେ ରହି ଅଧ୍ୟୟନ କଲେ । ପ୍ରଥମେ ସେ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କ ତତ୍ତ୍ୱାବଧାନରେ ରହିଲେ । ମାତ୍ର ତତ୍କାଳୀନ ବଙ୍ଗର ଛୋଟଲାଟ ଟମସନଙ୍କ ସୁପାରିସ ଅନୁଯାୟୀ ବେଟ୍ରାମ କିଡେଲ ନାବାଳକ ରାଜାଙ୍କ ପ୍ରଧାନଶିକ୍ଷକଭାବେ ନିଯୁକ୍ତ ହେଲେ । ସେ ଚରିତ୍ରବାନ୍ ଓ ଉଚ୍ଚଶିକ୍ଷିତ ଥିଲେ । ପଣ୍ଡିତ ଗୋବିନ୍ଦଚନ୍ଦ୍ର ମହାପାତ୍ରଙ୍କୁ ମଧ୍ୟ ସରକାରୀ ଶିକ୍ଷକଭାବେ ନିଯୁକ୍ତ କରାଗଲା ।

ବେଟ୍ରାମ ମୟୂରଭଞ୍ଜ ଭବନରେ ରହି ତାଙ୍କର ପଢ଼ାଶୁଣାର ଦାୟିତ୍ୱ ନେଲେ । ସେ ରାମଚନ୍ଦ୍ରଙ୍କୁ ପୁତ୍ର ଭଳି ସ୍ନେହ କରୁଥିଲେ । ରାମଚନ୍ଦ୍ର ମଧ୍ୟ ଗୁରୁଙ୍କୁ ଉପଯୁକ୍ତ ସମ୍ମାନ ଦେଉଥିଲେ । ପ୍ରତିଦିନ ଗୁରୁ ଓ ଶିଷ୍ୟ ଅଶ୍ୱାରୋହଣପୂର୍ବକ ନାନା ସ୍ଥାନକୁ ଯାଉଥିଲେ । ରାମଚନ୍ଦ୍ର ପାଠ୍ୟପୁସ୍ତକ ବ୍ୟତୀତ ସାହିତ୍ୟ ଓ ଇତିହାସ

ପାଠ କରିବାକୁ ଭଲ ପାଉଥିଲେ । ଇଂରେଜୀ ଗଳ୍ପ ବହି ମଧ୍ୟ ପଢୁଥିଲେ । ପାଶ୍ଚାତ୍ୟ ଦର୍ଶନଶାସ୍ତ୍ରରେ ତାଙ୍କର ପ୍ରବେଶ ଥିଲା । ସେ ଖେଳ କସରତ ପ୍ରତିଦିନ କରୁଥିଲେ । ବିଶେଷତଃ, ହକି ଓ ଟେନିସ ଖେଳିବାରେ ସେ ଆନନ୍ଦ ପାଉଥିଲେ । ସେ ମଧ୍ୟ ଶିକାରପ୍ରିୟ ଥିଲେ । ନାନା ସ୍ଥାନକୁ ପରିଭ୍ରମଣରେ ଯିବାପାଇଁ ତାଙ୍କର ବିଶେଷ ଆଗ୍ରହ ଥିଲା । ବାଲ୍ୟକାଳରେ ସେ ଦାର୍ଜିଲିଂ ବୁଲି ଆସିଥିଲେ । ସ୍ୱାସ୍ଥ୍ୟର ଉନ୍ନତିପାଇଁ ସେ ସିଂହଳ ମଧ୍ୟ ଯାତ୍ରା କରିଥିଲେ ।

୧୮୮୮ ଖ୍ରୀଷ୍ଟାବ୍ଦରେ ସେ ରେଭେନ୍‌ସା କଲେଜିଏଟ୍ ସ୍କୁଲରୁ ଏଣ୍ଟ୍ରାନ୍ସ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଏହାପରେ ସେ ରେଭେନ୍‌ସା କଲେଜରେ ଦୁଇ ବର୍ଷ ଏଫ୍.ଏ. ପଢ଼ିଲେ ଓ ସେହି ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ବି.ଏ. ପରୀକ୍ଷାଦେବା ତାଙ୍କର ପ୍ରବଳ ଇଚ୍ଛା ଥିଲା; ମାତ୍ର ସେହି ସମୟରେ ସେ ସାବାଳକ ହେବାରୁ ରାଜ୍ୟ ଶାସନର ଦାୟିତ୍ୱ ତାଙ୍କୁ ଦିଆଗଲା । ସେ ତେଣୁ ବି.ଏ. ପରୀକ୍ଷା ଦେଇପାରିଲେ ନାହିଁ । ୧୮୯୨ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୧୫ ତାରିଖରେ ରାମଚନ୍ଦ୍ର ଭଞ୍ଜଦେବ ରାଜଗାଦିରେ ବସିଲେ ।

ମହାରାଜା ଭାବେ ରାଜକାର୍ଯ୍ୟ ବୁଝିଲେ ମଧ୍ୟ ରାମଚନ୍ଦ୍ର ଭଞ୍ଜଦେବ ବି.ଏ. ପରୀକ୍ଷାଦେବାକୁ ସ୍ଥିର କଲେ । ଗୃହଶିକ୍ଷକ କିଡେଲ ଓ ବାବୁ ମୋହିନୀମୋହନ ଧରଙ୍କ ପାଖରେ ସେ ବିଜ୍ଞାନ ଓ ଗଣିତ ଶିକ୍ଷା କଲେ । ବି.ଏ. ପରୀକ୍ଷାଦେବାପାଇଁ କିଡେଲ ଓ ଅନ୍ୟାନ୍ୟ ଅନୁଚରମାନଙ୍କ ସହ ସେ କଲିକତା ଗଲେ । କଲିକତାରେ କିନ୍ତୁ କିଡେଲ ଅସୁସ୍ଥ ହୋଇପଡ଼ିଲେ । ଅନୁଚରମାନେ ବିସୂଚିକା ରୋଗାକ୍ରାନ୍ତ ହେଲେ । ଏପରି ଅବସ୍ଥାରେ ତାଙ୍କର ପରୀକ୍ଷାଦେବା ସମ୍ଭବ ନ ଥିଲା । ତଥାପି ସେ ପରୀକ୍ଷା ଦେଲେ । ମାତ୍ର ସଫଳତା ଲାଭ କରିପାରି ନ ଥିଲେ ।

ଛାତ୍ର ଅବସ୍ଥାରେ ସେ ଅତ୍ୟନ୍ତ ନମ୍ର ସ୍ୱଭାବର ଥିଲେ । ରାଜପୁତ୍ର ବୋଲି ତାଙ୍କର ଆଦୌ ଗର୍ବ ବା ଅହଙ୍କାର ନ ଥିଲା । ସହାଧ୍ୟାୟୀମାନଙ୍କ ସହ ସେ ଅବାଧରେ ମିଶୁଥିଲେ ଓ ସମସ୍ତଙ୍କୁ ଉତ୍ତମ ବ୍ୟବହାର ଦେଖାଉଥିଲେ ।

## ବିବାହ

ରାମଚନ୍ଦ୍ର ଭଞ୍ଜଦେବ ଦାର୍ଜିଲିଂ ଯାଇଥିଲାବେଳେ ବ୍ରାହ୍ମଧର୍ମ ପ୍ରବର୍ତ୍ତକ କେଶବଚନ୍ଦ୍ର ସେନଙ୍କ କନ୍ୟାଙ୍କୁ ଭେଟିଥିଲେ । ଦୁହିଁଙ୍କର ପରିଚୟ ହୋଇଥିଲା ଓ ଦୁହେଁ ଦୁହିଁଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ଦୁହିଁଙ୍କର ବିବାହ ପ୍ରସ୍ତାବ ମଧ୍ୟ ଆଗତ ହେଲା । ମହାରାଜା ଏଥିପାଇଁ ମଧ୍ୟ ନିଜର ସମ୍ମତି ଦେଲେ । ଅଭିଭାବକ

କିଡେଲ ମଧ୍ୟ ଏହାକୁ ସମର୍ଥନ କରିଥିଲେ । ମାତ୍ର କେଶବଚନ୍ଦ୍ର ସେନ ହିନ୍ଦୁ ଧର୍ମାବଲମ୍ବୀ ନ ଥିଲେ । ବିଧର୍ମୀ କନ୍ୟାକୁ ଗ୍ରହଣ କରିବାପାଇଁ ରାଜ-ପରିବାରରେ ଘୋର ଆପତ୍ତି ହେଲା । ପ୍ରଜାମାନେ ମଧ୍ୟ ଏହାର ବିରୋଧ କଲେ । ପ୍ରଜାନୁରଞ୍ଜନ ରାଜାର ଶ୍ରେଷ୍ଠ ଧର୍ମ । ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ରାମଚନ୍ଦ୍ର ଭଞ୍ଜଦେବ ୨୫ ବର୍ଷ ବୟସରେ ପାଞ୍ଚକୋଟର ମହାରାଜା ନୀଳମଣି ସିଂହଙ୍କ ନାତୁଣୀ ଲକ୍ଷ୍ମୀକୁମାରୀଙ୍କୁ ୧୮୯୬ ଖ୍ରୀଷ୍ଟାବ୍ଦରେ ବିବାହ କଲେ ।

ଲକ୍ଷ୍ମୀକୁମାରୀ ମଧ୍ୟ ଆଦର୍ଶ ପତ୍ନୀ ଥିଲେ । ସେ ତାଙ୍କର କୋମଳ ମଧୁର ବ୍ୟବହାରରେ ସମସ୍ତଙ୍କୁ ବିମୋହିତ କଲେ । ମହାରାଜାଙ୍କ ଜୀବନ ମଧ୍ୟ ସୁଖମୟ ହେଲା । ୧୮୯୭ ଖ୍ରୀଷ୍ଟାବ୍ଦରେ ତାଙ୍କର ଏକ କନ୍ୟା ଜାତ ହେଲା । ତା'ର ଦୁଇ ବର୍ଷ ପରେ ଅର୍ଥାତ୍ ୧୮୯୯ ଅଗଷ୍ଟ ମାସ ୭ ତାରିଖରେ ତାଙ୍କର ପ୍ରଥମ ପୁତ୍ର ଭୂମିଷ୍ଠ ହେଲେ । ୧୯୦୧ ଖ୍ରୀଷ୍ଟାବ୍ଦରେ ତାଙ୍କର ଦ୍ୱିତୀୟ ପୁତ୍ର ଜନ୍ମ ଗ୍ରହଣ କଲେ । ମାତ୍ର ମୟୂରଭଞ୍ଜରେ ବସନ୍ତରୋଗ ଦେଖା ଦେଲା । ମହାରାଣୀ ଲକ୍ଷ୍ମୀକୁମାରୀ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ୧୯୦୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୬ ତାରିଖରେ ମୃତ୍ୟୁବରଣ କଲେ । ପ୍ରାଣସମା ପତ୍ନୀଙ୍କର ବିୟୋଗରେ ମହାରାଜ ଶୋକାଭିଭୂତ ହୋଇପଡ଼ିବା ସ୍ୱାଭାବିକ । ମାଛ-ମାଂସ ପରିତ୍ୟାଗପୂର୍ବକ ସେ ସନ୍ନ୍ୟାସ ଜୀବନ ଯାପନ କଲେ । ମହାରାଣୀଙ୍କ ସ୍ମୃତି ଉଦ୍ଦେଶ୍ୟରେ ୧୯୦୬ରେ ସେ ଲକ୍ଷ୍ମୀକୁମାରୀ ଧର୍ମଶାଳା ନିର୍ମାଣ କଲେ । ଏକ ସୁନ୍ଦର ଉଦ୍ୟାନ ମଧ୍ୟ ରାଣୀବାଗ ନାମରେ ନାମିତ ହୋଇଥିଲା ।

### ଶାସନ ସଂସ୍କାର

ମହାରାଜା ରାମଚନ୍ଦ୍ର ଭଞ୍ଜ ରାଜଗାଦିରେ ବସିବାମାତ୍ରେ ଉତ୍ତମ ଶାସନ ପ୍ରବର୍ତ୍ତନପାଇଁ ଦୃଷ୍ଟି ଦେଲେ । ଏଥିପୂର୍ବରୁ ସେ ଶାସନ ପରିଚାଳନା ବିଷୟରେ ପ୍ରଭୂତ ଜ୍ଞାନ ଲାଭ କରିଥିଲେ । ସେ ତେଣୁ କାଳ ବିଳମ୍ବ ନ କରି ତାହାକୁ କାର୍ଯ୍ୟକାରୀ କରିବାପାଇଁ ଲାଗିପଡ଼ିଲେ ।

୧୮୯୩ ମସିହାରେ ସେ ରାଜ୍ୟର ଦେୱାନ, ବିଚାରପତି, ଇଞ୍ଜିନିଅର, ପୁଲିସ ଅଧ୍ୟକ୍ଷ ଓ ଅନ୍ୟ ଦୁଇ ଜଣ ଅବୈତନିକ ସଭ୍ୟଙ୍କୁ ନେଇ ଏକ କାଉନସିଲ ଗଢ଼ିଲେ । ଏହାକୁ 'ମୟୂରଭଞ୍ଜ ଷ୍ଟେଟ୍ କାଉନସିଲ' କୁହାଗଲା । ଏହି କାଉନସିଲର ମତ ଅନୁଯାୟୀ ଶାସନ କାର୍ଯ୍ୟ ସମ୍ପାଦନ କରାଗଲା । ଏହା ନୂଆ ନୂଆ ଆଇନ ପ୍ରଣୟନ, ବାର୍ଷିକ ଆୟବ୍ୟୟର ହିସାବ ଓ ଶାସନ ସମ୍ପର୍କୀୟ ସମସ୍ତ ଦାୟିତ୍ୱ ଗ୍ରହଣ କଲା ।

ପ୍ରଥମେ ବ୍ରିଟିଶ ଶାସନର ପ୍ରଚଳିତ ଦଣ୍ଡବିଧି ଓ କାର୍ଯ୍ୟବିଧି ଆଇନମାନ ମୟୂରଭଞ୍ଜରେ ପ୍ରଚଳନ କରାଗଲା । ପ୍ରଜାସ୍ୱତ୍ୱ ଆଇନ, ସର୍ଭେ, ବନ୍ଦୋବସ୍ତ ଆଇନ, ଷ୍ଟାମ୍ପ ଆଇନ, ରେଜିଷ୍ଟ୍ରେସନ ଆଇନ, ପୁଲିସ ଆଇନ ପ୍ରଭୃତି ଏହାର ଅନ୍ତର୍ଗତ । ଏହି ଆଇନରେ ଯଥାଯୋଗ୍ୟ ପରିବର୍ତ୍ତନ କରାଯିବାର ମଧ୍ୟ ବ୍ୟବସ୍ଥା ହେଲା । ମୟୂରଭଞ୍ଜରେ ଦେବାନୀ ଓ ଫୌଜଦାରୀ ବିଭାଗକୁ ଅଲଗା କରାଗଲା । ସେତେବେଳେ ବ୍ରିଟିଶ ଶାସନରେ ମଧ୍ୟ ଦେବାନୀ ଓ ଫୌଜଦାରୀ ବିଭାଗ ଅଲଗା ହୋଇ ନ ଥାଏ । ସେସମୟରେ ସେଭଳି ଦାବି ମଧ୍ୟ ହୋଇ ନ ଥିଲା । ମାତ୍ର ନ୍ୟାୟ ବିଚାରଦେବାପାଇଁ ସେ ଏହି ଦୁଇ ବିଭାଗକୁ ପୃଥକ୍ କଲେ । ଏହାଦ୍ୱାରା ଅବଶ୍ୟ ତାଙ୍କର କ୍ଷମତା ସଙ୍କୁଚିତ ହୋଇଯିବା ସ୍ୱାଭାବିକ । ରାଜା କିନ୍ତୁ ଏଥିରେ ଏକଛତ୍ରବାଦୀ ହେବା ଆଦୌ ସମ୍ଭବ ନ ଥିଲା । ସେ ଏହି ପଦକ୍ଷେପ ନେଇ ସମସ୍ତଙ୍କର ପ୍ରଶଂସାଭାଜନ ହୋଇପାରିଲେ ।

ରାଜା ନିଜ ରାଜ୍ୟକୁ ଚାରୋଟି ସବ୍‌ଡିଭିଜନରେ ବିଭକ୍ତ କଲେ । ସେଗୁଡ଼ିକ ହେଲା ସଦର, ବ୍ରାହ୍ମଣଘାଟି, ପାଞ୍ଚପୀଢ଼ ଓ କପ୍ତିପଦା । ପ୍ରତ୍ୟେକ ସବଡିଭିଜନପାଇଁ ଜଣେ ଲେଖାଏଁ ଉଚ୍ଚ କର୍ମଚାରୀ ନିଯୁକ୍ତ ହେଲେ । ସଦର ସବଡିଭିଜନ ବ୍ୟତୀତ ଅନ୍ୟ ସବଡିଭିଜନର ଏହି ଉଚ୍ଚ କର୍ମଚାରୀ ଦେବାନୀ ଓ ଫୌଜଦାରୀ ମୋକଦ୍ଦମାଗୁଡ଼ିକ ବିଚାର କରିପାରୁଥିଲେ । ସଦର ସବ୍‌ଡିଭିଜନର ଉଚ୍ଚ କର୍ମଚାରୀଙ୍କୁ କଲେକ୍ଟର କୁହାଗଲା । ଏହାଙ୍କର କୌଣସି ଦେବାନୀ କ୍ଷମତା ନ ଥିଲା ।

ମହାରାଜା ନିଜେ ଶାସନ ବିଭାଗର ମୁଖ୍ୟ ଥିଲେ । ପୂର୍ତ୍ତ, ଜଙ୍ଗଲ, ଶିକ୍ଷା, ସ୍ୱାସ୍ଥ୍ୟ ଓ ପୋଲିସ ବିଭାଗଗୁଡ଼ିକ ତାଙ୍କ କର୍ତ୍ତୃତ୍ୱାଧୀନ ଥିଲା ।

ଦେବାନ୍ ରାଜ୍ୟର ରାଜସ୍ୱ ବିଭାଗର ସର୍ବମୟକର୍ତ୍ତା ଥିଲେ । ସେ ବନ୍ଦୋବସ୍ତ, ସର୍ଭେ, କୃଷିବିଭାଗ ଦାୟିତ୍ୱରେ ଥିଲେ । ସବ୍‌ଡିଭିଜନ୍‌ର ଉଚ୍ଚ କର୍ମଚାରୀମାନେ ତାଙ୍କର କର୍ତ୍ତୃତ୍ୱାଧୀନ ଥିଲେ ।

ବିଚାର ବିଭାଗର ମୁଖ୍ୟ ଥିଲେ ଷ୍ଟେଟ୍ ଜଜ୍ ବା ପ୍ରଧାନ ବିଚାରପତି । ସବଜଜ୍ ଓ ବିଚାର ବିଭାଗର ଉଚ୍ଚକର୍ମଚାରୀମାନେ ତାଙ୍କର ଅଧୀନରେ କାର୍ଯ୍ୟ କରୁଥିଲେ ।

ବ୍ରିଟିଶ ଶାସନ ଢାଞ୍ଚାରେ ମହାରାଜା ପୋଲିସ ବିଭାଗକୁ ଗଠନ କରିଥିଲେ । ପୂର୍ବରୁ ରାଜ୍ୟରେ ପୋଲିସ ବିଭାଗ ଆଦୌ ନ ଥିଲା । ସର୍ଦ୍ଦାର ପୋଲିସ କାର୍ଯ୍ୟ ତୁଲାଉଥିଲେ । ସେମାନେ ଗ୍ରାମମାନଙ୍କରେ ଶାନ୍ତିଶୃଙ୍ଖଳା ରକ୍ଷା କରୁଥିଲେ । ମାତ୍ର ରାଷ୍ଟ୍ର ବା (State) ର କୌଣସି କର୍ତ୍ତୃତ୍ୱ ସେମାନଙ୍କ ଉପରେ ନ ଥିଲା ।

କ୍ରମେ ଥାନା ଓ ଫାଣ୍ଡିମାନ ସ୍ଥାପିତ ହେଲା । ଚୌକିଦାର ଟ୍ୟାକ୍ସ ଆଦାୟ ହୋଇ ପୋଲିସ କର୍ମଚାରୀମାନଙ୍କୁ ନିୟମିତ ଭାବରେ ଦରମା ଦେବାର ବ୍ୟବସ୍ଥା ହେଲା । ଶିକ୍ଷିତ ବ୍ୟକ୍ତିମାନଙ୍କୁ ଏଥିରେ ନିଯୁକ୍ତ କରାଗଲା । ମୟୂରଭଞ୍ଜରେ ୧୯୧୯ରେ ୧୩ଟି ଥାନା ଓ ୧୦ଟି ଫାଣ୍ଡି ଥିଲାବେଳେ ରାମଚନ୍ଦ୍ର ଭଞ୍ଜଦେବଙ୍କ ସମୟରେ ୬୫ ଜଣ ଉଚ୍ଚ ପୋଲିସ କର୍ମଚାରୀ ଓ ୨୭୨ ଜଣ କନଷ୍ଟେବଲ ନିଯୁକ୍ତ ହୋଇଥିଲେ ।

ରାଜ୍ୟରେ ମହାରାଜା ଗ୍ରାମ ପଞ୍ଚାୟତ ବ୍ୟବସ୍ଥା ପ୍ରବର୍ତ୍ତନ କରିଥିଲେ । ଗ୍ରାମର ବିଶିଷ୍ଟ ବ୍ୟକ୍ତିମାନଙ୍କୁ ନେଇ ପଞ୍ଚାୟତ ଗଠନ କରାଗଲା । ସେମାନଙ୍କର ମୁଖ୍ୟ ହେଲେ ପ୍ରେସିଡେଣ୍ଟ୍ । ଏହି ପଞ୍ଚାୟତଦ୍ୱାରା ଗ୍ରାମମାନଙ୍କରେ ଶାନ୍ତିଶୃଙ୍ଖଳା ରକ୍ଷା କରାଗଲା ।

ପୂର୍ବରୁ ରାଜ୍ୟର କର୍ମଚାରୀମାନେ ଜାଗିରି ଜମିଭୋଗ କରୁଥିଲେ । ସେମାନଙ୍କୁ ବେତନ ଦିଆଯାଉ ନ ଥିଲା । ବ୍ରିଟିଶ ଶାସନ ଢାଞ୍ଚାରେ ମହାରାଜା ବେତନ ଦେବାର ବ୍ୟବସ୍ଥା କଲେ । କାର୍ଯ୍ୟଦକ୍ଷତା ନିମନ୍ତେ ବେତନ ବୃଦ୍ଧି କରାଗଲା । କର୍ମରୁ ଅବସର ନେଲାବେଳେ ସେମାନଙ୍କପାଇଁ ଅବସରକାଳୀନ ଭତ୍ତା ଦେବାର ବ୍ୟବସ୍ଥା ମଧ୍ୟ ହେଲା । ଫଳରେ ଶିକ୍ଷିତ ଓ ସଚ୍ଚୋଟ ବ୍ୟକ୍ତିମାନେ ଚାକିରିପାଇଁ ଆଗ୍ରହୀ ହେଲେ । ରାଜ୍ୟ ଶାସନର ମାନ ମଧ୍ୟ ଉନ୍ନତ ହେଲା ।

## ବିଦେଶ ଭ୍ରମଣ

ରାଜ୍ୟର ସର୍ବାଙ୍ଗୀଣ ଉନ୍ନତିପାଇଁ ମହାରାଜା ରାମଚନ୍ଦ୍ର ଭଞ୍ଜଦେବ ଯତ୍ନଶୀଳ ଥିଲେ । ପୃଥିବୀର ଉନ୍ନତ ଦେଶମାନଙ୍କରେ ଶିଳ୍ପ, ବାଣିଜ୍ୟ, କୃଷି, ଶିକ୍ଷା ପ୍ରଭୃତି ବିଷୟରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାପାଇଁ ସେ ତେଣୁ ଦେଶ ଭ୍ରମଣରେ ଯିବାକୁ ସ୍ଥିର କଲେ । ଦୁଇ ପୁତ୍ରଙ୍କୁ ଆଜମିରସ୍ଥ ମେୟୋ କଲେଜରେ ଶିକ୍ଷାଦେବାର ବ୍ୟବସ୍ଥା କଲା ପରେ ସେ ବିଦେଶ ଭ୍ରମଣରେ ବାହାରିଲେ । ୧୯୧୪ ମେ ମାସ ୮ ତାରିଖରେ ସେ ଜାପାନ ଅଭିମୁଖେ ଯାତ୍ରା କଲେ । ସେଇ ମାସ ୨୭ ତାରିଖରେ ସେ ହଂକଂଠାରେ ପହଞ୍ଚିଲେ । ଚୀନ ଦେଶର କେତେକ ଅଞ୍ଚଳ ପରିଦର୍ଶନ କରି ସେ ହଂକଂକୁ ଫେରିଆସିଲେ । ସେଠାରୁ ୟାକୋହାମା ସହର ଦେଇ ଟୋକିଓରେ ପହଞ୍ଚିଲେ । ସେଠାରେ ସେ ୧୦ ଦିନ ରହି ଶିଳ୍ପ ଓ କୃଷି ବିଷୟରେ ଅନୁଧ୍ୟାନ କଲେ । ଜୁନ୍ ମାସ ୨୭ ତାରିଖରେ ଜାପାନର ସମ୍ରାଟ୍‌ଙ୍କ ସହ ତାଙ୍କର ସୌଜନ୍ୟମୂଳକ ସାକ୍ଷାତ ହେଲା । ସେ କିଓଟୋ, ନାରାଓସାକା, ନାଗୋୟା ପ୍ରଭୃତି ସ୍ଥାନ ମଧ୍ୟ ପରିଦର୍ଶନ କରିଥିଲେ ।

ଏହାପରେ ରାମଚନ୍ଦ୍ରଦେବ ଆମେରିକା ଗଲେ । ବାଟରେ ବିଶ୍ୱବିଖ୍ୟାତ ନାଏଗ୍ରା ଜଳପ୍ରପାତ ଦେଖି ଅଭିଭୂତ ହୋଇପଡ଼ିଥିଲେ । ମଣ୍ଟ୍ରିଲ ଓ କୁଇବେକ ପ୍ରଭୃତି ସ୍ଥାନ ପରିଦର୍ଶନ କଲାପରେ ସେ ନିଉୟର୍କରେ ପହଞ୍ଚିଲେ । ସେଠାରେ ସେ ନଅ ଦିନ କଟାଇଲେ । ସେଠାରେ ଶିଳ୍ପ କାରଖାନାମାନ ବୁଲି ଦେଖିଥିଲେ । ନିଜ ଦେଶର ଅବସ୍ଥା ସହିତ ନିଜ ରାଜ୍ୟ ତୁଳନା କରି ଗଭୀର ବେଦନା ଅନୁଭବ କଲେ ।

ଆମେରିକାରୁ ସେ ଆଟ୍‌ଲାଣ୍ଟିକ ମହାସାଗର ଦେଇ ଇଂଲଣ୍ଡ ଅଭିମୁଖେ ଯାତ୍ରା କଲେ । ୧୯୧୦ ଅଗଷ୍ଟ ମାସ ୨୭ ତାରିଖରେ ସେ ଲଣ୍ଡନରେ ପହଞ୍ଚିଲେ । ସେଠାରେ ଲର୍ଡ ମର୍ଲି ପ୍ରଭୃତି ବଡ଼ ବଡ଼ ରାଜନୀତିକ ନେତାମାନଙ୍କୁ ସାକ୍ଷାତ କଲେ । ସେହି ବର୍ଷ ଅକ୍ଟୋବର ମାସରେ ଇଂଲଣ୍ଡର ସମ୍ରାଟ୍‌ଙ୍କ ସହ ତାଙ୍କର ସାକ୍ଷାତ ହେଲା ।

ସେଠାରେ ଅବସ୍ଥାନ କରୁଥିବା ସମୟରେ ବ୍ରିଟିଶ ସରକାର ତାଙ୍କର ସୁଶାସନ ଓ କାର୍ଯ୍ୟଦକ୍ଷତା ନିମନ୍ତେ ପୁରୁଷାନୁକ୍ରମେ 'ମହାରାଜା' ଉପାଧିରେ ଭୂଷିତ କରିଥିଲେ ।

ଇଂଲଣ୍ଡରୁ ସେ ଫ୍ରାନ୍‌ସ ଓ ସୁଇଜରଲ୍ୟାଣ୍ଡ ଗଲେ । ସେଠାରେ ଦର୍ଶନୀୟ ସ୍ଥାନମାନ ଦେଖି ଅପାର ଆନନ୍ଦ ଅନୁଭବ କରିଥିଲେ । ଏହା ପରେ ସେ ଦେଶକୁ ଫେରିଲେ । କଲିକତାରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା । ସେ ସେହି ସମ୍ବର୍ଦ୍ଧନାସଭାରେ ମାତୃଭାଷା ଓଡ଼ିଆରେ ଭାଷଣ ଦେଇ ସ୍ୱଦେଶ ପ୍ରୀତିର ପରିଚୟ ଦେଇଥିଲେ ।

## ପ୍ରଜାହିତକର କାର୍ଯ୍ୟ

ମହାରାଜା ପ୍ରଜାମାନଙ୍କର ମଙ୍ଗଳପାଇଁ ବିଶେଷ ଦୃଷ୍ଟି ଦେଇଥିଲେ । ପ୍ରଚଳିତ ପ୍ରଥା ଅନୁଯାୟୀ ଚାଷ ଜମିରେ ପ୍ରଜାର କୌଣସି ସ୍ୱତ୍ୱ ନ ଥିଲା । ରାଜା ଇଚ୍ଛା କଲେ ପ୍ରଜାଙ୍କୁ ଜମିରୁ ବେଦଖଲ କରିଦେଉଥିଲେ । ତା'ର ଜମିକୁ ଅନ୍ୟକୁ ଦେଇ ପାରୁଥିଲେ । ପ୍ରଜାମାନଙ୍କର କଲ୍ୟାଣ ନିମନ୍ତେ ୧୮୯୨ ଖ୍ରୀଷ୍ଟାବ୍ଦରେ ସେ ପ୍ରଜାମାନଙ୍କୁ ଦଖଲସ୍ୱତ୍ୱ ଦେଲେ । ଆବଶ୍ୟକ ପଡ଼ିଲେ ସେ ଜମିକୁ ବିକ୍ରି ବା ବନ୍ଧକ ଦେଇପାରିଲା ।

ରାଜସ୍ୱ ବିଭାଗରେ ବହୁ ପରିବର୍ତ୍ତନ ଅଣାଗଲା । ପୂର୍ବରୁ ଜମିମାନଙ୍କରେ ଭଉଁରିଆ ବନ୍ଦୋବସ୍ତ ହେଉଥିଲା । ପଦିକା ମାପ କରାଯାଇ ଜମିର ଜମା ଓ କ୍ଷେତ୍ରଫଳ ଖସଡ଼ାରେ ଲେଖା ହେଉଥିଲା । ମାତ୍ର ଏହି ପ୍ରକାର ବନ୍ଦୋବସ୍ତଦ୍ୱାରା

ଜମିର ସୀମା ସରହଦ ଠିକ୍ ଭାବେ ନିର୍ଣ୍ଣୟ କରାଯାଇପାରୁ ନ ଥିଲା । ମହାରାଜା ତେଣୁ ଆଧୁନିକ ଧରଣର ସର୍ଭେ ଓ ବନ୍ଦୋବସ୍ତ କରାଇଲେ । ପ୍ରତ୍ୟେକ ମୌଜାର ସୀମାସରହଦ ଠିକ୍‌ଭାବେ ନିର୍ଣ୍ଣୀତ ହେଲା । ନିର୍ଭୁଲ ନକ୍ସା ଓ ଖତିଆନମାନ ପ୍ରସ୍ତୁତ କରାଗଲା ।

ରାଜସ୍ୱ ଆଦାୟରେ କୌଣସି ବିଧିବଦ୍ଧ ବ୍ୟବସ୍ଥା ନ ଥିଲା । ଏହା ଅସୁଲକାରୀ କର୍ମଚାରୀଙ୍କ ହସ୍ତରେ ନ୍ୟସ୍ତ ଥିଲା । ସେମାନେ ମନଇଚ୍ଛା ରାଜସ୍ୱ ଆଦାୟ କରୁଥିଲେ । ମହାରାଜା ତେଣୁ ଜମିର ଶ୍ରେଣୀବିଭାଗ କରାଇ ବାର୍ଷିକ ଜମା ଧାର୍ଯ୍ୟ କଲେ । ରାଜ୍ୟରେ ପୂର୍ବରୁ ବହୁ ପ୍ରକାର କର ଆଦାୟ ହେଉଥିଲା; ମାତ୍ର ମହାରାଜା ଜମିର ରାଜସ୍ୱ ବ୍ୟତୀତ ଆଉ କୌଣସି କର ଆଦାୟ ହେବ ନାହିଁ ବୋଲି ନିର୍ଦ୍ଦେଶ ଦେଲେ ।

ପ୍ରଜାମାନଙ୍କୁ ମହାଜନମାନଙ୍କ କବଳରୁ ରକ୍ଷା କରିବାପାଇଁ ରାଜା ଆଇନ ପ୍ରଣୟନ କଲେ । ଯେକୌଣସି ପରିସ୍ଥିତିରେ ସୁଧ ମୂଳଟଙ୍କାରୁ ଅଧିକ ହେବ ନାହିଁ ବୋଲି ଆଇନ ପ୍ରଣୀତ ହେଲା । ଦେଣା ପରିଶୋଧ ହୋଇ ନ ପାରିଲେ ଜମି ନିଲାମ ହୋଇଗଲେ ମଧ୍ୟ ଘରବାଡ଼ି ନିଲାମ ହେବ ନାହିଁ ବୋଲି ଆଇନ କରାଗଲା । ମହାଜନମାନେ କରଜଦେବା ବନ୍ଦ କରିଦେଲେ ମଧ୍ୟ ରାମଚନ୍ଦ୍ର ଭଞ୍ଜଦେବ ଏଥିରୁ ଓହରିଗଲେ ନାହିଁ । ରାଜ୍ୟରେ ଅମାରମାନ କରାଯାଇ ଧାନ ରଖାଗଲା ଓ ଅଳ୍ପ ସୁଧରେ କରଜ ଆକାରରେ ଦିଆଗଲା ।

ରାଜ୍ୟରେ ପ୍ରଜାମାନେ କୃଷି ଉପରେ ନିର୍ଭର କରୁଥିବାରୁ କୃଷିର ଉନ୍ନତି ନିମନ୍ତେ ମହାରାଜା ରାମଚନ୍ଦ୍ରଦେବ ବିଶେଷ ଧ୍ୟାନ ଦେଲେ । ଜଳସେଚନର ସୁବିଧାପାଇଁ ସେ କେନାଲ, ପୁଷ୍କରିଣୀ, ନାଳ, ଗାଡ଼ିଆ ପ୍ରଭୃତି ଖନନ କରାଇଲେ । ହଳଡିହ ଓ ହଳଦିଆଠାରେ ଜଳଭଣ୍ଡାର ସୃଷ୍ଟି କରି ଛୋଟ ଛୋଟ କେନାଲଦ୍ୱାରା ପାଣି ମଡ଼ାଇବାର ବ୍ୟବସ୍ଥା ହେଲା । ଏଥିପାଇଁ ତାଙ୍କୁ ୬ ଲକ୍ଷ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଥିଲା ।

କୃଷି କର୍ମପାଇଁ ବିହନ ଓ ବଳଦ ପ୍ରଭୃତି କ୍ରୟ କରିବାପାଇଁ ଆବଶ୍ୟକୀୟ ଅର୍ଥ ଅଳ୍ପ ସୁଧରେ ଯୋଗାଇଦେବା ବ୍ୟବସ୍ଥା ଏହି ସମୟରେ ହେଲା । ଏଥିପାଇଁ ମହାରାଜାଙ୍କ ଉଦ୍ୟମରୁ ସମବାୟ ସମିତିମାନ ଗଢ଼ାଗଲା । ସେ ଯୁଗରେ ଏଗୁଡ଼ିକର କଳ୍ପନା ସୁଦ୍ଧା ବ୍ରିଟିଶ ଶାସିତ ଅଞ୍ଚଳରେ ହୋଇ ନ ଥିଲା । ଏହା ଯେ ମହାରାଜାଙ୍କର ଦୂରଦୃଷ୍ଟିର ପରିଚୟ ଦିଏ, ଏହା କହିବା ବାହୁଲ୍ୟମାତ୍ର ।

ମହାରାଜା ମଧ୍ୟ ପ୍ରଜାମାନଙ୍କର ଜୀବନ ଧାରଣର ମାନ ଉନ୍ନତ କରିବାପାଇଁ ଅର୍ଥକରୀ ଫସଲ ଉତ୍ପାଦନ ଦିଗରେ ଦୃଷ୍ଟି ଦେଲେ । ରାଜ୍ୟରେ ଆଖୁ ଓ ଚୀନାବାଦାମ ଚାଷର ବ୍ୟବସ୍ଥା ହେଲା । ଉନ୍ନତ ଧରଣର ବିହନ ମଧ୍ୟ ଅଣାଗଲା । ଫଳରେ ବହୁ ପ୍ରଜା ଅର୍ଥକରୀ ଫସଲ କରି ଲାଭବାନ୍ ହେଲେ । ରାଜ୍ୟରେ ରବର ଚାଷପାଇଁ ଯୋଜନା ପ୍ରସ୍ତୁତ ହେଲା । କଲିକତାର ଡାନିଏଲେ ହ୍ୟାମିଲଟନ୍‌ଙ୍କୁ ଜମି ପଟା ଦିଆଗଲା । ରାଜ୍ୟରେ ରବର ଉତ୍ପାଦନ ହେଲା । କପା ଚାଷକୁ ମଧ୍ୟ ଉତ୍ସାହିତ କରାଗଲା ।

ଶିଳ୍ପ ବିକାଶ ଦିଗରେ ମହାରାଜା ଆଗ୍ରହୀ ଥିଲେ । ମୟୂରଭଞ୍ଜର ପ୍ରଧାନ ଶିଳ୍ପ ଥିଲା ମଠାଲୁଗା । ବଣଜଙ୍ଗଲରେ ଟସରପୋକଦ୍ୱାରା ଟସର ଉତ୍ପାଦନ ହେଉଥିଲା । ଏହି ଶିଳ୍ପର ଉନ୍ନତିପାଇଁ ଆଧୁନିକଧରଣର ତନ୍ତମାନ ରାଜ୍ୟରେ ମହାରାଜା ବସାଇଲେ । ଅତି ଉନ୍ନତ ଧରଣର ରଙ୍ଗ ମଧ୍ୟ ତିଆରି ହେଲା । ଫଳରେ ନାନା ରଙ୍ଗର ଓ ଉତ୍କୃଷ୍ଟ ଧରଣର ମଠାମାନ ବୁଣାଗଲା । ତାହା ଦେଶବିଦେଶରେ ବିକ୍ରି ହେଲା । ୧୯୦୬ ଖ୍ରୀଷ୍ଟାବ୍ଦରେ କଲିକତାରେ ଓ ୧୯୧୦ରେ ଯାଜପୁରରେ ଏକ ପ୍ରଦର୍ଶନୀ ଖୋଲାଯାଇଥିଲା । ସେଥିରେ ଏହି ରେଶମ ଲୁଗା ଉଚ୍ଚ ପ୍ରଶଂସିତ ହେଲା ଓ ବହୁ ପରିମାଣରେ ବିକ୍ରି ହେଲା । ସେହିପରି ରେଶମ ଶିଳ୍ପର ଉନ୍ନତିପାଇଁ ମହାରାଜା ଉଦ୍ୟମ କରିଥିଲେ । ରେଶମ ପୋକ ରହିବା ଗଛମାନ ଲଗାଗଲା । ଫଳରେ ରେଶମ ଶିଳ୍ପର ବିକାଶ ହେଲା ।

ଦେଶରେ ଶିଳ୍ପ ବିସ୍ତାରପାଇଁ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଆପ୍ରାଣ ଉଦ୍ୟମ କରିଥିଲେ । ବଢ଼େଇ, କମାର ପ୍ରଭୃତି କାରିଗରମାନଙ୍କୁ ତାଲିମଦେବାପାଇଁ ବାରିପଦାଠାରେ ଗୋଟିଏ ସ୍କୁଲ ସ୍ଥାପିତ ହେଲା । ବ୍ରାହ୍ମଣଘାଟି ସବ୍‌ଡିଭିଜନରେ ଲାଖ କାରଖାନା ବସାଗଲା । ଫଳରେ ବହୁ ବ୍ୟକ୍ତି କର୍ମରେ ନିଯୁକ୍ତ ହେଲେ । ଶିକ୍ଷାର ପ୍ରସାରପାଇଁ ମହାରାଜା ମଧ୍ୟ ବହୁବିଧ ଉଦ୍ୟମ କରିଥିଲେ । ୧୮୯୨ ମସିହାରେ ବାରିପଦା ମାଇନର ସ୍କୁଲଟି ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ଏହି ସ୍କୁଲର ଯାବତୀୟ ଖର୍ଚ୍ଚ ଷ୍ଟେଟ୍ ବହନ କଲା । ଗରିବ ଛାତ୍ରମାନଙ୍କୁ ପାଠ୍ୟପୁସ୍ତକ, କାଗଜ ପ୍ରଭୃତି ଯୋଗାଇଦିଆଗଲା । ଶିକ୍ଷାକୁ ସର୍ବପ୍ରକାରେ ଉତ୍ସାହିତ କରିବା ଫଳରେ ରାଜ୍ୟରେ ସ୍କୁଲ ସଂଖ୍ୟା ବୃଦ୍ଧି ପାଇଲା । ପୂର୍ବତନ ମହାରାଜା କୃଷ୍ଣଚନ୍ଦ୍ରଦେବଙ୍କ ମୃତ୍ୟୁ ସମୟରେ ମୟୂରଭଞ୍ଜର ସ୍କୁଲ ସଂଖ୍ୟା ୪୪ ଥିଲାବେଳେ ୧୯୧୦ ବେଳକୁ ତାହା ୪୩୧ରେ ପହଞ୍ଚିଲା । ମହାରାଜା ପ୍ରାଥମିକ ଶିକ୍ଷାକୁ ବାଧ୍ୟତାମୂଳକ କରିବାକୁ ଚାହିଁଥିଲେ; ମାତ୍ର ନାନା କାରଣରୁ ତାହା ସଫଳ ହୋଇପାରି ନ ଥିଲା ।

ସ୍ୱାସ୍ଥ୍ୟ ପ୍ରତି ମହାରାଜାଙ୍କ ଅବଦାନ ମଧ କମ୍ ନୁହେଁ । ପୂର୍ବରୁ ରାଜ୍ୟରେ ସ୍ୱାସ୍ଥ୍ୟବିଭାଗ ନ ଥିଲା କହିଲେ ଚଳେ । ସେଥିରେ ସେ ବ୍ୟଥିତ ହୋଇପଡ଼ିବା ସ୍ୱାଭାବିକ । ସେ ରାଜ୍ୟରେ ଆଠୋଟି ଡାକ୍ତରଖାନା ଖୋଲିଲେ । ପ୍ରତି ଡାକ୍ତରଖାନାରେ ଆବଶ୍ୟକୀୟ ଅର୍ଥ ଓ ଉପକରଣ ଯୋଗାଇ ଦିଆଗଲା । ରାଜ୍ୟରେ ବସନ୍ତ ରୋଗ ଦେଖାଦେଉଥିବାରୁ ତା'ର ନିରାକରଣପାଇଁ ଯଥାସାଧ ଚେଷ୍ଟା କଲେ । ଟିକାଦେବାର ବ୍ୟବସ୍ଥା ହେଲା ।

ରାଜ୍ୟରେ ମଧ ସ୍ୱାୟତ୍ତ ଶାସନ ପ୍ରବର୍ତ୍ତିତ ହେଲା । ୧୯୦୫ରେ ବାରିପଦା ମ୍ୟୁନିସିପାଲିଟି ଗଠିତ ହେଲା । ତହିଁରେ ୧୫ଜଣ କମିସନର ରହିଲେ । ସେଥି ମଧ୍ୟରୁ ନଅ ଜଣ ଷ୍ଟେଟ୍ କର୍ମଚାରୀ ଓ ଅବଶିଷ୍ଟ ଛଅ ଜଣ ଅବୈତନିକ ସଭ୍ୟ ରହିଲେ । ଏମାନଙ୍କ ମଧ୍ୟରୁ ଜଣଙ୍କୁ ଚେୟାରମ୍ୟାନ ହିସାବରେ ନିଯୁକ୍ତ କରାଗଲା । ସହରର ରାସ୍ତା ଘାଟ ପରିଷ୍କାର ରଖିବା, ଆଲୋକ ବ୍ୟବସ୍ଥା, ପାନୀୟ ଜଳ ଯୋଗାଣ ପ୍ରଭୃତି ଏହାର କାର୍ଯ୍ୟ ହେଲା । ପୌର ଟିକସ୍ ବାଦ ଯାହା ଅଧିକ ଅର୍ଥ ଆବଶ୍ୟକ ହେଉଥିଲା, ତାହା ରାଜକୋଷରୁ ଭରଣା କରାଗଲା ।

ମହାରାଜା ବାରିପଦାରେ ଗୋଟିଏ ପୁସ୍ତକାଗାର ସ୍ଥାପନ କରିଥିଲେ । ଏହାର ନାମ ଭିକ୍ଟୋରିଆ ଡାଇମଣ୍ଡ ଜୁବୁଲି ଲାଇବ୍ରେରୀ ରଖାଗଲା । ଏହି ଲାଇବ୍ରେରୀ ଓଡ଼ିଶାର ଅନ୍ୟତମ ବୃହତ୍ତମ ଲାଇବ୍ରେରୀ ହିସାବରେ ଗଣ୍ୟ ହୁଏ ।

୧୮୯୪ରେ ଜଙ୍ଗଲ ବିଭାଗ ସୃଷ୍ଟି ହେଲା । ଜଙ୍ଗଲଜାତ କାଠ ବାହାରେ ବିକ୍ରୟ କରାଯିବା ଫଳରେ ବହୁ ଅର୍ଥ ରାଜକୋଷକୁ ଆସିଲା । ବାଙ୍ଗ୍ରିପୋଶୀଠାରେ ଗୋଟିଏ ବଡ଼ ଧରଣର କରତକଳ ସ୍ଥାପନ କରାଗଲା । ସେହି ସମୟରେ ଜଙ୍ଗଲ ବିଭାଗର ବାର୍ଷିକ ଆୟ ଅଢ଼େଇ ଲକ୍ଷ ଟଙ୍କା ହୋଇଥିବାର ଜଣାଯାଏ ।

ରାଜ୍ୟରେ ବିପୁଳ ଖଣିଜଦ୍ରବ୍ୟ ଭରପୂର ଥିବାରୁ ଏହାର ଅନୁସନ୍ଧାନ ନିମନ୍ତେ ମହାରାଜା ଏକ ବିଶେଷଜ୍ଞ କମିଟି ନିଯୁକ୍ତ କଲେ । ଏହା ଫଳରେ ମୟୂରଭଞ୍ଜର ଗୋରୁମହିଷାଣୀ ପାହାଡ଼ରେ ଭାରତର ବୃହତ୍ତମ ଲୌହ ଖଣି ଥିବାର ଜଣାପଡ଼ିଲା । ଧନାଗମ ଓ ନିଯୁକ୍ତି ସୁବିଧାକୁ ଦୃଷ୍ଟିରେ ରଖି ସେ ବମ୍ବେର ଜାମସେଦଜୀ ଟାଟାଙ୍କ ହସ୍ତେ ଗୋରୁମହିଷାଣୀ ଓ ତାହାର ନିକଟବର୍ତ୍ତୀ ଅଞ୍ଚଳମାନଙ୍କରୁ ଲୌହ ଉତ୍ପାଦନ କରିବାର କ୍ଷମତା ନ୍ୟସ୍ତ କଲେ । ୧୯୦୮ରେ ଟାଟା କମ୍ପାନୀ ସାକ୍‌ଚିଠାରେ ଗୋଟିଏ ଲୁହା କାରଖାନା ନିର୍ମାଣ କଲେ । ଏହି କାରଖାନାରେ ବ୍ୟବହୃତ ହେଉଥିବା ସମସ୍ତ ଲୌହପଥର ମୟୂରଭଞ୍ଜର ଗୋରୁମହିଷାଣୀ ପାହାଡ଼ରୁ ଆସୁଥିଲା କହିଲେ ଚଳେ ।

ଟାଟା କମ୍ପାନୀ ଗୋରୁମହିଷାଣୀ ପାହାଡ଼ରୁ କାଳିମାଟି ପର୍ଯ୍ୟନ୍ତ ଲୌହପଥର ନେବାପାଇଁ ଗୋଟିଏ ରେଳ ଲାଇନ ବସାଇଲେ ।

ମହାରାଜା ରାମଚନ୍ଦ୍ର ଭଞ୍ଜଦେବଙ୍କ ସମୟରେ ୫୦୨ ମାଇଲ ନୂଆ ରାସ୍ତା ତିଆରି ହୋଇଥିଲା । ରୁପ୍‌ସାଠାରୁ ବାରିପଦା ପର୍ଯ୍ୟନ୍ତ ରେଳ ଲାଇନ୍ ବସାଗଲା । ଏହାର ସମସ୍ତ ଖର୍ଚ୍ଚ ଷ୍ଟେଟ୍ ବହନ କରିଥିଲା । ବାରିପଦାରେ ଥାନା, ସ୍କୁଲ ଓ ଡାକ୍ତରଖାନାପାଇଁ ପକ୍କା ଗୃହମାନ ନିର୍ମାଣ କରାଗଲା । ନୂଆ କାରାଗାର ମଧ୍ୟ ନିର୍ମିତ ହେଲା । ପୁରୀ, କଟକ ଓ କଲିକତାରେ ମୟୂରଭଞ୍ଜ ନିବାସମାନ ନିର୍ମାଣ କରାଗଲା ।

ବୁଢ଼ାବଳଙ୍ଗ ନଦୀ ଶିମିଳିପାଳ ପର୍ବତରୁ ତଳକୁ ଅବତରଣ କଲାବେଳେ ସୁନ୍ଦର ଜଳପ୍ରପାତ ସୃଷ୍ଟି କରେ । ଏହି ଜଳପ୍ରପାତରୁ ସେ ବିଦ୍ୟୁତ୍ ଉତ୍ପାଦନପାଇଁ ବିଶେଷଜ୍ଞମାନଙ୍କୁ ନିଯୁକ୍ତ କରିଥିଲେ । ମାତ୍ର ବ୍ୟୟସାପେକ୍ଷ ଜଣାପଡ଼ିବାରୁ ଏହି ପ୍ରକଳ୍ପଟି କାର୍ଯ୍ୟକାରୀ ହୋଇ ନ ଥିଲା ।

## ଛଉ ନୃତ୍ୟ

ମୟୂରଭଞ୍ଜର ଛଉନୃତ୍ୟ ପ୍ରସିଦ୍ଧ । ଏହି ନୃତ୍ୟ ବଳ, ବୀର୍ଯ୍ୟ ତଥା କ୍ଷମତାର ପରିଚାୟକ । ଏହି ନୃତ୍ୟକୁ ଲୋକଲୋଚନକୁ ଆଣିବାକୁ ମହାରାଜା ବହୁ ଉଦ୍ୟମ କରିଥିଲେ । ଇଂଲଣ୍ଡର ମହାମାନ୍ୟ ସମ୍ରାଟ୍ ଓ ସାମ୍ରାଜ୍ଞୀ ଭାରତକୁ ଆସିବା ସମୟରେ ଏହି ନୃତ୍ୟ ପ୍ରଦର୍ଶନର ବ୍ୟବସ୍ଥା କରିଥିଲେ । ସେଥିପାଇଁ ମହାରାଜା ଓ ତାଙ୍କ ଭ୍ରାତା ବହୁ କଷ୍ଟ ସ୍ୱୀକାର କରି ପାଇକମାନଙ୍କୁ ତାଲିମ ଦେଇଥିଲେ । ୧୯୧୦ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୧୨ ତାରିଖରେ ସମ୍ରାଟ୍ ଓ ସାମ୍ରାଜ୍ଞୀ କଲିକତାକୁ ଆସିଥିଲାବେଳେ ଏହି ନୃତ୍ୟ ପରିବେଷଣ କରାଯାଇଥିଲା । ସେମାନେ ଏହାକୁ ଦେଖି ମୁଗ୍ଧ ହୋଇପଡ଼ିଥିବାର ଜଣାଯାଏ ।

## ଉତ୍କଳ ସମ୍ମିଳନୀ

ମହାରାଜା ସ୍ୱଦେଶପ୍ରେମୀ ଥିଲେ । ଓଡ଼ିଆ ଜାତିକୁ ଉଚ୍ଚ କରିବାପାଇଁ ସେ ସତତ ଚେଷ୍ଟିତ ଥିଲେ । ଉତ୍କଳ ଜନନୀର ବିକଳାଙ୍ଗ ଅବସ୍ଥା ଦେଖି ସେ ବ୍ୟଥିତ ହୋଇ ପଡ଼ିଥିଲେ । ସେ ଏହାର ଏକତ୍ରୀକରଣପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ୧୯୦୩ ଖ୍ରୀଷ୍ଟାବ୍ଦ ଡିସେମ୍ବର ମାସ ୩୦ ତାରିଖରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ କଟକର ଇଦ୍‌ଗା ପଡ଼ିଆରେ ବସିଲା । ସେଥିରେ ସେ ସଭାପତିତ୍ୱ କରିଥିଲେ ।

ଏହି ସମ୍ମିଳନୀରେ ଯୋଗଦେବାପାଇଁ ବିଭିନ୍ନ ପ୍ରାନ୍ତର ପ୍ରତିନିଧିମାନେ ଆସିଥିଲେ । ସଭାମଣ୍ଡପର ଆଗ ଧାଡ଼ିରେ ବସିଥିଲେ ଉତ୍କଳଗୌରବ ମଧୁସୂଦନ ଦାସ ଓ ଅନ୍ୟାନ୍ୟ ଉଦ୍ୟୋକ୍ତାଗଣ । ସଭାପତିଙ୍କପାଇଁ ଆଗରେ ଗୋଟିଏ ଟୁଲ୍ ପଡ଼ିଥିଲା । ମଧୁସୂଦନ ମହାରାଜାଙ୍କୁ ସଭାପତିଭାବେ ଟୁଲ୍‌ରେ ବସିବାକୁ ଅନୁରୋଧ କରନ୍ତେ ସେ ଟୁଲ୍‌କୁ ଆଡ଼େଇଦେଇ ସମସ୍ତଙ୍କ ପାଖରେ ତଳେ ବସିପଡ଼ି ସଭା କାର୍ଯ୍ୟ ଆରମ୍ଭ କଲେ । ସେ ନିଜର ସ୍ୱଭାବସୁଲଭ ବିନମ୍ରତା ସହ କହିବାକୁ ଲାଗିଲେ – ‘‘ଆପଣମାନେ ଆଜିର ଏ ପବିତ୍ର ସମ୍ମିଳନୀର ସଭାପତିଭାବେ ମୋତେ ଆମନ୍ତ୍ରଣ କରିଛନ୍ତି । ମୁଁ କିନ୍ତୁ ଏହାର ସଭାପତି ପଦପାଇଁ ସମ୍ପୂର୍ଣ୍ଣ ଅଯୋଗ୍ୟ... ।’’

ସେ ମଧୁସୂଦନ, ଫକୀରମୋହନ ପ୍ରଭୃତି ବିଶିଷ୍ଟ ଲୋକଙ୍କୁ ଲକ୍ଷ୍ୟ କରି କହିଲେ – ‘‘ଓଡ଼ିଆ ଜାତିର ପୂର୍ବ ଗୌରବ ଯେପରି ସୁମହାନ୍ ଥିଲା ବର୍ତ୍ତମାନ ତାହା ନାହିଁ । ହେଲେ ମଧ ଯେଉଁ ଜାତିରେ ରାଧାନାଥ, ମଧୁସୂଦନଙ୍କ ଭଳି କବିମାନେ ଜନ୍ମଗ୍ରହଣ କଲେଣି, ଯେଉଁ ଜାତିରେ କର୍ମବୀର ଗୌରୀଶଙ୍କର ଓ ଫକୀରମୋହନଙ୍କ ଭଳି କର୍ମୀ ବାହାରି ଉତ୍କଳମାତାର ସୁଯୋଗ୍ୟ ସନ୍ତାନଭାବେ ପରିଗଣିତ ହେଲେଣି, ସେ ଜାତି ନିକଟ ଭବିଷ୍ୟତ୍‌ରେ ପୂର୍ବ ଗୌରବ ଯେ ଫେରାଇଆଣିବ ଏଥିରେ ସନ୍ଦେହ ନାହିଁ... ।’’

ଉତ୍କଳ ସମ୍ମିଳନୀର ଜନ୍ମକୁ ସେ ସ୍ୱାଗତ କରି କହିଲେ – ‘‘ଉତ୍କଳ ଦେଶର ଇତିହାସରେ ଏପରି ଏକ ସଭା ଅଭିନବ ବ୍ୟାପାର । ସଭାରେ ଆପଣମାନଙ୍କୁ ସାକ୍ଷାତ୍ କରି ମୋର ଅନିର୍ବଚନୀୟ ଆନନ୍ଦ ଜାତ ହେଉଅଛି । ଏହି ଦେଶହିତକର କାର୍ଯ୍ୟରେ ଆପଣମାନଙ୍କ ସଙ୍ଗେ ଭାଗୀ ହୋଇଥିବାରୁ ମୁଁ ନିଜକୁ କୃତକୃତ୍ୟ ମନେ କରୁଅଛି... ।’’

## ମହନୀୟ ଗୁଣାବଳୀ

ମହାରାଜା ରାମଚନ୍ଦ୍ର ଭଞ୍ଜଦେବ ଜଣେ ଆଦର୍ଶ ସ୍ଥାନୀୟ ରାଜା ଥିଲେ । ରାଜକୁଳରେ ଜନ୍ମ ହୋଇ, ଗୋଟିଏ ବଡ଼ ରାଜ୍ୟର ଶାସନକର୍ତ୍ତା ଓ ବିପୁଳ ସମ୍ପତ୍ତିର ଅଧିକାରୀ ହେଲେ ମଧ ଅତି ସାଧାରଣଭାବେ ଜୀବନ ଯାପନ କରୁଥିଲେ । ସେ ରାଜପ୍ରାସାଦର ଏକ ଜୀର୍ଣ୍ଣ କୋଠରିରେ ରହୁଥିଲେ । ରାଜକୋଷର ସଞ୍ଚିତ ଅର୍ଥ ରାଜ୍ୟର ବ୍ୟକ୍ତିଗତ ସମ୍ପତ୍ତି ନୁହେଁ ବୋଲି ମନେ କରୁଥିଲେ । ବିଳାସ-ବ୍ୟସନ, ଭୂଷଣ ଓ ଗୃହ ସାଜସଜ୍ଜା ପ୍ରତି ତାଙ୍କର ଆଦୌ ଦୃଷ୍ଟି ନ

ଥିଲା । ଖାଦ୍ୟପେୟରେ ମଧ ସେ ସଂଯମୀ ଥିଲେ । ଯାହା ଯେତେବେଳେ ମିଳିଲା ତାହା ଅକୁଣ୍ଠିତଭାବେ ଭୋଜନ କରୁଥିଲେ । ଥରେ ଗସ୍ତରେ ଗଲାବେଳେ ଜଣେ ରାଜକର୍ମଚାରୀ ନାନାବିଧ ଉତ୍ତମ ଖାଦ୍ୟ ପରିବେଷଣ କରିବାକୁ ଗଲାବେଳେ ମହାରାଜା ତାହା ଗ୍ରହଣ କରି ନ ଥିଲେ । ରାଜ୍ୟର ପ୍ରଜାମାନେ ଦି' ବେଳା ଭାତ ଖାଇବାକୁ ପାଉ ନ ଥିବା ବେଳେ, ଏଭଳି ସୁସ୍ୱାଦୁ ଖାଦ୍ୟ ଖାଇବା ପାପ ବୋଲି ସେ କହିଥିଲେ ।

ମହାରାଜା ମଧ ଆଡ଼ମ୍ବରପ୍ରିୟ ନ ଥିଲେ । ଥରେ ହାଓ୍ୱଡ଼ା ଷ୍ଟେସନରେ ରେଳ ଟିକେଟ୍ କିଣିବାପାଇଁ ଧାଡ଼ିରେ ଠିଆ ହୋଇଥିଲାବେଳେ 'ଷ୍ଟାର ଅଫ୍ ଇଣ୍ଡିଆ'ର ସମ୍ପାଦକ କ୍ଷୀରୋଦବାବୁ ତାଙ୍କୁ ଭେଟିଲେ । ତାଙ୍କର ଅନୁଚରମାନେ କୁଆଡ଼େ ଗଲେ ବୋଲି ସମ୍ପାଦକ ମହାଶୟ ପଚାରନ୍ତେ, ମହାରାଜା ମଧ କ୍ଷୀରୋଦବାବୁଙ୍କୁ ଅନୁରୂପ ପ୍ରଶ୍ନ ପଚାରିଲେ । ମହାରାଜାଙ୍କ ସଙ୍ଗେ ସେ ତୁଳନାଯୋଗ୍ୟ ନୁହନ୍ତି ବୋଲି କ୍ଷୀରୋଦବାବୁ ଉତ୍ତର ଦେଲେ । ମହାରାଜା ମଧ ଛାଡ଼ିବାର ଲୋକ ନ ଥିଲେ । ସେ କହିଲେ ଯେ ସେ (ମହାରାଜା) ଘଟଣାକ୍ରମେ ମୟୂରଭଞ୍ଜ ରାଜବଂଶରେ ଜନ୍ମ ହୋଇଛନ୍ତି । ତାଙ୍କର ସମ୍ମାନ ବଂଶାନୁକ୍ରମିକ । ମାତ୍ର କ୍ଷୀରୋଦବାବୁଙ୍କ ସମ୍ମାନ ନିଜ ଅର୍ଜିତ । ମହାରାଜାଙ୍କ ଏଭଳି ଉତ୍ତର ପାଇ କ୍ଷୀରୋଦବାବୁ ଚୁପ୍ ରହିଲେ ।

ଆଉ ଏକ ଦିନର ଘଟଣା । ମହାରାଜା ମଧୁସୂଦନଙ୍କୁ ଭେଟିବାପାଇଁ ଆସି କଟକ ଷ୍ଟେସନରେ ପହଞ୍ଚିଲେ । ମଧୁସୂଦନ ମଧ ତାଙ୍କୁ ଷ୍ଟେସନରେ ଅପେକ୍ଷା କରିଥାନ୍ତି । ମହାରାଜା ଗାଡ଼ିରୁ ଓହ୍ଲାଇଲେ । ନିଜ ବ୍ୟାଗଟିକୁ ହାତରେ ଧରି ଅପେକ୍ଷା କରି ରହିଥିବା ମଧୁବାବୁଙ୍କ ସଙ୍ଗେ ଯାଇ ତାଙ୍କ ଘୋଡ଼ାଗାଡ଼ିରେ ବସିଲେ । ମଧୁବାବୁ କଚୁଆନକୁ ଗାଡ଼ି ଚଳାଇବାକୁ ନ ଦେଇ ନିଜେ ଗାଡ଼ି ଚଳାଇବାକୁ ବାହାରିଲେ । ମହାରାଜା ଏହାର କାରଣ ମଧୁବାବୁଙ୍କୁ ପଚାରିଲେ । ମହାରାଜା କାହିଁକି ନିଜେ ବ୍ୟାଗ ଧରି ଗାଡ଼ିରୁ ଓହ୍ଲାଇଲେ ବୋଲି ମଧୁବାବୁ ଓଲଟା ପ୍ରଶ୍ନ କଲେ । ବ୍ୟାଗ ତାଙ୍କର ନିଜର ହୋଇଥିବାରୁ ତାକୁ ଆଣିବାରେ ଭୁଲ୍ କେଉଁଠି ରହିଲା ବୋଲି ମହାରାଜା କହିଲେ । ତେବେ ନିଜ ଗାଡ଼ି ନିଜେ ଚଳାଇବାରେ କ୍ଷତି କ'ଣ ବୋଲି ମଧୁବାବୁ ହସି ହସି ଉତ୍ତର ଦେଲେ ।

ମହାରାଜା ମଧ ଦୟାଳୁ ଥିଲେ । ଯେକୌଣସି ବ୍ୟକ୍ତି ତାଙ୍କର ଦ୍ୱାରସ୍ଥ ହେଲେ, ରିକ୍ତ ହସ୍ତରେ ଫେରୁ ନ ଥିଲେ । କବି, ପଣ୍ଡିତ, ଗୁଣୀ ସମସ୍ତଙ୍କୁ ସେ ସାହାଯ୍ୟ କରୁଥିଲେ । ତାଙ୍କଦ୍ୱାରା କେତେ ଯେ ପରିବାର ଉପକୃତ ହୋଇଛନ୍ତି,

ତା'ର କଳନା ନାହିଁ । ବହୁ ଛାତ୍ର ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ବିଦ୍ୟା ଅଧ୍ୟୟନ କରିଛନ୍ତି । ତାଙ୍କରି ଦୟାରୁ ଜୀବନରେ ପ୍ରତିଷ୍ଠିତ ହୋଇଛନ୍ତି । କଳିଯୁଗରେ ସେ ଜନ୍ମଗ୍ରହଣ କରି କଳିକୁ ଦମନ କରିଥିଲେ ବୋଲି କବିବର ରାଧାନାଥ ଲେଖିଥିଲେ –

''ଶୁଣିଲି ମୁଁ ବହୁମୁଖୀ – ଜନଶ୍ରୁତି ମୁଖେ,
ନବରେ ତୁମ୍ଭର କଳି ପଶନ୍ତେ ପ୍ରଥମେ,
ଅବିରତ ଦାନ କାରି ପିଚ୍ଛିଳ ପ୍ରାଙ୍ଗଣେ,
ନବରେ ସେ ଚାଲୁ ଚାଲୁ ଅତି ସାବଧାନେ ।
ଖସଡ଼ି ତା' ଗୋଡ଼ ଦୁଷ୍ଟ ପଡ଼ିଲା କଚାଡ଼ି,
ଉଭାନେ, ବାହୁନି ତେଣୁ ଗଲା ଅପମାନେ ।''

## ସାହିତ୍ୟ ପ୍ରତି ଅନୁରାଗ

ମହାରାଜା ଉଚ୍ଚଶିକ୍ଷିତ ନ ଥିଲେ, ମାତ୍ର ଶିକ୍ଷା ଓ ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ଥିଲା । ପ୍ରତିଦିନ ସେ ଉପନିଷଦ୍, ବେଦ, ଶ୍ରୀମଦ୍ଭାଗବତ ଓ ଗୀତା ପ୍ରଭୃତି ଚର୍ଚ୍ଚା କରୁଥିଲେ । ଆଇନ ଶାସ୍ତ୍ରରେ ତାଙ୍କର ମଧ୍ୟ ଦକ୍ଷତା ଥିଲା । ପାଶ୍ଚାତ୍ୟ ଦର୍ଶନଶାସ୍ତ୍ର ସେ ଅଧ୍ୟୟନ କରୁଥିଲେ ଓ ସେ ବିଷୟରେ ଚର୍ଚ୍ଚା କରୁଥିଲେ । ଅର୍ଥଶାସ୍ତ୍ରରେ ମଧ୍ୟ ପାରଙ୍ଗମ ଥିଲେ । ଆମେରିକା ବିଶ୍ୱବିଦ୍ୟାଳୟର ଜଣେ ଅର୍ଥଶାସ୍ତ୍ରବିଦ୍ ତାଙ୍କର ପାଣ୍ଡିତ୍ୟରେ ମୁଗ୍ଧ ହୋଇପଡ଼ିଥିଲେ । ସେ ମଧ୍ୟ ସାହିତ୍ୟପ୍ରିୟ ଥିଲେ । ଓଡ଼ିଶାର ତତ୍କାଳୀନ ସାହିତ୍ୟିକ, କବି ଓ ପଣ୍ଡିତମାନଙ୍କୁ ବହୁଭାବରେ ଉତ୍ସାହିତ କରୁଥିଲେ । କବିବର ରାଧାନାଥ, ସ୍ୱଭାବକବି ଗଙ୍ଗାଧର ଓ ଫକୀରମୋହନଙ୍କ ସଙ୍ଗେ ତାଙ୍କର ବନ୍ଧୁତା ଥିଲା । ରାଧାନାଥ ତାଙ୍କ ବିଷୟରେ ଲେଖିଥିଲେ –

''ରବି ରୂପେ ଏବେ ଉଦୟ ଅଚଳେ
ରବି ବଂଶ ମଣି ଉଦିତ ଉତ୍କଳେ
ଶ୍ରୀମାନ୍ ଶ୍ରୀରାମଚନ୍ଦ୍ର ଆଖ୍ୟାଧାରୀ
ଉତ୍କଳ-ଅଜ୍ଞାନ-ତମ-ଧ୍ୱଂସକାରୀ ।''

## ଅକାଳ ବିୟୋଗ

ଅନ୍ୟାନ୍ୟ ରାଜାଙ୍କ ଭଳି ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଶିକାରପ୍ରିୟ ଥିଲେ । ଥରେ କେତେଜଣ ବିଦେଶୀ ବନ୍ଧୁଙ୍କ ସହ ବଣକୁ ଶିକାର ଉଦ୍ଦେଶ୍ୟରେ



ମୟୂରଭଞ୍ଜ ରାଜପ୍ରାସାଦ

ଗଲେ । ଗୋଟିଏ ମଞ୍ଚରେ ମହାରାଜା ଓ ଅନ୍ୟ ଏକ ମଞ୍ଚରେ ସାହେବମାନେ ବନ୍ଧୁକ ଧରି ଜଗିରହିଲେ । ଦୁଇଟି ଭାଲୁଙ୍କୁ ଦେଖିବାମାତ୍ରେ ଗୁଳି ଫୁଟାଇଲେ । ଗୋଟିଏ ଭାଲୁର ମୃତ୍ୟୁ ହେଲା । ଅନ୍ୟଟି ଆଘାତ ପାଇ ପଳାଇଲା । ମହାରାଜା କିଛି ସମୟ ଅପେକ୍ଷା କଲାପରେ ବିଶ୍ୱସ୍ତ ଭୃତ୍ୟ ରାଧୁ ସଙ୍ଗେ ତଳକୁ ଓହ୍ଲାଇଲେ । ସେ ଗାଢ଼ ନୀଳ ରଙ୍ଗର ପୋଷାକ ପିନ୍ଧିଥିଲେ । ଅନ୍ୟ ମଞ୍ଚାରେ ବସିଥିବା ବନ୍ଧୁମାନେ ନୀଳ ରଙ୍ଗର ପୋଷାକ ପିନ୍ଧିଥିବା ମହାରାଜାଙ୍କୁ ଆହତ ଭାଲୁ ଭାବି ଗୁଳି ଚଳାଇଲେ । ଗୁଳି ମାଡ଼ରେ ବିଶ୍ୱସ୍ତ ଭୃତ୍ୟ ରାଧୁ ମୃତ୍ୟୁବରଣ କଲା । ଗୁଳି ମଧ ରାଜାଙ୍କ ବକ୍ଷ ଭେଦ କରିଥିଲା । ମାତ୍ର ତାହା ସେପରି ଗୁରୁତର ନ ଥିଲା । ସେ ମଧ କ୍ରମେ ଭଲ ହେବାକୁ ଲାଗିଲେ । ସୁସ୍ଥ ହୋଇ ବୁଲାବୁଲି ମଧ କରିପାରିଲେ । ମାତ୍ର ଦେହରେ ଗୁଳିର କିଛି ଅଂଶ ରହିଯାଇଥିବା କଥା କଲିକତାରେ ଏକ୍ସରେ ପରୀକ୍ଷାରୁ ଜଣାପଡ଼ିଲା । ଅସ୍ତ୍ର ଚିକିତ୍ସା କରି ତାହାକୁ ବାହାର କରିଦେବାକୁ ଉଦ୍ୟମ ହେଲା । ମାତ୍ର ଈଶ୍ୱରଙ୍କ ଇଚ୍ଛା ଅନ୍ୟ ପ୍ରକାର ଥିଲା । ମାତ୍ର ୪୨ ବର୍ଷ ବୟସରେ ୧୯୧୨ ଫେବୃୟାରୀ ମାସରେ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ଇହଲୀଳା ସାଙ୍ଗ କଲେ ।

ଶ୍ରୀରାମଚନ୍ଦ୍ରଦେବ ମଣିଷ ନ ଥିଲେ; ଥିଲେ ମଣିଷମାନଙ୍କ ମଧ୍ୟରେ ଦେବତା । ତାଙ୍କର ମୃତ୍ୟୁରେ ତତ୍କାଳୀନ ଭାରତର ଓ ଇଂଲଣ୍ଡର ସମ୍ରାଟ୍ ଓ ସାମ୍ରାଜ୍ଞୀ ଶୋକ ପ୍ରକାଶ କରି ଲେଖିଥିଲେ – ''ମୟୂରଭଞ୍ଜ ମହାରାଜାଙ୍କ ଆକସ୍ମିକ ମୃତ୍ୟୁରେ ଆମ୍ଭେ ଓ ସାମ୍ରାଜ୍ଞୀ ଉଭୟେ ମର୍ମାହତ ।''

ଓଡ଼ିଶାର ବରେଣ୍ୟ କବି ମଧୁସୂଦନ ରାଓ ଗାଇ ଉଠିଥିଲେ –

''ଭଞ୍ଜ ଭୂମିପତି ଶ୍ରୀରାମଚନ୍ଦ୍ର
କୋଟି ହୃଦାକାଶ ପୂର୍ଣ୍ଣିମାଚନ୍ଦ୍ର
କୋଟି ହୃଦୟର ଆଶା ଆସ୍ପଦ
ଜୀବଜଗତର ଯଥା ଜଳଦ
କାହିଁ ଗଲେ ମହାବାହୁ
ଅକାଳେ ଦୈବ ଦୁର୍ବିପାକେ
ବିଧୁଙ୍କୁ ଗ୍ରାସିଲା ରାହୁ ।''

ଯଥାର୍ଥରେ ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ହେଉଛନ୍ତି ମହାନ୍ । ଊନବିଂଶ ଶତାବ୍ଦୀରେ ଉଚ୍ଚ ରାଜବଂଶସମ୍ଭୂତ ଲୋକପ୍ରିୟ, ନ୍ୟାୟବାଦୀ, ପ୍ରଜାବତ୍ସଳ ତଥା ସ୍ୱଦେଶପ୍ରେମୀ ରାମଚନ୍ଦ୍ରଭଞ୍ଜ ଶାସକ ହିସାବରେ ଯେଉଁ ସମୁଜ୍ଜ୍ୱଳ ଆଦର୍ଶ ଦେଖାଇଦେଇଯାଇଛନ୍ତି, ତାହାର ପଟାନ୍ତର ନାହିଁ ।



# ଲଳିତକବି
# ଜୟଦେବ

ଭାରତର ସଂସ୍କୃତ କବିମାନଙ୍କ ମଧ୍ୟରେ ଜୟଦେବ ଏକ ବିଶିଷ୍ଟ ସ୍ଥାନର ଅଧିକାରୀ । ତାଙ୍କ ରଚିତ ଗୀତିକାବ୍ୟ 'ଗୀତଗୋବିନ୍ଦ' ସଂସ୍କୃତ ସାହିତ୍ୟର ସର୍ବପ୍ରଥମ ଓ ସର୍ବୋତ୍କୃଷ୍ଟ ଗୀତିକାବ୍ୟରୂପେ ଗୃହୀତ ହୋଇଅଛି । ବୃନ୍ଦାବନରେ ଶ୍ରୀକୃଷ୍ଣ ଓ ରାଧାଙ୍କ ଲୀଳା ପ୍ରସଙ୍ଗକୁ ଉପଜୀବ୍ୟ କରି ଏହା ରଚିତ ହେଲେ ମଧ୍ୟ ଏହା କବିତା, ଗୀତ, ନାଟ୍ୟପ୍ରେମ, ଭକ୍ତି ଓ ଶୃଙ୍ଗାରର ଏକ ଅପୂର୍ବ ସମନ୍ୱୟ ଗ୍ରନ୍ଥ । ସମଗ୍ର ଭାରତବର୍ଷର କବିମାନଙ୍କୁ ଏହା ଯେପରି ଭାବରେ ପ୍ରଭାବିତ କରିଛି, ତାହା ଅତୁଳନୀୟ ।

## ଗ୍ରାମ, ଜନ୍ମ ଓ ବାଲ୍ୟକାଳ

ସୋମବଂଶୀ ରାଜା ଯଯାତିଙ୍କ ସମୟରେ କେନ୍ଦୁବିଲ୍ୱ ଶାସନ ପ୍ରତିଷ୍ଠିତ ହୋଇଥିଲା । ଯଯାତି ବ୍ରାହ୍ମଣ୍ୟ ଧର୍ମାବଲମ୍ବୀ ଥିଲେ । କଥିତଅଛି ଯେ ସେ ବୈଦିକ ବ୍ରାହ୍ମଣମାନଙ୍କୁ ସଙ୍ଗରେ ନେଇ ଜଗନ୍ନାଥଙ୍କ ଅନ୍ୱେଷଣରେ ଯାଉ ଯାଉ ପୁଣ୍ୟସ୍ରୋତା ପ୍ରାଚୀ ନଦୀ କୂଳରେ ପହଞ୍ଚିଲେ । ପ୍ରାଚୀ ଓ କୁଶଭଦ୍ରା ନଦୀ ମଧ୍ୟରେ ଥିବା ବିସ୍ତୃତ ଅଞ୍ଚଳରେ ସେ ଏକ ବୃହତ୍ କେନ୍ଦୁ ଓ ବିଲ୍ୱ ଗଛର ସଂଯୋଗ ଦେଖି ସେଠାରେ ବିଶ୍ରାମ ନେଲେ । ସେହି ବୃକ୍ଷ ତଳେ ସେ ଏକ ପ୍ରାଚୀନ ଶିବ ଲିଙ୍ଗ ଦେଖିଲେ । ସେ ଉକ୍ତ ଲିଙ୍ଗକୁ ମୁକ୍ତେଶ୍ୱର ନାମରେ ଅଭିହିତ

କଲେ । ସେଠାରେ ଏକ ସହସ୍ର ବ୍ରାହ୍ମଣଙ୍କୁ ନେଇ ଏକ ଶାସନ ବସାଇଲେ । ବ୍ରାହ୍ମଣମାନଙ୍କ ଚଳାଚଳପାଇଁ ୫୦୦ ବାଟି ଜମି ମଧ୍ୟ ଖଞ୍ଜିଦେଲେ । ଏହି ନୂତନ ଗ୍ରାମକୁ ପରେ କେନ୍ଦୁବିଲ୍ୱ ଶାସନ ନାମରେ ନାମିତ କରାଯାଇଥିଲା । ଯଯାତି ପତେ ପୁରୀରେ ଜଗନ୍ନାଥ ମନ୍ଦିର ନିର୍ମାଣ କରିଥିଲେ । ଏହା ପରେ ଏଠାରେ ମାଧବ ମୂର୍ତ୍ତି ପ୍ରତିଷ୍ଠା କଲେ । ଯଯାତି ବତ୍ସସ ଗୋତ୍ରୀୟ କୌନ୍ତଦେବଙ୍କୁ କେନ୍ଦୁବିଲ୍ୱ ଗ୍ରାମର ଦାନପତ୍ର ଅର୍ପଣ କରିଥିଲେ । ସେ ନିଜକୁ 'ଶିବରକ୍ଷିତ' ବୋଲି ଅଭିହିତ କରି ଏକ ଅବ୍ଦ ପ୍ରଚଳନ କରିଥିଲେ । ଏହି କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମ ହୋଇଥିଲେ ଜୟଦେବ । ଏହା ମହାରାଷ୍ଟ୍ରବାସୀ ମହୀପତି ରଚିତ 'ଭକ୍ତ ବିଜୟ' ନାମକ ଗ୍ରନ୍ଥରେ ସ୍ପଷ୍ଟ ଭାବରେ ଉଲ୍ଲେଖ ଅଛି ।

''ଜଗନ୍ନାଥ କ୍ଷେତ୍ର ସମୀପ ଜାଣ
କେନ୍ଦୁବିଲ୍ୱ ଗ୍ରାମ ନାମାଭିଧାନ
ତୁ ଜୟଦେବ ରୂପେଂ ଅବତାର
ଘେଭନିଂ କରୀଂ ଜନାଂଚ ଉଦ୍ଧାର ।''

ଜୟଦେବଙ୍କ ପିତାଙ୍କ ନାମ ଭୋଜଦେବ ବା ଗୌରୀଗୁରୁ ଓ ମାତାଙ୍କ ନାମ ରାଧା ବା ବାମାଦେବୀ ଥିଲା । ଭୋଜଦେବ କେନ୍ଦୁବିଲ୍ୱ ଗ୍ରାମର ଅଧ୍ୟକ୍ଷ ଥିଲେ । ତାଙ୍କର ଏକମାତ୍ର କନ୍ୟାର ଜନ୍ମର ବାର ବର୍ଷ ପରେ ବହୁ ତପସ୍ୟା, ଯାଗଯଜ୍ଞ ପରେ ପୁତ୍ରଟିଏ ଜନ୍ମ ହେଲା । ତା'ର ନାମ ଦିଆଗଲା ଜୟଦେବ । ଜନ୍ମ ସମୟରେ ତାଙ୍କର ଭଗ୍ନୀ ଲୀଳାଙ୍କୁ ତିନି ବର୍ଷ ହୋଇଥିଲା । ଲୀଳା ଦେଖିବାକୁ ଅତ୍ୟନ୍ତ ସୁନ୍ଦରୀ ଥିଲେ । ତାଙ୍କର ବିବାହ ୧୪ ବର୍ଷ ବୟସରେ ଭୁବନେଶ୍ୱର ନିବାସୀ ଧନବାନ୍ ଲାଭ ମହାପାତ୍ରଙ୍କ ସଙ୍ଗେ ହୋଇଥିଲା ।

ଜୟଦେବ ମଧ୍ୟ ଦେଖିବାକୁ ଅତ୍ୟନ୍ତ ସୁନ୍ଦର ଥିଲେ । ସେ ବାଲ୍ୟକାଳରେ ସଂସ୍କୃତ ଶିକ୍ଷା କରିଥିଲେ । କାଳକ୍ରମେ ସେ ସେଥିରେ ପ୍ରବୀଣ ହୋଇଉଠିଲେ । ତାଙ୍କ ସଙ୍ଗରେ ସଂସ୍କୃତ ଶିକ୍ଷା ମଧ୍ୟ କରୁଥାନ୍ତି ତାଙ୍କର ଅନ୍ତରଙ୍ଗ ବନ୍ଧୁ ସାହିର ବତ୍ସସ ଗୋତ୍ରୀୟ ପରାଶର । ଜୟଦେବ ଓ ପରାଶର ଏକାଠି ବାଲ୍ୟଜୀବନ କଟାଇଥିଲେ ।

ଚାରି ବର୍ଷ ହୋଇଥିଲାବେଳେ ମାତା ରାଧାଦେବୀଙ୍କର ମୃତ୍ୟୁ ହେଲା । ପିତା ଭୋଜଦେବ ଦୁଃଖରେ ଭାଙ୍ଗିପଡ଼ିଲେ । ମାତ୍ର ଜୟଦେବଙ୍କୁ ତାହିଁ ଦୁଃଖ ପାସୋରିଲେ । ସାତ ବର୍ଷ ବୟସରେ ସାଥୀ ପରାଶରଙ୍କ ସହିତ ତାଙ୍କର ବ୍ରତୋପନୟନ ହେଲା । ଦୁହେଁ ମଧ୍ୟ ପିତାଙ୍କଠାରୁ ସଂସ୍କୃତ ଅଧିକରୁ ଅଧିକ ଶିକ୍ଷା ଲାଭ କରୁଥାନ୍ତି । କିନ୍ତୁ ଜୟଦେବଙ୍କୁ ୧୫ ବର୍ଷ ବୟସରେ ତାଙ୍କ ପିତା ଭୋଜଦେବଙ୍କର ହଠାତ୍ ମୃତ୍ୟୁ

ହେଲା । ଅଗତ୍ୟା ବାଧହୋଇ ସେ ଭଗ୍ନୀ ଲୀଳାଙ୍କ ଘରକୁ ଯାଇ ସେଠାରେ ବସବାସ କରିବାକୁ ଲାଗିଲେ ।

ଜୟଦେବ ବାଲ୍ୟକାଳରୁ ଅତ୍ୟନ୍ତ ଧର୍ମପରାୟଣ ଥିଲେ । ସେ ବେଳେବେଳେ ନିକଟସ୍ଥ ମନ୍ଦିରକୁ ଯାଇ ସେଠାରେ ଧ୍ୟାନରେ ବସୁଥିଲେ । ମାତ୍ର ଭାଣେଜୀ ଚନ୍ଦ୍ରାର ସାନ୍ନିଧ୍ୟଲାଭକରି କ୍ରମେ ସଂସାର ପ୍ରତି ଆକୃଷ୍ଟ ହେଲେ । ସେ ମଧ୍ୟ ସଙ୍ଗୀତ ପ୍ରତି ଆଗ୍ରହୀ ଥିଲେ ।

କ୍ରମେ ଚନ୍ଦ୍ରା ବଡ଼ ହୁଅନ୍ତେ ଜୟଦେବ ଓ ତାଙ୍କର ଅବାଧ ମିଳାମିଶା ବନ୍ଦ ହେଲା । ଏଥିରେ ସେ ମର୍ମାହତ ହୋଇପଡ଼ିଲେ । ଏହାପରେ ଭଗ୍ନୀ ଲୀଳାଙ୍କ ମୃତ୍ୟୁ ମଧ୍ୟ ହୋଇଗଲା । ଭଗ୍ନୀପତି ଲାଭ ମହାପାତ୍ର ମଧ୍ୟ ଦ୍ୱିତୀୟ ବିବାହ କଲେ । ଜୟଦେବ ଅତି ଦୁଃଖରେ କିଛି ଦିନ କଟାଇଲେ । ପରେ ସମସ୍ତଙ୍କ ଅଗୋଚରରେ ଗୃହତ୍ୟାଗ କରି ପୁରୀ ଚାଲିଗଲେ । ସେଠାରେ ସେ ମାମୁ ପିଣ୍ଡିକ ମିଶ୍ରଙ୍କ ଘରେ ଆଶ୍ରୟ ନେଲେ । ମାଇଁ ମଧ୍ୟ ସ୍ନେହ ଓ ଆଦର କଲେ । ଜୟଦେବ ମହାଆନନ୍ଦରେ ସେଠାରେ କାଳ ଯାପନ କଲେ ।

ଜୟଦେବଙ୍କ ପଳାୟନ ଖବରରେ କେନ୍ଦୁବିଲ୍ୱ ଶାସନର ଅଧିବାସୀ ମର୍ମାହତ ହୋଇପଡ଼ିଲେ । ଭିଣୋଇ କିନ୍ତୁ ଖବର ନେଲେ ନାହିଁ । ଅପରପକ୍ଷରେ ଜୟଦେବଙ୍କ ଗ୍ରାମରେ ଥିବା ଭୂମିର ଆୟ ଉପଭୋଗ କରିବାକୁ ଲାଗିଲେ ।

ଜୟଦେବ ପୁରୀରେ ରହି ପୁରାଣ ପାଠ, ସଂସ୍କୃତ ସାହିତ୍ୟ ଚର୍ଚ୍ଚା ପ୍ରଭୃତି କରିବାକୁ ଲାଗିଲେ । ବୀଣା, ବେଣୁ, ପଖୋଜ, ମନ୍ଦରା ପ୍ରଭୃତି ବାଦ୍ୟଯନ୍ତ୍ରରେ ମଧ୍ୟ ପାରଦର୍ଶିତା ଲାଭ କଲେ । କ୍ରମେ ନୃତ୍ୟ ଓ ସଙ୍ଗୀତ ପ୍ରଭୃତିରେ ଭାଗ ନେଲେ । ସେତେବେଳେ ଶ୍ରୀମନ୍ଦିରର ଦେବଦାସୀମାନେ ଚୁଡ଼ଙ୍ଗସାହିରେ ରହୁଥିଲେ । ସଙ୍ଗୀତଚର୍ଚ୍ଚା ସେମାନଙ୍କ ଘରେ ହେଉଥିଲା । ଜୟଦେବ ସେଥିରେ ମଧ୍ୟ ଭାଗ ନେଉଥିଲେ । ସଂସ୍କୃତ ଶ୍ଳୋକମାନ ଏବଂ ଶଙ୍କରଙ୍କ ରଚିତ 'ପଜ୍ଝଟିକାମାଳ' ସେ ସୁଲଳିତ କଣ୍ଠରେ ଗାନ କରି ସମସ୍ତଙ୍କୁ ମୁଗ୍ଧ କରିଦେଉଥିଲେ । ସେ କ୍ରମେ ସମସ୍ତଙ୍କର ପ୍ରିୟ ହୋଇଉଠିଲେ । ମାତ୍ର ଏକାକୀ ରହୁଥିବାରୁ ସମୟେ ସମୟେ ଦୁଃଖାଭିଭୂତ ହୋଇପଡ଼ିବା ସ୍ୱାଭାବିକ ।

ଏହି ସମୟରେ ଭାଣେଜୀ ଚନ୍ଦ୍ରା ବିମାତାଙ୍କର ଅତ୍ୟାଚାର ସହ୍ୟ ନ କରିପାରି ପୁରୀକୁ ପରାଶରଙ୍କ ସହ ପଳାଇଆସିଲେ ଓ ଜୟଦେବଙ୍କୁ ମାମୁଙ୍କ ଘରେ ଭେଟିଥିଲେ । ଏଥିରେ ଜୟଦେବଙ୍କ ଆନନ୍ଦର ସୀମା ରହିଲା ନାହିଁ । ପରାଶର, ଭାଣେଜୀ ଚନ୍ଦ୍ରା ଓ ଜୟଦେବ ସମସ୍ତେ ମାମୁଙ୍କ ଘରେ ରହିଲେ ।

ପ୍ରତିଦିନ ଜଗନ୍ନାଥ ଦର୍ଶନ କଲେ । ଶାସ୍ତ୍ର ଓ ସଙ୍ଗୀତଚର୍ଚ୍ଚା, ପୂଜା ଉପାସନା ପ୍ରଭୃତିରେ ଆନନ୍ଦରେ କାଳ ଅତିବାହିତ କରିବାକୁ ଲାଗିଲେ । ଜୟଦେବଙ୍କ ଚେଷ୍ଟାରେ ଅନ୍ତରଙ୍ଗ ବନ୍ଧୁ ପରାଶରଙ୍କ ସହ ଚନ୍ଦ୍ରାଙ୍କ ବିବାହ ସମ୍ପନ୍ନ ହେଲା ।

**ବିବାହ**

ଦିନେ ପୁରୀରେ ଶ୍ରୀମନ୍ଦିରରେ ଜୟଦେବଙ୍କର ଅତି ଆକସ୍ମିକଭାବେ ପଦ୍ମାବତୀଙ୍କ ସହ ଦେଖାହେଲା । ସେତେବେଳେ ଗଙ୍ଗବଂଶର ରାଜା ଥିଲେ ରାଜରାଜଦେବ । ସେ କଟକରେ ରହୁଥିଲେ ମଧ ଜଗନ୍ନାଥଙ୍କ ପରମ ଭକ୍ତ ଥିଲେ । ତାଙ୍କର ପତ୍ନୀ ଥିଲେ ଚାଲୁକ୍ୟ ରାଜବଂଶୀ ମଙ୍କୁଶଦେବୀ । ତାଙ୍କର ପୁତ୍ର ଥିଲେ ରାଜା ଅନଙ୍ଗଭୀମଦେବ । ଏହି ସମୟରେ ଦକ୍ଷିଣ କଳିଙ୍ଗର ଗଙ୍ଗାବାଡ଼ି ଗ୍ରାମରେ ଶମ୍ଭୁ ଦେବଶର୍ମା ନାମକ ଜଣେ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କର କୌଣସି ସନ୍ତାନସନ୍ତତି ନ ହେବାରୁ ସେ ଜଗନ୍ନାଥଙ୍କୁ ଅଷ୍ଟୋତ୍ତର ଶତପଦ୍ମ ଫୁଲରେ ବିଭୂଷିତ କରି ବଂଶରକ୍ଷା ହେବାକୁ ଆକୁଳ ପ୍ରାର୍ଥନା କଲେ । ଏପରିକି ପ୍ରଥମଟି କନ୍ୟା ହେଲେ ଜଗନ୍ନାଥଙ୍କୁ ସମର୍ପିବେ ବୋଲି ପ୍ରତିଜ୍ଞା କରିଥିଲେ । କାଳକ୍ରମେ ତାଙ୍କର କନ୍ୟାଟିଏ ଜାତ ହେଲା । ଦେବତାଙ୍କ ପଦ୍ମବେଶ ଦର୍ଶନପରେ ଗର୍ଭାଧାନ ହୋଇଥିବାରୁ ସେ କନ୍ୟାର ନାମ ପଦ୍ମାବତୀ ରଖିଲେ । କଥିତଅଛି ଯେ ଏହା ପରେ ପରେ ପୁତ୍ର ଜନ୍ମ ହେବାରୁ ଦେବଶର୍ମା ଆନନ୍ଦରେ ବିଭୋର ହୋଇପଡ଼ିଥିଲେ । ପଦ୍ମାବତୀ ରୂପ, ବିଦ୍ୟା ଓ ଗୁଣରେ ନିପୁଣା ଥିଲେ । ତାଙ୍କର ମଧ ବୟସ ବୃଦ୍ଧି ହେଲା । ଦେବଶର୍ମା ପରିବାର ଜଞ୍ଜାଳରେ ରହି ନିଜର ପ୍ରତିଜ୍ଞା କଥା ଭୁଲିଗଲେ ।

କଥିତଅଛି ଯେ ପଦ୍ମାଙ୍କୁ ଥରେ ଜ୍ୱର ହେଲା । ଏହି ଜ୍ୱର ବହୁ ଦିନ ଧରି ଲାଗିରହିଲା । ବୈଦ୍ୟ, କବିରାଜ ପ୍ରଭୃତି ଯେତେ ଉପାୟ କଲେ ମଧ ଫଳ କିଛି ହେଲା ନାହିଁ । ଶେଷରେ ମାତା ଅପର୍ଣ୍ଣାଦେବୀ ଜଗନ୍ନାଥଙ୍କ ଶରଣ ପଶିଲେ । ନିଜ କଥା ରକ୍ଷା କରି ନ ଥିବା ଜଗନ୍ନାଥ ତାଙ୍କୁ ସ୍ୱପ୍ନରେ ଜଣାଇଲେ । କନ୍ୟା ପଦ୍ମାବତୀଙ୍କର ପତି ଜୟଦେବ ହେବେ ବୋଲି ମଧ ତାଙ୍କୁ ସ୍ୱପ୍ନାଦେଶ ହେଲା । ଏହାପରେ ପଦ୍ମାବତୀ ଆରୋଗ୍ୟ ଲାଭ କରିଥିବାର ଜଣାଯାଏ ।

ଏହାପରେ ଦେବଶର୍ମା ଓ ଅପର୍ଣ୍ଣା ଜଗନ୍ନାଥଙ୍କ ଋଣ ପରିଶୋଧପାଇଁ ପଦ୍ମାବତୀଙ୍କୁ ଧରି ପୁରୀ ଅଭିମୁଖେ ପାଦରେ ଯାତ୍ରା କଲେ ଓ ସେଠାରେ ବର୍ଷା ଋତୁରେ ପହଞ୍ଚିଲେ ।

ଚୋଡ଼ଗଙ୍ଗଦେବଙ୍କ ସମୟରୁ ଜଗନ୍ନାଥ ମନ୍ଦିରରେ ଦେବଦାସୀ ପ୍ରଥା ପ୍ରଚଳିତ ହେଲା । ପଦ୍ମାବତୀଙ୍କୁ ଦେବଦାସୀ କରିବା ଉଦ୍ଦେଶ୍ୟରେ ଶମ୍ଭୁଦେବଶର୍ମା

ପୁରୀକୁ ନେଇଥିଲେ । ସେଠାରେ ପହଞ୍ଚି ଶ୍ରୀମନ୍ଦିର ଭିତରକୁ ପଦ୍ମାବତୀଙ୍କୁ ନେଇ ପ୍ରବେଶ କଲେ । ସେଠାରେ ଗରୁଡ଼ଖମ୍ବ ପାଖରେ କନ୍ୟାକୁ ଜଗନ୍ନାଥଙ୍କୁ ସମର୍ପଣ କରି ଫେରିଗଲେ । ପ୍ରଣିପାତ ହୋଇ ପଦ୍ମାବତୀ ଉଠି ପିତାମାତାଙ୍କୁ ନ ପାଇ ଶୋକାଭିଭୂତା ହୋଇପଡ଼ିଲେ । ଦେଉଳରେ ପଣ୍ଡା ପଢ଼ିଆରୀମାନେ ପଦ୍ମାବତୀଙ୍କୁ ଏକାକିନୀ ଦେଖିଲେ ମଧ୍ୟ ରାଜଭୟରୁ କିଛି ଅନିଷ୍ଟ କରିବାକୁ ସାହସ କରିପାରି ନ ଥିଲେ । ଦୈବାତ୍ ଦେଉଳର ବୃଦ୍ଧ ପୁରାଣପଣ୍ଡାଙ୍କ ଓ ଜୟଦେବଙ୍କର କଥୋପକଥନ ବେଳେ 'ଜୟଦେବ' ନାମ ଶୁଣିପାରି ହୃଦୟରେ ସାହସ ବାନ୍ଧି ସେ ପଣ୍ଡାଙ୍କ ପାଖକୁ ଯାଇଥିଲେ ଓ ତାଙ୍କୁ ପିତା ବୋଲି ସମ୍ବୋଧନ କରି ତାଙ୍କର ଦୁଃଖ ଜଣାଇଥିଲେ । ପୁରାଣପଣ୍ଡା ମଧ୍ୟ ତାଙ୍କୁ କନ୍ୟା ରୂପେ ଗ୍ରହଣ କଲେ ଓ ଜୟଦେବଙ୍କୁ ପଦ୍ମାବତୀଙ୍କୁ ଗ୍ରହଣ କରିବାପାଇଁ ନିର୍ଦ୍ଦେଶ ଦେଲେ ।

''ଇୟଂମେ ତନୟା ବ୍ରହ୍ମଞ୍ଜ ଜଗନ୍ନାଥାଜ୍ଞୟା ମୟା
ନାମା ପଦ୍ମାବତୀ ତୁଭ୍ୟଂ ଦୀୟ ତେଽନୁ ଗୃହାଣ ତାଂ ।''

ଜୟଦେବ ପଦ୍ମାବତୀଙ୍କୁ ଧରି ଗୃହ ଅଭିମୁଖେ ଗଲେ । ଓଦା ଲୁଗା ପିନ୍ଧା ପଦ୍ମାବତୀ ମଧ୍ୟ ତାଙ୍କ ପଛେ ପଛେ ଚାଲିଲେ । ଗୃହରେ ଉଭୟେ ପ୍ରବେଶ କଲେ । ସେଠାରେ ଉଭୟେ କିଂକର୍ତ୍ତବ୍ୟବିମୂଢ଼ ହୋଇ ରହିଥିବାବେଳେ ହଠାତ୍ ତାଙ୍କ ବାଲ୍ୟସଙ୍ଗୀ ପରାଶର ଓ ଭାଣେଜୀ ଚନ୍ଦ୍ରା ସେଠାରେ ପହଞ୍ଚିଲେ । ଚନ୍ଦ୍ରା ପଦ୍ମାବତୀଙ୍କର ଆଦର ଅଭ୍ୟର୍ଥନା କରିଥିଲେ । ତାଙ୍କୁ ନିଜର ବହୁମୂଲ୍ୟ ଶାଢ଼ି ପିନ୍ଧିବାକୁ ଦେଇ ତାଙ୍କର ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ । ପଦ୍ମାଙ୍କଠାରୁ ସବୁ କଥା ଶୁଣି ତାଙ୍କର ଆନନ୍ଦର ସୀମା ରହିଲା ନାହିଁ ।

ଶେଷରେ ବହୁ ବିଚାର-ବିମଶ ପରେ ଜୟଦେବ ଓ ପଦ୍ମାବତୀଙ୍କ ବିବାହ ବୈଦିକ ରୀତିରେ ଗ୍ରାମରେ ହେବା ସ୍ଥିର ହେଲା । ଜୟଦେବ, ପଦ୍ମାବତୀ, ପରାଶର ଓ ଚନ୍ଦ୍ରାବତୀ ସମସ୍ତେ କେନ୍ଦୁବିଲ୍ୱ ଗଲେ । ତା' ପୂର୍ବରୁ ଗ୍ରାମରେ ଜୟଦେବ ଏକ ଦେବଦାସୀଙ୍କୁ ଧରି ଆଣୁଥିବା ଖବର ପ୍ରଚାରିତ ହୋଇଥାଏ । ଗ୍ରାମର ରକ୍ଷଣଶୀଳ ବ୍ରାହ୍ମଣମାନେ ଏହାର ବିରୋଧ କରିବା ସ୍ୱାଭାବିକ । ମାତ୍ର ପୁରୀରୁ ଶ୍ରୀଅଙ୍ଗ ସେବା କରୁଥିବା ବୃଦ୍ଧ ଗରାବଡୁ ଇନ୍ଦ୍ର ଖୁଣ୍ଟିଆ ଦୈବବଳେ ସେଠାରେ ଆସି ପହଞ୍ଚିଲେ ଓ ସତ୍ୟ ଉଦ୍‌ଘାଟନ କଲେ । ଏପରିକି ପଦ୍ମାବତୀଙ୍କ ଶୁଦ୍ଧ ଚରିତ୍ର ବିଷୟରେ ତମ୍ବା, ତୁଳସୀ ଓ ଶାଳଗ୍ରାମ ଧରି ଶପଥ କଲେ । ଗଙ୍ଗାବାଡ଼ିରୁ ଅପର୍ଣ୍ଣା, ଦେବଶର୍ମା ପ୍ରଭୃତି ମଧ୍ୟ ଆସି କେନ୍ଦୁବିଲ୍ୱରେ ପହଞ୍ଚି ମଧ୍ୟ ସମସ୍ତ ବିଷୟ କହିଲେ । ଭିଣୋଇ ଲାଉ ମହାପାତ୍ର ଜୟଦେବଙ୍କ ଜମିର ସମସ୍ତ ସଞ୍ଚିତ ଅ...ଏ ଦେଇଗଲେ । ତେଣୁ ବିବାହରେ ଆଉ କୌଣସି ବାଧା ରହିଲା ନାହିଁ । ମହାଆଡ଼ମ୍ବରରେ ବୈଦିକ

ରୀତିରେ ବିବାହ ଉତ୍ସବ ଶେଷ ହେଲା । ଗ୍ରାମବାସୀ ଜଗନ୍ନାଥଙ୍କ ସେବାକାରୀ ଇନ୍ଦ୍ର ଖୁଣ୍ଟିଆଙ୍କୁ ପୁରୀକୁ ନେବାର ବ୍ୟବସ୍ଥା କଲେ । ଜୟଦେବ ପତ୍ନୀଙ୍କ ସହ ଆନନ୍ଦରେ କାଳଯାପନ କରିବାକୁ ଲାଗିଲେ ।

## ନିଜ ଜୀବନଚରିତ

ଆଗରୁ କୁହାଯାଇଛି ଯେ ଜୟଦେବ ଅତ୍ୟନ୍ତ ସୁନ୍ଦର ଥିଲେ । ତାଙ୍କୁ ଗ୍ରାମର କୃଷ୍ଣ ବୋଲି କୁହାଯାଉଥିଲା । ତେଣୁ ଗ୍ରାମର ନାରୀମାନେ ତାଙ୍କ ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ବିଶେଷତଃ, ପଡ଼ିଶାଘରର ବଧୂ କଳାବତୀ ତାଙ୍କୁ ପାଇବାପାଇଁ ଅତି ବ୍ୟାକୁଳ ହୋଇପଡ଼ିଲେ । ମଦାଳସା, ମନୋରମା, ରମ୍ଭା, ଚିତ୍ରଲେଖା ପ୍ରଭୃତି ବହୁ ନାରୀ ତାଙ୍କ ପ୍ରତି ଆସକ୍ତ ହୋଇପଡ଼ିଥିବାର ଜଣାଯାଏ ।

ପଦ୍ମାବତୀ ଏଥିରେ ମର୍ମାହତା ହୋଇପଡ଼ିଥିଲେ । ଜୟଦେବଙ୍କର ବହୁ ନାରୀ ଭୋଗ କରିବାର ଆକାଙ୍‌କ୍ଷାକୁ ଦମନ କରିବାପାଇଁ ସେ ବହୁ ଚେଷ୍ଟା କଲେ । ଶେଷରେ ତାଙ୍କର ନାରୀପ୍ରୀତିର କେତୋଟି ଘଟଣା ସ୍ୱଚକ୍ଷୁରେ ଦେଖିଲାପରେ ଜୟଦେବଙ୍କ ସହ ସମ୍ପର୍କ ତୁଟାଇଦେବାକୁ ସ୍ଥିର କଲେ । ଅଲଗା ମଧ୍ୟ ସେ ବସବାସ କରିବାକୁ ଲାଗିଲେ । ଭାଣେଜୀ ଚନ୍ଦ୍ରାବତୀ ମଧ୍ୟ ଜୟଦେବ ଓ ପଦ୍ମାବତୀଙ୍କୁ ବହୁ ବୁଝାଶୁଝା କଲେ ମଧ୍ୟ ତା'ର କିଛି ଫଳ ହେଲା ନାହିଁ । ଜୟଦେବ ମଧ୍ୟ ଅଲଗା ଘରେ ରହୁଥାନ୍ତି । ମଝିରେ ମଝିରେ ପଦ୍ମାବତୀଙ୍କୁ ଦେଖାକଲେ ମଧ୍ୟ ପଦ୍ମାବତୀ ଟଳୁ ନ ଥାନ୍ତି । ତାଙ୍କୁ ଧିକ୍କାର କରି ତଡ଼ି ଦେଉଥାନ୍ତି ।

ଜୟଦେବ ପ୍ରଥମେ ପ୍ରଥମେ ତାଙ୍କର ଭ୍ରମ ବୁଝିପାରି ନ ଥିଲେ । ବହୁ ବିଜ୍ଞ ବ୍ୟକ୍ତି ମଧ୍ୟ ବହୁ ନାରୀ ଭୋଗ କରିବା ଉଦାହରଣ ଦେଉଥାନ୍ତି । ମୁନି ଋଷିମାନେ ଏଥିରୁ ବାଦ୍ 'ପଡ଼ି ନ ଥିବା' କଥା ଯୁକ୍ତି ବାଢୁଥାନ୍ତି । ଏପରିକି ସ୍ୱୟଂ ଚନ୍ଦ୍ରଦେବତା ଗୁରୁଙ୍କ ପତ୍ନୀ ହରଣ କରି ଶିବଙ୍କ ଶିରରେ ସ୍ଥାନ ପାଇଥିବାର ନଜିର ଦେଇଥିଲେ । କିନ୍ତୁ ପରେ ତାଙ୍କର ଚୈତନ୍ୟୋଦୟ ହେଲା । ପତ୍ନୀ ପଦ୍ମାବତୀଙ୍କ ଅନାବିଳ ଅଦୂଷିତ ପ୍ରେମର ସ୍ଥାନ ଯେ କେତେ ଉଚ୍ଚରେ ତାହା ସେ ବୁଝିପାରିଲେ । ସାଧାରଣ ପ୍ରଣୟ ତାଙ୍କୁ ଅତି ତୁଚ୍ଛ ମନେହେଲା । ସେଇ ପଦ୍ମାବତୀଙ୍କ ଶାଶ୍ୱତ ଚିରନ୍ତନ ପ୍ରେମ ପ୍ରତି ତାଙ୍କର ଆସକ୍ତି ବଢ଼ିଗଲା । ସେ ଅନୁତାପାନଳରେ ଦଗ୍ଧ ହେଲେ । ପଦ୍ମାବତୀଙ୍କ ବିନା ତାଙ୍କ ପ୍ରାଣ ହାହାକାର କରିଉଠିଲା । ସୃଷ୍ଟିର ଯେ ଶ୍ରେଷ୍ଠ ଜୀବ ମନୁଷ୍ୟ, ସେ ଏକପତ୍ନୀବ୍ରତ ଧାରଣ କରିବ – ଏହି ମହାଭାବ ତାଙ୍କ ହୃଦୟରେ ଜାଗରୂକ ହେଲା ।

ଇତର ପ୍ରେମର ବହୁ ଉର୍ଦ୍ଧ୍ୱରେ ଥିବା ଚିରନ୍ତନ ଶାଶ୍ୱତ ପ୍ରେମ ରସରେ ସେ ମଜ୍ଜିଯାଇ ମହାପୁରୁଷରେ ପରିଣତ ହେଲେ । ଶେଷରେ ଦିନେ ପଦ୍ମାବତୀଙ୍କ ପାଖକୁ ଯାଇ ତାଙ୍କ ଚରଣତଳେ ସାଷ୍ଟାଙ୍ଗ ପ୍ରଣିପାତ ହେଲେ । ସେ ନିଜକୁ କ୍ରୀତଦାସ ବୋଲି କହି ପଦ୍ମାବତୀଙ୍କୁ କ୍ଷମାଭିକ୍ଷା କଲେ । ଜୟଦେବଙ୍କ ଆତ୍ମଶୁଦ୍ଧି ହୋଇଛି ଅନୁଭବ କରି ପଦ୍ମାବତୀ ତାଙ୍କୁ କ୍ଷମା ଦେଲେ ।

ସାଧାରଣ ପ୍ରଣୟଜନିତ ଦୁଷ୍କୃତି ସମାଜରୁ ଦୂର କରିବାପାଇଁ ଜୟଦେବ ବଦ୍ଧପରିକର ହେଲେ । କିପରି ଶାଶ୍ୱତ ଚିରନ୍ତନ ପ୍ରେମରେ ସମସ୍ତେ ମଜ୍ଜିଯିବେ ସେ ତା'ର ଉପାୟ ଖୋଜିଲେ । ଶେଷକୁ ସେ ନିଜ ଅନୁଭୂତିଗୁଡ଼ିକ କାବ୍ୟରେ ପ୍ରକାଶପାଇଁ ପଦ୍ମାବତୀଙ୍କ ଅନୁମତି ଲୋଡ଼ିଲେ । ବହୁ ଆଲୋଚନା ପରେ ପଦ୍ମା ଶେଷରେ ନିଜର ସ୍ୱୀକୃତି ଦେଲେ ।

ଜୟଦେବ ନିଜର ସିଦ୍ଧିକୁ ପତିତପାବନ ରାଧାକୃଷ୍ଣଙ୍କ ଅମର ପ୍ରେମରେ ବର୍ଣ୍ଣନା କରିବାପାଇଁ ସ୍ଥିର କଲେ । ମାତ୍ର ତାହା କେତେଦୂର ସମୀଚୀନ, ସେ ବିଷୟରେ ତାଙ୍କର ସନ୍ଦେହ ଥାଏ । ଏହି ଅବସ୍ଥାରେ ସ୍ୱୟଂ କୃଷ୍ଣ ତାଙ୍କୁ ସ୍ୱପ୍ନରେ ଦେଖାଦେଇ ଯାହା କହିଥିଲେ ତା'ର ସାରମର୍ମ ହେଲା –

''ରାଧାଙ୍କ ସହିତ ପ୍ରଣୟ ସାଧାରଣ ପ୍ରଣୟ ନୁହେଁ । ତାହା ଶାଶ୍ୱତ ଓ ଚିରନ୍ତନ । ରାଧା ସାଧାରଣ ପ୍ରଣୟକୁ ଶାଶ୍ୱତରେ ପରିଣତ କରିଥିଲେ । ତେଣୁ ତାଙ୍କର ଏ ରଚନା ବିଶ୍ୱବାସୀଙ୍କର ଅତି ପ୍ରିୟ ହେବ । ଏହାଦ୍ୱାରା ସ୍ୱକୀୟ ପ୍ରୀତିର ଆଦର୍ଶ ବିଶ୍ୱରେ ପ୍ରତିଷ୍ଠିତ ହେବ ।''

ପଦ୍ମାବତୀ ମଧ୍ୟ ଅନୁରୂପ ସ୍ୱପ୍ନ ଦେଖିଲେ । ସ୍ୱପ୍ନରେ ଗୋବିନ୍ଦ ଦେଖାଦେଇ ଜୟଦେବ କୃତ ଗୀତ ତାଙ୍କଦ୍ୱାରା ଗାନ କରାଯିବାକୁ ନିର୍ଦ୍ଦେଶ ଦେଲେ । ଜୟଦେବ ତାଙ୍କୁ ଗୀତଗୋବିନ୍ଦକୁ ସମର୍ପିଲେ ଓ ତା'ର ନାମ 'ଗୀତଗୋବିନ୍ଦ' ରଖିଲେ ।

''ସ୍ୱୟଂ କୃତେନ ଗୀତେନ ତୋଷୟିଷ୍ୟା ମ୍ୟହଂ ହରିଂ
ଇତି ନିଶ୍ଚିତ୍ୟ ନିର୍ମାୟ ଗୀତଗୋବିନ୍ଦ ନାମକଂ ।''

ଏହା ପରେ ଜୟଦେବ ସଂସ୍କୃତରେ ସର୍ଗକୁ ସର୍ଗ ରଚନା କରିଚାଲିଲେ । ପଦ୍ମାବତୀ ମଧ୍ୟ ବୀଣା ଧରି ସୁଲଳିତ କଣ୍ଠରେ ତାକୁ ଗାଇବାକୁ ଲାଗିଲେ ।

## ପ୍ରଭୁଙ୍କ ପଦ ପୂରଣ

ଜୟଦେବ ଗୀତଗୋବିନ୍ଦର ୧୦ମ ସର୍ଗରେ ସପ୍ତପଦ ରଚନା କରିଥିଲେ ।

'ସ୍ମର ଗରଳ ଖଣ୍ଡନଂ ମମ ଶିରସି ମଣ୍ଡନଂ'

ମାତ୍ର ଏହାପରେ ଯାହା ତାଙ୍କ ମନକୁ ଆସିଲା ତାହା କେତେଦୂର ସମୀଚୀନ ସେ ବିଷୟରେ ତାଙ୍କର ସନ୍ଦେହ ହେଲା । ପୂର୍ବରୁ ପ୍ରେମିକ ପ୍ରେମିକାଙ୍କୁ କାନ୍ଧରେ ଟେକି ଧରିବା ପ୍ରଚଳିତ ଥିଲା । ପ୍ରେମିକପ୍ରବର ଶ୍ରୀକୃଷ୍ଣ ପ୍ରେମାବେଗରେ ରାଧାଙ୍କୁ କାନ୍ଧରେ ଟେକି ଧରିଥିଲେ । ମାତ୍ର ଶିରରେ ଜାୟାଙ୍କୁ ବା ପ୍ରେମିକାଙ୍କୁ ମଣ୍ଡନ କରିବା କେତେଦୂର ଶୋଭନୀୟ ତାହା ସେ ସ୍ଥିର କରିପାରିଲେ ନାହିଁ । ବହୁ ବିଚାରପରେ ଏ ବିଷୟରେ ନିଷ୍ପତ୍ତି ନେବାକୁ ସ୍ଥିର କଲେ । ଦେହରେ ତୈଳମର୍ଦ୍ଦନ ପରେ ସେ ସଙ୍ଗୀ ପରାଶରଙ୍କ ସହ ସ୍ନାନ କରିବାପାଇଁ ନଦୀକୁ ଗଲେ । ବାଟରେ ସେ ଅନ୍ୟମନସ୍କ ରହୁଥାନ୍ତି । ପରାଶର ତା'ର କାରଣ ପଚାରନ୍ତେ ସେ କିଛି ନ କହି ଚୁପ୍ ରହିଲେ । ସ୍ନାନ କଲାବେଳେ ସେ ବହୁଦୂରକୁ ଚାହିଁ ରହିଲେ । ତାଙ୍କୁ ଯେପରି ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଦୃଶ୍ୟମାନ ହେଲା । ମୂର୍ତ୍ତିଙ୍କ ତଳେ ସେ ଭାବିଥିବା ପଦଟି ସତେଯେପରି ଲେଖା ହୋଇଥିବାର ଜଣାଗଲା । ଆଖି ବୁଜି ଚାହାନ୍ତେ ପୁଣି ସେଇ ଦୃଶ୍ୟ । ସେ ଏହାକୁ ଏକାନ୍ତ ଅସମ୍ଭବ ମଣିଲେ । ପୁଣି ଆଖି ମଳି ଚାହିଁଲେ – ଅପୂର୍ବ ଶୋଭାଯୁକ୍ତ ଶ୍ରୀକୃଷ୍ଣ ରାଧାଙ୍କର ପଦଯୁଗଳ ମସ୍ତକରେ ଲଗାଇ କ୍ଷମା ମାଗୁଛନ୍ତି ।

ଏଥି ମଧ୍ୟରେ ପଦ୍ମା ରନ୍ଧନ ଶେଷକରି ସ୍ୱାମୀଙ୍କ ଅପେକ୍ଷାରେ ଥାଆନ୍ତି । କ୍ଳାନ୍ତିବଶତଃ ସେ ଘୁମାଇ ପଡ଼ିଲେ । ତାଙ୍କୁ ଜଣାଗଲା ଜୟଦେବ ଗୃହକୁ ଆସି ତାଳପତ୍ର ଲେଖନୀ ମାଗୁଛନ୍ତି । ସେ ତାହା ଦେଲେ । ଏହାପରେ ଜୟଦେବ ତାଙ୍କୁ ଅନ୍ନ ବାଢ଼ିବାକୁ କହିଲେ । ପଦ୍ମା ସଙ୍ଗେ ସଙ୍ଗେ ଅନ୍ନ ବାଢ଼ିଲେ । ଜୟଦେବ ତାକୁ ଖାଇଲେ ।

ପଦ୍ମାବତୀ ଏକ ଦିବ୍ୟ–ଅନୁଭବ କରୁଥାନ୍ତି–ଶ୍ରୀମନ୍ଦିରର ଜଗନ୍ନାଥ ଯେପରି ସ୍ୱାମୀଙ୍କ ମଧ୍ୟରେ ଆବିର୍ଭୂତ ହୋଇଛନ୍ତି ।

ତନ୍ଦ୍ରାରୁ ପଦ୍ମାବତୀ ଉଠି ଅନ୍ନ, ତରକାରି ପ୍ରଭୃତି ଆଣି ଖାଇବସିଲେ । ଜୟଦେବ ସ୍ନାନ ସାରି ଗୃହରେ ଆସି ପହଞ୍ଚିଲେ । ପଦ୍ମାବତୀଙ୍କୁ ଭୋଜନରେ ବସିଥିବାର ଦେଖି ମନେ ମନେ ଆଶ୍ଚର୍ଯ୍ୟ ହେଲେ । ବିଳମ୍ବ ହେତୁ କ୍ଷୁଧା ସହି ନ ପାରି ଭୋଜନ କରିଛନ୍ତି ବୋଲି ଭାବିଲେ । ମାତ୍ର ପଦ୍ମାବତୀ ଜୟଦେବଙ୍କୁ ଦେଖି ଚମକିପଡ଼ିଲେ । ଏଡ଼େ ବଡ଼ ଭୁଲ୍ କରିଥିବାରୁ ସେ ବିଷାଦଗ୍ରସ୍ତ ହୋଇପଡ଼ିଲେ । ସେ କିପରି ମୋହାଚ୍ଛନ୍ନ ହୋଇପଡ଼ିଥିଲେ ଓ ସେହି ମୋହାଚ୍ଛନ୍ନ ଅବସ୍ଥାରେ ସ୍ୱାମୀଙ୍କୁ ଅନ୍ନ ପରଷିଥିଲେ ତାହା ବର୍ଣ୍ଣନା କଲେ । ଜୟଦେବଙ୍କ ଆଗରେ ସତ୍ୟ ପ୍ରକଟିତ ହେଲା । ସ୍ୱୟଂ ଗୋବିନ୍ଦଙ୍କୁ ଯେ ପଦ୍ମାବତୀ ଅନ୍ନ ପରଷିଛନ୍ତି, ଏ ବିଷୟରେ

ତାଙ୍କର ସନ୍ଦେହ ରହିଲା ନାହିଁ । ସେହି ଉଚ୍ଛିଷ୍ଟକୁ ମହାପ୍ରସାଦ ଭାବି ଜୟଦେବ ଓ ପଦ୍ମାବତୀ ମହାଆନନ୍ଦରେ ଭକ୍ଷଣ କଲେ ।

ତାଳପତ୍ର ପୋଥି ଫିଟାଇ ଜୟଦେବ ଦେଖିଲେ ଯେ ତାଙ୍କର ବହୁତ ଭାବିଥିବା ପଦ 'ଦେହି ପଦ ପଲ୍ଲବ ମୁଦାରମ୍' ପୋଥିରେ ଲେଖା ହୋଇଛି । ସେ ଗୃହକୁ ତୈଳାକ୍ତ ଅବସ୍ଥାରେ ଆସି ପଦ୍ମାଙ୍କଠୁ ଲେଖନୀ ନେଇ ଲେଖିଛନ୍ତି – ଏକଥା ଆଦୌ ସ୍ୱୀକାର କଲେ ନାହିଁ । ସ୍ୱୟଂ ଜଗନ୍ନାଥ ଯେ ଆସି ଲେଖିଦେଇଯାଇଛନ୍ତି – ଏହି ଧାରଣାରେ ସେ ଉପନୀତ ହେଲେ । ସେହି ବିଶ୍ୱାସ ମଧ୍ୟ ଯୁଗ ଯୁଗ ଧରି ରହିଗଲା । ଯଥାସମୟରେ ଗ୍ରନ୍ଥ ରଚନା ଶେଷ ହେଲା । ଗୋବିନ୍ଦ ସାଧାରଣ ପ୍ରଣୟରେ ମାତି ନିବୃତ୍ତିକୁ ଅସ୍ୱୀକାର କଲେ; ମାତ୍ର ଶେଷରେ ନାରୀର ଯଥାର୍ଥ ପ୍ରଣୟରସରେ ମଜ୍ଜି ରହିଲେ – ଏହା ଗୀତଗୋବିନ୍ଦ କାବ୍ୟରେ ପ୍ରତିପାଦିତ ହୋଇଅଛି ।

ଏହାପରେ ଜୟଦେବ ଓ ପଦ୍ମାବତୀ ଗ୍ରନ୍ଥଟିକୁ ନେଇ ନଦୀକୁ ଗଲେ । ସେଠାରେ ସ୍ନାନ ସାରି ଗ୍ରନ୍ଥକୁ ମାଧବଙ୍କ ଚରଣ ତଳେ ସମର୍ପଣ କଲେ । ରାତିରେ ଶୋଇଥିଲାବେଳେ ଗୀତଗୋବିନ୍ଦକୁ ପୁରୁଷୋତ୍ତମ ଜଗନ୍ନାଥଙ୍କୁ ସମର୍ପିବାକୁ ସ୍ୱପ୍ନାଦେଶ ହେଲା । ପତିପତ୍ନୀ ଗୃହକୁ ପରାଶରଙ୍କ ଜିମା ଦେଇ ପୁରୀ ଅଭିମୁଖେ ଯାତ୍ରା କଲେ ।

**ବିଷୟବସ୍ତୁ**

ସ୍ଥୂଳଦୃଷ୍ଟିରେ ଜାଣିବାରେ କବି ଗୀତଗୋବିନ୍ଦ ମହାକାବ୍ୟରେ ରାଧାକୃଷ୍ଣ ପ୍ରେମଲୀଳା ବର୍ଣ୍ଣନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ସହିତ ରାଧାଙ୍କର ବହୁବାର ନିଭୃତ ମିଳନ ହୋଇଛି । କିନ୍ତୁ ସେ ଗୋପୀମାନଙ୍କ ପ୍ରେମରେ ମଜ୍ଜିବାରୁ ରାଧା ବ୍ୟଥିତା ହୋଇଛନ୍ତି । ସେ ଅଭିମାନିନୀ ହୋଇପଡ଼ିଛନ୍ତି । ଶ୍ରୀକୃଷ୍ଣ ରାଧାଙ୍କୁ ନ ପାଇ କୁଞ୍ଜରୁ ଫେରିଯାଇଛନ୍ତି । ସଖୀମାନଙ୍କ ଅନୁନୟ ବିନୟ ଫଳରେ ଶେଷରେ ଶ୍ରୀକୃଷ୍ଣ ରାଧାଙ୍କୁ ଆଣିବାକୁ କହିଛନ୍ତି । ଶ୍ରୀରାଧା କିନ୍ତୁ ଏଥିରେ ସମ୍ମତ ହୋଇ ନାହାନ୍ତି । ପରେ ଶ୍ରୀକୃଷ୍ଣ ଆସି ସମୟ ନିର୍ଦ୍ଦିଷ୍ଟ କରିଛନ୍ତି । ମାତ୍ର ନିଶ୍ଚିତ ସମୟରେ ନ ଆସିବାରୁ ରାଧା ବିରହ ଯନ୍ତ୍ରଣାରେ ଘାରି ହୋଇଛନ୍ତି । କେଉଁ ନାରୀକୁଞ୍ଜରେ ରାତି କଟାଇ ପ୍ରଭାତ ହୁଅନ୍ତେ ଆସି ପହଞ୍ଚିଛନ୍ତି ଜାଣି ରାଧା ଭର୍ତ୍ସନା କରି କୁଞ୍ଜରୁ ତଡ଼ିଦେଇଛନ୍ତି । ଅପମାନିତ ଶ୍ରୀକୃଷ୍ଣ ଫେରିଯାଇଛନ୍ତି । ପୁଣି ସନ୍ଧ୍ୟା ସମୟରେ ଆସି ମାନଭଞ୍ଜନ କରିବାକୁ ଚେଷ୍ଟା କରିଛନ୍ତି । ବିଫଳ ହେବାରୁ ଶ୍ରୀରାଧାଙ୍କ ପାଦତଳେ ପଡ଼ି ଅନୁନୟ କରିଛନ୍ତି । ମାନିନୀର ମାନ ଭଙ୍ଗ ହୋଇଛି ।

କୁଞ୍ଜରେ ଉଭୟଙ୍କର ମିଳନ ହୋଇଛି । ଅନ୍ୟ ଦୃଷ୍ଟିରେ ଜୀବାତ୍ମା ପରମାତ୍ମା ସହିତ ମିଳିତ ହେବାପାଇଁ ଅବିରତ ଚେଷ୍ଟା ଚଳାଇଛି । ବହୁ ବାଧା ସୃଷ୍ଟି ହେଲେ ମଧ୍ୟ ଜୀବାତ୍ମା ପରମାତ୍ମା ସହିତ ମିଳିତ ହୋଇ ଅପାର ସୁଖଭୋଗ କରେ ।

## ଶ୍ରୀମନ୍ଦିରରେ ଗୀତଗୋବିନ୍ଦ

ଜୟଦେବ ଓ ପଦ୍ମାବତୀ ଯାଇ ପୂର୍ବେ ରହୁଥିବା ଚୁଡ଼ଙ୍ଗସାହିରେ ରହିଲେ । ଗୃହଟି ଜୀର୍ଣ୍ଣ ହୋଇଯାଇଥିଲା; ମାତ୍ର ତାକୁ ଚଳନୀୟ ଅବସ୍ଥାକୁ ଆଣି ସେଥିରେ ବସବାସ କରିବାକୁ ଲାଗିଲେ ।

ଚୈତ୍ର ମାସ ଶୁକ୍ଳ ତ୍ରୟୋଦଶୀ ଦିନ ଜୟଦେବ ଓ ପଦ୍ମାବତୀ ଗୀତଗୋବିନ୍ଦକୁ ନେଇ ଶ୍ରୀମନ୍ଦିରରେ ପହଞ୍ଚିଲେ । ସେଠାରେ ଜଗନ୍ନାଥଙ୍କ ପାଦପଦ୍ମରେ ଲାଗି କଲେ । ଏହାପରେ ସେ ଓ ପଦ୍ମାବତୀ ସୁଲଳିତ କଣ୍ଠରେ ଗୀତଗୋବିନ୍ଦ ଗାନ ଆରମ୍ଭ କଲେ । ମନ୍ଦିର ହଠାତ୍ ସ୍ତବ୍ଧ ହୋଇଗଲା । ଉପସ୍ଥିତ ଜନତା ନିର୍ବାକ୍ ହୋଇ ଅମୃତରସ ପାନ କରିବାରେ ଲାଗିଲା । ସେ ଗୀତ ଶୁଣି ଆବାଳବୃଦ୍ଧବନିତା ସମସ୍ତେ ଅଭିଭୂତ ହୋଇଗଲେ ।

ଦିନକୁ ଦିନ ଶ୍ରୀମନ୍ଦିରରେ ଭିଡ଼ ବଢ଼ିବାରେ ଲାଗିଲା । ବିଦେଶରୁ ଆସିଥିବା ଯାତ୍ରୀମାନେ ତାଙ୍କ ଗୀତ ଶୁଣିବାପାଇଁ ଦିନ ଦିନ ଧରି ଅଟକିରହିଲେ । ଏପରିକି ସ୍ୱୟଂ ଜଗନ୍ନାଥ ମଧ୍ୟ ଗୀତରେ ମୁଗ୍ଧ ହୋଇପଡ଼ିଲେ । ପୂଜାବେଳେ ବି ପୂଜକକୁ ଦେଖାଦେଲେ ନାହିଁ । କେବଳ ଗୀତଗୋବିନ୍ଦ ବୋଲା ସରିଲେ ସେ ଦୃଶ୍ୟମାନ ହେଲେ । ନିଜେ ଜଗନ୍ନାଥ ଜୟଦେବଙ୍କ ଗୀତ ପ୍ରତିଦିନ ଶୁଣୁଥିବା କଥା ସବୁଆଡ଼େ ବ୍ୟାପିଗଲା ।

ସେତେବେଳେ ରାଜା ଥିଲେ ପୁରୁଷୋତ୍ତମଦେବ । ସେ କଟକରେ ବାରବାଟୀ ଦୁର୍ଗରେ ରହୁଥାନ୍ତି । ଦୈବାତ୍ ସେ ପୁରୀ ଆସିଥିଲେ । ଏ ସମ୍ବାଦ ପାଇ ସେ ଶ୍ରୀମନ୍ଦିରରେ ପହଞ୍ଚିଲେ ଓ ଜୟଦେବଙ୍କୁ ଭେଟିଲେ । ସେ ଜୟଦେବଙ୍କ ଗୀତ ଗାନରେ ସ୍ତମ୍ଭୀଭୂତ ହୋଇଗଲେ ।

ପୁରୁଷୋତ୍ତମଦେବ ଜୟଦେବଙ୍କ ପ୍ରତି ଈର୍ଷାନ୍ୱିତ ହୋଇପଡ଼ିଲେ । ତାଙ୍କର ପତ୍ନୀ ମଙ୍କୁଣଦେବୀ ସୁପଣ୍ଡିତା ଥିଲେ । ତାଙ୍କ ସାହାଯ୍ୟରେ ସେ 'ଗୀତଗୋବିନ୍ଦ' ନାମରେ ଅନ୍ୟ ଏକ ଗୀତିକାବ୍ୟ ରଚନା କଲେ ଓ ତାହାକୁ ବଡ଼ ବଡ଼ ସଙ୍ଗୀତଜ୍ଞମାନଙ୍କଦ୍ୱାରା ଶ୍ରୀମନ୍ଦିରରେ ବୋଲାଇଲେ । ମାତ୍ର ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ'ର ଆଦର କମିଲା ନାହିଁ । କେହି ରାଜାଙ୍କ ରଚିତ 'ଗୀତଗୋବିନ୍ଦ'କୁ ଶୁଣିବାକୁ ଆଗ୍ରହ ଦେଖାଇଲେ ନାହିଁ । ଫଳରେ ରାଜା କ୍ରୋଧାନ୍ୱିତ ହୋଇପଡ଼ିଲେ ।

ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ'କୁ ରାଜ୍ୟରେ ନିଷେଧ କରିଦିଆଗଲା । ମାତ୍ର ରାଜାଙ୍କ ଆଦେଶ କେହି ମାନିଲେ ନାହିଁ । ଗୀତଗୋବିନ୍ଦର ଆଦର ଦିନକୁ ଦିନ ବଢ଼ି ଚାଲିଲା ।

ଦିନେ ଜୟଦେବ ରାଜାଦେଶ ଅମାନ୍ୟ କରି ମନ୍ଦିର ଭିତରେ ସ୍ୱରଚିତ ଗୀତଗୋବିନ୍ଦ ଗାଉଥାନ୍ତି । ରାଜାଦେଶ ଅମାନ୍ୟ ହେଲେ ମୃତ୍ୟୁଦଣ୍ଡ ପାଇବା କଥା ଜାଣିଥିଲେ ଓ ସେଥିପାଇଁ ସେ ପ୍ରସ୍ତୁତ ମଧ୍ୟ ଥିଲେ । ଅମାତ୍ୟମାନେ ମଧ୍ୟ ତାଙ୍କୁ ମୃତ୍ୟୁଦଣ୍ଡ ଦିଆଯିବାକୁ ତତ୍ପର ହୋଇଉଠିଲେ । ମାତ୍ର ରାଣୀ ମଙ୍କୁଶଦେବୀ ମହାରାଜାଙ୍କୁ ସେଥିରୁ ନିବୃତ୍ତ କଲେ ।

ରାଜା ଜୟଦେବଙ୍କୁ ଡକାଇ ରାଜାଦେଶ ଲଙ୍ଘନ କରୁଥିବାରୁ କ୍ଷୋଭ ପ୍ରକାଶ କଲେ ଓ ନିଜ ରଚିତ ଗୀତଗୋବିନ୍ଦକୁ ସ୍ୱୀକାର କରିବାକୁ ଅନୁରୋଧ କଲେ । ରାଜାଙ୍କ ରଚିତ 'ଗୀତଗୋବିନ୍ଦ' ଅପେକ୍ଷା ନିଜ ରଚିତ 'ଗୀତଗୋବିନ୍ଦ' ଉପରେ ସ୍ୱୟଂ କେଶବଙ୍କ ଶ୍ରଦ୍ଧା ଅଧିକ ବୋଲି ସେ ଅତି ବିନୟ ସହକାରେ ଉତ୍ତର ଦେଲେ । ରାଜା ଏହାର ପ୍ରମାଣ ଚାହିଁଲେ । ଜଗନ୍ନାଥଙ୍କ ପାଦପୀଠରେ ଦୁଇଟିଯାକ ଗ୍ରନ୍ଥ ରଖିବାକୁ ଜୟଦେବ ପ୍ରସ୍ତାବ ଦେଲେ । ପରମେଶ୍ୱରଙ୍କ ସାକ୍ଷ୍ୟ ଯେଉଁ ଗ୍ରନ୍ଥ ଉପରେ ରହିବ ସେହି ଶ୍ରେଷ୍ଠ ବିବେଚିତ ହେବ ବୋଲି ସ୍ଥିର ହେଲା ।

ଦୁଇଟିଯାକ ପୋଥିକୁ ଏକ ପ୍ରକାର ଆବରଣରେ ରଖି ରତ୍ନସିଂହାସନ ନିକଟକୁ ନିଆଗଲା ଓ ସେଠାରେ ରଖାଗଲା । ଏହାପରେ ଦ୍ୱାର ବନ୍ଦ କରାଗଲା । କିଛି ସମୟ ପରେ ରାଜା, ରାଣୀ, ଜୟଦେବ ଓ ପଦ୍ମାବତୀ ରତ୍ନସିଂହାସନ ନିକଟକୁ ଯାଇ ଯଥାବିଧି ପୂଜା ଆରାଧନା କଲେ ।

ଶ୍ରୀ ଶଙ୍କରାଚାର୍ଯ୍ୟ ରତ୍ନବେଦି ଉପରେ ରଖାହୋଇଥିବା ପୋଥି ଦୁଇଟିର ଉପର ଆବରଣ ଖୋଲିଦିଅନ୍ତେ ଉପରେ ଜୟଦେବଙ୍କ ରଚିତ ଶ୍ରୀଗୀତଗୋବିନ୍ଦ ଥିବାର ଦେଖାଗଲା । ଏହାଦ୍ୱାରା ଜୟଦେବଙ୍କ ଗୀତଗୋବିନ୍ଦ ଶ୍ରେଷ୍ଠ ବୋଲି ପ୍ରମାଣିତ ହେଲା ।

ମହାରାଜା ଜୟଦେବଙ୍କୁ ଗାଢ଼ ଆଲିଙ୍ଗନ କରି 'କବିରାଜରାଜ' ଉପାଧିରେ ଭୂଷିତ କରିଥିଲେ । ତାଙ୍କ ରଚିତ ଗୀତଗୋବିନ୍ଦ ଉପରେ ଥିବା ନିଷେଧାଦେଶ ମଧ୍ୟ ପ୍ରତ୍ୟାହାର କରିନେଲେ । ତାଙ୍କ ରଚିତ ଗୀତଗୋବିନ୍ଦ ପାଣ୍ଡୁଲିପିକୁ ରାଜା ସମୁଦ୍ର ମଧ୍ୟକୁ ନିକ୍ଷେପ କରିଦେଲେ । ପରେ ଜୟଦେବଙ୍କୁ ରାଜଗୁରୁଭାବେ ନିଯୁକ୍ତ କରାଗଲା । ସେ ପ୍ରଧାନମନ୍ତ୍ରୀ ପଦ ମଧ୍ୟ ଅଳଙ୍କୃତ କଲେ । ତାଙ୍କ ଚଳାଚଳପାଇଁ ବହୁ ଭୂସମ୍ପତ୍ତି ଓ ଚଳନ୍ତି ସମ୍ପତ୍ତି ଦିଆଗଲା । ପୁରୀ ଓ କଟକରେ ସୁରମ୍ୟ ଗୃହ ମଧ୍ୟ ରହିବାପାଇଁ ଦିଆଗଲା ।

ଜୟଦେବଙ୍କ ରଚିତ 'ଗୀତଗୋବିନ୍ଦ' ଶ୍ରେଷ୍ଠ ବୋଲି ବିବେଚିତ ହେଲେ ମଧ୍ୟ ଜୟଦେବ ନିଜ ଉଦାରତା ଗୁଣରେ ମହାରାଜାଙ୍କ ଗ୍ରନ୍ଥର ଦ୍ୱାଦଶଟି ଶ୍ଳୋକ ତାଙ୍କ କାବ୍ୟର ପ୍ରତିସର୍ଗ ଶେଷରେ ଯୋଗ କଲେ । ନିଜେ ଜୟଦେବ ଓ ପଦ୍ମାବତୀ ମହାରାଜାଙ୍କ ଗୀତଗୋବିନ୍ଦର ଶେଷ ଶ୍ଳୋକ ଗାଇଲେ ।

ଜୟଦେବ ରାଜକାର୍ଯ୍ୟପାଇଁ କଟକରେ ବସବାସ କରିବାକୁ ଲାଗିଲେ । ପଦ୍ମାବତୀ ମଧ୍ୟ ମଙ୍କୁଶ ମହାଦେବୀଙ୍କ ସହିତ ଶାସ୍ତ୍ର ଆଲୋଚନା ପ୍ରଭୃତିରେ କାଳ କଟାଇଲେ ।

## ମାଳିନୀର ଗୀତଗୋବିନ୍ଦ ଗାନ

ଜଗନ୍ନାଥ ମନ୍ଦିର ଭିତରେ ଥିବା ଫୁଲବଗିଚାର ମାଳୀ ଥିଲେ ଧନେଶ୍ୱର । ଦିନେ ସେ ଅସୁସ୍ଥ ଥିବାରୁ ତାଙ୍କ ଝିଅ ମାଳିନୀକୁ ଫୁଲ ତୋଳିବାପାଇଁ ପଠାଇଲେ । ସେ ଫୁଲ ତୋଳିସାରି ଗୀତଗୋବିନ୍ଦ ଗାଇ ଗାଇ କଣ୍ଟେଇମୁଣ୍ଡି ବାଇଗଣ ତୋଳୁଥିବା ଅବସ୍ଥାରେ କିଏ ଯେପରି ତା'ର ପଛେ ପଛେ ଘୂରି ବୁଲୁଥିବାର ଅନୁଭବ କଲେ । ଯେତେ ଡାକିଲେ ମଧ୍ୟ ଉତ୍ତର ନ ଦେବାରୁ ତାଙ୍କ ହୃଦୟରେ ଭୟ ସଞ୍ଚାର ହେଲା । ହଠାତ୍ ପବନରେ ଗୋଟିଏ କଣରେ ଶୁଖୁଥିବା ଜଗନ୍ନାଥଙ୍କ ରାତ୍ରି ପରିଧାନ ଦୁଇଟି ପାଟ ଉଡ଼ିଆସି ସେଇ ବାଇଗଣ କଣ୍ଟା ବାଡ଼ରେ ପଡ଼ିଲା । ଠାକୁରଙ୍କ ପାଟ ପଡ଼ିବାରୁ ସେ ପ୍ରମାଦ ଗଣିଲେ । ସେ ଦୁଇଟିକୁ ଗୋଟାଇ ଶୁଖୁଥିବା ସ୍ଥାନରେ ଲଟକାଇ ଫୁଲ ଓ ଫଳ ଯଥାସ୍ଥାନରେ ଥୋଇଦେଇ ଗୃହକୁ ଫେରିଗଲେ । ସେବକମାନେ ମଧ୍ୟ ଯଥାସମୟରେ ଆସି ପାଟମାନ ତୋଳିନେଇ ଠାକୁରଙ୍କ ବଡ଼ସିଂହାର ବେଶରେ ପିନ୍ଧାଇଦେଲେ । ସେଥିରେ କଣ୍ଟେଇମୁଣ୍ଡି ବାଇଗଣ ଗଛର କଣ୍ଟା ଲାଗିଥିବାର କେହି ଲକ୍ଷ୍ୟ କରିପାରି ନ ଥିଲେ । ଠାକୁରଙ୍କ ପହୁଡ଼ ପରେ କବାଟ ବନ୍ଦ ହେଲା ।

ପରଦିନ ପ୍ରତ୍ୟୁଷରୁ ରାଜା ପୁରୁଷୋତ୍ତମଦେବ ଜଗନ୍ନାଥଙ୍କ ଦର୍ଶନରେ ଆସିଲେ । ଠାକୁରଙ୍କ ପରିଧାନ ବସ୍ତ୍ରରେ କଣ୍ଟା ଲାଗିଥିବାର ଦେଖି ଚକିତ ହେଲେ । କେହି ଏହାର କାରଣ କହିପାରିଲେ ନାହିଁ । ଶେଷରେ ଜଣେ ସେବକ ମାଳିନୀକୁ ବଗିଚାରେ ଗୀତଗୋବିନ୍ଦ ଗାଉଥିବାର ସାକ୍ଷ୍ୟ ଦେଲେ । ଗଭୀର ରାତ୍ରିରେ ସ୍ୱୟଂ ଜଗନ୍ନାଥ ରାଜାଙ୍କୁ ସ୍ୱପ୍ନରେ ଦେଖାଦେଲେ । ପ୍ରିୟ ପାଟବସ୍ତ୍ର ପିନ୍ଧି କଣ୍ଟାପୂର୍ଣ୍ଣ ବାଇଗଣ ବାଡ଼ିରେ ବୁଲି ବୁଲି ମାଳିନୀର ଗୀତଗୋବିନ୍ଦ ଶୁଣୁଥିବାବେଳେ କଣ୍ଟା ଲାଗିଥିବା କଥା ଜଣାଇଲେ । ପୂଜକ ମଧ୍ୟ ଅନୁରୂପ ସ୍ୱପ୍ନ ଦେଖିଥିଲେ । ତା'ର ପରଦିନ ମାଳିନୀ ଆସି ଏହାର ସତ୍ୟାସତ୍ୟ ବିଷୟରେ

ସାକ୍ଷ୍ୟ ଦିଅନ୍ତେ ରାଜା ଅତ୍ୟନ୍ତ ପ୍ରୀତ ହୋଇ ମାଳିନୀର ଶ୍ୱଶୁର ପରିବାରବର୍ଗଙ୍କୁ ବାଣପୁରରୁ ଆଣି ପୁରୀରେ ରଖିବାର ବନ୍ଦୋବସ୍ତ କଲେ । ମାଳିନୀ ମଧ୍ୟ ବଂଶାନୁକ୍ରମିକଭାବେ ଜଗନ୍ନାଥ ମନ୍ଦିରରେ ଗୀତଗୋବିନ୍ଦ ଗାଇବାକୁ ନିଯୁକ୍ତ ହେଲେ । ସେହିଦିନଠାରୁ ଠାକୁରଙ୍କର ଚନ୍ଦନଲାଗି ବେଳେ ଜୟଦେବଙ୍କ ଗୀତଗୋବିନ୍ଦ ଗାନ ହେବା ଏକ ନୀତିରେ ପରିଣତ ହେଲା ।

ଦାର୍ଢ୍ୟତାଭକ୍ତି ଦ୍ୱିତୀୟ ଭାଗରେ ଏହା ବର୍ଣ୍ଣନା କରାଯାଇଛି –

"ରଚିଲା ଅପୂର୍ବ ପ୍ରବନ୍ଧ
ନାମ ଯା ଶ୍ରୀ ଗୀତଗୋବିନ୍ଦ
× × ×
ଆଣିଲେ ମାଳିନୀ କନ୍ୟାକୁ
କହିଲେ ତାକୁ ପଢ଼ିବାକୁ
ପଢ଼ିଲା ଶ୍ରୀ ଗୀତଗୋବିନ୍ଦ
ଶୁଣିଲା ପ୍ରଭୁ ମହାନନ୍ଦ
ରହିଲା ଖଞ୍ଜା ବୃତ୍ତିପାଇ
ପଢ଼ିଲା ନିତି ନିତି ଯାଇ ।"

ଜଗନ୍ନାଥଙ୍କ ଜୟବିଜୟ ଦ୍ୱାରରେ ଥିବା ଶିଳାଲିପିରେ ଏହା ମଧ୍ୟ ଉଲ୍ଲେଖ ଅଛି – "ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟୀ କର୍ଣ୍ଣାଟ କଳବର୍ଗେଶ୍ୱର ବୀରବର ଶ୍ରୀ ପ୍ରତାପରୁଦ୍ର ମହାରାଜାଙ୍କର ସପ୍ତମ ଅଙ୍କେ × × × ବୁଧବାରେ ଅବଧାରିତ ଅଇଁଗ୍ୟା ପ୍ରମାଣେ ବଡ଼ଠାକୁରଙ୍କ ଶ୍ରୀ ଗୀତଗୋବିନ୍ଦ ଠାକୁରଙ୍କ ଭୋଗ ବେଳେ ଏ ନାଟ ହୋଇବ ।"

## ଶେଷ ଜୀବନ

ଜୟଦେବ ଓ ପଦ୍ମାବତୀ ରାଜରାଜଦେବଙ୍କ ପ୍ରଧାନମନ୍ତ୍ରୀଭାବେ କଟକରେ ବାସ କଲେ । ସେ ଦୁଇ ଥର ମଧ୍ୟ ରାଜାଙ୍କ ସହ ତୀର୍ଥ ଭ୍ରମଣରେ ଯାଇଥିଲେ । ମଝିରେ ମଝିରେ ଜଗନ୍ନାଥଙ୍କ ଦର୍ଶନପାଇଁ ପୁରୀ ଆସୁଥାନ୍ତି । କେତେଦିନ ପରେ ରାଜରାଜଦେବ ଓ ମହାରାଣୀ ମଙ୍କୁଶଦେବୀଙ୍କ ପରଲୋକ ହେଲା । ଏହାପରେ ଅନଙ୍ଗଭୀମଦେବ ରାଜା ହେଲେ । ବୟସାଧିକ୍ୟ ଯୋଗୁଁ କବି ଓ କବିପତ୍ନୀ କ୍ରମେ ଅସୁସ୍ଥ ହୋଇପଡ଼ିଲେ । ସେମାନେ କଟକ ଛାଡ଼ି ସ୍ୱଗ୍ରାମ କେନ୍ଦୁବିଲ୍ୱକୁ ଫେରିଆସିଲେ । ମାତ୍ର ଜରାବ୍ୟାଧି ତାଙ୍କୁ ଗ୍ରାସ କରିସାରିଥିଲା । ଉଭୟେ ଦୁର୍ବଳ ହୋଇପଡ଼ିଲେ । ନଦୀକୁ ଯାଇ ସ୍ନାନ କରିବା ଆଉ ସମ୍ଭବ ହେଲା ନାହିଁ ।

ସମ୍ରାଟ୍ ଅନଙ୍ଗଭୀମଦେବ ସେଥିପାଇଁ କବିଙ୍କ ଗୃହରେ ଏକ ବଡ଼ ବାମ୍ପୀ ଖୋଳାଇଲେ । ଏହାର କିଛି କାଳପରେ ପଦ୍ମାବତୀ ମାଧବଙ୍କ ନାମ ଉଚ୍ଚାରଣ କରି କରି ଦେହତ୍ୟାଗ କଲେ । ପ୍ରାଚୀ ନଦୀକୂଳରେ ପ୍ରାଣାଧିକା ପତ୍ନୀ ପଦ୍ମାବତୀଙ୍କ ଚିତା ଜଳିଉଠିଲା । ବହୁ ଦୂରରୁ ଶେଷ ଦର୍ଶନପାଇଁ ନରନାରୀ ଛୁଟି ଆସିଲେ । ସମ୍ରାଟ୍ ଅନଙ୍ଗଭୀମଦେବ ତାଙ୍କର ଅଧୀନସ୍ଥ ନବଦ୍ୱୀପ ରାଜା ଲକ୍ଷ୍ମଣ ସେନଙ୍କୁ ଧରି ସେଠାରେ ପହଞ୍ଚିଲେ । ଲକ୍ଷ ଲକ୍ଷ ଲୋକଙ୍କ ସମାଗମ ହୋଇଥିଲେ ମଧ ଜୟଦେବ 'ପ୍ରିୟେ ଚାରୁଶୀଳେ' ଗୀତ ଗାଇ ଗାଇ ପଦ୍ମାବତୀଙ୍କ ଚିତାକୁ ଡେଇଁପଡ଼ିଲେ । ପୌଷ ମାସ ଶୁକ୍ଳ ଷଷ୍ଠୀ ଦିନ ତାଙ୍କର ଜୀବନ ସାଙ୍ଗ ହେଲା ।

## ଐତିହାସିକ ପ୍ରମାଦ

କବି ଜୟଦେବ ଏକ ସମୟରେ ଅଣଓଡ଼ିଆଭାବେ ଚିହ୍ନିତ ହେଉଥିଲେ । ବଙ୍ଗଳାର ବର୍ଦ୍ଧମାନ ଜିଲ୍ଲାରେ ଅଜୟ ନଦୀ କୂଳରେ କେନ୍ଦୁଲୀ ନାମକ ଏକ ଗ୍ରାମ ଅଛି । ଏହି ଗ୍ରାମର ଅଧିବାସୀମାନେ ଜୟଦେବଙ୍କୁ ସେଠା ନିବାସୀ ବୋଲି କହୁଥିଲେ । 'ଜୟଦେବ'ଙ୍କ ସ୍ମୃତି ରକ୍ଷାପାଇଁ ପ୍ରତିବର୍ଷ ଏକ ଯାତ୍ରାର ଆୟୋଜନ କରୁଥିଲେ । ଶ୍ରୀଗୀତଗୋବିନ୍ଦର ମଧୁର ସଙ୍ଗୀତ ଗାନ କରୁଥିଲେ ।

ବଙ୍ଗଳାର କେତେକ ଐତିହାସିକ ମଧ ବୀରଭୂମ ଜିଲ୍ଲାର ଅଜୟ ନଦୀ ତୀରବର୍ତ୍ତୀ କେନ୍ଦୁବିଲ୍ୱକୁ କବିରାଜ ଶ୍ରୀ ଜୟଦେବଙ୍କ ଜନ୍ମସ୍ଥାନ ପୁରୀ ନିକଟବର୍ତ୍ତୀ କେନ୍ଦୁବିଲ୍ୱ ବୋଲି ଚିହ୍ନିତ କରିଥିଲେ । ସେହି ଐତିହାସିକଙ୍କ ମଧରେ ହରେକୃଷ୍ଣ ମୁଖୋପାଧ୍ୟାୟ ଅନ୍ୟତମ । ତାଙ୍କ ରଚିତ ବୀରଭୂମ ବିବରଣୀ ନାମକ ଏକ ବଙ୍ଗଳା ପୁସ୍ତକରୁ ଜଣାଯାଏ ଯେ ବର୍ଦ୍ଧମାନର ମହାରାଜା ଅଜୟ ନଦୀ କୂଳରେ ଶ୍ରୀ ରାଧାବିନୋଦଙ୍କପାଇଁ ଏକ ମନ୍ଦିର ନିର୍ମାଣ କରିଥିଲେ । ସେଥିରେ ୧୬୧୪ ଖ୍ରୀଷ୍ଟାବ୍ଦର ଏକ ଶିଳାଲିପି ଥିଲା । ସେହି ଶିଳାଲିପିରେ କୁଆଡ଼େ ଜୟଦେବଙ୍କ ନାମ ଉଲ୍ଲେଖ ଥିଲା । ମାତ୍ର ସେହି ଶିଳାଲିପି ଦେଖିବାକୁ ମିଳୁ ନ ଥିବାରୁ ଏହା କେତେଦୂର ସତ୍ୟ ତାହା ଜାଣି ହୁଏ ନାହିଁ ।

ବଙ୍ଗଳାର ବନମାଳୀ ଦାସ ନାମକ ଜଣେ ଲେଖକ ଜୟଦେବ ଚରିତ ନାମକ ପୁସ୍ତକ ଲେଖିଥିଲେ । ଏହି ପୁସ୍ତକରେ ଯାହା ବର୍ଣ୍ଣିତ ଅଛି ତା'ର ସାରମର୍ମ ହେଲା –

ଦାକ୍ଷିଣାତ୍ୟର ଏକ ବ୍ରାହ୍ମଣ ଦମ୍ପତି ଶ୍ରୀଜଗନ୍ନାଥଙ୍କ ସେବାପାଇଁ ନିଜ କନ୍ୟା ପଦ୍ମାବତୀଙ୍କୁ ସାଙ୍ଗରେ ନେଇ ଶ୍ରୀକ୍ଷେତ୍ରକୁ ଆସିଥିଲେ । ଅଜୟ ନଦୀ କୂଳରେ ଥିବା କେନ୍ଦୁବିଲ୍ୱ ଗ୍ରାମରେ ବାସ କରୁଥିବା ଶ୍ରୀ ଜୟଦେବ ପଦ୍ମାଙ୍କପାଇଁ ଉପଯୁକ୍ତ

ବର ବୋଲି ସେମାନଙ୍କୁ ସ୍ୱପ୍ନାଦେଶ ହେଲା । ସେ ଦୁହେଁ କନ୍ୟା ପଦ୍ମାବତୀଙ୍କୁ ନେଇ ଉକ୍ତ ଗ୍ରାମର ସନ୍ଧାନରେ ବହିର୍ଗତ ହେଲେ । ୨୦ ଦିନ କାଳ ବାଟ ଚାଲି ସେମାନେ ଉକ୍ତ ଗ୍ରାମରେ ପହଞ୍ଚିଲେ । ଲୋକମାନେ ତାଙ୍କୁ ଅଜୟ ନଦୀ ତୀରବର୍ତ୍ତୀ କଦମ୍ବବୃକ୍ଷମୂଳରେ ଥିବା କଦମ୍ବଗଣ୍ଡି ଘାଟକୁ ନେଲେ । ସେଠାରେ ସମବେତ ଜନତାର କୋଳାହଳରେ ଜୟଦେବଙ୍କ ଧ୍ୟାନଭଙ୍ଗ ହେଲା । ଏହାପରେ ଜୟଦେବ ପ୍ରଭୁଙ୍କ ନିର୍ଦ୍ଦେଶ ମାନିବାକୁ ସମ୍ମତ ହେଲେ । ସେଦିନ ରାତ୍ରିରେ ଜଗନ୍ନାଥ ସ୍ୱପ୍ନରେ ପଦ୍ମାବତୀଙ୍କୁ ଦେଖାଦେଲେ । ଶ୍ରୀ ରାଧାକୃଷ୍ଣଙ୍କ ଲୀଳା ପ୍ରଚାର ନିମନ୍ତେ ଗୀତଗୋବିନ୍ଦ କାବ୍ୟ ପ୍ରଣୟନ ଓ ଅଜୟ ନଦୀ ଗର୍ଭରେ ପଡ଼ିଥିବା ଶ୍ରୀ ରାଧାମାଧବଙ୍କ ବିଗ୍ରହ ଉତ୍ତୋଳନପାଇଁ ଆଦେଶ ଦେଲେ । ଗ୍ରାମବାସୀମାନେ ଉତ୍ସାହ ସହକାରେ ଅଜୟ ନଦୀରେ ବୁଡ଼ି ରାଧାମାଧବଙ୍କ ମୂର୍ତ୍ତି ଉଦ୍ଧାର କଲେ । ବର୍ଦ୍ଧମାନ ମହାରାଜାଙ୍କ ସାହାଯ୍ୟରେ ଶ୍ରୀ ଜୟଦେବ ଓ ପଦ୍ମାଙ୍କ ବିବାହ ସମ୍ପନ୍ନ ହେଲା । ପରେ ରାଜା ବହୁ ଅର୍ଥ ବ୍ୟୟ କରି ଗୋଟିଏ ମନ୍ଦିର ନିର୍ମାଣ କରି ବିଗ୍ରହ ପ୍ରତିଷ୍ଠା କଲେ । ଜୟଦେବ ଓ ପଦ୍ମାବତୀଙ୍କପାଇଁ ଏକ ପ୍ରାସାଦ ନିର୍ମାଣ କଲେ । କଦମ୍ବଗଣ୍ଡି ଘାଟରେ ଜୟଦେବ ଓ ପଦ୍ମାବତୀ ବହୁ ବର୍ଷ ସୁଖରେ କଟାଇଲେ । ଶେଷ ବେଳକୁ ବୃନ୍ଦାବନ ଗଲେ ଓ ସେଠାରେ ସ୍ୱର୍ଗାରୋହଣ କଲେ ।

ମାତ୍ର ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ଜଗନ୍ନାଥଙ୍କ ସ୍ୱପ୍ନାଦେଶର ଅବତାରଣା କରାଯାଇଥିଲେ ମଧ୍ୟ ବ୍ରାହ୍ମଣ ଦମ୍ପତି ଶ୍ରୀକ୍ଷେତ୍ର ଛାଡ଼ି ଅଜଣା ଅଶୁଣା ଅଜୟ ନଦୀକୂଳରେ ଥିବା କେନ୍ଦୁଲୀକୁ ଯିବା ଘୋର ଅବାସ୍ତବ ଓ ପରମ୍ପରା ବିରୋଧୀ । ସେହିପରି ବର୍ଦ୍ଧମାନ ରାଜାଙ୍କ ସାହାଯ୍ୟରେ ଜୟଦେବ ଓ ପଦ୍ମାବତୀଙ୍କ ବିବାହ ହୋଇଥିବାର କୌଣସି ପ୍ରମାଣ ନାହିଁ । ଶ୍ରୀଜଗନ୍ନାଥଙ୍କ ମନ୍ଦିରରେ ଗୀତଗୋବିନ୍ଦର ନିତ୍ୟ ଗାନ ବିଷୟରେ ଉଲ୍ଲେଖ ଆଦୌ ନାହିଁ । ଜୟଦେବଙ୍କ ନାମରେ ଅଜୟ ନଦୀ କୂଳରେ ଏକ ମେଳା ହେଉଥିବା ଭିତ୍ତିରେ ସେହି ମେଳାସ୍ଥାନକୁ ତାଙ୍କର ଜନ୍ମଭୂମି ବୋଲି ଗ୍ରହଣ କରିବା ମଧ୍ୟ ସତ୍ୟର ଅପଳାପ ବୋଲି ସେ ମତ ଦେଇଛନ୍ତି ।

ପ୍ରାଚ୍ୟ ଭୂଖଣ୍ଡର ପ୍ରତ୍ନତତ୍ତ୍ୱ ଗବେଷଣାପାଇଁ କଲିକତାରେ 'ଏସିଆଟିକ୍ ସୋସାଇଟି' ପ୍ରତିଷ୍ଠିତ ହୋଇଥିଲା । ଏହାର ପ୍ରତିଷ୍ଠାତା ଥିଲେ ସାର୍ ଉଇଲିୟମ୍ ଜୋନ୍ସ । ତାଙ୍କର ଜୟଦେବକୃତ 'ଗୀତଗୋବିନ୍ଦ' ପ୍ରତି ବିଶେଷ ଆଗ୍ରହ ଥିଲା । ସେ ୧୭୯୯ ଖ୍ରୀଷ୍ଟାବ୍ଦରେ କେତେକ ଶ୍ଳୋକର ଅନୁବାଦ କରିଥିଲେ । ଏହି ଗ୍ରନ୍ଥର ମୁଖବନ୍ଧରେ ସେ ବହୁତ ଲୋକେ ଜୟଦେବଙ୍କ ଜନ୍ମସ୍ଥାନ ଶ୍ରୀକ୍ଷେତ୍ର ନିକଟବର୍ତ୍ତୀ କେନ୍ଦୁଲୀ ବୋଲି ବିଶ୍ୱାସ କରୁଥିବାର ଉଲ୍ଲେଖ କରିଛନ୍ତି ।

ମୈଥିଳୀ କବି ଚନ୍ଦ୍ରଦତ୍ତ ସଂସ୍କୃତରେ ଭକ୍ତିମାଳା ନାମକ ଗ୍ରନ୍ଥରେ ଜଗନ୍ନାଥ ପୁରୀ ନିକଟରେ ଥିବା କେନ୍ଦୁବିଲ୍ୱ ଗ୍ରାମରେ ଜୟଦେବ ନାମକ ଦ୍ୱିଜ ବାସ କରୁଥିଲେ ବୋଲି ଲେଖିଛନ୍ତି ।

''ଜଗନ୍ନାଥ ପୁରୀପ୍ରାନ୍ତେ ଦେଶେଚୈବୋତ୍କଳଭିଧେ
କେନ୍ଦୁବିଲ୍ୱ ଇତିଖ୍ୟାତୋ ଗ୍ରାମୋ ବ୍ରାହ୍ମଣ ସଂକୁଳଃ
ଚନ୍ଦ୍ରୋବଳେ ଦ୍ୱିରଜା ଜାତେ ଜୟଦେବ ଇତି ଶ୍ରୁତଃ ।।''

ବଙ୍ଗଳାର ସୁପଣ୍ଡିତ ଡକ୍ଟର ସୁକୁମାର ସେନ ମଧ୍ୟ ଜୟଦେବ ଓଡ଼ିଶାର ନିବାସୀ ବୋଲି ସ୍ପଷ୍ଟ ମତ ଦେଇ ଲେଖିଛନ୍ତି – ''କେନ୍ଦୁଲି ବଲିୟା ଏମନ କୋନ ଗାଓଁ ନେଇଁ । ଉଡ଼ିଶ୍ୟାୟ ପୁରୀର ଅନତିଦୂରେ ପ୍ରାଚୀନଦୀର ଧାରେ କେନ୍ଦୁବିଲ୍ୱ ଗ୍ରାମ ଆଛେ । ମନ ହଇତେ ପାରେ ଯେ ଗୀତଗୋବିନ୍ଦର ଗୀତ ଆଦିରସ ଉଡ଼ିଶାର ମନ୍ଦିରେର ଏକ ସ୍ଥାପତ୍ୟ ଶିଳ୍ପୋର ପ୍ରତିଫଳନ, ସୁତରାଂ ଜୟଦେବ ଉଡ଼ିଶା ନିବାସୀ ହଇବେନ ।''

କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଡକ୍ଟର ଆଶୁତୋଷ ଭଟ୍ଟାଚାର୍ଯ୍ୟ ୧୯୬୮ ମସିହା ପ୍ରଜାତନ୍ତ୍ର ବିଷୁବ ମିଳନ ସମ୍ମିଳନୀରେ ଦୃଢ଼ ଭାବେ ଘୋଷଣା କରିଥିଲେ – ''ଜୟଦେବ ଛିଲେନ ଓଡ଼ିଆ ଏବଂ ବୀରଭୂମିତେ ଅନୁଷ୍ଠିତ ବାତ୍ସରିକ ମେଲା ଆସଲେ ବାଉଲ ମେଲା ଏବଂ ଜୟଦେବେର ଜନ୍ମେର ସଙ୍ଗେ ଏର କୋନ ସମ୍ପର୍କ ନେଇ ।''

ସୁତରାଂ ଜୟଦେବ ଯେ ଓଡ଼ିଶାର ପୁରୀ ନିକଟବର୍ତ୍ତୀ ପ୍ରାଚୀ ନଦୀ କୂଳରେ ଥିବା କେନ୍ଦୁବିଲ୍ୱ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ ।

ଓଡ଼ିଶାର ବିଶିଷ୍ଟ ଐତିହାସିକ ଡଃ ମନ୍ମଥନାଥ ଦାସ କିନ୍ତୁ ଜୟଦେବ ବଙ୍ଗ ଦେଶର ବୀରଭୂମରେ ଜନ୍ମ ଗ୍ରହଣ କରିବା ସମ୍ଭାବନାକୁ ସମ୍ପୂର୍ଣ୍ଣଭାବେ ବାଦ ଦେଇ ନାହାନ୍ତି । ସେ ଲେଖିଛନ୍ତି – ''ଓଡ଼ିଶାର କେନ୍ଦୁବିଲ୍ୱ ହେଉ କିମ୍ବା ବଙ୍ଗର କେନ୍ଦୁବିଲ୍ୱ ହେଉ, ଉଭୟ ସ୍ଥାନ ସେତେବେଳେ ଥିଲା ଓଡ଼ିଶାର ଗଙ୍ଗ ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ସ୍ଥାନ । ମଧ୍ୟଯୁଗୀୟ ଅନନ୍ତବର୍ମା ଚୋଡ଼ଗଙ୍ଗଦେବ ଓଡ଼ିଶାକୁ କେନ୍ଦ୍ର କରି ଆଗଙ୍ଗା ଗୋଦାବରୀ ବିଶାଳ ସାମ୍ରାଜ୍ୟ ଗଠନ କରିଥିଲେ । ସେତେବେଳେ ତଦାନୀନ୍ତନ ବଙ୍ଗଦେଶର ଅନେକାଂଶ ଏହି ସାମ୍ରାଜ୍ୟର ଅନ୍ତର୍ଭୁକ୍ତ ଥିଲା । ଜୟଦେବଙ୍କ ଜନ୍ମ ପୂର୍ବରୁ ବୀରଭୂମ ଇତ୍ୟାଦି ଅଞ୍ଚଳ ଓଡ଼ିଶା ସାମ୍ରାଜ୍ୟରେ ମିଶି ସାରିଥିଲା ।''

ମାତ୍ର ଭାରତର ସବୁ ଅଞ୍ଚଳର କବିମାନେ ଜୟଦେବଙ୍କୁ ଉତ୍କଳବାସୀ ବୋଲି ମତ ଦେଇଥିବା ପୂର୍ବରୁ ବର୍ଣ୍ଣିତ ଅଛି । ଓଡ଼ିଶାର ଆଉ ଜଣେ ଐତିହାସିକ

ଡଃ କରୁଣାସାଗର ବେହେରା ତାଙ୍କର ସୁଚିନ୍ତିତ ମତ ଦେଇ କହିଛନ୍ତି ଯେ ଜୟଦେବଙ୍କ ଜନ୍ମସ୍ଥାନ ଏକ ମେଳା ଭିତ୍ତିରେ ନିର୍ଦ୍ଧାରଣ କରିବା ଯଥାର୍ଥ ହେବ ନାହିଁ । ଭକ୍ତିମାଳା ଗ୍ରନ୍ଥକୁ ଉଦ୍ଧାର କରି ସେ ପୁଣି କହିଛନ୍ତି – "ଏଥିରୁ ଜଣାଯାଏ ଯେ ଶ୍ରୀ ଜୟଦେବ ଉତ୍କଳଦେଶର ଜଗନ୍ନାଥ ପୁରୀ ନିକଟବର୍ତ୍ତୀ କେନ୍ଦୁବିଲ୍ୱ ବ୍ରାହ୍ମଣ ଶାସନରେ ଜନ୍ମଗ୍ରହଣ କରିଥିଲେ । × × × ଉକ୍ତ ଗ୍ରାମର ପ୍ରତ୍ନତାତ୍ତ୍ୱିକ ଅବଶେଷ ଦ୍ୱାଦଶ ଶତାବ୍ଦୀରେ ଏହାର ମହତ୍ତ୍ୱ ପ୍ରତିପାଦିତ କରେ ।"

ସୁପ୍ରତିଷ୍ଠିତ ଓଡ଼ିଶାର ସାହିତ୍ୟିକ ତଥା ସମାଲୋଚକ ସୁରେନ୍ଦ୍ର ମହାନ୍ତି ଜୟଦେବ ଗବେଷଣା ପୁସ୍ତକରେ କହିଛନ୍ତି – "ଓଡ଼ିଶାର ଇତିହାସ, ପରମ୍ପରା, ସାହିତ୍ୟ, ନୃତ୍ୟ, ସଙ୍ଗୀତ ଓ ଆଧ୍ୟାତ୍ମିକ ଜୀବନରେ ଗୀତଗୋବିନ୍ଦ ଓ ସେହି ସୂତ୍ରରେ କବି ଜୟଦେବ ଯେପରି ସୁପ୍ରତିଷ୍ଠିତ, ବଙ୍ଗଳା ବା ମିଥିଳାରେ ସେପରି ନୁହନ୍ତି । କବି ଜୟଦେବ ଅତି ନିବିଡ଼ ଭାବରେ ଓଡ଼ିଶାର, ଏହାକୁ ଅସ୍ୱୀକାର କରିବା ବିତଣ୍ଡା ମାତ୍ର ।"

## ଜୟଦେବକୃତ ଓଡ଼ିଆ ଗୀତିକବିତା

ଗବେଷକ ନଗେନ୍ଦ୍ରନାଥ ପ୍ରଧାନଙ୍କ ମତରେ ଜୟଦେବ କେତେକ ଓଡ଼ିଆ ଗୀତିକବିତା ରଚନା କରିଛନ୍ତି । ତାଳପତ୍ରରେ ଲିଖିତ ପୋଥି ମଧ୍ୟରୁ କେତେକ ମଧ୍ୟ ସେ ପ୍ରକାଶ କରିଛନ୍ତି । ସେହି ଗୀତିକବିତା ମଧ୍ୟରୁ ଗୋଟିଏ ହେଲା –

"ସରସ ବସଂତ ଘନ ଯମୁନାତଟ ବିପୁନ୍ୟ
ନୀପ ତରୀମୂଳେ ବିଜେ ନନ୍ଦ ନନ୍ଦନ,
ତ୍ରିଭଙ୍ଗିମା ରୂପେ ଉଭା ଶ୍ରୀକରେ ମୁରଲୀ ଶୋଭା
କରନ୍ତି ମୁରଲୀଧ୍ୱନି ଅତି ଗହନ
ଦଇବର ସଂଯୋଗ ଯହିଁ
କାଖେ କୁଂଭ ଘେନି ତ୍ରୀଖଭାନୁ ତନୟୀ (୧)
× × ×
ଗୋକଷ୍ଟେ ରହିଲେ ହରି ଗୋଧନୁ ପଲ ଆବୋରି,
ଭଣେ ଜୟଦେବ କବି ସେ ପାର ସିର ।"

ବସନ୍ତ ଋତୁ ଉପରେ ତାଙ୍କର ଗୋଟିଏ ଗୀତିକବିତା –

"ବସନ୍ତ ଋତୁ ଯେହ୍ନୁ ମଧୁ ପବନ,
ମଦନ ସରେ କାହ୍ନୁ ବସି ଜୀବନ ଗୋ,
ଶୁଣ ସଜନୀ ।
ମାଧବେ ମାନ ତୁନି କର ମାନେନି ଗୋ,

× × ×

ଭଣିଲେ ଜୟଦେବ ଅତି ନନ୍ଦିତ
ସୁଜନେ ଶୁଣି ଯେହା ହୋଇଁବ ମୁକତ ଗୋ,
ଶୁଣ ସଜନୀ
ମାଧବେ ମାନ ତୁ ନ କର ମାନେନି ।''
(ପୋଥିରୁ ଉଦ୍ଧୃତ, ମାତ୍ର ଶୋଧିତ ବା ସମ୍ପାଦିତ ନୁହେଁ)

## ବସନ୍ତରାସର ପ୍ରବର୍ତ୍ତକ

ଜୟଦେବଙ୍କ ଗୀତଗୋବିନ୍ଦରେ ରାଧାମାଧବଙ୍କର ଲୀଳା ବସନ୍ତ ଋତୁରେ ଆରମ୍ଭ ହୋଇଛି । ଜୟଦେବଙ୍କ ପରବର୍ତ୍ତୀ କବି ସାରଳାଦାସ ମଧ୍ୟ ରାଧାକୃଷ୍ଣଙ୍କର ଶୃଙ୍ଗାର ବିଳାସ ବସନ୍ତ କାଳରେ ଘଟିଥିବାର ବର୍ଣ୍ଣନା କରିଛନ୍ତି । ସାରଳାଙ୍କ ପରବର୍ତ୍ତୀ କବି ଦେବଦୁର୍ଲଭ ଦାସ ମଧ୍ୟ ରହସ୍ୟମଞ୍ଜରୀ କାବ୍ୟରେ ବସନ୍ତରାସର ବର୍ଣ୍ଣନା କରିଛନ୍ତି ।

ଆଲୋଚକ ନଗେନ୍ଦ୍ରନାଥ ପ୍ରଧାନ ତାଙ୍କର ସୁଚିନ୍ତିତ ମତ ଦେଇ କହିଛନ୍ତି – ''ଭାରତବର୍ଷର ଅନ୍ୟ କୌଣସି ପ୍ରାନ୍ତରେ ବସନ୍ତରାସ ଅନୁଷ୍ଠିତ ହେବାର ଜଣାଯାଏ ନାହିଁ । ଏହା ସମ୍ପୂର୍ଣ୍ଣ ଉତ୍କଳୀୟ । ଅତଏବ ଜୟଦେବ ହିଁ ଓଡ଼ିଆ ସାହିତ୍ୟରେ ବସନ୍ତରାସ ବର୍ଣ୍ଣନାର ଆଦି ପ୍ରବର୍ତ୍ତକ । ଏହି ବସନ୍ତରାସର ବର୍ଣ୍ଣନା ଗୀତଗୋବିନ୍ଦ ଓ ଜୟଦେବଙ୍କ ଓଡ଼ିଆ କବିତାମାନଙ୍କରେ ପରିଦୃଷ୍ଟ ହେଉଥିବାରୁ ଉଭୟ ଜୟଦେବ ଅଭିନ୍ନ ହେବା ସମୀଚୀନ ।''

## ଅନ୍ୟାନ୍ୟ ସାହିତ୍ୟ ଉପରେ ଗୀତଗୋବିନ୍ଦର ପ୍ରଭାବ

ଶ୍ରୀ ଗୀତଗୋବିନ୍ଦର ଆଦର କ୍ରମେ ଚତୁର୍ଦ୍ଦିଗକୁ ବ୍ୟାପିଯାଇଥିଲା । କେବଳ ଓଡ଼ିଶା କାହିଁକି, ସବୁ ପ୍ରାନ୍ତର ଜ୍ଞାନୀ ପଣ୍ଡିତମାନେ ଏହାର ପ୍ରଶଂସାରେ ଶତମୁଖ ହୋଇଉଠିଲେ । ଶ୍ରୀଗୀତଗୋବିନ୍ଦର ସରଳ, ଲଳିତ, ଶ୍ରୁତିମଧୁର ଓ ପ୍ରାଣସ୍ପର୍ଶୀ ସଙ୍ଗୀତମୟୀ ଭାଷା ସବୁ ପ୍ରାନ୍ତର ଲେଖକ, କବିମାନଙ୍କୁ ପ୍ରଭାବିତ କରିଆସିଅଛି । ୧୧୯୨ ଖ୍ରୀଷ୍ଟାବ୍ଦରେ ଚାନ୍ଦ ବରଦାଇ 'ପୃଥ୍ୱୀରାଜ ରାସେ' ନାମକ ଏକ ଗ୍ରନ୍ଥ ହିନ୍ଦୀରେ ରଚନା କରିଥିଲେ । ସେଥିରେ ସେ ତାଙ୍କ ପୂର୍ବବର୍ତ୍ତୀ ଆଠ ଜଣ ପ୍ରଖ୍ୟାତ କବିମାନଙ୍କ ମଧ୍ୟରେ କବିରାଜ ଶ୍ରୀ ଜୟଦେବଙ୍କ ନାମ ଉଲ୍ଲେଖ କରିଛନ୍ତି । ହିନ୍ଦୀ ସାହିତ୍ୟର ସନ୍ଥ କବିର (୧୫୮୮-୧୫୯୩) ମଧ୍ୟ ଗୀତଗୋବିନ୍ଦର କବି ଜୟଦେବଙ୍କଦ୍ୱାରା ପ୍ରଭାବିତ ହୋଇଥିଲେ । ତାଙ୍କ ରଚନାରେ ଶ୍ରୀ ଜୟଦେବଙ୍କ ଭକ୍ତିପୂର୍ଣ୍ଣ ଉଲ୍ଲେଖ ଦେଖାଯାଏ । ୧୪୭୯ ଖ୍ରୀଷ୍ଟାବ୍ଦରେ

ଶ୍ରୀବଲ୍ଲଭାଚାର୍ଯ୍ୟ ଆନ୍ଧ୍ରପ୍ରଦେଶରେ ଜନ୍ମଗ୍ରହଣ କରିଥିଲେ । ସଂସ୍କୃତ ସାହିତ୍ୟରେ ସେ ପାରଦର୍ଶିତା ଲାଭ କରିଥିବାରୁ ତାଙ୍କୁ କୃଷ୍ଣଦେବ ରାୟଙ୍କ ସଭାରେ ମହାପ୍ରଭୁ ବୋଲି ଘୋଷିତ କରାଯାଇଥିଲା । ସେ ଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇ କେବଳ ପ୍ରେମଦ୍ୱାରା ଭଗବାନ୍‌ଙ୍କ ଅନୁଗ୍ରହ ଲାଭ ହୋଇପାରିବ ବୋଲି ଶିକ୍ଷା ଦେଉଥିଲେ । ପ୍ରସିଦ୍ଧ ନାରୀକବି ମୀରାବାଈ ରାଜସ୍ଥାନୀ ହିନ୍ଦୀ ଭାଷାରେ ଗୀତଗୋବିନ୍ଦର ଟୀକା ରଚନା କରିଥିଲେ । ରାଜସ୍ଥାନର ଭକ୍ତକବି ନାଭା ଦାସ ତାଙ୍କ 'ଭକ୍ତମାଳ' ନାମକ କାବ୍ୟରେ ଜୟଦେବଙ୍କୁ ବିଶିଷ୍ଟ ସ୍ଥାନ ଦେଇଛନ୍ତି । ଶିଖଧର୍ମର ପଞ୍ଚମ ଗୁରୁ ଶ୍ରୀ ଅର୍ଜୁନ ସିଂହ ୧୬୦୪ ଖ୍ରୀଷ୍ଟାବ୍ଦରେ ଶିଖଧର୍ମଗ୍ରନ୍ଥ ଶ୍ରୀଗୁରୁ ଗ୍ରନ୍ଥସାହେବ ସଙ୍କଳନ କରିଥିଲେ । ସେଥିରେ ବହୁ ସନ୍ଥଙ୍କ କବିତା ମଧ୍ୟରେ ଜୟଦେବଙ୍କ ରଚନା ଅନ୍ତର୍ଭୁକ୍ତ ।

ଗୀତଗୋବିନ୍ଦ ପୁରୀ ଶ୍ରୀମନ୍ଦିରରେ ନିତ୍ୟ ଆବୃତ୍ତି ହେଉଥିବାରୁ ଚୈତନ୍ୟଦେବଙ୍କଦ୍ୱାରା ଆଦୃତ ହୋଇଥିଲା । ତେଣୁ ଗୀତଗୋବିନ୍ଦ ବଙ୍ଗଳାରେ ବହୁଳ୍‌ଭାବେ ପ୍ରସାର ଲାଭ କରିଥିବା ସ୍ୱାଭାବିକ । ଗୀତଗୋବିନ୍ଦଦ୍ୱାରା ପ୍ରଭାବିତ ହୋଇ ବଡ଼ ଚଣ୍ଡୀ ଦାସ 'ଶ୍ରୀକୃଷ୍ଣ ଚୈତନ୍ୟ' ନାମକ ଗ୍ରନ୍ଥ ରଚନା କରିଥିଲେ । ଶ୍ରୀ ଗିରିଧାରୀ ଦାସ ନାମକ ଜଣେ କବି ଗୀତଗୋବିନ୍ଦର ପଦ୍ୟାନୁବାଦ କରିଥିଲେ । ଦ୍ୱିଜ ପ୍ରାଣକୃଷ୍ଣ 'ଜୟଦେବ ପ୍ରସାଦାବଳୀ' ରଚନା କରିଥିଲେ । ଆସାମୀ ଭାଷାରେ ରାମନାରାୟଣ କବିରାଜ ସରସ୍ୱତୀ ଶ୍ରୀଗୀତଗୋବିନ୍ଦର ମର୍ମାନୁବାଦ କରିଥିଲେ । ଧର୍ମଦେବ ଭଟ୍ଟ ନାମକ ଆଉ ଅନ୍ୟ ଜଣେ ଅସମୀୟା କବି ଶ୍ରୀଗୀତଗୋବିନ୍ଦର ପଦ୍ୟାନୁବାଦ କରିଥିଲେ । ମଣିପୁରର କବି ଶ୍ରୀ ଭାଗ୍ୟଦେବ ଗୀତଗୋବିନ୍ଦ ଅନୁକରଣରେ 'ଗୋବିନ୍ଦ ସଙ୍ଗୀତ ଲୀଳା' ନାମକ ଗ୍ରନ୍ଥ ରଚନା କରିଥିଲେ । ଆନ୍ଧ୍ରପ୍ରଦେଶର ଉପକୂଳବର୍ତ୍ତୀ ଦକ୍ଷିଣାଞ୍ଚଳ ଓଡ଼ିଶା ସାମ୍ରାଜ୍ୟର ବହୁକାଳ ଧରି ଅନ୍ତର୍ଭୁକ୍ତ ଥିଲା । ଓଡ଼ିଶା ଓ ଆନ୍ଧ୍ର ମଧ୍ୟରେ ତେଣୁ ଘନିଷ୍ଠ ସାଂସ୍କୃତିକ ସମ୍ବନ୍ଧ ଥିଲା । ତେଲୁଗୁ କବି ସିଦ୍ଧେନ୍ଦ୍ର ଯୋଗୀ ତେଲୁଗୁ ଭାଷାରେ ଶ୍ରୀଗୀତଗୋବିନ୍ଦର ଅନୁରୂପ 'ଭାମା କଳାପମ୍' ନାମକ ଗୀତିକାବ୍ୟ ରଚନା କରିଥିଲେ । ସେ ମଧ୍ୟ ଶ୍ରୀଗୀତଗୋବିନ୍ଦର ଦଶାବତାର ନୃତ୍ୟକୁ ଗ୍ରହଣ କରିଥିଲେ । କ୍ରମଶଃ ଆନ୍ଧ୍ରରଂ ଦେବମନ୍ଦିରରେ କୁଚୁପୁଡ଼ିରେ ଦଶାବତାର ନୃତ୍ୟ ପ୍ରଚଳିତ ହେଲା । ଶ୍ରୀଗୀତଗୋବିନ୍ଦ ତାମିଲନାଡୁରେ ମଧ୍ୟ ଲୋକପ୍ରିୟତା ଅର୍ଜନ କଲା । ମାରିମୁଟ ପିଲାଇ, କବି କୁଞ୍ଜର ଭାରତୀ, ଗୋପାଳକୃଷ୍ଣ ଭାରତୀଙ୍କଦ୍ୱାରା କୀର୍ତ୍ତନ ପ୍ରଭୃତିରେ ଗୀତଗୋବିନ୍ଦର ପ୍ରଭାବ ସୁସ୍ପଷ୍ଟ । କେରଳରେ ମଧ୍ୟ ଶ୍ରୀଗୀତଗୋବିନ୍ଦ ଆଦୃତ ହୋଇଥିଲା । କୋଟିକୋଡ଼ର ରାଜା ମାନଦେବନ୍

୧୬୫୨ ଖ୍ରୀଷ୍ଟାବ୍ଦରେ 'ଗୀତଗୋବିନ୍ଦ' ଆଦର୍ଶରେ ଆଠ ଅଧ୍ୟାୟ ବିଶିଷ୍ଟ 'କୃଷ୍ଣଗୀତି' ବା 'କୃଷ୍ଣ ଆର୍ଟମ୍' ରଚନା କରିଥିଲେ । ଏହି 'କୃଷ୍ଣଆର୍ଟମ୍' କେରଳରେ ବିଶେଷ ଲୋକପ୍ରିୟତା ଅର୍ଜନ କରିଥିବାର ଜଣାଯାଏ ।

## ଓଡ଼ିଆ କବିଙ୍କ ଉପରେ ପ୍ରଭାବ

ଓଡ଼ିଶାର ସ୍ୱନାମଧନ୍ୟ କବି ମାୟାଧର ମାନସିଂହ ଗୀତଗୋବିନ୍ଦର ପ୍ରଭାବ ସମ୍ପର୍କରେ ଲେଖିଛନ୍ତି – "ଏହା ଏକ ମହାକାବ୍ୟ । × × × ଗୀତଗୋବିନ୍ଦ ଓଡ଼ିଶାର କଳା, ସମାଜ ଓ ସାହିତ୍ୟକୁ ଯେପରି ଗଭୀର ପ୍ରଭାବ ପକାଇପାରିଛି ତାହା ବୋଧହୁଏ ଭାରତର କୌଣସି ଅଞ୍ଚଳରେ ଦେଖାଯାଏ ନାହିଁ । × × × ଓଡ଼ିଆ କବିମାନଙ୍କ ଲେଖନୀରେ ସଂସ୍କୃତ ଗୀତଗୋବିନ୍ଦର ଏକ ପ୍ରାକୃତ ଅନୁସରଣ ସ୍ଥାନେ ସ୍ଥାନେ ଯେ ଆଦର୍ଶର ସମକକ୍ଷ ହୋଇପାରିଛି, ଏଥିପାଇଁ ପ୍ରତ୍ୟେକ ଓଡ଼ିଆ ଗର୍ବ କରିବାର କଥା । ଅଭିମନ୍ୟୁ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ପ୍ରଭୃତି କେତେକ କବି ଗତ କେତେ ଶତାବ୍ଦୀ ଧରି ଗୀତଗୋବିନ୍ଦର ବର୍ଣ୍ଣ, ସୌରଭ ଓ ସ୍ୱାଦ ଯଥାର୍ଥଭାବେ ପରିବେଷଣ କରୁଛନ୍ତି ।"

ଅଭିମନ୍ୟୁଙ୍କ ଭଳି ବଡ଼ ବଡ଼ ଓଡ଼ିଆ କବି ଜୟଦେବଙ୍କ ପଦାଙ୍କ ଅନୁସରଣ କରି ରାଧାକୃଷ୍ଣ ପ୍ରେମ ସମ୍ପର୍କିତ କାବ୍ୟମାନ ରଚନା କରିଛନ୍ତି । ଗୀତଗୋବିନ୍ଦ ଅନୁସରଣ କରି ଗଜପତି ପୁରୁଷୋତ୍ତମଦେବ ଅଭିନବ ଗୀତଗୋବିନ୍ଦ ରଚନା କରିଥିବାର ଆଗରୁ ବର୍ଣ୍ଣିତ ହୋଇଅଛି । ରାୟ ରାମାନନ୍ଦ ଏହାକୁ ଅନୁସରଣ କରି ଜଗନ୍ନାଥବଲ୍ଲଭ ରଚନା କରିଥିଲେ । ଅଷ୍ଟାଦଶ ଶତାବ୍ଦୀର କବି ଦୀନକୃଷ୍ଣ ଦାସ 'ଅମୃତ ସାଗର' ବୋଲିରେ ଗୀତଗୋବିନ୍ଦର ରାସଲୀଳା ବର୍ଣ୍ଣନା କରିଥିଲେ । ଷୋଡ଼ଶ ଶତାବ୍ଦୀର କବି ଧରଣୀଧର ମଧ୍ୟ ଷୋଳଟି ଛାନ୍ଦରେ ଏହାକୁ ଓଡ଼ିଆରେ ଅନୁବାଦ କରିଛନ୍ତି । ଏହା ବ୍ୟତୀତ ବଜରି ଦାସ, ଉଦ୍ଧବ ଦାସ, ପିଣ୍ଡିକ ଶ୍ରୀଚନ୍ଦନ, ଶ୍ୟାମସୁନ୍ଦର ଭଞ୍ଜ ପ୍ରଭୃତି ଏହାର ପଦ୍ୟାନୁବାଦ କରିଯାଇଛନ୍ତି ।

ଜୟଦେବ ବାସ୍ତବରେ କବି ହିସାବରେ ଅତୁଳନୀୟ । ଉତ୍କଳର କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ଆତ୍ମଗୌରବରେ ଗୌରବାନ୍ୱିତ ଥିଲେ । କିନ୍ତୁ ଜୟଦେବଙ୍କ ନିକଟରେ ମଥା ଲଗାଇ ପ୍ରଣତି ଜଣାଇଛନ୍ତି –

"କହେ ଉପଇନ୍ଦ୍ର ଭଞ୍ଜ ଟେକି ବେନି ବାହାକୁ
ରବି ତଳେ କବି ପଣେ ନ ଗଣେ ମୁଁ କାହାକୁ
ଜୟଦେବ ଦୀନକୃଷ୍ଣ ଏକା ମୋର ଶରଣ
ଆନ କବିଙ୍କର ମୁଣ୍ଡେ ମୋର ବାମ ଚରଣ ।"



# ଆଦିକବି
# ସାରଳା ଦାସ

ସାରଳା ଦାସ ଓଡ଼ିଆ ସାହିତ୍ୟର ଆଦିକବି । ତାଙ୍କ ପୂର୍ବରୁ ଓଡ଼ିଶାରେ ଯଦିବା କିଛି ସାହିତ୍ୟ ସୃଷ୍ଟି ହୋଇଥିଲା, ତାହା ସେପରି ଉଲ୍ଲେଖଯୋଗ୍ୟ ନ ଥିଲା । ଦୀର୍ଘ ପରମ୍ପରା ନ ଥାଇ ମହାଭାରତ ରଚନା କରି ଜାତି ସମ୍ମୁଖରେ ଯେଉଁ ବିରାଟ ଅବଦାନ ରଖିଗଲେ, ତାହା ତାଙ୍କୁ ଆଦିକବି କାହିଁକି ମହାକବିର ସମ୍ମାନ ଦେଇଛି ।

**ଜନ୍ମସ୍ଥାନ, ସମୟ**

ସାରଳା ଦାସ କଟକ ଜିଲ୍ଲାର ଝଙ୍କଡ଼ ପ୍ରଗଣା ଅନ୍ତର୍ଗତ ତେନ୍ତୁଳିଆପଦା ବା ବଡ଼ସାରୋଳ ଗ୍ରାମରେ ଏକ ଦରିଦ୍ର କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ସେ ଜାତିରେ ଶୂଦ୍ର ଥିଲେ । ସେତେବେଳେ ବ୍ରାହ୍ମଣ, କ୍ଷତ୍ରିୟ ଓ ବୈଶ୍ୟମାନଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କୁ ଶୂଦ୍ର କୁହାଯାଉଥିଲା । ଦେବମନ୍ଦିରମାନଙ୍କରେ – ବିଶେଷତଃ ଶିବ ମନ୍ଦିର ଓ ଦେବୀ ମନ୍ଦିର-ସେବାକାର୍ଯ୍ୟ ଏହି ଶୂଦ୍ରଜାତୀୟ ଲୋକମାନଙ୍କ ହସ୍ତରେ ନ୍ୟସ୍ତ ଥିଲା । ସମ୍ଭବତଃ, ସାରଳା ଦାସ ଏହିପରି ଏକ ଦେବୀ ସେବକ ଶୂଦ୍ର ପରିବାରରେ ଜନ୍ମ ଗ୍ରହଣ କରିଥିଲେ ।

ସାରଳା ଦାସଙ୍କ ଜନ୍ମ ତାରିଖ ଏପର୍ଯ୍ୟନ୍ତ ଠିକ୍ ଭାବେ ନିର୍ଣ୍ଣୀତ ହୋଇପାରି ନାହିଁ – ଅଧ୍ୟାପକ ଆର୍ତ୍ତବଲ୍ଲଭଙ୍କ ମତରେ ଆଦିକବି ସାରଳା ଦାସ

କପିଳ ନରସିଂହଦେବ (୧୩୨୮-୧୩୫୨)ଙ୍କର ସାମସମୟିକ । ଅନ୍ୟ ପକ୍ଷରେ ବିଶିଷ୍ଟ ଐତିହାସିକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ମତରେ ସାରଳା ଦାସ ସମ୍ରାଟ୍ କପିଳେନ୍ଦ୍ରଦେବଙ୍କ ସମୟରେ ହିଁ ଜୀବିତ ଥିଲେ । ତାହା ନ ହୋଇଥିଲେ ସେ ତାଙ୍କର ରଚନାବଳୀରେ କପିଳେନ୍ଦ୍ରଦେବଙ୍କର ବିଜିତ ରାଜ୍ୟସମୂହର ବାରମ୍ବାର ଉଲ୍ଲେଖ କରି ନ ଥାନ୍ତେ । 'ମହାଭାରତ' ଆଦ୍ୟପର୍ବର ମଙ୍ଗଳାଚରଣରେ ସେ ଜଗନ୍ନାଥଙ୍କୁ ବନ୍ଦନା ପ୍ରସଙ୍ଗରେ କହିଛନ୍ତି –

''କଳିକାଳ ଧ୍ୱଂସିତା ଭୋଗେଣ କୋଟି ସୁନା
ପ୍ରଳମ୍ବିତେ ଖଟଇ କପିଳେଶ୍ୱର ମହାରାଜା ।''

ପ୍ରଶ୍ନ ଉଠେ, ଏହି କପିଳେଶ୍ୱର ମହାରାଜା କିଏ ?

'ମାଦଳାପାଞ୍ଜି' ଓ ପୁରୀ ଜଗନ୍ନାଥ ମନ୍ଦିରର ଜୟବିଜୟ ଶିଳାଲିପି, ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ମଧ୍ୟରେ ଥିବା ଶିଳାଲିପି ଏବଂ ଗୋପୀନାଥପୁର ଶିଳାଲିପିରେ କପିଳେନ୍ଦ୍ର ଓ କପିଳେଶ୍ୱର ଉଭୟ ନାମର ଉଲ୍ଲେଖ ଅଛି । ମଧ୍ୟପର୍ବ, ବନପର୍ବ, ସଭାପର୍ବ ଓ ଅଶ୍ୱମେଧପର୍ବମାନଙ୍କରେ ପାଣ୍ଡବମାନଙ୍କ ଦିଗ୍‌ବିଜୟ ପ୍ରସଙ୍ଗରେ କପିଳେନ୍ଦ୍ରଦେବଙ୍କଦ୍ୱାରା ବିଜିତ ବହୁ ନଗର, ଜନପଦ ଓ ଦୁର୍ଗମାନଙ୍କର ବର୍ଣ୍ଣନା କରାଯାଇଛି । ଉଦାହରଣସ୍ୱରୂପ, କପିଳେନ୍ଦ୍ରଦେବଙ୍କଦ୍ୱାରା ପରାସ୍ତ ହୋଇଥିବା ରାଜା ମଲ୍ଲିକାର୍ଜ୍ଜୁନଙ୍କର ନାମ ପ୍ରତ୍ୟକ୍ଷ ଭାବରେ ସାରଳା ଦାସଙ୍କ ରଚନାରେ ଉଲ୍ଲେଖ ଅଛି । ଏହାଛଡ଼ା ବିଜିତ ଅଞ୍ଚଳ, ଯଥା – ମହେନ୍ଦ୍ର (ରାଜମହେନ୍ଦ୍ରୀ) ଉଦୟଗିରି, ଚନ୍ଦ୍ରଗିରି, କୁଣ୍ଡାବେଡ଼ି (କୋଣ୍ଡାଭିଡୁ), ମନ୍ଦାର (ମନ୍ଦିର), ବିଜୟନଗ୍ର (ବିଜୟନଗର) କର୍ଣ୍ଣାଟ ଓ କାଞ୍ଚି ପ୍ରଭୃତି ନାମଗୁଡ଼ିକର ମଧ୍ୟ ଉଲ୍ଲେଖ ଅଛି । କପିଳେନ୍ଦ୍ରଦେବ ତାଙ୍କର ରାଜତ୍ୱର ଶେଷଭାଗରେ ପ୍ରଜାମାନଙ୍କୁ ଲୁଣ ଓ କଉଡ଼ିରୁ କରମୁକ୍ତ କରିଥିଲେ । ଏହା ଜଗନ୍ନାଥ ମନ୍ଦିରର ଜୟବିଜୟ ଲେଖାରୁ ଜଣାଯାଏ । ସୁତରାଂ କପିଳେନ୍ଦ୍ରଦେବଙ୍କ ସମୟରେ ଯେ ସାରଳା ଦାସଙ୍କ 'ମହାଭାରତ' ରଚିତ ହୋଇଥିଲା, ଏଥିରେ ସନ୍ଦେହ ନାହିଁ । କପିଳେନ୍ଦ୍ରଦେବ ୧୪୩୫-୧୪୬୬ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ସମ୍ଭବତଃ ଏହି ମହାକାବ୍ୟ କପିଳେନ୍ଦ୍ରଦେବଙ୍କ ରାଜତ୍ୱର ଶେଷ ଦଶନ୍ଧିରେ ରଚିତ ହୋଇଥିଲା । ସେକ୍ସପିଅର ଓ ତୁଳସୀ ଦାସଙ୍କ ପ୍ରାୟ ଏକ ଶତ ବର୍ଷ ପୂର୍ବରୁ ସାରଳା ଦାସ ତାଙ୍କ ଗ୍ରନ୍ଥ ରଚନା କରିଥିବା କଥା ଡଃ ପାଣିଗ୍ରାହୀ ଉଲ୍ଲେଖ କରିଛନ୍ତି ।

## ନାମ ଓ ବଂଶ ପରିଚୟ

ସାରଳା ଦାସଙ୍କ ଜନ୍ମକାଳୀନ ପିତୃଦତ୍ତ ନାମ ଥିଲା ସିଦ୍ଧେଶ୍ୱର ପରିଡ଼ା । ଅନୁମାନ କରାଯାଏ ଯେ ସେ 'ବିଲଙ୍କା ରାମାୟଣ' ରଚନା ପର୍ଯ୍ୟନ୍ତ ଏହି ନାମରେ ପରିଚିତ ଥିଲେ । 'ବିଲଙ୍କା ରାମାୟଣ' ତାଙ୍କର ଆଦ୍ୟ ରଚନା । ଏଥିରେ ସେ ଲେଖିଛନ୍ତି –

''ରାମାୟଣ ବୃତ୍ତାନ୍ତକୁ ନିରନ୍ତରେ ଘୋଷ
ରାମଙ୍କ ଚରଣେ ସିଦ୍ଧେଶ୍ୱର ଦାସ ।''

ଇଷ୍ଟଦେବୀ ଠାକୁରାଣୀଙ୍କ ପ୍ରସାଦରୁ ସିଦ୍ଧିଲାଭ କରି ସାରଳା ଦାସ ପିତୃଦତ୍ତ ନାମକୁ ବଦଳାଇ ନିଜକୁ ସାରଳା ଦାସ ନାମରେ ଅଭିହିତ କରାଇଲେ ଓ ସେଇ ନାମରେ ସେ ଖ୍ୟାତ ହେଲେ । ସେ ଆଶ୍ରମିକପର୍ବରେ ଏହି କଥାର ଉଲ୍ଲେଖ କରିଛନ୍ତି –

''ଜଗନ୍ନାଥ ଯହୁଁ ପ୍ରସନ୍ନ ମତେ ହେଲେ
ଶୂଦ୍ର ମୁନି ସାରଳା ଦାସ ନାମ ଦେଲେ ।''

ଶାରଳାଦେବୀଙ୍କ ବରଲାଭ ପରେ ତାଙ୍କର ଅଦ୍ଭୁତ ପରିବର୍ତ୍ତନ ଘଟିଲା । ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍‌ର ଘଟଣାମାନ ତାଙ୍କୁ ଜଳ ଜଳ ହୋଇ ଦେଖାଗଲା । ଗତ ଜନ୍ମରେ କ'ଣ ଥିଲେ, ଆସନ୍ତା ଜନ୍ମରେ କ'ଣ ହେବେ – ତାହା ମଧ୍ୟ ଜାଣିପାରିଲେ । ଏ ବିଷୟ ସେ 'ମହାଭାରତ'ର ସ୍ୱର୍ଗାରୋହଣପର୍ବରେ ଉଲ୍ଲେଖ କରିଛନ୍ତି –

''ପ୍ରଥମ ଜନ୍ମରେ ମୁଁ ହେଲି କାଳିଦାସ
ଦ୍ୱିତୀୟ ଜନ୍ମରେ ମୁଁ ମହାକାଳଧ୍ୱଂସ
ତୃତୀୟ ଜନ୍ମରେ ମୁଁ ସାରଳା ଦାସ କବି
ଆର ଜନ୍ମେ ମୁଁ ମର୍ତ୍ତ୍ୟମଣ୍ଡଳେ ଜନ୍ମିବି ।''

ସାରଳା ଦାସ ନିଜ ଗ୍ରନ୍ଥାବଳୀରେ କୌଣସିଠାରେ ନିଜର ପିତାମାତାଙ୍କର ନାମ ଉଲ୍ଲେଖ କରି ନାହାନ୍ତି । ସମ୍ଭବତଃ, ସେ ଶୈଶବରୁ ପିତୃମାତୃହୀନ ଥିଲେ । ତାଙ୍କ ଜ୍ୟେଷ୍ଠ ଭ୍ରାତାଙ୍କ ନାମ ଅବଶ୍ୟ ସେ ଉଲ୍ଲେଖ କରିଛନ୍ତି । ତାଙ୍କର ନାମ ଥିଲା ପର୍ଶୁରାମ । ସେ ତାଙ୍କଦ୍ୱାରା ଲାଳିତ ପାଳିତ ହୋଇଥିବାର ଜଣାଯାଏ । ସେ ମଧ୍ୟ ଏହା ସ୍ୱୀକାର କରିଛନ୍ତି –

''କନକପୁର ପାଟଣା ଘର ପର୍ଶୁରାମ
ମୁହିଁ ତା'ର ଅନୁଜ ସାରଳା ଦାସ ନାମ ।''

ଏହି ପର୍ଶୁରାମ ଗ୍ରାମ ନିକଟସ୍ଥ ଚନ୍ଦ୍ରଭାଗା ବା ବୁଢ଼ନଦୀରେ ଘାଟିଆ ବ୍ୟବସାୟ କରୁଥିଲେ । ସେ ପରେ ପର୍ଶୁରାମପାଟଣା ନାମକ ଏକ ଗ୍ରାମ ସ୍ଥାପନ କରିଥିଲେ ।

'ମହାଭାରତ' ଆଦିପର୍ବରେ ତାଙ୍କର ଅନ୍ୟ ଦୁଇ ଭାଇ ଥିବାର ଉଲ୍ଲେଖ ଅଛି । ସେମାନଙ୍କ ମଧ୍ୟରେ ସାରଳା ଦାସ ସର୍ବକନିଷ୍ଠ ଥିଲେ ।

## ବାଲ୍ୟ ଜୀବନ

ସାରଳା ଦାସ ଦରିଦ୍ର କୃଷକ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପରିବାରରେ ସେପରି କେହି ଜ୍ଞାନୀ ବ୍ୟକ୍ତି ନ ଥିଲେ । ସେତେବେଳେ ବ୍ରାହ୍ମଣ ଶାସନଗୁଡ଼ିକରେ ବିଦ୍ୟାଚର୍ଚ୍ଚା ହେଉଥିଲା । କିନ୍ତୁ କବିଙ୍କ ନିଜ ଗ୍ରାମ କନକାବତୀପାଟଣା ନିକଟରେ କୌଣସି ଶାସନ ନ ଥିଲା । ସେ ତେଣୁ ଜ୍ଞାନୀଲୋକଙ୍କ ସଙ୍ଗଲାଭରୁ ବଞ୍ଚିତ ହୋଇଥିଲେ । ତେଣୁ ବାଲ୍ୟ କାଳରେ ସେ ବିଦ୍ୟା ଲାଭ କରିପାରି ନ ଥିଲେ । ସେ ନିଜେ ଅତି ଦୁଃଖର ସହିତ ତାହା ଉଲ୍ଲେଖ କରିଛନ୍ତି –

"ଆହେ ବୁଧଜନ ମୁହିଁ ମୂର୍ଖ ଅପଣ୍ଡିତ
କୁସ୍ଥାନ ବାସୀ ଅଟଇ ଅଜ୍ଞାନ ବଂଶେ ଜାତ ।
ଗ୍ରାମରେ ମୋହର ପାଠ ସାଧି ନାହିଁ ଭଲେ
ନିକଟେ ଶାସନ ଯଦି ନ ବସିଲି ପୁରାଣିକଙ୍କ ତୁଲେ ।"

ସେ ତେଣୁ ବାଲ୍ୟକାଳରେ ପଶାଖେଳ, ଜୁଆ ଖେଳ ପ୍ରଭୃତିରେ କାଳ କଟାଇଥିବା ସ୍ୱାଭାବିକ । ସେ ଲେଖିଛନ୍ତି –

"ପଣ୍ଡିତ ଜନଙ୍କର ନ ବସିଲି ସଙ୍ଗେ
ପଶା ଜୁଆ ଶକଟାଦି ଆବର ନାନା ରଙ୍ଗେ ।"

ସାରଳା ଦାସ ବାଲ୍ୟକାଳରେ ଗ୍ରାମ ଚାଟଶାଳୀରେ ଲିଖନ, ପଠନ ପ୍ରଭୃତି ଶିକ୍ଷା ଲାଭ କରିଥିବା ଅନୁମାନ କରାଯାଏ । ସେତେବେଳେ ବର୍ଣ୍ଣଶିକ୍ଷା, ପଦ୍ୟାବୃତ୍ତି, ସାମାନ୍ୟ ଗଣିତ ଶିକ୍ଷା, ପତ୍ରଲିଖନ ପ୍ରଭୃତି ଉକ୍ତ ଚାଟଶାଳୀ ଶିକ୍ଷାର ଅଙ୍ଗ ଥିଲା । ସେ ଏହାପରେ ଆଉ ଉଚ୍ଚ ଶିକ୍ଷା ଲାଭ କରିପାରି ନ ଥିଲେ ।

## କବିତ୍ୱ ଲାଭ

ସାରଳା ଦାସଙ୍କ କବିତ୍ୱ ଲାଭ ସମ୍ବନ୍ଧରେ ବହୁ ଗଳ୍ପ ଓ କିମ୍ବଦନ୍ତୀମାନ ଅଛି । ଓଡ଼ିଶା ସରକାରଙ୍କଦ୍ୱାରା ପ୍ରକାଶିତ 'ସାରଳା ମହାଭାରତ'ର ଆଦିପର୍ବ ଦ୍ୱିତୀୟ ଖଣ୍ଡର ପରିଶିଷ୍ଟରେ ଏକ କିମ୍ବଦନ୍ତୀର ଉଲ୍ଲେଖ ଅଛି –

ସାରଳା ଦାସ ଦିନେ ଦିନ ଦ୍ୱିପ୍ରହରରେ ଆଖୁ କିଆରିରେ ପାଣି ମଡ଼ାଉଥିଲେ । ପାଣି ମଡ଼ାଉଥିବା ସମୟରେ ସେ କ୍ଳାନ୍ତି ଦୂର କରିବାପାଇଁ ଭଣ୍ଡବିଭଣ୍ଡ ଗୀତ ଗାଉଥିଲେ । ଏହି ସମୟରେ ଶାରଳାଦେବୀ ଅନିନ୍ଦ୍ୟ ସୁନ୍ଦରୀ ଷୋଡ଼ଶୀ ଯୁବତୀ ରୂପରେ ସେହି ବାଟ ଦେଇ ଗଲେ । ସାରଳା ଦାସ ତାଙ୍କୁ ଦେଖି ତୁନି ହୋଇଗଲେ । ପରେ ଦେବୀ ଏକ ବୃଦ୍ଧା ରୂପରେ ସେଠାରେ ଉପସ୍ଥିତ ହୋଇ ଗୀତ ଗାଇବା ବନ୍ଦ କରିଦେବାର କାରଣ ପଚାରିଲେ । ସେ ଭଣ୍ଡବିଭଣ୍ଡ ଗୀତ ଗାଉଥିବା କଥା କହିବାରୁ ଦେବୀ ତାଙ୍କୁ କୃଷ୍ଣଚରିତ ଗାଇବାକୁ ଉପଦେଶ ଦେଲେ ।

ରାତିରେ ପୁଣି ସ୍ୱପ୍ନରେ ଦେବୀ ତାଙ୍କ ସମ୍ମୁଖରେ ପ୍ରତିଭାତ ହେଲେ । ଦେବୀ ତାଙ୍କୁ 'ବିଷ୍ଣୁପୁରାଣ' ରଚନା କରିବାକୁ କହିଲେ । ସେ ଗଣ୍ଡମୂର୍ଖ ଥିବାରୁ ଏହା କିପରି ରଚନା କରିବେ ବୋଲି ପ୍ରଶ୍ନ କଲେ । ଦେବୀ ତାଙ୍କୁ କିଛି ଚିନ୍ତା ନ କରିବାକୁ କହିଲେ । ସେ ତାଙ୍କ କଣ୍ଠରେ ବସି ସବୁ କହିଦେବେ ଓ ଯେଉଁଠି ସେ ନ ପାରିବେ ସେ (ଦେବୀ) ନିଜେ ପୂରଣ କରିଦେବେ ବୋଲି କହିଲେ । ସାରଳା ଦାସଙ୍କ ସ୍ୱପ୍ନ ଭାଙ୍ଗିଗଲା । ଚେତନା ପାଇ ଦେଖିଲେ ତାଙ୍କ ମୁଣ୍ଡ ପାଖରେ ଲେଖନୀ, ପତ୍ର ଥୁଆ ହୋଇଅଛି । ସେ ଏହାପରେ ରଚନା ଆରମ୍ଭ କଲେ ।

ସ୍ୱର୍ଗୀୟ ପଣ୍ଡିତ ମୃତ୍ୟୁଞ୍ଜୟ ରଥ 'ସାରଳା ଚରିତ'ରେ କବିତ୍ୱ ଲାଭ ସମ୍ବନ୍ଧରେ ଆଉ ଏକ କିମ୍ବଦନ୍ତୀର ଅବତାରଣା କରିଛନ୍ତି –

ଶାରଳା ପୀଠର ଅନତିଦୂରରେ ଗୋଟିଏ ଶୂଦ୍ର ବାସ କରୁଥିଲେ । ତାଙ୍କର ଚାରି ଗୋଟି ପୁତ୍ର ଥିଲେ । ସେ ପ୍ରତ୍ୟହ ପୁତ୍ରମାନଙ୍କୁ ଗଳ୍ପ କହୁଥିଲେ । ସେମାନଙ୍କର ତାହା ମନେ ରହୁଛି କି ନାହିଁ ତା' ବି ବେଳେ ବେଳେ ପରୀକ୍ଷା କରୁଥିଲେ । ସର୍ବକନିଷ୍ଠ ପୁତ୍ର ସିଦ୍ଧେଶ୍ୱର ଅତ୍ୟନ୍ତ ଜଡ଼ମତି ଥିଲେ । ସେ କୌଣସି ପ୍ରଶ୍ନର ଉତ୍ତର ଦେଇ ନ ପାରିବାରୁ ପିତାଙ୍କଠାରୁ ଭର୍ତ୍ସିତ ହେଉଥିଲେ । ଏଥିରେ ମ୍ରିୟମାଣ ହୋଇ ସିଦ୍ଧେଶ୍ୱର ଶାରଳାଦେବୀଙ୍କ ଶରଣାପନ୍ନ ହେଲେ । ତାଙ୍କ ତପସ୍ୟାରେ ଦେବୀ ପ୍ରସନ୍ନ ହୋଇ ତାଙ୍କୁ ବର ମାଗିବାକୁ କହିଲେ । ସିଦ୍ଧେଶ୍ୱର ମହାଭାରତ ରଚନା କରିବାକୁ କହନ୍ତେ ଦେବୀ ତାଙ୍କୁ ଖେଦା ଲେଖନୀ ଧରି କଳ୍ପବଟ ମୂଳରେ ବସି ଯାହା ଶୁଭିବ ତାହା ଲେଖିଯିବାକୁ ନିର୍ଦ୍ଦେଶ ଦେଲେ । ସେହିଦିନଠାରୁ ସାରଳା ଦାସ 'ମହାଭାରତ' ଓ ଅନ୍ୟାନ୍ୟ ଗ୍ରନ୍ଥ ରଚନା କରିବାରେ ଲାଗିଲେ । ସେ ମଧ୍ୟ ଶାରଳାଙ୍କ ଆଜ୍ଞାରେ ନିଜକୁ ଶୂଦ୍ରମୁନି ଭାବେ ଅଭିହିତ କଲେ –

"ଜଗନ୍ନାଥ ଯହୁଁ ପ୍ରସନ୍ନ ମତେ ହେଲେ
ଶୂଦ୍ରମୁନି ସାରଳା ଦାସ ନାମ ଦେଲେ ।" (ଦ୍ରୋଣପର୍ବ)

ରାତ୍ରିକାଳରେ ଦେବୀ ତାଙ୍କୁ ପ୍ରସନ୍ନ ହୋଇ ଯାହା କହୁଥିଲେ ସକାଳେ ସେ ଲେଖି ବସୁଥିଲେ ।ଦେବୀଦତ୍ତ ଲିଖନ ଓ ତାଳପତ୍ର ଧରିଲେ ସବୁ ମନେପଡ଼ି ଯାଉଥିଲା । ଦିବ୍ୟ ଭିତରେ ଅଦିବ୍ୟ, ଦୃଷ୍ଟି ଭିତରେ ଅଦୃଷ୍ଟି ଓ ଆକାର ଭିତରେ ନିରାକାର ସାଧନରେ ସେ ଲାଗିଲେ । ସେ ନିଜେ ବହୁ ସ୍ଥାନରେ କହିଛନ୍ତି --

''ଆହେ ବୁଧଜନେ ମତେ ସେ ଯାହା କହଇ
ଅରୁଣ ଉଦୟ କାଳେ ତାହା ମୁଁ ଲେଖଇ
ପ୍ରସନ୍ନ ହୋଇଣ ମତେ କହନ୍ତି ଯେ ବାଣୀ
ମୁଁ ତାହା ଲେଖି ପକାଏ ପତ୍ରରେ ତକ୍ଷଣି ।'' (ଚଣ୍ଡୀପୁରାଣ)

## ଗୃହସ୍ଥ ଜୀବନ

ସମ୍ଭବତଃ, ସାରଳା ଦାସ ବିବାହିତ ଓ ବହୁକୁଟୁମ୍ବୀ ଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ପରିବାର ପୋଷଣ ନିମନ୍ତେ ସେ କଠିନ ପରିଶ୍ରମ କରୁଥିଲେ । ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ନିଜର କୌଳିକ ବୃତ୍ତି କୃଷି କାର୍ଯ୍ୟରୁ ବିରତ ରହି ନ ଥିଲେ । ସେ ସଂସାର ଜଂଜାଳରେ ବ୍ୟସ୍ତ ହୋଇ ଏଥିରୁ ଉଦ୍ଧାର ପାଇବାକୁ ଭଗବାନ୍‌ଙ୍କୁ ଡାକିଛନ୍ତି –

''ସ୍ୱାମୀ ଦେଖୁ ଦେଖୁ ବଣା ହୋଇପଡ଼ିଲି ଜଞ୍ଜାଳେ
ଯେ କ୍ରୋଧୁ ନାରାୟଣ ମୋତେ ଉଦ୍ଧାର ଯେତେ ବେଳେ ।'' (ବନପର୍ବ)

## ସାହିତ୍ୟ ରଚନା

ସାରଳା ଦାସ ତିନି ଖଣ୍ଡ ପୁସ୍ତକ ରଚନା କରିଥିବାର ଜଣାଯାଏ । ସେ ଏହା ଲେଖିଛନ୍ତି –

''ପ୍ରଥମେ ଶ୍ରୀ ରାମାୟଣ ଦ୍ୱିତୀୟେ ଭାରତ
ତୃତୀୟେ ଲିଖନ କଲି ଶିରୀ ଭାଗବତ ।'' (ଚଣ୍ଡୀପୁରାଣ)

ଏଠାରେ ରାମାୟଣ କହିଲେ 'ବିଲଙ୍କା ରାମାୟଣ' ଓ ଭାଗବତ କହିଲେ 'ଚଣ୍ଡୀପୁରାଣ' ବା 'ଦେବୀ ଭାଗବତ' ବୁଝାଏ । ଏହି ତିନି ଗ୍ରନ୍ଥ ମଧ୍ୟରୁ 'ବିଲଙ୍କା ରାମାୟଣ' ଓ 'ଚଣ୍ଡୀପୁରାଣ' ଅପେକ୍ଷାକୃତ କ୍ଷୁଦ୍ର ରଚନା ।

## ବିଲଙ୍କା ରାମାୟଣ

ବିଲଙ୍କା ରାମାୟଣ ଗ୍ରନ୍ଥରେ ରାମାୟଣର ପରବର୍ତ୍ତୀ ଚିତ୍ର ପ୍ରଦାନ କରାଯାଇଛି । ବିଲଙ୍କାର ସହସ୍ରଶିରା ରାବଣର ଉତ୍ପାତ ଅସହ୍ୟ ହୋଇପଡ଼ିଅଛି । ବିଶେଷତଃ, ଦେବତାମାନଙ୍କର ନିର୍ଯାତନାର ସୀମା ନାହିଁ –

"ବ୍ରହ୍ମା ବୋଇଲେ ମୋହର ନାହିଁ ତ ଆୟତ୍ତ
ସହସ୍ରଶିରା ରାବଣ ଲକ୍ଷଶିରା ପୁତ୍ର ।
ମୁହିଁ ଯାଇ ବେଦ ପଢ଼େ ପ୍ରଭାତ କାଳରେ
ମଢ଼ୀଆଳ ଲୁଗା କାଚେ କୁବେର ତା' ପରେ ।"

ଏହିଭଳି ପରାକ୍ରମଶାଳୀ ସହସ୍ରଶିରା ରାବଣକୁ ନିଧନ କରିବାପାଇଁ ଦେବତାମାନେ ଚିନ୍ତିତ ହୋଇପଡ଼ିଛନ୍ତି । ରାମଙ୍କ ବ୍ୟତୀତ ଆଉ କେହି ତାଙ୍କୁ ବଧ କରିବାପାଇଁ ସକ୍ଷମ ନୁହନ୍ତି ବିଚାରି ସେମାନେ ରାମଙ୍କୁ କଟୁ ବାକ୍ୟ କୁହାଇଛନ୍ତି । ରାମଚନ୍ଦ୍ର ସୀତାଙ୍କ କଟୂକ୍ତି ସହ୍ୟ ନ କରିପାରି କୋଦଣ୍ଡଧାରଣପୂର୍ବକ ବିଲଙ୍କା ଯାତ୍ରା କରନ୍ତି । ସହସ୍ରଶିରା ରାବଣ ସହିତ ଘୋର ଯୁଦ୍ଧ ହୋଇଛି । ମାତ୍ର କୌଣସି ପ୍ରକାରେ ରାବଣ ମଲା ନାହିଁ । କେବଳ ସୀତା ଆସିଲେ ସହସ୍ରଶିରା ରାବଣ ବଧ ହେବ ବୋଲି ଦେବତାମାନେ କହନ୍ତେ ହନୁମାନ ଯାଇ ଲକ୍ଷ୍ମଣ ଓ ସୀତାଙ୍କୁ ସାଙ୍ଗରେ ଧରି ଆଣିଛନ୍ତି । ସୀତା ଅଳଙ୍କାର ବିମଣ୍ଡିତା ହୋଇ ସହସ୍ରଶିରା ରାବଣ ସମ୍ମୁଖରେ ରଥରେ ବିଜେ ହୋଇଛନ୍ତି । ତାଙ୍କର ସୌନ୍ଦର୍ଯ୍ୟ ଦର୍ଶନରେ ସହସ୍ରଶିରା ରାବଣ ବଳବୀର୍ଯ୍ୟ ହରାଇ ବସିଛି । ଏଇ ଅବସ୍ଥାରେ ରାମଚନ୍ଦ୍ର ତାଙ୍କୁ ଶର ମାରି ସଂହାର କରନ୍ତି ।

'ବିଲଙ୍କା ରାମାୟଣ' ସଂସ୍କୃତର 'ଅଦ୍ଭୁତ ରାମାୟଣ' ଉପରେ ଆଧାରିତ ହେଲେହେଁ ଏହାର କଥାବସ୍ତୁରେ ବହୁ ନୂତନତ୍ୱ ପରିଲକ୍ଷିତ ହୁଏ । ଏହାର ଭାଷା ସରଳ ଓ ବର୍ଣ୍ଣନା ସାବଲୀଳ ।

"ଦେବଙ୍କୁ ବୋଇଲେ ଗୋଟେ ଲୁହା ମଇ ଆଣ
ଲୁହା ମଇ ବୁଲାଇବା ବିଲଙ୍କା ଭୁବନ ।
× × ×
ସୀତା ଘେନି ମଇ ପରେ ବସିଲେ ଶ୍ରୀରାମ
ଲୁହା ମଇ ବୁଲାଇଲେ ବିଲଙ୍କା ଭୁବନ ।
ଖାଲ ଢିପ ଭୂମି ସବୁ ସମତୁଲ କଲେ
ଦୈତ୍ୟ ଗଣ୍ଡି ମୁଣ୍ଡ ସମୁଦ୍ରରେ ପକାଇଲେ ।"

ଏଥିରୁ କବିଙ୍କର ଅଦ୍ଭୁତ କଳ୍ପନା ବିଳାସର ପ୍ରମାଣ ମିଳେ । 'ବିଲଙ୍କା ରାମାୟଣ' 'ମହାଭାରତ' ଲେଖକ ସାରଳା ଦାସଙ୍କଦ୍ୱାରା ରଚିତ ନୁହେଁ ବୋଲି କେତେକ ଆଲୋଚକ ମତ ଦେଇଛନ୍ତି ।

ତା'ର କାରଣ 'ବିଲଙ୍କା ରାମାୟଣ'ର ଭାଷା ସାରଳା ଦାସଙ୍କ 'ମହାଭାରତ'ଠାରୁ ପୃଥକ ଓ ଏହା ପ୍ରାୟ ଦୁଇ ଶହ ବର୍ଷ ପୂର୍ବର ରଚନା ବୋଲି

ଡଃ ବେଣୀମାଧବ ପାଢ଼ୀ ମନେକରନ୍ତି । ଆଲୋଚକ ଡଃ କୃଷ୍ଣଚରଣ ସାହୁ ମଧ୍ଯ ଅନୁରୂପ ମତ ପୋଷଣ କରନ୍ତି । ତାଙ୍କ ମତରେ ସାରଳା ଦାସଙ୍କ ପ୍ରଥମ ନାମ ସିଦ୍ଧେଶ୍ୱର ପରିଡ଼ା । ସାରଳା ଦାସଙ୍କ ନାମ 'ବିଲଙ୍କା ରାମାୟଣ'ରେ ନ ଥିବା ଦୃଷ୍ଟିରୁ 'ବିଲଙ୍କା ରାମାୟଣ' ସାରଳା ଦାସଙ୍କ କୃତି ନୁହେଁ । ମାତ୍ର ନାରାୟଣ ପୁସ୍ତକାଳୟ ତରଫରୁ ପ୍ରକାଶିତ ବିଲଙ୍କା ରାମାୟଣରେ ସାରଳା ଦାସଙ୍କ ନାମ ଉଲ୍ଲେଖ ଅଛି ।

ଯଥା – ''ସାରଳା ଦାସ ଶରଣ ପଶେ ସେ ଚରଣେ
ମୂର୍ଖ ବୁଦ୍ଧି ପଣ୍ଡିତ ଶାସ୍ତ୍ର ହିଁ ନ ଜାଣେ ।''

ଆଲୋଚକ ପଠାଣି ପଟ୍ଟନାୟକଙ୍କ ମତରେ ''ଅନ୍ୟ ଭାବରେ ପ୍ରମାଣିତ ନ ହେଲା ପର୍ଯ୍ୟନ୍ତ 'ବିଲଙ୍କା ରାମାୟଣ'କୁ ଆଦିକବି ସାରଳା ଦାସଙ୍କ କୃତି ଭାବେ ଗ୍ରହଣ କରିବା ଅସମୀଚୀନ ହେବ ନାହିଁ ।''

## ମହାଭାରତ

ବିଶିଷ୍ଟ ସାହିତ୍ୟିକ ଅନ୍ନଦାଶଙ୍କର ରାୟ ଥରେ ତାଙ୍କ ଭାଷଣରେ କହିଥିଲେ ଯେ ଓଡ଼ିଶାର ତିନୋଟି ଜିନିଷ ବିଶ୍ୱ ଦରବାରରେ ସ୍ଥାନ ପାଇବାର ଯୋଗ୍ୟ । ସେଗୁଡ଼ିକ ହେଲା, ଓଡ଼ିଶାର ଜଗନ୍ନାଥ ଧର୍ମ, କୋଣାର୍କ ଓ ସାରଳା 'ମହାଭାରତ' । ତାହା ହେଉ ବା ନ ହେଉ, 'ମହାଭାରତ' ଯେ ସାରଳାଙ୍କ ପ୍ରଚଣ୍ଡ ପ୍ରତିଭାର ଅପୂର୍ବ ନିଦର୍ଶନ – ଏକଥା ସମସ୍ତେ ସ୍ୱୀକାର କରନ୍ତି ।

ଓଡ଼ିଆ 'ମହାଭାରତ' ସଂସ୍କୃତ ମହାଭାରତର ଆକ୍ଷରିକ ଅନୁବାଦ ନୁହେଁ । ସଂସ୍କୃତ ମହାଭାରତର ଶ୍ଳୋକ ସଂଖ୍ୟା ଏକ ଲକ୍ଷ ହୋଇଥିଲାବେଳେ ସାରଳା ଦାସଙ୍କ ପଦ ସଂଖ୍ୟା ଏକ ଲକ୍ଷ ଚାଳିଶ ହଜାର ବୋଲି ଜଣାଯାଏ । ଏହା ଓଡ଼ିଆ ମହାଭାରତର ମୌଳିକତା ତଥା ସ୍ୱକୀୟତା ପ୍ରମାଣ କରେ ।

କବି ପଞ୍ଚଦଶ ଶତାବ୍ଦୀରେ ଜନ୍ମ ଗ୍ରହଣ କରିଥିଲେ । ସେ ପିତୃମାତୃହୀନ ଥିଲେ । ଭାଇ ଜଣେ ଘାଟିଆଳ ଥିଲେ । ଏପରିକି ଉଚ୍ଚଶିକ୍ଷା ପାଇବାରୁ ବଞ୍ଚିତ ହୋଇଥିଲେ । ତେଣୁ ତାଙ୍କ ପକ୍ଷେ ସଂସ୍କୃତ ପାଠ ସମ୍ଭବପର ନ ଥିଲା । ସୁତରାଂ ସଂସ୍କୃତ ଅନଭିଜ୍ଞ ଜଣେ ବ୍ୟକ୍ତି ପକ୍ଷେ ସଂସ୍କୃତ ଅନୁବାଦ କରିବା ସମ୍ଭବ ନୁହେଁ ।

ସଂସ୍କୃତ 'ମହାଭାରତ' ଭଳି ସାରଳା 'ମହାଭାରତ' ଅଷ୍ଟାଦଶ ପର୍ବରେ ବିଭକ୍ତ । ଏହି ପର୍ବଗୁଡ଼ିକ ହେଲା ଯଥାକ୍ରମେ –

୧. ଆଦିପର୍ବ, ୨. ମଧ୍ୟପର୍ବ, ୩. ସଭାପର୍ବ, ୪. ବନପର୍ବ, ୫. ବିରାଟପର୍ବ, ୬. ଉଦ୍‌ଯୋଗପର୍ବ, ୭. ଭୀଷ୍ମପର୍ବ, ୮. ଦ୍ରୋଣପର୍ବ, ୯. କର୍ଣ୍ଣପର୍ବ, ୧୦.

ଶଲ୍ୟପର୍ବ, ୧୧. ଗଦାପର୍ବ, ୧୨. କାଇଁଶିକା ବା ଐଶିକପର୍ବ, ୧୩. ନାରୀପର୍ବ, ୧୪. ଶାନ୍ତିପର୍ବ, ୧୫. ଆଶ୍ରମିକପର୍ବ, ୧୬. ଅଶ୍ୱମେଧପର୍ବ, ୧୭. ମୂଷଳୀପର୍ବ, ୧୮. ସ୍ୱର୍ଗାରୋହଣପର୍ବ ।

ପର୍ବସଂଖ୍ୟା ସମାନ ହେଲେ ମଧ ନାମକରଣ ଓ କ୍ରମରେ ବୈଷମ୍ୟ ପରିଲକ୍ଷିତ ହୁଏ । ସାରଳା ଦାସ ମୂଳ 'ମହାଭାରତ'ର ଆଦିପର୍ବ ଓ ବନପର୍ବ ବର୍ଣ୍ଣିତ କେତେକ ବିଷୟରେ ବହୁ ନୂତନ ବିଷୟ ମିଶାଇ ମଧ୍ୟପର୍ବ ସୃଷ୍ଟି କରିଛନ୍ତି । ସେହିପରି ମୂଳ 'ମହାଭାରତ'ରେ ଗଦାପର୍ବ ନାମରେ କୌଣସି ପର୍ବ ନାହିଁ । ମୂଳ 'ମହାଭାରତ'ର ସୌପ୍ତିକ ପର୍ବ ଅନ୍ତର୍ଗତ ଐଶିକ ଉପପର୍ବ ବିଷୟବସ୍ତୁକୁ ନେଇ କାଇଁଶିକାପର୍ବ ନାମରେ ଏକ ନୂତନ ପର୍ବ ସୃଷ୍ଟି କରିଛନ୍ତି । ମୂଳ 'ମହାଭାରତ'ର 'ଶାନ୍ତିପର୍ବ' ଏକ ବିଶାଳ ପର୍ବ । ୩୬୫ ଅଧ୍ୟାୟରେ ଏହା ବିଭକ୍ତ । କିନ୍ତୁ ସାରଳା ଦାସଙ୍କ ଶାନ୍ତିପର୍ବ ଆକାରରେ ଅତି କ୍ଷୁଦ୍ର । ଏଥିରେ ମାତ୍ର ଚାରି ଗୋଟି ଅଧ୍ୟାୟ ରହିଅଛି । ପାଣ୍ଡବମାନଙ୍କୁ ଭୀଷ୍ମଙ୍କର ରାଜନୀତି ବିଷୟରେ ଉପଦେଶ, ଭୀଷ୍ମ ଓ ଦୁର୍ଯ୍ୟୋଧନାଦିଙ୍କର ପିଣ୍ଡଦାନ, ଯୁଧିଷ୍ଠିରଙ୍କର ରାଜ୍ୟାଭିଷେକ, କୃଷ୍ଣଙ୍କର ମାୟାଦର୍ଶନ ଓ ଓଡ଼ିଶାର କୋଣାର୍କ ତୀର୍ଥର ମାହାତ୍ମ୍ୟ ଆଦି ବିଷୟ ବର୍ଣ୍ଣିତ ହୋଇଛି । ସେହିପରି ସଂସ୍କୃତ ମହାପ୍ରସ୍ଥାନିକପର୍ବର ସାରାଂଶ ସାରଳା 'ମହାଭାରତ'ର ସ୍ୱର୍ଗାରୋହଣରେ ଦିଆଯାଇଅଛି । ପର୍ବ ବିଭାଗକୁ ଛାଡ଼ିଦେଲେ ଉଭୟ ଗ୍ରନ୍ଥର ବିଷୟବସ୍ତୁ ମଧ ସମାନ ନୁହେଁ । ପ୍ରଥମରେ ସଂସ୍କୃତ 'ମହାଭାରତ'ର କେତେକ ଉପାଦେୟ ବିଷୟ ଅଛି, ଯାହାକି ସାରଳା 'ମହାଭାରତ'ରେ ଦେଖାଯାଏ ନାହିଁ । ସଂସ୍କୃତ 'ମହାଭାରତ'ରେ ଭୀଷ୍ମପର୍ବର ଅଷ୍ଟାଦଶ ଅଧ୍ୟାୟରେ ଭଗବଦ୍‌ଗୀତା ସାରଳା ଦାସଙ୍କ ମହାଭାରତରେ ସମ୍ପୂର୍ଣ୍ଣ ବାଦ୍ ପଡ଼ିଅଛି । ଶାନ୍ତିପର୍ବରେ ଭୀଷ୍ମଙ୍କର ରାଜକର୍ମ ଓ ମୋକ୍ଷଧର୍ମ ସମ୍ବନ୍ଧୀୟ ଉପଦେଶ ଅଛି । ସାରଳା ତାହା 'ମହାଭାରତ'ରେ ବାଦ୍ ଦେଇଛନ୍ତି । ଏହାଛଡ଼ା ମୂଳ 'ମହାଭାରତ'ରେ ବହୁ ଚରିତ୍ର, ଉପାଖ୍ୟାନ ଓ ଘଟଣାମାନ ସାରଳା 'ମହାଭାରତ'ରେ ଦେଖିବାକୁ ମିଳେ ନାହିଁ ।

ସେହିପରି ସାରଳା ଦାସ ନିଜ ଗ୍ରନ୍ଥରେ ବହୁ ନୂଆ ଚରିତ୍ର, ଉପାଖ୍ୟାନ ଓ ବିଷୟବସ୍ତୁର ଅବତାରଣା କରିଛନ୍ତି । ବହୁ ଉପାଖ୍ୟାନ, ଯଥା – ସୁରେଖା ହରଣ, ସଚଳା ହରଣ, ଚନ୍ଦ୍ରାବତୀ ହରଣ, ଉଷା ହରଣ ପ୍ରଭୃତି ସଂସ୍କୃତ 'ମହାଭାରତ'ରେ ନାହିଁ । ସାରଳା 'ମହାଭାରତ'ରେ ସତ୍ୟ ଉପାଖ୍ୟାନ, ଖଲ୍ୟକାର ଉପାଖ୍ୟାନ, ବେଲାଳସେନ ଚରିତ, ଭାଉଦା ବୃତ୍ତାନ୍ତ, ଯୁଧିଷ୍ଠିରଙ୍କ ଯାଜପୁର ଗ୍ରାମର ହରିସାହୁଙ୍କ କନ୍ୟା ସୁହାଣୀ ସହ ବିବାହ ପ୍ରଭୃତି ସଂସ୍କୃତ

'ମହାଭାରତ'ରେ ନାହିଁ । ଏହାଛଡ଼ା ବାବନାଭୂତ କଥା, କାଳାଞ୍ଚ ରାକ୍ଷସୀ ଉପାଖ୍ୟାନ, ଅର୍କଦୈତ୍ୟ ବଧ, ଜାରାଶବର ଉପାଖ୍ୟାନ, ଦୁର୍ଯ୍ୟୋଧନଙ୍କ ରକ୍ତ ନଦୀ ସନ୍ତରଣ ପ୍ରଭୃତି ମୂଳ 'ମହାଭାରତ'ରେ ପରିଦୃଷ୍ଟ ହୁଏ ନାହିଁ । ତୃତୀୟରେ ସାରଳା ଦାସ ସଂସ୍କୃତ ଭାଷା ଜାଣି ନ ଥିଲେ । ବ୍ରାହ୍ମଣ ପଣ୍ଡିତମାନଙ୍କର ସଙ୍ଗଲାଭରୁ ବଞ୍ଚିତ ହୋଇଥିଲେ । କିନ୍ତୁ ଠାକୁରାଣୀଙ୍କ କୃପା ଲାଭ କରି 'ମହାଭାରତ' ଭଳି ବିରାଟ ଗ୍ରନ୍ଥ ରଚନା କରିପାରିଥିଲେ । ତେଣୁ ସଂସ୍କୃତ 'ମହାଭାରତ' ଭଳି ଏକ କ୍ଳିଷ୍ଟ ଗ୍ରନ୍ଥକୁ ଅନୁବାଦ କରିବାକୁ ସେ ଚେଷ୍ଟା କରି ନାହାନ୍ତି । ସେ 'ମହାଭାରତ'ର ଆଦିପର୍ବରେ ଏହା ସ୍ୱୀକାର କରିଛନ୍ତି –

''ଅସାଧ ସାଗର ଏହି ଶ୍ରୀ ମହାଭାରତ
ସବୁ ସଂକ୍ଷେପେ କହିଲେ ହେବ ଅପ୍ରମିତ ।
ଏତେ ବିଚାରି ଠିକେ ଠିକେ ଯେ କହିବି
ମୋ ହୃଦେ ମାଳା ପରମ ମାହେଶ୍ୱରୀ ।''

ସେ ନିଜ ଗ୍ରନ୍ଥରେ ମୂଳ 'ମହାଭାରତ'ରୁ ଉପାଦାନ ଗ୍ରହଣ କରିଥିବା ମଧ କୌଣସିଠାରେ ଉଲ୍ଲେଖ କରି ନାହାନ୍ତି । ତେଣୁ ତାଙ୍କ ରଚିତ ଗ୍ରନ୍ଥ ସଂସ୍କୃତ 'ମହାଭାରତ'ର ଅନୁବାଦ ନୁହେଁ ।

## ପାଣ୍ଡିତ୍ୟର ନିଦର୍ଶନ

ସାରଳା ଦାସ ସଂସ୍କୃତ ଭାଷାରେ ଅନଭିଜ୍ଞ ଥିଲେ । ମାତ୍ର ସେ ଯେ ଅସାଧାରଣ ପଣ୍ଡିତ ଥିଲେ, ଏହା 'ମହାଭାରତ' ପାଠ କଲେ ସହଜରେ ପ୍ରମାଣିତ ହୁଏ । ଡଃ ମହତାବଙ୍କ ମତରେ ସାରଳା ଦାସଙ୍କ ଯୋଗସାଧନା ଓ ଐକାନ୍ତିକ ଭକ୍ତି ଚରମ ଉତ୍କର୍ଷ ଲାଭ କରିଥିଲା । ତେଣୁ ଜ୍ଞାନ ଆହରଣ ଓ ପ୍ରକାଶ କରିବାର ଶକ୍ତି ତାଙ୍କଠାରେ ଅସାଧାରଣଭାବେ ଜାଗ୍ରତ ହୋଇଥିଲା । ସାରଳା ଦାସ ଯେ ଅସାଧାରଣ ପଣ୍ଡିତ ଥିଲେ, ଏକଥା ଲଣ୍ଡନ ବିଶ୍ୱବିଦ୍ୟାଳୟର ପ୍ରାଚ୍ୟ ବିଦ୍ୟା ଅଧ୍ୟାପକ ଡଃ ଜନ୍ ବୋଲ୍ଟନ୍ ସ୍ୱୀକାର କରିଛନ୍ତି । ସେ ଲେଖିଛନ୍ତି – ''ତାଙ୍କ ମହାଭାରତ ଦେଖିଲେ ଜଣାପଡୁଛି ଯେ ସାରଳା ଦାସଙ୍କ ବିରାଟ ପାଣ୍ଡିତ୍ୟ ଥିଲା × × × ସାରଳା ଦାସ ସଂସ୍କୃତ ଭାଷା ବୁଝୁଥାନ୍ତୁ ବା ନ ବୁଝୁଥାନ୍ତୁ ସେଥିରେ କିଛି ଯାଏ ଆସେନି । ପ୍ରଧାନ କଥା ହେଉଛି, ଏହି ସାହିତ୍ୟପାଇଁ ତାଙ୍କର ପ୍ରଗାଢ଼ ଆଗ୍ରହ ଥିଲା ଓ ଏହି ମହାକାବ୍ୟର ଘଟଣାଗୁଡ଼ିକୁ ମନେରଖିବାପାଇଁ ତାଙ୍କର ଆଶ୍ଚର୍ଯ୍ୟଭାବେ ସ୍ମରଣଶକ୍ତି ଥିଲା । ଇଚ୍ଛା ଥିଲେ ସେ ମହାଭାରତର ଅବିକଳ ଅନୁବାଦ କରିପାରିଥାନ୍ତେ × × × ସଂସ୍କୃତ ମହାଭାରତକୁ ଅନୁବାଦ ନ କରି ରୂପାନ୍ତର କରିଛନ୍ତି ମାତ୍ର ।''

## ସାରଳା ମହାଭାରତର ଉପାଦାନ

ସେସମୟରେ ଲୋକମାନେ ସଂସ୍କୃତରେ ଅନଭିଜ୍ଞ ଥିଲେ । ସେମାନଙ୍କୁ ପୁରାଣ ବିଷୟରେ ଧାରଣାଦେବାକୁ ସାରଳା ଦାସ ମନ ବଳାଇଲେ । 'ମହାଭାରତ' ମାଧ୍ୟମରେ ସେ ଏହି କାର୍ଯ୍ୟ ସମ୍ପାଦନପାଇଁ ବ୍ରତୀ ହୋଇଥିବାର ଜଣାଯାଏ । ସେ କେଉଁ ପୁରାଣରୁ ତାଙ୍କ କାବ୍ୟର ଉପାଦାନ ଗ୍ରହଣ କରିଛନ୍ତି ଓ କେଉଁ ବିଷୟ ମଧ୍ୟ ଗ୍ରହଣ କରିଛନ୍ତି ତାହା ତାଙ୍କ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି –

'' 'ବିଷ୍ଣୁ ପୁରାଣ ରାଜା', 'ମାର୍କେଣ୍ଡ ପୁରାଣ' ପାତ୍ର
'ଶିବ ପୁରାଣ' ମନ୍ତ୍ରୀ'ବାରଶ ପୁରାଣ' ଡଗର ସଂଜାତ ।
ଏ ଚାରି ପୁରାଣକୁ ଅଷ୍ଟାଦଶ ପୁରାଣ ବୋଲି
ୟେତେକ ବିଖ୍ୟାତ କରିବାକୁ ମୁଁ ଯେ ଆଜ୍ଞା ପାଇଲି ।'' (ଦ୍ରୋଣପର୍ବ)

ସୁତରାଂ ଦେବୀ ଆଜ୍ଞାରେ ସାରଳା ଦାସ ଏହି ଚାରି ପୁରାଣକୁ ବିଖ୍ୟାତ କରିବାକୁ ଚେଷ୍ଟା କରିଛନ୍ତି । ସେ ବିଷ୍ଣୁପୁରାଣରୁ ବହୁ ବିଷୟ ଗ୍ରହଣ କରିଥିବାର ଜଣାଯାଏ । କୃଷ୍ଣ ବଳରାମଙ୍କ ଜନ୍ମବୃତ୍ତାନ୍ତ, ଅକ୍ରୂରଙ୍କ ଗୋକୁଳଯାତ୍ରା, ଅକ୍ରୂରର ମୋହ, ପାରିଜାତ ହରଣ, ଚନ୍ଦ୍ରାବତୀ ହରଣ, ଉଷା ହରଣ, ବଳରାମଙ୍କ ଦେହତ୍ୟାଗ ପ୍ରଭୃତି ବିଷୟର କେତେକ ପରିବର୍ତ୍ତନ କରି ନିଜ ଗ୍ରନ୍ଥରେ ସ୍ଥାନ ଦେଇଛନ୍ତି । ସେ 'ରାମାୟଣ' ବର୍ଣ୍ଣିତ ବହୁ ଉପାଖ୍ୟାନ ଉଦ୍ଧାର କରିଛନ୍ତି । ଏହି ଉପାଖ୍ୟାନଗୁଡ଼ିକ ମଧ୍ୟରେ ସଗର ଚରିତ, ଅହଲ୍ୟା ଶାପ ବୃତ୍ତାନ୍ତ, ରାମଜନ୍ମ, ରାମ ବନବାସ, ସୀତା ହରଣ, ହରିଶ୍ଚନ୍ଦ୍ର ଉପାଖ୍ୟାନ, ଆତାପି ବାତାପି ଉପାଖ୍ୟାନ, ଋଷ୍ୟଶୃଙ୍ଗ ଉପାଖ୍ୟାନ ପ୍ରଭୃତି ପ୍ରଧାନ । ସେ 'ଶୈବ' ଓ 'ଶାକ୍ତ' ପୁରାଣରୁ ମଧ୍ୟ ବହୁ ଆଖ୍ୟାୟିକା ଗ୍ରହଣ କରିଛନ୍ତି । 'ଶ୍ରୀମଦ୍‌ଭାଗବତ' ରଚନା ଅନୁସରଣରେ ପ୍ରହ୍ଲାଦ ବଧ, ବଳିବାମନ ଉପାଖ୍ୟାନ, ପରୀକ୍ଷିତ ଜନ୍ମ, ଯଦୁବଂଶ ଧ୍ୱଂସ ପ୍ରଭୃତି ବିଷୟ ତାଙ୍କ ଗ୍ରନ୍ଥରେ ସ୍ଥାନ ପାଇଛି । ସାରଳା ଦାସ ମଧ୍ୟ ତାଙ୍କ ଗ୍ରନ୍ଥରେ ଭୁବନେଶ୍ୱରର ଲିଙ୍ଗରାଜ ମନ୍ଦିର, ନୀଳାଚଳର ପୁରୁଷୋତ୍ତମ କ୍ଷେତ୍ର ଓ କୋଣାର୍କର ଅର୍କ କ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ସେ 'ବ୍ରହ୍ମ ପୁରାଣ', 'ସ୍କନ୍ଦ ପୁରାଣ', 'ଏକାମ୍ର ପୁରାଣ' ଓ 'ଶାମ୍ବ ପୁରାଣ' ପ୍ରଭୃତି ପୁରାଣର ଅନୁସରଣରେ ଏହା ଲେଖିଥିବା ସମ୍ଭବ । ସୁତରାଂ ସାରଳା ଦାସଙ୍କ ମହାଭାରତକୁ ସଂସ୍କୃତ ମହାଭାରତର କେବଳ ଅନୁବାଦ ନ କହି ଏହାକୁ ପୁରାଣର ସାରସଂଗ୍ରହ ବୋଲି କହିବା ଅଧିକ ଯୁକ୍ତିଯୁକ୍ତ ହେବ ।

## ସୈନିକ ଜୀବନ

ସାରଳା ଦାସ ତାଙ୍କ ଗ୍ରନ୍ଥରେ ଦାକ୍ଷିଣାତ୍ୟର ବିଜିତ ରାଜ୍ୟ, ଜନପଦ, ଦୁର୍ଗ, ପର୍ବତ, ନଦ, ନଦୀ ପ୍ରଭୃତିର ଟିକିନିଖି ବିବରଣୀ ଦେଇଛନ୍ତି । ଏହା ଛଡ଼ା ସେ କାଳର ପ୍ରଚଳିତ ରଣକୌଶଳ, ବ୍ୟୂହ ରଚନା ଓ ଅସ୍ତ୍ରସମୂହର ବିସ୍ତୃତ ବର୍ଣ୍ଣନା କରିଛନ୍ତି । ଏଥିରୁ ସାରଳା ଦାସ କପିଳେନ୍ଦ୍ରଦେବଙ୍କ ଦାକ୍ଷିଣାତ୍ୟ ଅଭିଯାନ ବେଳେ ଜଣେ ସୈନିକ ଥିବାର ଡଃ ମାନସିଂହ ଅନୁମାନ କରିଛନ୍ତି । ଡଃ ମାନସିଂହ ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସରେ ଲେଖିଛନ୍ତି –

''ସାରଳାଙ୍କ ମହାଭାରତରେ ଯୁଦ୍ଧାଭିଯାନ, ଦ୍ୱନ୍ଦ୍ୱ ଯୁଦ୍ଧ, ସାମରିକ କ୍ରୀଡ଼ା ଇତ୍ୟାଦି ଯେପରି ଜୀବନ୍ତ ଭାବରେ ବର୍ଣ୍ଣିତ ସେଥିରୁ ମନେହେଉଛି ଯେ ଏଗୁଡ଼ିକ କବିଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଥିଲା । ସମ୍ଭବତଃ, ସମ୍ରାଟ୍ କପିଳେନ୍ଦ୍ରଦେବଙ୍କ ଐତିହାସିକ ଦକ୍ଷିଣାଭିଯାନଗୁଡ଼ିକରେ ସେ ନିଜେ ସୈନିକ ଭାବେ ଯୋଗ ଦେଇଥିଲେ ।''

ସାରଳା ଦାସ ଏକ ପଲ୍ଲୀଗ୍ରାମରେ କୃଷକ ପରିବାରରେ ବଢ଼ିଥିଲେ ମଧ ସବୁ ଶ୍ରେଣୀର ଲୋକଙ୍କ ସମ୍ପର୍କରେ ଆସିଥିଲେ । ସେମାନଙ୍କର ଚରିତ୍ର ଓ ଘଟଣା ସମ୍ପର୍କରେ ସଚେତନ ଥିଲେ । ସୁତରାଂ ଯୁଦ୍ଧ ଅଭିଯାନରେ ନ ଯାଇ ମଧ ମହାଭାରତର ଯୁଦ୍ଧ ବର୍ଣ୍ଣନା କରିପାରିବା କିଛି ବିଚିତ୍ର ନୁହେଁ ।

ସାରଳା ଦାସ ଯୁଦ୍ଧରେ ଅଂଶଗ୍ରହଣ କରିଥିବା ସମ୍ଭାବନା ସପକ୍ଷରେ କୌଣସି ବଳିଷ୍ଠ ଯୁକ୍ତି ବା ପ୍ରମାଣ ନାହିଁ ବୋଲି ଗବେଷକ ସର୍ବେଶ୍ୱର ଦାସ ମତ ଦେଇଛନ୍ତି ।

## ଚରିତ୍ର ଚିତ୍ରଣ

ଚରିତ୍ର ଚିତ୍ରଣରେ ସାରଳା ଦାସଙ୍କ କୃତିତ୍ୱ ଅତୁଳନୀୟ । ତାହାଙ୍କ ଚରିତ୍ରଗୁଡ଼ିକ ସଂସ୍କୃତ 'ମହାଭାରତ' ଚରିତ୍ରର ଅନ୍ଧ ଅନୁକରଣ ନୁହେଁ । ପ୍ରତ୍ୟେକ ଚରିତ୍ରର ନିଜ ନିଜର ବୈଶିଷ୍ଟ୍ୟ ଓ ସ୍ୱାତନ୍ତ୍ର୍ୟ ରହିଛି । ସାରଳା 'ମହାଭାରତ'ର ଚରିତ୍ରଗୁଡ଼ିକ ଉତ୍କଳୀୟ ଜନମାନସକୁ ଯେପରି ଗଭୀର ଭାବରେ ପ୍ରଭାବିତ କରିଛି, ଅନ୍ୟ କୌଣସି କାବ୍ୟ ପକ୍ଷରେ ତାହା ସମ୍ଭବ ହୋଇ ନାହିଁ ।

ଯୁଧିଷ୍ଠିରଙ୍କୁ ସାରଳା ଦାସ ସତ୍ୟସନ୍ଧ, ଧର୍ମରାଜ, ଧୀର, ବିବେକୀ ପରିବାରର ଆଦର୍ଶ ନାୟକ ଭାବେ ଚିତ୍ରଣ କରିଛନ୍ତି । କି ଶତ୍ରୁ ମିତ୍ର ଜଗତର ପ୍ରତ୍ୟେକ ବ୍ୟକ୍ତିପାଇଁ ତାଙ୍କ ଅନ୍ତରରେ ଭରିରହିଛି ଦୟା, କ୍ଷମା ଓ କରୁଣା । ସେ ମଧ ଦୁର୍ବଳ ନୁହନ୍ତି । ତାଙ୍କର ଧୈର୍ଯ୍ୟ ଓ ନୀତିମତ୍ତା ଯୋଗୁଁ ପାଣ୍ଡବମାନେ

ଯୁଦ୍ଧରେ ଜୟଯୁକ୍ତ ହୋଇଛନ୍ତି । ସେ ହିଁ କେବଳ ସ୍ୱଦେହରେ ସ୍ୱର୍ଗାରୋହଣ କରିବାକୁ ସମର୍ଥ ହୋଇଛନ୍ତି ।

ସାରଳାଙ୍କ ଆଉ ଅନ୍ୟ ସୁନ୍ଦର କଳା ସୃଷ୍ଟି ହେଉଛି ଭୀମ ଚରିତ୍ର । ସେ ବପୁବନ୍ତ, ସରଳ, ନିଷ୍କପଟ କିନ୍ତୁ ଯୁଦ୍ଧରେ ଦୁର୍ଦ୍ଧର୍ଷ, ଦୁର୍ଦ୍ଦମନୀୟ, ପ୍ରଚଣ୍ଡ କ୍ଷତ୍ରିୟ ତେଜର ଏକ ଜ୍ୱଳନ୍ତ ପ୍ରତିମୂର୍ତ୍ତି । ଶତ୍ରୁର ମୂଳୋତ୍ପାଟନରେ ହିଁ ତାଙ୍କର ଆନନ୍ଦ । ଦୁଃଶାସନ ଯେଉଁ ଭୁଜରେ ଦ୍ରୌପଦୀଙ୍କର କେଶ ଆକର୍ଷଣ କରିଥିଲା, ଭୀମସେନ ସେହି ଦକ୍ଷିଣଭୁଜ ଉତ୍ପାଟନ କରିଛନ୍ତି । ଦୁର୍ଯ୍ୟୋଧନର ଉରୁଭଙ୍ଗ କରି ଦ୍ରୌପଦୀଙ୍କୁ ଦେଇଥିବା ଅପମାନର ପ୍ରତିଶୋଧ ନେଇଛନ୍ତି ।

ଅର୍ଜ୍ଜୁନ ଚରିତ୍ର ମଧ୍ୟ ଏକ ସାର୍ଥକ ସୃଷ୍ଟି । ଅର୍ଜ୍ଜୁନ ଅଦ୍ୱିତୀୟ ବୀର । ସ୍ୱର୍ଗ, ମର୍ତ୍ତ୍ୟ ପାତାଳରେ ତାଙ୍କ ପରି ବୀର କେହି ନାହିଁ । କିନ୍ତୁ ଯୁଦ୍ଧ ତାଙ୍କପାଇଁ ଏକ ବିଳାସ ନୁହେଁ; ଏହା ଏକ କର୍ତ୍ତବ୍ୟ ମାତ୍ର । ଅର୍ଜ୍ଜୁନ କେବଳ ବୀର ନୁହନ୍ତି; ସେ ଜ୍ଞାନୀ, ଧୀର, ବିଚାରବନ୍ତ ଓ ଜିତେନ୍ଦ୍ରିୟ । ଅନିନ୍ଦ୍ୟ ସୁନ୍ଦରୀ ହାରାବତୀ ତାଙ୍କର ପ୍ରଣୟପ୍ରାର୍ଥିନୀ ହେଲେ ମଧ୍ୟ ନୀତିବାଦୀ ଅର୍ଜ୍ଜୁନ ତାହା ପ୍ରତ୍ୟାଖ୍ୟାନ କରିଛନ୍ତି । ସେ ଶ୍ରୀକୃଷ୍ଣଙ୍କ ଅନ୍ତରଙ୍ଗ ସଖା । ତାଙ୍କର ଅବମାନନା ସହ୍ୟ କରିପାରି ନାହାନ୍ତି । ସେ ହିଁ ସାରଳାଙ୍କର ଆଦର୍ଶ ବୀରପୁରୁଷ ।

'ମହାଭାରତ' ମହାକାବ୍ୟର ଦୁର୍ଯ୍ୟୋଧନ ପ୍ରତିନାୟକ । ସେ ଘୋର ଆତ୍ମଅଭିମାନୀ । ତାଙ୍କର ସଂକୀର୍ଣ୍ଣ ଆଭିଜାତ୍ୟ ବୋଧ ରହିଛି । ଏହାହିଁ ତାଙ୍କୁ ଘେନି ଯାଇଛି ଅନ୍ୟାୟ ବାଟକୁ । ତାଙ୍କ ଅଧଃପତନରେ ସହାୟକ ହୋଇଛନ୍ତି କୁଳକ୍ଷୟୀ ମନ୍ତ୍ରୀ, ଚରମ ବିଶ୍ୱାସଘାତକ ଶକୁନି । ସେ ମଧ୍ୟ ଉଦାର, ଦାନୀ । ସମସ୍ତ ଚାରିତ୍ରିକ ମହନୀୟତା ସତ୍ତ୍ୱେ ସେ ଅବସ୍ଥା ଓ ପରିବେଷ୍ଟନୀର ଶିକାର ହୋଇଛନ୍ତି । ପିତା, ମାତା, ପତ୍ନୀ, ଜ୍ଞାତିକୁଟୁମ୍ବ ସମସ୍ତଙ୍କର ଶୁଭ ପରାମର୍ଶକୁ ଏଡ଼ି ଦେଇଛନ୍ତି । ତାଙ୍କର ଏକମାତ୍ର ଜିଦ୍ – ସେ ମରିଯିବେ ପଛେ କାହା ନିକଟରେ ମୁଣ୍ଡ ନୁଆଁଇବେ ନାହିଁ । ସେ ଯୁଦ୍ଧରେ ପରାଜିତ ହୋଇ ଅତି ଶୋଚନୀୟ ଭାବେ ପ୍ରାଣ ହରାଇଛନ୍ତି । ମାତ୍ର ମାନଗୋବିନ୍ଦଙ୍କ ଉନ୍ନତ ମସ୍ତକ ଅବନତ ହୋଇ ନାହିଁ । ଏହି ଚରିତ୍ରଟି ସାରଳାଙ୍କ ଲେଖନୀର ସର୍ବଶ୍ରେଷ୍ଠ ଚରିତ୍ର ବୋଲି ଧରାଯାଏ ।

କର୍ଣ୍ଣ 'ସାରଳା ମହାଭାରତ'ର ଅତି ଉଜ୍ଜ୍ୱଳ ଚରିତ୍ର । ସେ ମହାବୀର । ଶୌର୍ଯ୍ୟ, ବୀର୍ଯ୍ୟ, ପରାକ୍ରମରେ ଅର୍ଜ୍ଜୁନ କେବଳ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ । କର୍ଣ୍ଣ ମଧ୍ୟ ମହାଦାନୀ । ଏପରିକି ଛଦ୍ମବେଶରେ ଥିବା ଇନ୍ଦ୍ରଙ୍କୁ ପାଣ୍ଡବମାନଙ୍କ ନିମନ୍ତେ ନିଜର ଜୀବନର ରକ୍ଷାକବଚ, ବଜ୍ରଚଉଁରୀ, ଅମୃତକୁଣ୍ଡଳ ଦେଇ ଦାନପଣର

ଅପୂର୍ବ ପରାକାଷ୍ଠା ଦେଖାଇଛନ୍ତି । ଶେଷରେ କୂଟନୀତିଜ୍ଞ ଶ୍ରୀକୃଷ୍ଣଙ୍କ ପରାମର୍ଶକ୍ରମେ ଅର୍ଜୁନ ଯୁଦ୍ଧଶାସ୍ତ୍ରର ସମସ୍ତ ନୀତି ଲଂଘନ କରି ଅସହାୟ ଅବସ୍ଥାରେ ତାଙ୍କୁ ମାରିଛନ୍ତି । ତାଙ୍କର ଦାନଶୀଳତା, ବନ୍ଧୁବତ୍ସଳତା ତାଙ୍କୁ ଅମର ଚରିତ୍ରରେ ପରିଣତ କରିଛି । ସାରଳାଙ୍କ ଶକୁନିର ବିଶ୍ୱାସଘାତକତାର ପଟାନ୍ତର ନାହିଁ । ସେ ଷଡ଼୍‌ଯନ୍ତ୍ର କରି ଦୁର୍ଯ୍ୟୋଧନ ବଂଶକୁ ମାରିଛନ୍ତି । ଦୁର୍ଯ୍ୟୋଧନ ତା'ର ବିନ୍ଦୁବିସର୍ଗ ଜାଣିପାରି ନାହାନ୍ତି । ଶକୁନି ସାରଳାଙ୍କ ପ୍ରତିଭାର ଏକ ପ୍ରଚଣ୍ଡ ସ୍ୱୀକାର ।

ସେହିପରି ଶ୍ରୀକୃଷ୍ଣ । ସାରଳା ଦାସ ଶ୍ରୀକୃଷ୍ଣଙ୍କୁ ସ୍ୱୟଂ ଭଗବାନ୍ ବୋଲି ସ୍ୱୀକାର କରିଥିଲେହେଁ ତାଙ୍କୁ ପରମ କୂଟନୀତିଜ୍ଞ, କୁଚକ୍ରୀଭାବେ ବର୍ଣ୍ଣନା କରିଛନ୍ତି । ଲକ୍ଷ୍ୟସାଧନପାଇଁ ଯେକୌଣସି ହୀନ ଉପାୟ ଅବଲମ୍ବନ କରିବାକୁ ସେ ପଶ୍ଚାତ୍‌ପଦ ହୋଇ ନାହାନ୍ତି । ପାଣ୍ଡବମାନଙ୍କୁ ଯୁଦ୍ଧରେ ଜିଣାଇବାପାଇଁ ସେ ଯେଉଁ ହୀନଚକ୍ରାନ୍ତ ଓ କୂଟଷଡ଼୍‌ଯନ୍ତ୍ରର ଆଶ୍ରୟ ନେଇଛନ୍ତି ତାହାର ପଟାନ୍ତର ନାହିଁ । କେତେକ ଆଲୋଚକଙ୍କ ମତରେ ଶୂଦ୍ର ସାରଳା ଦାସ ବ୍ରାହ୍ମଣଧର୍ମ ବିରୋଧରେ ବିଦ୍ରୋହ ଘୋଷଣା କରିଛନ୍ତି । ମାତ୍ର ଏହା ସତ୍ୟ ନୁହେଁ । ଧର୍ମର ସଂସ୍ଥାପନ ଓ ଅଧର୍ମର ବିନାଶପାଇଁ ଶ୍ରୀକୃଷ୍ଣ ଧରାଧାମରେ ଅବତୀର୍ଣ୍ଣ ହୋଇଥିବାର ପ୍ରମାଣ କରିଛନ୍ତି ।

ସାରଳା ଦାସଙ୍କ ନାରୀ ଚରିତ୍ର ଚିତ୍ରଣ ପୁରୁଷ ଚରିତ୍ର ଚିତ୍ରଣ ଭଳି ଏତେ ବଳିଷ୍ଠ ନୁହେଁ । ଦ୍ରୌପଦୀଙ୍କର ପଞ୍ଚପତି ହେଲେ ବି ସେ ମହାସତୀ । ପାଞ୍ଚ ପତିଙ୍କ ପଞ୍ଚ ଆତ୍ମାରେ ବିଭେଦ ନ ରଖି ଏକ ଆତ୍ମାତୁଲ୍ୟ ପରିଚର୍ଯ୍ୟା କରିଛନ୍ତି । ସାରଳା ଦାସ ତାଙ୍କୁ ସାଧାରଣ ନାରୀ ଭାବେ ଚିତ୍ରଣ କରିଛନ୍ତି । କୁରାଳଶାଳରେ ଛଦ୍ମବେଶରେ ଆଶ୍ରୟ ନେଲାବେଳେ ପାଉଁଶ ଉପରେ ଶୋଇବାକୁ ପଡ଼ିଥିବାରୁ ଦ୍ରୌପଦୀ ସାଧାରଣ ନାରୀ ତୁଲ୍ୟ ଦୁଃଖରେ ଭାଙ୍ଗିପଡ଼ି ବିଳାପ କରିଛନ୍ତି । ଅଦୃଷ୍ଟକୁ ଏଥିପାଇଁ ନିନ୍ଦା କରିଛନ୍ତି । ନିଜେ ବ୍ରାହ୍ମଣକନ୍ୟା ବୋଲି ହିଡ଼ିମ୍ବିକା ଆଗେ ଗର୍ବ କରିଛନ୍ତି । ମାନବସୁଲଭ ଦୁର୍ବଳତା ଦ୍ରୌପଦୀ ଚରିତ୍ରକୁ କେତେକ ଗବେଷକଙ୍କ ମତରେ କମନୀୟ କରିଛି । ସାରଳା 'ମହାଭାରତ'ର ଗାନ୍ଧାରୀ ସଂସ୍କୃତ 'ମହାଭାରତ'ର ଗାନ୍ଧାରୀଠାରୁ ସମ୍ପୂର୍ଣ୍ଣ ଭିନ୍ନ । ସ୍ୱାମୀଙ୍କ ଦୁଃଖରେ ସମଭାଗିନୀ ହେବାପାଇଁ ଆଜୀବନ ଆଖିରେ ଅନ୍ଧପୁଟୁଳି ବାନ୍ଧିଛନ୍ତି । ଏହା ଗାନ୍ଧାରୀଙ୍କୁ ବିଶ୍ୱ ବନ୍ଦନୀୟା ଯେ କରିପାରିଛି, ଏଥିରେ ସନ୍ଦେହ ନାହିଁ । ଗାନ୍ଧାରୀ ମଧ୍ୟ ସାରଳାଙ୍କ ଅନ୍ୟ ଚରିତ୍ରମାନଙ୍କ ପରି ରକ୍ତମାଂସଧାରୀ ମଣିଷ । ମାତୃ ହୃଦୟର ଦୁର୍ବଳତାରୁ ସେ ମୁକ୍ତ ନୁହନ୍ତି । ଶତପୁତ୍ରଙ୍କ ନିଧନ ପରେ ସେ

ପ୍ରତିହିଂସାପରାୟଣା ହୋଇଉଠିଛନ୍ତି । ଅନ୍ଧପୁଟୁଳିମୁକ୍ତ ନୟନ ଅନଳରେ ଯୁଧିଷ୍ଠିରଙ୍କୁ ଦଗ୍ଧ କରିଦେବାପାଇଁ ଚାହିଁଛନ୍ତି । କୁରୁକ୍ଷେତ୍ର ରଣାଙ୍ଗନରେ ପୁତ୍ରମାନଙ୍କର ଶବ ଦେଖି ପାଗଳିନୀ ହୋଇପଡ଼ିଛନ୍ତି । ଶ୍ରୀକୃଷ୍ଣଙ୍କୁ ଏଥିପାଇଁ ଦାୟୀ କରିଛନ୍ତି ଓ ସମୂଳେ ତାଙ୍କ ବଂଶ ଧ୍ୱଂସ ହେବାକୁ ଅଭିଶାପ ଦେଇଛନ୍ତି ।

**ଭାଷା**

ଜଗଦ୍‌ଗୁରୁ ଶଙ୍କରାଚାର୍ଯ୍ୟଙ୍କ ପରେ ପରେ ଦେଶସାରା ସଂସ୍କୃତ ସାହିତ୍ୟର ପ୍ରାଧାନ୍ୟ ବୃଦ୍ଧି ପାଇଥିଲା । ସଂସ୍କୃତ ପ୍ରଚାର ଓ ଚର୍ଚ୍ଚା ଫଳରେ ଉତ୍ତର-ଭାରତରେ ପ୍ରତ୍ୟେକ ପ୍ରାଦେଶିକ ଭାଷାମାନଙ୍କରେ ସଂସ୍କୃତ ଶବ୍ଦାବଳୀ ଅଲକ୍ଷ୍ୟରେ ସ୍ଥାନ ପାଇ ପାରିଥିଲା । ସାରଳା ଦାସଙ୍କ ରଚନା ସମୟ ବେଳକୁ ଅନେକ ସଂସ୍କୃତ ଶବ୍ଦ ଓଡ଼ିଆ ଭାଷାରେ ସ୍ଥାନ ଦଖଲ କରିନେଇଥିଲା । ଭାଷାତତ୍ତ୍ୱବିତ୍ ପଣ୍ଡିତ ଗୋପୀନାଥ ନନ୍ଦଶର୍ମା ନିଜର ସମାଲୋଚନା ଗ୍ରନ୍ଥ 'ଶ୍ରୀ ଭାରତ ଦର୍ପଣ'ରେ ଲେଖିଛନ୍ତି –

''ସାରଳା ଦାସଙ୍କ ସମୟରେ ଓଡ଼ିଆ ଭାଷାର ଶାରୀରିକ ଅବସ୍ଥା ଅତି ଶୈଶବ ଭାବାପନ୍ନ ଥିଲା । ଭାଷା ରାଜ୍ୟରେ ସଂସ୍କୃତ ଓ ପ୍ରାକୃତ ଭାଷା ସଂପୂର୍ଣ୍ଣତଃ ଆଧିପତ୍ୟ ସ୍ଥାପନ କରିଥିଲା । କିନ୍ତୁ ସାରଳା ଦାସ ଓଡ଼ିଆଭାଷାକୁ ସଂସ୍କୃତ ଓ ପ୍ରାକୃତ ଭାଷାର କବଳରୁ ରକ୍ଷା କଲେ । ସେ ସାଧାରଣ ଗ୍ରାମୀଣ ମଣିଷ ବୁଝିପାରିଲା ଭଳି ତଥା ସେମାନଙ୍କ ହୃଦୟକୁ ସ୍ପର୍ଶ କଲା ଭଳି, ସେମାନଙ୍କ ନିତିଦିନିଆ ଜୀବନଯାତ୍ରାରେ କୁହାକୁହି ହେଉଥିବା ଭାଷାରେ ଗ୍ରନ୍ଥମାନ ରଚନା କରିଥିଲେ । ଆଗରୁ କୁହାଯାଇଛି ଯେ ସାରଳା ଦାସ ଯାହା ଲେଖୁଥିଲେ ତାହା ଦେବୀଙ୍କ ଆଗରେ ଗ୍ରାମବାସୀଙ୍କ ଉପସ୍ଥିତିରେ ପାଠ କରାଯାଉଥିଲା । ତେଣୁ ତାହା ସର୍ବସାଧାରଣ ବୁଝିପାରିଲା ଭଳି ଭାଷା ହେବା ସ୍ୱାଭାବିକ । ଏହା ଅତି ସରଳ, ବାସ୍ତବ ଓ ଜୀବନ୍ତ । ଏହାର ଅର୍ଥ ଗ୍ରହଣ କରିବାରେ ପାଠକ ବା ଶ୍ରୋତାର କୌଣସି ଅସୁବିଧା ହୁଏ ନାହିଁ । ଘଟଣାଗୁଡ଼ିକ ପାଠକ ବା ଶ୍ରୋତାର ଆଗରେ ଘଟି ଯାଉଥିବା ଭଳି ମନେହୁଏ ।

ସାରଳାଙ୍କ ରଚନା ଶୈଳୀ ଏତେ ଜୀବନ୍ତ ଯେ ତାଙ୍କ ଲେଖା ପ୍ରବାଦ ଓ ପ୍ରବଚନ ଆକାରରେ ଉତ୍କଳୀୟ ଜନମାନସରେ ଆସନ ପାତି ରହିଛି । କଥା କଥାକେ ଲୋକଙ୍କର ପାଟିରୁ ବାହାରିପଡ଼େ, 'ପ୍ରଥମ ଯୁଦ୍ଧରେ ଭୀମ ହାରେ', 'ଗଙ୍ଗା ବୋଇଲେ ଥିବି, ଗାଙ୍ଗୀ ବୋଇଲେ ଯିବି', 'ଧୃତରାଷ୍ଟ୍ରକୁ କନ୍ୟା ନାହିଁ କି ଗାନ୍ଧାରୀକୁ ବର ନାହିଁ', 'ଭୀମ ବଳ କୋଇନ୍ତାକୁ ଜଣା', 'କର୍ଣ୍ଣ ମଲେ ପାଞ୍ଚ

ଅର୍ଜୁନ ମଲେ ପାଞ୍ଚ', 'କୀଚକ ବାହୁବଳେ ବିରାଟ ରାଜା', 'ନର ମାୟା ନାରାୟଣଙ୍କୁ ଅଗୋଚର' ଇତ୍ୟାଦି । ଏହାର ପଛରେ ରହିଛି ଗୋଟିଏ ଗୋଟିଏ ସୁନ୍ଦର କାହାଣୀ – ଯାହାକି ବ୍ୟାସକୃତ 'ମହାଭାରତ'ରେ ନାହିଁ ।

ସାରଳା ଦାସଙ୍କ କାବ୍ୟ ଜାତି, ବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କପାଇଁ ଅଭିପ୍ରେତ ହୋଇଥିବାରୁ ଧର୍ମ, ଦର୍ଶନର କଠିନ ତତ୍ତ୍ୱକୁ ଯଥାସମ୍ଭବ ବାଦ୍ ଦିଆଯାଇଛି । ତଥାପି ଆବଶ୍ୟକସ୍ଥଳେ କଠିନ ଆଧ୍ୟାତ୍ମିକ ତତ୍ତ୍ୱ ସମୂହକୁ ଭାଙ୍ଗି ସର୍ବଜନବୋଧ୍ୟ ଓଡ଼ିଆ ଭାଷାରେ ସେ ଯେପରି ପ୍ରକାଶ କରିଛନ୍ତି, ତହିଁରୁ ତାଙ୍କର ଅସାମାନ୍ୟ ସୃଜନଶକ୍ତିର ପରିଚୟ ମିଳେ । ସେ ବ୍ରହ୍ମପୁରୁଷ ବିଷୟରେ ଲେଖିଛନ୍ତି –

"ବ୍ରହ୍ମ ସ୍ୱରୂପରେ ରୂପରେଖ ଧରି
ସ୍ଥାବର ଜଙ୍ଗମ କୀଟ ଆଦିକରି
କାଷ୍ଠ ପାଷାଣ ମୂର୍ତ୍ତି କାହିଁ
ଯୋଗ ବ୍ରହ୍ମ ନିରାକୃତ ସେହି
ନିଚଳ ସେ ଶୂନ୍ୟଦେହୀ ।" (ଭୀଷ୍ମପର୍ବ)

ସେହିପରି କର୍ମବାଦ ଉପରେ ସେ ଅତି ସରଳ ଭାବେ ପ୍ରକାଶ କରିଛନ୍ତି –

"ଆପେଣ ଯେତେ ପାପ କରଇ ଫଳଇ ପ୍ରତ୍ୟକ୍ଷ
କଲା କର୍ମହିଁ ସେ କର୍ମ ବୋଲନ୍ତି ଜଗତ ।" (ବିରାଟପର୍ବ)

ଅଧ୍ୟାପକ କାହ୍ନୁଚରଣ ମିଶ୍ର ସେଥିପାଇଁ କହିଛନ୍ତି – "ଭାଷା, ଭାବ ଓ ବର୍ଣ୍ଣନା ପ୍ରତ୍ୟେକ ଦୃଷ୍ଟିରୁ ବିଚାର କଲେ ଦେଖାଯାଏ ଯେ ଏପରି ଜୀବନ୍ତ ସାହିତ୍ୟ ସାରଳା ଦାସଙ୍କ ବ୍ୟତୀତ ଅନ୍ୟ କେହି ଆଜି ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ସୃଷ୍ଟି କରିପାରି ନାହାନ୍ତି । ଅଧ୍ୟାପକ ବଂଶୀଧର ମହାନ୍ତିଙ୍କ ମତରେ 'ଏହାହିଁ ପ୍ରକୃତ ଲୋକ ସାହିତ୍ୟ' ।

ଆଲୋଚକ ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ସାରଳା ଦାସଙ୍କ ଭାଷା ସମ୍ପର୍କରେ ଲେଖିଛନ୍ତି – "ସାରଳା ଦାସଙ୍କ କବିତାର ଭାଷା କୃଷକ କନ୍ୟା ଭଳି ସରଳ, ସ୍ୱାଭାବିକ ଓ ସାବଲୀଳ ଗତିରେ ନାଚି ନାଚି ଯାଇଛି । କୌଣସିଠାରେ କୃତ୍ରିମତାର ଗନ୍ଧ ନାହିଁ । × × ଏଥିରେ ଶବ୍ଦାଡ଼ମ୍ବର, ଛନ୍ଦବୈଚିତ୍ର୍ୟ ବା ଆଳଙ୍କାରିକତାର ସାହାଯ୍ୟ ନେବାକୁ ପଡ଼ି ନାହିଁ । ପାଟିର କଥାକୁ ଲେଖନୀରେ ଲେଖି ଯାଇଛନ୍ତି । ଏହାହିଁ ତାଙ୍କର ଅସାଧାରଣ ପ୍ରତିଭାର ବିଶେଷତ୍ୱ ।"

## ଛନ୍ଦ

ଭାଷା ଓ ଭାବ ବ୍ୟତୀତ ଛନ୍ଦ ମଧ୍ୟ ସାରଳା ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି । ପ୍ରାକୃତ ଭାଷାର ପ୍ରଚଳିତ ଦଣ୍ଡାବୃତ୍ତ ସାରଳା ସମୟକୁ ଦାଣ୍ଡି ବୃତ୍ତ ରୂପେ ଦେଖାଦେଇଛି । କେବଳ ସାରଳା ଦାସ କାହିଁକି, ତାଙ୍କର ପରବର୍ତ୍ତୀ ବଳରାମ ଦାସ ଓ ଚୈତନ୍ୟ ଦାସ ପ୍ରଭୃତି ନିଜ ନିଜର ରଚନାବଳୀ ଏହି ଛନ୍ଦରେ ରଚନା କରିଛନ୍ତି ।

ସାରଳାଙ୍କ ଓଡ଼ିଆ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିଲା । ଓଡ଼ିଆ ଭାଷାର ପ୍ରକୃତି ମଧ୍ୟ ଉତ୍ତମରୂପେ ଅଧ୍ୟୟନ କରିଥିଲେ । ସେଥିପାଇଁ ସେ ସଂସ୍କୃତ ଧାତୁ ଓ ଶବ୍ଦରେ ଓଡ଼ିଆ ପ୍ରତ୍ୟୟ ଯୋଗ କରି ଅସଂଖ୍ୟ ନୂତନ ପଦ ସୃଷ୍ଟି କରି ଓଡ଼ିଆ ଭାଷାର ସମୃଦ୍ଧି କରିଛନ୍ତି । ଗବେଷକଙ୍କ ମତରେ ''ତାଙ୍କର ଅକ୍ଲାନ୍ତ ପ୍ରେମ ଓ ସାଧନା ଫଳରେ ଓଡ଼ିଆ ଭାଷା ତା'ର ଶୈଶବ ଅତିକ୍ରମ କରି ଏକ ସମୃଦ୍ଧ ଓ ପରିପକ୍ୱ ଭାଷାରେ ପରିଣତ ହୋଇଥିଲା ।''

## ଧର୍ମମତ

ସାରଳା ଦାସ ନିଜକୁ ଶାରଳାଙ୍କ ପୁତ୍ର 'ଚଣ୍ଡୀପୁତ୍ର' ଉପାଧିରେ ଭୂଷିତ କରିଛନ୍ତି । ଶାରଳା ଦେବୀଙ୍କ କୃପାରୁ ଗ୍ରନ୍ଥ ରଚନା କରିଥିବା ସେ ବହୁବାର ଉଲ୍ଲେଖ କରିଛନ୍ତି । ତେଣୁ ସେ ପରମ ଶାକ୍ତ ଓ ତନ୍ତ୍ରସାଧକ ଥିବାର ଅନୁମାନ କରାଯାଏ । ଓଡ଼ିଶାର ବିଭିନ୍ନ ପ୍ରାନ୍ତରେ ଥିବା ଦେବୀଙ୍କ ନାମ ତାଙ୍କ ଗ୍ରନ୍ଥରେ ମିଳେ । ଝଙ୍କଡ଼ବାସିନୀ ଶାରଳାଙ୍କୁ କାକଟପୁରର ମଙ୍ଗଳା, କୋଣାର୍କର ରାମଚଣ୍ଡୀ, ପୁରୀର ବିମଳା, ବାଙ୍କିର ଚର୍ଚ୍ଚିକା, ସମ୍ବଲପୁରର ସମଲାଇ, ଯାଜପୁରର ବିରଜା ଓ ବାଣପୁରର ଭଗବତୀ ରୂପରେ କଳ୍ପନା କରିଛନ୍ତି । ଏହାଛଡ଼ା ସେ ଗଣେଶ, ମହାଦେବ, କାର୍ତ୍ତିକ, ରାମ, ଅଗ୍ନି ପ୍ରଭୃତି ଦେବତାମାନଙ୍କର ସ୍ତୁତି ଗାନ କରିଛନ୍ତି । ଉତ୍କଳର ଆରାଧ୍ୟଦେବତା ଜଗନ୍ନାଥଙ୍କ ବନ୍ଦନା ମଧ୍ୟ ତାଙ୍କ ଗ୍ରନ୍ଥରେ ମିଳେ –

''ଜୟତୁ ଜୟ ଜଗନ୍ନାଥ ଜୟ ବ୍ରଜ
ଜୟତୁ ଜଗନ୍ନାଥ ଦୁଃଖୀ ଜନଙ୍କ ସୋଦର ।''

ଏଥିରୁ ସ୍ପଷ୍ଟ ପ୍ରମାଣିତ ଯେ ସେ ଏକଦେଶଦର୍ଶୀ ନ ଥିଲେ । ରଚିତ ଗ୍ରନ୍ଥରୁ ତାଙ୍କର ଉଦାର ଧର୍ମନୀତିର ପରିଚୟ ମିଳେ ।

## ଓଡ଼ିଶାର ବିଶ୍ୱକୋଷ

ସାରଳା ଦାସଙ୍କ ମହାଭାରତକୁ ପୁରାଣ ନ କହି ମହାକାବ୍ୟ କହିବା ଅଧିକ ସମୀଚୀନ । ଗ୍ରୀକ୍ କବି ହୋମରଙ୍କ ପରି ସେ ଓଡ଼ିଆରେ ଇଲିଏଡ୍ ଓ ଓଡ଼େଶୀ

ରଚନା କରିଯାଇଅଛି । ଏଥିରେ ଐତିହାସିକତା, ଭୌଗୋଳିକତା, ସାମରିକ ଜ୍ଞାନ, ରାଜନୀତି, ଶିଳ୍ପକଳା, ନୌବାଣିଜ୍ୟ, ଧର୍ମଧାରା, ଶିକ୍ଷାପଦ୍ଧତି, କୃଷି, ସାମାଜିକ ରୀତିନୀତି ପ୍ରଭୃତି ମହାଭାରତର ଆଖ୍ୟାୟିକା ସହିତ ବିଚିତ୍ର ଭାବରେ ଜଡ଼ିତ ହୋଇ ରହିଅଛି । ଆଲୋଚକ ପାଣିଗ୍ରାହୀଙ୍କ ମତରେ ସାରଳା ମହାଭାରତ ହେଉଛି ଗୋଟିଏ ସମ୍ପୂର୍ଣ୍ଣ ଅଭିନବ ଗ୍ରନ୍ଥ । ଏହା ତତ୍କାଳୀନ ଓଡ଼ିଶାର ଭାଷାକୋଷ ।

କେବଳ ଓଡ଼ିଆ ସାହିତ୍ୟ କାହିଁକି, ସାରଳା ଦାସଙ୍କ ପୂର୍ବରୁ ଏପରି ବିରାଟ ଗ୍ରନ୍ଥ ଭାରତର କୌଣସି ପ୍ରାଦେଶିକ ଭାଷାରେ ରଚିତ ହୋଇ ନ ଥିଲା । ବଙ୍ଗଳା ସାହିତ୍ୟର ଜଣେ ବିଶିଷ୍ଟ ଆଲୋଚକ ବିଜୟଚନ୍ଦ୍ର ମଜୁମଦାର ମଧ ସାରଳା ଦାସ ବଙ୍ଗଳାରେ ଖ୍ୟାତିଲାଭ କରିଥିବା କଥା ଜଣାଇଛନ୍ତି । ତାଙ୍କ ରଚିତ 'ମହାଭାରତ' ବଙ୍ଗଳାର ପଞ୍ଚଦଶ ଶତାବ୍ଦୀର ପ୍ରଥମ ଭାଗରେ ଅନୁବାଦିତ ହୋଇଥିଲା । ଆଲୋଚକ ଦୀନେଶ ଚନ୍ଦ୍ର ସେନ ମଧ ଅନୁରୂପ ମତ ଦେଇଛନ୍ତି ।

## ଚଣ୍ଡୀ ପୁରାଣ

ସାରଳା ଦାସଙ୍କ 'ଚଣ୍ଡୀ ପୁରାଣ' ଗ୍ରନ୍ଥଟି ସଂସ୍କୃତ ମାର୍କଣ୍ଡେୟ ଚଣ୍ଡୀ ଉପରେ ଆଧାରିତ ହେଲେହେଁ ଏହା ତାହାଠାରୁ ପୃଥକ । ମହିଷାସୁରର ଦୌରାତ୍ମ୍ୟ ଓ ଶେଷରେ ଦୁର୍ଗାଦେବୀଙ୍କଦ୍ୱାରା ନିଧନ ଏହାର ବିଷୟବସ୍ତୁ । ଏହା ଶୁକ ପରୀକ୍ଷିତ ସମ୍ବାଦ ଆକାରରେ କଳ୍ପନା କରାଯାଇଛି । ବିଭିନ୍ନ ରସ ବର୍ଣ୍ଣନାରେ କବି ତାଙ୍କର ଅଦ୍ଭୁତ ଶକ୍ତିମତ୍ତାର ପରିଚୟ ଦେଇଛନ୍ତି । 'ମହାଭାରତ' ପରି 'ଚଣ୍ଡୀପୁରାଣ' ଦାଣ୍ଡୀ ବୃତ୍ତରେ ଲିଖିତ ।

## ଅଧ୍ୟାତ୍ମ ରାମାୟଣ

ସାରଳା ଦାସଙ୍କ ନାମରେ ଭଣିତ ଏହି ନାମର ଗୋଟିଏ ଗ୍ରନ୍ଥ ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଅଛି । ଏଥିରେ ସମ୍ପୂର୍ଣ୍ଣ ରାମାୟଣର କଥାବସ୍ତୁ ଅତି ସଂକ୍ଷେପରେ ଦିଆଯାଇଛି ।

## ଲକ୍ଷ୍ମୀନାରାୟଣ ବଚନିକା

ଏହା ଏକ ଅପ୍ରକାଶିତ ଗ୍ରନ୍ଥ । ଏହା ସାରଳା ଦାସଙ୍କ ରଚନା ବୋଲି ଅଧ୍ୟାପକ ବଂଶୀଧର ମହାନ୍ତି ମତ ଦେଇଛନ୍ତି । ଏଥିରେ ମାତ୍ର ୭୯ଟି ପଦ ଅଛି । ଏଥିରେ ଓଡ଼ିଆ ସାମାଜିକ ଜୀବନର ଆଚାର-ବ୍ୟବହାରର ବର୍ଣ୍ଣନା ଦେଖିବାକୁ ମିଳେ ।

## ତିରୋଧାନ

ସାରଳା ଦାସ ପରିଣତ ବୟସରେ ନିଜ ସାଧନାପୀଠ ବଡ଼ସାରୋଳରେ ମାଘ ସପ୍ତମୀ ଦିନ ଦେହତ୍ୟାଗ କରିଥିଲେ । ଏବେବି ତେନ୍ତୁଳିଆପଦାରେ ଥିବା ମୁନିଗୋସାଇଁ ମଠରେ ମାଘ ସପ୍ତମୀ ମହୋତ୍ସବ ମହାଆଡ଼ମ୍ବରରେ ପାଳିତ ହେଉଅଛି ।

ସାରଳା ଦାସ ହେଉଛନ୍ତି ଓଡ଼ିଆ ଜାତିର ମହାନ୍ ଗୌରବ । ଦୀର୍ଘ ପାଞ୍ଚ ଶହ ବର୍ଷ ବର୍ଷ ତଳେ ଜାତିର ଭାଷା ଓ ସାହିତ୍ୟର ଅରୁଣୋଦୟ କାଳରେ ଉଲ୍ଲେଖଯୋଗ୍ୟ ସାହିତ୍ୟିକ ଆଦର୍ଶ ନ ଥିବାବେଳେ ସେ 'ମହାଭାରତ' ପରି ଯେଉଁ ସାରସ୍ୱତ କୋଣାର୍କ ସୃଷ୍ଟି କରିଗଲେ, ତାହା ଅତୁଳନୀୟ ହୋଇ ରହିଛି । ସାରଳା ସାହିତ୍ୟ ଓଡ଼ିଆ ଜାତି, ଓଡ଼ିଆ ଭାଷା ଓ ଓଡ଼ିଆ ସାହିତ୍ୟର ଅମୂଲ୍ୟ ସମ୍ପଦ । ହଜାର ବର୍ଷର ସୁଦୀର୍ଘ ଓଡ଼ିଆ ସାହିତ୍ୟ ପଥରେ ସାରଳା ହେଉଛନ୍ତି ପ୍ରଥମ ଓ ପ୍ରଧାନ ଆଲୋକ ସ୍ତମ୍ଭ । ଯୁଗ ଯୁଗ ଧରି ଓଡ଼ିଶାର ପୁରପଲ୍ଲୀକୁ ସେ ଆଲୋକ ବିକିରଣ କରୁଛନ୍ତି ।

# ମତ୍ତ ବଳରାମ ଦାସ

ଖ୍ରୀଷ୍ଟୀୟ ଷୋଡ଼ଶ ଶତାବ୍ଦୀରେ ଯେଉଁମାନଙ୍କ ସାରସ୍ୱତ ସାଧନା ବଳରେ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧି ସାଧିତ ହୋଇଥିଲା, ସେମାନଙ୍କ ମଧ୍ୟରେ ପଞ୍ଚସଖା ଯୁଗର ବଳରାମ ଦାସ ଅନ୍ୟତମ ଥିଲେ । ପଞ୍ଚସଖାଙ୍କ ମଧ୍ୟରେ ବଳରାମ ଦାସ କେବଳ ବୟୋଜ୍ୟେଷ୍ଠ ନ ଥିଲେ; କେତେକ ଦୃଷ୍ଟିରୁ ସେ ଶ୍ରେଷ୍ଠ ବୋଲି ମଧ୍ୟ ଗଣ୍ୟ ହୁଅନ୍ତି ।

## ଜନ୍ମ, ସ୍ଥାନ ଓ ସମୟ

ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି'ରୁ ଜଣାଯାଏ ଯେ ବଳରାମ ଦାସ ପୁରୀ ନିବାସୀ ଥିଲେ । କେହି କେହି ତାଙ୍କ ଘର ଯାଜପୁର ବୋଲି କହିଥାନ୍ତି । ତେବେ ପୁରୀରେ ବହୁକାଳ ରହି ସେ ସାରସ୍ୱତ ସାଧନ କରିଥିବାର ଜଣାଯାଏ । ପୁରୀର ବାଙ୍କି ମୁହାଣ ନିକଟରେ ଥିବା ଗନ୍ଧର୍ବ ମଠ ତାଙ୍କ ସାଧନାର ପୀଠ ଥିଲା ।

ବଳରାମ ଦାସଙ୍କ ପିତାଙ୍କ ନାମ ସୋମନାଥ ମହାପାତ୍ର ଓ ମାତାଙ୍କ ନାମ ମହାମାୟା ବା ଯମୁନା ଥିଲା । ଐତିହାସିକ ସୁବ୍ରମଣ୍ୟମ୍‌ଙ୍କ ମତରେ ବଳରାମ ଦାସଙ୍କ ପିତା ସୋମନାଥ ମହାପାତ୍ର ଗଜପତି ପ୍ରତାପରୁଦ୍ରଦେବଙ୍କ ମନ୍ତ୍ରୀ ଥିଲେ । ବଳରାମ ମଧ୍ୟ ନିଜେ ଜଗମୋହନ ରାମାୟଣରେ ଲେଖିଛନ୍ତି –

''ମହାମନ୍ତ୍ରୀରେ ସୋମନାଥ ମହାପାତ୍ର
ବଳରାମ ଦାସ ମୁଁ ଯେ ତାଙ୍କର ପୁତ୍ର ।''

ବଳରାମ ଦାସ ଜନ୍ମକାଳ ନେଇ ନାନା ମତ ଅଛି । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ବଳରାମ ଦାସଙ୍କ ଜନ୍ମକାଳ ୧୪୭୨ ମସିହା ବୋଲି ନିରୂପଣ କରିଛନ୍ତି । ମାତ୍ର ଅଚ୍ୟୁତାନନ୍ଦଙ୍କ 'ଉଦୟକାହାଣୀ'କୁ ଅବଲମ୍ବନ କରି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମତ ଦେଇଛନ୍ତି ଯେ ବଳରାମ ଦାସ ୧୪୮୪ ମସିହାରେ ଜନ୍ମଗ୍ରହଣ କରିଥିଲେ । ସେ ପ୍ରତାପରୁଦ୍ରଦେବଙ୍କ ୧୭ ଅଙ୍କରେ 'ବେଦାନ୍ତସାର ଗୁପ୍ତ ଗୀତା' ରଚନା କରିଥିଲେ । ଏହା ଯୁକ୍ତିଯୁକ୍ତ ବୋଲି ମନେ ହୁଏ ।

## ଶିକ୍ଷା

ବଳରାମ ଦାସଙ୍କ ପିତା ପାତ୍ର ବା ମନ୍ତ୍ରୀ ଥିଲେ । କିନ୍ତୁ ସେ ବିଶେଷ ଶିକ୍ଷାଲାଭ କରି ନ ଥିଲେ । ସେ ପୈତୃକ ସମ୍ପଦ ପରିତ୍ୟାଗ କରି ଭିକ୍ଷାକୁ ଜୀବକା ନିର୍ବାହର ଏକ ମାତ୍ର ପନ୍ଥା ଭାବେ ଗ୍ରହଣ କରିଥିଲେ । ସେ ନିଜେ ମଧ ଏହା ସ୍ୱୀକାର କରିଛନ୍ତି –

''ଜନ୍ମରୁ ମୂରୁଖ ମୋର ଅଳ୍ପ ବୟସ
ଗ୍ରନ୍ଥ କଲାବେଳେ ମତେ ବୟସ ତିରିଶ ।''

## ବିବାହ

ବଳରାମ ଦାସ ବିବାହ କରିଥିଲେ । 'ଦାର୍ଢ୍ୟତାଭକ୍ତି'ରୁ ଜଣାଯାଏ ଯେ ସେ କୁଟୁମ୍ବ ସଙ୍ଗତରେ ରହୁଥିଲେ । ଜଗନ୍ନାଥଙ୍କ କୃପାରୁ ଅଳ୍ପକେ ସନ୍ତୁଷ୍ଟ ରହୁଥିଲେ । ତାଙ୍କ ପରିବାର ମଧ ସୁଖେ ଦୁଃଖେ ଚଳିଯାଉଥିଲେ ।

'ଦୀପ୍ତିସାରଗୀତା', 'ଭାବସମୁଦ୍ର' ଓ 'ଦାର୍ଢ୍ୟତାଭକ୍ତି'ରୁ ଜଣାଯାଏ ଯେ ସେ ଚାରୁ ନାମକ ଏକ ବେଶ୍ୟା ସହିତ ସମ୍ପର୍କ ରଖିଥିଲେ ।

## ପୂର୍ବଜନ୍ମ ସ୍ମରଣ

ବଳରାମ ତାଙ୍କ ଗ୍ରନ୍ଥରେ ପୂର୍ବ ଜନ୍ମ ପ୍ରସଙ୍ଗ ବର୍ଣ୍ଣନା କରି କହିଛନ୍ତି ଯେ ସେ ପୂର୍ବଜନ୍ମରେ ତ୍ରେତା ଯୁଗରେ ଜନ୍ମ ହୋଇଥିଲେ । ରାମ ରାବଣ ଯୁଦ୍ଧ ସମୟରେ ଦିହୁଡ଼ି ଧରି ସମସ୍ତ ଘଟଣା ଦେଖିବାର ସୌଭାଗ୍ୟ ତାଙ୍କର ଘଟିଥିଲା ।

## ଅଲୌକିକ ଶକ୍ତି

କବି ଯୋଗସିଦ୍ଧ ମହାତ୍ମା ଥିଲେ । ସେ ଐଶୀଶକ୍ତି ବଳରେ ଅଲୌକିକ କାର୍ଯ୍ୟମାନ କରିପାରୁଥିଲେ । 'ବେଦାନ୍ତସାର ଗୁପ୍ତଗୀତା'ରୁ ଜଣାଯାଏ ଯେ ବଳରାମ ଦାସ ଥରେ ମୁକ୍ତିମଣ୍ଡପରେ ବିଶିଷ୍ଟ ବ୍ରାହ୍ମଣ ପଣ୍ଡିତ ସଭାରେ ଛଦ୍ମବେଶରେ ରହି ବ୍ରହ୍ମବିଦ୍ୟା ଶ୍ରବଣ କରୁଥିଲେ । ସେ ଜାତିରେ ଶୂଦ୍ର ଥିଲେ । ସେତେବେଳେ ଶୂଦ୍ରମାନେ ବ୍ରହ୍ମବିଦ୍ୟା ଶୁଣିବା ନିଷେଧ ଥିଲା । ରାଜାଙ୍କୁ ବ୍ରାହ୍ମଣ ପଣ୍ଡିତମାନେ ଏହା ଜଣାଇଲେ । ରାଜା ଏପରି କାର୍ଯ୍ୟ କାହିଁକି କଲେ ବୋଲି ପଚାରନ୍ତେ, ବଳରାମ ଉତ୍ତର ଦେଲେ ଯେ ବ୍ରହ୍ମବିଦ୍ୟା ଚର୍ଚ୍ଚା ବା ଶ୍ରବଣ ବ୍ରାହ୍ମଣମାନଙ୍କର ଏକଚାଟିଆ ଅଧିକାର ନୁହେଁ । ଏହା ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଶୁଣିପାରିବେ । ବ୍ରାହ୍ମଣମାନେ ଯଦି ଏହା ନ କରାଇବାକୁ ବଦ୍ଧପରିକର, ତେବେ ତା' ପରଦିନ ଦେବାର୍ଚ୍ଚନ ବେଳେ ବାଉରି କଣ୍ଠରୁ ରାଜା ଶୁଣିପାରିବେ –

"ଏ ଯେବେ ବ୍ରହ୍ମ ବିଦ୍ୟା ଛନ୍ତି ଗୋପ୍ୟ କରି
କାଲି ଦେବାର୍ଚ୍ଚନ ବେଳେ କହିବ ବାଉରି ।"

ତା' ପରଦିନ ରାଜାଙ୍କ ଆଗରେ ପ୍ରାକୃତ ଭାଷାରେ ବେଦାନ୍ତ ଗାଇ ସେ ସମସ୍ତଙ୍କର ପ୍ରଶଂସାର ପାତ୍ର ହେଲେ । ସେ ମଧ ମୂର୍ଖଙ୍କୁ ବେଦାନ୍ତ କୁହାଇଦେବେ ବୋଲି ରାଜାଙ୍କୁ କହିଲେ । ରାଜା ଏଥିରେ ବିଶ୍ୱାସ କରି ନ ଥିଲେ । ତାହା କରିବା ପର୍ଯ୍ୟନ୍ତ କୋଇଲି ବୈକୁଣ୍ଠରେ ବନ୍ଦୀ କରି ରଖିଲେ ।

ରାତିରେ ବଳରାମ ଜଗନ୍ନାଥଙ୍କ ଶରଣାପନ୍ନ ହେଲେ । ତାଙ୍କର ମନୋବାଞ୍ଛା ଅଚିରେ ପୂର୍ଣ୍ଣ ହେବ ବୋଲି ପ୍ରଭୁ ସ୍ୱପ୍ନରେ ଆଜ୍ଞା ଦେଲେ । ପରଦିନ ସକାଳେ ପରୀକ୍ଷା ନିମନ୍ତେ ହରିଦାସ ନାମକ ଜଣେ ମୂର୍ଖଙ୍କୁ ରାଜାଙ୍କ ପାଖକୁ ଅଣାଗଲା । ବଳରାମ ଦାସ ଆଜ୍ଞା ଦିଅନ୍ତେ ମୂର୍ଖ ହରିଦାସ ବେଦାନ୍ତ କହିବାକୁ ଲାଗିଲେ । ରାଜା ଏଥିରେ ଅଭିଭୂତ ହୋଇ ହୋଇ ତାଙ୍କୁ ପରମଗୁରୁ ଭାବେ ବରଣ କଲେ ।

"ଚୈତନ୍ୟ ଗୁରୁ ଯେ ମୋହର ।
ପରମଗୁରୁ ତୁମ୍ଭେ ମୋର ।"

'ବଟ ଅବକାଶ' ନାମକ ଏକ ରଚନାରେ ଆଉ ଏକ ଅଲୌକିକ କଥାର ବର୍ଣ୍ଣନା ଅଛି । ଥରେ ଲଙ୍କା ଦେଖିବାପାଇଁ ବଳରାମଙ୍କର ପ୍ରବଳ ଇଚ୍ଛା ହେଲା । ସେ ଜଗନ୍ନାଥଙ୍କୁ ନିଜର ଇଚ୍ଛା ଜଣାଇଲେ । ତାଙ୍କର ମନୋବାଞ୍ଛା ପୂରଣ କରିବାପାଇଁ ଜଗନ୍ନାଥ ତାଙ୍କୁ ଦେଖା ଦେଇ କହିଲେ – "ମୁଁ ଲଙ୍କା ଅଭିମୁଖେ ଯାତ୍ରା ଆରମ୍ଭ କଲି । ତୁମ୍ଭେ ଶ୍ରୀମନ୍ଦିରର ରତ୍ନଝରୀକୁ ଧରି ମୋ ପଛେ ପଛେ ଆସ ।" ଭକ୍ତ ମଧ ବଡ଼ଦେଉଳରୁ ସ୍ୱର୍ଣ୍ଣଝରୀ ନେଇ ପ୍ରଭୁଙ୍କ ପାଖରେ ମିଳିଲେ ଓ ଯାତ୍ରା ଆରମ୍ଭ କଲେ –

"ମୋତେ ଆଜ୍ଞା ଦେଲେ ହୋ ଦେଖିବ ଆଜି ଲଙ୍କା
... ଗହଣରେ ମନରେ ନ ରଖିବୁ ଶଙ୍କା ।"

ବାଟରେ ଯାଉ ଯାଉ ଭକ୍ତ ମନରେ ଗର୍ବ ଜାତ ହେଲା –

"ମୁହିଁ ଯାଉ ଯାଉ ବାଟରେ ବିଚାରିଲି ଚିତ୍ତେ
ମୋହପରି ଭାଗ୍ୟବାନ ନାହିଁ ତ ଜଗତେ
ମନେ ବିଚାରିଲି ମୋହ ସମ ପରି କେହି ନାହିଁ
ମୁହିଁ ଲଙ୍କାକୁ ଯାଉଛି ମାନବ ଦେହ ବହି ।"

ଗର୍ବଗଞ୍ଜନ ହରି କାହାର ଗର୍ବ ସହିପାରନ୍ତି ନାହିଁ । ଭକ୍ତ ତଳେ ପଡ଼ିଗଲେ ଓ ଜଗନ୍ନାଥଙ୍କୁ ଡାକିଲେ । କବିଙ୍କ ଭାଷାରେ –

''ଗରବ ନ ସହନ୍ତି ପ୍ରଭୁ ପଡ଼ିଲି ତଳେ ଯାଇ
ଡାକିଲି ରଖ ରଖ ମୋତେ ଜଗନ୍ନାଥ ଗୋସାଇଁ ।''

ଜଗନ୍ନାଥ ମଧ ଭକ୍ତର ଡାକ ଶୁଣିଲେ

''ହରି ଆଜ୍ଞା ଦେଲେ ଆସ ଆସ ବୋଲି
ଶରଣ ସମ୍ଭାଳି ଲଙ୍କାପୁରେ ମୁହିଁ ଗଲି ।''

ଭକ୍ତ ବଳରାମ ଲଙ୍କାପୁରରୁ ଫେରି ଭ୍ରମବଶତଃ ମନ୍ଦିରର ସ୍ୱର୍ଣ୍ଣଝରୀକୁ ଯଥା ସ୍ଥାନରେ ରଖିପାରି ନ ଥିଲେ । ପ୍ରଭାତ ଅବକାଶ ବେଳେ ସ୍ୱର୍ଣ୍ଣଝରୀ ନ ମିଳିବାରୁ ସେବକମାନଙ୍କ ମଧରେ ଆଲୋଡ଼ନ ସୃଷ୍ଟି ହେଲା । ବଳରାମ ଦାସ ନିଜେ ସ୍ୱର୍ଣ୍ଣଝରୀ କେଉଁ ପରିସ୍ଥିତିରେ ନେଇଥିଲେ ତାହା ମହାରାଜାଙ୍କ ପାଖେ ବର୍ଣ୍ଣନା କଲେ । ଏଥିରେ ମହାରାଜା ସ୍ତମ୍ଭୀଭୂତ ହୋଇପଡ଼ିଲେ ।

କେବଳ ସେତିକି ନୁହେଁ, ଭକ୍ତ ବଳରାମ ମଧ ପ୍ରଭୁ ଜଗନ୍ନାଥଙ୍କ ସଙ୍ଗେ ପଣସ ଚୋରି କରିବାକୁ ଯାଇଥିଲେ । ପଣସ ତ ଖିଆଗଲା, କିନ୍ତୁ ଭକ୍ତଙ୍କ ମନରେ ଏଥିଯୋଗୁଁ ଗର୍ବ ଭାବ ଉଦୟ ହେଲା । ସବୁଥର ପରି ନିନ୍ଦା ଅପବାଦ ପାଇ ରାଜାଙ୍କଦ୍ୱାରା ବନ୍ଦୀ ହେଲେ । ଜଗନ୍ନାଥଙ୍କ ସ୍ୱପ୍ନାଦେଶରେ ତା' ପରଦିନ ମୁକ୍ତି ଲାଭ କଲେ । ଭକ୍ତର ଜୟ ହେଲା ।

'ଭାବସମୁଦ୍ର' ନାମକ ଗ୍ରନ୍ଥରେ ଆଉ ଏକ ଅଲୌକିକ କାର୍ଯ୍ୟ ବର୍ଣ୍ଣିତ ଅଛି । ତାହା ହେଲା – ଥରେ ରଥଯାତ୍ରା ବେଳେ ବଳରାମ ନନ୍ଦିଘୋଷ ରଥ ଉପରକୁ ଉଠିବାକୁ ଚେଷ୍ଟା କଲେ । ମାତ୍ର ଜଗନ୍ନାଥଙ୍କ ରଥ ଉପରେ ସ୍ଥାନ ପାଇବା ସହଜସାଧ ନ ଥିଲା । ତେଣୁ ସମସ୍ତଙ୍କ ସମ୍ମୁଖରେ ତାଙ୍କୁ ପ୍ରହାର କରାଗଲା । ରଥରୁ ବାହାର କରାଗଲା । ସେ ଏଥିରେ ମର୍ମାହତ ହୋଇପଡ଼ିଲେ । ସେ ଏଥିପାଇଁ ଖୋଦ୍ ଜଗନ୍ନାଥଙ୍କୁ ଦାୟୀ କରି ଧିକ୍କାର କରିବାକୁ ଲାଗିଲେ –

''ସମସ୍ତ ଲୋକ କଲେ ଉପହାସ
ଦାସ ବଳିଆ ତୋ ନୁହଁଇ ଦାସ

× × ×

ହରିହୋ–ହାବୋଡ଼ା ମାରି ସେ ଦେଲା ଘଉଡ଼ି
ବଳରାମର ଭାଙ୍ଗିଗଲା ଥୋଡ଼ି ।''

ସେ ବାଲିରେ ତିନି ରଥ ତିଆରି କଲେ । ବଡ଼ଦାଣ୍ଡରେ ତିନି ରଥ ନ ଚଳିବାକୁ ପ୍ରଭୁଙ୍କୁ ନିବେଦନ କଲେ । ବଳରାମଙ୍କ ଭକ୍ତ ହୃଦୟର ବିଳାପ ପ୍ରକାଶ ପାଇଛି –

''ନନ୍ଦିଘୋଷେ ରଥୁ ଦେଲୁ ଘଉଡ଼ି
କେ ଓଟାରିବ ତୋ ରଥ ଦଉଡ଼ି
ନାଥ, ତୁ ମୋତେ ନେଲେ ସିନା ଯିବୁ
ନୋହିଲେ ସେହିଠାରେ ରହିଥିବୁ
ହରିହୋ-ଧରିଛି ଚିତ୍ତେ ତୁ ଯିବୁ କେମନ୍ତେ
ଦାସ ବଳରାମ ଭରସି ତୋତେ ।''

ଭକ୍ତର ଡାକ ଭଗବାନ୍ ଚିରଦିନ ଶୁଣିଛନ୍ତି । ବଳରାମଙ୍କ ଡାକ ଶୁଣିଲେ ମଧ୍ୟ । ବଡ଼ଦାଣ୍ଡରେ ରଥ ଅଚଳ ହେଲା । ଶ୍ରୀକ୍ଷେତ୍ରର ସମସ୍ତ ଲୋକ ଏକଜୁଟ ହୋଇ ରଥକୁ ଟାଣିଲେ । ନିଜେ ଗଜପତି ପ୍ରତାପରୁଦ୍ରଦେବ ଆସି ରଥ ଟାଣିଲେ । ମତ୍ତ ହସ୍ତୀମାନଙ୍କୁ ଆଣି ରଥ ଟଣାରେ ନିୟୋଜିତ କରାଗଲା । କୌଣସିମତେ ରଥ ନ ଚଳିବାରୁ ରାଜା ଜଗନ୍ନାଥଙ୍କ ଶରଣ ପଶିଲେ । ଜଗନ୍ନାଥ ମଧ୍ୟ ସ୍ୱପ୍ନରେ ରାଜାଙ୍କୁ ସମସ୍ତ ବିଷୟ ଜଣାଇଲେ –

''ଏବେ ମୁଁ କହୁଅଛି ତୋତେ । ହେ ରାଜା ଶୁଣ ଶୁଦ୍ଧ ଚିତ୍ତେ ।।
ମୋର ଭକତ ଯେଉଁ ଜନ । ମୋହର ନାମ କରେ ଗାନ ।।''

ତା'ପରଦିନ ପ୍ରତାପରୁଦ୍ରଦେବ ଭକ୍ତକୁ କ୍ଷମା ମାଗିବାରେ ରଥ ଚଳିଲା । ଆନନ୍ଦରେ ବଳରାମ ଗାଇ ଉଠିଛନ୍ତି –

''ହରିହେ – ତୁ ମୋତେ ବାନ୍ଧିଲୁ ରାଜାର ହାତେ
ମୁଁ ତତେ ବାନ୍ଧିଲି ମୋ ମନ ଗୁପ୍ତେ
ନାଥ, ତୁ ବନ୍ଧା ଦେଲୁ ଟିକ କହ
ଏବେ ସନ୍ତୋଷ ହୋଇଲା ମୋ ଦେହ ।''

ଈଶ୍ୱର ଦାସଙ୍କ 'ଚୈତନ୍ୟ ଭାଗବତ' ଅନୁଯାୟୀ ବଳରାମ ମତ୍ତହସ୍ତୀକୁ ଦମନ କରି 'ମତ୍ତ ବଳରାମ' ନାମରେ ପରିଚିତ ହେଲେ ।

**ଦୀକ୍ଷା ଗ୍ରହଣ**

୧୫୧୦ ମସିହାରେ ଶ୍ରୀଚୈତନ୍ୟ ପୁରୀ ଆସିଲେ । ବଳରାମ ଦାସ ସେତେବେଳକୁ ପୁରୀରେ ଅବସ୍ଥାନ କରୁଥାନ୍ତି । ସେ ନିଜେ ଭକ୍ତ ଓ ସାଧକ ଥିଲେ । ସେ ଚୈତନ୍ୟଙ୍କୁ କୃଷ୍ଣଙ୍କ ଅବତାର ବୋଲି ମନେକଲେ । ଶ୍ରୀଚୈତନ୍ୟ ମଧ୍ୟ ବଳରାମ ଦାସଙ୍କ ଜ୍ଞାନ ଓ ସାଧନାର ପରିଚୟ ପାଇଲେ । ଉଭୟେ ସମବୟସ୍କ ଥିଲେ । ବଳରାମ ଦାସ ଶ୍ରୀଚୈତନ୍ୟଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ।

## ଜଗନ୍ନାଥ ଦାସଙ୍କ ସହିତ ସାକ୍ଷାତ୍

ଶ୍ରୀଚୈତନ୍ୟଙ୍କ ଆଗମନ ପରେ ଭକ୍ତି ଧାରାର ସ୍ରୋତ ପ୍ରବାହିତ ହେବାକୁ ଲାଗଲା । ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କ ପ୍ରତିଭାରେ ବିମୋହିତ ହୋଇ ତାଙ୍କୁ 'ଅତିବଡ଼ୀ' ପଦବୀରେ ଭୂଷିତ କଲେ । ଏହାପରେ ସେ ବଳରାମ ଦାସଙ୍କୁ ଭେଟିଥିବା ଜଣାଯାଏ । 'ଜଗନ୍ନାଥ ଚରିତାମୃତ'ରେ ଏହାର ସବିଶେଷ ବର୍ଣ୍ଣନା ଅଛି –

''ଦିନେ ଦର୍ଶନେ ସ୍ୱାମୀ ଯାନ୍ତି । ହରିଦାସେ ସଙ୍ଗେ ଅଛନ୍ତି ।।
ସିଂହଦ୍ୱାରେ ପ୍ରବେଶ ହେଲେ । ବଳରାମ ଦାସେ ଭେଟିଲେ ।।
× × ×
ବଳରାମ ଦାସେ ଚାହିଁଲେ । ସ୍ୱାମୀକୁ ଦଣ୍ଡବତ କଲେ ।।''

ଦିନେ ବଳରାମ ଦାସ ଅତିବଡ଼ୀ ଜଗନ୍ନାଥଙ୍କୁ ଭକ୍ତିତତ୍ତ୍ୱ ଓ ଜଗନ୍ନାଥ ତତ୍ତ୍ୱ ସମ୍ବନ୍ଧରେ ପ୍ରଶ୍ନ କଲେ । ଜଗନ୍ନାଥ ଦାସ ତା'ର ସନ୍ତୋଷଜନକ ଉତ୍ତର ଦେଲେ । ସେହିଦିନୁ ଦୁହିଁଙ୍କ ମଧ୍ୟରେ ପ୍ରଗାଢ଼ ବନ୍ଧୁତ୍ୱ ହେଲା । ସେ ଜଗନ୍ନାଥ ଦାସଙ୍କୁ ସଖୀ ବୋଲି ଡାକୁଥିଲେ । ଶ୍ରୀଚୈତନ୍ୟଙ୍କ ନିର୍ଦ୍ଦେଶରେ ସେ ଜଗନ୍ନାଥ ଦାସଙ୍କୁ ଦୀକ୍ଷା ମଧ୍ୟ ଦେଲେ ।

## ଗ୍ରନ୍ଥ ରଚନା

ଦୀକ୍ଷା ଗ୍ରହଣ ପରେ ସେ ଏକାକୀ ଗନ୍ଧର୍ବ ମଠରେ ରହି ଆଧ୍ୟାତ୍ମିକ ଚିନ୍ତାରେ ମଗ୍ନ ହେଲେ । ସେ ମଧ୍ୟ ପୁରାଣ ରଚନା ଦିଗରେ ବ୍ରତୀ ହେଲେ ।

ବଳରାମ ଦାସ ଜାତିରେ ଶୂଦ୍ର ଥିବାରୁ ନିଜକୁ ଶୂଦ୍ରମୁନି ଆଖ୍ୟା ଦେଇଥିଲେ । ବଳରାମ ଦାସ ଜଗନ୍ନାଥଙ୍କର ପରମଭକ୍ତ ଥିଲେ । ତାଙ୍କରି ଆଜ୍ଞାକୁ ଶିରୋଧାର୍ଯ୍ୟ କରି 'ରାମାୟଣ' ସମେତ ଗ୍ରନ୍ଥ ରଚନାରେ ହାତ ଦେଇଥିଲେ । ସ୍ୱୟଂ ଜଗନ୍ନାଥ ତାଙ୍କଦ୍ୱାରା ସମସ୍ତ ଶାସ୍ତ୍ର ବଖାଣିଛନ୍ତି ବୋଲି ସେ ତାଙ୍କ ରଚିତ ରାମାୟଣର ଲଙ୍କାକାଣ୍ଡରେ ଉଲ୍ଲେଖ କରିଛନ୍ତି –

''ତେଣୁ ସେ ଜଗନ୍ନାଥ ଦୟା ମୋତେ କଲେ
ରାମାୟଣ ଗ୍ରନ୍ଥ ମୋ ମୁଖରେ ବଖାଣିଲେ ।''

ଏପରିକି ଗ୍ରନ୍ଥ ରଚନାବେଳେ ଯେତେବେଳେ କୌଣସି ଅସୁବିଧାର ସମ୍ମୁଖୀନ ହୋଇଛନ୍ତି, ସେତେବେଳେ ପୁଣି ଜଗନ୍ନାଥଙ୍କୁ ବନ୍ଦନା କରି ତାଙ୍କର ସହାୟତାପାଇଁ ନିବେଦନ କରିଛନ୍ତି । ଜଗନ୍ନାଥ ମଧ୍ୟ ତାଙ୍କର ଆକୁଳ ମିନତି ଶୁଣିଛନ୍ତି । ତାଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି । କବିଙ୍କର ଜଗନ୍ନାଥଙ୍କ ସହିତ କଥାବାର୍ତ୍ତାର ଏକ ଦୃଶ୍ୟ ଲଙ୍କାକାଣ୍ଡ ଆରମ୍ଭରେ ବର୍ଣ୍ଣିତ ଅଛି ।

ସେହିପରି ଭଗବାନ୍‌ଙ୍କ ଆଜ୍ଞାପାଇ ଉଦ୍ଧବ ଗୀତା ରଚନା କରିଥିବା କଥା ସେ ନିଜେ ପ୍ରକାଶ କରିଛନ୍ତି । ଜଗନ୍ନାଥଙ୍କ ସହ କଥୋପକଥନର ଆଉ ଏକ ଦୃଶ୍ୟ ଏଥିରୁ ମିଳେ । ସେ ଶେଷରେ ନିଜକୁ ଜଗନ୍ନାଥଙ୍କ ପୁତ୍ର (ବେଟା) ବୋଲି ପରିଚୟ ଦେଇଛନ୍ତି –

''ନୀଳଗିରି ଜଗନ୍ନାଥ ବେଟା ବଳରାମ ଦାସ
ଉଦ୍ଧବ ଗୀତା ଯେ ମୁହିଁ କରଇ ପ୍ରକାଶ ।''

କବିଙ୍କ ରଚନା ମଧ୍ୟରେ 'ଜଗମୋହନ ରାମାୟଣ', 'ଗୁପ୍ତ ଗୀତା', 'ବେଦାନ୍ତସାର ଗୁପ୍ତଗୀତା', 'ବଟ ଅବକାଶ', 'ବ୍ରହ୍ମାଣ୍ଡ ଭୂଗୋଳ', 'ଲକ୍ଷ୍ମୀପୁରାଣ', 'ବିରାଟ ଗୀତା', 'ବେଢ଼ା ପରିକ୍ରମା', 'ଭାବସମୁଦ୍ର', 'ମୃଗୁଣୀ ସ୍ତୁତି', 'କାନ୍ତକୋଇଲି' ପ୍ରଭୃତି ପ୍ରଧାନ । ଏହା ଛଡ଼ା ତାଙ୍କର ଏକ ଗଦ୍ୟ ଗ୍ରନ୍ଥ ଅଛି । ତା'ର ନାମ 'ଜ୍ଞାନ ଚୂଡ଼ାମଣି' ।

## ଜଗମୋହନ ରାମାୟଣ

ଏହା ଓଡ଼ିଆ ଭାଷାର ପ୍ରଥମ ସମ୍ପୂର୍ଣ୍ଣ ରାମାୟଣ । ପୁରୀ ଜଗନ୍ନାଥ ମନ୍ଦିରର ଜଗମୋହନରେ ବସି ଏହାକୁ ରଚନା କରିଥିବାରୁ ଏହାର ନାମ 'ଜଗମୋହନ ରାମାୟଣ' ବୋଲି କେହି କେହି ମତ ଦିଅନ୍ତି । ଜଗନ୍ନାଥଙ୍କ କୃପାରୁ ଏହି ଗ୍ରନ୍ଥ ରଚନା କରିଥିଲେ ବୋଲି ଏହାର ନାମ 'ଜଗମୋହନ ରାମାୟଣ' ବୋଲି କେତେକ ଆଲୋଚକ ମତ ଦେଇଛନ୍ତି । ଜଗନ୍ନାଥଙ୍କ ଅନ୍ୟ ଏକ ନାମ ଜଗମୋହନ । ସେହି କ୍ଷେତ୍ରବାସୀ ସ୍ୱୟଂ ଜଗନ୍ନାଥ ଏହି ଗ୍ରନ୍ଥର କବି ହୋଇଥିବାରୁ ବଳରାମ ଦାସ ଏହି ଗ୍ରନ୍ଥର ନାମ ଜଗମୋହନ ରାମାୟଣ ରଖିଛନ୍ତି ବୋଲି ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମତ ଦେଇଛନ୍ତି । ତାଙ୍କ ମତରେ ଏହା ବଳରାମ ଦାସଙ୍କ ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଭକ୍ତିର ନିଦର୍ଶନ ମାତ୍ର । ସାରଳା ଦାସଙ୍କ ଦାଣ୍ଡି ବୃତ୍ତରେ ଏହା ରଚିତ ବୋଲି ଏହାକୁ ଦାଣ୍ଡି ରାମାୟଣ ମଧ୍ୟ କୁହାଯାଏ । କବି ୩୦ ବର୍ଷ ବୟସରେ ଏହାକୁ ରଚନା କରିଥିବାର ଜଣାଯାଏ ।

'ରାମାୟଣ' ଭଳି ଗ୍ରନ୍ଥ ରଚନା କରିବା ବଳରାମଙ୍କ ପକ୍ଷେ ସମ୍ଭବ ନ ଥିଲା । ଲକ୍ଷ୍ମୀନାରାୟଣଙ୍କ ବନ୍ଦାପନା ବେଳେ ଐଶ୍ୱରିକ ଶକ୍ତି ଲାଭ କରିବା ଫଳରେ ସେ ଏହାକୁ ରଚନା କରିବାକୁ ସମର୍ଥ ହେଲେ ବୋଲି ବଳରାମ ଦାସ ନିଜେ ଲଙ୍କାକାଣ୍ଡରେ ଉଲ୍ଲେଖ କରିଛନ୍ତି, ଯଥା –

''ମୁହିଁ ବଳରାମ ଦାସ ଯହିଁ ଥିଲି
ଲକ୍ଷ୍ମୀନାରାୟଣ ବନ୍ଦାପନା ଯେ ଦେଖିଲି

ତେଣୁ ମୋହର ସକଳ ପାପ ପଳାଇଲା
ରାମାୟଣ ଗ୍ରନ୍ଥ ଯେ ମୋ ମୁଖରୁ ସ୍ଫୁରିଲା ।''

'ଜଗମୋହନ ରାମାୟଣ' 'ବାଲ୍ମୀକି ରାମାୟଣ'ର ଆକ୍ଷରିକ ଅନୁବାଦ ନୁହେଁ, ମୂଳ ରାମାୟଣକୁ ଅବଲମ୍ବନ କରି କବି କେବଳ ଜଗନ୍ନାଥଙ୍କର ମହିମା ପ୍ରଚାର ଦିଗରେ ବ୍ରତୀ ହୋଇଥିବା ଜଣାଯାଏ । 'ବାଲ୍ମୀକି ରାମାୟଣ'ର ମୌଳିକ ଆଦର୍ଶ ଓ ଚରିତ୍ର ଚିତ୍ରଣ ତାଙ୍କ ରାମାୟଣରେ ପୂରାପୂରି ପରିବର୍ତ୍ତିତ ହୋଇଯାଇଛି । ମୂଳ ଗ୍ରନ୍ଥର କାବ୍ୟତ୍ୱ ଏଥିରେ ନାହିଁ । ଏହା ପୁରାଣ ଶୈଳୀରେ ରଚିତ ହୋଇଅଛି ।

'ସଂସ୍କୃତ ରାମାୟଣ' ସାତ ଖଣ୍ଡରେ ବିଭକ୍ତ । ପ୍ରତ୍ୟେକ ଖଣ୍ଡକୁ ଗୋଟିଏ ଗୋଟିଏ କାଣ୍ଡ କହନ୍ତି । ସାତଟି କାଣ୍ଡ ହେଲା – ଅଯୋଧ୍ୟା କାଣ୍ଡ, ଆରଣ୍ୟ କାଣ୍ଡ, କିଷ୍କିନ୍ଧା କାଣ୍ଡ, ସୁନ୍ଦରା କାଣ୍ଡ, ଯୁଦ୍ଧ କାଣ୍ଡ ଓ ଉତ୍ତରା କାଣ୍ଡ । 'ଜଗମୋହନ ରାମାୟଣ'ରେ ଏହି କାଣ୍ଡଗୁଡ଼ିକର ନାମ ମୋଟାମୋଟି ଠିକ୍ ଅଛି । ସଂସ୍କୃତ ରାମାୟଣର ପ୍ରଥମ କାଣ୍ଡ ନାମ ବାଳକାଣ୍ଡ ଥିଲାବେଳେ ବଳରାମ ଦାସଙ୍କ ଗ୍ରନ୍ଥରେ ଏହାର ନାମ ହୋଇଛି, - ଆଦିକାଣ୍ଡ । ସଂସ୍କୃତ ଯୁଦ୍ଧକାଣ୍ଡର ନାମ ବଳରାମ ଦାସ ରଖିଛନ୍ତି ଲଙ୍କାକାଣ୍ଡ ।

କବି ମୂଳ 'ରାମାୟଣ'ର ବହୁ ବିଷୟ ଗ୍ରହଣ କରି ନାହାନ୍ତି । ଅନେକ ନୂତନ ବିଷୟ ସଂଯୋଜିତ କରିଛନ୍ତି । ଅନେକ ଅଂଶକୁ ସଂକ୍ଷିପ୍ତ କରିଦେଇଛନ୍ତି । କେତେ ସଂକ୍ଷିପ୍ତ ବିଷୟକୁ ମଧ୍ୟ ଅତି ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ରାମ ଲକ୍ଷ୍ମଣଙ୍କୁ ବିଶ୍ୱାମିତ୍ର ନିଜ ଆଶ୍ରମକୁ ନେଉଥିଲାବେଳେ କାମରେ ଦହନ ହେବା, ସରଯୂ ନଦୀର ଉତ୍ପତ୍ତି, ବିଶ୍ୱାମିତ୍ରଙ୍କ ଅସ୍ତ୍ରଦାନ, ତାଡ଼କା ଅସୁରୁଣୀର ଅତ୍ୟାଚାର ପ୍ରଭୃତି ତାଙ୍କ ଗ୍ରନ୍ଥରୁ ବାଦ୍ ଦେଇଛନ୍ତି । ସେହିପରି ଆଦିକାଣ୍ଡରେ ଜରତା ପ୍ରସଙ୍ଗ, ଅଯୋଧ୍ୟା କାଣ୍ଡରେ ମନ୍ଥରାର ପୂର୍ବଜନ୍ମ ପ୍ରସଙ୍ଗ, କିଷ୍କିନ୍ଧା କାଣ୍ଡରେ ଲୀଳାବତୀ ହରଣ, ବଣାଇ ବାମଣ୍ଡା ପ୍ରଭୃତି ରାଜାର ନାମକରଣ, ସୁନ୍ଦରାକାଣ୍ଡରେ ହନୁମାନଙ୍କ ମାୟା ରୂପ ଧାରଣ, ଲଙ୍କାକାଣ୍ଡରେ ଯଯାତି ଉପାଖ୍ୟାନ, ସୀତା ତ୍ୟାଗ ସମ୍ପର୍କରେ କାରଣ ପ୍ରଭୃତି ଅନେକ ନୂତନ ବିଷୟ ଯୋଗ କରିଛନ୍ତି । ସଂସ୍କୃତ ବିଭିନ୍ନ କାଣ୍ଡର ଥିବା ବିଷୟବସ୍ତୁ ଓ ତା'ର ବର୍ଣ୍ଣନାକ୍ରମ ମଧ୍ୟ ବଳରାମ ଦାସ ତାଙ୍କ ଗ୍ରନ୍ଥରେ ବହୁ ସ୍ଥାନରେ ରକ୍ଷା କରି ନାହାନ୍ତି । ରାମ ବନବାସ, ଚିତ୍ରକୂଟ ଯାତ୍ରା, ଦଶରଥଙ୍କ ମୃତ୍ୟୁ ପ୍ରଭୃତି 'ବାଲ୍ମୀକି ରାମାୟଣ'ରେ ବର୍ଣ୍ଣିତ ହୋଇଥିଲାବେଳେ ବଳରାମ ଦାସ ତାହାକୁ ଆରଣ୍ୟକ କାଣ୍ଡରେ ସ୍ଥାନ ଦେଇଛନ୍ତି । ଏହାଦ୍ୱାରା

କଥାବସ୍ତୁ ବର୍ଣ୍ଣନାରେ କୌଣସି ବ୍ୟାଘାତ ସୃଷ୍ଟି ହୋଇ ନାହିଁ । କବି ମଧ 'ପଦ୍ମପୁରାଣ' ପ୍ରଭୃତି ପୁରାଣମାନଙ୍କରୁ ବହୁ ବିଷୟ ଆହରଣ କରି ନିଜ ଗ୍ରନ୍ଥରେ ରଖିଛନ୍ତି । ଏହା କବିଙ୍କ ପାଣ୍ଡିତ୍ୟର ପରିଚୟ ଦିଏ ।

'ବାଲ୍ମୀକି ରାମାୟଣ'ର ରାମଚନ୍ଦ୍ରଙ୍କୁ ଜଗନ୍ନାଥ ଭାବେ କଳ୍ପନା କରିବାରେ ହିଁ କବିଙ୍କ ମୌଳିକତା ପରିସ୍ଫୁଟ । ବଳରାମ ଦାସଙ୍କ ମତରେ ଶ୍ରୀରାମ କେବଳ ବିଷ୍ଣୁ ବା ଜଗନ୍ନାଥଙ୍କ ସପ୍ତମ ଅବତାର ନୁହନ୍ତି, ସେ ସ୍ୱୟଂ ଜଗନ୍ନାଥ । ଶ୍ରୀରାମଙ୍କ ବିଭିନ୍ନ ନାମ ମଧରେ ଜଗନ୍ନାଥଙ୍କ ନାମ ଗଣନା କରିଛନ୍ତି । ଶ୍ରୀରାମଙ୍କ ଜୀବନର ବହୁ ଘଟଣାକୁ ଜଗନ୍ନାଥଙ୍କ ପର୍ବ ସହିତ ସଂପୃକ୍ତ କରିଛନ୍ତି । ରାମ, ଲକ୍ଷ୍ମଣ ଓ ସୀତା ତୀର୍ଥ ପର୍ଯ୍ୟଟନ ବେଳେ ଶ୍ରୀକ୍ଷେତ୍ର ପୁରୀକୁ ଆସିଛନ୍ତି । ଶ୍ରୀମନ୍ଦିରରେ ଠିଆ ହେବା ସମୟରେ କବିଙ୍କୁ ଜଗନ୍ନାଥ ଓ ରାମ, ଲକ୍ଷ୍ମଣ ଓ ବଳଭଦ୍ର, ସୀତା ଓ ସୁଭଦ୍ରା ଏକାକାର ହୋଇଯାଇଥିବା ଦୃଶ୍ୟ ହୋଇଛି ।

### ବର୍ଣ୍ଣନା ଶୈଳୀ

ସଂସ୍କୃତ 'ବାଲ୍ମୀକି ରାମାୟଣ' ଭଳି ପାଣ୍ଡିତ୍ୟପୂର୍ଣ୍ଣ ନ ହେଲେ ମଧ କବିଙ୍କ ବର୍ଣ୍ଣନାଶୈଳୀ ଅତି ଉଚ୍ଚକୋଟୀର ହୋଇଛି । ତାଙ୍କର ବର୍ଣ୍ଣନା ସରଳ ଓ ହୃଦୟସ୍ପର୍ଶୀ । ନାରୀ ରୂପ ବର୍ଣ୍ଣନାରେ ସେ ସେମାନଙ୍କୁ ବହୁ ଅଳଙ୍କାରରେ ମଣ୍ଡିତ କରିଛନ୍ତ, ଯଥା –

''କର୍ଣ୍ଣରେ ତାଟଙ୍କ ଖଞ୍ଜି ବାହେ ବିଜ ବାନ୍ଧି
ଆୟ ଅଳଙ୍କାରମାନ ଝୀନ ବସ୍ତ୍ର ପିନ୍ଧି
କଣ୍ଢେଣ ପଦକ ହାର ମୁକୁତାର ଝରା ।
× × ×
ପାଦରେ ନୂପୁର ଶୋହେ ବାହେ ରତ୍ନବାହୀ
ଲଲାଟେ କସ୍ତୁରୀ ଚିତା ତାମ୍ବୁଳ ଯୋଗାଇ ।'' (ଆଦ୍ୟକାଣ୍ଡ)

ବୀରବେଶ ବର୍ଣ୍ଣନା ମଧ ଅତି ଚମତ୍କାର ହୋଇଛି । କବି ଲଙ୍କାକାଣ୍ଡରେ ଅଙ୍ଗଦଙ୍କର ଯୁଦ୍ଧ ବେଶର ଏକ ସୁନ୍ଦର ଚିତ୍ର ଦେଇଛନ୍ତି –

''ଅଙ୍ଗଦ କୁମାର ଯେ ହୋଇଲେ ବୀରବେଶ
କେଶ ଯେ ହୋଇଲା ନାଗେଶ୍ୱର ପୁଷ୍ପ
× × ×
ପଛେ ପାଟ ଘେନି ବାନ୍ଧିଲାକ ତାହା
ମଣିମୟେ ମୁକୁଟ ଭୂଷଣ କପି ନାହା ।''

ପ୍ରକୃତି ବର୍ଣ୍ଣନାରେ ମଧ କବି ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି । ବର୍ଷା ଋତୁର ବର୍ଣ୍ଣନା ଏ ଦୃଷ୍ଟିରୁ ବିଚାର କରାଯାଇପାରେ --

"ଆଷାଢ଼ ମାସ ପ୍ରବେଶ ହୋଇଲାକ ଯହୁଁ
ଝିମି ଝିମି କରିଣ ସେ ବରଷଇ ତହୁଁ ।
ବିଜୁଳି ଦେଖାଇଣ ମାରଇ ଘଡ଼ଘଡ଼ି ।
କି ଜାଣି ପର୍ବତୁ ଶୃଙ୍ଗ ପଡ଼ିବ କି ଝଡ଼ି ।"

ପୁଣି ବର୍ଣ୍ଣନା କରିଛନ୍ତି –

"ଯହୁଁ ପ୍ରବେଶ ହୋଇଲା ଦୁଃସହ ବରଷା
ନାନା ପକ୍ଷୀମାନେ ତହିଁ ଭିଆଇଲେ ବସା ।
ବୃକ୍ଷମାନେ ପଲ୍ଲବନ୍ତି କଅଁଳଇ ଲତା
ମୟୂର ଚଢ଼େଇ ଯେ ମଦନେ ଉନ୍ମତା ।

× × ×

ନଦୀମାନେ ବଢ଼ନ୍ତି ଯେ ପୁରେ ପୁଷ୍କରିଣୀ
ପର୍ବତ ଶିଖରୁ ଝରି ପଡ଼ଇ ଯେ ପାଣି ।"

ରାମ ବନ ଗମନ କାଳରେ ଯେଉଁ ଦୁଃଖ ଜାତ ହୋଇଛି, କବି ତାହାକୁ ଅତି ସୁନ୍ଦର ଭାବରେ ଅଯୋଧ୍ୟା କାଣ୍ଡରେ ବର୍ଣ୍ଣନା କରିଛନ୍ତି –

"ହା ହା ରାମ କହି ସର୍ବେ ଗୋଡ଼ାଇ ରାବନ୍ତି
ରାମ ବନ ଯାନ୍ତେ ତରୁ ଲତାଏ ରୋଦନ୍ତି ।

× × ×

ହା ହା କାର ଘୋର ଧ୍ୱନି ଗଗନେ ଉଠଇ
ରାମ ବନ ଯାନ୍ତେ ବୃକ୍ଷୁ ପତ୍ର ଯେ ଝଡ଼ଇ ।"

କବି ଅନ୍ୟ ସ୍ଥାନରେ ଉପମା ଓ ରୂପକର ବ୍ୟବହାର କରିଛନ୍ତି । ଏହା କାବ୍ୟଶ୍ରୀ ବୃଦ୍ଧିରେ ସାହାଯ୍ୟ କରେ ।

## ଚରିତ୍ର ଚିତ୍ରଣ

ଚରିତ୍ର ଚିତ୍ରଣରେ ମଧ ବଳରାମ ଦାସ ନିଜର ମୌଳିକତା ଦେଖାଇଛନ୍ତି । 'ବାଲ୍ମୀକି ରାମାୟଣ'ରେ କେତେକ ଚରିତ୍ରରେ ଦେବତ୍ୱ ଆରୋପ କରାଯାଇଥିଲା ବେଳେ ବଳରାମ ଦାସଙ୍କ ରାମାୟଣରେ ସେସବୁ ଚରିତ୍ରଗୁଡ଼ିକୁ ସାଧାରଣ ମାନବ ହିସାବରେ ଗ୍ରହଣ କରାଯାଇଛି । ବାଲ୍ମୀକିଙ୍କ 'ରାମାୟଣ'ରେ ରାମ ମର୍ଯ୍ୟାଦାପୂର୍ଣ୍ଣ ଓ ସମସ୍ତ ସତ୍‌ଗୁଣର ଜ୍ୱଳନ୍ତମୂର୍ତ୍ତି । କିନ୍ତୁ ବଳରାମ ଦାସଙ୍କ ରାମ

ମାନବିକ ଦୁର୍ବଳତାଗ୍ରସ୍ତ ଓ ସାଂସାରିକ ମୋହାଚ୍ଛନ୍ନ । ସେହିପରି ସୀତା, କୌଶଲ୍ୟା, ଲକ୍ଷ୍ମଣ ପ୍ରଭୃତିଙ୍କ ଚରିତ୍ର ଚିତ୍ରଣ ଯେପରି ମୂଳ 'ରାମାୟଣ'ରେ ହୋଇଅଛି, ସେପରି ତାହା ବଳରାମ ଦାସଙ୍କ ରାମାୟଣରେ ହୋଇ ନାହିଁ । ତାଙ୍କ ଚରିତ୍ର ଚିତ୍ରଣରେ ସାଧାରଣ ମାନବର ସୁଖ, ଦୁଃଖ ଭାବ, ଅଭାବ, ଦୋଷ, ଗୁଣ – ସବୁ ପ୍ରତିଫଳିତ ହୋଇଅଛି । ଏଗୁଡ଼ିକ ଯେ ଅତି ବାସ୍ତବ ହୋଇଅଛି, ଏଥିରେ ସନ୍ଦେହ ନାହିଁ ।

ବଳରାମ ଦାସ ରାମଙ୍କୁ ଆଦର୍ଶ ରାଜା ଓ ଶାସକଭାବେ ଚିତ୍ରଣ କରିଛନ୍ତି । ଭରତ ମଧ୍ୟ ତାଙ୍କ ରାମାୟଣର ଏକ ଉଜ୍ଜ୍ୱଳ ତ୍ୟାଗ ମୂର୍ତ୍ତି । ଲକ୍ଷ୍ମଣଙ୍କର ଚରିତ୍ର ମଧ୍ୟ ଆଦର୍ଶ ସ୍ଥାନୀୟ ହୋଇପାରିଛି । ଆଦର୍ଶ ଭ୍ରାତା ହିସାବରେ ସେ ମାନବ ସମାଜର ସବୁଦିନେ ଆଦର୍ଶ ହୋଇ ରହିବେ । କବି ରାବଣ ଚରିତ୍ର ଚିତ୍ରଣରେ ମଧ୍ୟ କୃତିତ୍ୱ ଦେଖାଇଛନ୍ତି । ସେ ଅତ୍ୟାଚାରୀ ହେଲେ ମଧ୍ୟ ଶିକ୍ଷିତ ଓ ନୈଷ୍ଠିକ । ବଳରାମ ଦାସ ବାଲ୍ମୀକି ରାବଣ ଅନୁକରଣରେ ରାବଣ ଚରିତ୍ର ଚିତ୍ରଣ କଲେ ମଧ୍ୟ ବହୁ ସ୍ଥାନରେ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଛନ୍ତି । ସୀତାଙ୍କ ଚରିତ୍ର ଚିତ୍ରଣ ମଧ୍ୟ ଅତି ବାସ୍ତବ ହୋଇଛି । ଦେବୀ ହୋଇ ମାନବୀ ରୂପରେ ସେ ଅଶେଷ ଦୁଃଖ କଷ୍ଟ ଭୋଗିଛନ୍ତି । ବହୁ ନିର୍ଯାତନା ଅକାତରରେ ସହିଛନ୍ତି । ତାଙ୍କର ତ୍ୟାଗ ଅତୁଳନୀୟ । ମନ୍ଥରା ଭଳି ଖଳ ଓ କଦର୍ଯ୍ୟ ଚରିତ୍ର ଚିତ୍ରଣରେ ସେ ଅପୂର୍ବ ସିଦ୍ଧହସ୍ତତା ପ୍ରଦର୍ଶନ କରିଛନ୍ତି ।

**ଭାଷା**

ବଳରାମ ଦାସଙ୍କ 'ରାମାୟଣ'ର ଭାଷା ଅତି ସରଳ ଓ ସାବଲୀଳ । ସମସ୍ତେ ଏହାକୁ ସହଜରେ ବୁଝି ପାରୁଥିଲେ । ତଥାପି ସମଗ୍ର ଭାବରେ ଏହାର ଭାଷା ପ୍ରତି ଲକ୍ଷ୍ୟ କଲେ ଜଣାଯାଏ ଯେ ତାହା ସାରଳା ଦାସଙ୍କ 'ମହାଭାରତ'ଠାରୁ ଅଧିକ ସାଧୁ ଓ ଏଥିରେ ଅଧିକ ସଂସ୍କୃତ ଶବ୍ଦ ବ୍ୟବହାର କରାଯାଇଛି । ବଳରାମ ଦାସ ମଧ୍ୟ ତାଙ୍କ 'ରାମାୟଣ'ରେ ବହୁ ପ୍ରାଚୀନ ଓଡ଼ିଆ ଶବ୍ଦ ବ୍ୟବହାର କରିଛନ୍ତି, ଯଥା - ନୁହସି, କହକିନା, ପରିଯାଇ । କବିଙ୍କ ଭାଷା ପ୍ରୟୋଗରେ କେତେକ ବୈଶିଷ୍ଟ୍ୟ ମଧ୍ୟ ଦେଖାଯାଏ । ବିଭକ୍ତି ପ୍ରୟୋଗରେ ତାହା ଅଛି । ଉଦାହରଣସ୍ୱରୂପ, ପ୍ରଥମା ବିଭକ୍ତିରେ 'ଏ' ପ୍ରୟୋଗ ଦେଖାଯାଏ –

ଯଥା – ପ୍ରଜାଏ ଦେବତାଏ, କଥାଏ ଇତ୍ୟାଦି ।
କ୍ରିୟାରେ 'ତ' ପ୍ରୟୋଗ ମଧ୍ୟ ହୋଇଅଛି – (ଉତ୍ତରାକାଣ୍ଡ)
''ଆବର କଥାଏ ତୁହି ଶୁଣସି ରାଜନ'' (ଉତ୍ତରୀକାଣ୍ଡ)

ବଳରାମ ଦାସ 'ରାମାୟଣ' ରଚନା କରିବାର ବହୁ ବର୍ଷ ପରେ 'ତୁଳସୀ ଦାସ ରାମାୟଣ' ରଚିତ ହୋଇଥିଲା । ଉଭୟ ଗ୍ରନ୍ଥର ଭାଷା ମଧ୍ୟରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୁଏ । ଓଡ଼ିଆ ରାମାୟଣରେ 'କ୍ରୋଧବତ' ଥିଲାବେଳେ ତୁଳସୀ ରାମାୟଣରେ ତାହା 'କ୍ରୋଧବନ୍ତ' ହୋଇଛି । ଏହିପରି ସାମଞ୍ଜସ୍ୟ ଥିବା ବହୁ ଶବ୍ଦର ଉଦାହରଣ ଦିଆଯାଇପାରେ ।

## ବୃତ୍ତ ବା ଛନ୍ଦ

ସାରଳା ଦାସ ଦାଣ୍ଡିବୃତ୍ତରେ 'ମହାଭାରତ' ରଚନା କରିଥିଲେ । ଏଥିରେ ପ୍ରତ୍ୟେକ ଧାଡ଼ିରେ ଚଉଦ ଅକ୍ଷର ରହିବାର ନିୟମ ଅଛି । ଏହି ବୃତ୍ତରେ ପୁରାଣ ପାଠ କଲେ ଶ୍ରୁତିମଧୁର ହୁଏ । ଥରେ ଗ୍ରନ୍ଥ ପାଠ ଆରମ୍ଭ କଲେ ଶେଷ ନ କରି ରହି ହୁଏ ନାହିଁ । ବଳରାମ ଦାସ ମଧ୍ୟ ସେହି ବୃତ୍ତରେ ରାମାୟଣ ରଚନା କଲେ । ସେହି କାରଣରୁ ଏହାକୁ କେହି କେହି ଦାଣ୍ଡି ରାମାୟଣ ବୋଲି କହିଥାନ୍ତି ।

'ଦାଣ୍ଡି ରାମାୟଣ' ବା 'ଜଗମୋହନ ରାମାୟଣ' ଓଡ଼ିଶାର ଅଗଣିତ ଜନସାଧାରଣଙ୍କର ଅତି ପ୍ରିୟ ହୋଇପାରିଛି । ଓଡ଼ିଆ ସାହିତ୍ୟ ଇତିହାସରେ ସାରଳା ଦାସଙ୍କ ପରେ ବଳରାମ ଦାସ ଦ୍ୱିତୀୟ ପୁରାଣ ଲେଖକ ହେବାର ଖ୍ୟାତି ଅର୍ଜନ କରିଛନ୍ତି ।

## ସମାଜ ଚିତ୍ର

ବଳରାମ ଦାସ ଗ୍ରନ୍ଥରେ ସେସମୟର ସମାଜ ଚିତ୍ର ଅତି ନିଖୁଣ ଭାବରେ ଦେଇଛନ୍ତି । ରାଜ୍ୟ ଶାସନ ଓ ରାଜନୀତି ସମ୍ପର୍କରେ ସେ ବହୁ ତଥ୍ୟ ପରିବେଷଣ କରିଛନ୍ତି । ବିଶ୍ୱାମିତ୍ର ରାଜା ଦଶରଥଙ୍କୁ ଆଦର୍ଶ ରାଜ୍ୟଶାସନ ସମ୍ବନ୍ଧରେ ବହୁ ମୂଲ୍ୟବାନ୍ ପରାମର୍ଶ ଦେଇଥିବା ବର୍ଣ୍ଣିତ ଅଛି । ପୁଣି ରାବଣ ବଧ ପରେ ବିଭୀଷଣ ରାଜା ହେବା ବେଳେ ରାମଙ୍କ ମୁଖରେ କବି ରାଜ୍ୟଶାସନ ବିଷୟରେ ଯାହା କୁହାଇଛନ୍ତି, ତାହା ସେ ସମୟରେ ରାଜନୀତିର ଏକ ସ୍ପଷ୍ଟ ଚିତ୍ର ବୋଲି କୁହାଯାଇପାରେ ।

ସମାଜରେ ବର୍ଣ୍ଣବ୍ୟବସ୍ଥା ପ୍ରଚଳିତ ଥିଲା । ମୁନିଋଷିଙ୍କ ପରେ ବ୍ରାହ୍ମଣମାନେ ସମ୍ମାନ ପାଉଥିଲେ । ସେମାନେ ବେଦ ଅଧ୍ୟୟନ, ବେଦ ପାଠ ଓ ପୂଜା ଆରାଧନା ପ୍ରଭୃତି କରୁଥିଲେ । ସେମାନେ ମଧ୍ୟ ରାଜାଙ୍କୁ ସତ୍ ପରାମର୍ଶ ଦେଉଥିଲେ । କ୍ଷତ୍ରିୟମାନେ ନିଜ ଧର୍ମ ପାଳନ ନ କଲେ ରାଜ୍ୟ ଛାରଖାର ହୋଇଯିବାର ଦୃଷ୍ଟାନ୍ତ ତାଙ୍କ ଗ୍ରନ୍ଥରେ ଦେଇଛନ୍ତି । ବୈଶ୍ୟମାନେ ବାଣିଜ୍ୟ

ବ୍ୟବସାୟକୁ ଯେପରି ଆଶ୍ରୟ କରିବେ, ସେ ବିଷୟରେ ଦୃଷ୍ଟିଦେବାପାଇଁ ଦଶରଥଙ୍କୁ ବିଶ୍ୱାମିତ୍ର ପରାମର୍ଶ ଦେଇଥିଲେ । ଶୂଦ୍ରମାନେ ତପସ୍ୟା କରିବା ନିଷେଧ ଥିଲା ।

ରାମାୟଣରେ ସେ କାଳର ଗୃହସ୍ଥାଶ୍ରମର ଏକ ସୁନ୍ଦର ଚିତ୍ର ମିଳେ । ରାଜାମାନଙ୍କର ପ୍ରଜା ପାଳନ ଧର୍ମ ଥିଲା । ବ୍ରାହ୍ମଣମାନେ ଅସ୍ତ୍ରଶସ୍ତ୍ର ଧାରଣ କରୁ ନ ଥିଲେ । ସ୍ତ୍ରୀମାନେ ସ୍ୱାମୀଙ୍କୁ ଭକ୍ତି କରୁଥିଲେ । ଭାଇ ଭାଇ ମଧ୍ୟରେ ଭକ୍ତି ଓ ସ୍ନେହଭାବ ଥିଲା । ପିତାମାତାଙ୍କୁ ଅବଜ୍ଞା କରିବା,ଦେବତା ବ୍ରାହ୍ମଣଙ୍କୁ ଭକ୍ତି ନ କରିବା ବା ମିଥ୍ୟା କହିବା ଫଳରେ ପାପ ଅର୍ଜନ ହୁଏ ବୋଲି ଧାରଣା ସମାଜରେ ପ୍ରଚଳିତ ଥିଲା ।

ସେ ଯୁଗର ନୃତ୍ୟ, ଗୀତ, ବାଦ୍ୟ, ବେଶଭୂଷା ଏପରିକି କେଶବିନ୍ୟାସର ଚିତ୍ର ରାମାୟଣରୁ ମିଳେ । ଯାନବାହନ ଆରୋହଣପୂର୍ବକ ଦୂର ସ୍ଥାନମାନଙ୍କୁ ଯିବାର ବ୍ୟବସ୍ଥା ଥିଲା । ବିଭିନ୍ନ ପ୍ରକାର ମଉଜ ମଜଲିସ, ଏପରିକି ନୌକ୍ରୀଡ଼ା ପ୍ରଚଳିତ ଥିଲା । ଅଯୋଧ୍ୟା ନଗରୀର ସୁନ୍ଦର ବର୍ଣ୍ଣନା ଏଥିରେ ଅଛି । ଏହାଛଡ଼ା କବି ସମାଜରେ ପ୍ରଚଳିତ ଯାନିଯାତ୍ରା, ଦିଅଁମଙ୍ଗୁଳା, ବିବାହରେ କଉଡ଼ିଖେଳ, ଲବଣ ଚଉଁରୀ, ବରବାହୁଡ଼ା, ମଧୁଶଯ୍ୟା ପ୍ରଭୃତିର ବର୍ଣ୍ଣନା କରିଛନ୍ତି ।

## ସ୍ୱଦେଶପ୍ରୀତି

ବଳରାମ ଦାସ ଓଡ଼ିଶାବାସୀ ହୋଇଥିବାରୁ ତାଙ୍କ ରଚିତ ରାମାୟଣରେ ଓଡ଼ିଶାର ଗିରି, ବନ, ନଦ, ନଦୀ, ତୀର୍ଥସ୍ଥଳୀ ପ୍ରଭୃତିର ନାମ ମିଳେ । ପୁରୀ ଶ୍ରୀଜଗନ୍ନାଥ କ୍ଷେତ୍ର ବିଷୟରେ ସେ ଏକାଧିକ ସ୍ଥାନରେ ବର୍ଣ୍ଣନା କରିଛନ୍ତି । ଜଗନ୍ନାଥଙ୍କର ପ୍ରଶସ୍ତି ତାଙ୍କ ଗ୍ରନ୍ଥର ଛତ୍ରେ ଛତ୍ରେ ଦେଖିବାକୁ ମିଳେ । ସେ ଜଗନ୍ନାଥଙ୍କୁ ସବୁଦେବତାଙ୍କର ମୂଳ ବୋଲି ବିଚାର କରିଛନ୍ତି । ରାମଚନ୍ଦ୍ର ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରିଥିବା ଆଗରୁ ବର୍ଣ୍ଣିତ ଅଛି । ଆରଣ୍ୟକ କାଣ୍ଡରେ ରାମ, ଲକ୍ଷ୍ମଣ ଓ ସୀତାଙ୍କୁ ବନବାସ ସମୟରେ ବଳରାମ ଓଡ଼ିଶାର ବିଭିନ୍ନ ସ୍ଥାନରେ ବୁଲାଇଛନ୍ତି । ସେହି ସବୁ ସ୍ଥାନ ମର୍ଯ୍ୟାଦାପୁରୁଷ ଶ୍ରୀରାମଙ୍କ ପଦରଜପାଇଁ ପବିତ୍ର ହୋଇଯାଇଛନ୍ତି ବୋଲି ମତ ଦେଇଛନ୍ତି । ରାମଙ୍କ ସପକ୍ଷରେ ଯୁଦ୍ଧ କରିଥିବା ବାନରମାନଙ୍କୁ ସେ ଓଡ଼ିଶାର କୋଣାର୍କ ଅଞ୍ଚଳର ଅଧିବାସୀ ଭାବେ କଳ୍ପନା କରିଛନ୍ତି । ଓଡ଼ିଶାର କପିଳାସ ପର୍ବତକୁ ଶବରଙ୍କ ପୀଠ ରୂପେ ବିବେଚନା କରିଛନ୍ତି । ରାବଣ ଓ ତା'ର ଭାଇମାନେ ତପସ୍ୟା କରିବା ନିମନ୍ତେ ଲଙ୍କାରୁ ଯାଜପୁର ଆସିଛନ୍ତି । ତାଙ୍କ ଗ୍ରନ୍ଥରେ ରାମଚଣ୍ଡୀ, ବେଲେଶ୍ୱର ମହାଦେବ,

ଲଣ୍ଡୁକେଶ୍ୱର ମହାଦେବ ପ୍ରଭୃତି ଓଡ଼ିଶାର ଅସଂଖ୍ୟ ଦେବଦେବୀଙ୍କ ନାମ ଉଲ୍ଲେଖ ଅଛି । ସେହିପରି ଚିତ୍ରୋତ୍ପଳା, ଚନ୍ଦ୍ରଭାଗା, ଋଷିକୂଲ୍ୟା, ବୈତରଣୀ ପ୍ରଭୃତି ନଦୀମାନଙ୍କର କୂଳରେ ଥିବା ବିଭିନ୍ନ ଧର୍ମପୀଠଗୁଡ଼ିକର ବର୍ଣ୍ଣନା ଅଛି । ଯାଜପୁର ବିରଜା କ୍ଷେତ୍ରର ମାହାତ୍ମ୍ୟ ଏକାଧିକ ସ୍ଥାନରେ ମଧ୍ୟ ବର୍ଣ୍ଣିତ ଅଛି । ଏଥିରୁ ତାଙ୍କର ସ୍ୱଦେଶପ୍ରୀତିର ପରିଚୟ ମିଳେ ।

## ରାମାୟଣର ପ୍ରଭାବ

ରାମାୟଣର ବିଭିନ୍ନ ପ୍ରସଙ୍ଗ, ଗଳ୍ପ, ଉପାଖ୍ୟାନକୁ ଅବଲମ୍ବନ କରି ପରବର୍ତ୍ତୀ କାଳରେ କବିମାନେ ଗ୍ରନ୍ଥ ରଚନା କରିବାକୁ ପ୍ରେରଣା ପାଇଲେ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଶ୍ରୀରାମଙ୍କ ଉପରେ ଆଧାରିତ 'ବୈଦେହୀଶ ବିଳାସ' ରଚନା କରି ଓଡ଼ିଶାର ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କଲେ । ଏହା ପରେ ବିଶ୍ୱନାଥ ଖୁଣ୍ଟିଆ 'ବିଚିତ୍ର ରାମାୟଣ' ରଚନା କରିଛନ୍ତି । ଏହାଛଡ଼ା ଅନ୍ୟାନ୍ୟ ରାମକଥା ସମ୍ବଳିତ ଗ୍ରନ୍ଥମାନଙ୍କରେ ବଳରାମ ଦାସଙ୍କ ରଚିତ ରାମାୟଣ ଗ୍ରନ୍ଥର ପ୍ରଭାବ ଅନୁଭୂତ ହୁଏ ।

ଓଡ଼ିଆ ଭାଷାରେ ରାମାୟଣ ରଚନା କରି ଓଡ଼ିଆଙ୍କ ପାଟିରେ ରାମ ଭକ୍ତି ଧାରା ବୁହାଇ ବଳରାମ ଦାସ ଯେ ଉତ୍କଳର ବାଲ୍ମୀକିରେ ପରିଣତ ହୋଇଗଲେ, ଏହା ନିଃସନ୍ଦେହରେ କୁହାଯାଇପାରେ ।

## ଲକ୍ଷ୍ମୀ ପୁରାଣ

ରାମାୟଣ ପରେ ବଳରାମ ଦାସଙ୍କର ସର୍ବାଧିକ ଲୋକପ୍ରିୟ ରଚନା ହେଉଛି 'ଲକ୍ଷ୍ମୀ ପୁରାଣ' । ଏଥିରେ ମହାଲକ୍ଷ୍ମୀଙ୍କର ମାହାତ୍ମ୍ୟ ବର୍ଣ୍ଣିତ ଅଛି । ପ୍ରତିବର୍ଷ ମାର୍ଗଶିର ମାସ ଗୁରୁବାର ଦିନ ଲକ୍ଷ୍ମୀଙ୍କ ପୂଜା ହୁଏ । ଏହି ଦିନ ଏହି ପୁରାଣ ପାଠ ହୁଏ । ଏହାର ବିଷୟବସ୍ତୁ ହେଲା ଜଗତର ଠାକୁରାଣୀ ମା' ଲକ୍ଷ୍ମୀ ତାଙ୍କର ପୂଜା ବିଧାନ କିପରି ଚାଲିଛି ତାହା ଜାଣିବାକୁ ଚାହିଁଛନ୍ତି । ସେ ଏକ ବୃଦ୍ଧାର ଛଦ୍ମବେଶ ଧାରଣ କରି ଦ୍ୱାର ଦ୍ୱାର ବୁଲିଛନ୍ତି । ପ୍ରଥମେ ସେ ଏକ ସାଧବ ଘରେ ପହଞ୍ଚିଛନ୍ତି । ଲକ୍ଷ୍ମୀ ପୂଜାର ବିଧି ବିଧାନ ସାଧବାଣୀକୁ ବୁଝାଇଛନ୍ତି । ଏହାପରେ ମନ୍ଦିରର ମୁଖ୍ୟ ପୁରୋହିତଙ୍କ ଘରକୁ ଓ ତା'ପରେ ବଣିକ ଗୃହକୁ ଯାଇଛନ୍ତି । ମାତ୍ର କେଉଁଠାରେ ତାଙ୍କର ପୂଜା ହେଉ ନ ଥିବା ଦେଖିଛନ୍ତି । ଶେଷରେ ନଗର ଉପକଣ୍ଠରେ ଥିବା ଶ୍ରୀୟା ନାମକ ଏକ ଚଣ୍ଡାଳୁଣୀ ଘରକୁ ଯାଇଛନ୍ତି । ତା'ର ଗୃହରେ ଲକ୍ଷ୍ମୀ ପୂଜା ବିଧାନ ଠିକ୍ ଭାବରେ ହେଉଥିବା ଦେଖିଛନ୍ତି । ତା'ର ଭକ୍ତି ଓ ନିଷ୍ଠାରେ ପ୍ରସନ୍ନ ହୋଇ ବର ଦେଇଛନ୍ତି । ଶ୍ରୀୟା ଚଣ୍ଡାଳୁଣୀର ଜୀର୍ଣ୍ଣ କୁଟୀର ପ୍ରାସାଦରେ ପରିଣତ ହୋଇଛି ।

କବିଙ୍କର ଲକ୍ଷ୍ୟ ଏତିକିରେ ସାଧିତ ହୋଇ ନାହିଁ । ସମାଜରୁ ଛୁଆଁ ଅଛୁଆଁ ଦୂର କରିବା ଦିଗରେ ସେ ବ୍ରତୀ ଥିଲେ । ଏହା ମହାଲକ୍ଷ୍ମୀଙ୍କଦ୍ୱାରା ସମ୍ଭବ ହୋଇଛି ।

ଶ୍ରୀୟା ଚଣ୍ଡାଳୁଣୀ ଘରୁ ଫେରି ମହାଲକ୍ଷ୍ମୀ ଶ୍ରୀମନ୍ଦିର ଭିତରକୁ ଗଲାବେଳେ ଅଗ୍ରଜ ବଳଭଦ୍ରଙ୍କ ଆଦେଶରେ ଜଗନ୍ନାଥ ତାଙ୍କୁ ଅଟକାଇଛନ୍ତି । ଚଣ୍ଡାଳ ଘରେ ପଶି ଜାତି ହରାଇଥିବାରୁ ନାନା ପ୍ରକାରେ ଭର୍ତ୍ସନା କରିଛନ୍ତି । ଶେଷରେ ମନ୍ଦିରରୁ ଘଉଡ଼ାଇ ଦେଇଛନ୍ତି । ଅଭିମାନରେ ମହାଲକ୍ଷ୍ମୀ ଦେହର ସମସ୍ତ ଅଳଙ୍କାରମାନ ବାହାର କରି ଜଗନ୍ନାଥଙ୍କ ହାତରେ ଦେଇଛନ୍ତି ଏବଂ ଯିବା ପୂର୍ବରୁ ସ୍ୱାମୀଙ୍କୁ ଅଭିଶାପ ଦେଇଛନ୍ତି –

''ମୁହିଁ ଯାଉଅଛି ହୀନ ଅରକ୍ଷିତ ହୋଇ
ମୋର ଅଭିଶାପ ଘେନ ପ୍ରଭୁ ଭାବଗ୍ରାହୀ ।
ସତେ ଯେବେ ଚନ୍ଦ୍ର ସୂର୍ଯ୍ୟ ହୋନ୍ତି ଆତଯାତ
ତୁମ୍ଭଙ୍କୁ ଅନ୍ନ ନ ମିଳୁ ଆହେ ଜଗନ୍ନାଥ ।''

ମହାଲକ୍ଷ୍ମୀ ଏହାପରେ ବିଶ୍ୱକର୍ମାଙ୍କୁ ଡକାଇ ନିଜ ରହିବାପାଇଁ ନଗର ବାହାରେ ଏକ ସୁନ୍ଦର ପ୍ରାସାଦ ନିର୍ମାଣ କରିଛନ୍ତି । ବେତାଳମାନଙ୍କୁ ଡାକି ଶ୍ରୀମନ୍ଦିରର ସମସ୍ତ ଧନ, ରତ୍ନ, ଖାଦ୍ୟପଦାର୍ଥ ହରଣ କରିନେଇଛନ୍ତି । ଜଗତର ନାଥ ହୋଇଛନ୍ତି ଦରିଦ୍ର ଭିକାରି । ଦୁଇବେଳା ଖାଦ୍ୟ ପାଇ ନାହାନ୍ତି । ଦ୍ୱାରେ ଦ୍ୱାରେ ଯାଇ ଭିକ୍ଷା ମାଗିଛନ୍ତି । ମାତ୍ର ଲକ୍ଷ୍ମୀଛଡ଼ାଙ୍କୁ ଭିକ୍ଷା କିଏ ଅବା ଦେବ ! ଯିଏ ବା ଖାଇବାକୁ ଦେବାପାଇଁ ଘରକୁ ଡାକି ନେଇଛନ୍ତି, ତାହାଙ୍କ ସମ୍ପତ୍ତି ଉଭେଇ ଯାଇଛି । ପାଇଥିବା କିଛି ଖଇକୁ ପବନ ମଧ୍ୟ ଉଡ଼ାଇ ନେଇଛି । ଏମିତି ଉପବାସରେ ରହିଲାପରେ ଶେଷରେ ଲକ୍ଷ୍ମୀଙ୍କ ପ୍ରାସାଦରେ ପହଞ୍ଚିଛନ୍ତି । ଲକ୍ଷ୍ମୀ ଦୟା କରିଛନ୍ତି । ସେମାନଙ୍କୁ ଦିବ୍ୟ ଅନ୍ନ ସୁନା ଥାଳିରେ ପରଷିଛନ୍ତି । ଜଗନ୍ନାଥ ଲକ୍ଷ୍ମୀଙ୍କ ରାନ୍ଧଣାରୁ ସବୁ ବିଷୟ ଜାଣିପାରିଛନ୍ତି । ବଡ଼ଭାଇଙ୍କ ଅନୁମତି ନେଇ ପ୍ରାସାଦ ଭିତରକୁ ଯାଇ ଲକ୍ଷ୍ମୀଙ୍କୁ ଦେଖା କରିଛନ୍ତି ଓ ଦୋଷପାଇଁ କ୍ଷମା ମାଗିଛନ୍ତି । ଲକ୍ଷ୍ମୀ ତାହାଙ୍କୁ କହିଛନ୍ତି –

''ଚଣ୍ଡାଳୁଣୀ ବୋଲି ମତେ ଦେଲ ଘଉଡ଼ାଇ ।
ଚଣ୍ଡାଳୁଣୀ ଘରେ ଏବେ ଭକ୍ଷିଲ ଗୋସାଇଁ
ଚଣ୍ଡାଳ ବିଟାଳ ହେଲ ଦୁଇ ଗୋଟି ଭାଇ ।''

ଜଗନ୍ନାଥ ଲକ୍ଷ୍ମୀଙ୍କୁ ଶ୍ରୀମନ୍ଦିରକୁ ଫେରିଯିବାକୁ ଅନୁରୋଧ କରିଛନ୍ତି । ମାତ୍ର ମହାଲକ୍ଷ୍ମୀ ଫେରିବା ପୂର୍ବରୁ ଜଗନ୍ନାଥଙ୍କୁ ଶପଥ କରାଇଛନ୍ତି –

"ଚଣ୍ଡାଳୁ ବ୍ରାହ୍ମଣଯାଏ ଖୁଆଖୋଇ ହେବେ
ସମସ୍ତେ ଖାଇଣ ଜଳେ ହସ୍ତ ନ ଧୋଇବେ ।
ହାଡ଼ିର ହାତରୁ ବ୍ରାହ୍ମଣ ଛଡ଼ାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତକୁ ମୁଣ୍ଡରେ ପୋଛିବେ ।"

ଜଗନ୍ନାଥ ଏଥିରେ ସମ୍ମତ ହୋଇଛନ୍ତି । ମହାଲକ୍ଷ୍ମୀ ମନ୍ଦିରକୁ ଫେରିଯିବାପରେ, 'ଲକ୍ଷ୍ମୀ ପୁରାଣ'ଟି ସମାପ୍ତ ହୋଇଛି ।

ସମାଜରେ ଜାତି, ଧର୍ମ, ବର୍ଣ୍ଣ ବା ଗୋଷ୍ଠୀ ଭେଦଭାବ ଦୂର କରି କବି ଏଥିରେ ସାମ୍ୟ ଓ ମୈତ୍ରୀ ପ୍ରତିଷ୍ଠା କରିଛନ୍ତି ।

'ଲକ୍ଷ୍ମୀ ପୁରାଣ' ଓଡ଼ିଆର ଅତି ପ୍ରିୟ ପୁରାଣ । ଯୁଗ ଯୁଗ ଧରି ଓଡ଼ିଆ ଜାତି ଏହାକୁ ପାଠ କରୁଅଛି । ଓଡ଼ିଶାର ଆଧ୍ୟାତ୍ମିକ ଜୀବନ ଉପରେ ଗଭୀର ପ୍ରଭାବ ବିସ୍ତାର କରିପାରିଥିବା ଆଉ କୌଣସି ଗ୍ରନ୍ଥ ଥିବା ଦୃଷ୍ଟିଗୋଚର ହୁଏ ନାହିଁ ।

'ଲକ୍ଷ୍ମୀ ପୁରାଣ' ଷୋଡ଼ଶ ଶତାବ୍ଦୀର ଓଡ଼ିଆ ଜନଜୀବନର ଏକ ଐତିହାସିକ ଦଲିଲ ବୋଲି ଆଲୋଚକ ହେମନ୍ତ ଦାସ ମତ ଦେଇଛନ୍ତି ।

## ମୃଗୁଣୀ ସ୍ତୁତି

ସୁବାହୁ ନାମକ ଘଞ୍ଚ ଜଙ୍ଗଲରେ ତାରାବତୀ ନାମକ ଏକ ହରିଣୀ ପ୍ରତିଦିନ ବିଚରଣ କରୁଥାଏ । ଥରେ ଗର୍ଭବତୀ ହୋଇଥିବାରୁ ଅନ୍ୟ ଛୁଆକୁ ଧରି ଅଳସ ଭଙ୍ଗୀରେ ବିଚରଣ କରୁଥିଲା । ବିରୂପାକ୍ଷ ନାମରେ ଏକ ବ୍ୟାଧ ଶିକାରପାଇଁ ପହଞ୍ଚିଲା । ସେ ହରିଣୀକୁ ଦେଖି ଅତିଶୟ ଆନନ୍ଦିତ ହୋଇଉଠିଲା । ଚାରିଆଡ଼େ ବାଟ ବନ୍ଦ କରିଦେଇ ଜାଲ ବସାଇଦେଲା । ପଛ ପଟେ ଅଗ୍ନି ଲଗାଗଲା । ପ୍ରବେଶ ଦ୍ୱାରରେ ଧନୁଶର ଧରି ଆଗେଇବାକୁ ଲାଗିଲା ।

ମହାବିପଦରୁ ଉଦ୍ଧାର ପାଇବାପାଇଁ ମୃଗୁଣୀଟି ଅନ୍ୟ ବାଟ ନ ଦେଖି ନାରାୟଣଙ୍କୁ ଅତି ବ୍ୟାକୁଳ ହୋଇ ଡାକିଛି –

"ମହାଘୋର ସଙ୍କଟେ ଯେ ପଡ଼ିଲା ଜୀବନ
ଉଦ୍ଧରିଣ ରଖ ମୋତେ ପ୍ରଭୁ ଭଗବାନ

× × ×

ରଖ ରଖ ଜଗନ୍ନାଥ ଦୁଃଖୀର ସଙ୍ଗାତ
ତୁମ୍ଭେ ନ ରଖିଲେ ଆଜ ହୋଇଲି ଅନାଥ ।"

ଭଗବାନ୍ ଡାକ ଶୁଣିଛନ୍ତି । ଘନ ଘନ ବିଜୁଳି ସହ ବର୍ଷା ହୋଇଛି । ପ୍ରବଳ ବର୍ଷାରେ ପ୍ରଜ୍ୱଳିତ ଅଗ୍ନି ଲିଭିଯାଇଛି । ବ୍ୟାଧର ଜାଲଗୁଡ଼ିକ ଛିଣ୍ଡି ଉଡ଼ିଯାଇଛି । ବ୍ୟାଧ ସର୍ପ ଦଂଶନରେ ମୃତ୍ୟୁବରଣ କରିଛି । ମହାଘୋର ବିପତ୍ତିରୁ ମୃଗୁଣୀଟି ଉଦ୍ଧାର ପାଇଛି ।

ଆକାରରେ କ୍ଷୁଦ୍ର ହେଲେହେଁ ଏହା ଏକ ଉତ୍କୃଷ୍ଟ ଭକ୍ତି ରସାତ୍ମକ ପୁରାଣ ହିସାବରେ ଗଣ୍ୟ ହୁଏ ।

### କାନ୍ତ କୋଇଲି

ଏହା ମଧ୍ୟ ଆଉ ଏକ ଜନପ୍ରିୟ ରଚନା । ରାବଣ ସୀତାଙ୍କୁ ଅପହରଣ କରି ନେଇଛି । ନିଃସହାୟା ଓ ନିରୂପାୟା ସୀତା ବିକଳ ହୋଇ କ୍ରନ୍ଦନ କରୁଛନ୍ତି –

''କୋଇଲି ଲୋ କାନ୍ତ ମୋର ଗଲେ ମୃଗ ମାରି
କପଟେ ରାବଣ ମୋତେ ନେଉଅଛି ଧରି ଲୋ କୋଇଲି ।''

ଏହା ବ୍ୟତୀତ କବି 'ଭାବସମୁଦ୍ର', 'ବେଢ଼ା ପରିକ୍ରମା', 'ବିଲଙ୍କା ରାମାୟଣ', 'ବଉଳା ଅଧ୍ୟାୟ' ପ୍ରଭୃତି କ୍ଷୁଦ୍ର କ୍ଷୁଦ୍ର ଗ୍ରନ୍ଥମାନ ରଚନା କରିଛନ୍ତି । ଭାବସମୁଦ୍ରରେ ଭଗବାନ୍ କିପରି ଭକ୍ତର ଦୁଃଖ ମୋଚନ କରିଛନ୍ତି ତାହା ବର୍ଣ୍ଣିତ ଅଛି । ବେଢ଼ା ପରିକ୍ରମା ମଧ୍ୟ ଏକ କ୍ଷୁଦ୍ର ରଚନା । ଏଥିରେ ମନ୍ଦିର ମଧ୍ୟରେ ଥିବା ଅନ୍ୟାନ୍ୟ ଦେବଦେବୀଙ୍କ ପୂଜାପଦ୍ଧତିମାନ ବର୍ଣ୍ଣନା କରାଯାଇଛି । ବିଲଙ୍କା ରାମାୟଣରେ ସହସ୍ରଶିରା ରାବଣ ବଧ ଉପାଖ୍ୟାନ ଅଛି । 'ବଉଳା ଅଧ୍ୟାୟ' ଏକ ଶହ ଚାଳିଶ ପଦ ବିଶିଷ୍ଟ ଏକ କ୍ଷୁଦ୍ର ରଚନା । ଏଥିରେ ଅନ୍ନଦାନର ମାହାତ୍ମ୍ୟ ବର୍ଣ୍ଣିତ ଅଛି । ଯୋଗୀମାନେ କେନ୍ଦରା ବଜାଇ ଏହି ଗୀତକୁ ଗାଇ ଦ୍ୱାରେ ଦ୍ୱାରେ ଭିକ୍ଷା ମାଗନ୍ତି ।

### ଭଜନ

ବଳରାମ ଦାସ କେବଳ 'ରାମାୟଣ' ବା 'ଲକ୍ଷ୍ମୀ ପୁରାଣ' ରଚନା କରି ନାହାନ୍ତି, ସେ ଅନେକ ଭଜନ ଜଣାଣ ଲେଖି ଭକ୍ତିପ୍ରାଣତାର ପରିଚୟ ଦେଇଛନ୍ତି । ତାଙ୍କର ଭଜନଗୁଡ଼ିକ ଅତି ସହଜ ଓ ସରଳ । ସହର ଓ ଗାଁମାନଙ୍କରେ ଯୋଗୀମାନେ ଗିନି, ଖଞ୍ଜଣି ବଜାଇ ଗାଉଥିବାର ଦେଖାଯାଏ ।

ବଳରାମ ଦାସ ପରମ ଆରାଧ୍ୟଦେବତା ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କେତେକ ଭଜନ ରଚନା କରିଛନ୍ତି । ଏଥିରେ ଭକ୍ତିପ୍ରାଣର ଆକୁଳତା ଅଛି । ସେ ଭବସାଗରରୁ ମୁକ୍ତି ପାଇବାପାଇଁ ପ୍ରାର୍ଥନା କରିଛନ୍ତି –

"ଦୀନ ବାନ୍ଧବ ହେ ମୋ ଦୁଃଖ ନ ଗଲା ଯେ
ତୁମ୍ଭେ ଦୀନବନ୍ଧୁ ମୋତେ ପାସୋରିଲେ
ମୋ ବନ୍ଧୁ ହୋଇବ କିଏ ?"

ପୁଣି ଗାଇଛନ୍ତି –

"ଏ ଭବ ସାଗରୁ ତରିବା ନିମନ୍ତେ
ତୁମ୍ଭେ ନ ରଖିଲେ ପଥର ବାନ୍ଧିଛ ଭେଳା
ଭାସି ମୁଁ ଯାଉଛି ରଖ ରଖ ଚକାଡୋଳା ।"

ଭଗବାନ୍ ଭକ୍ତର ଡାକ ହୁଏତ ଶୁଣି ନାହାନ୍ତି । ଭକ୍ତ ଅଭିମାନ କରିଛି । ଆଉ ଅନ୍ୟ ଭକ୍ତମାନଙ୍କପାଇଁ ସେ କ'ଣ ନ କରିଛନ୍ତି ! କବିଙ୍କ ଭାଷାରେ –

"ମହାପ୍ରଭୁ ଭକତ ଦୁଃଖରେ ଦୁଃଖୀ
ରୁଧିର ନଦୀ ସାତ ତାଳ ମଧ୍ୟରୁ ଭରତିଆ ପକ୍ଷୀ ରଖି
ଭକତ ନିମନ୍ତେ ହସ୍ତିନାପୁରକୁ – ପଡ଼ା ମାଗିବାକୁ ଗଲ
ବେଢ଼ି କଉରବେ ଯେବେ ଝିଙ୍ଗାସିଲେ
ଭକତ ହିତେ ସହିଲ ।"

ଭଗବାନ୍ ଦୂତ ହୋଇ ହସ୍ତିନାପୁରକୁ ଯାଇଛନ୍ତି । ଜରାସନ୍ଧକୁ ପୁଣି ବଧ କରିଛନ୍ତି । ଶିଶୁପାଳ କବଳରୁ ରୁକ୍ମିଣୀଙ୍କୁ ରକ୍ଷା କରିଛନ୍ତି । ଅଥଚ ତାଙ୍କ ଦୁଃଖ ଦୂର ହେଉ ନାହିଁ ।

କବି ରାମ, କୃଷ୍ଣ, ବିଷ୍ଣୁ, ମତ୍ସ୍ୟ, କୂର୍ମ, ବରାହ ଓ ବାମନଙ୍କୁ ଏକ ବୋଲି କଳ୍ପନା କରିଛନ୍ତି ।

ବଳରାମ ଦାସଙ୍କର ଆଉ ଏକ ଜନପ୍ରିୟ ଭଜନ –

"ମୁଖେ ଭଜ ରାମ କୃଷ୍ଣ ହରି ଲୋ ସାରୀ
ମାରି ନେବଟି କ୍ରୋଧ ମଞ୍ଜାରୀ ଲୋ ସାରୀ
ମନ ମତ୍ତ ହୋଇ ନ ପାଇ
ନିତି ପ୍ରତି ଖଦା କଲ ।
ଛିଡ଼ାଇ ପଳାଇଗଲା ଲୋ ସାରୀ ।"

କବି ପୁରୀ ନିବାସୀ ଥିଲେ । ଜଗନ୍ନାଥଙ୍କ ବିଭିନ୍ନ ଯାନିଯାତ୍ରା ଉପରେ ସେ ସଙ୍ଗୀତମାନ ରଚନା କରିଛନ୍ତି । ପହଣ୍ଡି ବିଜେ ଉପରେ ତାଙ୍କର ଏକ ଭଜନ ଅଛି –

"ସଖୀ ଚାହାଁରେ ହସ ହସ ହେଉଛନ୍ତି ନାହା ଗୋ !
ବେଦ ଗଗନେ କହିଛି ଯାହା ଗୋ
ନିଘୋଡ଼ କରି ଭୁଜ ଧରି ନେଉଛନ୍ତି
ଏହାଙ୍କର କେହି ନାହାନ୍ତି ସାହା ଗୋ... ।"

ବଳରାମ ଜଗନ୍ନାଥଙ୍କଠାରେ ଶରଣ ପଡ଼ିଛନ୍ତି । ଜଗନ୍ନାଥଙ୍କ ବିନା ସଂସାରରେ ତାଙ୍କର କେହି ନାହାନ୍ତି । ତାଙ୍କ ଦର୍ଶନ ବିନା ତାଙ୍କୁ ଅନ୍ନ ଜଳ ରୁଚେ ନାହିଁ । ଭକ୍ତି ଗଦ୍‌ଗଦ ଚିତ୍ତରେ ସେ ଗାଇ ଉଠିଛନ୍ତି –

''ଜଗନ୍ନାଥ ଦେଖିବି ଚାହିଁବି ଜଗନ୍ନାଥ
ଜଗନ୍ନାଥ ଛାମୁରେ ଯୋଡ଼ିଛି ଦୁଇ ହାତ
ଜଗନ୍ନାଥ ବୋଲି ମୁଁ ବଞ୍ଚଇ ନିତିଦିନ
ଜଗନ୍ନାଥ ବିନୁ ଆନେ ନ ବଳଇ ମନ ।''

**ତତ୍ତ୍ୱଜ୍ଞାନ ସମ୍ବନ୍ଧୀୟ ରଚନା**

ବଳରାମ ଦାସ ମଧ୍ୟ ପ୍ରଭୁଙ୍କ ନିର୍ଦ୍ଦେଶରେ ସଂସ୍କୃତର 'ଶ୍ରୀମଦ୍ ଭଗବଦ୍‌ଗୀତା'ର ଅନୁବାଦ କରିଥିଲେ । ସେ ଏଥିରେ ଶବ୍ଦାନୁବାଦ ନ କରି ଏହାର ଭାବାନୁବାଦ କରିଛନ୍ତି । ସେ ଗୀତାର ଗୂଢ଼ ଦାର୍ଶନିକ ତଥ୍ୟକୁ କଥିତ ଓଡ଼ିଆ ଭାଷାରେ ଉପସ୍ଥାପିତ କରିଛନ୍ତି । ଏହାଛଡ଼ା, ସେ 'ବିରାଟ ଗୀତା', 'ଅମରକୋଷ ଗୀତା', 'ବେଦାନ୍ତସାର ଗୁପ୍ତଗୀତା', 'ଦୀପ୍ତିସାର ଗୀତା' ପ୍ରଭୃତି ନାନା ଗୀତାମାନ ରଚନା କରିଛନ୍ତି । ଏଗୁଡ଼ିକ ହେଉଛି ଯୋଗଶାସ୍ତ୍ର ସମ୍ବନ୍ଧୀୟ ଗ୍ରନ୍ଥ । ଅମରକୋଷ ଗୀତା ଏକ ବ୍ରହ୍ମଜ୍ଞାନମୂଳକ ଗ୍ରନ୍ଥ । ଏଥିରେ ସୃଷ୍ଟିର ଉତ୍ପତ୍ତି, ପିଣ୍ଡ, ବ୍ରହ୍ମାଣ୍ଡକଥା, ପଞ୍ଚଭୂତ, ଷଡ଼ଚକ୍ର ଆଦି ବିଷୟ ବର୍ଣ୍ଣିତ ହୋଇଛି । ବେଦାନ୍ତସାର ଗୁପ୍ତଗୀତାରେ ବେଦାନ୍ତର ସୂକ୍ଷ୍ମତତ୍ତ୍ୱମାନ ଆଲୋଚନା କରିଛନ୍ତି । ଦୀପ୍ତିସାର ଗୀତାରେ କବି ବେଦତତ୍ତ୍ୱ ସମ୍ବନ୍ଧରେ ସମ୍ୟକ୍ ଧାରଣା ଦେଇଛନ୍ତି । ଏସବୁ ସରଳ ତରଳ ଭାଷାରେ ରଚିତ । ବସ୍ତୁତଃ, ସେ ଓଡ଼ିଆ ଭାଷା ଓ ସାହିତ୍ୟରେ ଭକ୍ତି ଓ ତତ୍ତ୍ୱଜ୍ଞାନକୁ ସମନ୍ୱିତ କରି ଏକ ନୂତନ ଯୁଗ ସୃଷ୍ଟି କରିଛନ୍ତି ।

ବଳରାମ ଦାସ ଥିଲେ ଏକାଧାରରେ ଭକ୍ତ, କବି, ସାଧକ ଓ ଦାର୍ଶନିକ । ଶ୍ରୀଜଗନ୍ନାଥଙ୍କୁ ତାଙ୍କ ଭକ୍ତି ଭାବରେ ସେ ଯେପରି ବାନ୍ଧି ରଖି ପାରିଥିଲେ ତାହା ସେ ଯୁଗରେ ମଧ୍ୟ ସମସ୍ତଙ୍କୁ ସ୍ତମ୍ଭୀଭୂତ କରିଥିଲା । ଶ୍ରୀଜଗନ୍ନାଥଙ୍କ କୃପାରୁ ସେ ଅନନ୍ୟ କବି ପ୍ରତିଭାର ଅଧିକାରୀ ହୋଇଥିଲେ । ତାଙ୍କର ଅମର ଲେଖନୀରୁ ନିଃସୃତ ହୋଇଥିଲା ଅସଂଖ୍ୟ ରଚନା, ଯାହାକି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କଲା । ତାଙ୍କ ରଚିତ 'ଜଗମୋହନ ରାମାୟଣ' ବା 'ଲକ୍ଷ୍ମୀ ପୁରାଣ' ଉତ୍କଳର ଆଧ୍ୟାତ୍ମିକ ଜୀବନକୁ ଯେପରି ପ୍ରଭାବିତ କରିଛି ତା'ର ତୁଳନା ନାହିଁ । ସେ ମଧ୍ୟ ଦାର୍ଶନିକ ତତ୍ତ୍ୱକୁ ସଂସ୍କୃତର ନିଗଡ଼ ବନ୍ଧନ ମଧ୍ୟରୁ ମୁକ୍ତ କରି କଥିତ ଓଡ଼ିଆ ଭାଷାରେ ସାଧାରଣ ସମ୍ମୁଖରେ ବାଢ଼ିଛନ୍ତି । ସେଥିପାଇଁ ସେ ଓଡ଼ିଆ ଜାତିର ଭକ୍ତି ଇତିହାସରେ ଅମର ହୋଇ ରହିଛନ୍ତି ।



## ଅତିବଡ଼ୀ
# ଜଗନ୍ନାଥ ଦାସ

ଓଡ଼ିଆ ସାହିତ୍ୟ ଇତିହାସରେ ପଞ୍ଚସଖା ଯୁଗୀୟ କବିମାନଙ୍କ ମଧ୍ୟରେ ଜଗନ୍ନାଥ ଦାସଙ୍କ ସ୍ଥାନ ଅଦ୍ୱିତୀୟ । ସେ ଜଣେ ଅସାଧାରଣ ଶକ୍ତିସମ୍ପନ୍ନ ପଣ୍ଡିତ ଓ ଆଧ୍ୟାତ୍ମିକ ପୁରୁଷ ଥିଲେ । ତାଙ୍କର ଅଲୌକିକ ପ୍ରତିଭା, ନିରବଚ୍ଛିନ୍ନ ସାଧନା ଓ ଦିବ୍ୟଦୃଷ୍ଟି ବଳରେ ଯେଉଁ ଭାଗବତ ରଚନା କରିଯାଇଛନ୍ତି, ସେଥିପାଇଁ ସେ ଉତ୍କଳର ଘରେ ଘରେ ସୁପରିଚିତ । ଇଂଲଣ୍ଡରେ ଜନ ଉଇକ୍ଲିଫ୍ ବା ଜର୍ମାନରେ ମାର୍ଟିନ ଲୁଥର ଯେପରି ବାଇବେଲକୁ ଇଂରାଜୀରେ ଓ ଜର୍ମାନୀରେ ଅନୁବାଦ କରି ନବ ଜାଗରଣ ସୃଷ୍ଟି କଲେ, ସେହିପରି ଜଗନ୍ନାଥ ଦାସ ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ କରି ଓଡ଼ିଆ ଜାତିର ଆଧ୍ୟାତ୍ମିକ ପ୍ରାଣରେ ଉନ୍ନତି ଘଟାଇଛନ୍ତି । ତେଣୁ ତାଙ୍କୁ ଉତ୍କଳ ଭୂମିର ମାର୍ଟିନ ଲୁଥର ବୋଲି କୁହାଯାଇପାରେ ।

### ବାଲ୍ୟ ଜୀବନ

ପୁରୀ ନିକଟବର୍ତ୍ତୀ କପିଳେଶ୍ୱରପୁର ନାମକ ବ୍ରାହ୍ମଣ ଶାସନରେ ୧୪୯୦ ମସିହାରେ ଭାଦ୍ର ମାସ ଶୁକ୍ଳ ପକ୍ଷ ଅଷ୍ଟମୀ ତିଥିରେ ଜଗନ୍ନାଥ ଦାସ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଭଗବାନ୍ ଦାସ ଓ ମାତାଙ୍କର ନାମ ଥିଲା ପଦ୍ମାବତୀ । ସେ ଜଗନ୍ନାଥଙ୍କ ଅନୁଗ୍ରହରୁ ଜନ୍ମଲାଭ କରିଥିଲେ ବୋଲି ତାଙ୍କ ପିତାଙ୍କର ବିଶ୍ୱାସ ଥିଲା । ତେଣୁ ସେ ପୁତ୍ରର ନାମ ଜଗନ୍ନାଥ ଦାସ ରଖିଥିଲେ ।

ଜଗନ୍ନାଥ ଦାସ ଶ୍ରୀରାଧାଙ୍କର ଅବତାରରୂପେ ଧରାପୃଷ୍ଠରେ ଅବତୀର୍ଣ୍ଣ ହୋଇଥିଲେ ବୋଲି ଦିବାକର ଦାସ ତାହାଙ୍କ 'ଜଗନ୍ନାଥ ଚରିତାମୃତ' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି । ମାତ୍ର ଏହା ସପକ୍ଷରେ ସେପରି ବଳିଷ୍ଠ ଯୁକ୍ତି ନାହିଁ ।

ବାଲ୍ୟକାଳରୁ ଜଗନ୍ନାଥଙ୍କ ହୃଦୟରେ ଭାଗବତ ଭକ୍ତିଧାରଣାର ଉଦ୍ରେକ ହୋଇଥିଲା । ବାଳକମାନଙ୍କ ସଙ୍ଗେ ଖେଳୁଥିବାବେଳେ ସେ ରାମ ନାମ ଉଚ୍ଚାରଣ କରୁଥିଲେ । ଚାରି ବର୍ଷ ବୟସରେ ତାଙ୍କର ବର୍ଣ୍ଣବୋଧ ପାଠ ଓ ଆଠ ବର୍ଷ ବୟସରେ ତାଙ୍କର ବ୍ରତୋପନୟନ ପ୍ରଭୃତି କାର୍ଯ୍ୟ ଶେଷ ହେଲା । ତାଙ୍କ ପିତା ଜଣେ ସଂସ୍କୃତ ପଣ୍ଡିତ ଥିଲେ । ତାଙ୍କର ତତ୍ତ୍ୱାବଧାନରେ ଜଗନ୍ନାଥ ବେଦ, ବେଦାଙ୍ଗ ଓ ଅନ୍ୟାନ୍ୟ ସଂସ୍କୃତ ଗ୍ରନ୍ଥ ଅଧ୍ୟୟନ କଲେ । ମାତ୍ର ବାର ବର୍ଷ ବୟସରେ ତାଙ୍କ ପିତା ତାଙ୍କର ବିବାହଦେବାପାଇଁ ଇଚ୍ଛା ପ୍ରକାଶ କଲେ । ମାତ୍ର ଜଗନ୍ନାଥ ସାଧାରଣ ଜୀବନ ଯାପନ କରିବାକୁ ଚାହିଁ ନ ଥିଲେ । ସେ ପିତାଙ୍କ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ସେ ବିଦ୍ୟା ଅଧ୍ୟୟନରେ ମନ ଦେଲେ । ନିଜର ଅସାଧାରଣ ବୁଦ୍ଧି ବଳରେ ସେ ବିଭିନ୍ନ ଶାସ୍ତ୍ରରେ ପାରଦର୍ଶିତା ଲାଭ କଲେ । ସେ ବ୍ୟାକରଣ ଶେଷ କରି ଯଜୁର୍ବେଦ, ସାମବେଦ, ବିଭିନ୍ନ ବେଦାଙ୍ଗ, ନ୍ୟାୟ, ବେଦାନ୍ତ, ରାମାୟଣ, ମହାଭାରତ ପ୍ରଭୃତି ଅଧ୍ୟୟନ କଲେ । ଶେଷରେ ସେ ସଂସ୍କୃତ ଲିଖିତ 'ଶ୍ରୀମଦ୍‌ଭାଗବତମ୍' ଗ୍ରନ୍ଥ ଅଧ୍ୟୟନ କଲେ ।

୧୯ବର୍ଷ ବୟସରେ ଜଗନ୍ନାଥ ଗୃହ ତ୍ୟାଗ କରି ପୁରୀ ଶ୍ରୀକ୍ଷେତ୍ରକୁ ଆସିଲେ ଓ ଜଗନ୍ନାଥଙ୍କ ସେବାରେ ନିଜକୁ ନିୟୋଜିତ କଲେ । ତାଙ୍କର ପିତା ଭଗବାନ୍ ଦାସ ଶ୍ରୀମନ୍ଦିରରେ ପୁରାଣପଣ୍ଡା ଥିଲେ । ତାଙ୍କର ମୃତ୍ୟୁ ପରେ ଜଗନ୍ନାଥ ଦାସ ପୈତୃକ କର୍ମରେ ନିଯୁକ୍ତ ହେଲେ । ସେ ପ୍ରତ୍ୟହ ଶ୍ରୀମନ୍ଦିରର ଦକ୍ଷିଣପାର୍ଶ୍ୱରେ ଥିବା ବଟଗଣେଶଙ୍କଠାରେ ପୁରାଣ ଚର୍ଚ୍ଚା କଲେ । ସଂସ୍କୃତ ଭାଗବତ ମଧ୍ୟ ପାଠ କରି ଭକ୍ତମାନଙ୍କୁ ଶୁଣାଉଥିଲେ ଓ ତା'ର ଅର୍ଥ ବୁଝାଉଥିଲେ ।

## ଓଡ଼ିଆ ଭାଗବତ ରଚନା

ସେ କାଳରେ ସାଧୁସମାଜରେ ସଂସ୍କୃତ ଭାଷା ପ୍ରଚଳିତ ଥିଲା । ସଂସ୍କୃତରେ ମଧ୍ୟ ଭାଗବତ ପାଠ ହେଉଥିଲା । କଥିତଅଛି ଯେ ଦାସଙ୍କ ମାତା ପୁରାଣ ଶୁଣିବାପାଇଁ ଥରେ ମନ୍ଦିର ଭିତରକୁ ଯାଇଥିଲେ । ମାତ୍ର ଦକ୍ଷିଣାଦେବାକୁ ଅସମର୍ଥା ହେବାରୁ ପୁରାଣପଣ୍ଡା ତାଙ୍କୁ ପୁରାଣ ଶୁଣାଇବାକୁ ନାସ୍ତି କରିଦେଲେ । ବୃଦ୍ଧା ମାତା ଦୁଃଖରେ ଘରକୁ ଫେରିଆସି ପୁତ୍ରକୁ ଜଣାଇଲେ ଓ ସଂସ୍କୃତ ଭାଗବତର ଓଡ଼ିଆ ଅନୁବାଦ କରିବାପାଇଁ ଉପଦେଶ ଦେଲେ । ମାତାଙ୍କ ଆଦେଶ ଅନୁଯାୟୀ ସେ ଓଡ଼ିଆ ଭାଗବତ ରଚନା କରିବାରେ ବ୍ରତୀ ହେଲେ ।

ରାମଦାସଙ୍କ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଜଗନ୍ନାଥ ଦାସ ସ୍ୱୟଂ ଜଗନ୍ନାଥଙ୍କ ନିର୍ଦ୍ଦେଶରେ ଭାଗବତ ରଚନା କରିଥିବାର ଉଲ୍ଲେଖ ଅଛି । ଏହା ଅନୁଯାୟୀ ଜଗନ୍ନାଥ ଦାସ ମାନବ ସମାଜର ମୁକ୍ତି ପାଇଁ ଚିନ୍ତିତ ଥିଲେ । ଦିନେ ଶୟନ ସମୟରେ ପ୍ରଭୁଙ୍କୁ ପଥ ଦେଖାଇବାପାଇଁ ପ୍ରାର୍ଥନା କଲେ –

"ଶୟନ ସମ୍ମୁଖରେ ଦାସେ ମନ ନିବେଶି ପ୍ରଭୁ ପାଶେ,
ବୋଇଲେ କୃପା ମୋତେ କର ଦେଖାଅ ମହିମା ତୁମର,
ମୋ ଜୀବ ଉଦ୍ଧାର ନିମନ୍ତେ କି ଆଜ୍ଞା ହେଉ ମୋତେ ।"

ଜଗନ୍ନାଥ ସ୍ୱପ୍ନରେ ତାଙ୍କୁ ପ୍ରାକୃତ ଭାଷାରେ ଭାଗବତ ରଚନା କରିବାକୁ କହିଲେ । ଏହା କଲେ ସେ ଭବବନ୍ଧନରୁ ନିଶ୍ଚୟ ମୁକ୍ତି ଲାଭ କରିବେ । ଏଥିପାଇଁ ଭୟ କରିବାର କୌଣସି କାରଣ ମଧ୍ୟ ନାହିଁ । ଆବଶ୍ୟକସ୍ଥଳେ ନିଜେ କହିଦେବେ ବୋଲି ସ୍ୱପ୍ନରେ ପ୍ରଭୁ ଜଣାଇଲେ –

"ଭୟ ନ କର ତୁମ୍ଭେ କିଛି, ଗୀତ ତୁ କର ମୁହିଁ ଅଛି ।"

ପ୍ରଭୁଙ୍କର ଏ ବାଣୀ ଶୁଣି ଜଗନ୍ନାଥ ଦାସ ଆନନ୍ଦିତ ହେଲେ ଓ କଠିନ ଭାଗବତ ଗ୍ରନ୍ଥକୁ ପ୍ରାକୃତ ଭାଷାରେ ରଚନା ଆରମ୍ଭ କଲେ ।

## ଚୈତନ୍ୟଙ୍କ ଆଗମନ

୧୫୧୦ରେ ଶ୍ରୀଚୈତନ୍ୟ ପୁରୀ ଆସିଲେ । ଆସିଲାବେଳେ ବାଟରେ ତାଙ୍କର ଯଶୋବନ୍ତ, ଅଚ୍ୟୁତ, ଅନନ୍ତ ଓ ବଳରାମ ଦାସ ପ୍ରଭୃତିଙ୍କ ସହିତ ସାକ୍ଷାତ୍ ହୋଇଥିଲା । ଶ୍ରୀମନ୍ଦିର ଦର୍ଶନ କାଳରେ ମଧ୍ୟ ଏହି ଚାରି ସଖା ତାଙ୍କ ଗହଣରେ ଥିଲେ । ଜଗନ୍ନାଥଙ୍କୁ ଦର୍ଶନ କରି ସେମାନେ ବଟଗଣେଶଙ୍କଠାରେ ପହଞ୍ଚିଲେ । ସେତେବେଳେ ଜଗନ୍ନାଥ ଦାସ ସରଳ ପ୍ରାଞ୍ଜଳ ଭାଷାରେ ଭାଗବତ ବ୍ୟାଖ୍ୟା କରୁଥାନ୍ତି । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କ ବ୍ୟାଖ୍ୟାରେ ଅତିଶୟ ମୁଗ୍ଧ ହୋଇ ତାଙ୍କୁ ପ୍ରେମ ଗଦ୍‌ଗଦ ଚିତ୍ତରେ ଆଲିଙ୍ଗନ କଲେ । ଦିବାକର ଦାସ ତାଙ୍କ 'ଜଗନ୍ନାଥ ଚରିତାମୃତ'ରେ ଏହା ଉଲ୍ଲେଖ କରିଛନ୍ତି ।

"ଏହି ସମୟେ ଶ୍ରୀଚୈତନ୍ୟ । ସଙ୍ଗତେ ଘେନି ସଖାଗଣ ।।
ବଟତଳେଣ ବିଜେ କଲେ । ପୁରାଣ ଶୁଣି ତୋଷ ହେଲେ ।।
ପ୍ରେମଭାବେଣ ଶ୍ରୀଚୈତନ୍ୟ । ଦାସଙ୍କୁ କଲେ ଆଲିଙ୍ଗନ ।।

## ଦୀକ୍ଷା ଗ୍ରହଣ

କ୍ରମେ ଜଗନ୍ନାଥ ଦାସ ଓ ଶ୍ରୀଚୈତନ୍ୟଙ୍କ ବନ୍ଧୁତା ଗାଢ଼ ହେଲା । ଶ୍ରୀଚୈତନ୍ୟ ତାଙ୍କ ନିଷ୍ଠା ଦେଖି ତାଙ୍କୁ ନିତ୍ୟ ସହଚରଭାବେ ଗ୍ରହଣ କଲେ । ଶ୍ରୀଚୈତନ୍ୟଙ୍କ

ଭଳି ମହାପୁରୁଷଙ୍କୁ ସଖା ରୂପେ ପାଇ ଜଗନ୍ନାଥ ନିଜକୁ ଧନ୍ୟ ମନେକଲେ । ମାତ୍ର ଗୌଡ଼ୀୟ ବୈଷ୍ଣବମାନେ ଏହାର ଘୋର ବିରୋଧ କଲେ । ଜଗନ୍ନାଥ ଗୌଡ଼ୀୟ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇ ନ ଥିବାର ଅଭିଯୋଗ କଲେ । ମାତ୍ର ଶ୍ରୀଚୈତନ୍ୟ ଏହି ଯୁକ୍ତିରେ ପ୍ରଭାବିତ ହୋଇ ନ ଥିଲେ । ଜଗନ୍ନାଥ ଦାସ ମଧ ଶ୍ରୀଚୈତନ୍ୟଙ୍କଠାରୁ ଦୀକ୍ଷା ନେବାର ଇଚ୍ଛା ପ୍ରକାଶ କଲେ । ଶ୍ରୀଚୈତନ୍ୟ ଜଗନ୍ନାଥଙ୍କୁ ଗୌଡ଼ୀୟ ବୈଷ୍ଣବ ମନ୍ତ୍ରରେ ଦୀକ୍ଷିତ ହେବାକୁ ବାଧ୍ୟ କରି ନ ଥିଲେ । ସେ ଉତ୍କଳୀୟ ବୈଷ୍ଣବ ଭକ୍ତ ବଳରାମଙ୍କୁ ଦୀକ୍ଷାଦେବାକୁ ଉପଦେଶ ଦେଲେ ।

'ଜଗନ୍ନାଥ ଚରିତାମୃତ'ରେ ଜଗନ୍ନାଥ ଦାସଙ୍କ ଦୀକ୍ଷା ଗ୍ରହଣର ବର୍ଣ୍ଣନା ଅଛି, ଯଥା –

''ଶୁଣି ହରଷ ପ୍ରଭୁ ହେଲେ । ମତ୍ତ ବଳରାମେ ଚାହିଁଲେ ।।
ଏହାକୁ ମନ୍ତ୍ର ଦୀକ୍ଷା ଦିଅ । ରାମାଦି କୀର୍ତ୍ତନ କରାଅ ।।''

## ଅତିବଡ଼ୀ ଉପାଧି ଲାଭ

ଜଗନ୍ନାଥ ଦାସ ମହାଯୋଗୀରେ କ୍ରମେ ପରିଣତ ହେଲେ । ଏପରିକି ଧ୍ୟାନରେ 'ଜଗନ୍ନାଥ' 'ଜଗନ୍ନାଥ' ବୋଲି ବୋବାଳି ଛାଡୁଥିଲେ । ସେ ଧ୍ୟାନରେ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରୁଥିଲେ । କିଛିକାଳ ଗଲାପରେ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କ ଭକ୍ତି ଓ ଜ୍ଞାନର ପରୀକ୍ଷା କରିବାକୁ ଚାହିଁଲେ । ସେ ସମସ୍ତ ବୈଷ୍ଣବମାନଙ୍କ ଉପସ୍ଥିତିରେ ପୂର୍ବଜନ୍ମ ଓ ସିଦ୍ଧାଙ୍ଗ ପ୍ରଭୃତି କେତେକ ବିଷୟରେ ପ୍ରଶ୍ନ କରନ୍ତେ, ଜଗନ୍ନାଥ ରାଧାକୃଷ୍ଣଙ୍କ ଲୀଳାକୁ ଅତି ସରଳ ଓ ପ୍ରାଞ୍ଜଳ ଭାଷାରେ ବ୍ୟାଖ୍ୟା କରିବାକୁ ଲାଗିଲେ । ଶ୍ରୀଚୈତନ୍ୟ ମୁଗ୍ଧ ହୋଇ ତାଙ୍କୁ 'ଅତିବଡ଼ୀ' ଉପାଧି ଦେଲେ । ସେହିଦିନୁ ଜଗନ୍ନାଥ ଦାସ 'ଅତିବଡ଼ୀ ସ୍ୱାମୀ' ନାମରେ ଖ୍ୟାତ ହେଲେ । ତାଙ୍କ ପ୍ରତିଷ୍ଠିତ ବୈଷ୍ଣବ ସଂପ୍ରଦାୟ ମଧ 'ଅତିବଡ଼ୀ ସଂପ୍ରଦାୟ' ରୂପେ ଅଭିହିତ ହେଲା ।

ଦୀକ୍ଷାଗ୍ରହଣ ପରେ ଜଗନ୍ନାଥ ଦାସ ଚୈତନ୍ୟଙ୍କ ଅନ୍ତରଙ୍ଗ ହୋଇପଡ଼ିଲେ । ତାହା ଦେଖି ଗୌଡ଼ୀୟ ବୈଷ୍ଣବମାନେ ଈର୍ଷାନ୍ୱିତ ହୋଇପଡ଼ିଲେ । ଦିବାକର ଦାସ ତାଙ୍କ ଜଗନ୍ନାଥ ଚରିତାମୃତରେ ଏହା ବର୍ଣ୍ଣନା କରିଛନ୍ତି –

''ବୈଷ୍ଣବ ବୃନ୍ଦ ଯେତେ ଥିଲେ  ଦେଖି ଏମନ୍ତ ବିଚାରିଲେ ।
ଉତ୍କଳୀ ବ୍ରାହ୍ମଣ ସହିତେ  ଭାବ ବଢ଼ାଇଲେ ନିରତେ ।
ଏହି ରାଜ୍ୟରେ ଏ ରହିବେ  ଉତ୍କଳୀ କର୍ମ ଆଚରିବେ ।''

ସେମାନେ ଶ୍ରୀଚୈତନ୍ୟଙ୍କୁ ଭେଟି ନିଜର ଦୁଃଖ ଜଣାଇଛନ୍ତି –

''ଓଡ଼ିଆ ବ୍ରାହ୍ମଣ ଅଣାଳ । ବୋଇଲେ ଅତିବଡ଼ୀ ଏହି ।।
ଆଜି ପର୍ଯ୍ୟନ୍ତ ସେବା କଲୁ । ସମସ୍ତେ ସାନ ପଦେ ଗଲୁ ।।''

ଚୈତନ୍ୟ ମଧ ସେମାନଙ୍କୁ ପୁଣ୍ୟଭୂମି ଉତ୍କଳର ମହତ୍ତ୍ୱ ବୁଝାଇଛନ୍ତି –

''ଏ କ୍ଷେତ୍ରର ଟେକା ପାଷାଣ ଝିକର କାଷ୍ଠ ବୋଲି ମାନ ।
ଆନ ରାଜ୍ୟକୁ ଏ ଦେବତା ମନୁଷ୍ୟ ଭାଳ କେଉଁ କଥା ।''

**ରାଜସମ୍ମାନ ଲାଭ**

ଜଗନ୍ନାଥ ଦାସଙ୍କ ମହିମା ଚାରିଆଡ଼େ ବ୍ୟାପିଗଲା । ଦିନେ ମହାରାଜା ପ୍ରତାପରୁଦ୍ରଦେବ ଜଗନ୍ନାଥ ମନ୍ଦିରକୁ ଯାଇଥିଲେ । ସେଠାରେ ଶ୍ରୀଚୈତନ୍ୟଙ୍କୁ ଭେଟିଲେ । ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତିର ବ୍ୟାଖ୍ୟା କରିବାକୁ ସେ ଶ୍ରୀଚୈତନ୍ୟଙ୍କୁ ଅନୁରୋଧ କରନ୍ତେ ଶ୍ରୀଚୈତନ୍ୟ ଜଗନ୍ନାଥ ଦାସଙ୍କୁ ତାହା କରିବାକୁ ନିର୍ଦ୍ଦେଶ ଦେଲେ । ଜଗନ୍ନାଥ ଦାସ ତାକୁ ସୁନ୍ଦରଭାବେ ବୁଝାଇଦେଲେ । ପ୍ରତାପରୁଦ୍ରଦେବ ଅତିଶ୍ରୟ ପ୍ରୀତ ହୋଇ ତାଙ୍କୁ ଗୁରୁଭାବେ ଗ୍ରହଣ କଲେ । ସେ ମଧ ତାଙ୍କୁ ମହାରାଣୀ ଗୌରୀଦେବୀଙ୍କ ସାମୟିକ ଅବସ୍ଥାନ ନିମନ୍ତେ ନିର୍ମିତ ହୋଇଥିବା ଉଆସରେ ରହିବାପାଇଁ ଅନୁରୋଧ କଲେ । ଜଗନ୍ନାଥ ଦାସ କିଛି କାଳ ସେଠାରେ ରହିଲେ । ଏବେ ତାହା ଓଡ଼ିଆ ମଠ ନାମରେ ପରିଚିତ । ମାତ୍ର ସ୍ଥାନଟି କୋଳାହଳପୂର୍ଣ୍ଣ ହୋଇଥିବାରୁ ସେ ତାହା ପରିତ୍ୟାଗ କରି ନିର୍ଜନ ସମୁଦ୍ର କୂଳରେ ଏକ ମଠ ନିର୍ମାଣ କରି ରହିଲେ । ଅଧୁନା ତାହା ସାତଲହଡ଼ି ମଠ ନାମରେ ପରିଚିତ । ପରେ ମହାରାଣୀ ଗୌରୀଦେବୀ ଜଗନ୍ନାଥ ଦାସଙ୍କଠାରୁ ଦୀକ୍ଷା ଗ୍ରହଣ କଲେ ।

ଏହି ସମୟରେ ବ୍ରହ୍ମାନନ୍ଦ ନାମକ ଜଣେ ପଣ୍ଡିତ ପୁରୀରେ ପହଞ୍ଚିଲେ । ସେ ରାଜଦରବାରରେ ଉପସ୍ଥିତ ହୋଇ ପଣ୍ଡିତମାନଙ୍କୁ ତର୍କ କରିବାକୁ ଆହ୍ୱାନ କଲେ । ମାତ୍ର ପୁରୀର କୌଣସି ପଣ୍ଡିତ ତାଙ୍କ ସହିତ ତର୍କ କରିବାକୁ ଚାହିଁଲେ ନାହିଁ । ଫଳରେ ରାଜା ଚିନ୍ତିତ ହୋଇପଡ଼ିଲେ । ଶେଷରେ ଜଗନ୍ନାଥ ଦାସ ପଣ୍ଡିତସଭାକୁ ଆସି ତର୍କରେ ଯୋଗଦେଲେ । ବ୍ରହ୍ମାନନ୍ଦ ବ୍ରହ୍ମର ସ୍ୱରୂପ ସମ୍ବନ୍ଧରେ ବହୁ ଜଟିଳ ପ୍ରଶ୍ନ ପଚାରିଲେ । ଜଗନ୍ନାଥ ଦାସ ତା'ର ଯଥାଯଥ ଉତ୍ତର ମଧ ଦେଲେ । ଅଦ୍ୱୈତବାଦ ଖଣ୍ଡନ କରି ସେ ଜ୍ଞାନମିଶ୍ରା ଭକ୍ତିବାଦର ଶ୍ରେଷ୍ଠତ୍ୱ ପ୍ରତିପାଦନ କଲେ । ଏହା ଫଳରେ ତାଙ୍କର ଖ୍ୟାତି ଆହୁରି ବଢ଼ିଗଲା ।

## ଓଡ଼ିଆ ଭାଗବତର ଆଦର

ଜଗନ୍ନାଥ ଦାସଙ୍କ ରଚିତ ଓଡ଼ିଆ ଭାଗବତ ମଧ୍ୟ ଦିନକୁ ଦିନ ସମସ୍ତଙ୍କର ପ୍ରିୟ ହେଲା । ରାମଦାସ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଏହା ବର୍ଣ୍ଣନା କରିଛନ୍ତି -

''ଶ୍ରୀ ଭାଗବତ ଯେ ପୁରାଣ । ଯେ ଅତି କଠିନୁ କଠିନ ।।
ପ୍ରାକୃତ କଲେ ଗୀତ । ଯେ ପୁଣ୍ୟମୟ ଭାଗବତ ।।

× × ×

ତାହା ଶୁଣିଣ ପ୍ରାଣୀମାନେ । ଅତି ଆନନ୍ଦ ହୋଇ ମନେ ।।
ସ୍ତିରୀ ପୁରୁଷ ବାଳ ବୃଦ୍ଧ । ସମସ୍ତେ ଶୁଣି ହେଲେ ଶ୍ରଦ୍ଧ ।।''

ଜଗନ୍ନାଥ ମଧ୍ୟ ନିଜେ ଅତି ସୁଲଳିତ କଣ୍ଠରେ ତାହା ଗାନ କରୁଥିଲେ । ଦକ୍ଷିଣା ପ୍ରତି ତାଙ୍କର ଲୋଭ ନ ଥିଲା । ତେଣୁ ଶହ ଶହ ସଂଖ୍ୟାରେ ଧର୍ମପ୍ରାଣ ବ୍ୟକ୍ତି ତାଙ୍କ ପାଖରେ ପୁରାଣ ଶୁଣିବାପାଇଁ ରୁଣ୍ଡ ହେଲେ । ଫଳରେ ପୁରାଣପଣ୍ଡାମାନଙ୍କର କୌଳିକ ବୃତ୍ତିରେ ବାଧା ପଡ଼ିଲା । ସେ ମଧ୍ୟ ଓଡ଼ିଆ ଭାଷାରେ ଏହାକୁ ରଚନା କରିଥିବାରୁ ସଂସ୍କୃତ ପଣ୍ଡିତମାନଙ୍କର କୋପ ଦୃଷ୍ଟିରେ ପଡ଼ିଲେ ।

ପୁରାଣପଣ୍ଡାମାନେ ଜଗନ୍ନାଥ ଦାସଙ୍କ ବିରୋଧରେ ମହାରାଜାଙ୍କ ନିକଟରେ ଗୁରୁତର ଅଭିଯୋଗମାନ କଲେ । ମହାରାଜା ପ୍ରତାପରୁଦ୍ରଦେବ ଜଗନ୍ନାଥ ଦାସଙ୍କୁ ଡାକି ଅଭିଯୋଗ ସମ୍ପର୍କରେ ପଚାରିଲେ । ମାତ୍ର ସେ ବ୍ରହ୍ମଚାରୀ ହୋଇଥିବାରୁ ନାରୀମାନଙ୍କ ସହିତ କୌଣସି ସମ୍ପର୍କ ନ ଥିବା ଦର୍ଶାଇଲେ । ପୁଣି ଦେହରେ ତାଙ୍କର ନାରୀ ଅଂଶ ଥିବାରୁ ପୁରୁଷ ଓ ସ୍ତ୍ରୀମାନଙ୍କ ସହିତ ବିନା ବିଚାରରେ ମିଶିପାରିବେ ବୋଲି କହନ୍ତେ ମହାରାଜା ତାଙ୍କୁ ନାରୀରୂପ ଦେଖାଇବାପାଇଁ ଆଦେଶ ଦେଲେ । ନ ଦେଖାଇବା ପର୍ଯ୍ୟନ୍ତ ବନ୍ଦିଶାଳାରେ ନେଇ ରଖିଲେ ।

ବନ୍ଦିଶାଳାରେ ଥାଇ ଜଗନ୍ନାଥ ଦାସ ଭଗବାନ୍‌ଙ୍କୁ ସ୍ମରଣା କଲେ । ଜଗନ୍ନାଥ ମଧ୍ୟ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧରି ବନ୍ଦିଶାଳାରେ ସ୍ୱଦେହରେ ପହଞ୍ଚି କହିଲେ –

''ବୋଇଲେ ବାଞ୍ଛା ସିଦ୍ଧ ହେଉ । ପୁରୁଷ ତନୁ ତୋର ଯାଉ ।
ହେଉ କାମିନୀ ତନୁ ପ୍ରାୟ । ରାଜା ଛାରକୁ କିପାଁ ଭୟ ।''

ରାଜା ଜଗନ୍ନାଥ ଦାସଙ୍କ ନାରୀ ରୂପ ଦେଖି ଆଶ୍ଚର୍ଯ୍ୟ ହେଲେ ଓ ତାଙ୍କର ଶରଣାପନ୍ନ ହେଲେ । ଏହା ମଧ୍ୟ ବର୍ଣ୍ଣିତ ଅଛି –

''ଏହା ଶୁଣିଣ ମହାରାଜା କଲେ ଦାସଙ୍କ ପାଦପୂଜା ।''

ଜଗନ୍ନାଥ ଦାସଙ୍କ ନାରୀ ରୂପ ଗ୍ରହଣ ସମ୍ପର୍କରେ ଆଉ ଜଣେ ଜଗନ୍ନାଥ ଦାସଙ୍କ ଶିଷ୍ୟ ଗୋପାଳ ଖଣ୍ଡକ ତାଙ୍କ ଅପ୍ରକାଶିତ 'ପଦ୍ମକଳ୍ପ ପୁରାଣ'ରେ ଉଲ୍ଲେଖ କରିଛନ୍ତି –

''ଜଗନ୍ନାଥ ଦାସଙ୍କ କୀର୍ତ୍ତି ଜଗତେ ହୋଇଲା ବିଖ୍ୟାତ
କୃଷ୍ଣ ସଙ୍ଗତେ ପ୍ରୀତି କଲେ ପ୍ରାନ୍ତକୁ ସ୍ତିରୀ ଅଂଶ ଦେଲେ ।''

'ଜଗନ୍ନାଥ ଚରିତାମୃତ'ରେ ଜଗନ୍ନାଥ ଦାସଙ୍କ ଆଉ ଏକ ଅଲୌକିକ କାର୍ଯ୍ୟର ବର୍ଣ୍ଣନା ଅଛି । କାଶୀରାମ ନାମକ ଜଣେ ସାଧବ ବୋଇତରେ ଯାଇ ଦୂର ବିଦେଶରେ ବ୍ୟବସାୟ କରୁଥିଲେ । ସେ ଫେରିଲାବେଳେ ଖଣ୍ଡେ ଶ୍ରୀଖଣ୍ଡ ଚନ୍ଦନ ଆଣି ରାଜାଙ୍କୁ ଉପହାର ସ୍ୱରୂପ ଦେଲେ । ମହାରାଜା ମଧ ଜଗନ୍ନାଥ ଦାସଙ୍କୁ ତାହା ବ୍ୟବହାର କରିବାକୁ ଦେଲେ । ମାତ୍ର ଜଗନ୍ନାଥ ଦାସ ନିଜ ଦେହରେ ଚନ୍ଦନ ନ ବୋଳି କାନ୍ଥରେ ଘୋରି ବୋଳି ଦେଉଥିଲେ । ଚାର ମୁହଁରୁ ଏ କଥା ଶୁଣି ପ୍ରତାପରୁଦ୍ରଦେବ ଜଗନ୍ନାଥ ଦାସଙ୍କୁ ଏହାର କାରଣ ପଚାରନ୍ତେ, ଭକ୍ତ ଜଗନ୍ନାଥ ଦାସ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଯଥାରୀତି ଚନ୍ଦନ ଲଗାଇଥିବା କଥା କହିଲେ । ମହାରାଜା ମଧ ପ୍ରଭୁଙ୍କ ଶ୍ରୀଅଙ୍ଗରେ ଚନ୍ଦନ ଲଗା ହୋଇଥିବା ଦେଖି ବିସ୍ମିତ ହୋଇପଡ଼ିଲେ ।

ଆଉ ଏକ କିମ୍ବଦନ୍ତୀ ଅଛି ଯେ ଦୁଇ ଜଣ ଦେବକନ୍ୟା ଜଗନ୍ନାଥ ଦାସଙ୍କ ସେବା କରିବାଲାଗି ଗଭୀର ରାତ୍ରିରେ ମଠକୁ ଆସିଥିଲେ । ଗଜପତି ମହାରାଜା ଏହା ଚାରଠାରୁ ଶୁଣି ନିଜେ ସତ୍ୟାସତ୍ୟ ଜାଣିବାପାଇଁ ଅନ୍ଧାରିବିଜେ କଲେ । ସେଠାରେ ସେ ମଧ ତାହା ଦେଖିଲେ । ମାତ୍ର ସେମାନେ ଚାହୁଁ ଚାହୁଁ ଅଦୃଶ୍ୟ ହୋଇଗଲେ । ଜଗନ୍ନାଥ ଦାସଙ୍କ ଅଲୌକିକ ଶକ୍ତିରେ ସେ ସ୍ତମ୍ଭୀଭୂତ ହୋଇପଡ଼ିଲେ । ଶ୍ରୀଚୈତନ୍ୟ ଷଡ଼ଭୁଜ ପ୍ରଦର୍ଶନ କଲାଭଳି ଭକ୍ତ ଜଗନ୍ନାଥ ଦାସ ନିଜ ଐଶ୍ୱରିକ ଶକ୍ତି ବଳରେ ମହାରାଜା ପ୍ରତାପରୁଦ୍ରଦେବଙ୍କୁ ଅଷ୍ଟଭୁଜ ପ୍ରଦର୍ଶନ କରିଥିବା ବିଷୟ 'ଜଗନ୍ନାଥ ସୁଧାତ୍ରୟ' ନାମକ ସଂସ୍କୃତ ଗ୍ରନ୍ଥରେ ଲିଖିତ ଅଛି ।

## ଓଡ଼ିଆ ଭାଗବତ

ଭାଗବତ ହେଉଛି ଭଗବାନ୍ ବା ଭଗବତୀଙ୍କ ଚରିତ । ଭଗବାନ୍ ବ୍ୟାସ ସମସ୍ତ ପୁରାଣ ଗ୍ରନ୍ଥର ସାର ଆହରଣ କରି ଅଷ୍ଟାଦଶ ସଂଖ୍ୟକ ପୁରାଣରୂପେ 'ଭାଗବତ' ରଚନା କରିଥିଲେ ଓ ତାହା ସେ ତାଙ୍କର ପ୍ରିୟ ଶିଷ୍ୟ ଶୁକ ମୁନିଙ୍କୁ ପଢ଼ାଇଥିଲେ । ମହାରାଜା ପରୀକ୍ଷିତ ଏହା ଶୁକଦେବଙ୍କଠାରୁ ଶୁଣିଥିଲେ । ପରେ ତାହା ମୁନିଋଷିମାନଙ୍କଦ୍ୱାରା ଲୋକମୁଖରେ ପ୍ରଚାରିତ ହେଲା ।

ଜଗନ୍ନାଥ ଦାସ ଏକାଦଶ ସ୍କନ୍ଧ ପର୍ଯ୍ୟନ୍ତ ଲେଖିଥିବାର ଜଣାଯାଏ । ଦ୍ୱାଦଶ ସ୍କନ୍ଧ ମହାଦେବ ଦାସଙ୍କଦ୍ୱାରା ରଚିତ ହୋଇ ଏଥି ସହିତ ସଂଯୋଜିତ ହେଲା । ଭକ୍ତକବି ଦ୍ୱାରିକା ଦାସ 'ଭାଗବତ'ର ତ୍ରୟୋଦଶ ସ୍କନ୍ଧ ରଚନା କରିଥିଲେ । ସମ୍ଭବତଃ ଚୈତନ୍ୟଙ୍କ ଆଗମନ ପରେ ଜଗନ୍ନାଥ ଦାସ ଗ୍ରନ୍ଥ ରଚନାରୁ ନିବୃତ୍ତ ରହି ଈଶ୍ୱରଙ୍କ ସାଧନାରେ ନିମଜ୍ଜିତ ହେଲେ ।

ଓଡ଼ିଆ 'ଭାଗବତ' ସଂସ୍କୃତ 'ଭାଗବତ'ର ଆକ୍ଷରିକ ଅନୁବାଦ ନୁହେଁ । ସଂସ୍କୃତ ଭାଗବତର ବିଷୟବସ୍ତୁକୁ ମୁଖ୍ୟତଃ ଆଧାର କରି ନିଜର ପାଣ୍ଡିତ୍ୟ ଓ କବିତ୍ୱ ବଳରେ ସେ ଏହାକୁ ରଚନା କରିଛନ୍ତି । ତେଣୁ ମୂଳ ଭାଗବତଠାରୁ ଓଡ଼ିଆ ଭାଗବତରେ ବହୁ ପାର୍ଥକ୍ୟ ଦେଖାଯାଏ ।

ପ୍ରଥମରେ, ସଂସ୍କୃତ ଭାଗବତ ବାରଟି ସ୍କନ୍ଧ ଓ ତିନି ଶହ ପଞ୍ଚତିରିଶ ଅଧ୍ୟାୟରେ ବିଭକ୍ତ ହୋଇଥିଲାବେଳେ ଓଡ଼ିଆ ଭାଗବତଟି ତେରଟି ସ୍କନ୍ଧ ଓ ତିନି ଶହ ବୟାଳିଶ ଅଧ୍ୟାୟରେ ବିଭକ୍ତ । ମୂଳ ଗ୍ରନ୍ଥର ଶ୍ଳୋକ ସଂଖ୍ୟା ଅଠର ହଜାର ଥିଲାବେଳେ ଏହାର ଦ୍ୱାଦଶ ସ୍କନ୍ଧ ପର୍ଯ୍ୟନ୍ତ ଶ୍ଳୋକ ସଂଖ୍ୟା ବତିଶ ହଜାର ହୋଇଥିବାର ଜଣାଯାଏ ।

ବିଷୟବସ୍ତୁ ସଂଯୋଜନାରେ ମଧ୍ୟ କେତେକ ପାର୍ଥକ୍ୟ ଅଛି । ସଂସ୍କୃତ 'ଭାଗବତ'ର ଦ୍ୱିତୀୟ ସ୍କନ୍ଧ ତୃତୀୟ ଅଧ୍ୟାୟରେ ଭକ୍ତିଯୋଗର ବର୍ଣ୍ଣନା ଅଛି । କିନ୍ତୁ ଜଗନ୍ନାଥ ଦାସ ତୃତୀୟ ଓ ଚତୁର୍ଥ ଅଧ୍ୟାୟ ଦୁଇଟିରେ ଭକ୍ତିଯୋଗର ବର୍ଣ୍ଣନା କରିଛନ୍ତି । ସଂସ୍କୃତ 'ଭାଗବତ'ରେ ତୃତୀୟ ସ୍କନ୍ଧ ଚତୁର୍ଥ ଅଧ୍ୟାୟରେ ସ୍ୱାୟମ୍ଭୁବ ମନୁଚରିତ ଓଡ଼ିଆ 'ଭାଗବତ'ର ତ୍ରୟୋଦଶ ସ୍କନ୍ଧରେ ଅଛି । ମୂଳ 'ଭାଗବତ'ର ଚତୁର୍ଥ ସ୍କନ୍ଧରେ ଧ୍ରୁବଚରିତ ଅଷ୍ଟମରୁ ଦ୍ୱାଦଶ ଅଧ୍ୟାୟରେ ବର୍ଣ୍ଣିତ ହୋଇଅଛି; ମାତ୍ର ଓଡ଼ିଆ 'ଭାଗବତ'ରେ ଧ୍ରୁବଚରିତ ନବମ ଓ ଚତୁର୍ଦ୍ଦଶ ଅଧ୍ୟାୟ ମଧ୍ୟରେ ବର୍ଣ୍ଣିତ । ପଞ୍ଚମ ସ୍କନ୍ଧର ପଞ୍ଚଦଶ ଅଧ୍ୟାୟରେ ଭରତବଂଶ ବର୍ଣ୍ଣନା ଥିଲାବେଳେ, ଓଡ଼ିଆ 'ଭାଗବତ'ରେ ସେହି ଅଧ୍ୟାୟଟି ପ୍ରିୟବ୍ରତ ବଂଶ ରୂପେ ବର୍ଣ୍ଣିତ ହୋଇଅଛି । ମୂଳ ଗ୍ରନ୍ଥର ସପ୍ତମ ସ୍କନ୍ଧ ଚତୁର୍ଥ ଅଧ୍ୟାୟରେ ପ୍ରହଲ୍ଲାଦ ଜନ୍ମର ବର୍ଣ୍ଣନା ଥିଲାବେଳେ ଓଡ଼ିଆ 'ଭାଗବତ'ରେ ସେହି ଅଧ୍ୟାୟଟି ବିଷ୍ଣୁ ପ୍ରସନ୍ନ ବର୍ଣ୍ଣନାରୂପେ ଅଭିହିତ ହୋଇଅଛି । ମୂଳ 'ଭାଗବତ'ର ଦଶମ ସ୍କନ୍ଧର ପ୍ରଥମ ଓ ଦ୍ୱିତୀୟ ଅଧ୍ୟାୟର ବିଷୟବସ୍ତୁ ଓଡ଼ିଆ 'ଭାଗବତ'ର ତୃତୀୟ ଅଧ୍ୟାୟରେ ବର୍ଣ୍ଣନା କରାଯାଇଅଛି । ମୂଳ 'ଭାଗବତ'ର ଦଶମ ସ୍କନ୍ଧର ପଞ୍ଚଚାଳିଶ ଅଧ୍ୟାୟରୁ ଅଣଚାଶ ଅଧ୍ୟାୟ ପର୍ଯ୍ୟନ୍ତ ସମସ୍ତ ବିଷୟ ଓଡ଼ିଆ 'ଭାଗବତ'ର ଦ୍ୱାରିକାଲୀଳାର ପ୍ରଥମ ପାଞ୍ଚୋଟି ଅଧ୍ୟାୟରେ

ଶେଷ ହୋଇଅଛି । ସଂସ୍କୃତ 'ଭାଗବତ'ର ଏକାଦଶ ସ୍କନ୍ଧର ତୃତୀୟ ଅଧ୍ୟାୟ ବର୍ଣ୍ଣିତ ବିଷୟ ଓଡ଼ିଆ 'ଭାଗବତ'ର ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ବର୍ଣ୍ଣିତ ଅଛି ।

ଉଭୟ ଗ୍ରନ୍ଥରେ ବହୁ ବିଷୟଗତ ପ୍ରଭେଦ ମଧ୍ୟ ରହିଥିବା ଜଣାଯାଏ । ଓଡ଼ିଆ ଭାଗବତରେ ରାମକୃଷ୍ଣଙ୍କୁ ନେବାପାଇଁ କଂସ ଆଦେଶରେ ଅକ୍ରୂର ଆସିଥିଲେ । ସେ ପ୍ରଥମ ସାକ୍ଷାତରେ ରାମକୃଷ୍ଣଙ୍କୁ ଚିହ୍ନିପାରି ନ ଥିଲେ । ମାତ୍ର ଏହା ମୂଳ 'ଭାଗବତ'ରେ ନାହିଁ । ସେହିପରି ଗୋପୀ, ବୃନ୍ଦାବତୀ ଚରିତ ମୂଳ ଭାଗବତରେ ନାହିଁ । ସଂସ୍କୃତ ଭାଗବତରେ ଜରାସନ୍ଧଙ୍କ ଜନ୍ମ କାହାଣୀ ଅତି ସଂକ୍ଷିପ୍ତଭାବେ ଦିଆଯାଇଛି । କିନ୍ତୁ ଜଗନ୍ନାଥ ଦାସ ତାହାଙ୍କ 'ଭାଗବତ'ରେ ଜରାସନ୍ଧର ଏକ ବିସ୍ତୃତ ବିବରଣୀ ଦେଇଛନ୍ତି । ସେହିପରି ଜଗନ୍ନାଥ ଦାସ କୃଷ୍ଣଙ୍କର ଗିରି–ଗୋବର୍ଦ୍ଧନ ଧାରଣକୁ ଅତିରଞ୍ଜିତ କରି ପ୍ରକାଶ କରିଛନ୍ତି । ସଂସ୍କୃତ 'ଭାଗବତ'ରେ ଯଦୁବଂଶ ଧ୍ୱଂସ ବର୍ଣ୍ଣନା ପ୍ରସଙ୍ଗରେ ଶ୍ରୀକୃଷ୍ଣଙ୍କଦ୍ୱାରା ପ୍ରଦ୍ୟୁମ୍ନ ବଧର କୌଣସି ଉଲ୍ଲେଖ ନାହିଁ । କିନ୍ତୁ ଜଗନ୍ନାଥ ଦାସଙ୍କ 'ଭାଗବତ'ରେ ଏହା ଅଛି ।

କବି ଉତ୍କଳର ତତ୍କାଳୀନ ସାମାଜିକ ଅବସ୍ଥାକୁ ଆଖି ଆଗରେ ରଖି 'ଭାଗବତ' ରଚନା କରିଥିଲେ । ମୂଳ ଗ୍ରନ୍ଥରେ ଯେଉଁ ବିଷୟର ସାମାଜିକ ମୂଲ୍ୟବୋଧ ନ ଥିବାରୁ ଅନୁଭବ କରିଛନ୍ତି, ତାକୁ ସେ ପରିହାର କରିଛନ୍ତି । ଯେଉଁ ଅଂଶକୁ ବର୍ଦ୍ଧିତ କରିବା ଫଳରେ ସମାଜର ଉପକାର ହେବ, ସେ ଅଂଶକୁ ନିଜ ପ୍ରତିଭା ବଳରେ ପୁଷ୍ଟ କରିଛନ୍ତି । ଯେଉଁ ବିଷୟର ବିଶେଷ ସାମାଜିକ ମୂଲ୍ୟବୋଧ ନ ଥିବାର ଅନୁଭବ କରିଛନ୍ତି, ସେ ବିଷୟକୁ ସେ ସଂକ୍ଷିପ୍ତ କରିଦେଇଛନ୍ତି ।

ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମତ ଦିଅନ୍ତି ଯେ ଜଗନ୍ନାଥ ଦାସଙ୍କ 'ଭାଗବତ' ଅନେକ ଅଂଶରେ ମୂଳ 'ଭାଗବତ'ଠାରୁ କେବଳ ଭିନ୍ନ ନୁହେଁ, ଏହା ବହୁଗୁଣରେ ମୂଲ୍ୟବାନ୍ । କବି ବିଷ୍ଣୁ ପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣାଦି ବୈଷ୍ଣବ ଗ୍ରନ୍ଥମାନଙ୍କରୁ ବହୁ ଗଳ୍ପ ସଂଗ୍ରହ କରି ଏଥିରେ ସନ୍ନିବେଶିତ କରାଇବା ଫଳରେ ଏହା ଅଧିକ ଆଦରଣୀୟ ହୋଇପାରିଛି ।

'ଭାଗବତ'ର ପ୍ରଥମ ସ୍କନ୍ଧରେ ନୈମିଷାରଣ୍ୟରେ ସୁତ ଓ ମୁନିମାନଙ୍କର ସମାଗମ, ନାରଦ ପରୀକ୍ଷିତ ସମ୍ବାଦ, ବ୍ୟାସ ଓ ପାଣ୍ଡବମାନଙ୍କ ଚରିତ ପ୍ରଭୃତି ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟ ସ୍କନ୍ଧରେ ସୃଷ୍ଟି ନିରୂପଣ, ପୁରାଣ ଲକ୍ଷଣ ପ୍ରଭୃତିର ଉଲ୍ଲେଖ ଅଛି । ତୃତୀୟ ସ୍କନ୍ଧରେ ବିଦୁର ଚରିତ, ସୃଷ୍ଟି ପ୍ରକରଣ, କାଳଗତି, ହିରଣ୍ୟାକ୍ଷ ବଧ ପ୍ରଭୃତି ବର୍ଣ୍ଣନା କରାଯାଇଛି । ସତୀ ଚରିତ, ଦକ୍ଷଶାପ, ଦକ୍ଷଯଜ୍ଞ

ବିନାଶ, ଧ୍ରୁବ ଚରିତ ପ୍ରଭୃତି ଚତୁର୍ଥ ସ୍କନ୍ଧର ବିଷୟବସ୍ତୁ । ପଞ୍ଚମ ସ୍କନ୍ଧରେ ପ୍ରିୟବ୍ରତ ବଂଶାବଳୀ, ସପ୍ତଦ୍ୱୀପ ପୃଥିବୀ, ନଦନଦୀ, ସମୁଦ୍ର, ଦ୍ୱୀପ, ବର୍ଷା ପରିଚୟ, ପାତାଳ, ନରକ ଆଦି ବର୍ଣ୍ଣିତ ଅଛି । ଷଷ୍ଠ ସ୍କନ୍ଧରେ ଅଜାମିଳ ଚରିତ, ପ୍ରହ୍ଲାଦ ଚରିତ, ପଞ୍ଚବାୟୁର ଉତ୍ପତ୍ତି ପ୍ରଭୃତି ବିଷୟର ଉଲ୍ଲେଖ ଅଛି । ସପ୍ତମ ସ୍କନ୍ଧରେ ଦିତିପୁତ୍ରର ନିଧନ, ସଦାଚାର ନିର୍ଣ୍ଣୟ ପ୍ରଭୃତି ବିଷୟର ବର୍ଣ୍ଣନା ଅଛି । ଅଷ୍ଟମ ସ୍କନ୍ଧରେ ସମୁଦ୍ର ମନ୍ଥନ,ଦେବାସୁର ଯୁଦ୍ଧ, ବିଶ୍ୱରୂପ ଦର୍ଶନ, ବଳି ବନ୍ଧନ ପ୍ରଭୃତିର ବର୍ଣ୍ଣନା ଦେଖିବାକୁ ମିଳେ । ନବମ ସ୍କନ୍ଧରେ ମୁଖ୍ୟତଃ ସୂର୍ଯ୍ୟବଂଶ, ସୋମବଂଶ, ଯଦୁବଂଶର ବର୍ଣ୍ଣନା କରାଯାଇଛି । ଏହାଛଡ଼ା ଇଳ ଉପାଖ୍ୟାନ, ଅମ୍ବରୀଶ ଚରିତ୍ର, ହରିଶ୍ଚନ୍ଦ୍ର ଉପାଖ୍ୟାନ, ସଗର ଉପାଖ୍ୟାନ, ନହୁଷ, ଭରତ ଓ ଶାନ୍ତନୁଙ୍କ ବଂଶ ପରିଚୟ ଦିଆଯାଇଛି । ଦଶମ ସ୍କନ୍ଧଟି ହେଉଛି ଭାଗବତର ବୃହତ୍ତମ ସ୍କନ୍ଧ । ଏହାର ପ୍ରଥମାର୍ଦ୍ଧରେ ଶ୍ରୀକୃଷ୍ଣ ଜନ୍ମ ଓ ତାଙ୍କର ବାଲଲୀଳା, ବସ୍ତ୍ର ହରଣ, ଗୋବର୍ଦ୍ଧନ ଧାରଣ, ରାସକ୍ରୀଡ଼ା, ମଥୁରାଯାତ୍ରା, ଅକ୍ରୂର ସ୍ତୁତି ପ୍ରଭୃତି ବର୍ଣ୍ଣନା କରାଯାଇଅଛି । ଦ୍ୱିତୀୟାର୍ଦ୍ଧରେ ରାମକୃଷ୍ଣଙ୍କ ଜରାସନ୍ଧ ସହିତ ଯୁଦ୍ଧ, ଦ୍ୱାରିକା ନିବାସ, ରୁକ୍ମିଣୀ ହରଣ, ଶିଶୁପାଳ ବଧ, ପ୍ରଦ୍ୟୁମ୍ନ ଜନ୍ମ, ଉଷା ଅନିରୁଦ୍ଧ ବିବାହ ପ୍ରଭୃତି ବର୍ଣ୍ଣିତ ଅଛି । ଏକାଦଶ ସ୍କନ୍ଧରେ ଯଦୁବଂଶ ଧ୍ୱଂସ, ବର୍ଣ୍ଣାଶ୍ରମ, ଆଶ୍ରମ ଚତୁଷ୍ଟୟ (ଯଥା – ବ୍ରହ୍ମଚର୍ଯ୍ୟ, ଗୃହସ୍ଥ, ବାନପ୍ରସ୍ଥ ଓ ସନ୍ନ୍ୟାସ) ଧର୍ମ ନିରୂପଣ, ଭକ୍ତି, ଜ୍ଞାନ ମୋକ୍ଷ ବିବରଣୀ ଅଛି । ଦ୍ୱାଦଶ ସ୍କନ୍ଧରେ ଭବିଷ୍ୟ କାଳ ନିର୍ଦ୍ଦେଶ, ପରୀକ୍ଷିତଙ୍କ ମୋକ୍ଷ ପ୍ରାପ୍ତି, ଯୁଗ ଲକ୍ଷଣ, ଉତ୍ପତ୍ତି, ସ୍ଥିତି ଓ ପ୍ରଳୟ ବର୍ଣ୍ଣନା ଦେଖିବାକୁ ମିଳେ ।

## ପ୍ରଧାନ ବିଷୟବସ୍ତୁ

'ଭାଗବତ' ଗ୍ରନ୍ଥରେ ଧର୍ମ, ନୀତି, ଆଚାର-ବିଚାର ସହ ଭଗବାନ୍‌ଙ୍କ ଅବତାର ବର୍ଣ୍ଣିତ ହୋଇଅଛି । ଏହାର ପ୍ରଧାନ ବିଷୟ ହେଲା – (କ) ଶାସ୍ତ୍ରର ସାରକଥା କ'ଣ ? (ଖ) ଶ୍ରୀକୃଷ୍ଣ କାହିଁକି ଅବତାର ଗ୍ରହଣ କରିଥିଲେ ? (ଗ) ସେ କି କି କାର୍ଯ୍ୟ କରିଥିଲେ ? (ଘ) ଶେଷରେ ଧର୍ମ କିପରି ରକ୍ଷିତ ହୋଇଛି ?

'ଭାଗବତ' ଗ୍ରନ୍ଥର ପ୍ରଥମ ଅଧ୍ୟାୟରେ ଏହାର ଉଲ୍ଲେଖ ଅଛି –

''କିସ ମଙ୍ଗଳ ପୁରୁଷର । ସାର କି ସକଳ ଶାସ୍ତ୍ରର ?
ଦେବକୀ ଗର୍ଭେ ଯଦୁସାଇଁ । ଜନ୍ମ ଲଭିଲେ କାହିଁପାଇଁ ?
କି କାର୍ଯ୍ୟ କଲେ ଭଗବାନ୍ । ହେଲେ କି ଅବତାରମାନ ।।
ସେ ପ୍ରଭୁ ହେଲେ ଅନ୍ତର୍ହିତ । ଧର୍ମ ବା ହେଲା କି ଆଶ୍ରିତ ?''

ଏହି ପ୍ରଶ୍ନର ସମାଧାନରେ 'ଭାଗବତ' ଗ୍ରନ୍ଥ ସମାପ୍ତ ହୋଇଛି ।

## ଭାଗବତ ଦର୍ଶନ

ସଂସ୍କୃତ 'ଭାଗବତ' ମୂଳ ଭାବକୁ ଗ୍ରହଣ କରି ଓଡ଼ିଆ 'ଭାଗବତ' ରଚନା କରାଯାଇଛି । ତେଣୁ ଓଡ଼ିଆ ଭାଗବତରେ ଭାଗବତ ଦର୍ଶନ ସ୍ପଷ୍ଟ ଭାବରେ ପ୍ରକଟିତ ହୋଇଅଛି ।

ବ୍ୟକ୍ତିର ହୃଦୟ ହେଉଛି ଏକ ମନ୍ଦିର । ଏହି ମନ୍ଦିରକୁ ସଦାସର୍ବଦା ଶୁଦ୍ଧ ରଖିବା ଆବଶ୍ୟକ । ଅନ୍ଧାର ଦୂର କରି ସେଥିରେ ଆଲୋକବର୍ତ୍ତିକା ଜଳାଇବା ବୁଦ୍ଧିମାନ୍‌ର କାର୍ଯ୍ୟ । ଚିନ୍ତା ଓ ଚେତନାର ଅଶୁଦ୍ଧି, ମାୟା, ମୋହ ବା ଧନପ୍ରାପ୍ତି, ଆକାଂକ୍ଷା, ଅହମିକା ପ୍ରଭୃତି ଦୂର କରି ଭଗବାନ୍‌ଙ୍କଠାରେ ଆତ୍ମସମର୍ପଣ ହିଁ 'ଭାଗବତ' ଦର୍ଶନର ମୂଳଭିତ୍ତି । 'ପ୍ରଭୁଙ୍କ ଇଚ୍ଛା ପୂର୍ଣ୍ଣ ହେଉ' – ଏହି ଭାବନାରେ ଗର୍ବ ଅହମିକା ଦୂର ହୁଏ । ପ୍ରଭୁଙ୍କ ପାଦପଦ୍ମରେ ନିଜକୁ ସମର୍ପଣ କଲେ ଜୀବନର ଲକ୍ଷ୍ୟ ପୂର୍ଣ୍ଣ ହୁଏ ।

ଜଗନ୍ନାଥ ଦାସ ମଧ୍ୟ ସାଧୁସଙ୍ଗ ଉପରେ ଗୁରୁତ୍ୱ ଦେଇଛନ୍ତି । ସଂସାରରେ ପାପତାପଜନିତ ଗ୍ଳାନି ଦୂର କରିବାପାଇଁ ସାଧୁ ସଙ୍ଗ ଏକ ଅବ୍ୟର୍ଥ ଔଷଧ ଭଳି କାମ କରେ ।

କର୍ମଯୋଗ ପ୍ରସଙ୍ଗରେ କବି କହିଛନ୍ତି ଯେ କର୍ମ ହିଁ ସୁଖ ଦୁଃଖର କାରଣ । କର୍ମଫଳ ପ୍ରତ୍ୟେକ ପ୍ରାଣୀକୁ ଭୋଗ କରିବାକୁ ପଡ଼ିଥାଏ । ତେଣୁ ଏ ବିଷୟରେ ସାବଧାନ ହେବା ଉଚିତ ।

ଜ୍ଞାନଯୋଗ ବିଷୟରେ ଜଗନ୍ନାଥ ଦାସ କହିଛନ୍ତି ଯେ ଏହା ଏକ ଜଟିଳ ମାର୍ଗ । ଏ ଦିଗରେ ଗଲେ ସହଜରେ ବିଭୁପ୍ରାପ୍ତି ହୁଏ ନାହିଁ । ଭକ୍ତିର ସ୍ଥାନ କର୍ମ ଓ ଜ୍ଞାନଠାରୁ ବହୁ ଉଚ୍ଚରେ । ଗୋପୀମାନେ ମଧ୍ୟ ଭକ୍ତି ଉପରେ ଗୁରୁତ୍ୱ ଦେଉଥିଲେ । ସ୍ୱାର୍ଥହୀନ ଆତ୍ମସମର୍ପଣଦ୍ୱାରା ସେମାନେ ଶ୍ରୀକୃଷ୍ଣଙ୍କୁ ପାଇପାରିଥିଲେ ।

'ଭାଗବତ' ଦର୍ଶନର ଅନ୍ୟ ଏକ ଦିଗ ହେଉଛି ଅବତାରବାଦ । ଯୁଗେ ଯୁଗେ ପୃଥିବୀର ପାପଭାରା ଦୂରପାଇଁ ଭଗବାନ୍ ଧରାପୃଷ୍ଠରେ ଜନ୍ମଗ୍ରହଣ କରିଥାନ୍ତି । ଦୁଷ୍ଟଙ୍କୁ ବିନାଶ କରି ସନ୍ଥ ପାଳନ୍ତି । ଏକାଦଶ ସ୍କନ୍ଧରେ ସେ ଏହା କହିଛନ୍ତି –

"ଏଣୁ ତୁ ଧର୍ମରକ୍ଷା ଅର୍ଥେ । ଶରୀର ବହୁ ନାନାମତେ ।।"

ଭାରତୀୟ ଦର୍ଶନରେ ଗୁରୁଭକ୍ତିର ପ୍ରାଧାନ୍ୟ ରହିଛି । ଗୁରୁଙ୍କ ସ୍ଥାନ ଯେ ସବୁଠାରୁ ଉଚ୍ଚରେ, ଏହା ଭାରତର ସଂସ୍କୃତି ଘୋଷଣା କରେ । ଏପରିକି ଦେବତାଙ୍କଠାରୁ ଗୁରୁର ସ୍ଥାନ ଉଚ୍ଚ ବୋଲି କୁହାଯାଏ । 'ଭାଗବତ'ରେ ମଧ୍ୟ

ଗୁରୁଙ୍କୁ ଶ୍ରେଷ୍ଠତ୍ୱ ପ୍ରଦାନ କରାଯାଇଛି । ପ୍ରତ୍ୟେକ ଗୁରୁଙ୍କ ପାଖେ ଏକାଧିକ ମହତ୍ ଗୁଣ ଅଛି ବୋଲି ଜଗନ୍ନାଥ ଦାସ 'ଭାଗବତ'ରେ ଉଲ୍ଲେଖ କରିଛନ୍ତି । ପୃଥିବୀଠାରୁ ସହିଷ୍ଣୁତା, ପରୋପକାର, ବାୟୁଠାରୁ ନିର୍ଲିପ୍ତତା, ଆକାଶଠାରୁ ବ୍ୟାପକତା, ସୂର୍ଯ୍ୟଙ୍କଠାରୁ ସମାନତା, ଜଳଠାରୁ ପରୋପକାର, ସମୁଦ୍ରଠାରୁ ସ୍ଥିତପ୍ରଜ୍ଞତା ପ୍ରଭୃତି ଅବଧୂତ ଶିକ୍ଷା କରିଥିଲେ । ଚବିଶ ଗୁରୁଙ୍କଠାରୁ ଶିକ୍ଷା କଲା ପରେ ସେ ଆତ୍ମାକୁ ଗୁରୁ ଭାବେ ଗ୍ରହଣ କରି ଆତ୍ମାକୁ ଶ୍ରେଷ୍ଠ ଆସନ ଦେଇଥିଲେ ।

''ଆତ୍ମା ମୋହର ନିଜ ଗୁରୁ । ଉଦ୍ଧବ କେତେ ତୁ ପଚାରୁ ?''

## ଆଧ୍ୟାତ୍ମିକ ମୂଲ୍ୟବୋଧ

'ଭାଗବତ' ଜ୍ଞାନତତ୍ତ୍ୱ ଦୃଷ୍ଟିରୁ ଯେପରି ଅଦ୍ୱିତୀୟ, ଭକ୍ତିତତ୍ତ୍ୱ ଦୃଷ୍ଟିରୁ ସେହିପରି ଅସାଧାରଣ । 'ଭାଗବତ' ସଦୃଶ କୌଣସି କବିଙ୍କର ସାରସ୍ୱତ କୃତି ଏଭଳି ଗୌରବର ଅଧିକାରୀ ହୋଇ ନାହିଁ । ଉତ୍କଳମଣି ଗୋପବନ୍ଧୁଙ୍କ ଭାଷାରେ 'ଭାଗବତ' ହେଉଛି ଓଡ଼ିଶାର ଆରାଧ୍ୟଦେବତା, ଧର୍ମଗ୍ରନ୍ଥ । ଓଡ଼ିଶାର ପୁରପଲ୍ଲୀରେ 'ଭାଗବତ' ପୋଥି ସାକ୍ଷାତ୍ ବିଷ୍ଣୁ, ବାସୁଦେବ ବା ଜଗନ୍ନାଥଙ୍କ ଭଳି ପୂଜା ପାଉଛି । ଓଡ଼ିଶାର ଘରେ ଘରେ ପୂଜିତ ହେଉଥିବା ଅଷ୍ଟାଦଶ ପୁରାଣ ମଧ୍ୟରେ ଏହାକୁ ଅନ୍ତର୍ଭୁକ୍ତ କରାଯାଇଛି । ଏହାର ଛତ୍ରେ ଛତ୍ରେ ଭକ୍ତିସ୍ରୋତ ପ୍ରବାହିତ । ଏହାର ଆବୃତ୍ତି ଫଳରେ ଓଡ଼ିଆର ଆଧ୍ୟାତ୍ମିକ ବିକାଶ ଯେ ଘଟିଛି, ଏଥିରେ ଦ୍ୱିମତର ଅବକାଶ ନାହିଁ ।

## ଓଡ଼ିଆ ଭାଗବତର ଭାଷା

ପଣ୍ଡିତ କୁଳମଣି ଦାସ କାବ୍ୟତୀର୍ଥ ଲେଖିଛନ୍ତି – ଜାତୀୟ ସାହିତ୍ୟକୁ ଆଦର୍ଶ ସାହିତ୍ୟ କୁହାଯାଏ । ପୁଣ୍ୟାତ୍ମା ଜଗନ୍ନାଥ ଦାସଙ୍କ ପ୍ରଣୀତ 'ଶ୍ରୀମଦ୍ ଭାଗବତ' ହିଁ ଓଡ଼ିଆ ସାହିତ୍ୟର ଆଦର୍ଶ । ଓଡ଼ିଶାର କି ଶିକ୍ଷିତ ଅଶିକ୍ଷିତ ସମସ୍ତେ ଏହି ଭାଗବତର ରସ ଆସ୍ୱାଦନ କରିପାରନ୍ତି । ଏହାର ଭାଷା କିପରି ସରଳ, ମଧୁର, ଚିତ୍ତାକର୍ଷକ ଓ ହୃଦୟଗ୍ରାହୀ ତାହା ସମସ୍ତେ ଜାଣନ୍ତି । ସାଧାରଣ ଲୋକଙ୍କୁ ଧର୍ମତତ୍ତ୍ୱ ବୁଝେଇବାକୁ ଯାଇ ସେ ଦେଖିଥିଲେ ଯେ ସଂସ୍କୃତ 'ଭାଗବତ'ର ସମସ୍ତ ଅଂଶ ସାଧାରଣ ଲୋକଙ୍କର ବୋଧଗମ୍ୟ ନୁହେଁ । ତହିଁରେ ସ୍ଥାନେ ସ୍ଥାନେ ଏପରି ଦୁରୂହ ଦାର୍ଶନିକ ତତ୍ତ୍ୱମାନ ବ୍ୟାଖ୍ୟା କରାଯାଇଅଛି ଯେ ତାହାର ଭାବ ଅନେକ ସମୟରେ ସୁପଣ୍ଡିତମାନଙ୍କର ମସ୍ତିଷ୍କରେ ମଧ୍ୟ ପ୍ରବେଶ କରିପାରେ ନାହିଁ: ତେଣୁ ସେ ସଂସ୍କୃତ 'ଭାଗବତ'ର କଠିନ ଦାର୍ଶନିକ ତତ୍ତ୍ୱମାନ ତତ୍‌ପ୍ରଣୀତ ଭାଗବତରେ ଆଦୌ ସନ୍ନିବେଶିତ କରି ନାହାନ୍ତି ।

ଜଗନ୍ନାଥ ଦାସଙ୍କ ଭାଷା ସରଳ, କିନ୍ତୁ ସାରଳା ଦାସଙ୍କ ଭାଷା ପରି ଗ୍ରାମୀଣ ନୁହେଁ । ତାଙ୍କ ଭାଗବତରେ ତତ୍ସମ ଶବ୍ଦ ସଂଖ୍ୟା ଶତକଡ଼ା ପଞ୍ଚାନବେରୁ କମ୍ ନୁହେଁ । ସେ ଇଚ୍ଛା କରିଥିଲେ ସେହି ତତ୍ସମ ଶବ୍ଦମାନଙ୍କ ସ୍ଥାନରେ ଦେଶଜ ବା ଗ୍ରାମ୍ୟଭାଷାର ଶହ ଶହ ଶବ୍ଦ ବ୍ୟବହାର କରିପାରିଥାନ୍ତେ । ମାତ୍ର ସେ ତାହା କରି ନାହାନ୍ତି । ପୁରୀ ହେଉଛି ଓଡ଼ିଶାବାସୀଙ୍କର ପବିତ୍ର କ୍ଷେତ୍ର । ଏଠାରେ ସବୁ ଅଞ୍ଚଳର ଲୋକ ଏକାଠି ହୁଅନ୍ତି । 'ଭାଗବତ'ରେ ଦୁରୂହ ତତ୍ତ୍ୱ କୌଣସି ଗୋଟାଏ ଅଞ୍ଚଳରେ କଥିତ ଭାଷାରେ ସମସ୍ତଙ୍କୁ ବୁଝାଇବା ସମ୍ଭବ ନୁହେଁ । ତେଣୁ ତାହା ସେ ଦୁରୂହ ଓ କ୍ଲିଷ୍ଟ ଭାଷା ସଙ୍ଗେ ସଙ୍ଗେ ଅତି ଗ୍ରାମ୍ୟ ଓ ଦେଶଜ ଭାଷାକୁ ବ୍ୟବହାର ନ କରି ଏକ ଆଦର୍ଶ ଭାଷା ସୃଷ୍ଟି କରିଯାଇଛନ୍ତି ।

ଭାଷା ସମ୍ବନ୍ଧରେ ବିଶିଷ୍ଟ ସାହିତ୍ୟିକ ତଥା ସମାଲୋଚକ ସୁରେନ୍ଦ୍ର ମହାନ୍ତି ଲେଖିଛନ୍ତି – "ସଂସ୍କୃତରେ ଜଗନ୍ନାଥ ଦାସ ସୁପଣ୍ଡିତ ଥିବାରୁ ତାଙ୍କ ଭାଷା ସଂସ୍କୃତାନୁରାଗ ହୋଇଥିବା ସ୍ୱାଭାବିକ । ଭାଗବତରେ ସାରଳା ଓ ବଳରାମ କାଳୀନ ଓଡ଼ିଆ ଶବ୍ଦସମ୍ଭାର ସହିତ ସଂସ୍କୃତ ତତ୍ସମ ଶବ୍ଦାବଳୀର ଯେଉଁ ଅପୂର୍ବ ସମନ୍ୱୟ ସାଧିତ ହୋଇଅଛି ତାହା ଆଦର୍ଶ ବା ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷା ରୂପେ ବହୁ ଶତାବ୍ଦୀର ବ୍ୟବଧାନ ପରେ ସୁଦ୍ଧା ତଥାପି ଅପରିବର୍ତ୍ତିତ ରହିଅଛି । ଆଧୁନିକ ଓଡ଼ିଆ ଭାଷା ରୀତି ଜଗନ୍ନାଥ ଦାସଙ୍କ ଦ୍ୱାରା ପ୍ରବର୍ତ୍ତିତ ହୋଇଥିଲା ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।"

## ଛନ୍ଦ

ଛନ୍ଦ ବା ବୃତ୍ତ 'ଭାଗବତ'ର ଆଉ ଏକ ଆକର୍ଷଣ । ଏହାର ପ୍ରତ୍ୟେକ ପାଦ ନଅ ଅକ୍ଷର ବିଶିଷ୍ଟ ଏବଂ ଦୁଇ ପାଦରେ ଏହାର ଏକ ପଦ ହୁଏ । ଏହି ପ୍ରକାର ଛନ୍ଦ ବା ବୃତ୍ତକୁ 'ଗୁଜ୍ଜରୀ' କୁହାଯାଏ । ଏହି ବୃତ୍ତ ବା ଛନ୍ଦ ଏତେ ଆଦୃତ ହେଲା ଯେ କ୍ରମେ ଏହା 'ଭାଗବତ' ବୃତ୍ତ ବା 'ଭାଗବତ ବାଣୀ' ରୂପେ ପ୍ରସିଦ୍ଧି ଲାଭ କଲା ।

## କବି ପ୍ରତିଭା

'ଭାଗବତ'ର କେବଳ ଭାଷା ବା ଛନ୍ଦ ନୁହେଁ, ଶବ୍ଦ ସଂଯୋଜନା ଓ ସାବଲୀଳ ବର୍ଣ୍ଣନା ଧାରା ପାଠକକୁ ବିମୋହିତ କରେ । ଦଶମ ସ୍କନ୍ଧରେ ବୃନ୍ଦାବନର ଗୋପୀମାନେ ଶ୍ରୀକୃଷ୍ଣଙ୍କ ବିରହରେ ପାଗଳିନୀ ହୋଇ ଅନ୍ୱେଷଣ କରିବାର ସେ ଯେଉଁ ବର୍ଣ୍ଣନା କରିଛନ୍ତି, ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ

"ହେ କୁରୁବେକୀ ନାଗେଶ୍ୱର ଚମ୍ପା ପୁନଗ କନିଅର ।
ତୁମ୍ଭ ପୀରତି ଘେନି ଚିତ୍ତେ ଗୋବିନ୍ଦ ଗଲେ ଏଇ ପଥେ ?
ହେ ଚୂତ ପନସ ପିଆଳ ଅଶୋକ ଜମ୍ବୁ କୋକଦର ।
ବେଲ ବକୁଳ ନିମ୍ବ ଯୂଥେ ଗୋବିନ୍ଦ ଗଲେ ଏଇ ପଥେ ?"

## ମାନବବାଦ

'ଭାଗବତ'ରେ ସଂକୀର୍ଣ୍ଣ, ଗୋଷ୍ଠୀଗତ ଧର୍ମ ମତ ଅପେକ୍ଷା ଉଦାର ମାନବ ଧର୍ମ ମତ ବିଶେଷଭାବେ ପ୍ରଚାରିତ ହୋଇଛି । ଅବଶ୍ୟ ଆତ୍ମାର କର୍ଷଣ ଓ ମୁକ୍ତିପାଇଁ ଜ୍ଞାନ ଯୋଗ ସାଧନା ଆଦିର ପନ୍ଥା ଜଗନ୍ନାଥ ଦାସ ନିର୍ଣ୍ଣୟ କରିଅଛନ୍ତି; କିନ୍ତୁ ସଂସାର ନିର୍ବାହ କରି ମଧ ଈଶ୍ୱର ପ୍ରାପ୍ତି ହେବା ସମ୍ଭବ ବୋଲି ସେ ସନ୍ଦେଶ ଦେଇଛନ୍ତି । ସକାମ ଉପାସନା ହେୟ ନୁହେଁ; ବରଂ ତାଙ୍କ ମତରେ ବହୁ ଗୁଣରେ ଶ୍ରେୟ । ଏହା ଯେ 'ଭାଗବତ'ର ସାର୍ବଜନୀନ ଆଦର୍ଶକୁ ବହୁ ଗୁଣରେ ବୃଦ୍ଧି କରେ, ଏଥିରେ ସନ୍ଦେହ ନାହିଁ ।

## ଜାତିପ୍ରାଣତା

ଗୌଡ଼ୀୟ ବୈଷ୍ଣବମାନଙ୍କର ଆରାଧ୍ୟଦେବତା ହେଉଛନ୍ତି ଶ୍ରୀକୃଷ୍ଣ । ବୃନ୍ଦାବନ ହେଉଛି ସେମାନଙ୍କର ନିତ୍ୟଭୂମି । ମାତ୍ର ଉତ୍କଳୀୟ ବୈଷ୍ଣବମାନଙ୍କର ଜଗନ୍ନାଥଧାମ ହେଉଛି ଆରାଧନାର କ୍ଷେତ୍ର । ସେହି କ୍ଷେତ୍ରର ଯଶ ଓ ମହିମା ବର୍ଣ୍ଣନା ସେମାନେ ଉଚ୍ଛ୍ୱସିତଭାବେ କରିଥାନ୍ତି । ଏହା କବିଙ୍କର ଜାତିପ୍ରାଣତାର ପରିଚୟ ଦିଏ । ପୁରୀର ଜଗନ୍ନାଥ ହେଉଛନ୍ତି କବିଙ୍କର ଉପାସ୍ୟଦେବତା । ତାଙ୍କରି ପବିତ୍ର ପୀଠରେ ରହି ସେ କାବ୍ୟ ରଚନା କରିଛନ୍ତି । ତାଙ୍କର ଆରାଧନାରେ ସେ ଜୀବନ ବିତାଇଛନ୍ତି । ସବୁ ତୀର୍ଥ ପର୍ଯ୍ୟଟନର ସୁଖ ଓ ଆନନ୍ଦ ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ମୁଖକୁ ଚାହିଁବାରେ ପାଇଛନ୍ତି । ତାଙ୍କ ଲେଖନୀରୁ ସେଥିପାଇଁ ଝରିପଡ଼ିଛି –

"ସକଳ ତୀର୍ଥ ତୋ ଚରଣେ । ବଦ୍ରିକା ଯିବି କି କାରଣେ ?"

ଏଥିରେ କବିଙ୍କର ଜଗନ୍ନାଥ ପ୍ରେମ ଓ ଜଗନ୍ନାଥ ଧାମର ମହିମା କୀର୍ତ୍ତନର ଅମର ସ୍ୱାକ୍ଷର ରହିଛି ।

## ଭାଗବତ ଘର

'ଭାଗବତ' ରଚନା କରି ଜଗନ୍ନାଥ ଦାସ ଯେଉଁ ଲୋକପ୍ରିୟତା ଅର୍ଜନ କଲେ ତାହା ଓଡ଼ିଶାର ଆଉ କୌଣସି ପ୍ରାଚୀନ କବି କରି ନାହାନ୍ତି । ଗ୍ରାମେ ଗ୍ରାମେ ଭାଗବତ ଘର, ଭାଗବତ ଟୁଙ୍ଗି, ମଠ, ଚଉପାଢ଼ି ପ୍ରଭୃତି ଅନୁଷ୍ଠାନମାନ

ଗଢ଼ି ଉଠିଥିଲା । ପ୍ରତି ସନ୍ଧ୍ୟାରେ ଦେଉଳରେ ଆରତି ଘଣ୍ଟା ବାଜିବା ସଙ୍ଗେ ସଙ୍ଗେ ଭାଗବତ ପାଠ ଆରମ୍ଭ ହେଉଥିଲା । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏଠାରେ ଯୋଗ ଦେଉଥିଲେ । ଜଣେ ପୁରାଣ ପାଠ କରୁଥିଲେ ଓ ଅନ୍ୟମାନେ ଶୁଣୁଥିଲେ । କେଉଁଠି କେଉଁଠି ଶ୍ରୋତାମାନେ ପାଳି କରି ପଢୁଥିଲେ । ପଢ଼ା ଶେଷ ହେବା ପରେ ପ୍ରସାଦ ବଣ୍ଟା ହେଉଥିଲା । କାହାରି କାହାରି ମାନସିକ ଥିଲେ ଭୋଗ ଲଗା ହେଉଥିଲା । ଏଠାରେ ମଧ 'ଭାଗବତ'ର ଗୂଢ଼ତତ୍ତ୍ୱମାନ ଆଲୋଚନା ହେଉଥିଲା । କେବେ କେବେ ଭଜନ କୀର୍ତ୍ତନ ହେଉଥିଲା । ଏହା ଶେଷ ହେବା ପରେ ମୁଖିଆ ଲୋକେ ସମ୍ବାଦ ପରିବେଷଣ କରୁଥିଲେ । ନିଜ ଗ୍ରାମର ତଥା ପଡ଼ୋଶୀ ଗ୍ରାମମାନଙ୍କ ସମସ୍ୟା ଉପରେ ଆଲୋଚନା ହେଉଥିଲା । ଏଠାରେ ମଧ ନ୍ୟାୟନିଶାପ ହେଉଥିଲା । ଭାଇ ଭାଇ ପୃଥକ୍ ହେବା ବା ଜମିଜମା ବିବାଦ ପ୍ରଭୃତି ଏଠାରେ ସମାଧାନ ହେଉଥିଲା । ସରଳ ଗ୍ରାମବାସୀମାନେ କୋର୍ଟ କଚେରିକୁ ଦୌଡୁ ନ ଥିଲେ । ଅତିଥି ଅଭ୍ୟାଗତ ଆସିଲେ ଏଠାରେ ମଧ ରହୁଥିଲେ ।

ଭାଗବତ ଘର ଯେ ଗ୍ରାମବାସୀଙ୍କର ଆଧାତ୍ମିକ କେନ୍ଦ୍ର ରୂପେ କାର୍ଯ୍ୟ କରୁଥିଲା, ଏହା ଅତି ସ୍ପଷ୍ଟ । ଏହା ସେମାନଙ୍କର ନୈତିକ ବଳ ସୃଷ୍ଟି କରି ସତ୍‌ପଥରେ ପରିଚାଳନା କରୁଥିଲା । ଏହା ହିଂସା ତ୍ୟାଗ କରିବାକୁ ନିର୍ଦ୍ଦେଶ ଦେଉଥିଲା । ଭାଗବତର ବାଣୀ –

''ଯେ ପ୍ରାଣୀ ପରେ ହିଂସାକରେ । ଦେବତା ପୂଜି ନ ପାରେ ।''

ପରର ଉପକାର ହେଉଛି ଶ୍ରେଷ୍ଠ ଧର୍ମ –

''ଯେ କରେ ପର ଉପକାର । ସେ ଧର୍ମ ଜ୍ଞାନୀଙ୍କର ସାର ।।''
''ଦୁଃଖେ ଯେ ପରିତ୍ରାଣ କରେ । ସଙ୍କଟୁ ପ୍ରାଣୀଙ୍କୁ ଉଦ୍ଧାରେ ।।''
''ତା' ଜନ୍ମ ଧନ୍ୟ ଏ ସଂସାରେ । ସେ ରହେ ପର ଉପକାରେ।।''

ଅତି ଗର୍ବ କଲେ ପ୍ରାଣୀର ଅମଙ୍ଗଳ ହୁଏ ବୋଲି 'ଭାଗବତ'ରେ ଅଛି –

''ଆତ୍ମ ପ୍ରଶଂସା ଯେ କରନ୍ତି । ସେ ପ୍ରାଣୀ ନରକେ ପଡ଼ନ୍ତି ।।''

ସେବାର ମହତ୍ତ୍ୱ ମଧ 'ଭାଗବତ' ଦର୍ଶାଇଥାଏ –

''ଧନ କାର୍ପଣ୍ୟ ସେବା ଫଳେ । କିବା ଅସାଧ୍ୟ ମହୀ ତଳେ ?''

ଦୁର୍ଜ୍ଜନ ସଙ୍ଗ ପରିହାର କରିବା ଉଚିତ ବୋଲି 'ଭାଗବତ' ଶିକ୍ଷା ଦିଏ –

''ଏଣୁ ଦୁର୍ଜ୍ଜନ ସଙ୍ଗ ଦୋଷ । କରେ ସକଳ ଜ୍ଞାନ ଧ୍ୱଂସ ।।''

'ଭାଗବତ'ରେ ନୀତିଶିକ୍ଷା ହେଲା –

"ମର୍ତ୍ତ୍ୟେ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ।।"

'ଭାଗବତ' ପ୍ରଭାବରୁ ଲୋକମାନଙ୍କର ଧର୍ମ ପ୍ରତି ଆସକ୍ତି ବଢୁଥିଲା । ପାପ କରିବାକୁ ଭୟ କରୁଥିଲେ । ଅହଙ୍କାରହୀନ ସରଳ ନିରାଡ଼ମ୍ବର ଜୀବନଯାପନ କରିବାକୁ ଶିକ୍ଷା ପାଉଥିଲେ ।

ଭାଗବତ ଘରକୁ ମଧ୍ୟ କେନ୍ଦ୍ର କରି ଏକ ପାଣ୍ଠି ରଖାଯାଉଥିଲା । ନ୍ୟାୟ-ନିଶାପରୁ ଆଦାୟ ଅର୍ଥ, କୋଠଗଛ, ମାଛ ଅର୍ଥ ଓ ଗ୍ରାମବାସୀଙ୍କ ପ୍ରଦତ୍ତ ଚାନ୍ଦାରୁ ଏହି ପାଣ୍ଠି ଗଢ଼ାଯାଉଥିଲା । ଏହି ପାଣ୍ଠିରୁ ଗ୍ରାମବାସୀମାନେ ଆବଶ୍ୟକ ପଡ଼ିଲେ କରଜ ନେଉଥିଲେ ଓ ସୁବିଧା ଦେଖି ଅଳ୍ପ ସୁଧ ସହିତ ପରିଶୋଧ କରୁଥିଲେ । ଫଳରେ ଗ୍ରାମବାସୀମାନେ ଅର୍ଥଲୋଭୀ ମହାଜନମାନଙ୍କ ଶୋଷଣରୁ ରକ୍ଷା ପାଉଥିଲେ । ଏହାହିଁ ଆଧୁନିକ ଗ୍ରାମ ପଞ୍ଚାୟତ ବ୍ୟବସ୍ଥାର ଜନ୍ମଦାତା କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଓଡ଼ିଶାର ଏହି ଭାଗବତ ଘରର ବହୁମୁଖୀ ପ୍ରତିଭାରେ ପ୍ରଲୁବ୍ଧ ହୋଇ ଭାଗବତ ଘର ଛାୟାରେ ଅସମିୟା କବି ଶଙ୍କରଦେବ ଆସାମରେ ନାମଘର ପ୍ରତିଷ୍ଠା କରି ସୁଫଳ ପାଇଥିଲେ ।

## ଓଡ଼ିଆ ଭାଗବତର ଜନପ୍ରିୟତା

ଓଡ଼ିଶାର ଜନସମାଜରେ 'ଭାଗବତ'ର ଲୋକପ୍ରିୟତା ଓ ସ୍ଥାନ ସମ୍ବନ୍ଧରେ ଜଗବନ୍ଧୁ ସିଂହ ପ୍ରାଚୀନ ଉତ୍କଳରେ ଲେଖିଛନ୍ତି – "ତାହାଳିରେ ପିଲାମାନଙ୍କର ଭାଗବତ ପ୍ରଧାନ ପାଠ୍ୟପୁସ୍ତକ ଥିଲା । ଯେଉଁ ପିଲା ଅଧାଯେ 'ଭାଗବତ' ବୋଲି ପାରିଲା ତା'ର ବିଦ୍ୟା ଶେଷ ହେଉଥିଲା । ଲୋକର ଆସନ୍ନ ମୃତ୍ୟୁ ବେଳେ ତା'ର ପୁତ୍ର-ପୌତ୍ରାଦି ଆତ୍ମୀୟ-ସ୍ୱଜନ ତା' କାନରେ ଅଧାଯେ 'ଭାଗବତ' ଶୁଣାଉଥିଲେ । ଗ୍ରାମରେ ବିସୂଚିକା, ମହାମାରୀ ପ୍ରଭୃତି ଉପଦ୍ରବ ହେଲେ 'ଭାଗବତ' ପାଠ, ହରିହାଟ ପ୍ରଭୃତି ହେଉଥିଲା । 'ଭାଗବତ' ପାଠ ହେଲେ ଗ୍ରାମରୁ କାଳ ଭୟ ଦୂର ହେଉଥିଲା ବୋଲି ଲୋକଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା । ଅନେକ ଲୋକଙ୍କର ସକାଳେ ସ୍ନାନ ପରେ ଓ ସନ୍ଧ୍ୟାବେଳେ 'ଭାଗବତ' ପାଠ କରିବା ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା ।

ଏବେବି 'ଭାଗବତ'ର ବାଣୀ ପ୍ରତି ଉତ୍କଳୀୟଙ୍କ ପ୍ରାଣକୁ ଆଲୋଡ଼ିତ କରୁଛି । ଏପରି ଲୋକ ଓଡ଼ିଶାରେ ନାହାନ୍ତି ଯେ କି ଜଗନ୍ନାଥ ଦାସଙ୍କ ଭାଗବତରୁ

ପଦେ ଦି' ପଦ ଆବୃତ୍ତି କରିବାକୁ ସମର୍ଥ ନୁହେଁ । କଥା ପଦକେ ଲୋକେ ଭାଗବତରୁ ପଦମାନ ଉଦ୍ଧାର କରିଥାନ୍ତି –

''ଯାହାକୁ ରଖିବେ ଅନନ୍ତ । କେ କରିପାରେ ବଳବନ୍ତ ।।

× ×

ପ୍ରାଣୀର ଭଲ ମନ୍ଦ ବାଣୀ । ମରଣ କାଳେ ତାହା ଜାଣି ।।

× ×

ସଂସାରେ ଥିବ ଯେତେ ଦିନ । ଆନନ୍ଦ କରୁଥିବ ମନ ।।

× ×

ଦୁଃଖେ ଅର୍ଜିତ ଯେତେ ଧନ । ସେ ନୁହେଁ ସୁଖେ ପ୍ରୟୋଜନ ।।

× ×

ଆହାରେ ଭଲ ମନ୍ଦ ନାହିଁ । ଯେ ସ୍ଥାନେ ଯେମନ୍ତେ ମିଳଇ ।।

× ×

ସର୍ବେ ଚଳିବେ କାଳବେଳେ । ଯଶ ରହିବ ମହୀତଳେ ।।''

'ଭାଗବତ' ହେଉଛି ଓଡ଼ିଆ ଘରର ସର୍ବଶ୍ରେଷ୍ଠ ଗ୍ରନ୍ଥ । ଏବେବି ଗାଦି ହିସାବରେ ଏହାକୁ ପୂଜା କରାଯାଉଅଛି । ଓଡ଼ିଆଙ୍କର ଏବେବି ବିଶ୍ୱାସ ଯେ ମୃତ୍ୟୁ ବେଳେ ଭାଗବତରୁ ଗୋଟିଏ ଅଧ୍ୟାୟ କାନରେ ପଡ଼ିଲେ ଜୀବ ମୋକ୍ଷ ଲାଭ କରିବ ।

'ଭାଗବତ' ପ୍ରଚାର ଯୋଗୁଁ ମଧ୍ୟ ଓଡ଼ିଶାରେ ସାକ୍ଷରଙ୍କ ସଂଖ୍ୟା ବହୁ ପରିମାଣରେ ବୃଦ୍ଧି ପାଇଥିବା ଜଣାଯାଏ । ଏଇ ସଂକ୍ରାନ୍ତରେ ବଙ୍ଗଳାର ବିଶିଷ୍ଟ ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାର ତାଙ୍କର ଓଡ଼ିଆ ସାହିତ୍ୟ ପୁସ୍ତକର ମୁଖବନ୍ଧରେ ଲେଖିଛନ୍ତି '' 'ଭାଗବତ'କୁ ଓଡ଼ିଆରେ ପରିବେଷଣ କରି ଜଗନ୍ନାଥ ନିଜ ଜାତିର ସବୁ ଶ୍ରେଣୀର ଲୋକଙ୍କୁ ନିଜ ମାତୃଭାଷା ଓଡ଼ିଆକୁ ଶ୍ରଦ୍ଧା ସହକାରେ ଶିଖିବାପାଇଁ ପ୍ରବର୍ତ୍ତାଇପାରିଲେ, ଏହା ବିନା ଦ୍ୱିଧାରେ କୁହାଯାଇପାରେ । ଲୋକେ ଯେତେବେଳେ ଜାଣିଲେ ଓଡ଼ିଆ ଭାଷାରେ 'ଭାଗବତ' ପ୍ରାପ୍ୟ ହେଲାଣି, ସେତେବେଳେ ସେମାନେ କେବଳ 'ଭାଗବତ' ପଢ଼ିବାପାଇଁ ଓଡ଼ିଆ ଶିଖିବାରେ ଲାଗିଲେ । କେବଳ ଏହି କାରଣରୁ ବଙ୍ଗଳା ଅପେକ୍ଷା ଉତ୍କଳରେ ସାକ୍ଷରତା ଅଧିକ ବ୍ୟାପକ ।''

## ଓଡ଼ିଆ କବିଙ୍କ ଉପରେ ଭାଗବତର ପ୍ରଭାବ

ଜଗନ୍ନାଥ ଦାସଙ୍କ 'ଭାଗବତ'ରେ ବିଷୟବସ୍ତୁ ଅବଲମ୍ବନରେ ବହୁ କାବ୍ୟ, ଗାଥା, କବିତା, ନାଟକ ପ୍ରଭୃତି ରଚିତ ହୋଇଥିବାର ଜଣାଯାଏ । ବଳରାମ ଦାସ ବୟସରେ ବଡ଼ ହେଲେ ମଧ୍ୟ ତାହାଙ୍କ ରଚିତ 'ଉଦ୍ଧବଗୀତା' ଜଗନ୍ନାଥଙ୍କ ଭାଗବତଦ୍ୱାରା ପ୍ରଭାବିତ ହୋଇଥିଲା ।

ପ୍ରାଚୀନ ଓଡ଼ିଆ କବି କାର୍ତ୍ତିକ ଦାସ ଭାଗବତ ବର୍ଣ୍ଣିତ ରୁକ୍ମିଣୀ ସ୍ୱୟଂବର ବିଷୟବସ୍ତୁ ନେଇ 'ରୁକ୍ମିଣୀ ବିଭା' ରଚନା କରିଥିଲେ । ଦନାଇ ଦାସଙ୍କ ଗୋପୀଭାଷା ରାଧାକୃଷ୍ଣଙ୍କ ପ୍ରେମ ସମ୍ବଳିତ ଏକ ମହାନ୍ କାବ୍ୟ । ଏହା ମଧ ଓଡ଼ିଆ ଭାଗବତ ଅବଲମ୍ବନରେ ରଚିତ ହୋଇଅଛି । ଭୂପତି ପଣ୍ଡିତ ଭାଗବତ ଅବଲମ୍ବନରେ 'ପ୍ରେମ ପଞ୍ଚାମୃତ' ରଚନା କରିଥିବା କଥା ନିଜ ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି –

''ଏ ଶ୍ରୀ ଭାଗବତ ଚରିତ । ସମୁଦ୍ର ଶାମୁକା ସମ୍ଭୂତ ।।''

ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣରେ ଭୂପତି ପଣ୍ଡିତ ଗୋପୀଙ୍କ ମର୍ମବେଦନା ପ୍ରକାଶ କରିଛନ୍ତି –

''ଘର ଛାଡ଼ିଲି ଗୋଷ୍ଠୀ ମେଳେ ।
ଗୋଷ୍ଠୀ ଛାଡ଼ିଲି ତୋର ବୋଲେ ।।
ତୁ ଏବେ ମୋତେ ଛାଡ଼ିଗଲୁ । କେହୁଣି କୁଳ ତ ନ କଲୁ ।।''

ଦୀନକୃଷ୍ଣଙ୍କ କାବ୍ୟ 'ରସକଲ୍ଲୋଳ' ମଧ ଭାଗବତଦ୍ୱାରା କେତେକାଂଶରେ ପ୍ରଭାବିତ ହୋଇଥିବାର ଆଲୋଚକମାନେ ମତ ଦିଅନ୍ତି । ଶିଶୁ କୃଷ୍ଣ ସହ ବସୁଦେବଙ୍କର ମଥୁରା ଗମନ ପ୍ରସଙ୍ଗରେ ଜଗନ୍ନାଥ ଦାସ ଲେଖିଛନ୍ତି –

''ଯାଆନ୍ତେ କୃଷ୍ଣଙ୍କୁ ଘେନିଣ । ପଥ ଓଗାଳେ ଉଗ୍ରସେନ ।।''

ଦୀନକୃଷ୍ଣ ଏଠାରେ ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣ କରିଛନ୍ତି –

''କର ଧରି ସୁତ ଧୀରେ ଗମନ କରନ୍ତି ଖରେ
ଉଗ୍ରସେନ ଆସି ଉଗାଳିଲା ଆଗରେ ।''

ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତସିଂହାର ମଧ ଜଗନ୍ନାଥ ଦାସଙ୍କ ପଦାବଳୀଦ୍ୱାରା ପ୍ରଭାବିତ ହୋଇଥିବାର ଅନୁମାନ କରାଯାଏ ।

'ବିଦଗ୍ଧ ଚିନ୍ତାମଣି'ରେ କବି ଲେଖିଛନ୍ତି –

''ଉନ୍ନ ନାଭବତ ଖେଳୁ ଇଚ୍ଛା ଶକ୍ତି ବଳେ ।
ଉଭବ ହୋଇ ତୁ ଧର୍ମ ସ୍ଥାପୁ କାଳେ କାଳେ ।।''

ଜଗନ୍ନାଥ ଦାସ ରଚନା କରିଛନ୍ତି –

''ଯେସନେ କୀଟ ଉର୍ଣ୍ଣନାଭ । ନିଜ ବଦନୁ ସୂତ୍ରଭାବ ।।
ଜାଲ ନିର୍ମାଇ ରାତ୍ରମୁଖେ । ମଧେ ବିହରଇ ଆତ୍ମ ସୁଖେ ।।''

'ଭାଗବତ'ର ପ୍ରଭାବ ଭକ୍ତଚରଣଙ୍କ ଉପରେ ସୁସ୍ପଷ୍ଟ । 'ମଥୁରାମଙ୍ଗଳ' ରଚୟିତା ଜଗନ୍ନାଥ ଦାସଙ୍କର ବିମୁଗ୍ଧ ପାଠକ ଥିଲେ । ବିଷୟବସ୍ତୁ, ଚରିତ୍ର ଚିତ୍ରଣ

ପ୍ରଭୃତି ବହୁ ସ୍ଥାନରେ ସେ ଜଗନ୍ନାଥ ଦାସଙ୍କ ଅନୁସରଣ କରିଛନ୍ତି । ଉଦାହରଣସ୍ୱରୂପ, ଅକ୍ରୁର ହସ୍ତରେ ନନ୍ଦଙ୍କ ପାଖକୁ କଂସର ପତ୍ର ପ୍ରେରଣ ମୂଳ ସଂସ୍କୃତ 'ଭାଗବତ'ରେ ନାହିଁ । ମାତ୍ର ଏହା ଓଡ଼ିଆ 'ଭାଗବତ'ରେ ଅଛି । ଏହାର ଅବଲମ୍ବନରେ ଭକ୍ତଚରଣ କଂସର ଚିଟାଉ ନାମକ ଏକ ନୂଆ ଅଧ୍ୟାୟ ସୃଷ୍ଟି କରିଛନ୍ତି । ସେହିପରି ଶ୍ରୀକୃଷ୍ଣଙ୍କର ମଥୁରା ଗମନରେ ଯଶୋଦାଙ୍କ ବିଳାପ ବର୍ଣ୍ଣନାରେ ଜଗନ୍ନାଥ ଦାସଙ୍କର ପ୍ରଭାବ ଅତି ସ୍ପଷ୍ଟ ।

କବିସୂର୍ଯ୍ୟ ବଳଦେବ ରଥ ମଧ୍ୟ ତାଙ୍କ 'ସର୍ପ ଜଣାଣ', 'ଜଗନ୍ନାଥ ଜଣାଣ' ପ୍ରଭୃତିରେ ଜଗନ୍ନାଥ ଦାସଙ୍କ ପଦାଙ୍କ ଅନୁସରଣ କରିଛନ୍ତି । ଜଗନ୍ନାଥଙ୍କୁ ଶ୍ରୀକୃଷ୍ଣଙ୍କ ସହିତ ଅଭିନ୍ନ ଭାବେ ବର୍ଣ୍ଣନା କରିଛନ୍ତି ।

ସନ୍ଥ କବି ଭୀମଭୋଇ ଜଗନ୍ନାଥ ଦାସଙ୍କ ସଦୃଶ ଆକୁଳରେ ଗାଇ ଉଠିଥିଲେ –

"ଏ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।"

ଜଗନ୍ନାଥ ଦାସଙ୍କ ବହୁ ଉକ୍ତିକୁ ସେ ନିଜ ରଚନାବଳୀରେ ଅବିକଳ ବା କିଞ୍ଚିତ୍ ପରିବର୍ତ୍ତନ କରି ସ୍ଥାନ ଦେଇଛନ୍ତି, ଯଥା –

"ମୋର ହସ୍ତେ ମୋହର ଜିହ୍ୱା କାଟିଅଛି କାହାକୁ ଏ ଦୋଷ ହେବ ।"

ଆଧୁନିକ ଯୁଗର କବି ରାଧାନାଥ ମଧ୍ୟ 'କେଦାରଗୌରୀ', 'ଉଷା', 'ନନ୍ଦିକେଶ୍ୱରୀ', 'ପାର୍ବତୀ', 'ଚିଲିକା', 'ଯଯାତିକେଶରୀ' ପ୍ରଭୃତି କାବ୍ୟ ରଚନା କରିବାପରେ ଭାଗବତଦ୍ୱାରା ଅନୁପ୍ରାଣିତ ହୋଇ ତୁଳସୀ ସ୍ତବକ ନାମକ କାବ୍ୟ ରଚନା କରିଥିଲେ ।

'ଭାଗବତ'ର ପ୍ରଭାବ ଗୋପବନ୍ଧୁଙ୍କ ଉପରେ ପଡ଼ିଥିବା ଜଣାଯାଏ । ଗୋପବନ୍ଧୁ ବାଲ୍ୟକାଳରୁ 'ଭାଗବତ' ପାଠ କରୁଥିଲେ । ତାଙ୍କର କାବ୍ୟକବିତା ଯେ 'ଭାଗବତ'ଦ୍ୱାରା ପ୍ରଭାବିତ ହୋଇଥିଲା, ଏହା କହିବା ବାହୁଲ୍ୟ ମାତ୍ର । ସେ ନିଜ ରଚିତ ଭକ୍ତି କବିତାରେ ଶ୍ରୀ ଜଗନ୍ନାଥ ଦାସ ଶୀର୍ଷକ କବିତାରେ ଲେଖିଛନ୍ତି –

"ସୁକବି ପ୍ରଶଂସା ପାଇବାକୁ ଆଶା
ମନରେ ନ ଥିଲ ପୋଷି
ତଥାପି ଉତ୍କଳ ଭାବୀ କବିକୁଳ
ହେବେ ତୁମ୍ଭ ନାମ ଘୋଷି ।
ତୁମ୍ଭ ସମାଧିରୁ ଆହେ କବିଗୁରୁ
କେତେ ଦାର୍ଶନିକ କବି
ଜନମିଣ କାଳେ ଉତ୍କଳ ସାହିତ୍ୟ
ଦେବେ ନବ ନବ ଛବି ।"

ପଲ୍ଲୀକବି ନନ୍ଦକିଶୋରଙ୍କ 'ଶର୍ମିଷ୍ଠା' କାବ୍ୟ 'ଭାଗବତ'ର ଯଯାତି,ଦେବଯାନୀ ଉପାଖ୍ୟାନ ଉପରେ ଆଧାରିତ । ମଧୁସୂଦନଙ୍କ ରଚିତ 'ଋଷିପ୍ରାଣେ ଦେବାବତରଣ'ରେ 'ଭାଗବତ'ର ବାଣୀ ଝଂକୃତ ହେଉଅଛି ।

ଆଧୁନିକ ଯୁଗର ଗୀତିକବି ବୈକୁଣ୍ଠନାଥ ପଟ୍ଟନାୟକ 'ଭାଗବତ'ର ଛାୟାରେ କବିତା ରଚନା କରୁଥିଲେ । 'ଭାଗବତ' ଚତୁର୍ଥ ସ୍କନ୍ଧରେ ଜୀବାତ୍ମାଙ୍କୁ ମାନସରୋବର ବିହାରୀ ହଂସ ଭାବେ ଚିତ୍ରଣ କରାଯାଇଛି । ବୈକୁଣ୍ଠନାଥ ନିଜକୁ ମାନସ ହଂସ ଭାବେ ଯାତ୍ରା ସଙ୍ଗୀତରେ ଚିତ୍ରଣ କରିଛନ୍ତି ।

ଅତିଆଧୁନିକ କବି ଗୁରୁପ୍ରସାଦ ଦେହକୁ ଅଜଗର ସାପ ସହିତ ତୁଳନା କରିଛନ୍ତି । ଭାଗବତରେ ମଧ୍ୟ ଅଛି –

''କର୍ମ କଷଣ ଦେହ ସହେ ଅରଣ୍ୟ ଅଜଗର ପ୍ରାୟେ ।''

ଏହାଛଡ଼ା ଆଜିର ସମ୍ବାଦପତ୍ରମାନଙ୍କର ଭାଷାକୁ ବିଶ୍ଳେଷଣ କଲେ ଜଣାଯାଏ ଯେ ଜଗନ୍ନାଥ 'ଭାଗବତ'ର ଭାଷା ସହିତ ତା'ର ବହୁ ସାମଞ୍ଜସ୍ୟ ଅଛି । ଏପରିକି 'ଭାଗବତ'ର ଅନ୍ତର୍ଗର୍ଭକ ବାଣୀ ଓ ତତ୍ତ୍ୱ ମାଧ୍ୟମରେ ପତ୍ରପତ୍ରିକାର ସମ୍ପାଦକୀୟ ବିବରଣୀ ମାନ ଲେଖା ହେବାର ପଦ୍ଧତି ଚାଲିଅଛି । ବାସ୍ତବରେ ପ୍ରଥମଥରପାଇଁ କବି ଜଗନ୍ନାଥ ଦାସ ଲୋକ ଭାଷା ପ୍ରଚଳନ କରି ଏକ ନୂଆ ଯୁଗ ସୃଷ୍ଟି କରିଯାଇଛନ୍ତି ।

କେହି କେହି ଆଲୋଚକଙ୍କ ମତରେ 'ଭାଗବତ' ହେଉଛି ଓଡ଼ିଆ ଜାତିର ଅମୂଲ୍ୟ ସମ୍ପଦ । କେବଳ ସେତିକି ନୁହେଁ ଏହାର ଅଭିବ୍ୟକ୍ତି ସମଗ୍ର ମାନବ ସମାଜପାଇଁ ଅପରିହାର୍ଯ୍ୟ । ବିଶିଷ୍ଟ ଗାନ୍ଧିବାଦୀ ନେତା ଆଚାର୍ଯ୍ୟ ବିନୋବାଭାବେ 'ଭାଗବତ' ପଠନ ଓ ଅନୁଶୀଳନ କରି କହିଛନ୍ତି ଯେ ଯଦି 'ଭାଗବତ' ହିନ୍ଦୀ ଭାଷାରେ ଅନୂଦିତ ହୁଅନ୍ତା, ତେବେ ଏହା ସର୍ବଭାରତୀୟ ସ୍ତରରେ ଏକ ଅମୂଲ୍ୟ ସମ୍ପତ୍ତି ହୋଇଯାନ୍ତା ।

## ଅନ୍ୟାନ୍ୟ ରଚନା

ଭାଗବତ ଛଡ଼ା ଜଗନ୍ନାଥ ଦାସ ଆଉ ଅନେକ ଗ୍ରନ୍ଥ ରଚନା କରି ଓଡ଼ିଆ ସାହିତ୍ୟ ଗନ୍ତାଘରକୁ ସମୃଦ୍ଧ କରିଅଛନ୍ତି । ସେଗୁଡ଼ିକ ମଧ୍ୟରେ 'ଗୁପ୍ତ ଭାଗବତ', 'ଅର୍ଥକୋଇଲି', 'ଶୂନ୍ୟ ଭାଗବତ', 'ତୁଳାଭିଣା', 'ବ୍ରହ୍ମଗୀତା', 'ଭାଗବତ ସାର', 'ମୃଗୁଣୀ ସ୍ତୁତି', 'ପାଷଣ୍ଡ ଦଳନ', 'ଦାରୁବ୍ରହ୍ମ ଗୀତା' ପ୍ରଭୃତି ପ୍ରଧାନ । ତାଙ୍କ ରଚିତ ଗୁପ୍ତ ଭାଗବତରେ ଦାର୍ଶନିକ ମୌଳିକତା ପରିଦୃଷ୍ଟ ହୁଏ । ତୁଳାଭିଣାରେ ସେହିପରି ଗୂଢ଼ ରହସ୍ୟ ତତ୍ତ୍ୱଜ୍ଞାନ କଥୋପକଥନ ରୂପରେ ସ୍ଥାନ ପାଇଛି । ତୁଳା ଭିଣି ସୂତା କାଟିଲା ପରି ସଂସାରର ବହୁ ଗୂଢ଼ ତତ୍ତ୍ୱକୁ କବି ସଫଳ ଭାବରେ ବୁଝାଇଛନ୍ତି । 'ଅର୍ଥକୋଇଲି'ରେ ଜଗନ୍ନାଥ ଦାସ ଟୀକାକାର ଭାବରେ

ଦେଖାଦେଇଛନ୍ତି । କବି ମାର୍କଣ୍ଡ ଦାସଙ୍କ 'କେଶବ କୋଇଲି'କୁ ସେ 'ଅର୍ଥକୋଇଲି'ରେ ବ୍ୟାଖ୍ୟା କରିଛନ୍ତି ।

"କୋଇଲି ବୋଲିଣ ପଦାର୍ଥ ଜୀବକୁ କହି ।
ସେହି ଜୀବ ମୁହିଁ ଜାଣ ସର୍ବତ୍ର ଅଛଇ ।
ଆପେ ଆସିଥିଲା ଜୀବ ଆପେ ଚଳିଗଲା ।
ସେହି ପୁତ୍ର ଗୋଟି ଯହୁଁ ବାହୁଡ଼ି ନଇଲା ।
ମଥୁରା ସ୍ୱରୂପ ପିଣ୍ଡ ପଡ଼ିଣ ରହିଲା ।"

'ଶୂନ୍ୟ ଭାଗବତ' 'ଅ' ଠାରୁ 'କ୍ଷ' କ୍ରମରେ ଜଗନ୍ନାଥ ଏହା ରଚନା କରିଛନ୍ତି । ଏହା ଶୂନ୍ୟରୁ ଉତ୍ପତ୍ତି ହୋଇ ଶୂନ୍ୟରେ ଶେଷ ହୋଇଛି । ଏଥିରେ ସେ ଶୂନ୍ୟପୁରୁଷକୁ ସମ୍ମାନ ଦେଇଛନ୍ତି । 'ମନ ଶିକ୍ଷା'ରେ କବି ବୈଷ୍ଣବ ଆଚାର ବିଧି ଉଲ୍ଲେଖ କରିବା ସଙ୍ଗେ ସଙ୍ଗେ ଜୀବାତ୍ମା ପରମାତ୍ମା ସମ୍ପର୍କରେ ଆଲୋଚନା କରିଛନ୍ତି । 'ଦାରୁବ୍ରହ୍ମ ଗୀତା'ରେ ଶ୍ରୀକ୍ଷେତ୍ରର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । 'ମୃଗୁଣୀ ସ୍ତୁତି' ଓ 'ପାଷଣ୍ଡ ଦଳନ' ତାଙ୍କର ଜନପ୍ରିୟ ଗ୍ରନ୍ଥ । 'ମନଶିକ୍ଷା' ଓ 'ରାସକ୍ରୀଡ଼ା' ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହୋଇଅଛି ।

କବିଙ୍କର ଅପ୍ରକାଶିତ ଗ୍ରନ୍ଥମାନଙ୍କ ମଧ୍ୟରେ 'ଶୈବାଗମ ଭାଗବତ', 'ଷୋଳ ଚଉପଦୀ', 'ଶ୍ରୀନାମ ଚନ୍ଦ୍ରିକା', 'ପଦ୍ମପାଦ ସୁଧାନିଧି' ପ୍ରଭୃତି ପ୍ରଧାନ ।

କବି ମଧ୍ୟ ସଂସ୍କୃତ ଭାଷାରେ 'କୃଷ୍ଣ ଭକ୍ତି କଳ୍ପଲତା ଫଳମ୍', 'ନିତ୍ୟ ଗୁପ୍ତ ଚିନ୍ତାମଣି', 'ନୀଳାଦ୍ରି ଶତକମ୍' ପ୍ରଭୃତି ରଚନା କରିଥିଲେ ।

କବି କେତେଗୁଡ଼ିଏ ଭଜନ ରଚନା କରିଥିଲେ । ତାଙ୍କ ରଚିତ ଭଜନମାଳାରେ କବି ସାଂସାରିକ ମାୟା ମୋହ, ଭୋଗ ବିଳାସ ପ୍ରତି ମନ ନ ବଳାଇବାକୁ କହିଛନ୍ତି । ତାଙ୍କର କେତୋଟି ପ୍ରଧାନ ଭଜନ ହେଲା – 'ଆଉ ଏଣିକିରେ ମନ ଭୁଲୁ କାହିଁକି', 'ନମସ୍ତେ ପ୍ରଭୁ ଜଗନ୍ନାଥ', 'ଶ୍ରୀପୁରୁଷୋତ୍ତମ ଯିବା ମନ', 'ଉଠ ରାମ ପାହିଲା ରଜନୀରେ', 'ଉଦ୍ଧବକୁ ଚାହିଁ ବୋଲନ୍ତି ଶ୍ରୀହରି' । ଭାଗବତ ଉପରେ ତାଙ୍କର ଏକ ଭଜନ ମଧ୍ୟ ଅଛି । ତାହା ହେଲା –

"ଭାଗବତ ଭଜନ ମାଳା
ମନ ସୂତ୍ରେ ଗ୍ରନ୍ଥ ନ କରି ହେଳା ।"

ଦୀର୍ଘ ପାଞ୍ଚ ଶହ ବର୍ଷ ଧରି ଜଗନ୍ନାଥ ଦାସ ଓଡ଼ିଶାର ବ୍ୟକ୍ତିଗତ, ପାରିବାରିକ, ସାମାଜିକ, ଆଧ୍ୟାତ୍ମିକ ଓ ସର୍ବୋପରି ଜାତୀୟ ଜୀବନକୁ ପରିପୁଷ୍ଟ କରି ଓଡ଼ିଆ ଜାତିର ପ୍ରାଣରେ ପ୍ରେମ, ମୈତ୍ରୀ, ସଂହତି ଓ ଐକ୍ୟ ପ୍ରତିଷ୍ଠା କରି ଆସୁଥିବାରୁ ଚିର ବନ୍ଦନୀୟ ହୋଇ ରହିଛନ୍ତି ।



## ସାଧକ
# ଅଚ୍ୟୁତାନନ୍ଦ ଦାସ

ଯୁଗେ ଯୁଗେ ପରମପୁରୁଷ ଭଗବାନ୍ ପାପୀକୁ ବିନାଶ କରି ଧର୍ମ ସଂସ୍ଥାପନାପାଇଁ ଧରାଧାମରେ ଅବତୀର୍ଣ୍ଣ ହୋଇଥାନ୍ତି ବୋଲି ହିନ୍ଦୁମାନଙ୍କର ବିଶ୍ୱାସ ଅଛି । ସେହିପରି ଭଗବାନ୍‌ଙ୍କର ପ୍ରିୟ ସଖା ଭାବେ ମହାପୁରୁଷ ଅଚ୍ୟୁତାନନ୍ଦ ସବୁ କାଳରେ ଜନ୍ମ ହୋଇଛନ୍ତି ବୋଲି କିମ୍ବଦନ୍ତୀ ଅଛି । ସତ୍ୟ ଯୁଗରେ ଭଗବାନ୍ ନରନାରାୟଣ ରୂପ ଧାରଣ କଲାବେଳେ ମହାପୁରୁଷ ଅଚ୍ୟୁତାନନ୍ଦ କୃପାଜଳ ଋଷି ରୂପେ ଜନ୍ମ ଲାଭ କରିଥିଲେ ବୋଲି କୁହାଯାଏ । ତ୍ରେତା ଯୁଗରେ ଭଗବାନ୍ ରାମ ଅବତାରୀ ହୋଇଥିଲେ । ଅଚ୍ୟୁତାନନ୍ଦ ସେ ସମୟରେ ହେଲେ ନଳ ସେନାପତି । ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ ଜନ୍ମ ହୋଇଥିଲେ । ସେ ସମୟରେ ସେ ହେଲେ ସଖା ସୁଦାମା । କଳିଯୁଗରେ ମହାପ୍ରଭୁ ଚୈତନ୍ୟ ରୂପେ ଜନ୍ମ ହେବାରୁ ସେ ଅଚ୍ୟୁତାନନ୍ଦ ଭାବେ ଜନ୍ମ ନେଲେ । ଏହାର ସତ୍ୟତା ଯାହା ଥାଉନା କାହିଁକି, ସେ ବହୁ ଗୀତା, ସଂହିତା, ଓଗାଳ ଓ ସର୍ବୋପରି 'ହରିବଂଶ' ରଚନା କରି ଓଡ଼ିଶାର ଘରେ ଘରେ ପରିଚିତ ହୋଇ ରହିଛନ୍ତି ।

### ଜନ୍ମ ସମୟ ଓ ଶିକ୍ଷାଲାଭ

ଅଚ୍ୟୁତାନନ୍ଦ କଟକ ଜିଲ୍ଲାର ଲୁଣା ଚିତ୍ରୋତ୍ପଳା ମଧ୍ୟବର୍ତ୍ତୀ ତ୍ରିକୋଣଭୂମିସ୍ଥ ତିଳକଣା ବା ତ୍ରିପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ତିଳକଣା ବା ତ୍ରିପୁର

ଗ୍ରାମ ନେମାଳର ପ୍ରାୟ ଏକ ମାଇଲ ଉତ୍ତରକୁ ଅବସ୍ଥିତ । ତାଙ୍କର ମାତା ତାଙ୍କୁ ଅଗଣି ବୋଲି ଡାକୁଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ଅଚ୍ୟୁତାନନ୍ଦ ନିଜ ରଚିତ 'ଶୂନ୍ୟସଂହିତା'ରେ ଲେଖିଛନ୍ତି -

''ତିଳକଣାରେ ମୁଁ ଜନମ ଲଭିଲି କେହି ନ ଚିହ୍ନିଲେ ମୋରେ ।
ଅଗଣିତ ବୋଲି ମାତା ଡାକୁଥାନ୍ତି ଅନ୍ନ ନ ମିଳଇ ଘରେ ।।''

ଅଚ୍ୟୁତାନନ୍ଦ ମହାରାଜା ପ୍ରତାପରୁଦ୍ରଦେବଙ୍କ ବିଂଶ ଅଙ୍କରେ ଜନ୍ମ ଲାଭ କରିଥିଲେ ବୋଲି ଅନୁମାନ କରାଯାଏ । 'ଶୂନ୍ୟସଂହିତା'ରେ ଅଛି ଯେ ଅଚ୍ୟୁତାନନ୍ଦଙ୍କୁ ୭/୮ ବର୍ଷ ବୟସ ହୋଇଥିଲା ବେଳେ ଶ୍ରୀଚୈତନ୍ୟଙ୍କୁ ଭେଟିଥିଲେ । ଶ୍ରୀଚୈତନ୍ୟ ୧୫୦୯-୧୦ ବେଳକୁ ପୁରୀ ଆସିଥିଲେ । ତେଣୁ କବି ୧୫୦୨-୦୩ ମସିହାରେ ଜନ୍ମ ଲାଭ କରିଥିବା ସମ୍ଭବପର । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ତାଙ୍କର ଜନ୍ମକାଳ ୧୫୧୧-୧୨ ବୋଲି ମତ ଦିଅନ୍ତି । ଅନ୍ୟ କେହି ପଣ୍ଡିତଙ୍କ ମତରେ ସେ ୧୫୦୬ରେ ଜନ୍ମ ଗ୍ରହଣ କରିଥିଲେ ।

ଅଚ୍ୟୁତାନନ୍ଦଙ୍କ ପିତାଙ୍କ ନାମ ଦୀନବନ୍ଧୁ ମହାନ୍ତି । ପିତାମହ ଗୋପୀନାଥ ମହାନ୍ତି ମହାରାଜା ପ୍ରତାପରୁଦ୍ରଦେବଙ୍କ ଜଣେ ସେନାନାୟକ ଥିଲେ । ତାଙ୍କର ମୃତ୍ୟୁ ପରେ ମହାରାଜା ଦୀନବନ୍ଧୁଙ୍କୁ ସେନାନାୟକଭାବେ ନିଯୁକ୍ତ କରିବାକୁ ଚାହିଁଥିଲେ । ମାତ୍ର ଦୀନବନ୍ଧୁ ଯୁଦ୍ଧ କର୍ମ କରିବାକୁ ଆଗ୍ରହୀ ନ ଥିଲେ । ତାଙ୍କୁ ତେଣୁ ମହାରାଜା ଟହଲିଆଭାବେ ନିଯୁକ୍ତି ଦେଲେ । ତାଙ୍କୁ ଖୁଣ୍ଟିଆ ଉପାଧି ମଧ୍ୟ ମିଳିଲା । ସେ ତେଣୁ ଦୀନବନ୍ଧୁ ଖୁଣ୍ଟିଆ ନାମରେ ପରିଚିତ ହେଲେ । ତାଙ୍କର ମାତାଙ୍କ ନାମ ଥିଲା ପଦ୍ମାବତୀ ।

ଅଚ୍ୟୁତାନନ୍ଦ ଜାତିରେ ଅହୋକରଣ ଥିଲେ । ମାତ୍ର ସେ ଜାତିରେ କମାର ଥିବା 'ଭାବନାବର'ରେ ଉଲ୍ଲେଖ ଅଛି । ମାତ୍ର ଏହା ଠିକ୍ ନୁହେଁ । ସେ ଏକ ଟୀକାରେ ନିଜେ ଲେଖିଛନ୍ତି -

''ଖୁଣ୍ଟିଆ ଦୀନବନ୍ଧୁ ମୋର ତାତ । ଅହୋ କୁଳରେ ତାଙ୍କର ଜାତ ।
ମୋର ମାତା ନାମ ପଦ୍ମାବତୀ । ଦକ୍ଷିଣ ଦିଗ ନୃପତି ସନ୍ତତି ।।''

ସେ ମଧ୍ୟ ଜାତିରେ ଶୂଦ୍ର ଥିବା କଥା 'ହରିବଂଶ'ରେ ଉଲ୍ଲେଖ ଅଛି -

''ଶୂଦ୍ର କୁଳରେ ମୁଁ ହୋଇବି ଜାତ
ନାମ ହୋଇବ ମୋ ଦୀନ ଅଚ୍ୟୁତ ।''

କଥିତ ଅଛି, ଦୀନବନ୍ଧୁ ଓ ପଦ୍ମାବତୀ ବହୁକାଳଧରି ଅପୁତ୍ରକ ଥିଲେ । ଉଭୟେ ତେଣୁ ଦୁଃଖ ଜଣାଇବାପାଇଁ ପୁରୀ ଗଲେ । ତାଙ୍କର ପୁତ୍ରସନ୍ତାନ ହେବ ବୋଲି

ଜଗନ୍ନାଥ ସ୍ୱପ୍ନରେ କହିଲେ । ଯଥାସମୟରେ ତାଙ୍କର ପୁତ୍ର ସନ୍ତାନଟିଏ ଜାତ ହେଲା । ସେ ହେଉଛନ୍ତି ସିନ୍ଦୂରାନନ୍ଦ ଯେ କି ପରେ ଅଚ୍ୟୁତାନନ୍ଦ ନାମରେ ପରିଚିତ ହେଲେ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ପିତା ଦୀନବନ୍ଧୁ ତାଙ୍କର ବିଦ୍ୟା ଅଧ୍ୟୟନର ବ୍ୟବସ୍ଥା କଲେ । ଅଚ୍ୟୁତଙ୍କର କିନ୍ତୁ ବିଦ୍ୟା ଅର୍ଜନ ଦିଗରେ ମନ ନ ଥିଲା । ସେ ସବୁବେଳେ ନୀରବ ହୋଇ ରହୁଥିଲେ । ଶିକ୍ଷକ ତଥା ପିତାମାତାଙ୍କଠାରୁ ସେ ତେଣୁ ଗାଳି ଶୁଣୁଥିଲେ । ଏହି ସମୟରେ ତାଙ୍କ ଗ୍ରାମକୁ ଜଣେ କୌପୀନଧାରୀ ସନ୍ନ୍ୟାସୀ ଆସିଲେ । ସେ ଅଚ୍ୟୁତଙ୍କୁ ମନ୍ତ୍ର ପ୍ରଦାନ କଲେ । ମନ୍ତ୍ର ଗ୍ରହଣ କଲାପରେ ତାଙ୍କ ମନ ବିଚଳିତ ହେବାକୁ ଲାଗିଲା । ସବୁ ସମୟରେ ସେ ଚିନ୍ତିତ ରହିବାର ଲକ୍ଷ୍ୟ କରାଗଲା । ଏଥିରେ ପିତାମାତା ବ୍ୟଥିତ ହୋଇପଡ଼ିବା ସ୍ୱାଭାବିକ ।

### ଚୈତନ୍ୟଙ୍କ ସହ ଭେଟ

ଅଚ୍ୟୁତଙ୍କୁ ବାର ବର୍ଷ ବୟସ ହୋଇଥିଲାବେଳେ ପିତା ତାଙ୍କୁ ନେଇ ପୁରୀ ଗଲେ । ସେଠାରେ ସେ ଭକ୍ତମାନଙ୍କ ଗହଣରେ ଶ୍ରୀଚୈତନ୍ୟଙ୍କୁ ଦର୍ଶନ କଲେ । ଅଚ୍ୟୁତଙ୍କ ହୃଦୟରେ ମହାଭାବ ବିକଶିତ ହେଲା । ସେ ଚୈତନ୍ୟଙ୍କ ସ୍ୱରୂପ ଉପଲବ୍ଧି କଲେ । ତାଙ୍କଠାରୁ ଦିବ୍ୟଜ୍ଞାନ ଜାଣିବାକୁ ଚାହିଁଲେ । ଚୈତନ୍ୟ ମଧ୍ୟ ଅଚ୍ୟୁତାନନ୍ଦଙ୍କୁ ଦୀକ୍ଷାଦେବାପାଇଁ ସନାତନ ଗୋସ୍ୱାମୀଙ୍କୁ ଆଦେଶ ଦେଲେ । ସନାତନ ଗୋସ୍ୱାମୀ ଅଚ୍ୟୁତଙ୍କୁ ଶ୍ରୀମନ୍ଦିରକୁ ନେଇ ବଟ ବୃକ୍ଷ ତଳେ ମନ୍ତ୍ରପ୍ରଦାନ କଲେ । ପୂର୍ବ ଜନ୍ମର ସ୍ମୃତି ଅଚ୍ୟୁତଙ୍କ ମନରେ ଜାଗରୂକ ହେଲା । ସେ ବ୍ରହ୍ମଗୋପାଳ ବେଶ ଧାରଣପୂର୍ବକ ଖୋଳ କରତାଳ ଧରି ନାମକୀର୍ତ୍ତନ କରିବାକୁ ଲାଗିଲେ ।

ସନାତନ ଗୋସ୍ୱାମୀ ଅଚ୍ୟୁତଙ୍କୁ ଜଗନ୍ନାଥ ହିଁ କୃଷ୍ଣ ଓ କୃଷ୍ଣ ହିଁ ଜଗନ୍ନାଥ ଓ ଦୁହେଁ ଏକ ଓ ଅଭିନ୍ନ ବୋଲି କହିଥିଲେ । ତାଙ୍କୁ ମଧ୍ୟ ଶିଷ୍ୟ ଗ୍ରହଣ କରିବାକୁ ଉପଦେଶ ଦେଇଥିଲେ । ଗୁରୁଙ୍କ କଥା ଅନୁଯାୟୀ ସେ ରାମଦାସଙ୍କୁ ଶିଷ୍ୟ ଭାବେ ଗ୍ରହଣ କଲେ । ଅଚ୍ୟୁତ ବୈଷ୍ଣବଧର୍ମ ଗ୍ରହଣ କରିବା କଥା 'ବର୍ଣ୍ଣଟୀକା'ରେ ଉଲ୍ଲେଖ ଅଛି -

''ସାନ ହେବାକୁ ଯେ ଆମ୍ଭର ମନ
　　　　ତହୁଁ ଶୂଦ୍ରକୁଳେ ଦେଲୁ ଜନମ ।
ଶୁଣ ରାମଚନ୍ଦ୍ର ଗୋପକୁମର
　　　　ସେବା ଆମ୍ଭର ଶ୍ରୀକୃଷ୍ଣ ପୟର ।

ତହୁଁ ପଞ୍ଚସଖା ଶୂଦ୍ର ହୋଇଲୁ
ଜ୍ୟେଷ୍ଠ କନିଷ୍ଠ ବାରି ନ ପାରିଲୁ ।
× × ×
ଶୂଦ୍ର ବର୍ଣ୍ଣ ଆମ୍ଭ ପୂର୍ବରୁ ନାହିଁ ।
ପଞ୍ଚସଖା କୃଷ୍ଣ ସେବାରେ ବାଇ ।''

ବୈଷ୍ଣବ ଧର୍ମ ଗ୍ରହଣ ପରେ ଅଚ୍ୟୁତାନନ୍ଦ ସାଧନା କରିବାପାଇଁ ଜନ୍ମସ୍ଥାନ ତିଳକଣା ନେମାଳରେ ପହଞ୍ଚିଲେ । ସେଠାରେ ଦ୍ୱାଦଶ ବଟ ପରିବେଷ୍ଟିତ ଏକ ସୁନ୍ଦର ସ୍ଥାନରେ ବ୍ରହ୍ମଜ୍ଞାନ ସାଧନରେ ଲାଗିଲେ । ମନ୍ତ୍ର, ଯନ୍ତ୍ର, ତନ୍ତ୍ର, ଛାୟା, ଜ୍ୟୋତି, ଅବାତ, ସମାଧି ପ୍ରଭୃତିରେ ସେ ସିଦ୍ଧିଲାଭ କଲେ । ସେ ନିର୍ଗୁଣ ପରମବ୍ରହ୍ମଙ୍କୁ ଶୂନ୍ୟ, ଶୂନ୍ୟ, ମହାଶୂନ୍ୟରେ ଜ୍ୟୋତି ରୂପରେ ଦର୍ଶନ କଲେ ।

ସିଦ୍ଧିଲାଭ ପରେ ଅନେକ ଅଚ୍ୟୁତାନନ୍ଦଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ବିଶେଷତଃ, ଗୋପାଳମାନଙ୍କୁ ଆଦର କରି ସେ ଶିଷ୍ୟ ରୂପେ ଗ୍ରହଣ କରିଥିଲେ । କଥିତଅଛି ଯେ ଜଣେ ଗୋପାଳର ମଇଁଷି ପଲ ଜମିଦାରଙ୍କ ଫସଲ ନଷ୍ଟ କରିଦେଲେ । ଜମିଦାର ଏଥିରେ କ୍ରୋଧାନ୍ୱିତ ହୋଇ ଶାସ୍ତିଦେବାକୁ ବସିଲେ । ଗୋପାଳଟି ବ୍ୟସ୍ତ ହୋଇ ଯାଉ ଯାଉ ଅଚ୍ୟୁତାନନ୍ଦଙ୍କୁ ଭେଟିଲା । ଗୋପାଳଠାରୁ ସବୁ ବୃତ୍ତାନ୍ତ ଅଚ୍ୟୁତ ଶୁଣିଲେ । ତା'ର ପ୍ରତିକାରପାଇଁ ଧ୍ୟାନରେ ବସିଲେ । ବ୍ରହ୍ମଲୟରେ ଜମିଦାରଙ୍କ କ୍ଷେତରେ ଫସଲ ପୂର୍ବଭଳି ହୋଇଗଲା । ଗୋପାଳଟି କୃତଜ୍ଞତାର ନିଦର୍ଶନସ୍ୱରୂପ ଅଚ୍ୟୁତଙ୍କୁ ଗୁରୁବୋଲି ଗ୍ରହଣ କଲା । ସେହିଦିନଠାରୁ ସମସ୍ତ ଗୋପାଳମାନେ ଅଚ୍ୟୁତାନନ୍ଦଙ୍କର ଶିଷ୍ୟ ବୋଲି ବିବେଚିତ ହେଲେ । ଅଚ୍ୟୁତ ମଧ ନିଜକୁ ଗୋପାଳମାନଙ୍କ ରାଜା ବୋଲି ଉଲ୍ଲେଖ କରିଛନ୍ତି ।

''ମୋହର ହୋଇବ ରାଜନୀତି ବରଜ କୁଳ ହେବି ଅଧିପତି''

ଗୋପାଳକୁଳକୁ ତାରିବାପାଇଁ ତାଙ୍କର ଆବିର୍ଭାବ ହୋଇଛି ବୋଲି ସେ ବିଶ୍ୱାସ କରୁଥିଲେ । ଚବିଶ ଉପଦେଶରେ ସେ ଏହା ବର୍ଣ୍ଣନା କରିଛନ୍ତି –

''ଶ୍ରୀହରି ମୋତେ ଯହୁଁ କୃପା କଲେ
ଗୋପାଳ କୁଳକୁ ତାର ବୋଇଲେ ।''

ଅଚ୍ୟୁତାନନ୍ଦଙ୍କର ପ୍ରଧାନ ଶିଷ୍ୟ ଥିଲେ ରାମଦାସ । ସେ ମଧ ଜାତିରେ ଗୋପାଳ ଥିଲେ । ଏହା ବ୍ୟତୀତ ତାଙ୍କର ରାସମଣ୍ଡଳୀରେ ବାର ଜଣ ଗୋପାଳ ଯୋଗ ଦେଇଥିଲେ । ସେମାନେ ହେଲେ ଭରତ, ଯାଦବ, ଧର୍ମୁ, ଅନନ୍ତ, ମୁକୁନ୍ଦ, ବସୁ, ପବନ, ବାଳକ, ମଧ, ମଥୁରି, ଉତ୍‌ଥାନ ଓ ଗୋବିନ୍ଦ । ଏହି

ଗୋପାଳମାନଙ୍କୁ ଅଚ୍ୟୁତ ରାସଲୀଳା ଶିକ୍ଷା ଦେଲେ । ସେ ସେମାନଙ୍କୁ ଧରି ଖୋଳ, କରତାଳ ଧରି ରାସଲୀଳା ଆରମ୍ଭ କଲେ । ସେ ମଧ ଏହି ସମୟରେ ରାସ ଗ୍ରନ୍ଥମାନ ରଚନା କଲେ । ସେଗୁଡ଼ିକ ହେଲା 'ନିତ୍ୟରାସ', 'ପଦ୍ମବନ ରାସ', 'ପରମ ରାସ' ପ୍ରଭୃତି ।

ଅଚ୍ୟୁତ ନିରାକାରପନ୍ଥୀ ଥିଲେ । ସେ ବୀର ସିଂହ, ରୋହି ଦାସ, ବାଉଳି କପିଳ, ବାଲିଗା ପ୍ରଭୃତି ବିଶିଷ୍ଟ ଭକ୍ତମାନଙ୍କୁ ନିରାକାର ମନ୍ତ୍ରରେ ଦୀକ୍ଷିତ କରାଇଲେ ।

## ରାଜ ପରୀକ୍ଷା

ଅଚ୍ୟୁତାନନ୍ଦ ପୁରୀରେ ରହି ବେଦ ବେଦାନ୍ତ ଚର୍ଚ୍ଚା କରୁଥିଲେ । ସେ ଜାତିରେ ଶୂଦ୍ର ହୋଇ ଏହା କରୁଥିବାରୁ ବ୍ରାହ୍ମଣଗୋଷ୍ଠୀ କ୍ରୋଧାନ୍ୱିତ ହୋଇ ତାଙ୍କ ବିରୋଧରେ ମହାରାଜା ପ୍ରତାପରୁଦ୍ରଦେବଙ୍କ ଆଗରେ ଅଭିଯୋଗ କଲେ । ଏକ ସଭାରେ ଅଚ୍ୟୁତାନନ୍ଦ କିନ୍ତୁ ନିରାକାର ଭଜନର ତତ୍ତ୍ୱ ସୁନ୍ଦରଭାବେ ବୁଝାଇଦେଲେ । ସମାଧି କିପରି ଲାଭ ହୁଏ ତାହା ମଧ ବୁଝାଇଲେ । ରାଜାଙ୍କ ଆଦେଶମତେ ପୁରୀ ସମୁଦ୍ର କୂଳରେ ଥିବା ବାଙ୍କିମୁହାଣ ଶୂନ୍ୟ ଗୁମ୍ଫାରେ ନିରାକାର ଧ୍ୟାନରେ ସମାଧିସ୍ଥ ହେଲେ । ସେ କେବଳ ଯେ ରାଜଦଣ୍ଡରୁ ଉଦ୍ଧାର ପାଇଲେ ତାହା ନୁହେଁ, ରାଜା ଅଚ୍ୟୁତଙ୍କୁ ଗୁରୁଭାବେ ସ୍ୱୀକାର କଲେ ଓ ବାଙ୍କିମୁହାଣ ଆଶ୍ରମ ସ୍ଥାପନପାଇଁ ଅନୁରୋଧ କଲେ । ଏହା ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'ରେ ବର୍ଣ୍ଣନା କରିଛନ୍ତି –

''ଏମନ୍ତ ପ୍ରହରେ ଗୋଳ ଲାଗିଲା ।ରାଜନ ମୋତେ ଧରିନେଲା ।

× × ×

ବାଙ୍କିମୁହାଣ ଶୂନ୍ୟ ବାମ୍ଫୀଠାରେ । ଭଜନ କର ଦାସେ ଏହିଠାରେ ।
ଦେଖନ୍ତୁ ଯେବେ ଏ ଦ୍ୱିଜବର । ପ୍ରଚ୍ଛନ୍ନେ ପରୀକ୍ଷା ଆମ୍ଭ ତୁମର ।''

## ରଣପୁର ଯାତ୍ରା

ମାଳିକାରୁ ଜଣାଯାଏ ଯେ ଅଚ୍ୟୁତାନନ୍ଦ ଶିଷ୍ୟମାନଙ୍କ ସହିତ ତୀର୍ଥ ପର୍ଯ୍ୟଟନରେ ବାହାରିଲେ । ଏହି ସମୟରେ ସେ ରଣପୁର ରାଜା ପଦ୍ମନାଭ ନରେନ୍ଦ୍ରଙ୍କ ଅନୁରୋଧରେ ରଣପୁରର ଆଖଣ୍ଡାଚଳ ଗ୍ରାମରେ ଅବସ୍ଥାନ କଲେ । କବି ଏହା 'ହରିବଂଶ'ରେ ଉଲ୍ଲେଖ କରିଛନ୍ତି –

''ରଣପୁର ମାଟି ଆଖଣ୍ଡାଚଳ ବସିଥାଇ
ପଦ୍ମନାଭ ନରେନ୍ଦ୍ର ମୋତେ ଅନ୍ନ ଦେଇଯେ ପୋଷଇ ।''

ରାଜା ପଦ୍ମନାଭ ନରେନ୍ଦ୍ରଙ୍କର କୌଣସି ସନ୍ତାନସନ୍ତତି ନ ଥିଲେ । ସେ ତେଣୁ ତାଙ୍କର ସେବାରେ ନିଯୁକ୍ତ ରହିଲେ । ଅଚ୍ୟୁତାନନ୍ଦ ସେଠାରେ ରହି 'ହରିବଂଶ' ରଚନା କଲେ । କଥିତଅଛି, ରାଜା ଓ ରାଣୀ ହରିବଂଶ ଶୁଣିବାପରେ ପୁତ୍ର ଲାଭ କରିଥିଲେ ।

ଅଚ୍ୟୁତାନନ୍ଦ ଶିଷ୍ୟମାନଙ୍କ ସହିତ ଓଡ଼ିଶା ଓ ଓଡ଼ିଶା ବାହାର ପ୍ରଦେଶମାନଙ୍କରେ ବୁଲି ନାମ ସଂକୀର୍ତ୍ତନ କରିବାକୁ ଲାଗିଲେ । ସେ ମଧ୍ୟ ରାସଲୀଳା ପ୍ରଚାର କରିଥିଲେ । ସେ ଏହି ସମୟରେ ତିବ୍ବତ ପର୍ଯ୍ୟନ୍ତ ଯାଇଥିବା ପ୍ରବାଦ ଅଛି ।

## ବିବାହ

ତୀର୍ଥ ଭ୍ରମଣରୁ ଫେରିବାପରେ ସେ ନେମାଳରେ ରହିଥିବା ସମ୍ଭବ । ସେଠାରୁ ସେ କଟକ ଜିଲ୍ଲା ଅନ୍ତର୍ଗତ ଅଢଙ୍ଗଗଡ଼କୁ ଗଲେ । ସେଠାରେ ତାଙ୍କର ଅନ୍ୟତମ ସଖା ଯଶୋବନ୍ତ ଦାସ ରହୁଥିଲେ । ଯଶୋବନ୍ତଙ୍କ ଅନୁରୋଧକ୍ରମେ ସେଠାରେ ରାସଲୀଳା ହେଲା । ଯଶୋବନ୍ତଙ୍କର ଶାଳକ ଥିଲେ ଅଢଙ୍ଗର ରାଜା ରଘୁରାମ ଚମ୍ପତି । ସେ ତାଙ୍କର କୀର୍ତ୍ତନରେ ମୁଗ୍ଧ ହୋଇ ସାତ ଦିନ କୀର୍ତ୍ତନ କରିବାକୁ ଅନୁରୋଧ କଲେ । ସେଠାରେ ଅଢଙ୍ଗଗଡ଼ର ରାଜାଙ୍କ କନ୍ୟା ଚମ୍ପାବତୀ ଅଚ୍ୟୁତଙ୍କୁ ପତି ରୂପରେ ବରଣ କଲେ । ସେ ପ୍ରଥମେ ଅନିଚ୍ଛୁକ ହେଲେ ମଧ୍ୟ ବିଧି ନିର୍ଦ୍ଦେଶକୁ ମାନି ବିବାହ କଲେ । ତାଙ୍କର ବ୍ରଜ ଗଦାଧର ନାମକ ଏକ ପୁତ୍ରସନ୍ତାନ ମଧ୍ୟ ଜାତ ହେଲା । ସେ ମଧ୍ୟ ଜଣେ ସିଦ୍ଧସାଧକ ଥିଲେ । ସେ 'ଜ୍ଞାନସାଗର' ନାମକ ଏକ ବ୍ରହ୍ମଜ୍ଞାନମୂଳକ ଗ୍ରନ୍ଥ ରଚନା କରିଥିବାର ଜଣାଯାଏ ।

## ପଦ୍ମବନରେ ଅବସ୍ଥାନ

କିମ୍ବଦନ୍ତୀରୁ ଜଣାଯାଏ ଯେ ପୁରୀରେ ଅଚ୍ୟୁତ ରହିବାରୁ ପାପୀମାନେ ଧାର୍ମିକ ହେବାକୁ ଲାଗିଲେ । ତେଣୁ ଯମରାଜ ଜଗନ୍ନାଥଙ୍କୁ ଏ ବିଷୟରେ ଜଣାଇଲେ । ଜଗନ୍ନାଥ ଅଚ୍ୟୁତଙ୍କୁ ପୁରୀ ଶ୍ରୀକ୍ଷେତ୍ର ଛାଡ଼ି ପଦ୍ମବନରେ ଅବସ୍ଥାନ କରିବାକୁ କହିଲେ । ପଦ୍ମବନ କିପରି ଚିହ୍ନିବେ ବୋଲି ଅଚ୍ୟୁତ ପଚାରିବାରୁ ଜଗନ୍ନାଥ ତାଙ୍କୁ ଏକ ପଦ୍ମଫୁଲ ମାଳ ଦେଲେ । ଯେଉଁଠାରେ ଏହି ମାଳ ଛିଣ୍ଡିବ ସେହି ସ୍ଥାନ ପଦ୍ମବନ ବୋଲି କହିଲେ । ଏହି ପଦ୍ମବନ ବା ନେମାଳରେ ଅଚ୍ୟୁତାନନ୍ଦ ତାଙ୍କ ଶେଷ ଜୀବନ କଟାଇଥିବାର ଜଣାଯାଏ ।

## ରଚନାବଳୀ

ଶ୍ରୀକୃଷ୍ଣଙ୍କ ଅପାର କରୁଣାରୁ ଅଚ୍ୟୁତାନନ୍ଦ କବିତ୍ୱପ୍ରାପ୍ତ ହୋଇଥିଲେ । ସେ ତାଙ୍କର ଜୀବନକାଳ ମଧ୍ୟରେ ବହୁ ଗ୍ରନ୍ଥ ରଚନା କରିଥିଲେ । 'ଅଣାକାର

ସଂହିତା'ରେ ବର୍ଣ୍ଣିତ ଅଛି ଯେ ସେ ୩୬ ଖଣ୍ଡ ସଂହିତା, ୭୮ ଖଣ୍ଡ ଗୀତା, ୨୭ଟି ବଂଶାନୁଚରିତ, ୨୨ ଖଣ୍ଡ ଉପବଂଶାନୁଚରିତ ଓ ୧୦୦ଟି ମାଳିକା ଲେଖିଛନ୍ତି । ଏହାଛଡ଼ା ସେ ଏକ ଲକ୍ଷ ପଦ୍ୟ, ପଦ୍ୟାବଳୀ, ଢଗ, ଢମାଳି, ଭଜନ ପ୍ରଭୃତି ଲେଖିଥିବାର ଜଣାଯାଏ । 'ଅନନ୍ତ ଗୀତା'ରେ ସେ ଲକ୍ଷେ ଗ୍ରନ୍ଥ ରଚନା କରିଥିବାର ଉଲ୍ଲେଖ ଅଛି । ନେମାଳ ଗ୍ରାମରେ କବିଙ୍କର ସିନ୍ଧୁକେ ପୋଥି ଥିଲା ବୋଲି କଥିତ ଅଛି । ସେଥିମଧ୍ୟରୁ ଅଧିକାଂଶ ରଚନା ଏ ପର୍ଯ୍ୟନ୍ତ ଅପ୍ରକାଶିତ ରହିଅଛି । ତାଙ୍କ ରଚନା ମଧ୍ୟରେ 'ହରିବଂଶ', 'ଗୁରୁଭକ୍ତି ଗୀତା', 'ଶୂନ୍ୟସଂହିତା', 'ଚୌରାଶୀ ଯନ୍ତ୍ର', 'ଗୋପାଳ ଓଗାଳ', 'ଭକ୍ତଲୀଳା ଗୀତା', 'ଯନ୍ତ ବସାଣ', 'ଆଦିବ୍ରହ୍ମ ଗୀତା' ପ୍ରଭୃତି ପ୍ରଧାନ ।

'ହରିବଂଶ' ସାତଖଣ୍ଡରେ ବିଭକ୍ତ ହୋଇଥିବାରୁ ଏହାକୁ ସାତଖଣ୍ଡିଆ ହରିବଂଶ କୁହାଯାଏ । ବଳରାମ ଦାସଙ୍କ 'ଜଗମୋହନ ରାମାୟଣ' ବା ଜଗନ୍ନାଥ ଦାସଙ୍କ 'ଭାଗବତ' ପରି ଏହା ଲୋକପ୍ରିୟତା ଅର୍ଜନ କରିଅଛି ।

'ହରିବଂଶ' ମୂଳ ହରିବଂଶର ଅନୁବାଦ ନୁହେଁ । ଏହାକୁ ମଧ୍ୟ ଅଚ୍ୟୁତାନନ୍ଦ ମୂଳ ଚରିତର ଅନୁସରଣରେ ଲେଖି ନାହାନ୍ତି । କେତେକ ସ୍ଥଳରେ ମୂଳ ଚରିତକୁ ସଂକ୍ଷିପ୍ତ କରିଦେଇଛନ୍ତି ବା କେଉଁଠାରେ ବାଦ୍ ଦେଇଛନ୍ତି । କେତେକ ସ୍ଥଳରେ ଅନ୍ୟାନ୍ୟ ପୁରାଣମାନଙ୍କରୁ ସାର ସଂଗ୍ରହ କରି ଏଥିରେ ସନ୍ନିବେଶିତ କରିଛନ୍ତି । ବହୁ ସ୍ଥାନରେ କବିଙ୍କ ମୌଳିକ ଚିନ୍ତାଧାରା ପ୍ରକାଶ ପାଇଛି ।

ପ୍ରଥମ ଖଣ୍ଡରେ କଂସର ଜନ୍ମ, ରାଜତ୍ୱ ପ୍ରାପ୍ତି, ରାଜ୍ୟ ଅଭିଷେକ, ଦିଗ୍‌ବିଜୟ ଓ ରାଜତ୍ୱ, ଦେବକୀର ପ୍ରଥମ ପୁତ୍ର ବଧ ବର୍ଣ୍ଣିତ ହୋଇଅଛି । ଦ୍ୱିତୀୟ ଖଣ୍ଡରେ ଦେବକୀର ଷଡ଼ ପୁତ୍ର ନିଧନ, ବଳରାମଙ୍କ ଜନ୍ମ,ଦେବକୀର ଅଷ୍ଟମ ଗର୍ଭ ସଞ୍ଚାର, କୃଷ୍ଣ ଜନ୍ମ, ନନ୍ଦୋତ୍ସବ, କଂସର ମନ୍ତ୍ରଣା, ପୂତନା ବଧ, ଶକଟାସୁର ବଧ, ଶ୍ରୀକୃଷ୍ଣଙ୍କ ବାଲ୍ୟଲୀଳା ପ୍ରଭୃତି ବର୍ଣ୍ଣନା କରାଯାଇଛି । ତୃତୀୟ ଖଣ୍ଡରେ ଗୋପଲୀଳା, କେଶୀ, କଦମ୍ବାସୁର ବଧ, ଅକ୍ରୂରର ଗୋପପୁର ଗମନ, କଂସବଧ ପ୍ରଭୃତି କବି ବର୍ଣ୍ଣନା କରିଛନ୍ତି । ଚତୁର୍ଥ ଖଣ୍ଡରେ ଉଗ୍ରସେନଙ୍କ ରାଜ୍ୟାଭିଷେକ, ରୁକ୍ମିଣୀ ସ୍ୱୟଂବର, ପଞ୍ଚମ ଖଣ୍ଡରେ ଜରାସନ୍ଧ ସହିତ ଯୁଦ୍ଧ, ଷଷ୍ଠ ଖଣ୍ଡରେ ରୁକ୍ମିଣୀ ହରଣ, ଜରାସନ୍ଧ ପରାଜୟ, ବିବାହ ବେଦିରେ ଶିଶୁପାଳର ଅପମାନ, ଜରାସନ୍ଧ ବଧ, ଶିବଙ୍କ ରକ୍ଷାପାଇଁ ବିଷ୍ଣୁଙ୍କ ମାୟା, ଭସ୍ମାସୁରର ମୃତ୍ୟୁ ପ୍ରଭୃତି ବର୍ଣ୍ଣିତ ଅଛି । ସପ୍ତମ ଖଣ୍ଡରେ ଯଦୁ ବଂଶର ଧ୍ୱଂସ, କୃଷ୍ଣଙ୍କର ଦେହତ୍ୟାଗ, ନୀଳାଚଳରେ ଦାରୁବ୍ରହ୍ମ ରୂପେ ଜଗନ୍ନାଥଙ୍କ ଆବିର୍ଭାବ ପ୍ରଭୃତିର ବର୍ଣ୍ଣନା ଅଛି ।

'ହରିବଂଶ'ର ଭାଷା ସରଳ । 'ସାରଳା ମହାଭାରତ'ର ଭାଷା ଭଳି ସାଧାରଣ ଲୋକେ ବୁଝିପାରିଲା ଭଳି ଭାଷାରେ କବି ଏହାକୁ ରଚନା କରିଥିଲେ । ଏଥିରେ କୌଣସି ଜଟିଳ ଦାର୍ଶନିକ ତତ୍ତ୍ୱର ଅବତାରଣା କରାଯାଇ ନାହିଁ । ଅଚ୍ୟୁତାନନ୍ଦ ମଧ୍ୟ ସାରଳା ଦାସଙ୍କ ଭଳି ସେହି ଲୋକପ୍ରିୟ ଦାଣ୍ଡି ବୃତ୍ତରେ ଏହାକୁ ରଚନା କରିଛନ୍ତି । ଏଥିରେ କବି ବହୁ ଆଖ୍ୟାୟିକା ଦେଇଛନ୍ତି । ଏହାକୁ ପାଠକଲେ କବିଙ୍କର ପାଣ୍ଡିତ୍ୟ ତଥା ବହୁଶାସ୍ତ୍ରଦର୍ଶିତାର ପ୍ରମାଣ ମିଳେ ।

'ହରିବଂଶ'ର ପ୍ରତି ପୃଷ୍ଠାରେ କବିଙ୍କର ସ୍ୱଦେଶ ପ୍ରୀତିର ପରିଚୟ ମିଳେ । ଗୋପର ଉତ୍ସବ ବିଷୟରେ ବର୍ଣ୍ଣନା କଲାବେଳେ ପବିତ୍ର ଉତ୍କଳ ଭୂମିର ବର୍ଣ୍ଣନା ବାଦ୍ ପଡ଼ି ନାହିଁ । କଂସର ଧନୁ ସଭାକୁ ଆମନ୍ତ୍ରିତ ହୋଇ କଳିଙ୍ଗ ଓ ଉଡ୍ର ରାଷ୍ଟ୍ରର ରାଜା ଆସିଛନ୍ତି । କବି ପୁରୀ ଜଗନ୍ନାଥଧାମ, କୋଣାର୍କ ଚନ୍ଦ୍ରଭାଗା, ଅନନ୍ତବାସୁଦେବ, ବିନ୍ଦୁସାଗର, ଲିଙ୍ଗରାଜ, ବିରଜା କ୍ଷେତ୍ରର ଅଧିଷ୍ଠାତ୍ରୀ ବିରଜାଦେବୀଙ୍କର ବର୍ଣ୍ଣନା କରିଛନ୍ତି । ସାନ୍ଦିପନୀ ଋଷିଙ୍କ ପ୍ରସଙ୍ଗରେ କବି ଭାରତ ଭୂମିର ମହତ୍ତ୍ୱ ବର୍ଣ୍ଣନା କଲାବେଳେ ଉତ୍କଳ ଭୂମିର ମହତ୍ତ୍ୱ ବଖାଣିଛନ୍ତି, ଯଥା –

"ମର୍ତ୍ତ୍ୟରେ ପବିତ୍ର ଭୂମି ଏ ଭାରତ ବରଷ ।
ସର୍ବ ଗୁଣେ ଅଳଙ୍କୃତ ଏ ଉତ୍କଳ ଦେଶ ।"

## ଶୂନ୍ୟସଂହିତା

'ଶୂନ୍ୟସଂହିତା' ଦୁଇ ଭାଗରେ ବିଭକ୍ତ । ଗୋଟିଏ ସଂସ୍କୃତରେ ଓ ଅନ୍ୟଟି ଓଡ଼ିଆରେ ରଚିତ ହୋଇଅଛି । ସଂସ୍କୃତ ଗ୍ରନ୍ଥଟି ଗଞ୍ଜାମର ବୃନ୍ଦାବନ ଦାସ ନାମକ ଜଣେ ସନ୍ଥଙ୍କଦ୍ୱାରା ପ୍ରକାଶ ପାଇଛି । ଏହାର ଅଧିକାଂଶ ଶ୍ଳୋକ ଅଶୁଦ୍ଧ । ଓଡ଼ିଆରେ 'ଶୂନ୍ୟସଂହିତା'ର ତିନି ଗୋଟି ସଂସ୍କରଣ ଅଛି । ଗୋଟିଏର ପ୍ରକାଶକ ରତ୍ନାକର ଗର୍ଗବଟୁ । ଏହି ଗ୍ରନ୍ଥରେ ୩୦ଟି ଅଧ୍ୟାୟ ଅଛି । ଦ୍ୱିତୀୟ ଗ୍ରନ୍ଥର ପ୍ରକାଶକ ହେଉଛନ୍ତି ନାରାୟଣ ପ୍ରସାଦ ଦାସ । ତୃତୀୟଟି ଜଗନ୍ନାଥ କମ୍ପାନୀଦ୍ୱାରା ପ୍ରକାଶିତ ହୋଇଅଛି । ବର୍ତ୍ତମାନ ମିଳୁଥିବା 'ଶୂନ୍ୟସଂହିତା'ରେ ୪୧ଟି ଅଧ୍ୟାୟ ଅଛି । କେହି କେହି 'ଶୂନ୍ୟସଂହିତା'ରେ ୧୦୮ଟି ଅଧ୍ୟାୟ ଥିବା ମତ ଦିଅନ୍ତି ।

'ଶୂନ୍ୟସଂହିତା'ରେ ଶ୍ରୀଚୈତନ୍ୟ ଓ ପଞ୍ଚସଖାଙ୍କ କଥା ବର୍ଣ୍ଣିତ ଅଛି । ଏଥିରେ ବହୁ ଯୋଗୀ, ସାଧକମାନେ ଆଶ୍ରମ କରି ରହିଥିବା କଥା ସେ ବର୍ଣ୍ଣନା କରିଛନ୍ତି । ମାତ୍ର ଏହି ଗ୍ରନ୍ଥର ମୌଳିକ ଲକ୍ଷ୍ୟ ହୋଇଛି ଶୂନ୍ୟବାଦର ଉପସ୍ଥାପନା ।

ଶୂନ୍ୟ ଓ ଶୂନ୍ୟପୁରୁଷ ସମ୍ବନ୍ଧରେ ସାରଳା ଦାସ ପ୍ରଥମେ 'ମହାଭାରତ'ରେ ଉଲ୍ଲେଖ କରିଥିଲେ । ମାତ୍ର ସେହି 'ଶୂନ୍ୟ'କୁ ଏକ ନିର୍ଦ୍ଦିଷ୍ଟ ରୂପ ଦେଲେ ଅଚ୍ୟୁତାନନ୍ଦ । ସେ ଶୂନ୍ୟ, ଶୂନ୍ୟପୁରୁଷ, ଶୂନ୍ୟଭଜନ, ଶୂନ୍ୟମନ୍ତ୍ର ପ୍ରଭୃତି ତତ୍ତ୍ୱକୁ ଏହି ଗ୍ରନ୍ଥରେ ବର୍ଣ୍ଣନା କରିଛନ୍ତି ।

ଅଷ୍ଟାଙ୍ଗଯୋଗ ମାଧମରେ ସାଧକ ଶୂନ୍ୟ ଅବସ୍ଥା ଉପଲବ୍‌ଧି କରେ । ଓଡ଼ିଶାର ବୈଷ୍ଣବଗଣ ଏହି ମହାଶୂନ୍ୟ ସ୍ଥଳକୁ ଯାଇ ଧ୍ୟାନମଗ୍ନ ଭାବେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ଦେଖିଥାନ୍ତି ।

ଅଚ୍ୟୁତ ଭ୍ରମରେ ଏଣେ ତେଣେ ବୁଲୁଥିଲେ । ସୌଭାଗ୍ୟକୁ ସେ ଶୂନ୍ୟପୁରୁଷଙ୍କର ସନ୍ଧାନ ପାଇଲେ । ସେ ଏହା ସପ୍ତମ ଅଧ୍ୟାୟରେ ବର୍ଣ୍ଣନା କରିଛନ୍ତି –

''ଏ ଜୀବକୁ ପ୍ରଭୁ କାରଣ ନାହିଁ । ଭ୍ରମୁଥିଲି ପଥେ ମୁଁ ବଣା ହୋଇ ।।
ପାଇଲି ସୁପଥ ଶୂନ୍ୟକାୟାକୁ । ଶୂନ୍ୟପଦାର୍ଥ ମିଳିଲା ପୁଣ୍ୟକୁ ।।''

ଶୂନ୍ୟପୁରୁଷ ଏହି ଶରୀର ମଧ୍ୟରେ ଥିବା କବି କହିଛନ୍ତି ।

ଶୂନ୍ୟପୁରୁଷର ସ୍ୱରୂପ ମଧ୍ୟ ବର୍ଣ୍ଣନା କରିଛନ୍ତି; ଯଥା –

''ଶୂନ୍ୟପୁରୁଷର ଏଡ଼ିକି ତେଜ । ଶୂନ୍ୟ ହୋ ଭୋଗ କରଇ ରାଜ୍ୟ
ଶୂନ୍ୟପୁରୁଷ ଅଲଗରେ ରହି । ଶୂନ୍ୟ ପରେ ଲୀଳା କରୁଛି ସେହି ।।''

ଶୂନ୍ୟପୁରୁଷ ସମସ୍ତଙ୍କୁ ଦେଖିପାରେ । ମାତ୍ର ତାକୁ କେହି ଦେଖିପାରନ୍ତି ନାହିଁ । କେବଳ ନିରାକାର ମନ୍ତ୍ର ଅଭ୍ୟାସକରି ଶୂନ୍ୟ ଭଜନରେ ଶୂନ୍ୟପୁରୁଷର ସନ୍ଧାନ ମିଳେ । ଏହାଦ୍ୱାରା ସାଧକ ଅଜର ଅମର ହୁଏ ।

ସବୁ ସମୟରେ ମଧ୍ୟ ଶୂନ୍ୟସାଧନା ସମ୍ଭବ ନୁହେଁ । ଏହି ସାଧନାର ସମୟ ହେଉଛି ମାଘ ମାସ । ଅଚ୍ୟୁତାନନ୍ଦ ଲେଖିଛନ୍ତି –

''ମାଘମାସେ ବାବୁ ଏହାକୁ ସାଧି । ବିଧିପୂର୍ବ କଲେ ହୁଅଇ ସିଦ୍ଧି ।''

'ଶୂନ୍ୟସଂହିତା'ରେ ଅଚ୍ୟୁତାନନ୍ଦ ଭ୍ରମଣ କାହାଣୀ, ମନ୍ତ୍ର, ଯନ୍ତ୍ର, ତନ୍ତ୍ରର ପ୍ରୟୋଗ ବିଧି ବର୍ଣ୍ଣନା କରିଛନ୍ତି । ସ୍ତମ୍ଭନ, ମୋହନ, ମାରଣ, ଉଚ୍ଚାଟନ, ବଶୀକରଣ ପ୍ରଭୃତି ତାନ୍ତ୍ରିକ କ୍ରିୟାକଳାପର ଆଲୋଚନା କରିଛନ୍ତି । ଏଥିରେ ଯୋଗ ବିଷୟରେ ବର୍ଣ୍ଣନା ମଧ୍ୟ ଦେଖିବାକୁ ମିଳେ ।

କବି 'ଶୂନ୍ୟସଂହିତା'ରେ ଲେଖିଛନ୍ତି –

''ସର୍ବ ମନ୍ତ୍ରରେ ମୁଁ ଗୁପତ କରିଛି ନିରାକାର ମନ୍ତ୍ର ଗୋଟି
ତିନି ସସ୍ର ଭକ୍ତପାଇଁ ମୁଁ ରଖିଛି ଶୂନ୍ୟସଂହିତା ବାଛିଟି

ଶୂନ୍ୟସଂହିତାକୁ ପଢ଼ିଲେ ବାଛୁ
ସକଳ ଯନ୍ତ୍ର ମନ୍ତ୍ରକୁ ପାଇଛୁ ।''

ଗ୍ରନ୍ଥରେ କବି ଶୂନ୍ୟତତ୍ତ୍ୱକୁ ସରଳ ଭାଷାରେ ପ୍ରକାଶ କରିଛନ୍ତି । ମାତ୍ର ଯୋଗ ସମ୍ବନ୍ଧୀୟ ବିଷୟଗୁଡ଼ିକ ସାଙ୍କେତିକ ଭାଷାରେ ଲେଖା ହୋଇଥିବାରୁ ଦୁର୍ବୋଧ୍ୟ ହୋଇପଡ଼ିଛି । ଅଚ୍ୟୁତାନନ୍ଦ 'ଶୂନ୍ୟସଂହିତା'କୁ ତାଙ୍କର ଶ୍ରେଷ୍ଠ ଗ୍ରନ୍ଥ ବୋଲି ବ୍ୟକ୍ତ କରିଛନ୍ତି ।

## ଗୋପାଳଙ୍କ ଓଗାଳ ଓ ଲଉଡ଼ି ଖେଳ

ଏହା ଏକ ମୌଳିକ ରଚନା । ଦୁଇ ଦଳର ପ୍ରଶ୍ନ ଓ ଉତ୍ତର ମଧ୍ୟରେ ଗୋପାଳମାନଙ୍କ କୌଳିକ ରୀତି ବର୍ଣ୍ଣିତ । ଏଥିରେ ମୁଖ୍ୟତଃ ଗୋମାତାଙ୍କ ସେବା ବିଷୟରେ ବର୍ଣ୍ଣନା କରାଯାଇଛି । ଗୁହାଳରେ ନଡ଼ାଦେବା, ଗୋରୁଙ୍କ ନିକଟରେ ଅଗ୍ନି ଜାଳିବା, ଘଣ୍ଟି ଘାଗୁଡ଼ି ବାନ୍ଧିବା, ଚୁଆ ଚନ୍ଦନ ବୋଳିବା, ଗାଈ ଦୁହିଁବା ବା ଦଧି ବିକିବାର ମନ୍ତ୍ର, ଦୋଳଯାତ୍ରାର ପୂଜା ବିଧି ପ୍ରଭୃତି ବହୁ ବର୍ଣ୍ଣନା ରହିଛି ।

ଦୋଳଯାତ୍ରା ବିଷୟରେ କବି ଲେଖିଛନ୍ତି –

''ଗୋରୁ ଗୋପାଳଙ୍କ ଜନ୍ମ ପୂର୍ଣ୍ଣିମା ବିଚାର ।
ଦୋଳଯାତ୍ରା ଭିଆଇଲେ ନବୀନ କିଶୋର ।
ନବଘନ ମୂରତି ଯେ ତ୍ରିରଙ୍ଗ ମୂରତି ।
ଯୁଗଳ ରୂପରେ ଦୋଳ ମଣ୍ଡପେ ଅଛନ୍ତି ।''

କବି ଗାଈ ଦୁହିଁବା, ଦହି ବିକିବା ମନ୍ତ୍ରର ମଧ୍ୟ ଉଲ୍ଲେଖ କରିଛନ୍ତି –

''ବସାମନ୍ତ୍ର ଉଚ୍ଚାରିଣ ଗୋ ଦହନ କରୁ ।
× × ×
ରାଧିକା ମନ୍ତ୍ରରେ ଦଧି ବିକିବାକୁ ଯାଉ ।''

ଗାଈକୁ କବି 'ଗୋମାତା' ବୋଲି କହିଛନ୍ତି । ଗୋମାତାଙ୍କୁ ଅନାଦି ବ୍ରହ୍ମଙ୍କ ସହିତ ସମାନ କରିଛନ୍ତି, ଯଥା –

''ନାମ ତା' ଅନନ୍ତଦେବ ବେଦ ଅଟେ ଚାରି,
ଶିଙ୍ଗ ତା'ର ସୁଷୁ ମୁନା ପିଠି ବସୁନ୍ଧରୀ ।
ସ୍ତନ ତା' ଛପନ ଜୀବ ଗର୍ଭ ତା'ର ସିନ୍ଧୁ
ମଳ ତା'ର ପବିତ୍ର ଦେବତାଙ୍କର ବନ୍ଧୁ ।।''

ଏହା ବ୍ୟତୀତ ରାଧାକୃଷ୍ଣଙ୍କ ଲୀଳା, ଗୋବର୍ଦ୍ଧନ ପୂଜା, ରାସ ପ୍ରଭୃତିର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । ଅଗ୍ନି ଉତ୍ସବ ଓଡ଼ିଶାର ଏକ ବିଶିଷ୍ଟ ପର୍ବ ।

ଏହାକୁ ଅଗିରା ପୂର୍ଣ୍ଣମୀ କୁହାଯାଏ । ଏହାର ଉତ୍ପତ୍ତି ସମ୍ବନ୍ଧରେ ଅଚ୍ୟୁତାନନ୍ଦ କହିଛନ୍ତି ଯେ କଂସ ଶ୍ରୀକୃଷ୍ଣଙ୍କ ନିଧନପାଇଁ ବହୁ ପ୍ରକାରେ ଚେଷ୍ଟା କଲା । ଥରେ ନନ୍ଦଙ୍କୁ ଶତଭାର ପଦ୍ମଫୁଲ ତୋଳି ପଠାଇବାକୁ ଆଦେଶ ଦେଲା । ବାଳକୃଷ୍ଣ କାଳିନ୍ଦୀ ହ୍ରଦରେ ପଶି କାଳୀକୁ ଦମନ କଲେ । ସେଠାରେ ଅହିମାନଙ୍କର ଯେଉଁ ଘର ଥିଲା ତାହାକୁ ପୋଡ଼ି ଦେଲେ । ଜହ୍ନକୁ କାହିଁକି ମାମୁଁ ବୋଲି କୁହାଯାଏ ତାହାର ବର୍ଣ୍ଣନା ଅଛିମଧ । ଚନ୍ଦ୍ର ଓ ଲକ୍ଷ୍ମୀ ସମୁଦ୍ରରୁ ଜାତ ହେଲେ । ଦୁହେଁ ତେଣୁ ଭାଇ ଭଉଣୀ । ଲକ୍ଷ୍ମୀ ଜଗତର ମାତା ହୋଇଥିବାରୁ ଚନ୍ଦ୍ରଙ୍କୁ ସମସ୍ତେ 'ମାମୁ' ବୋଲି ଡାକନ୍ତି ।

ବାରମାସୀ ଗୀତ ମଧ ଏଥିରେ ଅଛି । ଏହି ଗୀତ ଗୋପାଳମାନେ ଲଉଡ଼ିଖେଳରେ ସୁନ୍ଦର ଭାବରେ ବୋଲିଥାନ୍ତି –

''ଆଦ୍ୟ ମାର୍ଗଶିର ଶିଶିରେ ଶୀତ
କାହିଁ ଆଣିଦେବ କମଳାକାନ୍ତ, ମୋ କାହ୍ନୁରେ ।''

ଅଥବା

''ମାଘରେ ଗାଧୋଇ ଆସିବେ ବୋଲି
ଶେଯ ସେଜାଇଲି ପାଖୁଡ଼ା ମଲ୍ଲୀ
ଚକ୍ଷୁ ଉଜାଗରେ ପାହିଲା ରାତି, ମୋ କାହ୍ନୁରେ ।''

ଅଥବା

''ଆଷାଢ଼ ମାସରେ ଗୁଣ୍ଡିଚା ଯାତ
ରଥେ ବିଜେ କଲେ ଶ୍ରୀଜଗନ୍ନାଥ
ଅଗ୍ରେ ବଳଭଦ୍ର ବସିଲେ ଯାଇ
ସୁଭଦ୍ରା ମଝିରେ ପଛେ କହ୍ନାଇ, ମୋ କାହ୍ନୁରେ ।''

**ଗୁରୁଭକ୍ତି ଗୀତା**

ଏହା ଅଚ୍ୟୁତାନନ୍ଦ ଓ ତାଙ୍କର ଶିଷ୍ୟମାନଙ୍କ କଥୋପକଥନ ଛଳରେ ରଚିତ । ଅଚ୍ୟୁତାନନ୍ଦଙ୍କର ବିଭିନ୍ନ ଜାତିର ଶିଷ୍ୟ ଥିଲେ । ପ୍ରଧାନ ଶିଷ୍ୟ ଥିଲେ ରାମଦାସ । ଜାତିରେ ସେ କୁମ୍ଭାର ଥିଲେ । ଅନ୍ୟ ଜଣେଥିଲେ ରାମ କମାର । ଅଧିକାଂଶ ଶିଷ୍ୟ ଗୋପାଳ ଥିଲେ । ତାଙ୍କର ପ୍ରଧାନ ଶିଷ୍ୟ ୧୨ଜଣ ଥିଲେ ବୋଲି ଆଗରୁ ବର୍ଣ୍ଣିତ ଅଛି । ଅଚ୍ୟୁତ ସଂପ୍ରଦାୟର ମଧ ୫ଟି ଶାଖା ଥିଲା । ପ୍ରଥମ ଶାଖା ହେଲା ରାମଚନ୍ଦ୍ର ଦାସ । ତାଙ୍କର ପୀଠ ହେଉଛି କାନେଶ୍ୱରୀ

ବନ । ଦ୍ୱିତୀୟ ଶାଖା ହେଲା ଭରତ । ତାଙ୍କର ପୀଠ ହେଲା ଖଦିର ବନ । ତୃତୀୟ ଶାଖା ହେଉଛି ବକ୍ର ଦାସ । ତାଙ୍କର ପୀଠ ହେଉଛି ଚନ୍ଦ୍ରଭାଗା କୂଳର ସଙ୍ଗରସ ଗ୍ରାମ । ଚତୁର୍ଥ ଶାଖା ଓ ପଞ୍ଚମ ଶାଖା ହେଉଛନ୍ତି ଯଥାକ୍ରମେ ଧର୍ମଦାସ ଓ ବିଷ୍ଣୁଦାସ । ଧର୍ମଦାସଙ୍କ ପ୍ରଧାନ ପୀଠ ଭୁବନେଶ୍ୱର । ବିଷ୍ଣୁଦାସଙ୍କ ପୀଠ ହେଲା ସମ୍ବଲପୁର ଓ ସୋନପୁର ଅଞ୍ଚଳ । ଅଚ୍ୟୁତଙ୍କର ୧୬୦୦୦ ଶିଷ୍ୟ ଥିଲେ ବୋଲି ଏହି ଗୀତାରେ ଉଲ୍ଲେଖ ଅଛି । ତାଙ୍କ ପ୍ରଦର୍ଶିତ ପଥକୁ 'ଅଚ୍ୟୁତପଥ' ବା 'ବୈଷ୍ଣବ ପଥ' କୁହାଯାଉଥିଲା ।

'ଗୁରୁଭକ୍ତି ଗୀତା'ରେ ଉତ୍କଳୀୟ ବୈଷ୍ଣବ ଧର୍ମତତ୍ତ୍ୱ ଆଲୋଚନା କରାଯାଇଛି । ଗୁରୁବାଦର ଶ୍ରେଷ୍ଠତ୍ୱ ମଧ୍ୟ ଏଥିରେ ପ୍ରତିପାଦିତ ହୋଇଅଛି, ଯଥା –

"ଗୁରୁ ବ୍ରହ୍ମା ଗୁରୁ ବିଷ୍ଣୁ ଗୁରୁ ମହେଶ୍ୱର
ତିନି ଦେବତାର ଫଳ ଗୁରୁ ଦର୍ଶନର ।"

## ବ୍ରହ୍ମଶାଙ୍କୁଳି

ଏହା ୧୩ଟି ଅଧ୍ୟାୟରେ ବିଭକ୍ତ । ଏଥିରେ ତୀର୍ଥ, ବ୍ରତ ଓ ତପର ଆବଶ୍ୟକତା ନାହିଁ ବୋଲି ଅଚ୍ୟୁତାନନ୍ଦ କହିଛନ୍ତି । ବ୍ରହ୍ମ ଜ୍ଞାନ ନିଜ ମନ ଭିତରେ ଅଛି । ନିଜର ଜ୍ଞାନକୁ ବ୍ରହ୍ମଙ୍କ ପାଦର ଶାଙ୍କୁଳିରେ ଆବଦ୍ଧ କଲାପରି ନିଷ୍କାମ ଓ ନିର୍ବେଦ ଭାବରେ କାମ କଲେ ବ୍ରହ୍ମପ୍ରାପ୍ତି ହୁଏ ବୋଲି ସେ କହିଛନ୍ତି ।

## ଅଣାକାର ସଂହିତା

ଏଥିରେ ଅଚ୍ୟୁତ ନାମର ମାହାତ୍ମ୍ୟ ବର୍ଣ୍ଣନା କରିଛନ୍ତି । ନାମ ହେଉଛି ମୂଳ । ଗୀତା, ଭାଗବତ, ପୁରାଣ ଆଦି ସବୁରି ମୂଳରେ ନାମ ହିଁ ବିଦ୍ୟମାନ । ଏହି ନାମର ମହତ୍ତ୍ୱ ପ୍ରତିପାଦନ କରିବାକୁ ଯାଇ ସେ ଲେଖିଛନ୍ତି –

"ଆଗେ ହେଲା ନାମ ପଛେ ହେଲା ବ୍ରହ୍ମ
ନାମଟି ସବୁରି ମୂଳ
ନାମେଣ ଜଗତ ବ୍ୟାପିଣ ଅଛଇ
ନାମଟି ସକଳ ଠୁଳ ।"

କବିଙ୍କ ମତରେ କର୍ମ ହେଉଛି ଦୁଃଖର କାରଣ । କର୍ମ ଯୋଗୁଁ ସଂସାରରେ ଜୀବ ବାରମ୍ବାର ଜନ୍ମଲାଭ କରେ । କର୍ମ ତ୍ୟାଗ କଲେ ମୁକ୍ତି ମିଳିବ । ଏହି ଅକର୍ମ ହେଉଛି ଭଗବାନ୍‌ଙ୍କ ପ୍ରତି ନିଷ୍କାମ ପ୍ରେମ ।

କବି ତେଣୁ ଉପଦେଶ ଦେଇଛନ୍ତି –

"ଏଣୁକରି କର୍ମ ଅଟଇ ଯେ ଭ୍ରମ
ପରତେ.ତାକୁ ନ ଯିବୁ
ଅକର୍ମେ ନିଶ୍ଚଳେ ବାସୁଦେବ
ପ୍ରୀତି ଅନବରତେ ମଜ୍ଜିବୁ ।"

ଏହାକୁ ସେ ଲକ୍ଷେ ଗ୍ରନ୍ଥରେ ଶ୍ରେଷ୍ଠ ବୋଲି କହିଛନ୍ତି ।

## ଅକଳିତ ସଂହିତା

ଏହି ଗ୍ରନ୍ଥଟି ରାମଦାସ ଓ ଅଚ୍ୟୁତଙ୍କ ମଧ୍ୟରେ କଥୋପକଥନ ଛଳରେ ଲେଖା ହୋଇଛି । ଏଥିରେ ସେ ଯେଉଁ ଜ୍ଞାନ ବିତରଣ କରିଛନ୍ତି ତାହା ଅତି ଗୋପନୀୟ ମନେ କରିଛନ୍ତି । କାହା ଆଗେ ପ୍ରକାଶ ନ କରିବାକୁ ଶିଷ୍ୟଙ୍କୁ କହିଛନ୍ତି । କବି ଶୂନ୍ୟଭଜନ କରିବାକୁ ଉପଦେଶ ଦେଇଛନ୍ତି । ଏହି ଶୂନ୍ୟମାର୍ଗ ଅତି ଅସାଧ ବୋଲି ମଧ୍ୟ କହିଛନ୍ତି –

"ଅସାଧ ମାର୍ଗ ଏହି ବିଚାର
ଜିହ୍ୱା ଓଷ୍ଠ ନ ଚଳଇ ଏଠାର ।"

## ଅଷ୍ଟଗୁଜ୍ଜରୀ

ଏଥିରେ ଆଠୋଟି ଗୀତ ଅଛି । ଭଗବାନ୍ ସର୍ବଦା ଭକ୍ତର ଅଧୀନ ବୋଲି କୁହାଯାଇଛି । ଭକ୍ତବତ୍ସଳ ହରି ଦୂତ ସାଜି ହସ୍ତିନାପୁରକୁ ଯାଇଥିଲେ ପାଞ୍ଚ ଖଣ୍ଡ ଗ୍ରାମ ମାଗି । ପୁଣି ଭକ୍ତପାଇଁ ନୃସିଂହ ରୂପରେ ଖମ୍ବରୁ ବାହାରି ହିରଣ୍ୟକୁ ବିଦାରଣ କରିଥିଲେ । କବି ମଧ୍ୟ ଶ୍ରୀବତ୍ସ, ଅଜାମିଳ ପ୍ରଭୃତି ଭକ୍ତଙ୍କ ବିଷୟ ଅବତାରଣା କରିଛନ୍ତି ।

## ଚଉରାଶୀ ଯନ୍ତ୍ର

କବିଙ୍କ ମତରେ ଏ ଦେହରେ ଚୌରାଶୀ ଚକ୍ର ଅଛି । ବେକଠାରୁ ମୁଣ୍ଡ ପର୍ଯ୍ୟନ୍ତ ୨୮ ଚକ୍ର । ଅଣ୍ଟାଠାରୁ ବେକ ପର୍ଯ୍ୟନ୍ତ ୨୮ଟି ଚକ୍ର ଓ ଅଣ୍ଟାଠାରୁ ପାଦ ପର୍ଯ୍ୟନ୍ତ ୨୮ଟି ଚକ୍ର । ଏହିପରି ୮୪ଟି ଚକ୍ର ନେଇ ଶରୀର ଗଠିତ ହୋଇଛି । ଏହି ଗ୍ରନ୍ଥରେ ୮୪ଟି ଅଧ୍ୟାୟ ଓ ଆଉ ଗୋଟିଏ ବିଶେଷ ଅଧ୍ୟାୟ ରହିଛି ।

ନାରଦ ଜଗନ୍ନାଥଙ୍କୁ ପଚାରନ୍ତେ, ପ୍ରଭୁ ନାରଦଙ୍କୁ ଏ ବିଷୟରେ ସମ୍ୟକ୍ ଧାରଣା ଦେଇଛନ୍ତି –

"ଶୁଣ ହେ ନାରଦ ଆମ୍ଭର ବାଣୀ, ଅନୁଭବ କଲୁ ଭଲା କାହାଣୀ
ଶୁଣିବୁ ଯେବେ ମନ ସ୍ଥିର କର, ଚୌରାଶୀ ଯନ୍ତ୍ର ଉପଦେଶ ସାର ।"

ଏଥିରେ ସେ ସାଧକ ମନର ଦୃଢ଼ତା ଉପରେ ଜୋର୍ ଦେଇଛନ୍ତି । ମନହିଁ ଗୁରୁ । ମନହିଁ ଭଗବାନ୍, ମନଦ୍ୱାରା ସମସ୍ତ କାର୍ଯ୍ୟ ସାଧନ କରାଯାଇପାରେ । ଅଚ୍ୟୁତଙ୍କ ଭାଷାରେ – ''ମନଟି ସବୁରି ଉପରେ ଗୁରୁ
ମନ କଲେ ବାବୁ ଟାଳଇ ମେରୁ ।''

## ବିପ୍ର ଚାଳକ

ଏକଦା ବ୍ରାହ୍ମଣମାନେ ଅଚ୍ୟୁତାନନ୍ଦଙ୍କ ପାଖେ ପହଞ୍ଚି ବିଭିନ୍ନ ପ୍ରଶ୍ନ ପଚାରି ବ୍ୟତିବ୍ୟସ୍ତ କରିପକାଇଲେ । ଅଚ୍ୟୁତାନନ୍ଦ ତାଙ୍କ ପ୍ରଶ୍ନର ଉତ୍ତରଦେବା ପରିବର୍ତ୍ତେ ସେମାନଙ୍କୁ କେତେକ ପ୍ରଶ୍ନ ପଚାରିଲେ । ଅଷ୍ଟାଦଶ ପୁରାଣମାନଙ୍କ ମଧ୍ୟରେ କେଉଁ ପୁରାଣ ପ୍ରଥମେ ରଚିତ ଓ ତା'ପରେ କେଉଁ କେଉଁ ପୁରାଣ ରଚିତ ଓ ସେଗୁଡ଼ିକର ଶ୍ଳୋକ ସଂଖ୍ୟା କେତେ ବୋଲି ପଚାରନ୍ତେ, ବ୍ରାହ୍ମଣମାନେ ତା'ର ଉତ୍ତର ଦେଇ ନ ପାରି ଶରଣାଗତ ହେଲେ । ଅଚ୍ୟୁତାନନ୍ଦ ଶେଷରେ ସେମାନଙ୍କୁ ଶ୍ରୀକୃଷ୍ଣଙ୍କ ଉପାସନା କରିବାକୁ ଉପଦେଶ ଦେଲେ ।

## ଅନନ୍ତ ଗୋଇ

ଏଥିରେ ଦୁଇ ଶିଷ୍ୟ ରାମଦାସ ଓ ଧର୍ମଦାସ ଅଚ୍ୟୁତଙ୍କୁ ଭେଟିଛନ୍ତି ଓ କଳିଯୁଗର ସ୍ୱରୂପ ବିଷୟରେ ପଚାରିଛନ୍ତି । ଅଚ୍ୟୁତାନନ୍ଦ କହିଛନ୍ତି ଯେ କଳି ଯୁଗରେ ସବୁ ବିପରୀତ କଥା ଘଟିବ । କାହାର ହିତାହିତ ଜ୍ଞାନ ରହିବ ନାହିଁ । ସମସ୍ତେ ଅପକର୍ମ କରିବେ । ସବୁ ସମୟରେ ଗୁରୁଙ୍କ ନିକଟକୁ ଶିଷ୍ୟମାନେ ଯାଉଥିଲେ । କଳି ଯୁଗରେ ଶିଷ୍ୟମାନେ ଗୁରୁଙ୍କୁ ପ୍ରଣାମ କରିବେ ନାହିଁ । ସେମାନଙ୍କର ସମାଲୋଚନା କରିବେ ।

ସେ ଭବିଷ୍ୟତ୍ ବିଷୟରେ ମଧ୍ୟ ସୂଚନା ଦେଇଛନ୍ତି –

''ଇନ୍ଦୁ ପରେ ବିନ୍ଦୁ ଦୃଶ୍ୟ ଗଗନ
ସେ ଦିନୁ ବଢ଼ିବ ଅତି ଅଜ୍ଞାନ ।''

ଏଥିରୁ ଉଦ୍ଧାର ପାଇବାପାଇଁ ହଂସଭଜନ କରିବାକୁ ସାଧକ ଉପଦେଶ ଦେଇଛନ୍ତି । କଳାପାହାଡ଼ ପ୍ରଭୃତିଙ୍କଦ୍ୱାରା ଦେଶରେ ନାନା ଅଘଟଣ ଘଟିବ ବୋଲି ଭବିଷ୍ୟଦ୍‌ବାଣୀ ମଧ୍ୟ କରିଛନ୍ତି ।

## ତତ୍ତ୍ୱବୋଧିନୀ

ଏହା ଅଚ୍ୟୁତାନନ୍ଦ ଓ ରାମଦାସଙ୍କ ମଧ୍ୟରେ କଥୋପକଥନ ଛଳରେ ରଚିତ । ଓଁକାରର ବୈଶିଷ୍ଟ୍ୟ ଏଥିରେ ପ୍ରତିପାଦିତ ହୋଇଅଛି, ଯଥା –

''ସବୁ ପୂରିଅଛି ଓଁକାର ଦେହେ
ଗୁରୁ ସିନା ତାକୁ ଚିହ୍ନାଇ ଦିଏ ।''

ଶ୍ରୀକୃଷ୍ଣ ଚୈତନ୍ୟ ରୂପେ ଖୋଳ କରତାଳ ଧରି ନାମ ପ୍ରଚାର କରିବା ଫଳରେ ପାପୀମାନେ ମୁକ୍ତି ପାଇଲେ ବୋଲି ସେ କହିଛନ୍ତି –

''ଚୈତନ୍ୟ ପ୍ରଭୁ ନାଚିଲେ ଢଳି
ନଦିଆ ବଜାରେ ବାଜେ କାହାଳୀ
ମୂର୍ଖ ପାଷଣ୍ଡ ଯେ ତରିଣ ଗଲେ
ସେଇଦିନୁ ହରି ନାମ ବୋଇଲେ ।''

କଳି କାଳରେ ବହୁ ଅନୀତି ଦେଖାଦେବ ବୋଲି ସେ ଭବିଷ୍ୟଦ୍‌ବାଣୀ କରିଛନ୍ତି, ଯଥା – ''ମୂର୍ତ୍ତିମନ୍ତ ପୁଂସ ଦେଖିଲେ ନାରୀ
ସ୍ୱାମୀ ଛାଡ଼ି ପର ସଙ୍ଗେ ବିହରି
ବାହୁ ଟେକି ଦେଖାଇବେ ଯୌବନ
କାଢ଼ିବେ ଦୁକୂଳ ଦିଶିବ ସ୍ତନ ।''

**ଭାବନାବର**

ଏଥିରେ କବିଙ୍କ ବାଲ୍ୟଜୀବନ ଓ ସାଧକ ଜୀବନର କେତୋଟି ଘଟଣା ବର୍ଣ୍ଣିତ ଅଛି । ବ୍ରହ୍ମଜ୍ଞାନତତ୍ତ୍ୱ ମଧ୍ୟ ପରିବେଷିତ ହୋଇଛି । ଏହା କବିଙ୍କ ଶ୍ରେଷ୍ଠ ଭାବନା ହୋଇଥିବାରୁ ଏହାର ନାମ ଭାବନାବର ଦିଆଯାଇଛି । 'ପରମାତ୍ମା ସକଳ ଘଟରେ ପୂରି ରହିଛନ୍ତି ବୋଲ କବି ଲେଖିଛନ୍ତି –

''ମୋହ ତହିଁ ଦେଖ ତୁମ୍ଭେ ରହିଅଛ
ତୁମ୍ଭେ ତହିଁ ପରା ମୁହିଁ
ତୁମେ ମୋ ହିସାବ କରିଣ ବସିଲେ
ବିଦ୍ୟା ହିଁ ଅଣ୍ଟିବ ନାହିଁ ।''

**ଘଟ ସାଗର**

ଏଥିରେ ଅଚ୍ୟୁତାନନ୍ଦ ବ୍ରହ୍ମଜ୍ଞାନ ବିଷୟ ବୁଝାଇଛନ୍ତି ।

**ଅମର କୁମର ସଂହିତା**

ଏହା ନିରାକାର ଓ ଅଚ୍ୟୁତଙ୍କ ପ୍ରଶ୍ନୋତ୍ତର ଛଳରେ ରଚିତ । ଏଥିରେ ନିରାକାର ଅଚ୍ୟୁତଙ୍କ ତାତ୍ତ୍ୱିକ ପ୍ରଶ୍ନର ଉତ୍ତର ଦେଇଛନ୍ତି । ଏଥିରେ ବେଦ ଓ ଜ୍ଞାନ ବିଷୟ ବର୍ଣ୍ଣିତ ଅଛି ।

''ଜ୍ଞାନର ଘର ଯେ ଓଂକାର
ଅଣ ଅକ୍ଷରୁ ସେ ବାହାର ।''

## ଶୂନ୍ୟଗୀତା, ଭକ୍ତଲୀଳା ଗୀତା, ଆଦିବ୍ରହ୍ମ ଗୀତା, ଜ୍ଞାନପ୍ରଦୀପ ଗୀତା, ପଦ୍ମକଳ୍ପ ଟୀକା

ଅଚ୍ୟୁତାନନ୍ଦ 'ଶୂନ୍ୟଗୀତା'ରେ ଶୂନ୍ୟବାଦର ତାତ୍ତ୍ୱିକ ଆଲୋଚନା କରିଛନ୍ତି । ଶୂନ୍ୟରୁ ଜଗତ ଆରମ୍ଭ ହୋଇଛି । ସାଧନାରେ ଶୂନ୍ୟପୁରୁଷଙ୍କୁ ଦେଖିବାପାଇଁ ସେ ଉପଦେଶ ଦେଇଛନ୍ତି । ଏହା ସଦ୍‌ଗୁରୁ ସେବା, ସତ୍ୟ, ଦୟା, କ୍ଷମା ପ୍ରଭୃତି ଆଚରଣଦ୍ୱାରା ସମ୍ଭବ ହେବ ବୋଲି କହିଛନ୍ତି । 'ଭକ୍ତଲୀଳା ଗୀତା'ରେ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀର ବହୁ ଭକ୍ତମାନଙ୍କର ବିବରଣୀ ଦେଇଛନ୍ତି । 'ଆଦିବ୍ରହ୍ମ ଗୀତା' ଏକ କ୍ଷୁଦ୍ର ଗ୍ରନ୍ଥ । ଏଥିରେ ମଧ୍ୟ ବ୍ରହ୍ମ ବିଷୟରେ ତାତ୍ତ୍ୱିକ ଆଲୋଚନା କରିଛନ୍ତି । ଏହି ପ୍ରସଙ୍ଗରେ ଅଚ୍ୟୁତାନନ୍ଦ ନିଜ ଜନ୍ମର ବିବରଣୀ ଦେଇଛନ୍ତି । 'ପଦ୍ମକଳ୍ପଟୀକା' ଶିଷ୍ୟ ରାମଚନ୍ଦ୍ର ଓ ଗୁରୁ ଅଚ୍ୟୁତଙ୍କର କଥୋପକଥନରେ ରଚିତ । ଏଥିରେ ଭକ୍ତମାନଙ୍କର ଜନ୍ମଜନ୍ମାନ୍ତରର ପ୍ରସଙ୍ଗ ରହିଛି । ପଞ୍ଚସଖାଙ୍କ ସହିତ ଶ୍ରୀଚୈତନ୍ୟ ଜନ୍ମଗ୍ରହଣ କରିବେ ବୋଲି ଏଥିରେ ଉଲ୍ଲେଖ ଅଛି । 'ଜ୍ଞାନପ୍ରଦୀପ ଗୀତା' ମଧ୍ୟ ବ୍ରହ୍ମଜ୍ଞାନମୂଳକ ଏକ ଗ୍ରନ୍ଥ । ଶରୀର ମଧ୍ୟରେ ବ୍ରହ୍ମଜ୍ଞାନ ଅଛି ବୋଲି କବି ଦର୍ଶାଇଛନ୍ତି –

''ବ୍ରହ୍ମଜ୍ଞାନ ଜ୍ଞାନବ୍ରହ୍ମ ନୁହଇ ଏ ଦୂର
ଗୁପତ ହୋଇ ରହିଛି ମନ୍ଦିରେ ତୋହର ।''

### ଭଜନ

ଅଚ୍ୟୁତାନନ୍ଦ ମଧ୍ୟ ବହୁ ଭଜନ ରଚନା କରିଛନ୍ତି । ସେଗୁଡ଼ିକ ତତ୍ତ୍ୱମୂଳକ ହେଲେ ମଧ୍ୟ ବିଶେଷ ଜନପ୍ରିୟତା ହାସଲ କରିଅଛି । ସେଗୁଡ଼ିକ ହେଲା ମନସୂତ୍ର ଭଜନ, ଚତୁର୍ଦ୍ଧାଭଜନ, ଅନାମ ଭଜନ, ହଂସ ଭଜନ, ଏକାକ୍ଷର ଭଜନ, ବୋହୂ ବୋହୂ ଭଜନ । ମନସୂତ୍ର ଭଜନରେ ବାହ୍ୟ ଆଚରଣ ପରିହାର କରି ଭଗବାନ୍‌ଙ୍କ ନାମ ନେବାକୁ ଅଚ୍ୟୁତାନନ୍ଦ ଉପଦେଶ ଦେଇଛନ୍ତି, ଯଥା –

''ତନ୍ତୀ ବାପୁଡ଼ାକୁ ତନ୍ତ ଗିଳିଦେଲା
ଚଷାକୁ ଗିଳେ ଲଙ୍ଗଳ
ସପତ ସମୁଦ୍ର କୂର୍ମ ଗିଳିଗଲା
ବୃକ୍ଷକୁ ଗିଳିଲା ଫଳ ।''

ଚତୁର୍ଦ୍ଧାରୂପ ଭଜନ କବିଙ୍କ ଆଉ ଏକ ଜନପ୍ରିୟ ଭଜନ । ଏଥିରେ କବି ମନକୁ ଚତୁର୍ଦ୍ଧାମୂର୍ତ୍ତି ଭାବେ କଳ୍ପନା କରିଛନ୍ତି –

''ଏଇ ମନ ସିନା ଚତୁର୍ଦ୍ଧା ମୂରତି
ହେ ମୂଢ଼ମତି

× × ×

ସନକାଦି ମୁନି ଧାଉଛନ୍ତି ହେ ମୂଢ଼ମତି ।''

ଅନାମ ଭଜନ କବିଙ୍କର ଆଉ ଏକ ଜନପ୍ରିୟ ଭଜନ –

''ଅନାମରୁ ନାମ ଜନମ ହୋଇ
ଅଣ ଅକ୍ଷରକୁ ଅନାମ କହି ।''

ଆରେ ମନ ମୋର ଭଜନରେ କବି ନିରାକାରଙ୍କ ସ୍ୱରୂପ ବର୍ଣ୍ଣନା କରିଛନ୍ତି –

''ଆରେ ମନ ମୋର ଦେଉଳ ଦୁଆରେ ଦିଅଁଘର
ପୂଜିବାକୁ ଅତି ତତ୍‌ପର ।
ଦେଉଳେ ପଶି ତା' ଲୟରେ ମଜ୍ଜିଲେ
ଦୃଷ୍ଟିରେ ଦେଖିବୁ ନିରାକାର ।''

ହଂସ ଭଜନରେ କବି ଆତ୍ମାକୁ ହଂସ ସହିତ ତୁଳନା କରିଛନ୍ତି –

''ହଂସ ଉଡ଼ିଯିବ ହଂସୁଲୀ ଚଳିବ
ମୃତ୍ତିକା ଘଟ ଯେ ପଡ଼ିରହିବ
କହନ୍ତି ଅଚ୍ୟୁତ ନେମାଳ ଗ୍ରାମରେ
ବେନ୍ଧୁ ନାମ ଆଶ୍ରେ କର ।''

ବୋହୂ ବୋହୂ ଭଜନରେ କବି କୃଷ୍ଣଙ୍କୁ ବୋହୂ ରୂପରେ ଜ୍ଞାନ କରିଛନ୍ତି –

''ବୋହୂ ମୋର ଧନ ବୋହୂ ମୋ ଜୀବନ
ବୋହୂ ଲାଗି ଏତେ ସରି
ପାମର ଅଚ୍ୟୁତ ଭାବରେ ଭଣିଲେ
କର ଭବ ଜଳୁ ପାରି ।''

ପଞ୍ଚମନ ଭଜନରେ କବି ଭଗବାନ୍‌ଙ୍କର ଅମଳ କମଳ ଚରଣ ତଳକୁ ଯିବାପାଇଁ ନିର୍ଦ୍ଦେଶ ଦେଇଛନ୍ତି ।

କବି ମଧ୍ୟ ବହୁ ନିର୍ଗୁଣ ଭଜନ ରଚନା କରିଛନ୍ତି, ଯଥା –

''ଶୂନ୍ୟ ମନ୍ଦିରେ ଚାହିଁ ସଖୀ ଗୋ ଲୀଳା ଲାଗିଛି
ଫୁଲ ଯେ ଫୁଟି ନାହିଁ ସଖୀ ଗୋ କେଶର ଉଡୁଛି
ବତିଶ ପାଖୁଡ଼ା ଫୁଲ ସଖୀ ମୋ ଏକ ଗଣ୍ଡିରେ
ଭ୍ରମର ଲୁଚିଛି ସଖୀ ଗୋ ସେ କଢ଼ି ମଧ୍ୟରେ ।''

ତାଙ୍କର ଗୋଟିଏ ଚଉତିଶା ମଧ୍ୟ ଲୋକମାନେ ଗାଇଥାନ୍ତି –

"କର ଧରି ରାଧା ଦୂତୀର ପୁଣି । କୋମଳ କରି କହନ୍ତି ସେ ବାଣୀ
କର ଗୋ ଦୂତୀ ତାହାର ଧ୍ୟାନ । କମଳ ମଧ୍ୟରେ ନନ୍ଦ ନନ୍ଦନ ସେ
କରିବା ଚାଲ ଦର୍ଶନ ଗୋ ।
କାଳିନ୍ଦୀ କୂଳରେ କଦମ୍ବ ମୂଳରେ କଳାକର ନିରଞ୍ଜନ ଗୋ ।"

କବିଙ୍କ ଜଗନ୍ନାଥ ଜଣାଣ ଅତି ଜନପ୍ରିୟ । ଏଥିରେ ସେ ଜଗନ୍ନାଥଙ୍କ କୃପା ଭିକ୍ଷା କରିଛନ୍ତି । ଏହା ଅତି ମର୍ମସ୍ପର୍ଶୀ ହୋଇପାରିଛି –

"ଦୀନବନ୍ଧୁ ହେ, ମୋ ଦୁଃଖ ନ ଗଲା ଯେ,
ତୁମ୍ଭେ ଦୀନବନ୍ଧୁ ମୋ ବନ୍ଧୁ ନୋହିଲେ
ମୋ ବନ୍ଧୁ ହୋଇବ କିଏ ।"

## ମହାପ୍ରୟାଣ

ନେମାଳ ଛଡ଼ା ଅଚ୍ୟୁତାନନ୍ଦଙ୍କର ଗାଦି ସାଇଲେ ପ୍ରଗଣାର ବଡ଼ମୂଳ, ସାଇବିରିକୁଣ୍ଡ ପ୍ରଗଣାର ବଳଦା, ହରିହରପୁର ପ୍ରଗଣାର ସାହାଜପୁର ପ୍ରଭୃତି ସ୍ଥାନମାନଙ୍କରେ ସ୍ଥାପିତ ହୋଇଥିଲା । କିନ୍ତୁ ନେମାଳ ଥିଲା ଅଚ୍ୟୁତାନନ୍ଦଙ୍କର ସବୁଠାରୁ ପ୍ରିୟ ସ୍ଥଳୀ । ତାଙ୍କର ୧୬ହଜାର ଶିଷ୍ୟ ଥିଲେ । ଶିଷ୍ୟମାନଙ୍କ ମଧ୍ୟରେ ବାଦବିସମ୍ବାଦ ହେବା ଆଶଙ୍କାରେ ମୃତ୍ୟୁପରେ ସେ ନେମାଳଠାରେ ତାଙ୍କୁ ସମାଧି ଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ରାମ ଦାସ ଓ ତାଙ୍କର ବଂଶଧରମାନେ ସେହି ସମାଧିରେ ପୂଜା ବିଧାନ କରିବେ ବୋଲି କହିଯାଇଥିଲେ । ସେ ମଧ୍ୟ କଳିଯୁଗରେ ବ୍ରହ୍ମହିଁ ସାର ବୋଲି କହି ତାକୁ ଜପ କରିବାକୁ ଉପଦେଶ ଦେଇଯାଇଥିଲେ ।

ଅଚ୍ୟୁତାନନ୍ଦ ୧୨୦ ବର୍ଷରୁ ଊର୍ଦ୍ଧ୍ୱ ଜୀବିତ ଥିବାର ଜଣାଯାଏ । ଜ୍ୟେଷ୍ଠ ମାସ ପୂର୍ଣ୍ଣିମା ଦିନ ତାଙ୍କର ମହାପ୍ରୟାଣ ହୋଇଥିଲା । ଚିତ୍ରୋତ୍ପଳା ନଦୀ କୂଳରେ ସୁନ୍ଦର ତରୁରାଜିବେଷ୍ଟିତ ଦ୍ୱାଦଶ ବଟ ମଧ୍ୟରେ ନେମାଳ ମଠ ଅଦ୍ୟାପି ବିଦ୍ୟମାନ । ତାଙ୍କର ଆବିର୍ଭାବ ଓ ତିରୋଧାନ ଦିବସ ସେହି ମଠରେ ମହାସମାରୋହରେ ପାଳିତ ହେଉଅଛି ।

ଓଡ଼ିଶୀ ବୈଷ୍ଣବ ଧର୍ମର ପ୍ରଚାର ଓ ପ୍ରସାରପାଇଁ ଅଚ୍ୟୁତାନନ୍ଦଙ୍କର ଅବଦାନ କମ୍ ନୁହେଁ । ସେ ଏଥିପାଇଁ ବହୁ ସଂହିତା ରଚନା କରିଯାଇଛନ୍ତି । ଏହି ସଂହିତାଗୁଡ଼ିକ ଉଚ୍ଚ ଦାର୍ଶନିକ ଚିନ୍ତାରେ ପରିପୂର୍ଣ୍ଣ । ଏହା ମଧ୍ୟ ଓଡ଼ିଆ ଭାଷାକୁ ବଳିଷ୍ଠ ଓ ସମୃଦ୍ଧିଶାଳୀ କରିବାରେ ସାହାଯ୍ୟ କରିଛି । ବସ୍ତୁତଃ, ଅପୂର୍ବ ଜ୍ଞାନୀ, ସାଧୁ, ସାଧକ, କାବ୍ୟକାର, ଗାୟକ, ପରିବ୍ରାଜକଭାବେ ମହାପୁରୁଷ ଅଚ୍ୟୁତାନନ୍ଦ ଉତ୍କଳଭୂମିରେ ଏକ ଉଜ୍ଜ୍ୱଳ ଜ୍ୟୋତିସ୍ତମ୍ଭ ଭାବେ ରହିଛନ୍ତି ।

# ମହିମାବନ୍ତ
# ଯଶୋବନ୍ତ ଦାସ

ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ଯେଉଁ ପାଞ୍ଚ ଜଣ ସିଦ୍ଧ, ସାଧକ ଓ କବିମାନଙ୍କର ଆବିର୍ଭାବ ହୋଇଥିଲା, ସେମାନଙ୍କ ମଧ୍ୟରେ ଯଶୋବନ୍ତ ଦାସଙ୍କ ନାମ ଉଲ୍ଲେଖଯୋଗ୍ୟ । କାହା କାହା ମତରେ ପଞ୍ଚସଖାଙ୍କ ମଧ୍ୟରେ ସେ ତୃତୀୟ ସଖା ଅଟନ୍ତି । ତାଙ୍କର ଅଲୌକିକ କ୍ରିୟାକଳାପ ମନରେ ବିସ୍ମୟ ସୃଷ୍ଟି କରେ ।

### ଜନ୍ମ ଓ ବାଲ୍ୟକାଳ

ଯଶୋବନ୍ତ କଟକ ଜିଲ୍ଲାର ଜଗତ୍‌ସିଂହପୁର ନିକଟସ୍ଥ ଅଢ଼ଙ୍ଗ କିଲାର ନନ୍ଦୀଗ୍ରାମଠାରେ ଏକ କ୍ଷତ୍ରିୟ ପରିବାରରେ ୧୪୮୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବଳଭଦ୍ର ମଲ୍ଲ ଓ ମାତାଙ୍କ ନାମ ରେଖାଦେବୀ । ଶିଷ୍ୟ ସୁଦର୍ଶନ ଦାସଙ୍କ ରଚିତ 'ଚଉରାଶୀ ଆଜ୍ଞା'ରୁ ଜଣାଯାଏ ଯେ ଭଗବାନ୍ ମଲ୍ଲଙ୍କ ପୁତ୍ର ଥିଲେ ଦୁର୍ଲଭ ମଲ୍ଲ । ଦୁର୍ଲଭଙ୍କ ପୁତ୍ରର ନାମ ନିରଞ୍ଜନ ଓ ତାଙ୍କ ପୁତ୍ର ଥିଲେ ପୁରୁଷୋତ୍ତମ । ପୁରୁଷୋତ୍ତମଙ୍କର ପୁତ୍ର ହେଉଛନ୍ତି ନନ୍ଦ ମଲ୍ଲ । ନନ୍ଦ ମଲ୍ଲଙ୍କ ପୁତ୍ର ବଳଭଦ୍ର ମଲ୍ଲ । ବଳଭଦ୍ର ମଲ୍ଲଙ୍କର ଦୁଇ ପୁଅ ଥିଲେ । ସେମାନେ ହେଉଛନ୍ତି ଯଶୋବନ୍ତ ଓ ବୈଷ୍ଣବ ମଲ୍ଲ । ଯଶୋବନ୍ତ ବୈଷ୍ଣବ ଧର୍ମରେ ଦୀକ୍ଷିତ ପରେ ନିଜକୁ 'ଦାସ' ଉପାଧିରେ ଭୂଷିତ କଲେ ।

ଯଶୋବନ୍ତଙ୍କ ପିତା ବଳଭଦ୍ର ମଲ୍ଲ ଜଣେ ଯୋଦ୍ଧା ଥିଲେ । ସେ କୁଜଙ୍ଗ ରାଜାଙ୍କ ଅଧୀନରେ କାର୍ଯ୍ୟ କରୁଥିଲେ । ପିତାଙ୍କ ପରି ଯଶୋବନ୍ତ ବାଲ୍ୟକାଳରୁ ଶରୀର ଚର୍ଚ୍ଚା କରୁଥିଲେ । ସେ ବଳିଷ୍ଠ ଓ ଦେଖିବାକୁ ସୁନ୍ଦର ଥିଲେ । ବହୁକୁଟୁମ୍ବୀ ମଧ୍ୟ ଥିଲେ । 'ଚୈତନ୍ୟ ଭାଗବତ'ରେ ଏହା ଉଲ୍ଲେଖ ଅଛି –

''କୁଟୁମ୍ବ ଅଟଇ ଅପାର । ପିତାମାତା ପତ୍ନୀ ଆବର ।
ମୁଖକୁ ନାସିକା ସୁନ୍ଦର । ସୁବାହୁ ନାମ ଅଟେ ତା'ର ।''

ସେତେବେଳେ ଅଢଙ୍ଗଗଡ଼ର ଶାସକ ଥିଲେ ରଘୁନାଥ ଚମ୍ପତି । ଯଶୋବନ୍ତ ତାଙ୍କ ଅଧୀନରେ କଟୁଆଳ ବା ରକ୍ଷୀଭାବେ କାର୍ଯ୍ୟ କଲେ । କୃଷିକ୍ଷେତ୍ରରୁ ମିରିଗ, ବରାହ ପ୍ରଭୃତି ଜନ୍ତୁଙ୍କୁ ଘଉଡ଼ାଇବା ତାଙ୍କର ପ୍ରଧାନ କାମ ଥିଲା ।

## ଧାନଚୋରି

ସେ ସାଙ୍ଗମାନଙ୍କ କଥାରେ ପଡ଼ି ଧାନ ଚୋରି କରିବାକୁ ଗଲେ । ଦାଆ ଧରି ଧାନ କାଟୁଥିଲାବେଳେ ରାମ ନାମ ଶୁଣିବାକୁ ପାଇଲେ । ତାଙ୍କ ହୃଦୟରେ ମହାନ୍ ପରିବର୍ତ୍ତନ ଆସିଲା । ସେ ସନ୍ନ୍ୟାସୀ ହୋଇ ରାମ ନାମ ଜପ କରିବାକୁ ଲାଗିଲେ । କବି ଲେଖିଛନ୍ତି –

"ମୁଁ କରେ ଏକ ଦାଆ ଘେନି ଧାନଗଛ କାଟିଲି ପୁଣି
ଧାନ ଛିଡ଼ନ୍ତେ ସେ ବୋଇଲା ସଜୀବ ନାମ ଉଚାରିଲା

× × ×

ହସ୍ତୁ ପଡ଼ିଲା ଦାଆ ତଳେ । ମୁଁ ଭୋଳ ହେଲି ରାମ ତାଳେ ।"

ଧାନ କାଟିଥିବାରୁ ଲୋକେ ତାକୁ ଧରି ନେଇ ଅଢଙ୍ଗଗଡ଼ ରାଜା ରଘୁନାଥ ଜେନାଙ୍କ ପାଖରେ ହାଜର କରାଇଲେ । ଯଶୋବନ୍ତ ଜଗନ୍ନାଥଙ୍କୁ ଡାକିଲେ । ଭକ୍ତର ଡାକ ମଧ ଜଗନ୍ନାଥ ଶୁଣିଲେ । ତାଙ୍କ ଶରୀରରେ ଜଗନ୍ନାଥଙ୍କୁ ଦେଖି ରଘୁନାଥ ବିସ୍ମିତ ହୋଇପଡ଼ିଲେ ଏବଂ ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଶୂନ୍ୟରୁ ଯଶୋବନ୍ତ ଧଣ୍ଡା ଆଣି ରାଜାଙ୍କୁ ଦେଲେ । ରଘୁନାଥଙ୍କ ସ୍ତ୍ରୀ ତିଳୋତ୍ତମା ମଧ ତାଙ୍କର ଶିଷ୍ୟା ହେଲେ । ରଘୁନାଥ ତାଙ୍କ ଭଗ୍ନୀ ଅଞ୍ଜନାଙ୍କୁ ଯଶୋବନ୍ତଙ୍କ ସହିତ ବିବାହ ଦେଲେ ।

ଏହାପରେ ଯଶୋବନ୍ତ ହରିନାମ ଭଜନ କରିବାକୁ ଲାଗିଲେ । ରଘୁନାଥଙ୍କ ଆଦର ଅଭ୍ୟର୍ଥନା ସେ ସ୍ମରଣ କରିଛନ୍ତି, ଯଥା –

"ଅତି ଅଳସୁଆ ବନ୍ତିଆ ଦାସ
କେବଳ ମୋର ହରିନାମ ଆଶ ।
ଦିନ ବଞ୍ଚଇ ରଘୁରାମ ପାଶ
ଭାବେ ଭଣିଲେ ଯଶୋବନ୍ତ ଦାସ ।"

ଅଞ୍ଜନାଙ୍କୁ ଛାଡ଼ିଦେଲେ ଯଶୋବନ୍ତଙ୍କ ଅନ୍ୟ ଏକ ସ୍ତ୍ରୀ ଥିଲେ । ତାଙ୍କ ନାମ ଛାୟା । ଶିଷ୍ୟ ସୁଦର୍ଶନଙ୍କ ମତ ଅନୁଯାୟୀ ଯଶୋବନ୍ତ ଏକଦା ଶ୍ରୀକ୍ଷେତ୍ରରୁ ରଥୀପୁର ଦେଇ ଫେରିଲାବେଳେ ସେଠା ମହନ୍ତ ବଳୀ ଦାସଙ୍କ କନିଷ୍ଠା କନ୍ୟା ଛାୟାଙ୍କ ସଙ୍ଗେ ଭେଟ ହେଲା । ଛାୟା ତାଙ୍କୁ ପତି ରୂପେ ବରଣ କଲେ ଓ ଘରଦ୍ୱାର ତ୍ୟାଗ କରି ତାଙ୍କର ଅନୁସରଣ କଲେ । ଯେତେ ବାରଣ କଲେ ମଧ ସେ ନ ମାନିବାରୁ ମହନ୍ତଙ୍କ ପୁତ୍ରମାନେ ତାଙ୍କୁ ଆଣି ଅଢଙ୍ଗରେ ଛାଡ଼ିଦେଇଗଲେ । ନିଜ ପାଖରେ ଶିଷ୍ୟମାନେ ରହୁଥିବାରୁ ଯଶୋବନ୍ତ ଛାୟାଙ୍କୁ କୁଣ୍ଡୀନଗ୍ରଠାରେ ରଖାଇବାର ବ୍ୟବସ୍ଥା କଲେ ।

## ଅଲୌକିକ କ୍ରିୟାକଳାପ

'ଚଉରାଶୀ ଆଜ୍ଞା'ରେ ଯଶୋବନ୍ତଙ୍କର ଅଲୌକିକ କ୍ରିୟାକଳାପର ବିବରଣୀ ଅଛି । ଏହାର ୭ମ ବୟାଣରେ ଅଛି ଯେ ଯଶୋବନ୍ତଙ୍କର ସ୍ତ୍ରୀ ଗର୍ଭବତୀ ହୋଇଥିଲା ବେଳେ ଆମିଷ ଖାଇବା ନିମନ୍ତେ ଇଚ୍ଛା କଲେ । ଠିକ୍ ସେହି ସମୟରେ ବଡ଼ଦେଉଳରେ ଭୋଗ ହେବା ସମୟରେ ଆମିଷ ଗନ୍ଧ ହେଲା । ସେବକମାନଙ୍କ ମଧ୍ୟରୁ କେହି ଆମିଷଦ୍ରବ୍ୟ ଆଣିଥିବା ସନ୍ଦେହ ହେବାରୁ ରାଜା ପଣ୍ଡା-ପଢ଼ିଆରୀମାନଙ୍କୁ ଏ ପ୍ରକାର ତ୍ରୁଟିପାଇଁ ଦଣ୍ଡଦେବାକୁ ଉଦ୍ୟତ ହେଲେ । ମାତ୍ର ଯଶୋବନ୍ତଙ୍କଠାରୁ ପ୍ରକୃତ ତଥ୍ୟ ଜାଣିଲାପରେ ସେବକମାନଙ୍କୁ ଦଣ୍ଡରୁ ମୁକ୍ତି ଦେଲେ ।

'ସପ୍ତତ୍ରିଂଶ ବୟାଣ'ରେ ଆଉ ଏକ ସୁନ୍ଦର ବିଷୟ ବର୍ଣ୍ଣିତ ଅଛି । ଯଶୋବନ୍ତଙ୍କର ମହିମା ଶୁଣି ରାଜା ପ୍ରତାପରୁଦ୍ରଦେବ ତାଙ୍କୁ ଦେଖିବାପାଇଁ ଦୂତ ହାତେ ଖବର ଦେଲେ । ଯଶୋବନ୍ତ ସେତେବେଳେ ଶିଷ୍ୟ ମେଳରେ ବଡ଼ଦାଣ୍ଡରେ ଯାଉଥିଲେ । ସେ ରାଜାଙ୍କ ଡକରାପାଇ ନରେନ୍ଦ୍ର ପୋଖରୀ ନିକଟକୁ ଗଲେ । ରାଜା ନିଜ ପାତ୍ରମନ୍ତ୍ରୀଙ୍କ ସହିତ ସେଠାରେ ଥିବା ଏକ କଦମ୍ବଗଛ ମୂଳରେ କଥାବାର୍ତ୍ତା କରୁଥାନ୍ତି । ଯଶୋବନ୍ତ ଜଗନ୍ନାଥଙ୍କ ମହିମାରେ ନାନା ବର୍ଣ୍ଣର ଫୁଲମାଳ ଶୂନ୍ୟରୁ ଆଣି ରାଜାଙ୍କୁ ଅର୍ପଣ କଲେ । ଗ୍ରୀଷ୍ମକାଳରେ ଏପରି ସୁବାସିତ ଫୁଲ ଦେଖି ରାଜା ଓ ପାତ୍ରମନ୍ତ୍ରୀମାନେ ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ପ୍ରତାପରୁଦ୍ର ତାଙ୍କୁ ଅଧିକ ପରୀକ୍ଷା କରିବାପାଇଁ ହାତରେ ମାଟି ଧରି କ'ଣ ଅଛି ବୋଲି ପଚାରିଲେ । ସେ ଧରିଥିବା ମାଟି ଆଉ ମାଟି ହୋଇ ରହି ନାହିଁ, ତାହା ସୁନାରେ ପରିଣତ ହୋଇଯାଇଛି ବୋଲି ଯଶୋବନ୍ତ ଉତ୍ତର ଦେଲେ । ରାଜାଙ୍କ ହାତରେ ଥିବା ମାଟି ମଧ୍ୟ ସୁନା ପାଲଟି ଯାଇଥିଲା ।

'୩୯ ବୟାଣ'ରୁ ଜଣାଯାଏ ଯେ ଯଶୋବନ୍ତଙ୍କ ଅପୂର୍ବ ମହିମା ବଳରୁ ଶୁଷ୍କ କଦମ୍ବଗଛ (ଯାହା ମୂଳରେ ପ୍ରତାପରୁଦ୍ରଦେବ ବସିଥିଲେ)ଟି ପତ୍ରପୁଷ୍ପରେ ବିମଣ୍ଡିତ ହୋଇଯାଇଥିଲା । ରାଜା ତାଙ୍କୁ ନିଜ ନବରକୁ ନିମନ୍ତ୍ରଣ କରିନେଇ ଯଥାବିଧ ସମ୍ମାନ ଦେଖାଇଲେ ।

ଶ୍ରୀକ୍ଷେତ୍ରରେ ଥିଲାବେଳେ ପଣ୍ଡା ପଢ଼ିଆରୀମାନେ ଯଶୋବନ୍ତଙ୍କ ହାତରେ ଜଗନ୍ନାଥଙ୍କ ଚାମର ଦେଖିବାକୁ ପାଇ ଆଶ୍ଚର୍ଯ୍ୟ ହୋଇପଡ଼ିଲେ । କେଉଁଠାରୁ ସେ ଚାମର ଆଣିଛନ୍ତି ବୋଲି ପଚାରନ୍ତେ, ସ୍ୱୟଂ ଜଗନ୍ନାଥ ତାଙ୍କୁ ଚାମର ପ୍ରଦାନ କରିଛନ୍ତି ବୋଲି ସେ ଉତ୍ତର ଦେଲେ । ପଣ୍ଡାମାନେ ଏହାପରେ ଯଶୋବନ୍ତଙ୍କୁ ପରୀକ୍ଷା କରିବାପାଇଁ ସ୍ଥିର କଲେ । ଗୋଟିଏ ହାଣ୍ଡିରେ କିଛି

ଝିଙ୍କର ଗୋଡ଼ି ପୂରାଇ ତା' ଉପରେ ଢାଙ୍କୁଣି ଦେଇ ଯଶୋବନ୍ତଙ୍କୁ ହାଣ୍ଡି ମଧ୍ୟରେ କ'ଣ ଅଛି ବୋଲି ପଚାରିଲେ । ହାଣ୍ଡିରେ କ୍ଷୀର ଥିବା କଥା ଯଶୋବନ୍ତ ଉତ୍ତର ଦେଲେ । ସର୍ବସାଧାରଣଙ୍କ ସମ୍ମୁଖରେ ଢାଙ୍କୁଣି କଢ଼ାହେଲା । ସତକୁ ସତ ସେଥିରେ କ୍ଷୀର ଥିବା ଦେଖି ସମସ୍ତେ ଯଶୋବନ୍ତଙ୍କ ମହିମା କୀର୍ତ୍ତନ କରିବାକୁ ଲାଗିଲେ ।

## ଚୈତନ୍ୟଙ୍କ ସହ ଭେଟ

ଯଶୋବନ୍ତ ପୁରୀକୁ ଯାଇ ଶ୍ରୀଚୈତନ୍ୟଙ୍କୁ ଭେଟି ତାଙ୍କର ଶିଷ୍ୟତ୍ୱ ଗ୍ରହଣ କଲେ । ଯଶୋବନ୍ତଙ୍କର ଚୈତନ୍ୟଙ୍କ ସହିତ ସମ୍ପର୍କ 'ଚଉରାଶୀ ଆଜ୍ଞା'ରେ ଲିପିବଦ୍ଧ ହୋଇଛି, ଯଥା –

''କହନ୍ତି ଚୈତନ୍ୟ ଗୋସାଇଁ
ପଞ୍ଚସଖାଙ୍କୁ ପାଶେ ରାଇ
ବୋଇଲେ ଜଗନ୍ନାଥ ଆସ
ପୁଣି ବୋଇଲେ ବଳରାମ
ଆସ ମୋ ନିକଟେ ବହନ
ଯଶୋବନ୍ତ ଦାସ ତୁ ଆସ
ଅଚ୍ୟୁତାନନ୍ଦ ଶିଶୁ ଦାସ
ପ୍ରଭୁଙ୍କ ଶ୍ରୀମୁଖ ବଦନ ।
ରାଇ ହେ ଗଲୁ ସନ୍ନିଧାନ ।'

ଏହାପରେ ପଞ୍ଚସଖାଙ୍କ ମଧ୍ୟରୁ ଜଣେ ଜଣେ ଚୈତନ୍ୟଙ୍କୁ ତାଙ୍କର ଜନ୍ମ ବିବରଣୀ ଦେଲେ । ବଳରାମଙ୍କ ପରେ ଯଶୋବନ୍ତ ନିଜର ଜନ୍ମ ବିବରଣୀ ଦେଲେ । ଶୂନ୍ୟପୁରୁଷଙ୍କ ଦୟାରୁ ଧାନ ଚୋରାଇ ନେଉଥିବାବେଳେ ସେ ରାମ ନାମ ଶୁଣିଲେ ବୋଲି କହିଲେ । ତାଙ୍କର ଭଜନ ମହାଶୂନ୍ୟ ଭଜନ ଓ ମହାଶୂନ୍ୟ ହେଉଛନ୍ତି ଜଗନ୍ନାଥ ବୋଲି ଜଣାଇଲେ ।

''କ୍ଷତ୍ର ଧାମ–ଶ୍ରୀପୁରୁଷୋତ୍ତମ
ଭଜନ ଜଗନ୍ନାଥ ନାମ ।

× × ×

ଇଷ୍ଟ ଜଗନ୍ନାଥ ବୋଲାଇ ସେବା ଦାରୁବ୍ରହ୍ମେ ଅଟଇ ।''

## ଚୈତନ୍ୟଙ୍କ ପରୀକ୍ଷା

ଏହାପରେ ଶ୍ରୀଚୈତନ୍ୟ ପଞ୍ଚସଖାଙ୍କୁ ସେମାନଙ୍କର ମହିମା ଦେଖାଇବାକୁ କହିଲେ । ଜଗନ୍ନାଥ ଦାସ ସଙ୍ଗେ ସଙ୍ଗେ ମଞ୍ଜିକୁ ଲଗାଇ ଚାରାଗଛରେ ପରିଣତ

କଲେ । ବଳରାମ ଦାସ ମଧ୍ୟ ସେଥିରେ ତାଳପତ୍ର ଖୁନ୍ଦି ଦେଲେ । ଯଶୋବନ୍ତଙ୍କ ଅଲୌକିକ ଶକ୍ତି ବଳରେ ତାହା ଫଳ ଭାରରେ ମଣ୍ଡିତ ହୋଇଗଲା । ଅଚ୍ୟୁତଙ୍କ ଶକ୍ତି ବଳରେ ଫଳଗୁଡ଼ିକ ପାଚିଗଲା । ଶିଶୁଅନନ୍ତଙ୍କ ଆଜ୍ଞାରେ ପଣସଗଛଟି ତଳକୁ ନଇଁଗଲା ଓ ସେଥିରୁ ଫଳ ତୋଳା ହେଲା । ସମସ୍ତେ ସେହି ଫଳକୁ ବାଣ୍ଟି ଖାଇଲେ । ପଣସକୁ ଓଡ଼ିଶୀ ବୈଷ୍ଣବଧର୍ମର ପ୍ରତୀକଭାବେ ଆଲୋଚକ ବଂଶୀଧର ମହାନ୍ତି ଗ୍ରହଣ କରିଛନ୍ତି ।

କଥିତଅଛି ଯେ ଶ୍ରୀଚୈତନ୍ୟ ଯଶୋବନ୍ତଙ୍କ ସମେତ ସଖାମାନଙ୍କ ସହ ଶ୍ରୀମନ୍ଦିରକୁ ଯାଇଥିଲେ ଓ କଳ୍ପବଟ ପାଖରେ ମହାରାଜାଙ୍କ ସହିତ ମିଳିତ ହୋଇ ଜଗନ୍ନାଥଙ୍କୁ ଦର୍ଶନ କଲେ । '୪୩ ବୟାଣ'ରୁ ଜଣାଯାଏ ଯେ ପଞ୍ଚସଖା ପ୍ରଗାଢ଼ ଭକ୍ତି ବଳରେ ସ୍ୱୟଂ ଜଗନ୍ନାଥଙ୍କ ହସ୍ତରୁ ବହୁ ପଦାର୍ଥ ପାଇଲେ । ଯଶୋବନ୍ତ ଏକ ଦକ୍ଷିଣାବର୍ତ୍ତ ଶଙ୍ଖ ପାଇଥିବାର ଜଣାଯାଏ ।

'ଚଉରାଶୀ ଆଜ୍ଞା'ରେ ଜଗନ୍ନାଥଙ୍କୁ ଚନ୍ଦନଲାଗି ଉପାଖ୍ୟାନଟି ବର୍ଣ୍ଣିତ ଅଛି । ମହାରାଜା ପ୍ରତାପରୁଦ୍ରଦେବ ଯଶୋବନ୍ତଙ୍କୁ ଜଗନ୍ନାଥ ବିଗ୍ରହରେ ଲେପନପାଇଁ ସୁବାସିତ ଚନ୍ଦନକାଠ ଦେଇଥିଲେ । ମାତ୍ର ଯଶୋବନ୍ତ ଚନ୍ଦନ ଘୋରି ଘର କାନ୍ଥରେ ଲେପି ଦେଉଥିଲେ । ଏକଥା ଦୂତଠାରୁ ରାଜା ଖବର ପାଇଲେ । ଯଶୋବନ୍ତଙ୍କୁ ଏହା ପଚାରନ୍ତେ, ଯଶୋବନ୍ତ ତାହା ଯଥାର୍ଥରେ ଜଗନ୍ନାଥଙ୍କୁ ଦେଇଛନ୍ତି ବୋଲି ଉତ୍ତର ଦେଲେ । ରାଜା ମଧ୍ୟ ଦାରୁବିଗ୍ରହମାନଙ୍କରେ ଚନ୍ଦନ ଲେପନ ହୋଇଥିବାର ଦେଖି ଯଶୋବନ୍ତଙ୍କ ମହିମା ଉପଲବ୍‌ଧି କଲେ ।

ଏହାର ପରବର୍ତ୍ତୀ '୪୫ ବୟାଣ'ରେ ମହାରାଜାଙ୍କ ସ୍ୱଶରୀରରେ ବ୍ରହ୍ମ ଦେଖିବା ବିଷୟର ଉଲ୍ଲେଖ ଅଛି । ଏହା ଯଶୋବନ୍ତଙ୍କ ଆଜ୍ଞାରେ ହୋଇଥିଲା ।

ଆଉ ଏକ ବୟାଣରେ ଅଛି ଯେ ରାଣୀ ଯଶୋବନ୍ତଙ୍କୁ ଦେଖା କରିବାକୁ ଇଚ୍ଛା କଲେ । ରାଣୀଙ୍କର ଇଚ୍ଛା କ୍ରମେ ଯଶୋବନ୍ତ ରାଜଅନ୍ତଃପୁରରେ ପ୍ରବେଶ କରି ରାଣୀଙ୍କୁ ସାକ୍ଷାତ୍ କଲେ । ମାତ୍ର ମାୟାବଳରେ କେହି ତାଙ୍କୁ ଦେଖିପାରି ନ ଥିଲେ । ମହାରାଜା ପ୍ରତାପରୁଦ୍ରଦେବଙ୍କ ପୁତ୍ରଙ୍କୁ କାଳସର୍ପ ଦଂଶନ କରିବା ଓ ଯଶୋବନ୍ତଙ୍କ ମହିମାରୁ ଜୀବନ ପାଇବା ଆଉ ଏକ ବୟାଣରୁ ଜଣାଯାଏ ।

ପ୍ରଭୁ ଜଗନ୍ନାଥ ଯଶୋବନ୍ତଙ୍କୁ କୁଣ୍ଡଳଦେବା, ଅନ୍ଧକୁ ଚକ୍ଷୁଦାନଦେବା ପ୍ରଭୃତି ପଚାଶ ଓ ଏକାବନ ବୟାଣରୁ ଜଣାଯାଏ ।

ଯଶୋବନ୍ତ ପୁରୀରୁ ଗୋପୀନାଥ ଦର୍ଶନପାଇଁ ସତ୍ୟବାଦୀ ଆସିଥିଲେ । ସେଠାରେ ରାତ୍ରିରେ ଶୟନ କରିଥିବା ସମୟରେ ସେବକମାନଙ୍କ ମଧ୍ୟରୁ କେହି

ଜାନର କୁଣ୍ଡଳ ଚୋରି କରିନେଲା । ସେହି କୁଣ୍ଡଳ ସ୍ୱୟଂ ଜଗନ୍ନାଥ ଯଶୋବନ୍ତଙ୍କୁ ଦେଇଥିଲେ । କୁଣ୍ଡଳ ନ ମିଳିବାରୁ ନେଇଥିବା ବ୍ରାହ୍ମଣଙ୍କୁ ଯଶୋବନ୍ତ ଅଭିଶାପ ଦେଲେ । ସଙ୍ଗେ ସଙ୍ଗେ ସେମାନେ ମୂକ ଓ ବଧିର ହୋଇଗଲେ । ପରେ କୁଣ୍ଡଳ ଯଶୋବନ୍ତଙ୍କୁ ଦେଇ କ୍ଷମାଭିକ୍ଷା କଲେ । '୫୪ ବୟାଣ'ରେ ଜଣେ ହାତଗୋଡ଼ ନ ଥିବା ବ୍ୟକ୍ତି ଯଶୋବନ୍ତଙ୍କ ଆଜ୍ଞାରେ ପୁଣି ଦିବ୍ୟ ଦେହ ପାଇବା କଥା ଉଲ୍ଲେଖ ଅଛି, ଯଥା -

''ହସ୍ତପଦ ଆଦି କରିଣ । ଦଉଁଲୁ ଆଜ୍ଞା ପରିମାଣ ।
ପ୍ରଭୁ କରୁଣା ହେଲା ତୋତେ । ନିଜ ଦେହ ମାଥ ନିମନ୍ତେ ।''

'ଚଉରାଶୀ ଆଜ୍ଞା' ଅନୁଯାୟୀ ଯବନଭକ୍ତ ସାଲବେଗ ପଞ୍ଚସଖାଙ୍କ ସାମସମୟିକ ଥିଲେ । କେବଳ ସେତିକି ନୁହେଁ, ସାଲବେଗ ଯଶୋବନ୍ତଙ୍କ ମହିମା ଶୁଣି ତାଙ୍କୁ ପରୀକ୍ଷା କରିବା ନିମନ୍ତେ ଅଡଙ୍ଗରେ ପହଞ୍ଚିଲେ । ଯଶୋବନ୍ତ ଶିଷ୍ୟମାନଙ୍କ ସହ କଦମ୍ବଗଛ ମୂଳରେ ବସିଥିବାର ଦେଖିଲେ । ସାଲବେଗଙ୍କ ମହିମାରୁ କଦମ୍ବଗଛ ଫୁଲରେ ମଣ୍ଡି ହୋଇଗଲା । ସେହି ଫୁଲର ଅପୂର୍ବ ସୁବାସରେ ଚାରିଆଡ଼ ମହକି ଉଠିଲା । ଯଶୋବନ୍ତ ମନ ମଧ୍ୟରେ ଜଗନ୍ନାଥଙ୍କୁ ସୁମରଣା କଲେ । ଶୂନ୍ୟ ବାଣୀ ହେଲା –

''ସାଲବେଗ ଯେ ମୋର ଦାସ । ଗୁପତେ ଅଛି ତୋର ପାଶ ।।
ତା'ର ମହିମା କିମନ୍ତରେ । ପୁଷ୍ପ ଫୁଟି ରହି ବୃକ୍ଷରେ ।''

ଯଶୋବନ୍ତଙ୍କୁ ମଧ୍ୟ ନିଜର ମହିମା ଦେଖାବାକୁ ଶୂନ୍ୟାଦେଶ ହେଲା

''ତୁ ଏବେ ବୃକ୍ଷେ ଆଜ୍ଞା କର । ଫୁଲ ଝଡ଼ିପଡୁ ମହୀର ।''
ତେବେ ସେ ଲାଜ ପାଇଯିବ । ଗୁପତେ ତୋତେ ନ କହିବ ।''

କଦମ୍ବ ଫୁଲଗୁଡ଼ିକ ତଳକୁ ଝଡ଼ି ପଡ଼ିଲେ।ସାଲବେଗ ପୁଣି ଆଜ୍ଞା ଦେଲେ ।''

ବୃକ୍ଷର ଡାଳଗୁଡ଼ିକ ଭାଙ୍ଗିପଡ଼ିଲା । ଯଶୋବନ୍ତଙ୍କ ଆଜ୍ଞାରେ କିନ୍ତୁ ଡାଳଗୁଡ଼ିକ ତଳେ ନ ପଡ଼ି ଶୂନ୍ୟରେ ରହିଗଲା । ସାଲବେଗ ପରାସ୍ତ ହେଲେ ଓ ଶେଷରେ ଯଶୋବନ୍ତଙ୍କୁ ମହାପୁରୁଷଭାବେ ସ୍ୱୀକାର କଲେ ।

ଯଶୋବନ୍ତ କୁଜଙ୍ଗ ଯିବା ରାସ୍ତାରେ ହରିହରପୁର ନିକଟବର୍ତ୍ତୀ ବାରଙ୍ଗଙ୍କ ଆଶ୍ରମରେ ଅବସ୍ଥାନ କରିଥିଲେ । ସେଠାରେ ମଧ୍ୟ ଅଲୌକିକ କଥା ଘଟିଲା । ସେହି ଆଶ୍ରମରେ ଖାଲି ପଟାଳିରେ ଅଦ୍ଭୁତ ଭାବରେ ନେଉଟିଆ ଶାଗ ଉଠିଲା । ନିମ୍ବ ଗଛରେ ମଧ୍ୟ ନିମ୍ବ ଫୁଲ ଫୁଟିଲା । ଏହା ତାଙ୍କ ମହିମା ବଳରୁ ହୋଇଥିଲା ବୋଲି ବିଶ୍ୱାସ କରାଯାଏ ।

'ଚଉରାଶୀ ଆଜ୍ଞା'ର ୭୨ ବୟାଣରେ ଅଛି ଯେ ଯଶୋବନ୍ତ ଓ ବାରଙ୍ଗ ସେହି ଆଶ୍ରମରେ କିଛିଦିନ ରହିଥିଲେ । ବାରଙ୍ଗ ଦିନେ ତାଙ୍କର ମହିମା ଦେଖାଇବାକୁ ବସିଲେ । ସେ ବଢ଼ିଲା ନଦୀରେ ମୃଗଛାଲ ପକାଇ ପାରିହେବାକୁ ଗଲାବେଳକୁ ଯଶୋବନ୍ତଙ୍କ ମହିମାରେ ନଈର ପାଣି ଶୁଖିଗଲା । ନଈ ଚଢ଼ାରେ ବସିରହିଲେ ବାରଙ୍ଗ । ଫଳରେ ସେ ପରାସ୍ତ ହେଲେ । କୁଜଙ୍ଗରେ ମଧ୍ୟ ଯଶୋବନ୍ତ ନିଜର ଅଲୌକିକ ମହିମା ଦେଖାଇବା କଥା ୭୪ ବୟାଣରୁ ଜଣାଯାଏ ।

ଏହିସବୁ ଅଲୌକିକ ଘଟଣାରୁ ଯଶୋବନ୍ତଙ୍କ ଯୋଗର ମହତ୍ତ୍ୱ ପ୍ରକଟିତ ହୁଏ ।

## ରଚନା

ଯଶୋବନ୍ତଙ୍କ ରଚନାବଳୀ ମଧ୍ୟରେ 'ପ୍ରେମଭକ୍ତି ବ୍ରହ୍ମଗୀତା', 'ଚଉରାଶୀ ଆଜ୍ଞା', 'ଶିବ ସ୍ୱରୋଦୟ', 'ମନ୍ତ୍ରବୋଲି', 'ଗୀତ ଗୋବିନ୍ଦଚନ୍ଦ୍ର', ବିଭିନ୍ନ ମାଳିକା ଓ ଭଜନ ଉଲ୍ଲେଖଯୋଗ୍ୟ ।

## ପ୍ରେମଭକ୍ତି ବ୍ରହ୍ମଗୀତା

ଏହା ପ୍ରାଚୀ ସମିତିଦ୍ୱାରା ପ୍ରକାଶିତ ହୋଇଛି । ଏହା ରସ ସାହିତ୍ୟ ନୁହେଁ । ପଞ୍ଚସଖା ଜ୍ଞାନମିଶ୍ରା ଭକ୍ତି ମାର୍ଗର ଏକ ତାତ୍ତ୍ୱିକ ବିଶ୍ଳେଷଣ ।

ଭକ୍ତି ଦୁଇ ପ୍ରକାର । ଗୋଟିଏ ହେଲା ଜ୍ଞାନ ଭକ୍ତି ଓ ଅନ୍ୟଟି ପ୍ରେମ ଭକ୍ତି । ଏଥିରେ କବି ଜ୍ଞାନମିଶ୍ରା ଭକ୍ତିର ବିଷୟ କହିଲେ ମଧ୍ୟ ତା'ର ଚରମ ପରିଣତି ପ୍ରେମ ଭକ୍ତି ବୋଲି କହିଛନ୍ତି ।

ଗ୍ରନ୍ଥର ତୃତୀୟ ଅଧ୍ୟାୟରେ ଭଗବଦ୍ ପ୍ରୀତି ପ୍ରାପ୍ତିର ଉପାୟ ବା ପନ୍ଥା ନିର୍ଣ୍ଣୟ କରାଯାଇଛି –

"ଯେ ତାକୁ ପ୍ରେମ ଭକ୍ତି କରେ । ଶରୀର ବହି ଏ ସଂସାରେ
ପ୍ରେମ ଭକତି ଯେ କରଇ । ସେ ପ୍ରାଣୀ ନିତ୍ୟରେ ବସଇ।
ଅନ୍ତେ ପଶଇ ରାସ ଗତେ । ରାଧିକା ଶୁଣ ଏକ ଚିତ୍ତେ ।"

ଭକ୍ତ ସାଧକମାନେ ବ୍ରହ୍ମଜ୍ଞାନ ମଧ୍ୟରେ ପ୍ରେମଭକ୍ତି ଉପଲବ୍ଧି କରିଥାନ୍ତି । ଏହି ପ୍ରେମଭକ୍ତି ସାଧନା ପୂରାପୂରି ଅନ୍ତର୍ମୁଖୀ । ଏଥିରେ ଶ୍ରବଣ, ଅର୍ଚ୍ଚନ, କୀର୍ତ୍ତନ ପ୍ରଭୃତିର ସ୍ଥାନ ନାହିଁ । ରାଧାକୃଷ୍ଣଙ୍କର ପ୍ରେମଭକ୍ତି ଆସ୍ୱାଦନ କରିବାହିଁ ହେଉଛି ପ୍ରେମଭକ୍ତି । ଏହା ବଳରେ ନିତ୍ୟରେ ବସିବା ସୁନିଶ୍ଚିତ ।

## ଚଉରାଶୀଆଜ୍ଞା

ଏହା ଯଶୋବନ୍ତଙ୍କର ଶିଷ୍ୟ ସୁଦର୍ଶନ ଦାସଙ୍କଦ୍ବାରା ରଚିତ । ଏହା ଏକ ବିରାଟ ଗ୍ରନ୍ଥ ଓ ଏଥିରେ ୮୪ ବୟାଣ ବା ଅଧ୍ୟାୟ ଅଛି । ଏଥିରେ ସିଦ୍ଧପୁରୁଷ ଯଶୋବନ୍ତଙ୍କର ଅଲୌକିକ ମହିମା ବର୍ଣ୍ଣିତ ଅଛି । ଏଥିରେ ମଧ୍ୟ ପ୍ରତାପରୁଦ୍ରଦେବ ଓ ଶ୍ରୀଚୈତନ୍ୟଙ୍କ ସମ୍ପର୍କରେ ବହୁ ଐତିହାସିକ ତଥ୍ୟ ରହିଛି । ଏହା ଓଡ଼ିଶାର ଶ୍ରେଷ୍ଠ ଚରିତ ଗ୍ରନ୍ଥମାନଙ୍କ ମଧ୍ୟରୁ ଅନ୍ୟତମ ବୋଲି ଗଣ୍ୟ ହୁଏ ।

## ଶିବ ସ୍ୱରୋଦୟ

ସଂସ୍କୃତ ସ୍ୱରୋଦୟଲେଶ ମୂଳ ବିଷୟକୁ ଅବଲମ୍ବନ କରି କବି ଏହାକୁ ରଚନା କରିଛନ୍ତି । ଯୋଗସାଧନ ପ୍ରଣାଳୀ ଏଥିରେ ଆଲୋଚନା କରାଯାଇଛି । ସ୍ୱରର ପ୍ରଶଂସା, ନୀତି, ଜ୍ଞାନ, ପ୍ରାଣବାୟୁ ଓ ନାଡ଼ି ଚାଳନର ଫଳାଫଳ, ଇଅଁଳା ପିଅଁଳା ପ୍ରଭୃତି ନାଡ଼ିର ଫଳାଫଳ, ତତ୍ତ୍ୱ ନିରୂପଣ ପ୍ରଭୃତି ଏଥିରେ ବର୍ଣ୍ଣିତ ଅଛି । ବିଷୟବସ୍ତୁ ମୌଳିକ ନ ହେଲେ ମଧ୍ୟ ରଚନାଭଙ୍ଗୀରେ କବି ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଛନ୍ତି ।

## ମନ୍ତ୍ରବୋଲି

ଏଥିରେ ଗୁରୁ ଶିଷ୍ୟଙ୍କ କଥୋପକଥନ ଛଳରେ ବ୍ରହ୍ମଜ୍ଞାନର ବର୍ଣ୍ଣନା କରାଯାଇଛି ।

"ବ୍ରହ୍ମଜ୍ଞାନ ଭୂମି କେମନ୍ତ ହେଉ
ଉପଦେଶ ଦୀକ୍ଷା କହ ଗୋସାଇଁ ।"

ବ୍ରହ୍ମଜ୍ଞାନ ହେଉଛି ନାମବ୍ରହ୍ମ ଜ୍ଞାନ । ତିନି ନାମ – ହରେ, ରାମ ଓ କୃଷ୍ଣ – ଏ ତିନି ତତ୍ତ୍ୱ ଏଥିରେ ବର୍ଣ୍ଣିତ ହୋଇଅଛି । ଭାରତବର୍ଷର ବୈଷ୍ଣବ ଧର୍ମର ଚାରି ପ୍ରଧାନ ବୈଷ୍ଣବାଚାର୍ଯ୍ୟ, ପଞ୍ଚବେଦ ଓ ପଞ୍ଚତତ୍ତ୍ୱ ବିଷୟ ମଧ୍ୟ ଏଥିରେ ବର୍ଣ୍ଣନା କରାଯାଇଛି । ଶେଷରେ କବି ନିଜର ପରିଚୟ ଦେଇଛନ୍ତି –

"ଯଶୋବନ୍ତ ଦାସ ଗୀତରେ ଗାଇ
ନ ଦେଖି ଦେଖିଲା ବନ୍ତିଆ ବାଇ ।"

## ଗୀତ ଗୋବିନ୍ଦଚନ୍ଦ୍ର

ଐତିହାସିକ ପୃଷ୍ଠଭୂମି ଉପରେ ଏହା ରଚିତ । ଯଶୋବନ୍ତ ଓ ଅଞ୍ଜନାଙ୍କ ଗର୍ଭଜାତ ସନ୍ତାନମାନେ ଗୋଟିଏ ପରେ ଗୋଟିଏ ମୃତ୍ୟୁ ବରଣ କଲେ । ଶେଷରେ ସେ ଏକ ସନ୍ତାନକୁ ଯୋଗୀ କରିବାକୁ ପ୍ରତିଜ୍ଞା କରି ତାକୁ ଘରୁ ନିର୍ବାସିତ କଲେ । ତାହା ଉପରେ ସେ ରଚନା କଲେ 'ଗୀତ ଗୋବିନ୍ଦଚନ୍ଦ୍ର' ।

ଉତ୍କଳର ଜଣେ ରାଜା ଥିଲେ । ତାଙ୍କ ନାମ ଲାଭଚନ୍ଦ୍ର । ରାଣୀଙ୍କ ନାମ ଥିଲା [illegible] ସୁନ୍ଦରୀ । ତାଙ୍କର କନ୍ୟା ମୁକ୍ତାଦେଈ ବଙ୍ଗଦେଶର ରାଜାଙ୍କୁ ବିବାହ କଲେ । ତାଙ୍କର ଗୋଟିକ ପରେ ଗୋଟିଏ ସନ୍ତାନର ମୃତ୍ୟୁ ହେଲା । ରାଣୀ ଲାଞ୍ଛିତା ଓ ଅପମାନିତା ହେଲେ । ତାଙ୍କର ଗୋଟିଏ ପୁତ୍ର ଜାତ ହେଲା । ସେ ହେଉଛନ୍ତି ଗୋବିନ୍ଦଚନ୍ଦ୍ର । ଗୋବିନ୍ଦଚନ୍ଦ୍ର ମାତାଙ୍କ ଉପଦେଶ ଅନୁଯାୟୀ ମହାଯୋଗୀ ହାଡିପାଙ୍କ ଶିଷ୍ୟତ୍ୱ ଗ୍ରହଣ କଲେ । ଗୁରୁ ଦେଇଥିବା ମନଯାନ କଠଉ ସାହାଯ୍ୟରେ ଗୋବିନ୍ଦଚନ୍ଦ୍ର ସପ୍ତଦ୍ୱୀପ, ସ୍ୱର୍ଗ, ମର୍ତ୍ତ୍ୟ ଭ୍ରମଣ କରିଥିଲେ । ଆକାଶରେ ଗୋରେଖନାଥ ଓ ନନ୍ତିପାଙ୍କ ଶକ୍ତି ପରୀକ୍ଷା ଦେଖିଥିଲେ । ୨୪ ବର୍ଷ କାଳ ସେ ସଂଯମ ଆଚରଣ କରିଥିଲେ । ବହୁ ଦେଶ ଭ୍ରମଣ କଲା ପରେ ମାତାଙ୍କୁ ଦର୍ଶନ କଲେ । କପିଳାସ ଯାଇ ଗୁରୁଙ୍କୁ ମଧ୍ୟ ଦର୍ଶନ କଲେ ।

'ଗୀତ ଗୋବିନ୍ଦଚନ୍ଦ୍ର' ଓଡ଼ିଆ ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରେ । ବଙ୍ଗଳାରେ ମଧ୍ୟ ଗୀତ ଗୋବିନ୍ଦଚନ୍ଦ୍ର ଭାଷାନ୍ତରିତ ହୋଇ ଲୋକପ୍ରିୟତା ଅର୍ଜନ କଲା । ବଙ୍ଗଳା ସାହିତ୍ୟ ଇତିହାସର ଲେଖକ ଦୀନେଶ ଚନ୍ଦ୍ର ସେନ ଓଡ଼ିଆ 'ଗୀତ ଗୋବିନ୍ଦଚନ୍ଦ୍ର' ଗ୍ରନ୍ଥର ଉଚ୍ଚ ପ୍ରଶଂସା କରିଛନ୍ତି । ସେ ଲେଖିଛନ୍ତି –

''ଗୋବିନ୍ଦଚନ୍ଦ୍ର ସନ୍ନ୍ୟାସୀ ହେବା ସମୟରେ ମା' ଓ ପୁଅଙ୍କ କଥୋପକଥନ ବିଶେଷଭାବରେ ହୃଦୟଗ୍ରାହୀ ହୋଇଛି । ଗୋବିନ୍ଦଚନ୍ଦ୍ର ଦର୍ପଣ ସମ୍ମୁଖରେ ଛିଡ଼ା ହୋଇ ନିଜ ଦେହର ପ୍ରତିଚ୍ଛବି ଦେଖି ଆନନ୍ଦିତ ହେଲା ବେଳେ ମା' ମୁକ୍ତା ଦେଈ ଶରୀରର ନଶ୍ୱରତା ଓ ସର୍ବଗ୍ରାସୀ କାଳର ପ୍ରଭାବ ସମ୍ବନ୍ଧରେ ଯେଉଁ ସବୁ ବର୍ଣ୍ଣନା କରିଛନ୍ତି, ତାହା ବିଶେଷ ରମଣୀୟ ହୋଇଉଠିଛି ।''

ବଙ୍ଗଳାରେ ଭାଷାନ୍ତରିତ ହୋଇଥିବା ଗ୍ରନ୍ଥର ନାମ 'ଗୋବିନ୍ଦଚନ୍ଦ୍ରର ଗୀତ' ।

ଯଶୋବନ୍ତଙ୍କ ରଚିତ 'ଗୀତଗୋବିନ୍ଦ' ଓଡ଼ିଶାର ପୁରପଲ୍ଲୀରେ ଆଦୃତ ହୋଇଥିଲା । ପରବର୍ତ୍ତୀକାଳରେ ଏହି ବିଷୟକୁ ଅବଲମ୍ବନ କରି ଦୈବଜ୍ଞ ବିପ୍ର ନାମକ ଜଣେ କବି ଟୀକା ଗୋବିନ୍ଦଚନ୍ଦ୍ର ରଚନା କଲେ । ଏହାର ଭାଷା ଅତି ସରଳ ଓ ପ୍ରାଣସ୍ପର୍ଶୀ । ଯୋଗୀମାନେ ଲାଉତୁମ୍ବାଧରି ଗୋବିନ୍ଦଚନ୍ଦ୍ରଙ୍କ ଗୀତ ଗାଇ ଗାଇ ଭିକ୍ଷା ମାଗିଥାନ୍ତି, ଯଥା –

''ଭଜୁ କିନା ରାମ ନାମରେ ରାଜନ,
ବୋଲୁ କିନା ରାମ ନାମ
ଭଜି ନ ପାରିଲେ କୁଳ ଚନ୍ଦ୍ରମାରେ
ଟାଣିନେବ କାଳ ଯମ ।

ସେହି କାଳଯମ ବଡ଼ ଦାରୁଣରେ
ନ ଜାଣଇ ଦୁଃଖ ସୁଖ ।
ବାଛିନେବ କଞ୍ଚା ରଖିବ ପାଚିଲା
ଦେବଟି ଦାରୁଣ ଦୁଃଖ ।''

ଅଧ୍ୟାପକ ଡକ୍ଟର ବଂଶୀଧର ମହାନ୍ତି ତାଙ୍କ ରଚିତ 'ଓଡ଼ିଆ ସାହିତ୍ୟ ଇତିହାସ'ରେ ଲେଖିଛନ୍ତି ଯେ ଗୋବିନ୍ଦଚନ୍ଦ୍ର ଉପାଖ୍ୟାନଟି କେବଳ ଓଡ଼ିଶା ବା ବଙ୍ଗଳାରେ ନୁହେଁ; ଅନ୍ୟାନ୍ୟ ରାଜ୍ୟ, ଯଥା, ବିହାର, ଗୁଜୁରାଟ, ମହାରାଷ୍ଟ୍ର, ପଞ୍ଜାବ, ସିନ୍ଧୁ ଓ ଉତ୍ତର-ପଶ୍ଚିମ ସୀମାନ୍ତ ପ୍ରଦେଶ ପ୍ରଭୃତି ରାଜ୍ୟମାନଙ୍କର ସାହିତ୍ୟରେ ଲୋକଗୀତ ରୂପେ ସ୍ଥାନ ପାଇଛି ।

ଅଳୀକତା ଓ ସଂସାରର ନଶ୍ୱରତା ପ୍ରଚାରପାଇଁ ଏହାଠାରୁ ବଳି ହୃଦୟସ୍ପର୍ଶୀ ରଚନା ଓଡ଼ିଆ ସାହିତ୍ୟରେ ନାହିଁ କହିଲେ ଚଳେ ।

## ରଚନାବଳୀରେ ଶ୍ରୀଜଗନ୍ନାଥ

ଯଶୋବନ୍ତ ବୈଷ୍ଣବ ମତାବଲମ୍ୱୀ ହେଲେ ମଧ୍ୟ ଗୌଡ଼ୀୟ ଭକ୍ତମାନଙ୍କ ପରି ବୃନ୍ଦାବନକୁ ନିତ୍ୟ ଧାମ ରୂପେ ସ୍ୱୀକାର କରି ନାହାନ୍ତି । ଅନ୍ୟ ପଞ୍ଚସଖାମାନଙ୍କ ଭଳି ସେ ପବିତ୍ର ନୀଳାଚଳ ଧାମକୁ ନିତ୍ୟ ରାସସ୍ଥଳୀ ରୂପେ ଗ୍ରହଣ କରିଛନ୍ତି । ତେଣୁ ତାଙ୍କ ରଚନାବଳୀରେ ଜଗନ୍ନାଥଙ୍କ ମହିମା କୀର୍ତ୍ତିତ ହୋଇଅଛି । ଯେଉଁ ଗ୍ରନ୍ଥମାନଙ୍କରେ ଜଗନ୍ନାଥଙ୍କ ବିଷୟ ଉଲ୍ଲେଖ ଅଛି ସେଗୁଡ଼ିକ ହେଲା 'ପ୍ରେମଭକ୍ତି ବ୍ରହ୍ମଗୀତା' ଓ 'ଶିବ ସ୍ୱରୋଦୟ' ।

ପ୍ରେମଭକ୍ତି ବ୍ରହ୍ମଗୀତାରେ ଜଗନ୍ନାଥଙ୍କ ବନ୍ଦନା ଦେଖିବାକୁ ମିଳେ –

''ନମସ୍ତେ ପ୍ରଭୁ ଜଗନ୍ନାଥ ।
ଯେ ପ୍ରଭୁ ଶଙ୍ଖ ଚକ୍ର ହସ୍ତ ।
ପ୍ରଳୟ ଜଳେ ଶଙ୍ଖାମାରି ।
ଯେ ଶଙ୍ଖ ଚକ୍ର ଭୁଜେ ଧରି ।''

ଜଗନ୍ନାଥଙ୍କ ଆସ୍ଥାନ ନୀଳାଚଳ । ସେଠି ସକଳ ତୀର୍ଥଲାଭ ମିଳିପାରିବ ବୋଲି ସେ କହିଛନ୍ତି –

''ଦେଖ ଯେ ନିତ୍ୟ ନୀଳାଚଳ । ସକଳ ତୀର୍ଥଙ୍କର ଆଳ ।
ଗୋପ ମଥୁରା ବୃନ୍ଦାବନ । ଦ୍ୱାରିକା ଆଦି ଯେତେ ସ୍ଥାନ ।
ସକଳ ଯେହି ସ୍ଥାନ ପାଇ । ଆବର କାଶୀ ମଧ୍ୟ ହୋଇ ।
କୋଟି ତୀର୍ଥ ଏକ୍ଷେତ୍ରରେ । ମହିମା କହିଲେ ନ ସରେ ।''

'ଶିବ ସ୍ୱରୋଦୟ' ଗ୍ରନ୍ଥର ମୂଳ ଓ ଶେଷରେ ଜଗନ୍ନାଥଙ୍କ ମହିମା ଗାନ କରାଯାଇଛି –

''ଜୟ ଜୟ ଜଗନ୍ନାଥ ଜଗତଧାରଣ
ଜୟ ବଳଭଦ୍ର ଭଦ୍ରା ଜୟ ସୁଦର୍ଶନ ।
ଜୟ ଉତ୍‌ପତ୍ତି ସ୍ଥିତି ଯାହାଠାରୁ ହୋଏ
ଜଗନ୍ନିବାସ ବୋଲନ୍ତି ଶ୍ରୁତି ଯାହା ଗାଏ ।''

ଶେଷାଂଶରେ ମଧ ଜଗନ୍ନାଥଙ୍କ ଗୁଣ କୀର୍ତ୍ତନ କରାଯାଇଛି –

''ଦକ୍ଷିଣ ବାରିଧି ତଟେ କଳ୍ପବଟ ମୂଳେ
ନିଜ ସୁଖେ ବିହାର କରନ୍ତି କୁତୂହଳେ ।
ବେଦ ଯାହା ନ ଚିନ୍ତଇ ଆଉକେ ଚିନ୍ତିବ
ନରଙ୍କର ଚିହ୍ନିବାକୁ କେହୁ କ୍ଷମ ହେବ ।''

ଯଶୋବନ୍ତ ମଧ ଜଗନ୍ନାଥଙ୍କୁ ପଞ୍ଚଭୂତଭାବେ ଅଭିହିତ କରି ନିଜକୁ ସେହି ପଞ୍ଚଭୂତର ଏକ ଅଂଶ ବୋଲି କହିଛନ୍ତି –

''ଏକ ଭୂତ ଯେଉଁ ପ୍ରଭୁ ତାଙ୍କ ପଞ୍ଚଭୂତ ।
ଏକ ଭୂତ ସଖା ଯେ ଅଟଇ ଯଶୋବନ୍ତ ।''

ଯଶୋବନ୍ତ ଅନେକ ଭଜନ ରଚନା କରିଯାଇଛନ୍ତି । ତାଙ୍କ ରଚିତ ଭଜନଗୁଡ଼ିକରେ ବୈଷ୍ଣବ ଭକ୍ତି ଭାବ, ବ୍ରହ୍ମଜ୍ଞାନ ଓ ଜୀବନ ଦର୍ଶନ ସୁନ୍ଦର ଭାବରେ ପ୍ରତିଫଳିତ ହୋଇଅଛି । ତାଙ୍କର ଏକ ବ୍ରହ୍ମଜ୍ଞାନ ଭଜନ ହେଲା –

''ଅଣ ଯେ ଅକ୍ଷର ଶୂନ୍ୟ ମଣ୍ଡଳ ଗୋଟିଏ
ଆଦି ଯେ ଅପର୍ଣ୍ଣା ତିଥି ମଧ୍ୟୁ ଜାତ ହୁଏ ।
ଏମିତି ଅକ୍ଷର ତହୁଁ ହୁଏ ଉତପନ୍ନ
ପରମହଂସ ଆଦେଶ ସ୍ଥିତି ନିରଞ୍ଜନ ।''

ଏକ ଜୀବନ ଦର୍ଶନ ଭଜନରେ କବି ଶରୀରକୁ ଦେଉଳରୂପେ କଳ୍ପନା କରିଛନ୍ତି –

''ସୁଜ୍ଞାନୀ ହୋ ଶୂନ୍ୟ ମନ୍ଦିରେ ବାସ
ଜ୍ୟୋତି ଦରଶନେ ଦୁରିତ ନାଶ
ଶୂନ୍ୟ ଗିରିବୋଲି ଯେଉଁ କଟକ
ଦେଉଳ ଗୋଟି ଦିଶୁଛି ଝଟକ
ଦେଉଳ ଗୋଟି ଯତନେ ନିର୍ମାଣ
ତହିଁ ବିଜୟେ ଦେବ ନାରାୟଣ ।''

ତ୍ରିବେଣୀ ଭଜନରେ ଯଶୋବନ୍ତ ଦେହକୁ ତ୍ରିବେଣୀ ରୂପରେ କଳ୍ପନା କରିଛନ୍ତି –

"ପଡ଼ିଅଛି ବନ୍ଧ ତ୍ରିବେଣୀ ଘଟେ
ବନ୍ଧ ଫାଟି ପାଣି ବହୁଛି ଆଣ୍ଟେ ।
× × ×
ତ୍ରିବେଣୀ କୂଳରେ ତରାଇ ଅଛି ।
ନାମ ଚିହ୍ନିକରି ପାରି କରୁଛି ।"

ମନୁଷ୍ୟ ଜନ୍ମ ହେବା ପରଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଯେଉଁ ଅବସ୍ଥାର ସମ୍ମୁଖୀନ ହୁଏ ତାହାକୁ ବର୍ଣ୍ଣନା କରିଛନ୍ତି –

"ପନ୍ଦର ବରଷେ ହେଲୁ ଅମରମତା
କୋଡ଼ିଏ ବରଷେ କଲୁ କାମିନୀ ଚିନ୍ତା ।
× × ×
ହରି କଥାକୁ ଦିନେ ମନେ କଲୁ ନାହିଁ ।
ହେବୁ କେମନ୍ତେ ଏ ଭବୁ ପାରି ।"

କବି ବୃଦ୍ଧାବସ୍ଥାରେ ଗୁରୁ ଚରଣ ସେବିବାକୁ ଉପଦେଶ ଦେଇଛନ୍ତି –

"ବୃଦ୍ଧ ବୟସ ଯେ ଏବେ ହେଲା ତୋହରି
ଅବଶ୍ୟ ଦେଖିବୁ ଦିନେ ଶମନପୁରୀ
କହଇ ଯଶୋବନ୍ତ ଗୁରୁକୁ ସେବା କରି
ବସିବୁ ବଇକୁଣ୍ଠ ଆବୋରି ।"

ମନବୋଧ ଭଜନରେ ହରିନାମ ଆଶ୍ରୟ କରିବାକୁ ଆଜ୍ଞା ଦେଇଛନ୍ତି –

"ସୁମନ ଆରେ ମୋ ବୋଲକର
ସୁସଙ୍ଗେ ସୁପଥେ ଯାଆରେ,
ଅଗାଧ ଜଳ, ନ ପାଇ ସ୍ଥଳ,
ହରି ନାମ ସୁଖେ ଗାଆରେ ।"

ମନମତ୍ତ ଦୁହାଁଳ ଗାଇ ଆଉ ଏକ ସୁନ୍ଦର ଭଜନ । ଏଥିରେ କବି ଲେଖିଛନ୍ତି –

"ତ୍ରିଗୁଣ ଦଉଡ଼ି କଷି ବାନ୍ଧି ଥିଲି
ଛିଣ୍ଡାଇ ପକାଇ ଗଲା ପଳାଇ
କହେ ଯଶୋବନ୍ତ ଗାଈ ପାଦେ ଆଶ
ଗାଈକୁ ମୋ ଦେବ କେ ସୁଧୁରାଇ ।"

## ଶେଷ ଜୀବନ

କୁଜଙ୍ଗ ରାଜାଙ୍କ ନିମନ୍ତ୍ରଣକ୍ରମେ ଯଶୋବନ୍ତ କୁଜଙ୍ଗ ଯାଇ ସେଠାରେ କିଛିଦିନ ରହି ସେଠାରେ ନିଜର ଅପାର ମହିମା ଦେଖାଇଲେ । ଶ୍ରୀଚୈତନ୍ୟଙ୍କର ଏହି ସମୟରେ ପୁରୀରେ ମହାପ୍ରୟାଣ ହେଲା । ଯଶୋବନ୍ତ ମଧ୍ୟ ନିଜ ଗ୍ରାମ ଅଡଙ୍ଗଗଡ଼କୁ ଫେରିଆସିଲେ । ସେ ଆଉ ନଶ୍ୱର ଦେହରେ ବେଶିକାଳ ବଞ୍ଚିରହିବେ ନାହିଁ ବୋଲି ଜାଣିପାରିଲେ । ମାର୍ଗଶିର ମାସରେ ତାଙ୍କର ମୃତ୍ୟୁ ହେବ ବୋଲି ସେ ଭବିଷ୍ୟତ୍‌ବାଣୀ କଲେ । ସିଦ୍ଧ କଦମ୍ବଗଛ ମୂଳରେ ସମାଧି ସ୍ଥାନ ନିର୍ଦ୍ଦିଷ୍ଟ କରିବାକୁ ଶ୍ୱଶୁରଙ୍କୁ କହିଲେ

"ମାର୍ଗଶିର ମାସ ନିଦାନ ଯବି ଉତ୍ତରାୟଣେ ।"

ଏପରିକି କେଉଁଦିନ କେଉଁ ସମୟରେ ତାଙ୍କର ପ୍ରାଣବାୟୁ ଉଡ଼ିଯିବ, ତାହା ସେ ବ୍ୟକ୍ତ କରିଥିଲେ -

"ବାରକଳା ରବିବାରେ ରବିବାର ଦିବସ
ପିଣ୍ଡରୁ ପ୍ରାଣ ଛାଡ଼ିଯିବ ମୁଁ ଯେ ହେବି ହରଷ ।"

ବାଟ ବଣା ନ ହୋଇ ପୁରୀ ଜଗନ୍ନାଥସ୍ଥଳୀକୁ ସେ ଯିବେ ବୋଲି ମଧ୍ୟ ସୂଚାଇଥିଲେ ।

"ଶ୍ରୀପୁରୁଷୋତ୍ତମ କ୍ଷେତ୍ରକୁ ପଥ ଯେଉଁ ଘଟଣା
ଖିତି ପହାରୀ ଜଗିଥିବେ ମୁଁ ଯେ ନୋହିବି ବଣା ।"

ଯଶୋବନ୍ତ ମାଘ ମାସ ଶୁକ୍ଳ ପକ୍ଷ ଷଷ୍ଠୀ ଦିନ ଜୀବନ୍ତ ସମାଧି ନେଲେ । ତାଙ୍କ ଶରୀର ଜଗନ୍ନାଥଙ୍କଠାରେ ଲୀନ ହୋଇଗଲା ।

ଯଶୋବନ୍ତଙ୍କ ତିରୋଧାନ ଓଢ଼ଣ ଷଷ୍ଠୀ ଦିନ ହୋଇଥିଲା । ଏହା ଜଗନ୍ନାଥଙ୍କ ଯାନିଯାତ୍ରାରେ ହେଉଛି ପାର୍ବଣ ଷଷ୍ଠୀ । ଏହି ଦିନ ମଧ୍ୟ ଅଡଙ୍ଗଗଡ଼ରେ ଏକ ବଡ଼ ମେଳାର ଆୟୋଜନ ହୋଇଥାଏ ଓ ବହୁ ଲୋକ ଏଥିରେ ଯୋଗ ଦେଇଥାନ୍ତି ।

କେବଳ ପଞ୍ଚସଖା ଯୁଗରେ ନୁହେଁ, ଯୁଗ ଯୁଗ ଧରି ସିଦ୍ଧାଚାର୍ଯ୍ୟଙ୍କ ମଧ୍ୟରେ ଯଶୋବନ୍ତ ଦୀପ୍ତିମାନ୍ ହୋଇ ରହିଥିବେ ।

# ମହାପୁରୁଷ
# ଶିଶୁଅନନ୍ତ

ପଞ୍ଚସଖାଙ୍କ ମଧ୍ୟରେ ଶିଶୁଅନନ୍ତ ଦାସ ହେଉଛନ୍ତି ଅନ୍ୟତମ । ସେ ଅନ୍ୟ ସଖାମାନଙ୍କ ପରି ଥିଲେ ଜଣେ ବିଶିଷ୍ଟ ସିଦ୍ଧ ଓ ସାଧକ । ମା' ଲକ୍ଷ୍ମୀଙ୍କଠାରୁ ଶିଶୁରୂପେ ଅମୃତ ପାନ କରିବା ସଙ୍ଗେ ସଙ୍ଗେ ଶିଶୁଅନନ୍ତ ପରମ ଭକ୍ତ ରୂପେ ଉତ୍କଳୀୟ ଜନମାନସରେ ପ୍ରତିଷ୍ଠିତ ହୋଇଛନ୍ତି ।

**ଜନ୍ମ ଓ ବଂଶପରିଚୟ**

ପୁରୀ ଜିଲ୍ଲାର କୋଠଦେଶ ଅଞ୍ଚଳର ବାଲିପାଟଣା ଗ୍ରାମରେ ଶିଶୁଅନନ୍ତ ଜନ୍ମଗ୍ରହଣ କରିଥିଲେ । ପଣ୍ଡିତ ସୂର୍ଯ୍ୟନାରାୟଣ ଦାସଙ୍କ ମତ ଅନୁଯାୟୀ ଶିଶୁଅନନ୍ତ ୧୪୭୫ ମସିହାରେ ଜନ୍ମ ହୋଇଥିଲେ । କେହି କେହି ସେ ୧୪୮୬ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବା କହନ୍ତି । ମାତ୍ର ଅନନ୍ତ ୧୪୯୩ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ ବୋଲି ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମତ ଦେଇଛନ୍ତି ।

ଶିଶୁଅନନ୍ତ ଜାତିରେ କରଣ ଥିଲେ । ତାଙ୍କ ପିତାଙ୍କ ନାମ କପିଳ ମହାନ୍ତି ଓ ମାତାଙ୍କ ନାମ ଗୌରୀଦେବୀ । ଉଦେବାଖର ନାମକ ପୋଥିର ଶେଷଭାଗରେ କବି ନିଜ ପିତାମାତାଙ୍କ ପରିଚୟ ଦେଇଛନ୍ତି –

''ଅକୁଳ ଅମୂଳ ଅଟଇ
କପିଳ ମୁନି ପିତା ମୋହର ଅଟଇ
ମାତା ଗଉରୀ ନାମ ବହି ।''

ଅନନ୍ତ କୋଣାର୍କ ଅଞ୍ଚଳର ଅଧିବାସୀ ଥିଲେ । ପ୍ରବାଦ ଅଛି ଯେ ସୂର୍ଯ୍ୟଦେବତା ତାଙ୍କ ଉପରେ ପ୍ରସନ୍ନ ହୋଇ ଏକାକ୍ଷର ସୂର୍ଯ୍ୟନାରାୟଣ ମନ୍ତ୍ର ଦେଇଥିଲେ । ସେ ଜଗନ୍ନାଥ ମନ୍ଦିର ବେଢ଼ାରେ ପ୍ରତ୍ୟହ ଏକ ହଜାର ବାର ଏହି ସୂର୍ଯ୍ୟନାରାୟଣ ମନ୍ତ୍ର ଜପ କରି ସିଦ୍ଧି ଲାଭ କରିଥିବାର ଜଣାଯାଏ ।

ଅନନ୍ତ ପରମ ସାଧକ ଥିଲେ । ସେ ଯୋଗ ବଳରେ ଶିଶୁ ପ୍ରଦ୍ୟୁମ୍ନ ରୂପ ଧାରଣ କରି ମା' ଲକ୍ଷ୍ମୀଙ୍କଠାରୁ କ୍ଷୀର ପାନ କରିଥିଲେ । ନାନା ବାତ୍ସଲ୍ୟ ଲୀଳା କରି ନିଜେ ଅନ୍ତର୍ଦ୍ଧାନ ହୋଇଗଲେ । ପ୍ରବାଦଅଛି ଯେ ଲକ୍ଷ୍ମୀ ପୁତ୍ର ବିରହରେ

ବ୍ୟାକୁଳ ହେଲେ । ସ୍ୱାମୀ ଶ୍ରୀଜଗନ୍ନାଥ ତିନି ପୁର ସନ୍ଧାନ କରି ପୁତ୍ରର ସନ୍ଧାନ ପାଇଲେ ନାହିଁ । ଶେଷରେ ଅନନ୍ତ ପୁନର୍ବାର ଶିଶୁରୂପ ଧରି ଲକ୍ଷ୍ମୀଙ୍କ କୋଳରେ ଉଭାହେଲେ । ଜଗନ୍ନାଥ ପ୍ରସନ୍ନ ହୋଇ ଅନନ୍ତଙ୍କୁ ବରଦାନ ଦେଲେ –

''ଲକ୍ଷ୍ମୀଙ୍କଠାରୁ କ୍ଷୀର ପାନ । ତୁ ମୋର ପୁତ୍ରର ସମାନ ।
ଶିଶୁ ରୂପରେ ମୋତେ ଭ୍ରମ । ଅନନ୍ତ ଶିଶୁ ତୋର ନାମ ।
ପୃଥିବୀ ଯେତେଦିନ ଥିବ । ତୋ ନାମ ବିଖ୍ୟାତ ହେବ ।''

ଜଗନ୍ନାଥ ପୁଣି ତାଙ୍କୁ କହିଲେ

''ତୋ ନାମ ଗୋପ୍ୟ ହୋଇଥିବ । ଚୈତନ୍ୟ ମୁଖେ ଉଦେ ହେବ ।
କଟକେ କରିବ ଦର୍ଶନ । ଦର୍ଶନେ ଚୈତନ୍ୟ ପ୍ରସନ୍ନ ।
ଅନନ୍ତ ଶିଶୁ ବୋଲି କୋଳ । କରିବେ ଚୈତନ୍ୟ ମଙ୍ଗଳ ।
× × ×
ଏତକ କହି ଜଗନ୍ନାଥ । ଶାଢ଼ି ବାନ୍ଧିଲେ ସେ ଅନନ୍ତ ।''

### ଚୈତନ୍ୟଙ୍କ ସହ ସାକ୍ଷାତ୍

ଚୈତନ୍ୟ କଟକରେ ଥିଲାବେଳେ ଅନନ୍ତଙ୍କୁ ଶିଶୁଭାବରେ ସମ୍ବୋଧନ କଲେ । ସେହିଦିନୁ ସେ ଶିଶୁଅନନ୍ତ ନାମରେ ସବୁଆଡ଼େ ଖ୍ୟାତ ହେଲେ ।

### ଧ୍ୟାନ

ଅନନ୍ତ ଭୁବନେଶ୍ୱର ନିକଟସ୍ଥ ଖଣ୍ଡଗିରିର ନିର୍ଜନ ପରିବେଶରେ ଅଧିକାଂଶ ସମୟ ଧ୍ୟାନରତ ରହୁଥିବା ଜଣାଯାଏ ।

### ମହିମା

ଶିଶୁଅନନ୍ତଙ୍କ ସମ୍ବନ୍ଧରେ ବହୁ ଅଲୌକିକ କାହାଣୀମାନ ଶୁଣାଯାଏ । କଥିତଅଛି ଯେ ସେ ଖଣ୍ଡିଆ କାନ୍ଥରେ ଚଢ଼ି ନଈ ପାର ହୋଇଯାଉଥିଲେ । ଆଉ ଏକ ଜନଶ୍ରୁତିରୁ ଜଣାଯାଏ ଯେ ଜନ୍ମସ୍ଥାନ ବାଲିପାଟଣାଠାରୁ ଅଳ୍ପ ଦୂରରେ ପୀର ଖାଁ ନାମରେ ଜଣେ ମୁସଲମାନ ବାସ କରୁଥିଲେ । ତାଙ୍କ ଗାଈ ଦିନେ ଏକ ଗୋପାଳ ବାଡ଼ିରେ ପଶି ସବୁ ଆଖୁ ଖାଇଗଲା । ସେ ଗୋପାଳ ଯାଇ ନିମାପଡ଼ାର ରାଜାଙ୍କଠାରେ ପୀର ଖାଁଙ୍କ ବିରୋଧରେ ଅଭିଯୋଗ କଲା । ରାଜା ଦୂତ ହାତେ ପୀର ଖାଁଙ୍କୁ ଡକାଇଲେ । ପୀର ଖାଁ ଭୟାର୍ତ୍ତ ହୋଇ ବାଲିପାଟଣା ଶିଶୁ ମଠ ଠାରେ ଶିଶୁଙ୍କୁ ଭେଟିଲେ ଓ ତାଙ୍କୁ ସାକ୍ଷୀ ହେବାପାଇଁ ଅନୁରୋଧ କଲେ । ଶିଶୁଅନନ୍ତ ମଧ୍ୟ ସାକ୍ଷ୍ୟଦେବାପାଇଁ

ସମ୍ମତ ହେଲେ । ପୀର ଖାଁ ଆନନ୍ଦରେ ନିମାପଡ଼ା ଅଭିମୁଖେ ଯାତ୍ରା କଲେ । ରାଜପ୍ରାସାଦରେ ପହଞ୍ଚନ୍ତେ, ତାଙ୍କର ବିଚାର ଆରମ୍ଭ ହେଲା । ତାଙ୍କର ନିର୍ଦ୍ଦୋଷତାର କୌଣସି ସାକ୍ଷ୍ୟପ୍ରମାଣ ନ ପାଇ ଆଙ୍ଗୁଠି କାଟିଦେବାପାଇଁ ରାଜା ଆଦେଶ ଦେଲେ । ଏହି ସମୟରେ ଗୋଟିଏ ଖଣ୍ଡିଆ କାନ୍ଥ ଉପରେ ଉଡ଼ି ଉଡ଼ି ମହାପୁରୁଷ ଅନନ୍ତ ନିମାପଡ଼ା ରାଜପ୍ରାସାଦରେ ପହଞ୍ଚିଲେ । ସମସ୍ତେ ଏହି ଅଲୌକିକ ଦୃଶ୍ୟ ଦେଖି ସ୍ତମ୍ଭୀଭୂତ ହୋଇଗଲେ । ଗୋପାଳ ବାଡ଼ିରେ ମଧ ଗାଈଗୋରୁ ଆଖୁ ନଷ୍ଟ କରି ନାହାନ୍ତି ଓ ସବୁ ଆଖୁ ଠିକ୍ ଅଛି ବୋଲି ସାକ୍ଷ୍ୟ ଦେଲେ । ରାଜକର୍ମଚାରୀମାନେ ଗୋପାଳ ବାଡ଼ିରେ ଗୋଟିଏ ହେଲେ ଆଖୁ ନଷ୍ଟ ହୋଇ ନ ଥିବା ଦେଖି ରାଜାଙ୍କ ଆଗେ ଜଣାଇଲେ । ରାଜା ଆଙ୍ଗୁଠି କାଟିବା ଆଦେଶ ତୁରନ୍ତ ପ୍ରତ୍ୟାହାର କଲେ । ପୀର ଖାଁ କୃତଜ୍ଞତାର ସ୍ୱରୂପ ଶିଶୁଅନନ୍ତଙ୍କୁ ଖଣ୍ଡିଏ ପଡ଼ା ଦାନ ଦେଲା । ତାହାର ନାମ ହେଲା ପୀର ଖାଁ ପାଟଣା ।

ଶିଶୁଅନନ୍ତ ଗଜପତି ପ୍ରତାପରୁଦ୍ରଦେବଙ୍କ ଦରବାରରେ ସମ୍ମାନିତ ହୋଇଥିବାର ଜଣାଯାଏ । କିମ୍ବଦନ୍ତୀ ଅଛି ଯେ ପ୍ରତାପରୁଦ୍ରଦେବ ସ୍ୱପ୍ନାଦିଷ୍ଟ ହୋଇ ଶ୍ରୀମନ୍ଦିର ବେଢ଼ାରେ ଥିବା ପତିତପାବନ ମୂର୍ତ୍ତିକୁ ଶିଶୁଅନନ୍ତଙ୍କୁ ପ୍ରଦାନ କରିଥିଲେ । ଅନନ୍ତ ସେହି ମୂର୍ତ୍ତିକୁ ଆଣି ବାଲିପାଟଣାଠାରେ ପ୍ରତିଷ୍ଠା କରାଇଲେ । ସେହିଦିନଠାରୁ ବାଲିପାଟଣାରେ ପତିତପାବନ ମୂର୍ତ୍ତି ପୂଜା ପାଉଛନ୍ତି । ଲୋକେ କହନ୍ତି ଯେ ନବକଳେବର ସମୟରେ ଶ୍ରୀକ୍ଷେତ୍ରକୁ ଆସୁଥିବା ଦାରୁରୁ କିଛି ବାଲିପାଟଣା ଆସୁଥିଲା ଓ ତହିଁରେ ପତିତପାବନଙ୍କର ନବକଳେବର ହେଉଥିଲା । ମାତ୍ର ତାହା ବହୁଦିନୁ ବନ୍ଦ ହୋଇଯାଇଥିବାର ଅନୁମାନ କରାଯାଏ ।

ଶିଶୁଅନନ୍ତ ବହୁ ଗ୍ରନ୍ଥ ଓ ଗୀତିକବିତା ରଚନା କରିଥିଲେ । ତାଙ୍କର ବିଖ୍ୟାତ ଗ୍ରନ୍ଥ 'ହେତୁଉଦୟ ଭାଗବତ' । ଅଧ୍ୟାପକ ଡକ୍ଟର ନରେନ୍ଦ୍ର ନାଥ ପ୍ରଧାନ ୧୯୭୭ ମସିହାରେ ଏହାକୁ ସଙ୍କଳିତ ଓ ସମ୍ପାଦିତ କରି ପ୍ରକାଶ କରିଥିଲେ । ଶିଶୁଅନନ୍ତ ଆଗତ ଭବିଷ୍ୟତ୍ ତଥ୍ୟ ସମ୍ବଳିତ ପ୍ରସିଦ୍ଧ ଗ୍ରନ୍ଥ ହେଉଛି 'ଉଦେବାଖର' । ଏହାଛଡ଼ା ଆଉ ଅନେକ ଆଗତ ଭବିଷ୍ୟତାଦି ପଦ ଓ ତଥ୍ୟ ସମ୍ବଳିତ କ୍ଷୁଦ୍ର ପାଣ୍ଡୁଲିପି ଅଛି । ଏହିସବୁ ଗ୍ରନ୍ଥ ଲେଖି ଶିଶୁଅନନ୍ତ ଖ୍ୟାତିଲାଭ କରିଥିବାର ଜଣାଯାଏ । କବି ଈଶ୍ୱର ଦାସ ଏ ସମ୍ପର୍କରେ ଲେଖିଛନ୍ତି –

''ଅନନ୍ତ ଶିଶୁଙ୍କ ପ୍ରତି ପୁଛନ୍ତି । ଆନନ୍ଦ ଚିତ୍ତେଣ ଶ୍ରୀପତି
ଭବିଷ୍ୟ ପୁରାଣ ଭକତ । ଆଗତ ଲେଖିଛନ୍ତି ଗୀତ ।''

## ହେତୁଉଦୟ ଭାଗବତ

ଏହା ଶିଶୁଅନନ୍ତଙ୍କର ଏକ ପ୍ରସିଦ୍ଧ ବ୍ରହ୍ମଜ୍ଞାନମୂଳକ ଗ୍ରନ୍ଥ । 'ହେତୁ' ଶବ୍ଦର ଅର୍ଥ ଜ୍ଞାନ । ଏହି ଗ୍ରନ୍ଥ ପାଠ କଲେ ଜ୍ଞାନର ଉଦୟ ହେଉଥିବାରୁ ଏହାର ଏପରି ନାମକରଣ ହୋଇଥିବାର ଜଣାଯାଏ । ଗ୍ରନ୍ଥଟି ଦଶ ଗୋଟି ଅଧ୍ୟାୟରେ ବିଭକ୍ତ ।

ପ୍ରଥମ ଅଧ୍ୟାୟରେ କବି ଗୁରୁବନ୍ଦନା କରିଛନ୍ତି । ଗୁରୁ ହେଉଛନ୍ତି ଜୀବନର ପ୍ରାଣକର୍ତ୍ତା । ସେ ମଧ୍ୟ ବ୍ରହ୍ମରାଶି । କାଳରୂପକ ତମକୁ ନାଶ କରନ୍ତି । କବିଙ୍କ ଭାଷାରେ --

''ବନ୍ଦଇ ଶ୍ରୀଗୁରୁ ଚରଣ । ଗୁରୁ ଜୀବର ପରିତ୍ରାଣ ।।
ଗୁରୁଟି ଆପେ ବ୍ରହ୍ମରାଶି । କାଳ ସ୍ୱରୂପେ ତମନାଶି''।।

କେବଳ ଗୁରୁ କୃପା କଲେ ମଣିଷର ମୁକ୍ତିଲାଭ ହୁଏ । ଗୁରୁଙ୍କ ଉପଦେଶ ହେଲା --

''ବେଳହୁଁ ଗୋବିନ୍ଦ ସୁମର । ତୋ ପଛେ ଗୋଡ଼ାଉଛି କାଳ ।
ସେ କାଳ ଦଉଡ଼ରେ ତୁହି । ସତ ଶାନ୍ତିରେ ରଖ ଦେହୀ ।''

ଦ୍ୱିତୀୟ ଅଧ୍ୟାୟରେ ଗୁରୁଙ୍କର ମହତ୍ତ୍ୱ ବର୍ଣ୍ଣନା କରାଯାଇଛି, ଯଥା –

''ଶୁଣ ହୋ ମନ ଏ ଉତ୍ତର । ଗୁରୁଟି ଆପେ ନିରାକାର ।
ଗୁରୁ ପରମ ବ୍ରହ୍ମ ହୋଇ । ଗୁରୁଟି ବୈଷ୍ଣବ ଗୋସାଇଁ ।
ଗୁରୁ ସାକ୍ଷାତେ ନାରାୟଣ । ବେଦରେ ବ୍ରହ୍ମରୂପେ ପୁଣ ।''

ଗୁରୁ ବ୍ରହ୍ମଜ୍ଞାନ ବିଷୟରେ ଶିଷ୍ୟକୁ ବୁଝାଇଛନ୍ତି । କବି ସୃଷ୍ଟିକ୍ରମ ମଧ୍ୟ ବର୍ଣ୍ଣନା କରିଛନ୍ତି, ଯଥା –

ଅନାଦି ପରେ ରେହ ରହି । ତା'ପରେ ଆଉ କେହି ନାହିଁ ।
ସେହି ରୂପଟି ଜନାର୍ଦ୍ଦନ । ସକଳ ଯହିଁ ହୁଏ ହୀନ ।
'ଅ' ଯେ ଈଶ୍ୱର ଅଟଇ । ଆଦି ଶକ୍ତିଟି କାଳ ହୋଇ ।
ସେ ବେନି ଜନ ପ୍ରୀତି କରି । ତହୁଁ ଜନ୍ମିଲେ ଚନ୍ଦ୍ରାବଳୀ ।''

କବି ମଧ୍ୟ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ବ୍ୟାଖ୍ୟା କରିଛନ୍ତି –

ଦେହ ମଧ୍ୟରେ ଚଉଦ ବ୍ରହ୍ମାଣ୍ଡ, ପଞ୍ଚ ମନ, ପଚିଶ ପ୍ରକୃତି ରହିଛି । ଦେହରେ କଣ୍ଠରୁ ଶିର ପର୍ଯ୍ୟନ୍ତ ଶୂନ୍ୟମଣ୍ଡଳ ଅଛି । ସେହିପରି କଣ୍ଠରୁ ହୃଦୟ ପର୍ଯ୍ୟନ୍ତ ପବନ ମଣ୍ଡଳ, ହୃଦୟରୁ ନାଭି ଅଗ୍ନିମଣ୍ଡଳ, ନାଭିରୁ ଜାନୁ ବରୁଣ ମଣ୍ଡଳ ଓ ଜାନୁରୁ ପାଦତଳ ପର୍ଯ୍ୟନ୍ତ ପୃଥିବୀ ମଣ୍ଡଳ ରହିଅଛି । କବି ମଧ୍ୟ କହିଛନ୍ତି ଯେ ଏହି ଶରୀର ମଧ୍ୟରେ ଗଙ୍ଗା, ଯମୁନା, ସରସ୍ୱତୀ, କାଳିନ୍ଦୀ ପ୍ରଭୃତି ନଦୀ

ରହିଛନ୍ତି । ପୁଣି ଏହି ଶରୀରରେ ରହିଛି ସବୁ ତୀର୍ଥ, ଯଥା– ଅଯୋଧ୍ୟା, ମଥୁରା ବା ଦ୍ୱାରିକା ।

କବିଙ୍କ ମତରେ ସବୁ ଜ୍ଞାନ ଜାଣିଥିବା ବ୍ୟକ୍ତି ଯଥାର୍ଥରେ ସିଦ୍ଧ । ସେହି ହେଉଛି ଯଥାର୍ଥରେ ସାଧକ ।

କବି ଚତୁର୍ଥ ଅଧ୍ୟାୟରେ ଗାୟତ୍ରୀ ତତ୍ତ୍ୱର ବ୍ୟାଖ୍ୟାନ କରିଛନ୍ତି । ପଞ୍ଚମ ଅଧ୍ୟାୟରେ ଅବଧୂତ ଜନ୍ମବୃତ୍ତାନ୍ତର ବର୍ଣ୍ଣନା ଅଛି ।

ଦୁନିଆ ମୋହ, ମାୟାରେ ପୂର୍ଣ୍ଣ । ଏହି ମାୟା, ମୋହସ୍ୱରୂପ ରୁଦ୍ଧ କବାଟ କିପରି ଫିଟିବ ତାହା ଶିଶୁଅନନ୍ତ ଗୁରୁଙ୍କୁ ପଚାରିଛନ୍ତି । ଗୁରୁ କହିଛନ୍ତି ଯେ ଏହା ଅତି ଦୁର୍ଗମ ପଥ । ବ୍ରହ୍ମା, ଶଙ୍କର ପ୍ରଭୃତି ତାହା ମଧ୍ୟରେ ପ୍ରବେଶ କରିବାକୁ ଅକ୍ଷମ । କେବଳ ମନକୁ ସ୍ତ୍ରୀ ବେଶରେ ଅନୁପ୍ରାଣିତ କଲେ ସେହି ସ୍ଥଳ ଲାଭ କରିପାରିବ, ଯଥା –

''ମନକୁ ସ୍ତିରୀ ବେଶ କରି । ହୋଇବୁ ନବୀନ କିଶୋରୀ ।
ଲଲାଟେ ସିନ୍ଦୂରର ଚିତା । ରୂପେଣ ଜଗଜନ ଜିତା ।
ହସ୍ତରେ ବଳୟ କଙ୍କଣ । ପାଦେ ନୂପୁର ରୁଣଝୁଣ ।
ଗଳାରେ ମୁକୁତାର ହାର । କର୍ଣ୍ଣେ ତାଡ଼କି ହୀରା ସାର ।
ହସ୍ତରେ ମଦିରା ଘେନିଣ । ନବୀନା କିଶୋରୀ ହୋଇଣ ।
ମନକୁ ସ୍ତିରୀ ବେଶ କଲେ। ସେ ସ୍ଥଳ ଲଭିବଟି ଭଲେ ।''

ମନର ତତ୍ତ୍ୱକୁ କବି ସୁନ୍ଦର ଭାବରେ ବ୍ୟାଖ୍ୟା କରିଛନ୍ତି । କବିଙ୍କ ମତରେ ମନ ହେଉଛି ମତ୍ତଗଜସ୍ୱରୂପ । ଏହି ମତ୍ତଗଜକୁ ଆଙ୍କୁଶ ଦେଇ ବଶ କରିବା ଉଚିତ । ମନକୁ ଆୟତ୍ତ କରି ନ ପାରିଲେ ଯୋଗସାଧନ ସମ୍ଭବ ନୁହେଁ । କବି ତାହା ପ୍ରକାଶ କରିଛନ୍ତି –

''ମନଟି ଅଟେ ମତ୍ତଗଜ । ତିନି ଭୁବନେ ତା'ର ତେଜ ।
ଏ ମତ୍ତ ଗଜକୁ ଆଙ୍କୁଶ । ହେତୁ ଅଟଇ ଶୁଣ ବସ ।
ମନ ଯେ ଆୟତ୍ତ ନୋହିଲେ। କେ ଯୋଗ ସାଧିପାରେ ଭଲେ ।''

ଜୀବକୁ ପରମରେ ମିଳାଇଲେ ମୁକ୍ତି ମିଳିବ । ଜଗନ୍ନାଥ ମଧ୍ୟ ଶ୍ରୀକ୍ଷେତ୍ରରେ ବୁଦ୍ଧ ରୂପରେ ବିହାର କରୁଥିବା କଥା କବି ଉଲ୍ଲେଖ କରିଛନ୍ତି -

''ପରମ ପୁରୁଷ ଦେଉଳ । ନୀଳଚକ୍ର ଯେ ଶୂନ୍ୟ ଠୁଳ ।
ନେତ୍ର ଯେ ବ୍ରହ୍ମା ବିଷ୍ଣୁ ହର । ଉଦୁଣ ଅଛି ଚକ୍ର ପର ।
ଦେଉଳେ ବ୍ରହ୍ମାଣ୍ଡ ଗୋସାଇଁ । ବୁଦ୍ଧ ସ୍ୱରୂପ ବିହରଇ ।''

ଗୁରୁ ମହିମା କୀର୍ତ୍ତନ ହୋଇ ଗ୍ରନ୍ଥର ପରିସମାପ୍ତି ଘଟିଛି, ଯଥା –

''ଶ୍ରୀ ଗୁରୁ ପାଦେ ଚିତ୍ତ ଦେଇ । ଯେ ହେତୁ ଉଦେ ଲେଖିଲଇଁ ।
ଶରଣ ତାହାଙ୍କ ଚରଣ । ପାମର ଅନନ୍ତ ବଖାଣ ।''

## ଗରୁଡ଼ କେଶବ ଚଉତିଶା

ଏଥିରେ ଗରୁଡ଼ କେଶବଙ୍କୁ କଳିଯୁଗର ଭବିଷ୍ୟ ବୃତ୍ତାନ୍ତ ପଚାରିଛନ୍ତି –

''କହନ୍ତି ଗରୁଡ଼ ଶୁଣ ହେ କେଶବ
ଜଣାଉଅଛି ଶ୍ରୀ ଛାମୁରେ
ସତ୍ୟ ତ୍ରେତୟା ଦ୍ୱାପର ଭୋଗ କଲା
କଳି ଅଛି ଆଉ ଆଗରେ
ଆହେ କେଶବ
ମୁଁ ଯେ ତୁମ୍ଭର ନିଜ ଦାସ
କିସ ଭିଆଣ କରିଅଛ କେଶବ କହିବ
ଆଗତ ଭବିଷ୍ୟ ।''

କେଶବ ତା'ର ଉତ୍ତର ଦେଇଛନ୍ତି । ଏଥିରେ ଓଡ଼ିଶାର ସୋମବଂଶ, ଗଙ୍ଗବଂଶ, ସୂର୍ଯ୍ୟବଂଶ ଓ ଭୋଇବଂଶ ଅମଳର ଘଟଣାଗୁଡ଼ିକର ଚର୍ଚ୍ଚା ହୋଇଛି ।

## ଉଦେବାଖର

ଉତ୍କଳ ବିଶ୍ୱବିଦ୍ୟାଳୟ ପାଣ୍ଡୁଲିପି ଗ୍ରନ୍ଥାଗାରରେ ଏହା ସଂରକ୍ଷିତ । ଏହା କବିଙ୍କ ଏକ ମାଳିକା ଗ୍ରନ୍ଥ । ଶିଶୁଅନନ୍ତଙ୍କ ନାମରେ କେତେଗୁଡ଼ିଏ ମାଳିକା ଗ୍ରନ୍ଥ ଭଣିତା ହୋଇଅଛି । ତନ୍ମଧ୍ୟରେ 'ଉଦେବାଖର' ପ୍ରଧାନ ।

ଗରୁଡ଼ ଏଥିରେ ଶ୍ରୀକୃଷ୍ଣଙ୍କୁ କହିଛନ୍ତି ଯେ ସେ ସତ୍ୟ, ତ୍ରେତା ଓ ଦ୍ୱାପର ଯୁଗର ସମସ୍ତ ଘଟଣା ଦେଖିଲେ । କଳି ଯୁଗରେ କ'ଣ ଘଟିବ ତାହା ଜଣାଇବାକୁ ଅନୁରୋଧ କରିଛନ୍ତି । ଗରୁଡ଼ଙ୍କ ଅନୁରୋଧରେ ଶ୍ରୀକୃଷ୍ଣ ଯାହା କହିଛନ୍ତି ତାହା କବି ପ୍ରକାଶ କରିଛନ୍ତି ।

''ଗରୁଡ଼ ବଚନ ଶୁଣିଣ ଶ୍ରୀହରି ବିମ୍ୱ ଅଧରରେ ହସିଲେ
ରାମକୃଷ୍ଣ ଆମ୍ଭେ ଦ୍ୱାରିକାରେ ଥିଲୁ ସବୁ ମଲେ ।
ଆହେ ଗରୁଡ଼, ଏବେ ନିଜ ସ୍ଥାନେ ରହିବୁ
କିଛିଦିନ ଗଲେ ଶ୍ରୀ ନୀଳକନ୍ଦରରେ ଦାରୁ ରୂପ ଆମ୍ଭେ ଧରିବୁ ।''

କଳିଯୁଗରେ କୃଷ୍ଣ ବୁଦ୍ଧ ଅବତାର ଓ କଳ୍କି ଅବତାର ଗ୍ରହଣ କରିବେ ବୋଲି କହିଛନ୍ତି । ଓଡ଼ିଶାର ରାଜବଂଶଗୁଡ଼ିକର ସୂଚନା ଏହି ଗ୍ରନ୍ଥର କେତେକ ପଦରେ ମିଳେ, ଯଥା –

"କଳିର ଶେଷେ କେଶରୀ ରାଜା ଅନ୍ତେ ଗଙ୍ଗବଂଶେ ପୁଣି ରାଜନ
ସୂର୍ଯ୍ୟ ଅନ୍ତେ ଭୋଇ କିଛି ଦିନ ଥିବେ ଚାଲୁକି ବଂଶହିଁ ନିଧନ ।"

ପୁଣି ଭବିଷ୍ୟଦ୍‌ବାଣୀ ଏଥିରେ ଅଛି, ଯଥା –

ଯୁଗ ଶେଷରେ 'ମହାମାରୁ' ଅର୍ଥାତ୍ ବହୁ ମନୁଷ୍ୟ ମୃତ୍ୟୁ ମୁଖରେ ପଡ଼ିବେ ।

ଏହା କେବେ ହେବ ତାହା ମଧ୍ୟ ଗୁପ୍ତରେ କହିଛନ୍ତି । ଏହି ଦୁର୍ଗତିରୁ ରକ୍ଷା ପାଇବାପାଇଁ ହରି ଭଜନ ଏକ ମାତ୍ର ପନ୍ଥା ବୋଲି କବି କହିଛନ୍ତି ।

"ହରି ଆଶ୍ରେକର ବୁଦ୍ଧ ଜନମାନେ
ହରି ମହିମା ଅଗୋଚର
ଅନନ୍ତ ଶିଶୁ ହରି ଆଶ୍ରା କରିଣ
କଳି କଳୁଷ କଲା ଦୂର ।"

ଗ୍ରନ୍ଥର ଭାଷା ସରଳ ଓ ସର୍ବଜନବୋଧ୍ୟ ।

## ପରାର୍ଦ୍ଧ ବା ଆଗତ ଭବିଷ୍ୟ

ଏଥିରେ ଭକ୍ତମାନେ କେଉଁ ସ୍ଥାନରେ ଜନ୍ମ ଗ୍ରହଣ କରିବେ ଓ କି କାର୍ଯ୍ୟ କରିବେ ତାହା ବର୍ଣ୍ଣିତ ହୋଇଅଛି । ଯାଜପୁରରେ ବ୍ରହ୍ମା ସ୍ଥାପନ କରିଥିବା ଶୁଭ ସ୍ତମ୍ଭ ମୂଳରେ ଥିବା ମଣିମୁକ୍ତାଦିକୁ ଗୋଟିଏ ବାବାଜି ଅପହରଣ କରିନେବା ବିଷୟ ମଧ୍ୟ ଏଥିରେ ଉଲ୍ଲେଖ ଅଛି ।

"ବ୍ରହ୍ମା ପୃଥୀ ଯହୁଁ ଆରମ୍ଭ କଲା
କଳିଯୁଗେ ଶୁଭ ସ୍ତମ୍ଭ ପୋତିଲା
କଳଙ୍କି ଅବସ୍ଥା ଯହୁଁ ହୋଇବ
ଏକ ବୈଷ୍ଣବ ପ୍ରବେଶ ହୋଇବ
ସେ ସ୍ତମ୍ଭ ତଳରୁ ମଣି କାଢ଼ିବ
ଦମନ ସେହି ମଣିକି ହରିବ ।"

ଯାଜପୁରରେ ଏବେବି ସେହି ସ୍ତମ୍ଭ ତଳେ ଗାତ ଥିବା ଦୃଶ୍ୟ ହୁଏ । ଜନୈକ ବାବାଜିଦ୍ୱାରା ମଣିମୁକ୍ତାଦି ଅପହରଣ ହେବା କଥା ଏବେବି ଲୋକେ ବିଶ୍ୱାସ କରନ୍ତି ।

ଏହି ଭବିଷ୍ୟଦ୍‌ବାଣୀ ପରି ଏହି ଗ୍ରନ୍ଥରେ ଆହୁରି ଅନେକ ଭବିଷ୍ୟଦ୍‌ବାଣୀ ଅଛି ।

## ଭବିଷ୍ୟ ପୁରାଣ

କଳିଯୁଗରେ କି ଅଘଟଣ ଘଟିବ ତାହାର ଅତି ସୁନ୍ଦର ବର୍ଣ୍ଣନା ଏହି ଗ୍ରନ୍ଥରେ ମିଳେ । ଏହା ଅପ୍ରକାଶିତ ।

କଳିଯୁଗରେ ସାମାଜିକ ଜୀବନ ନଷ୍ଟଭ୍ରଷ୍ଟ ହୋଇପଡ଼ିବ ବୋଲି ଶିଶୁଅନନ୍ତ ଭବିଷ୍ୟଦ୍‌ବାଣୀ କରିଛନ୍ତି । କୁଟୁମ୍ବରେ ଗଣ୍ଡଗୋଳ ସୃଷ୍ଟି ହେବ । ଶାଶୂ ବୋହୂ କଳିତକରାଳରେ ମଗ୍ନ ହେବେ । ହଣାକଟା ପର୍ଯ୍ୟନ୍ତ ବି ଏହା ଯିବ । ଦେଢ଼ଶୁର ଭାଇବୋହୂ ମଧ୍ୟରେ ଅବୈଧ ପ୍ରେମ ଜାତ ହେବ । ସ୍ତ୍ରୀମାନେ ସ୍ୱାମୀ ଥାଉ ଥାଉ ପରପୁରୁଷ ପ୍ରତି ଆସକ୍ତ ହେବେ । ଘୋର ପାପ ହେତୁ ପତିପତ୍ନୀ ନିଃସନ୍ତାନ ହେବେ । ଲକ୍ଷ୍ମୀ ମଧ ତାଙ୍କୁ ଛାଡ଼ିଯିବେ । ଲୋକେ ଭୋକ ଉପାସରେ କାଳ କାଟିବେ ।

ଏଥିରେ ମଧ ଭକ୍ତମାନେ କେଉଁ ସ୍ଥାନରେ ଜନ୍ମଗ୍ରହଣ କରିବେ ଓ କି କାର୍ଯ୍ୟ କରିବେ ତାହାର ବର୍ଣ୍ଣନା ଅଛି ।

ଭୋଇବଂଶର ଜଣେ ରାଜା ଯବନମାନଙ୍କ ଆକ୍ରମଣର ମୁକାବିଲା କରି ନ ପାରି ରାଜ୍ୟ ଛାଡ଼ି ପଳାୟନ କରି ଦକ୍ଷିଣରେ ଆଶ୍ରୟ ନେବେ ଓ କେତେକାଳ ପରେ ପୁଣି ରାଜସିଂହାସନ ପ୍ରାପ୍ତ ହେବେ ବୋଲି କବି ଭବିଷ୍ୟଦ୍‌ବାଣୀ କରିଛନ୍ତି । ଭୋଇବଂଶର ରାଜା ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ଜୀବନରେ ଏହା ଘଟିଥିବା ଜଣାଯାଏ ।

## ପଦ୍ମବନ ରାସ

କବି ପୁରୀ ଶ୍ରୀକ୍ଷେତ୍ରକୁ ନିତ୍ୟରାସସ୍ଥଳୀ ଭାବେ ବର୍ଣ୍ଣନା କରିଛନ୍ତି । ନୀଳକନ୍ଦରରେ ଲାବଣ୍ୟମୋହନ ବା ଜଗନ୍ନାଥ ବିଜେ ହୋଇଛନ୍ତି । ତାଙ୍କ ନିକଟରେ ଶ୍ରୀରାଧା ଶୋଭା ପାଉଛନ୍ତି । ପୁଣି ଅଷ୍ଟକୋଣରେ ଅଷ୍ଟ ସଖୀ ରହି ସେମାନଙ୍କର ସେବା କରୁଛନ୍ତି । କବିଙ୍କ ଭାଷାରେ –

"ସେଠାରେ ଦେଖିଲି ରାହାସ ବିଜେ ଜଗତନାଥ
ରାଧାଙ୍କୁ ସଙ୍ଗତେ ଘେନିଣ ବେନି ଏକ ରୂପାନ୍ତ
ଅଷ୍ଟ ସଖୀ ସେବା କରନ୍ତି ଅଷ୍ଟ କୋଣରେ ରହି
ଉପମା କି ଦେବି ତାହାଙ୍କୁ ଆଉ ଉପମା ନାହିଁ ।"

ପୁଣ ଜଗନ୍ନାଥ ଜ୍ୟୋତିରୂପେ ବରୁଣପୁରରୁ ଉଇଁ ଆସୁଥିବା ଶଶୀ ପରି ପ୍ରତିଭାତ ହେଉଛନ୍ତି । ରୂପ ଅରୂପ ସେହି ଜ୍ୟୋତିକୁ ଦେଖି ପଞ୍ଚସଖା ତାଙ୍କଠାରେ ଶରଣ ପଶିଛନ୍ତି ।

''ରୂପ ଅରୂପ ସେ ଜ୍ୟୋତିକୁ ପଞ୍ଚସଖା ଦେଖିଲୁ
ନିତ୍ୟ ମଣି ବେଦ୍ରିଂ ବରେ ସର୍ବେ ଶରଣ ଗଲୁ ।''

**ଠୁଳ ଶୂନ୍ୟରାସ**

ଏହି ରାସରେ ଶ୍ରୀରାଧା ଦୂତୀକୁ ଶୂନ୍ୟ ତତ୍ତ୍ୱ ବାଣୀ କହିଛନ୍ତି, ଯଥା –

''ଦୂତୀ ଗୋ ଷଡ଼ ଚକ୍ର ଉପରେ
ଜ୍ୟୋତି ଜଳୁଅଛି ଶୂନ୍ୟ ମନ୍ଦିରେ ।
ଝଟକ ବିଜୁଳି ପରାୟେ ଦେଖ
ନବଘନ ରୂପି ତହିଁ ନିରେଖ
ଦୂତୀ ଗୋ, ଟାକି ବସ ନିରତେ
ଠୁଳ ଶୂନ୍ୟ ରୂପ ଦେଖିବୁ ନେତ୍ରେ ।''

ମନକୁ ସ୍ଥିର କରି ରଖିଲେ କଳା କହ୍ନାଇଙ୍କ ଅପୂର୍ବ ରୂପର ଦର୍ଶନ ମିଳିପାରିବ । କବି ଏଥିରେ ସହଜ ଭାବରେ ଯୋଗସାଧନର ତତ୍ତ୍ୱ ବୁଝାଇଛନ୍ତି । ଏହି ଦୁଇଟି ରାସଗ୍ରନ୍ଥ ପ୍ରକାଶିତ ହୋଇ ନାହିଁ ।

ଏତଦ୍‌ବ୍ୟତୀତ କବିଙ୍କ ଆଉ କେତେକ ରଚନା ହେଲା 'ପିଣ୍ଡବ୍ରହ୍ମାଣ୍ଡ ଗୀତ', 'ଅଥ ତାରେଣୀ', 'ଅଣାକାର ଶବଦ', 'ଚୁମ୍ବନ ମାଳିକା', 'ଭକ୍ତି ମୁକ୍ତିଦାୟିନୀ ଗୀତା', 'ଧାମ ଛତ୍ର', 'ବୈଷ୍ଣବାଚରଣ', 'ଶିଶୁମନ୍ତ ବିଚାର' । ଏଗୁଡ଼ିକ ଅପ୍ରକାଶିତ । ତେବେ ବୈଷ୍ଣବାଚରଣ ଗ୍ରନ୍ଥଟି ବୈଷ୍ଣବମାନଙ୍କପାଇଁ ଅତି ଉପଯୋଗୀ ।

'ବୈଷ୍ଣବାଚରଣ' ଗ୍ରନ୍ଥରେ ବୈଷ୍ଣବ ଧର୍ମର ବେଶଭୂଷା, ଆଚାର ପ୍ରଣାଳୀ ବର୍ଣ୍ଣିତ । ବୈଷ୍ଣବର ଲେଙ୍ଗୁଟି, ଅଞ୍ଚଳ, ଡୋର, କଟୀ ଭିଆଣ, ଛାଲକନ୍ଥା, ସିଂଘା, ବେଣୁ, ମୟୂରଚୂଳ, ଆଶାବାଡ଼ି, ବିଭୂତି କର୍ଣ୍ଣକୁଣ୍ଡଳ, କାଇବସ୍ତ୍ର, କମଣ୍ଡଳୁ, ଜଟାଭାର ପ୍ରଭୃତି କେଉଁଠାରୁ ଉତ୍ପତ୍ତି ହୋଇଛି ବୋଲି ଶିଷ୍ୟ ଗୁରୁଙ୍କୁ ପଚାରିଛନ୍ତି । ଗୁରୁ ଉତ୍ତରରେ କହିଛନ୍ତି ଯେ ପବନ ଅଙ୍ଗରୁ ଲେଂଗୁଟି, ଯୋଗମାୟାଙ୍କଠାରୁ ଅଞ୍ଚଳ, ପୃଥିବୀଠାରୁ ଛାଲ, ଶ୍ରୀକୃଷ୍ଣଙ୍କ ପାଦରୁ କଠାଉ, ଚୈତନ୍ୟ ସ୍ୱରୂପର ଶିଂଘା, ମନରୁ ବଂଶୀଧ୍ୱନି, ଶ୍ରୀକୃଷ୍ଣଙ୍କ ବେଶରୁ ଚୂଳ, ବ୍ରହ୍ମାଙ୍କଠାରୁ ଆଶାବାଡ଼ି, ଈଶ୍ୱରଙ୍କଠାରୁ ବିଭୂତି ଓ ଶୂନ୍ୟ ମଣ୍ଡଳରୁ କର୍ଣ୍ଣକୁଣ୍ଡଳ ଉତ୍ପତ୍ତି ହୋଇଛି । ଅଙ୍ଗ ସିଦ୍ଧ ହେବାରୁ ସେମାନେ ବୈଷ୍ଣବ ବୋଲାନ୍ତି ବୋଲି ଗୁରୁ ଶିଷ୍ୟକୁ କହିଛନ୍ତି, ଯଥା –

''ସିଦ୍ଧ ଅଙ୍ଗ ଧରି ଆମ୍ଭେ ବୈଷ୍ଣବ ବୋଲାଇ
ଯେତେ କଥା ପଚାରିଲ ତାହା ଦେଲୁ କହି
ଶିଶୁଅନନ୍ତ ଯେ ଏହା ଶୂନ୍ୟରୁ ଭାଷଇ ।''

## ଭଜନ

କବି ଅନନ୍ତ ମଧ ବହୁ ଭଜନ ରଚନା କରିଛନ୍ତି । ତାଙ୍କ ଭଜନଗୁଡ଼ିକ ଅନ୍ୟ ସଖାମାନଙ୍କ ଭଜନ ଭଳି ସରଳ ଓ ହୃଦୟକୁ ସ୍ପର୍ଶ କରେ । ସେଗୁଡ଼ିକ ତେଣୁ ଜନପ୍ରିୟ ହୋଇପାରିଛି ।

ତାଙ୍କର ଭଜନ ମଧରେ 'ଅବନା ଅକ୍ଷର ଜପ' ଅନ୍ୟତମ । ଏଥିରେ କବି ମାନବକୁ ଭଗବାନ୍‌ଙ୍କ ନାମ ଜପିବାକୁ ଉପଦେଶ ଦେଇଛନ୍ତି । ନାମ ଜପ ବଳରେ କୋଟି ଜନ୍ମର ପାପ ତାପ ଦୂର ହେବ, ଯଥା –

''ଅବନା ଅକ୍ଷର ଜପ ଯିବ କୋଟି ଜନ୍ମ ପାପ
ଅସାଧନା ମାର୍ଗେ ରହି ଅମାପକୁ ହୃଦେ ମାପ ।
ଦନ୍ତ ଓଷ୍ଠ ନ ହଲିବ, ଶିର କଣ୍ଠ ନ କମ୍ପିବ
ମନ୍ତ୍ର ଯନ୍ତ୍ର ନାହିଁ ତହିଁ ଦେଖିବ ବ୍ରହ୍ମସ୍ୱରୂପ ।''

କବିଙ୍କ 'କାହିଁକିରେ ବାଇମନ ଭଙ୍ଗା ନାବ ପରେ ବସୁ' ଏକ ଉଚ୍ଚକୋଟୀର ରଚନା । ଏଥିରେ ସେ ଜଗତର ବିଷୟ ବାସନାକୁ ଭଙ୍ଗା ନାବ ସହିତ ତୁଳନା କରିଛନ୍ତି । ଜୀବନ ନଦୀରେ କାମ, କ୍ରୋଧ, ଲୋଭ, ମୋହ ପ୍ରଭୃତି ଢେଉସ୍ୱରୂପ । ଭଙ୍ଗା ନାବରେ ଗଲେ ଯେପରି ମୃତ୍ୟୁ ମୁଖରେ ପଡ଼ିବା ସାର, ସେହିପରି ଭଗବତ୍ ବିଶ୍ୱାସବିହୀନ ଜୀବନ ଯାତ୍ରା କଲେ ନାରଖାର ହେବା ସୁନିଶ୍ଚିତ । ତେଣୁ ଗୁରୁଙ୍କ ପାଦ ସେବା କରିବା ଆବଶ୍ୟକ । ଏହା ଆହୁଲା ଭଳି କାର୍ଯ୍ୟ କରେ । କବିଙ୍କ ଭାଷାରେ –

''କାହିଁକିରେ ବାଇମନ ଭଙ୍ଗାନାବ ପରେ ବସୁ
ପୀୟୂଷ ରସକୁ ଛାଡ଼ି ବିଷୟା ରସରେ ରସୁ
ଚିନ୍ତାମଣି ନାମେ କାତ ଧର ହେ ମନ ତୁରିତ
ଶ୍ରୀଗୁରୁ ପଦେ ଆହୁଲା କ୍ଷଣେ ନ ଛାଡ଼ ପାଶୁ ତ ।''

ସେହିପରି ହାଟ ଭଜନଟି ଅତୀବ ହୃଦୟସ୍ପର୍ଶୀ । ହାଟରେ ପସରା ମେଲାଇ ବଣିଆ, ଦଣ୍ଡିଆ ବସିଥାନ୍ତି । କେତେ ପ୍ରକାର ଜିନିଷ ବିକାକିଣା ହୁଏ । ହାତୀ ଖୁଣ୍ଟରେ ବନ୍ଧା ହୋଇଥାଏ । କିନ୍ତୁ ଦୁର୍ଯୋଗକୁ ହାତୀ ଫିଟିଗଲେ ହାଟ ବିପର୍ଯ୍ୟସ୍ତ ହୋଇପଡ଼େ । କବି ତାହାକୁ ସରଳ ଭାଷାରେ ପ୍ରକାଶ କରିଛନ୍ତି –

''ସୁବୁଦ୍ଧି ବଣିଆ ହାଟେ ପସରା ମେଲାଇ
ନାମକୁ ମିଶାଇ ସାହୁ ପୋଟଳା ବାନ୍ଧଇ

ମନୁ ମହାପାତ୍ର ହାଟେ ଦଣ୍ଡିଆ ହୋଇଛି
ମହାମତ୍ତ ଗଜ ହାଟ ମଧ୍ୟରେ ବାନ୍ଧିଛି
ବନ୍ଧା ଖୁଣ୍ଟ ହାତୀ ଯେବେ ଅଯୋଗେ ଫିଟିବ,
କହଇ ଅନନ୍ତ ଶିଶୁ ହାଟ ଉଜୁଡ଼ିବ ।''

'ନାମର ମହିମା ଏବେ' ଭଜନରେ କବି ନାମର ମହିମା ଗାନ କରିଛନ୍ତି । 'ହରି ଶବ୍ଦ ଭଜନ'ରେ କବି ହରି ନାମ କୀର୍ତ୍ତନ କରିଛନ୍ତି, ଯଥା –

''ହରିମୟେ ଜଗତ, ଜଗତମୟେ ହରି ।''

'ବିନ୍ଦୁ ବସାଣ' ଆଉ ଏକ ଲୋକପ୍ରିୟ ଭଜନ । ଏଥିରେ କବି ଓ ଜଗନ୍ନାଥ ଦାସଙ୍କ ମଧ୍ୟରେ ପ୍ରଶ୍ନୋତ୍ତର ରୀତିରେ ମଣିଷର ଉତ୍ପତ୍ତି ବର୍ଣ୍ଣିତ ହୋଇଛି ।

''ଅନନ୍ତ କହନ୍ତି ଶୁଣ ଗୋ ଦାସେ
ବିନ୍ଦୁ ରହିଥିଲା ମହା ଆକାଶେ
× × ×
ପିତା ବିନ୍ଦୁ ମାତା ରଜ ପଙ୍କଜ
ଦେଉଳ ଭିତରେ ଦେବତା ଭଜ ।
ଦେଉଳ ଭିତରେ ଦିଅଁ ସ୍ଥାପନ
କହନ୍ତି ଅନନ୍ତ ବିନ୍ଦୁ ବସାଣ ।''

ଶିଶୁ ଗୋସ୍ୱାମୀଙ୍କର ଉପାସନା ମନ୍ତ୍ରାଦିରୁ ଜଣାଯାଏ ଯେ ତାଙ୍କର ଆରାଧ୍ୟଦେବତା ଥିଲେ ଜଗନ୍ନାଥ । ଶିଶୁଅନନ୍ତ ବହୁ ମଠ ପ୍ରତିଷ୍ଠା କରିଥିଲେ । ସେହି ମଠଗୁଡ଼ିକରେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ପୂଜିତ ହେଉଥିବାର ଜଣାଯାଏ ।

**ଶିଷ୍ୟ**

ଅପ୍ରକାଶିତ 'ଗୁରୁ ପ୍ରଣାଳୀ'ରୁ ଜଣାଯାଏ ଯେ ଶିଶୁଅନନ୍ତଙ୍କର ପ୍ରଧାନ ଶିଷ୍ୟ ଥିଲେ ବାରଙ୍ଗ । ସେ ବିରାଟ ସାଧକ ଥିଲେ । ତାଙ୍କର ଅଲୌକିକ ସାଧନା କଥା ସେ ଅଞ୍ଚଳର ଲୋକମୁଖରେ ଶୁଣାଯାଏ । ସେ ଖଣ୍ଡଗିରିର ନିଭୃତ ନିକାଞ୍ଚନ ସ୍ଥାନରେ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଏହାଛଡ଼ା ବାଲିପାଟଣା ଓ ହରିହରପୁରରେ ସେ ମଠ ସ୍ଥାପନ କରି କାଳ ଅତିବାହିତ କରୁଥିଲେ । ହରିହରପୁର ମଠରେ ସେ ସମାଧିସ୍ଥ ହୋଇଥିଲେ । ସେଠାରେ ମଧ୍ୟ ଜଗନ୍ନାଥ ମୂର୍ତ୍ତି ପୂଜା ପାଉଛନ୍ତି । ବାରଙ୍ଗଙ୍କର ଶିଷ୍ୟ ଖୁଣ୍ଟିଆ ବଂଶର ସେବକମାନେ ସେହି ମଠର କାର୍ଯ୍ୟ ବୁଝାବୁଝି କରୁଛନ୍ତି ।

ସିଦ୍ଧ ବାରଙ୍ଗ 'ବ୍ରହ୍ମକୁଣ୍ଡଳୀ' ନାମକ ଗ୍ରନ୍ଥ ରଚନା କରିଥିଲେ । ବୈଷ୍ଣବ ଧର୍ମ ଗ୍ରନ୍ଥ ମଧ୍ୟରେ ଏହା ଏକ ତତ୍ତ୍ୱମୂଳକ ଗ୍ରନ୍ଥ । ଦ୍ୱିତୀୟ ଅଧ୍ୟାୟରେ ସେ ଗୁରୁ ଅନନ୍ତଙ୍କ ବିଷୟ ବର୍ଣ୍ଣନା କରିଛନ୍ତି, ଯଥା –

''ବେଲ ବରୁଣ ମୂଳେ ଗର୍ଭ ଜାତ।ସେତେବେଳେ ଜାତ ଅନନ୍ତ ।।
କନକ ଚମ୍ପା ପ୍ରାୟେ ସ୍ୱାମୀ ବର୍ଣ୍ଣ ।ଅନାଦି ଦେଇଥିଲେ ତତ୍ତ୍ୱ ଜ୍ଞାନ।।
ସପ୍ତ ବରଷ ହେଲେ ନିରାହାର ।ବସିଲେ ମଣିକୁଟର ଗୁମ୍ଫାର ।।''

ଶିଶୁଅନନ୍ତ ଅନାଦିଙ୍କଠାରୁ ଯେଉଁ ଜ୍ଞାନ ପାଇଥିଲେ ତାହା ଶିଷ୍ୟ ବାରଙ୍ଗଙ୍କୁ ଦେବା କଥା ଏଥିରେ ଉଲ୍ଲେଖ ଅଛି, ଯଥା –

''ଅନାଦି ଆଖ୍ୟା କରିଥିଲେ ଯାହା । ସତ୍ୟ ଅନନ୍ତ ମୋତେ ଦେଲେ ତାହା ।''

ଗୁରୁଙ୍କ ନିର୍ଦ୍ଦେଶରେ ବାରଙ୍ଗ ଯୋଗସାଧନ କଲେ । ସେ ପାଦୁକା ସିଦ୍ଧି ଲାଭ କରିଥିଲେ ।

''ଲଭିଲେ ଚୁତଫଳ ଅବସନ୍ତେଣ ବସନ୍ତ ।
ଲଭିଲେ ଦାସ ବାରଙ୍ଗ ଉଦ୍ଧର ଅନନ୍ତ ।''

ଶିଶୁଅନନ୍ତଙ୍କ ଆଉ ଜଣେ ଶିଷ୍ୟ ଥିଲେ । ସେ ହେଉଛନ୍ତି ହଂସ ଦାସ । ତାଙ୍କର ତେନ୍ତୁଳିଆପଦା ଗ୍ରାମ ନିକଟରେ ଗୋଟିଏ ଗାଦି ରହିଛି । ଏହି ଗାଦିଟି ହଂସଦାସ ଗାଦି ନାମରେ ପରିଚିତ । ହଂସ ଦାସ ମଧ୍ୟ ଗୁରୁ ଅନନ୍ତଙ୍କ ଭଳି ତତ୍ତ୍ୱମୂଳକ ଭଜନମାନ ରଚନା କରିଛନ୍ତି ।

ଶିଶୁଅନନ୍ତ ମଧ୍ୟ ଜଗତ୍‌ସିଂହପୁର ନିକଟବର୍ତ୍ତୀ ପୋକପୁର ଓ ଚାନ୍ଦଗାଁ ମକୁରାଇ ନିକଟବର୍ତ୍ତୀ ତପୋବନରେ ଗାଦି ପ୍ରତିଷ୍ଠା କରିଥିବାର ଜଣାଯାଏ । ସବୁ ଗାଦିରେ ସାର୍ବଜନୀନ ମହାପ୍ରସାଦ ସେବାର ପରମ୍ପରା ରହଛି । ଶିଶୁଅନନ୍ତଙ୍କ ଆବିର୍ଭାବ ସ୍ଥଳୀ ବାଲିପାଟଣାର ପତିତପାବନ ମନ୍ଦିରରେ ସବୁ ଜାତି ଓ ବର୍ଣ୍ଣର ଲୋକେ ଏକତ୍ର ମହାପ୍ରସାଦ ସେବନ କରନ୍ତି । ଜଗଦ୍‌ସିଂହପୁର ନିକଟବର୍ତ୍ତୀ ପୋକପୁର ଗାଦିରେ ପ୍ରତିବର୍ଷ ମାର୍ଗଶିର ମାସରେ ଏକ ବିରାଟ ମେଳା ହୁଏ । ଏଥିରେ ବ୍ରାହ୍ମଣ, ଚଣ୍ଡାଳ ସମସ୍ତଙ୍କର ସମାନ ଅଧିକାର ଥାଏ । ସମସ୍ତେ ଦେଇଥିବା ପଦାର୍ଥମାନଙ୍କରେ ମହାପ୍ରସାଦ ରନ୍ଧା ହୁଏ ଓ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତେ ଏକତ୍ର ମହାପ୍ରସାଦ ସେବନ କରନ୍ତି ।

ଓଡ଼ିଶାର ବହୁ ସ୍ଥାନରେ ଏହିଭଳି ମଠ ବା ଗାଦିପୀଠମାନ ଶିଶୁଅନନ୍ତ ଓ ତାଙ୍କ ଶିଷ୍ୟମାନଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିବାର ଅନୁମାନ କରାଯାଏ ।

ଶିଶୁଅନନ୍ତଙ୍କ ସଂପ୍ରଦାୟରେ ଦୀକ୍ଷିତ ବହୁ ପରିବାର ସୁଦୂର ସଢ଼େଇକଳା ଓ ଖରସୁଆଁ ପ୍ରଭୃତି ଅଞ୍ଚଳରେ ଥିବାର ଗବେଷକ ଡଃ ନଗେନ୍ଦ୍ରନାଥ ପ୍ରଧାନ ଉଲ୍ଲେଖ କରିଛନ୍ତି । ଶିଶୁଅନନ୍ତ ଯେ ଗୁରୁ ଶ୍ରୀଚୈତନ୍ୟ ବା ଅନ୍ୟାନ୍ୟ ପଞ୍ଚସଖାମାନଙ୍କ ପରି ଓଡ଼ିଶାର ବହୁ ଅଞ୍ଚଳ ପରିଭ୍ରମଣ କରି ସଂପ୍ରଦାୟମାନ ପ୍ରତିଷ୍ଠା କରିଥିଲେ, ଏହା ନିଃସନ୍ଦେହ ।

ଶିଶୁଅନନ୍ତଙ୍କର କେବେ ମହାପ୍ରୟାଣ ହେଲା ତାହା ଅଜ୍ଞାତ ଅଛି । ତେବେ ବାଲିପାଟଣାଠାରେ ଶିଶୁଅନନ୍ତଙ୍କ ଗାଦି ଓ ସମାଧି ପୀଠ ରହିଛି । ଏହା ଶିଶୁ ମଠ ନାମରେ ପରିଚିତ । ଏହି ସମାଧି ପୀଠ ବହୁ କାଳ ଧରି ଅବହେଳିତ ଅବସ୍ଥାରେ ଥିଲା । ଏବେ ଶିଶୁଅନନ୍ତ ସ୍ମୃତି ସଂସଦର ସମ୍ପାଦିକା ତନୟା ଦାସ ଗୋସ୍ୱାମୀଙ୍କ ସାଙ୍ଗଠନିକ ଦକ୍ଷତା ଓ କର୍ମ ତତ୍ପରତାଦ୍ୱାରା ପୀଠର ସର୍ବାଙ୍ଗୀଣ ଉନ୍ନତି ହୋଇଅଛି । ଶଶୁଅନନ୍ତଙ୍କ ଜନ୍ମତିଥି ମହାସମାରୋହରେ ପାଳିତ ହୋଇଆସୁଅଛି ।

ଉତ୍କଳୀୟ ବୈଷ୍ଣବ ସଂସ୍କୃତିକୁ ଶିଶୁଅନନ୍ତଙ୍କର ଅବଦାନ ଅବିସ୍ମରଣୀୟ । ଓଡ଼ିଶାର ଧର୍ମ ଓ ସାହିତ୍ୟକୁ ତାଙ୍କର ଦାନ ମଧ ଅତୁଳନୀୟ ।

# ରସିକକବି
# ଦୀନକୃଷ୍ଣ

ଯେଉଁ ଉତ୍କଳୀୟ ସାହିତ୍ୟିକ ଓ କବିବୃନ୍ଦ ମଧ୍ୟଯୁଗୀୟ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି, ଯେଉଁମାନଙ୍କ ସାଧନା ଫଳରେ ଓଡ଼ିଆ ସାହିତ୍ୟରେ ଧର୍ମ ରସର କଲ୍ଲୋଳ ସୃଷ୍ଟି ହୋଇଛି, ସେହି କୃତୀ ସନ୍ତାନମାନଙ୍କ ମଧ୍ୟରେ ଦୀନକୃଷ୍ଣ ଦାସ ଅଗ୍ରଗଣ୍ୟ । ନିଜର କାବ୍ୟକବିତାଗୁଡ଼ିକରେ ରୂପ ସହିତ ଅରୂପର, ଲୌକିକ ସହିତ ଅଲୌକିକର, ନିବିଡ଼ ବାସ୍ତବ ଜୀବନ ସହିତ କଳ୍ପଲୋକଙ୍କ ସମ୍ପର୍କ ସେ ଯେପରି ସ୍ଥାପନ କରିଛନ୍ତି, ତାହା ବାସ୍ତବିକ ମନରେ ବିସ୍ମୟ ସୃଷ୍ଟି କରେ । ଦୀନକୃଷ୍ଣ ହେଉଛନ୍ତି ରୀତିଯୁଗର ଏକ ପ୍ରଚଣ୍ଡ ପ୍ରତିଭା ।

### ଜନ୍ମ ସମୟ

ଦୀନକୃଷ୍ଣଙ୍କ ଜନ୍ମ ସମୟ ଏ ପର୍ଯ୍ୟନ୍ତ ଠିକ୍‌ଭାବେ ନିରୂପଣ କରାଯାଇପାରି ନାହିଁ । ଏ ବିଷୟରେ ବହୁ ମତ ଅଛି । ଓଡ଼ିଶାର ପ୍ରଖ୍ୟାତ ଇଂରେଜୀ ଐତିହାସିକ ତଥା ପ୍ରଶାସକ ଜନ୍ ବୀମ୍‌ସଙ୍କ ମତରେ କବି ଦୀନକୃଷ୍ଣ ୧୪୭୮ ସାଲରୁ ୧୫୦୩ ମଧ୍ୟରେ ଗଜପତି ପୁରୁଷୋତ୍ତମଦେବଙ୍କ ସମୟରେ 'ରସକଲ୍ଲୋଳ' ରଚନା କରିଥିଲେ । ଭୋଇବଂଶର ରାଜା ଚକ୍ରପ୍ରତାପଙ୍କ ସମୟରେ ଦୀନକୃଷ୍ଣ ଜୀବିତ ଥିଲେ ବୋଲି ବଙ୍ଗଳାର ବିଶିଷ୍ଟ ସାହିତ୍ୟିକ ତଥା ସମାଲୋଚକ ବିଜୟଚନ୍ଦ୍ର ମଜୁମଦାର ଅନୁମାନ କରିଛନ୍ତି । ସେ ଦୀନକୃଷ୍ଣଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ କିଞ୍ଚିତ୍ ପରବର୍ତ୍ତୀକାଳର କବି ବୋଲି ଉତ୍କଳ ମାସିକ ପତ୍ରିକାରେ ଉଲ୍ଲେଖ କରିଛନ୍ତି । ଡଃ ମାୟାଧର ମାନସିଂହ କବିଙ୍କ ସମୟ ୧୪୨୮ରୁ ୧୭୧୩ ମସିହା ଭିତରେ ନିରୂପଣ କରିଛନ୍ତି । ବିଶିଷ୍ଟ ଗବେଷକ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ପ୍ରାଚୀ ସମିତି ଆନୁକୂଲ୍ୟରେ ସମ୍ପାଦିତ 'ରସକଲ୍ଲୋଳ'ର ମୁଖବନ୍ଧରେ ତାଙ୍କର ଜନ୍ମ ସମୟ ୧୬୫୧ରୁ ୧୭୧୩ ମଧ୍ୟରେ ବୋଲି ମତ ଦେଇଛନ୍ତି । କବି ଗଜପତି ଦିବ୍ୟସିଂହଦେବ (୧୬୮୬-୧୭୧୩)ଙ୍କ ସାମସମୟିକ ବୋଲି କହିଛନ୍ତି । ଦୀନକୃଷ୍ଣଙ୍କ ରଚିତ 'ନାମରତ୍ନ ଗୀତା'ରୁ ତାଙ୍କର ଜନ୍ମ କାଳ ଅନୁମାନ କରିହୁଏ । ସେ ଗଜପତି ରାଜା ଦିବ୍ୟସିଂହଦେବଙ୍କ ରାଜତ୍ୱର ସପ୍ତଦଶ ଅଙ୍କରେ ସେହି ଗ୍ରନ୍ଥଟି ଶେଷ କରିଥିଲେ ।

ସେ ତାହା ଉଲ୍ଲେଖ କରିଛନ୍ତି –

"ଯେଉଁ କାଳେ ସପ୍ତଦଶ ଅଙ୍କ ହେବ ଜାଣ
ଯୁଧିଷ୍ଠିର ନାମେ ଏକ ଦିବ୍ୟସିଂହରାଣ
ମୋହ ନାମ ରତ୍ନ ଗୀତା ହୋଇବ ପ୍ରକାଶ
ଦୀନକୃଷ୍ଣ ବୋଲେ ଏହା ଭାଳି ପୀତବାସ ।"

ଦିବ୍ୟସିଂହଦେବ ୧୬୮[illegible]ରେ ସିଂହାସନ ଆରୋହଣ କରିଥିଲେ । ଏହାଙ୍କ ୧୭ ଅଙ୍କ ହେଉଛି ୧୭୦୨ ଖ୍ରୀଷ୍ଟାବ୍ଦ । ସୁତରାଂ କବିଙ୍କୁ ସେତେବେଳକୁ ତିରିଶ ବର୍ଷ ହୋଇଥିବା ଅନୁମାନ କରାଯାଏ । ସୁତରାଂ ସେ ୧୬୭୦ ଆଡ଼କୁ ଜନ୍ମ ଗ୍ରହଣ କରିଥିବା ସମ୍ଭବ ।

## ଜନ୍ମସ୍ଥାନ

କବି ତାଙ୍କର ବ୍ୟକ୍ତିଗତ ପରିଚୟ ସ୍ୱରଚିତ 'ରସ ବିନୋଦ' ଗ୍ରନ୍ଥରେ ଦେଇଛନ୍ତି । ସେ ତାଙ୍କର ଗ୍ରାମ ବିଷୟ ଉଲ୍ଲେଖ କରିଛନ୍ତି –

"ସୁବର୍ଣ୍ଣରେଖା ନଦୀ ତୀର
କଟକ ନାମେ ଜଳେଶ୍ୱର
ସପତ ପୁରୁଷ ମୋ ତହିଁ
ଗଲା ଯେ କେତେ କାଳ ବହି
× × ×
ବନ୍ଧୁ କୁଟୁମ୍ବ ତହିଁ ଯେତେ
ରହିଣ ଅଛନ୍ତି ସମସ୍ତେ
ତଣିଆ ରାଜ୍ୟର ନିକଟେ
କ୍ଷୋଳ ଚଉଦ ଦଣ୍ଡପାଟେ ।"

ଏଥିରୁ ଜଣାଯାଏ ଯେ ଦୀନକୃଷ୍ଣଙ୍କ ପୂର୍ବପୁରୁଷମାନେ ସୁବର୍ଣ୍ଣରେଖା ନଦୀ ତୀରସ୍ଥ ଜଳେଶ୍ୱର ନିକଟବର୍ତ୍ତୀ ତଣିଆ ଗ୍ରାମରେ ରହୁଥିଲେ । ସେ ଜାତିରେ ରାଜପୁତ ବା କ୍ଷତ୍ରିୟ ଥିଲେ । କବି କିନ୍ତୁ 'ରସବିନୋଦ' ରଚନା କରିଥିବା ସମୟରେ ବ୍ରାହ୍ମଣୀ ନଦୀ କୂଳସ୍ଥ ଏକଘରିଆ ନାମକ ଗ୍ରାମରେ ବାସ କରୁଥିଲେ । ତାହାଙ୍କ ପିତାଙ୍କ ନାମ ଥିଲା ମଧୁସୂଦନ । ଜଗନ୍ନାଥଙ୍କ ଅନୁଗ୍ରହରୁ କବି ପଦ ଯୋଡ଼ିବାକୁ ସମର୍ଥ ହେଲେ ।

କବି ଏହାପରେ ଜଗନ୍ନାଥଙ୍କ ଦର୍ଶନପାଇଁ ପୁରୀ ଆସିଲେ । ସେ 'ରସବିନୋଦ' ଗ୍ରନ୍ଥରେ ତାହା ଉଲ୍ଲେଖ କରିଛନ୍ତି –

"ହୃଦରେ ଅନୁରାଗ କଲେ
ଦକ୍ଷିଣ ଦିଗକୁ ଆଣିଲେ
ଦେଖିଲି ଓଡ଼ ରାଷ୍ଟ୍ର ଦେଶ
ଓଡ଼ିଶା ଭୂମିରେ ପ୍ରବେଶ
ଦେଖିଲି ଶ୍ରୀପୁରୁଷୋତ୍ତମ
କ୍ଷେତ୍ରମାନଙ୍କେ ଯେ ଉତ୍ତମ ।"

ସମ୍ଭବତଃ, ସେ ବହୁକାଳ ପୁରୀରେ ଅବସ୍ଥାନ କରିଥିଲେ । ଏହି କାରଣରୁ ତାଙ୍କୁ 'ଦାର୍ଢ୍ୟତାଭକ୍ତି'ରେ ପୁରୀବାସୀ ବୋଲି କୁହାଯାଇଛି, ଯଥା –

"ପୁରୁଷୋତ୍ତମରେ ବାସ
ନାମ ତାହାର କୃଷ୍ଣଦାସ,
ଜାତିରେ ଅଟଇ କରଣ
ପଣ୍ଡିତ ବିବେକ ସୁଜାଣ ।"

ଏହି କାରଣରୁ ଇଂରେଜୀ ଐତିହାସିକ ହଣ୍ଟରଙ୍କଠାରୁ ତାରିଣୀଚରଣ ରଥ ପର୍ଯ୍ୟନ୍ତ ସମସ୍ତ ଆଲୋଚକମାନେ ତାଙ୍କୁ ପୁରୀବାସୀ କରଣଭାବେ ଗ୍ରହଣ କରିଛନ୍ତି ।

## ରାଜାଙ୍କ ଅନୁରୋଧ

କବି ପୁରୀରେ ଥିଲାବେଳେ ଗ୍ରନ୍ଥ ରଚନାରେ ଲାଗିପଡ଼ିଥିଲେ । ସମ୍ଭବତଃ, ସେ 'ଜଗମୋହନ ଛାନ୍ଦ' ଓ 'ରସକଲ୍ଲୋଳ' ପୁରୀରେ ରଚନା କରିଥିଲେ । ସେତେବେଳେ ପୁରୀରେ ରାଜା ଥିଲେ ଦିବ୍ୟସିଂହଦେବ । ସେ ଦୀନକୃଷ୍ଣଙ୍କର ପାଣ୍ଡିତ୍ୟର ପରିଚୟ ପାଇ ତାଙ୍କ ନାମରେ କବିତା ଲେଖି ଭଣିତା କରିବାକୁ ଅନୁରୋଧ କଲେ । 'ଦାର୍ଢ୍ୟତା ଭକ୍ତି'ରେ ଏହା ବର୍ଣ୍ଣିତ ଅଛି –

"ଶୁଣ ହେ କବି କୃଷ୍ଣଦାସ
× × ×
ସୁନ୍ଦର ମଧୁର କଠିନ
ଗୀତ କରିଣ ମୋତେ ଭଣ ।"

କବି କିନ୍ତୁ ଦୃଢ଼ତାର ସହ ତାକୁ ପ୍ରତ୍ୟାଖ୍ୟାନ କରିଛନ୍ତି –

"ବୋଇଲା ଶୁଣ ନୃପନାଥ
କେବଳ ଦେବି ଜଗନ୍ନାଥ
ଏ ପିଣ୍ଡ ବିକିଅଛି ତା'ରେ
ଗୀତ ମୁଁ ନ ଦେବି ଅନ୍ୟରେ ।"

ଏକଥା ଶୁଣି ମଧ୍ୟ ରାଜା ଦିବ୍ୟସିଂହଦେବ ତାଙ୍କ ଚେଷ୍ଟାରୁ ନିବୃତ୍ତ ହୋଇ ନ ଥିଲେ । ସେ ପୁଣି ତାଙ୍କୁ ପ୍ରଲୋଭନ ଦେଖାଇଥିବା କଥା 'ଦାର୍ଢ୍ୟତାଭକ୍ତି'ରେ ଉଲ୍ଲେଖ ଅଛି ।

"ମୋ ନାମେ ଭଣିଲେ ଅବଶ୍ୟ
ଅନେକ ଦେବି ଗ୍ରାମ ଦେଶ
ମୋ ରାଜ୍ୟେଦେବି ଅଧିକାର
ଦେଖ ମୁଁ ଜଗତ ଈଶ୍ୱର ।"

ରାଜା ମଧ୍ୟ ତାଙ୍କୁ ଭୟ ଦେଖାଇଲେ --

"ନୋହିଲେ ମରିବୁ ଅବଶ୍ୟ
ଛାଡ଼ ତୋ ଜୀବନର ଆଶ ।
କେ ଆସି ରଖିବଟି ତୋତେ,
ଏହା ତୁ କହୁଅଛୁ ମୋତେ ।"

ରାଜଧମକରେ ମଧ୍ୟ ଦୀନକୃଷ୍ଣ ବିଚଳିତ ହୋଇ ନ ଥିଲେ । ସେ ତାଙ୍କ ମତରେ ଅଟଳ ରହିଲେ । ନିର୍ଭୀକ ଭାବରେ ଉତ୍ତର ମଧ୍ୟ ଦେଲେ –

"ତୁମ୍ଭଙ୍କୁ ମୋର ନାହିଁ ଡର,
ମୋ ପ୍ରଭୁ ବଳେ ବଳିୟାର ।
ଜଗତ ସୃଷ୍ଟି ଆନ ହେଲେ
ଗୀତ ମୁଁ ଆନକୁ ନ ବୋଲେ ।"

'ଦାର୍ଢ୍ୟତାଭକ୍ତି'ରୁ ଜଣାଯାଏ ଯେ ରାଜା ଏଥିରେ କ୍ରୋଧାନ୍ୱିତ ହୋଇ କବିଙ୍କୁ ବନ୍ଦିଶାଳାରେ ରଖିଲେ । ତାଙ୍କ ଉପରେ ବହୁ ଅତ୍ୟାଚାର ମଧ୍ୟ କରାଗଲା । ଦୀନକୃଷ୍ଣ ବନ୍ଦିଶାଳାରେ ଥାଇ ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇଲେ । ଭକ୍ତର ଡାକ ଭଗବାନ୍ ଶୁଣିଲେ । ନିଜେ ଜଗନ୍ନାଥ ରାତ୍ରିରେ ବନ୍ଦିଶାଳାରେ ପ୍ରବେଶ କରି ଖାଦ୍ୟପ୍ରଦାନ କଲେ । ବନ୍ଦିଶାଳାରୁ ତାଙ୍କୁ ଶୀଘ୍ର ମୁକ୍ତ କରିବାପାଇଁ ରାଜାଙ୍କୁ ଆଦେଶ ଦେଲେ । ରାଜାଙ୍କର ଆଜ୍ଞା ପାଇ କର୍ମଚାରୀମାନେ ଦୀନକୃଷ୍ଣଙ୍କୁ ମୁକ୍ତ କରିବାକୁ ଗଲେ । ତାଙ୍କ ଗୋଡ଼ର ଶୃଙ୍ଖଳ କିନ୍ତୁ ଛିନ୍ନ ହୋଇଥିବାର ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ଦିବ୍ୟସିଂହଦେବ ନିଜ କର୍ମପାଇଁ କବିଙ୍କଠାରେ କ୍ଷମାଭିକ୍ଷା କଲେ । ତାଙ୍କୁ ଚଳିବାପାଇଁ ବହୁ ଧନରତ୍ନ ଦେଲେ ।

## କବି ସମସ୍ୟା

ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ ନାମରେ ଏକାଧିକ କବି ଥିବା ଜଣାଯାଏ । ପ୍ରଖ୍ୟାତ ଗବେଷକ ଡଃ ଆର୍ତ୍ତବଲ୍ଲଭ ମହାନ୍ତି, ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ, ଡଃ ମାୟାଧର ମାନସିଂହ ପ୍ରଭୃତି ଦୀନକୃଷ୍ଣ ଦାସ ଏକ ଓ ଅଭିନ୍ନ ବୋଲି କହିଥିଲାବେଳେ ପଣ୍ଡିତ ବିନାୟକ ମିଶ୍ର, ବଙ୍ଗଳାର ସାହିତ୍ୟିକ ତଥା ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାର, ଅପର୍ଣ୍ଣା ପଣ୍ଡା, ତାରିଣୀ ଚରଣ ରଥ, ହରେକୃଷ୍ଣ ମହତାବ ପ୍ରଭୃତି ଦୁଇ ଜଣ ଦୀନକୃଷ୍ଣ ଦାସ ଥିବା ମତ ଦେଇଛନ୍ତି । ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ମଧ୍ୟ ଦୁଇ ଜଣ ଦୀନକୃଷ୍ଣ ଦାସ ଥିବା ମତକୁ ଗ୍ରହଣ କରିଛନ୍ତି । କେହି କେହି ଆଲୋଚକ ଦୁହିଁଙ୍କୁ ଭିନ୍ନ ଭିନ୍ନ ଶତାବ୍ଦୀର ବ୍ୟକ୍ତି ବୋଲି କହିଛନ୍ତି ।

ଦୁଇଜଣିଆ ମତବାଦୀମାନଙ୍କର ଯୁକ୍ତି ହେଲା – ପ୍ରଥମତଃ, 'ରସକଲ୍ଲୋଳ'ର ରଚୟିତା କବି ଦୀନକୃଷ୍ଣ ଷୋଡ଼ଶ ଶତାବ୍ଦୀରେ ଜୀବିତ ଥିଲେ । ମାତ୍ର 'ରସବିନୋଦା'କାର ଦୀନକୃଷ୍ଣ ତା'ର ଦୁଇ ଶହ ବର୍ଷ ପର, ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀର ବ୍ୟକ୍ତି । ରସକଲ୍ଲୋଳର ଲେଖକ ଅତିଶୟ ଦୁଃସ୍ଥ ଜୀବନ କଟାଉଥିଲେ । ମାତ୍ର 'ରସବିନୋଦ'ରେ ସେପରି ଅଭାବ ଅନଟନର ଚିତ୍ର ନାହିଁ । ଦ୍ୱିତୀୟରେ 'ରସବିନୋଦ' ଓ 'ରସକଲ୍ଲୋଳ' ଉଭୟ ରଚନା ଶୈଳୀରେ ପାର୍ଥକ୍ୟ ଦେଖାଯାଏ । 'ରସକଲ୍ଲୋଳ'ର ଆଳଙ୍କାରିକ ସୌନ୍ଦର୍ଯ୍ୟ, ଲଳିତ ପଦବିନ୍ୟାସ ଓ କୋମଳ ପଦାବଳୀ ଓଡ଼ିଆ ସାହିତ୍ୟରେ ଦୁର୍ଲଭ । ମାତ୍ର 'ରସବିନୋଦ'ରେ କବିଙ୍କର ନୈସର୍ଗିକ ପ୍ରତିଭା ଥିଲାପରି ଜଣାଯାଏ ନାହିଁ । ଅକ୍ଷର ଗଣି ଗଣି ପଦ ଲେଖିବା ପରି ହୋଇଛି, ଯଥା –

''ଅକ୍ଷର ଗଣିବ ହାତରେ
ତେବେ ସେ ଲେଖିବ ପଦରେ ।''

ବଙ୍ଗଳାର ସାହିତ୍ୟିକ ତଥା ସମାଲୋଚକ ବିଜୟଚନ୍ଦ୍ର ମଜୁମଦାରଙ୍କ ଭାଷାରେ 'ରସବିନୋଦ'ର କବି କେବଳ ଅକ୍ଷରକୁ ଅକ୍ଷର ମିଳାଇ ଯାହା ଲେଖିଛନ୍ତି ତାହା କବିତ୍ୱ ପ୍ରତିପାଦନ କରୁ ନାହିଁ ।'' ପୁଣି ତାଙ୍କ ମତରେ ରସକଲ୍ଲୋଳାକାର ମଧୁର ପ୍ରେମଭକ୍ତି ମାର୍ଗର ସାଧକ ହୋଇଥିଲାବେଳେ ରସବିନୋଦାକାର ଯୋଗମାର୍ଗର ସାଧକ ଅଟନ୍ତି । ତୃତୀୟରେ, ରସବିନୋଦର ଲେଖକ ଦୀନକୃଷ୍ଣ ବାଲେଶ୍ୱର ନିକଟବର୍ତ୍ତୀ ସ୍ଥାନର ବାସିନ୍ଦା । ସେଥିରେ 'ଗୁଡ଼ିଏ' ପ୍ରଭୃତି ବାଲେଶ୍ୱର ଅଞ୍ଚଳର ଭାଷା ପ୍ରୟୋଗ ହୋଇଅଛି । 'ରସକଲ୍ଲୋଳ'ରେ 'ଆସିବାକୁ' 'ଡାକିବାକୁ' ପ୍ରଭୃତି ଶବ୍ଦର ବ୍ୟବହାର

ଦୃଷ୍ଟିରୁ ତାଙ୍କୁ ବାଲେଶ୍ୱର ବାସିନ୍ଦାଭାବେ ଧରାଯାଇ ନ ପାରେ । ଦାର୍ଢ୍ୟତାଭକ୍ତିକାର ରାମଦାସଙ୍କ ମତରେ ଦୀନକୃଷ୍ଣ ପୁରୀ ସହରର ଲୋକ ଓ ସେ ଜାତିରେ କରଣ ଥିଲେ । ଚତୁର୍ଥରେ, 'ରସବିନୋଦ' ରଚୟିତା ଦୀନକୃଷ୍ଣ ତାଙ୍କ ରଚିତ ସମସ୍ତ କାବ୍ୟକବିତାର ନାମ ପ୍ରଦାନ କରିଛନ୍ତି । ଏଥିରେ 'ରସକଲ୍ଲୋଳ' ପ୍ରଭୃତି କେତେକ ଗ୍ରନ୍ଥର ନାମ ଉଲ୍ଲେଖ ନାହିଁ । ସେହି ଦୃଷ୍ଟିରୁ 'ରସକଲ୍ଲୋଳ'ର ରଚୟିତା ରସବିନୋଦର ରଚୟିତା ଏକ ନୁହନ୍ତି ।

ପ୍ରଖ୍ୟାତ ଗବେଷକ ଡଃ ଆର୍ତ୍ତବଲ୍ଲଭ ମହାନ୍ତି କିନ୍ତୁ ରସକଲ୍ଲୋଳାକାର ଓ ରସବିନୋଦାକାରଙ୍କ ମଧ୍ୟରେ ଭିନ୍ନତା ଦେଖି ନାହାନ୍ତି । 'ରସକଲ୍ଲୋଳ' କାବ୍ୟର ମୁଖବନ୍ଧରେ ସେ ଏହି ଯୁକ୍ତିର ଅସାରତା ପ୍ରତିପାଦନ କରିଛନ୍ତି । 'ରସକଲ୍ଲୋଳ' ଓ 'ରସବିନୋଦ' ଶୈଳୀର ତାରତମ୍ୟ ବିଷୟରେ ସେ କହିଛନ୍ତି ଯେ ରସବିନୋଦ ଏକ ଧର୍ମଗ୍ରନ୍ଥ ହୋଇଥିଲାବେଳେ 'ରସକଲ୍ଲୋଳ' ଏକ କାବ୍ୟ । ତେଣୁ ଦୁହିଁଙ୍କ ଶୈଳୀ ଓ କବିତ୍ୱ ମଧ୍ୟରେ ପ୍ରଭେଦ ରହିବା ସ୍ୱାଭାବିକ । ପୁଣି ଅତ୍ୟାଧୁନିକ ଯୁଗର କବିମାନଙ୍କର ପ୍ରଥମ ପର୍ଯ୍ୟାୟର ରଚନା ଓ ପରବର୍ତ୍ତୀ ପର୍ଯ୍ୟାୟର ରଚନାଗୁଡ଼ିକ ମଧ୍ୟରେ ଶୈଳୀଗତ ପାର୍ଥକ୍ୟ ସୁସ୍ପଷ୍ଟ । ସୁତରାଂ ରଚନା ଶୈଳୀର ଭିନ୍ନତା ଦୃଷ୍ଟିରୁ ସ୍ରଷ୍ଟାଙ୍କ ସମ୍ବନ୍ଧରେ ସନ୍ଦିହାନ ହେବା ବିଜ୍ଞତାର କାର୍ଯ୍ୟ ନୁହେଁ । ଦ୍ୱିତୀୟରେ, 'ରସବିନୋଦ' ଗ୍ରନ୍ଥରେ ଯେଉଁସବୁ ଗ୍ରନ୍ଥର ତାଲିକା ଅଛି, ସେଥିରେ ରସକଲ୍ଲୋଳ ଓ କମଳାକାନ୍ତ ଛାନ୍ଦର ନାମ ଅବଶ୍ୟ ନାହିଁ । ମାତ୍ର ତାହା ଉଭୟ ଗ୍ରନ୍ଥାକାରଙ୍କ ଭିନ୍ନତା ପ୍ରମାଣିତ କରୁ ନାହିଁ । ସମ୍ଭବତଃ, କବି 'ରସବିନୋଦ' ରଚନା କରିବା ପରେ 'ରସକଲ୍ଲୋଳ' ରଚନା କରିଥିଲେ । ପୁଣି 'ରସବିନୋଦ' ଗ୍ରନ୍ଥରେ ପ୍ରଦତ୍ତ ତାଲିକାରେ 'ଜଗମୋହନ ଛାନ୍ଦ' ନାମକ କାବ୍ୟ ଅଛି । ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଏହି 'ଜଗମୋହନ ଛାନ୍ଦ' ଓ ତାଲିକାରେ ନ ଥିବା 'ରସକଲ୍ଲୋଳ' ମଧ୍ୟରେ ଅପୂର୍ବ ସାମ୍ୟତା ଦେଖିପାରିଛନ୍ତି । ସେ ମଧ୍ୟ ଏହି ସାମ୍ୟତାକୁ ସମ୍ପାଦିତ 'ଜଗମୋହନ ଛାନ୍ଦ'ର ମୁଖବନ୍ଧରେ ସନ୍ନିବେଶିତ କରିଛନ୍ତି । ଏପରିକି ପ୍ରଖ୍ୟାତ ଗବେଷକ 'ରସବିନୋଦ' ଗ୍ରନ୍ଥର ବହୁପଦ ସହିତ 'ରସକଲ୍ଲୋଳ'ର କେତେକ ପଦ ସହିତ ସାମ୍ୟ ଥିବାର ଦୃଷ୍ଟିକୁ ଆଣିଛନ୍ତି । ସେହିପରି 'ରସବିନୋଦ' ଗ୍ରନ୍ଥସୂଚୀରେ ଥିବା 'ଅମୃତସାଗର' ବୋଲିର ପ୍ରଥମ ଛାନ୍ଦର କେତେକ ପଦ ସହିତ ରସକଲ୍ଲୋଳର ଭାଷା ଓ ଶୈଳୀର ଅପୂର୍ବ ସାମ୍ୟତା ଥିବା ଲକ୍ଷ୍ୟ କରିଛନ୍ତି । ତୃତୀୟରେ, ଡଃ ମହାନ୍ତିଙ୍କ ମତରେ ଉଭୟ 'ରସବିନୋଦ' ଓ 'ରସକଲ୍ଲୋଳ'ର ରଚୟିତା ସପ୍ତଦଶ ଶତାବ୍ଦୀର ଶେଷଭାଗ ଓ ଅଷ୍ଟାଦଶ ଶତାବ୍ଦୀର ପ୍ରଥମଭାଗ (ଅର୍ଥାତ୍ ୧୬୬୨-୧୭୨୮)ର ଲୋକ ହୋଇଥିବାରୁ ଉଭୟଙ୍କୁ ଏକ ଓ ଅଭିନ୍ନ ବୋଲି

ମନେ କରିବା ଯୁକ୍ତିଯୁକ୍ତ । ଉଭୟେ ମଧ୍ୟ ପୁରୀକୁ ଶ୍ରେଷ୍ଠ କ୍ଷେତ୍ର ବୋଲି ପ୍ରତିପାଦିତ କରିଥିବା ଜଣାଯାଏ । ଶେଷରେ, ଧର୍ମମତ ଦୃଷ୍ଟିରୁ ରସବିନୋଦାକାରଙ୍କୁ ଜ୍ଞାନମିଶ୍ରା ଓ ରସକଲ୍ଲୋଳାକାରଙ୍କୁ ଶୁଦ୍ଧ ପ୍ରେମଭକ୍ତିର ଉପାସକ ବୋଲି ଭାବିବା ଠିକ୍ ନୁହେଁ ବୋଲି ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମତ ଦେଇଛନ୍ତି । ତା'ର କାରଣ 'ରସକଲ୍ଲୋଳ'ରେ ମଧ୍ୟ ସ୍ଥାନେ ସ୍ଥାନେ ଯୋଗର ସୂଚନା ମିଳେ ।

ଏ ସଂକ୍ରାନ୍ତରେ ଜଣେ ଆଧୁନିକ ପ୍ରାବନ୍ଧିକଙ୍କ ମନ୍ତବ୍ୟ ଉଲ୍ଲେଖଯୋଗ୍ୟ –

''ପରିଶେଷରେ ବିଭିନ୍ନ ପ୍ରକାର ଆଲୋଚନାରୁ ସ୍ପଷ୍ଟଭାବରେ ପ୍ରମାଣିତ ହେଉଛି ଯେ 'ଜଗମୋହନ ଛାନ୍ଦ' ଓ 'ରସକଲ୍ଲୋଳ'ର ରଚୟିତା ଏବଂ 'ଜଗମୋହନ ଛାନ୍ଦ' ଓ 'ରସବିନୋଦ' ପ୍ରଣେତା ଏକ ଦୀନକୃଷ୍ଣ ବୋଲି ଗ୍ରନ୍ଥ ତାଲିକାରୁ ଆମ୍ଭେ ପ୍ରମାଣ ପାଉ । ସୁତରାଂ ଅନ୍ୟ ନିର୍ଭରଯୋଗ୍ୟ ପ୍ରମାଣ ନ ପାଇବା ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ଜଣେ ମାତ୍ର ଦୀନକୃଷ୍ଣ ଥିଲେ । ସେ ଜଳେଶ୍ୱର ନିକଟବର୍ତ୍ତୀ ମୁଣ୍ଡୁଣ୍ଡୁଆ ଗ୍ରାମରେ ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ଜନ୍ମଗ୍ରହଣ କରିଥିଲେ – ଏଇ ସ୍ଥିର ସିଦ୍ଧାନ୍ତରେ ଆମ୍ଭେ ଉପନୀତ ହେଉଅଛୁ ।''

**ଜୀବନ ଯନ୍ତ୍ରଣା**

କିମ୍ବଦନ୍ତୀରୁ ଜଣାଯାଏ ଯେ କବି ମାରାତ୍ମକ କୁଷ୍ଠ ରୋଗାକ୍ରାନ୍ତ ହୋଇ ପଡ଼ିଲେ । ସେ ଏଥିପାଇଁ ସମସ୍ତଙ୍କର ଘୃଣାର ପାତ୍ର ହେଲେ । ସେ ସମସ୍ତ ଆଶା ଭରସା ଛାଡ଼ି ଜଗନ୍ନାଥଙ୍କ ପାଦପଦ୍ମରେ ଆଶ୍ରୟ ନେଲେ । ସେ ତାଙ୍କ ରଚିତ ଆର୍ତ୍ତତ୍ରାଣ ଚଉତିଶାରେ ଏହା ଉଲ୍ଲେଖ କରିଛନ୍ତି –

''ପରିହରି ସକଳ ଆଶା ହେ ଆଦିମୂଳ
ପଶିଛି ଶରଣ ତୁମ୍ଭରେ ।
ପ୍ରଭୁ ତ ଅବିଚାର କରି ଦେଉଛ ଘୋର
ପ୍ରଚୁର ସଙ୍କଟ ମୁଖରେ ହେ ମହାପ୍ରଭୁ
ପରାପର ତୁମ୍ଭର ନାହିଁ
ପରମ ଦୟାଳୁ ଗୋସାଇଁ ।''

ବ୍ୟାଧିଜନିତ ଦୁରବସ୍ଥା ଯୋଗୁଁ କବିଙ୍କୁ ସମ୍ଭବତଃ ମନ୍ଦିର ପ୍ରବେଶ ନିଷିଦ୍ଧ ଥିଲା । ତଥାପି ସେ ଅବିଚଳିତଭାବେ ଗରୁଡ଼ ସ୍ତମ୍ଭ ନିକଟରେ ପ୍ରତିଦିନ ସ୍ୱରଚିତ 'ଆର୍ତ୍ତତ୍ରାଣ ଚଉତିଶା' ଭଜନ କରିବାକୁ ଲାଗିଲେ । ରାଜକର୍ମଚାରୀମାନଙ୍କ ପ୍ରରୋଚନାରେ ରାଜା ଶେଷରେ ତାଙ୍କୁ ପୁରୀଧାମରୁ ତଡ଼ି ଦେଇଥିଲେ । ସେ ସେଥିପାଇଁ ନିଜ ଭାଗ୍ୟକୁ ନିନ୍ଦା କରିଛନ୍ତି, ଯଥା –

"କୁଟିଳ ହେଲେ କହି ମହତ ପଣ୍ଡିତ ହିଁ
ବିବେକ ପଣକୁ ତେଜନ୍ତି ।"

ନିଜର ଉଦର ପୋଷଣପାଇଁ କବିଙ୍କୁ ବିଭିନ୍ନ ସ୍ଥାନକୁ ଯିବାକୁ ପଡ଼ିଥିଲା । ସେ ଖୋର୍ଦ୍ଧା ନିକଟସ୍ଥ ଭୀମନଗରଗଡ଼ରେ ବଳରାମ ସାମନ୍ତସିଂହାରଙ୍କ ପାଖେ ରହିଥିବା ଜଣାଯାଏ । ସେ ପୋଡ଼ାପେଟପାଇଁ ଈଶ୍ୱର ଆରାଧନା କରିପାରି ନ ଥିବା କଥା 'ରସକଲ୍ଲୋଳ'ର ଷୋଡ଼ଶ ଛାନ୍ଦରେ ଉଲ୍ଲେଖ କରିଛନ୍ତି –

"କିପାଁ ଛାଡ଼ନ୍ତି ଭକତି ବାଟ ଆନନ୍ଦ ହୋଇ କରନ୍ତି ନାଟ
ଏବେ ଅନେକ ରୂପ କଲାଣି ଏ ପୋଡ଼ା ପେଟ ହେ ।"

ସେ ମଧ୍ୟ ଅନ୍ନସଂସ୍ଥାନପାଇଁ ମୂର୍ଖଙ୍କୁ ସ୍ତୁତି କରିବାକୁ ପଡୁଥିବାରୁ ଖେଦ ପ୍ରକାଶ କରିଛନ୍ତି –

"କବି ଯା କରେ ମୂର୍ଖକୁ ସ୍ତୁତି ଏଥିକୁ ନାହିଁ ବିପରି
ଏଥିକି ପ୍ରତି ଛାତିରେ କାତି ମାରିବା ଭଲ ଯେ ।"

ପେଟ ପୋଷିବାପାଇଁ କବିଙ୍କୁ ମଧ୍ୟ ଭିକ୍ଷା ମାଗିବାକୁ ପଡୁଥିଲା । 'ଦାର୍ଢ୍ୟତାଭକ୍ତି'ରେ ତା'ର ବର୍ଣ୍ଣନା ଅଛି –

"କେବଳ ଏହି କଥାମାନ ପ୍ରବନ୍ଧେ କରିବା ଗାୟନ
ମାଗେ ଉତ୍ତମ ଜନଠାରେ ନିଜ କୁଟୁମ୍ବ ପୋଷିବାରେ ।"

## ସୃଷ୍ଟି ସମ୍ଭାର : ଗୁଣ ସାଗର

ଏହା କବିଙ୍କର ସର୍ବପ୍ରଥମ ରଚନା । 'ରସବିନୋଦ'ରେ ଦିଆଯାଇଥିବା ଗ୍ରନ୍ଥ ତାଲିକାରେ ଏହାର ନାମ ଉଲ୍ଲେଖ ଅଛି । ଏଥିରେ ମାର୍କଣ୍ଡ ଋଷି ଶ୍ରୀହରିଙ୍କର ଗୁଣାବଳୀ ବର୍ଣ୍ଣନା କରିଛନ୍ତି । ଧ୍ରୁବ ସମେତ ବହୁ ଭକ୍ତଙ୍କର ଦୁଃଖ କିପରି ଭଗବାନ୍ ଦୂର କରିଥିଲେ, ତାହା ହେଉଛି ଏହାର ବିଷୟବସ୍ତୁ । ବହୁ ବର୍ଷ ଧରି ଚାଟଶାଳୀମାନଙ୍କରେ ଏହା ପାଠ୍ୟପୁସ୍ତକରୂପେ ପ୍ରଚଳିତ ଥିଲା ।

## ଭୂତକେଳି

ଏଥିରେ ଶ୍ରୀକୃଷ୍ଣ ଓ ରାଧାଙ୍କର ଗୋପନ ପ୍ରେମଲୀଳା ବର୍ଣ୍ଣିତ ଅଛି । କୃଷ୍ଣ ଚନ୍ଦ୍ରସେଣାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ଶୟନକକ୍ଷରେ ପ୍ରବେଶ କଲେ ଓ ରତିକ୍ରୀଡ଼ାରେ ମଜ୍ଜିଗଲେ । ତା'ପର ଦିନ ଚନ୍ଦ୍ରସେଣା ଆସି କବାଟ ଫାଙ୍କରେ ଦୁହିଁଙ୍କି ଦେଖି ପ୍ରଚଣ୍ଡ କ୍ରୋଧରେ ରାଧାଙ୍କୁ ତିରସ୍କାର କରିବାକୁ ଲାଗିଲା । ରାଧା ପ୍ରେମିକ କୃଷ୍ଣଙ୍କର ଶରଣାପନ୍ନ ହେଲେ । କୃଷ୍ଣ ଭୂତବେଶ ଧରିଲେ । ଚନ୍ଦ୍ରସେଣା ଭୟ ପାଇ ନନ୍ଦ ଓ ଗୋପାଳମାନଙ୍କୁ ଭୂତ ଘଉଡ଼ାଇବାକୁ ଅନୁନୟ

କଲେ । ସେମାନେ ସମସ୍ତେ ମିଶି ସ୍ତୁତିପାଠ କରିଛନ୍ତି । ଶେଷରେ ଲକ୍ଷେ ଭାର ଦୁଧ, ଛେନା, ଅମୃତମଣୋହି, ଦିବ୍ୟ ପିଠା ପ୍ରଭୃତି ଦେବାରେ ଭୂତ ଛାଡ଼ି ଚାଲିଯାଇଛି ।

ଭୂତକେଳି ଏକ ହାସ୍ୟରସାତ୍ମକ କାବ୍ୟ ଓ ଏହା ଉତ୍କଳରେ ବିଶେଷ ଜନପ୍ରିୟତା ହାସଲ କରିଅଛି ।

## ନାବକେଳି

ଏହା ମଧ୍ୟ ଏକ ହାସ୍ୟରସାତ୍ମକ କାବ୍ୟ । ଗୋପୀମାନେ ଦିନେ ଦଧିବିକ୍ରି କରିବାକୁ ମଥୁରା ଯିବାକୁ ବାହାରିଲେ । ଯମୁନା କୂଳକୁ ଯାଇ ନଦୀ ବଢ଼ିଥିବାର ଦେଖିଲେ । ଘାଟ ଡଙ୍ଗା ବା ନାଉରି କାହାକୁ ଦେଖିଲେ ନାହିଁ । ଡାକି ଡାକି ଥକିଗଲେ । କିଛି ସମୟ ପରେ ନଦୀ କୂଳରେ ଗୋଟିଏ ଅସୁନ୍ଦର ବୁଢ଼ା କେଉଟକୁ ଭଙ୍ଗା ନାଆରେ ବସିଥିବାର ଦେଖିଲେ । ଯେତେ ଡାକିଲେ ବି ନ ଶୁଣିବାରୁ ଅସ୍ଥିର ହୋଇପଡ଼ିଲେ । ଶେଷକୁ ଗାଳିଦେବାକୁ ଲାଗିଲେ । କବି ତାହାକୁ ଅତି ସୁନ୍ଦରଭାବେ ପ୍ରକାଶ କରିଛନ୍ତି –

"ପଡ଼ି ନ ମଲୁରେ ଝାଡୁଆ ଗୋଟା ।
କାଲ ହୋଇଲୁ କି ଆରେ କେଉଟା ।
ଡାକି ଡାକି ଆମ୍ଭେ ମରୁଛୁ ଏଣେ ।
ସର୍ପ ଖାଉ ତୋର ବେନି ଶ୍ରବଣେ ।
ଦଇବ ଯେବେ ହୋଇବ ସତ ।
ବୁକୁରେ ତୋର ମାଡ଼ିବସୁ ଭୂତ ।
× × ×
ଅଖାଲ ଦଉଡ଼ି ଛିଣ୍ଡିଣ ଯାଉ ।
ନାବ ବୁଡୁ ତୋତେ କୁମ୍ଭୀର ଖାଉ ।"

କେତେବେଳକୁ ଜଣ ଜଣ କରି ପାରି କରିଦେବାକୁ କେଉଟ ବୁଢ଼ା ସର୍ତ୍ତ ଦିଅନ୍ତେ, ଅନିଚ୍ଛାସତ୍ତ୍ୱେ ଗୋପୀମାନେ ତହିଁରେ ରାଜି ହେଲେ । ପ୍ରଥମେ ଡଙ୍ଗାରେ ଶ୍ରୀରାଧାଙ୍କୁ କେଉଟ ନେଇଛି । ମଝି ନଦୀରେ ପହଞ୍ଚିବା ବେଳକୁ ଅନ୍ଧାର ମାଡ଼ିଆସିଛି । ବୁଢ଼ା କେଉଟ ମଧ୍ୟ ଅଦୃଶ୍ୟ ହୋଇଯାଇଛି । ଭଙ୍ଗା ଡଙ୍ଗା ଭିତରକୁ ହାବୁକା ହାବୁକା ପାଣି ପଶିଆସିଛି । ଶ୍ରୀରାଧା ଭୟରେ ବୁଢ଼ା ନାଉରିକୁ ପାରି କରିଦେବାକୁ ଅନୁନୟ କରିଛନ୍ତି । ପୁଣି ନିଜର ଅଳଙ୍କାର

ଯାଚିଛନ୍ତି । ମାତ୍ର ନାଉରି ଚାହେଁ ତାଙ୍କୁ । ଶ୍ରୀରାଧା ଏଥର ରାଗି ଉଠିଛନ୍ତି । କବିଙ୍କ ଭାଷାରେ –

"ବୋଇଲା ତୁ ଏଡ଼େ ପାମର ମୂଢ଼ା
କି ଭାଷା ବୋଲୁଛୁ କେଉଟ ବୁଢ଼ା
କେଉଟ ହୋଇ ତୋ ଏଡ଼େ ଭରସା
ଆଉ କେବେ ତାହା ତୁଣ୍ଡେ ନ ବସା ।

× × ×

ବଡ଼ ଲୋକର ମୁଁ ଅଟଇ ବୋହୂ
କେଉଟ ହୋଇ ତୁ ଏ ଭାଷା କହୁ ।"

ନଈ ମଝିରେ ଦଦରା ନାଆ ଉପରେ ଥାଇ ଶ୍ରୀରାଧା କେଉଟ ବୁଢ଼ାକୁ ଜିଘାଂସିଛନ୍ତି । ଶେଷରେ କେଉଟ ବୁଢ଼ା ବଦଳରେ ଦେଖାଦିଅନ୍ତି ବାଳକ କୃଷ୍ଣ । ରାଧା କାକୁସ୍ଥ ହୋଇ ନିବେଦନ କରନ୍ତି –

"କାମ ସାଗରୁ କର ମୋତେ ତ୍ରାହି ।
ପୁଣି ବେନି ପାଦ ଧରି ପଡ଼ିଲା ରାଇ ।"

କେଳିପ୍ରିୟ କୃଷ୍ଣ କହିଛନ୍ତି –

"ଉଠ ଉଠ ସଖୀ ନ ପାଅ ଲାଜ
କୋଳରେ ଧଇଲେ ଦେବାଧିରାଜ ।"

ରାଧାଙ୍କୁ ଆରକୂଳରେ ଛାଡ଼ି କୃଷ୍ଣ ଗୋପୀମାନଙ୍କଠାରେ ପହଞ୍ଚିଛନ୍ତି । ନଈବଢ଼ି ମଧ ଚାଲିଯାଇଛି । ଗୋପୀମାନେ ଆନନ୍ଦରେ ନାଚିଉଠିଛନ୍ତି । କୃଷ୍ଣ ଷୋଳସହସ୍ର ରୂପ ଧରି ଯମୁନା କୂଳରେ ରାସକ୍ରୀଡ଼ା ଆରମ୍ଭ କରିଛନ୍ତି । କାବ୍ୟଟି ଶୃଙ୍ଗାର ରସାତ୍ମକ । ଏହା ମଧ ଅତି ଜନପ୍ରିୟ ।

## ଅଳଙ୍କାର ବୋଲୀ

କବି ପ୍ରଥମେ ଭୂତରୂପ ଓ ତା'ପରେ ବୁଢ଼ା ନାଉରି ରୂପ ବର୍ଣ୍ଣନା କଲା ପରେ କୃଷ୍ଣଙ୍କ ସୁନାରି ବେଶ ବର୍ଣ୍ଣନା କରିଛନ୍ତି ।

ଶ୍ରୀକୃଷ୍ଣ ଦିନେ ରାଧାଙ୍କ ସହ ଭେଟ କରାଇଦେବାକୁ ଦୂତିକାଙ୍କୁ ଅନୁରୋଧ କରିଛନ୍ତି । ମାତ୍ର ତାହା ସମ୍ଭବ ନୁହେଁ । ରାଧାଙ୍କୁ ଶାଶୂ, ଶ୍ୱଶୁର, ସ୍ୱାମୀ, ନଣନ୍ଦ ପ୍ରଭୃତି ଜଗି ରହିଛନ୍ତି । ନାନା ଗଞ୍ଜଣା ବି ଦେଉଛନ୍ତି । ଦୂତିକା ମନା କରନ୍ତେ କୃଷ୍ଣ ସୁନାରି ବେଶ ଧରି ଗୋପୀମାନଙ୍କ ପାଖେ ପହଞ୍ଚିଛନ୍ତି । ଗୋପୀମାନେ

କମନୀୟ ଅଳଙ୍କାର ଦେଖି ମୁଗ୍ଧ ହୋଇଛନ୍ତି । ପସନ୍ଦ କରି କିଣିବାକୁ ବସିଛନ୍ତି । ମାତ୍ର ପାଖରେ କଉଡ଼ି ନ ଥିବାରୁ ଶ୍ରୀରାଧାଙ୍କୁ ବନ୍ଧା ଦେଇ କଉଡ଼ି ଆଣିବାକୁ ଯାଇଛନ୍ତି । କୃଷ୍ଣ ରାଧାଙ୍କ ନିକଟରେ ନିଜ ରୂପ ପ୍ରକାଶ କରି କହିଛନ୍ତି –

''ତୋହ ନିମନ୍ତେ ଏ ରୂପ ଆମ୍ଭର ।''

ରାଧାଙ୍କୁ କୁଞ୍ଜବନକୁ ନେଇ କୃଷ୍ଣ ରଚିଛନ୍ତି ବିବିଧ ରାସକ୍ରୀଡ଼ା । ଗୋପୀମାନେ ତାଙ୍କୁ ଖୋଜିଛନ୍ତି । ଦୂତିକା ଗୋପୀମାନଙ୍କୁ ଜଣାଇଛି –

''ଦୂତୀ କହନ୍ତି ଶୁଣ ମିତଣୀ ।
ତାଙ୍କୁ ଦେବତା ପରାୟେକ ଜାଣି ।
ସେ ଗୋ ପ୍ରବେଶେ ଏହି ବୃନ୍ଦାବନେ ।
ଯେତେ ଡାକନ୍ତେ ନ ଶୁଣନ୍ତି କର୍ଣ୍ଣେ ।''

## ପ୍ରସ୍ତାବ ସିନ୍ଧୁ

ଏହା କବିଙ୍କ ଏକ ଅନବଦ୍ୟ ସୃଷ୍ଟି । ଏଥିରେ କବି ଚାଣକ୍ୟନୀତି, ନୀତିଶତକ, ପଞ୍ଚତନ୍ତ୍ର, ହିତୋପଦେଶ ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନଙ୍କର ନୀତି କଥାଗୁଡ଼ିକ ସରଳ ପଦ୍ୟାକାରରେ ବର୍ଣ୍ଣନା କରିଛନ୍ତି । ଏଥିର ବିଷୟବସ୍ତୁଗୁଡ଼ିକ ହେଲା 'ଦୁର୍ଜନ ସଙ୍ଗତିର ପରିଣାମ', 'ଅବ୍ୟାପାରର ପରିଣାମ', 'ଅନ୍ୟର ମନ୍ଦ ଚିନ୍ତାର ପରିଣାମ', 'ମର୍ମକଥା ପ୍ରକାଶର ପରିଣାମ', 'ସ୍ୱଜନ ଅପ୍ରୀତିର ପରିଣାମ', 'ଅତିଲୋଭର ଫଳ', 'ବୁଦ୍ଧିର ବଳ' ପ୍ରଭୃତି । ଏହି ରଚନା ମାଧ୍ୟମରେ କବି କେତେକ ନୈତିକ ଉପଦେଶ ଦେଇଛନ୍ତି । ଭଲମନ୍ଦ ବିଷୟ ଲୋକେ କିପରି ଜାଣନ୍ତୁ ସେ ତାହା ଚାହିଁଛନ୍ତି । କବିଙ୍କ ଭାଷାରେ –

''ଏ ପୁସ୍ତକ ପଢ଼େ ଯେବଣ ପ୍ରାଣୀ
ଭଲ ମନ୍ଦ କଥା ପାରଇ ଜାଣି ।''

## ଧର୍ମ ସାଗର

ଏହି ଗ୍ରନ୍ଥରେ କବି ମହାଭାରତର ଯୁଧିଷ୍ଠିରଙ୍କ ରାଜତ୍ୱରେ କେତେକ ଘଟଣାକୁ କେନ୍ଦ୍ର କରି ଗଳ୍ପ, ଉପାଖ୍ୟାନ ମାଧ୍ୟମରେ ନୀତିନିୟମଗୁଡ଼ିକ ଚର୍ଚ୍ଚା କରିଛନ୍ତି । 'ବାଲ୍ମୀକି ରାମାୟଣ' ବା 'ମହାଭାରତ'ରେ ଏହି ଗଳ୍ପ ଉପାଖ୍ୟାନଗୁଡ଼ିକ ନାହିଁ । ଏହା ତାଙ୍କର କଳ୍ପନାପ୍ରସୂତ ।

ମନୁଷ୍ୟ ଜୀବନର କର୍ତ୍ତବ୍ୟ ବିଷୟରେ ଏଥିରେ ବହୁ ଉପଦେଶ ରହିଛି । ମାନବ ଜୀବନକୁ ଶୁଦ୍ଧ ଓ ପବିତ୍ର କରିବା ଦୀନକୃଷ୍ଣଙ୍କର ଲକ୍ଷ୍ୟ ଥିବା ଜଣାଯାଏ ।

ଏହାର ଭାଷା ମଧ୍ୟ ସରଳ ଓ ସର୍ବଜନବୋଧଗମ୍ୟ ।

## ନାମରତ୍ନ ଗୀତା

ଦୀନକୃଷ୍ଣ ଥିଲେ ମହାପଣ୍ଡିତ । ତାଙ୍କର ପାଣ୍ଡିତ୍ୟର ପରିଚୟ ପ୍ରତି ଗ୍ରନ୍ଥରୁ ମିଳେ । ସେ 'ନାମରତ୍ନ ଗୀତା' ପୁସ୍ତକରେ ସୃଷ୍ଟି ରହସ୍ୟ ଉଦ୍‌ଘାଟନ, ନୀତି କଥା, ଦେଣ ନେଣ କାରବାର, ଚାଷ, ବାଣିଜ୍ୟ, ସମର, ସନ୍ଧି ସମ୍ପର୍କରେ ଆଲୋଚନା କରିଛନ୍ତି ।

ଏହାର ଫଳଶ୍ରୁତି ବର୍ଣ୍ଣନା ସଙ୍ଗେ ସଙ୍ଗେ ସାରତତ୍ତ୍ୱ ବଖାଣିଛନ୍ତି –

''ନାନା ବନ୍ଧ ବିଚାର କରୁଛି ଏହା ଯୋଡ଼ି
ଦୁଧ ଭାଣ୍ଡ ଭିତରୁ ଲବଣି ଯେହ୍ନେ କାଢ଼ି

× × ×

ସବୁ ଶାସ୍ତ୍ରମାନଙ୍କର ବୀଜ ଖୋଜି ଆଣି
ନାମ ରତ୍ନ ଭୂମିରେ ଅଛଇ ଏହା ବୁଣି ।''

କବି ମଧ ଶରୀର ମଧ୍ୟସ୍ଥ ଷଡ଼ଚକ୍ର ଓ ତହିଁର ଅଧିଷ୍ଠାତ୍ରୀ ଦେବତାଙ୍କ ବିଷୟ ବର୍ଣ୍ଣନା କରିଛନ୍ତି, ଯଥା –

''ମୂଳ କମଳରେ ଚାରି ଦଳ ଫାଲଗୁନି
ବକ୍ରତୁଣ୍ଡେ ଗଣପତି କୁଣ୍ଡଳୀକୁ ଘେନି ।
ଷଡ଼ ଯେ ପାଖୁଡ଼ା ଲିଙ୍ଗ କମଳର ମୂଳେ
କାମେଶ୍ୱରଦେବ କାମାକ୍ଷୀ ଘେନିଣ କୋଳେ ।''

କବି ଦୀନକୃଷ୍ଣ ଥିଲେ ଜ୍ଞାନମିଶ୍ରା ବୈଷ୍ଣବ ଧର୍ମର ଉପାସକ । 'ହରେ ରାମ କୃଷ୍ଣ' ନାମ ମନ୍ତ୍ର ଜପ କରିବା ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ଥିଲା । ସେ ଏହି ନାମକୀର୍ତ୍ତନକୁ ମନୁଷ୍ୟ ଜୀବନର ଶ୍ରେଷ୍ଠ କର୍ମ ବୋଲି ମନେ କରୁଥିଲେ । ବେଦବେଦାନ୍ତ ପାଠ, ତୀର୍ଥସ୍ଥାନ ଗମନ, ସାଧୁ ସଙ୍ଗ, ମନ୍ଦିର ନିର୍ମାଣ ଓ ଦେବତା ସ୍ଥାପନଠାରୁ ନାମକୀର୍ତ୍ତନକୁ ପ୍ରାଧାନ୍ୟ ଦେଉଥିଲେ । 'ନାମରତ୍ନଗୀତା'ର ତୃତୀୟ ଅଧ୍ୟାୟରେ ସେ ଏହା ଲେଖିଛନ୍ତି –

''ବେଳହୁଁ ଯେ ନାମ ମୋର ଆଶ୍ରେ କରି ଥାଇ
ଧର୍ମ ଅର୍ଥ କାମ ମୋକ୍ଷ ଚଉବର୍ଗେ ପାଇ ।''

ନାମକୀର୍ତ୍ତନ ଛଡ଼ା ଦୁନିଆରେ ଆଉ କିଛି ଶ୍ରେଷ୍ଠ ପଦାର୍ଥ ନାହିଁ ବୋଲି ସେ କହିଛନ୍ତି –

''ନାମ ବ୍ରହ୍ମ ନାମ ବ୍ରହ୍ମ ନାମ ବ୍ରହ୍ମ ସାର
ନାମ ବ୍ରହ୍ମ ବିନୁ ଆଉ ନାହିଁ ପ୍ରତିକାର ।''

ଏଥିରେ କବି ଜନଜୀବନକୁ ସ୍ୱଚ୍ଛ କରିବାକୁ ପ୍ରୟାସୀ ହୋଇଛନ୍ତି ।

## ଜଗମୋହନ ଛାନ୍ଦ

ଏହାକୁ କବି ବିଭିନ୍ନ ରାଗରେ ଚଉଦଟି ଛାନ୍ଦରେ ରଚନା କରିଛନ୍ତି । ଏଥିରେ ଉତ୍କଳର ଆରାଧ୍ୟଦେବତା ଜଗନ୍ନାଥଙ୍କ ଦ୍ୱାଦଶ ଯାତ୍ରା ମହୋତ୍ସବର ବର୍ଣ୍ଣନା ଦେଖିବାକୁ ମିଳେ । ପ୍ରଥମ ଦୁଇ ଛାନ୍ଦରେ ଜଗନ୍ନାଥଙ୍କ ନିତ୍ୟ ସେବା ବର୍ଣ୍ଣିତ ଅଛି । ତୃତୀୟ ଛାନ୍ଦରେ ବଡ଼ସିଂହାର ଲୀଳା, ଚତୁର୍ଥ ଛାନ୍ଦରେ ନୀଳାଦ୍ରି ନଗରବାସୀ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରାଯାଇଛି । ପଞ୍ଚମ ଛାନ୍ଦରେ ଶୀତ ଋତୁରେ ବସ୍ତ୍ର ଓଢ଼ଣ, ପୁଷ୍ୟାଭିଷେକ, ମକରଯାତ୍ରା, ସପ୍ତମ ଓ ଅଷ୍ଟମ ଛାନ୍ଦରେ ଦୋଳଯାତ୍ରା ଓ ଗ୍ରୀଷ୍ମକାଳୀନ ଚନ୍ଦନ ଓ ସ୍ନାନଯାତ୍ରା ବର୍ଣ୍ଣିତ ଅଛି । ନବମ ଛାନ୍ଦଠାରୁ ଦ୍ୱାଦଶ ଛାନ୍ଦ ପର୍ଯ୍ୟନ୍ତ ଚାରି ଛାନ୍ଦରେ କେବଳ ରଥଯାତ୍ରାର ବର୍ଣ୍ଣନା ଅଛି । ତ୍ରୟୋଦଶ ଛାନ୍ଦରେ ଲକ୍ଷ୍ମୀନାରାୟଣ ଭେଟ ଓ ଚତୁର୍ଦ୍ଦଶ ଛାନ୍ଦରେ ହରିଶୟନ ଓ କାର୍ତ୍ତିକ ମାସର ଶଯ୍ୟା ତ୍ୟାଗ ପ୍ରଭୃତି ବର୍ଣ୍ଣନା କରାଯାଇଛି । ଏହି ଯାନିଯାତ୍ରା, ମହୋତ୍ସବ ମଧ୍ୟରେ ପ୍ରଭୁଙ୍କ ପ୍ରତି ଭକ୍ତି ଭାବ ଜାତ କରାଇବା ଗ୍ରନ୍ଥର ଲକ୍ଷ୍ୟ ବୋଲି ମନେହୁଏ ।

ଜଗନ୍ନାଥଙ୍କ ମହିମା କବି ଗାଇଛନ୍ତି, ଯଥା –

"ଯେଉଁ ପାଦପଦ୍ମ ପ୍ରସାଦରେ ପୂର୍ବେ ପାଷାଣ ହୋଇଲା ଅବଳା
ଯେଉଁ ପାଦପଦ୍ମ ମହିମାରୁ ଧ୍ରୁବ ଧ୍ରୁବ ଲୋକରେ କଲେ ଲୀଳା
ଯେଉଁ ପୟରେ, ପରମ ବଳୀ ନରପତି
ତୁଚ୍ଛ ପ୍ରାୟ ମଣି ପଛୁ କରିଦେଲେ ମହାସୁଖ ରାଜସମ୍ପତ୍ତି ।"

କବି ସେହି ଜଗନ୍ନାଥଙ୍କ ପାଦପଦ୍ମରେ ଭରସା ରଖିଛନ୍ତି –

"ଏହି ଘେନି ବଡ଼ ଭରସା ମୋହର ନୀଳ ପର୍ବତ ସିଂହଠାରେ
ଅତି ଭୟଙ୍କର ସଂସାର ଜନକୁ ଭୟ ନ ଥାଇ ମୋ ମନରେ ।"

## ନାମବ୍ରହ୍ମ ଗୀତା

ଏହି ଗ୍ରନ୍ଥଟି କ୍ଷୁଦ୍ର । ମାତ୍ର ୩୫ ପଦ ବିଶିଷ୍ଟ । କିନ୍ତୁ ଏହି ଗୀତାରେ ଯୋଗ ରହସ୍ୟ, ସୃଷ୍ଟିତତ୍ତ୍ୱ ପ୍ରଭୃତି ଗୂଢ଼ ଦାର୍ଶନିକ ତତ୍ତ୍ୱର ଆଲୋଚନା କରାଯାଇଛି । ଭକ୍ତି ଧାରାରେ ବ୍ରହ୍ମଜ୍ଞାନ ପୂରିରହିଛି । ବୋଧହୁଏ ବ୍ରହ୍ମଜ୍ଞାନ ଭଜନ ରଚନା ସେ ଯୁଗର ସାହିତ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଥିବାରୁ ଦୀନକୃଷ୍ଣ ଏପରି ଏକ ଗୂଢ଼ ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ କାବ୍ୟ ରଚନା କରିଥିଲେ । କବି ଆରମ୍ଭରେ ଲେଖିଛନ୍ତି –

"ଜୟ ଜୟ ଜ୍ୟୋତି ପରେ ପାଉ ସ୍ଥିତି ବିଜୟେ ଅଲେଖ ବ୍ରହ୍ମ
ଅଜ୍ୟୋତି ମଣ୍ଡଳେ ସ୍ୱରୂପ ବର୍ଣ୍ଣିଛି ଭେଦ ନାହିଁ ବର୍ଣ୍ଣ ଚିହ୍ନ ।"

## ରସବିନୋଦ

ରସବିନୋଦ ନିତ୍ୟରାସ ଭାବରେ କଥିତ । ଗ୍ରନ୍ଥରେ ୪୨ଟି ଅଧ୍ୟାୟ ରହିଛି ଓ ତାହା ନବାକ୍ଷରୀ ବୃତ୍ତରେ ରଚିତ ହୋଇଛି । 'ଭାଗବତ' ପରି ଉତ୍କଳର ଗ୍ରାମେ ଗ୍ରାମେ ଏହା ଲୋକପ୍ରିୟତା ଅର୍ଜନ କରିଛି ।

'ରସବିନୋଦ' ସମ୍ପର୍କରେ କବି ଲେଖିଛନ୍ତି -

''ସବୁ ଯେ ଶାସ୍ତ୍ର ଦୁଧ ଭାଣ୍ଡ     ତହିଁ ମେଲିଲି ଖୁଆଦଣ୍ଡ
ମନ୍ଥନ କରେ ଜଗଜିତା     ତହୁଁ ଯେ ଉପୁଜିଲା ଗୀତା
ଗୀତ ଅମୃତ ସ୍ୱାଦ ଜଳ     ତହୁଁ ଯେ ଶ୍ରେଷ୍ଠ ନିତ୍ୟ ସ୍ଥଳ ।''

'ଭାଗବତ'ରେ ରାସଲୀଳା ଯେତେବେଳେ ଲୋକପ୍ରିୟତା ଅର୍ଜନ କରିଥିଲା, ସେତେବେଳେ ଉତ୍କଳର ଜ୍ଞାନମିଶ୍ରା ବୈଷ୍ଣବ ଧର୍ମାବଲମ୍ବୀ ଦୀନକୃଷ୍ଣ ନିତ୍ୟ ରାସଲୀଳାର ବୈଶିଷ୍ଟ୍ୟ ପ୍ରତିପାଦନ କରିଛନ୍ତି । କବି 'ରସବିନୋଦ'ର ଏକାଦଶ ଅଧ୍ୟାୟରେ ନିତ୍ୟସ୍ଥଳୀ ବିଷୟରେ ବର୍ଣ୍ଣନା କରିଛନ୍ତି, ଯଥା –

''ରାଧାର ଅଙ୍ଗ କିରଣକୁ     । ସରି ନୁହନ୍ତି କେହି ତାକୁ     ।
ଶ୍ରୀକୃଷ୍ଣ ନାମ ଯେଉଁ ସ୍ଥଳ     । କୋଟିଏ କିରଣ ଉଜ୍ଜ୍ୱଳ     ।
କପଟେ ଦାରୁବ୍ରହ୍ମ ଏକ     । ସଚରାଚର ଯାକ ଏକ     ।
ମାୟା ଯେ ସିଂହାସନଠାରେ । ନିତ୍ୟ ଯେ ନୀଳାଚଳଠାରେ ।''

କବିଙ୍କ ଦୃଷ୍ଟିରେ ଶ୍ରୀକ୍ଷେତ୍ର ହିଁ ନିତ୍ୟ ରାସସ୍ଥଳୀ । କବି ମଧ ଦାରୁପ୍ରତିମା ଭିତରେ ରାଧାକୃଷ୍ଣ ଯୁଗଳାଙ୍ଗ ଉପଲବ୍ଧି କରିଛନ୍ତି । ତାଙ୍କ ମତରେ ନିରାକାର ବିଷ୍ଣୁଙ୍କର ନିତ୍ୟ ଅଦ୍ୱୟ ରାଧାକୃଷ୍ଣ ତତ୍ତ୍ୱ ଏହି ଶ୍ରୀକ୍ଷେତ୍ରରେ ବିଦ୍ୟମାନ । ବ୍ରହ୍ମପ୍ରଳୟରେ ମଧ ଏହି ନିତ୍ୟ ବିଦ୍ୟମାନ ଥାଏ । ଯୋଗସାଧନାରେ ସିଦ୍ଧି ଅର୍ଜନଦ୍ୱାରା କେବଳ ସେଇ ନିରାକାର ବିଷ୍ଣୁଙ୍କ ପ୍ରତି ଭକ୍ତି ଲାଭ କରାଯାଇପାରିବ ।

'ରସବିନୋଦ' ଗ୍ରନ୍ଥରେ ଶିଶୁବେଦଠାରୁ ଆରମ୍ଭ କରି 'ଭାଗବତ', 'ରାମାୟଣ', 'ମହାଭାରତ'ର ବିଭିନ୍ନ ଉପାଖ୍ୟାନ ସହିତ ଆଧ୍ୟାତ୍ମିକ ତତ୍ତ୍ୱର ଏକ ମଧୁର ସମନ୍ୱୟ ଘଟିଛି । ଦୀନକୃଷ୍ଣ କେବଳ ମଧୁର କୃଷ୍ଣଭକ୍ତିର ଉପାସକ ନୁହନ୍ତି, ସେ ଥିଲେ ମହାପୁରୁଷ, ସିଦ୍ଧସାଧକ । ବ୍ରହ୍ମଜ୍ଞାନୀ ସିଦ୍ଧସାଧକ ଭାବରେ ଦୀନକୃଷ୍ଣ ଦାସ ଓଡ଼ିଶାର ସନ୍ଥ ସାହିତ୍ୟରେ ବହୁ ଊର୍ଦ୍ଧ୍ୱରେ ।

## ରସକଲ୍ଲୋଳ

ଦୀନକୃଷ୍ଣ ଭକ୍ତିଗ୍ରନ୍ଥଗୁଡ଼ିକ ରଚନା କଲା ପରେ ଏକ ପୂର୍ଣ୍ଣାଙ୍ଗ, ରମଣୀୟ ଓ ଉତ୍କୃଷ୍ଟ କାବ୍ୟ ରଚନା ଦିଗରେ ବ୍ରତୀ ହେଲେ । ଏଥିପାଇଁ ସେ ସବୁଠାରୁ କମନୀୟ,

ସବୁଠାରୁ ଗୌରବାନ୍ୱିତ ଓ ସମସ୍ତଙ୍କର ପ୍ରିୟ ଗୋପାଳକୃଷ୍ଣ ଚରିତ୍ରକୁ ନିଜ କାବ୍ୟର ବିଷୟବସ୍ତୁ ଭାବେ ନିର୍ବାଚନ କଲେ । ଏହି କାହାଣୀଟି 'ଭାଗବତ', 'ହରିବଂଶ' ପ୍ରଭୃତି ପୁରାଣମାନଙ୍କରେ ବିସ୍ତୃତ ଭାବରେ ଆଲୋଚିତ ହୋଇଥିଲା । ଜୟଦେବଙ୍କ 'ଗୀତଗୋବିନ୍ଦ'ରେ ମଧ ଏହିଁ ବିଷୟ ବର୍ଣ୍ଣିତ ଥିଲା । ଦୀନକୃଷ୍ଣଙ୍କ ପୂର୍ବରୁ ଆଉ ଜଣେ ପ୍ରାଚୀନ କବି ବୃନ୍ଦାବନ ଦାସଙ୍କ ରଚିତ ରସ ବାରିଧିରେ ଗୋପାଳକୃଷ୍ଣଙ୍କ ବିଷୟବସ୍ତୁ ଉପଜୀବ୍ୟ ହୋଇଥିଲା । ଦୀନକୃଷ୍ଣ ନିଜେ 'ଗୀତଗୋବିନ୍ଦ'ର ଅନୁବାଦ କରିଥିଲେ । ମାତ୍ର ସେ ସେଥିରେ ସନ୍ତୁଷ୍ଟ ହୋଇପାରି ନ ଥିଲେ । ତେଣୁ ଯୁଗ ଯୁଗ ଧରି କବିମାନଙ୍କୁ ଆକୃଷ୍ଟ କରି ଆସିଥିବା ଓ ଅଗଣିତ ନରନାରୀଙ୍କ ଚିତ୍ତକୁ ବିମୋହିତ କରି ଆସିଥିବା ଚିର ନୂତନ ଗୋପପୁରର କୃଷ୍ଣଲୀଳାକୁ ସେ ନିଜ କାବ୍ୟର ଉପଜୀବ୍ୟ ଭାବେ ଗ୍ରହଣ କଲେ ।

## ରସ ସୃଷ୍ଟି

କବି ଦୀନକୃଷ୍ଣ 'ରସକଲ୍ଲୋଳ'କୁ ରସବାଦର ଶ୍ରେଷ୍ଠ କୃତି ଭାବେ ସୃଷ୍ଟି କରିଛନ୍ତି । ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି 'ରସକଲ୍ଲୋଳ' ଭୂମିକାରେ ଲେଖିଛନ୍ତି ଯେ କାବ୍ୟରେ ବାତ୍ସଲ୍ୟ, ବୀର, କରୁଣ, ହାସ୍ୟ, ଶାନ୍ତାଦି ରସମାନ ଥିଲେ ମଧ ଶୃଙ୍ଗାର ରସ ହିଁ ପ୍ରାଧାନ୍ୟ ଲାଭ କରିଅଛି । ଏଥିରେ କେବଳ ରସର ସାଗର ସୃଷ୍ଟି ହୋଇ ନାହିଁ; ରସସାଗରର ବକ୍ଷ ବିକ୍ଷୋଭିତ କରି ସୃଷ୍ଟି ହୋଇଛି ଅସଂଖ୍ୟ କଲ୍ଲୋଳ ମାଳା । ଇଂରେଜ ପ୍ରଶାସକ ତଥା ଐତିହାସିକ ଜନ୍ ବୀମ୍ସ ଏହାକୁ ଆନନ୍ଦର ଢେଉ ବା (Waves of Delight) ଭାବେ ନାମିତ କରିଛନ୍ତି । ତେଣୁ 'ରସକଲ୍ଲୋଳ'ର ନାମକରଣ କେବଳ ପାଣ୍ଡିତ୍ୟପୂର୍ଣ୍ଣ ନୁହେଁ, ଯଥାର୍ଥ ।

## ନାମକରଣ ଓ ଜନଶ୍ରୁତି

ପ୍ରବାଦ ଅଛି ଯେ ତତ୍କାଳୀନ ରାଜା ଦିବ୍ୟସିଂହଙ୍କ ଦରବାରରେ ଦୀନକୃଷ୍ଣ ତାଙ୍କ ରଚିତ ଗ୍ରନ୍ଥକୁ ଗୋଟିଏ ମୃଣ୍ମୟ ପାତ୍ରରେ ରଖି ତହିଁ ଉପରେ କଅଁଳ କେନ୍ଦୁପତ୍ର ଘୋଡ଼ାଇ ଉପସ୍ଥାପିତ କଲେ । ରାଜା ଏହାର କାରଣ ପଚାରନ୍ତେ, ଗ୍ରନ୍ଥରୁ ନିଃସୃତ ହେଉଥିବା କଣିକା ସଞ୍ଚି ରଖିବାକୁ ମୃଣ୍ମୟ ପାତ୍ର ଆବଶ୍ୟକ ହୋଇଅଛି ବୋଲି ଦୀନକୃଷ୍ଣ ଉତ୍ତର ଦେଲେ । ପୁଣି ସୂର୍ଯ୍ୟ ରଶ୍ମି ଦ୍ୱାରା ଏହି କଣିକା ଶୋଷିତ ନ ହେବାପାଇଁ କେନ୍ଦୁପତ୍ରଦ୍ୱାରା ଆଚ୍ଛାଦିତ ହୋଇଅଛି ବୋଲି ଜଣାଇଲେ । କବି ଏହାପରେ ଛାନ୍ଦ ପରେ ଛାନ୍ଦ ଆବୃତ୍ତି କରିବାକୁ ଲାଗିଲେ । ଏହିଭାବେ ନାମକରଣର ସାର୍ଥକତା ପ୍ରତିପାଦନ କରିଥିବାରୁ କବି ସମସ୍ତଙ୍କର

ପ୍ରଶଂସାଭାଜନ ହେଲେ । ଗୁଣଗ୍ରାହୀ ମହାରାଜା ମଧ୍ୟ ପାଣ୍ଡିତ୍ୟରେ ମୁଗ୍ଧହୋଇ କବିଙ୍କୁ ଉଚ୍ଚ ସମ୍ମାନରେ ଭୂଷିତ କଲେ ।

ଏ ସମ୍ପର୍କରେ ଆଉ ଏକ ଜନଶ୍ରୁତି ଆଲୋଚକ ଗୋବିନ୍ଦ ଚନ୍ଦ୍ର ମହାପାତ୍ର ଉଲ୍ଲେଖ କରିଛନ୍ତି । ଦିନେ ରାଜା ପ୍ରତାପରୁଦ୍ରଦେବ ବେଶ୍ୟାପୁତ୍ର ଦୀନକୃଷ୍ଣଙ୍କୁ ଡକାଇ ପଠାଇଲେ । ତାଙ୍କ 'ରସକଲ୍ଲୋଳ'ରୁ ରସ ଗଳିବ କି ପଚାରନ୍ତେ ଦୀନକୃଷ୍ଣ ଉତ୍ତର ଦେଲେ –

''ଯେବେ ଆମର ଭକ୍ତି ଥିବ ତେବେ ପାଷାଣରୁ ରସ ନିର୍ଗତ ହେବ ।''

ଏହା କହି ଖଣ୍ଡେ ଶିଳା ଉପରେ 'ରସକଲ୍ଲୋଳ' ଗ୍ରନ୍ଥକୁ ରଖିଦେବାମାତ୍ରେ ପ୍ରସ୍ତରର କିଛି ଅଂଶ ଦ୍ରବୀଭୂତ ହେବାକୁ ଲାଗିଲା ।''

## ବର୍ଣ୍ଣକ୍ରମ

'ରସକଲ୍ଲୋଳ' ୩୪ଟି ଛାନ୍ଦରେ ରଚିତ । ଏହି ଗ୍ରନ୍ଥର ପ୍ରତିପଦର ଆରମ୍ଭରେ 'କ' ବର୍ଣ୍ଣର କ୍ରମ ରକ୍ଷା କରାଯାଇଛି । ଏପରିକି ପ୍ରଥମ ଛାନ୍ଦର ଆଦ୍ୟ ଓ ପ୍ରାନ୍ତରେ ମଧ୍ୟ 'କ' ବର୍ଣ୍ଣର କ୍ରମ ରହିଛି । ଏହିପରି ବର୍ଣ୍ଣ ଅନୁକ୍ରମରେ ପଦ ରଚନା କରି କବି କେବଳ ତାଙ୍କର ପାଣ୍ଡିତ୍ୟର ପରିଚୟ ଦେଇଛନ୍ତି ତାହା ନୁହେଁ, କଳାପ୍ରିୟ ଓଡ଼ିଆ ଜାତିର କଳା–ଗୌରବର ପରମ୍ପରା ରକ୍ଷା କରିବାରେ ସମର୍ଥ ହୋଇଛନ୍ତି ।

## ବିଷୟବସ୍ତୁ

ଗ୍ରନ୍ଥରେ ଶ୍ରୀକୃଷ୍ଣଙ୍କ ବାଲ୍ୟଜୀବନ 'ଭାଗବତ'ର ଦଶମ ଅଧ୍ୟାୟ ଉପରେ ଆଶ୍ରୟ କରି ବର୍ଣ୍ଣିତ ହୋଇଛି । ମଧ୍ୟଯୁଗୀୟ କାବ୍ୟ ପରମ୍ପରା ଅନୁସାରେ ଜଗନ୍ନାଥଙ୍କର ବନ୍ଦନା ଅଛି । ଦ୍ୱିତୀୟ ଛାନ୍ଦରେ ଜଗନ୍ନାଥଙ୍କୁ ବିଷ୍ଣୁ ଭାବରେ ଚିହ୍ନିତ କରାଯାଇଛି । ତୃତୀୟ ଛାନ୍ଦରେ ଗୋପୀମାନେ ନନ୍ଦ ମନ୍ଦିରକୁ ଯାଇ ଶ୍ରୀକୃଷ୍ଣଙ୍କୁ ଦର୍ଶନ କରିଛନ୍ତି । ଚତୁର୍ଥ ଛାନ୍ଦରେ ପୂତନା କ୍ଷୀର ପାନ କରାଇବାକୁ ଯାଇ ପ୍ରାଣ ବିସର୍ଜନ କରିଛି । ପଞ୍ଚମ ଓ ଷଷ୍ଠ ଛାନ୍ଦରେ କୃଷ୍ଣ ବଳରାମଙ୍କ ବାଲ୍ୟଲୀଳା ବର୍ଣ୍ଣିତ । ସପ୍ତମ ଓ ଅଷ୍ଟମ ଛାନ୍ଦରେ କୃଷ୍ଣ ପ୍ରୀତି ଲାଭ ଓ କାମକେଳିର ବର୍ଣ୍ଣନା ଦେଖିବାକୁ ମିଳେ । ନବମ ଛାନ୍ଦରେ କାଳୀୟ ଦଳନ, ଦଶମ ଛାନ୍ଦରେ ରାଧାଙ୍କ ସୌନ୍ଦର୍ଯ୍ୟ ବର୍ଣ୍ଣନା, ଏକାଦଶ ଛାନ୍ଦରେ ଶୀତଋତୁ ଓ ଦ୍ୱାଦଶ ଛାନ୍ଦରେ ବସନ୍ତ ଋତୁର ବର୍ଣ୍ଣନା ଅଛି । ତ୍ରୟୋଦଶ ଓ ଚତୁର୍ଦ୍ଦଶ ଛାନ୍ଦରେ ଗ୍ରୀଷ୍ମଋତୁ, ଜଳକେଳି ଓ ବସ୍ତ୍ରହରଣକୁ କବି ବିଶଦ ଭାବରେ ବର୍ଣ୍ଣନା କରିଛନ୍ତି । ଷୋଡ଼ଶ ଛାନ୍ଦରେ ଶରତଋତୁ ବର୍ଣ୍ଣନା ଓ ସପ୍ତଦଶ ଛାନ୍ଦରେ କୃଷ୍ଣ ଓ ଗୋପୀମାନଙ୍କ ଶରତଋତୁର

ରାସଲୀଳା ବର୍ଣ୍ଣିତ ଅଛି । ଅଷ୍ଟାଦଶ ଛାନ୍ଦରେ, ଗୋପୀମାନଙ୍କ ରୂପ ଶୋଭା ବର୍ଣ୍ଣନା, ଊନବିଂଶ, ବିଂଶ, ଏକବିଂଶ, ଦ୍ୱାବିଂଶ, ତ୍ରୟୋବିଂଶ ଓ ଚତୁର୍ବିଂଶ ଛାନ୍ଦରେ ଗୋପୀମାନଙ୍କ ସହିତ ରାସକ୍ରୀଡ଼ାର ବର୍ଣ୍ଣନା ଅଛି । ପଞ୍ଚବିଂଶ ଛାନ୍ଦରେ କୃଷ୍ଣ ଓ ବଳରାମ ମଥୁରା ଯାତ୍ରା କରିଛନ୍ତି । ଗୋପୀମାନେ ଏହା ଶୁଣି ବିଳାପ କରିଛନ୍ତି । ଶ୍ରୀକୃଷ୍ଣ ଓ ବଳରାମ ମଥୁରାରେ ପ୍ରବେଶ କରିଛନ୍ତି । ଏହାପରେ କଂସର ନିଧନ ହୋଇଛି । ତାହା ଯଥାକ୍ରମେ ଷଡ଼ବିଂଶ, ସପ୍ତବିଂଶ ଓ ଅଷ୍ଟବିଂଶ ଛାନ୍ଦର ବିଷୟବସ୍ତୁ । ଊନବିଂଶ ଛାନ୍ଦରେ କୃଷ୍ଣ ମାଈଙ୍କୁ ସାନ୍ତ୍ୱନା ଦେଇଛନ୍ତି । ଏକତ୍ରିଂଶ ଛାନ୍ଦରେ ରାଧାଙ୍କ ବିରହବ୍ୟଥା ଓ ଉଦ୍ଧବଙ୍କର ଗୋପପୁର ଗମନ କଥା ବର୍ଣ୍ଣିତ ଅଛି । ଦ୍ୱାତ୍ରିଂଶ ଓ ତ୍ରୟସ୍ତ୍ରିଂଶ ଛାନ୍ଦରେ ଉଦ୍ଧବ ଓ ଗୋପୀମାନଙ୍କର କଥୋପକଥନ ବର୍ଣ୍ଣିତ । ଗୋପୀମାନେ କୃଷ୍ଣଙ୍କର କୁଶଳ ପଚାରିଛନ୍ତି । କୃଷ୍ଣ ଆଉ ଗୋପକୁ ନ ଫେରିବାର ଜାଣି କୃଷ୍ଣଙ୍କୁ ଭର୍ତ୍ସନା କରନ୍ତେ ଉଦ୍ଧବ ଗୋପୀମାନଙ୍କୁ ସାନ୍ତ୍ୱନାବାଣୀ ଶୁଣାଇଛନ୍ତି । ଗୋପୀଙ୍କଠାରୁ ବଳି ଭକ୍ତ ଆଉ କେହି ନାହାନ୍ତି ବୋଲି ଉଦ୍ଧବ ଭାବିଛନ୍ତି । ଏଇଠି କାବ୍ୟର ଶ୍ରେଷ୍ଠ ଭକ୍ତିମତ୍ତା ପ୍ରକାଶ ପାଇଛି । ଚତୁସ୍ତ୍ରିଂଶ ଛାନ୍ଦରେ ଉଦ୍ଧବ ଗୋପୀମାନଙ୍କର ବିରହ ଦଶା ବର୍ଣ୍ଣନା କରିଛନ୍ତି । ଉଦ୍ଧବଙ୍କୁ ବିଦାୟ ଦେଇ ଶ୍ରୀକୃଷ୍ଣ ରାତ୍ରିଯାପନ କରିଛନ୍ତି । ଶ୍ରୀକୃଷ୍ଣଙ୍କ ବନ୍ଦନାରେ କାବ୍ୟର ପରିସମାପ୍ତି ଘଟିଛି । କାବ୍ୟରେ ସର୍ବତ୍ର ଭକ୍ତିରସର ପ୍ରବାହ କୃଷ୍ଣ କାବ୍ୟ ପରମ୍ପରାରେ ଏହାକୁ ଏକ ଶ୍ରେଷ୍ଠ ଭକ୍ତି ରସାତ୍ମକ କାବ୍ୟ ଭାବରେ ଯେ ପ୍ରତିଷ୍ଠା କରିପାରିଛି, ଏଥିରେ ସନ୍ଦେହ ନାହିଁ ।

### କବିଙ୍କ ଭକ୍ତିମତ୍ତା

ଦୀନକୃଷ୍ଣ ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ । ସେ ଜଗନ୍ନାଥଙ୍କୁ ଅବତାରୀ ଭାବରେ ଗ୍ରହଣ କରିଛନ୍ତି । 'ରସକଲ୍ଲୋଳ'ର ଚତୁର୍ଦ୍ଦଶ ଛାନ୍ଦରେ ସେ ଏହା ସ୍ପଷ୍ଟ କରିଛନ୍ତି, ଯଥା –

''କମ୍ବୁ କଟକରେ ନୀଳାଦ୍ରି ନାମରେ ପାହାନ୍ତି ଶଙ୍ଖ ବାଜିଲା ।

× × ×

କଳା ପର୍ବତରେ ବିଜୟ ସଧୀରେ କରୁଣା ହୃଦୟ ହୋଇ,
କଳୁଷୀ ଲୋକକୁ କଳମଷ ପଙ୍କୁ ଉଦ୍ଧାର କରିବାପାଇଁ ।''

କବି ମଧ୍ୟ କେତେକ ସ୍ଥଳରେ ଯୋଗସାଧନ ବିଷୟରେ ସୂଚନା ଦେଇଛନ୍ତି । ଅବଶ୍ୟ ତାହା ସେପରି ସ୍ପଷ୍ଟ ନୁହେଁ । ଦୀନକୃଷ୍ଣ କିନ୍ତୁ ଯଥାର୍ଥରେ ବୈଷ୍ଣବକବି ଥିଲେ । ସେ କାୟମନୋବାକ୍ୟରେ ନିଜକୁ ଶ୍ରୀକୃଷ୍ଣଙ୍କ ଚରଣରେ ଅର୍ପଣ କରିଛନ୍ତି । ତ୍ରୟୋଦଶ ଛାନ୍ଦରେ ଏହାର ବର୍ଣ୍ଣନା ଅଛି, ଯଥା –

''କାଳିନ୍ଦୀ କୂଳିୟା କଦମ୍ବ ମୂଳିୟା କାଇଁଚ ମାଳିଆ ପାଦେ ।
କୃଷ୍ଣ ଦାସ ମନ ବଚନ କର୍ତ୍ତବ୍ୟ ରଖିଅଛି ଅପ୍ରମାଦେ ସେ କାଳେ ।
କାଳଭୟ ବିନାଶିବେ ହେଳେ ସେ ।''

ଅଧ୍ୟାପକ ଡଃ ବଂଶୀଧର ମହାନ୍ତିଙ୍କ ଭାଷାରେ –

''କବିଙ୍କ ଧାର୍ମିକ ମତବାଦ ଆଲୋଚନା କଲେ ଜଣାଯାଏ ଯେ କବି ତତ୍କାଳୀନ ଜଣେ ଶ୍ରେଷ୍ଠ ଜ୍ଞାନୀ ଉତ୍କଳୀୟ ବୈଷ୍ଣବ ଥିଲେ । ତାଙ୍କର ଗ୍ରନ୍ଥ ଓ ରଚନା ସମୂହରେ ସେ ଉଭୟ ଜ୍ଞାନ ତଥା ପ୍ରେମର ମଧୁର ସମନ୍ୱୟ ଆନୟନ କରିବାରେ ସମର୍ଥ ହୋଇଛନ୍ତି ।''

## ରସକଲ୍ଲୋଳର ଭାଷା

ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତି ସଂସ୍କୃତ ପଣ୍ଡିତମାନଙ୍କ ଅନୁକରଣରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷାରେ ସାହିତ୍ୟ ସୃଷ୍ଟି କରିଥିଲେ । ମାତ୍ର ତାହା ଜନସାଧାରଣଙ୍କ ବୋଧଗମ୍ୟ ହେଉ ନ ଥିଲା । ଦୀନକୃଷ୍ଣ ତେଣୁ ଉଭୟ ସଂସ୍କୃତ ଓ ପ୍ରାକୃତ ଭାଷାର ସମନ୍ୱୟ ରକ୍ଷା କରିଛନ୍ତି । ସାହିତ୍ୟିକ ଭାଷା କିପରି ହୋଇଛି ସେ ତାହା ଉଲ୍ଲେଖ କରିଛନ୍ତି –

''କଥା ନୋହେ ଦିବ୍ୟ ଅଦିବ୍ୟ ସମ ।''

ଅର୍ଥାତ୍ କାବ୍ୟର ଭାଷା ଦିବ୍ୟ ବା ଉଚ୍ଚଧରଣର ଅଥବା ଅଦିବ୍ୟ ବା ଗାଉଁଲି ହେବ ନାହିଁ । ଏହା ସମ ବା ସମାନ ହେବା ଆବଶ୍ୟକ । ଦୀନକୃଷ୍ଣ ସଂସ୍କୃତ ଭାଷା ଓ ଲୋକଭାଷା ଉଭୟକୁ କାବ୍ୟରେ ବ୍ୟବହାର କରିଛନ୍ତି । ଏହାର ଉଦାହରଣ –

''କେତେବେଳେ ନନ୍ଦ କାନ୍ଧେ ବସି ଚାନ୍ଦ
ମାଗନ୍ତି ରଜନୀ ସମୟେ
କରି ମନତୋଷ, ଜହ୍ନମାମୁଁ ଆସ
ଆସ ବୋଲନ୍ତି ନନ୍ଦରାୟେ ।''

ଏହି ସାଧାରଣ ଓ ସଂସ୍କୃତ ଭାଷାର ମିଶ୍ରଣ ପ୍ରବାହ 'ରସକଲ୍ଲୋଳ'ରେ ଯେ ଛୁଟିଛି, ଏହା ସମସ୍ତେ ସ୍ୱୀକାର କରନ୍ତି ।

## ପଦଲାଳିତ୍ୟ

ଦୀନକୃଷ୍ଣଙ୍କ କାବ୍ୟକବିତା ଭଞ୍ଜ ସାହିତ୍ୟ ପରି ଶବ୍ଦାଳଙ୍କାରର ପ୍ରାଚୁର୍ଯ୍ୟରେ ଭାରାକ୍ରାନ୍ତ ନୁହେଁ । ତାଙ୍କ କାବ୍ୟକବିତାରେ ଉପମା, ଶ୍ଳେଷ, ରୂପକ, ଉତ୍ପ୍ରେକ୍ଷା ପ୍ରଭୃତି ଥିଲେ ମଧ୍ୟ ସେଗୁଡ଼ିକ ଚମତ୍କାରଭାବେ ପ୍ରୟୋଗ ହେବା ଫଳରେ

ଶ୍ରୁତିମଧୁର ହୋଇପାରିଛି । ସଂସ୍କୃତରେ 'ନୈଷଧ କାବ୍ୟ' ପଦଲାଳିତ୍ୟପାଇଁ ଖ୍ୟାତି ଲାଭ କରିଛି । ସେହିପରି ସଂସ୍କୃତରେ ଲିଖିତ ଓଡ଼ିଆ କବି ଜୟଦେବଙ୍କ 'ଗୀତିଗୋବିନ୍ଦ'ର ପଦଲାଳିତ୍ୟ ବିଷୟରେ ସମସ୍ତେ ଏକମତ । ଏହାର ଅନୁସରଣରେ ଦୀନକୃଷ୍ଣ 'ରସକଲ୍ଲୋଳ' ରଚନା କରିଛନ୍ତି । ଏହାର ପ୍ରତ୍ୟେକ ଛାନ୍ଦରେ, ପ୍ରତ୍ୟେକ ପଦରେ କୋମଳତା ଓ ଲାଳିତ୍ୟ ଭରିରହିଛି । ଦୀନକୃଷ୍ଣ 'ରସକଲ୍ଲୋଳ' ବୀଣାର ତାର ଅଥବା ଶ୍ରୀକୃଷ୍ଣଙ୍କ ବଂଶୀର ସ୍ୱର ଭଳି ମଧୁର ବୋଲି କବିବର ରାଧାନାଥ ବ୍ୟକ୍ତ କରିଛନ୍ତି –

"କଳା ତୋମାୟେ ଦିଲ ବଲ ଦେନ ସ୍ୱର ସମ
ହେନ ବୀଣା ମିଷ୍ଟଯେନ ମୁରାରି ବାଂଶରୀ... ।"

ଦୀନକୃଷ୍ଣଙ୍କ ଲଳିତ ପଦଯୋଜନା 'ରସକଲ୍ଲୋଳ' ଗ୍ରନ୍ଥର ଚତୁସ୍ତ୍ରିଂଶ ଛନ୍ଦରୁ ଦୁଇ ପଦରୁ ଜଣାଯାଏ, ଯଥା –

"କାଳିନ୍ଦୀ ଜଳ କଲ୍ଲୋଳ ରଙ୍ଗିୟା·
କଦମ୍ବ ତରୁତଳ ତ୍ରିଭଙ୍ଗିୟା
କଳା–କମଳ–କଜ୍ଜ୍ୱଳ କାଳିଆ
କେଳି ବିରହି କଳାପ ଚୂଳିଆ ।"

'ରସକଲ୍ଲୋଳ' ଓଡ଼ିଆ ସାହିତ୍ୟର ଏକ ଅପୂର୍ବ ସୃଷ୍ଟି । ଭକ୍ତିରସାତ୍ମକ କାବ୍ୟ ଦୃଷ୍ଟିରୁ ଏହାର ସ୍ଥାନ ଅତି ଉଚ୍ଚରେ । ସରଳ ପଦଯୋଜନା ଓ ପଦଲାଳିତ୍ୟର ଅନୁପମ ସମ୍ଭାରରେ ଏହା ଉତ୍କଳର ଅଗଣିତ ପାଠକମାନଙ୍କ ଚିତ୍ତ ବିନୋଦନ କରିଆସୁଛି । କେବଳ ମଧ୍ୟ ବା ଆଧୁନିକ ଯୁଗର ପାଠକମାନଙ୍କ ନୁହେଁ, ଅତ୍ୟାଧୁନିକ ଯୁଗରେ ମଧ୍ୟ ପାଠକ–ପାଠିକାମାନଙ୍କ ମଧ୍ୟରେ ଏହା ରସର କଲ୍ଲୋଳ ଯେ ସୃଷ୍ଟି କରୁଅଛି, ଏହା କହିବା ବାହୁଲ୍ୟମାତ୍ର ।

**ଗୀତିକବିତା**

ଦୀନକୃଷ୍ଣ ବହୁ ଭଜନ, ଜଣାଣ ରଚନା କରିଛନ୍ତି । ତାଙ୍କର ଚଉତିଶାଗୁଡ଼ିକ ଅତି ମୂଲ୍ୟବାନ୍ ଓ ଅପୂର୍ବ ସୌନ୍ଦର୍ଯ୍ୟରେ ବିମଣ୍ଡିତ । ସେଗୁଡ଼ିକ ଉତ୍କଳର ସାରସ୍ୱତ ସମ୍ପଦ ବୋଲି ବିବେଚିତ ହୁଏ ।

କବି ଜଗନ୍ନାଥଙ୍କ ଭକ୍ତ ଥିଲେ । ଜଗନ୍ନାଥ ଭକ୍ତମାନଙ୍କର ଦୁଃଖ କିପରି ତୁଟନ୍ତି ତାହା ଏକ ଭଜନରେ ଗାଇଛନ୍ତି । ଏହା ମଧ୍ୟ ଓଡ଼ିଶାର ଏକ ଜନପ୍ରିୟ ଭଜନ ଅଟେ ।

"ଜୟ ଜଗବନ୍ଧୁ ହେ ଯଦୁନନ୍ଦନ
ବ୍ରଜବାଳୀ ହୃଦ ତଟ ଚନ୍ଦନ
ବଡ଼ ଦେଉଳେ ବିହାର ବଡ଼ ନିତା ବଡ଼ଚୂଳ
କି ଶୋଭା ଦିଶୁଛି କଳାବଦନ ।"

ଜଗନ୍ନାଥଙ୍କ ମହିମା 'ପାହିଲା ନିଶି'ରେ ମଧ୍ୟ ବର୍ଣ୍ଣିତ ଅଛି –

"ପାହିଲା ନିଶି ପହରେକ ଅଛି
ଘନ ଘନ ଶଙ୍ଖ ଫୁରୁଛି
ରତ୍ନ ପଲଙ୍କ ତେଜିଣ ଜଗନ୍ନାଥ
ସିଂହାସନ ବିଜେ କରୁଛି ।"

'ଶ୍ରୀ ପହୁଡ଼ଲାଗି ଭଜନ'ରେ ଶ୍ରୀଜଗନ୍ନାଥଙ୍କ ଶୟନକାଳର ବିଧିବିଧାନ ବର୍ଣ୍ଣିତ ଅଛି, ଯଥା –

"ଜଗବନ୍ଧୁ ଅଙ୍କେ ରତନ ପଲଙ୍କେ
ପହୁଡ଼ିଲେ ସିନ୍ଧୁ ଜେମାଦେଇ
ଦିବ୍ୟ ସୁବାସ ଜଳ ସୁନାଝରୀରେ
ସୁବାସ ପଇଡ଼ ତଳେ ଥୋଇ ।"

ଏହାଛଡ଼ା 'ଭଜମନ କଳାକହ୍ନାଇ', 'ଜଗବନ୍ଧୁ ପରି ଜଣେ ସାମନ୍ତ', 'କରୀନ୍ଦ୍ର ଦନ୍ତ ପଲଙ୍କ ତେଜି ପ୍ରଭୁ', 'ତୋର ଶରଣ ଗଲିରେ ମୁରଲୀ', 'ଉଠ ଲୋ ମନ ଭଜ ଗୋବିନ୍ଦ' ପ୍ରଭୃତି ଭଜନଗୁଡ଼ିକ ଅତୀବ ଜନପ୍ରିୟତା ହାସଲ କରିଛି । ଦୀନକୃଷ୍ଣଙ୍କ ରଚିତ ୩୦ଗୋଟି ଭକ୍ତି କବିତା ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସିଛି ।

ଦୀନକୃଷ୍ଣ ପ୍ରାଚୀନ କବିମାନଙ୍କ ମଧ୍ୟରେ ସର୍ବାଧିକ ଚଉତିଶା ଲେଖିଛନ୍ତି । ଅଧିକାଂଶ ଚଉତିଶା ରାଧାକୃଷ୍ଣ ଲୀଳା ଉପରେ ରଚିତ । ରାଧାକୃଷ୍ଣ ଚଉତିଶାରେ ବିରହ ପରେ ରାଧାକୃଷ୍ଣଙ୍କ ମିଳନ ବର୍ଣ୍ଣିତ ଅଛି । ପ୍ରାଣସଖୀ ଚଉତିଶାରେ ରାଧାଙ୍କ ରୂପ ବର୍ଣ୍ଣନା କରାଯାଇଛି । ଶ୍ରୀ ରାଜାଧିରାଜ ଚଉତିଶା, ଶ୍ରୀ ନୀଳାଚଳ ନାୟକ ଚଉତିଶାରେ ଜଗନ୍ନାଥଙ୍କ ରୂପ ଓ ଶୋଭାର ବର୍ଣ୍ଣନା ଦେଖିବାକୁ ମିଳେ । ଶ୍ରୀ ଜନାର୍ଦ୍ଦନ ଚଉତିଶାରେ କୃଷ୍ଣଙ୍କ ବାଲ୍ୟକାଳର ରୂପ ବର୍ଣ୍ଣିତ ଅଛି । କବିଙ୍କର କିନ୍ତୁ ଅତି ପ୍ରିୟ ଚଉତିଶା ହେଲା ଆର୍ତ୍ତତ୍ରାଣ ଚଉତିଶା । କଥିତଅଛି କବି ଏହି ଚଉତିଶାକୁ ଗରୁଡ଼ ସ୍ତମ୍ଭ ନିକଟରେ ଗାନ କରି କୁଷ୍ଠବ୍ୟାଧିରୁ ଆରୋଗ୍ୟ ଲାଭ କରିଥିଲେ । ତା'ର ଗୋଟିଏ ପଦ –

''କୃପାସିନ୍ଧୁ ବଦନ କରି ଅବଲୋକନ
କେଉଁ କରମହୀନ ଜନ
କାକୁସ୍ଥ ହୋଇ କରଯୋଡ଼ି ଜଣାଇ,
ଗରୁଡ଼ ସ୍ତମ୍ଭ ସନ୍ନିଧାନ
ହେ ମହାପ୍ରଭୁ !''

ସପ୍ତଦଶ ଶତାବ୍ଦୀର ଶେଷଭାଗର ରୀତି ଯୁଗର କବି ଦୀନକୃଷ୍ଣ ଉତ୍କଳ ସାହିତ୍ୟ ଆକାଶର ଏକ ଉଜ୍ଜ୍ୱଳତମ ଜ୍ୟୋତିଷ୍କ । ତାଙ୍କ ଜୀବନଚରିତ ଓ ଇଟାଲୀର ବିଖ୍ୟାତ କବି ଦାନ୍ତେଙ୍କ ଜୀବନଚରିତ ମଧ୍ୟରେ ବହୁ ସାମଞ୍ଜସ୍ୟ ଅଛି । ହା-ହୁତାଶମୟ ଜୀବନ କଟାଇ, କଠୋର ସାଧନାରେ ବ୍ରତୀ ହୋଇ ଦାନ୍ତେ ସୃଷ୍ଟି କରିଗଲେ ମଧୁମୟ କାବ୍ୟ 'Divine Comedy' ବା ସ୍ୱର୍ଗୀୟ ମିଳନ । ସେହିପରି ବିଧାତାର କ୍ରୂର ଅଭିଶାପରେ ଦୁଃସହ କୁଷ୍ଠରୋଗାକ୍ରାନ୍ତ ହୋଇ ଦୀନ ଦୀନକୃଷ୍ଣ ଓଡ଼ିଆ ଜାତିକୁ ଦେଇଗଲେ ଢଳ ଢଳ କାନ୍ତ କୋମଳ ପଦ୍ୟାବଳୀର ମନୋଜ୍ଞ ଭଣ୍ଡାର-'ରସକଲ୍ଲୋଳ' ।

କବିବର ରାଧାନାଥ ସେହି ଅମର କବିଙ୍କୁ ତାଙ୍କର ଭକ୍ତି ନୈବେଦ୍ୟ ଅର୍ପଣ କରିଛନ୍ତି –

''ଉତ୍କଳୀୟ ଜୟଦେବ ଦୀନକୃଷ୍ଣ କବି
ସ୍ୱଧନ୍ୟର ଭକତ ଜନଗଣ ଚୂଡ଼ାମଣି
ଚିତ୍ରକର ! ଚିତ୍ରୟାଛ ସେ ସୁଚାରୁ ଛବି
ସୁମରିବ ଏ ଦାସ ତାହା ଦିବସ ରଜନୀ ।''



## କବିସମ୍ରାଟ୍
# ଉପେନ୍ଦ୍ର ଭଞ୍ଜ

ଓଡ଼ିଆ ସାହିତ୍ୟରେ ଯେଉଁ ଯୁଗ ବିଭାଗ କରାଯାଇଛି, ସେହି ଅନୁସାରେ ଉପେନ୍ଦ୍ର ଭଞ୍ଜ ମଧ୍ୟଯୁଗ ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ କବି । ସେ ବହୁ କାବ୍ୟକବିତା ରଚନା କରି ଉତ୍କଳ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ତାଙ୍କ ପୂର୍ବରୁ ଧନଞ୍ଜୟ ଭଞ୍ଜ, ଦୀନକୃଷ୍ଣ, ତ୍ରିବିକ୍ରମ ଭଞ୍ଜ, ଶ୍ରୀଧର ଦାସ, ଲୋକନାଥ ପ୍ରଭୃତି ବାଣୀ ଆରାଧନା କରୁଥିଲେ । ସେମାନେ ମଧ୍ୟ ବହୁ କାବ୍ୟକବିତା ସୃଷ୍ଟି କରି ଓଡ଼ିଆ ଭାଷାର ଗୌରବ ବୃଦ୍ଧି କରିଥିଲେ । ମାତ୍ର ଉପେନ୍ଦ୍ର ଭଞ୍ଜ ନିଜର ଅସାଧାରଣ ଧୀଶକ୍ତି, ପ୍ରତିଭା ଓ ପାଣ୍ଡିତ୍ୟ ବଳରେ ପୁରାତନ ଶୈଳୀକୁ ନୂତନ ରୂପ ଦେଇ ଓଡ଼ିଆ ଭାଷା ଓ ସାହିତ୍ୟକୁ ଦୃଢ଼ଭିତ୍ତି ଉପରେ ପ୍ରତିଷ୍ଠିତ କଲେ । ତାଙ୍କ ରଚିତ 'ବୈଦେହୀଶ ବିଳାସ', 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ' ପ୍ରଭୃତି କାବ୍ୟ କେବଳ ଓଡ଼ିଆ ସାହିତ୍ୟ କାହିଁକି, ସମଗ୍ର ଭାରତୀୟ ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ ନାହିଁ । ସେଥିପାଇଁ ସେ ଓଡ଼ିଆ ଜାତିର ପ୍ରତ୍ୟେକ ବ୍ୟକ୍ତିର ହୃଦୟରେ ଉଚ୍ଚତମ ଆସନ ପାଇପାରିଛନ୍ତି ।

### ଜନ୍ମ ଓ ବଂଶ ପରିଚୟ

ଉପେନ୍ଦ୍ର ଭଞ୍ଜ ଗଞ୍ଜାମ ଜିଲ୍ଲା ଘୁମୁସର ରାଜାଙ୍କ କୁଳାଡ଼ ରାଜପ୍ରାସାଦରେ ୧୬୭୦ ଖ୍ରୀଷ୍ଟାବ୍ଦରେ ନୈସର୍ଗିକ ମଞ୍ଜୁଳ ପ୍ରାକୃତିକ ପରିବେଶ ମଧ୍ୟରେ ଜନ୍ମଗ୍ରହଣ

କରିଥିଲେ । ସେ ୧୬୮୫ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିବାର କେହି କେହି ମତ ଦିଅନ୍ତି । ତାଙ୍କ ପିତାଙ୍କ ନାମ ନୀଳକଣ୍ଠ ଭଞ୍ଜ । ତାଙ୍କର ପିତାମହ ଥିଲେ ପ୍ରତାପ ଧନଞ୍ଜୟ ଭଞ୍ଜ । ସେ ଘୁମୁସରର ରାଜା ଥିଲେ । ସେ କେବଳ ସୁଶାସକ ନ ଥିଲେ, ସେ ଥିଲେ ସେ ଯୁଗର ବିଶିଷ୍ଟ କବି । ସେ 'ରଘୁନାଥ ବିଳାସ', 'ତ୍ରିପୁର ସୁନ୍ଦରୀ', 'ମଦନ ମଞ୍ଜରୀ' ଓ 'ରାମଚରିତ' ପ୍ରଭୃତି ବହୁ କାବ୍ୟ ରଚନା କରିଥିଲେ । ଉପେନ୍ଦ୍ର ମଧ୍ୟ ତାଙ୍କ କାବ୍ୟକବିତାମାନଙ୍କରେ ଧନଞ୍ଜୟ ଭଞ୍ଜଙ୍କୁ ଉଚ୍ଚ ସ୍ଥାନରେ ଅଧିଷ୍ଠିତ କରିଛନ୍ତି –

"ରାଜା ଧନଞ୍ଜୟ ସମସ୍ତ ଗୁଣର ନିଳୟ
ଘୁମୁସର ଅଧିପ ପଣେ, ଲୋକ ବିଖ୍ୟାତ କବି ଗୁଣେ ।"

ଧନଞ୍ଜୟ ଭଞ୍ଜଙ୍କ ବହୁ ପତ୍ନୀ ଓ ଦ୍ୱାଦଶ ପୁତ୍ର ଥିଲେ । ତାଙ୍କର ପତ୍ନୀମାନଙ୍କ ମଧ୍ୟରେ ନୟାଗଡ଼ ରାଜାଙ୍କ କନ୍ୟା ମଣ୍ଡାଦେବୀ ଥିଲେ ଅନ୍ୟତମ । ସେ ଅନ୍ୟ ରାଣୀମାନଙ୍କ ଅପେକ୍ଷା ରୂପବତୀ ଓ ଗୁଣବତୀ ଥିବାରୁ ରାଜା ଧନଞ୍ଜୟ ତାଙ୍କ ପ୍ରତି ଅଧିକ ଆସକ୍ତ ଥିଲେ । ମଣ୍ଡାଦେବୀ ମଧ୍ୟ ନିଜ ପୁତ୍ର ନୀଳକଣ୍ଠଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରିବାକୁ ଚାହିଁଥିଲେ । ମାତ୍ର ଧନଞ୍ଜୟଙ୍କର ଜ୍ୟେଷ୍ଠପୁତ୍ର ଥିଲେ ଗଙ୍ଗାଧର । ସେ ଥାଉଁ ଥାଉଁ ନୀଳକଣ୍ଠଙ୍କୁ ସିଂହାସନରେ ଅଭିଷିକ୍ତ କରିବାପାଇଁ ରାଜା ସମ୍ମତ ହୋଇ ନ ଥିଲେ । ତେଣୁ ମଣ୍ଡାଦେବୀ ଧନଞ୍ଜୟଙ୍କ ପରେ ନୀଳକଣ୍ଠଙ୍କୁ ସିଂହାସନରେ ବସାଇ ରାଜମାତା ହେବାପାଇଁ ଷଡ଼୍‌ଯନ୍ତ୍ର ଆରମ୍ଭ କଲେ ।

## ବିଦ୍ୟାଲାଭ

ମଣ୍ଡାଦେବୀଙ୍କ ଔରସରୁ ଜାତ ନୀଳକଣ୍ଠଙ୍କ ଜ୍ୟେଷ୍ଠସନ୍ତାନ ଥିଲେ ଉପେନ୍ଦ୍ର । ରାଜପରିବାରରେ ଜନ୍ମଗ୍ରହଣ କଲେ ମଧ୍ୟ ବିଳାସ ବ୍ୟସନ ପ୍ରତି ମମତା ତାଙ୍କର ନ ଥିଲା । ତାଙ୍କର କମନୀୟ ଚେହେରା ଓ ଶାନ୍ତ ପ୍ରକୃତି ଯୋଗୁଁ ରାଜା ଧନଞ୍ଜୟ ତାଙ୍କୁ ଅତ୍ୟଧିକ ସ୍ନେହ କରୁଥିଲେ । ଉପେନ୍ଦ୍ର ମଧ୍ୟ ବାଲ୍ୟକାଳରୁ ଅସାଧାରଣ ବୁଦ୍ଧି ବୃତ୍ତିର ପରିଚୟ ଦେଇଥିଲେ । ସେ ସମୟରେ ଶିକ୍ଷାଲାଭର କୌଣସି ସୁବିଧା ନ ଥିଲେ ମଧ୍ୟ ପିତା ଓ ପିତାମହ ତାଙ୍କୁ ଉପଯୁକ୍ତ ଶିକ୍ଷାଦେବାରେ ହେଳା କରି ନ ଥିଲେ । ପିତା ନୀଳକଣ୍ଠ ଓ ପିତାମହ ଧନଞ୍ଜୟ ଉଭୟେ ସାହିତ୍ୟିକ ଓ ସାହିତ୍ୟ ଅନୁରାଗୀ ଥିଲେ । ସେ ସମୟରେ ଓଡ଼ିଶାର ବିଭିନ୍ନ ପ୍ରାନ୍ତରୁ ଗୁଣୀ ଓ ପଣ୍ଡିତମାନେ ରାଜାଙ୍କ ଦରବାରକୁ ଆସୁଥିଲେ । ସେମାନଙ୍କ ଉପଯୁକ୍ତ ଚର୍ଚ୍ଚା ପିତା ନୀଳକଣ୍ଠଙ୍କ ଉପରେ ନ୍ୟସ୍ତ ଥିଲା । ସାହିତ୍ୟ ଓ ସଙ୍ଗୀତଚର୍ଚ୍ଚା ସବୁବେଳେ ଦରବାରରେ ଲାଗି ରହିଥିଲା । ସେଇ ପଣ୍ଡିତମାନଙ୍କ ମଧ୍ୟରୁ କେତେକଙ୍କ ଉପରେ ଉପେନ୍ଦ୍ରଙ୍କ ବାଲ୍ୟଶିକ୍ଷା ଭାର ଦିଆଗଲା ।

ଉପେନ୍ଦ୍ର ବାଲ୍ୟକାଳରେ ପୁରାଣ, କାବ୍ୟ ପ୍ରଭୃତି ଅଧ୍ୟୟନ କରିଥିଲେ । ସାରଳା ଦାସଙ୍କ 'ମହାଭାରତ', ବଳରାମ ଦାସଙ୍କ 'ରାମାୟଣ', ଅଚ୍ୟୁତାନନ୍ଦ ଦାସଙ୍କ 'ହରିବଂଶ' ପ୍ରଭୃତି ସେ ପଢ଼ି ଆୟତ୍ତ କଲେ । ସେ ମଧ୍ୟ ପଣ୍ଡିତମାନଙ୍କ ଚେଷ୍ଟାରୁ ସଂସ୍କୃତ, କାବ୍ୟ, ନାଟକ, ଦର୍ଶନ, ଜ୍ୟୋତିଷ, ଆୟୁର୍ବେଦ, ପୁରାଣ, ବ୍ୟାକରଣ, ଅଳଙ୍କାର ପ୍ରଭୃତି ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କଲେ । କାବ୍ୟ ମଧ୍ୟରେ ଶ୍ରୀହର୍ଷଙ୍କ ବିରଚିତ 'ନୈଷଧୀୟ ଚରିତ' ପ୍ରତି ତାଙ୍କର ପ୍ରବଳ ଆଗ୍ରହ ଜାତ ହେଲା ।

ଉପେନ୍ଦ୍ର ସଙ୍ଗୀତଶାସ୍ତ୍ର ମଧ୍ୟ ଅଧ୍ୟୟନ କଲେ । ସେ ସୁଗାୟକ ଥିଲେ । 'ଗୀତଗୋବିନ୍ଦ'ର ଛାନ୍ଦ ଓ କୋମଳ ପଦ୍ୟାବଳୀକୁ ସେ ସୁଲଳିତ କଣ୍ଠରେ ଗାନ କରୁଥିଲେ । ଏହାପରେ ସେ କାବ୍ୟ ରଚନା ଦିଗରେ ଆଗ୍ରହୀ ହେଲେ ।

## ତାରକ ମନ୍ତ୍ର ସାଧନା

ପିତାମହ ଧନଞ୍ଜୟ ଉପେନ୍ଦ୍ରଙ୍କର କବି ହେବାପାଇଁ ଆଗ୍ରହ ଦେଖି ରାଜବଂଶର ଇଷ୍ଟଦେବୀ ବାଗ୍‌ଦେବୀଙ୍କର ଶରଣାପନ୍ନ ହେବାକୁ ପରାମର୍ଶ ଦେଲେ । ଉପେନ୍ଦ୍ର ମଧ୍ୟ ଦେବୀଙ୍କ ଶରଣାପନ୍ନ ହେଲେ । ନୟାଗଡ଼ ଯାଇ ରାମତାରକ ମନ୍ତ୍ରରେ ସିଦ୍ଧି ଲାଭ କରିବାପାଇଁ ତାଙ୍କୁ ସ୍ୱପ୍ନାଦେଶ ହେଲା ।

ଉପେନ୍ଦ୍ର ନୟାଗଡ଼ ଯାଇ ଓଡ଼ଗାଁ ନିକଟବର୍ତ୍ତୀ ଦଧିନଉକାଠାରେ ସାଧନା ଆରମ୍ଭ କଲେ । ତାଙ୍କ ସାଧନାରେ ପ୍ରୀତ ହୋଇ ସ୍ୱୟଂ ରାମ ରଘୁନାଥ ନାମକ ଜଣେ ସନ୍ନ୍ୟାସୀ ରୂପରେ ଉପେନ୍ଦ୍ରଙ୍କୁ ଦେଖାଦେଲେ ଓ ରାମତାରକ ମନ୍ତ୍ରର ଅଦ୍ଭୁତ ଶକ୍ତି ଓ ପ୍ରଣାଳୀ ବତାଇଲେ । ଉପେନ୍ଦ୍ର ସେଠାରୁ ବୁଦ୍ଧଖୋଲ ଯାତ୍ରା କରି ପବିତ୍ର ଗୁମ୍ଫାରେ ବସି ରାମତାରକ ମନ୍ତ୍ର ଜପିବାରେ ଲାଗିଲେ ଏବଂ ବହୁ ଶ୍ରମ ଓ କଷ୍ଟରେ ସାଧନା କରି ସିଦ୍ଧି ଲାଭ କଲେ । ସେହି ଗୁମ୍ଫା ବୁଦ୍ଧଖୋଲ ନାମରେ ଖ୍ୟାତି ଲାଭ କରିଅଛି ।

କଥିତଅଛି, ସିଦ୍ଧିଲାଭ ପରେ ଉପେନ୍ଦ୍ର ଘୋଟକପୃଷ୍ଠରେ ଅରଣ୍ୟ ପଥରେ ଘୁମୁସର ଆଡ଼କୁ ଆସୁଥିଲାବେଳେ ଜଣେ ତାନ୍ତ୍ରିକ ଏକ ନାରୀଶବ ଉପରେ ବସି ଦେବୀ ଆରାଧନା କରୁଥିବାର ଦେଖିଲେ । ଦେବୀ ପ୍ରସନ୍ନ ହୋଇ ତାଙ୍କ ଆଗରେ ଆବିର୍ଭୂତା ହୋଇ ବର ମାଗିବାକୁ କହିଲେ । ତାନ୍ତ୍ରିକ ଜଣକ କିନ୍ତୁ ଦେବୀଙ୍କୁ ଚାହିଁ ନ ପାରି ମୂର୍ଚ୍ଛା ହୋଇ ତଳେ ପଡ଼ିଗଲେ । ଉପେନ୍ଦ୍ର ସେଠାରେ ତତ୍‌କ୍ଷଣାତ୍ ପହଞ୍ଚିଲେ । ସେ ଦେବୀଙ୍କୁ ଭୂମିଷ୍ଠ ପ୍ରଣାମ କଲେ । ଦେବୀ ମଧ୍ୟ ଉପେନ୍ଦ୍ରଙ୍କ ମନର ଭାବ ବୁଝିପାରି ଆଖି ପଲକରେ ଅନ୍ତର୍ଦ୍ଧାନ ହୋଇଗଲେ । ଠିକ୍ ସେହି ସ୍ଥାନରେ କଲ୍ୟାଣମୟୀ ସରସ୍ୱତୀଙ୍କର ଆବିର୍ଭାବ ହେଲା । ଉପେନ୍ଦ୍ର ଆଖି ମଳି ଦେଖିଲେ

ଯେ ସ୍ୱୟଂ ବାଗ୍‌ଦେବୀ ତାଙ୍କ ସମ୍ମୁଖରେ ଉଭା ହୋଇଛନ୍ତି । ତାଙ୍କ ହୃଦୟରେ ଲେଶମାତ୍ର ଭୟର ସଞ୍ଚାର ହୋଇ ନ ଥିଲା । ସେ ଦୁର୍ଲଭ କବିତାର ସ୍ଫୁରଣ ହେଉ ବୋଲି ବର ମାଗିଲେ । 'ତଥାସ୍ତୁ' କହି ଦେବୀ ଅନ୍ତର୍ହିତ ହୋଇଗଲେ ।

ଏହି ପ୍ରବାଦର ସତ୍ୟତା ଯାହାଥାଉନା କାହିଁକି, ଐଶ୍ୱରିକ ଶକ୍ତି ବଳରେ ଉପେନ୍ଦ୍ର ଯେ ଅସାଧାରଣ କବିତ୍ୱର ଅଧିକାରୀ ହୋଇଥିଲେ, ଏହା ଅତି ସ୍ପଷ୍ଟ । କବି ମଧ ତାଙ୍କର କାବ୍ୟମାନଙ୍କରେ ଏହା ଉଲ୍ଲେଖ କରିଛନ୍ତି –

''ତାରକ ମନ୍ତ୍ର ପରସାଦେ
ମୋହର କବି ପଣ ଉଦେ ।''

## ମନ୍ତ୍ରର ପରୀକ୍ଷା

ତାରକ ମନ୍ତ୍ର ପରୀକ୍ଷାପାଇଁ ତାଙ୍କୁ ଏକ ସୁଯୋଗ ସଙ୍ଗେ ସଙ୍ଗେ ମିଳିଗଲା । ପିତାମହ ଧନଞ୍ଜୟ ତାଙ୍କର ଶ୍ରେଷ୍ଠ କୃତି 'ରଘୁନାଥ ବିଳାସ'କୁ ସୁଯୋଗ୍ୟ ନାତି ଉପେନ୍ଦ୍ରଙ୍କୁ ସମୀକ୍ଷା କରିବାପାଇଁ ଦେଲେ । ସମୀକ୍ଷା ପରେ ଉପେନ୍ଦ୍ର ନିଜ ମତ ବ୍ୟକ୍ତ କଲେ –

''ମଣିମା, 'ରଘୁନାଥ ବିଳାସ' ଏକ ଦୁର୍ଲଭ ଗ୍ରନ୍ଥ । କେବଳ ଅଳଙ୍କାରର ବିକାଶ ଯଥାଯଥ ଘଟିପାରି ନାହିଁ ।''

ପିତାମହ ଧନଞ୍ଜୟ ଉପେନ୍ଦ୍ରଙ୍କ ମତକୁ ହେୟ ଜ୍ଞାନ କରି ନ ଥିଲେ । ଉପେନ୍ଦ୍ରଙ୍କ ପ୍ରତିଭା ଓ ପାଣ୍ଡିତ୍ୟ ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । ସେ ଏହାଠାରୁ ଉଚ୍ଚ ଆଳଙ୍କାରିକ କାବ୍ୟ ଲେଖିପାରିବେ କି ବୋଲି ପ୍ରଶ୍ନ କଲେ । ଛାମୁଙ୍କ ଆଦେଶ ଓ ଆଶୀର୍ବାଦ ହେଲେ ତାହା କରିପାରିବେ ବୋଲି ଉପେନ୍ଦ୍ର ଉତ୍ତର ଦେଲେ ।

ଏହାପରେ ଉପେନ୍ଦ୍ର 'ବୈଦେହୀଶ ବିଳାସ' କାବ୍ୟ ରଚନା ଆରମ୍ଭ କଲେ । ପ୍ରତି ସପ୍ତାହରେ ଗୋଟିଏ ମାତ୍ର ଛାନ୍ଦ ହିସାବରେ ୫୨ ସପ୍ତାହରେ ୫୨ ଛାନ୍ଦବିଶିଷ୍ଟ କାବ୍ୟ ରଚନା କରି ପିତାମହଙ୍କ କରକମଳରେ ଅର୍ପଣ କଲେ ।

## କାବ୍ୟର ଉତ୍କର୍ଷ

ଉପେନ୍ଦ୍ର ପିତାମହଙ୍କ କାବ୍ୟର ପଦଗୁଡ଼ିକୁ ଗ୍ରହଣ କଲେ ମଧ ନିଜର ମୌଳିକତା ଫୁଟାଇଛନ୍ତି । ଉଭୟଙ୍କ ରଚନା ଶୈଳୀ ଅନୁଧ୍ୟାନ କଲେ ଜଣାଯାଏ ଯେ ଉପେନ୍ଦ୍ରଙ୍କ ଶୈଳୀ ପିତାମହଙ୍କଠାରୁ ବହୁ ଗୁଣରେ ଅଧିକ ଉତ୍କର୍ଷ ଲାଭ କରିଅଛି । ଉଦାହରଣ ସ୍ୱରୂପ, ଧନଞ୍ଜୟ ଭଞ୍ଜ ଲେଖିଥିଲେ –

''ଶୁଣି ଶ୍ରୀରାମ ଉତ୍ତର ବୋଇଲା ତହୁଁ ଧୀବର
ରହ ତୁମ୍ଭେ ରଘୁବୀର ଥୋଇବି ତୋର ପୟର
ଏ କି ତାର ଚରଣ ରେଣୁ ଲାଗିଲା ପାଷାଣ ତେଣୁ
ହେଲା ସେହି ଦିବ୍ୟ ନାରୀ ଗଲା ଗଉତମ ପୁରୀ
ଏ ନା ମୋର ଜୀବିକା ଏ ପୁଣି ହେବ ନାୟିକା
ମୁଁ ପୁଣି କରିବି କିସ ମୋ କୁଟୁମ୍ବେ ଯିବେ ନାଶ ।''

ଉପେନ୍ଦ୍ର ଭଞ୍ଜ ଏହାକୁ ବୈଦେହୀଶ ବିଳାସରେ ଲେଖିଲେ –

''ବଧିର ନୁହଁଇ ବୀର ବୋଇଲା ତହୁଁ ଧୀବର
ଶୁଣିଲିଣି ପଥରେ ପଥର ଅବଳା
ବାଳିପଡ଼ି ତୋ ଚରଣୁ ଆଶଙ୍କା ଉପୁଜେ ଏଣୁ
ନଉକା ନାୟିକା ହେଲେ ବୁଡ଼ିବ ଭେଳା
ବୃତ୍ତି ଏ ପୋଷେ କୁଟୁମ୍ବ
ବସାଇ ନ ଦେବି ପାଦ ନ ଧୋଇ ନାବ ।''

ଘୁମୁସର ରାଜଦରବାରର ପଣ୍ଡିତମଣ୍ଡଳୀ ଉପେନ୍ଦ୍ରଙ୍କ କାବ୍ୟର ଉତ୍କର୍ଷ ଉପଲବ୍‌ଧି କରି ଏକ ସ୍ୱରରେ ତାହାଙ୍କର ପ୍ରଶଂସା କରିବାରେ ଲାଗିଲେ । ଉପେନ୍ଦ୍ରଙ୍କୁ ମଧ୍ୟ 'ବୀର ବେନି ବାଣୀବର ବିଳାସିନୀ ଭୁଜଙ୍ଗ' ଉପାଧିରେ ଭୂଷିତ କରାଗଲା ।

## ବିବାହ

ରାଜା ଧନଞ୍ଜୟ ଉପେନ୍ଦ୍ରଙ୍କୁ ଅତିଶୟ ଭଲ ପାଉଥିଲେ । ସେ ଯୌବନରେ ପଦାର୍ପଣ କରିବାମାତ୍ରେ ତାଙ୍କର ବିବାହପାଇଁ ତତ୍ପର ହେଲେ । ବହୁ ସ୍ଥାନରେ ପ୍ରସ୍ତାବ ପଡ଼ିଲା । ଉପେନ୍ଦ୍ରଙ୍କ ପ୍ରତିଭାର ପରିଚୟ ପାଇ ବହୁ ରାଜା ତାଙ୍କର କନ୍ୟାଦେବାପାଇଁ ଇଚ୍ଛା କଲେ । ଶେଷରେ ନୟାଗଡ଼ ରାଜଜେମାଙ୍କ ସହିତ ତାଙ୍କର ଶୁଭ ପରିଣୟ ଅନୁଷ୍ଠିତ ହେଲା । ନୟାଗଡ଼ ରାଜପରିବାର ସହିତ ଘୁମୁସର ରାଜ ପରିବାରର ଉତ୍ତମ ସମ୍ପର୍କ ଥିଲା । ନିଜେ ଧନଞ୍ଜୟ ମଧ୍ୟ ନୟାଗଡ଼ ରାଜଜେମା ମଣ୍ଡାଦେବୀଙ୍କୁ ବିବାହ କରିଥିଲେ । ପୂର୍ବ ସମ୍ପର୍କ ତେଣୁ ଆହୁରି ନିବିଡ଼ ଓ ମଧୁମୟ ହେଲା । ଉପେନ୍ଦ୍ର କିନ୍ତୁ ବେଶିଦିନ ଦାମ୍ପତ୍ୟ ଜୀବନ ଉପଭୋଗ କରିପାରି ନ ଥିଲେ । ପ୍ରିୟତମା ପତ୍ନୀ ଅକାଳରେ ମୃତ୍ୟୁବରଣ କଲେ ।

ଉପେନ୍ଦ୍ର ଏହି ଘଟଣାରେ ବ୍ୟଥିତ ହୋଇପଡ଼ିବା ସ୍ୱାଭାବିକ । ପିତାମହ ମଧ୍ୟ ଏଥିପାଇଁ ବିଶେଷ ଚିନ୍ତିତ ହୋଇପଡ଼ିଲେ । ପତ୍ନୀ ବିୟୋଗରେ ଉପେନ୍ଦ୍ରଙ୍କ

ଲେଖନୀ ସ୍ରୋତ ଶୁଖିଯିବାର ଆଶଙ୍କା ତାଙ୍କ ମନରେ ଦେଖାଦେଲା । ସେ ତେଣୁ ଉପେନ୍ଦ୍ରଙ୍କପାଇଁ ଆଉ ଏକ ପାତ୍ରୀ ସନ୍ଧାନରେ ରହିଲେ । ଘୁମୁସର ଓ ନୂଆଗଡ଼ ଉଭୟ ରାଜ୍ୟର ନିକଟବର୍ତ୍ତୀ ବାଣପୁର ରାଜା ଅଚ୍ୟୁତ ହରିଚନ୍ଦନଙ୍କ କନ୍ୟାଙ୍କ ସଙ୍ଗେ ଉପେନ୍ଦ୍ରଙ୍କ ବିବାହ ପ୍ରସ୍ତାବ ପଡ଼ିଲା । ବାଣପୁର ରାଜଜେମା ବିଦୁଷୀ ଥିଲେ । ବିବାହ ମଧ ମହାସମାରୋହରେ ହେଲା ।

ଦ୍ୱିତୀୟ ପତ୍ନୀ କାବ୍ୟକବିତା ରଚନା କରୁଥିଲେ । କବିଙ୍କୁ ମଧ କାବ୍ୟକବିତା ରଚନା ଦିଗରେ ସାହାଯ୍ୟ କରୁଥିଲେ । କାବ୍ୟର ଉପଯୁକ୍ତ ସମୀକ୍ଷା ଓ ସୁସଙ୍ଗତ ଆଲୋଚନା ମାଧମରେ କବି-ପତିଙ୍କୁ ଉତ୍ସାହିତ କରୁଥିଲେ । ଉପେନ୍ଦ୍ର ସେଥିରେ ମାନସିକ ଶାନ୍ତି ପାଉଥିବା କଥା 'ଲାବଣ୍ୟବତୀ' କାବ୍ୟରେ ପ୍ରକାଶ କରିଛନ୍ତି –

''ସୁଖୀ ହେଉଥିବା ନୃପ ଉପଜୀବୀ ନୋହି
ବିଦ୍ୟା ଥିବ ଦିବ୍ୟ ସ୍ତିରୀ ମିଳିଥିବ ତହିଁ ଗୋ ।''

ଉପେନ୍ଦ୍ରଙ୍କର ଏହି ସମୟରେ ବୈବାହିକ ଜୀବନ ମଧୁମୟ ଥିଲା । ଦିବାରାତ୍ରି ମାନସିକ ଶ୍ରମ ପରେ ସେ ପତ୍ନୀଙ୍କ ସହ ମଧୁର ଆଳାପରେ କ୍ଳାନ୍ତି ମେଣ୍ଟାଉଥିଲେ । ସେ ନୀତିଗର୍ହିତ କାର୍ଯ୍ୟକଳାପରେ ଲିପ୍ତ ନ ଥିଲେ । ପରକୀୟା ପ୍ରୀତିକୁ ଘୃଣା କରୁଥିଲେ । 'ଲାବଣ୍ୟବତୀ' କାବ୍ୟରେ ସେ ଏହା ଉଲ୍ଲେଖ କରିଛନ୍ତି –

''ପରଦ୍ରବ୍ୟ ପର ସ୍ତ୍ରୀ ହରଣକୁ
ଲେଖ ଶୁଭକରି ତହୁଁ ମରଣକୁ ।''

ସେ ପତ୍ନୀଙ୍କଠାରୁ ଦୂରରେ ରହିବାକୁ ଇଚ୍ଛା କରୁ ନ ଥିବା ଜଣାଯାଏ । ଏହାଦ୍ୱାରା ଗୃହିଣୀମାନେ ଶାନ୍ତି ପାଇପାରନ୍ତି ନାହିଁ । ପରିବାରପାଇଁ ତାହା କଲ୍ୟାଣକର ନୁହେଁ । 'ଦଶପୋଇ'ରେ ଏହାର ବର୍ଣ୍ଣନା ଅଛି, ଯଥା –

''ଏକାଳେ ପ୍ରବାସେ ଯେ ରହିଲା
ସେହୁ ଗଲା ଭାସି ।''

## ପୁଣି ପତ୍ନୀ ବିୟୋଗ

ବିଦୁଷୀ କବି-ପତ୍ନୀଙ୍କର ମଧ ହଠାତ୍ ପରଲୋକ ହେଲା । କଥିତଅଛି ଯେ କଳିଙ୍ଗାଘାଟିର ପାଦଦେଶରେ ଥିବା ଅନ୍ଧାରିଗଡ଼ର ପ୍ରାକୃତିକ ସୌନ୍ଦର୍ଯ୍ୟରେ କବି ବିମୋହିତ ହୋଇପଡ଼ିଥିଲେ । ସେ ସେଠାକୁ ଯାଇ କିଛି ଦିନ ଅବସ୍ଥାନ କରୁଥିଲେ । ସେଠାରେ ମଧ କାବ୍ୟକବିତାଦି ରଚନା କରୁଥିଲେ । ଥରେ ସେ ଅନୁଚରମାନଙ୍କୁ ଧରି ଅନ୍ଧାରିଗଡ଼ ଗଲେ ଓ ସେଠାରେ ବହୁଦିନ ଧରି ଅବସ୍ଥାନ କଲେ । ଫେରିବାରେ ବିଳମ୍ବ ହେବାରୁ ରାଜପ୍ରାସାଦରୁ ଭୃତ୍ୟ ପଠାଗଲା । ସେତେବେଳେ

ତାହା ଘଞ୍ଚ ଅରଣ୍ୟପୂର୍ଣ୍ଣ ଥିଲା । ବାଘ, ଭାଲୁ ପ୍ରଭୃତି ହିଂସ୍ରଜନ୍ତୁମାନଙ୍କର ଆଶ୍ରାସ୍ଥଳୀ ଥିଲା । ଭୃତ୍ୟଟି ଗଡ଼ ପର୍ଯ୍ୟନ୍ତ ନ ଯାଇ ଫେରିଆସିଲା । ଜଙ୍ଗଲରେ ଏକ ରକ୍ତାକ୍ତ ମୁର୍ଦାର ଓ ତା'ର କିଛି ଦୂରରେ ଗୋଟିଏ ହିଂସ୍ର ବ୍ୟାଘ୍ର ଦେଖିଥିବା କଥା ଆସି ବର୍ଣ୍ଣନା କଲା । ସତୀଶିରୋମଣି ପତ୍ନୀ ଏହା ଶୁଣିବାମାତ୍ରେ ମୂର୍ଚ୍ଛା ଗଲେ । ଚାହୁଁ ଚାହୁଁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । କରୁଣ କ୍ରନ୍ଦନରେ ରାଜଅନ୍ତଃପୁର ପ୍ରକମ୍ପିତ ହେଲା । ଯଥା ସମୟରେ ଉପେନ୍ଦ୍ର ନିଜର ଅନୁଚରବର୍ଗଙ୍କ ସହ ରାଜପ୍ରାସାଦକୁ ଫେରିଲେ । ସେତେବେଳକୁ ତାଙ୍କର ଆଉ କିଛି କରିବାର ନ ଥିଲା । କିନ୍ତୁ ଏହି ଘଟଣାରେ ତାଙ୍କର ହୃଦୟ ଖଣ୍ଡବିଖଣ୍ଡିତ ହୋଇଗଲା । ସମ୍ଭବତଃ, ତାଙ୍କ ଦ୍ୱିତୀୟା ସ୍ତ୍ରୀଙ୍କ ନାମ ଲାବଣ୍ୟନିଧି ଥିଲା । ଶୋକବିହ୍ୱଳ ହୋଇ ସେ ଗାଇଲେ –

"ଆହା ମୋ ଲାବଣ୍ୟନିଧିରେ
ହରାଇ ବସିଲି ବୁଦ୍ଧିରେ
ଶିବ ସେବି ଅନୁକୂଳେ    ପାଇଥିଲି ଧନ ତୋତେ
ଏବେ କେମନ୍ତେ ମୂର୍ଚ୍ଛିବି ଚିତ୍ତେରେ
ଯେଣିକି ଚାହିଁଲେ ଧନ    ଦିଶେ ତୋ ଚନ୍ଦ୍ରବଦନ
ଏବେ କେମନ୍ତେ ବଞ୍ଚିବି ଦିନରେ ।"

ଉପେନ୍ଦ୍ର ଆଉ ବିବାହ କରି ନ ଥିଲେ । ନିଜ ପ୍ରାଣପ୍ରିୟାଙ୍କୁ ଦିବସ ରଜନୀ ଝୁରିବାକୁ ଲାଗିଲେ । ନିଜ ଜୀବନକୁ ମଧ ଧିକ୍କାର କରିବାରେ ଲାଗିଲେ । କବି ତାଙ୍କ ରଚିତ 'ପ୍ରେମ ସୁଧାନିଧି'ରେ ଏହା ବର୍ଣ୍ଣନା କରିଛନ୍ତି –

"ମୋର ତୋ ବାହାରେ ନାହିଁ ଅନ୍ୟ ଗତି
ଭଜନ କରଇ ତୋର ନାମ ଦିବାରାତି
କୁମୁଦ ଚନ୍ଦ୍ର ପୀରତି ତୋର ମୋର ଥିଲା
ଏ ପରାଣ ନ ଯାଇଣ କିପାଇଁ ରହିଲା ।"

ପତ୍ନୀବିରହଜନିତ ବେଦନା ମଧ ଅନ୍ୟ ଗ୍ରନ୍ଥମାନଙ୍କରୁ ମିଳିଥାଏ । 'ଲାବଣ୍ୟବତୀ'ରେ ଏହାର ଚିତ୍ର ସେ ଦେଇଛନ୍ତି –

"କି ହେବ ଇନ୍ଦ୍ର ହୋଇଲେ ସର୍ବ ସମ୍ପଦେ ସେ
ସ୍ତ୍ରିରୀହୀନଠାରୁ ପାପୀ ନାହିଁ ମହୀଦେଶେ ଯେ ।"

କଥିତଅଛି ଯେ ଶୋକବିହ୍ୱଳ ଉପେନ୍ଦ୍ରଙ୍କୁ ପିତାମହ ଧନଞ୍ଜୟ ଭଞ୍ଜ ସାଙ୍ଗରେ ନେଇ ଚାରି ଧାମ ବୁଲାଇ ଆଣିଲେ । ସେହି ଚାରି ଧାମ ହେଉଛି ପୂର୍ବରେ ପୁରୀ, ପଶ୍ଚିମରେ ଦ୍ୱାରିକା, ଉତ୍ତରରେ ବଦ୍ରିନାଥ ଓ ଦକ୍ଷିଣରେ ରାମେଶ୍ୱର । ତାଙ୍କର

କାବ୍ୟ 'ବୈଦେହୀଶ ବିଳାସ'ରେ ପୁରୀର ବହୁ ସ୍ଥାନର ବର୍ଣ୍ଣନା ଦେଖିବାକୁ ମିଳେ । ସେହିପରି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ହିମାଳୟର ବର୍ଣ୍ଣନା ଅଛି । ଏଥିରୁ ସେ ଉତ୍ତରଧାମକୁ ଯାଇଥିବା ଅନୁମାନ କରାଯାଏ । 'ଲାବଣ୍ୟବତୀ'ରେ ରାମେଶ୍ୱର ଓ 'ସୁଭଦ୍ରା ପରିଣୟ'ରେ ଦ୍ୱାରିକାର ବର୍ଣ୍ଣନା ଥିବା ଦୃଷ୍ଟିରୁ ସେ ଏହି ସ୍ଥାନମାନଙ୍କୁ ଯାଇଥିବା ଅନୁମିତ ହୁଏ । ଏହି ଚାରି ଧାମ ବୁଲିଆସିବାପରେ ଉପେନ୍ଦ୍ର କିଞ୍ଚିତ୍ ମାନସିକ ଶାନ୍ତି ପାଇଥିବା ଜଣାଯାଏ ।

## ହତ୍ୟାକାଣ୍ଡ ଓ ଗୃହଯୁଦ୍ଧ

ଧନଞ୍ଜୟ ଭଞ୍ଜ ବହୁକାଳ ପର୍ଯ୍ୟନ୍ତ ଜୀବିତ ଥିଲେ । ରାଣୀ ମଣ୍ଡାଦେବୀ ରାଜସିଂହାସନପାଇଁ ଷଡ଼୍‌ଯନ୍ତ୍ର ଚଳାଇଥିବା କଥା ଆଗରୁ ବର୍ଣ୍ଣିତ ଅଛି । ସେ ରାଜମାତା ହୋଇ ଶାସନ କରିବାକୁ ସର୍ବପ୍ରକାର ଉଦ୍ୟମ ଚଳାଇଲେ । ଶେଷରେ ବ୍ରାହ୍ମଣୀ ଚମ୍ପାନାନୀ ହାତରେ ଖାଦ୍ୟରେ ବିଷଦେଇ ରାଜାଙ୍କୁ ହତ୍ୟା କଲେ । ରାଜଗାଦିପାଇଁ ପ୍ରଥମ ଦାବିଦାର ଗଙ୍ଗାଧର ପାଟକୁମାରଙ୍କୁ ହତ୍ୟା କଲେ । ପିତାଙ୍କ ହତ୍ୟା ଦେଖି ଗଙ୍ଗାଧରଙ୍କ ଜ୍ୟେଷ୍ଠପୁତ୍ର ଶତ୍ରୁଞ୍ଜୟ ଭଞ୍ଜ ଭୟରେ ପଳାଇ ଗଲେ । ନୀଳକଣ୍ଠ ଭଞ୍ଜ ତାଙ୍କୁ ଗୋଡ଼ାଇ ଗୋଡ଼ାଇ ହତ୍ୟା କଲେ । ଶତ୍ରୁଞ୍ଜୟ ଭଞ୍ଜଙ୍କ ସ୍ତ୍ରୀ ଗର୍ଭବତୀ ଥିବାରୁ ତାଙ୍କୁ ହତ୍ୟା ନ କରି ବନ୍ଦୀ କଲେ । ଏଥର ନିଷ୍କଣ୍ଟକ ଭାବି ଘୁମୁସରର ରାଜା ହେଲେ । ମାତ୍ର ନୀଳକଣ୍ଠଙ୍କ ବୈମାତୃକ ଭାଇମାନେ ବିଦ୍ରୋହ କଲେ । ଚାରିଆଡ଼େ ଅଶାନ୍ତି ଦେଖାଦେଲା । ଥାଟ ରାଜା ଗୋବିନ୍ଦ ଭଞ୍ଜଙ୍କ ପୁତ୍ର ଘନ ଭଞ୍ଜ ସେତେବେଳକୁ ପରିବାର ସହିତ ଧରାକୋଟରେ ଆଶ୍ରୟ ନେଇଥିଲେ । ଧନଞ୍ଜୟଙ୍କ ହତ୍ୟା ପରେ ସେ ଶଉରାମାନଙ୍କୁ ସଙ୍ଗଠିତ କରିବାରେ ଲାଗିଲେ । ସେ ମଧ୍ୟ ଶତ୍ରୁଞ୍ଜୟ ଭଞ୍ଜଙ୍କ ଗର୍ଭବତୀ ସ୍ତ୍ରୀଙ୍କୁ ଉଦ୍ଧାର କଲେ ଓ ଶିଶୁପୁତ୍ର ରଣ ଭଞ୍ଜଙ୍କୁ ସିଂହାସନର ପ୍ରକୃତ ଉତ୍ତରାଧିକାରୀ ବୋଲି ଘୋଷଣା କଲେ । ସେ ସୈନ୍ୟ ସହ ଘୁମୁସର ଅଭିମୁଖେ ଯାତ୍ରା କଲେ । ଘୁମୁସରର ପ୍ରଜାମାନେ ମଧ୍ୟ ତାଙ୍କୁ ସମର୍ଥନ କଲେ ।

ଘନ ଭଞ୍ଜଙ୍କ ବିଦ୍ରୋହ ସମ୍ବାଦ ପାଇ ନୀଳକଣ୍ଠ ଘୁମୁସରରେ ରହିବା ନିରାପଦ ମନେ ନ କରି ପରିବାରବର୍ଗଙ୍କ ସହିତ ନୟାଗଡ଼ ପଳାୟନ କଲେ । ସମ୍ଭବତଃ, ଉପେନ୍ଦ୍ର ପିତାଙ୍କ ସହଯାତ୍ରୀ ଥିଲେ । ନୟାଗଡ଼ର ମାଳୀସାହିରେ ସେମାନେ ଅବସ୍ଥାନ କଲେ । ସେତେବେଳେ ଉପେନ୍ଦ୍ରଙ୍କୁ ୩୨ ବର୍ଷ ବୟସ ହୋଇଥିଲା । ସେତେବେଳକୁ ସେ 'ବୈଦେହୀଶ ବିଳାସ' କାବ୍ୟ ମଧ୍ୟ ରଚନା କରିସାରିଥିଲେ । ସେଥିରେ ସେ ନିଜକୁ ନୀଳକଣ୍ଠଙ୍କ ସୁତ ବୋଲି କହିଛନ୍ତି –

''ବସୁଧା ପତି ସେ ନୀଳକଣ୍ଠ ନାମେ ଖ୍ୟାତ ।
ବିଧାନରେ ମୁହିଁ ତାହାଙ୍କର ଜ୍ୟେଷ୍ଠ ସୁତ ଯେ ।''

ସେତେବେଳକୁ ଉପେନ୍ଦ୍ରଙ୍କର ପତ୍ନୀବିୟୋଗ ମଧ୍ୟ ହୋଇସାରିଥିଲା । ସେ ତେଣୁ ମାଳୀସାହିରେ ବୈରାଗୀ ଜୀବନ ଯାପନ କରୁଥିଲେ । ରାଜ୍ୟଚ୍ୟୁତି ଓ ପତ୍ନୀ କଷ୍ଟ, ଏଇ ଦୁଇ ଘଟଣା ସେ ତାଙ୍କ କାବ୍ୟ'ରସିକ ହାରାବଳୀ'ରେ ଉଲ୍ଲେଖ କରିଛନ୍ତି –

''ରାଜାଙ୍କୁ ହେବାର ରାଜ୍ୟଭ୍ରଷ୍ଟ ଯୁବାଙ୍କୁ ହେବାର ପତ୍ନୀ କଷ୍ଟ
ବୋଲେ ଉପଇନ୍ଦ୍ର ଭଞ୍ଜ ଏଥୁ ବଳି ନାହିଁ ଆନ କଷ୍ଟ ।''

## ନୂତନ ରାଜା

ବିନା ରକ୍ତପାତରେ ଘନ ଭଞ୍ଜ ରାଜ୍ୟ ଅଧିକାର କଲେ । ଘୋଷଣା ମୁତାବକ ସେ ରଣ ଭଞ୍ଜଙ୍କୁ ରାଜସିଂହାସନରେ ବସାଇଲେ । ମାତ୍ର ରଣ ଭଞ୍ଜ ଶିଶୁ ଥିବାରୁ ଘନ ଭଞ୍ଜ ନିଜେ ରାଜ୍ୟ ଶାସନ ଚଳାଇଲେ । ତାଙ୍କ ଉଦ୍ୟମରୁ ମଧ୍ୟ ରାଜ୍ୟରେ ଶାନ୍ତି ପ୍ରତିଷ୍ଠିତ ହେଲା । କୂପ, ପୁଷ୍କରିଣୀମାନ ଖନନ କରାଗଲା । ପ୍ରଜାମାନଙ୍କର ମନୋରଞ୍ଜନପାଇଁ ନାଟ୍ୟଶାଳା, ଆଖଡ଼ାଘର ଓ ଭାଗବତ ଟୁଙ୍ଗି ପ୍ରଭୃତି ପ୍ରତିଷ୍ଠା କରାଗଲା । ଅଧିକସଂଖ୍ୟକ ଲୋକଙ୍କୁ କର୍ମରେ ନିଯୁକ୍ତି ଦିଆଗଲା । ସୈନ୍ୟଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି କରାଗଲା । ଘନ ଭଞ୍ଜ କବି ଥିଲେ । ଉପେନ୍ଦ୍ରଙ୍କ କାବ୍ୟକବିତାକୁ ଆଦର କରୁଥିଲେ । ସେ ଉପେନ୍ଦ୍ରଙ୍କୁ ଚିରଦିନ ଘୁମୁସରରେ ରହିବାକୁ ଅନୁରୋଧ କଲେ । ଉପେନ୍ଦ୍ରଙ୍କର ରାଜ୍ୟଲିପ୍‌ସା ନ ଥିଲା । ସେ ସିଂହାସନପାଇଁ ଚାଲିଥିବା ହତ୍ୟା ଷଡ଼୍‌ଯନ୍ତ୍ର ସହିତ ସଂଶ୍ଳିଷ୍ଟ ନ ଥିଲେ । ତେଣୁ ଘନ ଭଞ୍ଜଙ୍କ ସହିତ ଶତ୍ରୁତା ଆଚରଣ କରିବାର ପ୍ରଶ୍ନ ନ ଥିଲା । ସେ ଘନ ଭଞ୍ଜ ଓ ଅନ୍ୟାନ୍ୟ ସାହିତ୍ୟିକଙ୍କ ସାଦର ନିମନ୍ତ୍ରଣ ରକ୍ଷା କରି ବହୁବାର କୁଲାଡ଼ଗଡ଼ ଯାଇ ସେଠାରେ ଅବସ୍ଥାନ କରୁଥିଲେ ଓ ସାହିତ୍ୟ ଆଲୋଚନା ପ୍ରଭୃତିରେ ସମୟ ଅତିବାହିତ କରୁଥିଲେ ।

## କାବ୍ୟ ସର୍ଜନା

କବି ଉପେନ୍ଦ୍ର ଭଞ୍ଜ ବହୁ କାବ୍ୟ ରଚନା କରିଛନ୍ତି । ସେ ନିଜେ ତାଙ୍କ ରଚିତ 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ଗ୍ରନ୍ଥର ତାଲିକା ପ୍ରଦାନ କରିଛନ୍ତି । ମାତ୍ର ତାହା ପୂର୍ଣ୍ଣାଙ୍ଗ ନୁହେଁ । ପଣ୍ଡିତମାନଙ୍କ ମତରେ ସେ ପ୍ରାୟ ଛୋଟବଡ଼ ପଚାଶ ଖଣ୍ଡ ଗ୍ରନ୍ଥ ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ ପ୍ରଧାନ ହେଲା 'ବୈଦେହୀଶ ବିଳାସ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ', 'ସୁଭଦ୍ରା ପରିଣୟ',

'ପ୍ରେମ ସୁଧାନିଧି', 'ଅବନା ରସ ତରଙ୍ଗ', 'ବ୍ରଜ ଲୀଳା', 'ରାମ ଲୀଳାମୃତ', 'କୁଞ୍ଜ ବିହାର ରାସ ଲୀଳା', 'କଳା କଉତୁକ', 'ଛାନ୍ଦଭୂଷଣ', 'ଚଉପଦୀ ଭୂଷଣ', 'ଚଉପଦୀ ଚକ୍ର', 'ରସ ପଞ୍ଚକ' ଓ 'ନୀଳାଦ୍ରୀଶ ଚଉତିଶା' ପ୍ରଭୃତି । ଏହାଛଡ଼ା ସେ ବହୁ ଗାଥା, ପୋଇ ରଚନା କରିବାର ଜଣାଯାଏ ।

## ବୈଦେହୀଶ ବିଳାସ

ଏହି କାବ୍ୟରେ କବି ନିଜର ଇଷ୍ଟଦେବ ରାମଙ୍କ ଚରିତ ବର୍ଣ୍ଣନା କରିଛନ୍ତି । ରାମାୟଣର କଥାବସ୍ତୁ ଗ୍ରହଣ କରିଥିଲେହେଁ ସେ ସପ୍ତମ ଖଣ୍ଡ ଉତ୍ତରାକାଣ୍ଡ କଥାବସ୍ତୁକୁ ଏଥିରୁ ବାଦ୍ ଦେଇଛନ୍ତି । ରାମଙ୍କର ପିତୃଭକ୍ତି, କଠୋର କର୍ତ୍ତବ୍ୟପରାୟଣତା, ସତ୍ୟନିଷ୍ଠତା, ଜାନକୀଙ୍କ ପ୍ରତି ଅନାବିଳ ପ୍ରେମ ପ୍ରଭୃତି ଅତି ଚମତ୍କାରଭାବେ ଚିତ୍ରଣ କରିଛନ୍ତି । ସେହିପରି ସୀତାଙ୍କ ସତୀତ୍ୱ, ପ୍ରେମନିଷ୍ଠା ଓ କର୍ତ୍ତବ୍ୟବୋଧ ସୁନ୍ଦରଭାବେ ପ୍ରକଟିତ ହୋଇଛି । ଲକ୍ଷ୍ମଣ, ଭରତ, ଦଶରଥ, ବଶିଷ୍ଠ, ରାବଣ, ମନ୍ଦୋଦରୀ, ଇନ୍ଦ୍ରଜିତ୍, ହନୁମାନ, ଅଙ୍ଗଦ ପ୍ରଭୃତିଙ୍କର ଚରିତ୍ର ଚିତ୍ରଣ ମଧ୍ୟ ଉଚ୍ଚକୋଟୀର । ଆର୍ଯ୍ୟ ପରମ୍ପରାର ମହତ୍ତ୍ୱ ସେ ପଦେ ପଦେ ରକ୍ଷା କରିଛନ୍ତି ।

କାବ୍ୟଟି ୫୨ ଛାନ୍ଦରେ ସମ୍ପୂର୍ଣ୍ଣ ହୋଇଅଛି । ପ୍ରତି ଛାନ୍ଦର ପ୍ରତି ପାଦର ପ୍ରଥମ ଅକ୍ଷର ହେଉଛି 'ବ' । ନାମକରଣ 'ବ'ରୁ ମଧ୍ୟ ଆରମ୍ଭ । ଏହାର ମଙ୍ଗଳାଚରଣ ଅଭୂତପୂର୍ବ ଅଟେ । ଯେ କେହି ବୈଷ୍ଣବ ଏହାକୁ ପାଠ କଲେ ବିଷ୍ଣୁଙ୍କ ଚରିତ ପାଇଥାଏ । ଶୈବ ପାଠ କଲେ ଶିବଙ୍କ ଚରିତ; ଶାକ୍ତ ପାଠ କଲେ ଦୁର୍ଗାଙ୍କ ଚରିତ, ସୂର୍ଯ୍ୟ ଉପାସକ ପାଠ କଲେ ସୂର୍ଯ୍ୟଙ୍କ ଚରିତ, ଜଗନ୍ନାଥଙ୍କ ଭକ୍ତ ଜଗନ୍ନାଥଙ୍କ ଚରିତ ଓ ରାମଭକ୍ତ ରାମଚନ୍ଦ୍ରଙ୍କ କୀର୍ତ୍ତିକଳାପ ବିଷୟରେ ଅବଗତ ହୁଏ ।

'ବୈଦେହୀଶ ବିଳାସ'ର ପ୍ରସିଦ୍ଧ ଛାନ୍ଦ ହେଉଛି –

"ବିତଳକୁ ଆଲିଙ୍ଗନ କରି ଜାହ୍ନବୀ ଶୋଭନ
ହରେ ସୁରବର-ତାପ ଚାରୁଧାରୁ ସେ ।"

ଏହା ବାଉନ ପ୍ରକାର ଅର୍ଥ ବୁଝାଏ ବୋଲି କେହି କେହି କହିଥାନ୍ତି । ମାତ୍ର ଏହି ପଦକୁ ତିନି ଗୋଟି ଅର୍ଥରେ ବ୍ୟାଖ୍ୟାନ କଲେ ଏହାର ଗୌରବ ବୃଦ୍ଧି ପାଏ । ପୁରାଣରେ ତିନି ଗୋଟି ଗଙ୍ଗାର ବର୍ଣ୍ଣନା ମିଳେ । ସେଗୁଡ଼ିକ ହେଲା, ସ୍ୱର୍ଗର କନ୍ୟା ମନ୍ଦାକିନୀ, ମର୍ତ୍ତ୍ୟର ଗଙ୍ଗା ଭାଗୀରଥୀ ଓ ପାତାଳର ଗଙ୍ଗା ଭୋଗବତୀ । 'ବୈଦେହୀଶ ବିଳାସ'ର ଏହି ପଦକୁ ତିନି ଅର୍ଥରେ ବ୍ୟାଖ୍ୟାନ

କଲେ ତିନୋଟିଯାକ ଗଙ୍ଗାର ବର୍ଣ୍ଣନା ମିଳେ । 'ବିତଳକୁ ଆଲିଙ୍ଗନ ଛାନ୍ଦ'ଟି ସମସ୍ତଙ୍କର ଉପଭୋଗ୍ୟ ।

ସେହିପରି ସୀତାଙ୍କ କେଶବିନ୍ୟାସରେ କବି ଅପୂର୍ବ ବିଚକ୍ଷଣତା ଦେଖାଇଛନ୍ତି । ଏଥିରେ କେଶବିନ୍ୟାସର ପ୍ରତ୍ୟେକ ସାମଗ୍ରୀର ବିନିଯୋଗ କରାଯାଇଅଛି । 'ବିତଳକୁ ଆଲିଙ୍ଗନ' ପରି ଏହି ପଦଟି ମଧ୍ୟ ଜନପ୍ରିୟତା ହାସଲ କରିଅଛି । ଅବକାଶ ସମୟରେ ସ୍ୱଳ୍ପଶିକ୍ଷିତ, ଏପରିକି ନିରକ୍ଷର ଲୋକମାନେ ଏହାକୁ ଗାନ କରିଥାନ୍ତି -

''ବିଭୂଷଣ ପୁଷ୍ପେ ଯା କାନ୍ତି ଜାଣ ବିଭୂଷଣ କରି କନ୍ୟାକୁ ଆଣ,
ବାରଣ ଶିରେ ପାଦ ଦେଇ ଆସୁ, ବରଣ କରି ରାମ ମନ ତୋଷୁ ।''

ଏହା ଗାନ ହେଉଥିଲାବେଳେ ସମସ୍ତଙ୍କର ପ୍ରାଣ ଆନନ୍ଦରେ ଭରିଉଠେ । 'ବୈଦେହୀଶ ବିଳାସ' କାବ୍ୟରେ ଉତ୍ତମ ଚରିତ୍ର ଚିତ୍ରଣ, ବର୍ଣ୍ଣନା ବିଳାସ, ଭାବଗାମ୍ଭୀର୍ଯ୍ୟ, ମନସ୍ତାତ୍ତ୍ୱିକ ଚରିତ୍ର ଚିତ୍ରଣ ପ୍ରଭୃତିର ମଧୁର ସମନ୍ୱୟ ଘଟିଛି । ମହାକାବ୍ୟ ଆବଶ୍ୟକତା ଦୃଷ୍ଟିରୁ ବୀର, କରୁଣ, ରୋଷ, ହାସ୍ୟ ପ୍ରଭୃତି ରସର ପରିବେଷଣ କରାଯାଇଛି । ଶବ୍ଦ-ଚାତୁର୍ଯ୍ୟରେ କବି ସଂସ୍କୃତ ସାହିତ୍ୟକୁ ମଧ୍ୟ ଅତିକ୍ରମ କରିଯାଇଛନ୍ତି । ଏହାଛଡ଼ା ବିଭିନ୍ନ ପ୍ରକାର ଅନୁପ୍ରାସ, ଯମକ, ଶ୍ଳେଷ, ଶବ୍ଦଚିତ୍ର ପ୍ରଭୃତି କାବ୍ୟର ସୌନ୍ଦର୍ଯ୍ୟକୁ ବହୁଗୁଣରେ ବୃଦ୍ଧି କରିଛନ୍ତି । ଏହା କବିଙ୍କର ଶ୍ରେଷ୍ଠ କୃତି ଭାବେ ଗଣ୍ୟ ହୁଏ ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ ଓ ପ୍ରଖ୍ୟାତ ଔପନ୍ୟାସିକ କାଳିନ୍ଦୀଚରଣଙ୍କ ଭାଷାରେ -

''ଉପେନ୍ଦ୍ରଙ୍କ ରଚନାରେ ଅଳଙ୍କାର ବୈଭବର ଚରମ ପରିଣତି 'ବୈଦେହୀଶ ବିଳାସ' । ଏହା କବିଙ୍କର ସର୍ବବୃହତ୍ ଓ ସର୍ବଶ୍ରେଷ୍ଠ କାବ୍ୟ ସୃଷ୍ଟି ରୂପେ ଗୃହୀତ । ମହାକବି କାଳିଦାସଙ୍କ ରଘୁବଂଶ ସହିତ ଏହାକୁ ତୁଳନା କରାଯାଏ ।''

ଆଉ ଜଣେ କବି ଉତ୍କଳମଣି ଗୋପବନ୍ଧୁ ଗାଇଛନ୍ତି -

''କାଳ ବଳିଆର ଆଣଇ ସଂସ୍କାର
ନବ ରୁଚି ନବ ଜ୍ଞାନ
କିନ୍ତୁ 'ବୈଦେହୀଶ ବିଳାସ' ପାଇବ
କାଳେ କାଳେ ଉଚ୍ଚ ସ୍ଥାନ ।''

## କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ

ଉପେନ୍ଦ୍ର ପତ୍ନୀଙ୍କ ପ୍ରେମକୁ ଭିତ୍ତିକରି ଏହାକୁ ରଚନା କରିଛନ୍ତି ବୋଲି କେହି କେହି ମତ ଦେଇଥାନ୍ତି । କିନ୍ତୁ ନୈଷଧକାରଙ୍କ ଆଦର୍ଶରେ ଏହା ରଚିତ ବୋଲି କବି କହିଛନ୍ତି ।

କବି ପ୍ରଥମେ ଜଗତ୍‌ର ନାଥ ଜଗନ୍ନାଥଙ୍କ ଶରଣାପନ୍ନ ହୋଇଛନ୍ତି । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନଙ୍କର ସ୍ନାନମଣ୍ଡପକୁ ବିଜେ ହେବା ଓ ସ୍ନାନ ଉତ୍ସବ ଅନୁଷ୍ଠିତ ହେବାର ବର୍ଣ୍ଣନା କରିଛନ୍ତି ।

କାବ୍ୟର ନାୟିକା ରାଜନନ୍ଦିନୀ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ । ସେ କେବଳ ଗୋଟିଏ ବ୍ରହ୍ମାଣ୍ଡର ନୁହେଁ, କୋଟି ବ୍ରହ୍ମାଣ୍ଡର ସୁନ୍ଦରୀ । ତାଙ୍କର ଓ ରାଜକୁମାର ପୁଷ୍ପକେତୁଙ୍କ ପ୍ରଣୟଲୀଳା ଏହି କାବ୍ୟର ବିଷୟବସ୍ତୁ ।

ଚମ୍ପା ନଗରୀର ଅଧୀଶ୍ୱର ବିଶ୍ୱାନନ୍ଦଙ୍କ ଅଧୀଶ୍ୱରୀ ବିଚିତ୍ରକଳା । ସେମାନେ ଦିବ୍ୟ କନ୍ୟାରତ୍ନପାଇଁ ଇଚ୍ଛା କଲେ । ସେମାନଙ୍କ ମନ୍ତ୍ରୀଙ୍କ ନାମ ବୁଦ୍ଧିସାଗର । ମନ୍ତ୍ରୀଙ୍କ ପରାମର୍ଶ କ୍ରମେ ସେମାନେ ଦଳବଳ ସହ ବଦରିକାଶ୍ରମ ବାହାରିଲେ । ବାଟରେ ଗଙ୍ଗାରେ ସ୍ନାନ କଲାବେଳେ ଏକ ଅଲୌକିକ ଘଟଣା ଘଟିଲା । ଗୋଟିଏ ରାକ୍ଷସ ଏକ ରାଜହଂସକୁ ଟାଣିନେଲା । ରାଜା ତାହା ଦେଖିପାରି ରାକ୍ଷସକୁ ମାରି ହଂସର ପ୍ରାଣ ରକ୍ଷା କଲେ । ହଂସ ରାଜାଙ୍କ ଉପରେ ପ୍ରୀତ ହୋଇ ବ୍ରହ୍ମାଙ୍କ ପାଖକୁ ନେଇଯାଇ ସମସ୍ତ ବୃତ୍ତାନ୍ତ ଜଣାଇଲା । ବ୍ରହ୍ମା ରାଜାଙ୍କ ଉପରେ ସନ୍ତୁଷ୍ଟ ହୋଇ ମନସ୍କାମନା ପୂର୍ଣ୍ଣପାଇଁ ରତିମର୍ଦ୍ଦା ନାମକ ଦିବ୍ୟା ତରୁଣୀ ପ୍ରଦାନ କଲେ । ରତିମର୍ଦ୍ଦା ଅସାମାନ୍ୟା ରୂପବତୀ ଥିଲେ । କେଦାରେଶ୍ୱର ନିକଟବର୍ତ୍ତୀ ସ୍ୱର୍ଣ୍ଣ ସରୋବର ତୀରସ୍ଥ ଚନ୍ଦନ କାନନରେ କନ୍ୟାକୁ ଉପଭୋଗ କରିବାକୁ କହି ବ୍ରହ୍ମା ରାଜାଙ୍କୁ ବିଦାୟ ଦେଲେ । ଯଥା ସମୟରେ ରତିମର୍ଦ୍ଦାଙ୍କର ଏକ କନ୍ୟା ଜାତ ହେଲା । ରାଜା କନ୍ୟା ସହ ସ୍ୱସ୍ଥାନକୁ ପ୍ରତ୍ୟାବର୍ତ୍ତନ କଲେ । କନ୍ୟାର ନାମ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ରଖାଗଲା । ସେ ଯୌବନରେ ପଦାର୍ପଣ କଲେ । ପୁଷ୍ପପୁର ବା ପାଟଳିପୁତ୍ର ରାଜପୁତ୍ର ପୁଷ୍ପକେତୁ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀଙ୍କ ଯୋଗ୍ୟ ପାତ୍ର ରୂପେ ବିବେଚିତ ହେଲେ । ଯଥାସମୟରେ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଓ ରାଜକୁମାର ପୁଷ୍ପକେତୁଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା ।

ସାଧାରଣ ବିଷୟବସ୍ତୁକୁ ନେଇ କାବ୍ୟଟି ରଚିତ ହୋଇଥିଲେହେଁ ଏହାର ବୈଶିଷ୍ଟ୍ୟ ରହିଛି । ଏଥିରେ କବିଙ୍କ ଶବ୍ଦପାଣ୍ଡିତ୍ୟ ଦେଖିଲେ ବିସ୍ମିତ ହେବାକୁ ପଡ଼େ । ଏହାକୁ କାବ୍ୟଜଗତର କୋଣାର୍କ ବୋଲି କୁହାଯାଇପାରେ । ଏହି ଓଡ଼ିଆ କାବ୍ୟଟି ଅବଶ୍ୟ ସଂସ୍କୃତ କବି ନୈଷଧଙ୍କ କାବ୍ୟସଦୃଶ ବୋଲି କବି ନିଜେ କହିଛନ୍ତି –

"ଘେନ ନୈଷଧ ପରାୟେ ।"

ସ୍ଥଳବିଶେଷରେ ଏହା ସଂସ୍କୃତ କାବ୍ୟକୁ ବଳିଯାଇଛି । ଏହି କାବ୍ୟର ଗୋଟିଏ ଛାନ୍ଦରେ ବର୍ଷା, ଶୀତ ଓ ଗ୍ରୀଷ୍ମ – ଏହିପରି ତିନି ଗୋଟି ଋତୁର ବର୍ଣ୍ଣନା ମିଳେ, ଯଥା –

"ସେ ଅହି ମକର ହରି ଚିତ୍ତ ମୋହିଲା
ନଦୀ ବଣ ସଲିଳେ ଅଧିକ ହୋଇଲା ।
ଅଣ ନିପାତ ପରା ସେ ଏକା ଗୋତ୍ରରେ
ସୁମନ୍ତପାହିତ ପାନ୍ଥ ଭୀରୁ ବିଚାରେ ।"

ପ୍ରଥମ ପଦ ଅର୍ଥ କଲେ ବର୍ଷା ଋତୁର ବର୍ଣ୍ଣନା ମିଳେ । ଅହି ହେଲା ସର୍ପ । ମକର ଅର୍ଥ ମଗର ଓ ହରି ଅର୍ଥ ବେଙ୍ଗ । ଅର୍ଥାତ୍ ସର୍ପ, ମଗର ଓ ବେଙ୍ଗଙ୍କର ଚିତ୍ତ ଆନନ୍ଦିତ ହେଲା । ନଦୀ ବଣମାନଙ୍କରେ ଅଧିକ ପାଣି ଭରିଗଲା ।

'ସେ' ବାଦ୍ ଦେଇ ଅର୍ଥ କଲେ ଶୀତ ଋତୁର ବର୍ଣ୍ଣନା ଆମ୍ଭେ ପାଉ, ଯଥା – ଅହି ମକର (ସୂର୍ଯ୍ୟ) ହରି (କିରଣ) ଅର୍ଥାତ୍ ଶୀତ ପ୍ରବେଶରେ ସୂର୍ଯ୍ୟ କିରଣ ଆରାମଦାୟକ ହେଲା । ପୁଣି 'ସେ' ଓ 'ଅ'କୁ ବାଦ୍‌ଦେଲେ ଗ୍ରୀଷ୍ମଋତୁର ଚିତ୍ର ଆମ୍ଭେ ଦେଖିବାକୁ ପାଉ, ଯଥା –

"ହିମକର (ଚନ୍ଦ୍ରକିରଣ) ହରି ଚିତ୍ତ ମୋହିଲା ।"

କାବ୍ୟର ଆଉ ଗୋଟିଏ ଛାନ୍ଦରେ ଦୁଇଟି ରାଗ (ଯଥା – କଳହଂସକେଦାର ଓ ଭୂପାଳ) ସମାବେଶିତ ହୋଇଅଛି । କଳହଂସକେଦାର ରାଗରେ ପଢ଼ିଲେ ଶୁକଟି ନାୟକ ପୁଷ୍ପକେତୁର ପ୍ରଶଂସା କରିଥିବା ଜଣାପଡ଼େ । କିନ୍ତୁ ଭୂପାଳ ରାଗରେ ପଢ଼ିଲେ ଶାରୀ କୋଟିବ୍ରହ୍ମାଣ୍ଡ ସୁନ୍ଦରୀର ଗୁଣ ଗାନ କରିଛି । ପଦ, ଅକ୍ଷର କି ଧାଡ଼ି ବଦଳି ନାହିଁ । କେବଳ ରାଗ ବଦଳିଛି । ପ୍ରତି ପଦ ବହୁ ଅର୍ଥରେ ବ୍ୟବହୃତ ହୋଇଛି, ଯଥା –

"ବୁଧ ସାରସେ ବେନି ରାଗ ରୁଚିର
ନୀର କ୍ଷୀର ମିଶ୍ରିତ ଦ୍ୱିରୁକ୍ତି ବାର ।
ନାଗରମଣି ସାରଶ୍ୱର-ଭି-ଧାମ (ସୁରଭି)
ନାହିଁ ଶ୍ରୁତିରେ ତାହା କୀରତି ସମ ।"

ଅର୍ଥାତ୍, ଛାନ୍ଦଟି ଥରେ ପଢ଼ିଗଲେ ରାଜକୁମାରର ଗୁଣ ଓ ସୌନ୍ଦର୍ଯ୍ୟ ପ୍ରକଟିତ ହୁଏ । ପୁଣି ସେହି ଛାନ୍ଦଟି ଅନ୍ୟ ରାଗରେ ପଢ଼ିଲେ ଗୋଟିଏ ରାଜକୁମାରୀର ଗୁଣ ଓ ସୌନ୍ଦର୍ଯ୍ୟ ଉଦ୍‌ଭାସିତ ହୋଇଉଠେ । କେବଳ ରୀତି ଯୁଗର କାହିଁକି, ସମଗ୍ର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହା ଏକ ବିଚିତ୍ର ସୃଷ୍ଟି ।

ଏହି ଦୃଷ୍ଟିରୁ ତେଣୁ ଉପେନ୍ଦ୍ର ଭଞ୍ଜଙ୍କୁ ବିଚିତ୍ର ସ୍ରଷ୍ଟା ବୋଲି ଗ୍ରହଣ କରିବା ଅଧିକ ଯୁକ୍ତିଯୁକ୍ତ ବୋଲି ମନେହୁଏ ।

ଉପେନ୍ଦ୍ର ଭଞ୍ଜଙ୍କର ଏଭଳି ରଚନାର ତୁଳନା ବା ସମକକ୍ଷତା ପୃଥିବୀ ସାହିତ୍ୟରେ ଯେ ଅଛି, ସେ ବିଷୟରେ ବିଶିଷ୍ଟ ସାହିତ୍ୟିକ ଓ ଉପେନ୍ଦ୍ର ସାହିତ୍ୟ ସମୀକ୍ଷକ ଜୟକୃଷ୍ଣ ମିଶ୍ର ସନ୍ଦେହ ପୋଷଣ କରିଛନ୍ତି ।

## ଲାବଣ୍ୟବତୀ

ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ଆଉ ଏକ ଅପୂର୍ବ ସୃଷ୍ଟି । ଏଥିରେ ମଧ ତାଙ୍କର ଅସାଧାରଣ ପ୍ରତିଭାର ପରିଚୟ ମିଳେ ।

ଏହା ଏକ କାଳ୍ପନିକ କାବ୍ୟ । ଏହାର ନାୟକ ଚନ୍ଦ୍ରଭାନୁ ଓ ନାୟିକା ଲାବଣ୍ୟବତୀ । ସେମାନଙ୍କର ପ୍ରଣୟ କାହାଣୀକୁ ନେଇ କାବ୍ୟଟି ଗଢ଼ିଉଠିଛି । ଲାବଣ୍ୟବତୀ ପୂର୍ବ ଜନ୍ମରେ ପାର୍ବତୀଙ୍କର ମାନସକନ୍ୟା ଥିଲେ । ତାଙ୍କର ନାମ ଥିଲା ବାଞ୍ଛାବତୀ । ପ୍ରଭାକର ଥିଲେ ଜଣେ କ୍ଷତ୍ରିୟ କୁମାର । ସେ ଦିବ୍ୟ ନାରୀ ଲାଭ କରିବାପାଇଁ ତପସ୍ୟା କଲେ । ଗଙ୍ଗାସାଗରରେ ତାଙ୍କୁ ଝାସଦେବାପାଇଁ ନିର୍ଦ୍ଦେଶ ମିଳିଲା । ସେ ସେଥିରେ ଝାସ ଦେଲେ । ପର ଜନ୍ମରେ ସେ କାଞ୍ଚନଗରରେ ଶଶିଶେଖରଙ୍କ ପୁତ୍ର ଭାବେ ଜନ୍ମ ହେଲେ । ନାମ ହେଲା ଚନ୍ଦ୍ରଭାନୁ । ତେଣେ ସିଂହଳ ଦେଶରେ ରାଜା ରତ୍ନେଶ୍ୱର ଓ ତାଙ୍କ ମହିଷୀ ବିଦ୍ୟୁଲ୍ଲତାଙ୍କ ଔରସରେ ଜନ୍ମ ହେଲେ ଲାବଣ୍ୟବତୀ । ନାୟକ ନାୟିକାଙ୍କର ବୟସ ବୃଦ୍ଧି ହେଲା । ଉଭୟଙ୍କ ମଧରେ ପ୍ରଣୟକୁ ନେଇ ଗଢ଼ିଉଠିଛି କାବ୍ୟଟି । ଏହାପରେ ଦେବ ଶାପ ଫଳରେ ପ୍ରଣୟୀ ପ୍ରଣୟିନୀଙ୍କର ବିଚ୍ଛେଦ ଘଟିଛି । କିନ୍ତୁ ଚନ୍ଦ୍ରଭାନୁ ଦିଗ୍‌ବିଜୟରୁ ଫେରିବାପରେ ଦୁହିଁଙ୍କର ହୋଇଛି ଅପୂର୍ବ ମିଳନ ।

'ଲାବଣ୍ୟବତୀ' କାବ୍ୟରେ ନାୟକ ଚନ୍ଦ୍ରଭାନୁ ଉଚ୍ଚକୁଳସମ୍ଭୂତ, ଶିକ୍ଷିତ ଓ ସୁନ୍ଦର । ସୁନ୍ଦରପଣରେ ତାଙ୍କର ପଟାନ୍ତର ନାହିଁ । ସେ ନିଜେ ନିଜର ପଟାନ୍ତର । କବିଙ୍କ ଭାଷାରେ –

"ସୁନ୍ଦର ପଣରେ ତା'ର ସେହି ପଟାନ୍ତର ।"

ନାୟିକା ସେହିପରି ଉଚ୍ଚକୁଳସମ୍ଭୂତା, ପରମାସୁନ୍ଦରୀ, ଶିକ୍ଷିତା ଓ ଚତୁରୀ । ଲାବଣ୍ୟବତୀର ଶୋଭା ବର୍ଣ୍ଣନା ଛଳରେ କବି କହିଛନ୍ତି –

"ଉପମା ଆଣିବା କାହୁଁ ମହାକବି ହେଲେ
ସୁନ୍ଦର ଯାହା ଅଙ୍ଗରେ ସୁନ୍ଦର ହୋଇଲେ ।"

କାବ୍ୟରେ ମାଳିନୀ, ସନ୍ୟାସୀ, ବ୍ରହ୍ମଚାରୀ, ବାଉଁଶରାଣୀ ପ୍ରଭୃତି ସ୍ଥାନ ପାଇଛନ୍ତି । ମାଳିନୀ ମଧ୍ୟ ରୂପବତୀ, ଗୁଣବତୀ ଓ ଚତୁରୀ । କବି ମାଳିନୀର ରୂପ ବର୍ଣ୍ଣନା କରିଛନ୍ତି –

''ଏଥୁ ଅନନ୍ତରେ ରସ ଶୁଣ ହେ ମାଳିନୀବେଶ
ଟଭାଫଳ ପରି ଖୋଷା, ଖୋସିଛି ଯୋଷା ଯେ ।''

ସମଗ୍ର କାବ୍ୟରେ ଚରିତ୍ର ଚିତ୍ରଣ ଅତି ଜୀବନ୍ତ ହୋଇଛି । ନାୟକର ଶୌର୍ଯ୍ୟ, ବୀର୍ଯ୍ୟ, ବୀରତ୍ୱ, ସାହସ, ନାୟିକାର ବେଶଭୂଷା, ଚାଲିଚଳନ, ବନବିହାର, ପ୍ରେମ, ବିରହ, ମିଳନ ପ୍ରଭୃତି ଅତି କବିତ୍ୱପୂର୍ଣ୍ଣଭାବେ ପ୍ରକାଶ ପାଇଅଛି । ଶିଶିର, ବସନ୍ତ ଆଦି ଋତୁ ବର୍ଣ୍ଣନା ମଧ୍ୟ ଅତି ଚମତ୍କାର ହୋଇଛି । କାବ୍ୟର ଶେଷଭାଗରେ ଚନ୍ଦ୍ରଭାନୁର ରାଜ୍ୟ ଶାସନର ଏକ ଚିତ୍ର ଦିଆଯାଇଛି । ତାହା ସବୁ ଯୁଗପାଇଁ ଆଦର୍ଶ ସ୍ଥାନୀୟ ହୋଇ ରହିବ ।

ଉପମା, ଯମକ ପ୍ରଭୃତି ଅଳଙ୍କାର କାବ୍ୟର ଶୋଭା ବହୁଗୁଣରେ ବୃଦ୍ଧି କରିଛି । ଏହାର ଭାଷା ଅନ୍ୟ କାବ୍ୟ ତୁଳନାରେ ଅପେକ୍ଷାକୃତ ସରଳ । ଏହାର କେତୋଟି ଛାନ୍ଦ ମଧ୍ୟ ଅତୀବ ଲୋକପ୍ରିୟ, ଯଥା –

''ଦେଖି ନବ କାଳିକା ବକାଳିକା ମାଳିକା
ଆଳୀ କାଳିକାକାନ୍ତ ସ୍ମରି,
ରକ୍ଷା କେମନ୍ତେ କରି କରିବା ମତ୍ତକରି ଗତିକି
ଏମନ୍ତ ବିଚାରି ସେ ସହଚରୀ,
ଭାବେ ବଞ୍ଚିଲେ ଏ କାଳକୁ, କଥା ଥିବ କାଳ କାଳକୁ ।''

ଏହା ବର୍ଷାକାଳୀନ ଜୀବନ ଦୃଶ୍ୟ ପ୍ରକଟିତ କରେ । ଏହା ଓଡ଼ିଆ ସାହିତ୍ୟର ଏକ ଅମୂଲ୍ୟ ରତ୍ନ ।

ଆଉ ଗୋଟିଏ ପଦ ବିଶେଷ ଲୋକପ୍ରିୟତା ହାସଲ କରିଛି –

''ଚେତି ଚତୁରୀ ଚାହିଁଲା ନିଶିନାଶେ ନାହିଁ ଦିବ୍ୟ ତରୁଣ
ମାରି ହୃଦେ ହାତ ନାଥ ନାଥ ବୋଲି
ଅତି ଉଚ୍ଚେ କଲା କାରୁଣ୍ୟ
ଖୋଳେ ଅଧୀରେ, ଚେତନା ହତ ସେ ବିଧିରେ
ଶେଯ ଲେଉଟାଇ କବରୀ ଫିଟାଇ କର ଭରି କୁଚ ସନ୍ଧିରେ ।''

ଅନ୍ୟ କାବ୍ୟଭଳି ଉପେନ୍ଦ୍ର 'ଲାବଣ୍ୟବତୀ'ରେ ଗୋଟିଏ ଛାନ୍ଦରେ ପାଞ୍ଚୋଟି ପଦ ଲେଖି ଋତୁ ବର୍ଣ୍ଣନା କରିଛନ୍ତି । ସେହି ପାଞ୍ଚୋଟି ପଦ ପଢ଼ିଲେ ଯେକୌଣସି

ଋତୁ ମିଳିପାରିବ । ପ୍ରଥମ ଥର ପଢ଼ିଲେ ଗ୍ରୀଷ୍ମଋତୁ, ଦ୍ୱିତୀୟ ଥର ପଢ଼ିଲେ ବର୍ଷାଋତୁ, ତୃତୀୟରେ ଶରତଋତୁ, ଚତୁର୍ଥ ଓ ପଞ୍ଚମ ଥର ପଢ଼ିଲେ ଯଥାକ୍ରମେ ଶୀତ ଓ ବସନ୍ତଋତୁ ପ୍ରକାଶ ପାଇଥାଏ । ଏହାହିଁ କବିଙ୍କ ଶବ୍ଦଯୋଜନାର ଚମତ୍କାରିତା । ଏଥିରେ ହିଁ କବିଙ୍କ ରଚନାବଳୀର ଉତ୍କୃଷ୍ଟତା ପ୍ରତିପାଦିତ ହୋଇଅଛି ।

ଏହା ଏକ ଅତି ଉଚ୍ଚ ଆଳଙ୍କାରିକ କାବ୍ୟରୂପେ ସ୍ୱୀକୃତି ଲାଭ କରିଛି । ଉପେନ୍ଦ୍ର ନିଜ କାବ୍ୟ ବିଷୟରେ କହିଛନ୍ତି –

''କଳଙ୍କ ହୀନ ମୋ ଗୀତ
ଖଳ ରାହୁରେ ଅଦୂଷିତ
ବିଚିତ୍ର ସୁଧାକର ଏହି – ସୁମନାବୃନ୍ଦ ସୁଖ ଦାୟୀ ।''

## ସୁଭଦ୍ରା ପରିଣୟ

ଏହା ଏକ ପୌରାଣିକ କାବ୍ୟ । 'ବୈଦେହୀଶ ବିଳାସ' ରୀତିରେ ପ୍ରତି ପଦ 'ସ' ଦ୍ୱାରା ଆରମ୍ଭ ହୋଇଛି । ଏଥିରେ ସତରଟି ଛାନ୍ଦ ଅଛି । ପଶ୍ଚିମରେ ଥିବା 'ଦ୍ୱାରିକା ଧାମ'ର ପୃଷ୍ଠଭୂମିରେ କାବ୍ୟଟି ରଚିତ ।

ପ୍ରଥମେ କବି ପୁରୁଷୋତ୍ତମ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରିଛନ୍ତି । ଏହାପରେ ଦ୍ୱାରିକାପୁରୀର ବର୍ଣ୍ଣନା ଓ ସୁଭଦ୍ରାଙ୍କ ଜନ୍ମ ବିବରଣୀ ଦେଇଛନ୍ତି । ସୁଭଦ୍ରାଙ୍କ ପ୍ରଣୟକୁ ନେଇ ଗଢ଼ିଉଠିଛି କାବ୍ୟସୌଧଟି ।

ଏକଦା ଦ୍ୱାରିକାରେ ଶ୍ରୀକୃଷ୍ଣ ଓ ବଳରାମ ଏକ ଯଜ୍ଞର ଆୟୋଜନ କରିଥିଲେ । ତାଙ୍କର ନିମନ୍ତ୍ରଣକ୍ରମେ ବହୁ ଦେଶର ନରପତିମାନେ ସେଠାକୁ ଯାଇଥିଲେ । ଗୋଶୃଙ୍ଗ ଦୈତ୍ୟ ମଧ ମହାଦର୍ପରେ ଅସୁରସେନା ସହ ସେଠାରେ ପହଞ୍ଚି ଉତ୍ପାତ ଆରମ୍ଭ କରିଦେଲା । ଏପରିକି ସତ୍ୟଭାମାଙ୍କୁ ରଥରେ ବସାଇ ନେଇଗଲାବେଳେ ମଧ୍ୟମପାଣ୍ଡବ ଅର୍ଜୁନଙ୍କ ହାବୁଡ଼ରେ ପଡ଼ିଲା । ଅର୍ଜୁନ ଓ ଗୋଶୃଙ୍ଗ ଦୈତ୍ୟ ମଧ୍ୟରେ ପ୍ରବଳ ଯୁଦ୍ଧ ହେଲା । ଶେଷରେ ଗୋଶୃଙ୍ଗ ଦୈତ୍ୟ ନିହତ ହେଲା । ଶ୍ରୀକୃଷ୍ଣଙ୍କ ନିର୍ଦ୍ଦେଶରେ ଦ୍ୱାରିକାର ସମସ୍ତ ନାରୀ ସୁବେଶ ହୋଇ ଅର୍ଜୁନଙ୍କୁ ବନ୍ଦାଇବାକୁ ଗଲେ । ନାରୀମାନଙ୍କ ଗହଣରେ ଥିଲେ ସୁଭଦ୍ରା । ସେ ଅର୍ଜୁନଙ୍କୁ ଦେଖି ପ୍ରେମାସକ୍ତା ହେଲେ । ଶ୍ରୀକୃଷ୍ଣଙ୍କ ଆଦେଶରେ ସତ୍ୟଭାମା ସୁଭଦ୍ରାଙ୍କୁ ନେଇ ଅର୍ଜୁନଙ୍କ ପାଖକୁ ଗଲେ । ସୁଭଦ୍ରା ଓ ଅର୍ଜୁନଙ୍କ ପ୍ରେମାଳାପ ହେଲା । ଗୁପ୍ତ କେଳି ମଧ ହେଲା ଓ ଏହା ବହୁ ଦିନ ଧରି ଚାଲିଲା । ଯଥାସମୟରେ ବଳରାମ ସୁଭଦ୍ରାଙ୍କ ବିବାହର ଆୟୋଜନ କଲେ । ସେ ସୁଭଦ୍ରାଙ୍କୁ ହସ୍ତିନାର ରାଜା ଦୁର୍ଯ୍ୟୋଧନଙ୍କ ହସ୍ତେଦେବାପାଇଁ ସ୍ଥିର କଲେ । ହସ୍ତିନାକୁ ଏଥିପାଇଁ ଦୂତ ପଠାଇଲେ । ସୁଭଦ୍ରାଙ୍କ ଅପରୂପ ସୌନ୍ଦର୍ଯ୍ୟ

ଶୁଣି ହସ୍ତିନାରାଜା ଦୁର୍ଯ୍ୟୋଧନ ଏ ବିବାହ ପ୍ରସ୍ତାବରେ ରାଜି ହେଲେ । ବହୁ ସୈନ୍ୟସାମନ୍ତ ଧରି ସେ ଦ୍ୱାରିକା ଗଲେ । ମାତ୍ର ଶ୍ରୀକୃଷ୍ଣଙ୍କ ପ୍ରରୋଚନାରେ ଅର୍ଜୁନ ସୁଭଦ୍ରାଙ୍କୁ ରଥରେ ବସାଇ ପଳାଇଗଲେ । ଅର୍ଜୁନ ଓ ସୁଭଦ୍ରାଙ୍କ ବିବାହପାଇଁ ଶ୍ରୀକୃଷ୍ଣ ଜ୍ୟେଷ୍ଠଭ୍ରାତା ବଳରାମଙ୍କୁ ପରାମର୍ଶ ଦେଲେ । ମାତ୍ର ବଳରାମ ତାହା ଗ୍ରହଣ କଲେ ନାହିଁ । କୁରୁସେନା ଓ ଯଦୁସେନାଙ୍କ ସହ ଅର୍ଜୁନଙ୍କର ଘୋର ଯୁଦ୍ଧ ହେଲା । କୁରୁ ଓ ଯଦୁସେନା ହାରିବା ନିଶ୍ଚିତ ଜାଣିବାପରେ ବଳରାମଙ୍କ କୋପ ଶାନ୍ତ ହେଲା ଓ ସେ ଅର୍ଜୁନଙ୍କ ସଙ୍ଗେ ସୁଭଦ୍ରାଙ୍କର ପରିଣୟପାଇଁ ନିଜର ସମ୍ମତି ଦେଲେ । ଅପମାନ ପାଇ ଦୁର୍ଯ୍ୟୋଧନ ହସ୍ତିନାପୁରକୁ ଫେରିଲେ । ଅର୍ଜୁନ ଓ ସୁଭଦ୍ରାଙ୍କର ବିବାହ ମହାସମାରୋହରେ ଅନୁଷ୍ଠିତ ହେଲା ।

'ମହାଭାରତ'ର ବିଷୟବସ୍ତୁ ଗ୍ରହଣ କରିଥିଲେ ମଧ୍ୟ କବି ଏହାକୁ ଅଳଙ୍କାର ଓ ଶବ୍ଦବିଭବରେ ପୂର୍ଣ୍ଣ କରିଛନ୍ତି । ଅଳଙ୍କାରଶାସ୍ତ୍ରର ସମସ୍ତ ଅଳଙ୍କାର, ଯଥା – ଆଦ୍ୟଯମକ, ମଧ୍ୟଯମକ, ମହାଯମକ, ଆଦ୍ୟପ୍ରାନ୍ତ ଯମକ ଓ ସର୍ବଯମକର ଦୃଷ୍ଟାନ୍ତ ଏଥିରେ ମିଳେ । ଶବ୍ଦଯୋଜନା ବୈଭବପୂର୍ଣ୍ଣ ହେଲେ ମଧ୍ୟ 'ବୈଦେହୀଶ ବିଳାସ'ଠାରୁ ଏହା ସାଧାରଣ ପାଠକ ପକ୍ଷେ କ୍ଲିଷ୍ଟ । ତେଣୁ ଏହାର ଭାବ ଗ୍ରହଣ କରିବା ସମ୍ଭବ ନୁହେଁ । କାବ୍ୟ କିନ୍ତୁ ନୂତନତ୍ୱ ଓ ବୈଚିତ୍ର୍ୟରେ ପରିପୂର୍ଣ୍ଣ । ସୁଭଦ୍ରାଙ୍କ ରୂପ ବର୍ଣ୍ଣନା କରିବାକୁ ଯାଇ କବି ସାତୋଟି ଫୁଲ, ସାତୋଟି ଫଳ ଓ ସାତୋଟି ପକ୍ଷୀର ସମାବେଶ କରାଇଛନ୍ତି, ଯଥା –

"ସରୋରୁହ ଚମ୍ପା, କୁମୁଦ, ପାଟଳୀ, ନିଆଳୀ, ଶିରୀଷ, ଅଶୋକ
ସଫଳ ଆମ୍ବ, ଡାଳିମ୍ବ, ବିମ୍ବ, ଦ୍ରାକ୍ଷା, ତୁମ୍ବୀ, ନାରଙ୍ଗ, ମାତୁଲଙ୍ଗ
ସାରଙ୍ଗ, ଖଞ୍ଜନ, ଚକୋର, ମୟୂର, ଶୁକ, କପୋତ, ହଂସ ସଙ୍ଗ
ସ୍ୱରୂପେ, ମହା ଅଦ୍ଭୁତ କଥା ଏହି
ସପତ ଜାତି ଫୁଲ, ଫଳ, ବିହଙ୍ଗ, ଲତାକେ ଥିବା ଦେଖା ନାହିଁ ।"

ଏହା ରୀତିଯୁଗୀୟ ପୌରାଣିକ କାବ୍ୟମାନଙ୍କ ମଧ୍ୟରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିଅଛି ।

## ପ୍ରେମ ସୁଧାନିଧି

ଏହା ଏକ କାଳ୍ପନିକ କାବ୍ୟ । କାବ୍ୟର ନାୟକ ଓ ନାୟିକା ହେଉଛନ୍ତି ପୁରନ୍ଦର ଓ ପ୍ରେମ ସୁଧାନିଧି । କୋଶଳ ଦେଶ ରାଜା ଜାତଦେବଙ୍କ ପୁତ୍ର ପୁରନ୍ଦର । କେରଳର ଅଧୀଶ୍ୱର ଜଗଜ୍ଜିତ । ତାଙ୍କ କନ୍ୟାର ନାମ ପ୍ରେମ ସୁଧାନିଧି । ବାଲ୍ୟାବସ୍ଥାରେ ନାୟକ ନାୟିକା ବିବାହ କରିଥିଲେ । ଯଥା ସମୟରେ

ପୁନର୍ବିବାହ ଓ ବନ୍ଦାପନା କାର୍ଯ୍ୟ ଶେଷ ହେଲା । ଅନିବାର୍ଯ୍ୟ କାରଣରୁ ପୁରନ୍ଦର ପିତାଙ୍କ ଆଦେଶରେ ବିଦେଶ ଯିବାକୁ ବାଧ ହେଲେ । ଏହା ହେଉଛି କାବ୍ୟର ବିଷୟବସ୍ତୁ ।

କାବ୍ୟଟି ଷୋଳଟି ଛାନ୍ଦରେ ବିଭକ୍ତ । ପ୍ରତି ଛାନ୍ଦର ବିଶେଷତ୍ୱ ରହିଛି । ପ୍ରତି ଛାନ୍ଦ ପୁଣି ଅଳଙ୍କାର ବିମଣ୍ଡିତ । ଭାଷା ମଧ 'କୋଟିବ୍ରହ୍ମାଣ୍ଡ ସୁନ୍ଦରୀ' ବା 'ସୁଭଦ୍ରା ପରିଣୟ' ପରି ଦୁର୍ବୋଧ୍ୟ ନୁହେଁ । ସରଳ ଭାଷାରେ ଅଳଙ୍କାରଗୁଡ଼ିକ ବ୍ୟକ୍ତ କରାଯାଇଛି । ଏଥିରେ ଥିବା କେତେକ ଛାନ୍ଦ ଜନପ୍ରିୟତା ହାସଲ କରିଛି । ବିଶେଷତଃ, ଏହାର ସପ୍ତମ ଓ ଚତୁର୍ବିଂଶ ଛାନ୍ଦଦ୍ୱୟ ସମସ୍ତଙ୍କଦ୍ୱାରା ଆଦୃତ, ଯଥା --

''ରସିକ ବିଚାର କରେ ଦୀପଦାନ କାର୍ତ୍ତିକରେ
ପ୍ରୟାଗ ସ୍ନାନ ମକରେ ଯେହ୍ନୁ ନ କରେ
ମିଶେ କି ସେ ଆଲୋକରେ... ।''

ଚତୁର୍ବିଂଶ ଛାନ୍ଦରେ ଥିବା କେତେକ ପଂକ୍ତି ସମସ୍ତଙ୍କଦ୍ୱାରା ଗାନ କରାଯାଏ, ଯଥା –

''ଦୂରେ ଥିଲେ ପାଶେ ଅଛି ଏହା ଥିବୁ ଘେନି
କେତେ ଦୂରେ ଚନ୍ଦ୍ର କେତେ ଦୂରେ କୁମୁଦିନୀ
ପ୍ରୀତି ଅଭେଦ ତାଙ୍କର
ଯେତେ ଦୂରେ ଥିଲେ ଯେ ଯାହାର ସେ ତାହାର ।''

କାବ୍ୟରେ ବର୍ଣ୍ଣବିନ୍ୟାସ ମଧ ଅଭୂତପୂର୍ବ । ସମଗ୍ର ଛାନ୍ଦଟି ଆଦ୍ୟଯମକରେ ଲିଖିତ ହୋଇଅଛି । ଆଉ ଗୋଟିଏ ଛାନ୍ଦ ଅଛି, ଯେଉଁଥିରେ କି ପ୍ରଥମ ଅକ୍ଷରରୁ ଶେଷ ଅକ୍ଷର ପର୍ଯ୍ୟନ୍ତ ପଢ଼ିଲେ ଯାହା ହୁଏ (ଯେଉଁ ଧାଡ଼ିଟି ଆମ୍ଭେ ପାଉ), ଶେଷ ଅକ୍ଷରରୁ ପଛୁଆ ଗତିରେ ପ୍ରଥମ ଅକ୍ଷର ପର୍ଯ୍ୟନ୍ତ ପଢ଼ିଲେ ଅବିକଳ ସେହି ଧାଡ଼ି ଆମ୍ଭେ ପାଇଥାଉ । ଏହାକୁ ଲୋମ ବିଲୋମ ବା ମେଷ ଯୁଦ୍ଧ କୁହାଯାଏ । ସଂସ୍କୃତରେ ଏପରି କେତେକ ଶ୍ଳୋକ ଅଛି । ମାତ୍ର କାବ୍ୟରେ କବି ଗୋଟିଏ ଛାନ୍ଦ ବା ସର୍ଗ ଏହି ରୀତିରେ ରଚନା କରିଛନ୍ତି । ବର୍ଣ୍ଣବିଳାସ କଳାରେ 'ପ୍ରେମ ସୁଧାନିଧି' କାବ୍ୟଟି ଓଡ଼ିଆ ଭାଷାର ଅତୁଳନୀୟ ।

## ରସିକ ହାରାବଳୀ

କାବ୍ୟର ନାୟିକା ହାରାବଳୀ । ଜଗନ୍ନାଥଙ୍କ ଦୋଳଉତ୍ସବ ସମୟରେ କୋଶଳ ରାଜପୁତ୍ର ଓ ନାୟିକା ହାରାବଳୀର ଭେଟ ହୋଇଛି । ଦୁହିଁଙ୍କର ବିବାହ

ହୋଇଛି । କିଛିକାଳ ପରେ ରାଜପୁତ୍ର ବିଦେଶ ଯାତ୍ରା କରିଛନ୍ତି । ଦୁହେଁ ବିରହରେ ଘାରି ହୋଇଛନ୍ତି । ଶେଷରେ ରାଜପୁତ୍ର ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ଓ ଉଭୟେ ସୁଖରେ କାଳ ଯାପନ କରିଛନ୍ତି । ଏହି ହେଲା କାବ୍ୟର ବିଷୟବସ୍ତୁ ।

ଏହି କାଳ୍ପନିକ କାବ୍ୟ କବି ଜୀବନର ଆଦ୍ୟ ସ୍ଫୁରଣ ବୋଲି କୁହାଯାଏ । ଶୃଙ୍ଗାର ରସ ସ୍ନିଗ୍ଧ ଏହି କାବ୍ୟରେ କବିଙ୍କ ଜୀବନର ପ୍ରଥମ ଅନୁଭୂତିମାନ ଲିପିବଦ୍ଧ ହୋଇଅଛି । ଏଥିରେ ସ୍ୱକୀୟା ପ୍ରେମର ପରାକାଷ୍ଠା ଦର୍ଶାଯାଇଛି ।

**ଛାନ୍ଦଭୂଷଣ**

'କ' ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ଟି ବର୍ଣ୍ଣକୁ ଆଦ୍ୟରେ ରଖି ୩୪ଟି ଛାନ୍ଦରେ କବି ଏହାକୁ ରଚନା କରିଛନ୍ତି । ଏଥିରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣିତ ଅଛି । କୃଷ୍ଣଜନ୍ମ, ବାଳଲୀଳା, ଯଶୋଦାଙ୍କ ଦଧିମନ୍ଥନ, ଗୋଧନ ଚାରଣ, ବନବିହାର, ମୁରଲୀନାଦ, ଗୋପୀମାନଙ୍କ ସହିତ ଲୀଳା, କାମ କ୍ରୀଡ଼ା, ବିରହ ବିଳାପ ପ୍ରଭୃତିର ବର୍ଣ୍ଣନା ଚମତ୍କାର ହୋଇଛି ।

ଏଥିରେ ଅଳଙ୍କାରର ବହୁ ପ୍ରୟୋଗ ନାହିଁ । ଏହାର ଭାଷା ଅପେକ୍ଷାକୃତ ସରଳ ଓ ଲଳିତ ।

ଏହା ଯଦି କବିଙ୍କର ଏକମାତ୍ର କାବ୍ୟ ହୋଇଥାନ୍ତା, ତେବେ ମଧ୍ୟ ଓଡ଼ିଆ କବିମାନଙ୍କ ମଧ୍ୟରେ ଉପେନ୍ଦ୍ର ଭଞ୍ଜ ଶୀର୍ଷ ସ୍ଥାନ ଅଧିକାର କରିଥାନ୍ତେ ବୋଲି ଆଲୋଚକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ମତ ଦେଇଛନ୍ତି ।

**କଳା କଉତୁକ**

ଦୀନକୃଷ୍ଣଙ୍କ ସହ ସାକ୍ଷାତ୍ ପରେ ଉପେନ୍ଦ୍ର 'କଳା କଉତୁକ' ରଚନା କରିଥିଲେ । 'ରସକଲ୍ଲୋଳ'ରେ ପ୍ରଥମ ଛାନ୍ଦର ପ୍ରତି ପଦରେ ଏବଂ ପାଦର ଆଦ୍ୟରେ 'କ' ଓ ପ୍ରାନ୍ତରେ 'କ' ଥିଲାବେଳେ ଉପେନ୍ଦ୍ର ସମଗ୍ର କାବ୍ୟଟିରେ ପ୍ରତି ପଦ ଓ ପାଦର ଆଦ୍ୟ ଓ ପ୍ରାନ୍ତରେ 'କ' ରଖିଛନ୍ତି । କାବ୍ୟ ନାମକରଣରେ ମଧ୍ୟ ଆଦ୍ୟରେ ଓ ପ୍ରାନ୍ତରେ 'କ' ରଖିଛନ୍ତି । ତାହା ହେଲା 'କଳା କଉତୁକ' । ବିଭିନ୍ନ ରାଗ ରାଗିଣୀରେ ପୂର୍ଣ୍ଣ ଏହା କୃଷ୍ଣଚରିତ ଆଧାରିତ ଏକ କ୍ଷୁଦ୍ର କାବ୍ୟ । ଅକ୍ଷର ଯୋଜନା ଯୋଗୁଁ ଏହା ବିଶିଷ୍ଟ ସ୍ଥାନ ଅଧିକାର କରିଅଛି ।

**ଅବନା ରସତରଙ୍ଗ**

'ରାମାୟଣ'ର ସୂର୍ପଣଖାର ନାସା କର୍ଣ୍ଣ ଛେଦନଠାରୁ ରାମଚନ୍ଦ୍ରଙ୍କ ଅଭିଷେକ ପର୍ଯ୍ୟନ୍ତ ସମସ୍ତ ବିଷୟ ଏଥିରେ ବର୍ଣ୍ଣିତ ଅଛି ।

ଏହି କାବ୍ୟର ରଚନାଶୈଳୀ ସ୍ୱତନ୍ତ୍ର । ସ୍ୱରବର୍ଣ୍ଣ ମଧ୍ୟରେ 'ଅ'କୁ ଛାଡ଼ିଦେଲେ ବାକିତକ, ଯଥା -- 'ଆ', 'ଇ', 'ଈ', 'ଉ', 'ଊ', 'ଏ', 'ଐ', 'ଓ', 'ଔ' ପ୍ରଭୃତି ଅଛି । ବ୍ୟଞ୍ଜନବର୍ଣ୍ଣରେ ଏଗୁଡ଼ିକ ଯୋଗ କଲେ 'ବନା' କୁହାଯାଉଥିଲା । ମାତ୍ର ଏହି କାବ୍ୟରେ 'ଆ', 'ଇ', 'ଈ' ପ୍ରଭୃତିର ଆଦୌ ପ୍ରୟୋଗ ହୋଇ ନାହିଁ । ଏଣୁ ଏହା 'ଅବନା ରସତରଙ୍ଗ' ନାମରେ ନାମିତ ହୋଇଅଛି । ଏଭଳି ଏକ କାବ୍ୟ ଭାରତର ଅନ୍ୟ କୌଣସି ପ୍ରାଦେଶିକ ସାହିତ୍ୟରେ ଦେଖିବାକୁ ମିଳେ ନାହିଁ । ଏହା ସାହିତ୍ୟ ଜଗତର ଏକ ବିସ୍ମୟ ବୋଲି କୁହାଯାଇପାରେ । ବାରଟି କ୍ଷୁଦ୍ର କ୍ଷୁଦ୍ର ଛାନ୍ଦରେ କବି ରାମାୟଣ ଚରିତ୍ରକୁ ଅବନା ଅକ୍ଷରରେ ରଚନା କରିଛନ୍ତି ।

## ଅନ୍ୟାନ୍ୟ କ୍ଷୁଦ୍ର କାବ୍ୟ

'ଭାବବତୀ' ଏକ କ୍ଷୁଦ୍ର କାବ୍ୟ । ଏହା ଛଅଟି ଛାନ୍ଦରେ ରଚିତ । କେରଳ ଦେଶର ରାଜଜେମା ଭାବବତୀ । ଚୋଳ ଦେଶର ରାଜକୁମାରଙ୍କ ସହ ତାଙ୍କର ପ୍ରଣୟ ହୋଇଛି । ଗୁପ୍ତ ମିଳନ, ବିବାହ ଓ ଶେଷରେ ନାୟକର ପ୍ରବାସ ଯିବା ଯୋଗୁଁ ବିରହ ବର୍ଣ୍ଣିତ । କାବ୍ୟଟି ଶୃଙ୍ଗାର ରସାତ୍ମକ । 'ରସଲେଖା' ଆଉ ଏକ ଆଦି ରସାତ୍ମକ କାବ୍ୟ । ଏହା ୨୨ଗୋଟି ଛାନ୍ଦରେ ରଚିତ । ଏଥିରେ ରସଲେଖାର ପ୍ରଣୟ ବର୍ଣ୍ଣିତ ଅଛି । 'ସୁବର୍ଣ୍ଣରେଖା' ପାଞ୍ଚୋଟି ଛାନ୍ଦରେ ରଚିତ । କୋଶଳ ଦେଶର ରାଜକୁମାର କାବ୍ୟର ନାୟକ । ନାୟିକା ହେଉଛନ୍ତି ମନ୍ତ୍ରୀଙ୍କ କନ୍ୟା ସୁବର୍ଣ୍ଣରେଖା । ଗାନ୍ଧର୍ବମତେ ଉଭୟଙ୍କର ବିବାହ ହୋଇଛି । ପିତାଙ୍କ ଆଦେଶମତେ ରାଜକୁମାର ବିଦେଶ ଯାତ୍ରା କରିଛନ୍ତି । ଫେରିବାପରେ ଉଭୟଙ୍କର ମିଳନ ହୋଇଛି ।

## ଚିତ୍ର କାବ୍ୟ ବନ୍ଧୋଦୟ

ସଂସ୍କୃତ ସାହିତ୍ୟରେ ଏହିଭଳି କାବ୍ୟ ଅଛି । ଉପେନ୍ଦ୍ର ମଧ୍ୟ ଚିତ୍ର ସାହାଯ୍ୟରେ ଏକ କାବ୍ୟ ରଚନା କରିଛନ୍ତି । ଗ୍ରନ୍ଥରେ ବହୁପ୍ରକାର ଚିତ୍ର ସନ୍ନିବେଶିତ ହୋଇଛି । ଚିତ୍ର ଜରିଆରେ କାବ୍ୟ ଶୈଳୀ ପରିସ୍ଫୁଟ । କାବ୍ୟ ଦୃଷ୍ଟିରୁ ଏହାର ସ୍ଥାନ ସେତେ ଉଚ୍ଚ ନୁହେଁ ।

## ଗୀତାଭିଧାନ

ଉପେନ୍ଦ୍ର ଭଞ୍ଜଙ୍କ ଯୁଗ ପର୍ଯ୍ୟନ୍ତ କେବଳ ସଂସ୍କୃତରେ ଅଭିଧାନ ଗ୍ରନ୍ଥ ଥିଲା । କବି ବା ସାହିତ୍ୟିକମାନେ 'ଅମର କୋଷ', 'ମେଦିନୀ କୋଷ' ପ୍ରଭୃତି ଅଭିଧାନମାନଙ୍କର ସାହାଯ୍ୟ ନେଉଥିଲେ । ଏ ଅଭାବ ଦୂର କରିବାପାଇଁ ଉପେନ୍ଦ୍ର ଭଞ୍ଜ ଗୀତରେ ଏକ ଅଭିଧାନ ରଚନା କଲେ । ଯେକୌଣସି ପ୍ରାଦେଶିକ ଭାଷାରେ ଏହା ପ୍ରଥମ ଥିଲା । ଉପେନ୍ଦ୍ର ଭଞ୍ଜ ଏ ଦିଗରେ ପଥପ୍ରଦର୍ଶକ ଥିଲେ ବୋଲି ସମସ୍ତେ ସ୍ୱୀକାର କରନ୍ତି ।

## କ୍ଷୁଦ୍ର ରଚନା

ଉପେନ୍ଦ୍ରଙ୍କ ଯୁଗ ମହାକାବ୍ୟ ଯୁଗ ଥିଲା । ତଥାପି ସେ ଯୁଗରେ ଉପେନ୍ଦ୍ର ଭଞ୍ଜ ଓଡ଼ିଆରେ ବହୁ କ୍ଷୁଦ୍ର ଗୀତ ରଚନା କରିଛନ୍ତି । କାବ୍ୟ ରଚନା ସଙ୍ଗେ ସଙ୍ଗେ ସେ କ୍ଷୁଦ୍ର କବିତା ରଚନା କରିଥିବା 'ଚିତ୍ରକାବ୍ୟ ବନ୍ଧୋଦୟ'ରେ ଉଲ୍ଲେଖ ଅଛି –

"ଅଶେଷ ଚଉତିଶା ଚଉପଦୀ
ତାହା କେତେ ଯେ କହିବି ସମ୍ପାଦି
ଗାହା, ଦୋହା, ଷୋଡ଼ଶେନ୍ଦୁ, ଛପୋଇ
ଇତ୍ୟାଦି କବିତ୍ୱ ଗଣନା ନାହିଁ ।"

## ଚଉପଦୀ ଚନ୍ଦ୍ର ବା ଷୋଡ଼ଶେନ୍ଦୁ

ଏଥିରେ ଷୋଳଟି ସଙ୍ଗୀତର ସମାବେଶ ଅଛି । ଏଗୁଡ଼ିକ 'ଅ'ରୁ ଆରମ୍ଭ ହୋଇଛି । ଏଥିରେ ନାୟକର ବିରହ, ରତିଭାବନା, ମିଳନ ପ୍ରଭୃତି ବର୍ଣ୍ଣିତ ଅଛି ।

## ଚଉପଦୀ ଭୂଷଣ

ଏଥିରେ ୩୪ ଗୋଟି ଗୀତ ସନ୍ନିବିଷ୍ଟ । ଏଗୁଡ଼ିକ 'କ'ଠାରୁ ଆରମ୍ଭ ହୋଇ 'କ୍ଷ'ରେ ଶେଷ ହୋଇଛି । ଆଦିରସ ଏହି ଗୀତଗୁଡ଼ିକରେ ପ୍ରାଧାନ୍ୟ ଲାଭ କରିଛି । ବିଶେଷତଃ, ବିରହ୍ ଭାବନା ଏଥିରେ ବେଶି ଦେଖାଯାଏ, ଯଥା –

"କରିବା ବେଳେ ଗମନ ବିଦେଶକୁ ଚାହିଁ
କି କରି ଅନାଉଥିଲୁ ବିରସିତା ହୋଇ,
କଳାବତୀରେ, କଞ୍ଜ ନେତ୍ରେ ନୀର
କରିଥିଲ ପୂର୍ଣ୍ଣ ଦିଶୁଥିଲା କି ରୁଚିର ।"

କବି ଏଠାରେ ଯେଉଁ ଚିତ୍ର ଦେଇଛନ୍ତି, ତାହା ଅତି ଜୀବନ୍ତ ହୋଇଛି ।

## ଚଉ ପହର

ଏଥିରେ ଚାରୋଟି ଗୀତ ଅଛି । ପ୍ରଥମ ଗୀତଟି ମାଳବ ରାଗରେ ରଚିତ, ଯଥା –

"ପ୍ରଥମ ପ୍ରହର ନିଶି ପ୍ରବେଶ ପୁରୁଷ ।"

ଦ୍ୱିତୀୟ ଗୀତଟି କଳହଂସ କେଦାର ରାଗରେ କବି ରଚନା କରିଛନ୍ତି, ଯଥା –

"ଦ୍ୱିତୀୟ ଯାମ ନିଶି ପ୍ରବେଶ ସହ
× × ×
ଏତେ ବିଚ୍ଛେଦେ ଯାହା ଜୀଇଛି ମୁହିଁ,
ଏ ଭାଳି ମନେ ଚିନ୍ତି ହୃଦ ଦହଇ ଯେ ।"

ତୃତୀୟ ଗୀତଟି ହେଲା –

"ତୃତୀୟ ଯାମ ଯାମିନୀ
ପ୍ରବେଶେ ଦିନେ କାମିନୀ
ସ୍ୱପ୍ନରେ ମୋ ସଙ୍ଗରୁ ବିଚ୍ଛେଦ ହୋଇ ।"

ଏହା ଚୋଖିରେ ଲେଖା ହୋଇଛି । ଚତୁର୍ଥ ଗୀତଟି ବରାଡ଼ି ରାଗରେ ରଚିତ ହୋଇଅଛି, ଯଥା –

"ଚତୁର୍ଥ ପ୍ରହର ନିଶି ପ୍ରବେଶେ ଦିନେ ସୁକେଶୀ
କାଚବାଡ଼ ପୁର ପଲଙ୍କରେ ।"

ଏହି ଗୀତଗୁଡ଼ିକ ବିରହୀ ନାୟକର ଚିନ୍ତା ପ୍ରକାଶ କରିଥାଏ । ଏହା ଅତି ରସପୂର୍ଣ୍ଣ ହୋଇଛି । ଏହା କବିଙ୍କ ଅନୁଭୂତିର ରୂପ ନେଇଥିବା ଅନୁମାନ କରାଯାଏ ।

**ଚଉତିଶା**

କବି ମଧ ବହୁ ଚଉତିଶା ରଚନା କରିଛନ୍ତି ।

**ରସପଞ୍ଚକ**

'ର', 'ସ', 'ପ', 'ଚ', 'କ' – ଏହି ପାଞ୍ଚୋଟି ଅକ୍ଷରକୁ ଆଦ୍ୟରେ ରଖି କବି ପାଞ୍ଚୋଟି ଚଉତିଶା ରଚନା କରିଛନ୍ତି । ଏଥିରେ ତାଙ୍କର ଅପୂର୍ବ କବିତ୍ୱର ପରିଚୟ ମିଳେ । କବି ଯେତେବେଳେ ଏହା ରଚନା କଲେ, ସେତେବେଳେ ଭାରତର କୌଣସି ଭାଷାରେ ଅଳଙ୍କାର ଶାସ୍ତ୍ର ରଚିତ ହୋଇ ନ ଥିଲା । ଏହା ଓଡ଼ିଆ ସାହିତ୍ୟକୁ ଗୌରବାନ୍ୱିତ କରିଅଛି ବୋଲି ପଣ୍ଡିତ ବିନାୟକ ମିଶ୍ର ମତ ଦେଇଛନ୍ତି ।

**ପୋଇ**

କବି 'ପୋଇ' ରୀତିରେ ବହୁ ଗୀତ ରଚନା କରିଛନ୍ତି । 'ପୋଇ' ସଂସ୍କୃତ 'ପଦୀ'ରୁ ଆସିଛି । ଏଥିରେ କଥୋପକଥନ ମାଧମରେ ରାଧାକୃଷ୍ଣ ଲୀଳା ବର୍ଣ୍ଣନା କରାଯାଇଛି । ଏହା ଏକ ସ୍ୱତନ୍ତ୍ର ଧରଣର ରଚନା ।

**ବୋଲି**

ଏଗୁଡ଼ିକ ଲଘୁ କବିତା । କେତେକ 'ବୋଲି' ଭଞ୍ଜକବିଙ୍କ ନାମରେ ଭଣିତା ଅଛି । ଏଥିରେ ରସିକନାଗରମାନଙ୍କ ସହିତ କମଳା ବିକ୍ରୟିଣୀ, ତାମ୍ବୂଳ ସ୍ତ୍ରୀ, କୁରାଳ ବୋହୂ ବା ଗୁଡ଼ିଆବୋହୂ ପ୍ରଭୃତିଙ୍କର ପ୍ରେମଜନିତ ଉକ୍ତି–ପ୍ରତ୍ୟୁକ୍ତି ଅଛି । ଏହା ସେତେବେଳେ ବିଶେଷ ଆଦର ଲାଭ କରିଥିବା ଜଣାଯାଏ ।

## ଢଗ

ଏହା କବିଙ୍କ ଯୁଗରେ ପ୍ରଚଳିତ ଥିଲା । ତେଣୁ ଉପେନ୍ଦ୍ର ବହୁ ଢଗ ରଚନା କରିବା ଦିଗରେ ବ୍ରତୀ ହେଲେ । କୌଣସି ସ୍ୱାମୀ ତା'ର ସ୍ତ୍ରୀକୁ ଯାତ୍ରା ଦେଖିବାପାଇଁ କହୁଛି –

"ଚିକ୍‌କଣକହୀ, ଯାତ୍ରା ଆଜ ହୋଇ
ଚିତ୍ରୋତ୍ପଳା ତୀରେ, ମାଧବ ଠାଇଁ ।
ଚାଲ ଯୁବତୀ, ଥିଲେ ତୋ ମତି
ଚୁଡ଼ଙ୍ଗ ଦେଖୁ ଲୋକେ ଆସିଛନ୍ତି ।"

## ଭଞ୍ଜ ସଙ୍ଗୀତ

କବିଙ୍କର ଅନେକ ସଙ୍ଗୀତ ଅଛି – ଯାହାକି କୌଣସି କାବ୍ୟରେ ସ୍ଥାନ ପାଇ ନାହିଁ । ସେଗୁଡ଼ିକ କିନ୍ତୁ ବିଶେଷ ଜନପ୍ରିୟତା ହାସଲ କରିଛି । ଉଦାହରଣସ୍ୱରୂପ, 'ଦ୍ୱିତୀୟା ଯାମିନୀରେ ମୋ ପ୍ରାଣ ସହୀ', 'ମନ ତୋଷିବି', 'ମଲ୍ଲୀମାଳ ଶ୍ୟାମଙ୍କୁଦେବି', 'ଆଜି ଦେଖିଲିରେ ନବୀନ ବୟସୀ ବାଳା', 'କାନ୍ତ ବିନା ଦିବା ରଜନୀ ସଜନୀ', 'ଆରେ ମଦାଳସା, ଶେଷ ହୋଇଯାଇଥିଲା ନିଶା', ବା 'ଆରେ ପ୍ରିୟ ସହୀ, ଛାତି ପଥର କଲିଣି ସହି ସହି' ପ୍ରଭୃତି ଗୀତଗୁଡ଼ିକ ଅତୀବ ଜନପ୍ରିୟ ।

ଉପେନ୍ଦ୍ର ଥିଲେ ସଙ୍ଗୀତ ସୃଷ୍ଟିରେ ପଥପ୍ରଦର୍ଶକ । ତାଙ୍କ ଭାଷାରେ ତଥା ଭାବ ପ୍ରକାଶରେ ଥିଲା ମନୋଜ୍ଞତା ଓ ସହଜବୋଧଗମ୍ୟତା । ସଙ୍ଗୀତଗୁଡ଼ିକ ସଂଖ୍ୟା ଅନୁପାତରେ ଯଥେଷ୍ଟ ଅଳ୍ପ ଥିଲେ ହେଁ, ତା' ମଧରେ ପ୍ରାଣପ୍ରାଚୁର୍ଯ୍ୟ ଯେ ଭରି ରହିଛି, ଏହା ଅତି ସ୍ପଷ୍ଟ । ତାଙ୍କର ଗଭୀର ଅନୁଭୂତିଗୁଡ଼ିକ ହିଁ ଛାନ୍ଦରେ କିମ୍ବା କେତେବେଳେ ସଙ୍ଗୀତରେ ମୁଖରିତ ହୋଇଉଠିଛି ।

ଉପେନ୍ଦ୍ରଙ୍କ ସଙ୍ଗୀତ ପାଲା, ଗୋଟିପିଲା ନାଚ ମାଧ୍ୟମରେ ପରିବେଷିତ ହୋଇଥାଏ । ପଥ ପ୍ରାନ୍ତରେ ପଥିକମାନେ ମଧ୍ଧ ଆନନ୍ଦରେ ଗାଇଥାନ୍ତି । ଗୋପବନ୍ଧୁ ଯଥାର୍ଥରେ ଗାଇଥିଲେ –

"ଗାଏ ତୁମ୍ଭ ଗୀତ ସଭାର ପଣ୍ଡିତ
ପଥ ପ୍ରାନ୍ତେ ହୃଷ୍ଟମନା,
ବିଲେ ବୋଲେ ଚଷା ଅନ୍ତଃ ପୁରେ ଯୋଷା
ନୃତ୍ୟ ରଙ୍ଗେ ବାରାଙ୍ଗନା ।"

## ଜଗନ୍ନାଥଙ୍କ ବର୍ଣ୍ଣନା

ଉତ୍କଳର ଆରାଧ୍ୟଦେବତା ହେଉଛନ୍ତି ଜଗନ୍ନାଥ । କବି ଜଗନ୍ନାଥଙ୍କୁ ତାଙ୍କର ଭକ୍ତିଅର୍ଘ୍ୟ ବାଢ଼ିଛନ୍ତି । ତାଙ୍କୁ ନୀଳାଦ୍ରିନାଥ, ଚଉପାଦମଣି,ଦେବାଧିଦେବରାଜ,

ପରମ ମୁକ୍ତିଦାତା ବୋଲି କହିଛନ୍ତି । ତାଙ୍କର ଜଗନ୍ନାଥ ପ୍ରଶସ୍ତି ସମ୍ବନ୍ଧୀୟ କାବ୍ୟ ହେଉଛି 'ନୀଳାଦ୍ରୀଶ ଚଉତିଶା' । ଏହି କାବ୍ୟକୁ ରଚନା କରି ସେ ଜଗନ୍ନାଥଙ୍କ ଚରଣାରବିନ୍ଦରେ ସମର୍ପଣ କରିଛନ୍ତି ।

''କର ପତ୍ର ଯୋଡ଼ିଣ କମ୍ବୁ ରାଜ୍ୟ ରାଜନ
କମଳାବର ସନ୍ନିଧାନେ
× × ×
ହେ ନୀଳାଦ୍ରୀଶ କହି ତ କୁଟିଳ ବହିଛ
ହରିତ ଚକ୍ର ବହିଅଛ ।
କମ୍ବୁନାଭି କୁଟିଳ ଭକ୍ତ ଜନେ ସରଳ
କରଟୁହୀନ କି କରୁଛ ।''

'ରସିକ ହାରାବଳୀ' କାବ୍ୟର ପ୍ରଥମ ଓ ତୃତୀୟ ଛାନ୍ଦରେ ଜଗନ୍ନାଥଙ୍କ ବନ୍ଦନା ଦେଖିବାକୁ ମିଳେ । ଏଥିରେ ମଧ୍ୟ ଜଗନ୍ନାଥଙ୍କ ପ୍ରସିଦ୍ଧ ଚନ୍ଦନଯାତ୍ରାର ବର୍ଣ୍ଣନା ଅଛି ।

କବି ଜୀବନର ଶେଷଭାଗରେ ଜଗନ୍ନାଥଙ୍କ ପାଖରେ ନିଜକୁ ସମର୍ପଣ କରି ଦେଇଥିବା ଜଣାଯାଏ –

''କ୍ଷୟ ତ ହେଲାଣି ପିଣ୍ଡ
କ୍ଷାଳ ଏ ଜଞ୍ଜାଳର ଦଣ୍ଡ
କ୍ଷାତି ଏ ଉପେନ୍ଦ୍ରର କ୍ଷାତକୁଳ ବେଭାର
ଚରଣ ତଳେ ହୋଇ ରୁଣ୍ଡ ହେ ନୀଳାଦ୍ରୀଶ ।''

ତାଙ୍କର ରଚିତ ଅନ୍ୟ ଏକ ଜଗନ୍ନାଥ ଭଜନ ଅତୀବ ଜନପ୍ରିୟ ।

''ମାନ ଉଦ୍ଧାରଣ କର ହେ କାରଣ
ଶରଣ ମୁଁ ତୁମ୍ଭ ପାଦତଳେ ।
ଅନାଥର ନାଥ ନୀଳଗିରି ନାଥ
ଜଗନ୍ନାଥ ନାମ ନୀଳାଚଳେ
× × ×
ବଣ ପୋଡ଼ିଗଲେ ଘୋର ଦାବାନଳୁ
ଉଦ୍ଧରି ରଖିଲ ବ୍ରଜବାଳେ,
କହେ ଉପଇନ୍ଦ୍ର କବିକୁଳଚନ୍ଦ୍ର
ଶରଣ ମୁଁ ତୁମ୍ଭ ପାଦତଳେ ।''

## ରାଜସମ୍ମାନ

ସେତେବେଳେ ଶ୍ରୀକ୍ଷେତ୍ରରେ କବି ସମ୍ମିଳନୀ ବା କବି ସଭାମାନ ହେଉଥିଲା । ଉତ୍କଳର ସବୁ ଅଞ୍ଚଳରୁ କବିମାନେ ଆସି ନିଜ ନିଜର କାବ୍ୟକବିତାମାନ ପାଠ କରୁଥିଲେ । ଯାହାର କାବ୍ୟ ଶ୍ରେଷ୍ଠ ବୋଲି ବିବେଚିତ ହେଉଥିଲା, ସେ ରାଜାଙ୍କଦ୍ୱାରା ସମ୍ମାନିତ ହେଉଥିଲେ । ଉପେନ୍ଦ୍ର ଭଞ୍ଜ ମଧ ନିଜ ରଚିତ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ବୈଦେହୀଶ ବିଳାସ', ରସିକ ହାରାବଳୀ ପ୍ରଭୃତିର ତାଳପତ୍ର ପୋଥି ନେଇ ପଣ୍ଡିତ ସଭାରେ ଯୋଗ ଦେଲେ । ଗଜପତି ଦିବ୍ୟସିଂହଦେବ ଉପେନ୍ଦ୍ରଙ୍କ ପିଉସୀ (ଧନଞ୍ଜୟ ଭଞ୍ଜଙ୍କ କନ୍ୟାଙ୍କୁ) ବିବାହ କରିଥିଲେ । ସେ ଉପେନ୍ଦ୍ରଙ୍କ ବସବାସ ଓ ଖାଦ୍ୟପେୟର ବ୍ୟବସ୍ଥା କରିଥିଲେ; ମାତ୍ର ତାଙ୍କ କବିତ୍ୱ ବିଷୟରେ କିଛି ଜାଣି ନ ଥିଲେ । ଦକ୍ଷିଣର ଜଣେ ପଣ୍ଡିତ ଭାବି ପୁରୀର ଶାସନୀ ବ୍ରାହ୍ମଣମାନେ ତାଙ୍କୁ ଯଥୋଚିତ ମର୍ଯ୍ୟାଦା ମଧ ଦେଇ ନ ଥିଲେ । ପରାକୃତ (ଓଡ଼ିଆ) ଭାଷାରେ ସଂସ୍କୃତରେ ରଚିତ 'ନୈଷଧ' ଭଳି କାବ୍ୟ ନାହିଁ ବୋଲି ତାଚ୍ଛଲ୍ୟ କରି କହନ୍ତି, ଉପେନ୍ଦ୍ର ସଙ୍ଗେ ସଙ୍ଗେ ବୈଦେହୀଶ ବିଳାସର କେତେକ ପଦ ସୁଲଳିତ କଣ୍ଠରେ ଗାନ କଲେ । ତାଙ୍କ କାବ୍ୟଶୈଳୀର ପରିଚୟ ପାଇ ପଣ୍ଡିତ ମଣ୍ଡଳୀ ଚକିତ ହୋଇପଡ଼ିଲେ । ସମସ୍ତେ ଏକ ସ୍ୱରରେ ତାଙ୍କ ପାଣ୍ଡିତ୍ୟର ପ୍ରଶଂସା କରିବାକୁ ଲାଗିଲେ । କାବ୍ୟ ଚର୍ଚ୍ଚା ପରେ ଶାସ୍ତ୍ର ଚର୍ଚ୍ଚା ହେଲା । ଉପନିଷଦ୍, ମନୁ ସ୍ମୃତି, ଗୀତା, କାମସୂତ୍ର, ଆୟୁର୍ବେଦ, ଜ୍ୟୋତିଷ ପ୍ରଭୃତିରୁ ଜଟିଳ ପ୍ରଶ୍ନମାନ ତାଙ୍କୁ ପଚରାଗଲା । ଆରାଧ ଦେବତା ରଘୁନାଥଙ୍କ କୃପାରୁ ସେ ସମସ୍ତ ପ୍ରଶ୍ନର ଯଥାଯଥ ଉତ୍ତର ଦେଲେ । ଉପସ୍ଥିତ ପଣ୍ଡିତ ମଣ୍ଡଳୀର ହର୍ଷଧ୍ୱନି ମଧରେ ମହାରାଜା ଦିବ୍ୟସିଂହଦେବ ତାଙ୍କୁ 'ବୀରବର' ଉପାଧିରେ ଭୂଷିତ କଲେ ।

କବି ବହୁ ଉପାଧିରେ ଭୂଷିତ ହେଲେ ମଧ 'ବୀରବର' ଉପାଧିଟି ଉପେନ୍ଦ୍ରଙ୍କପାଇଁ ଅଧିକ ଗୌରବପୂର୍ଣ୍ଣ ଓ ପ୍ରଶସ୍ତିମୂଳକ ଥିଲା । କବି ସ୍ୱରଚିତ ବହୁ କାବ୍ୟମାନଙ୍କରେ ବହୁବାର ଏହି ଉପାଧିଟି ବ୍ୟବହାର କରିଛନ୍ତି, ଯଥା –

"ବୀରବର ପଦ ଉପେନ୍ଦ୍ର ମୋର ନାମ
ବାରେ ବାରେ ସେବାରେ ମନାଇଁ ସୀତାରାମ ଯେ ।"

## ଦୀନକୃଷ୍ଣଙ୍କ ସହିତ ସାକ୍ଷାତ୍

ସେ ଯୁଗର ବିଶିଷ୍ଟ ବୈଷ୍ଣବ କବି ଦୀନକୃଷ୍ଣ ଦାସ ପୁରୀରେ ଅବସ୍ଥାନ କରୁଥିଲେ । ଉପେନ୍ଦ୍ରଙ୍କ ଯଶ ଗୌରବ ଚାରିଆଡ଼େ ବ୍ୟାପିଯିବାରୁ ସେ କେତେଜଣ ବନ୍ଧୁଙ୍କ ସହ ଉପେନ୍ଦ୍ରଙ୍କୁ ଭେଟିବାକୁ ଗଲେ । ସେ ସ୍ୱରଚିତ 'ରସକଲ୍ଲୋଳ'

ପୋଥିକୁ ସରାରେ ରଖି ନେଇଥିଲେ । ଏହା କ'ଣ ମହାପ୍ରସାଦ ବୋଲି ଉପେନ୍ଦ୍ର ପଚାରିଲେ; ମାତ୍ର ଜଗନ୍ନାଥଙ୍କର ନୁହେଁ, ସରସ୍ୱତୀଙ୍କ ମହାପ୍ରସାଦ ବୋଲି ଦୀନକୃଷ୍ଣ ଉତ୍ତର ଦେଲେ । ପୋଥି ଦେଖି ଉପେନ୍ଦ୍ର ଅତିଶୟ ପ୍ରୀତ ହେଲେ । ପୋଥିର ନାମକରଣ କିନ୍ତୁ ତାଙ୍କର ପସନ୍ଦଯୋଗ୍ୟ ହେଲା ନାହିଁ । ପୋଥିର ସମସ୍ତ ପଦ 'କ'ରେ ଆରମ୍ଭ ହୋଇଥିବା ଦୃଷ୍ଟିରୁ ରସକଲ୍ଲୋଳ ପରିବର୍ତ୍ତେ 'କ' ଅକ୍ଷରରେ ଆରମ୍ଭ ହୋଇଥିବା ନାମ 'କୃଷ୍ଣକଲ୍ଲୋଳ' ରଖିବାକୁ ପରାମର୍ଶ ଦେଇଥିଲେ ।

## ଶେଷ ଜୀବନ

ବିପତ୍ନୀକ ହେବା ପରେ ଉପେନ୍ଦ୍ର ବୈରାଗୀ ଜୀବନ ଯାପନ କରୁଥିବା ଆଗରୁ ବର୍ଣ୍ଣିତ ଅଛି । ସେ ବହୁ କାଳ ଧରି ଶ୍ରୀକ୍ଷେତ୍ରରେ ରହିଥିବା ଜଣାଯାଏ । ତାଙ୍କଦ୍ୱାରା ପ୍ରତିଷ୍ଠିତ ଘୁମୁସର ମଠରେ ଏବେବି ରାମ, ଲକ୍ଷ୍ମଣ ଓ ସୀତାଙ୍କ ବିଗ୍ରହ ପୂଜା ପାଉଅଛି । ସମ୍ଭବତଃ, ତାଙ୍କ ଶରୀର ଦୁର୍ବଳ ହୋଇପଡ଼ିଲା । ମାତ୍ର ୫୦ବର୍ଷ ବୟସରେ ୧୭୨୦ ମସିହାରେ ସେ ଇହଲୀଳା ସାଙ୍ଗ କଲେ । କେତେକ ଆଲୋଚକଙ୍କ ମତରେ ୧୭୩୫ ମସିହାରେ ୬୫ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହୋଇଥିଲା ।

## ଦ୍ୱିତୀୟ ଧରମା ?

ଓଡ଼ିଶାର ଆଉ ଜଣେ କବି ବିଚ୍ଛନ୍ଦଚରଣ ଭଞ୍ଜ କାବ୍ୟକବିତାର କେବଳ ରସିକ ନ ଥିଲେ; ସେ ଭଞ୍ଜ ସାହିତ୍ୟର ପ୍ରଚାର ଓ ପ୍ରସାରପାଇଁ 'କଳିଙ୍ଗ ଭାରତୀ' ନାମରେ ଏକ ଅନୁଷ୍ଠାନ ଗଢ଼ିଥିଲେ । ତାଙ୍କ ମତରେ ବତ୍ସାଦାସଙ୍କଠାରୁ ଦୀନକୃଷ୍ଣ ଦାସଙ୍କ ପର୍ଯ୍ୟନ୍ତ କବିମାନେ ଓଡ଼ିଆ ସାହିତ୍ୟସୌଧ ଗଢ଼ିବାରେ ଲାଗି ପଡ଼ିଥିଲେ ମଧ୍ୟ ଉପେନ୍ଦ୍ର ଭଞ୍ଜ କେବଳ ଧରମାପରି କୋଣାର୍କ ମନ୍ଦିରର ମୁଣ୍ଡି ମାରିଛନ୍ତି । ଏହି ମତ ହୁଏ ତ ଗ୍ରହଣୀୟ ହୋଇପାରେ ବା ନ ପାରେ । ମାତ୍ର ଏହା ସତ୍ୟ ଯେ ଉପେନ୍ଦ୍ର ଭଞ୍ଜ ଥିଲେ ସେ ଯୁଗର ମହାପଣ୍ଡିତ, ମହାଜ୍ଞାନୀ ଓ ଶ୍ରେଷ୍ଠ କବି ।

ଉପେନ୍ଦ୍ର ଭଞ୍ଜଙ୍କର ସାରସ୍ୱତ ସାଧନାର ପଟାନ୍ତର ନ ଥିଲା ବା ନାହିଁ । ନାନା ଘାତ ପ୍ରତିଘାତ ମଧ୍ୟରେ ସେ ପଚାଶରୁ ଊର୍ଦ୍ଧ୍ୱ ବଡ଼ ସାନ ରଚନା କରିଗଲେ । କଳିଙ୍ଗ ଭାରତୀକୁ ସଂସ୍କୃତ ଭାରତୀର ସମକକ୍ଷ କରିବାପାଇଁ ସେ ବଦ୍ଧପରିକର ଥିଲେ । ଯେଉଁ ଐଶ୍ୱର୍ଯ୍ୟ, ଅଳଙ୍କାର ବା ରସବିଭବ ନେଇ ସଂସ୍କୃତ ଭାରତୀ ବନ୍ଦନୀୟା, ସେସବୁକୁ ପୁଷ୍କଳଭାବେ ପ୍ରବର୍ତ୍ତନ କରି ସଫଳକାମ

ହେଲେ । ତାଙ୍କର କାବ୍ୟକବିତାଗୁଡ଼ିକରେ ମିଳେ ଭାଷାର ସୌନ୍ଦର୍ଯ୍ୟ, ଭାବର ବୈଚିତ୍ର୍ୟ, ଛନ୍ଦ ଓ ରାଗର କୁହୁକ ଓ ଅଗାଧପାଣ୍ଡିତ୍ୟ ପ୍ରଭା । ସେଥିପାଇଁ ଇଂରାଜୀ ଐତିହାସିକ ଉଇଲିୟମ ହଣ୍ଟର ତାଙ୍କୁ ଓଡ଼ିଆ କବିମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ବୋଲି କହିଛନ୍ତି । ବଙ୍ଗଳାର ବିଶିଷ୍ଟ ସାହିତ୍ୟିକ ବିଜୟଚନ୍ଦ୍ର ମଜୁମଦାର ତାଙ୍କ ସମ୍ପର୍କରେ ତିକ୍ତ ମତ ପୋଷଣ କଲେ ମଧ୍ୟ ତାଙ୍କର ନାମ ବାଜିକର ଭଳି କାର୍ଯ୍ୟ କରେ ବୋଲି ମତ ପ୍ରକାଶ କରିଛନ୍ତି । ଆଉ ଜଣେ ବଙ୍ଗଳାର ବିଶିଷ୍ଟ ଐତିହାସିକ ମନମୋହନ ଚକ୍ରବର୍ତ୍ତୀ କହିଥିଲେ ଯେ ଅଦ୍ଭୁତ ପଦବିନ୍ୟାସ ଓ ବିବିଧ ଅଳଙ୍କାର ପ୍ରୟୋଗରେ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଅଦ୍ୱିତୀୟ । ଅବଶ୍ୟ ତାଙ୍କ କବିତାରେ ଦୁର୍ବୋଧତା ଅଛି । ବହୁ ଆଲୋଚକ ତାଙ୍କର ନଗ୍ନ ବର୍ଣ୍ଣନାକୁ କଠୋର ସମାଲୋଚନା କରିଛନ୍ତି । କେହି କେହି ତାଙ୍କ ରଚନାକୁ ରୁଚି ବିବର୍ଜିତ ବୋଲି ମନେକରନ୍ତି । ତାଙ୍କୁ କେନ୍ଦ୍ର କରି କେତେ ବର୍ଷ ଧରି ଓଡ଼ିଆ ସାହିତ୍ୟରେ ମସୀଯୁଦ୍ଧ ମଧ୍ୟ ଚାଲିଥିଲା । ମାତ୍ର ସବୁ ପ୍ରକାର ବାଦବିସମ୍ବାଦକୁ ଦୂରେଇ ଦେଇ କବିବର ରାଧାନାଥ ଉପେନ୍ଦ୍ର ଭଞ୍ଜଙ୍କୁ ନିଜର ଗୁରୁଭାବେ ଗ୍ରହଣ କରିନେଇଛନ୍ତି । ନିଜକୁ ତାଙ୍କର ପ୍ରଣୀତ ଶିଷ୍ୟ ବୋଲି କହିଛନ୍ତି । ଆଧୁନିକ ଯୁଗର ସାହିତ୍ୟିକ ତଥା ସମୀକ୍ଷକମାନେ ତାଙ୍କର ପ୍ରଶଂସାରେ ବିଭୋର ହୋଇଉଠିଛନ୍ତି । ପ୍ରାଚୀନ ଉତ୍କଳ ଲେଖକ ଜଗବନ୍ଧୁ ସିଂହ ତାଙ୍କୁ ଯୁଗ ପ୍ରବର୍ତ୍ତକ ଆସନରେ ବସାଇଛନ୍ତି । ଆଉ ଜଣେ ବିଶିଷ୍ଟ କବି ମାୟାଧର ମାନସିଂହ ଉପେନ୍ଦ୍ରଙ୍କ ବଂଶ-ପରମ୍ପରାକୁ ଆକ୍ଷେପ ବା ତାଙ୍କର ସ୍ୱପ୍ନବିଭୋରତାକୁ ପସନ୍ଦ ନ କରିପାରିଥିଲେ ମଧ୍ୟ କବି ସାହିତ୍ୟକୁ ଜୀବନ ବୋଲି ଧରିନେଇଥିବାରୁ ବଧାଇ ଜଣାଇଛନ୍ତି । ଜଣେ ସମାଲୋଚକ ଅଧ୍ୟାପକ ଜାନକୀ ମହାନ୍ତିଙ୍କପାଇଁ ଉପେନ୍ଦ୍ର ଏକ ଆତଙ୍କ ହୋଇଥିଲାବେଳେ, ଆଉ ଜଣେ ସମାଲୋଚକ ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ ଉପେନ୍ଦ୍ରଙ୍କ କାବ୍ୟକବିତାକୁ ସାହିତ୍ୟ କ୍ଷେତ୍ରରେ କୋଣାର୍କ ଭଳି ମନେ କରିଛନ୍ତି । କୋଣାର୍କର ପ୍ରସ୍ତରଗାତ୍ରରେ ଯେପରି ଅତି ସୂକ୍ଷ୍ମାତିସୂକ୍ଷ୍ମ ବିଭବର ଚିତ୍ର ଫୁଟିଉଠି ସମଗ୍ର ମନ୍ଦିରଟିକୁ ଶୋଭାର ଭଣ୍ଡାର କରିପାରିଛି, ଉପେନ୍ଦ୍ରଙ୍କ କବିତାରେ ସୂକ୍ଷ୍ମାତିସୂକ୍ଷ୍ମ ବିଷୟ ସେହିପରି ମନୋଜ୍ଞରୂପ ଧାରଣ କରିଛି । ଆଉ ପାଦେ ଆଗେଇଯାଇ କଳିଙ୍ଗ ଭାରତୀର ପ୍ରତିଷ୍ଠାତା ଭଞ୍ଜପ୍ରେମୀ କବି ବିଚ୍ଛନ୍ଦଚରଣ ସବୁଠିଁ ଆଗରେ ପ୍ରଶ୍ନ ରଖିଛନ୍ତି – ''ଯଶୋଦେହରେ କଳିଙ୍ଗ ଭୂଇଁରେ ତାଙ୍କ ପରି ଏଡ଼େ ଜାଜ୍ୱଲ୍ୟମାନ, ଏଡ଼େ ଭାସ୍ୱର ଅଛି କିଏ !''

ଯଥାର୍ଥରେ ଉପେନ୍ଦ୍ର ଭଞ୍ଜ ହେଉଛନ୍ତି ଉତ୍କଳ ସାହିତ୍ୟର କବିସମ୍ରାଟ୍ ।



## ବିଦଗ୍ଧକବି
# ଅଭିମନ୍ୟୁ ସାମନ୍ତସିଂହାର

ଯଥାର୍ଥରେ ପଣ୍ଡିତ ମୃତ୍ୟୁଞ୍ଜୟ ରଥ କହିଛନ୍ତି –

''ଉପମା ଭଞ୍ଜବୀରସ୍ୟ ତସ୍ୟୈବ ଚାର୍ଥ ଗୌରବଂ
କଲ୍ଲୋଳେ ପଦଲାଳିତ୍ୟ ସନ୍ତି ଚିନ୍ତାମଣୌ ତ୍ରୟମ୍ ।''

କାବ୍ୟକବିତାର ଗୋଟିଏ ଗୋଟିଏ ବୈଶିଷ୍ଟ୍ୟ ଘେନି ଗୋଟିଏ ଗୋଟିଏ କବି ଗୌରବ ଅର୍ଜନ କଲାବେଳେ ଅଭିମନ୍ୟୁ ତାଙ୍କ କାବ୍ୟକବିତାରେ ଉପମା, ଅର୍ଥଗୌରବ ଓ ପଦଲାଳିତ୍ୟର ସମ୍ମିଳିତ ଗୌରବର ଅଧିକାରୀ ଅଟନ୍ତି । ବାସ୍ତବିକ ରୀତିଯୁଗର କବିମାନଙ୍କ ମଧ୍ୟରେ ଅଭିମନ୍ୟୁ ସାମନ୍ତସିଂହାର ହେଉଛନ୍ତି ଏକ ଅସାଧାରଣ ପ୍ରତିଭାବାନ୍ କବି । କେହି କେହି ତାଙ୍କୁ ଓଡ଼ିଆ ଭାଷାର ଶ୍ରେଷ୍ଠ ଶିଳ୍ପୀ ବୋଲି ମତ ଦେଇଛନ୍ତି ।

### ବଂଶ ପରିଚୟ

କଟକ ଜିଲ୍ଲା ଯାଜପୁର ସବଡିଭିଜନର ବରୁଆଁ ପ୍ରଗଣା ଅନ୍ତର୍ଗତ ଗୋଲକୁଣ୍ଡ ଗ୍ରାମରେ କବି ୧୭୫୭ ଖ୍ରୀଷ୍ଟାବ୍ଦରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପୂର୍ବପୁରୁଷମାନେ ଜୟପୁର ଅନ୍ତର୍ଗତ ଭାବନଗରରୁ ଓଡ଼ିଶା ଆସି ସ୍ଥାୟୀଭାବେ ବସବାସ କରି

ରହିଥିଲେ । କାଳକ୍ରମେ ସେମାନେ ଖୋର୍ଦ୍ଧାର ଭୋଇବଂଶୀୟ ରାଜାଙ୍କଠାରୁ ବାଲିଆ ଜମିଦାରୀ ପାଇଥିଲେ । ଅଭିମନ୍ୟୁଙ୍କ ପିତାଙ୍କ ନାମ ହେଉଛି ଇନ୍ଦ୍ରଜିତ୍ ସାମନ୍ତସିଂହାର । ସେ ଅତ୍ୟନ୍ତ ଧର୍ମପରାୟଣ ବ୍ୟକ୍ତି ଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଲେଖାରୁ ଜଣାଯାଏ ଯେ ଇନ୍ଦ୍ରଜିତ୍ ସାମନ୍ତସିଂହାରଙ୍କର ଅଷ୍ଟ ପତ୍ନୀ ଥିଲେ । ମାତ୍ର କାହାର ସନ୍ତାନ ନ ହେବାରୁ ସେ ଚିନ୍ତିତ ଥିଲେ । ସୌଭାଗ୍ୟବଶତଃ ସେ ଜଣେ ସାଧୁଙ୍କୁ ଭେଟିଲେ । ସେହି ସାଧୁ ପୁତ୍ର ଜାତ ହେବାପାଇଁ ମନ୍ତ୍ରୌଷଧି ଦେଲେ । ଫଳରେ ତାଙ୍କର ଅଭିମନ୍ୟୁଙ୍କ ଭଳି ସୁପୁତ୍ର ଜାତ ହେଲା । କେହି କେହି କହନ୍ତି ଯେ ଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ପୁତ୍ର ଲାଭପାଇଁ ଏକ ଯଜ୍ଞର ଆୟୋଜନ କରିଥିଲେ । ଯଜ୍ଞ ପରେ ପରେ ଇନ୍ଦ୍ରଜିତ୍‌ଙ୍କ ଅଷ୍ଟମ ପତ୍ନୀ ତୁଳସୀଦେବୀଙ୍କୁ ସ୍ୱପ୍ନରେ ଜଣେ ତୁଳସୀ ଓ ଚନ୍ଦନ ହାତରେ ଥିବା ଦିବ୍ୟପୁରୁଷ ଦେଖାଦେଲେ । ଏହାପରେ ତାଙ୍କର ଗର୍ଭ ଉଦୟ ହେଲା । କେହି କେହି ଅଭିମନ୍ୟୁଙ୍କ ଜନ୍ମ କାଳ ୧୭୫୭ ମସିହା ନିରୂପଣ କଲାବେଳେ ଆଉ କେହି ୧୭୩୭-୩୮ ମସିହା ବୋଲି ମତ ଦେଇଛନ୍ତି ।

ଅଭିମନ୍ୟୁଙ୍କ ପିତା ଇନ୍ଦ୍ରଜିତ୍ ଜମିଦାର ଥିଲେ । ତେଣୁ ଶିକ୍ଷା ଦୀକ୍ଷା ପ୍ରତି ଗଭୀର ଧ୍ୟାନ ଦିଆଯାଇଥିବା ସ୍ୱାଭାବିକ । ସେତେବେଳେ ସଂସ୍କୃତ ଭାଷାର ପ୍ରତିଷ୍ଠା ଓ ଆଦର ଥିଲା । ଅଭିମନ୍ୟୁ ସେ କାଳରେ ପ୍ରଥା ଅନୁଯାୟୀ ସଂସ୍କୃତରେ ଅଳଙ୍କାର ବ୍ୟାକରଣ, ଅମରକୋଷ, ମେଦିନୀକୋଷ, ଗଣିତ ଓ ଜ୍ୟୋତିଷଶାସ୍ତ୍ର ପ୍ରଭୃତି ଅଧ୍ୟୟନ କଲେ । ସେ ମଧ୍ୟ ବେଦ, ଉପନିଷଦ୍, ବ୍ରାହ୍ମଣ ସଂହିତା ଆଦି ଗ୍ରନ୍ଥମାନ ଅଧ୍ୟୟନ କରିଥିବା ଅନୁମାନ କରାଯାଏ । ଲୋକପ୍ରିୟ 'ଗୀତଗୋବିନ୍ଦ' ମଧ୍ୟ ପାଠ କରିଥିଲେ । ଏତଦ୍‌ବ୍ୟତୀତ ମହାକବି କାଳିଦାସ, ଶ୍ରୀହର୍ଷ, ମାଘ, ବାଣଭଟ୍ଟ ପ୍ରଭୃତି କବିମାନଙ୍କ ଅମର କୃତି, ଯଥା – 'ମେଘଦୂତ', 'କୁମାର ସମ୍ଭବ', 'ନୈଷଧୀୟ ଚରିତ' ଓ 'କାଦମ୍ବରୀ' ପ୍ରଭୃତି ପାଠ କରିଥିବା ଜଣାଯାଏ । ସେ ଓଡ଼ିଆ ଭାଷାର ଭାଗବତ, ବ୍ରହ୍ମବୈବର୍ତ୍ତ ପୁରାଣ ଆଦି ପାଠ କରିଥିଲେ ।

**ବନ୍ଧୁ**

କବି ମାମୁ ଘରେ ରହିବା ସମୟରେ ଟଙ୍କଧର ନାୟକଙ୍କ ସହିତ ବନ୍ଧୁତା ସ୍ଥାପିତ ହେଲା । ସେ ଜଣେ ପଣ୍ଡିତ ଥିଲେ । ଉଭୟେ ଏକାଠି ସଂସ୍କୃତ ଶାସ୍ତ୍ରମାନ ଆଲୋଚନା କରୁଥିଲେ । ତାଙ୍କ ସହିତ ବନ୍ଧୁତ୍ୱ ଆମରଣ ରହିଥିଲା ବୋଲି ପଣ୍ଡିତ ମୃତ୍ୟୁଞ୍ଜୟ ରଥ ଉଲ୍ଲେଖ କରିଛନ୍ତି ।

## ଦୀକ୍ଷାଗୁରୁ

କୈଶୋରରେ ଅଭିମନ୍ୟୁ ଗୁରୁ ଲାଭ କଲେ । ସେ ହେଉଛନ୍ତି ସାଧୁଚରଣ ବା କବିସୂର୍ଯ୍ୟ ସଦାନନ୍ଦ ବ୍ରହ୍ମା । ସେ ଥିଲେ ଜଣେ ବୈଷ୍ଣବ ଗୁରୁ । ସେ ରାଧାକୃଷ୍ଣଙ୍କ ଲୀଳା ଉପରେ ଆଧାରିତ 'ଯୁଗଳ ରସାମୃତ ଲହରୀ', 'ଗୌର ଚିନ୍ତାମଣି', 'ପ୍ରେମ ତରଙ୍ଗିଣୀ' ପ୍ରଭୃତି ବୈଷ୍ଣବ କାବ୍ୟମାନ ରଚନା କରିଥିଲେ । ଯେଉଁ ବୈଷ୍ଣବୀୟ ଦର୍ଶନରେ ସେ ଅନୁପ୍ରାଣିତ ଥିଲେ ସେହି ବୈଷ୍ଣବ ଧର୍ମରେ ପ୍ରିୟ ଶିଷ୍ୟ ଅଭିମନ୍ୟୁଙ୍କୁ ଦୀକ୍ଷିତ କରାଇଥିବା ସ୍ୱାଭାବିକ । ତାଙ୍କଦ୍ୱାରା ଗଭୀରଭାବରେ ପ୍ରଭାବିତ ହୋଇ ଅଭିମନ୍ୟୁ ରାଧାକୃଷ୍ଣ ଲୀଳା ପ୍ରତି ଆକୃଷ୍ଟ ହେଲେ ।

## ଶିକାର ସଉକ

ଅଭିମନ୍ୟୁ ଜମିଦାର ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ସେ କାଳର ରାଜା ଜମିଦାରଙ୍କ ସନ୍ତାନଙ୍କ ଭଳି ଅଭିମନ୍ୟୁ ଖଣ୍ଡା ଚାଳନା, କାଣ୍ଡ ବିନ୍ଧିବା, ଘୋଡ଼ା ଚଢ଼ିବା ପ୍ରଭୃତି ଶିକ୍ଷା କଲେ । ପକ୍ଷୀ ପାଳିବା ଓ ପକ୍ଷୀ ଧରିବାରେ ତାଙ୍କର ସଉକ ଥିଲା । ଥରେ ସେ ଶିକାର କରିବାକୁ ଯାଇ ଏକ ଚକ୍ରବାକ ପକ୍ଷୀକୁ ମାରି ପକାଇଲେ । ଚକ୍ରବାକୀର କରୁଣ କ୍ରନ୍ଦନରେ ତାଙ୍କର ହୃଦୟ ଦୁଃଖରେ ବିଗଳିତ ହୋଇପଡ଼ିଲା । ସେହିଦିନଠାରୁ ସେ ପକ୍ଷୀ ଧରିବା ପରିହାର କରିଥିଲେ । ସେ ରଙ୍ଗ ତୂଳୀ ସାହାଯ୍ୟରେ ଚିତ୍ର ମଧ୍ୟ ଆଙ୍କୁଥିଲେ । ତାଙ୍କ ଅଙ୍କିତ ଚିତ୍ରପଟ ଏବେବି ଜନ୍ମ ସ୍ଥାନରେ ସୁରକ୍ଷିତ ଅଛି । ସେ ମଧ୍ୟ ରସିକ ଥିଲେ ।

## ପରିଣୟ

ସେ କାଳର ପ୍ରଥା ଅନୁଯାୟୀ ଅଭିମନ୍ୟୁ ମାତ୍ର ଚଉଦ ବର୍ଷ ବୟସରେ କେନ୍ଦ୍ରାପଡ଼ାର ଏକ ଜମିଦାର ପରିବାରରେ ବିବାହ କଲେ । ତାଙ୍କର ପତ୍ନୀଙ୍କ ନାମ ଥିଲା ବିମଳା ଦେବୀ । ବିବାହ ସମୟରେ ତାଙ୍କୁ ଚଉଦ ବର୍ଷ ବୟସ ହୋଇଥିଲା । ସେ ରୂପସୀ, ବିଦୁଷୀ ଓ ଗୁଣବତୀ ଥିଲେ । ସେ ମଧ୍ୟ ପତିଗତପ୍ରାଣା ଥିଲେ । ସେ ଥିଲେ ଅଭିମନ୍ୟୁଙ୍କ ପ୍ରେରଣାଦାୟିନୀ । ସ୍ୱାମୀଙ୍କୁ କାବ୍ୟ ରଚନାରେ ଉତ୍ସାହିତ କରୁଥିଲେ । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ଭାଷାରେ ବିମଳା ଦେବୀଙ୍କୁ ପାଇ କବିଙ୍କ ଜୀବନ ପୂର୍ଣ୍ଣ ଓ ଉଜ୍ଜ୍ୱଳମୟ ହୋଇଥିଲା । ଅଭିମନ୍ୟୁ ସାଂସାରିକ ବିଷୟ ପ୍ରତି ସମ୍ପୂର୍ଣ୍ଣ ଉଦାସୀନ ଥିଲେ । ତେଣୁ ଜମିଦାରୀର ସମସ୍ତ ଦାୟିତ୍ୱ ବିମଳାଦେବୀଙ୍କୁ ତୁଲାଇବାକୁ ପଡ଼ିଥିଲା । ଫଳରେ ଅଭିମନ୍ୟୁ ସମସ୍ତ ସମୟରେ କାବ୍ୟଚର୍ଚ୍ଚା କରିବାରେ ଲାଗିଲେ ।

୧୭୭୭ ମସିହାରେ ପିତା ଇନ୍ଦ୍ରଜିତ୍‌ଙ୍କ ପରଲୋକ ହେଲା । ସେତେବେଳକୁ ଅଭିମନ୍ୟୁ ଊନବିଂଶ ବୟସର ଯୁବକ ମାତ୍ର । ୫୨ଟି ମୌଜା ବିଶିଷ୍ଟ ବିରାଟ ଜମିଦାରୀର ସମସ୍ତ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ମାତ୍ର ଧନ ବା ସମ୍ପତ୍ତି ପ୍ରତି ତାଙ୍କର ଲେଶମାତ୍ର ଆସକ୍ତି ନ ଥିଲା । ସେ ଜମିଦାରୀର ଦାୟିତ୍ୱ ସାନଭାଇ ସୁରଥଙ୍କୁ ଦେଇ ନିଜକୁ କେବଳ ଶାସ୍ତ୍ର ଅଧ୍ୟୟନ ତଥା ଚର୍ଚ୍ଚା, କାବ୍ୟକବିତାଦି ରଚନା ଦିଗରେ ନିୟୋଜିତ କଲେ । ଇଷ୍ଟଦେବତା ରାଧାମୋହନଙ୍କ ସେବା ଓ ଅର୍ଚ୍ଚନାରେ ସେ ଅଧିକ ସମୟ ବିନିଯୋଗ କରିଥିବା ଜଣାଯାଏ ।

## କବିତ୍ୱ ଲାଭ

ଭବିଷ୍ୟତ୍‌ରେ ଅଭିମନ୍ୟୁ ଯେ ବଡ଼ କବି ହେବେ, ତାହା ବାଲ୍ୟକାଳରୁ ଜଣାପଡ଼ିଲା । କଥିତଅଛି ଯେ ନଅ ବର୍ଷ ବୟସରେ ଅଭିମନ୍ୟୁ ଜଣେ ବୈଷ୍ଣବ ସାଧୁଙ୍କୁ ନିଷ୍ଠାର ସହ ପୂଜା କରିଥିଲେ । ସାଧୁ ତାଙ୍କ ଉପରେ ପ୍ରସନ୍ନ ହୋଇ କୃଷ୍ଣ ମନ୍ତ୍ର ପ୍ରଦାନ କଲେ । ଅଭିମନ୍ୟୁ ସାତ ରାତି କୃଷ୍ଣ ମନ୍ତ୍ର ଜପିବାକୁ ଲାଗିଲେ । ଜପିବାର ତୃତୀୟ ଦିନ ପୁରୀ ଶ୍ରୀମନ୍ଦିର ବେଢ଼ାରେ ଥିବା ଲକ୍ଷ୍ମୀ ମନ୍ଦିରରେ କୃଷ୍ଣ ନାମ ଲକ୍ଷେବାର ଜପିବାକୁ ତାଙ୍କୁ ସ୍ୱପ୍ନାଦେଶ ହେଲା । ସେହି ଆଦେଶ ଅନୁସାରେ ସେ ପୁରୀ ଯାତ୍ରା କଲେ ଓ ଲକ୍ଷ୍ମୀ ମନ୍ଦିରରେ ସାଧନାରତ ହେଲେ । ପରେ ଲକ୍ଷ୍ମୀଙ୍କ ପିନ୍ଧା ମାଳ ଖସିବାରୁ ସେ ସିଦ୍ଧି ଲାଭ କଲେ ବୋଲି ଜାଣିପାରିଲେ । ସେହି ମାଳାକୁ ବେକରେ ଧାରଣ କରି ଅଭିମନ୍ୟୁ ସ୍ୱଗୃହକୁ ଫେରିଲେ । ଏହା ପରେ ତାଙ୍କ କବିତ୍ୱ ସ୍ଫୁରଣ ହେଲା ।

ଆଉ ଏକ କିମ୍ବଦନ୍ତୀ ଅନୁଯାୟୀ କବି ନଅ ବର୍ଷ ବୟସ ବେଳେ ଜଣେ ବୈଷ୍ଣବଙ୍କୁ ଭେଟିଲେ । କବିତ୍ୱର ବିକାଶପାଇଁ ମନ୍ତ୍ର ପ୍ରଦାନ କରିବାକୁ ସେ ସାଧୁଙ୍କୁ ନିବେଦନ କଲେ । ତାହା ଅତି କଠିନ ବ୍ୟାପାର ଦର୍ଶାଇ ବୈଷ୍ଣବଗୁରୁ ତାହାଙ୍କୁ ଏଥିରୁ କ୍ଷାନ୍ତ ହେବାକୁ ଉପଦେଶ ଦେଲେ । ମାତ୍ର ଅଭିମନ୍ୟୁଙ୍କର ଦୃଢ଼ସଂକଳ୍ପ ଦେଖି ତାଙ୍କୁ ଏକ ରୁଦ୍ଧ ପ୍ରକୋଷ୍ଠରେ ତିନି ଦିନ ତିନି ରାତି ଧରି ମନ୍ତ୍ର ଜପ କରିବାକୁ କହିଲେ । ଅଭିମନ୍ୟୁ ରୁଦ୍ଧ ପ୍ରକୋଷ୍ଠରେ କଠୋର ସାଧନା ଆରମ୍ଭ କଲେ । ଚତୁର୍ଥ ଦିନ ସକାଳେ ପରିବାରବର୍ଗ ପ୍ରକୋଷ୍ଠ ଦ୍ୱାର ଭାଙ୍ଗି ତାଙ୍କୁ ମୂର୍ଚ୍ଛିତ ଅବସ୍ଥାରେ ପଡ଼ିଥିବାର ଦେଖିଲେ । ଚେତା ପାଆନ୍ତେ ରାଧାକୃଷ୍ଣଙ୍କର ଯୁଗଳ ମୂର୍ତ୍ତି ତାଙ୍କୁ ଦୃଶ୍ୟ ହେଲା । ସେ ସିଦ୍ଧିଲାଭ କରିଛନ୍ତି ବୋଲି ଜାଣିପାରିଲେ । ସେ ଯେ ରାଧାକୃଷ୍ଣଙ୍କର ଅନନ୍ୟ ଭକ୍ତ ହୋଇପଡ଼ିଲେ ତାହା ନୁହେଁ, ରାଧାକୃଷ୍ଣଙ୍କ ଲୀଳା ରଚନା କରିବାରେ ଲାଗିପଡ଼ିଲେ ।

## ପ୍ରଥମ ପର୍ଯ୍ୟାୟ

କୈଶୋର ଅବସ୍ଥାରେ ତାଙ୍କର କବି ପ୍ରତିଭାର ପରିଚୟ ମିଳିଥିଲା । ମାତ୍ର ନଅ ବର୍ଷ ବୟସରେ ସେ ଲେଖିଥିଲେ –

''ଧାନ କୁଟିଦିଅ ଘରେ ଗୋ । ମୋର ହୁଁ ଗୋ
କର୍ମଙ୍ଗା ଗଛର ଛାଇ ଗୋ । ମୋର ହୁଁ ଗୋ
କରମ ଯାହାର ସୁଫଳ ହୋଇବ
କୃଷ୍ଣକୁ ଲଭିବ ସେହି ଗୋ ।
ଗଞ୍ଜେଇ ଗଛର ଛାଇ ଗୋ । ମୋର ହୁଁ ଗୋ
ବେଣୁ ବିନୋଦିଆ ଯେଣେ ଯାଉଥାଇ
ତେଣେ ହୁରି ପଡୁଥାଇ ଗୋ ।''

ସେ ପ୍ରାୟ ଏହି ସମୟରେ ବାଘଗୀତ ଓ ଚଢ଼େଇଗୀତ ରଚନା କରିଥିଲେ । କବିଙ୍କର ଜନ୍ମସ୍ଥାନ ବାଲିଆ ଥିଲା । ବାଲିଆ ଓ ତା'ର ନିକଟବର୍ତ୍ତୀ ଅଞ୍ଚଳ ଘନ ଜଙ୍ଗଲ ଥିଲା । ସେଥିରେ ବାଘ ରହି ଉତ୍ପାତ କରୁଥିଲେ । ସମୟେ ସମୟେ ସେଗୁଡ଼ିକ ଗାଁ ଭିତରକୁ ପଶିଆସି ଗାଈ, ଗୋରୁ ଓ ମଣିଷଙ୍କୁ ଧରି ନେଉଥିଲେ । ତାଙ୍କ ଯୋଗେ ଆତଙ୍କ ଖେଳି ଯାଉଥିଲା । ସନ୍ଧ୍ୟା ହେଲେ ଗାଁମାନଙ୍କରେ ତାଟିକବାଟ ପଡ଼ିଯାଉଥିଲା । ଲୋକମାନେ ପଦାକୁ ବାହାରୁ ନ ଥିଲେ । ଥରେ ବାଘ ସେ ଅଞ୍ଚଳରେ ମାତିଲା । ରାତିରେ ବାଘ ଆସିବାର ସେ ଯେଉଁ ଖବର ପାଇଲେ ତାହାକୁ ଅତି ସରଳ ଓ ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି, ଯଥା –

''କେ ବୋଲଇ ବାଘ ଆଜି ରାତିରେ
ବସିଥିଲା ସେ ଚଉରା କତିରେ
ନଗ୍ର ଚାରିପାଖେ ବୁଲି ଯାଇଛି
ଚାଲୁଣି ପ୍ରାୟେକ ପାଦ ପଡ଼ିଛି
ଦେଖିଲୁ ସକାଳେ
ଗରଜିଲା ଗଜା ତିନ୍ତୁଡ଼ି ମୂଳେ ।''

ଗାଈ ବାଛୁରୀ ବାଘ ନେଇ ଯିବା କଥା ଲୋକମାନେ କଥାବାର୍ତ୍ତା ହୋଇଛନ୍ତି । କିଶୋର କବି ତାହାକୁ ରୂପ ଦେଇଛନ୍ତି –

''କେ ବୋଲଇ ବେଳ ପ୍ରହରେ ଥିଲା
ଫୁଲବାଗକୁ ଝପଟି ଆସିଲା
ତହିଁ ଚରୁଥିଲେ ବାଛୁରୀ ଗାଈ
ଗୋଟିଏ ଆକ୍ରୋଶି ଧଇଲା ଯାଇଁ

ମଡ଼ାକୁ କାମୋଡ଼ି
ଘେନି ପଳାଇଲା ଉତ୍ତର ବାଡ଼ି ।''

ଗ୍ରାମରେ ବାଘ ଭୟ ଯୋଗୁଁ ଜମିଦାର ଇନ୍ଦ୍ରଜିତ୍ ସାମନ୍ତସିଂହାର ଶିକାରୀମାନଙ୍କ ସହ ଜଙ୍ଗଲକୁ ବାଘ ମାରିବାକୁ ଯାଇଛନ୍ତି ଓ ବାଘକୁ ମାରିଛନ୍ତି । କବି ତାହା ମଧ୍ୟ ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି, ଯଥା –

''ପରିଜନ ଘନ ଲୋକ ଗହଳ
ରକତ ବହି ଯିବାର ତ ଜଳ
ଭେକ ପରି ରଡ଼ି ଛାଡ଼େ ତଳେ
ବରାହ ଶବଦ ପକ୍ଷୀ ଗହଳେ
ପୃଥ୍ୱୀଟଳମଳ; ଧୂମକେତୁରେ ଲୁଚିଲେ ଅଚଳ ।''

ବାଘଟିର ପ୍ରତି ଆକ୍ରମଣ ମଧ୍ୟ କବିଙ୍କ ବର୍ଣ୍ଣନାରେ ସ୍ଥାନ ପାଇଛି –

''ଆକର୍ଷିବାର ଦେଖି ବ୍ୟାଘ୍ରମଣି
ରୋଷେ ଗରଜଇ ଦେହକୁ ଝୁଣି ।''

ଶେଷରେ ଗୁଳିରେ ବାଘଟି ମୃତ୍ୟୁବରଣ କରିଛି –

''ଦେଖିଲେ ସକଳ
ଗୁଳିରେ ଉଡ଼ି ଯାଇଛି କପାଳ ।''

ବାଘଗୀତ ପରି ଅଭିମନ୍ୟୁଙ୍କ ଚଢ଼େଇଗୀତ ଆଉ ଏକ ସରସ କବିତା ।

ଅଭିମନ୍ୟୁଙ୍କ ସମୟରେ ରାଜା ଜମିଦାର ତଥା ସଂଭ୍ରାନ୍ତ ଶ୍ରେଣୀର ଲୋକମାନଙ୍କର ଚଢ଼େଇ ପାଳିବା ଏକ ସଉକ ଥିଲା । ସେମାନଙ୍କ ମଧ୍ୟରେ ଲଢ଼ାଇର ବ୍ୟବସ୍ଥା କରି ରାଜାମାନେ ଅପାର ଆନନ୍ଦ ଲାଭ କରୁଥିଲେ । ଚଢ଼େଇମାନଙ୍କ ବର୍ଣ୍ଣନା ଅତୀବ ମନୋରମ ହୋଇଛି, ଯଥା –

''ଚକା ଚକା ପକ୍ଷୀ କାଇଆ ଜାତି
ବଳିତା ବେଲଣା କାଠ ଆକୃତି
ମୟୂର କଣ୍ଠିଆ ବଣି ମୁଣ୍ଡିଆ
ବଡ଼ ବଡ଼ ଗୋଡ଼ ତମ୍ବା କାଠିଆ
ପାଇ ଏ ଚଢ଼ାଇ
ଗଡ଼ ହଡ଼ କରି କର ଲଢ଼ାଇ ।''

୧୯୩୧ ମସିହାରେ ସ୍ୱରାଜ ସାହିତ୍ୟ ମନ୍ଦିର ତରଫରୁ କବିଙ୍କ ବାଘଗୀତ ଓ ଚଢ଼େଇ ଗୀତ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକର ମୁଖବନ୍ଧରେ ରାମପ୍ରସାଦ ସିଂହ ଲେଖିଥିଲେ –

'ବିଦଗ୍ଧ ଚିନ୍ତାମଣି'ର ଲେଖକ ଅଭିମନ୍ୟୁ × × × ଯେ ଦିନେ ବିଶ୍ୱ ମଞ୍ଚରେ କବିତ୍ୱର ଗାରିମାମୟ କୀର୍ତ୍ତିସ୍ତମ୍ଭ ପୋତିବେ – ତାହାର ପରିଚୟ ଏହି ଛୋଟ ବହି ଦି'ଖଣ୍ଡରୁ ମିଳେ ।

## ଦ୍ୱିତୀୟ ପର୍ଯ୍ୟାୟ

ବିଂଶ ବର୍ଷରୁ ଊନତ୍ରିଂଶ ବର୍ଷ ପର୍ଯ୍ୟନ୍ତ ସମୟକୁ ଅଭିମନ୍ୟୁଙ୍କ ରଚନାର ଦ୍ୱିତୀୟ ପର୍ଯ୍ୟାୟଭାବେ ଗ୍ରହଣ କରାଯାଇପାରେ । ସେତେବେଳକୁ ସେ ପୂର୍ଣ୍ଣ ଯୌବନ ପ୍ରାପ୍ତ ହୋଇସାରିଥିଲେ । ବିବାହ ମଧ୍ୟ ହୋଇସାରିଥିଲା । ଜମିଦାରୀ ଦାୟିତ୍ୱ ଗ୍ରହଣ କରିଥିବା ହେତୁ କ୍ଷମତା ଓ ପ୍ରାଚୁର୍ଯ୍ୟରେ ଦିନ କଟୁଥିଲା । ସାହିତ୍ୟ ସେବା କରିବାକୁ ଅବସର ସମୟ ବି ମିଳୁଥିଲା ଯଥେଷ୍ଟ । ଏହି ପରିବେଶରେ ତାଙ୍କର ସହଜାତ କବି ପ୍ରତିଭା ବିକଶିତ ହୋଇଉଠିଲା । କ୍ଷୁଦ୍ର କବିତା ପରିବର୍ତ୍ତେ ସେ କାବ୍ୟ ପ୍ରଣୟନ ଦିଗରେ ବ୍ରତୀ ହେଲେ । କବି ମଧ୍ୟ କୋଡ଼ିଏ ବର୍ଷ ବୟସରେ କାବ୍ୟ ରଚନା ଆରମ୍ଭ କଲେ ବୋଲି 'ରସକଳା'ରେ ଉଲ୍ଲେଖ କରିଛନ୍ତି –

''ବିଂଶ ବରଷ ବୟସେ ଏହା ଆରମ୍ଭିଲି
ସୁଜନ ପଦାଶ୍ରିତରେ ଶଙ୍କା ମୁଁ ନ କଲି ।''

ଦ୍ୱିତୀୟ ପର୍ଯ୍ୟାୟରେ କବିଙ୍କ ଅଭିଜ୍ଞତା ଓ ପାଣ୍ଡିତ୍ୟର ପୂର୍ଣ୍ଣ ପ୍ରକାଶ ଘଟିଥିଲା । ଏହି ସମୟରେ ସେ ରଚନା କରିଥିଲେ ପ୍ରଥମ କାବ୍ୟ – 'ରସକଳା' ।

## ରସକଳା

'ରସକଳା' ନାମକରଣରେ ଆଲୋଚକମାନଙ୍କ ମଧ୍ୟରେ ମତଦ୍ୱୈଧ ଦେଖାଯାଏ । ପଣ୍ଡିତ ମୃତ୍ୟୁଞ୍ଜୟ ରଥ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି ପ୍ରଭୃତି ନାୟିକାଙ୍କ ନାମ ଅନୁସାରେ କାବ୍ୟର ନାମ ପ୍ରେମକଳା ଦେଇଥିଲାବେଳେ ପ୍ୟାରୀମୋହନ ବଳ ସଂଗୃହୀତ ପୋଥିରେ କାବ୍ୟର ନାମ 'ରସକଳା' ରଖିଛନ୍ତି ।

କାବ୍ୟଟି ରାଧାକୃଷ୍ଣଙ୍କ ପ୍ରେମଲୀଳା ନେଇ ରଚିତ । ବୃଷଭାନୁ ସୁତା ରାଧା ଶ୍ରୀକୃଷ୍ଣଙ୍କ ପ୍ରେମର କଳନାପାଇଁ ଜଣେ ରୂପବତୀ କନ୍ୟାକୁ ଜାତ କଲେ । ତାଙ୍କ ନାମ ଦେଲେ ମନୋଭାବା । ରାଧା ମନୋଭାବାକୁ ଶ୍ରୀକୃଷ୍ଣଙ୍କ ପାଖକୁ ପଠାଇଛନ୍ତି । ଶ୍ରୀକୃଷ୍ଣ ମନୋଭାବାଙ୍କ ରୂପରେ ମୁଗ୍ଧ ହୋଇପଡ଼ିଛନ୍ତି ଓ ଶେଷରେ ପ୍ରଣୟ ଭିକ୍ଷା କରିଛନ୍ତି । ରାଧା ମନୋଭାବାଙ୍କୁ ସପତ୍ନୀ ମନେ କରିଛନ୍ତି ଓ ଜନ୍ମେ ଜନ୍ମେ ପତିପ୍ରେମରୁ ବଞ୍ଚିତ ହେବେ ବୋଲି ଅଭିଶାପ ଦେଇଛନ୍ତି । ବହୁ ଅନୁନୟ ବିନୟ ପରେ ମନୋଭାବା ଶାପରୁ ମୁକ୍ତ ହୋଇଛନ୍ତି । ଏହି ମନୋଭାବା ମର୍ତ୍ତ୍ୟରେ

ପ୍ରେମକଳା ରୂପେ ଜନ୍ମ ହୋଇଛନ୍ତି । ସେ ଏକ ସୁଦର୍ଶନ ରାଜପୁତ୍ରଙ୍କୁ ବିବାହ କରିଛନ୍ତି । ଦାମ୍ପତ୍ୟ ଜୀବନର ବିରହ ମିଳନାଦିର ମଧୁମୟ ବିଳାସ ମଧ୍ୟଦେଇ ପାରମ୍ପରିକ ରୀତିରେ କାବ୍ୟର ପରିସମାପ୍ତି ଘଟିଛି ।

ଏହି କାବ୍ୟ ରଚନାରେ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ପ୍ରଭାବ ସୁସ୍ପଷ୍ଟ । 'ଲାବଣ୍ୟବତୀ' ପାଠ କଲା ପରେ ଏହା ପରିକଳ୍ପିତ ବୋଲି କେହି କେହି ଆଲୋଚକ ମତ ଦିଅନ୍ତି । ସେ କାବ୍ୟରେ ଶିବ ନ ଥିବାରୁ ପାର୍ବତୀ କୈଳାସରେ ଏକାକିନୀ ହେବାରୁ ପଶା ଖେଳିବାପାଇଁ ମନରୁ ଏକ କନ୍ୟା ଜାତ କଲେ । ତାହାର ନାମ ଦେଲେ ବାଞ୍ଛାବତୀ । ସେହିପରି ପ୍ରେମର ପରୀକ୍ଷାପାଇଁ ଅଭିମନ୍ୟୁ ସୃଷ୍ଟି କରିଛନ୍ତି ମନୋଭାବା । ଶିବ ଓ ପାର୍ବତୀଙ୍କ ପରିବର୍ତ୍ତେ ଶ୍ରୀରାଧା ଓ କୃଷ୍ଣଙ୍କୁ ନିଆଯାଇଛି । ଉପେନ୍ଦ୍ର ଭଞ୍ଜ ଥିଲେ ଅଭିମନ୍ୟୁଙ୍କ କବିଗୁରୁ । ତେଣୁ କବିଗୁରୁଙ୍କ ପ୍ରଭାବ ଅଭିମନ୍ୟୁଙ୍କ ଉପରେ ପଡ଼ିବା ସ୍ୱାଭାବିକ । ପ୍ରଭାବିତ ହୋଇ ମଧ୍ୟ ସେ କବିତ୍ୱର ଯେଉଁ ପରାକାଷ୍ଠା ଦେଖାଇଛନ୍ତି, ତାହା ବାସ୍ତବିକ ବିସ୍ମୟକର । ଏହାକୁ ପଢ଼ିଲେ କାବ୍ୟଟି ସ୍ୱଚ୍ଛ ଝରଣା ପରି କୁଳୁ କୁଳୁ ତାନରେ ବହି ଗଲା ପରି ଲାଗେ ।

## ରସବତୀ

ଏହା ଅଭିମନ୍ୟୁଙ୍କ ଅନ୍ୟତମ ରୀତିଯୁଗୀୟ କାବ୍ୟ । ୨୪ବର୍ଷ ବୟସରେ ୧୭୮୯ ମସିହାରେ ସେ ଏହାକୁ ରଚନା କରିଥିବା ଯୁକ୍ତିସଙ୍ଗତ ବୋଲି ମନେ ହୁଏ । ଅଙ୍ଗ ରାଜକନ୍ୟା ରସବତୀ ଓ ମାଳବ ରାଜକୁମାର ସୁଧାକରଙ୍କ ମଧ୍ୟରେ ସ୍ୱୟଂବର ପରେ ବିବାହ ହୋଇଛି । ବିବାହ ପରେ ଉଭୟେ ପ୍ରଣୟ ପାଶରେ ଆବଦ୍ଧ ହୋଇଛନ୍ତି । ବିଚ୍ଛେଦ ସୃଷ୍ଟିପାଇଁ କବି ପୌରାଣିକ ଚରିତ୍ର ଚିତ୍ରସେନର ସାହାଯ୍ୟ ନେଇଛନ୍ତି । ଚିତ୍ରସେନ ନବଦମ୍ପତିଙ୍କର ସୁଖମୟ ଜୀବନକୁ ଈର୍ଷା କରିଛନ୍ତି । ରସବତୀ ଅଭିମାନ କରିଛନ୍ତି । ମାତ୍ର ହଂସ ପିଠିରେ ସୁଧାକର ରସବତୀ ପାଖରେ ପହଞ୍ଚିଛନ୍ତି । ମାନଭଞ୍ଜନ ପରେ ଉଭୟଙ୍କର ହୋଇଛି ମିଳନ ।

କାବ୍ୟଧାରା ସମ୍ପୂର୍ଣ୍ଣ ରୀତିଯୁଗୀୟ ହୋଇଛି । ସମୟ, ଶୃଙ୍ଖଳା, ନିୟମ, ରାଗ ପ୍ରଭୃତିରେ କାବ୍ୟଟି ରଚିତ ହୋଇଥିବା କବି ନିଜେ ସ୍ୱୀକାର କରିଛନ୍ତି, ଯଥା –

"ଛାନ୍ଦ ପ୍ରବନ୍ଧ ଉପନ୍ୟାସ ରାଗ ସଙ୍ଗୀତେ ପ୍ରୀତିରସ
କାବ୍ୟାନୁବୃତ୍ତି ନୀତି ଯେତେ କବି କବିତ୍ୱ ବିଧିମତେ
ବର୍ଣ୍ଣିଲି ଦ୍ୱାତ୍ରିଂଶ ଛାନ୍ଦରେ ଆଠଶ ଏକାନ ପଦରେ
ଗୁନ୍ଥିଛି ମୁଁ ସୁମନମାଳା ରସିକେ ଲମ୍ବାଇବେ ଗଳା ।"

ଏହି କାବ୍ୟରେ କବି ସ୍ୱକୀୟା ପ୍ରୀତିର ଅମୃତ ରସ ପରିବେଷଣ କରିଛନ୍ତି । ବିବାହ ସମ୍ପର୍କୀୟ ବିଧିବିଧାନ, ଯଥା – ମଙ୍ଗଳ, କୋଇଲିବୁଢ଼ ପ୍ରଭୃତିର ଚିତ୍ର ଦେଇଛନ୍ତି । ବିରହ ବେଦନା ବର୍ଣ୍ଣନା ମଧ୍ୟ ଅତି ହୃଦୟସ୍ପର୍ଶୀ ହୋଇଛି –

''ତୋ ପରାଧୀନ ତୋ ବିନା ଆନ କେ ଜାଣେ ନବୀନା ।
ନ ପାଇଲି ତୋତେ ମୂର୍ଚ୍ଛି ଏଣୁ ଚିତ୍ର ଲେଖାଇଛି ।
ତୋ ସମାନେ ମନୋରମା ଗଢ଼ାଇ ଅଛି ପ୍ରତିମା
ତୋ ବିନା ତାହାକୁ ଧନ ଚାହିଁ ହରୁଥାଇ ଦିନ ।''

ଋତୁ ବର୍ଣ୍ଣନାର ପାଟବତା କାବ୍ୟର ଆଉ ଏକ ବୈଶିଷ୍ଟ୍ୟ ।

କବିଙ୍କ ଆଉ ଏକ କାବ୍ୟ 'ପ୍ରେମକଳ୍ପଲତା'ର ନାମ ମିଳେ । ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ ଏହାକୁ ପୌରାଣିକ କାବ୍ୟ ଭାବରେ ସ୍ଥାନ ଦେଇଛନ୍ତି । ମାତ୍ର ପାଣ୍ଡୁଲିପିର ସନ୍ଧାନ ଏପର୍ଯ୍ୟନ୍ତ ମିଳି ନାହିଁ ।

**ସୁଲକ୍ଷଣା**

ଅଭିମନ୍ୟୁ ୨୭ ବର୍ଷ ବୟସରେ ଏହି କାବ୍ୟଟି ରଚନା କରିଥିଲେ । ଏହା ବ୍ରଜସୁନ୍ଦର ଦାସଙ୍କଦ୍ୱାରା ପ୍ରକାଶିତ ହୋଇଥିଲା । ସେ ଏହାର ମୁଖବନ୍ଧରେ ଲେଖିଛନ୍ତି –

'ବୈଦେହୀଶ ବିଳାସ' ଯେପରି 'ବ' ଆଦ୍ୟ ନିୟମରେ ଲିଖିତ × × × 'ସୁଲକ୍ଷଣା' ସେହିପରି 'ସ' ଆଦ୍ୟରେ ରଚିତ । ସମସ୍ତ ଅଳଙ୍କାର ଥାଇ 'ସ' ଆଦ୍ୟ ନିୟମରେ ଏହାକୁ ରଚନା କରିଥିବା କଥା କବି ମଧ୍ୟ ଲେଖିଛନ୍ତି, ଯଥା –

''ସୁଲକ୍ଷଣା ନାମରେ ଏ କବିତ୍ୱ ହୋଇବ
ସରସ ଲକ୍ଷଣାଳଙ୍କାରରେ ବିରାଜିତ ହେବ ।
ସମସ୍ତ ରମ୍ୟରେ ରାମା ପ୍ରାୟ ସୁଖ ହେବ
'ସ' ଆଦ୍ୟ ନିୟମ ଅବିଘ୍ନରେ ସିଦ୍ଧହେବ ହେ ।''

କବି କେବଳ 'ସ' ଅକ୍ଷର ନିୟମରେ କାବ୍ୟ ଆରମ୍ଭ କରି ନାହାନ୍ତି, ଛାନ୍ଦ ସଂଖ୍ୟା ପଦ ନିୟମରେ ମଧ୍ୟ 'ସ' କ୍ରମ ରକ୍ଷା କରିଛନ୍ତି । ଯେପରି –

''ଶେଷ ସୁଲକ୍ଷଣା ଗୀତ । ସାମନ୍ତ ସିଂହାର କୃତ ।
ଷୋଳଛାନ୍ଦରେ ସମ୍ପୂର୍ଣ୍ଣ । ଷୋଳ ପଦ ଛାନ୍ଦ ଘେନ ।
ଷୋଳେ ଷୋଳେ କରି ଘେନ । ଶେଷ ଯେତ ପଦେ ଚିହ୍ନ ।
ଷୋଳ ନିୟମେ ପ୍ରଧାନ । ଷୋଳ ରାଗରେ ଗାୟନ ।''

'ସାରଳା ମହାଭାରତ'ର ଏକ କଥା ହେଉଛି କାବ୍ୟର ବିଷୟବସ୍ତୁ । ହସ୍ତିନାର ରାଜା ଦୁର୍ଯ୍ୟୋଧନଙ୍କର କନ୍ୟାଙ୍କ ନାମ ସୁଲକ୍ଷଣା । ସେ ସର୍ବଲକ୍ଷଣଯୁକ୍ତା ଓ ଅପରୂପା ସୁନ୍ଦରୀ ଥିଲେ । ସେଭଳି କନ୍ୟାଙ୍କର ଉପଯୁକ୍ତ ବରପାତ୍ର ନ ମିଳିବାରୁ ରାଜା ମାନୀ ଦୁର୍ଯ୍ୟୋଧନ ଏକ ସ୍ୱୟଂବର ସଭାର ଆୟୋଜନ କଲେ । ନାରଦ ଏଥି ମଧ୍ୟରେ ଦୁର୍ଯ୍ୟୋଧନଙ୍କ ରାଜସଭାରେ ପହଞ୍ଚି ସୁଲକ୍ଷଣାଙ୍କୁ କୃଷ୍ଣଙ୍କ ପୁତ୍ର ଶାମ୍ବଙ୍କ ହସ୍ତେଦେବାକୁ ପ୍ରସ୍ତାବ ଦେଲେ । ମାତ୍ର କୃଷ୍ଣଙ୍କ ସହିତ ସମ୍ପର୍କ ଭଲ ନ ଥିବାରୁ ଦୁର୍ଯ୍ୟୋଧନ ଏ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ନାରଦ ଅନ୍ତଃପୁରକୁ ଯାଇ ସୁଲକ୍ଷଣାଙ୍କ ନିକଟରେ ପହଞ୍ଚିଲେ । ସୁଲକ୍ଷଣାଙ୍କ ଭକ୍ତିଭରା ପ୍ରଣିପାତରେ ସେ ମୁଗ୍ଧ ହୋଇ 'କୃଷ୍ଣବଧୂ ହୁଅ' ବୋଲି ଆଶୀର୍ବାଦ କଲେ । ସୁଲକ୍ଷଣା ମଧ୍ୟ ମନେ ମନେ ଶାମ୍ବଙ୍କୁ ପତିରୂପେ ବରଣ କରିସାରିଥିଲେ । ନାରଦ ମାୟା ବିସ୍ତାର କରନ୍ତେ, ଶାମ୍ବ ସେଠାରେ ଉପସ୍ଥିତ ହେଲେ । ନାୟକ ନାୟିକାଙ୍କର ହେଲା ମିଳନ । ଏ ଖବର ରାଜଦରବାରରେ ପହଞ୍ଚନ୍ତେ, ଦୁର୍ଯ୍ୟୋଧନ କ୍ରୋଧାନ୍ୱିତ ହୋଇପଡ଼ିଲେ । ଶାମ୍ବଙ୍କୁ ବଧ କରିବାପାଇଁ ଆଦେଶ ଦେଲେ । ପାଣ୍ଡବମାନେ କୃଷ୍ଣପୁତ୍ରଙ୍କ ପକ୍ଷ ଗ୍ରହଣ କରିବା ସ୍ୱାଭାବିକ । ଦ୍ୱାରିକାରେ ଏ ଖବର ମିଳିଲା । ବଳରାମ କ୍ରୋଧରେ ହଳ ଉତ୍ତୋଳନ କଲେ । ସମଗ୍ର ମେଦିନୀ ଥରହର ହେଲା । ଶେଷରେ ଶାମ୍ବ ଓ ସୁଲକ୍ଷଣାଙ୍କ ବିବାହ ମହାଆଡ଼ମ୍ବରରେ ହେଲା ।

'ସୁଲକ୍ଷଣା'ରେ ଭଞ୍ଜୀୟ କାବ୍ୟାଦର୍ଶ ପ୍ରତିଫଳିତ ହୋଇଅଛି । ପ୍ରାନ୍ତଯମକ, ଆଦ୍ୟଯମକ, ମଧ୍ୟାନୁପ୍ରାସ, ଶୃଙ୍ଖଳା, ଅବନା, ଦୃଷ୍ଟାନ୍ତ, ଉପମା, ରୂପକ ଶ୍ଳେଷ ଆଦି ଅଳଙ୍କାରରେ ଏହା ଅଳଙ୍କୃତ ହୋଇଛି । ପ୍ରକାଶକ ବ୍ରଜସୁନ୍ଦର ଦାସ କହନ୍ତି ଯେ 'ସୁଲକ୍ଷଣା' ବାସ୍ତବିକ ସୁଲକ୍ଷଣା କି ନା – ତାହା ପାଠକମାନେ ଅବଶ୍ୟ ବିଚାର କରିବେ । କିନ୍ତୁ ପୁସ୍ତିକା ଖଣ୍ଡି ସୁଅଳଙ୍କୃତା । ପ୍ରାଚୀନ ଉତ୍କଳ ସାହିତ୍ୟରେ ଭାବର ମାଧୁର୍ଯ୍ୟ ଥାଉ ବା ନ ଥାଉ ଅଳଙ୍କାର କାରୁକାର୍ଯ୍ୟରେ କେବଳ ସଂସ୍କୃତ ଛଡ଼ା ଅନ୍ୟ କୌଣସି ଗ୍ରନ୍ଥ ତାହା ସହିତ ପ୍ରତିଯୋଗିତା କରିପାରନ୍ତି ନାହିଁ । ଅଧ୍ୟାପକ ରାଉତଙ୍କ ମତରେ 'ସୁଲକ୍ଷଣା' କବିଙ୍କ ପ୍ରାଥମିକ କାବ୍ୟ ରୂପେ ଗ୍ରହଣ କରାଯାଇପାରେ । ଏହା କବିଙ୍କ ଉଚ୍ଚ କବିପଦର ପ୍ରାକ୍ ସୂଚନା ଦିଏ । ସୂର୍ଯ୍ୟ ଉଦୟ ହେବା ପୂର୍ବରୁ ଅରୁଣ ସମସ୍ତ ଆକାଶ ଓ ପୃଥିବୀକୁ ରାଗରଞ୍ଜିତ କରିଦିଏ । 'ସୁଲକ୍ଷଣା' ସେହିପରି କବିଙ୍କ ଆଦ୍ୟ ପ୍ରତିଶ୍ରୁତି – ଏକ ଅରୁଣିତ ସ୍ୱାକ୍ଷର ।

କବିଙ୍କ ନିଜ ଭାଷାରେ –

"ସୁମନ ମାଳା ମୁଁ ବନାଉଛି କୁତୂହଳେ
ସୁରସିକମାନେ ରଶି ଲମ୍ୱାଇବେ ଗଳେ ହେ ।"

'ସୁଲକ୍ଷଣା' କାବ୍ୟ ପ୍ରଣୟନ ପରେ ଅଭିମନ୍ୟୁଙ୍କ ଜୀବନରେ ଏକ ବିରାଟ ଦିଗମୋଡ଼ ଘଟିଥିବା ଜଣାଯାଏ । ଏହି ପର୍ଯ୍ୟାୟରେ ତାଙ୍କର ଦୀକ୍ଷାଗୁରୁ ଶ୍ରୀମଦ୍ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମାଙ୍କର ଅବଦାନ ଅତି ଗୁରୁତ୍ୱପୂର୍ଣ୍ଣ । ସଦାନନ୍ଦ ଜଣେ ଗୌଡ଼ୀୟ ବୈଷ୍ଣବ ଥିଲେ । ସେ ଅଭିମନ୍ୟୁଙ୍କ ଶିକ୍ଷା ଗୁରୁ ଓ ପ୍ରେରଣାଦାତା ଥିଲେ । ଯେତେଦୂର ସମ୍ଭବ, ସାରସ୍ୱତ ଜୀବନର ପ୍ରଥମ ପର୍ଯ୍ୟାୟରେ ତାଙ୍କର ପ୍ରଭାବ ବିଶେଷ ଭାବରେ ଅନୁଭୂତ ହୋଇ ନ ଥିଲା । କିନ୍ତୁ ଦ୍ୱିତୀୟ ପର୍ଯ୍ୟାୟରେ ତାଙ୍କର ପ୍ରଭାବ କବିଙ୍କ ଉପରେ ପଡ଼ିଥିବା ଲକ୍ଷ୍ୟ କରାଯାଏ । ପ୍ରମୋଦ କାବ୍ୟ 'ପ୍ରେମକଳା'ରେ ସେ ତାହା ସ୍ୱୀକାର କରିଛନ୍ତି, ଯଥା –

"ଶ୍ରୀମଦ୍ ଶ୍ରୀ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା
କୃପାକଲେ ପ୍ରାପତ କବିତ୍ୱ ମାର୍ଗ ସୀମା ।"

ଦ୍ୱିତୀୟ ପର୍ଯ୍ୟାୟରେ କବି ଭଞ୍ଜୀୟ ରୀତି କାବ୍ୟାଦର୍ଶରେ ଶୃଙ୍ଗାରରସ ରଚନାରେ ବ୍ରତୀ ହେଲେ । ଏହି ସମୟରେ ସେ ଭଞ୍ଜଙ୍କ ପରି ସଂଯମତା ହରାଇବାରେ ସେପରି ବିଚିତ୍ରତା ନ ଥିଲା । ମାତ୍ର ବୈଷ୍ଣବ ଗୁରୁ ସଦାନନ୍ଦଙ୍କ ପ୍ରଭାବରୁ ସେ ସେଥିରୁ ନିଜକୁ ମୁକ୍ତ ରଖି ପାରିଛନ୍ତି ।

ଊନତ୍ରିଂଶ ବର୍ଷ ବେଳକୁ ଆରମ୍ଭ ହୋଇଛି କବିଙ୍କ ସାରସ୍ୱତ ଜୀବନର ତୃତୀୟ ଓ ଶେଷ ଅଧ୍ୟାୟ । ଏହି ପର୍ଯ୍ୟାୟରେ ସେ ସଦାନନ୍ଦଙ୍କ କୃପାରୁ ରାଗ ମାର୍ଗ ପ୍ରାପ୍ତ ହୋଇଛନ୍ତି । ସୁତରାଂ 'ପ୍ରେମଚିନ୍ତାମଣି' ରଚନାର ଅବ୍ୟବହିତ ପୂର୍ବରୁ ସେ ରାଗ ମାର୍ଗରେ ଦୀକ୍ଷିତ ହୋଇଥିବାର ଅନୁମାନ କରାଯାଏ ।

କବି ଏହି ରାଗମାର୍ଗକୁ ପ୍ରାଧାନ୍ୟ ଦେଇଛନ୍ତି । ଏହି ଭକ୍ତିଧନକୁ ଜୀବନସର୍ବସ୍ୱ ବୋଲି ମନେ କରିଛନ୍ତି, ଯଥା –

"ଦାରା ଧନ ସୁତ ମହୀ, ମୋ ସର୍ବ ବିଭବ ଏହି ।"

ସେ ରାଗ ମାର୍ଗର ଶ୍ରେଷ୍ଠ ଗ୍ରନ୍ଥ 'ପ୍ରେମ ଚିନ୍ତାମଣି' ପ୍ରତି ଦୃଷ୍ଟିଦେବାକୁ ଆହ୍ୱାନ କରିଛନ୍ତି ।

## ପ୍ରେମ ଚିନ୍ତାମଣି

କୃଷ୍ଣଦାସ କବିରାଜ ଗୋସ୍ୱାମୀ 'ଗୋବିନ୍ଦ ଲୀଳାମୃତ' ନାମକ କାବ୍ୟ ସଂସ୍କୃତରେ ରଚନା କରିଥିଲେ । ଏହା ବୈଷ୍ଣବମାନଙ୍କଦ୍ୱାରା ବିଶେଷ ଆଦୃତ

ହୋଇଥିଲା । ଏହାକୁ ବଙ୍ଗଳାର ଯଦୁନନ୍ଦନ ଦାସ ବଙ୍ଗଳାରେ ଅନୁବାଦ କରିଥିଲେ ଓ ତାହା ବିଶେଷ ଲୋକପ୍ରିୟ ହୋଇଥିଲା । ଅଭିମନ୍ୟୁ ଏହାକୁ ପାଠକରି ମୁଗ୍ଧ ହୋଇ 'ପ୍ରେମ ଚିନ୍ତାମଣି' କାବ୍ୟ ରଚନା କଲେ ।

କାବ୍ୟର ନାମକରଣରେ ଦୀକ୍ଷାଗୁରୁ ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ସାହାଯ୍ୟ କରିଥିବାର ଜଣାଯାଏ । ସଦାନନ୍ଦ ନିଜେ 'ପ୍ରେମ ଚିନ୍ତାମଣି' ନାମକ ଏକ ଚଉତିଶା ରଚନା କରିଥିଲେ । ଅଭିମନ୍ୟୁ ସେହି ଅନୁସାରେ କାବ୍ୟର ନାମକରଣ କଲେ । 'ପ୍ରେମଚିନ୍ତାମଣି' ରଚନା କାଳ ନେଇ ମତଦ୍ୱୈଧ ଦେଖାଯାଏ । ଅଭିମନ୍ୟୁ ଊନବିଂଶ ବର୍ଷ ବୟସରେ ଏହାକୁ ରଚନା କରିଥିଲେ ବୋଲି ଅଧ୍ୟାପକ ଡଃ ଆଶୁତୋଷ ପଟ୍ଟନାୟକ ଏହି କାବ୍ୟର ମୁଖବନ୍ଧରେ ଉଲ୍ଲେଖ କରିଛନ୍ତି । 'ପ୍ରେମକଳା' ବା 'ରସକଳା', 'ରସବତୀ' ଓ 'ସୁଲକ୍ଷଣା' ଯଥାକ୍ରମେ ୩୦, ୩୨ ଓ ୩୬ ବର୍ଷ ବୟସର ରଚନା ଭାବରେ ସନ୍ଥୀକରଣ କରିଛନ୍ତି । ମାତ୍ର ଏଥିରେ ଅସଙ୍ଗତି ଥିବା କେତେକ ଆଲୋଚକ ମତ ଦେଇଛନ୍ତି । ଅଭିମନ୍ୟୁ ଜଣେ ରାଗମାର୍ଗୀ କବି ଓ ପଣ୍ଡିତ ଥିଲେ । ସେ ରାଧାକୃଷ୍ଣଙ୍କ ଲୀଳାର ପ୍ରାଣସ୍ପର୍ଶୀ ସାରସ୍ୱତ ରୂପାୟନ କଲାପରେ ପାର୍ଥିବ ନାୟକ-ନାୟିକାମାନଙ୍କର ପ୍ରଣୟ ବର୍ଣ୍ଣନା କରିବା ବିଶ୍ୱାସଯୋଗ୍ୟ ନୁହେଁ ବୋଲି ସେମାନେ କହିଛନ୍ତି । ସୁତରାଂ 'ରସକଳା' ବା 'ପ୍ରେମକଳା', 'ରସବତୀ' ଓ 'ସୁଲକ୍ଷଣା' କବିଙ୍କ ଆଦ୍ୟ ରଚନା ବୋଲି ଗ୍ରହଣ କରିଛନ୍ତି । ଏହା ପରେ ଊନତ୍ରିଂଶ ବର୍ଷ ବୟସରେ ୧୭୮୬ ମସିହାରେ କବି 'ପ୍ରେମ ଚିନ୍ତାମଣି' ରଚନା କରିଥିବା ଅନୁମାନ କରାଯାଏ ।

ଅଠଷଠି ଛାନ୍ଦ ବିଶିଷ୍ଟ ଏହି କାବ୍ୟରେ ରାଧାକୃଷ୍ଣଙ୍କ ପ୍ରେମ ଲୀଳା ବର୍ଣ୍ଣିତ ଅଛି । ଚୈତନ୍ୟ ଓ ଭକ୍ତବୃନ୍ଦଙ୍କ ବର୍ଣ୍ଣନା, କୃଷ୍ଣଙ୍କ ନିଦ୍ରାଭଙ୍ଗ, ଦନ୍ତ ମାର୍ଜନ, ସଖାମାନଙ୍କର ଶ୍ରୀକୃଷ୍ଣଙ୍କୁ ପରିହାସ, ପାକ ସମ୍ପାଦନ, କୃଷ୍ଣଙ୍କ ଭୋଜନ, ରାଧାଙ୍କ ପାଖକୁ ଚିଟାଉ ପ୍ରେରଣ, ରାଧାଙ୍କ ଚିଟାଉ-ପଠନ, ବୃନ୍ଦାବନ କୁଞ୍ଜ ବର୍ଣ୍ଣନା, ବଂଶୀ ହରଣ ପ୍ରଭୃତି ଏହାର ବିଷୟବସ୍ତୁ ।

'ପ୍ରେମ ଚିନ୍ତାମଣି' ଏକ ବୈଷ୍ଣବ କାବ୍ୟ ହୋଇଥିଲେହେଁ ପାଣ୍ଡିତ୍ୟ ଓ ଆଳଙ୍କାରିକ ଶୈଳୀରେ ଋଦ୍ଧିମନ୍ତ । ରୀତି କାବ୍ୟାଦର୍ଶ ଅନୁଯାୟୀ ଏଥିରେ ବିଭିନ୍ନ ନିୟମ, ଶୃଙ୍ଖଳା, ଚିତ୍ରବନ୍ଧ, ଯମକ, ରୂପକ, ଉପମାଦି ଅଳଙ୍କାରର ପ୍ରୟୋଗ ଦେଖିବାକୁ ମିଳେ । ଏହି କାବ୍ୟ କବିଙ୍କ ଅସାଧାରଣ ପାଣ୍ଡିତ୍ୟର ପରିଚୟ ଦିଏ । 'ପ୍ରେମ ଚିନ୍ତାମଣି' 'ବିଦଗ୍ଧ ଚିନ୍ତାମଣି' କାବ୍ୟର ଅନୁରୂପ । ଉଭୟ କାବ୍ୟର ରଚନାରେ ଶୈଳୀର ସାମ୍ୟତା ଦେଖାଯାଏ ।

'ବିଦଗ୍ଧ ଚିନ୍ତାମଣି' କାବ୍ୟର ପ୍ରଥମ ଛାନ୍ଦଟି ଯେପରି କାବ୍ୟ ମନ୍ଦିରର ମୁଖଶାଳା, ପ୍ରେମ ଚିନ୍ତାମଣି କାବ୍ୟଗ୍ରନ୍ଥର ପ୍ରଥମ ଛାନ୍ଦରେ ସେହିପରି କବି ଗ୍ରନ୍ଥରେ ଯାହା ଯାହା ବର୍ଣ୍ଣନା କରିଛନ୍ତି ତାହାର ସାମଗ୍ରିକ ସୂଚନା ଦେଇଛନ୍ତି ।

ଉଭୟ କାବ୍ୟରେ ମଙ୍ଗଳାଚରଣ ଏକ ଭଳି ହୋଇଛି । 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ କବି କହିଛନ୍ତି –

''ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କର ଅବତରି ହେ ।''

'ପ୍ରେମ ଚିନ୍ତାମଣି'ରେ ଅଛି –

''ଜୟ ଜୟ ରାଧାକୃଷ୍ଣ ପ୍ରେମ ନିଧାନ
ନିତ୍ୟ ତତ୍ତ୍ୱ ବ୍ୟକ୍ତାବ୍ୟକ୍ତ ସନାତନ ।''

ଆଲୋଚକ ବୈଷ୍ଣବ ସାମଲଙ୍କ ମତରେ ପ୍ରେମଭକ୍ତି ରସଧାରାରେ 'ପ୍ରେମ ଚିନ୍ତାମଣି' ବ୍ୟାପ୍ତି ହୋଇଥିଲାବେଳେ ବିଦଗ୍ଧ ଚିନ୍ତାମଣି ହେଉଛି ଦୀପ୍ତି । ପ୍ରଥମ କାବ୍ୟଟି ପରୀକ୍ଷା ବୋଲି ଧରାଗଲେ ଦ୍ୱିତୀୟଟି ହେବ ପ୍ରସିଦ୍ଧି । 'ପ୍ରେମ ଚିନ୍ତାମଣି' କାବ୍ୟରେ ପ୍ରତିଭାର ଯେଉଁ ବିକାଶ ଘଟିଛି, ତା'ର ପୂର୍ଣ୍ଣତା ଆସିଛି ପରବର୍ତ୍ତୀ ସୃଷ୍ଟି 'ବିଦଗ୍ଧ ଚିନ୍ତାମଣି'ରେ । ବିଦଗ୍ଧ ଚିନ୍ତାମଣି ହେଉଛି ଯଥାର୍ଥରେ କବି ପ୍ରତିଭାର ବିଜୟ ବୈଜୟନ୍ତୀ ।

## ବିଦଗ୍ଧ ଚିନ୍ତାମଣି

ମାତ୍ର ୧୯ବର୍ଷ ବୟସରେ କବି ସାମନ୍ତସିଂହାର ଏହି କାବ୍ୟ ରଚନା ଆରମ୍ଭ କରିଥିଲେ ବୋଲି କେତେକ ଆଲୋଚକ ମତ ଦେଉଥିଲାବେଳେ, ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଓ ଆଉ କେତେକ ବିଶିଷ୍ଟ ଗବେଷକ ଏହାକୁ ସିଦ୍ଧହସ୍ତର କୃତି ବୋଲି ମତ ଦେଇଛନ୍ତି । ପଣ୍ଡିତ ମୃତ୍ୟୁଞ୍ଜୟ ରଥଙ୍କ ମତରେ କବି ଜୀବନର ଶେଷ ତିରିଶ ବର୍ଷ ଏହି କାବ୍ୟ ରଚନାରେ ନିଜକୁ ନିୟୋଜିତ କରିଥିଲେ । ତଥାପି ୯୦ ଛାନ୍ଦ ବିଶିଷ୍ଟ କାବ୍ୟଟି ସମ୍ପୂର୍ଣ୍ଣ ହୋଇପାରି ନାହିଁ । ସେ ଯାହାହେଉ, ଏହା ଯେ କବିଙ୍କ ପରିଣତ ବୟସର ରଚନା – ଏଥିରେ ସନ୍ଦେହ ନାହିଁ ।

'ବିଦଗ୍ଧ ଚିନ୍ତାମଣି' କାବ୍ୟ ରଚନା ବିଷୟରେ ଏକ କିମ୍ବଦନ୍ତୀ ଅଛି । ଅଭିମନ୍ୟୁଙ୍କ ପତ୍ନୀ ଥିଲେ ବିମଳାଦେବୀ । ସେ ପରମପତିବ୍ରତା ଥିଲେ । ପତିଙ୍କ ସେବା ବ୍ୟତୀତ ଆଉ କିଛି ଜାଣୁ ନ ଥିଲେ । ସ୍ୱାମୀ ଭୋଜନ ନ କରିବା ପର୍ଯ୍ୟନ୍ତ ଜଳ ସୁଦ୍ଧା ସ୍ପର୍ଶ କରୁ ନ ଥିଲେ । ପତ୍ନୀଙ୍କ ଏପରି ନିଷ୍ଠା ଦେଖି ଅଭିମନ୍ୟୁ ବିସ୍ମିତ ହୋଇ ପଡ଼ିବା ସ୍ୱାଭାବିକ । ତାଙ୍କ ମୃତ୍ୟୁ ପରେ ତାଙ୍କର ଅବସ୍ଥା କ'ଣ ହେବ

ବୋଲି ସେ ଦିନେ କୌତୂହଳରେ ବିମଳାଦେବୀଙ୍କୁ ପଚାରିଲେ । ସ୍ୱାମୀଙ୍କ ମୃତ୍ୟୁ ପରେ ତାଙ୍କର ବଞ୍ଚି ରହିବା ସମ୍ଭବ ନୁହେଁ ବୋଲି ବିମଳାଦେବୀ ତତ୍‌କ୍ଷଣାତ୍ ଉତ୍ତର ଦେଲେ । ଅଭିମନ୍ୟୁ ଏହାର ସତ୍ୟାସତ୍ୟ ପରୀକ୍ଷା କରିବାପାଇଁ ସ୍ଥିର କଲେ । ଦିନେ ଗୃହର ବାରିକକୁ ଡାକି ବନସ୍ତରେ ତାଙ୍କୁ ବାଘ ଖାଇଥିବା ଭଳି ଏକ ମିଥ୍ୟା ଖବର ଗୃହରେ ଦେବାକୁ କହିଲେ । ବାରିକଟି ପ୍ରଥମେ ସମ୍ମତ ନ ହେଲେ ମଧ୍ୟ ଶେଷରେ ଏହି ମିଥ୍ୟା ଖବର ଗୃହରେ ଦେଲା । ଏହି ଖବର ପାଇ ପତ୍ନୀ ବିମଳାଦେବୀଙ୍କ ପ୍ରାଣବାୟୁ ସଙ୍ଗେ ସଙ୍ଗେ ଉଡ଼ିଗଲା । ଅଭିମନ୍ୟୁ ଅନୁତାପାନଳରେ ଦଗ୍ଧ ହେଲେ । ପୁତ୍ରଙ୍କୁ ସଂସାର ଭାର ଅର୍ପଣ କରି ବୈଷ୍ଣବଧର୍ମଗ୍ରହଣପୂର୍ବକ ରାଧାକୃଷ୍ଣଙ୍କ ଅମରପ୍ରେମ ରଚନା ଦିଗରେ ବ୍ରତୀ ହେଲେ ।

ଅଧ୍ୟାପକ ବୃନ୍ଦାବନ ଆଚାର୍ଯ୍ୟ, ଡଃ କାହ୍ନୁଚରଣ ମିଶ୍ରଙ୍କ ଭଳି ବିଶିଷ୍ଟ ଆଲୋଚକମାନେ ଏହାକୁ ସତ୍ୟଘଟଣାରୂପେ ଗ୍ରହଣ ଅବଶ୍ୟ କରି ନାହାନ୍ତି । ମାତ୍ର 'ବିଦଗ୍ଧ ଚିନ୍ତାମଣି' କାବ୍ୟ ରଚନା ବେଳକୁ ତାଙ୍କର ପତ୍ନୀବିୟୋଗ ଘଟିଥିବା ନିଶ୍ଚିତ ।

ଅଭିମନ୍ୟୁ ମହାକାବ୍ୟ ବିଦଗ୍ଧ ଚିନ୍ତାମଣିର ନାମକରଣରେ ତାଙ୍କର ଦୀକ୍ଷାଗୁରୁ କବିସୂର୍ଯ୍ୟ ସଦାନନ୍ଦଙ୍କଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ । ଗୁରୁ ମଧ୍ୟ ଚିନ୍ତାମଣି ନାମ ଥିବା କେତେକ କାବ୍ୟ ରଚନା କରିଥିଲେ, ଯଥା – 'ଗୌର ଚିନ୍ତାମଣି', 'ନାମ ଚିନ୍ତାମଣି', 'ପ୍ରେମ ଚିନ୍ତାମଣି' ଇତ୍ୟାଦି । କାବ୍ୟରେ ଅଭିମନ୍ୟୁ କୃଷ୍ଣଙ୍କୁ ଚିନ୍ତାମଣି ଭାବରେ ଅଭିହିତ କରିଛନ୍ତି । ସଂସ୍କୃତ କବି ରୂପଗୋସ୍ୱାମୀ ତାଙ୍କ ରଚିତ ଭକ୍ତି ରସାମୃତ ସିନ୍ଧୁରେ ପ୍ରବୀଣ ବ୍ୟକ୍ତିକୁ ବିଦଗ୍ଧ ନାମରେ ଅଭିହିତ କରିଛନ୍ତି । ସୁତରାଂ ତାଙ୍କ ଗ୍ରନ୍ଥଟି ବିଦଗ୍ଧ ବା ପଣ୍ଡିତମାନଙ୍କର ଚିନ୍ତାର ମଣି ବା ରତ୍ନସ୍ୱରୂପ । ଏହା ଗୋଟିଏ ଅର୍ଥ ହୋଇପାରେ । ଅନ୍ୟ ଅର୍ଥରେ, ବିରହରେ ଦଗ୍ଧୀଭୂତ ଚିନ୍ତାମଣି ବା କୃଷ୍ଣଙ୍କ ପ୍ରେମଲୀଳାକୁ ଏହା ବୁଝାଇଥାଏ । ଦ୍ୱିତୀୟ ଅର୍ଥଟି ଅଧିକ ଗ୍ରହଣୀୟ ବୋଲି ମନେହୁଏ ।

'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ରାଧାକୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣିତ । ରାଧାକୃଷ୍ଣଙ୍କ ଜନ୍ମ, ବାଲ୍ୟଲୀଳା, ପୌଗଣ୍ଡ ଲୀଳା, ପୂର୍ବରାଗ ଅନୁରାଗ, ସଖାସଖୀ, ଦୂତମାନଙ୍କର ଭୂମିକା, ପରସ୍ପରର ରୂପଗୁଣ ଶୁଣି ଉଭୟଙ୍କର ପ୍ରେମ ପ୍ରକାଶ, ମିଳନପାଇଁ ଉତ୍କଣ୍ଠା ଓ ଅବଶେଷରେ ମିଳନ ଅତି ସୁନ୍ଦରଭାବରେ ରୂପାୟିତ ହୋଇଛି ।

## ଧର୍ମମତ

ଅଭିମନ୍ୟୁ ଯେ ଗୌଡ଼ୀୟ ରାଗମାର୍ଗୀ ଭକ୍ତ ଥିଲେ, ଏହା ତାଙ୍କ ଉକ୍ତିରୁ ପ୍ରମାଣିତ । ରାଧା କୃଷ୍ଣଙ୍କ ପ୍ରେମଲୀଳା ବର୍ଣ୍ଣନା କରିବା ତାଙ୍କ ପକ୍ଷେ ଥିଲା ଏକ ସୁଚିନ୍ତିତ ବୈଷ୍ଣବୀୟ ପ୍ରକ୍ରିୟା । 'ବିଦଗ୍ଧ ଚିନ୍ତାମଣି' ଯେ ଗୌଡ଼ୀୟ ବୈଷ୍ଣବ ଦର୍ଶନ ଉପରେ ଆଧାରିତ, ତାହାର ସୂଚନା କବି ପ୍ରଥମରୁ ଦେଇଛନ୍ତି, ଯଥା –

''ହରେ କୃଷ୍ଣ ରାମ ନାମ ଯହିଁ ସେହି ତତ୍ତ୍ୱ
ହରଷେ ରସ ଏ ଘେନି ସାଧକ ଏ ଗୀତ ହେ ।''

ଗୌଡ଼ୀୟ ବୈଷ୍ଣବମାନଙ୍କର ଆରାଧ୍ୟ ଦେବଦେବୀ ଶ୍ରୀକୃଷ୍ଣ ଓ ରାଧାଙ୍କ ପ୍ରେମ ଲୀଳା ନେଇ ଏହି କାବ୍ୟ ଅଭିମନ୍ୟୁ ରଚନା କରିଥିଲେ ହେଁ କବି ଗୌଡ଼ୀୟ ବୈଷ୍ଣବ ଧର୍ମର ଆଦର୍ଶରେ ପୂରାପୂରି ପ୍ରଭାବିତ ହୋଇ ନାହାନ୍ତି । ତା'ର କାରଣ ସେ କାବ୍ୟର କଳାଗତ ମର୍ଯ୍ୟାଦାକୁ ପ୍ରାଧାନ୍ୟ ଦେଇଛନ୍ତି । କାବ୍ୟରେ କବି ପ୍ରତିଭାର ପୂର୍ଣ୍ଣ ପରିପ୍ରକାଶ ଘଟିଛି । ନାଟକୀୟ ଉତ୍କଣ୍ଠା, ଆବେଗମୟ ଭାବର ପ୍ରକାଶ, କୌଶଳତା ସହ ନାୟକ-ନାୟିକାଙ୍କ ମିଳନ ଅସାଧାରଣ କବିତ୍ୱର ପରିଚୟ ଦିଏ । ସେହି କାରଣରୁ ଗୌଡ଼ୀୟ ବୈଷ୍ଣବ ଧର୍ମର ତତ୍ତ୍ୱ ଦୃଷ୍ଟିରୁ 'ବିଦଗ୍ଧ ଚିନ୍ତାମଣି' ମହତ୍ତ୍ୱ ରକ୍ଷା କରିବାରେ ଯେ ସମର୍ଥ ହୋଇ ନାହିଁ, ଏହା ନିଶ୍ଚିତ ।

ସେହିପରି ରାଧା ଓ କୃଷ୍ଣଙ୍କ ପ୍ରସଙ୍ଗର ଏକ ପରମ୍ପରାକୁ ନେଇ କବି କାବ୍ୟଟି ରଚନା କରିଥିଲେ ମଧ୍ୟ ତାଙ୍କର କଳ୍ପନା ବିଳାସରେ ରାଧାକୃଷ୍ଣ ଅପୂର୍ବ ଭାବରେ ରୂପ ପାଇଛନ୍ତି । ସତେ ଯେପରି ବାସ୍ତବ ରୂପରେ ସେମାନେ ମର୍ତ୍ତ୍ୟରେ ଅବତୀର୍ଣ୍ଣ ହୋଇଛନ୍ତି । ଅଭିମନ୍ୟୁ ରାଧା ଓ କୃଷ୍ଣଙ୍କୁ ସାଧାରଣ ନରନାରୀ ଭାବେ ଚିତ୍ରଣ କରିଛନ୍ତି । ସେମାନଙ୍କର ପରସ୍ପର ପ୍ରତି ଅନୁରାଗ, ମାନସିକ ଅବସ୍ଥା, ଗୋପୀ ବା ସଖୀମାନଙ୍କ ସହିତ ହାସ-ପରିହାସ, ମିଳନପାଇଁ ଇଙ୍ଗିତ, ରାଧାଙ୍କୁ ପାଇବାପାଇଁ କୃଷ୍ଣଙ୍କ ଆଶା, ନିରାଶା, ଜଟିଳାର ଦୁର୍ବ୍ୟବହାର, ଶେଷରେ ମିଳନ – ଏସବୁକୁ ନେଇ କାବ୍ୟଟି ଗଢ଼ିଉଠିଛି ।

ନାୟିକା ରାଧା ବୟଃପ୍ରାପ୍ତି ହେବା ପର୍ଯ୍ୟନ୍ତ ସଖୀମାନଙ୍କ ଗହଣରେ ଲୀଳାଖେଳା କରିଛନ୍ତି । ଦିନେ ରାଧା ସଖୀମାନଙ୍କ ସହିତ ଉପବନରେ ବିହାର କରୁଥିଲାବେଳେ କୃଷ୍ଣଙ୍କ ବଂଶୀ ସ୍ୱନ ଶୁଣି ବିଚଳିତ ହୋଇପଡ଼ିଛନ୍ତି । କୃଷ୍ଣଙ୍କ ଗୁଣମାନ ଶୁଣି ଧୈର୍ଯ୍ୟ ଧରି ରହିପାରି ନାହାନ୍ତି । ଲାଜଭୟ ସବୁ ତ୍ୟାଗ କରିଛନ୍ତି । କବିଙ୍କ ଭାଷାରେ –

''ରାଧା ଧରି ସଖୀ କର । ବୋଲନ୍ତି ଆକଟ ଆଉ ନ କର ଗୋ
ଲାଜ ଭୟ ଛାଡ଼ିଲି ନିକର । ସଜନୀ ଗୋ ।
ଘନଶ୍ୟାମ ଗୁଣମାନ । ରଖିଅଛି କି ମୋ ଧୈର୍ଯ୍ୟ ଗୁମାନ ଗୋ ।
ମନ କହୁଛି ତା' ସନମାନ । ସଜନୀ ଗୋ ।''

ପ୍ରେମିକା ଶିରୋମଣି ରାଧାଙ୍କର ବିହ୍ୱଳତାର ସୀମା ନାହିଁ । ସେ ପଛେ କଳଙ୍କିନୀ ଅପବାଦ ସାଦରେ ଗ୍ରହଣ କରିବେ, କିନ୍ତୁ କୃଷ୍ଣଙ୍କୁ ଭୁଲିପାରିବେ ନାହିଁ । ସେ ଏପରିକି କୁଳକୁଟୁମ୍ବଙ୍କୁ ପରିତ୍ୟାଗ କରିବାକୁ କୁଣ୍ଠିତ ହୋଇ ନାହାନ୍ତି, ଯଥା –

''ଦୂତୀ ଗୋ କହ ବନ୍ଧୁଙ୍କୁ କୁଳ ମୂଳ ନାଶିଛି
ପ୍ରାଣ ପ୍ରାୟଶ୍ଚିତ୍ତ ଏବେ କରିବାକୁ ବସିଛି ।''

ସେହିପରି ରାଧାଙ୍କ ନାମ ଶ୍ରବଣରେ କୃଷ୍ଣଙ୍କ ହୃଦୟରେ ଜାତ ହୋଇଛି ନବ ଅନୁରାଗ । କିଶୋର କୃଷ୍ଣଙ୍କର ଦମ୍ଭ ଭାଙ୍ଗିଛି । କବି ତାହା ପ୍ରକାଶ କରିଛନ୍ତି –

''ଆରମ୍ଭ ଦମ୍ଭ ଭାଜିଲା ନ ରହି ହୃଦରେ
ଆସକତ ପରି ତନୁ ହେଲା ଚିନ୍ତା ଜ୍ୱରେ
ଆସିକି ଅମୃତରସ ପଡ଼ିଲା ସୁଖରେ
ଆସ୍ୱାଦନ୍ତି ରାଧାନାମ ସେ ବିଧିରେ ଖରେ ।''

କୃଷ୍ଣ ପୁଣି ରାଧାଙ୍କ ବିହୁନେ ବିକଳ ହୋଇଛନ୍ତି –

''ତୋ ଗୁଣ ସୁମରି ଯିବି ମରି ସଂସାରେ ପ୍ରଶଂସା ସାର ହେବ
ଦାସ ବସ୍ଥଳୀ କି ପ୍ରଣୟ ସ୍ଥଳୀକୁ ବାଧିଲା ଡରେ ରହିଛି ଜୀବ
ଆରେ ଗୁଣବତୀ, ଏ ଛାରକୁ ପକାଇଲୁ ମତି
ତୋତେ ଚାନ୍ଦମୁହୀଁ କେଉଁ ଗୁଣ ମୁହିଁ ଯୋଗାଇବି ଏହା ଭାଳେ ନିତି ।''

ତେଣେ ରାଧା ମଧ୍ୟ କୃଷ୍ଣଙ୍କ ଚିନ୍ତାରେ ମଗ୍ନ ରହିଛନ୍ତି । ସେ ଏତେଦୂର ଆସକ୍ତ ଯେ କୃଷ୍ଣଙ୍କ ଅନୁରୂପ ଯେକୌଣସି ପଦାର୍ଥ ଦେଖିଲେ ବିହ୍ୱଳିତ ହୋଇଉଠୁଛନ୍ତି ।

କବି ଅପୂର୍ବ ଭାବରେ ତାହାକୁ ପ୍ରକାଶ କରିଛନ୍ତି, ଯଥା –

''କାଳିଆ କମଳ ଦେଖିଲେ କମଳ
ନୟନରେ ହୁଏ ଜରଜର
ଦେଖି ନବଘନ, ତା'ର ଅପଘନ
ପୁଲକି ହୁଅଇ ଥରଥର
ଘନ ସୁନ୍ଦର ହେ ! ଯମୁନା ଯିବାକୁ ତରତର
ଏ ଅତି ବିଚିତ୍ର କଜ୍ଜଳ ଚିତ୍ର ଲେଖି
ଚୁମ୍ବ ଦିଏ ବାରବାର ।''

ଆଲୋଚକଙ୍କ ମତରେ ଏହି ଛାନ୍ଦଟି ରଚନା କରି ଅଭିମନ୍ୟୁ ଯଦି ଆଉ କୌଣସି କାବ୍ୟ ରଚନା କରି ନ ଥାନ୍ତେ, ତେବେ ମଧ୍ଯ ଉଚ୍ଚକୋଟୀର କବିଭାବେ ଗୃହୀତ ହୋଇଥାଆନ୍ତେ ।

ପୁଣି ରାଧାଙ୍କ ହୃଦୟରେ ଶ୍ରୀକୃଷ୍ଣଙ୍କ ରୂପ ସବୁବେଳେ ନାଚୁଛି । କୃଷ୍ଣଙ୍କ ବିନା ବଞ୍ଚିବା ଅସମ୍ଭବ ବୋଲି ରାଧା ମନେ କରିଛନ୍ତି । ସେଥିପାଇଁ ଘୋଷଣା କରିଛନ୍ତି –

"ବାଙ୍କୁ ଦୂଷଣ ଘୋଷଣ
ହେଲେ ହେବ ପଛେ ନାନା କଷଣ ଗୋ
ମୁଁ ତ କଲିଣି ନିନ୍ଦା ଭୂଷଣ
ଭୟକୁ ତେଜି ବହନ
ସଜନୀ ଗୋ
ବେଗେ ଦେଖାଅ କାମ ମୋହନ ଗୋ
ହେଳା କଲେ ତ ହେଲି ଦହନ
ସଜନୀ ଗୋ ।"

ରାଧାଙ୍କ ଭାବବିହ୍ୱଳତା ପ୍ରକାଶରେ କବି ଏଥିରେ ଅସାମାନ୍ୟ ସଫଳତା ଅର୍ଜନ କରିଛନ୍ତି ।

ରାଧା ଭୁଲିବାକୁ ଚେଷ୍ଟା କଲେ ବି ଭୁଲିପାରୁ ନାହାନ୍ତି । ତାଙ୍କର ମରଣ ସୁନିଶ୍ଚିତ । ସଖୀଙ୍କୁ କହୁଛନ୍ତି –

"ଧୀରେ ରାଧା କର ଧରି ଦୂତୀ କି ।
ଜୀବନ ନେବାକୁ ଲଗାଇଛି ପାପ ପ୍ରୀତିକି
ଦୂତୀ ଗୋ ପ୍ରାଣବନ୍ଧୁଙ୍କୁ କହ ଯାଇ ଏତିକି
ଦୀକ୍ଷା କରିଛଇଁ ପରା ନାରୀମରା ରୀତିକି ।"

ତେଣେ କୃଷ୍ଣଙ୍କ ଅବସ୍ଥା କହିଲେ ନ ସରେ । ଠିକ୍ ରାଧାଙ୍କ ପରି ତାଙ୍କ ମନରେ ପ୍ରଶ୍ନ କେତେ ଉଠିଛି । ସଖାଙ୍କୁ ପଚାରିଛନ୍ତି । ପ୍ରିୟ ସଖା ମଧୁଙ୍କ ମୁଖରେ କବି ପ୍ରୀତିର ସ୍ୱରୂପ ବର୍ଣ୍ଣନା କରିଛନ୍ତି –

"ଧର୍ମ ଚକ୍ର ବାତ ଲଙ୍ଘନ କରେ
ନିନ୍ଦୁ ସିନ୍ଧୁ ସ୍ନେହ ପୋତରେ ତରେ
କଳଙ୍କ ମୁକୁଟ ବାନ୍ଧଇ ଶିରେ
ମହତ୍ତ୍ୱ ଗିରିବର ଚୂର୍ଣ୍ଣ କରେ
ଲଜ୍ଜାକୁ ଦହଇ,
କୁଳାଭିମାନକୁ ତଡ଼ି ଦିଅଇ ।"

ପ୍ରେମ ପଥକୁ ଯିବାକୁ ପ୍ରିୟ ସଖା ମଧ୍ଯ ନିବର୍ତ୍ତାଇଛନ୍ତି । ତାଙ୍କୁ ସତର୍କ ମଧ୍ଯ କରାଇଛନ୍ତି –

"ପ୍ରୀତି ମହା ଖଣ୍ଡ
କେବଳ କରଇ ପ୍ରାଣ ସଙ୍କଟ ।"

ମାତ୍ର ଅମାନିଆ କୃଷ୍ଣଙ୍କ ପ୍ରେମର ଉତ୍କଟ ବିଷ ଘାରିଛି । ଦୂତୀକୁ ପ୍ରିୟା ଆଗେ ପୂର୍ବକଥା ମନେ ପକାଇଦେବାକୁ କହିଛନ୍ତି –

"କୁମାର କୁମାରୀ ମେଳେ ଖେଳିବା ବିଧିରେ
ବର ମୁହିଁ କନ୍ୟା ସେହି ହୋଇଛି ବିଧିରେ
ଦୂତୀ ଗୋ କହିବୁ ସହିବି
ସେ ଦିନର ମନ ମାନ ମନରେ ନାହିଁ କି !"

ପୁଣି ଦୂତୀର ହାତ ଧରିଛନ୍ତି –

"ଦୂତୀ ଗୋ କହିବୁ ଗୋରୀକି
ଦାସ ଦୋଷ ହେଲେ ଏତେ ସରିକି ।"

ରାଧା ମଧ୍ଯ ଭୁଲିବାକୁ ଚେଷ୍ଟା କଲେ ଭୁଲିପାରି ନାହାନ୍ତି । ମାନମହତ ତ ଗଲାଣି ! ଦୂତୀକୁ ଅନୁନୟ କରି କହିବାକୁ କହିଛନ୍ତି –

"ଦୂତୀ ଗୋ, କହ ବନ୍ଧୁଙ୍କୁ ଯାଇଁ ମୋର ଉତ୍ତର
ରାଧା ମାଗିଛନ୍ତି ଦେବ ପ୍ରେମ ଛଡ଼ା ମନ୍ତର ।"

କୃଷ୍ଣ ଆଉ ସହି ପାରି ନାହାନ୍ତି । ପ୍ରିୟାପାଇଁ ପ୍ରାଣଟା ଚାଲିଗଲେ ବି ତାଙ୍କର ଆଉ ଚିନ୍ତା ନାହିଁ । ସଖାଙ୍କୁ ଅନୁନୟ କରିଛନ୍ତି –

"ଜୀବ ଗଲେ ଶବ,
ତା' ଗତି ପଥରେ ପୋତାଇଦେବ ।"

କବି ରାଧାକୃଷ୍ଣଙ୍କ ପ୍ରେମ ପ୍ରକ୍ରିୟାର କ୍ରମବିକାଶକୁ ଚରମ ସୀମାକୁ ନେବା ପରେ କେବେ ମିଳନ ଘଟାଇବେ ସେଥିପାଇଁ ବ୍ୟାକୁଳ ହୋଇ ପଡ଼ିଛନ୍ତି –

"ପୀରତି ଲମ୍ପଟ ରସ ଭାବି ଦୀନହୀନ ଅଭିମନ୍ୟୁ କବି
ଭାବି ଭାବି ନିଶିଦିନ ସରୁ ନାହିଁ କେବେ ରାଧାକୃଷ୍ଣ ମିଳାଇବି ଗୋ ।"

ଶେଷରେ ବୃନ୍ଦାବନରେ ହୋଇଛି ରାଧାକୃଷ୍ଣଙ୍କର ମଧୁମିଳନ । କବି ତାହାକୁ ରୂପ ଦେଇଛନ୍ତି –

"କରାଇ କଳପନା ଆଳତି ବନ୍ଦାପନା
ଶ୍ରୀରାଧା ହସ୍ତେ ସଖୀମାନେ
ସେ ଉତ୍ତାରୁ ସୁମନେ ଅଞ୍ଜଳିକି ସୁମନେ
ଦିଆଇଲେ ପଦେ ନଳିନ ସେ

× × ×

ଶ୍ରୀ କରେ ଧରି କୋଳ କରି
ହେମ ବଲ୍ଲରୀ କରୀ ଉତ୍ପାଟନକୁ କରି ନେବାର ମାନିଲା ମାଧୁରୀ ସେ
ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି ।"

ଶୃଙ୍ଗାର ଓ ପ୍ରେମ ବର୍ଣ୍ଣନାରେ କବି କେବଳ ସିଦ୍ଧହସ୍ତ ନ ଥିଲେ, ତାଙ୍କ ରଚିତ ବାତ୍ସଲ୍ୟ ଭାବଗର୍ଭିତ ଛାନ୍ଦଗୁଡ଼ିକ ଆହୁରି ଚିତ୍ତାକର୍ଷକ, ଆହୁରି ହୃଦୟସ୍ପର୍ଶୀ । ତାଙ୍କ ପୂର୍ବରୁ ବାତ୍ସଲ୍ୟ ରସ ଆଧାରିତ କାବ୍ୟ ରଚିତ ହୋଇଥିଲେ ମଧ ସେଥିରେ ବାତ୍ସଲ୍ୟ ଭାବର ଦ୍ୟୁତି ଦେଖାଯାଏ ନାହିଁ । 'ବିଦଗ୍ଧ ଚିନ୍ତାମଣି'ରେ ବାତ୍ସଲ୍ୟ ରସର ଯେଉଁ ହୃଦୟ ଉଲ୍ଲାସକାରୀ ପ୍ରବାହ ଦେଖିବାକୁ ମିଳେ, ତାହା ଅତୁଳନୀୟ । ଗୋଟିଏ ଉଦାହରଣ –

"ଧୀରେ ଘେନି କାନନରେ କୃଷ୍ଣ ବିଳମ୍ବିତ
ବାତ୍ସଲ୍ୟ ମମତା ଘେନି ଭାଳୁଛନ୍ତି ମାତ
କଳା ମାଣିକରେ ।
ନିଧନ ସଂଖାଳି ମୋର ଦରିଦ୍ର ପସରା
ଅନ୍ଧର ଲଉଡ଼ି ବାବୁରେ ହୃଦୟର ହାରା
କଳା ମାଣିକରେ ।"

କବି ଅଭିମନ୍ୟୁ ଏଥିରେ ଯଶୋଦାଙ୍କୁ ସାଧାରଣ ମାଆ ସ୍ତରକୁ ନେଇଯାଇଛନ୍ତି । ତାଙ୍କର ଏକମାତ୍ର ପୁଅର ଗୋଠରୁ ଫେରିବାରେ ବିଳମ୍ବ ଘଟିଲେ ନାନା ଆଶଙ୍କା ମନରେ ଦେଖାଦେଇଛି । ପୁଅର ଗୁଣମାନ ସୁମରି ଯେଉଁ ବାହୁନି କାନ୍ଦିଛନ୍ତି । ତା'ର ବାସ୍ତବ ପ୍ରକାଶ କରି କବି କହିଛନ୍ତି –

"ଡରୁଥାଉ ଅନ୍ଧାରକୁ ରଖିଯାଉ ଗୋଠୁ
ଜନକ ଜନନୀ ସୁଖ କାହିଁପାଇଁ ସାରୁ ।"

ଏହି ଛାନ୍ଦର ପ୍ରତ୍ୟେକ ପଂକ୍ତିରେ ଜନନୀ ହୃଦୟର ଅନାବିଳ ସ୍ନେହ ଫୁଟିଉଠିଛି । ସେହିପରି କୃଷ୍ଣଙ୍କୁ ନିଦରୁ ଉଠାଇବାବେଳେ ଯଶୋଦାଙ୍କ ସ୍ନେହ ଝରିପଡ଼ିଛି –

''ଡାକନ୍ତିରେ ଘନଶ୍ୟାମ । ରୁକ୍ମିଣୀ ରତନ ଆନନ୍ଦ ଧାମରେ
କଳା କାହ୍ନୁ । ଉଠ ଉଠ ଭାଙ୍ଗି ଶ୍ରମରେ ।
ଦେଖି ତୋ ଶ୍ରୀମୁଖ ଚାନ୍ଦ । ନୟନ ଚକୋର ହେବ ଆନନ୍ଦରେ ।
କଳା କାହ୍ନୁ । ତୋଷ ମୋ ହୃଦ କୁମୁଦରେ ।''

'ବିଦଗ୍ଧ ଚିନ୍ତାମଣି'ରେ ବାତ୍ସଲ୍ୟ ରସର ଯେଉଁ ପ୍ରବାହ ସୃଷ୍ଟି ହୋଇଛି ତାହାର ଏକ ମନୋଜ୍ଞ ପୂର୍ବାଭାଷ 'ରସକଳା' କାବ୍ୟରେ ଦେଖିବାକୁ ମିଳେ । ଏଠି ମାଆ ପାଖରେ ପୁଅ ଅନ୍ଧର ଲଉଡ଼ି, ଦୁଃଖୀର ସୋଦର । ମାଆ ପାଖରୁ ପୁଅ ଚାଲିଯିବାରେ ମାଆ ମନରେ ଯେଉଁ ଦୁଃଖ ଜାତ ହୁଏ, ତାହା କବି ପ୍ରକାଶ କରିଛନ୍ତି –

''ଅନ୍ଧର ଲଉଡ଼ି ମୋର ଦୁଃଖୀର ସୋଦର
ଗଳାକାଟି ଗଣ୍ଠିମାଳ ନେଉଛି କେ ଚୋର
ନିର୍ଲଜ୍ଜ ପ୍ରାଣ କିପାଁ ଅଛି
ଏ କୁମାର ଗଲେ କାହିଁ ପାରିବି ମୁଁ ରହି ।''

ବସ୍ତୁତଃ, ଅଭିମନ୍ୟୁଙ୍କ ବାତ୍ସଲ୍ୟ ରସଭରା କବିତାଗୁଡ଼ିକ ଅପୂର୍ବ କଳା ସମ୍ପଦର ଅଧିକାରୀ । ପୁଣି ଅପୂର୍ବ ବିଭବରେ ତଥା ସୁଷମାରେ ବିମଣ୍ଡିତ । କେତେ ଆଲୋଚକଙ୍କ ମତରେ ଏହାର ତୁଳନା ଆଉ କେଉଁ ସାହିତ୍ୟରେ ଅଛି କି ନାହିଁ ସନ୍ଦେହ ।

## କବିତ୍ୱ ସୃଷ୍ଟି

ଅଭିମନ୍ୟୁ ତାଙ୍କ କୃତିସମୂହ ମଧ୍ୟରେ 'ବିଦଗ୍ଧ ଚିନ୍ତାମଣି'କୁ ମଣିସଦୃଶ କରିବାକୁ ଚେଷ୍ଟା କରିଛନ୍ତି ଓ ସେଥିରେ ସଫଳ ହୋଇଛନ୍ତି । କଥାବସ୍ତୁ, ବର୍ଣ୍ଣନା ଭଙ୍ଗୀ, ଅଳଙ୍କାର ପ୍ରୟୋଗ, ବିଭିନ୍ନ ଛାନ୍ଦ, ରାଗରାଗିଣୀର ସମାବେଶ ଆଦି ବିଭିନ୍ନ ଦୃଷ୍ଟିରୁ ଦେଖିଲେ ଏହା କବିଙ୍କ ଶ୍ରେଷ୍ଠ କୃତି ବୋଲି ସମସ୍ତେ ସ୍ୱୀକାର କରନ୍ତି । କାବ୍ୟର ନାୟକ ନାୟିକା ଉଚ୍ଚବଂଶଜ । କେବଳ ଉଚ୍ଚବଂଶଜ ନୁହନ୍ତି; କୋଟି ବ୍ରହ୍ମାଣ୍ଡର ଈଶ୍ୱର ଈଶ୍ୱରୀ । ତାଙ୍କଠାରୁ ଶ୍ରେଷ୍ଠ ନାୟକ ନାୟିକା ରୀତି ସାହିତ୍ୟରେ କଳ୍ପନା କରାଯାଇପାରେ ନାହିଁ । କାବ୍ୟଟି ମଧ୍ୟ ଶବ୍ଦ ଓ ଅଳଙ୍କାରର ଗନ୍ତାଘର । ଧନଞ୍ଜୟ, ଦୀନକୃଷ୍ଣ, ଉପେନ୍ଦ୍ର ଭଞ୍ଜ ପ୍ରଭୃତି ଯେଉଁ ସବୁ ରୀତି ଓ ଅଳଙ୍କାର ବ୍ୟବହାର କରି କାବ୍ୟ ସୃଷ୍ଟି କରିଥିଲେ, ଅଭିମନ୍ୟୁ ସେସବୁକୁ ବ୍ୟବହାର କରିବା ସଙ୍ଗେ ସଙ୍ଗେ ତାଙ୍କୁ ବଳି ଯାଇଛନ୍ତି । ବିଶେଷତଃ, 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ସବୁପ୍ରକାର ଶୃଙ୍ଖଳା ଓ ନିୟମ ପ୍ରୟୋଗ

କରିଛନ୍ତି । ବ୍ୟବହୃତ ହୋଇଥିବା ଅଳଙ୍କାରଗୁଡ଼ିକ ହେଲା ସବୁପ୍ରକାର ଯମକ, ଅନୁପ୍ରାସ, ଶ୍ଳେଷ, ରୂପକ, ଶୃଙ୍ଖଳା, ନିୟମ, ଉପମା, ବୈଚିତ୍ର୍ୟ, ଗଙ୍ଗାସ୍ରୋତ । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ବିଭିନ୍ନ କାବ୍ୟାବଳୀରେ ଯେଉଁସବୁ ଅଳଙ୍କାର ରହିଛି, 'ବିଦଗ୍‌ଧ ଚିନ୍ତାମଣି' କାବ୍ୟରେ ସେଥିରୁ କୌଣସିଟିର ଅଭାବ ନାହିଁ ।

କବି ମଧ ଏହି କାବ୍ୟରେ ସମସ୍ତ ପ୍ରକାର ରାଗର ସଫଳ ପରୀକ୍ଷା କରିଛନ୍ତି । ପ୍ରଧାନ ରାଗଗୁଡ଼ିକ ହେଲା ମଙ୍ଗଳ, ରସ କୋଇଲା, ଚକ୍ରକେଳୀ, କଳସା, କାମୋଦୀ, କେଦାର କାମୋଦୀ, କଳହଂସ, ଆହାରୀ, ବରାଡ଼ି, ରସକେଦାର, ବଙ୍ଗଳାଶ୍ରୀ, କେଦାର, କଲ୍ୟାଣ, କଲ୍ୟାଣ ପଡ଼ିତାଳ, କଳ ଘଣ୍ଟ, ଗୁଜ୍ଜରୀ ଓ ଢିପ ।

କାବ୍ୟର ଭାଷାଶୈଳୀ ମଧ ଉଚ୍ଚକୋଟୀର । କବି ପ୍ରସଙ୍ଗ ଓ ଚରିତ୍ର ଉପଯୋଗୀ ଭାଷା ସର୍ବତ୍ର ବ୍ୟବହାର କରିଛନ୍ତି । କେତେକ ଛାନ୍ଦରେ କବି ଶୁଦ୍ଧ ଓ ପରିମାର୍ଜିତ ଭାଷା ବ୍ୟବହାର କଲାବେଳେ ଆଉ କେତେକ ଛାନ୍ଦରେ ଲୋକପ୍ରଚଳିତ ଭାଷାର ପ୍ରୟୋଗ ହୋଇଛି । ଫଳରେ ରଚନା ସ୍ଥାନେ ସ୍ଥାନେ ଦୁର୍ବୋଧ ଓ ଗୁରୁଗମ୍ଭୀର ହୋଇପଡ଼ିଛି, ଯଥା –

''ନଗରୀ ବିତ୍ତ ମତ୍ତ ଦିପଦ ଟୋପ
ଯୁବତୀ ପରମାଦ ମାଦକ କୂପ
ନାରୀ ନୟନ ମୀନ ଧରା ଧୀବର
ମାର ତରୁ ଛେଦନ ତୀକ୍ଷ୍‌ଣ କୁଠାର ଯେ ।''

ସେହିପରି ସରଳ ଓ ତରଳ ଭାଷାର ବ୍ୟବହାର ଦେଖିବାକୁ ମିଳେ । କୃଷ୍ଣଙ୍କ ସହ ସଖା-ସଖୀମାନଙ୍କର ପରିହାସ ବର୍ଣ୍ଣନା ପ୍ରସଙ୍ଗରେ କବି ଲୋକ ପ୍ରଚଳିତ ଭାଷା ବ୍ୟବହାର କରିଛନ୍ତି –

''ଭଙ୍ଗି ବିଷୟରେ କୃଷ୍ଣ ଗଣ୍ଠିଆ
କାହା କଟିସ୍ଥିତ ଦେଖି ମାଠିଆ
ବୋଲନ୍ତି ବନ୍ଧୁ ମୁଁ ତୋହ ବେଠିଆ
ପାଣି ଆଣିବାକୁ ମୋତେ ପଠିଆ ।''

ଏହା ବ୍ୟତୀତ ଋତୁବର୍ଣ୍ଣନା, ନଗର ବର୍ଣ୍ଣନା, କାନନ ବର୍ଣ୍ଣନା, ନାରୀ ରୂପ ବର୍ଣ୍ଣନାରେ କବିଙ୍କ ପ୍ରତିଭାର ଚରମ ବିକାଶ ହୋଇଛି । ଶ୍ରୀରାଧା ଚରିତ୍ର ଉପସ୍ଥାପନରେ କବି ବୈଷ୍ଣବଶାସ୍ତ୍ରକୁ ଅନୁସରଣ କରିଛନ୍ତି ସତ୍ୟ, ମାତ୍ର ତହିଁରେ ନିଜର କଳ୍ପନାର ଇନ୍ଦ୍ରଜାଲ ବୁଣି ଶ୍ରୀରାଧାଙ୍କୁ ଏକ ଅପରୂପ ରୂପ ଦେଇଛନ୍ତି । ଶ୍ରୀରାଧାଙ୍କ ଚରିତ୍ର

ବୈଷ୍ଣବ ଗ୍ରନ୍ଥ ନାୟିକା ଓ କାଳ୍ପନିକ କାବ୍ୟନାୟିକାଙ୍କ ମିଶ୍ରଣରୁ ଉଦ୍ଭବ ହେଲା ପରି ମନେ ହୁଅନ୍ତି । ଅଭିମନ୍ୟୁଙ୍କ ଏହି ସୃଷ୍ଟିର ପଟାନ୍ତର ଓଡ଼ିଆ ସାହିତ୍ୟରେ ନାହିଁ କହିଲେ ଚଳେ ।

## ବୀଭତ୍ସ ଶୃଙ୍ଗାର ରସ

ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧା ହରି ନାମରେ ବୀଭତ୍ସ ଶୃଙ୍ଗାର ରସର ଅବତାରଣା 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ କରାଯାଇଛି ବୋଲି କେତେକ ସମାଲୋଚକ ମତ ଦେଇଛନ୍ତି । ମାତ୍ର ଏହା ଯଥାର୍ଥ ନୁହେଁ । କବି ରୀତି ଯୁଗର କାଳ୍ପନିକ କାବ୍ୟମାନଙ୍କରେ ଥିବା କୁତ୍ସିତ ଦୈହିକ ସମ୍ଭୋଗ ବର୍ଣ୍ଣନାକୁ ଯଥାସମ୍ଭବ ପରିହାର କରିଛନ୍ତି । କାବ୍ୟଗତ କଳା ଦୃଷ୍ଟିରୁ ଯୁଗଧର୍ମର ଅନୁସରଣ କବି କେତେକ ସ୍ଥାନରେ ଅବଶ୍ୟ କରିଛନ୍ତି; ମାତ୍ର ତାହା ସେପରି ଦୂଷଣୀୟ ନୁହେଁ । 'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ନାୟକନାୟିକାଙ୍କର ଦୈହିକ ମିଳନ ହୋଇଛି । ମାତ୍ର ତାହା ଆଲୋଚକଙ୍କ ଭାଷାରେ ଉନ୍ମତ୍ତ ଯୌନସଂଯୋଗର ଦ୍ୟୋତକ ନୁହେଁ ।

## ସଙ୍ଗୀତ

ଅଭିମନ୍ୟୁଙ୍କ ସଙ୍ଗୀତ ମଧ୍ୟ ହୃଦୟସ୍ପର୍ଶୀ । ଏହି କାବ୍ୟରେ କବି କେଉଁଠାରେ ଗୁରୁଗମ୍ଭୀର ଭାଷା ବା କେଉଁଠି ସରଳ ତରଳ ଭାଷା ବ୍ୟବହାର କରିଛନ୍ତି । କେଉଁଠି ଅବା ନିସର୍ଗ କବିତ୍ୱର ଧାରା ପ୍ରବାହିତ ହେଉଛି । କେଉଁଠି ରସାଳ ଭାବର ପରିପ୍ରକାଶ ଘଟିଛି । ସଙ୍ଗୀତ କିନ୍ତୁ ଭାଷାକୁ ସାବଲୀଳ, କୋମଳ, ସରସ ଆଉ ମଧୁର କରିଛି । ବସ୍ତୁତଃ ସଙ୍ଗୀତମୟତାପାଇଁ 'ବିଦଗ୍ଧ ଚିନ୍ତାମଣି' କାବ୍ୟର ଉତ୍କର୍ଷ ଫୁଟିଉଠିଛି । କବିସୂର୍ଯ୍ୟଙ୍କ ଗୀତିକବିତାଗୁଡ଼ିକ ଯେପରି ଦକ୍ଷିଣାଞ୍ଚଳରେ ସଙ୍ଗୀତର ଧାରା ପ୍ରବାହିତ କରୁଛି, ଅଭିମନ୍ୟୁଙ୍କର ଛାନ୍ଦଗୁଡ଼ିକ ସେହିପରି ଯାଜପୁର ପ୍ରଭୃତି ଉତ୍ତର-ଓଡ଼ିଶାରେ ନିର୍ଜନ ପରିବେଶରେ ଗାୟକ କଣ୍ଠରେ ଝଂକୃତ ହୋଇଥାଏ ।

ସଂକ୍ଷେପରେ କହିବାକୁ ଗଲେ, ରୀତିଯୁଗର ସମସ୍ତ କାବ୍ୟିକ ଉପାଦାନକୁ ନେଇ ନିପୁଣ ଶିଳ୍ପୀ ଅଭିମନ୍ୟୁ ବଳିଷ୍ଠ ଭାବ, ଭକ୍ତି, ନିଷ୍ଠା ଓ ସାଧନା ବଳରେ ରଚନା କରିଛନ୍ତି 'ବିଦଗ୍ଧ ଚିନ୍ତାମଣି' । ଏହା ତାଙ୍କର ସର୍ବଶ୍ରେଷ୍ଠ ଓ ସର୍ବୋତ୍କୃଷ୍ଟ କାବ୍ୟସୃଷ୍ଟି । ପ୍ରାବନ୍ଧିକ ନଟବର ସାମନ୍ତରାୟଙ୍କ ଭାଷାରେ –

"'ବିଦଗ୍ଧ ଚିନ୍ତାମଣି' ଏ ଦେଶର ଲକ୍ଷ ଲକ୍ଷ ବିଦଗ୍ଧ ହୃଦୟର ଜୀବନ ଚିନ୍ତାମଣି । ଏହା ପୁରୀ ମନ୍ଦିର ପରି ବିରାଟ । ସୂର୍ଯ୍ୟ ମନ୍ଦିର ପରି ବିବିଧ କାରୁକାର୍ଯ୍ୟରେ ବିଭବଶାଳୀ ଓ ଭୁବନେଶ୍ୱରର ରାଜାରାଣୀ ମନ୍ଦିର ପରି ନାନା

ଅଳଙ୍କାରପୂର୍ଣ୍ଣ ଓଡ଼ିଆ ପଲ୍ଲୀବାଳାର ନିଷ୍କପଟ ହୃଦୟର ସହଜ ଓ ସରଳ ଭାଷାର ଏକ ଅଭିନବ ଓ ଅନବଦ୍ୟ କାବ୍ୟ ।''

ନାରୀ କବି ବିଦ୍ୟୁତ୍‌ପ୍ରଭା ମଧ୍ୟ ଏହି 'ବିଦଗ୍ଧ ଚିନ୍ତାମଣି' କାବ୍ୟ ପାଠ କରି ଆତ୍ମହରା ହୋଇଉଠିଥିଲେ –

''ଭାଷାର ବିରାଟ ତୁଙ୍ଗ କୋଣାରକ
ଭାବର ଅଗାଧ ଖଣି
ସ୍ୱରଟି ଲଳିତ ପ୍ରେମ ସମ୍ବଳିତ
ବିଦଗ୍ଧ ଚିନ୍ତାମଣି ।''

## ଭକ୍ତି କବିତା

ଅଭିମନ୍ୟୁ କେବଳ ଜଣେ ଅସାଧାରଣ ରୀତି ଓ ବୈଷ୍ଣବ କାବ୍ୟକାର ଥିଲେ ତାହା ନୁହେଁ, ସେ ଜଣେ ସଫଳ ଗୀତିକବି ମଧ୍ୟ ଥିଲେ । ତାଙ୍କର ଗୀତିକବିତାଗୁଡ଼ିକ ବହୁକାଳ ଧରି ଲୋକଲୋଚନର ଅନ୍ତରାଳରେ ରହିଯାଇଥିଲା । ସେଗୁଡ଼ିକ କ୍ରମେ ପ୍ରକାଶିତ ହେବା ଫଳରେ ତାଙ୍କର ପ୍ରତିଭାର ଏହି ମହନୀୟ ଦିଗଟି ପ୍ରତି ଗବେଷକମାନଙ୍କ ଦୃଷ୍ଟି ପଡ଼ିଛି ।

ଅଭିମନ୍ୟୁ ଥିଲେ ଅନନ୍ୟ କୃଷ୍ଣଭକ୍ତ । ସେ ରାଧାକୃଷ୍ଣଙ୍କ ଲୀଳା ଉପରେ 'ପ୍ରେମ ଚିନ୍ତାମଣି', 'ବିଦଗ୍ଧ ଚିନ୍ତାମଣି' ଭଳି କାବ୍ୟ ରଚନା କରିଥିଲେ । ସେ ମଧ୍ୟ ନର ଜନ୍ମର ସାର୍ଥକତାପାଇଁ ରାସଧୂଳିରେ ନିମଜ୍ଜନ ହେବାକୁ ଚାହିଁଥିଲେ । ସେହିପରି ବୃନ୍ଦାବନର ଶ୍ୟାମକୁଣ୍ଡ ଓ ରାଧାକୁଣ୍ଡର ପବିତ୍ର ଜଳରେ ସ୍ନାନ କରି ନିଜର ପାପତାପମୟ ଜୀବନକୁ ପୂତପବିତ୍ର କରିବାକୁ ମନ ବଳାଇଥିଲେ । ତାହାରି ଉପରେ ସେ କେତେକ ଭଜନ ରଚନା କରିଛନ୍ତି –

''ଭାବରୁ ବରଜି ଦିଅ ବରଜପୁରୀ ହେ ବ୍ରଜବିହାରୀ !
ରାଧାକୁଣ୍ଡ ଶ୍ୟାମକୁଣ୍ଡ ଜଳେ ବୁଡୁ ମୋର ମୁଣ୍ଡ
ଆଜନ୍ମ ପାପକୁ ଖଣ୍ଡ ମୁରଲୀଧାରୀ ହେ, ବ୍ରଜବିହାରୀ
ବୃନ୍ଦାବନ ପ୍ରଦକ୍ଷିଣ ନିତ୍ୟେ କରୁ ମୋର ମନ
ବରଜ ଅୟନେ କାମ ଗାୟନ କରିହେ ବ୍ରଜବିହାରୀ ।''

'ଜୟ ଶ୍ରୀ ଗୋବିନ୍ଦ ହରି' ତାଙ୍କର ଆଉ ଏକ ଶ୍ରୀକୃଷ୍ଣଙ୍କ ଉପରେ ଆଧାରିତ ଭଜନ । ଏଥିରେ ସେ କୃଷ୍ଣଙ୍କୁ ପ୍ରାର୍ଥନା କରି କହିଛନ୍ତି ଯେ ତାଙ୍କର କୃଷ୍ଣ ବିନା ଆଉ କେହି ସାହା ଭରସା ନାହିଁ । ଦିନକୁ ଦିନ ତାଙ୍କର ଦୁଃଖ ବଳିପଡୁଛି । ସାଂସାରିକ ଦୁଃଖ କଷ୍ଟରୁ ପାରି କରିଦେବାକୁ ସେ କାତର ପ୍ରାର୍ଥନା କରିଛନ୍ତି ।

କବିଙ୍କର 'ରାଧାମାଧବ ବ୍ରଜବାନ୍ଧବ ହେ' ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭଜନ । ଏହା ହୃଦୟକୁ ତେଣୁ ସେପରି ସ୍ପର୍ଶ କରେ ନାହିଁ; କିନ୍ତୁ 'ନନ୍ଦ ହୃଦାନନ୍ଦ ଚନ୍ଦ୍ରମା' ଏକ ଭାବ ଢଳ ଢଳ ସୁନ୍ଦର ଗୀତିକବିତା । ଏଥିରେ କୃଷ୍ଣଙ୍କର କୃପା ଭିକ୍ଷା କରିଛନ୍ତି, ଯଥା –

"ବୃନ୍ଦାବନ ଧୂଳି ଖେଳରେ
ଅନ୍ଧେ ନେତ୍ର ଦେଲ ଭୋଳରେ
ହେ କନ୍ଦର ବୁଲା ମନ୍ଦର ଟେକିଲ
ମୋ କଦନଭାର ବଳାଇଲାକି ?"

'ରାଧାମାଧବ ନ ଜାଣେ' ଆଉ ଏକ ସୁନ୍ଦର କୃଷ୍ଣଭକ୍ତିମୂଳକ ଗୀତିକବିତା । ଅଭିମନ୍ୟୁଙ୍କ ରଚିତ ହରିହର ବନ୍ଦନାମୂଳକ ଗୀତିକବିତାର ସନ୍ଧାନ ମିଳିଅଛି । ଏଥିରେ ତାଙ୍କର ଆତ୍ମସମର୍ପଣ ଭାବ ପ୍ରକାଶିତ ହୋଇଛି ।

ଅଭିମନ୍ୟୁ ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ସେ ଶୁଦ୍ଧାଭକ୍ତିତତ୍ତ୍ୱକୁ କାବ୍ୟମାନଙ୍କରେ ପ୍ରକାଶ କରିଥିଲେହେଁ ଜଗନ୍ନାଥଙ୍କୁ ଅସ୍ୱୀକାର କରି ନାହାନ୍ତି । ଶ୍ରୀକୃଷ୍ଣ ଓ ଶ୍ରୀରାଧାଙ୍କ ପ୍ରେମ ଲୀଳା ବର୍ଣ୍ଣନା ସଙ୍ଗେ ସଙ୍ଗେ ଜଗନ୍ନାଥଙ୍କ ମହିମା ବନ୍ଦନା କରିବାକୁ ପଶ୍ଚାତ୍‌ପଦ ହୋଇ ନାହାନ୍ତି । କବି ବାଲ୍ୟକାଳରେ ଜଗନ୍ନାଥଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ । ବାଳକ ଅବସ୍ଥାରେ ସେ ଶ୍ରୀମନ୍ଦିରକୁ ଯାଇ ଯୋଗ ସାଧନା କରି ସିଦ୍ଧି ଲାଭ କରିଥିଲେ । ଓଡ଼ିଶାର ଜନଜୀବନରେ ଜଗନ୍ନାଥ ପରମବ୍ରହ୍ମ ରୂପେ ବିରାଜିତ ହୋଇଆସୁଛନ୍ତି । ପଞ୍ଚସଖା ଯୁଗରେ କବିମାନେ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ମଧ୍ୟରେ ଅଭେଦ ପରିକଳ୍ପନା କରିଛନ୍ତି । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ପ୍ରଭୃତି କବିମାନେ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରିଛନ୍ତି । ଅଭିମନ୍ୟୁ କୃଷ୍ଣକାବ୍ୟ ରଚୟିତା ହେଲେ ମଧ୍ୟ ଜଗନ୍ନାଥଙ୍କ ଶ୍ରୀଚରଣ ତଳେ ଆଶ୍ରୟ ଭିକ୍ଷା କରିଛନ୍ତି ।

କବି ବିଂଶ ବର୍ଷ ବୟସରେ 'ରସକଳା' କାବ୍ୟ ରଚନା କରିଥିଲେ । କାବ୍ୟର ଏକବିଂଶ ଛନ୍ଦରେ ସେ ଜଗନ୍ନାଥଙ୍କ ବନ୍ଦନା କରିଛନ୍ତି, ଯଥା –

'ଜୟ ଜୟ ଜଗନ୍ନାଥ
ଦୀନବନ୍ଧୁ ପତିତପାବନ ରଖ ମୋତେ
ଆହେ ଭାବଗ୍ରାହୀ
ଦୀନ ସାମନ୍ତସିଂହାର ନାଥ କହେ ।"

'ବିଦଗ୍ଧ ଚିନ୍ତାମଣି' କାବ୍ୟରେ ମଧ୍ୟ ଜଗନ୍ନାଥଙ୍କ ଅବତାରଣା କରାଯାଇଛି ।

"କୃଷ୍ଣ ଜଗନ୍ନାଥ ପ୍ରେମ ପଥ ସ୍ୱାର୍ଥ, ଅନୁରଥ ଯାତ୍ରା ବିବର୍ଦ୍ଧନୀ ।"

କବିଙ୍କ ଆଠୋଟି ଜଗନ୍ନାଥଙ୍କ ଭକ୍ତିମୂଳକ ଗୀତିକା ମିଳିଅଛି । ସବୁଠାରୁ ଲୋକପ୍ରିୟ ଭଜନଟି ହେଲା –

"ଜୟ ଜୟ ଜଗନ୍ନାଥ ଚଢ଼ି ନନ୍ଦିଘୋଷ ରଥ
ଅନ୍ତର୍ଯାମୀ ଅନ୍ତର୍ଗତ ବାରଣ ଜାଣ
ଦୁଃଖୀ ଜଣାଇଲେ ଦୁଃଖ କେବେହେଁ ନୁହଁ ବିମୁଖ
ସେହି ପ୍ରଭୁ ନୁହଁ କି ତୁମ୍ଭେ
ଦୁଃଖୀ ଜଣାଇଲେ ଦୁଃଖ ନ ଶୁଣ ଏବେ ।"

ଜଗନ୍ନାଥ ଦୟାର ଅବତାର । ଭକ୍ତକୁ କେତେ ବିପଦରୁ ରକ୍ଷା କରିଛନ୍ତି । ହିରଣ୍ୟକଶିପୁକୁ ସ୍ତମ୍ଭରୁ ବାହାରି ବିଦାରଣ କରି ପ୍ରହଲ୍ଲାଦକୁ ଇନ୍ଦ୍ର ପଦ ଦେଇଥିଲେ । ଧ୍ରୁବକୁ ସେହିପରି କରୁଣା ପ୍ରଦାନ କରିଥିଲେ । ଦ୍ରୌପଦୀର ଲଜ୍ଜା ନିବାରଣ କରିଥିଲେ । ତାଙ୍କର ଦୁଃଖ ଯେ ଦୂର ହେବ, ସେହି ଭରସା କବି ଏଥିରେ କରିଛନ୍ତି । 'ତୁମ୍ଭେ କି ନ ଜାଣ ମୋ ମନ ଆରତ ହେ ଜଗନ୍ନାଥ' ଆଉ ଏକ ଭକ୍ତି ଗୀତ । ଏଥିରେ ବି ଜଗନ୍ନାଥଙ୍କ ଦୁଷ୍ଟଦଳନ ଓ ଶିଷ୍ଟତାରଣ କଥା ବର୍ଣ୍ଣନା କରିଛନ୍ତି । ତାଙ୍କ ଗୁହାରି ଶୁଣିବାପାଇଁ ମଧ୍ୟ ନିବେଦନ କରିଛନ୍ତି । 'ଦୁଃଖ ତ ନ ଗଲା ଦିନେ' ଭଜନରେ କବି ନିଜକୁ ଜଗନ୍ନାଥଙ୍କ ପାଖେ ସମର୍ପଣ କରିଦେଇଛନ୍ତି । ଦୁଃଖରେ ସନ୍ତୁଳି ହୋଇ କବି ପଚାରିଛନ୍ତି –

"କରିଥିଲି ଆଶ ହୋଇବ ଉଶ୍ୱାସ ମୋର ଏ କ୍ଳିବିଷ୍ଟ ଦିନେ
କରୁଣା ସାଗରୁ ବିନ୍ଦୁ ମାତ୍ର ଦିନେ ଶୁଖିଗଲା କି କାରଣେ ?"

'ଦେଖ ହେ ନୀଳଚକ୍ରରେ ବାନା ଉଡୁଛି' ଆଉ ଏକ ଭକ୍ତି ଗୀତ । କବି ରଥଯାତ୍ରା ଦର୍ଶନ କରି ନ ପାରି ଖେଦ୍ ପ୍ରକାଶ କରିଥିଲେହେଁ ଅନ୍ତର୍ଦୃଷ୍ଟିରେ ତାହା ଦେଖି ପାରିଛନ୍ତି । 'କୃପାସିନ୍ଧୁ ଦୀନବନ୍ଧୁ' ଜଣାଣରେ କବି ନିଜର ଗଭୀର ଦୁଃଖ ଜଣାଇଛନ୍ତି । ସେଥିରୁ ତ୍ରାହି କରିବାପାଇଁ ଅନୁନୟ କରିଛନ୍ତି, ଯଥା –

"କୃପାସିନ୍ଧୁ ଦୀନବନ୍ଧୁ
ଶ୍ରୀ ଛାମୁରେ ଜଣାଉଛି ଅପରାଧୀ ଦୀନ
ଖେଦ ଜଳଧିରେ ଭାସି ମୁଁ ଯାଉଛି ତ୍ରାହିକର ହୋଇ ସୁପ୍ରସନ୍ନ
ଆହେ ଗିରିବର !
ଘୋଷଣା ବାଜୁଛି ତିନିପୁର ଉଡୁଛି କେତନ ।
ପତିତପାବନ ଶରଣ ସୋଦର ବିଶ୍ୱମ୍ଭର ।"

ଭକ୍ତକବି ଦୀନକୃଷ୍ଣ, ସାଲବେଗ ଓ ବନମାଳୀ ପ୍ରଭୃତି ଯେପରି ଜଗନ୍ନାଥଙ୍କ ବନ୍ଦନା ଗାଇଛନ୍ତି, କବି ସାମନ୍ତସିଂହାର ଅନୁରୂପ ଭାବରେ ମହିମା ଗାଇ ଜଗନ୍ନାଥ-ପ୍ରାଣତାର ପରିଚୟ ଦେଇଛନ୍ତି ।

## ଶେଷ ଜୀବନ

କିମ୍ବଦନ୍ତୀ ଅନୁଯାୟୀ କବି ଜୀବନର ଅନ୍ତିମ କାଳରେ ବୃନ୍ଦାବନ ଯିବାକୁ ସ୍ଥିର କଲେ । ସେ ଗୃହରୁ ବିଦାୟ ନେଇ ଯାତ୍ରା ଆରମ୍ଭ କଲେ । ମାତ୍ର କିଛି ବାଟ ଯିବା ପରେ ଦେହ ଅବଶ ଲାଗିବାରୁ ଘରକୁ ବାର୍ତ୍ତା ପଠାଇଲେ । ଗୃହରୁ ରାଧାମାଧବ ପ୍ରତିମା ସେଠାକୁ ଅଣାଗଲା । ସେହି ମୂର୍ତ୍ତିକୁ ଦେଖୁଥିବା ଅବସ୍ଥାରେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଏହା ୧୮୦୬ ବା ୧୮୧୦ ମସିହାରେ ହୋଇଥିବା ସମ୍ଭବପର ।

କବିଙ୍କର ଜୀବିତାବସ୍ଥାରେ ପତ୍ନୀ ବିମଳାଦେବୀଙ୍କ ତିରୋଧାନ ଘଟିଥିଲା । ସମ୍ଭବତଃ, ବିମଳାଦେବୀଙ୍କ ମୃତ୍ୟୁ ପରେ ସେ ଅନ୍ୟ ଦାରା ଗ୍ରହଣ କରିଥିଲେ । ତାଙ୍କର ରାମକୃଷ୍ଣ ଓ ରଘୁନାଥ ନାମକ ଦୁଇ ପୁତ୍ର ଥିଲେ । ସେମାନେ ବିମଳା ଦେବୀଙ୍କ ପୁତ୍ର ଥିବା ଅନୁମାନ କରାଯାଏ ।

ସୁସାହିତ୍ୟିକ ତଥା ରାଜନୀତିର ଶୀର୍ଷସ୍ଥାନରେ ଅଧିଷ୍ଠିତ ଜାନକୀବଲ୍ଲଭ ପଟ୍ଟନାୟକଙ୍କ ମତରେ ଓଡ଼ିଆ ଭାଷାରେ ଏପରି କୌଣସି ଭାବ ନାହିଁ, ଯାହାକୁ ଅଭିମନ୍ୟୁ ଦେଖାଇଯାଇ ନାହାନ୍ତି । ସଂସ୍କୃତ ଭାଷାରେ ମାଘ, ଶ୍ରୀହର୍ଷଙ୍କ ପରି ଅଳଙ୍କାର ପ୍ରୟୋଗ ବା ଜୟଦେବଙ୍କ ପରି ସରଳ ଭାଷାରେ ମନୋମୁଗ୍ଧକର ଗୀତ ତାଙ୍କଠାରୁ ମିଳେ । ଓଡ଼ିଆ ଭାଷାରେ ଉପେନ୍ଦ୍ର ଭଞ୍ଜଙ୍କୁ କାଳିଦାସ କୁହାଗଲେ, ଅଭିମନ୍ୟୁଙ୍କୁ ଭବଭୂତି କହିବା ସଙ୍ଗତ ବୋଲି ସେ କହିଛନ୍ତି ।

ଅଭିମନ୍ୟୁ ନିଜର ଅସାମାନ୍ୟ ପାଣ୍ଡିତ୍ୟ ଓ ପ୍ରତିଭା ବଳରେ ଅପୂର୍ବ ଓ ଅଭିନବ ଭକ୍ତି ରସାତ୍ମକ କାବ୍ୟ, କୋମଳ ପଦାବଳୀ ରଚନା କରି ଓଡ଼ିଆ ବାଣୀଭଣ୍ଡାରକୁ ଅନନ୍ୟ କରିଛନ୍ତି । ତାଙ୍କ ରଚିତ କାବ୍ୟର କେତୋଟି ଛାନ୍ଦ, ଯଥା – 'ଧୀରେ ରାଧା କର ଧରି', 'ଶ୍ରୀରାଧା ବାତୁଳୀ' ଓ 'ଧୀରେ ଘେନ କାନନରେ' ପ୍ରଭୃତି ଉତ୍କଳର ଘରେ ଘରେ ଆବୃତ୍ତି ହେଉଅଛି । ତାଙ୍କର ଛାନ୍ଦ ଅବଲମ୍ବନରେ ବହୁ ଓଡ଼ିଆ ସଂକୀର୍ତ୍ତନ ପ୍ରଣୟନ କରାଯାଇଛି । ଓଡ଼ିଶାର ଗୁଣଗ୍ରାହୀ କବି ରାଧାନାଥ ସେଥିପାଇଁ ଅଭିମନ୍ୟୁ ସାମନ୍ତସିଂହାରଙ୍କୁ 'କୃତାନ୍ତ ବିଜୟୀ କବି' ଭାବେ ନାମିତ କରିଛନ୍ତି । କବିଙ୍କ ଭାଷାରେ –

"ହେ ସୁକବି ଅଭିମନ୍ୟୁ ଉତ୍କଳ ଭୁବନେ
କବିକୁଳଚନ୍ଦ୍ର ତୁମି ଗାଇଲ ସୁସ୍ୱରେ
ସୁକ୍ଷଣେ ବାଜାୟେ ବୀଣା ପ୍ରେମାନନ୍ଦ ମନେ
× × ×
ଆପଣ ସୁରସମୟୀ ଲେଖନୀର ବଳେ
କୃତାନ୍ତ ବିଜୟୀ କବି ! ତୁମି ଏ ଅଞ୍ଚଳେ ।"

# ପ୍ରେମିକକବି
# ଭକ୍ତଚରଣ ଦାସ

ରୀତିଯୁଗର ଆଉ ଜଣେ ବିଶିଷ୍ଟ କବି ହେଉଛନ୍ତି ଭକ୍ତଚରଣ ଦାସ । ତାଙ୍କ ସମୟରେ ବହୁ କବି ଅଳଙ୍କାର ବିମଣ୍ଡିତ କାବ୍ୟ ରଚନା କରି ଯଶସ୍ୱୀ ହୋଇଥିଲେହେଁ କବି ଭକ୍ତଚରଣ ସରଳ ନିରାଡ଼ମ୍ବର ଭାଷାରେ ହୃଦୟର ଭାବ ପ୍ରକାଶ କରି ଯେପରି ଲୋକପ୍ରିୟତା ହାସଲ କରିଛନ୍ତି, ତାହା ଖୁବ୍ କମ୍ କବିଙ୍କ ଭାଗ୍ୟରେ ଘଟିଛି । ତାଙ୍କ ରଚିତ କାବ୍ୟ 'ମଥୁରା ମଙ୍ଗଳ' ସମସ୍ତଙ୍କଦ୍ୱାରା ଆଦୃତ ହୋଇଅଛି ।

## ବଂଶ ପରିଚୟ

ଖୋର୍ଦ୍ଧା ଅଞ୍ଚଳର ରାଜସୁନାଖଳା ନିକଟବର୍ତ୍ତୀ ଗ୍ରାମରେ କବି ୧୭୨୯ ମସିହାରେ (ଆଲୋଚକ ଫକୀର ଦାସଙ୍କ ମତ ଅନୁଯାୟୀ) ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତୃ ମାତୃ ଦତ୍ତ ନାମ ବୈରାଗୀଚରଣ ପଟ୍ଟନାୟକ ଓ ସେ ଜାତିରେ କରଣ ଥିଲେ । ବୈରାଗୀ କିନ୍ତୁ ତାଙ୍କ ରଚନାରେ ପିତାମାତାଙ୍କ ନାମ ବା ନିଜର ବଂଶ ପରିଚୟ ଦେଇ ନାହାନ୍ତି । ତେବେ ସେ ପଟ୍ଟନାୟକ ବଂଶରେ ଜନ୍ମଲାଭ କରିଥିବା ନିଶ୍ଚିତ । ଏବେ ମଧ୍ୟ ସାନପଦର ଗ୍ରାମରେ ପଟ୍ଟନାୟକ ପରିବାର ବାସ କରୁଛନ୍ତି । ସେମାନେ ନିଜକୁ ଭକ୍ତଚରଣଙ୍କ ବଂଶଧର ବୋଲି ପରିଚୟ ଦେଉଛନ୍ତି ।

ସେ ସମୟରେ ଆଧୁନିକ ବିଦ୍ୟାଳୟମାନ ନ ଥିଲା । ଗାଁ ଚାଟଶାଳୀରେ ଅବଧାନ ଶିକ୍ଷାଦାନ କରୁଥିଲେ । ସେ ଏହି ଗାଁ ଚାଟଶାଳୀରେ ଶିକ୍ଷା ଆରମ୍ଭ କଲେ । ସେ ଜଗନ୍ନାଥ ଦାସ, ଦୀନକୃଷ୍ଣ ଓ ଉପେନ୍ଦ୍ର ଭଞ୍ଜଙ୍କ ରଚିତ ଓଡ଼ିଆ ଗ୍ରନ୍ଥମାନ ଅଧ୍ୟୟନ କଲେ । ସେ ମଧ୍ୟ ସଂସ୍କୃତ ଶିକ୍ଷା କଲେ ଓ ସେଥିରେ ଦକ୍ଷତା ଅର୍ଜନ କଲେ । ସଂସ୍କୃତ କାବ୍ୟ, ପୁରାଣମାନଙ୍କରେ ତାଙ୍କର ଗଭୀର ପ୍ରବେଶ ଥିବା ଜଣାଯାଏ । 'ମଥୁରା ମଙ୍ଗଳ' କାବ୍ୟକୁ ଦୃଷ୍ଟି ଦେଲେ ଜଣାଯାଏ ଯେ ସେ ଭାଗବତ, ହରିବଂଶ ପ୍ରଭୃତି ଅଧ୍ୟୟନ କରିଥିଲେ ।

ଭକ୍ତଚରଣ ମଧ୍ୟ ଚିକିତ୍ସାଶାସ୍ତ୍ରରେ ପାରଙ୍ଗମ ଥିଲେ । କଥିତଅଛି ଯେ ସେ ଯକ୍ଷ୍ମା, କୁଷ୍ଠ ପ୍ରଭୃତି ରୋଗୀମାନଙ୍କୁ ବାଲ୍ୟ କାଳ ମଧ୍ୟରେ ଆରୋଗ୍ୟ କରି ଦେଇଥିଲେ । ପରବର୍ତ୍ତୀ ଜୀବନରେ ସେ ଦୁଇ ଖଣ୍ଡ ବୈଦ୍ୟଶାସ୍ତ୍ର ରଚନା କରିଥିଲେ ।

## ଧର୍ମମତ

ଶ୍ରୀଚୈତନ୍ୟ ଥିଲେ ରାଧାକୃଷ୍ଣ ଯୁଗଳ ମୂର୍ତ୍ତିଙ୍କ ଉପାସକ । ତାଙ୍କ ଧର୍ମଦର୍ଶନର ମୂଳ ତତ୍ତ୍ୱ ହେଲା ଗୋପପୁରର ରାଧାକୃଷ୍ଣ । ଏହି ରାଧା ଓ କୃଷ୍ଣଙ୍କ ଲୀଳାକୁ ମଧୁର ରସ କୁହାଯାଏ । ରାଧାକୃଷ୍ଣ ଯଥାକ୍ରମେ ଜୀବାତ୍ମା ଓ ପରମାତ୍ମାଙ୍କର ପ୍ରତୀକ । ଏହାହିଁ ଗୌଡ଼ୀୟ ବୈଷ୍ଣବ ଧର୍ମର ମୂଳତତ୍ତ୍ୱ । ଷୋଡ଼ଶ ଶତାବ୍ଦୀରେ ଶ୍ରୀଚୈତନ୍ୟ ଓଡ଼ିଶାକୁ ଆସିଥିଲେ । ସେ ପୁରୀରେ ଦୀର୍ଘକାଳ ଧରି ଅବସ୍ଥାନ କରିଥିଲେ । ଫଳରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରସାର ଘଟିଲା ।

ଓଡ଼ିଶାର ବୈଷ୍ଣବ ଧର୍ମ ବହୁକାଳରୁ ପ୍ରଚଳିତ ଥିଲା । 'ବେଦ', 'ମହାଭାରତ', 'ବ୍ରହ୍ମପୁରାଣ' ପ୍ରଭୃତିରେ ବିଷ୍ଣୁ ଆରାଧ୍ୟ ଦେବତାଭାବେ ପୂଜା ପାଉଥିଲେ । ଚତୁର୍ଥ ଓ ପଞ୍ଚମ ଶତାବ୍ଦୀରେ କଳିଙ୍ଗରେ ବୈଷ୍ଣବ ଧର୍ମ ରାଜଧର୍ମ ଥିବାର ଜଣାଯାଏ । ଷଷ୍ଠ ଓ ସପ୍ତମ ଶତାବ୍ଦୀରେ ଶୈଳୋଦ୍ଭବ ବଂଶୀୟ ରାଜାମାନେ ବିଷ୍ଣୁଙ୍କର ଉପାସକ ଥିଲେ । ଭୌମକର ବଂଶର ରାଣୀ ତ୍ରିଭୁବନଦେବୀ ମଧ୍ୟ ପରମବୈଷ୍ଣବୀ ଥିଲେ । ଗଙ୍ଗବଂଶର ରାଜା ଚୋଡ଼ଗଙ୍ଗଦେବ ମଧ୍ୟ ପରମବୈଷ୍ଣବ ନାମରେ ନାମିତ । ରାମାନୁଜ, ମାଧବାଚାର୍ଯ୍ୟ, ବିଷ୍ଣୁସ୍ୱାମୀ, ରାମାନନ୍ଦ, ନିମ୍ବାର୍କ ପ୍ରଭୃତି ବୈଷ୍ଣବଗଣ ଓଡ଼ିଶାକୁ ଆସିଥିଲେ ଓ ବୈଷ୍ଣବ ଧର୍ମର ପ୍ରଚାର କରିଥିଲେ । ପଞ୍ଚଦଶ ଶତାବ୍ଦୀରେ ସୂର୍ଯ୍ୟବଂଶୀ ରାଜା କପିଳେନ୍ଦ୍ରଦେବଙ୍କ ସମୟରେ ବୈଷ୍ଣବ ଧର୍ମର ମଧ୍ୟ ଅଭ୍ୟୁଦୟ ଘଟିଥିଲା । ଗଜପତି ରାଜା ପ୍ରତାପରୁଦ୍ରଙ୍କ ସମୟରେ ବୈଷ୍ଣବ ଧର୍ମ ରାଜଧର୍ମରେ ପରିଣତ ହେଲା । ଓଡ଼ିଶାର ପଞ୍ଚସଖା ଯୁଗର କବିମାନେ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ସେମାନେ କିନ୍ତୁ ଥିଲେ ଜ୍ଞାନମିଶ୍ରା ଭକ୍ତିର ଉପାସକ । ଜ୍ଞାନଯୋଗ ଓ ପ୍ରାଣାୟାମ ଥିଲା ସେମାନଙ୍କ ଧର୍ମ ସାଧନର ବାଟ । ଚୈତନ୍ୟଙ୍କ ଅନୁଗାମୀମାନେ ଗୌଡ଼ୀୟ ଓ ଜଗନ୍ନାଥ ଦାସଙ୍କ ଅନୁଗାମୀମାନେ ଉତ୍କଳୀୟ ବୈଷ୍ଣବ ନାମରେ ପରିଚିତ ହେଲେ । ଗୌଡ଼ୀୟ ବୈଷ୍ଣବମାନେ ଶ୍ରୀକୃଷ୍ଣଙ୍କୁ ଅବତାରୀଭାବେ ଗ୍ରହଣ କରିଥିଲାବେଳେ ଉତ୍କଳୀୟ ବୈଷ୍ଣବମାନେ ଜଗନ୍ନାଥଙ୍କୁ ଅବତାରୀଭାବେ ଗ୍ରହଣ କରିଥାନ୍ତି । ସେହି ଦୃଷ୍ଟିରୁ ଗୌଡ଼ୀୟ ବୈଷ୍ଣବମାନଙ୍କ ପକ୍ଷେ ବୃନ୍ଦାବନ ନିତ୍ୟଧାମ ଥିଲା । ଉତ୍କଳୀୟ ବୈଷ୍ଣବମାନେ ନୀଳାଚଳ କ୍ଷେତ୍ରର ମାହାତ୍ମ୍ୟ ଗାନ କରିଛନ୍ତି ।

'ମଥୁରା ମଙ୍ଗଳ' ମୁଖବନ୍ଧରେ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ଭକ୍ତଚରଣଙ୍କ ଧର୍ମମତର ଆଲୋଚନା କରି କହିଛନ୍ତି ଯେ ଭକ୍ତଚରଣ ବୃନ୍ଦାବନର ଠାକୁର ଶ୍ରୀକୃଷ୍ଣ ଓ ରାଧାଙ୍କୁ ଧ୍ୟାନ କରିଛନ୍ତି । ପରେ କିନ୍ତୁ ଭକ୍ତଚରଣଙ୍କୁ ଜଗନ୍ନାଥ ଦାସଙ୍କ ଅତିବଡ଼ୀ ସଂପ୍ରଦାୟଭୁକ୍ତ ବୋଲି କହିଛନ୍ତି । ଭକ୍ତଚରଣ କିନ୍ତୁ ତାଙ୍କ ରଚନାବଳୀରେ କୌଣସିଠାରେ ଜଗନ୍ନାଥଙ୍କୁ ନିଜର ଆରାଧ୍ୟଦେବତା ବୋଲି କହି ନାହାନ୍ତି । ସେ 'ମଥୁରାମଙ୍ଗଳ'ର ଦଶମ

ଛାନ୍ଦରେ ବା 'ମନବୋଧ ଚଉତିଶା'ରେ ଜଗନ୍ନାଥଙ୍କ ନାମ ପ୍ରସଙ୍ଗକ୍ରମେ କେବଳ ଉଲ୍ଲେଖ କରିଛନ୍ତି, ଯଥା -

''ଗୁଣ୍ଡିଚା ବିଜେ କଲେ ଜଗନ୍ନାଥ ।'' (ମଥୁରାମଙ୍ଗଳ)

ଡଃ ଆର୍ତ୍ତବଲ୍ଲଭ ମହାନ୍ତି 'ମଥୁରା ମଙ୍ଗଳ'ର ରାଧା ଓ ବୃନ୍ଦାବତୀ ଭିନ୍ନ ବୋଲି ମତ ଦେଇଥିଲାବେଳେ ଆଉ ଜଣେ ଆଲୋଚକ ଫକୀର ଚରଣ ଦାସ ତାଙ୍କ ରଚିତ ଗ୍ରନ୍ଥରେ ବୃନ୍ଦାବତୀଙ୍କୁ ରାଧା ଭାବେ ଗ୍ରହଣ କରିଛନ୍ତି । 'ମଥୁରାମଙ୍ଗଳ'ର ପଞ୍ଚବିଂଶ ଓ ସପ୍ତବିଂଶ ଛାନ୍ଦରେ ଗୋପୀମାନେ ଉଦ୍ଧବଙ୍କର ଜ୍ଞାନ ମାର୍ଗ ଓ ଯୋଗ ମାର୍ଗର ନିନ୍ଦା କରିଛନ୍ତି । ସେମାନେ ପ୍ରେମଭକ୍ତିର ଗୁଣଗାନ କରିଛନ୍ତି । ପ୍ରେମଭକ୍ତିକୁ ସାଗର, ହୀରା ବା ଜାଇଫୁଲ ସଙ୍ଗେ ତୁଳନା କଲାବେଳେ ଜ୍ଞାନଭକ୍ତିକୁ ଯଥାକ୍ରମେ ନଦୀ, କରକା, ମହୁଲ ବା ବାସଙ୍ଗ ଫୁଲ ବୋଲି କହିଛନ୍ତି, ଯଥା

''ତଥାପି ମଧୁର ରସେ ଜ୍ଞାନ ଯେବେ ଅଳ୍ପ ମିଶେ
ତାକୁ ସେ କରଇ ବେଗେ ନାଶ ।''

ଫକୀରଚରଣ ଦାସଙ୍କ ମତରେ ଭକ୍ତଚରଣ ମାଧବେନ୍ଦ୍ର ପୁରୀପାଦ ସଂପ୍ରଦାୟଭୁକ୍ତ ଅଟନ୍ତି । ମୃତ୍ୟୁ ଭୟରୁ ରକ୍ଷା ପାଇବାକୁ ସେ ରାଧାଗୋବିନ୍ଦଙ୍କୁ ଧାୟିବାକୁ ଉପଦେଶ ଦେଇଛନ୍ତି ।

'ମନ ଶିକ୍ଷା' ଗ୍ରନ୍ଥରେ ମାଧବାଚାର୍ଯ୍ୟଙ୍କୁ ନିଜ ଗୁରୁ ବୋଲି ଭକ୍ତଚରଣ ଉଲ୍ଲେଖ କରିଛନ୍ତି ।

## ବୈଷ୍ଣବ ଧର୍ମ ଗ୍ରହଣ

ବୈରାଗୀ ବୈଷ୍ଣବ ଧର୍ମରେ ଦୀକ୍ଷିତ ହୋଇଥିବା ଜଣାଯାଏ । ତାଙ୍କ ଗ୍ରାମ ସାନପଦରରେ ଗୌଡ଼ୀୟ ବୈଷ୍ଣବମାନଙ୍କର ଦୁଇଟି ମଠ ଅଛି । ଏହି ଦୁଇଟି ମଠକୁ ଯଥାକ୍ରମେ ବଡ଼ ମଠ ଓ ସାନ ମଠ କୁହାଯାଏ । ବଡ଼ ମଠରେ ରାଧାକୃଷ୍ଣଙ୍କ ଯୁଗଳ ମୂର୍ତ୍ତି ଅଛି । ସେହି ମଠ ହିଁ ସେ ଅଞ୍ଚଳର ଭକ୍ତି ସାଧନାର ପୀଠ ଥିଲା । ବୈରାଗୀଚରଣ ଏହି ବଡ଼ ମଠରେ ଦୀକ୍ଷା ଗ୍ରହଣ କରିଥିଲେ । ଦୀକ୍ଷା ଗ୍ରହଣ ପରେ ବୈଷ୍ଣବ ଧର୍ମର ପ୍ରଥା ଅନୁଯାୟୀ ଆଉ ଏକ ନାମ ଗ୍ରହଣ କଲେ । ତାଙ୍କର ନୂଆ ନାମ ହେଲା 'ଭକ୍ତଚରଣ ଦାସ' ।

ଦୀକ୍ଷା ଗ୍ରହଣ ପରେ ଭକ୍ତଚରଣ ଭାରତର ସବୁ ତୀର୍ଥ ସ୍ଥାନ ଭ୍ରମଣ କରିଥିଲେ । ଏହି ସମୟରେ ସେ ବହୁ ସାଧୁସନ୍ଥଙ୍କୁ ଭେଟିଥିଲେ ଓ ତାଙ୍କ ସଙ୍ଗେ

ଶାସ୍ତ୍ର ଆଲୋଚନା କରିବାର ସୁଯୋଗ ପାଇଥିଲେ । ସେ ପାରମାର୍ଥିକ ଜୀବନଯାପନ କରିଥିଲେ ।

ଭକ୍ତଚରଣ ବିଭିନ୍ନ ସ୍ଥାନରେ ମଠ ମାନ ସ୍ଥାପନ କରିଥିଲେ । ଖୋର୍ଦ୍ଧା ନୟାଗଡ଼ ରାସ୍ତାରେ ଅବସ୍ଥିତ ରାଜସୁନାଖଳାଠାରେ ଏକ ମଠ ମଧ୍ୟ ସ୍ଥାପନ କରିଥିଲେ ।

ଖୋର୍ଦ୍ଧାରାଜା ଦିବ୍ୟସିଂହଦେବ ଗଜପତିଙ୍କ ଭଉଣୀ ମୁକ୍ତା ଦେଈ ସମ୍ବଲପୁର ରାଜାଙ୍କୁ ବିବାହ କରିଥିଲେ । ପରେ ରାଜଗାଦିପାଇଁ ବିବାଦ ଉପୁଜିଲା । ସରକାର ତେଣୁ ତାଙ୍କ ଇଚ୍ଛାଅନୁଯାୟୀ ଖୋର୍ଦ୍ଧା ନିକଟରେ ରଖାଗଲେ । ମୁକ୍ତା ଦେଈ କବିଙ୍କଠାରୁ ମନ୍ତ୍ର ଗ୍ରହଣ କଲେ । ସେ ସାନପଦର ମଠର ପରିଚାଳନାପାଇଁ କେତେକ ଭୂସମ୍ପତ୍ତି ଦାନ କରିଥିଲେ । ସାନପଦର ମଠ ବ୍ୟତୀତ ବାଣପୁର ଓ ଦଶପଲ୍ଲାରେ ତାଙ୍କଦ୍ୱାରା ପ୍ରତିଷ୍ଠିତ ମଠମାନ ଏବେବି ବିଦ୍ୟମାନ । କଥିତଅଛି ଯେ ଦଶପଲ୍ଲାର ରାଜା ବୈଷ୍ଣବ ଭକ୍ତଚରଣଙ୍କ ଉପରେ କୌଣସି କାରଣରୁ ବିରକ୍ତ ହୋଇ ସେଠା ମଠରେ ଥିବା ଠାକୁର ବୃନ୍ଦାବନଚନ୍ଦ୍ରଙ୍କୁ ନଦୀ ଗର୍ଭକୁ ନିକ୍ଷେପ କରିଥିଲେ । ଭକ୍ତଚରଣ ନଦୀ ଗର୍ଭରୁ ଇଷ୍ଟଦେବଙ୍କୁ ଉଦ୍ଧାର କରି ସୁନାଖଳାରେ ଥିବା ବଡ଼ ମଠରେ ପ୍ରତିଷ୍ଠା କଲେ । ଏହି ମଠରେ ସେ ତାଙ୍କ ଜୀବନର ଅଧିକାଂଶ ସମୟ କଟାଇଥିଲେ ।

କବିଙ୍କ ଦେହର ରଙ୍ଗ ଶ୍ୟାମଳ ଥିଲା । ସେ ମଧ୍ୟ ଖର୍ବ ଓ କୃଶକାୟ ଥିଲେ । ମସ୍ତକରେ ଅଳ୍ପ କେଶ ଥିଲା ।

## ଅଲୌକିକ ଶକ୍ତି

ଭକ୍ତଚରଣ ପରମ ସାଧକ ଥିଲେ । କଥିତଅଛି ଯେ ଅନନ୍ତ ଶାଗୁଆ ନାମକ ଜଣେ ଭକ୍ତ କବିଙ୍କଠାରୁ ଦୀକ୍ଷା ଗ୍ରହଣ କରିଥିଲେ । ମାତ୍ର ଗୁରୁ ଭକ୍ତଚରଣଙ୍କୁ ତ୍ୟାଗ କରି ସେ ଅନ୍ୟ ଗୁରୁଙ୍କଠାରୁ ଗାଣପତ୍ୟ ଦୀକ୍ଷା ନେଲେ ।

ଏହା ଶୁଣି ଭକ୍ତଚରଣ ତାଙ୍କୁ ଅଭିଶାପ ଦେଲେ –

''ଆରେ ଆରେ ଗୁରୁ ଦ୍ରୋହୀ
ତୋ ମୁଖ କେବେ ନାହିଁ ।''

ଶାଗୁଆ ଏହା ପରେ କୁଷ୍ଠ ରୋଗାକ୍ରାନ୍ତ ହେଲେ । ପରେ ଗୁରୁଙ୍କ ସେବା କରି ରୋଗମୁକ୍ତ ହେଲେ । ସାନପଦରରେ ଭକ୍ତଚରଣ ଆଉ ଏକ ମଠ ସ୍ଥାପନ କରିଥିଲେ । ତା'ର ନାମ ଥିଲା ସାନ ମଠ । ସେହି ମଠରେ ଜଣେ ଗୁରୁଭାଇ ଗୌରାଙ୍ଗ ବାବାଜିଙ୍କୁ ରଖାଇଥିଲେ ।

## ରଚନାବଳୀ

କବି ବହୁ ଗ୍ରନ୍ଥ ରଚନା କରି ନାହାନ୍ତି । କିନ୍ତୁ ଅଳ୍ପ ରଚନା ମଧ୍ୟରେ ସେ ନିଜର ଅପୂର୍ବ କଳାକୁଶଳତା ପ୍ରଦର୍ଶନ କରିଛନ୍ତି । ତାଙ୍କଦ୍ୱାରା ରଚିତ ଗ୍ରନ୍ଥ ହେଲା – 'ମଥୁରା ମଙ୍ଗଳ', 'ଗୋପ ମଙ୍ଗଳ', 'ମନଃଶିକ୍ଷା', 'କଳା କଳେବର ଚଉତିଶା', 'ମନବୋଧ ଚଉତିଶା' ପ୍ରଭୃତି । ସେଗୁଡ଼ିକ ମଧ୍ୟରୁ 'ଗୋପମଙ୍ଗଳ' କାବ୍ୟର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ । ସମ୍ଭବତଃ, ଏହା ଅପ୍ରକାଶିତ । 'ମନଃଶିକ୍ଷା' ବାରିପଦାର ଭକ୍ତ ବିନୋଦ ଲାଇବ୍ରେରୀ ତରଫରୁ ୧୯୬୨ ମସିହାରେ ପ୍ରକାଶିତ ହୋଇଅଛି । ତେବେ ତାଙ୍କର ଶ୍ରେଷ୍ଠ କୃତି ହେଉଛି ମଥୁରା ମଙ୍ଗଳ ।

## ମଥୁରା ମଙ୍ଗଳ

କଂସକୁ ମାରି ଶ୍ରୀକୃଷ୍ଣ ମଥୁରାର ମଙ୍ଗଳ ବିଧାନ କରିଥିବାରୁ କାବ୍ୟର ନାମ 'ମଥୁରା ମଙ୍ଗଳ' କବି ରଖିଥିବା ସମ୍ଭବ । କଂସର ନିଧନରେ ମଥୁରା ନିଷ୍କଣ୍ଟକ ହୋଇଛି । କେବଳ ମଥୁରାବାସୀ ନୁହନ୍ତି,ଦେବତାମାନେ ମଧ୍ୟ ଦୁଷ୍ଟ ଦାନବର ଅତ୍ୟାଚାରରୁ ମୁକ୍ତି ପାଇଛନ୍ତି । ଯୁଗେ ଯୁଗେ ଦୁଷ୍ଟକୁ ନାଶି ସାଧୁସନ୍ଥଙ୍କୁ ପାଳିବାପାଇଁ ଭଗବାନ୍ ପୃଥିବୀରେ ଜନ୍ମ ଗ୍ରହଣ କରିଥାନ୍ତି । ସୁତରାଂ ମଥୁରା ତଥା ପୃଥିବୀର ମଙ୍ଗଳ ସାଧିତ ହୋଇଥିବାରୁ 'ମଥୁରାମଙ୍ଗଳ' ନାମକରଣ ଯଥାର୍ଥ ବୋଲି ମନେହୁଏ ।

କବି ପ୍ରଥମ ଛାନ୍ଦରେ କୃଷ୍ଣଙ୍କର ବନ୍ଦନା କରିଛନ୍ତି, ଯଥା –

''କୃଷ୍ଣ ଚରିତ ଅମୃତ ବାରିଧି
କଳି କଳୁଷ ରୋଗକୁ ଔଷଧି ।''

ଗ୍ରନ୍ଥରେ କଂସର ଅତ୍ୟାଚାର ବର୍ଣ୍ଣିତ ହୋଇଛି । ଫଳରେ ବସୁଦେବଙ୍କ ଔରସରେ ଦେବକୀଙ୍କ ଅଷ୍ଟମ ଗର୍ଭରେ ବିଷ୍ଣୁ ଜନ୍ମ ହୋଇଛନ୍ତି । କଂସର ହାତରୁ ରକ୍ଷା କରିବାପାଇଁ ବସୁଦେବ ତାଙ୍କୁ ଗୋପରେ ଛାଡ଼ି ଆସିଛନ୍ତି । କୃଷ୍ଣଙ୍କର ନିଧନପାଇଁ କଂସ ପୂତନା, ଶକଟା, ବକାସୁର, ଅଘାସୁର ପ୍ରଭୃତିଙ୍କୁ ପ୍ରେରଣ କରିଛି । ମାତ୍ର ସମସ୍ତଙ୍କର ବାଳକ କୃଷ୍ଣଙ୍କ ହାତେ ନିଧନ ହୋଇଛି । କଂସ ଏକ ଧନୁ ଯାତ୍ରାର ଆୟୋଜନ କରିଛି । କୃଷ୍ଣ ବଳରାମଙ୍କୁ ଆଣିବାକୁ ଆଜ୍ଞା ପତ୍ର ଦେଇ କଂସ ଅକ୍ରୂରକୁ ପଠାଇଛି । ଆଜ୍ଞାପତ୍ରରେ ରାଜା କଂସ ତା'ର ବଳବୀର୍ଯ୍ୟର ଆସ୍ଫାଳନ କରିଛି, ଯଥା –

''ଜାଣୁ ତ ମୋହର ବଳବୀର୍ଯ୍ୟ ଯେତେ
ଅଇରି କୁଳକୁ କେତୁ...''

ସେମାନଙ୍କୁ ନ ପଠାଇଲେ ତା'ର ଫଳ ଭୋଗ କରିବ ବୋଲି ଧମକ ମଧ ଦେଇଛି –

''ଆଜ୍ଞା ପ୍ରମାଣେ ତତ୍‌କାଳେ ଆସିବୁ
ନୋହିଲେ ଛେଦିବି ସ୍କନ୍ଧ ।''

ନନ୍ଦରାଜା ଏ ପତ୍ର ପାଇ କାତର ହୋଇପଡ଼ିଛନ୍ତି । ଶହେ ଭାର ଦୁଗ୍‌ଧ, ଦଧି ନେଇ ଗୋପାଳ ବାଳକମାନଙ୍କ ସହିତ ରାମକୃଷ୍ଣ ମଥୁରା ଯାତ୍ରା କରିଛନ୍ତି ।

କୃଷ୍ଣଙ୍କର ମଥୁରା ଗମନ ଅବ୍ୟବହିତ ପୂର୍ବରୁ ଗୋପୀମାନଙ୍କର ଖେଦୋକ୍ତି ଅତି ଜୀବନ୍ତ ହୋଇଅଛି, ଯଥା –

''ଶୁଣି ଗୋପପୁର ଜନେ ହୋଇଲେ ଆରତ

× × ×

ସେହିମତ ହେଲେ ଗୋଇ
ଏକେକୁ ଆରେକେ ବୋଲେ କି କରିବା ସହି
ପାଞ୍ଚ ସାତ ମେଳି ହୋଇ କରନ୍ତି ବିଚାର
କୃଷ୍ଣ ବିନୁ ପରାଣ ଧରିବ କାହା ଛାର
ନିଶ୍ଚେ ହୋଇବ ମରଣ
ଯେତେବେଳେ ଗୋପ ତେଜି ଯିବେ ନାରାୟଣ ।''

ଶ୍ରୀକୃଷ୍ଣଙ୍କ ମଥୁରା ଯାତ୍ରା ବେଳେ ଗୋପୀମାନେ ବିଳାପ କରିଛନ୍ତି –

''ମଥୁରା ଗଲେ ଅକ୍ରୂର ସଙ୍ଗେ
ଗୋପୀମାନଙ୍କୁ ଦେବ କାହାକୁ
ତୁମ୍ଭ ପଛେ ପଛେ ଜୀବ ଯିବ ହେ ମୋହନ
କାହାପାଇଁ ଏ ପିଣ୍ଡରେ ଥିବ
ଯାହା ବାହା ସାହାପାଇଁ ବଞ୍ଚିଥିଲୁ
ସେହି ଯେବେ କଂସପୁର ଯିବ ।''

କିନ୍ତୁ କୃଷ୍ଣଙ୍କ ବିହୁନେ ଦୁଃଖିନୀ ଜନନୀର କ୍ରନ୍ଦନ ଯେକୌଣସି ବ୍ୟକ୍ତିର ହୃଦୟକୁ ବ୍ୟଥିତ କରେ –

''ଆରେ ବାବୁ ଶ୍ୟାମଘନ ତୁ ଗଲେ ମଧୁଭୁବନ
କାହା ମୁଖ ଅନାଇଁ ବଞ୍ଚିବି ।
ହେବ ଦଶ ଦିଗ ଶୂନ୍ୟ ଅସ୍ଥିର ହେବ ଜୀବନ,
ନିଶି ଦିବସରେ ଝୁରୁଥିବିରେ ଜୀବଧନ

× × ×

ଆସିବାକୁ ପଥ ଚାହିଁଥିବି
ଉଛୁର ହୋଇଲେ ଧାଇଁଯିବିରେ ।''

ଯଶୋଦାଙ୍କ ବିଳାପ ମଥୁରାମଙ୍ଗଳ କାବ୍ୟର ଏକ ପ୍ରଧାନ ଆକର୍ଷଣ । ଏଥିରେ କବି ଅତି ସରଳ ଭାଷାରେ ମାତାର ନିଷପଟ ଭାବରାଶିକୁ ପ୍ରକାଶ କରିଛନ୍ତି । ଏହି ଛାନ୍ଦଟି ସୃଷ୍ଟି କରି ଭକ୍ତଚରଣ ଉତ୍କଳ ସାହିତ୍ୟ ଭଣ୍ଡାରକୁ ଅମୂଲ୍ୟ ରତ୍ନ ଦେଇଛନ୍ତି । ବାତ୍ସଲ୍ୟ ରସ ପରିବେଷଣରେ ସେ ମାର୍କଣ୍ଡ ଦାସ ବା ଅଭିମନ୍ୟୁ ସାମନ୍ତସିଂହାର ବା କବିସୂର୍ଯ୍ୟ ପ୍ରଭୃତିଙ୍କୁ ବଳି ଯାଇଛନ୍ତି ବୋଲି କେହି କେହି ଆଲୋଚକ ମତ ଦେଇଛନ୍ତି ।

ସେହିପରି ଶ୍ରୀକୃଷ୍ଣଙ୍କ ବିଚ୍ଛେଦରେ ବ୍ରଜ ନାରୀମାନଙ୍କ ଅବସ୍ଥା ବର୍ଣ୍ଣନା ଅତି ହୃଦୟସ୍ପର୍ଶୀ ହୋଇଛି । ଉଦାହରଣସ୍ୱରୂପ –

''କୁରଙ୍ଗ ନୟନୁ ବହଇ ବାରି ।
ଫିଟିଲା କବରୀ ତୁଟିଲା ହାର
ଶୁଖିଲା ରଙ୍ଗିମା ଜବା ଅଧର,
ଅଙ୍ଗୁ ବହେ ଝାଳ
ପାଣ୍ଡୁର ଦିଶେ ହେମ ଗଣ୍ଡ ସ୍ଥଳ ।''

ପୁଣି କାହା ମୁଖରୁ କଥା ବାହାରିଲା ନାହିଁ । କାହା ପାଦ ଚଳିଲା ନାହିଁ । କିଏ ଭୂମିରେ ଗଡ଼ିଲା । କାହାର ଛାତି ଦମଦମ ହେଲା । କାହା ନାକରେ ଖୁବ୍ ବେଗରେ ନିଶ୍ୱାସ ବହିଲା । କେ ମୁଣ୍ଡରେ ପଥର ମାରିଲା । କିଏ ବା ବିଷ ଖାଇବାକୁ ଇଚ୍ଛା କଲା । କିଏ ଯମୁନା ଗଣ୍ଡରେ ଝାସଦେବାକୁ ବାହାରିଲା । ଆଉ କିଏ ଗଳାରେ ଛୁରିଦେବାକୁ ବସିଲା ।

ଗୋପିନୀମାନଙ୍କର ଏ କାରୁଣ୍ୟ ବର୍ଣ୍ଣନାରେ କବି ସିଦ୍ଧହସ୍ତତାର ପରିଚୟ ଦେଇଛନ୍ତି ।

କୃଷ୍ଣ ଭକ୍ତ ଅକ୍ରୂର ସହ ରାମକୃଷ୍ଣ ମଥୁରାରେ ଯାଇ ପହଞ୍ଚିଛନ୍ତି । ଅକ୍ରୂରଙ୍କ ଭକ୍ତିପୂର୍ଣ୍ଣ ଅନୁରୋଧସତ୍ତ୍ୱେ କଂସ କୋପ କରିବା ଆଶଙ୍କାରେ ତାଙ୍କ ଘରକୁ ଯାଇ ନାହାନ୍ତି । ଗୋପାଳମାନଙ୍କ ସହ ମଧୁବନରେ ରାତ୍ରିଯାପନ କରିଛନ୍ତି । କଂସ ମଧ କୃଷ୍ଣ ବଳରାମଙ୍କୁ କିପରି ବଧ କରିବ ସେହି ବିଷୟରେ ମିତ୍ରମାନଙ୍କ ସହିତ ମନ୍ତ୍ରଣା କରିଛି । ପ୍ରଥମ ଦ୍ୱାରରେ କୁବଳୟା ହସ୍ତୀ, ଦ୍ୱିତୀୟ ଦ୍ୱାରରେ ଚାଣୂର, ମୁଷ୍ଟିକ ପ୍ରଭୃତି ମଲ୍ଲବୀରମାନେ ରହିବାର ବ୍ୟବସ୍ଥା ହୋଇଛି । ତା'ପରଦିନ କୃଷ୍ଣ ମଥୁରା କଟକ ଦେଖିବାପାଇଁ ବାହାରିଛନ୍ତି । ଗୋପାଳମାନେ ମଧ ବେଶ ହୋଇ ବାଜା ବଜାଇ ତାଙ୍କ ସଙ୍ଗେ ବାହାରିଛନ୍ତି । ମଥୁରା କଟକ କମ୍ପିଉଠିଛି । କୃଷ୍ଣଙ୍କୁ ଦେଖି ମଦନ ବିକାରରେ ମଥୁରା ନାରୀମାନେ ବିହ୍ୱଳ ହୋଇ ପଡ଼ିଛନ୍ତି, ଯଥା –

"କେ ବୋଲେ ସଖୀ, ପୂରାଇ ଆଖି

× × ×

ଦେଖିବା ଗୋପୀନାଥ
କେଉଁ ନାଗରୀ ରସ ସାଗରୀ
ଅନେଇଁ ଦେଲା ଗଳି
ରହିଲା ବାଳୀ ନ ପାରେ ଚଳି
ଚାହିଁଲେ ବନମାଳୀ ।"

କୃଷ୍ଣ ରଜକର ଗର୍ବ ଭାଙ୍ଗି ରାଜାର ଅଙ୍ଗଭୋଗ ବସନ ଛଡ଼ାଇ ନେଇଛନ୍ତି । କଂସର ବେଶକାରୀ ଶ୍ରଦ୍ଧାରେ ବେଶ ସଜାଇଛି । ସୁଦାମା ମାଳୀ ପରମ ଶ୍ରଦ୍ଧାରେ ଫୁଲରେ ବେଶ କରାଇଛି । କୁବୁଜା କୃଷ୍ଣଙ୍କୁ ଚନ୍ଦନ ଲଗାଇଛି । କୃଷ୍ଣଙ୍କ ସ୍ପର୍ଶମାତ୍ରେ ତାଙ୍କ ଅଙ୍ଗ ସୁନ୍ଦର ହୋଇଉଠିଛି ଓ ସେ କୃଷ୍ଣଙ୍କ ଆଗମନୀକୁ ଅପେକ୍ଷା କରି ରହିଛି ।

ଏହାପରେ ଗୋପାଳମାନେ ନାନାବିଧ ବାଜା ବଜାଇ ନାଚି ନାଚି ଧନୁ ଘର ଦ୍ୱାରରେ ପହଞ୍ଚିଛନ୍ତି । ଦ୍ୱାରୀ ଅସ୍ତ୍ର ଧରି ବାଟ ଓଗାଳିଛି । ବଳରାମ କ୍ରୋଧରେ ମୁଥ ମାରି ଦ୍ୱାରୀମାନଙ୍କୁ ହତ୍ୟା କରି ଧନୁଭଙ୍ଗ କରିଛନ୍ତି । ଏ ଖବର ପାଇ କଂସ ବୀରମାନଙ୍କୁ ଭର୍ତ୍ସନା କରିଛନ୍ତି । ସେମାନେ ନାନା ପ୍ରବୋଧନଦେବା ଫଳରେ କଂସ ମନରେ ଆଶା ସଞ୍ଚାର ହୋଇଛି ।

ତା' ପରଦିନ ନନ୍ଦ, ଯଶୋଦା ଉପହାର ଧରି କଂସକୁ ଭେଟିଛନ୍ତି । କୃଷ୍ଣ ଆରଦ୍ୱାରରେ ପହଞ୍ଚିବାମାତ୍ରେ ମାହୁନ୍ତ ହସ୍ତୀ ଚାଳନା କରିଛି । ହସ୍ତୀ ଓ କୃଷ୍ଣଙ୍କ ମଧ୍ୟରେ ଯୁଦ୍ଧ ହୋଇଛି । ଏଣେତେଣେ ଧାଆଁ ଦଉଡ଼, ପେଟତଳେ ଲୁଚିବା ପ୍ରଭୃତି ଛଳନା କୃଷ୍ଣ କରିଛନ୍ତି । ଶେଷରେ ବେଣୁଦ୍ୱାରା ହସ୍ତୀର ଲଲାଟକୁ ଆଘାତ କରିବା ଫଳରେ ତା'ର ପ୍ରାଣବାୟୁ ଉଡ଼ିଯାଇଛି ।

ମୁଷ୍ଟିକ ଓ ଚାଣୂର ମଧ୍ୟ କୃଷ୍ଣ ଓ ବଳରାମଙ୍କୁ ଆକ୍ରମଣ କରିଛନ୍ତି । ଏମାନଙ୍କ ମଧ୍ୟରେ ମଲ୍ଲ ଯୁଦ୍ଧ ହୋଇଛି । ବିଂଶ ଛାନ୍ଦରେ ଏହି ମଲ୍ଲ ଯୁଦ୍ଧର ବର୍ଣ୍ଣନା ଅଛି –

"ଏମନ୍ତ ଭାବି କରେ ଗାଢ଼ ସମର
ମୁଷ୍ଟିକି ମୁଷ୍ଟି ପଡ଼ି ତାଳ କରନ୍ତେ କମ୍ପେ ତିନିପୁର
ବାହେ ଭିଡ଼ାଭିଡ଼ି ମୁଣ୍ଡେ କୋଡ଼ାକୋଡ଼ି ହିଆକୁ ହିଆ ପ୍ରହାରନ୍ତି
ଜାନୁକୁ ଜାନୁ ପାଦକୁ ପାଦ ଛନ୍ଦି ପଡ଼ି ଉଠି ପୁଣି ଗଡ଼ନ୍ତି
ନାସିକା, ପବନ କି ଅବା ବତାସ
ଅଙ୍ଗକୁ ଅଙ୍ଗ ଠେସାଠେସି ହୁଅନ୍ତେ
ବାହାର ହୁଅଇ ହୁତାଶ ।"

ଏ ଯୁଦ୍ଧ ବର୍ଣ୍ଣନା ଅତି ଜୀବନ୍ତ ହୋଇଛି । ଯୁଦ୍ଧ ଆଖି ଆଗରେ ଅଭିନୀତ ହେଲା ପରି ଲାଗେ । ଭାଷା ମଧ୍ୟ ଅତି ସରଳ । ଏହା ପାଠକକୁ ଅଭିଭୂତ କରେ ।

କଂସ କାବ୍ୟର ପ୍ରତିନାୟକ । ତା'ର ବୀରତ୍ୱ ଅସୀମ । ସେ କିନ୍ତୁ କୃଷ୍ଣଙ୍କୁ ପ୍ରତ୍ୟକ୍ଷ ଯୁଦ୍ଧରେ ହରାଇ ପ୍ରାଣ ନାଶ କରିବାକୁ ଚାହିଁ ନାହିଁ । କୂଟ କପଟ କରି ତାଙ୍କର ନିଧନପାଇଁ ସମସ୍ତ ଉଦ୍ୟମ କରିଛି । କେଉଁଠାରେ ତା'ର ବୀରତ୍ୱ ପ୍ରକଟିତ ହୋଇ ନାହିଁ । କାବ୍ୟର ମୁଖ୍ୟ ବିଷୟବସ୍ତୁ ବୀରରସ ହେଲେ ମଧ୍ୟ କାବ୍ୟରେ ଏହା ମୁଖ୍ୟ ସ୍ଥାନ ଅଧିକାର କରି ନାହିଁ ।

ମଲ୍ଲମାନେ ମୃତ୍ୟୁବରଣ କରିଛନ୍ତି । ଏଥିରେ କଂସର କ୍ରୋଧ ବହୁଗୁଣିତ ହୋଇଛି । ସେ ନନ୍ଦ, ଯଶୋଦା ପ୍ରଭୃତିଙ୍କୁ ମଞ୍ଚ ଉପରେ ହତ୍ୟା କରିବାକୁ ଆଦେଶ ଦେଇଛି । କୃଷ୍ଣ ଆଉ ନୀରବ ରହିପାରି ନାହାନ୍ତି । ମଞ୍ଚା ଉପରକୁ ଉଠି ଯାଇଛନ୍ତି । କଂସ ଖଣ୍ଡା ଧରି କୃଷ୍ଣଙ୍କ ଆଗକୁ ମାଡ଼ି ଆସିଛି । କୃଷ୍ଣ କୋପମୂର୍ତ୍ତି ହୋଇ କଂସର କେଶ ବାମ ହାତରେ ଧରିବାକୁ ଗଲାବେଳେ କଂସ ଦୈତ୍ୟାରିଙ୍କ ମୁଖ ଦେଖିଛି । ସଙ୍ଗେ ସଙ୍ଗେ ତା'ର ପ୍ରାଣବାୟୁ ଉଡ଼ିଯାଇଛି । କବି ଏହା ୨୨ ଛାନ୍ଦରେ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି, ଯଥା –

''ଧାଇଁ ପୀତବାସ ବାମକରେ କେଶ
ଧଇଲେ ହୋଇ କୋପ ମୂର୍ତ୍ତି
ଦଇତ ଦଇତାରି ମୁଖ ଅନାଇଁ
ଜୀବନ ଛାଡ଼ିଲା ତଡ଼ତି ।''

କଂସ ନିଧନରେ ତା'ର ରାଣୀମାନେ ଶୋକ କରିଛନ୍ତି । ନାରୀମାନଙ୍କର ବିକଳ କାନ୍ଦଣା ଶୁଣି ଦୟାସାଗର କୃଷ୍ଣ ମଧ୍ୟ କପଟରେ କାନ୍ଦିଛନ୍ତି –

''ତୁମ୍ଭମାନଙ୍କର କିସ ଗଲା
ବୀରବର ମାମୁଁ ମୋର ମଲା,
କାହିଁ ପଶିବି, କେଜାଣି ପଳାଇବି,
ମୋତେ ଅନ୍ଧାର ଦିଶିଲାରେ ଦଇବ ।''

ବିଧବା ରାଣୀମାନେ ଏଥିରେ ତୁନି ହୋଇଛନ୍ତି । କୃଷ୍ଣ ମଧ୍ୟ ମାମୁଙ୍କ ଶବ ସତ୍କାର କରିଛନ୍ତି । ମାତାପିତାଙ୍କୁ ବନ୍ଧନରୁ ମୁକ୍ତ କରିଛନ୍ତି । ଉଗ୍ରସେନଙ୍କୁ ମଥୁରା କଟକର ରାଜା କରନ୍ତି ।

ମଥୁରାରେ କୃଷ୍ଣ କେତେ କାଳ ଅତିବାହିତ କରନ୍ତି । ଗୋପୀମାନଙ୍କର କଥା ତାଙ୍କ ମନରେ ଉଦୟ ହୋଇଛି । ପ୍ରିୟ ସ୍ମୃତି ତାଙ୍କୁ ବିଚଳିତ କରିଛି । ସକାଳ ହୁଅନ୍ତେ ସେ ଉଦ୍ଧବଙ୍କୁ ଡାକି ତାଙ୍କୁ ପ୍ରିୟ ସଖା ଓ ଗୋପୀମାନଙ୍କ ପାଖକୁ

ପଠାଇଛନ୍ତି । ଉଦ୍ଧବ ନିଜକୁ ଧନ୍ୟ ମନେ କରିଛନ୍ତି ଓ ଗୋପପୁରକୁ ଯାତ୍ରା କରିଛନ୍ତି ।

ଉଦ୍ଧବ ମାତା ଯଶୋଦାଙ୍କୁ ଭେଟିଛନ୍ତି । ଯଶୋଦା କୃଷ୍ଣଙ୍କ ଗୁଣ ସ୍ମରି ଶୋକ କରିଛନ୍ତି । ଉଦ୍ଧବ ତାଙ୍କୁ ସାନ୍ତ୍ୱନା ଦେଇ କହିଛନ୍ତି -

''ସେହି ରୂପେ ଜଳ ସ୍ଥଳ ଆକାଶରେ ପୂରିଛି ଗୋବିନ୍ଦ
ତାହା ନ ଥିବାରୁ ସଂସାରେ ନାହାନ୍ତି ବିଅର୍ଥେ ନ କାନ୍ଦ ।''

ଯଶୋଦା ଏଥିରେ ଆହତ ହୋଇଛନ୍ତି । କୃଷ୍ଣ ତାଙ୍କ ପୁଅ ବୋଲି କହି ଉଠିଛନ୍ତି । ବ୍ରହ୍ମ ଓ କୃଷ୍ଣ ଏକ ବୋଲି ଉଦ୍ଧବ ପୁଣି କହିବାରେ ଯଶୋଦା କ୍ରୋଧ ପ୍ରକାଶ କରିଛନ୍ତି –

''ବ୍ରହ୍ମ ବୋଲି କେତେ ବୋଲ
ତାକୁ ସେ ମୋର କୁମର
× × ×
ଯହିଁ ଥିବେ ବ୍ରହ୍ମଜ୍ଞାନୀ ଲୋକେ
ତାହାଙ୍କୁ ବୁଝାଅ ।''

ଉଦ୍ଧବ କୃଷ୍ଣତତ୍ତ୍ୱ ବଖାଣିବାକୁ ବସନ୍ତେ ଯଶୋଦା କୋପ କରିଛନ୍ତି –

''ଶୁଣି ଏ ବଚନ, ଯଶୋଦା ଶ୍ରବଣ ଛୁଇଁଲେ କାତରେ
ହିଆ ଦମ ଦମ, ମୁଖ ତମ ତମ, ବୋଲନ୍ତି କୋପରେ,
ଆହେ ଉଦ୍ଧବ, କି ଗୁଡ଼ାଏ ବୋଇଲ, ପୁତ୍ରକୁ ମୋହର
× × ×
ସାକ୍ଷାତ ଜଠରୁ ଜନମ କରିଛି ଏ ଗଲା ମିଛକୁ
ବ୍ରହ୍ମ ବୋଲି କେତେ ଉଚ୍ଚ କରୁଅଛ ମୋର ବତ୍ସକୁ
ଦେଖିବ କି ଏଇକ୍ଷଣି ମଥୁରାକୁ ଯିବି ବହନ
କାଖରେ ବସାଇ ଘେନିଆସିବି ମୁଁ ମଦନମୋହନ ।''

ଜ୍ଞାନ ଭକ୍ତିଠାରୁ ବାତ୍ସଲ୍ୟ ପ୍ରେମ ଯେ ଶ୍ରେଷ୍ଠ, ତାହାହିଁ କବି ଏଥିରେ ଦର୍ଶାଇଛନ୍ତି ।

ସେହିପରି ଉଦ୍ଧବ ଓ ଗୋପୀମାନଙ୍କ ମଧ୍ୟରେ ହୋଇଥିବା ତାତ୍ତ୍ୱିକ ଆଲୋଚନାକୁ କବି ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । କେତେଦିନେ କୃଷ୍ଣ ମଥୁରାରୁ ଆସିବେ ବୋଲି ଗୋପୀମାନେ ଉଦ୍ଧବଙ୍କୁ ପଚାରିଛନ୍ତି –

''ସତ କହ କେତେ ଦିନେ ଆସିବେ ଶ୍ରୀଧର
କେତେ ଦିନ ଯାଏଁ ପିଣ୍ଡେ ପ୍ରାଣ ରଖିଥିବୁ,
ଭକତ ଚରଣ କହେ ନଇଲେ ମରିବୁ ।''

ଅଳ୍ପ ଦିନ ମଧ୍ୟରେ କୃଷ୍ଣ ଆସିବେ ବୋଲି ଉଦ୍ଧବ କହିଛନ୍ତି । ପୁଣି ଗୋପୀମାନଙ୍କୁ ବ୍ରହ୍ମକୁ ଧ୍ୟାନ କରିବାକୁ ଉପଦେଶ ଦେଇଛନ୍ତି । କବିଙ୍କ ଭାଷାରେ –

''ସେ ବ୍ରହ୍ମଙ୍କୁ କର ଧ୍ୟାନ, କାମନା ହେଉ ଦହନ,
ହୃଦୟରେ ରଖିବ ନିରଞ୍ଜନ ।
ଏ ଯେ ମିଥ୍ୟା କଳେବର କ୍ଷଣିକେ ହୁଏ ଭଙ୍ଗୁର
ଏଣୁ କହୁଅଛି ତାଙ୍କୁ ଚିହ୍ନ
ହେ ଗୋପୀମାନେ
ଷଡ଼ଚକ୍ର ଭେଦିଲେ ପାଇବ,
ଚକ୍ଷୁ ବୁଜି ହୃଦରେ ଚାହିଁବ ଗୋ ।''

ଉଦ୍ଧବଙ୍କ ଜ୍ଞାନମାର୍ଗ ଉପଦେଶ ଶୁଣି ଗୋପୀମାନେ ଦୁଃଖ ପ୍ରକାଶ କରି ଉଦ୍ଧବଙ୍କୁ କହିଛନ୍ତି –

''ଏ ଯେଉଁ ଜ୍ଞାନକୁ ବୁଝାଇଲ,
କ୍ଷୀରଭାଣ୍ଡେ ଦଧିଦେଲେ ନାଶ ଯାଇ ସେହୁ ଭଲେ
ଜ୍ଞାନ କଥା କିପାଇଁ କହିଲ ।
ହେ ହରି ଦୂତ
ଆମ୍ଭର ଭକତ ରଙ୍ଗାଧର
ଜ୍ଞାନ ନଦୀ ତହିଁ ସମ କର
ଜ୍ଞାନ ରସହୀନ
ଆମ୍ଭକୁ ସେମାନ ନ ରୁଚଇ
ହେ ହରିଦୂତ !''

ପୁଣି ଗୋପୀମାନେ ଉଦ୍ଧବଙ୍କୁ ପ୍ରଶ୍ନ କରିଛନ୍ତି –

''ତୁମ୍ଭେ ଯେ ବୋଇଲ ସର୍ବ ହୃଦରେ ବ୍ରହ୍ମର ଭାବ
ତେବେ ଆଉ ଭଜୁଛୁ କାହାକୁ,
ତୁମ୍ଭ ଶରୀର ଅଛି ବୋଇଲ ପରମ ପକ୍ଷୀ
କେହି ଜନ ପେଷିଛି ତୁମ୍ଭଙ୍କୁ ହେ,
କାହା ବୋଲେ ଗୋପକୁ ଆଇଲ,
କାହା ଆଜ୍ଞା ଆମ୍ଭକୁ କହିଲ ?

ଗୋପୀମାନେ ତତ୍ତ୍ୱ ଶୁଣିବାକୁ ଆଗ୍ରହୀ ହୋଇ ନାହାନ୍ତି । ସେମାନେ କେବଳ ଚାହିଁଛନ୍ତି କୃଷ୍ଣଙ୍କୁ, ତାଙ୍କର ପ୍ରେମିକ କୃଷ୍ଣଙ୍କୁ – ଯାହା ସହିତ ତାଙ୍କର ମଧୁର ସମ୍ପର୍କ ରହିଛି !

ଯଶୋଦା ଓ ଗୋପୀମାନଙ୍କ ସହିତ କଥାବାର୍ତ୍ତା ହେବା ପରେ ଉଦ୍ଧବଙ୍କ ମନ ଭକ୍ତିମାର୍ଗ ଆଡ଼କୁ ଯାଇଛି । ଜ୍ଞାନ ମାର୍ଗଠୁ ଭକ୍ତି ମାର୍ଗ ବଡ଼ ବୋଲି ସେ ସ୍ୱୀକାର କରିଛନ୍ତି –

"ଶୁଣ ଗୋ ଗୋବିନ୍ଦ ପ୍ରିୟେ କୃଷ୍ଣଭକ୍ତି ତୁମ୍ଭ ଦେହେ
ଯେଣୁ ଅଛି ତେଣୁ ତୁମ୍ଭେ ବଡ଼
ଯେଉଁ ପ୍ରେମ ଅତିହିଁ ନିଗୂଢ଼, ଗୋ ଗୋପୀମାନେ
ତୁମ୍ଭେ ତା' କରୁଛ ଦେହ ବହି,
ତୁମ୍ଭ ସମ ହେବୁ ଆମ୍ଭେ କାହିଁ ଗୋ !

ଶେଷରେ ଉଦ୍ଧବ ଭକ୍ତିମାର୍ଗୀ ହୋଇଛନ୍ତି –

"ଏହା ଭାଷି ପ୍ରେମଭରେ ପୁଣି ଗୋପୀ ପାଦ ଧରେ
ପ୍ରେମେ ତନୁ କମ୍ପେ ଥରହର
ଆନନ୍ଦେ ବୋଲି ହରି ଉଠେ ନାଚେ କର ଟୋଳି
ପ୍ରେମ ମଦେ ହେଲା ଜରଜର, ସେ ହରିଦୂତ
ଗୋପୀଙ୍କ ବଦନ ଚାହିଁ କାନ୍ଦେ,
ଜ୍ଞାନ ଛାଡ଼ି ଭକ୍ତି ପାଦେ ବନ୍ଦେ ସେ ।"

ଉଦ୍ଧବ ଶେଷରେ ଗୋପପୁରକୁ ଯାଇ ଗୋପୀମାନଙ୍କ ମେଳରେ ରହି ସେମାନଙ୍କ ପରି ଆଚରଣ କରିବାକୁ ପସନ୍ଦ କରିଛନ୍ତି । ଉଦ୍ଧବ ଭାବ ଗଦ୍‌ଗଦ ହୋଇ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିଛନ୍ତି –

"ଏବେ କୃପାକର ଆଜ୍ଞା ଦିଅ ଗିରିଧର
ଫେରିଯିବି ବୃନ୍ଦାବନ, ହେ ଦୀନବନ୍ଧୁ,
ଗୋପୀଙ୍କ ସଙ୍ଗରେ ବଞ୍ଚୁଥିବି,

× × ×

କରୁଥିବି ତାଙ୍କ କର୍ମ ସାଧୁଥିବି ତାଙ୍କ ଧର୍ମ
କାନ୍ଦୁଥିବି ତାଙ୍କର ପରାଏ
ହେଉଥିବି ତାଙ୍କ ବେଶ କରୁଥିବି ଅନ୍ତେ ବାସ
କରୁଥିବି ତବ ରୂପ ଧ୍ୟାୟେ, ହେ ଦୀନବନ୍ଧୁ,
କୃଷ୍ଣ ବୋଲି ଗାଉଥିବ ମୁଖେ ।"

ଉଦ୍ଧବଙ୍କର ଯଶୋଦା ଓ ଗୋପୀମାନଙ୍କ ସହିତ କଥୋପକଥନ 'ମଥୁରାମଙ୍ଗଳ' କାବ୍ୟର ଶ୍ରେଷ୍ଠ ଅଂଶ ବୋଲି ଡଃ ମାୟାଧର ମାନସିଂହଙ୍କ ସମେତ ବହୁ ଆଲୋଚକ ମତ ଦେଇଛନ୍ତି ।

## ମନ ଶିକ୍ଷା

ଏହା ତ୍ରୟୋବିଂଶ ଅଧ୍ୟାୟ ବିଶିଷ୍ଟ । ଏଥିରେ ଶ୍ରୀକୃଷ୍ଣ ଓ ଶ୍ରୀଚୈତନ୍ୟଙ୍କ ମହିମା କୀର୍ତ୍ତନ ହୋଇଅଛି । ପ୍ରଥମ ଅଧ୍ୟାୟରେ କବି ଗୁରୁ ବନ୍ଦନା କରିଛନ୍ତି । ଏହି ଗୁରୁ ହେଉଛନ୍ତି ନନ୍ଦନନ୍ଦନ ଶ୍ରୀକୃଷ୍ଣ । ଗୁରୁଙ୍କୁ କୃଷ୍ଣ ରୂପେ ଭାବି ତାଙ୍କର ଭଜନ କରିବାପାଇଁ କବି ଉପଦେଶ ଦେଇଛନ୍ତି ।

ପ୍ରଥମ ଛାନ୍ଦରେ ଗୁରୁଙ୍କ ମାହାତ୍ମ୍ୟ ବର୍ଣ୍ଣିତ ଅଛି, ଯଥା –

''ତୁ ଏବେ ଗୁରୁ ଆଶ୍ରେ କର । ଏହାଙ୍କ ସଙ୍ଗତେ
ଗୁରୁଙ୍କୁ ଜାଣିବୁ ଗୋବିନ୍ଦ । ତୁଟିବ ଯେବେ ଭବବନ୍ଧ ।''

ସମ୍ପୂର୍ଣ୍ଣ ବା ଅସମ୍ପୂର୍ଣ୍ଣଭାବେ କୃଷ୍ଣଙ୍କ ନାମ ଉଚ୍ଚାରଣ କଲେ ଯମ ଦଣ୍ଡରୁ ରକ୍ଷା ମିଳେ । କବି ଦ୍ୱିତୀୟ ଛାନ୍ଦରେ ଏହା କହିଛନ୍ତି –

''ଶ୍ରୀକୃଷ୍ଣ ନାମ ଭଜ ନିତି । ନିର୍ମଳ କରି ତୋର ମତି ।''

ଏହାପରେ କବି ଶ୍ରୀଚୈତନ୍ୟଙ୍କ ମହିମା କୀର୍ତ୍ତନ କରିଛନ୍ତି । ଶ୍ରୀକୃଷ୍ଣ କଳି ଯୁଗରେ ଶ୍ରୀଚୈତନ୍ୟ ଭାବେ ଜନ୍ମଗ୍ରହଣ କରିଛନ୍ତି ବୋଲି ଷଷ୍ଠ ଅଧ୍ୟାୟରେ ବ୍ୟକ୍ତ କରିଛନ୍ତି, ଯଥା

''ପୁଣ, ଶୁଣିଲୁଟି କିରେ ମାନସ । ଶ୍ରୀକୃଷ୍ଣ କେମନ୍ତ ପୁରୁଷ ।
ସେହିଟି କଳିଯୁଗେ ଆସି । ଚୈତନ୍ୟରୂପେ ପରକାଶି ।''

ଭକ୍ତଚରଣ ଶ୍ରୀଚୈତନ୍ୟଙ୍କୁ କୃଷ୍ଣଙ୍କ ପୂର୍ଣ୍ଣ ଅବତାର ଭାବେ ଗ୍ରହଣ କରିଛନ୍ତି । କୃଷ୍ଣ ଓ ଚୈତନ୍ୟଙ୍କୁ ଏକ ଓ ଅଭିନ୍ନ ବୋଲି ଜ୍ଞାନ କରିବା ଭକ୍ତମାନଙ୍କ ପକ୍ଷେ ଶ୍ରେୟ ବୋଲି କହିଛନ୍ତି ।

ଭକ୍ତଚରଣଙ୍କ ମତରେ ଶ୍ରୀଚୈତନ୍ୟ ହେଉଛନ୍ତି କଳ୍ପଦ୍ରୁମ । ଏହାର ଆବିର୍ଭାବ ହେଉଛି ଶ୍ରୀ ଧାମ ନବଦ୍ୱୀପ । ଏହି ଦ୍ରୁମ ନିଜ ଇଚ୍ଛା-ଜଳ ଦ୍ୱାରା ବୃଦ୍ଧି ପାଆନ୍ତି । ଏହି ଦ୍ରୁମରେ ରାଧାକୃଷ୍ଣ ବିହଙ୍ଗମ ଯୁଗଳଭାବେ ନୀଡ଼ ରଚନା କରିଥାନ୍ତି । ଏହା ସଂସାରର ଶ୍ରାନ୍ତ କ୍ଳାନ୍ତ ବ୍ୟକ୍ତିମାନଙ୍କୁ ଛାୟା ପ୍ରଦାନ କରିଥାଏ । ଏହାର ବହୁ ଶାଖା ପ୍ରଶାଖାମାନ ଅଛି । ଏହାର ଫଳ ହେଲା ପ୍ରେମ ଭକ୍ତି । କଳ୍ପ ଦ୍ରୁମ ତିନି ନାମରେ ତିନି ସ୍ଥାନରେ ବିରାଜିତ । ପୁରୀ ଶ୍ରୀକ୍ଷେତ୍ରରେ ଏହା ବାଞ୍ଛାବଟ । ଗୟାରେ ତାହା ଅକ୍ଷୟବଟ । ବୃନ୍ଦାବନରେ ତାହା କଳ୍ପବଟ ନାମରେ ପରିଚିତ । ସେହିପରି ଶ୍ରୀକୃଷ୍ଣ ବାଲ୍ୟକାଳ, ନବଦ୍ୱୀପରେ, ପୌଗଣ୍ଡ ବୃନ୍ଦାବନରେ ଓ ଏହାପରେ ଶ୍ରୀକ୍ଷେତ୍ରରେ କୃଷ୍ଣନାମରେ ପ୍ରେମ ବିତରଣ କରିଛନ୍ତି ।

ଏହା ବ୍ୟତୀତ କବି ଏହି ଗ୍ରନ୍ଥରେ ପଞ୍ଚବିଧ ସଖୀ, ନାମ ମହିମା, ତୁଳସୀ ମହିମା, ଅଷ୍ଟପ୍ରକାଶ, ଏକାଦଶୀ ଇତ୍ୟାଦିର ବର୍ଣ୍ଣନା କରିଛନ୍ତି ।

ମନଶିକ୍ଷା ବୈଷ୍ଣବମାନଙ୍କର ଏକ ଅତି ଉପାଦେୟ ଗ୍ରନ୍ଥ । କବି ଏଥିରେ ବୈଷ୍ଣବ ସଂପ୍ରଦାୟର ମୂଳ ତଥ୍ୟ, ତତ୍ତ୍ୱ ସମସ୍ତଙ୍କ ବୋଧଗମ୍ୟ ହେବାଭଳି ଭାଷାରେ ପ୍ରକାଶ କରିଛନ୍ତି ।

## ମନବୋଧ ଚଉତିଶା

ଓଡ଼ିଆ ଭାଷାରେ ରଚିତ ଶହ ଶହ ଚଉତିଶା ମଧ୍ୟରେ ଭକ୍ତଚରଣଙ୍କ ରଚିତ 'ମନବୋଧ ଚଉତିଶା' ସବୁଠାରୁ ଲୋକପ୍ରିୟ । ଏହାର ଭାବ ଅତି ସରଳ ଓ ପ୍ରାଣସ୍ପର୍ଶୀ । ସଂସାର ଅନିତ୍ୟ । ମଣିଷ ଜୀବନ, ଯୌବନ, ଧନ, ସମ୍ପତ୍ତି ସବୁ ଅନିତ୍ୟ, ଏକମାତ୍ର ସତ୍ୟ ହେଉଛି ମୃତ୍ୟୁ । କବିଙ୍କ ଭାଷାରେ –

''କେତେ ଦିନକୁ ମନ କରିଛୁ ଆଣ୍ଟ
କି ଘେନି ଯିବୁ ତୋର ଛୁଟିଲେ ଘଟରେ ।

× × ×

ଗଲେଣି ତୋ ସଙ୍ଗରୁ ଯେତେକ ଜନ
ଗଣ୍ଠିରେ ବାନ୍ଧି ନେଲେ କେତେକେ ଧନରେ ।''

ପତ୍ନୀ, ପୁତ୍ର କେହି କାହାର ନୁହନ୍ତି । ବେଳ ପଡ଼ିଲେ ସମସ୍ତେ ଦୂରେଇ ଯିବେ । କବି ତେଣୁ ଚେତାଇ ଦେଇଛନ୍ତି –

''ଘଟ ଛୁଟିଲେ ତୋତେ ବୋଲିବେ ଭୂତରେ
ଘର' ଘରଣୀ ଦେହ କିଳାଉଥିବେ
ଘେନି ବନ୍ଧୁ କୁଟୁମ୍ବ ଶୁଦ୍ଧ ହୋଇବେ ରେ ।''

ସବୁ ମାୟା ମମତା ତେଣୁ ତ୍ୟାଗ କରି କୃଷ୍ଣଙ୍କ ନିକଟରେ ନିଜକୁ ସମର୍ପିଦେବାକୁ କବି କହିଛନ୍ତି –

''ଜନମ ହେଲେ ପ୍ରାଣୀ ଅବଶ୍ୟ ମରି
ଯଶ ରଖିବୁ ଯେବେ ଭଜ ଶ୍ରୀହରିରେ ।''

× × ×

ଶ୍ରୀକୃଷ୍ଣ ନାମ ଗୋଟି କର ଭଜନ
ଶ୍ରୀକୃଷ୍ଣ ପଦ୍ମ ପାଦେ କର ତୁ ଧ୍ୟାନରେ ।''

ଗଭୀର ତତ୍ତ୍ୱଜ୍ଞାନକୁ କବି ସହଜ ଓ ସରଳ ଭାବରେ ପ୍ରକାଶ କରିଥିବାରୁ ଏହା ସର୍ବଜନାଦୃତ ହୋଇପାରିଛି । ଏହାର ଅନେକ ପଦ ପ୍ରାୟ ସମସ୍ତେ ଗାଇପାରିବେ ।

## କଳା କଳେବର ଚଉତିଶା

ଏଥିରୁ ଶ୍ରୀକୃଷ୍ଣଙ୍କ ମଥୁରା ଗମନ କାଳୀନ ଦୃଶ୍ୟ ବର୍ଣ୍ଣନା କରାଯାଇଛି । ଏହାର ଭାଷା ମଧ୍ୟ ସରଳ, ସରସ ଓ ମଧୁର । ଏହାର ଆରମ୍ଭ ମଧ୍ୟ ଅତି ଚମତ୍କାର, ଯଥା –

''କଳା କଳେବର କହ୍ନେଇ ସଙ୍ଗେ ରୋହିଣୀ ସୁତ
କରନ୍ତି ମଥୁରା ବିଜୟ ଦାଣ୍ଡେ ଦେଖ ସଙ୍ଗାତ ।''

ଏହା ଚାଟଶାଳୀ ପାଠ ଅନ୍ତର୍ଭୁକ୍ତ ଥିଲା । ପିଲାମାନେ ଏହାକୁ ମୁଖସ୍ଥ କରି ଆନନ୍ଦ ମନରେ ଗାଇଥାନ୍ତି । ଯୋଗୀମାନେ ମଧ୍ୟ କେନ୍ଦରାରେ ଏହାକୁ ଗାଇଥାନ୍ତି । ଏହା ଓଡ଼ିଆ ସାହିତ୍ୟର ଏକ ଅନନ୍ୟ ସୃଷ୍ଟି ।

## ଗୋପମଙ୍ଗଳ

ଗୋପପୁରରେ ଶ୍ରୀକୃଷ୍ଣ ଅବସ୍ଥାନ କଲାବେଳେ ଯେଉଁ ଲୀଳା କରିଥିଲେ ତାହା ଏଥିରେ ବର୍ଣ୍ଣିତ ଅଛି । ଏହା କିନ୍ତୁ ଏପର୍ଯ୍ୟନ୍ତ ଲୋକଲୋଚନକୁ ଆସି ନାହିଁ ।

## ଚିକିତ୍ସାଶାସ୍ତ୍ର

କବି ଦୁଇଟି ଚିକିତ୍ସାଶାସ୍ତ୍ର ରଚନା କରିଥିଲେ । ତା'ର ସନ୍ଧାନ ଏ ପର୍ଯ୍ୟନ୍ତ ମିଳି ନାହିଁ । ନାନା ପ୍ରକାର ରୋଗ, ତାହାର ଚିକିତ୍ସା ଓ ଔଷଧ ପ୍ରଭୃତିର ବର୍ଣ୍ଣନା ଅଛି ।

## ଶେଷ ଜୀବନ

ଭକ୍ତଚରଣ ୮୫ ବର୍ଷ ପର୍ଯ୍ୟନ୍ତ ଜୀବିତ ଥିବାର ଜଣାଯାଏ । ମୃତ୍ୟୁର ଆଠ ଦିନ ପୂର୍ବରୁ ସେ ବୋଲଗଡ଼ରେ ଥିଲେ । ସେ ସେଠାରୁ ସଂକୀର୍ତ୍ତନ କରି ପୁରୀ ଶ୍ରୀକ୍ଷେତ୍ରକୁ ଗଲେ ଓ ସେଠାରେ ଥିବା ଦୁଃଖୀଶ୍ୟାମ ମଠରେ ରହିଲେ । ୧୮୧୩ ମସିହା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ କୀର୍ତ୍ତନ କରୁଥିବା ଅବସ୍ଥାରେ ତାଙ୍କର ମହାପ୍ରୟାଣ ହେଲା । ୧୮୧୪ ମସିହାରେ ସେ ଦେହତ୍ୟାଗ କରିଥିଲେ ବୋଲି ଆଲୋଚକ ଫକୀର ଦାସ ମତ ଦିଅନ୍ତି ।

ଭକ୍ତଚରଣ ବହୁ କାବ୍ୟକବିତା ରଚନା କରି ନାହାନ୍ତି । ସେ ଥିଲେ ମୁଖ୍ୟତଃ ଜଣେ ଭକ୍ତ । ଶ୍ରୀକୃଷ୍ଣଙ୍କର ମାହାତ୍ମ୍ୟକୁ କାବ୍ୟର ଛତ୍ରେ ଛତ୍ରେ ପ୍ରକାଶ କରିଛନ୍ତି । ପୁଣି ଭକ୍ତି ମଧ୍ୟରେ ଜ୍ଞାନମିଶ୍ରା ଭକ୍ତି ଅପେକ୍ଷା ପ୍ରେମ ଭକ୍ତିକୁ ସେ ପ୍ରାଧାନ୍ୟ ଦେଇଛନ୍ତି । 'ମଥୁରାମଙ୍ଗଳ' କାବ୍ୟରେ ସେ ପ୍ରେମ ଭାବକୁ ମାନବିକ ଦୃଷ୍ଟିରେ ଯେପରି ରୂପ ଦେଇଛନ୍ତି ତାହା ତାଙ୍କୁ ଯେ ପ୍ରେମିକ କବିର ଗୌରବ ଆଣି ଦେଇଛନ୍ତି, ଏଥିରେ ଦ୍ୱିମତର ଅବକାଶ ନାହିଁ ।



# କବିକଳହଂସ
# ଗୋପାଳକୃଷ୍ଣ

ରୀତି ଯୁଗର ଦ୍ୱିତୀୟାର୍ଦ୍ଧରେ ଯେଉଁ କବିମାନେ ବୃହତ୍ କାବ୍ୟ ସୃଷ୍ଟି କରିବାରେ ମନ ନ ଦେଇ କ୍ଷୁଦ୍ର କ୍ଷୁଦ୍ର ଗୀତ ରଚନା ଦିଗରେ ମନୋନିବେଶ କଲେ, ସେମାନଙ୍କ ମଧ୍ୟରେ ଗୋପାଳକୃଷ୍ଣ ହେଉଛନ୍ତି ଅନ୍ୟତମ । ସାହିତ୍ୟ କ୍ଷେତ୍ରରେ ରସର ପ୍ଲାବନ ସୃଷ୍ଟି କରିବା ସଙ୍ଗେ ସଙ୍ଗେ ସେ ଉତ୍କଳର ପ୍ରାସାଦବାସୀଙ୍କଠାରୁ ଆରମ୍ଭ କରି ଦୀନ କୁଟୀରବାସୀ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରାଣରେ ଭାବ, ଭାଷା ଓ ସ୍ୱରର ଅମନ୍ଦ ମନ୍ଦାକିନୀ ଛୁଟାଇଛନ୍ତି । ସେଥିପାଇଁ ତାଙ୍କୁ ଉତ୍କଳ ସାହିତ୍ୟ କୁଞ୍ଜର କୋକିଳ କଳହଂସ ନାମରେ ନାମିତ କରିବା ଯଥାର୍ଥ ।

## ଜନ୍ମ ଓ ବାଲ୍ୟଶିକ୍ଷା

ଦକ୍ଷିଣ-ଓଡ଼ିଶା ସଂସ୍କୃତିର କେନ୍ଦ୍ରସ୍ଥଳୀ ପୁଣ୍ୟତୋୟା ମହେନ୍ଦ୍ରତନୟା ନଦୀର ଉତ୍ତର ତୀରସ୍ଥ ପାରଳାଖେମୁଣ୍ଡି ସହରରେ ଏକ ସଂଭ୍ରାନ୍ତ କରଣ ପରିବାରରେ ଗୋପାଳକୃଷ୍ଣ ଅଷ୍ଟାଦଶ ଶତାବ୍ଦୀର ଶେଷଭାଗରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ବନବାସୀ ପଟ୍ଟନାୟକ ଓ ମାତାଙ୍କ ନାମ ଲଳିତାଦେବୀ । ତାଙ୍କ ପୂର୍ବପୁରୁଷ ଯାଜପୁର ନିକଟସ୍ଥ କଂସାକବାଟ ଗ୍ରାମରୁ ଗଜପତି ମହାରାଜାଙ୍କ ଗହଣରେ ପାରଳାଖେମୁଣ୍ଡିକୁ ଆସିଥିଲେ । ସେ ରାଜଦରବାରରେ ଜଣେ

ପାଞ୍ଜିଆ କରଣ ଭାବେ ନିଯୁକ୍ତ ଥିଲେ । ତାଙ୍କୁ ଗୁରିଙ୍ଗା ସମେତ ୧୯ ଗୋଟି ଗ୍ରାମ ଜାଗିରି ସୂତ୍ରେ ମିଳିଥିଲା । ପିତା ବନବାସୀ ଅତିଶୟ ଭକ୍ତିପରାୟଣ ଥିଲେ । ସେ ରାଜକାର୍ଯ୍ୟ ସମ୍ପାଦନ ଉତ୍ତାରେ ଅବଶିଷ୍ଟ ସମୟ ହରିନାମ କୀର୍ତ୍ତନରେ କଟାଉଥିଲେ । ମାତା ଲଳିତାଦେବୀ ମଧ୍ୟ ଅତୀବ ଧର୍ମପରାୟଣା ଥିଲେ । ପ୍ରତ୍ୟହ ତୁଳସୀ ସେବା ଓ ଭାଗବତ ପାଠ କରୁଥିଲେ । ଆଷାଢ଼ ମାସ ଶୁକ୍ଳ ପକ୍ଷ ପ୍ରତିପଦ ଦିନ ଜଗନ୍ନାଥ ମହାପ୍ରଭୁଙ୍କର ନେତ୍ରୋତ୍ସବ ଦିନ ଗୋପାଳକୃଷ୍ଣ ଭୂମିଷ୍ଠ ହୋଇଥିଲେ । କଥିତଅଛି ଯେ ତାଙ୍କ ଜନ୍ମ ସାଙ୍ଗେ ସାଙ୍ଗେ ସୂତିକା ଘରେ ବିଦ୍ୟୁତ୍ ପରି ଆଲୋକ ରଶ୍ମି ଚାରିଆଡ଼େ ଖେଳିଯାଇଥିଲା । ବଡ଼ ହେଲେ ଗୋପାଳକୃଷ୍ଣ ଯେ ଅସାଧାରଣ ବ୍ୟକ୍ତି ହେବେ, ଏଥିରୁ ତା'ର ସୂଚନା ମିଳିଥିଲା ।

ବନବାସୀଙ୍କର ତିନି ପୁତ୍ର ଓ ତିନି କନ୍ୟା ଥିଲେ । କେବଳ ଗୋପାଳକୃଷ୍ଣଙ୍କୁ ଛାଡ଼ି ସମସ୍ତେ ମୃତ୍ୟୁବରଣ କରିଥିଲେ । ତେଣୁ ଗୋପାଳକୃଷ୍ଣ ପିତାମାତାଙ୍କର ଅତି ଆଦରର ପାତ୍ର ହୋଇଥିଲେ ।

ସାତ ବର୍ଷ ବୟସରେ ଗୋପାଳକୃଷ୍ଣ ବିଦ୍ୟାଶିକ୍ଷା ଆରମ୍ଭ କଲେ । ଏ ଦିଗରେ କିନ୍ତୁ ତାଙ୍କର କୌଣସି ଆଗ୍ରହ ଦେଖାଗଲା ନାହିଁ । ସେ ଗାଈଗୋରୁ ଚରିବାକୁ ଯାଉଥିଲେ ଓ ଖେଳିବୁଲି ଦିନ କଟାଉଥିଲେ । ଶୈଶବରୁ କିନ୍ତୁ କଣ୍ଠରେ ତୁଳସୀ ମାଳା ଓ କପାଳରେ ତିଳକ ଧାରଣ କରିବାକୁ ସୁଖ ପାଉଥିଲେ । ଯେଉଁଠାରେ ଭଜନ, କୀର୍ତ୍ତନ ହେଉଥିଲା, ସେଠାକୁ ସେ ଯାଉଥିଲେ ଓ ତାହାକୁ ଏକାଗ୍ର ଚିତ୍ତରେ ଶୁଣୁଥିଲେ । ଦିନେ ତାଙ୍କ ବାସଗୃହ ନିକଟରେ ପଣ୍ଡିତମାନଙ୍କ ଏକ ସଭା ହୋଇ 'ଶ୍ରୀ ବିଦଗ୍ଧ ମାଧବ' ନାଟକର ଚର୍ଚ୍ଚା ହେଉଥିଲା । କୌଣସି କାରଣରୁ ସେ ପିତାଙ୍କ ନିକଟକୁ ଯାଇଥିଲେ । ତାଙ୍କର ଅପୂର୍ବ ରୂପଲାବଣ୍ୟ, ଶିଷ୍ଟାଚାର ଓ ନମ୍ର ବ୍ୟବହାରରେ ପଣ୍ଡିତମାନେ ମୁଗ୍ଧ ହୋଇପଡ଼ିଲେ । ମାତ୍ର ବିଦ୍ୟାରେ ଅନୁରାଗ ନ ଥିବା ଜାଣି ତାଙ୍କୁ ମୃଦୁ ଭର୍ତ୍ସନା କଲେ । ଫଳରେ ସେ ପୁଣି ବିଦ୍ୟା ଶିକ୍ଷା ଆରମ୍ଭ କଲେ । ଅଳ୍ପ ସମୟରେ ସେ ପ୍ରାଥମିକ ଶିକ୍ଷା ଶେଷ କଲେ । ଏହାପରେ ସେ 'ମୁଗ୍ଧବୋଧ ବ୍ୟାକରଣ' ଓ 'ଅମରକୋଷ' ଅଭିଧାନ ପାଠ କଲେ । ଏହାର ଦୁଇ ବର୍ଷ ପରେ ଜଣେ ପଣ୍ଡିତଙ୍କ ପାଖେ 'କ୍ରମର ବ୍ୟାକରଣ' ଶେଷ କଲେ । କାଳିଦାସ, ଭବଭୂତି ପ୍ରଭୃତିଙ୍କ କାବ୍ୟ, ନାଟକାଦି ଅଧ୍ୟୟନ କଲେ । ତାଙ୍କର ସଂସ୍କୃତ ଗୁରୁଙ୍କର ନାମ ଥିଲା ବାଇକୋଳି ମହାପାତ୍ର । ପାରମ୍ପରିକ ଶିକ୍ଷା ଛଡ଼ା ସେ ଜ୍ୟୋତିଷଶାସ୍ତ୍ର ଓ ବୈଦ୍ୟଶାସ୍ତ୍ର ମଧ୍ୟ ଅଧ୍ୟୟନ କଲେ । ସଙ୍ଗୀତଶାସ୍ତ୍ରରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ତାଙ୍କର ସଙ୍ଗୀତଗୁରୁ ଥିଲେ କୂର୍ମନାଥ ବେବର୍ତ୍ତା ।

ଗୋପାଳକୃଷ୍ଣ ମଧ ଶରୀର ଚର୍ଚ୍ଚା କରୁଥିଲେ । ୧୫ବର୍ଷ ବୟସରୁ ୨୫ ବର୍ଷ ପର୍ଯ୍ୟନ୍ତ ସେ ପ୍ରତ୍ୟହ ବ୍ୟାୟାମ କରୁଥିଲେ । ସେ ଭୋର ଚାରିଟାରୁ ଶଯ୍ୟା ତ୍ୟାଗ କରୁଥିଲେ । ପ୍ରାୟ ଦେଢ଼ସେର ଗୋ-ଦୁଗ୍ଧ ପାନ କରୁଥିଲେ । ଏହାପରେ ବ୍ୟାୟାମ କରୁଥିଲେ । ଦିବା ଆଠଟା ସମୟରେ ଗୃହକୁ ଫେରୁଥିଲେ । କିଛି ସମୟ ବିଶ୍ରାମ ନେଲା ପରେ ଭୋଜନ କରୁଥିଲେ । ଅବସର ସମୟ ସେ କାବ୍ୟ, ନାଟକାଦି ଅଧ୍ୟୟନରେ କଟାଉଥିଲେ ।

## ବିବାହ

ପ୍ରାୟ କୋଡ଼ିଏ ବର୍ଷ ବୟସରେ ତାଙ୍କର ହାରାମଣିଦେବୀଙ୍କ ସହିତ ବିବାହ ହେଲା । ପତ୍ନୀ ମଧ ବିଷ୍ଣୁଭକ୍ତିପରାୟଣା ଥିଲେ । ବିବାହ ପରେ ସେ କେତେ ବର୍ଷ ସୁଖସ୍ୱଚ୍ଛନ୍ଦରେ କଟାଇଥିବାର ଜଣାଯାଏ ।

## କର୍ମ ନିଯୁକ୍ତି

ପିତାଙ୍କ ମୃତ୍ୟୁ ପରେ ସେ ମହାରାଜାଙ୍କର ପାଞ୍ଜିଆକରଣ ପଦରେ ନିଯୁକ୍ତ ହେଲେ । କିଛିକାଳ ପରେ ରାଜ୍ୟର ମ୍ୟାନେଜର ମହାରାଜାଙ୍କ କୋପ ଦୃଷ୍ଟିରେ ପଡ଼ିଲେ ଓ ଚାକିରିରୁ ବରଖାସ୍ତ ହେଲେ । ସେ ଅବଶ୍ୟ ସରକାରୀ ସାହାଯ୍ୟ ପାଇ ପୁଣି ନିଯୁକ୍ତ ହେଲେ; କିନ୍ତୁ ସେ ଏଥିପାଇଁ କରଣମାନଙ୍କୁ ଦାୟୀ କଲେ । ଗୋପାଳକୃଷ୍ଣ ମଧ ରାଜ-ଅନୁଗ୍ରହରୁ ବଞ୍ଚିତ ହେଲେ । ତାଙ୍କର ଧନସମ୍ପତ୍ତି ଅପହରଣ କରିନିଆଗଲା । କରଣମାନେ ମଧ ପାରଳାଖେମୁଣ୍ଡି ଛାଡ଼ି ଗଞ୍ଜାମ, ଗୁଣ୍ଡୁପୁର ଆଦି ସ୍ଥାନକୁ ପଳାଇଗଲେ ଓ ସେଠାରେ ବସବାସ କରି ରହିଲେ । ଗୋପାଳକୃଷ୍ଣ ସପରିବାର ଗଞ୍ଜାମକୁ ଆସିଲେ ଓ ସେଠାରେ ଅବସ୍ଥାନ କଲେ । ଏହି ସମୟରେ ଗଞ୍ଜାମର ଆଶୁ କବି ଚକ୍ରପାଣି ପଟ୍ଟନାୟକଙ୍କ ସହିତ ତାଙ୍କର ପରିଚୟ ହେଲା । ତାଙ୍କ ଲେଖାଦ୍ୱାରା ଅନୁପ୍ରାଣିତ ହୋଇ କବିତା ରଚନା ଦିଗରେ ମନ ଦେଲେ ।

## କବିତ୍ୱର ଆଦ୍ୟ ସ୍ଫୁରଣ

ଦିନେ ଗୋପାଳକୃଷ୍ଣ କବି ଚକ୍ରପାଣିଙ୍କ ସମେତ କେତେକ ବନ୍ଧୁଙ୍କ ସହିତ ଋଷିକୁଲ୍ୟା ନଦୀ କୂଳରେ ସୌନ୍ଦର୍ଯ୍ୟ ଉପଭୋଗ କରୁଥିଲେ । ଏହି ସମୟରେ ବିଭିନ୍ନ ଅଳଙ୍କାରରେ ଭୂଷିତା ଜଣେ ଯୁବତୀ ଜଳକୁମ୍ଭ ଧରି ଗୃହକୁ ଫେରୁଥିଲେ । ଚକ୍ରପାଣି ଏହାକୁ ବର୍ଣ୍ଣନା କରି କବିତା ରଚନା କରିବାକୁ ସବୁ ବନ୍ଧୁଙ୍କୁ ଅନୁରୋଧ କଲେ । ପ୍ରଥମେ ଗୋପାଳକୃଷ୍ଣ ନିଜର ଅସାମର୍ଥ୍ୟ ପ୍ରକାଶ କଲେ । ମାତ୍ର

ବନ୍ଧୁବରଙ୍କ ଅନୁରୋଧ ଏଡ଼ି ନ ପାରି କବିତାଟିଏ ରଚନା କଲେ । ଏହା ଆଦି ରସାତ୍ମକ ହେଲେ ମଧ୍ୟ ଭାବପୂର୍ଣ୍ଣ ହୋଇଥିଲା । କବିତାଟି ଥିଲା ଏହିପରି –

"ସ୍ତୁରେ ଦେଇ ବନ୍ଧୁ ନ ଯାରେ
ରହ ଜିତେନ୍ଦ୍ରିୟର ଚିତ୍ତ ହଜାରେ
ଗର୍ଭାଳସୀ ହଂସୀ ଗମନା
ପୁରାତନୁ କାମ କାମନା
ପୂର୍ଣ୍ଣ ହେବ ବୋଲି ସୁମନା
ଜଗିଛି ପଥ ମୃଣାଳ ଭୁଜାରେ ।"

ଏହି କବିତାଟି କେବଳ ଶ୍ରେଷ୍ଠ ବୋଲି ବିବେଚିତ ହେଲା ତାହା ନୁହେଁ, କବି ଚକ୍ରପାଣି ତାଙ୍କ କବିତ୍ୱରେ ମୁଗ୍ଧ ହୋଇପଡ଼ିଲେ । ଲେଖାଲେଖିରେ ପ୍ରଶଂସା ମିଳିବ କହି ସାଧନା ଅବ୍ୟାହତ ରଖିବାକୁ ପରାମର୍ଶ ଦେଲେ ।

## ପୁନଃନିଯୁକ୍ତି

ପାରଳାଖେମୁଣ୍ଡି ରାଜ୍ୟର ମ୍ୟାନେଜର ତାଙ୍କୁ କର୍ମରୁ ବହିଷ୍କାର କରିବା କଥା ଆଗରୁ ବର୍ଣ୍ଣିତ ଅଛି । ପରେ ତାଙ୍କର ନିର୍ଦ୍ଦୋଷତା ଓ କର୍ମକୁଶଳତାର ପ୍ରମାଣ ପାଇ ରାଜା ପୁଣି ନିଯୁକ୍ତି ଦେଲେ । ସେ ତେଣୁ ଜନ୍ମସ୍ଥାନ ପାରଳାଖେମୁଣ୍ଡିକୁ ଫେରିଆସିଲେ । ରାଜକାର୍ଯ୍ୟ ସଙ୍ଗେ ସଙ୍ଗେ ଅବସର ସମୟରେ ସେ କବିତା ରଚନା କଲେ । ଥରେ ଗୋଟିଏ କବିତା ଲେଖି ବ୍ୟାକରଣ ପୁସ୍ତକ ମଧ୍ୟରେ ରଖି ଦେଇଥିଲେ । ଏ କବିତାଟି ତାଙ୍କ ଗୁରୁ ଦୀନନାଥ ପଟ୍ଟନାୟକଙ୍କ ହାତରେ ପଡ଼ିଲା । କବିତାଟି ଶୃଙ୍ଗାର ରସାତ୍ମକ ଥିଲା । ତାହା ହେଉଛି –

"ଜୀବନ ବନ୍ଧୁ ମାଗୁଣି ମାଗୁଛିରେ ଏତିକି
ନାହିଁ କରିବୁ ନାହିଁଟି କହିଲା ବିନତିକି
ନଚାଇ ସରମେ ବେଣୀ — ବଜାଇ କଟି କିଙ୍କିଣୀ
ଝୁଲାଇ ବିପରୀତେ ଭୁଲା କରି ମୋତିକି ।
ସ୍ତନ ତୁଳେ ତୋରା ହାର — ତାଟଙ୍କ ଝଲକା ଝରା
ଚଳାଇବୁ ଚାହିଁ ମୋତେ — ନ ଲିଭାଇ ବତିକି ।"

ଗୁରୁ ଏହାକୁ ପଢ଼ି 'ଆମ ଗୋପାଳର ଏପର୍ଯ୍ୟନ୍ତ ଶିଶୁ ବୁଦ୍ଧି ଯାଇ ନାହିଁ' ବୋଲି ମନ୍ତବ୍ୟ ଦେଲେ । ସେ ଏଥିରେ ଲଜ୍ଜିତ ବୋଧ କରି ଶୃଙ୍ଗାର ରସାତ୍ମକ କବିତା ଲେଖିବା ପରିତ୍ୟାଗ କଲେ ।

## ବୈଷ୍ଣବ ଧର୍ମ ଗ୍ରହଣ

ଏହାର କେତେ ବର୍ଷ ପରେ ଗୋପାଳକୃଷ୍ଣ ବୈଷ୍ଣବ ଧର୍ମରେ ଦୀକ୍ଷିତ ହେଲେ । ସେ ତେଣୁ ଶୃଙ୍ଗାର ରସ ଆଧାରିତ କବିତା ପରିବର୍ତ୍ତେ ବୈଷ୍ଣବୀୟ ପ୍ରେମଲୀଳା ଉପରେ ରଚନା କରିବାକୁ ଆଗ୍ରହୀ ହେଲେ । ସେ ଖାରଡ଼ ମଠର ମହନ୍ତଙ୍କୁ ଗୁରୁଭାବେ ବରଣ କଲେ । ସେ ମଠର ଗାଦିରେ ଥିବା ପୁସ୍ତକମାନଙ୍କୁ ପାଠ କରିବାକୁ ଲାଗିଲେ । ଶ୍ରୀରୂପ ଗୋସ୍ୱାମୀଙ୍କ 'ଚାଟୁ ପୁଷ୍ପାଞ୍ଜଳି' ମଧ୍ୟ ପାଠ କଲେ । ତହିଁର ତିନୋଟି ଶ୍ଳୋକକୁ 'କଳସା' 'ଆଷାଢ଼ଶୁକ୍ଳ' ଓ 'ମଧୁଶ୍ରୀ' ରାଗରେ ଅନୁବାଦ କଲେ । ସେ ଏକଦା ରାଧାକାନ୍ତ ମଠରେ ଶୋଇଥିବା ଅବସ୍ଥାରେ ଏକ ସ୍ୱପ୍ନ ଦେଖିଲେ । ସେହି ସ୍ୱପ୍ନରେ ଜଣେ ବୈଷ୍ଣବ ଚିହ୍ନ ଧାରଣ କରିଥିବା ବ୍ରାହ୍ମଣ ତାଙ୍କୁ ଦେଖାଦେଲେ । ତାଙ୍କ ଗୁରୁଦେବ ପାରଳାଖେମୁଣ୍ଡିରେ ଅବସ୍ଥାନ କରିଛନ୍ତି ଓ ଶୀଘ୍ର ଯାଇ ତାଙ୍କୁ ଭେଟିବାକୁ ଆଦେଶ ଦେଲେ । ଗୋପାଳକୃଷ୍ଣ ନିଦ୍ରାରୁ ଉଠି ଭାବାବେଶରେ କବିତା ରଚନା କଲେ –

''ଏଡ଼େ ଭାଗ୍ୟ ମୋର ହେବ କି ?
ହେବି ବୃନ୍ଦାବନେଶ୍ୱରୀ ସେବକୀ
ଶ୍ରୀ ଗୁରୁଦତ୍ତ ବୀଜମନ୍ତ୍ର କଳ୍ପ
ବଲ୍ଲୀରେ ପ୍ରେମଫଳ ଫଳିବ କି ?

× × ×

ହୃଦେ ଧରି ସେ ଦୁଇ ରୂପ
ଶ୍ରୀ ମଞ୍ଜରୀ ସଖ୍ୟ କଳାପ
ବୋଲେ ଗୋପାଳକୃଷ୍ଣ ସୁଖେ
ଶ୍ରୀ ରାଧାକୃଷ୍ଣ ବୋଲି ଜୀବ ରହିବ କି ?''

ପରଦିନ ଗୋପାଳକୃଷ୍ଣ ଗୁରୁଙ୍କୁ ଭାଗବତ ମନ୍ଦିରରେ ଭେଟି ସାଷ୍ଟାଙ୍ଗ ପ୍ରଣିପାତ ହେଲେ ଓ ସ୍ୱପ୍ନବୃତ୍ତାନ୍ତ ଜଣାଇଲେ । ଗୁରୁ ଆନନ୍ଦରେ ତାଙ୍କୁ ମନ୍ତ୍ର ପ୍ରଦାନ କଲେ । ଗୋପାଳକୃଷ୍ଣ ମଧ୍ୟ ଶ୍ରୀଗୁରୁ ପଞ୍ଚକ ସ୍ତୋତ୍ରଟି ରଚନା କରି ତାଙ୍କ ହସ୍ତରେ ଅର୍ପଣ କଲେ । ସେ ଖାରଡ଼ା ମଠକୁ ପ୍ରତ୍ୟାବର୍ତ୍ତନ କରିବା ପୂର୍ବରୁ ୨୭ଟି ସଂସ୍କୃତ ଶ୍ଳୋକ ବିଶିଷ୍ଟ 'ଶ୍ରୀ ଶ୍ରୀ ରାଧା ନକ୍ଷତ୍ରମାଳା' ନାମକ ଗ୍ରନ୍ଥ ଗୁରୁଙ୍କ ନାମରେ ଭଣିତା କରି ତାଙ୍କ ହସ୍ତରେ ଅର୍ପଣ କଲେ । ଗୁରୁଙ୍କ ଆଦେଶରେ ସେ କୃଷ୍ଣଙ୍କ ଉପରେ ରଚନା କଲେ ବୋଲି ସ୍ୱରଚିତ 'ଚାଟୁ ପୁଷ୍ପାଞ୍ଜଳି' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି, ଯଥା –

"ଶ୍ରୀ ଗୁରୁଦେବଙ୍କ କୃପା ଆଦେଶେ
ଭାଷାରେ ବର୍ଣ୍ଣନା କଲି ବିଶେଷେ
× × ×
ରାଗ ମାର୍ଗ ଜନେ
ଗୋପାଳକୃଷ୍ଣ ସମର୍ପେ ସୁମନେ ।"

କବିଙ୍କର ଆରାଧ୍ୟଦେବତା ଥିଲେ ରସିକରାଜ ଶ୍ରୀକୃଷ୍ଣ । ସେ ତାଙ୍କର ବାଲ୍ୟ, ପୌଗଣ୍ଡ ଓ କୈଶୋର ଲୀଳା ପ୍ରକାଶ କରିଛନ୍ତି ।

ଗୋପାଳକୃଷ୍ଣଙ୍କର ଯଶୋଲାଭର ବାସନା ନ ଥିଲା । ଭଗବତ୍ ପ୍ରେରଣାରେ ତାଙ୍କ ମନରେ ଯେତେବେଳେ ଯେଉଁ ଭାବର ଉଦ୍ରେକ ହେଉଥିଲା, ତାହାକୁ ଖଡ଼ି ସାହାଯ୍ୟରେ ଲେଖୁଥିଲେ ବା ତାଳପତ୍ରରେ ଲେଖି ଦେଉଥିଲେ । ପ୍ରତିବେଶୀ ବା କେହି ତାଙ୍କୁ କବିତା ମାଗିଲେ ତାଙ୍କୁ ଅକୁଣ୍ଠ ଚିତ୍ତରେ ଦେଉଥିଲେ । ତାଙ୍କ ରଚନାଗୁଡ଼ିକରେ ମୁଗ୍ଧ ହୋଇ ତାଙ୍କର ସଙ୍ଗାତ ପୁତ୍ର ହରିବନ୍ଧୁ ବେବର୍ତ୍ତା ସେଗୁଡ଼ିକ ସଂଗ୍ରହ କରି ରଖୁଥିଲେ । ଯେକୌଣସି ବ୍ୟକ୍ତି ତାଙ୍କ କବିତା ପାଠ କରିବାକୁ ଚାହିଁଲେ, 'ଆମ୍ଭ ସମୁଦ୍ର ପେଟାଙ୍କୁ ମାଗ' ବୋଲି କହୁଥିଲେ ।

କ୍ରମେ ଗୋପାଳକୃଷ୍ଣଙ୍କ ଯଶ ଚାରିଆଡ଼କୁ ବ୍ୟାପିବାକୁ ଲାଗିଲା । ସେତେବେଳେ ପାରଳାଖେମୁଣ୍ଡିର ମହାରାଜା ଥିଲେ ଗଜପତି ଜଗନ୍ନାଥ ନାରାୟଣଦେବ । ସେ କାବ୍ୟ ଓ ସଙ୍ଗୀତପ୍ରେମୀ ଥିଲେ । ବିଶିଷ୍ଟ କବି ଓ ସଙ୍ଗୀତଜ୍ଞମାନଙ୍କୁ ଆଦର କରୁଥିଲେ । ସେ ଗୋପାଳକୃଷ୍ଣଙ୍କ ପ୍ରତିଭାରେ ମୁଗ୍ଧ ହୋଇ ତାଙ୍କୁ ଜଗତ୍‌ସିଂହପୁର ମଖସା ଗ୍ରାମକୁ ଜାଗିରିସୂତ୍ରେ ପ୍ରଦାନ କଲେ । ମାସିକ ଏକ ଶହ ଟଙ୍କା ବୃତ୍ତି ମଧ୍ୟ ଖଞ୍ଜିଲେ ।

ଗଜପତି ନାରାୟଣଦେବଙ୍କ ମୃତ୍ୟୁପରେ ତାଙ୍କ ପୁତ୍ର ପ୍ରତାପରୁଦ୍ର ନାରାୟଣଦେବ ରାଜପଦରେ ଅଭିଷିକ୍ତ ହେଲେ । ସେ ମଧ୍ୟ ଗୋପାଳକୃଷ୍ଣଙ୍କ ପ୍ରତିଭାର ଅନ୍ଧ ସ୍ତାବକ ଥିଲେ । ସେ କବିଙ୍କୁ 'କବି କଳହଂସ' ଓ 'ବସନ୍ତ କୋକିଳ' ଉପାଧିରେ ଭୂଷିତ କରିଥିଲେ । ଏକୋଇଶଟି ଗ୍ରାମର କରଣିକ ଦାୟିତ୍ୱ ମଧ୍ୟ ଦେଇଥିଲେ । କଥିତଅଛି ଯେ ରାଜକାର୍ଯ୍ୟ ଶେଷ କରି ଗୃହକୁ ପ୍ରତ୍ୟାବର୍ତ୍ତନ କରୁଥିବା ସମୟରେ ସେବକମାନେ ଯୋଡ଼ି ମଶାଲ ଧରି ତାଙ୍କ ଆଗେ ଆଗେ ଯାଉଥିଲେ । ତାଙ୍କ ସଙ୍ଗୀତର ପ୍ରସାରପାଇଁ ଇନ୍ଦୁ ନାମକ ଜଣେ ଦେବଦାସୀ ମଧ୍ୟ ଖଞ୍ଜା ଯାଇଥିଲା । ଗୁଣଗ୍ରାହୀ ରାଜା ପ୍ରତାପରୁଦ୍ରଙ୍କ ନାମରେ କବି ଗୋପାଳକୃଷ୍ଣ କେତୋଟି ସଙ୍ଗୀତ ଭଣିତା କରିଥିବାର ଜଣାଯାଏ ।

କବିଙ୍କ ଜୀବନ ଶୁଦ୍ଧ ଓ ପବିତ୍ର ଥିଲା । ସେ ପ୍ରତ୍ୟୁଷରୁ ଶଯ୍ୟା ତ୍ୟାଗ ପରେ ଇଷ୍ଟଦେବତାଙ୍କ ପୂଜା କରୁଥିଲେ । ପୂଜା ସମୟରେ କୃଷ୍ଣଚନ୍ଦ୍ର କବିରାଜଙ୍କ ବିଖ୍ୟାତ 'ଶ୍ରୀଚୈତନ୍ୟ ଚରିତାମୃତ' ଗ୍ରନ୍ଥ ଶୁଦ୍ଧ ଚିତ୍ତରେ ପାଠ କରୁଥିଲେ । ସେ ବୈଷ୍ଣବ ଧର୍ମ ଓ ଆଚାର ଅନୁଯାୟୀ ମସ୍ତକ ମୁଣ୍ଡିତ କରି ଶିଖା ଧାରଣ କରୁଥିଲେ । ତାଙ୍କର ଗୁରୁ ପ୍ରଦତ୍ତ ନାମ ଥିଲା, ଗୋବିନ୍ଦ ଶରଣ ଦାସ । ସିଦ୍ଧନାମ ଥିଲା ଗୁଞ୍ଜମଞ୍ଜରୀ । ସେ ସାତ୍ତ୍ୱିକ ଆହାର କରୁଥିଲେ । ନବଦ୍ୱୀପ ଓ ଗୟାଧାମକୁ ତୀର୍ଥଯାତ୍ରାରେ ଯାଇଥିଲେ ।

## ସୃଷ୍ଟି ସମ୍ଭାର

ବିଶ୍ୱବିଖ୍ୟାତ କବି ଦାନ୍ତେ ଜଣେ ସୁନ୍ଦରୀ ତରୁଣୀ ବିୟେଟ୍ରିଶ୍‌ଙ୍କୁ ଦେଖି ବିଶ୍ୱର ଅନ୍ୟତମ ଶ୍ରେଷ୍ଠ କାବ୍ୟ 'Divine Comedy' ରଚନା କଲେ । ଆଉ ଜଣେ ଇଂରାଜୀ କବି ଶେଲି ମଧ୍ୟ ପ୍ରଥମ ପ୍ରେମକୁ ଉପଜୀବ୍ୟ କରି କବିତା ଲେଖି ଶ୍ରେଷ୍ଠ କବିର ଆସନ ଅଳଂକୃତ କରିଥିଲେ । ଗୋପାଳକୃଷ୍ଣ ମଧ୍ୟ ଏକ ସୁନ୍ଦରୀ ଯୁବତୀର ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ କବିତା ରଚନା ଆରମ୍ଭ କରିଥିଲେ ।

ପ୍ରଣୟମୂଳକ କବିତା ପ୍ରାୟ ୧୧୦ଟି କବିଙ୍କ ରଚନାବଳୀରେ ସ୍ଥାନ ପାଇଛି । ସାଧାରଣ ନାୟକ-ନାୟିକାଙ୍କୁ ନେଇ ଏହି ଗୀତଗୁଡ଼ିକ ରଚିତ ହୋଇଥିବାରୁ ଏଗୁଡ଼ିକୁ ଗ୍ରାମ୍ୟରସ ପର୍ଯ୍ୟାୟଭୁକ୍ତ କରାଯାଇଛି । ଏହି କବିତାଗୁଡ଼ିକ ମଧ୍ୟରୁ ଅଧିକାଂଶ ନାୟକ ନାୟିକାଙ୍କ ଉକ୍ତିମୂଳକ । କେତେକ କବିତାରେ ସଖୀ ପ୍ରତି ନାୟିକାଙ୍କ ଉକ୍ତି-ପ୍ରତ୍ୟୁକ୍ତି ଦେଖିବାକୁ ମିଳେ । କେତେକ କବିତା କୋଇଲିକୁ ସମ୍ବୋଧନ ଛଳରେ ରଚିତ ହୋଇଅଛି ।

## ଭକ୍ତି ରସାତ୍ମକ କବିତା

ଗୋପାଳକୃଷ୍ଣ ବୈଷ୍ଣବ ଧର୍ମ ଗ୍ରହଣ କରିଥିବା କଥା ଆଗରୁ ବର୍ଣ୍ଣିତ । ସେ ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ ଥିଲେ । ତାଙ୍କ ଦୃଷ୍ଟିରେ ରାଧାକୃଷ୍ଣ ସାଧାରଣ ପ୍ରେମିକ ପ୍ରେମିକା ନ ଥିଲେ । ସେମାନେ ହେଲେ ଜୀବାତ୍ମା ଓ ପରମାତ୍ମା ବା ପ୍ରକୃତି ଓ ପୁରୁଷ । କୃଷ୍ଣ ଆଉ ରାଧାଙ୍କର ଦିବ୍ୟଲୀଳା ସେ ମାନସ ଚକ୍ଷୁରେ ଦେଖୁଥିଲେ । ତାଙ୍କର ଲୀଳାକୁ ସେ ସଙ୍ଗୀତରେ ରୂପ ଦେଇଛନ୍ତି ।

## ଚତୁର୍ବିଧ ଭାବ

ରାଧାକୃଷ୍ଣଙ୍କୁ ଉପାସନା କରିବାପାଇଁ ବୈଷ୍ଣବମାନେ ବାତ୍ସଲ୍ୟ, ସଖ୍ୟ, ମଧୁର ଓ ଦାସ୍ୟ – ଏହିଭଳି ଚାରୋଟି ଭାବକୁ ଗ୍ରହଣ କରିଥାନ୍ତି । ଗୋପାଳକୃଷ୍ଣଙ୍କ

ରଚନାବଳୀରେ ମଧୁର ଭାବାଶ୍ରିତ ଗୀତ ଅର୍ଦ୍ଧରୁ ଅଧିକ ହେଲେ ମଧ ବାତ୍ସଲ୍ୟ ଭାବ, ସଖ୍ୟଭାବ ବା ଦାସ୍ୟ ଭାବାଶ୍ରିତ କବିତାର ସଂଖ୍ୟା କମ୍ ନୁହେଁ ।

**ବାତ୍ସଲ୍ୟ ରସାତ୍ମକ**

କବି ବାତ୍ସଲ୍ୟ ରସାତ୍ମକ ମୋଟ ନଅ ଗୋଟି କବିତା ରଚନା କରିଛନ୍ତି । ଭାବ, ରସ ଓ ଶିଳ୍ପ-ନୈପୁଣ୍ୟ ଦୃଷ୍ଟିରୁ ସେଗୁଡ଼ିକ ବିଶେଷ ଜନପ୍ରିୟ ହୋଇପାରିଛି । 'ନିଶି ଅବସାନେ ଉଠ ମୋର କଳା ମାଣିକରେ' ଏକ ସୁନ୍ଦର ବାତ୍ସଲ୍ୟ ରସାତ୍ମକ ଗୀତ ।

କୃଷ୍ଣ ନିଦରୁ ଉଠିପଡ଼ି ମାତା ଯଶୋଦାଙ୍କୁ କାମ କରାଇ ଦେଉ ନାହାନ୍ତି । ଯଶୋଦା କପଟ ତାଡ଼ନା ପ୍ରକାଶ କରିଛନ୍ତି, ଯଥା –

''ଉଠିଲୁ ଏଡ଼େ ବେଗି କାହିଁକିରେ ଦୁଃଖୀଧନ
ଦଧି ମନ୍ଥାଇ ଦେବୁ ନାହିଁକି ରେ ।
ଦେହ ପାସୋରି ଦଣ୍ଡେ ନିଦ କି ନ ଗଲୁ
ବିଟୋଳ ହେଲୁ ମୋର ପାଇଁକିରେ । ୧ ।''

କୃଷ୍ଣଙ୍କର ଆଙ୍ଗୁଠି ଚାଟିବାକୁ ଲକ୍ଷ୍ୟ କରି କବି ଯଶୋଦାଙ୍କ ମୁହଁରେ କୁହାଇଛନ୍ତି –

''ତୁଚ୍ଛା ହାତଟା ଖାଇ ନାଚୁଛୁ କାହିଁପାଇଁ
ଶୁଖିଯିବୁ ନ ଚାହାଁ ଛାଇକିରେ ।''

ଏ ଆକୁଳ ସ୍ନେହଭରା କଥା ଓଡ଼ିଆଣୀ ମାଆର ଯେ ଅତି ନିଜସ୍ୱ, ଏ କଥା କହିବା ନିଷ୍ପ୍ରୟୋଜନ ।

କବିଙ୍କର ଆଉ ଗୋଟିଏ କବିତା, 'ବ୍ରଜକୁ ଚୋର ଆସିଛି ଘେନିଯିବ ଶୁଅ ତୁନି ହୋଇ' ମଧ ବାତ୍ସଲ୍ୟରସ ଉଦ୍ରେକ କରେ –

''ବ୍ରଜକୁ ଚୋର ଆସିଛି ଘେନି ଯିବ
ଶୁଅ ତୁନି ହୋଇରେ
ରଙ୍କର ଧନ ମୋ ଗୋକୁଳ ଚନ୍ଦ୍ରମା
ନିଶି ପାହି ନାହିଁରେ । ୧ ।''

ନିଜ ପୁଅକୁ ନେଇ ମା' ଗର୍ବ କରେ । ଯଶୋଦା ମଧ କୃଷ୍ଣଙ୍କୁ ନେଇ ଗର୍ବ କରିଛନ୍ତି –

''ମୋ କୃଷ୍ଣ ଚନ୍ଦ୍ରମା ପରି
ଅନ୍ୟଟି କେ ଅଛି ସରି ଗୋ
ମୋ କୃଷ୍ଣ ଚନ୍ଦ୍ରମା ପରି ।''

ଯଶୋଦା ସ୍ୱପ୍ନରେ ରାଧା ଓ କୃଷ୍ଣଙ୍କୁ ଦେଖୁଛନ୍ତି । ତାଙ୍କ ହୃଦୟ ବାତ୍ସଲ୍ୟ ରସରେ ବିଗଳିତ ହୋଇଉଠିଛି । ସେ ରୋହିଣୀଙ୍କୁ କହୁଛନ୍ତି --

"କେଡ଼େ ସୁନ୍ଦର ସ୍ୱପନ ରାତିରେ ଦେଖିଲି ରୋହିଣୀ ଅଛି ମତିରେ,
ମୋ କୁଳଚନ୍ଦ୍ରମା ବୃଷଭାନୁ ଜେମା ଦୁହିଁଙ୍କି ଦମ୍ପତି ରୀତିରେ ।
ନୂଆ ବସନ ନୂତନ ଭୂଷଣ, ଭୂଷିତ ହୋଇ ଆସି ମୋ ଚରଣ
ତଳେ ଓଳଗିଲେ ନବବଧୂ ପରି
ତୋଳି ମୁଁ ଧଇଲି ଛାତିରେ ।"

ଏହାଛଡ଼ା ଦୋଳିଗୀତ, କୋଇଲି ଗୀତଗୁଡ଼ିକ ମଧ୍ୟ ବାତ୍ସଲ୍ୟ ରସାପ୍ଳୁତ । ଆଲୋଚକ ଡଃ ରତ୍ନାକର ଚଇନିଙ୍କ ମତରେ ଗୋପାଳକୃଷ୍ଣ ହେଉଛନ୍ତି ଓଡ଼ିଆ ସାହିତ୍ୟର ଶ୍ରେଷ୍ଠ ବାତ୍ସଲ୍ୟ ଭାବାଶ୍ରୟୀ କବି ।

**ସଖ୍ୟ ଭାବ**

କବି ବହୁ କବିତା ସଖୀ ସମ୍ବାଦଛଳରେ ରଚନା କରିଛନ୍ତି । କେତେ କବିତା ମଧ୍ୟ ସଖୀମାନଙ୍କର ରାଧା ବା କୃଷ୍ଣଙ୍କ ଉକ୍ତି-ପ୍ରତ୍ୟୁକ୍ତି ମାଧ୍ୟମରେ ରଚିତ ହୋଇଛି ।

କାଳିନ୍ଦୀ ହ୍ରଦକୁ ଜଳ ଆଣିବାକୁ ଗଲାବେଳେ କୃଷ୍ଣଙ୍କ ସହ ରାଧାଙ୍କର ଭେଟ ହୋଇଛି । ରାଧା ତାହା ସଙ୍ଗାତଙ୍କୁ କହୁଛନ୍ତି –

"ଜଳ ଆଣି ଯାଇ କାଲି କାଳିନ୍ଦୀ ସୁତାକୁ
ଫଳ ପାଇଲି ଅନାଇଁରେ ସଙ୍ଗାତ
କଦମ୍ବ ମୂଳକୁରେ ସଙ୍ଗାତ ।
ନୀରଦ କି ନୀଳମଣି ପ୍ରତିମା ସେ କିଛି
ବାରି ପାରିଲି ନାହିଁରେ ସଙ୍ଗାତ !
ନୟନେ ନାଚୁଛିରେ ସଙ୍ଗାତ ।"

ରାଧାଙ୍କର କୃଷ୍ଣଙ୍କ ପ୍ରତି ଆସକ୍ତି ରାଧା ଓ ଲଳିତାଙ୍କ ଉକ୍ତି–ପ୍ରତ୍ୟୁକ୍ତି ମାଧ୍ୟମରେ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ରାଧାଙ୍କ ପ୍ରାଣ ନବ ଅନୁରାଗରେ ଅନୁରଞ୍ଜିତ ହୋଇଯାଇଛି । ମନପ୍ରାଣ କୃଷ୍ଣଙ୍କ ବିରହରେ ବ୍ୟାକୁଳ ହୋଇଉଠିଛି । ରାଧାଙ୍କ ମନରେ ପ୍ରଶ୍ନ ଉଠିଛି –

ରାଧା – "କି ନାମ ବୋଇଲୁ ତୁହି ଗୋ ଲଳିତେ
କି ନାମ ବୋଇଲୁ ତୁହି ।
ଲଳିତା – ପୁଣି ଶୁଣିବାକୁ ଚିତ୍ତ ବଳିଲାକି
କୃଷ୍ଣ ବୋଲି ଥିଲି କହିରେ ପ୍ରାଣମିତ ।"

ରାଧା ପୁଣି କୃଷ୍ଣଙ୍କର ବୟସ ପଚାରୁଛନ୍ତି –

ରାଧା – "ବୟସ କେତେ ତାଙ୍କର ଗୋ ଲଳିତେ
ବୟସ କେତେ ତାଙ୍କର
ଲଳିତା–ନବ ତରୁଣିମା ଅବସ୍ଥା ବୟସ
ହୋଇଥିବ ବାର ତେରରେ ପ୍ରାଣମିତ ।"

ସଖୀମାନଙ୍କର ରାଧାଙ୍କ ପ୍ରତି ପରିହାସ –

"କାହୁଁ ଏ ନୂଆ ଭୁଷା ଶିଖିଲାରେ
ସଖୀ ଏମନ୍ତ କେବେ ନ ଥିଲାରେ ।
ଘନ ଶିଥିଳ କେଶ କରିଦେବି ସୁବେଶ
ବୋଲନ୍ତେ କେ କପଟ ରଚିଲାରେ ।"

ସଖୀମାନେ କେଉଁଠାରେ ରାଧାଙ୍କୁ ପରିହାସ କରିଛନ୍ତି ତ କେଉଁଠାରେ ତାଙ୍କ ରୂପର ପ୍ରଶଂସା କରିଛନ୍ତି, ଯଥା –

"ରାଧା ପରି ରାଧା ସିନାରେ ସଙ୍ଗିନୀ
ରାଧା ପରି ରାଧା ସିନା
ସ୍ତିରୀ ମାତରକ ଅଛନ୍ତି ଯେତେକ
ସର୍ବେ ପିତ୍ତଳ ସେ ସୁନା ।"

ରାଧାଙ୍କ ନାମରେ ବ୍ରଜପୁରରେ ହୁରି ପଡ଼ିଛି । କବି ରାଧାଙ୍କ ମୁଖରେ ସଖୀମାନଙ୍କୁ କୁହାଇଛନ୍ତି –

"ଏ କି ହଟା ବ୍ରଜ ଗୋଟା ଯାକ ପଡ଼ିଲାଣି ହୁରି ମା'
ଆଜନମରୁ ଆଜକୁ ମୁହଁ ସଦନ ଅଳିନ୍ଦ ଜିଣି ନାହିଁ
ଦେଖ ପାଦ କଣ୍ଟି ଟାଲୁ ଟାଲୁ ହେଲି ଏତେ ସରି ମା' ।"

ଅପବାଦ ହେଲେ ବି କୃଷ୍ଣଙ୍କ ଚିନ୍ତାରେ ରାଧା କିପରି ଘାରି ହୋଇଛନ୍ତି, ତାହା କବି ଅପୂର୍ବ ଭାବରେ ପ୍ରକାଶ କରିଛନ୍ତି –

"ଶ୍ୟାମ ଅପବାଦ ମୋତେ ଲାଗିଥାଉ ରେ ପ୍ରାଣସହୀ
ନିତି ସେହି ଚିନ୍ତାରେ ମୋ ଦିନ ଯାଉଲୋ ।
ଚାହିଁଦେଲେ ଥରେ ଶ୍ରୀମୁଖ ଗୋଟିଏ କୋଟି ଜନ୍ମର ଦୁଃଖ
ଲିଭି ଯାଉଛିରେ ପରାଣ ମିତଣୀ ଯେ ଯେତେ ବୋଲିବ ବୋଲୁଥାଉ ।"

ଶ୍ରୀକୃଷ୍ଣଙ୍କ ବିହୁନେ ଯମୁନାରେ ପ୍ରାଣ ବିସର୍ଜନ କରିବେ ବୋଲି ରାଧା କହିଛନ୍ତି । କବିଙ୍କ ଭାଷାରେ –

"କାହିଁକି ଆଉ ଗୃହକୁ ଫେରିଯିବି ସଖୀ
ସନ୍ତାପ ଦାୟକ ଘରେ ହେବି କେଉଁ ସୁଖୀ
× × ×
ଭାସୁ ଯମୁନା ତରଙ୍ଗେ ଏ ସନ୍ତପ୍ତ ଦେହ ।"

ଶ୍ରୀକୃଷ୍ଣ ଆସି ନାହାନ୍ତି । ରାଧା ଚାହିଁ ଚାହିଁ ନିରାଶ ହୋଇ ଯାହା ସଖୀକୁ କହିଛନ୍ତି, ତାହା କବି ପ୍ରକାଶ କରିଛନ୍ତି –

"ଶ୍ୟାମକୁ କୁହାର ତା'ର ପ୍ରେମକୁ କୁହାର ମା' !
ସେ କରୁ ଗୋ ସେ ପୀରତି ଯା ଦେହ ଲୁହାର ମା'
ଶୁଣିଛି ତ ପ୍ରସଙ୍ଗରେ ଚନ୍ଦ୍ରାବଳୀର ସଙ୍ଗରେ
ନାଗରା ବାଜୁଛି ବ୍ରଜ ଯାକରେ ଯାହାର ମା' ।"

ଶେଷରେ ସଖୀମାନେ ରାଧାଙ୍କୁ ମାନ ଭାଙ୍ଗିବାକୁ କହିଛନ୍ତି –

"ଏଥରକ ଶ୍ୟାମ ଦୋଷ କର କ୍ଷମାରେ ।"

**ମଧୁର ରସାତ୍ମକ**

ମଧୁର ରସାତ୍ମକ କବିତାରେ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ ପରିପୂର୍ଣ୍ଣ । କୃଷ୍ଣଙ୍କର ନାମ ଶ୍ରବଣ କରି ରାଧା ବିହ୍ୱଳ ହୋଇପଡ଼ିଛନ୍ତି । ଏହା ଉପରେ ଗୋପାଳକୃଷ୍ଣ ବହୁ ଗୀତ ରଚନା କରିଛନ୍ତି । ଉଦାହରଣ –

"କଦମ୍ବ ବନେ ବଂଶୀ ବାଜିଲାରେ
ରାଧା ଦମ୍ଭ ଶିଖରୀ ଭାଜିଲାରେ
ତୋ ବିନା ପ୍ରତିକାର ଆନ ଗୋ ନାହିଁ ମୋର
ବିବେକ ରତନ ମୋ ହଜିଲାରେ
କର ମୋତେ ସରଣୀ ଆରେ ପ୍ରାଣ ମିତଣୀ
ନୋହିଲେ ଜୀବନ ବରଜିଲାରେ ।"

କୃଷ୍ଣ ରାଧାଙ୍କ ପାଖକୁ ଆସନ୍ତେ ରାଧା ବାରଣ କରିଛନ୍ତି । କବିଙ୍କ ଭାଷାରେ –

"ମୋହନ ଯା ଯା ତୁ ଛୁଅଁନା
ବାରଣ ପରି ନ ଘେନ ବାରଣ
ବାଳକ ପରି ହେ ନା,
ବାର·ଆଦି ଶ୍ରୀ ମିତ୍ର ପୂଜିବି ଅପକୀରତି ବନ୍ଦନା ।"

ପ୍ରେମ ରାଜ୍ୟରେ ମାନ ଅପମାନର ସ୍ଥାନ ବହୁ ଉର୍ଦ୍ଧ୍ୱରେ । ମାନ ଅଭିମାନଦ୍ୱାରା ନାୟିକା ନାୟକର ମନ ଜୟ କରିନିଏ । ବୈଷ୍ଣବ ସାହିତ୍ୟରେ

ତେଣୁ ମାନ ଖୁବ୍ ଉଚ୍ଚ ସ୍ଥାନ ଅଧିକାର କରେ । ରାଧାକୃଷ୍ଣ ପ୍ରେମ ଲୀଳା ତେଣୁ ମାନ ଅଭିମାନ ବିନା ସମ୍ପୂର୍ଣ୍ଣ ନୁହେଁ । ଗୋପାଳକୃଷ୍ଣ ମଧ୍ୟ ମାନ ଭାଙ୍ଗିବାପାଇଁ ବହୁ କବିତା ରଚନା କରିଛନ୍ତି । ତା'ର ଗୋଟିଏ ଉଦାହରଣ –

"ସଙ୍ଗିନୀରେ ରାସ ରଙ୍ଗିନୀରେ
ଦୋଷ କ୍ଷମାକର ଜୀବବନ୍ଧୁ ରୁଷନାରେ

ସେହିପରି ଅଭିମାନ ଉପରେ ଆଉ ଗୋଟିଏ କବିତା –

"ସୁଷମାନନୀ ମାନିନୀ
ଗଜ ଗାମିନୀ ତେଜ ମାନରେ ।"

ମାନ ଅଭିମାନ ପରେ କୃଷ୍ଣଙ୍କର ରାଧାଙ୍କ ସହ ମିଳନ ହୋଇଛି । ରାଧାକୃଷ୍ଣଙ୍କର ଯୁଗଳ ମିଳନକୁ ଉପଜୀବ୍ୟ କରି କବି ବହୁ କବିତା ରଚନା କରିଛନ୍ତି, ଯଥା –

"ଶୁଣି ସଖୀବାଣୀ ଶ୍ରୀକିଶୋରମଣି
ଶ୍ୟାମ ଛାମୁରେ ମିଳିଲେ
ଗୋପାଳକୃଷ୍ଣ ପଦାବ୍ଜ ପୋଛୁ ପୋଛୁ
ମୋହନ କୋଳକୁ ନେଲେରେ ।"

ନିଶାନ୍ତେ କେଳି କୁଞ୍ଜ ଦ୍ୱାରଦେଶରେ ଜଣେ ବ୍ରଜବାଳା ଚେତାଇ ଦେଇ ଯାଇଛନ୍ତି । ଏହା ଶୁଣି ରସାଳସା ଶ୍ରୀମତୀ ଶ୍ୟାମଙ୍କୁ କହିଛନ୍ତି –

"ଲୀଳାନିଧି ହେ ଲାଜେ ମୁଁ ଗଲିଟି ସଢ଼ି
ଲୁଚାଇଛ କାହିଁ ଶ୍ୟାମ ହେ ଦିଅ ମୋ ଲାଗି ଶାଢ଼ି
ଲକ୍ଷ ଲକ୍ଷ ରାଣ ଅଛିଟି ମୋର
ଲଲାମ ଆଦି ଭୂଷା ସଜ କର
ଲିଭିଥିବ ଭୂରୁ ମଧ୍ୟ ତିଳକ
ଲେଖିଦିଅ ବେଗେ ନ ଦେଖୁ ଲୋକ ।"

**ଦାସ୍ୟଭାବ**

ଚତୁର୍ବିଧ ଭକ୍ତି ମାର୍ଗ ମଧ୍ୟରୁ ଦାସ୍ୟ ଭାବ ଅନ୍ୟତମ । ନାୟକ ଓ ନାୟିକାଙ୍କ ମିଳନପାଇଁ ଦାସୀ ବା ସେବିକାର ନିତାନ୍ତ ପ୍ରୟୋଜନ । ବହୁ ବୈଷ୍ଣବ କବି ସେଥିପାଇଁ ରାଧାଙ୍କର ଦାସୀ ହେବାର ଅଭିଳାଷ ପୋଷଣ କରିଛନ୍ତି । ଗୋପାଳକୃଷ୍ଣଙ୍କ ବହୁ କବିତାରେ ଦାସୀ ବା ସେବିକା ହେବାର ବାସନା ପ୍ରତିଫଳିତ ହୋଇଛି । ରାଧାଗତପ୍ରାଣ ଗୋପାଳକୃଷ୍ଣ ଏକ ଗୀତରେ ଗାଇଛନ୍ତି –

''ଏଡ଼େ ଭାଗ୍ୟ ମୋର ହେବ କି ?
ହେବି ବୃନ୍ଦାବନେଶ୍ୱରୀ ସେବକୀ
ଶ୍ରୀଗୁରୁଙ୍କର ବୀଜମନ୍ତ୍ର କଳପ ବଲ୍ଲୀରେ
ପ୍ରେମ ଫଳ ଫଳିବ କି ରେ ?''

କବି ଏପରିକି ଶ୍ରୀରାଧାଙ୍କର କିଙ୍କରୀ ହେବାର ଅଭିଳାଷ ପୋଷଣ କରିଛନ୍ତି, ଯଥା –

''ହେ ସ୍ୱାମିନୀ ବୃନ୍ଦାରଣ୍ୟା ଅଧୀଶ୍ୱରୀ
କେବେ ଶୁଭ ଦୃଷ୍ଟି ହେବ
ହେବି ପଦାବ୍ଜ କିଙ୍କରୀ ।''

ଆଉ ଗୋଟିଏ ଉଦାହରଣ –

''କର କରୁଣାମୟୀ ରାଧେ
ଶରଣ ହେଲି, ଚରଣାମ୍ବୁଜେ କିଙ୍କରୀ କରି
ବ୍ରଜନିଧି ଅଙ୍କରେ ବିଜେ କଲା ବେଳରେ
ସେବିକା ପରି ମୁଁ ପୁଷ୍ପ ବ୍ୟଞ୍ଜନ ଧରି ।''

ବାତ୍ସଲ୍ୟ, ସଖ୍ୟ, ମଧୁର ଓ ଦାସ୍ୟ – ଏହିଭଳି ଚତୁର୍ବିଧ ଭକ୍ତିମାର୍ଗର କବିତା ମାଧମରେ କବି ବୈଷ୍ଣବୀୟ ଚେତନାକୁ ରୂପାୟିତ କରିଛନ୍ତି ।

## ମାନସ ଭଜନ

ସଂସାରରେ ମୋହ ମାୟା ପୂରିରହିଛି । ଏହି ମୋହ ମାୟାଗ୍ରସ୍ତ ମନକୁ ସଂଯତ କରିବାପାଇଁ କବି ଗୋପାଳକୃଷ୍ଣ କେତେକ ଗୀତ ରଚନା କରିଛନ୍ତି । ସେଗୁଡ଼ିକୁ ମନ ଶିକ୍ଷା ବା ମାନସ ଭଜନ କୁହାଯାଏ । କବି ଏକ ମାନସ ଭଜନରେ ବୃନ୍ଦାବନବାସୀ ଚିନ୍ତାମଣିଙ୍କୁ ଧାନ କରିବାକୁ ଉପଦେଶ ଦେଇଛନ୍ତି, ଯଥା –

''ଘେନରେ ଅବୋଧ ମନ ଅନ୍ୟେ କିବା ପ୍ରୟୋଜନ
ସଦା ଚିନ୍ତ ନିତ୍ୟ ବୃନ୍ଦାବନ
ଦିବ୍ୟ ଚିନ୍ତାମଣି ଧାମ କର ତୁ ତହିଁ ବିଶ୍ରାମ
ଯେ ବିଭୂତି କୁଞ୍ଜ ନିକେତନ ।''

ସେହିଭଳି ଆଉ ଏକ ମାନସ ଭଜନ ହେଲା –

''ଭଜମନ ବ୍ରଜବନ ଦ୍ୱିଜରାଜଙ୍କୁ
ଅଜ ଶେଷ ଭବ ବନ୍ଦ୍ୟ ପଦକଞ୍ଜଙ୍କୁ । ପଦ ।

ନେତ୍ରେ ରଞ୍ଜି ଦିବ୍ୟାଞ୍ଜନ ପ୍ରେମରେ କର ଲୋକନ
ବକ୍ରେ ବଂଶୀ ହୃଦେ ଚାରୁ ଗୁଞ୍ଜ ବ୍ରଜକୁ ।''

'ଅନୁସରିତ ପ୍ରଭୋ! କାଳ ଯାକ ଗଲା ସରିତ' ଉତ୍କଳର ଆଉ ଏକ ଅତି ଜନପ୍ରିୟ ଭଜନ ।

**କାବ୍ୟ ରଚନା**

କବି ଖାରଡ଼ା ମଠରେ ଥିଲାବେଳେ 'ପ୍ରୀତି ଚିନ୍ତାମଣି', 'ନାମ ଚିନ୍ତାମଣି', 'ପ୍ରେମ କଳ୍ପଲତା', 'ଶ୍ରୀରାଧାଗୋବିନ୍ଦ ଲୀଳାମୃତ' ପ୍ରଭୃତି କାବ୍ୟମାନ ରଚନା କରିଥିବା ଅନୁମାନ କରାଯାଏ । ସେଗୁଡ଼ିକ ଅପ୍ରକାଶିତ । ତାହାର ପାଣ୍ଡୁଲିପି ମଧ୍ୟ ମିଳୁ ନାହିଁ । ସମ୍ଭବତଃ, ସେଗୁଡ଼ିକ ନଷ୍ଟ ହୋଇଯାଇଛି ।

**ସଂସ୍କୃତ ରଚନା**

କବି ଗୋପାଳକୃଷ୍ଣଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ସେ ଓଡ଼ିଆ, ସଂସ୍କୃତ, ବଙ୍ଗଳା ଓ ତେଲୁଗୁ ଭାଷାରେ ପ୍ରବୀଣ ଥିଲେ । ସେ ସଂସ୍କୃତରେ ବହୁ କବିତା ରଚନା କରିଛନ୍ତି । ତାଙ୍କ ସଂସ୍କୃତ ରଚନାଗୁଡ଼ିକ ମୁଖ୍ୟତଃ ଭକ୍ତି ରସାତ୍ମକ ଓ ବନ୍ଦନାମୂଳକ । ସେଗୁଡ଼ିକ ହେଲା 'ଗୁରୁ ପଞ୍ଚକମ୍', 'ଶ୍ରୀରାଧା ନକ୍ଷତ୍ରମାଳା ସ୍ତୋତ୍ରମ୍', 'ଶ୍ରୀ ବୃଷ ଭାନୁଜା ପ୍ରେମ ନାମାବଳୀ', 'ଶ୍ରୀରାଧା ପ୍ରେମାନନ୍ଦ ସ୍ତୋତ୍ରମ୍', 'ଶ୍ରୀ ଗାନ୍ଧର୍ବ୍ୟ ସଂପ୍ରାର୍ଥନା ନବକମ୍' । ଶ୍ରୀ ହରିକୁସୁମ ସ୍ତବକ ଆଉ ଏକ ସଂସ୍କୃତରେ ଉଚ୍ଚକୋଟୀର ରଚନା । ଏହା ଜୟଦେବଙ୍କ ରଚନାର ସମକକ୍ଷ ହୋଇପାରେ ।

**ଅନୁବାଦ**

ଗୋପାଳକୃଷ୍ଣ ସଂସ୍କୃତର 'ଚାଟୁ ପୁଷ୍ପାଞ୍ଜଳି', 'ଭାଷା ଚାଟୁ ପୁଷ୍ପାଞ୍ଜଳି', 'ଶ୍ରୀକୃଷ୍ଣ ବର୍ଣ୍ଣାମୃତ', 'ମୁକୁନ୍ଦ ମୁକ୍ତାବଳୀ', 'ପ୍ରେମ ପୂରଭିଧ ସ୍ତୋତ୍ରମ୍', 'ଶ୍ରୀ ଶ୍ରୀ ରାଧାକୃଷ୍ଣ ଯୁଗଳ ଭଜନାମୃତ', 'କଳ୍ପଦ୍ରୁମ' ପ୍ରଭୃତିର ଓଡ଼ିଆ ଅନୁବାଦ କରିଥିଲେ ।

**ଭାଷା**

ଗୋପାଳକୃଷ୍ଣ ସର୍ବଜନବୋଧ୍ୟ ଭାଷାରେ ଗୀତ ରଚନା କରିଥିଲେ । ଉପେନ୍ଦ୍ର ଭଞ୍ଜଙ୍କ ଶବ୍ଦାଡ଼ମ୍ବର ବା ଦୁର୍ବୋଧ୍ୟତା ତାଙ୍କ ପଦ୍ୟାବଳୀରେ ନାହିଁ । ଏହା ମଧ୍ୟ ଉପମା ପ୍ରଭୃତି ଅଳଙ୍କାରଯୁକ୍ତ ନୁହେଁ । ରଚନାରେ ଖାଣ୍ଟି ଓଡ଼ିଆ ଭାଷା ପ୍ରୟୋଗ କରିବାରେ ସେ ସିଦ୍ଧହସ୍ତ ଥିଲେ । ଅବଶ୍ୟ କେତେକ ଆଞ୍ଚଳିକ

ଶବ୍ଦ ତାଙ୍କ ରଚନାରେ ସ୍ଥାନ ପାଇଛି; ତଥାପି ତାଙ୍କ ରଚିତ ଗୀତଗୁଡ଼ିକ ସରଳ ଓ ସାବଲୀଳ । ଏଗୁଡ଼ିକ ସମତଳ ଅଞ୍ଚଳର ଝରଣା ପରି କଳ କଳ ନାଦରେ ବହିଗଲା ପରି ଲାଗେ ।

## ସଙ୍ଗୀତ

ଗୋପାଳକୃଷ୍ଣଙ୍କ ଗୀତର ଅନ୍ୟତମ ବିଭବ ହେଲା ସାଙ୍ଗୀତିକତା । ସେ ତାଙ୍କ ରଚନାରେ ଯେଉଁସବୁ ରାଗରାଗିଣୀ ବ୍ୟବହାର କରିଛନ୍ତି, ସେଥିମଧ୍ୟରେ ପ୍ରଧାନ ହେଲା, ଅଁଳାବେଣୀ, ଆହାରୀ, ଆଶାବରୀ, ଆଷାଢ଼ ଶୁକ୍ଳ, ଆନନ୍ଦ ଭୈରବୀ, ଇନ୍ଦୁମତି, କଲ୍ୟାଣୀ, କଳହଂସ, କଳଶା, କରୁଣାଶ୍ରୀ, କାମ୍ବୋଦୀ, କାମୋଦ, କେଦାର ଗାନ୍ଧାର, ଚକ୍ରକେଳି, ଚୋଖି, ତୋଡ଼ି, ଦୀର୍ଘଛନ୍ଦ, ବରାଡ଼ି, ବଙ୍ଗଳାଶ୍ରୀ, ଭୈରବୀ, ମଧୁଶ୍ରୀ, ମେଘମଲ୍ଲାର, ରସକୁଲ୍ୟା, ରସକେଦାର, ଶଙ୍କରାଭରଣ, ହରିକାମୋଦୀ ପ୍ରଭୃତି । ଆଲୋଚକ ଡଃ ଜାନକୀ ବଲ୍ଲଭ ମହାନ୍ତିଙ୍କ ମତରେ ସେ ଦୀର୍ଘଛନ୍ଦ, ମଧୁଶ୍ରୀ, ରସକେଦାର ପ୍ରଭୃତି ରାଗ ପ୍ରଥମଥରପାଇଁ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ପ୍ରୟୋଗ କରିଛନ୍ତି । ରାଧାକୃଷ୍ଣଙ୍କ ଲୀଳା ଆଧାରିତ କ୍ଷୁଦ୍ର କବିତାଗୁଡ଼ିକ ବିଭିନ୍ନ ରାଗରାଗିଣୀ ମାଧ୍ୟମରେ ଗାନ କରାଗଲେ ଅପୂର୍ବ ଭାବ ସୃଷ୍ଟି କରେ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଉପେନ୍ଦ୍ର ଭଞ୍ଜ ସଙ୍ଗୀତର ଭିତ୍ତିପ୍ରସ୍ତର ପକାଇଥିଲାବେଳେ ତା' ଉପରେ ଗୋପାଳକୃଷ୍ଣ ସୁରମ୍ୟ ପ୍ରାସାଦ ନିର୍ମାଣ କରିଛନ୍ତି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ବିବିଧ ପଦ୍ୟାବଳୀ

କବି ତାଙ୍କର ସରସ ସୁନ୍ଦର କବିତାଗୁଡ଼ିକୁ ପୋଥି ଆକାରରେ ରଖି ନ ଥିବା ପୂର୍ବରୁ ବର୍ଣ୍ଣିତ ଅଛି । ସେଥିମଧ୍ୟରୁ ବହୁ କବିତା କାଳକ୍ରମେ ନଷ୍ଟ ହୋଇଯାଇଥିବା ଅନୁମାନ କରାଯାଏ । ମାଗି ନେଇଥିବା ଗୀତଗୁଡ଼ିକ ଯେ ଫେରିଆସି ନ ଥିବ, ଏଥିରେ ସନ୍ଦେହ ନାହିଁ । ସେ ଯାହାହେଉ, ଊନବିଂଶ ଶତାବ୍ଦୀର ଶେଷଭାଗରେ ଗୋପାଳକୃଷ୍ଣଙ୍କ କେତେକ ସଙ୍ଗୀତକୁ ପ୍ରଥମେ ଦାମୋଦର ପଟ୍ଟନାୟକ ସଂଗ୍ରହ କରି 'ସଙ୍ଗୀତ ସାଗର' ନାମକ ପୁସ୍ତକରେ ସନ୍ନିବେଶିତ କରିଥିଲେ । ତାଙ୍କର ଅଣନାତି ରାମକୃଷ୍ଣ ପଟ୍ଟନାୟକ ୧୯୧୯ ମସିହାରେ ପାରଳାଖେମୁଣ୍ଡିର ଗୁଣଗ୍ରାହୀ ମହାରାଜା କୃଷ୍ଣଚନ୍ଦ୍ରଦେବଙ୍କ ଆନୁକୂଲ୍ୟରେ 'ଗୋପାଳକୃଷ୍ଣ ପଦ୍ୟାବଳୀ' ପ୍ରକାଶ କଲେ । ଏଥିରେ ୩୦୬ଟି ଗୀତ ସ୍ଥାନ ପାଇଥିଲା । ଏହାର ଦ୍ୱିତୀୟ ସଂସ୍କରଣ ୧୯୨୪ରେ ପ୍ରକାଶିତ ହେଲା । ଏହାର ତୃତୀୟ ସଂସ୍କରଣ ପ୍ରକାଶ ପୂର୍ବରୁ କଟକର ମୋହନଚରଣ ଦାସଙ୍କ ଦ୍ୱାରା

ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ 'ରାଧାକୃଷ୍ଣ ପଦ୍ୟାବଳୀ' ଶିରୋନାମରେ ପ୍ରକାଶିତ ହେଲା । ଏହି ପଦ୍ୟାବଳୀ ତାଙ୍କଦ୍ୱାରା ସଂଗୃହୀତ ଓ ସଂଶୋଧିତ ହୋଇଥିବା କଥା ଉଲ୍ଲେଖ ଥିଲା । ଏଥିରେ ଏକ କ୍ଷୁଦ୍ର ଭୂମିକାରେ ଉପେନ୍ଦ୍ର ଭଞ୍ଜ ଓ ଅଭିମନ୍ୟୁଙ୍କ ରଚନାର ତୁଳନା କରାଯାଇ ଗୋପାଳକୃଷ୍ଣଙ୍କ ରଚନାର ଉତ୍କୃଷ୍ଟତା ପ୍ରତିପାଦନ କରାଯାଇଥିଲା । ୧୯୫୨ରେ ଏହାର ଦ୍ୱିତୀୟ ସଂସ୍କରଣ ପ୍ରକାଶିତ ହେଲା ।

୧୯୪୯ ମସିହାରେ କୃପାସିନ୍ଧୁ ନରେନ୍ଦ୍ରଦେବଙ୍କ ସମ୍ପାଦନାରେ ଏକ ସଂକ୍ଷିପ୍ତ ମୁଖବନ୍ଧ ସହ ଆଉ ଏକ 'ଗୋପାଳକୃଷ୍ଣ ପଦ୍ୟାବଳୀ' ପ୍ରକାଶ ପାଇଲା । ଏହି ପଦ୍ୟାବଳୀର ପ୍ରକାଶକ ହେଲେ ବ୍ରହ୍ମପୁର ରଏଲ୍ ପ୍ରେସ୍‌ର ପରିଚାଳକ ସୀମାଦ୍ରି ପଣ୍ଡା । ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଏହାକୁ ଆର୍ଥିକ ସାହାଯ୍ୟ ଦେଇଥିବାରୁ ଏହା ପାରଳା ମହାରାଜାଙ୍କ ନାମରେ ଉତ୍ସର୍ଗ କରାଯାଇଛି । ଏଥିରେ ମୋଟ ୩୦୬ଟି ଗୀତ ସନ୍ନିବେଶିତ ହୋଇଛି ।

ଏହାର ଦଶ ବର୍ଷ ପରେ ଅର୍ଥାତ୍ ୧୯୫୯ ମସିହାରେ କବିଚନ୍ଦ୍ର କାଳୀଚରଣଙ୍କ ସମ୍ପାଦନାରେ 'ଗୋପାଳକୃଷ୍ଣ ପଦ୍ୟାବଳୀ' ପ୍ରକାଶିତ ହେଲା । ସମ୍ପାଦକ ଏକ ସମୀକ୍ଷାରେ କବିଙ୍କର ପାଣ୍ଡିତ୍ୟ, ପ୍ରତିଭା, ମନୋଜ୍ଞ ପ୍ରକାଶଭଙ୍ଗୀ ଓ ସଙ୍ଗୀତର ବୈଶିଷ୍ଟ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି ।

୧୯୫୯-୬୦ ମସିହାରେ ବାବାଜି ବୈଷ୍ଣବ ଚରଣ ଦାସ ଆଉ ଏକ ଗୋପାଳକୃଷ୍ଣ ପଦ୍ୟାବଳୀ ପ୍ରକାଶ କରିଛନ୍ତି । ଏହା ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗଟିର ପ୍ରକାଶ କାଳ ୧୯୫୯ ମସିହା, ଦ୍ୱିତୀୟଟି ୧୯୬୦ ମସିହାରେ ପ୍ରକାଶିତ ହୋଇଥିଲା । ପ୍ରଥମ ଭାଗଟିରେ ୧୮୧ଟି, ଦ୍ୱିତୀୟରେ ୪୩୮ – ଏହିଭଳି ସର୍ବମୋଟ ୬୧୯ଟି ଗୀତ ସନ୍ନିବିଷ୍ଟ ଅଛି । ପ୍ରଥମ ଭାଗଟିରେ ଭଜନ ଓ ସ୍ମରଣ ଥିଲାବେଳେ ଦ୍ୱିତୀୟଟିରେ ରାଧାକୃଷ୍ଣ ପ୍ରେମ ଲୀଳା ଆଦି ରସାତ୍ମକ ଗୀତ ସ୍ଥାନ ପାଇଛି । ବାବାଜି ବୈଷ୍ଣବ ଚରଣ ଏହି ଗୀତଗୁଡ଼ିକୁ ଖୋରଦ୍ଧା ଗ୍ରାମସ୍ଥ ରାଧାକାନ୍ତ ମଠର ମହନ୍ତ ଗୋପାଳ ଦାସ ବାବାଜିଙ୍କଠାରୁ ପାଇଥିଲେ ବୋଲି ଉଲ୍ଲେଖ କରିଛନ୍ତି ।

ଶେଷରେ ୧୯୬୯ ମସିହାରେ ସରୋଜ କୁମାର ପାଣିଗ୍ରାହୀଙ୍କ ସମ୍ପାଦନାରେ 'ଗୋପାଳକୃଷ୍ଣ ପଦ୍ୟାବଳୀ'ର ପ୍ରଥମଭାଗ ପ୍ରକାଶ ପାଇଲା । ପାଣିଗ୍ରାହୀ ଗୋପାଳକୃଷ୍ଣ ଗୀତର ସଙ୍କଳକ ଓ ସଂଗ୍ରାହକ ବୋଲି ଏଥିରେ ଉଲ୍ଲେଖ ଅଛି । ଏହା ମଧ୍ୟ ଗଜପତି ନାରାୟଣଦେବଙ୍କ ନାମରେ ଉତ୍ସର୍ଗ କରାଯାଇଛି । ଏଥିରେ ୪୨୮ଟି ଗୀତ ସନ୍ନିବିଷ୍ଟ । ଏଥିରେ ପୂର୍ବରୁ ପ୍ରକାଶ ପାଇ ନ ଥିବା ୮୪ଟି ନୂତନ

ଗୀତ ଦେଖିବାକୁ ମିଳେ । ମାତ୍ର ଗୀତଗୁଡ଼ିକ କେଉଁଠାରୁ ଓ କାହାଠାରୁ ସଂଗ୍ରହ କରିଛନ୍ତି ତାହାର ଉଲ୍ଲେଖ ନାହିଁ । ଏହାର ସମ୍ପାଦନା ମଧ୍ୟ ଯଥାର୍ଥ ନୁହେଁ । ବାବାଜି ବୈଷ୍ଣବ ଚରଣ ଓ ମୋହନ ଗୋସ୍ୱାମୀ ରାସଦଳପାଇଁ ରାଧାକୃଷ୍ଣ ଲୀଳାତ୍ମକ ଗୀତ ରଚନା କରୁଥିବାରୁ ସ୍ୱରଚିତ ବହୁ ଗୀତଗୁଡ଼ିକୁ ଗୋପାଳକୃଷ୍ଣଙ୍କ ନାମରେ ଭଣିତା କରିଥିବା ଅନୁମାନ କରାଯାଏ । ଦାମୋଦର ପଟ୍ଟନାୟକଙ୍କ ଅଣନାତି ରାମକୃଷ୍ଣଙ୍କ ସମ୍ପାଦିତ 'ଗୋପାଳକୃଷ୍ଣ ପଦ୍ୟାବଳୀ' ସମ୍ପାଦନା ଦୃଷ୍ଟିରୁ ବିଜ୍ଞାନସମ୍ମତ ନ ହେଲେ ମଧ ସେଥିରେ ଥିବା ସଙ୍ଗୀତଗୁଡ଼ିକର ପିତୃତ୍ୱ ସମ୍ବନ୍ଧରେ ସନ୍ଦେହର ଅବକାଶ ନାହିଁ ବୋଲି ଆଲୋଚକ ଡଃ ଗଙ୍ଗାଧର ବଳ ମତ ଦେଇଛନ୍ତି ।

## ଶେଷ ଜୀବନ

ଗୋପାଳକୃଷ୍ଣଙ୍କ ଚାରୋଟି ପୁତ୍ର ଓ ଚାରୋଟି କନ୍ୟା ଥିଲେ । ପୁତ୍ରମାନଙ୍କର ନାମ ହେଲା ଯଥାକ୍ରମେ ଗୌରଚନ୍ଦ୍ର, ହରିବନ୍ଧୁ, କରୁଣାନିଧି ଓ ନୃସିଂହଚରଣ । କନ୍ୟାମାନେ ହେଲେ ଲଳିତାମା, ଗୌରୀମା, ଝିଅମା ଓ ଆମ୍ଭିମା । ପୁତ୍ରମାନେ ପିତାଙ୍କ ପରି ଭଗବତ୍‌ପରାୟଣ ଥିଲେ । ତୃତୀୟ ପୁତ୍ର କରୁଣାନିଧିଙ୍କ ଅକାଳ ବିୟୋଗ ଓ ଅଳ୍ପ ବୟସରେ ଗୋଟିଏ କନ୍ୟାର ବୈଧବ୍ୟ ଗୋପାଳକୃଷ୍ଣଙ୍କ ପ୍ରାଣକୁ ଗଭୀର ଆଘାତ ଦେଇଥିଲେ ମଧ ବୈଷ୍ଣବ ଜନୋଚିତ ସହିଷ୍ଣୁତା ବଳରେ ଏହି ଦାରୁଣ ଦୁଃଖକୁ ସେ ସହ୍ୟ କରିପାରିଥିଲେ ।

କବି ୭୮ ବର୍ଷ କାଳ ଜୀବିତ ଥିଲେ । ଯୌବନରେ ବ୍ୟାୟାମ ଅଭ୍ୟାସ, ସାତ୍ତ୍ୱିକ ଆହାର, ସତ୍‌ଚିନ୍ତା ଓ ଭଗବତ୍ ନିବେଦିତ ପ୍ରାଣ ହେତୁ ରୋଗ, ବ୍ୟାଧି ତାଙ୍କୁ ସ୍ପର୍ଶ କରି ନ ଥିଲା । ମୃତ୍ୟୁ ପୂର୍ବରୁ ସେ ସାମାନ୍ୟ ଜ୍ୱର ରୋଗରେ ପୀଡ଼ିତ ଥିଲେ । ୧୮୬୨ ଫେବୃୟାରୀ ୩ ତାରିଖରେ ଫାଲ୍‌ଗୁନ ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ଗୋପାଳକୃଷ୍ଣ ତିଳକ କାମ ଶେଷ କରି ରାତ୍ରିରେ ନିଜ ଶଯ୍ୟା ପାଖ କାନ୍ଥରେ ଲେଖିଲେ –

"ଜୀବ ଯିବାକୁ ହୋଇଲା ସଜ
ମନରେ ରାଧାଗୋବିନ୍ଦ ଭଜ ।"

ଏହାପରେ ପଦ୍ମାସନରେ ବସି ନଶ୍ୱର ଦେହ ତ୍ୟାଗ କଲେ । ପୂର୍ବରୁ ସେ ପୁତ୍ରମାନଙ୍କୁ କର୍ମକାଣ୍ଡ ମତେ ପ୍ରେତକ୍ରିୟାଦି ନ କରିବାକୁ ନିର୍ଦ୍ଦେଶ ଦେଇଯାଇଥିଲେ । ସେଇ ଅନୁସାରେ ବୈଷ୍ଣବ ମତରେ ଚତୁର୍ଦ୍ଦଶ ଦିବସରେ ଖାରଡ଼ାଙ୍ଗ ମଠରେ ମହୋତ୍ସବ ପାଳନ କରାଯାଇଥିଲା ।

ରୀତିଯୁଗରେ ବନମାଳୀ, ବଳଦେବ, ଗୌରହରି ପ୍ରଭୃତି ବହୁ ଗୀତିକବିମାନଙ୍କର ଆବିର୍ଭାବ ହୋଇଥିଲା । ସେମାନେ ମଧ୍ୟ ରାଧାକୃଷ୍ଣ ପ୍ରଣୟକୁ କେନ୍ଦ୍ର କରି ରାଶି ରାଶି ସଙ୍ଗୀତ ରଚନା କରିଥିଲେ । ମାତ୍ର ଏହି ଯୁଗର ସର୍ବଶ୍ରେଷ୍ଠ ସାରସ୍ୱତ ବିନ୍ଧାଣି ଥିଲେ କବି ଗୋପାଳକୃଷ୍ଣ । ତାଙ୍କର ଗୀତଗୁଡ଼ିକରେ ନ ଥିଲା ପାଣ୍ଡିତ୍ୟ ବା ଶବ୍ଦର ଆଡ଼ମ୍ବର । ସେଗୁଡ଼ିକ ମଧ୍ୟ ବିଶେଷ ଅଳଙ୍କାରଯୁକ୍ତ ନ ଥିଲା । ଶବ୍ଦାବଳୀର କୋମଳତା, ଭାଷାର ମାଧୁରୀ ଓ ବର୍ଣ୍ଣନାର ସାବଲୀଳ ପରିପ୍ରକାଶ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀକୁ ଏକ ସମ୍ମୋହନ ଶକ୍ତି ପ୍ରଦାନ କରିଥାଏ । ଶତାଧିକ ବର୍ଷ ବିତିଯାଇଥିଲେ ମଧ୍ୟ ତାଙ୍କ କବିତାଗୁଡ଼ିକ ଉତ୍କଳର ପୁରପଲ୍ଲୀରେ ଶୁଣିବାକୁ ମିଳେ । ଏବେବି ଓଡ଼ିଶୀ ନୃତ୍ୟ, ପାଲା, ଗୋଟିପୁଅ ନାଚରେ ଗୋପାଳକୃଷ୍ଣଙ୍କ ସଙ୍ଗୀତ ପରିବେଷଣ ହେଉଅଛି । ଜନପ୍ରିୟତା ଦୃଷ୍ଟିରୁ ଗୋପାଳକୃଷ୍ଣ ଯେ ଓଡ଼ିଶାର ସର୍ବଶ୍ରେଷ୍ଠ ଗୀତି କବି, ଏଥିରେ ସନ୍ଦେହର ଅବକାଶ ନାହିଁ ।



## କବିସୂର୍ଯ୍ୟ
# ବଳଦେବ ରଥ

ବଳଦେବ ରଥ ହେଉଛନ୍ତି ଅସାଧାରଣ କବିତ୍ୱର ଅଧିକାରୀ ଅନ୍ୟତମ ପ୍ରାଚୀନ କବି । ସପ୍ତଦଶ ଶତାବ୍ଦୀରୁ ଓଡ଼ିଆ ସାହିତ୍ୟରେ ଆରମ୍ଭ ହୋଇଥିବା କୃଷ୍ଣ ଲୀଳାତ୍ମକ ଗୀତ ରଚନା ତାଙ୍କର କାବ୍ୟକବିତାଗୁଡ଼ିକରେ ଚରମ ଉତ୍କର୍ଷ ଲାଭ କରିଥିଲା । ସେ ମଧ୍ୟଯୁଗୀୟ ରୀତିକାବ୍ୟରେ ପୂର୍ବରାଗ, ସମ୍ଭୋଗ ଓ ବିରହ ବର୍ଣ୍ଣନାରେ ଯେଉଁ ସବୁ ରୀତି ଚଳି ଆସୁଥିଲା, ତାହାକୁ ଗ୍ରହଣ କରିଥିଲେହେଁ ମଧ୍ୟଯୁଗୀୟ ରୀତିକାବ୍ୟର ବିଧିବଦ୍ଧତାରୁ ଓଡ଼ିଆ କବିତାକୁ ବହୁପରିମାଣରେ ମୁକ୍ତ କରିଛନ୍ତି । ଅଳଙ୍କାରର ପ୍ରାଧାନ୍ୟକୁ ସେ ପରିହାର କରିଛନ୍ତି । କାବ୍ୟ ଅପେକ୍ଷା ଚଉପଦୀ ରଚନାରେ ମନ ଦେଇଛନ୍ତି । ସଙ୍ଗୀତକୁ ସଂଳାପର ମର୍ଯ୍ୟାଦା ଦେଇଛନ୍ତି । ମାତ୍ରା, ବୃତ୍ତ ଓ ଛନ୍ଦର ପ୍ରବର୍ତ୍ତନ କରିଛନ୍ତି । ଆଧୁନିକ କାବ୍ୟ ଭାଷା ନିର୍ମାଣ କରିବାକୁ ଆଗେଇ ଆସିଛନ୍ତି । ଭକ୍ତିପ୍ରଧାନ ଯୁଗରେ ମଧ୍ୟ ସମାଜ, ଶାସନ ଓ ବ୍ୟକ୍ତି ଜୀବନର ଅସଙ୍ଗତି ପ୍ରତି ବ୍ୟଙ୍ଗ ଦୃଷ୍ଟି ପକାଇଛନ୍ତି । ତେଣୁ ଓଡ଼ିଆ ସାହିତ୍ୟରେ ଯଥାର୍ଥରେ ସେ ହେଉଛନ୍ତି କବିସୂର୍ଯ୍ୟ ।

### ପୂର୍ବପୁରୁଷ ଓ ବାଲ୍ୟଜୀବନ

ଅଷ୍ଟାଦଶ ଶତାବ୍ଦୀର ଶେଷ ଭାଗରେ ବଳଦେବ ରଥ ଆବିର୍ଭାବ ହୋଇଥିଲେ । ଆଲୋଚକ ସଚ୍ଚିଦାନନ୍ଦ ମିଶ୍ର କବି ୧୭୭୮ରୁ ୧୭୮୦ ମସିହା ମଧ୍ୟରେ ଜନ୍ମ

ହୋଇଥିବା ମତ ଦେଇଛନ୍ତି । ପଣ୍ଡିତ କୁଳମଣି ମିଶ୍ର ସର୍ବପ୍ରଥମେ ବଳଦେବ ରଥଙ୍କ ଜୀବନବୃତ୍ତାନ୍ତ ଲୋକଲୋଚନକୁ ଆଣିଛନ୍ତି । ତାଙ୍କ ମତରେ ବଳଦେବ ୧୭୮୯ ମସିହାରେ ଜନ୍ମଗ୍ରହଣ କରିଥିଲେ । ତାହା ମଧ ଅଭ୍ରାନ୍ତ ବୋଲି ସମସ୍ତେ ସ୍ୱୀକାର କରନ୍ତି ।

ବଳଦେବଙ୍କ ପୂର୍ବପୁରୁଷ ପୁରୀ ଜିଲ୍ଲାର ପ୍ରସିଦ୍ଧ ରଥସାମନ୍ତ ବଂଶର ପ୍ରତିଷ୍ଠାତା ବଳଭଦ୍ର ରଥ ବାଜପେୟୀ । ସେ ତାଙ୍କର ପାଣ୍ଡିତ୍ୟ ଓ ନିଷ୍ଠାବଳରେ ଉତ୍କଳର ଗଜପତି ରାଜାମାନଙ୍କର ରାଜଗୁରୁ ପଦରେ ଅଧିଷ୍ଠିତ ହେଲେ । ତାଙ୍କର ଦୁଇ ପତ୍ନୀ ଥିଲେ । ଦ୍ୱିତୀୟା ପତ୍ନୀଙ୍କର ପୁତ୍ର ଥିଲେ କୁଳମଣି ରଥ । ସେ ରାଜଦତ୍ତ ମଣିପୁର ଶାସନ ଜାଗିରିସୂତ୍ରେ ପାଇ ଅୟସରେ ଚଳୁଥିଲେ । ବହୁକାଳପରେ ସମ୍ପତ୍ତି କ୍ଷୟ ହୋଇଯିବାରୁ ତାଙ୍କର ବଂଶଧରମାନେ ମଣିପୁର ଶାସନ ଛାଡ଼ିବାକୁ ବାଧ ହେଲେ । ସେମାନେ ଦକ୍ଷିଣକୁ ଯାଇ ଗଡ଼ଜାତମାନଙ୍କରେ ଯଜମାନ କାର୍ଯ୍ୟ କରି ଜୀବିକା ନିର୍ବାହ କରିବାକୁ ଲାଗିଲେ । ସେମାନଙ୍କ ମଧରେ ଉଜ୍ଜ୍ୱଳ ରଥ ଥିଲେ ଅନ୍ୟତମ । ସେ ଗଞ୍ଜାମ ଜିଲ୍ଲାର ଦିଗପହଣ୍ଡିଠାରୁ ୬/୭ ମାଇଲ ଦୂର ବିଜୟନଗର ଗଡ଼ରେ ବାସ କରୁଥିଲେ । ତାଙ୍କର ପୁତ୍ର ଥିଲେ ବଳଦେବ ରଥ ।

ଉଜ୍ଜ୍ୱଳ ରଥ ଶାସ୍ତ୍ରଜ୍ଞ ପଣ୍ଡିତ ଥିଲେ । ସେ ବଡ଼ଖେମୁଣ୍ଡି ରାଜାଙ୍କର ଅନୁଗ୍ରହ ଲାଭ କରି ତାଙ୍କର ସଭାପଣ୍ଡିତ ପଦ ଲାଭ କରିଥିଲେ । ସେ ରାଜପ୍ରାସାଦରେ ଥିବା ଚଉପାଢ଼ିରେ ଅଧାପନା କରୁଥିଲେ । ବଳଦେବ ଶୈଶବରେ ପିତାଙ୍କଠାରୁ ସଂସ୍କୃତ ଓ ଓଡ଼ିଆ ଭାଷାରେ ସାମାନ୍ୟ ଶିକ୍ଷା ଲାଭ କରିଥିଲେ । ମାତ୍ର ଦଶ ବର୍ଷ ବୟସରେ ତାଙ୍କର ମାତାଙ୍କର ମୃତ୍ୟୁ ହେଲା । ଏହା ପରେ ତାଙ୍କର ମାତାମହ ଖଲିକୋଟ ଆଠଗଡ଼ ନିବାସୀ ତ୍ରିପୁରାରି ଓତା ତାଙ୍କର ଲାଳନ ପାଳନର ଭାର ନେଲେ । ତ୍ରିପୁରାରି ବଡ଼ ପଣ୍ଡିତ ଥିଲେ । ସେ ବଳଦେବଙ୍କୁ ସଂସ୍କୃତ କାବ୍ୟ, ଅଳଙ୍କାର ଓ ଦର୍ଶନ ପ୍ରଭୃତି ଶିକ୍ଷା ଦେଲେ । ବଳଦେବ ଅଳ୍ପ କାଳ ମଧରେ ନାନା ଶାସ୍ତ୍ରରେ ପାଣ୍ଡିତ୍ୟ ଅର୍ଜନ କଲେ ।

ବଳଦେବ ରଥଙ୍କ ପାଣ୍ଡିତ୍ୟ ଅର୍ଜନ ବିଷୟରେ ଏକ କିମ୍ୱଦନ୍ତୀ ଅଛି । ଏହା ଅନୁଯାୟୀ ମାତାମହ ତ୍ରିପୁରାରି ଜଣେ ବିଶିଷ୍ଟ ତାନ୍ତ୍ରିକ ଥିଲେ । ସେ ତନ୍ତ୍ର ବଳରେ ଅଦ୍ଭୁତ ସାଧନ କରିପାରୁଥିଲେ । ଥରେ ନାତି ବଳଦେବ ସାଙ୍ଗମାନଙ୍କ ସହିତ ଆତସବାଜି ଖେଳିବାକୁ ଗଲାବେଳେ ପବନ ହେବାରୁ ସେ ନିଜର ମନ୍ତ୍ର ବଳରେ ଗ୍ରାମ ଭିତରେ ପବନକୁ ସ୍ଥିର କରିଦେଲେ । କଥିତଅଛି ଯେ ବଳଦେବ ସେହି ମନ୍ତ୍ର ଜାଣିବାକୁ ମାତାମହଙ୍କ ପାଖେ ଅଳି କଲେ । ତ୍ରିପୁରାରି ପାଖରେ

ଥିବା ଦୁଧ କଂସାକ ନେଇ ଦେବୀଙ୍କୁ ଦେବାକୁ କହିଲେ । ବଳଦେବ ଦେବୀଙ୍କୁ ଦୁଧ ଯାଚନ୍ତେ ସବୁତକ ଦୁଧ ଉଭେଇଗଲା । ଅଜାଙ୍କ ନିର୍ଦ୍ଦେଶରେ ରାତ୍ରିରେ ସେ କ'ଣ ପିଇବେ ବୋଲି ବଳଦେବ ଦେବୀଙ୍କୁ ପଚାରିଲେ । ଦେବୀ ନିଜର ସ୍ତନ ପାଖେ ଦୁଧପାତ୍ରଟି ରଖିବାକୁ ସଙ୍କେତ ଦେଲେ । ସଙ୍ଗେ ସଙ୍ଗେ ପାତ୍ରଟି ଦୁଧପୂର୍ଣ୍ଣ ହୋଇଗଲା । ମାତାଙ୍କ ଅମୃତମୟ ଦୁଧକୁ ବଳଦେବ ପାନ କରି ଅପୂର୍ବ ପାଣ୍ଡିତ୍ୟର ଅଧିକାରୀ ହେଲେ ।

## ବିବାହ

ମାତ୍ର ୧୮ ବର୍ଷ ବୟସରେ ପୁରୀ ବାସେଳୀସାହି ନିବାସୀ ରାମକୃଷ୍ଣ ମିଶ୍ରଙ୍କ କନ୍ୟା ରତ୍ନମଣିଙ୍କ ସହ ବଳଦେବଙ୍କର ବିବାହ ହେଲା ।

## ଜଳନ୍ତର ଯାତ୍ରା

ବଡ଼ଖେମୁଣ୍ଡି ରାଜାଙ୍କ ମୃତ୍ୟୁପରେ ରାଜ୍ୟରେ ବିଶୃଙ୍ଖଳା ଦେଖାଦେଲା । ରାଜାଙ୍କ ପୃଷ୍ଠପୋଷକତା ଲାଭ କରିଥିବା ବଳଦେବ ରଥଙ୍କ ପରିବାର ମଧ୍ୟ ନିଃସ୍ୱ ହୋଇପଡ଼ିଲେ । ପରିବାରରେ ଥିଲେ ବଳଦେବଙ୍କ ବଡ଼ଭାଇ ହରିହର । ସେ ମଧ୍ୟ ପଣ୍ଡିତ ଥିଲେ । ସେ କିନ୍ତୁ ବିବାହ କରି ନ ଥିଲେ । ଅନନ୍ତ ପଦ୍ମନାଭ ପଟ୍ଟନାୟକଙ୍କ ବିବରଣୀ ଅନୁଯାୟୀ ସେ ବିବାହ କରିଥିଲେ; କିନ୍ତୁ ପତ୍ନୀଙ୍କର ଅକାଳ ବିୟୋଗ ଘଟିଥିଲା । ସେ ଯାହାହେଉ, ସେ ସାଂସାରିକ ବିଷୟ ପ୍ରତି ଉଦାସୀନ ଥିବା ଜଣାଯାଏ । ଗୃହରେ ବିଧବା ଭଉଣୀ ମଧ୍ୟ ଆସି ରହିଲେ । ଏହି ପରିବାରକୁ ଚଳାଇବା କଷ୍ଟସାଧ୍ୟ ହୋଇପଡ଼ିଲା । ସୌଭାଗ୍ୟବଶତଃ, ହରିହର ପଡ଼ୋଶୀ ରାଜ୍ୟ ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟଙ୍କ ରାଜସଭାରେ ସ୍ଥାନ ପାଇଲେ । ସେ ଜଳନ୍ତରକୁ ତାଙ୍କ ବଡ଼ଭଉଣୀ ଓ ସାନଭାଇ ବଳଦେବଙ୍କୁ ଆଣିଲେ ଓ ସେଠାରେ ସମସ୍ତେ ବାସ କରିବାକୁ ଲାଗିଲେ ।

## କବିସୂର୍ଯ୍ୟ ଉପାଧି

ଜଳନ୍ତରରେ ଥିଲାବେଳେ ବଳଦେବ କବିତା ରଚନା ଆରମ୍ଭ କଲେ । ଜଳନ୍ତରର ରାଜା ରାମଚନ୍ଦ୍ର ଛୋଟରାୟ ତାଙ୍କୁ ଏ ଦିଗରେ ଉତ୍ସାହିତ କରିଥିବାର ଜଣାଯାଏ । କଥିତଅଛି ଯେ ଯୁବକ ରାଜା ରାମଚନ୍ଦ୍ର ଚନ୍ଦ୍ରକଳାନାମ୍ନୀ ଜଣେ ପିତୃମାତୃହୀନା ଅନାଥା ବାଳିକାକୁ ନିଜର କନ୍ୟା ରୂପେ ପ୍ରତିପୋଷଣ କରୁଥିଲେ । ରାଜା ଦିନେ ବଳଦେବଙ୍କୁ ଉପେନ୍ଦ୍ର ଭଞ୍ଜଙ୍କ 'ଲାବଣ୍ୟବତୀ' ପରି 'ଚନ୍ଦ୍ରକଳା' ନାମକ କାବ୍ୟ ଲେଖିବାକୁ ଅନୁରୋଧ କଲେ । ରାଜାଙ୍କ ଇଚ୍ଛା ଅନୁଯାୟୀ ସେ

ଚନ୍ଦ୍ରକଳା ନାମକ ଏକ କାବ୍ୟ ରଚନା ଆରମ୍ଭ କଲେ । ମାତ୍ର ୧୪ଟି ଛାନ୍ଦ ରଚନା କଲା ପରେ ବସନ୍ତରୋଗରେ ଚନ୍ଦ୍ରକଳାର ମୃତ୍ୟୁ ହେଲା । ଚନ୍ଦ୍ରକଳାର ଅକାଳ ମୃତ୍ୟୁରେ କବି ଶୋକାଭିଭୂତ ହୋଇ ପଡ଼ିଲେ । ସେ କାବ୍ୟ ମଧ୍ୟ ସମ୍ପୂର୍ଣ୍ଣ କରି ନ ଥିଲେ ।

ନାଟ୍ୟକାର ନୀଳକଣ୍ଠ ପଟ୍ଟନାୟକ ବଳଦେବ ଓ ଚନ୍ଦ୍ରକଳାଙ୍କ ମଧ୍ୟରେ ପ୍ରଣୟ ସମ୍ପର୍କ ଥିବା ଦର୍ଶାଇ ଏକ ନାଟକ ରଚନା କରିଛନ୍ତି । ତାହା ମଧ୍ୟ ଅଭିନୀତ ହୋଇଅଛି । ଆଉ କାହା ମତରେ ଚନ୍ଦ୍ରକଳା ବହୁକାଳ ଧରି ଜୀବିତ ଥିଲେ । ବଳଦେବ ଓ ତାଙ୍କ ପତ୍ନୀଙ୍କ ମୃତ୍ୟୁ ପରେ ସେ ସତୀ ହୋଇଥିଲେ ।

ବଳଦେବ କାବ୍ୟର ଛାନ୍ଦଗୁଡ଼ିକୁ ଜଳନ୍ତରର ରାଜାଙ୍କ ନାମରେ ଭଣିତା କରିଥିବାର ଜଣାଯାଏ । ସେ ମଧ୍ୟ ଆଉ ଅନେକ କବିତା ରାଜାଙ୍କ ନାମରେ ଭଣିତା କରିଥିଲେ । ରାଜା କବିଙ୍କୁ 'କବିସୂର୍ଯ୍ୟ' ଉପାଧିରେ ଭୂଷିତ କରିଥିଲେ ।

ବଳଦେବ ରାଜାଙ୍କର ପ୍ରିୟପାତ୍ର ଥିଲେ । କର୍ମନିଷ୍ଠା ଓ ପ୍ରଶାସନିକ ଦକ୍ଷତା ଯୋଗୁଁ ରାଜା ତାଙ୍କୁ ଦେବାନ ଭାବେ ନିଯୁକ୍ତ କଲେ । କବି ଜଳନ୍ତରରେ ୧୨ବର୍ଷ ଦେବାନ ଭାବେ କାର୍ଯ୍ୟ କରିଥିଲେ । ଏହି ସମୟ ମଧ୍ୟରେ ସେ ବହୁ କୂପ, ପୁଷ୍କରିଣୀମାନ ଖନନ କରାଇଥିଲେ । ବିଭିନ୍ନ ଉନ୍ନୟନମୂଳକ କାର୍ଯ୍ୟ ମଧ୍ୟ ସମ୍ପାଦନ କରିଥିଲେ । ଦେବ ମନ୍ଦିରମାନଙ୍କରେ ସେବା ପୂଜାର ବ୍ୟବସ୍ଥା ହୋଇଥିଲା । ସମାଜ ସଂସ୍କାର ଦିଗରେ ମଧ୍ୟ ସେ ବ୍ରତୀ ଥିଲେ । ଏଥିପାଇଁ 'ଉତ୍କଳାଚାର' ନାମକ ଏକ ଅନୁଷ୍ଠାନ ଗଢ଼ିଥିଲେ । ଏଥି ସଙ୍ଗେ ସଙ୍ଗେ ସେ କାବ୍ୟ ଚର୍ଚ୍ଚା କରୁଥିଲେ । ବହୁ ସଙ୍ଗୀତ ମଧ୍ୟ ରଚନା କରିଥିଲେ । କବି ୧୮୧୨ ପର୍ଯ୍ୟନ୍ତ ଜଳନ୍ତରରେ ରହିଥିବାର ଜଣାଯାଏ । ସମ୍ଭବତଃ, ରାଜାଙ୍କର ମୃତ୍ୟୁ ହେବାରୁ ସେ ଜଳନ୍ତର ଛାଡ଼ିବାକୁ ବାଧ୍ୟ ହେଲେ ।

ଆଲୋଚକ ଯମେଶ୍ୱର ମିଶ୍ରଙ୍କ ମତରେ ବଳଦେବ କେବଳ କବି ନ ଥିଲେ; ସେ ଥିଲେ ରସିକ । ସେ ଦେଖିବାକୁ ଅତି ସୁନ୍ଦର ଥିଲେ । ତେଣୁ ରାଜଅନ୍ତଃପୁରର ରାଣୀ ଓ ରାଜଜେମାମାନେ ତାଙ୍କ ପ୍ରତି ପ୍ରଣୟାସକ୍ତ ହୋଇପଡୁଥିଲେ । ସମ୍ଭବତଃ, ରାଜଅନ୍ତଃପୁରକୁ ଯିବାକୁ ତାଙ୍କୁ ନିଷେଧ କରାଯାଇଥିଲା ।

## ଆଠଗଡ଼ରେ ନିଯୁକ୍ତି

ଜଳନ୍ତର ନିକଟବର୍ତ୍ତୀ ରାଜ୍ୟ ଥିଲା ଆଠଗଡ଼ । ସେଠାରେ ରାଜା ଥିଲେ ବାଲୁକେଶ ହରିଚନ୍ଦନ । ସେ ମଧ୍ୟ କାବ୍ୟେ ଅନୁରାଗୀ ଥିଲେ । ସେ ସାଦରେ ବଳଦେବଙ୍କୁ ନିଜ ରାଜ୍ୟକୁ ଆମନ୍ତ୍ରଣ କଲେ । ସେ ସେଠାରେ ତାଙ୍କୁ ଦେବାନଭାବେ

ନିଯୁକ୍ତି ଦେଲେ । ବଳଦେବ ଓ ତାଙ୍କ ମଧରେ ଅଭେଦ ବନ୍ଧୁତା ଥିଲା । ସେ ବଳଦେବଙ୍କର ପୃଷ୍ଠପୋଷକ ମଧ ଥିଲେ । ବଳଦେବ ରାଜାଙ୍କ ମନୋରଞ୍ଜନପାଇଁ ବହୁ କବିତା ଓ ସଙ୍ଗୀତ ରଚନା କରିଥିଲେ ।

ବଳଦେବ ଆଠଗଡ଼ରେ ଦଶ ବର୍ଷ କାଳ ରହିଲେ । ଏହି ସମୟଟି ତାଙ୍କର କାବ୍ୟପ୍ରତିଭାର ମଧାହ୍ନ କାଳ ଥିଲା ବୋଲି କୁହାଯାଇପାରେ । ଏଠାରେ ଅନେକ ସୁନ୍ଦର ଚଉପଦୀ ସହିତ ସେ ରଚନା କଲେ ତାଙ୍କର ଶ୍ରେଷ୍ଠ କୃତି 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ।

## ପୁରୀ ମହାରାଜାଙ୍କ ସ୍ୱୀକୃତି

ପଣ୍ଡିତ କୁଳମଣି ଦାସଙ୍କ ମତ ଅନୁଯାୟୀ କବି ତାଙ୍କ ପ୍ରତିଭାର ପରିଚୟ ଦେବାକୁ ପୁରୀ ଯାଇଥିଲେ । ସେଠାରେ ସେ ବନ୍ଧୁ ଜଗନ୍ନାଥ ମହାସୁଆରଙ୍କ ଘରେ ଅବସ୍ଥାନ କରିଥିଲେ । ସେତେବେଳେ ମହାରାଜା ଥିଲେ ଗଜପତି ମୁକୁନ୍ଦଦେବ । ମହାସୁଆର ମଧ ମହାରାଜାଙ୍କର ପ୍ରିୟପାତ୍ର ଥିଲେ । ବଳଦେବ ସଂସ୍କୃତ ଶ୍ଳୋକମାନ ରଚନା କରି ମହାସୁଆରଙ୍କ ହାତରେ ରାଜସଭାକୁ ପଠାଉଥିଲେ । ମାତ୍ର ସେ ପୁରୁଣା ଶ୍ଳୋକ ବୋଲି ମହାରାଜାଙ୍କୁ ପଣ୍ଡିତମାନେ ବୁଝାଇଦେବାରେ ତାଙ୍କୁ କବି ସ୍ୱୀକୃତି ମିଳି ନ ଥିଲା । ସେ ଏହି ସମୟରେ 'ବାଧିଲା ଜାଣି କ୍ଷମା' ଓ 'କ୍ଷୀର ପ୍ରାୟ ସିନ୍ଧୁ ଜେମା ପ୍ରାଣ ବନ୍ଧୁ' ନାମକ ଦୁଇଟି ଭଜନ ଲେଖି ଜନପ୍ରିୟତା ହାସଲ କଲେ । ଶେଷରେ 'ମୋ ରାଣ' ନାମକ କବିତାଟି ଲେଖି ମହାସୁଆରଙ୍କ ହାତେ ପଠାଇଲେ । ସଭାରେ ଏ କବିତାର ଆଲୋଚନା ହେଲା । ଗଜପତି ମହାରାଜା ଅବଶେଷରେ ଲକ୍ଷ୍ମୀଙ୍କ ଜଗମୋହନଠାରେ କବିଙ୍କୁ ଭେଟିବାକୁ ସମ୍ମତି ଦେଲେ । ଲକ୍ଷ୍ମୀଙ୍କ ଜଗମୋହନଠାରେ ଦୁହିଁଙ୍କର ଭେଟ ହେଲା । ରାଜା କବିଙ୍କର ସଂସ୍କୃତ ଜ୍ଞାନ ପରୀକ୍ଷା ନିମନ୍ତେ ଏକ ପ୍ରଶ୍ନ ଦେଇ ତା'ର ତିନି ପଙ୍‌କ୍ତି ଆଠ ଦିନ ମଧରେ ପୂରଣ କରିବାକୁ ଆଦେଶ ଦେଲେ । କବି ବଡ଼ଦେଉଳରେ 'ଧନ୍ୟ ହେ ନନ୍ଦକିଶୋର, ସତୀ ଧୃତି ଧନଚୋର' କବିତାଟି ଗାଇ ସମସ୍ତଙ୍କୁ ମୁଗ୍ଧ କରିଦେଲେ । ମହାରାଜା ତାଙ୍କର 'କବିସୂର୍ଯ୍ୟ' ଉପାଧିକୁ ସ୍ୱୀକୃତି ଦେଲେ । ଭଣ୍ଡାରରୁ ପାଟଶାଢ଼ି ଅଣାଇ ସ୍ୱହସ୍ତରେ କବିଙ୍କ ଶିରରେ ବାନ୍ଧିଲେ । ବଳଦେବ ରାଜା ଦେଇଥିବା ପ୍ରଶ୍ନର ତିନି ପଙ୍‌କ୍ତି ପୂରଣ କଲେ ଓ ରାଜସଭାର ପଣ୍ଡିତଭାବେ ନିଯୁକ୍ତ ହେଲେ । ତାଙ୍କୁ ମଧ ଏକ ସନନ୍ଦ ଦେଇ ସମ୍ମାନିତ କରାଗଲା ।

କେହି କେହି ଆଲୋଚକ ମହାରାଜାଙ୍କ ସ୍ୱୀକୃତି ପ୍ରଦାନକୁ ସମ୍ପୂର୍ଣ୍ଣ ମନଗଢ଼ା ଓ କପୋଳକଳ୍ପିତ ବୋଲି ମତ ଦେଇଛନ୍ତି । ତାଙ୍କ ମତରେ ପୁରୀ ମହାରାଜା ଓ

ଆଠଗଡ଼ ରାଜାଙ୍କ ସହିତ ସମ୍ପର୍କ ନିବିଡ଼ ଓ ଘନିଷ୍ଠ ଥିଲା । ମୁକୁନ୍ଦଦେବ ମୁସଲମାନମାନଙ୍କ ଆକ୍ରମଣବେଳେ ଆଠଗଡ଼ରେ ବହୁବାର ଆଶ୍ରୟ ଗ୍ରହଣ କରିଥିବା ଦୃଷ୍ଟିରୁ ବଳଦେବଙ୍କ ସହିତ ପରିଚୟ ହୋଇଥିବା ନିଶ୍ଚିତ । ତେଣୁ ସେ ପୁରୀ ଯାଇ ଦୀର୍ଘ ଛଅ ମାସ କାଳ କଠିନ ପରୀକ୍ଷାର ସମ୍ମୁଖୀନ ହେବା ଆବଶ୍ୟକ ନ ଥିଲା । ଏହା କେବଳ କଳ୍ପନାପ୍ରସୂତ ନୁହେଁ, ଅମର୍ଯ୍ୟାଦାକର ମଧ୍ୟ ଅଟେ । ମାତ୍ର ସେ କାଳରେ ଗଜପତି ମହାରାଜାଙ୍କ ସ୍ୱୀକୃତି ପାଇବାକୁ ସମସ୍ତ ଅଞ୍ଚଳରୁ କବିମାନେ ପୁରୀକୁ ଆସୁଥିବା ଦୃଷ୍ଟିରୁ ବଳଦେବ ମଧ୍ୟ ପୁରୀ ଆସିବା ଅଧିକ ଯୁକ୍ତିଯୁକ୍ତ ବୋଲି ମନେହୁଏ ।

ବଳଦେବ ୧୮୨୦-୨୧ ମସିହା ଆଡ଼କୁ ଆଠଗଡ଼ ଛାଡ଼ିଲେ । ପ୍ରବାଦ ଅଛି ଯେ ଆଠଗଡ଼ ରାଜଜେମା କଳାବତୀଙ୍କୁ ଶିକ୍ଷାଦେବାପାଇଁ ସେ ନିଯୁକ୍ତ ହୋଇଥିଲେ । ମାତ୍ର ଖୁବ୍ ଶୀଘ୍ର ସେ ରାଜଜେମା କଳାବତୀଙ୍କ ପ୍ରତି ପ୍ରେମାସକ୍ତ ହୋଇପଡ଼ିଲେ । ସେ ଏହି ସମୟରେ ରଚନା କରିଥିଲେ କବିତାଦ୍ୱୟ – 'ତୁହି ପରା ମୋ ହୃଦୟ ମଣିମୟ ହାରାରେ' ଓ 'କର କ୍ଷମାରେ, ରତି ପ୍ରତିମା ତୁ କର କ୍ଷମାରେ ।' ରାଜକୁମାରୀଙ୍କୁ ରାଜସଭାରେ ପରିହାସ କରିଛନ୍ତି ବୋଲି ମିଥ୍ୟା ଅପବାଦ ଦେଇ ରାଜା କବିଙ୍କୁ ଖମଣାଖୋଲରେ ହତ୍ୟା କରିବାକୁ ଆଦେଶ ଦେଲେ । ରାଜକୁମାରୀ ଅବଶ୍ୟ ଏଥିରେ ହସ୍ତକ୍ଷେପ କରି ବଳଦେବଙ୍କୁ ମୃତ୍ୟୁଦଣ୍ଡରୁ ରକ୍ଷା କଲେ । ଆଉ କାହା ମତରେ ବଳଦେବ ସ୍ୱୟଂ ରାଣୀଙ୍କ ଉଦ୍ଦେଶ୍ୟରେ ପ୍ରଣୟମୂଳକ କବିତା ଲେଖିବାରୁ ରାଜା ତାଙ୍କୁ ଦଣ୍ଡାଦେଶ ଦେଲେ । ସେ ଯାହାହେଉ, ତାଙ୍କର ପ୍ରାଶାସନିକ ଦକ୍ଷତା ଓ ଅଭିଜ୍ଞତା ଦୃଷ୍ଟିରୁ କମ୍ପାନୀ ସରକାର ତାଙ୍କୁ ମହୁରୀ ରାଜ୍ୟର ଦେବାନ ବା ମ୍ୟାନେଜର ଭାବେ ନିଯୁକ୍ତି ଦେଲେ । ସେତେବେଳେ ବ୍ରହ୍ମପୁର ମହୁରୀ ରାଜ୍ୟର ରାଜଧାନୀ ଥିଲା । କବି ତାଙ୍କ ପରିବାର ସହ ୧୮୨୦-୨୧ ମସିହା ବେଳକୁ ଆଠଗଡ଼ରୁ ଆସି ବ୍ରହ୍ମପୁରରେ ବସବାସ କଲେ ।

## ମହୁରୀ ରହଣି

ମହୁରୀରେ ଥିଲାବେଳେ ମଧ୍ୟ ସୁଦର୍ଶନ କବି ପ୍ରେମ ବ୍ୟାପାରରେ ଲିପ୍ତ ହୋଇ ପଡ଼ିଥିବା ଜଣାଯାଏ । ଯଜ୍ଞେଶ୍ୱର ମିଶ୍ର 'କବିସୂର୍ଯ୍ୟ' ନାମକ ଏକ ପ୍ରବନ୍ଧରେ ଦର୍ଶାଇଛନ୍ତି ଯେ ମହୁରୀ ରାଣୀଙ୍କ ଭଉଣୀ ଗୌରୀ ସଙ୍ଗୀତ ଅନୁରାଗିଣୀ ଥିଲେ । ସେ କବିଙ୍କ ପ୍ରତି ପ୍ରଣୟାସକ୍ତ ହୋଇପଡ଼ିଲେ । ସେ ଢଳନ୍ତର ରାଜଜେମା ଚନ୍ଦ୍ରକଳାପାଇଁ କାବ୍ୟ ଲେଖିଲାପରି ତାଙ୍କ ନାମରେ

ଏକ କାବ୍ୟ ଲେଖିବାପାଇଁ କବିଙ୍କୁ ଅନୁରୋଧ କଲେ । ବଳଦେବ ତହିଁରେ ସମ୍ମତ ନ ହେବାରୁ ଗୌରୀ ଆତ୍ମହତ୍ୟା କରିବାକୁ ଧମକାଇଲେ । ଆତ୍ମହତ୍ୟାରୁ ନିବୃତ୍ତ କରିବାପାଇଁ ବଳଦେବ ଅନୁଧାବନ କରି କେଳି ସରୋବରରେ ଗୌରୀଙ୍କୁ ଉଲଗ୍ନ ଅବସ୍ଥାରେ ସ୍ନାନ କରୁଥିବାର ଦେଖିଲେ । ଗୌରୀଙ୍କୁ ଦେଖି କ୍ଷମା ଭିକ୍ଷା କଲେ ଓ 'କର କ୍ଷମାରେ, ରତି ପ୍ରତିମା ତୁ' ଚଉପଦୀ ଲେଖି ରାଜାଙ୍କୁ ଭେଟି ଦେଲେ । ରାଜା ଏଥିରେ ଉତ୍‌କ୍ଷିପ୍ତ ହୋଇ ତାଙ୍କୁ ହତ୍ୟା କରିବାପାଇଁ ଘାତକ ନିଯୁକ୍ତ କଲେ । ବଳଦେବ କିନ୍ତୁ କୌଶଳକ୍ରମେ ଘାତକ ହାତରୁ ରକ୍ଷା ପାଇଥିଲେ ।

ଐତିହାସିକ ଡଃ କୃଷ୍ଣଚନ୍ଦ୍ର ଜେନା ଅନୁମାନ କରନ୍ତି ଯେ ବଳଦେବ ଇଂରେଜମାନଙ୍କଠାରୁ ଉତ୍କୋଚ ଗ୍ରହଣ କରି ମହୁରୀ ରାଜ୍ୟର ପତନପାଇଁ ପଥ ସୁଗମ କରିଦେଲେ । ମାତ୍ର ଏହା ବିଶ୍ୱାସଯୋଗ୍ୟ ନୁହେଁ । ମହୁରୀ ପତନର ବହୁ କାଳପରେ ୧୮୨୧ ମସିହାରେ ବଳଦେବ ମହୁରୀ ରାଜ୍ୟର ଦେବାନ ପଦ ଗ୍ରହଣ କରିଥିଲେ । ଇଂରେଜମାନେ ମହୁରୀ ରାଜ୍ୟକୁ ନିଜ ପ୍ରତ୍ୟକ୍ଷାଧୀନରେ ରଖିବାପାଇଁ ଦେବାନଙ୍କୁ ଉତ୍କୋଚ ଦେବାର ଆବଶ୍ୟକ ମଧ୍ୟ ନ ଥିଲା । ଭ୍ରାତୃ ବିବାଦରୁ ମହୁରୀ ରାଜ୍ୟର ପତନ ଘଟିଲା ବୋଲି ମହୁରୀ ଯୁବରାଜ କୃପାସିନ୍ଧୁ ପଟ୍ଟଦେବ ତାଙ୍କ ରଚିତ 'ମହୁରୀ ପତନ' ନାଟକରେ ଉଲ୍ଲେଖ କରିଛନ୍ତି ।

## ପାରଳାଖେମୁଣ୍ଡିରେ ନିଯୁକ୍ତି

ଏହି ସମୟରେ ପାରଳାଖେମୁଣ୍ଡିରେ ଅରାଜକତା ଦେଖାଦେଲା । ରାଜା ପୁରୁଷୋତ୍ତମଦେବଙ୍କ ମୃତ୍ୟୁ ହେଲା । ତାଙ୍କ ପୁତ୍ର ଜଗନ୍ନାଥ ଗଜପତି ନାରାୟଣଦେବ ଅପ୍ରାପ୍ତବୟସ୍କ ଥିଲେ । ପଣ୍ଡିତ କୁଳମଣି ଦାସ କହନ୍ତି ଯେ ଗଞ୍ଜାମର ଜିଲ୍ଲା କଲେକ୍ଟର ବଳଦେବଙ୍କୁ ଅପ୍ରାପ୍ତବୟସ୍କ ରାଜାଙ୍କର ଗୃହଶିକ୍ଷକଭାବେ ନିଯୁକ୍ତ କରିଥିଲେ । ମାତ୍ର ଏହା ଇତିହାସସମ୍ମତ ନୁହେଁ । କାରଣ ବଳଦେବ ପାରଳାଖେମୁଣ୍ଡି ଗଲାବେଳକୁ ରାଜା ପ୍ରାପ୍ତବୟସ୍କ ହୋଇସାରିଥିଲେ । ନାରାୟଣଦେବ ଅପାରଗ ଓ ଇନ୍ଦ୍ରିୟାସକ୍ତ ଥିଲେ । ଫଳରେ ରାଜ୍ୟରେ ବିଶୃଙ୍ଖଳା ଓ ଗୃହବିବାଦ ଦେଖାଦେଲା । ପେସ୍‌କସ୍ ଯଥା ସମୟରେ ଦିଆଯାଇପାରିଲା ନାହିଁ । ତେଣୁ କମ୍ପାନୀ ସରକାର ପାରଳାଖେମୁଣ୍ଡିକୁ ନିଜ ନିୟନ୍ତ୍ରଣାଧୀନ କଲେ । ପ୍ରଥମେ ପଦ୍ମନାଭଦେବଙ୍କୁ ମ୍ୟାନେଜର ଭାବେ ନିଯୁକ୍ତି ଦିଆଗଲା । ମାତ୍ର ତାଙ୍କ କାର୍ଯ୍ୟ ସନ୍ତୋଷଜନକ ନ ହେବାରୁ ୧୮୩୦ ମସିହା ମଧ୍ୟଭାଗରେ ବଳଦେବ ରଥଙ୍କୁ ମ୍ୟାନେଜରଭାବେ ନିଯୁକ୍ତ କରାଗଲା ।

କବିସୂର୍ଯ୍ୟ ବଳଦେବ କିନ୍ତୁ ପାରଳାରେ ଅଶାନ୍ତି ଓ ବିଦ୍ରୋହ ଦୂର କରିବାକୁ ସମର୍ଥ ହୋଇ ନ ଥିଲେ । ବିଦ୍ରୋହୀ ଗୋପୀନାଥଙ୍କର ଜଣେ ବଡ଼ ସମର୍ଥକ ଥିଲେ କବି ଗୋପାଳକୃଷ୍ଣ । ତାଙ୍କ ସଙ୍ଗେ କବିସୂର୍ଯ୍ୟଙ୍କର ସମ୍ପର୍କ ଭଲ ଥିଲା । ଶେଷରେ ବିଦ୍ରୋହ ଦମନପାଇଁ ମାନ୍ଦ୍ରାଜ ରାଜସ୍ୱ ବୋର୍ଡ଼ର ପ୍ରଥମ ସଦସ୍ୟ ଜନ୍ ରୁସେଲ୍ ନିଯୁକ୍ତ ହେଲେ । ୧୮୩୨ ମସିହାରେ ସେ ପାରଳାଖେମୁଣ୍ଡିରେ ସୈନ୍ୟ ଛାଉଣୀ ପକାଇ ବିଦ୍ରୋହର କାରଣମାନ ଅନୁଧ୍ୟାନ କଲେ । ତଦନ୍ତ ବେଳେ ବଳଦେବ କୌଣସି ଦଳ ସପକ୍ଷରେ ବା ବିପକ୍ଷରେ କହି ନ ଥିଲେ । ଫଳରେ ରୁସେଲ ତାଙ୍କ ଉପରେ ରୁଷ୍ଟ ହେଲେ । ରୁସେଲ ବିଦ୍ରୋହୀ ନେତା ଗୋପୀନାଥ ପଟ୍ଟନାୟକ ପ୍ରଭୃତିଙ୍କୁ ଗିରଫ କରି ବିଚାର କଲେ । ୧୫ ଜଣ ବିଦ୍ରୋହୀଙ୍କୁ ଫାଶୀଦଣ୍ଡ ଓ ଅନ୍ୟ ୧୦୩ ଜଣଙ୍କୁ ଆଜୀବନ କାରାଦଣ୍ଡ ଦିଆଗଲା । ୧୮୩୪ରେ ବିଦ୍ରୋହ ଦମନ ପରେ ବଳଦେବ ରଥଙ୍କୁ ମ୍ୟାନେଜର ପଦରୁ ମଧ୍ୟ ବହିଷ୍କାର କରାଗଲା । ରାଜାଙ୍କ ପ୍ରତି ବା କମ୍ପାନୀ ସରକାରଙ୍କ ପ୍ରତି ବଳଦେବ ବିଶ୍ୱସ୍ତ ନ ଥିବା କାରଣ ଦର୍ଶାଯାଇଥିଲା ।

ପଣ୍ଡିତ କୁଳମଣି ଦାସଙ୍କ ବିବରଣୀରୁ ଜଣାଯାଏ ଯେ, ପାରଳାଖେମୁଣ୍ଡିରେ ଥିଲା ବେଳେ ବଳଦେବ ଆଠଗଡ଼ ରାଜାଙ୍କୁ ଦେଖା କରିବାକୁ ଯାଇଥିଲେ । ରାଜା ସେତେବେଳେ ପୃଷ୍ଠବ୍ରଣ ରୋଗରେ ପଡ଼ିଥିଲେ । ସେଠାରେ ସେ ରାଜାଙ୍କ ମନରେ ପ୍ରସନ୍ନତା ଆଣିବାପାଇଁ 'ହାସ୍ୟକଲ୍ଲୋଳ' ନାମକ ଏକ ହାସ୍ୟରସ ପୂର୍ଣ୍ଣ କ୍ଷୁଦ୍ର ଗ୍ରନ୍ଥ ଲେଖିଲେ । ସେ ତାହାକୁ ରାଜାଙ୍କ ଆଗରେ ପାଠ କଲେ । କଥିତ ଅଛି ଯେ ଏହା ଶୁଣି ରାଜା ବିହ୍ୱଳ ହୋଇ ହସିବାକୁ ଲାଗିବା ଫଳରେ ପୃଷ୍ଠବ୍ରଣଟି ଫାଟିଗଲା ଓ ସେ ରୋଗମୁକ୍ତ ହେଲେ । ସେ ମଧ୍ୟ ଆଠଗଡ଼ ରାଣୀଙ୍କ ଅନୁରୋଧକ୍ରମେ ସଂସ୍କୃତ ଜାଣି ନ ଥିବା ବାଲିତୃତୀୟା ବ୍ରତଚାରିଣୀମାନଙ୍କପାଇଁ ଓଡ଼ିଆରେ ବାଲିତୃତୀୟା ବ୍ରତ କଥା ଅନୁବାଦ କରିଥିଲେ ।

ପଣ୍ଡିତ କୁଳମଣି ଦାସଙ୍କ ମତରେ କଲେକ୍ଟର ରବର୍ଟ ବ୍ୟାନରମାନ୍ ବଳଦେବଙ୍କୁ ଦ୍ୱିତୀୟଥରପାଇଁ ମଞ୍ଜୁରୀର ଦେବାନ ଭାବେ ନିଯୁକ୍ତ କଲେ । ନାଟ୍ୟକାର ନୀଳକଣ୍ଠ ପଟ୍ଟନାୟକ ମଧ୍ୟ ସେ ଦ୍ୱିତୀୟବାର ମଞ୍ଜୁରୀର ମ୍ୟାନେଜର ଭାବେ ନିଯୁକ୍ତ ହୋଇଥିବା କଥା ଉଲ୍ଲେଖ କରିଛନ୍ତି । ମାତ୍ର ଏକ ବର୍ଷ ରହିଲା ପରେ ସେ କାର୍ଯ୍ୟରୁ ଅବ୍ୟାହତି ନେଇ ବ୍ରହ୍ମପୁରସ୍ଥ ବାଲାଜୀପେଣ୍ଟରେ ଅବଶିଷ୍ଟ ଜୀବନଯାପନ କଲେ । ତାଙ୍କର ରାଜଦତ୍ତ ପ୍ରଚୁର ଭୂସମ୍ପତ୍ତି ଥିଲା । ଆଠଗଡ଼ର ରାଜା ତାଙ୍କୁ ଏକ ଶତ ଭରଣ ଧାନ ପାଇଲା ଭଳି ଭୂସମ୍ପତ୍ତି ଦାନ କରିଥିଲେ । ମାସିକ ଏକ ଶତ ଟଙ୍କା ବୃତ୍ତି ମଧ୍ୟ ଖଞ୍ଜିଥିଲେ । ସେ ତେଣୁ ସପରିବାର ବ୍ରହ୍ମପୁରରେ କାଳାତିପାତ କରିବାକୁ ଲାଗିଲେ ।

## କାବ୍ୟ ରଚନା : ଚନ୍ଦ୍ରକଳା

କବିଙ୍କର ପ୍ରଥମ କାବ୍ୟ ହେଲା 'ଚନ୍ଦ୍ରକଳା' । ଭଞ୍ଜୀୟ ରୀତିକାବ୍ୟ ଆଦର୍ଶରେ ବଳଦେବ ଏହାକୁ ରଚନା କରିଛନ୍ତି । ଏହାର ପ୍ରଥମ ଛାନ୍ଦରେ ଦେବଦେବୀଙ୍କ ବନ୍ଦନା ଅଛି । ଦ୍ୱିତୀୟ ଛାନ୍ଦରେ ନାୟକ ଅନଙ୍ଗ ସୁନ୍ଦର ଓ ନାୟିକା ମଣିମଞ୍ଜୁଳାଙ୍କ ଜନ୍ମବୃତ୍ତାନ୍ତ, ପଞ୍ଚମ ଛାନ୍ଦରେ ଚନ୍ଦ୍ରକଳାର ଜନ୍ମ, ଷଷ୍ଠ ଛାନ୍ଦରେ ଚନ୍ଦ୍ରକଳାର ବାଲ୍ୟାବସ୍ଥା ବର୍ଣ୍ଣନା, ସପ୍ତମ ଓ ଅଷ୍ଟମ ଛାନ୍ଦରେ ଚନ୍ଦ୍ରକଳାର ବୟୋବୃଦ୍ଧି ଓ ଯୌବନୋଦ୍‌ଗମ, ନବମ ଛାନ୍ଦରେ ତା'ର ବେଶ ବର୍ଣ୍ଣନା, ଦଶମ ଓ ଏକାଦଶ ଛାନ୍ଦରେ ସଖୀମାନଙ୍କ ସହିତ ବନବିହାର ଓ ଜଳକ୍ରୀଡ଼ା ବର୍ଣ୍ଣିତ ଅଛି । ଦ୍ୱାଦଶ ଛାନ୍ଦରେ ଚନ୍ଦ୍ରକଳାର ବିବାହ ବିଷୟରେ ପାତ୍ର ନିର୍ବାଚନପାଇଁ ରାଜାଙ୍କର ମନ୍ତ୍ରଣା, ତ୍ରୟୋଦଶ ଛାନ୍ଦରେ ସ୍ୱପ୍ନରେ ଚନ୍ଦ୍ରକଳା ଓ ଅନଙ୍ଗସୁନ୍ଦରଙ୍କର ମିଳନ ବର୍ଣ୍ଣିତ । ଚତୁର୍ଦ୍ଦଶ ଛାନ୍ଦରେ ଅନଙ୍ଗସୁନ୍ଦର ଚନ୍ଦ୍ରକଳା ପାଖକୁ ହଂସଦୂତ ପଠାଇବାକୁ ପ୍ରସ୍ତାବ କରିଛନ୍ତି । ପଞ୍ଚଦଶ ଛାନ୍ଦରେ ଅନଙ୍ଗସୁନ୍ଦର ଚନ୍ଦ୍ରକଳାଙ୍କୁ ସ୍ୱପ୍ନରେ ଦେଖିଛନ୍ତି । କାମକଳା ନଗରୀକୁ ବସନ୍ତ ମାଧବ ଯାତ୍ରା ଦେଖିବାକୁ ଆସିଲେ ସାକ୍ଷାତ୍ ହେବ ବୋଲି ଚନ୍ଦ୍ରକଳା ପତ୍ର ଲେଖି ପଠାଇବା ବୃତ୍ତାନ୍ତ ଷୋଡ଼ଶ ଛାନ୍ଦରେ ବର୍ଣ୍ଣିତ ଅଛି । ବସନ୍ତ ଋତୁରେ ଅନଙ୍ଗସୁନ୍ଦର ମାଧବ ଯାତ୍ରା ଦେଖିବାପାଇଁ କାମକଳା ନଗରୀ ଅଭିମୁଖେ ଯାତ୍ରା କରିଛନ୍ତି । ଏହା ହେଉଛି ସପ୍ତଦଶ ଛାନ୍ଦର ବିଷୟବସ୍ତୁ । ଏହିଠାରେ କାବ୍ୟଟି ସମାପ୍ତ ହୋଇଛି ।

ଉପେନ୍ଦ୍ର ଭଞ୍ଜଙ୍କ ପ୍ରଣୟ ପ୍ରଧାନ କାବ୍ୟ 'ଲାବଣ୍ୟବତୀ'ର ଆଦର୍ଶ କବି ଗ୍ରହଣ କରିଛନ୍ତି । ନାୟକ ନାୟିକାଙ୍କ ପୂର୍ବଜନ୍ମ ବୃତ୍ତାନ୍ତରେ ଦେବଦେବୀଙ୍କ ହାତ ଅଛି । ଉଭୟ କାବ୍ୟରେ ସ୍ୱପ୍ନ ପ୍ରସଙ୍ଗ ଓ ଇନ୍ଦ୍ରଜାଲର ସମାବେଶ ଅଛି । 'ଲାବଣ୍ୟବତୀ'ର ରଜୋଦର୍ଶନ ଛାନ୍ଦ ଅନୁକରଣରେ ଚନ୍ଦ୍ରକଳାର ଯୌବନୋଦ୍‌ଗମ ଛାନ୍ଦଟି ରଚିତ । ଛାନ୍ଦଦ୍ୱୟର ସମାନ ରାଗ ଅଛି – କେଦାର, ଚକ୍ରକେଳିବାଣୀ । ବେଶ ରଚନା ଛାନ୍ଦର ରାଗ ମଧ୍ୟ ଦୁଇ କାବ୍ୟରେ ସମାନ–ରସକୁଲ୍ୟା ।

ଚନ୍ଦ୍ରକଳା କବିଙ୍କ ପ୍ରାଥମିକ ରଚନା ବୋଲି ମନେହୁଏ । ଏହା ତାଙ୍କ ପ୍ରତିଭାର ନିଦର୍ଶନ ନୁହେଁ । ତାହାର ମଧ୍ୟ ବହୁ କାରଣ ଅଛି । ପ୍ରଥମତଃ, କାବ୍ୟ ରଚନାପାଇଁ ମୌଳିକ ଆବେଗ କବିଙ୍କର ନ ଥିଲା । କେବଳ ରାଜ ଅନୁରୋଧ ରକ୍ଷାକରି ସେ ଲେଖିବାକୁ ଚାହିଁଥିଲେ । ଖଣ୍ଡ କବିତା ରଚନାରେ ସେ ସିଦ୍ଧହସ୍ତ ଥିଲେ । ଚନ୍ଦ୍ରକଳା ମଧ୍ୟ କେତୋଟି ଖଣ୍ଡ କବିତାର ସଂଯୋଗଭାବେ ରଚିତ । ସେ ତେଣୁ କାବ୍ୟରଚନା ଅସମାପ୍ତ ରଖି ଚଉପଦୀ ରଚନାରେ ସମସ୍ତ ଶକ୍ତି ଖଟାଇଲେ ।

ଆଲୋଚକ ସଚ୍ଚି ମିଶ୍ର କହିଛନ୍ତି ଯେ 'ଚନ୍ଦ୍ରକଳା' ନାମକ ଏକ କାବ୍ୟ ଉପେନ୍ଦ୍ର ଭଞ୍ଜଙ୍କର ଥିଲା । ବଳଦେବ ତାହା ଜାଣି ନ ଥିଲେ, କିନ୍ତୁ ପରେ ସେ ଏହା ଜାଣିପାରିବାରୁ ଏହି କାବ୍ୟଟି ଅସମ୍ପୂର୍ଣ୍ଣ ରଖିଲେ । 'ଚନ୍ଦ୍ରକଳା' କାବ୍ୟ ଅସମ୍ପୂର୍ଣ୍ଣ ରହିବା ବିଷୟରେ ନାଟ୍ୟକାର ନୀଳକଣ୍ଠ ପଟ୍ଟନାୟକ ଏକ କିମ୍ବଦନ୍ତୀକୁ ଗ୍ରହଣ କରିଛନ୍ତି । ଏହି କିମ୍ବଦନ୍ତୀ ଅନୁଯାୟୀ ଚନ୍ଦ୍ରକଳା କବିଙ୍କ ପ୍ରତି ପ୍ରଣୟାସକ୍ତ ହୋଇ କବିଙ୍କୁ ନିଜ ପ୍ରାଣର କଥା କହିବାପାଇଁ ଗୋପନରେ ଝରା ବଗିଚାକୁ ଡକାଇଲେ । ଏଥିରେ କବି ବିରକ୍ତ ହୋଇପଡ଼ିଲେ । ସେ ଲେଖନୀ ସହ ଅସମ୍ପୂର୍ଣ୍ଣ କାବ୍ୟଟିକୁ ଫିଙ୍ଗିଦେଲେ । ପତ୍ନୀ ରତ୍ନମଣି ତାଙ୍କୁ ରାଜାଙ୍କଠାରୁ ଟଙ୍କା ମିଳିବା କଥା କହନ୍ତେ, ଚରିତ୍ରହୀନା ଚନ୍ଦ୍ରକଳାଙ୍କ ଉପରେ ଲେଖିବାକୁ ସେ ଆଉ ଆଗ୍ରହୀ ନୁହନ୍ତି ବୋଲି ଉତ୍ତର ଦେଲେ ।

ଛଳନ୍ତରରେ ମଧ୍ୟ ଶୁଣାଯାଏ ଯେ ଚନ୍ଦ୍ରକଳା ବଳଦେବଙ୍କ ପତ୍ନୀ ଥିଲେ । କବିଙ୍କ ମୃତ୍ୟୁ ପରେ ସେ ସତୀ ହୋଇଥିଲେ । ଛଳନ୍ତର ଗଡ଼ର ଅଳ୍ପ ଦୂରରେ ଅବସ୍ଥିତ ଏକ ସ୍ଥାନ ସତୀସ୍ଥାନ ବୋଲି ପରିଚିତ ।

## କିଶୋରଚନ୍ଦ୍ରାନନ୍ଦ ଚମ୍ପୂ

ଏହା କବିଙ୍କ ଶ୍ରେଷ୍ଠ କାବ୍ୟକୃତି । ଏଥିରେ 'କ'ଠାରୁ 'କ୍ଷ' ପର୍ଯ୍ୟନ୍ତ ୩୪ଟି ବ୍ୟଞ୍ଜନବର୍ଣ୍ଣର କ୍ରମାନୁସାରେ କବିତା ରଚିତ ହୋଇଛି । ରାଧାକୃଷ୍ଣ ଓ ଲଳିତାଙ୍କ ଉକ୍ତି-ପ୍ରତ୍ୟୁକ୍ତି ଛଳରେ ସଙ୍ଗୀତଗୁଡ଼ିକ ଲିଖିତ ହୋଇଛି । ଲଳିତା କିପରି ରାଧା ଓ କୃଷ୍ଣଙ୍କ ମଧ୍ୟରେ ମିଳନ କରାଇପାରିଥିଲେ ତାହା ସରସ ଭାବରେ ବର୍ଣ୍ଣିତ ଅଛି ।

ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଅପୂର୍ବ ରୂପ ଦେଖି ଓ ତାଙ୍କ ମୁରଲୀ ଧ୍ୱନି ଶୁଣି ପ୍ରେମରେ ବିହ୍ୱଳ ହୋଇଛନ୍ତି । ଲଳିତା ପ୍ରଥମେ ରାଧାଙ୍କୁ ବାରଣ କରିଛନ୍ତି । ମାତ୍ର ରାଧା ନିଜର ଅକ୍ଷମତା ପ୍ରକାଶ କରିଛନ୍ତି । ଲଳିତା ଯମୁନା ତଟକୁ ଯାଇ ଶ୍ରୀକୃଷ୍ଣଙ୍କୁ ଦେଖା କରିଛନ୍ତି । ଶ୍ରୀକୃଷ୍ଣ ମଧ୍ୟ ରାଧାଙ୍କୁ ପ୍ରେମରେ ପଡ଼ିବା କଥା କହିଛନ୍ତି ଓ ରାଧାଙ୍କୁ କୁଞ୍ଜକୁ ଆଣିବାପାଇଁ ଅନୁରୋଧ କରିଛନ୍ତି । ଲଳିତା ଏହାର ପରିଣାମ ଭଲ ହେବ ନାହିଁ ବୋଲି ବୁଝାଇଛନ୍ତି । ମାତ୍ର ତାଙ୍କ ପ୍ରତି ସଦୟ ହୋଇ ମିଳନ କରାଇବାକୁ ଶ୍ରୀକୃଷ୍ଣ ଲଳିତାଙ୍କୁ ଅନୁନୟ କରିଛନ୍ତି । ଲଳିତା ଆସି ରାଧାଙ୍କ ମନ ବିନ୍ଧିବାପାଇଁ ଚେଷ୍ଟା କରିଛନ୍ତି । ଶ୍ରୀକୃଷ୍ଣଙ୍କୁ ଭୁଲିଯିବାପାଇଁ ପରାମର୍ଶ ଦେଇଛନ୍ତି । ମାତ୍ର ସବୁ ବିଫଳ ହୋଇଛି । ରାଧା ପୁଣି ମିଳନପାଇଁ ଆତୁରା ହୋଇଛନ୍ତି । ଶେଷରେ ଦୁହେଁ କୁଞ୍ଜକୁ ଯାଇଛନ୍ତି । ସେଠାରେ ହୋଇଛି ଦୁହିଁଙ୍କର ମିଳନ । ଏହି ହେଲା 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ'ର ବିଷୟବସ୍ତୁ ।

'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ରାଧାକୃଷ୍ଣ ପ୍ରେମ ଲୀଳାତ୍ମକ ଏକ ସଂସ୍କୃତ ରଚନା । ସେଥିରେ କିନ୍ତୁ ଓଡ଼ିଆ ସଙ୍ଗୀତାଂଶଟି ସନ୍ନିବିଷ୍ଟ ହୋଇଛି । ସଂସ୍କୃତ ସାହିତ୍ୟ ଇତିହାସରେ ଏହି କାବ୍ୟର କିଛି ଗୁରୁତ୍ୱ ନାହିଁ; ମାତ୍ର ଓଡ଼ିଆ ଅଂଶଟି ହୋଇଉଠିଛି ସଙ୍ଗୀତମୟ । ଏହାର ରୂପ ମୁଗଧ୍ୟତା, ଭାବ ତନ୍ମୟତା ଓ କଳ୍ପନାଚାତୁର୍ଯ୍ୟ ପାଠକକୁ ମୁଗ୍ଧ କରେ । ରାଧାକୃଷ୍ଣ ପ୍ରେମଲୀଳାକୁ ଉପଯୁକ୍ତ ରାଗ, ତାଳ, ଭାଷା ଓ ଛନ୍ଦରେ ଯେପରିଭାବେ ବଳଦେବ ପ୍ରକାଶ କରିଛନ୍ତି ତାହାର ପଟାନ୍ତର ଓଡ଼ିଆ ସାହିତ୍ୟରେ ନାହିଁ ।

ଅଧ୍ୟାପକ ଗୌରୀକୁମାର ବ୍ରହ୍ମାଙ୍କ ମତରେ କବିସୂର୍ଯ୍ୟ କବିଗୁରୁ ଉପେନ୍ଦ୍ରଙ୍କ 'ଛାନ୍ଦଭୂଷଣ' ଭଳି ୩୪ଟି ଛାନ୍ଦ ବଦଳରେ ୩୪ଟି ଚଉପଦୀ ରଚନା କରିଛନ୍ତି । ଓଡ଼ିଆ ଅଂଶଟିକୁ ଚମ୍ପୂ କହିବା ସଙ୍ଗତ ନୁହେଁ । ସଂସ୍କୃତ ଚମ୍ପୂ ସହିତ ସନ୍ନିବିଷ୍ଟ ହୋଇ ତାହା ଚମ୍ପୂ ନାମରେ ପରିଚିତ ହୋଇଆସୁଛି ମାତ୍ର । ତାଙ୍କ ମତରେ କବିସୂର୍ଯ୍ୟଙ୍କ ଚମ୍ପୂ ଓ ସେହି ଅନୁକରଣରେ ରଚିତ ଅନ୍ୟ କେତେକ ଓଡ଼ିଆ ଚମ୍ପୂକୁ ଏକପ୍ରକାର ଚଉତିଶା କହିଲେ ଅତ୍ୟୁକ୍ତି ହେବ ନାହିଁ ।

କବିଙ୍କର ଇଚ୍ଛାକୁ ସମ୍ମାନ ଜଣାଇ କେହି କେହି ଏହାକୁ 'କିଶୋରଚନ୍ଦ୍ରାନନ୍ଦ ଚମ୍ପୂ' ଚଉତିଶା ବୋଲି ନାମିତ କରିଛନ୍ତି ।

କବିଙ୍କ କୃତିକୁ ମଧ୍ୟ ନୃତ୍ୟ ମାଧ୍ୟମରେ ପରିବେଷଣ କରାଯାଇଥାଏ । ବିଶେଷତଃ, ଗୋଟିପୁଅମାନେ ଏହି ଚମ୍ପୂ ଗୀତ ଗାଇ ନୃତ୍ୟ କରିଥାନ୍ତି ।

## ଗୀତିକାବ୍ୟ

ମୁଖ୍ୟତଃ ବଳଦେବ ଥିଲେ ଗୀତିକବି । ସେ ବହୁ ଗୀତ ରଚନା କରିଯାଇଛନ୍ତି । ସେଗୁଡ଼ିକୁ ଚାରି ଭାଗରେ ବିଭକ୍ତ କରାଯାଇପାରେ । ସେଗୁଡ଼ିକ ହେଲା ରାଧାକୃଷ୍ଣ ଆଧାରିତ ସଙ୍ଗୀତ, ସାଧାରଣ ନାୟକ-ନାୟିକାଙ୍କ ଉପରେ ରଚିତ ଗୀତ, ଭକ୍ତି ରସାତ୍ମକ ଗୀତ ଓ ହାସ୍ୟ ରସାତ୍ମକ ଗୀତ ।

## ରାଧାକୃଷ୍ଣ ଆଧାରିତ କବିତା

'ରତ୍ନାକର ଚମ୍ପୂ' କବିଙ୍କ ଶ୍ରୀକୃଷ୍ଣ ଓ ରାଧାଙ୍କ ବିଷୟବସ୍ତୁ ନେଇ ରଚିତ । କାଳିନ୍ଦୀ କୂଳେ କୃଷ୍ଣ ରାଧାଙ୍କ ଭାବନାରେ ମଗ୍ନ । ଏହି ସମୟରେ ଲଳିତା ସେଠାରେ ପହଞ୍ଚିଛନ୍ତି । କୃଷ୍ଣ ରାଧାଙ୍କ ପାଖକୁ ନେବାପାଇଁ ଲଳିତାକୁ କହିଛନ୍ତି । ମର୍ଯ୍ୟାଦା ଦୃଷ୍ଟିରୁ ଏହା ସମ୍ଭବ ନୁହେଁ ବୋଲି ଲଳିତା କହିଛନ୍ତି । ରାଧାଙ୍କ ବିରହରେ ଘାରି ହେଉଥିବା କଥା କହି ପୁଣି ଥରେ ରାଧାଙ୍କ ସହ ସାକ୍ଷାତ୍

କରାଇବାକୁ ସେ ନିବେଦନ କରିଛନ୍ତି । ଲଳିତା ରାଧାଙ୍କୁ ସମସ୍ତ ବୃତ୍ତାନ୍ତ ଜଣାଇଛନ୍ତି । କୃଷ୍ଣଙ୍କୁ ନ ପାଇଲେ ପ୍ରାଣ ରହିବ ନାହିଁ ରାଧା ମଧ କହିଛନ୍ତି ।

ଏହା ପରେ ରାଧା କୁଞ୍ଜକୁ ଯାଇଛନ୍ତି ଓ ଦୁହିଁଙ୍କର ମିଳନ ଘଟିଛି । କୃଷ୍ଣ ଶେଷରେ କହିଛନ୍ତି – "କ୍ଷଣେ ନୋହିବାଟି ଭିନ୍ନ ।"

'ପ୍ରେମୋଦୟ ଚମ୍ପୂ'ରେ ମଧ ରାଧା କୃଷ୍ଣଙ୍କ ପ୍ରେମ ଲୀଳା ବର୍ଣ୍ଣିତ ଅଛି ।

## ସାଧାରଣ ନାୟକ ନାୟିକା

କବି ମଧ ସାଧାରଣ ନାୟକ ନାୟିକାଙ୍କୁ ନେଇ ବହୁ ସଙ୍ଗୀତ ରଚନା କରିଛନ୍ତି । ସେଗୁଡ଼ିକ ମଧରେ 'ତୁହି ପରା ମୋ ହୃଦୟ ମଣିମୟ ହାରାରେ', 'କାହିଁରେ ମନ ସହି ପ୍ରସନ୍ନ ହେଉ ନାହିଁ', 'ଏଥିକି କହ କେଉଁ ଗତିରେ', 'କହିବାକୁ ଲାଜ' ପ୍ରଭୃତି ସଙ୍ଗୀତଗୁଡ଼ିକ ଅତୀବ ଜନପ୍ରିୟତା ହାସଲ କରିଅଛି ।

## ଭକ୍ତି ରସାତ୍ମକ କବିତା

କବି ବୈଷ୍ଣବ ଧର୍ମରେ ଦୀକ୍ଷିତ ନ ଥିଲେ । ସବୁ ଦେବଦେବୀଙ୍କ ପ୍ରତି ତାଙ୍କର ଅଚଳାଚଳ ଭକ୍ତି ଥିଲା । 'ଚନ୍ଦ୍ରକଳା'ର ପ୍ରଥମ ଛାନ୍ଦରେ କବି ସବୁ ଦେବଦେବୀଙ୍କ ବନ୍ଦନା କରିଛନ୍ତି । ତାଙ୍କର ସ୍ତବ, ସ୍ତୁତି, ଜଣାଣରେ ସେ ଶ୍ଳେଷ, ଯମକ, ଅନୁପ୍ରାସ ପ୍ରଭୃତି ବିଭିନ୍ନ ଅଳଙ୍କାର ଖଞ୍ଜି ଚାତୁର୍ଯ୍ୟପୂର୍ଣ୍ଣ କରିଛନ୍ତି । ତାଙ୍କର ଗୋଟିଏ ସ୍ତୁତି ହେଲା –

"କେହି ସରିକି, ପ୍ରଭୁ ପଣେ ନୀଳାଦ୍ରି କେଶରୀକି ।"

ଏହି ସ୍ତୁତି ଭକ୍ତ ହୃଦୟକୁ ସ୍ପର୍ଶ କରେ । ମନରେ ଈଶ୍ୱର ବିଶ୍ୱାସକୁ ଦୃଢ଼ କରେ । ହରିନାମ ହେଉଛି ସଂସାରରେ ସବୁଠାରୁ ମଧୁର । ତା'ଠାରୁ ମଧୁର ପଦାର୍ଥ ଆଉ କିଛି ନାହିଁ । କବି ଲେଖିଛନ୍ତି –

"ମକରନ୍ଦ ପକ୍ୱଚୂତ ରସ ପ୍ରବାହେ ନ ରଖ ତୁ ତରସ
ବିଲକ୍ଷଣ ହରି ନାମକ ନାମଧିକ ମାଧୁରୀ...."

ହରିଙ୍କ ଉପରେ ଆଉ ଏକ ସୁନ୍ଦର ଭକ୍ତିସଙ୍ଗୀତ ହେଉଛି –

"ଜଗତ କରତା ନାଥ, ମିଛେ ହରି ବୋଲାଇଛ ।"

ଆଉ ଏକ କବିତା 'ନେଲ ଯାହା ଦେଲ ତାହା କ୍ଷତିରେ ମିଛକୁ ଦାତା ହୋଇଛ' । କବି ଏଥିରେ ପ୍ରଭୁଙ୍କୁ ଆକ୍ଷେପ କରିଛନ୍ତି ।

କବି ମଧ ଜଗନ୍ନାଥଙ୍କ ଉଦ୍ଦେଶ୍ୟରେ କେତେଗୁଡ଼ିଏ ଭକ୍ତି ସଙ୍ଗୀତ ରଚନା କରିଛନ୍ତି । ଜଗନ୍ନାଥ ଜଣାଣ, ମହାବାହୁ ଜଣାଣ, ସର୍ପ ଜଣାଣରେ କବି ନିଜର ନାମ ଭଣିତା କରିଛନ୍ତି । 'ଜଗନ୍ନାଥ ଜଣାଣ'ରେ କବି ଅଭିଯୋଗ କରିଛନ୍ତି ଯେ

ପତିତଙ୍କୁ ଉଦ୍ଧାରିବାପାଇଁ ପତାକା ଉଡୁଛି; ମାତ୍ର ସେ ତାଙ୍କ କୃପାକଣିକାରୁ ବଞ୍ଚିତ ହେଉଛନ୍ତି । କବି ପଚାରିଛନ୍ତି – ''କେ କ'ଣ ଦେଲା ସେ କ'ଣ ଦେଲେ ନାହିଁ କି ଯାହା ଫଳରେ ସେ ଏତେ ସରି ହେଲେ !''

''କ୍ଷୀରମୟ ସିନ୍ଧୁ ଜେମା ଜୀବ ବନ୍ଧୁ
ତୁମ୍ଭେ ତ ଜଗତପତି
ଟେକି ସମଦୃଷ୍ଟି ପତାକାକୁ ପୁଣି
ଏକି ପକ୍ଷପାତ ରୀତି ହେ
ମହାପ୍ରଭୁ ! କେ କି କଲା ମୁଁ ନ କଲି ?
କେ କି ଦେଲା ମୁଁ ଅବା ନ ଦେଲି
ଘେନି ଏତେ ସରି ହେଲି ହେ ।''

ଶେଷରେ କବି କହିଛନ୍ତି ଯେ ଭଲ ବା ମନ୍ଦ ହେଉ କେଉଁଥିରେ ତାଙ୍କର ଆୟତ୍ତ ନାହିଁ । ସବୁ ତାଙ୍କରି ଇଚ୍ଛା । ସେ ନିଜକୁ ତାଙ୍କଠାରେ ପୂର୍ଣ୍ଣ ସମର୍ପଣ କରିଦେଇଛନ୍ତି –

''କବି ରବି ରାୟଗୁରୁ ଯୋଡ଼ିକର ଯୁଗକୁ ଛାମୁରେ କହେ
ଭଲ ଅବା ମନ୍ଦ କରିବାକୁ ମୁଁ ତ ମୋହର ଆୟତ୍ତ ନୁହେଁ ।
ମହାପ୍ରଭୁ ! ସବୁ ତୁମ୍ଭ ଇଚ୍ଛା ସିନା ।
ରଖ ବା ନ ରଖ ମୋହର ଗତି ତ ପତିତପାବନ ବାନା ।''

ମହାବାହୁ ଜଣାଣରେ କବି ନିଜକୁ କିଙ୍କର ବୋଲି ମନେ କରିଛନ୍ତି –

''ମହାବାହୁ ଅଣୁଏ ଆୟତ୍ତ ନାହିଁ ମୋର
ଆଚରୁଛି ପାତକ ପ୍ରବର
ଆପଣ ହୃଦେ ନିବାସ, କରି ଯେଉଁ ଫରମାସ
କରୁଛି, ମୁଁ କରିଛି କିଙ୍କର ହେ ।''

ସର୍ପଜଣାଣ କବିତାରେ କବି ଭଗବାନ୍‌ଙ୍କୁ ଭୁଜଙ୍ଗ ବୋଲି ମନେ କରିଛନ୍ତି । ଭୁଜଙ୍ଗଙ୍କୁ ପେଡ଼ିରେ ବନ୍ଦ କରି ରଖାଯାଏ । ସେହିପରି କବି ଭଗବାନ୍‌ଙ୍କୁ ହୃଦୟରୂପକ ପେଡ଼ିରେ ବନ୍ଦ କରି ରଖିଛନ୍ତି । ବନ୍ଦୀ ହୋଇ ଭଗବାନ୍ ରହିଛନ୍ତି । ଆଉ ଖସିଯିବାର ବାଟ ନାହିଁ, ଯଥା –

''ଜଗତେ ଧରି ଯେବେ ଅହି
ଘଟ ଗୋଟିକେ ନେଇ ଥୋଇ
ଅଛ ଯାବତ ଘଟେ
ବଞ୍ଚାଅ ଯେ କପଟେ
ମୋର ହାବୁଡୁ ଯିବ କାହିଁ ହେ ।''

ଜୀବନର ଶେଷ ଭାଗରେ କବି କେତୋଟି ଭକ୍ତିଗୀତିକା ରଚନା କରିଛନ୍ତି । 'ଜୀବନ ଚରିତ ଅଧ୍ୟାୟରେ', 'ସମାପତ ନାହିଁ ଅସମାପତ ଦୋଷ ରମାପତି ବାରେ କ୍ଷମା କର' ପ୍ରଭୃତିରେ ସେ ନିଜର ଅନୁଶୋଚନା ପ୍ରକାଶ କରିଛନ୍ତି । 'ହେ ମାଧବ, କେଶବ କଂସାରେ', ଗୀତରେ ମଧ୍ୟ ସେହି ଅନୁଶୋଚନା ପ୍ରକଟିତ ହୋଇଛି । କବିଙ୍କ ମନଃଶିକ୍ଷାର କେତୋଟି ସଙ୍ଗୀତ ହେଲା 'ଗୋ ରସନାଟି କୃଷ୍ଣ ନାମ ଛାଡ଼ି ଆନେ ରସନାଟି', 'ଭଜ ଭଜ ବ୍ରଜ ମହିଳାନାଥଙ୍କୁ' ଓ 'ମନ ଜମି ଯା ସିନ୍ଧୁ ଜେମା ପ୍ରାଣଧନେ' । ଏଥିରେ କବିଙ୍କ ଭକ୍ତିପ୍ରାଣତାର ପରିଚୟ ମିଳେ ।

ତାଙ୍କ ରଚିତ ସଂସ୍କୃତ ଭଜନ ହେଲା 'ଶ୍ରୀକୃଷ୍ଣ ବନ୍ଦନା', 'ରାଜୀବ ନେତ୍ରୋଷ୍ଟକ' ପ୍ରଭୃତି । ଏଥିରୁ ତାଙ୍କର ସଂସ୍କୃତ ଭାଷାରେ ଦକ୍ଷତା ଜଣାଯାଏ ।

**ବ୍ୟଙ୍ଗ କବିତା**

ବ୍ୟଙ୍ଗାତ୍ମକ କବିତା ପ୍ରାଚୀନ ଓଡ଼ିଆ ସାହିତ୍ୟରେ ବିରଳ । କବିସୂର୍ଯ୍ୟ କିନ୍ତୁ କେତୋଟି ବ୍ୟଙ୍ଗ କବିତା ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ 'ଜଗତେ କେବଳ ଜନେ ହସିବେ ଏହି ତହୁଁ ଫଳ', 'କାହାକୁ କହିବା କପାଳରେ ସିନା କର ତାଡ଼ିବା', 'ହେ ସରସେ କୁହାଯାଉଥାଏ ସିନା' ପ୍ରଭୃତି କବିତାଗୁଡ଼ିକ ପ୍ରସିଦ୍ଧି ଲାଭ କରିଅଛି । ଏ ସବୁ କବିତାଗୁଡ଼ିକରୁ ସେ ଯୁଗର ସାମାଜିକ ରୀତି, ନୀତି, ଆଚାର-ବ୍ୟବହାର ବିଷୟରେ ସମ୍ୟକ୍ ଧାରଣା କରିହୁଏ ।

'ଜଗତେ କେବଳ' କବିତାରେ ବ୍ୟକ୍ତିବିଶେଷଙ୍କ ଚରିତ୍ରର ବିଚ୍ୟୁତି ବିଷୟ ଉପସ୍ଥାପିତ ହୋଇଛି । ଆପଣାର ସ୍ୱଭାବ ଛାଡ଼ିବା ସମ୍ଭବ ନୁହେଁ । ଅନୁପଯୁକ୍ତ ବ୍ୟକ୍ତି ମହାନ୍‌ଙ୍କୁ ଅନୁକରଣ କଲେ ଉପହାସର ପାତ୍ର ହୁଏ । ଏହାହିଁ କବି ରୂପକ ଛଳରେ ବର୍ଣ୍ଣନା କରିଛନ୍ତି, ଯଥା –

''ଯେତେ ଠାଣି ଦେଖାଇଲେ ବି ସରମା ଅର୍ଥାତ୍ କୁକୁର ସିଂହ ହୋଇପାରିବ ନାହିଁ । କାକ ସେହିପରି ପଞ୍ଚମାଳାପ କରିବା ଅସମ୍ଭବ । ଘୁଷୁରୀ ଗାଈ ପଦବାଚ୍ୟ ହୋଇପାରିବ ନାହିଁ । ସେହିପରି ବଗ ପକ୍ଷେ ହଂସ, ଗଧ ଛୁଆ ପକ୍ଷେ ଘୋଡ଼ା, ପିତ୍ତଳ ପକ୍ଷେ ସୁନା ବା ଦୂବ ପକ୍ଷେ ତୁଳସୀ ହେବା ସମ୍ଭବ ନୁହେଁ । ମାତୃଭାଷା ବିଷୟରେ ଅନଭିଜ୍ଞ ବା ଅଜ୍ଞ ବ୍ୟକ୍ତି ଷଡ଼ ଦର୍ଶନଶାସ୍ତ୍ରବିଦ୍ ସଙ୍ଗେ ଶାସ୍ତ୍ର ବିବାଦ କରିବା କେବଳ ଉପହାସର ବିଷୟ । ତା'ର କେବଳ ଫଳ –

''ଜଗତେ କେବଳ ଜନେ ହସିବେ ଏହି ତହୁଁ ଫଳ ।''

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଏପରି ବୁଦ୍ଧିଦୀପ୍ତ ରଚନା ବିରଳ ବୋଲି ଆଲୋଚକ ଦାଶରଥି ଦାସ ମତ ଦେଇଛନ୍ତି ।

'କାହାକୁ କହିବା' ଗୀତଟିରେ କବି କେତେକ ଉଦାହରଣ ଉପସ୍ଥାପିତ କରିଛନ୍ତି । କଳ୍ପଲତା ଯଦି ଅପରାଜିତାରେ ପରିଣତ ହୁଏ, ଗୋଦାବରୀ ନଦୀ ତୀରରେ ଯଦି କେହି ବ୍ୟକ୍ତି ତୃଷାର୍ତ୍ତ ରହେ, ବୁଦ୍ଧିମାନ୍ ବ୍ୟକ୍ତି ଯଦି ଅନ୍ୟ ନିକଟରେ ହାତ ପକାଏ, ପାଇଜାମା ପିନ୍ଧିବାସତ୍ତ୍ୱେ ଯଦି ଗୁପ୍ତ ଅଙ୍ଗ ବାହାରକୁ ଦେଖାଯାଏ, ମାଳି ଜପିବାସତ୍ତ୍ୱେ ଯଦି ଯମପୁରକୁ ଯିବାକୁ ପଡ଼େ, ମିଠା ଦ୍ରବ୍ୟ ଯଦି ପିତା ଲାଗେ, ପଞ୍ଜୁରିର ଶାରୀ ଯଦି ବେଙ୍ଗ ଭଳି ଧ୍ୱନି କରେ, ଅଳଙ୍କାର ପିନ୍ଧିବାସତ୍ତ୍ୱେ ଯଦି ବ୍ୟକ୍ତି ଅସୁନ୍ଦର ଦିଶେ ତେବେ ତାହାଠାରୁ ଦୁର୍ଭାଗ୍ୟର ବିଷୟ ଆଉ କ'ଣ ହୋଇପାରେ ? ଏଭଳି ପରିସ୍ଥିତିରେ ବ୍ୟକ୍ତି ଦୁଃଖ ପ୍ରକାଶ କରିବା ଛଡ଼ା ଆଉ କ'ଣ ବା କରିପାରେ ? କପାଳରେ ସିନା କର ମାରିବା ଛଡ଼ା ଗତ୍ୟନ୍ତର ନାହିଁ ବୋଲି କବି ଦର୍ଶାଇଛନ୍ତି ।

'ସରସେ କୁହାଯାଉଥାଏ ସିନା'ରେ କବି ଅପଚେଷ୍ଟା ବିଷୟର ବର୍ଣ୍ଣନା କରିଛନ୍ତି । ବାସି ଫୁଲକୁ ଯେତେ ପ୍ରଶଂସା କଲେ ମଧ୍ୟ ସଜ ଫୁଲ ପରି ତା'ର ବାସ୍ନା ହେବ ନାହିଁ । ଥରକୁ ଥର ପୁଟ ଦେଲେ ବି ଲୁହା ସୁନା ପାଲଟିଯିବ ନାହିଁ । ପୁଣି ଲେଖିଛନ୍ତି –

"କୁଆ ପଞ୍ଜୁରିରେ ପଡ଼ିଲେ କି ଧରେ ଶୁଆ ପରି ହରିନାମ
ଭୁଆଟା ଗୁହାରେ ପଶିଲେ କି ଧରେ ଛୁଆ ସିଂହ ପରାକ୍ରମ ?"

କବି ତାଙ୍କର ମାସିକ ବୃତ୍ତି ନ ପାଇବାରୁ ରାଜକର୍ମଚାରୀମାନଙ୍କୁ ଆକ୍ଷେପ କରି ଏହାକୁ ଲେଖି ଆଠଗଡ଼ ରାଜାଙ୍କ ପାଖକୁ ପଠାଇଥିଲେ ବୋଲି ପଣ୍ଡିତ କୁଳମଣି ଦାଶ ତାଙ୍କ ଜୀବନୀରେ ଦର୍ଶାଇଛନ୍ତି । କିନ୍ତୁ ଏହା ରାଜାଙ୍କ ପ୍ରତି ବ୍ୟଙ୍ଗ ହୋଇପାରେ ବୋଲି କେହି କେହି ଆଲୋଚକ ମତ ଦେଇଛନ୍ତି ।

## ଛାନ୍ଦ ଓ ଚଉତିଶା

କବି ମଧ୍ୟ ପରମ୍ପରାକୁ ରକ୍ଷା କରି କେତୋଟି ଛାନ୍ଦ ଓ ଚଉତିଶା ରଚନା କରିଛନ୍ତି । ତାଙ୍କର ବିଂଶାଧିକ ଛାନ୍ଦ ଚଉତିଶା ପ୍ରକାଶିତ ହୋଇଛି । କେବଳ ମହାବାହୁ ଜଣାଣ ଭିନ୍ନ ଅନ୍ୟ ସମସ୍ତ ଛାନ୍ଦ ଚଉତିଶା ଆଦି ରସାତ୍ମକ । ସେଗୁଡ଼ିକ ଚଉପଦୀ ସହିତ ତୁଳନୀୟ ନୁହେଁ ।

## ଚୁମ୍ପା ଓ ମାନସ

ଚୁମ୍ପା ଏକ କାଷ୍ଠନିର୍ମିତ ବାଦ୍ୟଯନ୍ତ୍ର । ଏକ କାଠ ଗଣ୍ଡିରେ ଦୁଇ ଦଳ ଲୋକ ବସି କାଠିରେ ବଜାଇ ଗୀତ ଗାଇଥାନ୍ତି । ପଣ୍ଡିତ କୁଳମଣି ଦାଶଙ୍କ ମତରେ କବି ବଳଦେବ ପ୍ରଥମଥରପାଇଁ ଓଡ଼ିଶାରେ ଏହି ବାଦ୍ୟଯନ୍ତ୍ର ପ୍ରଚଳନ କରିଥିଲେ ଓ ସେଥି ନିମନ୍ତେ ଚୁମ୍ପାଗୀତ ରଚନା କରିଥିଲେ । ପରବର୍ତ୍ତୀ କାଳରେ ରାଜଅନୁଗ୍ରହ ପାଇ ଏହା ଲୋକପ୍ରିୟ ହୋଇଉଠିଥିଲା । ବର୍ଷା ଆରମ୍ଭ ହେଲେ ରାଜାମାନେ ଚୁମ୍ପା ମଉଜ କରୁଥିଲେ । ଏହା ଲୋକସଙ୍ଗୀତ ପଦବାଚ୍ୟ ।

କବିଙ୍କ ତିନୋଟି ଚୁମ୍ପା ସଙ୍ଗୀତ ପ୍ରକାଶିତ ହୋଇଛି । ସେଗୁଡ଼ିକ ହେଲା ଛୋଟ ଚୁମ୍ପା, ଜାଇଫୁଲ ଚୁମ୍ପା ଓ ନିଆଳି ଚୁମ୍ପା । ସବୁଗୁଡ଼ିକ ଚୁମ୍ପା ଆଦି ରସାତ୍ମକ ।

କବିଙ୍କର ତିନୋଟି ମନାସ ପ୍ରକାଶିତ । ସେଗୁଡ଼ିକ ହେଲା ଫଳ ମନାସ, ଫୁଲ ମନାସ ଓ ଅଳଙ୍କାର ମନାସ । ଏହା ସାହିତ୍ୟ ପଦବାଚ୍ୟ ନୁହେଁ ।

କବି ମଧ୍ୟ ତେଲୁଗୁ ଓ ହିନ୍ଦୀ ଭାଷାରେ ସଙ୍ଗୀତ ରଚନା କରିଥିବାର ଜଣାଯାଏ । ତେଲୁଗୁ ରଚନାଟି ଅଯୋଧ୍ୟାନାଥ ରାମଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ ରଚିତ ହୋଇଅଛି ।

## ଗଦ୍ୟ ରଚନା : ହାସ୍ୟକଲ୍ଲୋଳ

ପଣ୍ଡିତ କୁଳମଣି ଦାସ 'ହାସ୍ୟକଲ୍ଲୋଳ' ରଚନା ବିଷୟରେ ଯାହା ଲେଖିଛନ୍ତି ତାହା ଆଗରୁ ବର୍ଣ୍ଣିତ ଅଛି । ମାତ୍ର ଆଲୋଚକ ମିଶ୍ର ଏହାକୁ କଳ୍ପନା ପ୍ରସୂତ ବୋଲି ଆଖ୍ୟା ଦେଇଛନ୍ତି । ମୃତ୍ୟୁ ମୁଖରେ ପଡ଼ିଥିବା ବ୍ୟକ୍ତିର ଗଳ୍ପ ଶୁଣି ପୃଷ୍ଠବ୍ରଣ ଫାଟିବା ଅବାସ୍ତବ । 'ହାସ୍ୟକଲ୍ଲୋଳ'ର ହାସ୍ୟ ତାଙ୍କ ମତରେ ଅତି ନମ୍ର, ଅତି ମୃଦୁ । ତାହା ପ୍ରବଳ ଅଟ୍ଟହାସ୍ୟ ନୁହେଁ ଯେ ଦୁରାରୋଗ୍ୟ ବ୍ରଣକୁ ବିଦୀର୍ଣ୍ଣ କରିପାରିବ !

'ହାସ୍ୟକଲ୍ଲୋଳ' ଗ୍ରନ୍ଥଟିକୁ ଲେଖକ ଶ୍ରୀ ବାଲୁଙ୍କେଶ୍ୱରଙ୍କୁ ଉତ୍ସର୍ଗ କରିଛନ୍ତି । ତେଣୁ ରାଜାଙ୍କ ସହିତ ବଳଦେବଙ୍କ ସମ୍ପର୍କକୁ ଅସ୍ୱୀକାର କରାଯାଇପାରେ ନାହିଁ । ତଥାପି ଘଟଣାଟି ସମ୍ପୂର୍ଣ୍ଣ କଳ୍ପନା ଉପରେ ଆଧାରିତ ବୋଲି ବହୁ ଆଲୋଚକ ମତ ଦେଇଛନ୍ତି ।

'ହାସ୍ୟକଲ୍ଲୋଳ'ରେ ହାସ୍ୟରସ ସୃଷ୍ଟି କରାଯାଇଛି । ରାଜ୍ୟର ନାମ ରହସ୍ୟଘୋଷ । ରାଜାଙ୍କ ନାମ ଉଲ୍ଲାଡ଼ ବର୍ଣ୍ଣ । ସର୍ଦ୍ଦାରମାନଙ୍କ ନାମ କାଞ୍ଜି ବୈରିଗଞ୍ଜନ, କୁଣ୍ଡା ତ୍ରିତୁଶଳ ଇତ୍ୟାଦି । ବେଶ୍ୟାଙ୍କ ନାମ ଲେଭିଡ଼ୀ, ଲୀଳାବତୀ,

ଥୋବଡ଼ୀ, ଜଗନ୍ମୋହିନୀ ଆଦି । ପୁରୋହିତ ଅକଲ୍ୟାଣ ମହାପାତ୍ର । ଗଣକ ପ୍ରତିକୂଳ ଜ୍ୟୋତିଷରତ୍ନ । ପୁରାଣପଣ୍ଡା ନିରକ୍ଷର ବାହିନୀପତି,ଦେବାନ ଧୁରନ୍ଧର ବେହିଆ ମହାପାତ୍ର ଇତ୍ୟାଦି ।

ରହସ୍ୟଘୋଷ ରାଜାଙ୍କର ସୈନ୍ୟମାନଙ୍କ ବିଷୟ ବର୍ଣ୍ଣନା କରି କବି ହାସ୍ୟରସ ପରିବେଷଣ କରିଛନ୍ତି, ଯଥା –

''ସେମାନେ ଯୁଦ୍ଧ ଦେଖିଲେ ପଛଘୁଞ୍ଚା ଦିଅନ୍ତି
ଛୁରି ଦେଖିଲେ ହୁରି କରନ୍ତି
ବାଡ଼ି ଦେଖିଲେ ଛାତି କମ୍ପାନ୍ତି
ଖଣ୍ଡା ଦେଖିଲେ ଦଣ୍ଡା ହୋଇ ଶୁଅନ୍ତି ।
ଫରି ଦେଖିଲେ ସରି ଯାଆନ୍ତି ।
ଛାଟ ଦେଖିଲେ କୀଟରୁ ବଳନ୍ତି ।
ନଳୀ ଦେଖିଲେ ଗଳି ଯାଆନ୍ତି ।
ପଟା ଦେଖିଲେ ଛଟା ଗାଳନ୍ତି ।''

କବି ଏହି ଗ୍ରନ୍ଥର ନାୟକ ରାଜାଙ୍କୁ କରିଛନ୍ତି ମୂର୍ଖ ଓ କାଲ । ଲୋକଙ୍କର ଗୁହାରି ଶୁଣିବାକୁ କାନ ନାହିଁ । ବୁଝିବାକୁ ଜ୍ଞାନ ନାହିଁ । ତାହାଙ୍କ ପାରିଷଦବର୍ଗ, ସେବକ ମଧ୍ୟ ଅନୁରୂପ ଅଯୋଗ୍ୟ ଓ କାଲା । ରାଜା ମୂର୍ଖ ଓ ବଧିର ହେଲେ ପ୍ରଜାଙ୍କ ଦୁଃଖ ଶୁଣିବାକୁ ଆଉ କେହି ନାହିଁ । ତତ୍କାଳୀନ ରାଜ–ଶାସିତ ରାଜ୍ୟମାନଙ୍କରେ ପ୍ରଚଳିତ ଅବ୍ୟବସ୍ଥା ଓ କୁଶାସନକୁ ଯେ କବି ପରୋକ୍ଷରେ ବିଦ୍ରୂପ କରିଛନ୍ତି, ଏଥିରେ ସନ୍ଦେହ ନାହିଁ ।

କବିସୂର୍ଯ୍ୟ 'ହାସ୍ୟକଲ୍ଲୋଳ'କୁ ଶୁଦ୍ଧ ଗଦ୍ୟରେ ରଚନା କରି ନାହାନ୍ତି । ଏହାକୁ ପଦ୍ୟାୟିତ ଗଦ୍ୟ ବୋଲି କୁହାଯାଇପାରେ । ସମ୍ଭବତଃ, ତାଙ୍କ ରଚନାଟି ଓଡ଼ିଶାର ଗଡ଼ଜାତ ରାଜାମାନଙ୍କ ପାଖେ ରହିଥିବା ଗଳ୍ପସାଗର, କଥାସାଗର ପ୍ରଭୃତିଙ୍କପାଇଁ ଉଦ୍ଦିଷ୍ଟ ଥିଲା ।

ଆଲୋଚକ ମିଶ୍ରଙ୍କ ମତରେ ମୁଦ୍ରାଯନ୍ତ୍ରର ପ୍ରବର୍ତ୍ତନର ପୂର୍ବ କାଳରେ ସାହିତ୍ୟିକର ଦାୟିତ୍ୱ ସାହିତ୍ୟ ସୃଷ୍ଟିରେ ସରି ଯାଉ ନ ଥିଲା । କିଏ ତାହାକୁ ପ୍ରଚାର କରିବ, ଲୋକରେ ବଞ୍ଚାଇ ରଖିବ – ସେଥିପ୍ରତି ତାଙ୍କୁ ଦୃଷ୍ଟିଦେବାକୁ ପଡୁଥିଲା ।

ହାସ୍ୟକଲ୍ଲୋଳର କୌତୁକ ପଛରେ ସୂକ୍ଷ୍ମ କଳାକୌଶଳର ବ୍ୟଞ୍ଜନା ନାହିଁ ବୋଲି କେହି କେହି ଆଲୋଚକ ମତ ଦେଇଛନ୍ତି । ବ୍ୟଙ୍ଗ ମଧ୍ୟ ଅନେକ କ୍ଷେତ୍ରରେ ସ୍ଥୂଳ ଓ ଶିଥିଳ । ହାସ୍ୟରସ କ୍ଷେତ୍ରରେ ଏହି ଗଦ୍ୟରଚନାଟି ଉଚ୍ଚକୋଟୀର

ସାହିତ୍ୟକୀର୍ତ୍ତି ନୁହେଁ । ଏହା ଅନେକ ଅଂଶରେ ସତ୍ୟ ହେଲେହେଁ ପ୍ରାଚୀନ ଯୁଗର ବିରଳ ଗଦ୍ୟ ରଚନା ମଧ୍ୟରୁ ଏହା ଯେ ଅନ୍ୟତମ, ଏଥିରେ ସମସ୍ତେ ଏକମତ ହେବେ । ପୁଣି ଅବିମିଶ୍ର ହାସ୍ୟରସକୁ ପାଥେୟ କରୁଥିବା ଏହି ରଚନାଟିର ବୈଶିଷ୍ଟ୍ୟ ନିଶ୍ଚୟ ରହିଛି । ଆଲୋଚକ ମିଶ୍ରଙ୍କ ଭାଷାରେ "ସ୍ୱାଦୁ ରସର କଲ୍ଲୋଳିନୀ ଏହି ହାସ୍ୟ ଆକାରରେ କ୍ଷୁଦ୍ର ହେଲେହେଁ, ଓଡ଼ିଆ ସାହିତ୍ୟକୁ ପ୍ରଫୁଲ୍ଲିତ, ସତେଜ ଓ ସୁରମ୍ୟ କରିପାରିଛି ।"

## ଶେଷ ଜୀବନ

କବି ଆଠଗଡ଼ ରାଜାଙ୍କ ଅନୁରୋଧ ରକ୍ଷାକରି ପୁଣି ଆଠଗଡ଼ ଯାଇଥିଲେ । ଆଠଗଡ଼ ରାଣୀଙ୍କ ବୟୋବୃଦ୍ଧ କବିଙ୍କ ପ୍ରତି ପ୍ରେମାନୁରାଗ ଥିଲା ବୋଲି ପ୍ରବାଦରୁ ଜଣାଯାଏ । ସେ ଯାହାହେଉ, ସେଠାରେ ସେ କିଛି ଦିନ ରହିବାପରେ ବସନ୍ତ ରୋଗରେ ଆକ୍ରାନ୍ତ ହୋଇ ବ୍ରହ୍ମପୁର ଫେରିଆସିଲେ ଓ ସେହି ରୋଗରେ ୫୬ ବର୍ଷ ବୟସରେ ୧୮୪୫ ମସିହା ଅକ୍ଷୟତୃତୀୟା ଦିନ ମୃତ୍ୟୁବରଣ କଲେ ।

ନାଟ୍ୟକାର ନୀଳକଣ୍ଠଙ୍କ ବିବରଣୀ ଅନୁଯାୟୀ ବଳଦେବ ଜଳନ୍ତରରେ ଦ୍ୱିତୀୟବାର ଥିବା ସମୟରେ ରାଜପରିବାରର ଗୃହବିବାଦରେ ଜଡ଼ିତ ହୋଇପଡ଼ିଲେ । ଏହି ବିବାଦ ରାଣୀ ଲଳିତାମଣିଙ୍କ ପ୍ରଣୟ ନେଇ ସୃଷ୍ଟି ହୋଇଥିଲା । ଶେଷରେ ନୀଳାମ୍ବର ନାମକ ଜଣେ ବିଦ୍ରୋହୀ ସର୍ଦ୍ଦାରଙ୍କ ଅସିଘାତରେ ତାଙ୍କର ମୃତ୍ୟୁ ହେଲା । ଏହି ପ୍ରବାଦର ଐତିହାସିକ ପ୍ରମାଣ ନାହିଁ ।

## ସଙ୍ଗୀତପ୍ରାଣତା

କବିସୂର୍ଯ୍ୟ ଥିଲେ ଓଡ଼ିଶୀ ସଙ୍ଗୀତର ଶିଳ୍ପୀ । ତାଙ୍କ ରଚନାଗୁଡ଼ିକରେ ସଙ୍ଗୀତ ଓ କବିତାର ସମନ୍ୱୟ ଘଟିଛି । କବିତାର ଚିତ୍ରସମ୍ପଦ ଭାବକୁ ଆକାର ଦେଇଛି । ସଙ୍ଗୀତ ଦାନ କରିଛି ଗତି । ତେଣୁ ତାଙ୍କର ରଚନାଗୁଡ଼ିକ ପ୍ରାଣସ୍ପର୍ଶୀ ହୋଇପାରିଛି । କବିଚନ୍ଦ୍ର କାଳିଚରଣ ପଟ୍ଟନାୟକ କହନ୍ତି ଯେ ରସାନୁକୂଳ ଛନ୍ଦରାଗ କଳ୍ପନା, ରାଗାନୁସାରୀ ସାହିତ୍ୟ ସର୍ଜନା ଏବଂ ସଙ୍ଗୀତର ସମୁପଯୁକ୍ତ ଲଳିତ ପଦ ସଂଯୋଜନାରେ କବି ବଳଦେବ ଧୁରନ୍ଧର ଥିଲେ । ତାଙ୍କ ସଙ୍ଗୀତ ତଥା ସାହିତ୍ୟ ସୃଷ୍ଟି ଓଡ଼ିଶାର ଏକ ମାନମନ୍ଦିର ।

କବିସୂର୍ଯ୍ୟ ଉଚ୍ଚସ୍ତରର ସଙ୍ଗୀତଜ୍ଞ ଥିଲେ । ଜନଶ୍ରୁତି ଅନୁଯାୟୀ ସେ ତାଳଲୟ ଅନୁସାରେ ସୁନ୍ଦର ଭାବରେ ସଙ୍ଗୀତ ଗାନ କରିପାରୁଥିଲେ । ସେ ତେଣୁ ସଙ୍ଗୀତ ଲେଖାରେ ମନୋନିବେଶ କରିଥିଲେ । ତାଙ୍କ ରଚନାକୁ ସ୍ୱର ପକାଇ ଗାଇଲେ କର୍ଣ୍ଣ ମଧୁର ହୁଏ । ତାହା ସମସ୍ତଙ୍କର ଉପଭୋଗ୍ୟ ହୁଏ । ସମ୍ଭବତଃ, ସେ ମନେ ମନେ

ଗାଇ ସଙ୍ଗୀତ ରଚନା କରୁଥିଲେ । ସେ ମଧ୍ୟ ଶବ୍ଦ ଖଞ୍ଜିବାରେ ନିପୁଣ ଥିଲେ । ଯେଉଁଠି ଯେଉଁ ଶବ୍ଦ ଉପଯୁକ୍ତ, ଠିକ୍ ସେଇଠି ସେହି ଶବ୍ଦ ବ୍ୟବହାର କରୁଥିଲେ । ଆଲୋଚକ ଦାଶରଥି ଦାସଙ୍କ ମତରେ ଶବ୍ଦଟିଏ ବାଛି ନେଇ ତାହା ସ୍ଥାନରେ ଠିକ୍ ସେହିପରି ଭାବାନୁକୂଳ ଅନ୍ୟ ଏକ ଶବ୍ଦର ସରସ ପ୍ରତିସ୍ଥାପନା ଏକାବେଳକେ ଅସମ୍ଭବ । ଶବ୍ଦ ଯୋଜନା ଛାଡ଼ିଦେଲେ ରାଗର କଳ୍ପନା ମଧ୍ୟ ସଙ୍ଗୀତ ଜ୍ଞାନର ପ୍ରମାଣ ଦିଏ । ଆଲୋଚକ ଦାସଙ୍କ ଭାଷାରେ, 'କବିଙ୍କ ରାଗ ନିର୍ବାଚନର ରସବୋଧ ଅପୂର୍ବ ।'

କବିସୂର୍ଯ୍ୟ ମଧ୍ୟ ଓଡ଼ିଶୀ ସଙ୍ଗୀତର ପ୍ରଚାର ଓ ପ୍ରସାରପାଇଁ ଯତ୍ନଶୀଳ ଥିଲେ । ସମ୍ଭବତଃ, ସେ ଓଡ଼ିଶୀ ସଙ୍ଗୀତର ଗୁଣାତ୍ମକ ଓ ପରିମାଣାତ୍ମକ ବିକାଶପାଇଁ ରାଜଅନୁଗ୍ରହ ପ୍ରାର୍ଥୀ ହେଉଥିଲେ । ରାଜାମାନଙ୍କର ଅଯଥା ଗୁଣକୀର୍ତ୍ତନ କରୁଥିଲେ । ରାଜାମାନଙ୍କର ପୃଷ୍ଠପୋଷକତାରେ ଏହି ସଙ୍ଗୀତର ଅଭିବୃଦ୍ଧି ଘଟିଥିବା ମଧ୍ୟ ଜଣାଯାଏ । କିମ୍ବଦନ୍ତୀ ଅନୁଯାୟୀ ଆଠଗଡ଼ ରାଜସଭାରେ ଜଣେ ତୈଲଙ୍ଗୀୟ ସଙ୍ଗୀତାଚାର୍ଯ୍ୟ ଉପସ୍ଥିତ ହୋଇ କବି ଓ ସଙ୍ଗୀତଜ୍ଞମାନଙ୍କୁ ଆହ୍ୱାନ କରି କହିଲେ, ‘‘ଓଡ଼ିଶୀ ସଙ୍ଗୀତ କ'ଣ ପଶୁଙ୍କୁ ଆକୃଷ୍ଟ କରିପାରିବ ?’’ ଗୀତ ରସରେ ବଣ ପଶୁଙ୍କୁ ଆକୃଷ୍ଟ କରିପାରିବେ ବୋଲି ବଳଦେବ ଉତ୍ତର ଦେଲେ । ଏଥିପାଇଁ ଏକ ପରୀକ୍ଷା ହେଲା । କୌଣସି ପୂର୍ଣ୍ଣିମା ରାତ୍ରିରେ ପ୍ରଥମେ ତୈଲଙ୍ଗୀୟ ସଙ୍ଗୀତାଚାର୍ଯ୍ୟ ମଧୁର ସଙ୍ଗୀତ ଧାରା ଛୁଟାଇଲେ । ସମସ୍ତେ ମନ୍ତ୍ରମୁଗ୍ଧ ହୋଇ ରହିଗଲେ । ସେହି ସଙ୍ଗୀତଦ୍ୱାରା ଆକୃଷ୍ଟ ହୋଇ ବଣର ହରିଣୀଟିଏ ମଧ୍ୟ ଆଚାର୍ଯ୍ୟଙ୍କ ନିକଟକୁ ଆସିଲା । ଆଚାର୍ଯ୍ୟ ମହାଶୟ ନିଜ ଗଳାରୁ ନାଗେଶ୍ୱର ମାଳାଟି କାଢ଼ି ହରିଣୀର ଗଳାରେ ଲମ୍ବାଇଦେଲେ । ଏହାପରେ କବିସୂର୍ଯ୍ୟଙ୍କ ପାଳି ପଡ଼ିଲା । ସେ ତାଙ୍କର ପ୍ରିୟ ଶିଷ୍ୟ ମଦନମଣିଙ୍କୁ ସଙ୍ଗୀତ ଗାନ କରିବାକୁ ନିର୍ଦ୍ଦେଶ ଦେଲେ । ମଦନମଣି ଅତି ମଧୁର କଣ୍ଠରେ ଗାଇଲେ କବିସୂର୍ଯ୍ୟଙ୍କ ସଙ୍ଗୀତ । ନାଗେଶ୍ୱର ମାଳା ଭୂଷିତ ସେଇ ହରିଣୀଟି ସମସ୍ତ ଭୟ ଭ୍ରାନ୍ତି ଭୁଲି ମଦନମଣିଙ୍କ ନିକଟକୁ ଆସିଲା । ତୈଲଙ୍ଗୀୟ ସଙ୍ଗୀତାଚାର୍ଯ୍ୟ ଓଡ଼ିଶୀ ସଙ୍ଗୀତର ଶ୍ରେଷ୍ଠତ୍ୱ ସ୍ୱୀକାର କଲେ ।

ଦୀର୍ଘ ଦେଢ଼ ଶହ ବର୍ଷ ତଳୁ କବିସୂର୍ଯ୍ୟ ଓଡ଼ିଆ ସାହିତ୍ୟ ଓ ସଙ୍ଗୀତ ଆକାଶରୁ ଅନ୍ତର୍ହିତ ହୋଇଯାଇଥିଲେ ମଧ୍ୟ ତାଙ୍କ ରଚିତ ସଙ୍ଗୀତ ଏବେବି ଓଡ଼ିଶାର ଗଗନ ପବନକୁ ମୁଖରିତ କରୁଛି । ରାସ, ଝୁଲଣ, ମେଳା, ମହୋତ୍ସବ ତଥା ଅନ୍ୟାନ୍ୟ ସଙ୍ଗୀତ ଆସରରେ ତାଙ୍କର ସଙ୍ଗୀତ ଗାନ ହେଉଅଛି । ଚିତ୍ତ ବିନୋଦନପାଇଁ ଜନ ସାଧାରଣଙ୍କଠାରୁ ଆରମ୍ଭ କରି ସଙ୍ଗୀତଶିଳ୍ପୀ ତାଙ୍କର ସଙ୍ଗୀତ ଗାନ କରିଥାନ୍ତି । କବିସୂର୍ଯ୍ୟଙ୍କ ଗୀତାବଳି ପ୍ରକାଶିତ ହୋଇ ନ ଥିବା

ବେଳେ କବିବର ରାଧାନାଥ ଚିଲିକା ବକ୍ଷରେ ନୌକାରେ ଯାଉଥିବାବେଳେ ଧୀବର କଣ୍ଠରୁ ତାଙ୍କର 'ଗଲାଣି ତ ଗଲା କଥାରେ ସଙ୍ଗାତ ଗଲାଣି ତ ଗଲା କଥା' ଗୀତଟି ଶୁଣିବାକୁ ପାଇ ଅଭିଭୂତ ହୋଇପଡ଼ିଥିଲେ –

''ଭାବାନ୍ତର ପୁଣି କ୍ଷଣେ କରେ ଜାତ
ଗଲାଣି ତ ଗଲା କଥାରେ ସଙ୍ଗାତ ।
ସଙ୍ଗୀତ ଆବେଶେ ନାନାରୂପେ ମନ,
ଅତୀନ୍ଦ୍ରିୟ ଦେଶେ କରେ ବିଚରଣ ।
ଚାଲିଯାଏ ଶୂନ୍ୟେ ଶୂନ୍ୟେ କେଉଁ ସ୍ଥାନେ
କି ଲଭିବା ଆଶେ କେହି ତ ନ ଜାଣେ ।''

କେବଳ ସେତିକି ନୁହେଁ, କବିବର ତାଙ୍କର ଅମର ଯଶ ଗାନ କରିବାକୁ ଯାଇ ଲେଖିଛନ୍ତି –

''ଧନ୍ୟ ରଥେ ! ତୁମ୍ଭ ଜନ୍ମ ଶୁଭକ୍ଷଣେ
ମୃତ୍ୟୁଞ୍ଜୟ ତୁମ୍ଭେ ଉତ୍କଳ ଭୁବନେ
ତୁମ୍ଭ ମାଟି ଦେହ ଗ୍ରାସିଛି ଶ୍ମଶାନ
ମାତ୍ର ଯଶୋଦେହେ ତୁମ୍ଭେ ଆୟୁଷ୍ମାନ୍ ।''

# ବୈଷ୍ଣବକବି
# ବନମାଳୀ

ଓଡ଼ିଆ ସାହିତ୍ୟରେ ଭକ୍ତିଧାରାର ବିକାଶ ସାରଳା ଦାସଙ୍କଠାରୁ ଆରମ୍ଭ ହୋଇଥିଲା । ପରବର୍ତ୍ତୀ ଯୁଗର ସାହିତ୍ୟରେ ମଧ୍ୟ ସେହି ପରମ୍ପରା ରହି ଆସିଥିଲା । ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ ପ୍ରଭୃତି ନିଜ ନିଜ କାବ୍ୟର ଆରମ୍ଭରେ ଜଗନ୍ନାଥଙ୍କୁ ସ୍ତୁତି କରି ଗ୍ରନ୍ଥମାନ ରଚନା କରିଥିଲେ । ଓଡ଼ିଆ କାବ୍ୟଜଗତରେ ରାମ ଓ କୃଷ୍ଣଲୀଳା ଉପରେ ଭଜନମାନ ଥିଲେ ମଧ୍ୟ ଓଡ଼ିଶାର ଭକ୍ତିଭାବନାରେ ଶ୍ରୀଜଗନ୍ନାଥ ଯେ ଶ୍ରେଷ୍ଠ ସ୍ଥାନ ଅଧିକାର କରିଛନ୍ତି, ଏହା ସମସ୍ତେ ସ୍ୱୀକାର କରିବେ । କବି ବନମାଳୀ ଉଭୟ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କ ଅନନ୍ୟ ଭକ୍ତ ଭାବେ ପ୍ରସିଦ୍ଧି ଲାଭ କରିଅଛନ୍ତି ।

## ଜନ୍ମ ଓ ଶିକ୍ଷାଲାଭ

କବି ବନମାଳୀ ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗରେ (ଆନୁମାନିକ ୧୭୨୯ ଆଡ଼କୁ) ଜନ୍ମଗ୍ରହଣ କରିଥିଲେ । ସେ ଓଡ଼ିଶାର ଗଜପତି ରାଜା ବୀରକିଶୋରଦେବ (୧୭୩୬-୯୩)ଙ୍କ ସାମସମୟିକ ଥିଲେ । ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ କେତେକ ଉପାଧି ଓ ପୁରୀ ରଘୁନନ୍ଦନ ପାଠାଗାର ପୋଥିରୁ ଜଣାଯାଏ ଯେ ତାଙ୍କ ବାସସ୍ଥାନ ପୁରୀ ମାଟିମଣ୍ଡପ ସାହି ଥିଲା । ସେ ଜାତିରେ କରଣ ଥିଲେ । ରାଜ୍ୟ ସଂଗ୍ରହାଳୟ ପୋଥିରେ ଉଲ୍ଲେଖ ଅଛି ଯେ –

"ଘର କ୍ଷେତ୍ର ବଡ଼ ଦେଉଳ ମଣ୍ଡପ ସାହିରେ
ଜନମ କରଣ କୁଳେ ଅଟଇ ମହୀରେ ହେ ।"

ବନମାଳୀଙ୍କ ପିତାଙ୍କ ନାମ ହରି ଥିଲା । ସେ ସେପରି ମାନ୍ୟଗଣ୍ୟ ବ୍ୟକ୍ତି ନ ଥିଲେ । ତାଙ୍କର କୌଳିକ ପଦବୀ ଥିଲା ପଟ୍ଟନାୟକ ।

ବନମାଳୀ ବାଲ୍ୟକାଳରେ ବିଦ୍ୟା ଅଧ୍ୟୟନ କଲେ । ସେତେବେଳେ ସଂସ୍କୃତ ଶିକ୍ଷାର ଆଦର ଥିଲା । ସେ ସଂସ୍କୃତ ଶାସ୍ତ୍ର ଅଧ୍ୟୟନ ପ୍ରତି ଆକୃଷ୍ଟ ହେଲେ । ସେ ଆଦ୍ୟ ଯୌବନରେ କବିତା ଲେଖିବା ଆରମ୍ଭ କରିଥିଲେ । ଏହା ମୁଖ୍ୟତଃ ଗ୍ରାମ୍ୟରସଭିତ୍ତିକ ଥିଲା । ତାଙ୍କର ଗ୍ରାମ୍ୟରସଭିତ୍ତିକ ଗୀତମାନଙ୍କ ମଧ୍ୟରୁ 'ଏହାକୁ

ପାଇଲୁ କାହୁଁ' ଓ 'ଏକାଳେ ଯେ ପ୍ରାଣନାଥ ବିଦେଶେ ରହିଲେ ଗୋ' ବିଶେଷ ଜନପ୍ରିୟ ହୋଇପାରିଛି । ଏହି ଗୀତଗୁଡ଼ିକର ଭାଷା ଅତି ସରଳ । ଭାବ ମୁଖ୍ୟତଃ ପ୍ରଣୟ ଓ ସମ୍ଭୋଗଭିତ୍ତିକ । ଏଥିରେ ଶବ୍ଦର ଗୁରୁ-ଗମ୍ଭୀରତା ନାହିଁ କି ଅଳଙ୍କାରର ଆଡ଼ମ୍ବର ନାହିଁ । ଏହାର ଗୋଟିଏ ଉଦାହରଣ –

''ଏ କାଳେ ଯେ ପ୍ରାଣନାଥ ବିଦେଶେ ରହିଲେ ଗୋ
ଅଭାଗିନୀଠାରେ କିପାଁ ନିର୍ଦ୍ଦୟ ବହିଲେ ଗୋ
ଅବଧି ଦିନ ତ ବଳି ଗଲାଣି ପରାଣ ଆଳି
ବିଷମ କାମ ଅନଳେ ମୋ ହୃଦ ଦହିଲେ ଗୋ ।''

ଅଥବା –

''ଆହା ମୋର ରତି ବିଳାସୀ,
ମନେ ପଡ଼େ ତୋର ଶ୍ରୀମୁଖ ଶଶୀ ।
ଦର ଦରହାସ ପୀୟୂଷ ପ୍ରକାଶ କୁଞ୍ଚିତ ସୁନୀଳ ଭ୍ରମର କେଶୀ
ଦିନେ ଚାନ୍ଦିନୀରେ ଚାନ୍ଦ ତଳରେ
ବସି ପରା ଧନ ମୋର କୋଳରେ
ତାମ୍ବୂଳ ଭୁଞ୍ଜାଇ ମାନସ ରଞ୍ଜାଇ ।
ବିହିଥିଲୁ ଚୁମ୍ବ ପରାଣ ତୋଷି ।''

ଅଥବା –

''ଦିନେ ଘନରାତି ପାହାନ୍ତି ଜାଣି
ସୁରତି ଆଶାରେ ଧଇଲି ଟାଣି
ରତି ବିପରୀତ ତୋଷିଲୁ ଯେ ଚିତ୍ତ
ବନମାଳୀ ଚାଟୁ ପଦକେ ଭାଷି ।''

ଏହା ପାଠକ-ପାଠିକାଙ୍କ ଉପଭୋଗ୍ୟ ହେବା ସଙ୍ଗେ ସଙ୍ଗେ ସଙ୍ଗୀତ ଶିଳ୍ପୀମାନଙ୍କଦ୍ୱାରା ଆଦୃତ ହୋଇଥିବାର ଜଣାଯାଏ ।

କବି ବନମାଳୀ ସଂସ୍କୃତ ଶାସ୍ତ୍ରରେ ପ୍ରବୀଣ ଥିଲେ । ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟ-କବିତାଦ୍ୱାରା ସେ ମଧ୍ୟ ବିଶେଷଭାବେ ପ୍ରଭାବିତ ହୋଇଥିଲେ । ସଂସ୍କୃତର ରାମାୟଣ ଚମ୍ପୂ ଛାୟାରେ ସେ ସଚିତ୍ର ରାମାୟଣ ରଚନା କଲେ । ଏଥିରେ ସ୍ୱକୀୟା ପ୍ରୀତିର ଆଦର୍ଶ ପ୍ରତିପାଦିତ ହୋଇଅଛି । ଏହି କାବ୍ୟଟି ଚଉପଦୀ ଗୀତିରେ ରଚନା କରି ସେ ପିତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଅର୍ପଣ କରିଛନ୍ତି ।

## ଗୃହସ୍ଥ ଜୀବନ

ବନମାଳୀ ଗୃହସ୍ଥ ଜୀବନ ଯାପନ କରୁଥିଲେ । ମାତ୍ର ତାଙ୍କର ଜୀବିକା ଅର୍ଜନର ପନ୍ଥା ନ ଥିଲା । ତେଣୁ ଅତି ଦୁଃଖ କଷ୍ଟରେ ଚଳୁଥିଲେ । ଅନ୍ନକଷ୍ଟ ତ ସବୁବେଳେ ଲାଗି ରହିଥିଲା, ବସ୍ତ୍ର ମଧ୍ୟ ପିନ୍ଧିବାକୁ ନ ଥିଲା । ସେ ତାଙ୍କର ଦୁଃଖ, ଦୈନ୍ୟ ଶ୍ରୀଜଗନ୍ନାଥଙ୍କ ପାଖରେ ଜଣାଇଛନ୍ତି –

"ଆହେ ପ୍ରଭୁ କଳା ଶ୍ରୀମୁଖ
କାଳଯାକ ଭଜି ନ ଗଲା ଦୁଃଖ
କି ଅବା ଛାମୁରେ ଜଣାଇବି ମୁହିଁ
ସାକ୍ଷାତେ ମୋ ଦୀନ ଅବସ୍ଥା ଦେଖ ।"

ବସ୍ତ୍ର ଅଭାବରୁ ସେ ପ୍ରତିଦିନ ଜଗନ୍ନାଥଙ୍କ ଦେଉଳକୁ ଯାଇପାରୁ ନ ଥିଲେ । ସେ ତାହା ମଧ୍ୟ ପ୍ରକାଶ କରିଛନ୍ତି –

"ତେଣୁ ଶ୍ରୀଛାମୁକୁ ଯାଇ ନ ପାରଇ
ଖଣ୍ଡିଏ ତ ମୋର ନ ଥାଇ ଭେକ ।"

ଏଥି ସାଙ୍ଗକୁ କୁଟୁମ୍ବଙ୍କ ଗୋଳ ଲାଗି ରହିଥିଲା । ସାହୁକାର ଜଞ୍ଜାଳ ମଧ୍ୟ ଅତ୍ୟଧିକ ଥିଲା । କବି ତାହା ପ୍ରକାଶ କରିଛନ୍ତି –

"ସାହୁ ଜଞ୍ଜାଳ କୁଟୁମ୍ବଙ୍କ ଗୋଳ
ଅନ୍ତରେ ବେଦନା ସବୁ ଅଧିକ
କା ଆଗେ କହିବି କେ କଷ୍ଟ ଫେଡ଼ିବ
ସଂସାରେ ମୋ ପରି ନାହିଁ ନିରେଖ ।"

ବହୁକାଳ ଦୁଃଖ କଷ୍ଟରେ କଟାଇଲାପରେ ବି ଅବସ୍ଥା ବଦଳି ନାହିଁ । ବରଂ ଦିନକୁ ଦିନ ପ୍ରବଳ ହୋଇଛି । କବି ତାଙ୍କ ଅଦୃଷ୍ଟକୁ ନିନ୍ଦା କରିଛନ୍ତି –

"ଦୁଃଖ ନାଶନ ହେ ! ସୁଖ ନ ପାଇଲି ଦିନେ
ବେଳକୁ ବେଳ ତ ପ୍ରବଳ ହେଉଛି ବିଜୁଳି ଯେସନେ ଘନେ ।

× × ×

ପୋଡୁ ମୋ ଅଦୃଷ୍ଟ ଅନ୍ନବସ୍ତ୍ର କଷ୍ଟ ଏଡ଼େ ବଡ଼ ପ୍ରଭୁ ଥାଉ ।"

ପ୍ରାଣରେ ଦୁଃଖ ଯାତନା ଭରିଉଠିଥିଲାବେଳେ ବନମାଳୀ ଗ୍ରାମ୍ୟରସଭିତ୍ତିକ କବିତା ରଚନା ଦିଗରେ ଆଗ୍ରହୀ ହୋଇ ନାହାନ୍ତି । ସେ ଜଗନ୍ନାଥଙ୍କଠାରେ ଶରଣ ପଶିଛନ୍ତି । ଏହି ସମୟରେ ସେ ବହୁ ଭଜନ ଓ ଜଣାଣ ରଚନା କରିଥିବା ଜଣାଯାଏ । ବିଶେଷତଃ, ଜଗନ୍ନାଥଙ୍କଠାରେ ତାଙ୍କର ଅପାର ଭକ୍ତି ରହିଛି ।

ପୁରୀ ବାସିନ୍ଦା ହୋଇଥିବାରୁ ଜଗନ୍ନାଥଙ୍କ ଯାନିଯାତ୍ରା ଦେଖିବାର ସୌଭାଗ୍ୟ ମଧ୍ୟ ତାଙ୍କର ଘଟିଛି । ତାଙ୍କ କବିତାରେ ଚନ୍ଦନ ଯାତ୍ରା ସମୟର ଦୃଶ୍ୟ ମିଳେ –

''ଦେଖ ଗୋ ରାଧାମାଧବ ଚାଲି
ମଣି ବିମାନ ଆସେ ଝୁଲି ଝୁଲି
ବିବିଧ ବାଜଣା ବୀର କାହାଳୀ ।
ବିଜେ କଲେ ଗୋପ ଦାଣ୍ଡ ଉଛୁଳି ।''

ପୁଣି – ''ନରେନ୍ଦ୍ର ସରକୁ କରିଣ ମନ
ଚାପ ଖେଳନ୍ତି ଜଗତ ମୋହନ
ବୋଲେ ବନମାଳୀ ଶ୍ରୀପଦଧ୍ୟାୟୀ
ଚନ୍ଦନ କୁଣ୍ଡେ ପ୍ରବେଶିଲେ ଯାଇ ।''

ସେହିପରି ଝୁଲଣ ଓ ହୋରିଖେଳର ବର୍ଣ୍ଣନା ବନମାଳୀଙ୍କ କବିତାରେ ଅଛି । ସେ ମଧ୍ୟ ଜଗନ୍ନାଥଙ୍କୁ ବାର ମାସରେ ତେର ଯାତ୍ରା ଦେଖିବାକୁ ସୁଯୋଗ ଦେବାକୁ ନିବେଦନ କରି କହିଛନ୍ତି –

''ଏହି ଅଳି ଶ୍ରୀ ଛାମୁର, ହେ ଦୀନବନ୍ଧୁ, ଏହି ଅଳି ଛାମୁର

× × ×

ବାର ମାସେ ତେର ଯାତ୍ରା ଦେଖୁଥିବି
ଶ୍ରୀକ୍ଷେତ୍ରେ ହୋଇ ଭିକାରି
ସାଧୁ ସନ୍ଥଙ୍କର ବୋଲାଇ କିଙ୍କର
ମାଗୁଥିବି ମଧୁକରୀ ।''

ପୁରୀରେ ରହିବାକୁ କବି ଅପାର ସୌଭାଗ୍ୟ ମନେ କରିଛନ୍ତି । ଶ୍ରୀକ୍ଷେତ୍ରରେ ରହି ସେବା ନିରନ୍ତର କରିବାକୁ ଜଗନ୍ନାଥଙ୍କୁ ପ୍ରାର୍ଥନା କରିଛନ୍ତି –

''ଶ୍ରୀରଙ୍ଗା ଚରଣେ ସେବାରେ ମୋ ମନ
ରହିଥାଉ ନିରନ୍ତର
ଦାନାକନା ପନ୍ଥେ ମନା ହେଉ ମତେ
ନୀଳଚକ୍ରେ ବାନା ଚାହିଁ
ସୁଖୀ ହେଉଥିବି ଅଖିଳ ପତି ହେ
ନିର୍ଦ୍ଦୟ ହୋଇବ ନାହିଁ ।''

କବି ବନମାଳୀ କେତୋଟି ଗୀତ ରାଜା ବୀରକିଶୋରଦେବଙ୍କ ନାମରେ ଭଣିତା କରିଥିବାର ଜଣାଯାଏ । ସେଥିମଧ୍ୟରୁ ଗୋଟିଏ କବିତା ଜଗନ୍ନାଥ ମହାପ୍ରଭୁଙ୍କ ଉଦ୍ଦେଶ୍ୟରେ ରଚିତ । ସେଥିରେ ଭକ୍ତର ଆର୍ତ୍ତ ନିବେଦନ ପୂରିରହିଛି –

"ଭୁଜତଳେ ମୋତେ ରଖ ମହାବାହୁ
ବାହୁତଳେ ମୋତେ ରଖ
ବିପୁଳ ଭୁଜ ବିସ୍ତାରି ଦେଲେ ଛାର,
କି କରି ପାରିବ ଦୁଃଖ
ସଜ ହୋଇଥିବ ନନ୍ଦିଘୋଷ ରଥ,
ମୁଁ ଥିବି ତୁମ୍ଭ ସେବାରେ,
ତୁମ୍ଭେ ଦୀନବନ୍ଧୁ ନିର୍ଦ୍ଦୟ ହୋଇଲେ
କି ବୋଲିବେ ଏ ସଂସାରେ ।

× × ×

ମୁଁ ଅତି ପତିତ ଭରସା କରିଛି
ପ୍ରଭୁ ଶ୍ରୀଚରଣ ତଳେ
ଶ୍ରୀ ବୀରକେଶରୀ ମହାରାଜା ଭଣେ,
ଦୟାକର ମୋତେ ବେଳେ ।"

ରାଜା ବୀରକିଶୋରଦେବ ଜଣେ ସୁଶାସକ ଥିଲେ । ସେ ମଧ ଗୁଣୀଜନଙ୍କୁ ଆଦର କରୁଥିଲେ । କବି କୋବିଦ ତାଙ୍କର ପୃଷ୍ଠପୋଷକତା ଲାଭ କରିଥିଲେ । ବନମାଳୀ ମଧ ସେହିପରି ରାଜ-ଅନୁଗ୍ରହ ଲାଭ କରିଥିବା ଜଣାଯାଏ । ଐତିହାସିକ କେଦାରନାଥ ମହାପାତ୍ରଙ୍କ ମତରେ ବନମାଳୀ ବାଇଶ ଗୋଟି ପଦ୍ୟ ବୀରକିଶୋର ଦେବଙ୍କ ନାମରେ ଭଣିତା କରି ବାଇଶବାଟି ଜାଗିରି ଜମି ପାଇଥିଲେ । କେହି କେହି ଆଲୋଚକ ଏହାର ସତ୍ୟତା ବିଷୟରେ ସନ୍ଦେହ ପୋଷଣ କରନ୍ତି । ବନମାଳୀ ବାଇଶ ବାଟି ଜମି ପାଇଥିବାର କୌଣସି ପ୍ରମାଣ ନାହିଁ । ତେବେ ସେ କେତେକ କବିତା ବୀରକିଶୋରଦେବଙ୍କ ନାମରେ ଭଣିତା କରିଥିଲେ ଓ ତାଙ୍କଦ୍ୱାରା ଅନୁଗୃହୀତ ହୋଇଥିଲେ । ମାତ୍ର ତାହା ଯେ ପର୍ଯ୍ୟାପ୍ତ ନ ଥିଲା, ଏହା ଅତି ସ୍ପଷ୍ଟ ।

## ଦୀକ୍ଷା ଗ୍ରହଣ

ସେ ସମୟରେ ପୁରୀର ଖଲ୍ଲୁରିଆ ମଠର ମହନ୍ତ ଥିଲେ ଶ୍ରୀଚରଣ ଦାସ । ସେ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ସଙ୍ଗୀତ ପ୍ରତି ତାଙ୍କର ଆସକ୍ତି ଥିଲା । ସମ୍ଭବତଃ, ବନମାଳୀ ମଠମାନଙ୍କୁ ଯିବାଆସିବା କରୁଥିଲେ । ସେଠାରେ ତାଙ୍କ ରଚିତ ଭଜନ ଓ ଜଣାଣମାନ ଗାନ କରୁଥିଲେ । ଏହି ଭଜନ ପ୍ରଭୃତି ଶୁଣି ମହନ୍ତ ଶ୍ରୀଚରଣ ଦାସ ତାଙ୍କ ପ୍ରତି ଆକର୍ଷିତ ହେଲେ । କ୍ରମେ ଦୁହିଙ୍କ ମଧରେ ଘନିଷ୍ଠତା ହୋଇଥିବାର ଅନୁମାନ କରାଯାଏ ।

ଏହି ମହନ୍ତଙ୍କ ସମ୍ପର୍କରେ ଆସିବାପରେ ବନମାଳୀ ବୈଷ୍ଣବ ଧର୍ମ ଗ୍ରହଣ କଲେ । ଦୀକ୍ଷା ଗ୍ରହଣ ପରେ ତାଙ୍କର ନାମ ହେଲା ବଲ୍ଲଭାନନ୍ଦ ଦାସ । ମାତ୍ର ସେ ବଲ୍ଲଭାନନ୍ଦ ନାମରେ ପରିଚିତ ହେବାକୁ ଆଗ୍ରହୀ ନ ଥିଲେ । ସମ୍ଭବତଃ, ଭକ୍ତ ତଥା ସାଧାରଣ ପାଠକ ମହଲରେ ତାଙ୍କ ନାମ ବନମାଳୀ ବୋଲି ପ୍ରସିଦ୍ଧି ଲାଭ କରିଥିଲା । ତେବେ ସେ 'ଦାସ' ପଦବୀ ଗ୍ରହଣ କଲେ । ସେତେବେଳେ ଧର୍ମଗ୍ରହଣମାତ୍ରେ 'ଦାସ' ପଦବୀ ଗ୍ରହଣ କରିବାକୁ ପଡୁଥିଲା । ସାରଳା ଦାସ, ଜଗନ୍ନାଥ ଦାସ, ଅନନ୍ତ ଦାସ ପ୍ରଭୃତିଙ୍କ ପଦବୀ ଭିନ୍ନ ଥିଲେ ମଧ୍ୟ 'ଦାସ' ନାମରେ ପରିଚିତ ଥିଲେ ।

କବି ତାଙ୍କ ପଦବୀ 'ପଟ୍ଟନାୟକ' ଛାଡ଼ିଥିବାରୁ ମଧ୍ୟ ଦୁଃଖ ପ୍ରକାଶ କରିଛନ୍ତି । ତାହା ସେ ପ୍ରକାଶ କରିଛନ୍ତି –

''ଏଥିପାଇଁ କୁଳମୂଳ ହରାଇଛି
ସାଥି କରି ତୋତେ ଏକା
ଦାସ ଗୋବର୍ଦ୍ଧନ ଦୋଷ ନ ଧରିବ
ଗୋବର୍ଦ୍ଧନ ଗିରି ଟେକା ।''

କବି ବନ୍ଧୁତାର ନିଦର୍ଶନସ୍ୱରୂପ ଗୋଟିଏ ପଦ୍ୟ ଶ୍ରୀଚରଣ ଦାସଙ୍କ ନାମରେ ଭଣିତା କରିଥିବାର ଜଣାଯାଏ । 'ଚାହିଁଦେଲି କିଞ୍ଚିତ୍‌ରେ ବାରେ ସେ ଶ୍ୟାମନାଗରଙ୍କୁ ଗୋ' ପଦ୍ୟରେ ଏହାର ଉଲ୍ଲେଖ ଅଛି –

''ଚାହିଁ ଦେଲି କିଞ୍ଚିତ୍‌ରେ
ବାରେ ସେ ଶ୍ୟାମ ନାଗରଙ୍କୁ ଗୋ ।

× × ×

ବୋଲେ ଶ୍ରୀଚରଣ ଦାସ ଏହି ରସ
ଯାହାର ସନ୍ତତ ବ୍ରଜରେ ନିବାସ,
ଶ୍ରୀକୃଷ୍ଣ ଚରଣେ ଯାର ନିତି ଆଶ ।
ସେ ଲୀନ ହୁଏ ସେଠାରେ ।''

## ଧର୍ମମତ

ବନମାଳୀ ଗୌଡ଼ୀୟ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ଗୌଡ଼ୀୟ ବୈଷ୍ଣବମାନେ ଭାଗବତ ଆଦର୍ଶରେ ଅନୁପ୍ରାଣିତ ହୋଇ ଶ୍ରୀକୃଷ୍ଣଙ୍କୁ ଆରାଧ୍ୟ ଦେବତାଭାବେ ଗ୍ରହଣ କରିଥାନ୍ତି । ବନମାଳୀ ମଧ୍ୟ ସେହି ଆଦର୍ଶରେ ଅନୁପ୍ରାଣିତ ହୋଇଥିଲେ । ସେ ଶ୍ରୀକୃଷ୍ଣଙ୍କ ନିକଟରେ ଭକ୍ତି ଅର୍ଘ୍ୟ ବାଢ଼ିଛନ୍ତି । ତେଣୁ ତାଙ୍କ ପଦ୍ୟାବଳୀର

ଅପ୍ରତିଦ୍ୱନ୍ଦ୍ୱୀ ନାୟକ ହେଉଛନ୍ତି ଶ୍ରୀକୃଷ୍ଣ । ସେ ହେଉଛନ୍ତି ଗୋକୁଳ ଚନ୍ଦ୍ରମା, ଯଶୋଦାଙ୍କ ଗଳାର ହାର, ରାଧାଙ୍କର ବଲ୍ଲଭ ଆଉ ଗୋପୀଜନଙ୍କର ହୃଦୟର ସମ୍ରାଟ୍ । ତାଙ୍କରି ଜୟଗାନରେ ବନମାଳୀଙ୍କର ପଦ୍ୟାବଳୀ ମୁଖର ହୋଇଉଠିଛି –

''ଜୟହେ ଜୟ ବ୍ରଜରାଜ ନନ୍ଦନ
ମୋହନ ନଟବର ଭଙ୍ଗିୟା
ଦଳିତ କଜ୍ଜଳ କାନ୍ତି ମଞ୍ଜୁଳ
କୁଞ୍ଚିତ ଘନ ନୀଳ କୁନ୍ତଳ
× × ×
କଟୀ ତଟେ ପୀତ ପଟି ଭୂଷଣ
ତଡ଼ିତ ନିଚୟ କାନ୍ତି ନିନ୍ଦନ
ନୀପ ତରୁମୂଳ ଧେନୁଚାରଣ
ବରଜ ବାଳକ ସଙ୍ଗିୟା ।''

ଶ୍ରୀକୃଷ୍ଣ ଲୀଳାର ପ୍ରତ୍ୟେକ ଅଂଶକୁ କବି ବର୍ଣ୍ଣନା କରିଛନ୍ତି । ବାଲ୍ୟକାଳରେ ସେ ଯଶୋଦାଙ୍କର ଆଦରର ଧନ ହୋଇଥିଲେ । କେତେକ କବିତାରେ ଯଶୋଦାଙ୍କ ବାତ୍ସଲ୍ୟ ରସ ଫୁଟିଉଠିଛି –

''ଉଠ ନିଶି ପାହିଲା ଏଥର ହେ ବଂଶୀଧର
× ×
ଡାକେ ଯଶୋବନ୍ତୀ ଭାଳି ଉଠ ମୋର ବନମାଳୀ
ଶ୍ରୀମୁଖ ଦେବି ପଖାଳି ଝରିରେ ରଖିଛି ବାସ ନୀର
× ×
ଉଠ ରାମ ବାସୁଦେବ ଗୋଗୋଷ୍ଠେ ଉଛୁର ହେବ
ଦଧି ଅନ୍ନ ସାଥେ ନେବ ନଦୀ କୂଳେ କରିବ ଆହାର ହେ ।''

ପୁଣି କୃଷ୍ଣଙ୍କ ସଖାମାନେ ଅପେକ୍ଷା କରିଛନ୍ତି । ମାତ୍ର ବାଳକ କୃଷ୍ଣ ନିଦରୁ ଉଠି ନାହାନ୍ତି । ଯଶୋଦା ତାଙ୍କୁ ନିଦରୁ ଉଠାଇଛନ୍ତି । କବି ତାହା ପ୍ରକାଶ କରିଛନ୍ତି –

''ଉଠହେ କାହ୍ନୁ କେଶବ ହରି,
ମୁକୁନ୍ଦ ମାଧବ ମୁରାରି
ପାହିଲା ନିଶି କାକ ଦେଲେ ଡାକ
ନନ୍ଦ ସିଂହଦ୍ୱାରେ ବ୍ରଜ ବାଳକ
ଡାକନ୍ତି ଉଠ ରାମ ବନମାଳୀ
ଉଠ ଗୋପୀନାଥ ନେବା ବାଛୁରି ।''

କବି ପୂର୍ବରୁ ବହୁ ଆଦିରସାତ୍ମକ ଗ୍ରାମ୍ୟଗୀତ ରଚନା କରୁଥିଲେ । ସନ୍ନ୍ୟାସ ଗ୍ରହଣ କରିବାପରେ ସେ ରାଧାକୃଷ୍ଣଙ୍କ କେଳି ବର୍ଣ୍ଣନାରେ ମଗ୍ନ ରହିଲେ । ତାଙ୍କର ପଦ୍ୟାବଳୀ ମଧ୍ୟରେ ଶ୍ରୀକୃଷ୍ଣ ଲୀଳା ବର୍ଣ୍ଣିତ ପଦ୍ୟାବଳୀର ସଂଖ୍ୟା ତେଣୁ ଅଧିକ ଦେଖାଯାଏ । ରାଧା ଶ୍ରୀକୃଷ୍ଣଙ୍କୁ କେଳିକଦମ୍ବ ମୂଳେ ଦେଖିଛନ୍ତି ।

ସେ ସଖୀମାନଙ୍କୁ ପଚାରୁଛନ୍ତି -

''ବଡ଼ ଆଚମ୍ବିତ ଦେଖିଲି ଗୋ ମିତ
ସେ କେଳି କଦମ୍ବ ମୂଳେ
ଗଗନର ଘନ ମହୀରେ ଖେଳଇ
ବିଜୁଳି ଲତିକା ମାଳେ,
ଲୋ ସଜନୀ ବକପନ୍ତି କି ସୁନ୍ଦର
ଘଡ଼ଘଡ଼ି ସ୍ୱନ ଶୁଣି
ମୁଁ ଉଚ୍ଛନ୍ନ ହୋଇଗଲି ପରା ସ୍ଥିର ଲୋ ।''

ଅଥବା –

''କହଲୋ ସଜନୀ, ସେ କଦମ୍ବମୂଳେ କେସେ ।
ନବୀନ ନୀରଦତନୁ କେଡ଼େ ଶୋଭା ଦିଶେ ।
କିଶୋର ବୟସ ତା'ର ଛବି ଦିଶେ ମନୋହର
ନାଗରୀଙ୍କ ଚିତ୍ତଚୋର ନଟବର ବେଶେ ।''

ସଖୀମାନେ ଯାହା ଉତ୍ତର ଦେଇଛନ୍ତି କବି ତାହା ଅପୂର୍ବ ଭାବରେ ପ୍ରକାଶ କରିଛନ୍ତି

''ଏହି ସେହି ପରା ଲୋ ମିତ
କେଳି କୁଞ୍ଜ ବନ ତକାଇତ
ଶ୍ୟାମଳ ଅଙ୍ଗିଆ ଗୋ ବଂଶୀ ସଙ୍ଗିଆ
ତ୍ରିଭଙ୍ଗ ଭଙ୍ଗିଆ ନେତ୍ର ଅପାଙ୍ଗିଆ
ସେ ନବରଙ୍ଗିଆ ଜାଣେ କେତେଲୋ ଇଙ୍ଗିତ ।''

ପୁଣି ସଖୀମାନେ ପଚାରିଛନ୍ତି –

''ଶ୍ୟାମ ରୀତି ଜାଣି ନାହଁ କି ? ଏକା ନୀର ଘାଟେ ଗଲୁ କାହିଁକି ?
ସେ ହଟିଆ ନବ ରଙ୍ଗିଆ ଆଖିଠରା ଭୂରୁ ଭଙ୍ଗିଆ
ନିପଟ ଚିକ୍କଣ ଶ୍ୟାମଳ ଅଙ୍ଗିଆ ଆଡ଼କୁ ଉଆଡ଼େ ଦେଲୁ ଚାହିଁ କି ?''

ସଖୀମାନେ ରାଧାଙ୍କୁ ତାଗିଦ କରି ପ୍ରୀତି ଫେରାଇ ନେବାକୁ ପରାମର୍ଶ ଦେଇଛନ୍ତି –

"କୁଷ୍ଣୁନିଆଁ ଗିଳିଛି ନିଆଁ
ପୋଡ଼ିଦେବଟି ତୋ ପ୍ରୀତି ସୁନିଆଁ
ହେ ଦରହାସୀ, ତୁ ନଜର ଫେରାଇ
କଦର କରି ତା'ଠାରୁ ଘେନିଆଁ ।"

ରାଧା କିନ୍ତୁ କୃଷ୍ଣପ୍ରାଣଗତା ହୋଇପଡ଼ିଛନ୍ତି । ଗଛ, ଲତା, ଯମୁନା ନଦୀର ନୀଳ ଜଳରେ ସେ ପ୍ରିୟତମ କୃଷ୍ଣଙ୍କୁ ଦେଖୁଛନ୍ତି । ସେ ଜ୍ଞାନ ହରାଇଛନ୍ତି । ବନମାଳୀ ରାଧାଙ୍କ ମୁଖରେ କହିଛନ୍ତି –

"ଶ୍ୟାମଳ ଗାତ୍ରେ ମୋ ନେତ୍ର ପଡ଼ିଲାରେ
ପଡ଼ିବା ମାତ୍ରେ ମୋ ଜ୍ଞାନ ବୁଡ଼ିଲାରେ
ଡର ଡର ହୋଇ ସିନା ମୁହିଁ ତରତର କରି ଦେଲି ଚାହିଁ
ଦର ଦରଶନେ ଚିତ୍ତ ବୁଡ଼ିଲାରେ ।"

ରାଧା କୃଷ୍ଣଙ୍କ ଦର୍ଶନ ନ ପାଇ ପାଗଳିନୀ ହୋଇଉଠିଛନ୍ତି । ସେ ବେଳକାଳ ଉଣ୍ଡି ଏକାକିନୀ କାଖରେ କଳସୀ ଧରି ଯମୁନା ଘାଟକୁ ଯାଇଛନ୍ତି । ସେଠି ବେଣୁଧର ବେଣୁ ବଜାଇବାର ଦେଖୁଛନ୍ତି । କାମନାରେ ଜର୍ଜରିତା ହୋଇ ଘରକୁ ଫେରିଆସିଛନ୍ତି ଓ ସଖୀ ଆଗେ ମନର ଭାବ ପ୍ରକାଶ କରିଛନ୍ତି –

ଶ୍ୟାମବନ୍ଧୁ ମୋହିନୀ କଲା ଚାହିଁବା ମାତ୍ରକେ ମନ ମୋହିଲା –
କାଳିନ୍ଦୀ କୂଳରେ କଦମ୍ବ ମୂଳରେ
ତ୍ରିଭଙ୍ଗିମା ରୂପ ଉଭା ହୋଇଲା ।
ସ୍ତମ୍ଭନ ମୋହନ ବଶ ଉଚ୍ଚାଟନ ।
ଚାରି ଛନ୍ଦେ ତହୁଁ ବେଣୁ ବାଇଲା ।

ରାଧା ପ୍ରେମ ରସରେ ଏତେ ମଜ୍ଜିଗଲେ ଯେ, ସେ କୃଷ୍ଣଙ୍କୁ ଭୁଲିପାରୁ ନାହାନ୍ତି । ସଖୀଙ୍କୁ କହିଛନ୍ତି –

"ଆଲୋ ସଖୀ, ପାସୋରି ନୁହେଁ ଗିରିଧାରୀ କି
ପାସୋରି ନୁହେଁ ଗିରିଧାରୀ କିଲୋ ।
ମୂରୁଛି ନୋହେ ଗିରିଧାରୀ କିଲୋ
ଆନ କିଛି ନ ରୁଚେ ଆଖି ଭିତରେ ନାଚେ
କଳଙ୍କ ହେଲା କୁଳନାରୀଙ୍କି ।"

ଅଥବା – "ନବ ନଟବର ଲାବଣ୍ୟ ଠାଣିକି
ସେ ମନମୋହନ ମୁରଲୀପାଣି
ପାସୋରି ପାରିବି କେଉଁ ପରି ସଖୀ,
ନବ-ତମାଳ କାନ୍ତି ଯାହାର ଲୋ ।"

ଶ୍ରୀକୃଷ୍ଣ ମଧ୍ୟ ରାଧାଙ୍କ ପ୍ରତି ଆକୃଷ୍ଟ ହୋଇଛନ୍ତି । ରାଧାଙ୍କୁ ନ ଦେଖି ବିରହ ଅନଳରେ ଦଗ୍ଧ ହୋଇଛନ୍ତି । କୃଷ୍ଣଙ୍କର ବିରହାନୁରାଗକୁ କବି ଅତି ସୁନ୍ଦର ଭାବରେ ରୂପାୟିତ କରିଛନ୍ତି –

''କାହିଁ ସେ ମୋର କିଶୋରୀ
ଯାଏ ମୋ ପରାଣ ଛାଡ଼ି ମାରଇ ମୋତେ ଶମ୍ବରାରି
ନୟନ ମୋ ପିପାସିତ ଖୋଜେ ତାକୁ ଅବିରତ
ଦେଖୁ ଦେଖୁ ଗୋଟିଯାକେ ପିଇଦେବି କି ରୂପ ମାଧୁରୀ ।''

କୃଷ୍ଣ ମଧ୍ୟ ରାଧାଙ୍କ ସଙ୍ଗ ଲାଭ ଚାହିଁଛନ୍ତି –

''ହୃଦରୁ ଉଠେ ଉଶ୍ୱାସ ଘନ ଘନ ବହେ ଶ୍ୱାସ
ଲୋଡ଼େ ଏକା ତା' ସଙ୍ଗତ,
ଆହା ସେ ରାଜକୁମାରୀ... ।''

କବି ରାଧାକୃଷ୍ଣଙ୍କ ପ୍ରେମ ଲୀଳା ବର୍ଣ୍ଣନା କରିଛନ୍ତି । ରାଧା ଯମୁନାରୁ ଏକୁଟିଆ ନୀର ଆଣି ଗଲାବେଳେ କୃଷ୍ଣ ବାଟ ଓଗାଳିଛନ୍ତି । ରାଧା ଅନ୍ତରରେ ପୁଲକିତା ହେଉଥିଲେ ମଧ୍ୟ ଛଳକୋପ ଦେଖାଇଛନ୍ତି । ରାଧା କହିଛନ୍ତି –

''ବାଟ ଛାଡ଼ ସୁହଟ ନାଗର,
ଯମୁନାକୁ ଯିବି ନୀର ଆଣିକି ।
ଘାଟପାଇଁ ଯେବେ ଲଟ ଲଗାଇବ
ପ୍ରୀତି ବନ୍ଧା ହେବି ମଥାମଣିକି,
ଘରେ ମୋ ନଣନ୍ଦ ଅଟେ ବଡ଼ ମନ୍ଦ
ଶାଶୂ ମୋ ଅଟଇ ସପତଣୀକି ।
ଆହେ ଗିରିଟେକା ନ କର ଡକା
ତୁମ୍ଭ ଲାଗି ନ ଆସିବି ଏଣିକି ।
ମୁହିଁ ବୃଷଭାନୁ ନୃପତିଙ୍କ ଜେମା
ଆନ ବୋଲେ ମୋତେ ଅଛ ମଣିକି ।
ଧରି ମୋ ଅଞ୍ଚଳ କରୁଛି ଜଞ୍ଜାଳ
ଡର ନାହିଁ ପର ଝିଆସୁଣୀ କି ?''

ରାଧା ଆଉ ଯମୁନାକୁ ଯାଇ ନାହାନ୍ତି । ଗୋପଦାଣ୍ଡ ତାଙ୍କୁ ମନା ହୋଇଛି । ତଥାପି କୃଷ୍ଣ ଗୁପ୍ତରେ ତାଙ୍କୁ ସାକ୍ଷାତ କଲାବେଳେ ରାଧା କହିଉଠିଛନ୍ତି –

"ତୋ ଲାଗି ଗୋପ ଦାଣ୍ଡ ମନାରେ କାଳିଆ ସୁନା
ତୋ ଲାଗି ନ ଯିବିରେ କାଳିଆ ସୁନା
ନିତି ଏଇ ବାଟେ ଯାଉରେ କାଳିଆ
ନିତି ଏଇ ବାଟେ ଯାଉ
ହାଟରେ କଉଡ଼ି ମାଗିଲେ କାଳିଆ
ମୁରଲୀ ବଜାଉ ଥାଉ ।"

ରାଧା ମଧ୍ୟ ନିଜକୁ ହୀନ ମନେ କରି ନାହାନ୍ତି । ସେ ନିଜକୁ 'ବଡ଼ଘର ବୋହୂ' ବୋଲି କହିଛନ୍ତି –

"ତୁହି ଗୋପପୁର ରଜାରେ କାଳିଆ,
ତୁହି ଗୋପପୁର ରଜା
ତୁହି ବଡ଼ଘର ପୁଅରେ କାଳିଆ
ମୁହିଁ ବଡ଼ ଘର ବୋହୂ
ସରମ ତୋ ମୁଖେ ନାହିଁରେ କାଳିଆ
ମରମ କଥା ତୁ କହୁରେ ।"

ସ୍ନାନ କରୁଥିବା ସମୟରେ ନାୟିକା ରାଧାଙ୍କ ଉରଜ ଯୁଗଳକୁ ନାୟକ ଶ୍ରୀକୃଷ୍ଣ ଅକସ୍ମାତ୍ ଆସି ପ୍ରତ୍ୟକ୍ଷ କରିଛନ୍ତି । ରାଧା ଆସି ସଖୀ ଆଗରେ କହିଛନ୍ତି –

"କି ଲାଜ ପାଇଲି ଆଜରେ ବାନ୍ଧବୀ
କି ଲାଜ ପାଇଲି ଆଜ ।
ଉରେ ଚିର ଦେଇ ତର ନ ସହଇ
ଆଗରେ ନାଗର ରାଜରେ ।

× × ×

ପାଣି ପଲ୍ଲବରେ ଘୋଡ଼ଣା ନ ଯାଇ
ବର୍ତ୍ତୁଳତର ଉରଜ
ଯେତେ ଯତ୍ନ କଲେ ମହା ମହୀଧର
ତାଙ୍କର ନିକି ସରୋଜରେ
ପାଖେ ଘୋଡ଼ାଇଲେ ଆରପାଖେ ଦିଶେ
ଉପାୟ କିଛି ନ ଦିଶେ ।
ମୁଖ ଅବନତ କଲେ ସେ ଉନ୍ନତ
ପୟୋଧର ବେନି ଠେସେରେ ।"

କୃଷ୍ଣଙ୍କୁ କେନ୍ଦ୍ର କରି ରାଧାଙ୍କ ନାମରେ ନିନ୍ଦା ହାଟ ବସିଛି । ଗୁରୁଗୁରୁଜନମାନେ ଗଞ୍ଜଣା ଦେଇଛନ୍ତି । ତଥାପି ରାଧା ତାକୁ ଭ୍ରୂକ୍ଷେପ କରି ନାହାନ୍ତି –

"ଗୁରୁ ଗୁରୁଜନ ଗଞ୍ଜଣା ଦେଲେ ଦେବେ ପଛେ ସିନା
ଏକା ଶ୍ୟାମବନ୍ଧୁ ସଙ୍ଗ କାମନା ହେଲେ ହେଉ ଜାତି ପାଟକେ ମନା ।"

ପୁଣି ରାଧାଙ୍କୁ କୁଳରୁ ବାହାର କରିଦିଆଯାଇଛି । ତାଙ୍କୁ କଳଙ୍କିନୀ ଆଖ୍ୟା ଦିଆଯାଇଛି । ତାଙ୍କୁ ପାଗଳିନୀ କୁହାଯାଇଛି । ତଥାପି ସେ ସାମାଜିକ ନୀତିନିୟମକୁ ତୁଚ୍ଛ ମନେ କରିଛନ୍ତି । କବି ରାଧାଙ୍କ ମୁଖରେ ପୁଣି କୁହାଇଛନ୍ତି –

"ମୁଁ ତ କୁଳରୁ ହେଲି ବାହାର ଲୋ ସଜନୀ
ଶ୍ୟାମପ୍ରୀତି କରି ଗଳାହାରରେ
ଯେତେ କହନ୍ତୁ ନିନ୍ଦା କୁବଚନ,
ତହିଁକି ଶୋଚନା ନାହିଁ କଦାଚନ
ଗଣ୍ଡିଧର ମୋର କାଳିଆ କାଞ୍ଚନ
ମୁଁ ତ କିଣା କିଙ୍କରୀ ତାହାର ଲୋ ।"

ରାଧାଙ୍କୁ କେହି କେହି ପ୍ରେମପାଇଁ ପ୍ରଶଂସା କରିଛନ୍ତି । ତଥାପି ତାଙ୍କର ସେ ପ୍ରତି ଧ୍ୟାନ ନାହିଁ –

"କେ ବୋଲଇ ରାଧା ହେଲା କଳଙ୍କିନୀ
କେ ବୋଲଇ ରାଧା ହେଲା ପାଗଳିନୀ
କେ ବୋଲଇ ରାଧା ପ୍ରେମମୟୀ ଧନୀ
ଏ ନିନ୍ଦା ପ୍ରଶଂସା କାହାର ଲୋ ।"

ରାଧା କୁଳ ମାନ ସବୁ ହରାଇଛନ୍ତି । ତଥାପି ରାଧା କୃଷ୍ଣଙ୍କୁ ଛାଡ଼ିପାରି ନାହାନ୍ତି । ନିଜକୁ ସଜ୍ଜିତ କରି ଶ୍ରୀକୃଷ୍ଣଙ୍କୁ ଅପେକ୍ଷା କରି ରହିଛନ୍ତି । ମାତ୍ର ଆସିବାର ସଙ୍କେତ ଦେଇଥିଲେ ମଧ ଶ୍ରୀକୃଷ୍ଣ ଆସି ନାହାନ୍ତି । ଶ୍ରୀରାଧା ଦୂତୀଙ୍କ ଆଗରେ ତାଙ୍କର ଭାବାବେଗ ପ୍ରକାଶ କରିଛନ୍ତି –

"ଆଗୋ ଦୂତୀ ଆଜି ରାତି ଶ୍ୟାମ ପ୍ରୀତି
ନୋହିଲା ଗୋ
ଶେଯ ମୁଁ କରି ସୁପାତି ଜାଳିଲି କର୍ପୂର ବତି
ରାତିଯାକ ଉଜାଗରେ ଦେଖ ଆସି ପାହିଲା ରଜନୀ ଗୋ ।"

ଶ୍ରୀକୃଷ୍ଣଙ୍କୁ ତା' ପରଦିନ ଦେଖି ପଚାରିଛନ୍ତି –

"କାଲି କାହିଁକି ନଇଲ ଶ୍ୟାମ ନାଗର
ଯାହା ହୋଇଅଛି ଦେହ ମଦନେ ମୋର
ଆଉକେ ଯିବ ବିଶ୍ୱାସ ଲମ୍ପଟିଆ ପୀତବାସ
ତଣ୍ଡିକଟା ଆଚରଣ ଏକା ତୁମ୍ଭର ।
କୁଞ୍ଜକୁ ସଙ୍କେତ ଦେଇ ଭଣ୍ଡିଲ ମୋତେ କିପାଇଁ ।
ଦଗାଦାର ନଟବର ମୁରଲୀଧର ।"

ରାଧା ମାନିନୀ ସାଜିଛନ୍ତି । ଶ୍ରୀକୃଷ୍ଣଙ୍କୁ କଟୁକଥା କହି ଫେରାଇ ଦେଇଛନ୍ତି । ମାତ୍ର ନାୟକ ଚାଲିଯିବାପରେ ଅନୁତାପ କରିଛନ୍ତି । ସେହି ଅନୁତାପଭରା ନାୟିକାର ମନୋଭାବ କବିଙ୍କ ଭାଷାରେ ଫୁଟିଉଠିଛି –

"ସଖୀରେ ଆହା କି କର୍ମ କଲି,
ଦାରୁଣ ମାନ-ଯା ଅର୍ଜି ବସିଲି ।
ସେ ଶ୍ୟାମନାଗର ଆସି ମୋ ପାଶେ
କେତେ ବିନୟୀ ହେଲେ ନିଶି ଶେଷେ ।
ଅନାଦର କରି ଯା ନ ଚାହିଁଲି
ଶେଷେ ଆହା କର ଛିଞ୍ଚାଡ଼ିଦେଲି ।"

ରାଧା ତ ସୁଖୀ ନୁହନ୍ତି । ଶ୍ରୀକୃଷ୍ଣ ମଧ ଶାନ୍ତି ପାଇପାରି ନାହାନ୍ତି । ସଖୀମାନଙ୍କ ମଧ୍ୟସ୍ଥତାରେ ଆରମ୍ଭ ହୋଇଛି ମାନଭଞ୍ଜନ । ରାଧାଙ୍କ ମାନଭଞ୍ଜନପାଇଁ କୃଷ୍ଣ ବିନୟ ଭାବରେ କହିଉଠନ୍ତି –

"କାହିଁକି ମଥାପୋତି ବସିଛୁ କୁନ୍ଦଦନ୍ତୀ
ତୁ କରଜ କରଜ କରଜ
ଦୁଃଖୀ ଜନର ପାଇଁ ଶୁଖି ଯାଇଛି
ତୋର ବଦନ ସରୋଜ ସରୋଜ ସରୋଜ ।"

ରାଧାଙ୍କର ଅଭିମାନ ଭାଙ୍ଗିଛି । ଦୁହିଁଙ୍କର ହୋଇଛି ମଧୁର ମିଳନ । ସେହି ଅପ୍ରାକୃତ ଲୀଳା ରଚି ସେମାନେ ବୃନ୍ଦାବନକୁ ସଙ୍ଗୀତମୁଖର କରିଦେଇଛନ୍ତି । କବିଙ୍କ ଭାଷାରେ –

"ଦେଖ ଗୋ ରାଧାମାଧବ ରଙ୍ଗ
ମଧୁର ମିଳନ ଯୁଗଳ ଅଙ୍ଗ
ଆହା କି ନୟନ ଆନନ୍ଦକାରୀ
ଘନେ ସୌଦାମିନୀ ଲୀଳା ଲହରୀ

ରାଧା ମୁଖ ପଦ୍ମେ କୃଷ୍ଣ ଭ୍ରମର
ଇଚ୍ଛା ସୁଖେ ମଧୁ
× × ×
ସୁନା ପର୍ବତେ କି ଘର ବିହାର
ଉପମା ସୃଷ୍ଟି କରେ ଛାରଖାର ।''

ଶ୍ରୀକୃଷ୍ଣଙ୍କ ଗୋପରେ ଲୀଳା ସରିଛି । ଏହାପରେ ମଥୁରାକୁ ଯିବାକୁ କଂସଠାରୁ ଖବର ଆସିଛି । ସଖୀମାନେ ବିକଳ ହୋଇପଡ଼ିଛନ୍ତି । ସେମାନେ ପ୍ରିୟ କୃଷ୍ଣଙ୍କୁ ତେଣୁ ପଚାରିଛନ୍ତି –

''ମୁରୁଛି ଦେଇ କାହ୍ନୁ ଆମ୍ଭମାନଙ୍କୁ ମନୁ
ସତେ ଯିବ କି ମଧୁପୁରକୁ ହେ
କେ ଆଉ ଗୋବର୍ଦ୍ଧନ ତୋଳି ରଖିବ ପ୍ରାଣ
ବାଦେ ହଟାଇ, ସୁନାଶିରକୁ ହେ ।''

ନାୟିକା ଶ୍ରୀରାଧାଙ୍କ ଦୁଃଖ ବଳିପଡ଼ିଛି । ତାହା ସଖୀମାନେ ସହିପାରି ନାହାନ୍ତି । ଅଳ୍ପଦିନକୁ କଣ୍ଢେଇ ମଧୁପୁରକୁ ଯାଇ ଶ୍ରୀକୃଷ୍ଣ ଫେରି ନାହାନ୍ତି । ତେଣୁ ସଖୀମାନଙ୍କ ପକ୍ଷରୁ ବୃନ୍ଦା ମଥୁରାକୁ ଯାଇଛନ୍ତି ଓ ଶ୍ରୀକୃଷ୍ଣଙ୍କ ଆଗରେ କହିଛନ୍ତି –

''ମୋହନ କହିଲେ କି ହେବ ଆଉ
ଦିନକୁ ଦିନ ବଳି ପଡ଼ିଲାଣି
କିଶୋରୀ ବିରହ ଦାଉ ।
ଗଲେ ଯମୁନାକୁ ନୀର ଆଣିବାକୁ
ନୀର ଭରି ନେତ୍ର ଯୁଗେ
କଦମ୍ବ ମୂଳକୁ ବା ଚାହିଁ ପୁଣି ତାଙ୍କୁ
କି ପୁଚ୍ଛଇ ଅନୁରାଗେ ?
ବୃନ୍ଦାବନେ ବାଳୀ ଆଉ ଫୁଲ ତୋଳି
ଯାଉ ନାହୁଁ ତୁମ୍ଭ ବିନା
ଗଣ୍ଡେ କର ଦେଇ ଚିନ୍ତାର୍ଥିନୀ ହୋଇ
ସନ୍ଥୁଛୁ ନବ ନବୀନା
× × ×
ଉନ୍ମାଦ ରୋଗ ଘୋଟିଛି ତାହାକୁ
କେହି ନ ପାରନ୍ତି ଚିହ୍ନି
ବୋଲେ ବନମାଳୀ ତୁମ୍ଭେ ସିନା ତା'ର
ବୈଦ୍ୟରାଜ ଚୂଡ଼ାମଣି ।''

ସଖୀମାନେ ମଧ୍ୟ ବିରହ ଯନ୍ତ୍ରଣାରେ ଘାରିହୋଇ ଗାଇ ଉଠିଛନ୍ତି –

"କାହିଁ ଗଲେ ମୁରଲୀ ଫୁଙ୍କା
ଯୁବତୀ ରସିଆ କାମିନୀ ରଙ୍କା
ତ୍ରିଭଙ୍ଗୀ ଭଙ୍ଗୀରେ ମୁରଲୀ ବଜାଇ
ଡାକୁଥାନ୍ତି ଆସ ଆସ ରାଧିକା
ଗୋପପୁରେ ପୁଣି ଗୋପୀଙ୍କ ମନ୍ଦିରେ
ଦହି ଦୁଧ ଖାଇ ଛିଣ୍ଡାନ୍ତି ଶିକା
ଯମୁନା କୂଳରେ ବସ୍ତ୍ର ଚୋରି କରି
କେଳି କଦମ୍ବରେ ବାନ୍ଧେ ପତାକା ।"

## ଜଗନ୍ନାଥ ଭାବନା

କବି ବନମାଳୀ ଦୀକ୍ଷା ଗ୍ରହଣ ପରେ ରାଧାକୃଷ୍ଣଙ୍କ ଲୀଳା ସମ୍ବନ୍ଧରେ କବିତାମାନ ରଚନା କଲେ ମଧ୍ୟ ଜଗନ୍ନାଥଙ୍କୁ ମନରୁ ଦୂରେଇ ଦେଇପାରି ନାହାନ୍ତି । ଶ୍ରୀଚୈତନ୍ୟ ପୁରୀରେ ଅବସ୍ଥାନ କଲାବେଳେ ଶ୍ରୀକ୍ଷେତ୍ର ଓ ବୃନ୍ଦାବନକୁ ଅଭେଦ କଳ୍ପନା କରିଥିଲେ । ବନମାଳୀ ମଧ୍ୟ ଜଗନ୍ନାଥଙ୍କୁ ପ୍ରାଣପ୍ରିୟ କୃଷ୍ଣ ବୋଲି ଧରିନେଲେ । ଜଗନ୍ନାଥଙ୍କୁ ସ୍ତୁତି କଲାବେଳେ ସେ ଆତ୍ମବିଭୋର ହୋଇଉଠୁଥିଲେ । ଏହା ଗୌଡ଼ୀୟ ବୈଷ୍ଣବମାନଙ୍କର ମଧ୍ୟ ଅନୁକରଣୀୟ ହୋଇଥିଲା । ବନମାଳୀ କବିତାରେ ତାହା ପ୍ରକାଶ କରିଛନ୍ତି –

"ଜୟ ଜଗନ୍ନାଥ ହେ ଯଶୋଦା କୁମର
ଲବଣ ଜଳଧି ତଟ ନୀଳାଦ୍ରି ନାମ ପ୍ରକଟ
କଳ୍ପବଟ ମୂଳେ କି ଲାଗିବ ମୋର ଶିର
ଜୟ ହେ ଜଗନ୍ନାଥ
ଶ୍ରୀମତୀ ଚିତ୍ତ ଚାଳକ ନୂତନ ଜଳଧର
ଶିରେ ଶିଖିପୁଚ୍ଛ ଚୂଡ଼ା ଗୁଚ୍ଛ କିଆପତ୍ର ବେଢ଼ା
ସତୀଙ୍କ ବରତ ଛଡ଼ା, ମୁରଲୀ ନଟବର
× × ×
ଶେଷ ଯା ମହିମା ଲେଶ ନ କରିପାରନ୍ତି ଶେଷ
ଯା ନାମ ଜପି ମହେଶ, ମୃତ୍ୟୁକୁ କଲେ ଦୂର ।"

ଚୈତନ୍ୟଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ବନମାଳୀ ଶ୍ରୀକ୍ଷେତ୍ରରେ ମୃତ୍ୟୁବରଣ କରିବାର ଆଶା ପୋଷଣ କରିଥିଲେ । ସେ ତେଣୁ ଆକୁଳ କଣ୍ଠରେ ଗାଇଉଠିଛନ୍ତି –

''ଜଗନ୍ନାଥ ହେ କିଛି ମାଗୁ ନାହିଁ ତୋତେ
ଧନ ମାଗୁ ନାହିଁ ଜନ ମାଗୁ ନାହିଁ
ମାଗୁଛି ଶରଧା ବାଲିଗୁ ହାତେ
ଆନ ଦରଶନ, ନ ଲୋଡ଼େ ନୟନ, ଏକା ତୁମ୍ଭ ଦେଖା ବିନୁ
ଶୁଣିବାକୁ କାନ, ନ ଇଚ୍ଛଇ ଆନ, ତୁମ୍ଭ ଚରିତେ କାମନା
ନାସା ମୋର ତୃପ୍ତି, ନ ଲଗାଇ ଆନ ସୁବାସ ଦ୍ରବ୍ୟ ଆଘ୍ରାଣେ ।
ତବ ଛଡ଼ାମାଳ ତୁଳସୀ କୁସୁମ ଚନ୍ଦନ କର୍ପୂର ଧାନେ ।
ମୋ ହସ୍ତ ଅଙ୍ଗୁଳି ରାମ ବନମାଳୀ, ହରେକୃଷ୍ଣ ଜପୁଥାଉ ।''

ଅଥବା – ''ମଣିମା ହେ, ଏତିକି ମାଗୁଣି ମୋର
ମରଣ କାଳରେ ଦରଶନ ଦେବ
କଳାମୁଖ କଳାକର
ମଥାରେ ଥିବ ମୋ ତୁମ୍ଭ ଛଡ଼ାମାଳ
ମୁଖରେ ଥିବ ତୁଳସୀ
ମନେ ମନେ ଭାବି ରଟି ହେଉଥିବି
ନୀଳାଦ୍ରି ଶିଖରବାସୀ ।''

ବନମାଳୀଙ୍କ ଏହି କବିତାଗୁଡ଼ିକ ଅତି ଲୋକପ୍ରିୟ । ଯୋଗୀ ଭିକାରିମାନେ ଏହାକୁ ଗାଇ ଭିକ୍ଷା କରିଥାନ୍ତି । ଏହାର ଶ୍ରବଣମାତ୍ରେ ହୃଦୟ ଭକ୍ତିଉଚ୍ଛ୍ୱାସରେ ଗଦ୍‌ଗଦ ହୋଇପଡ଼େ ।

## ନିର୍ଗୁଣ ଭକ୍ତିଗୀତ

ବନମାଳୀ ପରମ ସାଧକ ଥିଲେ । ସେ ସନ୍ନ୍ୟାସ ଜୀବନ ଯାପନ କରୁଥିଲେ । ସେତେବେଳର ଜନସାଧାରଣଙ୍କ ରୀତି, ନୀତି, ଆଚାର-ବିଚାରରେ ସେ ବିଚଳିତ ହୋଇପଡ଼ିଥିଲେ । ତେଣୁ ସେ ସନ୍ଥ କବୀରଙ୍କ ପରି ପଦ୍ୟାବଳୀ ମାଧ୍ୟମରେ ଗଣ ଚେତନା ସୃଷ୍ଟି କରିବାପାଇଁ ଉଦ୍ୟମ କରିଥିଲେ । ତା'ର ଉଦାହରଣ –

''ମନ ଆନରେ, ନ ରସି ହୁଅ ସାବଧାନରେ ।
ବିଷୟାବିଷକୁ ଗଦ ଭକ୍ତିଜନ ପ୍ରମୋଦ
ନନ୍ଦ ନନ୍ଦନ ପଦ ଗାନରେ ।
ତ୍ୟଜ କୁସଙ୍ଗ ସଙ୍ଗ କୁମତି କ୍ଷଣଭଙ୍ଗ
ତ୍ୟଜ ଶରୀରୁ ଅହଂକାରରେ ।''

ସଂସାରରେ ମାୟା, ମୋହରୂପକ ଜଞ୍ଜାଳରେ ସମସ୍ତେ ଘାରି ହେଉଛନ୍ତି । ପୁତ୍ର ପରିବାର, ବନ୍ଧୁବାନ୍ଧବ ଚିନ୍ତାରେ ସମସ୍ତେ ବ୍ୟସ୍ତ । କିନ୍ତୁ ଏ ସବୁ କ୍ଷଣସ୍ଥାୟୀ । ଏସବୁ କେହି ସାଙ୍ଗରେ ଯିବେ ନାହିଁ । ତେଣୁ ବେଳ ଥାଉ ଥାଉ ଉପଯୁକ୍ତ ପନ୍ଥା ଖୋଜିବାକୁ ପଡ଼ିବ । ଈଶ୍ୱରଙ୍କୁ ଆଶ୍ରା କଲେ କେବଳ ଏହା ମିଳିପାରିବ । ତାହା କବି ପ୍ରକାଶ କରିଛନ୍ତି –

''ମନବାଇ, ଛାଡ଼ି ପାରୁକି ବିଷୟା ଗଞ୍ଜାଇ
ଦାରାପୁତ୍ର ପରିବାର ଯାବତ୍ ବନ୍ଧୁ ସୋଦର
ଧନ ରତ୍ନ ଅଳଙ୍କାର ବାଡ଼ି ବୃତ୍ତି ଯେ ତୋହର
ସବୁ ମିଛ କିଛି ନେବୁ ନାହିଁରେ
× × ×
ବେଳ ଥାଉଁ ଦେଖ ବାଟ ତୋ ଚାରି ଦଉଡ଼ି କାଟ
ଆଶ୍ରାଧର ଦିବ୍ୟଗତି ପାଇଁରେ ।''

ମଣିଷ ହୃଦୟର ଭଜନ ଲାଳସାକୁ ଉଦ୍ଦୀପିତ କରିବାପାଇଁ ବନମାଳୀ ବ୍ୟାକୁଳ ହୋଇପଡ଼ିଛନ୍ତି –

''ମନ ରାଧେ କୃଷ୍ଣ ଭଜରେ
ଶ୍ରୀଗୁରୁ ବୈଷ୍ଣବେ ଶୁଦ୍ଧ ଭକତି ଅରଜରେ
ଶିରେ ବୋଳି ହୁଅ ନିତ୍ୟେ ସାଧୁ ପଦ-ରଜ
ନ ଝୁଣ୍ଟିବୁ ମେଣ୍ଟିଯିବ ଅଙ୍ଗୁ ତୋ ଦରଜରେ ।''

ଅଥବା –

''ଆରେ ମୂଢ଼ମନ ! ସଦା ପାନ କର ନାମ ରସାୟନ
ଘୁଞ୍ଚିଯିବ ଭବବ୍ୟାଧି ହରିନାମ ମହା ମହୌଷଧି
ତ୍ରିତାପ ଯନ୍ତ୍ରଣା ହୋଇଯିବ ଊଣା କରୁଥିଲେ ନିତ୍ୟେ ତୁ ସେବନ ।''

**ଶେଷ ଜୀବନ**

କବି ଶ୍ରୀକ୍ଷେତ୍ରରେ ଅନ୍ତିମ ଜୀବନ ଯାପନ କରିବାକୁ ଚାହିଁଥିଲେ । ମାତ୍ର ତାହା ସମ୍ଭବ ହୋଇ ନ ଥିଲା । ବୈଷ୍ଣବମାନଙ୍କ ଜୀବନରେ ଥରେ ଅଧେ ଗୋପ, ମଥୁରା ପ୍ରଭୃତି ଦର୍ଶନ କରିବାର ଅଭିଳାଷ ଥାଏ । ସେ ଷାଠିଏ ଉତ୍ତର ବୟସରେ ତୀର୍ଥଯାତ୍ରାରେ ବାହାରିଲେ । ବୃନ୍ଦାବନ କ୍ଷେତ୍ରରେ ତାଙ୍କର ଦେହାବସାନ ହେଲା ।

ଓଡ଼ିଆ ରୀତି ଯୁଗର କବିମାନେ ସଙ୍ଗୀତପ୍ରେମୀ ଥିଲେ । ଉପେନ୍ଦ୍ର ଭଞ୍ଜଙ୍କଠାରୁ ଆରମ୍ଭ କରି ବନମାଳୀ ପର୍ଯ୍ୟନ୍ତ ସମସ୍ତଙ୍କର କବିତା ନାନାବିଧ ରାଗରାଗିଣୀକୁ ଅବଲମ୍ବନ କରି ରଚିତ ହୋଇଥିବାରୁ ସେଗୁଡ଼ିକ ଚିର ସୁନ୍ଦର ହୋଇପାରିଛି । ସାଲବେଗଙ୍କ ଗୀତଗୁଡ଼ିକ ଲୋକପ୍ରିୟ ହେଲେ ମଧ୍ୟ ରାଗରାଗିଣୀଯୁକ୍ତ ନୁହେଁ । କିନ୍ତୁ କବି ବନମାଳୀ ତାଙ୍କ ସୃଷ୍ଟି ସାମ୍ରାଜ୍ୟରେ ସଙ୍ଗୀତକୁ ବିଶିଷ୍ଟ ସ୍ଥାନ ଦେଇଛନ୍ତି । ତାଙ୍କ ବ୍ୟବହୃତ ରାଗରାଗିଣୀ ମଧ୍ୟରୁ କାମୋଦୀ, ବସନ୍ତ କେଦାର, ଭୈରବ, ବଙ୍ଗଳାଶ୍ରୀ, ଚକ୍ରକେଳି, ଆଷାଢ଼ଶୁକ୍ଳ ପ୍ରଭୃତି ପ୍ରଧାନ । ତାଙ୍କ କବିତାଗୁଡ଼ିକର ଭାଷା ମଧ୍ୟ ଅତି ସରଳ । ସୁବୋଧ୍ୟ, ମାର୍ଜିତ ଓ ଭାବଗର୍ଭକ । ସେଗୁଡ଼ିକ ଆକାରରେ କ୍ଷୁଦ୍ର ଯୋଗୁଁ ମନେ ରଖିବାକୁ ସୁବିଧା ହୁଏ । ତାଙ୍କ ରଚିତ କବିତା ତେଣୁ ଓଡ଼ିଶୀ ନୃତ୍ୟଶିଳ୍ପୀ, ଗୋଟିପୁଅ, ପାଲା ଓ ସଙ୍ଗୀତଶିଳ୍ପୀଙ୍କଦ୍ୱାରା ଅତି ଆଦରଣୀୟ ହୋଇପାରିଛି ।

# ସମରକବି
# ବ୍ରଜନାଥ ବଡ଼ଜେନା

କବି ବ୍ରଜନାଥ ହେଉଛନ୍ତି ଅସାଧାରଣ ପ୍ରତିଭାଶାଳୀ କଳାକାର । କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ ଓ କବି ଦୀନକୃଷ୍ଣଙ୍କର ସେ ଥିଲେ ଅଳ୍ପ ପରବର୍ତ୍ତୀ । ସାହିତ୍ୟିକ ଜୀବନର ପ୍ରାରମ୍ଭରେ ସେ ରୀତିଯୁଗୀୟ କାବ୍ୟଧାରାଦ୍ୱାରା ଯେ ପ୍ରଭାବିତ ହୋଇଥିଲେ, ଏହା ଅତି ସ୍ପଷ୍ଟ । କିନ୍ତୁ ପରବର୍ତ୍ତୀ କାଳରେ ସେ ନିଜକୁ ଭଞ୍ଜଙ୍କ ପ୍ରଭାବରୁ ମୁକ୍ତ କରି ନୂତନ ସାହିତ୍ୟସୌଧ ନିର୍ମାଣ କରିଛନ୍ତି । ସେ ପ୍ରଥମେ ଓଡ଼ିଆରେ ଗଦ୍ୟଲେଖକ ହେବାର ଗୌରବର ଅଧିକାରୀ । ରୀତିଯୁଗର କ୍ଲିଷ୍ଟ ଭାଷା ମଧ୍ୟରୁ ଓଡ଼ିଆ ସାହିତ୍ୟକୁ ମୁକ୍ତ କରି ସାରଳା, ବଳରାମ, ଜଗନ୍ନାଥ ବା ଅଚ୍ୟୁତଙ୍କ ଭଳି ଓଡ଼ିଆର ଘରେ ଘରେ ଚଳୁଥିବା ଭାଷାକୁ ସାହିତ୍ୟିକ ମର୍ଯ୍ୟାଦା ଦେଇଛନ୍ତି । ସେ ହେଲେ ପ୍ରଥମ ସମର ସଙ୍ଗୀତକାର । ପୁଣି ଓଡ଼ିଆ ବ୍ୟଙ୍ଗ ସାହିତ୍ୟର ଆଦି ସ୍ରଷ୍ଟା । ସେ ମଧ୍ୟ ନାନା ପ୍ରକାର ଶିଳ୍ପ ତଥା ଚିତ୍ରବିଦ୍ୟାରେ ନୈପୁଣ୍ୟ ଲାଭ କରିଥିଲେ । ପୁରାତନ ଯୁଗର ସାହିତ୍ୟ ପରିଧି ମଧ୍ୟରେ ସେ ଥିଲେ ନୂତନ ସାଧକ । ତେଣୁ ତାଙ୍କୁ ପୁରାତନ ଓ ନୂତନର ଏକ ଅପୂର୍ବ ସଙ୍ଗମ ତୀର୍ଥ ବୋଲି କୁହାଯାଇପାରେ ।

## ଜୀବନଚରିତ

ବ୍ରଜନାଥ ଏକ ସଂସ୍କୃତିସମ୍ପନ୍ନ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷ ଥିଲେ ପ୍ରଖ୍ୟାତ ରଘୁ ଅରକ୍ଷିତ । ସେ ଗଜପତି ପ୍ରତାପରୁଦ୍ରଦେବଙ୍କ ରାଜସଭା ମଣ୍ଡନ କରିଥିବାର ଜଣାଯାଏ । ଏହିଭଳି ମହିମାବନ୍ତ ପୁରୁଷଙ୍କ ବଂଶଧର ହୋଇଥିବାରୁ ସେ ନିଜକୁ ଗୌରବାନ୍ୱିତ ମନେ କରିଛନ୍ତି । ସ୍ୱରଚିତ 'କେଳି କଳାନିଧି'ରେ ସେ ଏହା ଉଲ୍ଲେଖ କରିଛନ୍ତି, ଯଥା –

''ବର୍ଣ୍ଣରେ ଅଟୁ ଆମ୍ଭେ ଶିଷ୍ଟ କରଣ ।
ରଘୁ ଅରକ୍ଷିତ ବଂଶେ ନିପୁଣ ଯେ ।''

ଉକ୍ତ କାବ୍ୟରୁ ମଧ୍ୟ ଜଣାଯାଏ ଯେ ବ୍ରଜନାଥଙ୍କ ପୂର୍ବପୁରୁଷମାନେ ପ୍ରଥମେ ପୁରୀରେ ବାସ କରୁଥିଲେ । ପରେ ଖୋର୍ଦ୍ଧା (ଓଡ଼ିଶା)ରେ ଓ ତା'ପରେ ଢେଙ୍କାନାଳଠାରେ ବାସ କଲେ । ଏହା କବିଙ୍କ ବର୍ଣ୍ଣନାରୁ ଜଣାଯାଏ –

''ଶ୍ରୀକ୍ଷେତ୍ରରେ ପୂର୍ବେ ନିବାସ ଥିଲା
ବିଧି ବଶରେ ସେହୁ ଅନ୍ତର କଲେ ଯେ,
ତହୁଁ କେତେକାଳ ଗଲା ଓଡ଼ିଶାରେ
ଷଷ୍ଠ ପୁରୁଷ ହେଲା ଢେଙ୍କାନାଳରେ ଯେ ।''

ବ୍ରଜନାଥ ରଘୁ ଅରକ୍ଷିତଙ୍କ ପିତା କୃଷ୍ଣ ମହାପାତ୍ରଙ୍କଠାରୁ ନିଜର ବଂଶ ପରିଚୟ ଦେଇଛନ୍ତି । ରଘୁ ଅରକ୍ଷିତଙ୍କ ପୁତ୍ର ଥିଲେ ଶିବ ଅରକ୍ଷିତ । ତାଙ୍କର ପୁତ୍ର ଥିଲେ ଯଥାକ୍ରମେ ବିଶ୍ୱ ଅରକ୍ଷିତ ଓ ତ୍ରିବିକ୍ରମ ଅରକ୍ଷିତ । ତ୍ରିବିକ୍ରମଙ୍କ ପୁତ୍ର ଥିଲେ ବାଲୁଙ୍କେଶ୍ୱର ଅରକ୍ଷିତ । ତତ୍କାଳୀନ ଢେଙ୍କାନାଳ ରାଜାଙ୍କଠାରୁ ସେ ପଟ୍ଟନାୟକ ପଦବୀ ପାଇଥିଲେ । ଏହା 'ଗୋପୀବିଳାସ' କାବ୍ୟରେ ଉଲ୍ଲେଖ ଅଛି –

''ମୋର ଘର ଢେଙ୍କାନାଳ ନଗରେ
ମୁକ୍ତା ଦେବୀଙ୍କ ଶାସନ ଆଗର
ପିତାଙ୍କ ନାମ ବାଲୁଙ୍କେଶ୍ୱର
ପଟ୍ଟନାୟକ କଲେ ନରେଶ୍ୱର ।''

ବାଲୁଙ୍କେଶ୍ୱରଙ୍କ ପିତା ତ୍ରିବ୍ରିକମ ଅରକ୍ଷିତ ଖୋର୍ଦ୍ଧା (ସେତେବେଳେ କୁହାଯାଉଥିଲା, ଓଡ଼ିଶା)ରେ ଜନ୍ମଗ୍ରହଣ କରିଥିଲେ । ସେ ତତ୍କାଳୀନ ଢେଙ୍କାନାଳ ରାଜାଙ୍କ ନିମନ୍ତ୍ରଣ ପାଇ ଢେଙ୍କାନାଳକୁ ଆସି ରାଜସଭା ମଣ୍ଡନ କଲେ । ତ୍ରିବିକ୍ରମଙ୍କ ପରେ ବାଲୁଙ୍କେଶ୍ୱର ମଧ୍ୟ ଏହି ସମ୍ମାନର ଅଧିକାରୀ ହେଲେ । ତାଙ୍କର ଗୋପୀନାଥ, ଜଗନ୍ନାଥ, ବ୍ରଜନାଥ ଓ ଲୋକନାଥ ନାମରେ ଚାରି ପୁତ୍ର ଥିଲେ । ଗୋପୀନାଥ ମଧ୍ୟ ଉଚ୍ଚ ପଦରେ ନିଯୁକ୍ତ ହୋଇଥିଲେ । ଜଗନ୍ନାଥ ଜଣେ କବି ଥିଲେ । ସେ ରାଜାଙ୍କଠାରୁ କବିଭୂଷଣ ଉପାଧି ପାଇଥିଲେ । ଚତୁର୍ଥ ପୁତ୍ର ଲୋକନାଥ ମଧ୍ୟ ଜଣେ କବି ଥିଲେ । ପୁତ୍ରମାନଙ୍କ ମଧ୍ୟରେ କିନ୍ତୁ ବ୍ରଜନାଥ ଥିଲେ ଅସାଧାରଣ ପ୍ରତିଭାଶାଳୀ ।

ବ୍ରଜନାଥ ୧୭୩୦ ମସିହାରେ ଢେଙ୍କାନାଳ ସହରରେ ଜନ୍ମଗ୍ରହଣ କରିଥିଲେ । ସେ କିନ୍ତୁ ମହିମା ଗାଦି ଅନ୍ତର୍ଗତ କାବେରା ଗ୍ରାମରେ ବାସ କରୁଥିଲେ । ବାଲ୍ୟକାଳରେ ସେ ସଂସ୍କୃତ କାବ୍ୟ, କବିତା, ନାଟକ, ବ୍ୟାକରଣ, କୋଷ ଗ୍ରନ୍ଥ ଓ ଭଞ୍ଜ ସାହିତ୍ୟ ପ୍ରଭୃତି ଅଧ୍ୟୟନ କରିଥିଲେ । ସେ ଓଡ଼ିଆ ବ୍ୟତୀତ ସଂସ୍କୃତ, ହିନ୍ଦୀ, ବଙ୍ଗଳା, ମରାଠୀ, ତେଲୁଗୁ ପ୍ରଭୃତି ଭାଷାରେ ଦକ୍ଷତା ଅର୍ଜନ କରିଥିଲେ । କାବ୍ୟ ରଚନା ବ୍ୟତୀତ ସେ ତୂଳୀରେ ପଟ୍ଟଚିତ୍ର, ଲେଖନୀରେ ତାଳପତ୍ର ଓ କଲମରେ କାଗଜ ଉପରେ ଚିତ୍ର ଅଙ୍କନ କରିବାରେ ଦକ୍ଷ ଥିଲେ (ତାଙ୍କ ଦ୍ୱାରା ପ୍ରସ୍ତୁତ ଏକ ଚିତ୍ର ସମ୍ବଳିତ ଭାଗବତ ପୋଥି ଆନ୍ଧ୍ରପ୍ରଦେଶର ଶ୍ରୀକାକୁଲମ ଜିଲ୍ଲାର

ଭିଲିଙ୍ଗୀ ଗ୍ରାମରୁ ମିଳିଅଛି) । ସେ ମଧ୍ୟ ଅଭ୍ର, ବାଉଁଶପତ୍ର, ବଉଳକୋଳି ଓ ପଦ୍ମର କୋମଳପତ୍ର ଉପରେ ସୁନ୍ଦର ସୁନ୍ଦର ଚିତ୍ର ଅଙ୍କନ କରିପାରୁଥିଲେ । କବି ଏହା 'ସମରତରଙ୍ଗ' କାବ୍ୟର ସପ୍ତମ ଛାନ୍ଦରେ ଉଲ୍ଲେଖ କରିଛନ୍ତି –

''ତିନି କଲମେ ପୁଣ କରିଛି ଶ୍ରମ
ତାଳପତ୍ର କାଗଜେ ଅକ୍ଷର କମ ଯେ ।
ରୂପ ଚିତ୍ରରେ ନାନା ପଟ ପୁସ୍ତକ
ଲେଖା ଦେଖି ଆନନ୍ଦ ହୁଅନ୍ତି ଲୋକ ଯେ ।''

କବି ମଧ୍ୟ ପଥରରେ ମୂର୍ତ୍ତି ନିର୍ମାଣ କରୁଥିଲେ । ସେ ଖଣ୍ଡିଏ ପଥରରେ ସୁନ୍ଦର ହନୁମାନ ମୂର୍ତ୍ତି ନିର୍ମାଣ କରି କାବେରା ଗ୍ରାମସ୍ଥ ବାସଭବନରେ ନିତ୍ୟ ପୂଜା କରୁଥିଲେ । ଦେବବିଗ୍ରହକୁ ରଖା ଯାଉଥିବା କାଠର ବିମାନ ନିର୍ମାଣରେ ତାଙ୍କର ପଟୁତା ଥିଲା । ଢେଙ୍କାନାଳ ରାଜା ତ୍ରିଲୋଚନଙ୍କୁ ସେ କାଠ ତିଆରି ବିମାନଟିଏ ଭେଟି ଦେଇଥିବାର ଜଣାଯାଏ ।

ବ୍ରଜନାଥ ସରଳ, ଧାର୍ମିକ ଓ ଅତିଥିପରାୟଣ ଥିଲେ । ଦୁଃଖୀ ରଙ୍କୀ କେହି ତାଙ୍କ ଗୃହରୁ ଖାଲି ହାତରେ ଫେରୁ ନ ଥିଲେ । ତାଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ସେ ନାନାବିଧ କାବ୍ୟ, କବିତା ଓ ଚିତ୍ର ରଚନା କରି ରାଜା ଓ ଜମିଦାରଙ୍କୁ ଭେଟି ଦେଉଥିଲେ । ସେ ମଧ୍ୟ ସ୍ୱରଚିତ ରଚନାକୁ ରାଜାଙ୍କୁ ପଢ଼ି ଶୁଣାଉଥିଲେ । ଯାହା ପାରିତୋଷିକ ପାଉଥିଲେ, ସେଥିରେ ନିଜର ପରିବାର ପ୍ରତିପୋଷଣ କରୁଥିଲେ । ତାହା ମଧ୍ୟ ଯଥେଷ୍ଟ ନ ଥିଲା । ତେଣୁ ଜୀବନସାରା ତାଙ୍କୁ ଦାରିଦ୍ର୍ୟର କଶାଘାତ ସହିବାକୁ ପଡ଼ିଥିଲା ।

କବି ଅର୍ଥ ଉପାର୍ଜ୍ଜନପାଇଁ ବହୁ ସ୍ଥାନକୁ ଯାଉଥିଲେ । ସେଥିପାଇଁ ସୁଦୂର କଲିକତାକୁ ଯାଇଥିବା ବିଷୟ ସେ ନିଜ ରଚନାରେ ଉଲ୍ଲେଖ କରିଛନ୍ତି । ବର୍ତ୍ତମାନର ଆନ୍ଧ୍ରପ୍ରଦେଶକୁ ମଧ୍ୟ ଯାଇଥିବା କଥା ଅନୁମାନ କରାଯାଏ । ସେ ନିଜର କବିତ୍ୱର ପରୀକ୍ଷାପାଇଁ ବିଭିନ୍ନ ରାଜସଭାକୁ ଯାଉଥିଲେ । ସେ ଯୁଗର ରାଜାମାନେ ବିଳାସୀ ଓ ଇନ୍ଦ୍ରିୟପରାୟଣ ଥିଲେ । ସେମାନେ ମଧ୍ୟ ଖିଆଲୀ ଥିଲେ । କେତେକ ରାଜା ତାଙ୍କୁ ଉତ୍ତମ ଭାବରେ ଚର୍ଚ୍ଚା କରୁ ନ ଥିଲେ । କେହି କେହି ତାଙ୍କୁ ଯଥୋଚିତ ଆଦର ଦେଖାଉ ନ ଥିଲେ । କବି ତାହା କାବ୍ୟରେ ଉଲ୍ଲେଖ କରିଛନ୍ତି –

''ବୁଝିପାରନ୍ତି ଯେ ସେ ଅମଳ ବଶ
କେ ଅବା ଦାତା ହେଲେ ତାଙ୍କର କ୍ଳେଶ ଯେ,

× × ×

ଅମଳ ବଶ କେହୁ ନାରୀରେ ବଶ
ଆହାରେ ବଶ କେହୁ ନିଦ୍ରା ଆବେଶ ଯେ ।''

## କେନ୍ଦୁଝର ରାଜାଙ୍କ ଦାନ

ଥରେ କବି କେନ୍ଦୁଝର ରାଜଦରବାରକୁ ଯାଇଥିଲେ । ସେଠାରେ ରାଜା ବଳଭଦ୍ର ଭଞ୍ଜ ରାଜାଙ୍କୁ ସମ୍ମାନ ପ୍ରଦର୍ଶନ କରି ନ ଥିଲେ । ବ୍ରଜନାଥ ନିଜର ରଚିତ କାବ୍ୟ 'ଅମ୍ବିକା ବିଳାସ'କୁ ରାଜାଙ୍କ ନାମରେ ଭଣିତା କରିଥିଲେ । ତଥାପି ରାଜା କବିଙ୍କୁ ଆଶାନୁରୂପକ ପାରିତୋଷିକ ନ ଦେବାରୁ ବ୍ରଜନାଥ କ୍ଷୁଣ୍ଣ ହେଲେ । ଦେବାଳୟ ଯିବା ବାଟରେ ସେ ରାଜାଙ୍କୁ ଭେଟି ବିଦ୍ରୂପାତ୍ମକ ଗୀତ ଗାଇଲେ –

''କେନ୍ଦୁଟା ଯାକର ଝରି
ସେଥିରେ ପିଇଲେ ବାରି
ତୃଷା କି ହୁଅଇ ହରି ।''

କହିବା ବାହୁଲ୍ୟ ଯେ ରାଜା ପ୍ରୀତ ହୋଇ କବିଙ୍କୁ ବହୁ ଧନରତ୍ନ ଦେଇ ବିଦା କରିଥିଲେ ।

## ଢେଙ୍କାନାଳ ରାଜାଙ୍କ ଗ୍ରାମଦାନ

ଢେଙ୍କାନାଳର ତତ୍କାଳୀନ ରାଜା ଥିଲେ ତ୍ରିଲୋଚନ ମହୀନ୍ଦ୍ର ବାହାଦୁର । ସେ ହିନ୍ଦୋଳଗଡ଼ଠାରେ ଅବସ୍ଥାନ କରୁଥିବା ସମୟରେ କବି ସ୍ୱରଚିତ କାବ୍ୟ 'ସମରତରଙ୍ଗ'କୁ ନେଇ ଭେଟିଥିଲେ । କାବ୍ୟରେ ଏହାର ଉଲ୍ଲେଖ ଅଛି, ଯଥା –

''ଏ କାଳେ ହଜୁରେ ଭେଟିଲି ମୁହିଁ
ଏ ସମରତରଙ୍ଗ ଗୀତକୁ ଦେଇ ।''

ସେ ମଧ୍ୟ କାବ୍ୟଟି ରାଜାଙ୍କୁ ପଢ଼ି ଶୁଣାଇଥିବା ଜଣାଯାଏ –

''ଆଜ୍ଞା ପ୍ରମାଣେ ପୁଣି ପଢ଼ିଲି ଗୀତ
ଜଣାଇଲି ପୁଣି ମୋ ଦୁଃଖ ସମସ୍ତ ।

× × ×

ଲକ୍ଷ ଲକ୍ଷ ଲୋକଙ୍କୁ ବାଟି ପଡ଼ି
ବରଜନାଥ ବଡ଼ଜେନାଙ୍କୁ ଛାଡ଼ି ଯେ ।''

ତାଙ୍କ ପ୍ରତି ଦୟା ଦେଖାଇବାକୁ ସେ ରାଜାଙ୍କୁ ନିବେଦନ କରିଥିଲେ –

''ହେ ମହାରାଜା ଦିବ୍ୟ ଚିତ୍ତରେ ହେଉ,
ମୋଠାରେ ଦୟା କରି କୀରତି ରହୁ ଯେ ।''

ରାଜା ମଧ୍ୟ ତାଙ୍କ ଉପରେ ପ୍ରୀତ ହୋଇ ବ୍ରାହ୍ମଣୀ ନଦୀ କୂଳରେ ଥିବା ନୂଆଗାଁ ନାମକ ଏକ ଗ୍ରାମ ପାନ ପିକରେ ଦେଇଥିଲେ । ମାତ୍ର ତହିଁରେ ଲାଭ ତ ଦୂରର କଥା, କବିଙ୍କୁ କ୍ଷତି ସହିବାକୁ ପଡ଼ିଲା । ଏପରିକି ଚାରି ଭରଣ ଧାନ ଋଣ କରିବାକୁ ପଡ଼ିଥିଲା । ସେତେବେଳକୁ କବିଙ୍କୁ ଷାଠିଏ ବର୍ଷ ମଧ୍ୟ ହୋଇଯାଇଥିଲା । ସେ ସୁବିଚାରପାଇଁ ରାଜାଙ୍କ ପାଖରେ ପୁଣି ନିବେଦନ କଲେ –

''ଷାଠିଏ ବରଷ କାଳରେ ମୋର ଉଠିବାକୁ ନାହିଁ ବଳ ।
ପିଠି ଅଣ୍ଟା ବେକ ଲାଗିଗଲାଣି ମୋ ପୋଥି ଲେଖାରୁ କେବଳ ।
ନୂଆଗାଁ ମୋତେ ଦିଆଯାଇଛି ଯେ ଯୁଗ ଯୁଗାନ୍ତ ପଡ଼ିଆ
ବାପ ପୁଅ ତହିଁ ସାକ୍ଷାତେ ଜନ୍ମ ଏ ପ୍ରଭୁ ଜାଣୁଛନ୍ତି ଏହା ।''

ରାଜା ତାଙ୍କ ଉପରେ ସନ୍ତୁଷ୍ଟ ହୋଇ ହଳ ବଳଦ, ବିହନ ଧାନ ଓ ବର୍ତ୍ତନ ପ୍ରଭୃତି ଯୋଗାଇଦେବାର ବ୍ୟବସ୍ଥା କରିଥିଲେ । ଏଥିରେ କବି କିଞ୍ଚିତ୍ ଆଶ୍ୱସ୍ତ ହୋଇଥିବାର ଜଣାଯାଏ –

''ଯାହାଠାରେ ଯେତେବେଳେ କୃପା ହୋଏ ସେ ଜନ ହୋଏ ନିଶ୍ଚିନ୍ତ,
ଆମ୍ଭମାନଙ୍କର ଦଇବ ପୁରୁଷ ଅଟନ୍ତି ଯେ ନରନାଥ ।''

ଆର୍ଥିକ ସାହାଯ୍ୟ ହେଲେ ବିବିଧ ଚିତ୍ର ଆଙ୍କିବେ ଓ ରାଜାଙ୍କ ନାମରେ ଛାନ୍ଦ ମଧ୍ୟ ରଚନା କରିବେ ବୋଲି ସେ ପ୍ରସ୍ତାବ ଦେଇଥିଲେ । ରାଜା କିନ୍ତୁ ତାଙ୍କୁ ମାତ୍ର ଏକ ଶହ ଟଙ୍କା ଦେଇ ବିଦା କରିଦେଲେ ।

କବି ମଧ୍ୟ ନିର୍ଭୀକ ଓ ସ୍ପଷ୍ଟବାଦୀ ଥିଲେ । ସେ ରାଜାମାନଙ୍କଠାରୁ ପାରିତୋଷିକ ଗ୍ରହଣ କରି ପରିବାର ଚଳାଉଥିଲେ ମଧ୍ୟ ତୋଷାମଦ କରି ଅର୍ଥ ଉପାର୍ଜନ କରିବାକୁ ପସନ୍ଦ କରୁ ନ ଥିଲେ । ମରହଟ୍ଟାମାନଙ୍କ ସହ ଢେଙ୍କାନାଳ ରାଜାଙ୍କ ଲଢ଼େଇକୁ କେନ୍ଦ୍ର କରି ବ୍ରଜନାଥ 'ସମରତରଙ୍ଗ' ରଚନା କରିଥିଲେ । ସେଥିରେ ମରହଟ୍ଟାମାନେ ପରାଜୟ ଲାଭ କରିଥିଲେ । ବ୍ରଜନାଥ 'ସମରତରଙ୍ଗ'କୁ ନେଇ ମରହଟ୍ଟା ସୁବେଦାର ଚେମେଣବାବୁଙ୍କ ପାଖକୁ ଯାଇଥିଲେ ଓ କାବ୍ୟର କେତେକ ଅଂଶ ତାଙ୍କୁ ପଢ଼ି ଶୁଣାଇଥିଲେ । ଚେମେଣବାବୁ କାବ୍ୟର ପ୍ରଥମ ଅଂଶ ଶୁଣି ମୁଗ୍ଧ ହୋଇପଡ଼ିଲେ । କବିଙ୍କୁ ବହୁ ପ୍ରଶଂସା ମଧ୍ୟ କଲେ । ମାତ୍ର କାବ୍ୟର ମଧ୍ୟଭାଗ ଶୁଣି କ୍ରୋଧରେ ଜର୍ଜରିତ ହୋଇଉଠିଲେ । ଏଥିରେ ମରହଟ୍ଟାମାନଙ୍କ ପରାଜୟ ବିଷୟ ବିଶଦ ଭାବରେ ବର୍ଣ୍ଣିତ ଥିଲା । ଚେମେଣବାବୁ କାବ୍ୟଟି ଛଡ଼ାଇ ଫିଙ୍ଗିଦେଲେ । ମାତ୍ର ତାଙ୍କ କାବ୍ୟଟି ସମ୍ପୂର୍ଣ୍ଣ ସତ୍ୟ ଉପରେ ପ୍ରତିଷ୍ଠିତ ବୋଲି ସେ ନିର୍ଭୀକଭାବେ ଉତ୍ତର ଦେଇଥିଲେ ।

## ନିର୍ବାସନ ଦଣ୍ଡ

'ଚତୁର ବିନୋଦ' ତାଙ୍କର ଏକ ବ୍ୟଙ୍ଗାତ୍ମକ ଗଦ୍ୟ ରଚନା । ଏହାର ରଚନା ପରେ ବାର୍ଦ୍ଧକ୍ୟ ଅବସ୍ଥାରେ ସେ ଗଦ୍ୟ ରଚନା ଛାଡ଼ି ପୁଣି ପଦ୍ୟର ଆଶ୍ରୟ ନେଲେ । ସମ୍ଭବତଃ, ଢେଙ୍କାନାଳ ରାଜାଙ୍କ ସହିତ ଏଥିପାଇଁ ତାଙ୍କର ମନୋମାଳିନ୍ୟ ଘଟିଥିଲା । ସମ୍ଭବତଃ, ରାଜ-ଦରବାରର ସଭାସଦ୍, ପୁରୋହିତ, ପଣ୍ଡିତ, ବ୍ରାହ୍ମଣ ଓ ଭିତିରିଆ ପ୍ରଭୃତି ତାଙ୍କ ପ୍ରତି ଈର୍ଷାପରାୟଣ ହୋଇପଡ଼ିଥିଲେ । ସେ ରାଜା ତ୍ରିଲୋଚନଙ୍କଠାରୁ ପୁରୁଷାନୁକ୍ରମେ ଦାନ ପାଇ କୃତଘ୍ନତା ଆଚରଣ କରିଛନ୍ତି ବୋଲି ଅଭିଯୋଗ କରିଥିଲେ । 'ଚତୁର ବିନୋଦ'ର ଗଣ୍ଡମୂର୍ଖ ରାଜାଙ୍କ ବିଷୟ ରାଜା ତ୍ରିଲୋଚନଙ୍କୁ ଲକ୍ଷ୍ୟ କରି ଲେଖାହୋଇଛି ବୋଲି କହିଥିଲେ । ରାଜାମାନେ ମଧ ସେକାଳରେ ଖଚୁଆ, ପେଞ୍ଚୁଆ, ଭିତିରିଆ ପ୍ରଭୃତିଙ୍କ ଚୁଗୁଲି ଶୁଣୁଥିଲେ । ସେମାନଙ୍କଦ୍ୱାରା ପ୍ରଭାବିତ ହେଉଥିଲେ । ଫଳରେ ରାଜା ତ୍ରିଲୋଚନ ରାଗରେ କ୍ଷୁବ୍‌ଧ ହୋଇପଡ଼ିଲେ । ବ୍ରଜନାଥଙ୍କୁ ନିମକହାରାମ କହି ନୂଆଗାଁ ଦାନକୁ ପ୍ରତ୍ୟାହାର କରିନେଲେ ଓ ତାଙ୍କୁ ନିର୍ବାସନ ଦଣ୍ଡ ଦେଲେ । ବ୍ରଜନାଥଙ୍କର ସେଥିପାଇଁ ଗଦ୍ୟ ରଚନା ପ୍ରତି ଭୟଙ୍କର ବିରାଗ ଓ ଅଭିମାନ ଜାତ ହୋଇଥିବା ଅନୁମାନ କରାଯାଏ । ସେ ନିର୍ବାସିତ ହେଲା ପରେ 'ଖେଦୋକ୍ତି' ନାମକ ପଦ୍ୟ ପୁସ୍ତକ ଲେଖିଲେ । ସେଥିରେ ତାଙ୍କର ଦୁଃଖ ଜଣାଇଛନ୍ତି –

''ସାତ ବରଷ ହେଲା ସାତ ପଣ ଶ୍ରୀଛାମୁରୁ ନ ପାଇଲି
ନିମକହାରାମ ହୋଇ କୋଉ କାମ କୋଠର ବାହାନି କଲି ।''

ଏଥିରୁ ସ୍ପଷ୍ଟ ପ୍ରମାଣିତ ହୁଏ ଯେ ରାଜା ତ୍ରିଲୋଚନ କବିଙ୍କୁ ନିମକହାରାମ କହି ରାଜ୍ୟରୁ ତଡ଼ି ଦେଇଥିଲେ ।

ବ୍ରଜନାଥ ଢେଙ୍କାନାଳ ପରିତ୍ୟାଗ କରି ପୁରୀଧାମକୁ ଆସିଥିଲେ । ଶେଷ ଜୀବନ ସେଠାରେ କଟାଇବା ତାଙ୍କର ଲକ୍ଷ୍ୟ ଥିଲା । ପୁରୀର ତତ୍କାଳୀନ ଠାକୁରରାଜା ଦିବ୍ୟସିଂହଦେବଙ୍କୁ ସେ ସାକ୍ଷାତ୍ କରିଥିଲେ । ସେ ବଡ଼ ବଡ଼ ପଣ୍ଡିତମାନଙ୍କ ଗହଣରେ ରହି ସାହିତ୍ୟ ଆଲୋଚନାରେ ଭାଗ ନେଉଥିଲେ । ଗୁଣ୍ଡିଚା ଯାତ୍ରାରେ ରାଜା ହାତୀ ଉପରେ ବିଜେ କରିଥିବାବେଳେ କବି ସ୍ୱରଚିତ ହିନ୍ଦୀ ଭାଷାରେ ରଚିତ 'ଗୁଣ୍ଡିଚାବିଜେ'କୁ ଭେଟି ଦେଇଥିଲେ । ଏ କାବ୍ୟରେ ସେ ଦିବ୍ୟସିଂହଦେବଙ୍କୁ 'ଭୂପଗଣ ମଥାମଣି' ନାମରେ ଅଭିହିତ କରିଛନ୍ତି ।

## ବଡ଼ଜେନା ଉପାଧି ଲାଭ

ଆଁଉଥରେ କବି ମହାରାଜା ଦିବ୍ୟସିଂହଦେବଙ୍କୁ ସାକ୍ଷାତ୍ କରିବାକୁ ଯାଇଥିଲେ । ପଣ୍ଡିତମାନଙ୍କ ସହିତ ସେ ଆଲୋଚନା କରୁଥିଲେ । ଏହି ସମୟରେ ଜଣେ ଚିତ୍ରଶିଳ୍ପୀ ସୂକ୍ଷ୍ମ ଅକ୍ଷରରେ ଲେଖାଥିବା ପୋଥି ରାଜାଙ୍କୁ ଭେଟିଦେଲେ । ରାଜା ସେହି ପଣ୍ଡିତଙ୍କୁ ବହୁ ଆଦର ଅଭ୍ୟର୍ଥନା କଲେ ଓ ଯଥୋଚିତ ପୁରସ୍କାର ମଧ ଦେଲେ । କବି ବ୍ରଜନାଥ ସେହି ତାଳପତ୍ରରେ ଲେଖା ହୋଇଥିବା ସୁନ୍ଦର ଅକ୍ଷର ମଧରେ ଆଉ ଏକ ଅକ୍ଷର ଲେଖିଦେଲେ । ସଭାରେ ଥିବା ପଣ୍ଡିତମାନେ ମୁଗ୍ଧ ହୋଇପଡ଼ିଲେ । ମହାରାଜା ମଧ ବିସ୍ମିତ ହୋଇ ଗୋଟିଏ ନାମ ବା ଉପାଧି ନେବାକୁ କହିଲେ । ବ୍ରଜନାଥ ପ୍ରସ୍ତାବ ଦେଲେ ଯେ ଯେଉଁ ନାଁ ସବୁଠୁ ବଡ଼, ତାହା ତାଙ୍କୁ ଦିଆଯାଉ । କବିଙ୍କ କଥା ଅନୁସାରେ ଗଜପତି ମହାରାଜା ତାଙ୍କୁ 'ବଡ଼ଜେନା' ଉପାଧି ଦେଲେ ଓ ମୁଣ୍ଡରେ ଶାଢ଼ି ବାନ୍ଧିଲେ ।

'ବଡ଼ଜେନା' ଉପାଧି ପାଇ ନିଜକୁ କବି ଗୌରବାନ୍ୱିତ ମନେ କରୁଥିଲେ । ସେହି ଦିନଠାରୁ ମଧ ସେ ବ୍ରଜନାଥ ପଟ୍ଟନାୟକ ପରିବର୍ତ୍ତେ କବି ନିଜକୁ 'ବ୍ରଜନାଥ ବଡ଼ଜେନା' ଭାବେ ପରିଚିତ କରାଇଲେ ।

କବି ପୁରୀରେ ରହିଥିବାବେଳେ ବ୍ରଜନାଥଙ୍କୁ ୬୭ ବର୍ଷ ବୟସ ହୋଇଥିଲା । କ୍ରମେ ସେ ଜରା ଓ ବ୍ୟାଧିଗ୍ରସ୍ତ ହୋଇପଡ଼ିଲେ । ଏପରିକି ସେ ଚଳତ୍‌ଶକ୍ତିହୀନ ହୋଇପଡ଼ିଲେ । କବି ତାଙ୍କର ଦୁରବସ୍ଥା ଅତି କରୁଣ ଭାବରେ ବ୍ୟକ୍ତ କରିଛନ୍ତି –

''ଘରେ ବସିଥାଇ ମୁଖେ ଦେଲେ ଖାଇ
ଚତୁର୍ମାସ୍ୟା ବକ ପରି
ଅଜଗର ଜନ୍ତୁ ଅଜାଣେ ଧାତାବା
ଗଢ଼ିଲା ମନୁଷ୍ୟ କରି ।''

## ରଚନାବଳୀ

କବି ପ୍ରଥମେ ରୀତିଯୁଗର କାବ୍ୟାଦର୍ଶ ଅନୁସାରେ କାବ୍ୟକବିତା ରଚନା କରିଥିଲେ । ସେଗୁଡ଼ିକରେ କାଳ୍ପନିକ ରାଜକୁମାର ଓ ରାଜକୁମାରୀଙ୍କ ପ୍ରଣୟ ଥିଲା ବିଷୟବସ୍ତୁ । ଏଗୁଡ଼ିକ ମଧରେ 'କେଳି କଳାନିଧି', 'ବିଚକ୍ଷଣା', 'ଶ୍ୟାମ ରାସୋତ୍ସବ', 'ଗୋପୀବିଳାସ' ଓ 'ଅମ୍ବିକା ବିଳାସ' ହେଉଛି ପ୍ରଧାନ । ତାଙ୍କର ବହୁ ଗ୍ରନ୍ଥ ଏ ପର୍ଯ୍ୟନ୍ତ ଅପ୍ରକାଶିତ ।

## କେଳି କଳାନିଧି

ଏହା ଗୋଟିଏ ଆଦି ରସାଶ୍ରିତ କାବ୍ୟ । କଥିତଅଛି ଯେ ଢେଙ୍କାନାଳ ରାଜା ତ୍ରିଲୋଚନ ମନୀନ୍ଦ୍ରଙ୍କ ରାଜସଭାରେ ଭଞ୍ଜକବିଙ୍କଦ୍ୱାରା ରଚିତ 'ପ୍ରେମ ସୁଧାନିଧି'ର ଆଲୋଚନା ହେଉଥିଲା । ଏଥିରେ ରାଜା ଉପେନ୍ଦ୍ର ଭଞ୍ଜଙ୍କର ଉଚ୍ଛ୍ୱସିତ ପ୍ରଶଂସା କରିବାକୁ ଲାଗିଲେ । ବ୍ରଜନାଥ ମଧ 'ପ୍ରେମ ସୁଧାନିଧି' ଭଳି କାବ୍ୟ ରଚନା କରିପାରିବେ ବୋଲି ଘୋଷଣା କରି ସମସ୍ତଙ୍କୁ ଚକିତ କରିଦେଲେ । ରାଜା ମନୀନ୍ଦ୍ର ବାହାଦୁର ଏହାକୁ କାର୍ଯ୍ୟରେ ପରିଣତ କରିବାପାଇଁ କହିଲେ । ବ୍ରଜନାଥ ଅଳ୍ପଦିନ ମଧରେ 'କେଳି କଳାନିଧି' ନାମକ କାବ୍ୟ ରଚନା କରି ରାଜସଭାରେ ଉପସ୍ଥାପିତ କଲେ ।

କବି ବ୍ରଜନାଥ ଏହି କାବ୍ୟରେ ଭଞ୍ଜୀୟ ଶୈଳୀକୁ ସମ୍ପୂର୍ଣ୍ଣଭାବେ ଅନୁସରଣ କରିଛନ୍ତି । ବିଷୟବସ୍ତୁ ମଧ ପ୍ରାୟ ସମାନ । ସୁପ୍ରଭାଂଶୁ ପ୍ରଭା ନାମକ ରାଜ୍ୟର ରାଜକୁମାର ସହ ମୋତିମାଳା କଟକର ରାଜା କୃପାନିଧିଙ୍କ କନ୍ୟା କେଳି କଳାନିଧିର ପରିଣୟ, ବିଚ୍ଛେଦ ଓ ପୁନର୍ମିଳନକୁ ଉପଜୀବ୍ୟ କରି ଏହା ରଚିତ ହୋଇଛି । ଏହା ଷୋଳଛାନ୍ଦବିଶିଷ୍ଟ । ଭଞ୍ଜଙ୍କର କାବ୍ୟର ନାମ 'ପ୍ରେମ ସୁଧାନିଧି' ହୋଇଥିଲାବେଳେ କବି ନାମ ରଖିଛନ୍ତି 'କେଳି କଳାନିଧି' ଅର୍ଥାତ୍ ପ୍ରେମଲୀଳା ରୂପକ ପୂର୍ଣ୍ଣଚନ୍ଦ୍ର ।

'ପ୍ରେମ ସୁଧାନିଧି'ର ଚତୁର୍ଦ୍ଦଶ ଛାନ୍ଦ ଅନୁକରଣରେ କବି ଏକାଦଶ ଛାନ୍ଦ ରଚନା କରିଛନ୍ତି, ଯଥା –

'ପ୍ରେମ ସୁଧାନିଧି'ରେ ଅଛି –

''ନିର୍ମଳ ଚନ୍ଦ୍ରମଣ୍ଡଳ ଶରଦେ ବିରାଜି
ଦିଶେ ଯଥା ଦର୍ପକ ଦର୍ପଣେ ଥିଲେ ମାଜି
ଚାହିଁ କୁମର କାତର
ଲେଖି ଆରମ୍ଭିଲା ବସି ବିନୟ ପତର ।''

କବି ବ୍ରଜନାଥ 'କେଳି କଳାନିଧି'ର ଏକାଦଶ ଛାନ୍ଦରେ ଲେଖିଲେ –

''କୁସୁମ ସମୟ ଆସି ହେଲା ପରବେଶ
କଳିନ୍ଦରେ କୁମୁଦ ପ୍ରାୟେ ହେଲା କୃଶ
କାମେ କୁମର କାତର
କାନ୍ତାଠାକୁ ଲେଖେ ବିନୟ ଉତ୍ତର ।''

ଏଥିରେ ମଧ୍ୟ ଯମକ, ଅନୁପ୍ରାସ, ସିଂହାବଲୋକନ, ଶୃଙ୍ଖଳା, ଅବନା, ତ୍ରିଭଙ୍ଗ, ଆଦ୍ୟପ୍ରାସ, ଲୋମବିଲୋମ, ବିରୋଧାଭାଷ, ବହିର୍ଲିପି ସାଙ୍ଗକୁ ବୃକ୍ଷାରୋହଣ ପ୍ରଭୃତିର ଚାତୁର୍ଯ୍ୟପୂର୍ଣ୍ଣ ପ୍ରୟୋଗ ଦେଖାଯାଏ । ଏହା ପାଠକ ମନରେ ଭଞ୍ଜୀୟ ରଚନା ଭଳି ଯୁଗପତ୍ ବିସ୍ମୟ ଓ ଆନନ୍ଦ ପ୍ରଦାନ କରେ ।

'କେଳି କଳାନିଧି'ର ବୈଶିଷ୍ଟ୍ୟ ହେଉଛି ଅସାଧାରଣ ଶବ୍ଦପାଣ୍ଡିତ୍ୟ ଓ ବର୍ଣ୍ଣନାଚାତୁର୍ଯ୍ୟ । ଏହା କବିଙ୍କର ଆଦ୍ୟ କୃତି ବୋଲି ଅନୁମାନ କରାଯାଏ ।

## ବିଚକ୍ଷଣା

ଏହା ୧୦ଟି ଛାନ୍ଦବିଶିଷ୍ଟ । ଏହା ଆଉ ଏକ କାଳ୍ପନିକ ପ୍ରଣୟ ପ୍ରଧାନ କାବ୍ୟ । ବୈଦେହୀଶ ବିଳାସ ପରି 'ବ' ଆଦ୍ୟ ଅକ୍ଷରରେ ରଚିତ । ବିଭିନ୍ନ ଛାନ୍ଦ 'ବି' (ପ୍ରଥମ), 'ବା' (ତୃତୀୟ), 'ବୀ' (ଚତୁର୍ଥ), 'ବେ' (ପଞ୍ଚମ), 'ବୁ' (ଷଷ୍ଠ), 'ବୈ' (ସପ୍ତମ), 'ବୋ' (ଅଷ୍ଟମ) ପ୍ରଭୃତି ଅକ୍ଷର କ୍ରମରେ ଆରମ୍ଭ ହୋଇଛି ।

ବିଳାସବତୀ ନାମକ ରାଜ୍ୟର ରାଜକୁମାରୀ ବିଚକ୍ଷଣା । ବ୍ରଜସଦନ ରାଜ୍ୟର ରାଜକୁମାର ବ୍ରଜମୋହନ । ବିଚକ୍ଷଣା ଅସାମାନ୍ୟା ରୂପବତୀ ଥିଲେ । ତାଙ୍କପାଇଁ ଉପଯୁକ୍ତ ବର ମିଳୁ ନ ଥିଲା । ନାରଦଙ୍କ ସାହାଯ୍ୟରେ ବ୍ରଜନଗରର ବ୍ରଜମୋହନଙ୍କ ସନ୍ଧାନ ମିଳିଛି । ବିଧିବିଧାନପୂର୍ବକ ନାୟକ ଓ ନାୟିକାଙ୍କ ବିବାହ ଶେଷ ହୋଇଛି । ମିଳନ ପରେ ବିଦେଶ ଯାତ୍ରା ଯୋଗୁଁ ବିଚ୍ଛେଦ ଘଟିଛି । କାବ୍ୟଟି ଅସମ୍ପୂର୍ଣ୍ଣ ଅଛି ।

## ଶ୍ୟାମ ରାସୋତ୍ସବ

ଏହି କାବ୍ୟକୁ କବି ପରିଣତ ବୟସରେ ରଚନା କରିଛନ୍ତି ବୋଲି ସୂଚନା ଦେଇଛନ୍ତି, ଯଥା –

''ଶେଷ ହେଲା ବୟସ ବିଷୟାବଳେ
ଶମନ ଭୁବନକୁ ଗମନ କାଳେ ।''

କବି 'ଭାଗବତ'ର ଦଶମ ସ୍କନ୍ଧ ଗୋପଲୀଳାର ରାସପଞ୍ଚାଧ୍ୟାୟର ଅନୁସରଣରେ ଏହାକୁ ରଚନା କରିଥିବା ଜଣାଯାଏ ।

ରାସକାଳରେ ଶ୍ରୀକୃଷ୍ଣ ବୃନ୍ଦାବତୀଙ୍କୁ ନେଇ ଚାଲିଯାଇଛନ୍ତି । ବୃନ୍ଦାବତୀଙ୍କ ମନରେ ଅହଙ୍କାର ଆସିଛି । ଫଳରେ ଶ୍ରୀକୃଷ୍ଣ ତାଙ୍କୁ ସ୍କନ୍ଧଦେଶରୁ ତଳକୁ ଖସାଇ ଦେଇଛନ୍ତି ।

କୃଷ୍ଣପ୍ରେମ ପାଗଳିନୀ ଗୋପୀମାନେ କିନ୍ତୁ ଶ୍ରୀକୃଷ୍ଣଙ୍କ ସହ ପ୍ରେମରସରେ ମଜ୍ଜିବାପାଇଁ ଆତୁର ନିବେଦନ କରିଛନ୍ତି । କୃଷ୍ଣ ମଧ୍ୟ ସେମାନଙ୍କ ସହ ରାସକ୍ରୀଡ଼ା ସମାପନ କରିଛନ୍ତି ।

ଶୃଙ୍ଗାରରସ ପରିବେଷଣ କରି ଚିତ୍ତ ବିନୋଦନ କରିବା କବିଙ୍କର ଲକ୍ଷ୍ୟ ଥିବା ସ୍ପଷ୍ଟ । କାବ୍ୟର ଶେଷାଂଶରେ ଶ୍ରୀକୃଷ୍ଣ ଓ ଜଗନ୍ନାଥଙ୍କୁ ଅଭିନ୍ନ ରୂପେ ଗ୍ରହଣ କରିଛନ୍ତି, ଯଥା –

"ଶ୍ରୀଜଗନ୍ନାଥ ଯେ କୃଷ୍ଣ ସେହି ଭଜେ
ସୁଜ୍ଞାନୀ ବିବେକ ।"

## ଗୋପୀ ବିଳାପ

ଏହି କାବ୍ୟରେ କବି ଛଅଟି ଗୋପବାଳୀଙ୍କର କୃଷ୍ଣଙ୍କ ସହିତ ପ୍ରେମ ସମ୍ପର୍କୀୟ ଗୋପନ ଭାବ ପ୍ରକାଶ କରିଛନ୍ତି । ଏହା ଭାଷା ଅତି ସରଳ । ପ୍ରକାଶଭଙ୍ଗୀ ମଧ୍ୟ ଗ୍ରାମ୍ୟ ହୋଇଛି । କବି ନିଜେ ଏହା କାବ୍ୟର ଆରମ୍ଭରେ ସ୍ୱୀକାର କରିଛନ୍ତି, ଯଥା –

"ମୋର ଏ କଥାରେ ବୋଲିବ ଏ ବୋଲି
ଦୋଷ ନ ଦେବ ଦେଶ ଭାଷା ବୋଲି ।"

ଗୋପବାଳୀମାନେ ହେଲେ ରସକଳା, ପ୍ରୀତିକଳା, କମଳା, ପ୍ରିୟବତୀ, ରସବତୀ ଓ ଶ୍ୟାମଳା । ସେମାନେ ଶ୍ରୀକୃଷ୍ଣଙ୍କ ବିରହରେ ଘାରିହୋଇ ଆପଣାର ଗୋପନ ପ୍ରେମ ବିଷୟରେ କଥାବାର୍ତ୍ତା କରିଛନ୍ତି । ଜଣେ ଗୋପବାଳୀ କୃଷ୍ଣଙ୍କ ମୁଖ ଦେଖିଲେ କାମବାଣରେ ଜର୍ଜରିତା ହୋଇପଡୁଥିବା କଥା ସ୍ୱୀକାର କରିଛନ୍ତି, ଯଥା –

"ସଖୀ ଚାହିଁଲେ ମୁଁ ତା'ର ବଦନ
ମୋତେ କେତେ ଦଣ୍ଡ ଦିଏ ମଦନ ।"

ଆଉ ଜଣେ ସଖୀ ତା'ର କୃଷ୍ଣଙ୍କ ସହ ରତିକ୍ରୀଡ଼ା ବର୍ଣ୍ଣନା କରିଛନ୍ତି –

"ଦିନେ ରଜନୀ ଦୁଇ ପ୍ରହରରେ
ଆସି ପଶିଲା ମୋହର ପୁରରେ ।
ମୋତେ କୋଳ ପରେ ଘେନି ବସିଲା
ତୀକ୍ଷ୍ଣ ନଖ ମୁଖ ଉରେ ଭୁଷିଲା
× × ×
ମୁହଁ ନିବିଡ଼ରେ ତାଙ୍କୁ ଭିଡ଼ିଲି
ଏକ ଦେହ ପରା ଜଡ଼ିଲି ।"

ଆଉ ଜଣେ ସଖୀ ଶାଶୂ ନଣନ୍ଦଙ୍କ ଭୟ କଥା କହିଛନ୍ତି –

''ବେନି ବାହୁ ଘେନି ତାଙ୍କୁ ଭିଡ଼ିବି
ଜଡ଼ି ଯାଇ ନିଘଡ଼େ ନ ଛାଡ଼ିବି ।

× × ×

ପୁଣି କୁଳ ବେଭାରକୁ ଡରାଇ
ଶାଶୂ ନଣନ୍ଦଙ୍କୁ ଭୟ କରଇ ।''

ବ୍ରଜନାଥ ଅତି ସରଳ ଗ୍ରାମ୍ୟ ଭାଷାରେ ଗୋପୀଙ୍କ ପ୍ରଣୟ, କୁଳାଚାର, ଶାଶୂ, ନଣନ୍ଦଙ୍କ ଗଞ୍ଜଣା ପ୍ରଭୃତିକୁ ଅତି ଜୀବନ୍ତଭାବେ ବର୍ଣ୍ଣନା କରିଛନ୍ତି । ପଲ୍ଲୀଗ୍ରାମର କୁଳବଧୂର ସ୍ୱାମୀ, ଶାଶୂ ନଣନ୍ଦ ନିୟନ୍ତ୍ରିତ ଦୈନନ୍ଦିନ ଜୀବନଧାରାକୁ ଅତି ପ୍ରାଣବନ୍ତ ଭାବରେ ରୂପାୟିତ କରିଛନ୍ତି ।

## ଅମ୍ବିକା ବିଳାସ

ଏଥିରେ ଏକଚାଳିଶଟି ଛାନ୍ଦ ଅଛି । ଉପେନ୍ଦ୍ର ଭଞ୍ଜ ବୈଦେହୀଶ ବିଳାସ 'ବ' ଆଦ୍ୟାନୁପ୍ରାସରେ ରଚନା କରିଥିଲେ । କବି ବ୍ରଜନାଥ 'ଅ' ଆଦ୍ୟ ନିୟମରେ ଏହି କାବ୍ୟଟି ରଚନା କରିଛନ୍ତି । 'ବ' ଆଦ୍ୟ ନିୟମ ରଚନା ଅପେକ୍ଷା 'ଅ' ନିୟମରେ କାବ୍ୟ ରଚନା ନିଶ୍ଚିତଭାବେ କଷ୍ଟସାଧ ।

କାବ୍ୟରେ ଦକ୍ଷ ପ୍ରଜାପତିଙ୍କର କନ୍ୟା ସତୀଙ୍କର ଶିବଙ୍କ ସହ ବିବାହ, ପରେ ଦକ୍ଷଙ୍କଦ୍ୱାରା ଅନୁଷ୍ଠିତ ଯଜ୍ଞ ସଭାରେ ସତୀଙ୍କ ଆତ୍ମାହୁତି, ଶିବଙ୍କଦ୍ୱାରା ଯାଗ ଧ୍ୱଂସ, ଦକ୍ଷବଧ, ହିମବନ୍ତ ଓ ମେନକାଙ୍କ କନ୍ୟା ରୂପେ ପାର୍ବତୀଙ୍କ ଜନ୍ମ, ଶିବଙ୍କ ତପସ୍ୟା, ମଦନଦହନ, ପାର୍ବତୀ ବିବାହ, ସମ୍ଭୋଗ ଲୀଳା, କୁମାର ଜନ୍ମ ଓ ତାରକାସୁର ବଧ ପ୍ରଭୃତି ବର୍ଣ୍ଣିତ ।

କବି ପୁରାଣ ସାହିତ୍ୟରୁ ଉପାଖ୍ୟାନଟି କେବଳ ଗ୍ରହଣ କରିଛନ୍ତି । କିନ୍ତୁ ରୀତିଯୁଗର ଆଦର୍ଶରେ ଅନୁପ୍ରାଣିତ ହୋଇ ଏହାକୁ ଏକ ମନୋଜ୍ଞ କାବ୍ୟରେ ପରିଣତ କରିଛନ୍ତି । କାବ୍ୟର ପ୍ରତ୍ୟେକ ଛାନ୍ଦରେ ବିଭିନ୍ନ ଅଳଙ୍କାରର ପ୍ରୟୋଗ ଅଛି । ଛନ୍ଦ ଯୋଜନାରେ କବି ଚାତୁର୍ଯ୍ୟ ଦେଖାଇଛନ୍ତି । ଏଥିରେ କବିଙ୍କ ବହୁ ଭାଷାରେ ପାଣ୍ଡିତ୍ୟର ପରିଚୟ ମିଳେ । ହିନ୍ଦୀ, ବଙ୍ଗଳା, ସଂସ୍କୃତ ଓ ପ୍ରାକୃତ ପ୍ରଭୃତି ବହୁ ଭାଷାରେ ଶିବସ୍ତୁତି ଏଥିରେ ଅଛି ।

କବି ମଧ୍ୟ ଶରତ, ଶିଶିର, ଶୀତ, ବସନ୍ତ ପ୍ରଭୃତି ବିଭିନ୍ନ ଋତୁ ବର୍ଣ୍ଣନା କରିଛନ୍ତି । ଏଥିରୁ କବିଙ୍କ ବର୍ଣ୍ଣନାନୈପୁଣ୍ୟର ପରିଚୟ ମିଳେ ।

କାବ୍ୟରେ ବହୁ ସ୍ୱାତନ୍ତ୍ର୍ୟ ରହିଛି । ଶିବ ପୀଠ କପିଳାସର ବିସ୍ତୃତ ବିବରଣୀ କାବ୍ୟରୁ ମିଳେ । ଏଥିରେ ମଧ୍ୟ କେନ୍ଦୁଝର ଜିଲ୍ଲାର ଗୋନାସିକା ଓ ପୁରୀ ଶ୍ରୀକ୍ଷେତ୍ରର ବର୍ଣ୍ଣନା ଦେଖିବାକୁ ମିଳେ । ଶିବ ପାର୍ବତୀଙ୍କ ବିବାହ ସମୟରେ ଶିବଙ୍କ ସହିତ ଆସିଥିବା ବରଯାତ୍ରୀମାନଙ୍କୁ କେଉଁ କେଉଁ ଖାଦ୍ୟପେୟ ଦେଇ ସନ୍ତୁଷ୍ଟ କରାଯାଇଥିଲା, ତାହାର ବିବରଣୀ ଏଥିରେ ଅଛି । ଏଥିରୁ ସେ କାଳର ଉତ୍କଳର ପ୍ରଚଳିତ ଖାଦ୍ୟପେୟର ସୂଚନା ମିଳେ । ସେହିପରି କନ୍ୟା ପିତା ସଜାଡ଼ିଥିବା ସମ୍ଭାରରେ ସେ କାଳର ରୀତି, ନୀତି ଓ ଚାଲିଚଳଣି ବିଷୟରେ ସମ୍ୟକ୍ ଧାରଣା କରିହୁଏ ।

କବି ତାଙ୍କ କାବ୍ୟକୁ ଏକ ସୁବର୍ଣ୍ଣର ଗୃହ ସଙ୍ଗେ ତୁଳନା କରିଛନ୍ତି, ଯଥା –

''ଅତଃ କାରଣୁ ଏ ମୋ ଗୀତ
ଅଟେ ସୁବର୍ଣ୍ଣପୁର ସତ
× × ×
ଅନେକ ଦ୍ରବ୍ୟ ଖର୍ଚ୍ଚକରି
ଅବିଘ୍ନେ ତୋଳିଛି ଏ ପୁରୀ ।''

କାବ୍ୟଟି କେନ୍ଦୁଝର ରାଜାଙ୍କ ନାମରେ ଭଣିତା କରାଯାଇଛି । କେହି କେହି କହନ୍ତି ଯେ କବି କେନ୍ଦୁଝର ରାଜାଙ୍କ ଦେବାନ ଭାବେ କାର୍ଯ୍ୟ କରିଥିଲେ । ତାଙ୍କର ସନ୍ତୋଷ ବିଧାନପାଇଁ ସେ ତାଙ୍କ ନାମରେ ଏହାକୁ ଭଣିତା କରିଛନ୍ତି ।

**ଦଶପୋଇ**

ଏହା କୃଷ୍ଣ ଲୀଳାମୂଳକ ଖଣ୍ଡକାବ୍ୟ । ଓଡ଼ିଆ ସାହିତ୍ୟର ରୀତିଯୁଗର ଶେଷ ପର୍ଯ୍ୟାୟରେ ଏହା ରଚିତ ହୋଇଅଛି ।

ଏହାର ଆରମ୍ଭ ବସନ୍ତ ଋତୁ ବର୍ଣ୍ଣନାରୁ । କୃଷ୍ଣ ଯମୁନାରୁ ନୀର ଆଣୁଥିବା ରାଧାଙ୍କୁ ଦେଖି ମିଳନ ଅଭିଳାଷୀ ହୋଇଛନ୍ତି । ଦୂତୀକୁ ଆପଣାର ଅଭିପ୍ରାୟ ଜଣାଇଛନ୍ତି । ଦୂତୀଠାରୁ ସବୁ ଶୁଣି ରାଧା କପଟକ୍ରୋଧ ପ୍ରକାଶ କରିଛନ୍ତି । କୃଷ୍ଣ ତେଣୁ ଅନ୍ୟ ଉପାୟ ନ ଦେଖି ବଂଶୀବାଦନ କରିଛନ୍ତି । ଏହା ରାଧାଙ୍କୁ ଉଚ୍ଚାଟ କରିଛି । ସେ ସଖୀସହ କୁଞ୍ଜକୁ ଯାଇଛନ୍ତି ଓ ସେଠାରେ କୃଷ୍ଣଙ୍କ ସହ ମିଳନ ହୋଇଛି ।

କାବ୍ୟରେ ଶୃଙ୍ଗାରରସର ପ୍ରାଧାନ୍ୟ ଦେଖାଯାଏ । ସେଥିପାଇଁ କେହି କେହି ବ୍ରଜନାଥଙ୍କୁ 'ଶୃଙ୍ଗାରୀ କବି' ଆଖ୍ୟା ଦେଇଥାନ୍ତି ।

## ସମର ତରଙ୍ଗ

ଏହା ଉତ୍କଳ ସାହିତ୍ୟରେ ଏକ ବିରଳ ସମର କାବ୍ୟ । ଊନବିଂଶ ଶତାବ୍ଦୀର ଶେଷଭାଗରେ ଓଡ଼ିଶାରେ ମରହଟ୍ଟାମାନେ ଶାସନ କରୁଥିଲେ । ଯେକୌଣସି ଉପାୟରେ ସେମାନେ ରାଜସ୍ୱ ଆଦାୟ କରି ନାଗପୁର ଭୋନ୍‌ସଲାଙ୍କ ପାଖକୁ ପଠାଉଥିଲେ । ବଙ୍ଗଳାରେ ମଧ୍ୟ ଇଷ୍ଟ-ଇଣ୍ଡିଆ କମ୍ପାନୀଙ୍କର କର୍ତ୍ତୃତ୍ୱ ପ୍ରତିଷ୍ଠିତ ହୋଇସାରିଥିଲା । ସେମାନେ ଏହାପରେ ଓଡ଼ିଶାକୁ ଅଧିକାର କରିବାପାଇଁ ଚେଷ୍ଟା କରୁଥିଲେ । ସେମାନଙ୍କ ପ୍ରରୋଚନାରେ ଢେଙ୍କାନାଳର ରାଜା ଜୟନାରାୟଣ ମରହଟ୍ଟାମାନଙ୍କୁ ଧାର୍ଯ୍ୟ ପେସ୍କସ ଦେବା ବନ୍ଦ କରିଦେଲେ । ଜୟନାରାୟଣଙ୍କ ପରେ ଢେଙ୍କାନାଳର ରାଜା ହେଲେ ତ୍ରିଲୋଚନ ମନୀନ୍ଦ୍ର । ସେ ମଧ୍ୟ ପେସ୍କସ ଦେଲେ ନାହିଁ । ସେତେବେଳେ ଓଡ଼ିଶାର ମରହଟ୍ଟା ସୁବାଦାର ଥିଲେ ରାଜାରାମ ପଣ୍ଡିତ । ସେ ଢେଙ୍କାନାଳ ଆକ୍ରମଣ କରିବାକୁ ସୈନ୍ୟ ପଠାଇଲେ । ଢେଙ୍କାନାଳଠାରୁ ୨୫ କି.ମି. ଦୂରରେ ଥିବା ମୋଟରିଗଡ଼ ଦ୍ୱାରଠାରେ ଉଭୟ ପକ୍ଷର ଯୁଦ୍ଧ ହେଲା । ଏହି ଯୁଦ୍ଧରେ ମରହଟ୍ଟାମାନଙ୍କର ବିପୁଳ କ୍ଷତି ହେଲା । ସେମାନେ ବହୁ ଅସ୍ତ୍ର ଶସ୍ତ୍ର ଓ ଖାଦ୍ୟପଦାର୍ଥ ଛାଡ଼ି କଟକ ପଳାଇଲେ ।

ଦୈବଯୋଗକୁ ଏହି ସମୟରେ ମରହଟ୍ଟା ଅଶ୍ୱାରୋହୀବାହିନୀ ଚିମ୍‌ନାଜୀ ବାପୁଙ୍କ ନେତୃତ୍ୱରେ ନାଗପୁରରୁ କଲିକତା ଯାଉଥିଲେ । ବାଟରେ ଅସୁବିଧାବଶତଃ ସେମାନେ ଓଡ଼ିଶାରେ ରହିଯାଇଥିଲେ । ସେମାନଙ୍କ ମଧ୍ୟରୁ ଗୋଟିଏ ଦଳକୁ ଢେଙ୍କାନାଳ ପଠାଗଲା । ମାତ୍ର ବାଟରେ ସେମାନେ ଅସୁସ୍ଥ ହୋଇପଡ଼ିବାରୁ କଟକ ଫେରିଆସିବାକୁ ବାଧ ହେଲେ । ବର୍ଷା ଋତୁ ପରେ ଚିମ୍‌ନାଜୀଙ୍କ ନେତୃତ୍ୱରେ ମରହଟ୍ଟା ସୈନ୍ୟମାନେ ପୁଣି ଢେଙ୍କାନାଳ ଅଭିମୁଖେ ଯାତ୍ରା କଲେ । ଢେଙ୍କାନାଳ ରାଜା ମଧ୍ୟ ମରହଟ୍ଟା ଆକ୍ରମଣର ମୁକାବିଲାପାଇଁ ସବୁ ପ୍ରକାର ବ୍ୟବସ୍ଥା କଲେ । ଦୁର୍ଗକୁ ସୁଦୃଢ଼ କରି ସେଥି ମଧ୍ୟରେ ଅସ୍ତ୍ରଶସ୍ତ୍ର ମହଜୁଦ କରି ରଖିଲେ । ସ୍ୱୟଂ ରାଜା ଯୁଦ୍ଧକ୍ଷେତ୍ରରେ ରହି ସୈନ୍ୟମାନଙ୍କୁ ଉଦ୍‌ବୋଧନ ଦେଉଥିଲେ ।

ଅଠରଦିନବ୍ୟାପୀ ଯୁଦ୍ଧ ଚାଲିଲା । ସେଥିରେ ମରହଟ୍ଟା ସୈନ୍ୟମାନେ ଅକଥନୀୟ ଦୁର୍ଦ୍ଦଶାର ସମ୍ମୁଖୀନ ହେଲେ । ଶେଷରେ ଯୁଦ୍ଧବିରତିପାଇଁ ସେମାନେ ରାଜା ତ୍ରିଲୋଚନଙ୍କୁ ପ୍ରସ୍ତାବ ଦେଲେ । ରାଜା ପାରିଷଦବର୍ଗ ସହିତ ଏ ବିଷୟରେ ଆଲୋଚନା କଲେ । କେହି କେହି ମରହଟ୍ଟାମାନଙ୍କର ପ୍ରସ୍ତାବକୁ ଅଭିସନ୍ଧିମୂଳକ ବୋଲି ମତ ଦେଲେ । ମାତ୍ର ସବୁ ବିଚାର-ବିମର୍ଶ ପରେ ଯୁଦ୍ଧବିରତି ପ୍ରସ୍ତାବ ଗୃହୀତ ହେଲା । ମରହଟ୍ଟା ସୈନ୍ୟମାନେ ଢେଙ୍କାନାଳ ଛାଡ଼ି ଚାଲିଗଲେ ।

କବି ଷଷ୍ଠ ଛାନ୍ଦରେ ଢେଙ୍କାନାଳ ଓ କେନ୍ଦୁଝର ରାଜାଙ୍କ ଯୁଦ୍ଧ ବର୍ଣ୍ଣନା କରିଛନ୍ତି । କେନ୍ଦୁଝର ରାଜା ମରହଟ୍ଟାମାନଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଦେଉଥିଲେ । ଯୁଦ୍ଧ ପରେ କେନ୍ଦୁଝର ସୈନ୍ୟମାନେ ଢେଙ୍କାନାଳ ରାଜ୍ୟର ସୀମାନ୍ତବର୍ତ୍ତୀ ଅଞ୍ଚଳରେ ଲୁଟତରାଜ ଚଳାଇଲେ । ଢେଙ୍କାନାଳ ରାଜା ସୈନ୍ୟ ପଠାଇ ସେମାନଙ୍କୁ ଘଉଡ଼ାଇ ଦେଲେ ।

କବି ସପ୍ତମ ଛାନ୍ଦରେ ଢେଙ୍କାନାଳ ରାଜାଙ୍କ ଯଶ କୀର୍ତ୍ତି ଗାନ କରିଛନ୍ତି ।

## ନାମକରଣ ଓ ଯୁଦ୍ଧ ବର୍ଣ୍ଣନା

ଢେଙ୍କାନାଳ ଉପରେ ଗୋଟିଏ ପରେ ଗୋଟିଏ ଆକ୍ରମଣର ବର୍ଣ୍ଣନା ଏହି ଗ୍ରନ୍ଥରୁ ମିଳେ । ପ୍ରଥମରେ ଢେଙ୍କାନାଳ ଉପରେ ମରହଟ୍ଟାମାନେ ଆକ୍ରମଣ କରିଛନ୍ତି । ପୁଣି ପରାସ୍ତ ହୋଇ ଫେରିଯାଇଛନ୍ତି । ବର୍ଷା ଋତୁ ପରେ ମରହଟ୍ଟାମାନେ ପୁଣି ଆକ୍ରମଣ କରିଛନ୍ତି । ମରହଟ୍ଟା ସୈନ୍ୟ ଚାଲିଗଲାପରେ କେନ୍ଦୁଝର ରାଜାଙ୍କ ସହିତ ଯୁଦ୍ଧ ହୋଇଛି । ଏହିପରି ଯୁଦ୍ଧକୁ ଏକତ୍ରଭାବେ ରଚନା କରି କବି ଏହାର ନାମକରଣ କରିଥିବା ଅନୁମାନ କରାଯାଏ ।

ମରହଟ୍ଟା ଥାଟ ଦେଖି ଢେଙ୍କାନାଳ ପକ୍ଷର ସୈନ୍ୟମାନେ ବିଚଳିତ ହୋଇପଡ଼ିଛନ୍ତି । ରାଜା ତ୍ରିଲୋଚନ ଉଦ୍‌ବୋଧନ ଦେଇ ସୈନ୍ୟମାନଙ୍କ ମନରେ ଉତ୍ସାହ ଉଦ୍ଦୀପନା ସୃଷ୍ଟି କରିଛନ୍ତି ।

ଯୁଦ୍ଧର ବର୍ଣ୍ଣନା ମଧ୍ୟ ଅତି ବାସ୍ତବ । ଏହାକୁ ପାଠ କଲେ ପାଠକ ମନେ କରେ ସତେ ଯେପରି ସମ୍ମୁଖରେ ସମର ହେଉଛି, ଯଥା –

''ଦଣ୍ଡେ ମାତ୍ରକ ନ କରି ବିଶ୍ରାମ
କଲେ ଦେବଙ୍କୁ ଦୁର୍ଲଭ ସଂଗ୍ରାମ
ଗୁଳି ଗୋଟିଏ ନ ପଡ଼େ ତଳରେ
ଯାଇ ବସଇ କାହା କପାଳରେ
କାହା ଛାତିରେ କଙ୍କାଳେ ବାହାରି
ପେଟ ଅବା ଫୁଟିଯାଏ କାହାରି
× × ×
ଭାଙ୍ଗି ପକାଏ କାହା ଜାନୁ ଗୋଡ଼
ସେ ଯେ ଘୋଷାରେ ନଡ଼ବଡ଼ ।''

ଏଠାରେ କବିଙ୍କ ବର୍ଣ୍ଣନା ଶୈଳୀ ଅତି ଜୀବନ୍ତ ଓ ହୃଦ୍ୟ ହୋଇଅଛି । ସେହିପରି ହାତାହାତି ଯୁଦ୍ଧ ବିଷୟ କବି ଅତି ନିଖୁଣଭାବେ ବର୍ଣ୍ଣନା କରିଛନ୍ତି, ଯଥା –

''ଦୁଇବଳ ହୋଇଲେ ମିଶାମିଶି କ୍ଷଣେ କ୍ଷଣେ କି ମେଣ୍ଢା ହେଲେ ଆସି
ଆଡ଼ି ଭୁଷି ଢଙ୍କୁଣକୁ ଢଙ୍କୁଣ ତଡ଼ି ଛାଡ଼ି ଦିଅନ୍ତି ନେଇ ପୁଣ ।
ପିଟି ପିଟି ଛିଟିକାଇ ଭୁଷନ୍ତି କଟି ପରି ଆଣ୍ଠୁ ଆଇ ବସନ୍ତି ।''

ଯୁଦ୍ଧ ପରବର୍ତ୍ତୀ ସୈନ୍ୟ ଶିବିରର ଅବସ୍ଥା କବି ଖୋରଠା ଭାଷାରେ ବର୍ଣ୍ଣନା କରିଛନ୍ତି –

''କେ ବୋଲଇ ହା ହାରେ ବେଟା ମେରା
କୈସେ ଗୁନ୍ ବିସୋରୁଁ ମେଁ ତେରା
କେ କାନ୍ଦର ହାହା ମେରା ଭାୟା
କ୍ୟା ଗୁନାହ ମୁଝକେ ଛୋଡ଼ ଗେୟା ।''

× × ×

''କେହି ଶ୍ୱଶୁରକୁ ମାଟି ଦେଉଛି
କେହୁ ମଉଳାକୁ ନେଇ ଦହୁଛି
କେହି କାଣ୍ଡ କାଢ଼ି ଘାଇ ସିଅଁଇ କାହା ଘାଆ ରକତ ନ ରହଇ ।''

କାବ୍ୟରେ ମଧ୍ୟ କବି ପ୍ରଚଳିତ ଯୁଦ୍ଧ ଅସ୍ତ୍ରଶସ୍ତ୍ର, ଯଥା – କୁନ୍ତ, ଗୁପ୍ତି, ଫାର୍ଶା, ଟାଙ୍ଗି, କଟାରି, ଚକ୍ର, ବାଙ୍କୁ, ବାଡ଼ିବନ୍ଧୁକ, ଭାଲା, ବର୍ଚ୍ଛା, ନଳି, ତଲୁଆର ପ୍ରଭୃତିର ବର୍ଣ୍ଣନା କରିଛନ୍ତି । ସେହିପରି ରଣ ବାଦ୍ୟ, ଯଥା – ଡମ୍ଫ, ନାଗରା, ମହୁରୀ, ଘସା, ଢୋଲ ପ୍ରଭୃତିର ଉଲ୍ଲେଖ ଅଛି । ଏଗୁଡ଼ିକ ତାଙ୍କର ଅପୂର୍ବ ସାହିତ୍ୟିକ ପ୍ରତିଭାର ନିଦର୍ଶନ । ଇତିହାସର ବିଷୟବସ୍ତୁକୁ ସାହିତ୍ୟିକ ଭାଷାରେ ରୂପାନ୍ତରିତ କରିଥିବାରୁ କବି ନିଶ୍ଚିତଭାବେ ଧନ୍ୟବାଦାର୍ହ ।

ମରହଟ୍ଟା ଫଉଜ ଯୁଦ୍ଧ ସମୟରେ ଖାଦ୍ୟାଭାବର ସମ୍ମୁଖୀନ ହୋଇଥିଲେ । ମାତ୍ର କେନ୍ଦୁଝର ରାଜାଙ୍କ ଭଳି ଗଡ଼ଜାତ ରାଜାମାନଙ୍କର ସାହାଯ୍ୟ ପାଇଥିଲେ । ୱାରେନ ହେଷ୍ଟିଙ୍ଗସଙ୍କଠାରୁ ଖାଦ୍ୟ ସାହାଯ୍ୟ ମଧ୍ୟ ପାଇ ଗଡ଼ ଅବରୋଧ କଲେ । ପରିଶେଷରେ ଢେଙ୍କାନାଳ ରାଜା ପେସ୍କସ ଦେବାରୁ ଅବରୋଧ ଉଠାଇ ଦିଆଗଲା । ଢେଙ୍କାନାଳ ରାଜା ଯୁଦ୍ଧରେ ବିଜୟ ହାସଲ କରିଥିବା ଇତିହାସଦ୍ୱାରା ସମର୍ଥିତ ହୁଏ ନାହିଁ ।

## ଇତିହାସ ବିଚାରଧାରା

କାବ୍ୟର ସମସ୍ତ ଘଟଣାବଳୀ ଇତିହାସଦ୍ୱାରା ସମର୍ଥିତ ନ ହେଲେ ମଧ୍ୟ ମୁଖ୍ୟତଃ ଏହା ଏକ ଐତିହାସିକ କାବ୍ୟ । ଓଡ଼ିଶାର ବିଶିଷ୍ଟ ଐତିହାସିକ ଡଃ ଭବାନୀଚରଣ ରାୟଙ୍କ ମତରେ ବ୍ରଜନାଥଙ୍କର ଇତିହାସ ବିଚାରଧାରା ଅତି

ଉଚ୍ଚକୋଟୀର ଥିଲା । ସେ ମଞ୍ଜୁ ଚଉଧୁରୀ, ରାଜାରାମ, ଭବାନୀ, କାଲ୍ଲୁ, ଚିମ୍ନାଜୀ ପ୍ରଭୃତି ଯେଉଁ ମରହଟ୍ଟା ବ୍ୟକ୍ତିମାନଙ୍କ ନାମ ଦେଇଛନ୍ତି, ତାହା ଅନ୍ୟାନ୍ୟ ଗ୍ରନ୍ଥରେ ମିଳୁଅଛି । ଓଡ଼ିଆ ଭାଷାରେ ମରହଟ୍ଟା ସମ୍ବନ୍ଧୀୟ ଐତିହାସିକ ବସ୍ତୁ ବିଶେଷ କିଛି ମିଳେ ନାହିଁ । ଯାହା କିଛି ଅଛି, ସେଥିରେ 'ସମରତରଙ୍ଗ' ଶ୍ରେଷ୍ଠ କହିଲେ ଅତ୍ୟୁକ୍ତି ହେବ ନାହିଁ ବୋଲି ଡଃ ରାୟ ମତ ଦେଇଛନ୍ତି ।

ଏହି ସମର କାବ୍ୟଟି ରଚନା କରି କବି ରାଜାଙ୍କୁ ଶୁଣାଇଥିଲେ । ଏହା ଫଳରେ ସେ ବ୍ରାହ୍ମଣୀ ନଦୀ ତଟବର୍ତ୍ତୀ ଏକ ଗ୍ରାମ, ନଗଦ ଦୁଇ ଶହ ଟଙ୍କା ଓ ପାଟବସ୍ତ୍ର ପୁରସ୍କାର ପାଇଥିବା ଆଗରୁ ବର୍ଣ୍ଣିତ ଅଛି ।

ଆଲୋଚକ ଦେବେନ୍ଦ୍ର ମହାନ୍ତିଙ୍କ ଭାଷାରେ 'ସମର ତରଙ୍ଗ' ସମର ଗୀତିକା ହିସାବରେ ଉତ୍ତୁଙ୍ଗ ଆସନର ଅଧିକାରୀ । ଏହା ମଧ୍ୟ ବ୍ରଜନାଥ ବଡ଼ଜେନାଙ୍କର ପାଣ୍ଡିତ୍ୟ, କବିତ୍ୱ ଓ କଳ୍ପନାଶକ୍ତିର ଯଥାର୍ଥ ପରିଚାୟକ ।

କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ଭାରତୀୟ ସାହିତ୍ୟ କ୍ଷେତ୍ରରେ ଏଭଳି ସମର କାବ୍ୟ ଦେଖାଯାଏ ନାହିଁ । ଆଲୋଚକ ଘନଶ୍ୟାମ ଦାସଙ୍କ ମତରେ ''ସମର ତରଙ୍ଗ କାବ୍ୟ ଓଡ଼ିଆ ସାହିତ୍ୟ କାହିଁକି ଭାରତବର୍ଷର ଯେକୌଣସି ସମର କବିତା ପର୍ଯ୍ୟାୟର ଗୋଟିଏ ମହୋଜ୍ଜ୍ୱଳ ଦୁଷ୍ପ୍ରାପ୍ୟ କୋହେନୂର ମଣି ।''

## ଚତୁର ବିନୋଦ

ଏହା ୧୭୬୦ ମସିହାରେ ରଚିତ ବୋଲି ଗବେଷକମାନେ ମତ ଦିଅନ୍ତି । ଏହା ଏକ କାହାଣୀ ଗ୍ରନ୍ଥ । ଅନ୍ୟତମ କଥାଗ୍ରନ୍ଥ ଶୁକ ବିଳାସ ପରି ଏହା ସମ୍ପୂର୍ଣ୍ଣ କାଳ୍ପନିକ କାହାଣୀର ସମାବେଶ । ମାତ୍ର ଆଜିକି ଦୁଇଶ ବର୍ଷ ତଳେ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ପ୍ରତିବେଶୀ ପ୍ରାଦେଶିକ ସାହିତ୍ୟରେ ଗଦ୍ୟଚେତନା ଦେଖା ଦେଇ ନ ଥିବାବେଳେ, ବ୍ରଜନାଥ ଓଡ଼ିଆ ଭାଷାରେ 'ଚତୁର ବିନୋଦ' ପରି ସରଳ, ବୋଧଗମ୍ୟ ଓ ଉପଭୋଗ୍ୟ କଥାବସ୍ତୁକୁ ଓଡ଼ିଆ ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପନ କରି ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇଛନ୍ତି । ସେଥିପାଇଁ କେହି କେହି ତାଙ୍କୁ ଆଧୁନିକ ଓଡ଼ିଆ କଥାସାହିତ୍ୟର ସ୍ରଷ୍ଟା ଫକୀରମୋହନଙ୍କ ଅଗ୍ରଦୂତ ଭାବେ ଅଭିହିତ କରିଛନ୍ତି ।

'ଚତୁର ବିନୋଦ' ଚାରି ଗୋଟି ବିନୋଦର ସମାହାର । ପ୍ରଥମଟି ହେଲା, 'ହାସ୍ୟ ବିନୋଦ' । ଏଥିରେ ହାସ୍ୟରସର ଅବତାରଣା କରାଯାଇଛି । ମାର୍ଜାର ମୁଖରେ ଏହି ଗଳ୍ପର ପ୍ରଭାବ ବ୍ୟକ୍ତ କରିଛନ୍ତି –

"ଅତି ହାସ ବିନୋଦ ଏ କଥାର ନାମ
ହସି ହସି ଅନ୍ତ ଛିଡ଼ଇ ପ୍ରାଣୀ ଯାଏ ଝାମ ।"

କଥକର ଗଳ୍ପ ଶେଷ ହେବା ପରେ ଶ୍ରୋତା ଚଞ୍ଚଳାକ୍ଷ ଅତ୍ୟନ୍ତ ଆନନ୍ଦରେ ହାସ୍ୟ ପ୍ରକାଶ କରିଛି ।

ଦ୍ୱିତୀୟ ଗଳ୍ପଟି ହେଲା 'ରସବିନୋଦ' । ଏଥିରେ ମୂଳ କାହାଣୀ ସହିତ ଆଉ ତିନୋଟି କାହାଣୀ ଗୁନ୍ଥା ହୋଇଛି । କାହାଣୀଗୁଡ଼ିକ ପ୍ରଣୟମୂଳକ । ଯୁବକ ଯୁବତୀ ପ୍ରଥମ ଦର୍ଶନରେ ହିଁ ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । ବିରହ ଓ ଶେଷରେ ମିଳନ ହୋଇଛି । ଏଥିରେ ମୁଖ୍ୟତଃ ଶୃଙ୍ଗାରରସ ପରିବେଷଣ କରାଯାଇଛି । ସବୁ ବିନୋଦ ମଧ୍ୟରେ 'ରସବିନୋଦ' ଅତ୍ୟନ୍ତ ମାଦକତାପୂର୍ଣ୍ଣ । ଭାବ, ଭାଷା ଓ ପ୍ରକାଶ ଭଙ୍ଗୀରେ କବିଙ୍କର ସିଦ୍ଧହସ୍ତତାର ପ୍ରମାଣ ମିଳେ ।

'ନୀତିବିନୋଦ'ରେ ନୀତିର ବ୍ୟାଖ୍ୟା କରାଯାଇଛି । ଏହି ବିନୋଦରେ ଚାରି ଗୋଟି ଗଳ୍ପ ସନ୍ନିବେଶିତ ହୋଇଛି । ପୁଣ୍ଡରୀକ ପଣ୍ଡାର କନ୍ୟା କୁନ୍ଦରେଖାର ବିବାହ କାହା ସହିତ ହେବ ତାହାହିଁ ସମସ୍ୟା ସୃଷ୍ଟି କରିଛି । ଶେଷରେ ରାଜଦରବାରରେ ଏହାର ସମାଧାନ ହୋଇଛି । ସବୁ ବିନୋଦ ମଧ୍ୟରେ ଏହି ବିନୋଦରେ କଥାବୟାନରେ ସର୍ବୋତ୍କୃଷ୍ଟ କୌଶଳ ପ୍ରୟୋଗ ହୋଇଥିବା ପରିଲକ୍ଷିତ ହୁଏ ।

'ପ୍ରୀତିବିନୋଦ'ରେ ଶଠ ପ୍ରୀତି, ଦୁଷ୍ଟ ପ୍ରୀତି, ନୀଚ ପ୍ରୀତି ଓ ସହଜ ପ୍ରୀତି ପ୍ରଭୃତିର ବର୍ଣ୍ଣନା ରହିଛି ଓ ପ୍ରତି ପ୍ରୀତିର ଗୋଟିଏ ଗୋଟିଏ ଦୃଷ୍ଟାନ୍ତଭାବେ ସାତୋଟି ଗଳ୍ପର ଅବତାରଣା କରାଯାଇଛି । ଏହି ଗଳ୍ପ ଶେଷ ହୁଅନ୍ତେ ଚଞ୍ଚଳାକ୍ଷୀ ଆନନ୍ଦିତ ହୋଇଛି । କବି ଗ୍ରନ୍ଥକୁ ସମାପ୍ତ କରିଛନ୍ତି –

"ଏ ରୂପେ କଥା ସରିଲା
ରାତ୍ର ପ୍ରକାଶ ହେଲା ।"

କାହା କାହା ମତରେ 'ଚତୁର୍ ବିନୋଦ'କୁ ସାହିତ୍ୟ ଆଖ୍ୟା ଦିଆଯାଇ ନ ପାରେ । ଏହା କେବଳ କେତେକ କାଳ୍ପନିକ କାହାଣୀର ସମଷ୍ଟି ମାତ୍ର । ମାତ୍ର ଏଥିରେ ଉପମା, ଉପମେୟ, ଉତ୍‌ପ୍ରେକ୍ଷା, ବକ୍ରୋକ୍ତି ଆଦି ଅଳଙ୍କାର ପ୍ରୟୋଗ, ରସସୃଷ୍ଟି, ବିଷୟସଜ୍ଜା ପ୍ରତି ଦୃଷ୍ଟି ଦେଲେ ଏହାର ମୌଳିକତା ଉପଲବ୍ଧି କରିହୁଏ । ଏହା ପ୍ରାଚୀନ ଓଡ଼ିଆ ସାହିତ୍ୟର ଏକମାତ୍ର ମୌଳିକ, ସମ୍ପୂର୍ଣ୍ଣ ଓ ସୁବର୍ଣ୍ଣିତ ଗଦ୍ୟ ଗ୍ରନ୍ଥ ବୋଲି ଧରାଯାଏ । ଆଲୋଚକ ଡଃ କୃଷ୍ଣଚରଣ ବେହେରାଙ୍କ ମତରେ 'ଚତୁର ବିନୋଦ'ର ଗଳ୍ପଗୁଡ଼ିକ ଅନେକ ପରିମାଣରେ ବାସ୍ତବ ଓ

ଜୀବନଧର୍ମୀ ହୋଇଛି । ଅଭିସାର, ବିଚ୍ଛେଦ ଓ ମିଳନ ଆଦି ପ୍ରେମର ବିଭିନ୍ନ ଦିଗ ଚିତ୍ରଣରେ କବି ସଫଳ ହୋଇପାରିଛନ୍ତି ।

କେତେକ ସମାଲୋଚକଙ୍କ ମତରେ କବି ବ୍ରଜନାଥ ଯୌନବିକାରଗ୍ରସ୍ତ ରାଜଦରବାରର ବ୍ୟକ୍ତିମାନଙ୍କପାଇଁ ଏହି ଶୃଙ୍ଗାର ରସାତ୍ମକ ଗ୍ରନ୍ଥ ରଚନା କରି ନିଜ ପ୍ରତିଭାର ଅପଚୟ କରିଛନ୍ତି । ମାତ୍ର ଏପରି ସମାଲୋଚନା ଯଥାର୍ଥ ନୁହେଁ । ସେ ଯୁଗର ରାଜାମାନେ ଥିଲେ ସ୍ୱେଚ୍ଛାଚାରୀ । ସେମାନେ ବିଳାସ-ବ୍ୟସନରେ କାଳ କଟାଉଥିଲେ । ରାଜାରାଜୁଡ଼ାଙ୍କ ଉଚ୍ଛୃଙ୍ଖଳ ଜୀବନଧାରାକୁ ଚିତ୍ରଣ କରିବାରେ କବି ବ୍ରଜନାଥ ଆଗେଇ ଆସିଛନ୍ତି । ଅବକ୍ଷୟଗ୍ରସ୍ତ ସମାଜର ଚିତ୍ର ପରିବେଷଣ କରି ସେ ହୋଇଛନ୍ତି ଅଗ୍ରଗଣ୍ୟ । ଏଥିପାଇଁ ସେ ପ୍ରଶଂସନୀୟ ।

'ଚତୁର ବିନୋଦ'ରେ ଅଶ୍ଳୀଳତା ସ୍ଥାନ ପାଇଛି ବୋଲି କେହି କେହି ଏହାର ସମାଲୋଚନା କରନ୍ତି । ପରମ୍ପରା ଅନୁରୋଧରେ ଆବଶ୍ୟକସ୍ଥଳେ କବି ଯେ ଅଶ୍ଳୀଳତାକୁ ସ୍ଥାନ ଦେଇଛନ୍ତି, ଏହା ଅତି ସ୍ପଷ୍ଟ । ଯୁଗ ରୁଚି ଅନୁଯାୟୀ ଏ ଅଶ୍ଳୀଳତା ଦୋଷାବହ ହୋଇ ନ ପାରେ ବୋଲି କେହି କେହି ମତ ଦେଇଛନ୍ତି । କବି ବ୍ରଜନାଥ ନୂତନ ମାର୍ଗ ପ୍ରଦର୍ଶନ କରିଛନ୍ତି ବୋଲି କହିଲେ ଚଳେ । ଆଲୋଚକ ବେହେରା ଦର୍ଶାଇଛନ୍ତି ଯେ ସେତେବେଳେ ଅଭିଜାତ ଓ ସଂଭ୍ରାନ୍ତବଂଶୀୟ ରାଜପ୍ରାସାଦର ନରନାରୀ କିମ୍ବା ଧର୍ମକ୍ଷେତ୍ରରୁ ରାଧାକୃଷ୍ଣ, ରାମସୀତା ଆଦି ଦେବଦେବୀଙ୍କୁ ଚରିତ୍ରରୂପେ ଗ୍ରହଣ କରିବା ସାଧାରଣ ରୀତି ଥିଲା । ସମାଜର ନିମ୍ନ ଶ୍ରେଣୀର ନରନାରୀ ସାହିତ୍ୟ କ୍ଷେତ୍ରରେ ଅପାଙ୍‌କ୍ତେୟ ହୋଇ ରହିଥିଲେ । ମାତ୍ର ବ୍ରଜନାଥ ବୈଶ୍ୟ, ବୈଦ୍ୟ, ବାରିକ, ପୁରୋହିତ, ଜ୍ୟୋତିଷ, କେଳୁଣୀ, ପୋଇଲୀ, ବଣିଆ, ଶୁଣ୍ଢୀ, ଠକ, ବଣିକ ପ୍ରଭୃତି ସାଧାରଣ ଚରିତ୍ର ଗ୍ରହଣ କରି ଅଭିନବତ୍ୱ ସୃଷ୍ଟି କରିଛନ୍ତି ।

'ଚତୁର ବିନୋଦ'ରେ ମଧ୍ୟ ତତ୍କାଳୀନ ସାମାଜିକ ଆଚାର-ବିଚାରର ସୂଚନା ମିଳେ । ନାରୀମାନଙ୍କର ବ୍ୟବହୃତ ବିଭିନ୍ନ ଅଳଙ୍କାରର ଉଲ୍ଲେଖ ଅଛି, ଯଥା – କଙ୍କଣ, ଝୁଣ୍ଟିଆ, ନୂପୁର, ପାହୁଡ଼, ଘାଗୁଡ଼ ।

'ଚତୁର ବିନୋଦ' ଉପରେ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି ନିଜର ମତ ଦେଇ କହିଛନ୍ତି – ''ପରମ୍ପରାରୁ ବିଷୟ ଆହରଣ କରି ନିଜସ୍ୱ ସୃଷ୍ଟି ଛନ୍ଦରେ ତାକୁ ରୂପାୟିତ କରିଛନ୍ତି । ତା'ର ଗାତ୍ରମାର୍ଜନା କରିଛନ୍ତି ନୂତନ ପ୍ରାଣଧାରାରେ । ପୁଣି କାଳବକ୍ଷରେ ହଜି ଯାଉଥିବା ଲୋକଗଳ୍ପଗୁଡ଼ିକୁ ସାହିତ୍ୟର ସିଂହାସନରେ ଅଭିଷିକ୍ତ କରି ସେମାନଙ୍କୁ କରିଛନ୍ତି କାଳଜୟୀ ।''

## ରାଜସଭା

ବ୍ରଜନାଥଙ୍କର ଆଉ ଏକ ବାସ୍ତବଧର୍ମୀ ରଚନା ହେଉଛି 'ରାଜସଭା' । ପ୍ରାଚୀନ କବିମାନେ ବହୁ ରାଜସଭା ବର୍ଣ୍ଣନା କରିଛନ୍ତି । ମାତ୍ର ବ୍ରଜନାଥ ନିଜ ଅଭିଜ୍ଞତାରୁ ଏହା ରଚନା କରିଥିବା ଜଣାଯାଏ । ଏଥିରୁ ସେ ଯୁଗର ରାଜାମାନଙ୍କର ଆଡ଼ମ୍ବରପ୍ରିୟତା, ରୁଚି, ପ୍ରଭାବ, ପ୍ରତିପତ୍ତି, ଶାସନ ପଦ୍ଧତି, ଦଣ୍ଡବିଧି, ସାଜସଜ୍ଜାର ଏକ ନିଖୁଣ ଚିତ୍ର ମିଳେ ।

ପ୍ରଭାତରେ ରାଜସଭା ଅନୁଷ୍ଠିତ ହୁଏ । ରାଜା ଗଜଦନ୍ତ ପଲଙ୍କରେ ଉଭା ହୋଇଥାନ୍ତି । କୋଳରେ ରାୟସାହେବ । ଏହି ସମୟରେ ପଡ଼ିଆରୀ, ଚୋପଦାର, ଦୁଆରୀ ପ୍ରଭୃତି ଖରଡ଼, ଶପ, ମସିଣା ପକାନ୍ତି । ପ୍ରଥମେ ଅନ୍ତଃପୁର ଲୋକେ ରାଜାଙ୍କୁ ଭେଟନ୍ତି । ଦରବାରୀ ହୁକା ପ୍ରସ୍ତୁତ କରି ଜରିଯୁକ୍ତ ନଳୀକୁ ରାଜାଙ୍କୁ ଧରାଇଦିଏ । ବୈଷ୍ଣବ, ବ୍ରାହ୍ମଣ ଓ ସନ୍ନ୍ୟାସୀମାନେ ରାଜାଙ୍କ ପାଖରେ ବସନ୍ତି । ବ୍ରାହ୍ମଣମାନେ ଶ୍ଳୋକ ପାଠ କରନ୍ତି । ପାଟଯୋଶୀ ଓ ପ୍ରହରାଜ ରାଜ୍ୟ ସମାଚାର ଜଣାନ୍ତି । ଜ୍ୟୋତିଷ ରାଜା, ରାଣୀ ଓ ରାଜପୁତ୍ରଙ୍କର ବର୍ତ୍ତମାନ ଦଶା ଗଣନାର ଫଳ ଶୁଣାନ୍ତି । ରାଜପୁତ୍, ପଠାଣ, ଜାଠ, ତେଲେଙ୍ଗା ଓ ମରାଠୀ ସିପାହିମାନେ ରାଜାଙ୍କୁ ସଶସ୍ତ୍ର ଅଭିବାଦନ ଜଣାନ୍ତି । ଦଳବେହେରା, ବକ୍ସି, ପ୍ରଧାନ, ପରିଚ୍ଛା ପ୍ରଭୃତି ରାଜାଙ୍କୁ ତାଙ୍କର ସେବା ବିବରଣୀ ଦିଅନ୍ତି । ଏହାଛଡ଼ା ରାଜବୈଦ୍ୟ, ପଶୁ ଚିକିତ୍ସକ, ବେତାଳ, ବାଉଁଶରାଣୀ, କେଳା, ଡାହାଣୀ, ଝାଡୁଆ, ଗାୟକ ପ୍ରଭୃତି ଜଣକ ପରେ ଜଣେ ରାଜାଙ୍କୁ ଭେଟନ୍ତି । ଗୋପାଳମାନେ ଦୁଗ୍ଧ, ଦଧି, ସର, ମିଷ୍ଟକଦ୍ରବ୍ୟ ସହିତ ଭେଟନ୍ତି । ରତ୍ନବିନ୍ଧାଣି କମକୃତ ଅଳଙ୍କାର, ଲୌହକାରକ ଲୌହ ନିର୍ମିତ ପଦାର୍ଥ ଭେଟି ଦିଅନ୍ତି । ସଭାଟି ସୁଧର୍ମା ପରାୟ ଶୋଭା ପାଉଥାଏ । କବିଙ୍କ ଭାଷାରେ –

"ସୁଧର୍ମା ପରାୟେ ସଭା ପୂରି ଦିଶୁଅଛି ଶୋଭା
କି ଉପମା ଦେବା ଅବା ନାହିଁ ଭାରତୀ ।"

ଏହାପରେ ରାଜକାର୍ଯ୍ୟ ଆରମ୍ଭ ହୁଏ । ରାଜ୍ୟର ବିଭିନ୍ନ ଅଞ୍ଚଳର ଖବର ରାଜାଙ୍କୁ ଶୁଣାଯାଏ । ରାଜା ମଧ୍ୟ ବିହିତ ଆଦେଶ ଦିଅନ୍ତି । ଦୋଷୀକୁ ଦଣ୍ଡ ଦିଆଯାଏ, ଯଥା –

"କାହା ପାଦେ ଲାଗେ ବେଡ଼ି କେବା ହରିକାଠେ ପଡ଼ି
କୋରଡ଼ାରେ ଯାଏ ଉଡ଼ି ଚମ କାହାର
ଯୋରି ମେଲିଆକୁ ଏ ଦଣ୍ଡ
କେବା ଶୂଳେ ଢେଙ୍କି ତଳେ
କେ ଖଣ୍ଡ ଖଣ୍ଡ ।"

କାହାକୁ କାହାକୁ ପୁରସ୍କାର ଦିଆଯାଏ, ଯଥା –

"କେ ପାଏ ସୁନା କଙ୍କଣ ମୁକୁତା ନୋଳି ସଙ୍ଗେଣ
କେ ସମୁଚା ଶିରୋପା କେ ପତନୀ ଶାଢ଼ି
ବାଜି ଶିରୋପା କେ ପାଇ କା ବର୍ତ୍ତନ ଚଢ଼ା ହୋଇ
ନଗଦ ଭାବେ କେ ଟଙ୍କା ନେଉଛି ଝାଡ଼ି ।"

ଦକ୍ଷିଣ ଦେଶରୁ ଆସିଥିବା ନର୍ତ୍ତକୀମାନେ ନୃତ୍ୟ କରନ୍ତି । ସେମାନଙ୍କ ଅଙ୍ଗଭଙ୍ଗୀ କାମ ଉଦ୍ଦୀପକ ହୋଇଥାଏ । ରାଜା ମଧ୍ୟ ସେମାନଙ୍କୁ ପୁରସ୍କାର ଦିଅନ୍ତି, ଯଥା –

"ଇନାମ ଯେ ହେଲା ଅଶେଷ
ସୁନା ମରକତ ମୋତି ଶାଲ ସୁବାସ ।"

ତା'ପରେ ପ୍ରବେଶ କରେ ଭାଣ୍ଡ । ତା'ର ଅଙ୍ଗଭଙ୍ଗୀ ଦେଖି ସମସ୍ତେ ହସି ହସି ଗଡ଼ିଯାନ୍ତି । ଦିନେ ସଭାରେ ରାଜା ସ୍ମିତ ହସି ଦଶ ଟଙ୍କା ଓ ଯୋଡ଼େ ଲୁଗା ପୁରସ୍କାର ଦେଉଥିବା କଥା କବି ଉଲ୍ଲେଖ କରିଛନ୍ତି ।

କବି ବ୍ରଜନାଥ ଶେଷରେ ସଭାରେ ଉପସ୍ଥିତ ହୋଇ ନିଜର ଦୈନ୍ୟତା ଜଣାଇଲେ । ସେ ମଧ୍ୟ ଏକ କବିତା ଗାନ କରିଥିଲେ । ରାଜା ନଗଦ ଶହେ ଟଙ୍କା ଓ ଆବଶ୍ୟକ ଖର୍ଚ୍ଚ ଦେଇଥିବାର ଜଣାଯାଏ ।

ଏହି କବିତାରେ କବି ଯେଉଁ ଚିତ୍ର ଦେଇଛନ୍ତି ତାହା ଉଣାଅଧିକେ ଓଡ଼ିଶାର ସବୁ ଗଡ଼ଜାତ ରାଜ୍ୟର ରାଜସଭାପାଇଁ ପ୍ରଯୁଜ୍ୟ ।

## ଚଉପଦୀ ସଙ୍ଗୀତ

ସାହିତ୍ୟିକ ଜୀବନର ମଧ୍ୟାହ୍ନରେ କବି କେତେକ ଚଉପଦୀ ସଙ୍ଗୀତ ରଚନା କରିଥିବା ଜଣାଯାଏ । ଉପେନ୍ଦ୍ର ଭଞ୍ଜ କେତେକ ଚଉପଦୀ ସଙ୍ଗୀତ ରଚନା କରିବା ପରେ ସେ ଯୁଗର କବିମାନେ ଚଉପଦୀ ରଚନାରେ ବ୍ରତୀ ହେଲେ । ବ୍ରଜନାଥ ମଧ୍ୟ ସେହି ପରମ୍ପରାରେ ଚଉପଦୀ ରଚନା କରିଛନ୍ତି । ତାଙ୍କ ରଚିତ ପନ୍ଦରଟି ଚଉପଦୀ ସଂଗୃହୀତ ହୋଇଛି ।

ଚଉପଦୀଗୁଡ଼ିକ ଦୁଇ ଶ୍ରେଣୀର । ଗୋଟିଏ ହେଲା ଭକ୍ତି ଭାବ ପ୍ରଣୋଦିତ, ଯଥା –

"ସଖୀ ଦେଖିଲି ମୁଁ ଆଜି ବ୍ରଜପତିଙ୍କି ଗୋ
ମନ–ଅଭିରାମ–ନବ–ଦ୍ୟୁତି କାନ୍ତିକି ଗୋ ।"

କିନ୍ତୁ ଉପେନ୍ଦ୍ର ଭଞ୍ଜଙ୍କ ପରି ତାଙ୍କର ବହୁ ଚଉପଦୀ ଶୃଙ୍ଗାରଭାବ ସମ୍ବଳିତ । ବର୍ଷା କାଳରେ ବିଦେଶରେ ନାୟକ କିପରି ତା'ର ପ୍ରଣୟିନୀ ସହ ବିଭିନ୍ନ ଦିନର

ଘଟଣାବଳୀକୁ ଚିନ୍ତା କରୁଛି, ତାହା କବି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି । ଅନ୍ୟାନ୍ୟ ପ୍ରଣୟ କାବ୍ୟମାନଙ୍କର ଶୃଙ୍ଗାର ଓ ରତିରସର ବର୍ଣ୍ଣନା ମଧ୍ୟ ଅତ୍ୟନ୍ତ ମନୋରମ ହୋଇଛି ।

## ରାଜନ୍ଙ୍କୁ ଛଳଉକ୍ତି

କବି ରାଜ-ପୃଷ୍ଠପୋଷକତା ଲାଭ କରିବାକୁ ଚେଷ୍ଟିତ ଥିଲେ ମଧ୍ୟ ଆତ୍ମମର୍ଯ୍ୟାଦାକୁ ବଳି ଦେଇ ନାହାନ୍ତି । ସେ ଆପଣାର ସାହିତ୍ୟସୃଷ୍ଟିକୁ ଯଥାସମ୍ଭବ ଏଥିରୁ ମୁକ୍ତ ରଖିବାକୁ ଚେଷ୍ଟା କରିଛନ୍ତି । 'ରାଜନ୍‌ଙ୍କୁ ଛଳଉକ୍ତି' ଏକ ପଦ୍ୟ ପତ୍ର । ଏହି ପଦ୍ୟ ପତ୍ର ଲେଖି ସେ ଭାଗଚାଷୀମାନଙ୍କର ଦୌରାତ୍ମ୍ୟ, ହଳ, ବଳଦ ଓ ବିହନର ଅଭାବ ପ୍ରଭୃତି ରାଜାଙ୍କୁ ଜଣାଇଛନ୍ତି । ଅବସ୍ଥାର ମଧ୍ୟ କିଞ୍ଚିତ୍ ପରିବର୍ତ୍ତନ ଘଟିଛି । ପତ୍ରରେ ଦୁଃଖଦୁର୍ଦ୍ଦଶା ଦୃଢ଼ତାର ସହ ଉପସ୍ଥାପିତ ହୋଇଛି, ଯଥା –

''ବର୍ତ୍ତମାନ ମୋତେ ଗୋସାଇଁ ଦେଇଛି ପ୍ରଭୁଙ୍କ ନୃପତି ସୁଖ
ନ ଜାଣିବା ଲୋକେ ବୋଲନ୍ତି ପାଇଲେ ବଡ଼ଜେନାଏ କି ଦୁଃଖ ।''

ଏଥିରେ କବି ବ୍ରଜନାଥ ସ୍ଥାନ, କାଳ ଓ ପାତ୍ରର ପ୍ରଭାବର ବହୁ ଊର୍ଦ୍ଧ୍ୱକୁ ଯେ ଉଠିପାରିଛନ୍ତି, ଏହା ଅତି ସ୍ୱଷ୍ଟ ।

## ଗୁଣ୍ଡିଚାବିଜେ

ସମ୍ଭବତଃ କବି ନିର୍ବାସିତ ଜୀବନ ପୁରୀରେ କଟାଇଥିଲେ । ସେଠାରେ ସେ ମଧ୍ୟ ସାରସ୍ୱତ ସାଧନାରେ ନିଜକୁ ନିୟୋଜିତ କଲେ । ସେଠାରେ ସେ ହିନ୍ଦୀ ଭାଷାରେ 'ଗୁଣ୍ଡିଚାବିଜେ' ରଚନା କରିଥିଲେ୍ । ସେ ଠାକୁରରାଜା ଦିବ୍ୟସିଂହଦେବଙ୍କୁ ସାକ୍ଷାତ କରି ତାଙ୍କ ରଚିତ ହିନ୍ଦୀ କାବ୍ୟ 'ଗୁଣ୍ଡିଚାବିଜେ' ଭେଟି ଦେଇଥିଲେ ।

କବି ଏହି କାବ୍ୟରେ ରଥଯାତ୍ରାର ଆରମ୍ଭରୁ ଶେଷ ପର୍ଯ୍ୟନ୍ତ ସମସ୍ତ ପ୍ରସଙ୍ଗକୁ ବିଶଦଭାବେ ବର୍ଣ୍ଣନା କରିଛନ୍ତି ।

ଆଷାଢ଼ମାସ ଶୁକ୍ଳପକ୍ଷ ଦ୍ୱିତୀୟା ଦିନ ସକାଳେ ଖେଚେଡ଼ି ଭୋଗ ପରେ ଆଡ଼ମ୍ବର ସହକାରେ ବିଗ୍ରହମାନଙ୍କୁ ପହଣ୍ଡି କରାଇ ରଥକୁ ଅଣାଯାଏ । ରଥମାନଙ୍କର ବିଚିତ୍ର ମଣ୍ଡଣି କବି ଅତି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି । ଏହି ଯାତ୍ରା ଦେଖିବାପାଇଁ ଦେଶ ବିଦେଶରୁ ଯାତ୍ରୀମାନେ ଆସିଛନ୍ତି । ସେମାନଙ୍କର ବର୍ଣ୍ଣନା କରିଛନ୍ତି, ଯଥା –

''ଅଙ୍ଗ ବଙ୍ଗ ଗଙ୍ଗ କାଶୀ କାଶ୍ମୀର କଳିଙ୍ଗବାସୀ
ନେପାଳ ପାଞ୍ଚାଳ ଦେଶୀ ସୁଲତାନ ଲାହୋର କା
ଲୋକ ଯେ ପହଞ୍ଚୟେ କ୍ଷେତ୍ର
ଦେଖିୟେ କମଲ୍‌କୀ ନେତ୍ର
ଭାବମେ ପୁଲକ ଗାତ୍ର ଦୁଃଖ କୋ ବିସୋରକେ ।''

ଏପରିକି ବମ୍ବେ, ଦିଲ୍ଲୀ, ବିଲାତ ପ୍ରଭୃତି ବହୁଦୂରରୁ ଯାତ୍ରୀମାନେ ଆସିଛନ୍ତି, ଯଥା –

''ବୁନ୍ଦେଲଖଣ୍ଡ ବିଲାତ ରାଏରଙ୍ଗପୁରକେ
ଦିଲ୍ଲୀ ମାଳବ କଛ ବିରାଟ ଐସେ ବହୁଦୂରକେ ।''

ଗଜପତି ମହାରାଜାଙ୍କ ଛେରାପହଁରା, ରଥରେ ଦଉଡ଼ି ଭିଡ଼ା ଓ ଶେଷରେ ରଥ ଦୃଶ୍ୟ ବର୍ଣ୍ଣନା ଅତୀବ ବାସ୍ତବ ହୋଇପାରିଛି । ରଥ ଟଣା ସମୟର ଶବ୍ଦକୁ ମଧ୍ୟ କବି ଲକ୍ଷ୍ୟ କରିଛନ୍ତି -

''ଘନ ଘନ ଘନ ସ୍ୟନ୍ଦନବର
ଧୀରେ ଧୀରେ ଗମନ କରିତ
ଟନ ଟନ ଟନ ଟନ କରତ ଘୁଂଘୁଂର ଘଟି ଘଟ ଟଙ୍କାର ତ

× × ×

ଘୁଂ ଘୁଂ ଫୁ ଫୁ ଘନ ଘୋର ଗମ୍ଭୀର ଧ୍ୱନି ଛୁଟିତ ।''

ରଥ ଟଣା ସମୟରେ ଡାହୁକଙ୍କ ଅସଭ୍ୟ ଭାଷାରେ ଗାଳି ମଧ୍ୟ କବିଙ୍କ କାନରେ ପଡ଼ିଛି –

''ସାରଥି ଭଣ୍ଡମେ ଗାଲି ଦିଏ ଯବ୍ ଖୁସ୍ ଚଲେ ତବ, ରାମବିଭାଇ ।''

ରଥ ଗୁଣ୍ଡିଚା ମନ୍ଦିରରେ ପହଞ୍ଚିଛି । ଭକ୍ତଗଣ ଠାକୁରଙ୍କୁ ଦର୍ଶନ କରନ୍ତି । ଠାକୁର ସେଠାରେ ନଅ ଦିନ ରହିଛନ୍ତି । ପୁଣି ପ୍ରଭୁଙ୍କର ବାହୁଡ଼ାଯାତ୍ରା ଆରମ୍ଭ ହୋଇଛି । ଜଗନ୍ନାଥ ଆନନ୍ଦ ମନରେ ବଡ଼ଦେଉଳକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ଭକ୍ତଗଣ ମଧ୍ୟ ଆନନ୍ଦରେ ବିଭୋର ହୋଇଉଠନ୍ତି ।

''ନୟନ ମେ ଆନନ୍ଦ ନୀର ଝରେ
ଭର ପୁଲକ ସେ ତନୁଫୁଲ ।''

ପ୍ରଭୁ ସିଂହଦ୍ୱାରରେ ଉପସ୍ଥିତ ହୋଇଛନ୍ତି । ମା' ଲକ୍ଷ୍ମୀଙ୍କ ଆଦେଶରେ ଦ୍ୱାର ବନ୍ଦ ରହିଛି । ଜଗନ୍ନାଥ ଅନୁନୟ କରନ୍ତି ଦୂତୀ ଜରିଆରେ । ଶେଷରେ ଲକ୍ଷ୍ମୀ ଆସି ଜଗନ୍ନାଥଙ୍କୁ ଭର୍ତ୍ସନା କରନ୍ତି –

"ନୀଳାଚଳବାସୀ ହୋ ତବ ମୁଖେ ନାହିଁ ଲାଜ
ବିନା ଅପରାଧେ ଘରଣୀ ଘର ଛୋଡ଼କେ ନାମ ଲିଏ ଦେବରାଜ ।"

ଜଗନ୍ନାଥ କାକୁତି ମିନତି ହୋଇଛନ୍ତି । ମାନଭଞ୍ଜନ ପରେ ଦ୍ୱାର ଖୋଲିଛି । ଶେଷରେ ଠାକୁର ଠାକୁରାଣୀ କେଳି-କୌତୁକରେ ମଜ୍ଜିଛନ୍ତି ।

କାବ୍ୟର ଭାଷା ସରଳ । ଅନୁପ୍ରାସ, ଯମକାଦି ଅଳଙ୍କାରରେ ଏହା ପୂର୍ଣ୍ଣ । ଢୁହା ଗୀତ, ଚୂର୍ଣ୍ଣକ ପ୍ରଭୃତି ବ୍ୟବହାର କରି କବି କାବ୍ୟକୁ ସରସ କରିପାରିଛନ୍ତି ।

କାବ୍ୟଟି କ୍ଷୁଦ୍ର ହେଲେ ମଧ ଏହା କବିଙ୍କ ହିନ୍ଦୀ ଭାଷାରେ ପ୍ରବୀଣତା, ପାଣ୍ଡିତ୍ୟ, ବର୍ଣ୍ଣନା କୁଶଳତା ଓ ସୌନ୍ଦର୍ଯ୍ୟବୋଧର ଅପୂର୍ବ ନିଦର୍ଶନ ।

**ବଙ୍ଗଳା ସ୍ତୁତି**

କବିଙ୍କର ବଙ୍ଗଳା ଭାଷାରେ ଦକ୍ଷତା ଥିଲା ବୋଲି ପୂର୍ବରୁ ବର୍ଣ୍ଣିତ ଅଛି । ଅମ୍ବିକା ବିଳାସର ଷଟତ୍ରିଂଶ ଛାନ୍ଦରେ ବଙ୍ଗଳା ସ୍ତୁତି ସନ୍ନିବେଶିତ କରିଛନ୍ତି, ଯଥା –

"ଅପୂର୍ଣ୍ଣା ଦେବୀର ସ୍ୱାମୀ ତୋମାର ଚରନେ ଆମି
ଭୂତି ଭୂତ ସବେ କବେ ହୈବ
ଅପାର ଐ ଭବନଦୀ ତରିତେନା ଦିଶେ ବୁଦ୍ଧି
ଯଦ୍ୟପି ନା ଦିବେ ଦୟାନାବ୍ ।"

**ଅନ୍ୟାନ୍ୟ ଭାଷାରେ ରଚନା**

କବି ସଂସ୍କୃତ ଭାଷାରେ 'ମନୋଦୂତମ୍' ନାମକ କାବ୍ୟ ରଚନା କରିଥିଲେ । କବି ତେଲୁଗୁ ଭାଷାର ପାଣ୍ଡିତ୍ୟ ଥିବା କଥା ପ୍ରକାଶ କରିଛନ୍ତି । ଦକ୍ଷିଣ-ଓଡ଼ିଶାର ଗଡ଼ଜାତ ରାଜାମାନଙ୍କ ପାଖରେ ଥିଲାବେଳେ ସେ ତେଲୁଗୁ ଭାଷାର କାବ୍ୟ-କବିତାମାନ ରଚନା କରି ରାଜାମାନଙ୍କୁ ଦେଉଥିଲେ । ତାହାଙ୍କ ରଚିତ ତେଲୁଗୁ ପୁସ୍ତକ ଏପର୍ଯ୍ୟନ୍ତ ମିଳି ନାହିଁ ।

**ଶେଷ ଜୀବନ**

୧୮୦୦ ମସିହାରେ ଶ୍ରୀକ୍ଷେତ୍ରରେ କବିଙ୍କର ଜୀବନଦୀପ ନିର୍ବାପିତ ହୋଇଥିଲା । ତାଙ୍କର ପତ୍ନୀ ହାରାଦେବୀ ସତୀ ହୋଇଥିଲେ । ଜାଇଫୁଲର ମାଳା ପରିଧାନ କରି ସେ ସତୀ ହୋଇଥିବାରୁ ତାଙ୍କ ବଂଶଧରମାନେ ଜାଇଫୁଲକୁ ଦେହରେ ଧାରଣ କରନ୍ତି । ତାଙ୍କର ତିନି ଗୋଟି ପୁତ୍ର ଥିଲେ । ସେମାନଙ୍କ ବଂଶଧରମାନେ ଅଦ୍ୟାବଧି କାବେରା ଗ୍ରାମରେ ବାସ କରୁଛନ୍ତି ।

କବି ସ୍ୱହସ୍ତରେ ପ୍ରସ୍ତରରେ ହନୁମାନ ବିଗ୍ରହ ନିର୍ମାଣ କରି ପୂଜା କରୁଥିଲେ । ଏବେବି ସେହି ମୂର୍ତ୍ତି ସେହି ଗ୍ରାମରେ ପୂଜା ପାଉଛନ୍ତି । ପ୍ରତିବର୍ଷ ମଧ୍ୟ ହନୁମାନ ମନ୍ଦିର ସମ୍ମୁଖରେ ବଡ଼ଜେନା ଜୟନ୍ତୀ ପାଳିତ ହେଉଅଛି । ତାଙ୍କର ସ୍ମୃତିକୁ ଚିର ଜାଗ୍ରତ କରିବାପାଇଁ ଢେଙ୍କାନାଳ ଜିଲ୍ଲା ସ୍କୁଲକୁ ବ୍ରଜନାଥ ବଡ଼ଜେନା ଉଚ୍ଚ ବିଦ୍ୟାଳୟ ନାମରେ ନାମିତ କରାଯାଇଛି ।

ଉତ୍କଳର କବି ବ୍ରଜନାଥ ବଡ଼ଜେନା ଥିଲେ ଏକାଧାରରେ କବି, କଥାକାର, ଶିଳ୍ପୀ ଓ ପଣ୍ଡିତ । କେବଳ ଓଡ଼ିଆ ଭାଷାରେ ନୁହେଁ, ସଂସ୍କୃତ, ପ୍ରାକୃତ, ହିନ୍ଦୀ, ବଙ୍ଗଳା, ତେଲୁଗୁ ପ୍ରଭୃତି ବିଭିନ୍ନ ଭାଷାରେ ତାଙ୍କର ପାଣ୍ଡିତ୍ୟ ଥିଲା । ଏପରିକି ପାର୍ଶୀ ଓ ଆରବ ଭାଷାରେ ତାଙ୍କର ଦଖଲ ଥିଲା । ଏତେବଡ଼ ପ୍ରତିଭାର ଅଧିକାରୀ ହୋଇ ସେ ନିଃସ୍ୱ ଓ ଅଭିଶପ୍ତ ଜୀବନଯାପନ କରୁଥିଲେ । ଦାରିଦ୍ର୍ୟର କ୍ରୂର କଶାଘାତରେ ସେ ତିଳେ ତିଳେ ପେଷି ହୋଇଯାଉଥିଲେ । ସେ ମଧ୍ୟ ଚାଟୁକାର ନ ଥିଲେ । ତାଙ୍କ ପ୍ରଣୀତ କାବ୍ୟକବିତାରୁ ଜଣାଯାଏ ଯେ ସେ ବହୁବାର ଉତ୍‌ଥାନ ଓ ପତନର ସମ୍ମୁଖୀନ ହୋଇଛନ୍ତି । ଜୀବିକା ଅର୍ଜନପାଇଁ ବହୁ ରାଜାଙ୍କର ଦ୍ୱାରସ୍ଥ ହୋଇଛନ୍ତି । ମାତ୍ର କିଛି କାଳ ପରେ ନୀତିଗତ ସଂଘର୍ଷ ଦେଖାଦେଇଛି । ସେ ପୁଣି ହୋଇଛନ୍ତି ଦେଶାନ୍ତରୀ । ଏପରିକି ପ୍ରଧାନ ପୃଷ୍ଠପୋଷକ ଢେଙ୍କାନାଳ ରାଜାଙ୍କ ଚରିତ୍ରର ଦୋଷତ୍ରୁଟି ପ୍ରଦର୍ଶନ କରିବାକୁ କୁଣ୍ଠବୋଧ କରି ନାହାନ୍ତି । କ୍ରମେ ତାଙ୍କର ସାହିତ୍ୟିକ ଜୀବନ ପରିଧି ପରିବ୍ୟାପ୍ତ ହୋଇଛି । ପଦ୍ୟ ପରି ଗଦ୍ୟ ଯେ ସାହିତ୍ୟର ଅନୁକୂଳ, ତାହା ସେ ପରୀକ୍ଷା କରିଛନ୍ତି ଓ ସେଥିରେ ସେ ସଫଳତା ହାସଲ କରିଛନ୍ତି । ସେଥିପାଇଁ ସେ ଓଡ଼ିଆ ସାହିତ୍ୟର ବଟିଘର ହୋଇ ରହିଛନ୍ତି ।

ଓଡ଼ିଶାର ଜଣେ ବିଶିଷ୍ଟ କବି ଓ ସାହିତ୍ୟିକ ଡଃ ମାୟାଧର ମାନସିଂହ କହିଛନ୍ତି ଯେ ବ୍ରଜନାଥ ହେଉଛନ୍ତି ପ୍ରାଚୀନ କବିମାନଙ୍କ ମଧ୍ୟରେ ସବୁଠାରୁ ପ୍ରଗତିଶୀଳ, ସର୍ବାଧିକ ଆଧୁନିକ, ସାହସୀ, ମାର୍ଗପ୍ରଦର୍ଶକ, ଅଭିନବ ମୌଳିକ ସ୍ରଷ୍ଟା ।



## କବିବର
# ରାଧାନାଥ ରାୟ

ଊନବିଂଶ ଶତାବ୍ଦୀର ମଧ୍ୟଭାଗରେ ପାଶ୍ଚାତ୍ୟ ସାହିତ୍ୟ ପ୍ରଭାବରେ ଆଧୁନିକ ସାହିତ୍ୟ ଗଢ଼ିବାରେ ଯେଉଁମାନେ ଆଗେଇ ଆସିଥିଲେ, ସେମାନଙ୍କ ମଧ୍ୟରେ ରାଧାନାଥ ରାୟ ହେଉଛନ୍ତି ସର୍ବପ୍ରଥମ ଓ ସର୍ବଶ୍ରେଷ୍ଠ ମଧ୍ୟ । ସେ ଯେତେବେଳେ ସାରସ୍ୱତ ସାଧନା ଆରମ୍ଭ କଲେ, ତାଙ୍କୁ ବହୁ ସଙ୍କଟର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତଥାପି ଅବିଚଳିତଭାବେ ସେ ସାହିତ୍ୟ ସାଧନାରେ ଲାଗିପଡ଼ିଲେ ଓ ଯାହା ସୃଷ୍ଟି କଲେ ତାହା ହେଲା ଅନନ୍ୟ ସାଧାରଣ । କେହି କେହି ତାଙ୍କ ସାହିତ୍ୟକୁ ରୀତିଯୁଗର ଶେଷ ପ୍ରତିଧ୍ୱନି ବୋଲି କହିଥାନ୍ତି । ମାତ୍ର ସେ ପ୍ରାଚୀନ କାବ୍ୟସାହିତ୍ୟ ପରମ୍ପରାକୁ ବିଦାୟ ଦେବାରେ ହୋଇଛନ୍ତି କର୍ଣ୍ଣଧାର । ପୁଣି ନୂତନ ସାହିତ୍ୟର କରିଛନ୍ତି ଅଭିଷେକ । ସେ ହୋଇଗଲେ ପରବର୍ତ୍ତୀ କବିମାନଙ୍କର ପ୍ରେରଣାର ଉତ୍ସ । ସେଥିପାଇଁ ରାଧାନାଥ କେବଳ କବିବର ନୁହେଁ, ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗପ୍ରବର୍ତ୍ତକ ଭାବେ ସମ୍ମାନ ଲାଭ କରିଛନ୍ତି ।

### ଜନ୍ମ ଓ ଶିକ୍ଷାଲାଭ

ବାଲେଶ୍ୱର ଜିଲ୍ଲାର ସୋରୋ ନିକଟସ୍ଥ କାୟସ୍ଥବହୁଳ କେଦାରପୁରରେ ରାଧାନାଥ ୧୮୪୮ ମସିହା ସେପ୍ଟେମ୍ବର ମାସ ୨୮ ତାରିଖରେ ଜନ୍ମ ଗ୍ରହଣ

କରିଥିଲେ । ତାଙ୍କର ପିତାଙ୍କ ନାମ ସୁନ୍ଦରନାରାୟଣ ଓ ମାତାଙ୍କ ନାମ ତାରିଣୀଦେବୀ । ପିତା ବାଲେଶ୍ୱର କଚେରିରେ ଜଣେ ଅମଲା ଥିଲେ । ପାଞ୍ଚ ବର୍ଷ ବୟସରେ ତାଙ୍କ ମାତାଙ୍କର ମୃତ୍ୟୁ ହେଲା । ପିତା ତେଣୁ ଦ୍ୱିତୀୟ ବିବାହ କଲେ । ବିମାତା ହେଲେ ମଧ ସେ ଦୟା, ସ୍ନେହ ବଳରେ ରାଧାନାଥଙ୍କର ହୃଦୟ ଜୟ କରିବାକୁ ଚେଷ୍ଟା କରିଥିଲେ । ମାତ୍ର ରାଧାନାଥ ଥିଲେ ମମତାକାଙ୍ଗାଳ । ମାତୃବିୟୋଗ ଦୁଃଖ ଆଜୀବନ ତାଙ୍କର ସହଚର ହୋଇ ରହିଥିଲା ।

ରାଧାନାଥ ପ୍ରଥମେ ମାଟିବଂଶ ଅବଧାନଙ୍କ ପାଖରେ ଶିକ୍ଷା ଲାଭ କଲେ । ଏହାପରେ ୧୮୫୮ ମସିହାରେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ନାମ ଲେଖାଇଲେ । ତାଙ୍କର ଶିକ୍ଷା ପ୍ରତି ପିତାଙ୍କର ସଜାଗ ଦୃଷ୍ଟି ଥିଲା । ତାଙ୍କର କଠୋର ଶାସନ ଭିତରେ ରହି ସେ ଶିକ୍ଷା ଲାଭ କଲେ । ସେ ମେଧାବୀ ଛାତ୍ର ଥିଲେ । ଶିକ୍ଷା ପ୍ରତି ତାଙ୍କର ଆନ୍ତରିକତା ଥିଲା । ଅବସର ସମୟରେ ସେ ବିଭିନ୍ନ ଭାଷା ଶିକ୍ଷା କରିଥିଲେ । ବହୁ ଗ୍ରନ୍ଥ ମଧ ଅଧୟନ କରିଥିଲେ ।୧୮୬୩ ମସିହାରେ ସେ ପ୍ରବେଶିକା ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେଲେ । ସେ ମଧ ମାସକୁ ୧୪ଟଙ୍କା ବୃତ୍ତି ପାଇଲେ । ଏହାପରେ ସେ କଲିକତାର ପ୍ରେସିଡେନ୍‌ସି କଲେଜରେ ଏଫ୍.ଏ. ଶ୍ରେଣୀରେ ନାମ ଲେଖାଇଲେ । ମାତ୍ର ଦୁର୍ବଳ ସ୍ୱାସ୍ଥ୍ୟ ଓ ରୁଗ୍‌ଣ ଶରୀର ପାଠ ପଢ଼ାରେ ବାଧା ସୃଷ୍ଟି କଲା । ସେ ଉଚ୍ଚ ଶିକ୍ଷା ଆଶା ଛାଡ଼ି ବାଲେଶ୍ୱର ଫେରିଆସିଲେ ।

## କର୍ମନିଯୁକ୍ତି ଓ ବିବାହ

୧୮୬୪ ମସିହାରେ ରାଧାନାଥ ବାଲେଶ୍ୱର ଜିଲ୍ଲା ସ୍କୁଲର ତୃତୀୟ ଶିକ୍ଷକଭାବେ ଯୋଗ ଦେଲେ । ସେହି ସମୟରେ ସେ ସଂସ୍କୃତ, ବଙ୍ଗଳା ଓ ଇଂରାଜୀ ଗ୍ରନ୍ଥମାନ ଅଧୟନ କରିଥିଲେ । ଫକୀରମୋହନ ସେନାପତି, ରାଜା ବୈକୁଣ୍ଠନାଥ ଦେ ପ୍ରଭୃତି ବହୁ ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କ ସମ୍ପର୍କରେ ଆସିଥିଲେ । ୧୮୬୯ ମସିହା ଜାନୁଆରୀ ମାସ ୧୪ ତାରିଖରେ ରାଧାନାଥ ଦ୍ୱିତୀୟ ଶିକ୍ଷକଭାବେ ପୁରୀ ବଦଳି ହେଲେ । ସେହିବର୍ଷ ସେ ଘରୋଇଭାବେ ଏଫ୍.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେତେବେଳେ ପୁରୀ ଜିଲ୍ଲା ସ୍କୁଲର ଛାତ୍ର ଥିଲେ ମଧୁସୂଦନ ରାଓ । ଉଭୟେ ସାହିତ୍ୟ ଆଲୋଚନା କରୁଥିଲେ । ସେ ମଧ ବହୁ ପୁସ୍ତକ ଅଧୟନ କରିଥିଲେ ।

୧୮୭୦ ମସିହାରେ ପରଶମଣି ଦେବୀଙ୍କ ସହିତ ରାଧାନାଥଙ୍କର ବିବାହ ହେଲା । ୧୮୭୨ ମସିହା ଜାନୁଆରୀ ମାସ ୧୦ ତାରିଖରେ ସେ ବାଙ୍କୁଡ଼ା ଜିଲ୍ଲା

ସ୍କୁଲରେ ଦ୍ୱିତୀୟ ଶିକ୍ଷକଭାବେ ଯୋଗ ଦେଲେ । ଉଦାର, ଉନ୍ନତ ଓ ଶାନ୍ତ ବ୍ୟକ୍ତିତ୍ୱ ବଳରେ ସେ ଛାତ୍ରମାନଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ସେ ବାଙ୍କୁଡ଼ାରୁ ବିଦାୟ ନେବାବେଳେ ତାଙ୍କୁ ଯେପରି ସମ୍ବର୍ଦ୍ଧନା ଦିଆଯାଇଥିଲା, ତାହା ତାଙ୍କ ପକ୍ଷେ ଥିଲା ସର୍ବଶ୍ରେଷ୍ଠ ସମ୍ମାନ ।

ସେ ବାଲେଶ୍ୱର ଜିଲ୍ଲାସମୂହର ଡେପୁଟି ଇନ୍‌ସପେକ୍ଟର ଭାବେ ୧୮୭୨ ମସିହା ଜୁଲାଇ ମାସ ୨୬ ତାରିଖରେ ଯୋଗ ଦେଲେ । ଏହି ସମୟରେ ମଧୁସୂଦନ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକଭାବେ ଯୋଗ ଦେଇଥାନ୍ତି । ଉଭୟଙ୍କର ପୁଣି ହେଲା ମିଳନ । ୧୮୭୩ ମସିହାରେ 'ଉତ୍କଳ ଦର୍ପଣ' ପ୍ରକାଶ ପାଇଲା । ଏହା ମାଧ୍ୟମରେ ଉଭୟଙ୍କର ସାରସ୍ୱତ ପ୍ରତିଭାର ବିକାଶ ଘଟିଲା ।

୧୮୭୭ ମସିହା ନଭେମ୍ବର ମାସ ୨୬ ତାରିଖରେ ରାଧାନାଥ ଓଡ଼ିଶାର ଶିକ୍ଷାବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ଭାବେ ନିଯୁକ୍ତ ହେଲେ । ସେ ତେଣୁ କଟକରେ ଅବସ୍ଥାନ କଲେ । ସେହି ସମୟରେ ସେ ବଙ୍ଗଳାର ବିଶିଷ୍ଟ କବି ଭୂଦେବ ମୁଖୋପାଧ୍ୟାୟଙ୍କ ସହ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଦର୍ଶନ କରିଥିଲେ । ଉତ୍କଳର ଅପରୂପ ପ୍ରାକୃତିକ ଦୃଶ୍ୟ ଦେଖି ସେ ବିମୋହିତ ହୋଇପଡ଼ିଲେ । ସେ ବଙ୍ଗଳାରେ କବିତା ଲେଖା ଛାଡ଼ି ଓଡ଼ିଆ କାବ୍ୟକବିତା ରଚନାରେ ସମ୍ପୂର୍ଣ୍ଣ ମନୋନିବେଶ କଲେ । ୧୮୮୩ ମସିହାରେ ସେ ଓଡ଼ିଶାର ବିଭିନ୍ନ ସ୍ଥାନ ପରିଦର୍ଶନ କରିବାର ସୁଯୋଗ ପାଇଥିଲେ । ୧୮୮୬ ମସିହାରେ ସେ ବାମଣ୍ଡା ଯାଇ ସେଠାରେ ରାଜା ସାର୍ ବାସୁଦେବ ସୁଢଳଦେବଙ୍କ ଆତିଥ୍ୟ ଗ୍ରହଣ କରିଥିଲେ । ତାଙ୍କୁ ବିଶିଷ୍ଟ କବି ଭାବେ ସେଠାରେ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା ।

୧୮୯୨ ମସିହା ଜୁନ୍ ମାସ ୨୧ ତାରିଖରେ ସେ ଓଡ଼ିଶାର ସ୍କୁଲ ସମୂହର ଇନ୍‌ସପେକ୍ଟର ଭାବେ ନିଯୁକ୍ତ ହେଲେ । ୧୮୯୬ ମସିହାରେ ସରକାର ତାଙ୍କୁ ରାୟବାହାଦୁର ଉପାଧିରେ ଭୂଷିତ କରିଥିଲେ ।

## ବଙ୍ଗଳା ରଚନା

ରାଧାନାଥ ପ୍ରଥମେ ବଙ୍ଗଳାରେ କବିତା ରଚନା କରିଥିଲେ । ସେ ଜାଣି ନ ଥିଲେ ଯେ ଓଡ଼ିଆ ସାହିତ୍ୟ ସାଧନା କ୍ଷେତ୍ରରେ ସେ ଦିନେ ଯଶସ୍ୱୀ ହେବେ । ମାଇକେଲ ମଧୁସୂଦନ ଦତ୍ତଙ୍କ ରଚିତ କେତୋଟି ସନେଟରେ ଅନୁପ୍ରାଣିତ ହୋଇ ୧୮୬୮ ମସିହାରେ କବିତାବଳୀର ପ୍ରଥମ ଭାଗ ଓ ପରେ ଦ୍ୱିତୀୟ ଭାଗ ବଙ୍ଗଳାରେ ରଚନା କଲେ । ସେଥିରେ ସେ ଉତ୍କଳ

ଜନନୀର ଦୁର୍ଦ୍ଦଶା ସମ୍ପର୍କରେ ଲେଖିଥିଲେ । ମଧ୍ୟଯୁଗୀୟ ଶ୍ରେଷ୍ଠ ରୀତି କବି ଉପେନ୍ଦ୍ର ଭଞ୍ଜଙ୍କ ପ୍ରତି ତାଙ୍କର ଗଭୀର ସମ୍ମାନ ଥିଲା । ସେ କବିଙ୍କୁ ଆପଣାର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି –

"ଧନ୍ୟ ରାଜକବି ତୁମି ! ଜନମି ସୁକ୍ଷଣେ
ଗ୍ରହନିଲା ପ୍ରଦେଶ ହେ କବୀନ୍ଦ୍ର ମଣି ।
× × ×
ସାଜାୟେଛ ବୈଦେହୀଶ ହେ କବି ରତନ
ତୋମା ବିନା ସାଧ୍ୟକାର ସାଜୟ ଏମନ ।"

ମାଇକେଲ ମଧୁସୂଦନ ଦତ୍ତଙ୍କ 'ବୀରାଙ୍ଗନା' କାବ୍ୟ ଆଦର୍ଶରେ ଅମିତ୍ରାକ୍ଷର ଛନ୍ଦରେ ତାଙ୍କ କବିତାଗୁଡ଼ିକ ରଚିତ ହେଲେ ମଧ୍ୟ ସେଗୁଡ଼ିକ ମାଇକେଲ ମଧୁସୂଦନ ଦତ୍ତଙ୍କ କବିତାଠାରୁ ଉଚ୍ଚକୋଟୀର ଥିଲା ବୋଲି ସେତେବେଳେ ଅମୃତବଜାର ପତ୍ରିକା ମନ୍ତବ୍ୟ ଦେଇଥିଲେ ।

## ଓଡ଼ିଆ ରଚନା

ଓଡ଼ିଶାରେ ସେତେବେଳେ ଫକୀରମୋହନ କେବଳ ଓଡ଼ିଆରେ ଲେଖାଲେଖି କରୁଥିଲେ । ତାହା ଓଡ଼ିଆ ହିତୈଷୀ ମାଜିଷ୍ଟ୍ରେଟ୍ ଜନ୍ ବୀମ୍‌ସଙ୍କ ଦୃଷ୍ଟିକୁ ଆସୁଥାଏ । ରାଧାନାଥଙ୍କ ସଙ୍ଗେ ଦିନେ କଥାବାର୍ତ୍ତା ହେଉଥିବାବେଳେ ବୀମ୍‌ସ କହିଲେ –

"ଫକୀରମୋହନ ଏକାକୀ ଲେଖୁଛି । ତମେମାନେ ସବୁ କେହି ଲେଖୁ ନାହଁ । ବଡ଼ ଲଜ୍ଜାର ବିଷୟ ।"

ବୀମ୍‌ସଙ୍କର ଏହି କଥା ପଦକ ରାଧାନାଥଙ୍କ ମନକୁ ଛୁଇଁଲା । ସେ ସାନ୍ଧ୍ୟଭ୍ରମଣ ବେଳେ ଫକୀରମୋହନଙ୍କୁ କହିଲେ ଯେ ସେ ଓଡ଼ିଆରେ ଲେଖାଲେଖି କରିବାକୁ ଚେଷ୍ଟା କରିବେ ।

ଫକୀରମୋହନଙ୍କ ଉଦ୍ୟମରେ ବାଲେଶ୍ୱରରୁ 'ବାଲେଶ୍ୱର ସମ୍ବାଦ ବାହିନୀ' ଓ 'ବୋଧଦାୟିନୀ' ପ୍ରକାଶ ପାଇଲା । ଗୌରୀଶଙ୍କର ମଧ୍ୟ ପ୍ରକାଶ କଲେ 'ଉତ୍କଳ ଦୀପିକା' । 'ଉତ୍କଳ ଦର୍ପଣ'ର ପ୍ରଧାନ ଉଦ୍ୟୋଗୀ ହେଲେ ରାଧାନାଥ । ଏହି ପତ୍ରିକାଗୁଡ଼ିକ ବଜାଇଲେ ଓଡ଼ିଆ ସାହିତ୍ୟର ଶୁଭଶଙ୍ଖ ।

ରାଧାନାଥଙ୍କର ପ୍ରଥମ ଗଦ୍ୟ ରଚନା ହେଉଛି 'ବିବେକୀ' ୧୮୭୩ ମସିହାରେ 'ଉତ୍କଳ ଦର୍ପଣ'ରେ ପ୍ରକାଶ ପାଇଲା ।

## ବିବେକୀ

ଏହା ଓଡ଼ିଆ ସାହିତ୍ୟର ପ୍ରଥମ ପ୍ରବନ୍ଧ ରଚନା । ଏଥିରେ ମଣିଷ ଚରିତ୍ର ଓ ପ୍ରବୃତ୍ତି ବିଷୟରେ ଆଲୋଚନା କରାଯାଇଛି । ମଣିଷ ଜୀବନ ଦୁଃଖପୂର୍ଣ୍ଣ । ରୋଗ ଶୋକ ତା'ର ନିତ୍ୟ ସହଚର । ମନୁଷ୍ୟ କିନ୍ତୁ ଦୃଢ଼ ରହିପାରିଲେ ସବୁ କଷ୍ଟ ଦୂର ହୁଏ । ବିବେକର ଯଥାର୍ଥ ପ୍ରୟୋଗଦ୍ୱାରା ମଣିଷ ସବୁ ପ୍ରକାର ଦୁଃଖ, ଯନ୍ତ୍ରଣା, ବାଧା, ଭୟ, ପ୍ରଶଂସା ଓ ନିନ୍ଦାକୁ ସହଜରେ ଅତିକ୍ରମ କରେ । ରାଧାନାଥଙ୍କ ମୌଳିକ ଚିନ୍ତା ଏଥିରେ ପ୍ରତିଫଳିତ । ଏହା ତାଙ୍କର ପ୍ରଜ୍ଞା ଓ ପ୍ରତିଭାର ନିଦର୍ଶନ ।

ବିଶିଷ୍ଟ କବି ମାୟାଧର ମାନସିଂହ ତାଙ୍କ ରଚିତ ଓଡ଼ିଆ ସାହିତ୍ୟ ଇତିହାସରେ ଲେଖିଛନ୍ତି – "ଏହାର ଶୈଳୀ ଅନାଧୁନିକ ବୋଧ ହୋଇପାରେ, କିନ୍ତୁ ଆଧୁନିକ ଓଡ଼ିଆ ଗଦ୍ୟର ସେହି ପ୍ରାକ୍ ଉଷା କାଳକୁ ଚାହିଁଲେ ଲେଖକଙ୍କର ପ୍ରକାଶନର କ୍ଷମତାକୁ ଆମ୍ଭେମାନେ ଧନ୍ୟବାଦ ଦେବାକୁ ବାଧ । ପୁଣି ଯେଉଁ ବିଷୟ ନେଇ ଏ ପ୍ରବନ୍ଧ ଲେଖା ହୋଇଥିଲା, ତାହାର ଅନ୍ୟତମ ସୁଯୋଗ୍ୟ ଶୈଳୀ ମଧ କଳ୍ପନା କରାଯାଇ ନ ପାରେ । ସମଗ୍ର ଓଡ଼ିଆ ଭାଷାରେ ଦୈନନ୍ଦିନ ଜୀବନର ନୀତି ବିଚାର ନେଇ ଏକମାତ୍ର ପୁସ୍ତକ ଏ ପର୍ଯ୍ୟନ୍ତ 'ବିବେକୀ' ।"

## ଇଟାଲୀୟ ଯୁବା

ଏହା ୧୮୭୪ ମସିହାରେ ଏକ ବିଦେଶୀ କଥାବସ୍ତୁ ଅବଲମ୍ବନରେ ରଚିତ ହୋଇଥିଲା । ଏହା ଏକ ପ୍ରଣୟଭିତ୍ତିକ ଗଳ୍ପ । ଏହାର ନାୟକ ଜଣେ ଚିତ୍ରକର । ସେ ଜଣେ ଯୁବତୀ ଲରାଙ୍କୁ ଭଲ ପାଉଥିଲେ । ତାଙ୍କର ଜଣେ ବନ୍ଧୁ ଥିଲେ । ସେ ବନ୍ଧୁଜଣକ ଚିତ୍ରକରଙ୍କ ସାମୟିକ ଅନୁପସ୍ଥିତିର ସୁଯୋଗ ନେଇ ତାଙ୍କର ପ୍ରେମିକାଙ୍କୁ ବିବାହ କଲେ । ଚିତ୍ରକର ପରେ ଏହା ଜାଣିପାରିଲେ ଏବଂ ଈର୍ଷା ପ୍ରଣୋଦିତ ହୋଇ ଲରାର ସ୍ୱାମୀକୁ ହତ୍ୟା କଲେ । ମାତ୍ର ପରେ ଅନୁତାପାନଳରେ ଦଗ୍ଧ ହୋଇଛନ୍ତି । ମନେ କରିଛନ୍ତି ସତେ ଯେପରି ମୃତ ବ୍ୟକ୍ତିଙ୍କ ଆତ୍ମା ଭୂତ ହୋଇ ତାଙ୍କୁ ଅନୁସରଣ କରିବାରେ ଲାଗିଛି । ଶେଷରେ ପବିତ୍ର ଗିର୍ଜାକୁ ଯାଇ ନିଜର ଦୋଷ ସ୍ୱୀକାର କରି ଶାନ୍ତି ପାଇଛନ୍ତି ।

## ମେଘଦୂତ

ରାଧାନାଥ ସଂସ୍କୃତ କବି କାଳିଦାସଙ୍କ ଅମୂଲ୍ୟ କାବ୍ୟ 'ମେଘଦୂତ'କୁ ଓଡ଼ିଆରେ ଅନୁବାଦ କରିଥିଲେ । ସେତେବେଳେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ଥିଲା । ରାଧାନାଥ ଏହି ଅଭାବ ଦୂର କରିବାପାଇଁ 'ମେଘଦୂତ'

କାବ୍ୟର ଅନୁବାଦ କରିଥିଲେ । ଏହା ବହୁକାଳ ପାଠ୍ୟପୁସ୍ତକ ରୂପେ ଚଳୁଥିଲା । ପରବର୍ତ୍ତୀ କାଳରେ ଓଡ଼ିଆ ସାହିତ୍ୟରେ 'ମେଘଦୂତ' କାବ୍ୟର ବହୁ ଅନୁବାଦ ହୋଇଥିଲେ ମଧ୍ୟ ରାଧାନାଥଙ୍କ ମେଘଦୂତର ଗୌରବ ଅକ୍ଷୁଣ୍ଣ ରହିଅଛି ।

କବିଙ୍କର ରଚନା –

''ଦକ୍ଷିଣ ଦେଶେ ରାମଗିରି ଶୋଭନ
ବିମଳ ଶୁଭ୍ର ଯହିଁ ନଦୀ ଜୀବନ
× × ×
ତହିଁ କୁବେର ଶାପେ ହୋଇ ପ୍ରେରିତ
ରହିଲା ଯକ୍ଷେ ଦୁଃଖେ ଆତୁର ଚିତ୍ତ ।''

ରାଧାନାଥ ଏଥିରେ ଯେପରି ଭାଷା ପ୍ରୟୋଗ କରିଛନ୍ତି ତାହା ପାଠ କଲେ ସତେ ଯେପରି ମୌଳିକ ରଚନା ପରି ଜଣାପଡ଼େ । ଏହା କବିଙ୍କ ଉଜ୍ଜ୍ୱଳ ଭବିଷ୍ୟତ୍‌ର ସୂଚନା ଦେଇଥିଲା ।

ଏହାଛଡ଼ା ତାଙ୍କର ଅନ୍ୟ ଗଦ୍ୟଗୁଡ଼ିକ ହେଲା 'ପାର୍ବତୀ କାବ୍ୟର ଉପସଂହାର', 'ଉର୍ବଶୀ କାବ୍ୟର ଉପସଂହାର', 'ଭ୍ରମଣକାରୀର ପତ୍ର', 'ବାମଣ୍ଡା', 'ସାର୍ ବାସୁଦେବ ସୁଢଳଦେବ', 'ଉତ୍କଳ ସାହିତ୍ୟର ଉନ୍ନତି', 'ଟିପାଖାତା', 'ଖଣ୍ଡିଏ ପତ୍ର' ପ୍ରଭୃତି ।

## ଭୂଦେବଙ୍କ ପ୍ରେରଣା

ରାଧାନାଥଙ୍କର ବଙ୍ଗଳାର ବିଶିଷ୍ଟ କବି ଭୂଦେବ ମୁଖୋପାଧାୟଙ୍କ ସଙ୍ଗେ ବନ୍ଧୁତା ଥିଲା । ରାଧାନାଥ ତାଙ୍କ ବଙ୍ଗଳା ରଚନାଗୁଡ଼ିକୁ ଭୂଦେବଙ୍କୁ ଦେଖାଉଥିଲେ । ଭୂଦେବ କିନ୍ତୁ ପ୍ରାକୃତିକ ସୌନ୍ଦର୍ଯ୍ୟଭରା ଓଡ଼ିଶାର ବିଷୟବସ୍ତୁ ଉପରେ କବିତା ଲେଖିବାକୁ ପରାମର୍ଶ ଦେଲେ । ରାଧାନାଥ ତେଣୁ ଗଦ୍ୟସାହିତ୍ୟ ରଚନା ଦିଗରେ ମନ ନ ଦେଇ କାବ୍ୟକବିତା ରଚନା ଦିଗରେ ବ୍ରତୀ ହେଲେ ।

## ପାଶ୍ଚାତ୍ୟ ପ୍ରଭାବ

ରାଧାନାଥଙ୍କ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ସ୍ପଷ୍ଟ । ଏହାହିଁ ମଧ୍ୟ କବିଙ୍କର ସାରସ୍ୱତ ପ୍ରତିଭାର ବୈଶିଷ୍ଟ୍ୟ । ରାଧାନାଥ ଉଚ୍ଚଶିକ୍ଷିତ ନ ଥିଲେ ମଧ୍ୟ ନିଜର ଅଧ୍ୟବସାୟ ବଳରେ ବହୁ ଜ୍ଞାନର ଅଧିକାରୀ ହୋଇପାରିଥିଲେ । ଇଂରେଜ ସାହିତ୍ୟ ଓ ତାହା ମାଧ୍ୟମରେ ସମୃଦ୍ଧ ପ୍ରାଚୀନ ଗ୍ରୀକ୍ ଓ ଲାଟିନ୍ ସାହିତ୍ୟରେ ତାଙ୍କର ଗଭୀର ପ୍ରବେଶ ଥିଲା । ଏହି ସମସ୍ତ ସମୃଦ୍ଧ ସାହିତ୍ୟରୁ ସେ ନିଜର ବିଷୟବସ୍ତୁ ଆହରଣ କରି ଉତ୍କଳୀକରଣ କରିଛନ୍ତି । କେବଳ ବିଷୟବସ୍ତୁ ନୁହେଁ,

ବିଦେଶୀ ନାୟକ-ନାୟିକାମାନଙ୍କୁ ଓଡ଼ିଶା ମାଟି, ପାଣି ଓ ପବନରେ ଏପରି ଖାପ ଖୁଆଇଦେଲେ ଯେ, ସେମାନେ ବିଦେଶୀ ନ ହୋଇ ଖାଣ୍ଟି ଉତ୍କଳୀୟ ପରି ମନେହୁଅନ୍ତି । ଡଃ ମାନସିଂହଙ୍କ ମତରେ ରାଧାନାଥ ବିଦେଶୀ କଥାବସ୍ତୁକୁ ଯେପରି ଭାବରେ ଓଡ଼ିଶୀ ରୂପ ଦେଇଛନ୍ତି ତାହା ବାସ୍ତବିକ ବିସ୍ମୟକର । ପାଶ୍ଚାତ୍ୟ କାବ୍ୟ ବା ନାଟକ ବିଷୟ ଅବଲମ୍ବନରେ ସେ ପାଞ୍ଚୋଟି କାବ୍ୟ ରଚନା କରିଛନ୍ତି । ସେଗୁଡ଼ିକ ହେଲା, 'କେଦାରଗୌରୀ', 'ଚନ୍ଦ୍ରଭାଗା', 'ନନ୍ଦିକେଶ୍ୱରୀ', 'ଉଷା' ଓ 'ପାର୍ବତୀ' ।

## କେଦାରଗୌରୀ

ଏହା କବିଙ୍କର ପ୍ରଥମ କାବ୍ୟ । ଏହା ୧୮୮୫ ମସିହାରେ ରଚିତ ହୋଇଥିଲା । ସେ ଏହି କାବ୍ୟର ବିଷୟବସ୍ତୁ ଗ୍ରୀସ ଦେଶର କବି ଓଭିଡଙ୍କର ମେଟାମରଫସିସ୍ କାବ୍ୟରୁ ଗ୍ରହଣ କରିଛନ୍ତି । ଏହାର କଥାବସ୍ତୁକୁ ନେଇ ଇଂରେଜ କବି ଚସର ଏକ ଦୀର୍ଘ କବିତା ରଚନା କରିଥିଲେ । ଏହାର କଥାବସ୍ତୁକୁ ମଧ୍ୟ ବିଶ୍ୱବିଖ୍ୟାତ ଇଂରାଜୀ ନାଟ୍ୟକାର ସେକ୍‌ସପିଅର ନାଟ୍ୟରୂପ ଦେଇଛନ୍ତି । କବିବର ରାଧାନାଥ ଏହି ଗଳ୍ପକୁ ନିଜର ବିଷୟବସ୍ତୁ ଭାବେ ଗ୍ରହଣ କରିଛନ୍ତି ।

ବାକ୍ୟଟି ପ୍ରଣୟଭିତ୍ତିକ । କେଦାର ଓ ଗୌରୀ ନାମକ ଦୁଇ କିଶୋର ଓ କିଶୋରୀ ପରସ୍ପରକୁ ଭଲ ପାଉଥିଲେ । ମାତ୍ର ପିତାମାତା ଏଥିରେ ପ୍ରତିବନ୍ଧକ ହେଲେ । ଉଭୟେ ଗୁରୁଜନମାନଙ୍କର ବାଧା ଅତିକ୍ରମପୂର୍ବକ ଯେଉଁ ଅପୂର୍ବ ସାହସ ଓ ତ୍ୟାଗ ଦେଖାଇଲେ, କବିବର ତାହାକୁ ନିପୁଣଭାବେ ଚିତ୍ରଣ କରିଛନ୍ତି ।

ଗୌରୀର ମର୍ମ ବେଦନା କବିଙ୍କ ଭାଷାରେ ଫୁଟିଉଠିଛି –

''ମୁଣ୍ଡେ କର ମାରି ବିଧିକି ଧିକ୍କାରି
ଧରାରେ ଲୋଟିଲା ଧନୀ
କାନ୍ତ ତନୁ କୋଳେ ଧରି ଦୁଃଖ ଭୋଳେ
ଚୁମ୍ବ ଦେଲା ଚନ୍ଦ୍ରାନନୀ ।''

ଯେଉଁଠାରେ କେଦାର ଓ ଗୌରୀ ପ୍ରାଣ ହରାଇଲେ ରାଜା ଲଲାଟ କେଶରୀ ସ୍ୱପ୍ନାଦେଶ ପାଇ ସେଠାରେ ଉପସ୍ଥିତ ହେଲେ ଏବଂ ପ୍ରେମିକ ଓ ପ୍ରେମିକାଙ୍କ ଶବ ଦେଖିବାକୁ ପାଇଲେ । ପରେ ଦୁହିଁଙ୍କ ନାମରେ ପ୍ରତିମା ସ୍ଥାପନ କଲେ ।

ଅଧୁନା ଭୁବନେଶ୍ୱରର ବିନ୍ଦୁସରୋବରଠାରେ କେଦାରେଶ୍ୱର ମହାଦେବଙ୍କ ମନ୍ଦିର ଓ ଗୌରୀଦେବୀଙ୍କ ମନ୍ଦିର ଅବସ୍ଥିତ । ଉଭୟ ମନ୍ଦିର ନିକଟରେ

ଗୌରୀକୁଣ୍ଡ ମଧ୍ୟ ଅଛି । ମାତ୍ର ପ୍ରେମିକ ପ୍ରେମିକାଙ୍କ ପ୍ରାଣଦାନ ପୀଠରେ ଲଲାଟେନ୍ଦୁ କେଶରୀଙ୍କଦ୍ୱାରା ପ୍ରତିମା ପ୍ରତିଷ୍ଠା ବୃତ୍ତାନ୍ତର କୌଣସି ଚିହ୍ନ ନାହିଁ । ଏହି ଗଳ୍ପର ଐତିହାସିକ ଭିତ୍ତି କିଛି ନାହିଁ । ଏକ ବିଦେଶୀ କାହାଣୀକୁ ଭୁବନେଶ୍ୱରରେ ଏପରି ଭାବରେ ସେ ଆରୋପ କରିଦେଇଛନ୍ତି ଯେ ଏହା ଭୁବନେଶ୍ୱରର ଘଟଣା ବୋଲି ପାଠକ ମନେକରେ । ଏବେ ମଧ୍ୟ ବହୁ ବ୍ୟକ୍ତି ଭୁବନେଶ୍ୱରର କେଦାରଗୌରୀକୁ ରାଧାନାଥଙ୍କର ଗଳ୍ପ ଅନୁସାରେ ଗ୍ରହଣ କରନ୍ତି । ଏହା କେବଳ ରାଧାନାଥଙ୍କ ପରି ପ୍ରଚଣ୍ଡ ପ୍ରତିଭାଶାଳୀ ବ୍ୟକ୍ତିଙ୍କ ପକ୍ଷେ ସମ୍ଭବ ।

**ଚନ୍ଦ୍ରଭାଗା**

କେଦାରଗୌରୀ ପରେ କବି 'ଚନ୍ଦ୍ରଭାଗା' କାବ୍ୟ ରଚନା କଲେ । ଏଥିରେ ପ୍ରେମ ନାହିଁ, ଅଛି ଉପଭୋଗ ବା ତୃଷ୍ଣା । ଏହାର ବିଷୟବସ୍ତୁ ମଧ୍ୟ ସେ ଓଭିଡଙ୍କର ମେଟା ମରଫସିସ୍ କାବ୍ୟ ବର୍ଣ୍ଣିତ ଆପୋଲୋ ଓ ଡାଫନୀ କାହାଣୀରୁ ଆଣିଛନ୍ତି । ଏଥିରେ ରାଧାନାଥଙ୍କ ବୈଶିଷ୍ଟ୍ୟ ଅନେକ ପରିମାଣରେ ପ୍ରକାଶ ପାଇଛି ।

ଗ୍ରୀକ୍ ପୁରାଣରେ ସୂର୍ଯ୍ୟ ହେଉଛନ୍ତି ଆପୋଲୋ । ସୁନ୍ଦରୀ ଡାଫନୀ ହେଉଛନ୍ତି ଜଳଦେବତାଙ୍କ କନ୍ୟା । ସେ ଅନିନ୍ଦ୍ୟ ସୁନ୍ଦରୀ ହେଲେ ମଧ୍ୟ ପ୍ରେମ ପ୍ରତି ଉଦାସୀନା ଥିଲେ । ସେ ପ୍ରକୃତିକୁ ଉପଭୋଗ କରି ବିମଳ ଆନନ୍ଦ ଅନୁଭବ କରୁଥିଲେ । ଥରେ ସେ ଶିକାର କରିବାକୁ ଗଲାବେଳେ ଆପୋଲୋ ତାଙ୍କୁ ଦେଖି ବିହ୍ୱଳ ହୋଇ ପ୍ରଣୟପ୍ରାର୍ଥୀ ହେଲେ । ମାତ୍ର ଡାଫନୀ ଭୟରେ ଦୌଡ଼ିବାକୁ ଲାଗିଲେ । ଶେଷରେ ସେ ବୃକ୍ଷରେ ପରିଣତ ହୋଇଗଲେ ।

ରାଧାନାଥ ଏହି କଥାବସ୍ତୁ ଅବଲମ୍ବନରେ 'ଚନ୍ଦ୍ରଭାଗା' ରଚନା କରିଛନ୍ତି ।

ସୂର୍ଯ୍ୟଦେବ ଥରେ କାମଦେବଙ୍କୁ ଭର୍ତ୍ସନା କରିଥିଲେ –

''ହର କୋପାନଳେ ଥରେ ତୁ ଜଳିଥିଲୁ ମଦନ
ପୁଣି ଜଳିବାକୁ ଏ ଦେହେ ପରା ବଳିଲା ମନ ।

× × ×

ଛାର ଫୁଲ ଧନୁ ଧରି ତୁ ସୁରେ ବୋଲାଉ ଶୂର
ଲଜ୍ଜା ଯାର ନାହିଁ ପାରେ ସେ, ହେଲେ ତ୍ରିପୁର ।''

କାମଦେବ କିନ୍ତୁ ସୂର୍ଯ୍ୟଙ୍କ ଦମ୍ଭ ଭାଙ୍ଗିବାକୁ ପଣ କଲେ । କିଛି ଦିନ ପରେ ପୁରୀ ସମୁଦ୍ର କୂଳରେ ସୁମନ୍ୟୁ ଋଷିଙ୍କ ପାଳିତାକନ୍ୟା ଚନ୍ଦ୍ରଭାଗା ବିଚରଣ କରୁଥିଲେ । ସେ ସୁନ୍ଦରୀ ଥିଲେ । ଦୈବାତ୍ ସୂର୍ଯ୍ୟଙ୍କ ଦୃଷ୍ଟି ସେହି କନ୍ୟା ଉପରେ

ପଡ଼ିଲା । ସେତେବେଳେ କାମଦେବ ସୂର୍ଯ୍ୟଦେବଙ୍କ ପ୍ରତି ଅନୁରାଗ ଶର ଓ ଚନ୍ଦ୍ରଭାଗା ପ୍ରତି ବିରାଗ ଶର ମାରିଦେଲେ । ଫଳରେ ସୂର୍ଯ୍ୟ ତା'ର ସୌନ୍ଦର୍ଯ୍ୟରେ ବିହ୍ୱଳ ହୋଇ ପ୍ରଣୟପ୍ରାର୍ଥୀ ହେଲେ । ଚନ୍ଦ୍ରଭାଗା ଭୟରେ ଦୌଡ଼ିବାକୁ ଲାଗିଲେ । ସୂର୍ଯ୍ୟ ମଧ୍ୟ ପ୍ରଣୟ ନିଶାରେ ଘାରିହୋଇ ତା'ର ପଶ୍ଚାତ୍‌ଧାବନ କଲେ । ଯେତେ କାତର ନିବେଦନ କଲେ ମଧ୍ୟ ତାହା ବ୍ୟର୍ଥ ହେଲା । ଚନ୍ଦ୍ରଭାଗା ଶେଷରେ ଅନ୍ୟ ଉପାୟ ନ ଦେଖି ନୀଳ ସମୁଦ୍ର ଜଳରେ ଝାସ ଦେଲେ । ଧ୍ୟାନ ବଳରେ ସୁମନ୍ତ୍ୟୁ ଋଷି ସମସ୍ତ ବିଷୟ ଜାଣିପାରି ସୂର୍ଯ୍ୟଦେବଙ୍କୁ ଅଭିଶାପ ଦେଲେ । ଫଳରେ କୋଣାର୍କର ସୂର୍ଯ୍ୟମନ୍ଦିର ଭାଙ୍ଗିପଡ଼ିଲା । ସୂର୍ଯ୍ୟଦେବଙ୍କ ପୂଜା ମଧ୍ୟ ବନ୍ଦ ହେଲା ।

ଏହି ଉପାଖ୍ୟାନଟି ଇତିହାସସମ୍ମତ ନୁହେଁ । ରାଧାନାଥ ପୂର୍ବଭଳି ବିଦେଶୀ କଥାବସ୍ତୁ ସହିତ ଉତ୍କଳ ଇତିହାସ ଓ କିମ୍ବଦନ୍ତୀକୁ ଯୋଡ଼ିବାକୁ ଚେଷ୍ଟା କରିଛନ୍ତି । ସୂର୍ଯ୍ୟଙ୍କ ଅଭିଶାପରେ କୋଣାର୍କ ମନ୍ଦିର ଧ୍ୱଂସ ପାଇବା ମଧ୍ୟ କୌଣସି କିମ୍ବଦନ୍ତୀରେ ନାହିଁ । ତେବେ ମଧ୍ୟ ଏହା ଓଡ଼ିଶାର କୌଣସି ଘଟଣା ବୋଲି ପାଠକ ମନେକରେ । ଚନ୍ଦ୍ରଭାଗାକୁ କବି ଯେପରି ରୂପ ଦେଇଛନ୍ତି, ସେଥିରୁ ତାଙ୍କର ରଚନା କୌଶଳର ପରିଚୟ ମିଳେ ।

ଚନ୍ଦ୍ରଭାଗା କାବ୍ୟରେ ଓଡ଼ିଶାର ଦେବଦେବୀଙ୍କ ବିସ୍ତୃତ ବିବରଣୀ ଦିଆଯାଇଛି । ପ୍ରକୃତି ଚିତ୍ରଣ ମଧ୍ୟ ଚମତ୍କାର ହୋଇଛି । ଭାଷାବିନ୍ୟାସ ପାଠକକୁ ମୁଗ୍‌ଧ କରେ । ଚନ୍ଦ୍ରଭାଗା ସାଗର ଜଳରେ ନିମଗ୍ନ ହେଲାବେଳର ଦୃଶ୍ୟ କବି ବର୍ଣ୍ଣନା କରିଛନ୍ତି –

''ମିଶିଯାଏ ଯଥା ପ୍ରଭାତୀ ତାରା ରବି କିରଣେ,
ମିଶିଯାଏ ଯଥା ଜୀବାତ୍ମା ବିଶ୍ୱଆତ୍ମା ଚରଣେ ।
ମିଶିଯାଏ ଯଥା ଚପଳା ନୀଳ ଜଳଦ ଅଙ୍ଗେ,
ମିଶିଗଲା ତଥା ଅବଳା ସେହି ନୀଳ ତରଙ୍ଗେ ।''

**ନନ୍ଦିକେଶ୍ୱରୀ**

୧୮୮୭ରେ ଏହି କାବ୍ୟ ପ୍ରକାଶ ପାଇଲା । ଓଭିଡଙ୍କର ଅଷ୍ଟମ କବିତା 'ଦି କିଙ୍ଗ୍ ମିନସ୍ ଆଣ୍ଡ ସିଲା' ଓ ବାଇରନଙ୍କ 'ସିଜ ଅଫ୍ କୋରିନ୍ଥ' ଗ୍ରନ୍ଥରୁ କଥାବସ୍ତୁ ଆହରଣ କରି କବି ରାଧାନାଥ 'ନନ୍ଦିକେଶ୍ୱରୀ' କାବ୍ୟ ରଚନା କରିଛନ୍ତି ।

ପୁରାକାଳରେ କ୍ରିଟର ଅଧିପତି ଥିଲେ ମିନସ୍ । ସେ ମିଶର ଅବରୋଧ କଲେ । ଏହି ଅବରୋଧ ଦୀର୍ଘକାଳ ଲାଗିରହିଲା । ଫେଟସ୍ ବା ଭାଗ୍ୟଦେବୀ ମିଶରର ରାଜା ନିମସ୍‌ଙ୍କୁ ସ୍ୱର୍ଣ୍ଣାଭ କେଶଗୁଚ୍ଛ ରକ୍ଷାକବଚରୂପେ ଦେଇ କହିଲେ ଯେ ଏହା ଥିବା ପର୍ଯ୍ୟନ୍ତ ତାଙ୍କ ନଗରକୁ ଶତ୍ରୁ ଅଧିକାର କରିପାରିବ ନାହିଁ ।

ରାଜାଙ୍କ କନ୍ୟା ଥିଲେ ସିଲା । ସେ ନଗରୀର ଉଚ୍ଚତମ ଗମ୍ବୁଜରୁ ଯୁଦ୍ଧ ଦେଖୁଥିଲେ । ସେ ମିନସ୍‌ଙ୍କ ଶୌର୍ଯ୍ୟ, ବୀର୍ଯ୍ୟରେ ଅଭିଭୂତା ହୋଇ ତାଙ୍କ ପ୍ରାଣ ବିକିଦେଲେ । ଶେଷରେ ସେ ପିତାଙ୍କର ଶୟନକକ୍ଷରେ ପ୍ରବେଶ କରି ମସ୍ତକର ଉଜ୍ଜ୍ୱଳ ସ୍ୱର୍ଣ୍ଣାଭ କେଶଗୁଚ୍ଛ ଚୋରେଇ ନେଲେ । ରାତ୍ରର ଘନ ଅନ୍ଧକାରରେ ଦୁର୍ଗ ଅତିକ୍ରମ କରି ଶତ୍ରୁ ଶିବିରରେ ପହଞ୍ଚି ମିନସଙ୍କ ପ୍ରଣୟପ୍ରାର୍ଥିନୀ ହେଲେ । ମାତ୍ର ମିନସ୍ ଏହି ପ୍ରେମକୁ ପ୍ରତ୍ୟାଖ୍ୟାନ କରିଛନ୍ତି । କହିଛନ୍ତି ଯେ ସେ ବିଶ୍ୱାସଘାତିନୀ । ବିଶ୍ୱାସଘାତିନୀ କନ୍ୟା ପକ୍ଷେ ବୀରର ପ୍ରେମାର୍ଜନ କରିବା ସମ୍ଭବ ନୁହେଁ । ସେ ଜାତିର ତଥା ଦେଶର କଳଙ୍କ । ଶେଷରେ ସିଲା ଜଳ ମଧ୍ୟକୁ ଡେଇଁ ପଡ଼ିଛନ୍ତି । ଗୋଟିଏ ବିରାଟ ଇଗଲ ଆକ୍ରମଣ କରିବାକୁ ଗଲାବେଳେ କୌଣସି ଦେବତା ତାଙ୍କୁ ସାମୁଦ୍ରିକ ପକ୍ଷୀରେ ପରିଣତ କରିଦେଇଛନ୍ତି ।

'ନନ୍ଦିକେଶ୍ୱରୀ'ରେ ମଧ ସେହିପରି ସୁବର୍ଣ୍ଣ କେଶରୀଙ୍କ ରାଜ୍ୟ ଚୋଡ଼ଗଙ୍ଗଦେବ ଆକ୍ରମଣ କରିଛନ୍ତି । ବହୁକାଳଯାଏଁ ତାହାକୁ ଅବରୋଧ କରି ରଖିଛନ୍ତି । ସୁବର୍ଣ୍ଣ କେଶରୀଙ୍କ କନ୍ୟା ନନ୍ଦିକା ଚୋଡ଼ଗଙ୍ଗଙ୍କର ବୀରତ୍ୱ ଓ ସୌନ୍ଦର୍ଯ୍ୟରେ ଆତ୍ମହରା ହୋଇଉଠିଛନ୍ତି –

କବିଙ୍କ ଭାଷାରେ –

''ଚୋର ବୀରବର ଲଳିତ ମୂରତି
ଦେଖି ହେଉଥିଲା ହୃଦୟ କରତି

× × ×

ବିନ୍ଧୁଥିଲେ ଚାପ ଚକ୍ରାକାରେ ଟାଣି
ମଣୁଥିଲେ ତାକୁ ପୁଷ୍ପଧନୁ-ପାଣି ।''

ଚୋଡ଼ଗଙ୍ଗ ପିତାଙ୍କର ଶତ୍ରୁ ହେଲେ ମଧ ନନ୍ଦିକାଙ୍କର ଭ୍ରୂକ୍ଷେପ ନାହିଁ । ଦେଶ ଓ ଜାତିର ସ୍ୱାର୍ଥକୁ ବଳିଦେଇ ସେ ପିତାଙ୍କ ମୁକୁଟରେ ଥିବା ଜୈତ୍ରମଣିକୁ ଅପହରଣ କରି ଶତ୍ରୁ ଶିବିରରେ ପହଞ୍ଚିଛନ୍ତି ଓ ଚୋଡ଼ଗଙ୍ଗଙ୍କୁ ପ୍ରେମ ନିବେଦନ କରିଛନ୍ତି । ଚୋଡ଼ଗଙ୍ଗ ନନ୍ଦିକାର ହୀନ ପ୍ରସ୍ତାବରେ ରାଜି ହୋଇ ନାହାନ୍ତି । ତାକୁ ଦେଶଦ୍ରୋହୀ, ଜାତିଦ୍ରୋହୀ ଓ ପିତୃଦ୍ରୋହୀ ବୋଲି ଭର୍ତ୍ସନା କରିଛନ୍ତି । କବିଙ୍କ ଭାଷାରେ –

''ପବିତ୍ର କେଶରୀ ବଂଶେ ଜାତ ହୋଇ
ଦେଶଦ୍ରୋହୀ, ରାଜଦ୍ରୋହୀ, ପିତୃଦ୍ରୋହୀ

× × ×

କି ସାହସେ ତୋର ଚିତ୍ତବୃତ୍ତି ଗଲା
ଏ ଦାରୁଣ କାର୍ଯ୍ୟେ ତୁ ପୁଣି ଅବଳା !''

ନନ୍ଦିକାଙ୍କର ମୋହ ଭାଙ୍ଗିଛି । ସେ ଶିବିକାରେ ଫେରିଆସିଛନ୍ତି । ବାଟରେ ପିତାଙ୍କ ଉଦ୍ଦେଶ୍ୟରେ ଏକ ପତ୍ର ଲେଖି ଆତ୍ମହତ୍ୟା କରିଛନ୍ତି । ମହାନଦୀ ପଠାରେ ଶବ ସତ୍କାର ହୋଇଛି । ପଠାର ନାମ ହୋଇଛି ନନ୍ଦିକେଶ୍ୱରୀ ପଠା ।

ରାଧାନାଥ ଗ୍ରୀକ୍ ଉପାଖ୍ୟାନର କଥାବସ୍ତୁ ଆହରଣ କରିଥିଲେ ମଧ୍ୟ ପରିଣତି ଉଭୟ କାବ୍ୟରେ ସମାନ ନୁହେଁ । ଗ୍ରୀକ୍ କାବ୍ୟରେ ସିଲା ପକ୍ଷୀରୂପ ଧାରଣ କଲାବେଳେ ରାଧାନାଥ ଏହି କାବ୍ୟକୁ ବିୟୋଗାନ୍ତକ କରିଦେଇଛନ୍ତି ।

ନନ୍ଦିକେଶ୍ୱରୀ ଇତିହାସର ଚରିତ୍ର ନୁହନ୍ତି । କୌଣସି ଐତିହାସିକ ମଧ୍ୟ ଏହି ପ୍ରସଙ୍ଗର ଉଲ୍ଲେଖ କରି ନାହାନ୍ତି । ରାଧାନାଥ 'ମାଦଳାପାଞ୍ଜି'ର ଏକ କିମ୍ବଦନ୍ତୀ ଉପରେ ନିର୍ଭର କରି ଓଭିଡଙ୍କ ଗ୍ରନ୍ଥରୁ କଥାବସ୍ତୁ ଆଣି ଏହି କାବ୍ୟ ରଚନା କରିଛନ୍ତି । ମାତ୍ର ମୂଳ ଗଳ୍ପ ସହିତ ଓଡ଼ିଶା ଇତିହାସକୁ ଏପରି ଭାବରେ ମିଶାଇଦେଇଛନ୍ତି ଯେ ସିଲା ଗଳ୍ପର ସତ୍ତା ହଜିଯାଇଛି । ଗଢ଼ା ହୋଇଛି ଓଡ଼ିଶା ମାଟିରେ ଏକ ପ୍ରେମାସକ୍ତା ନାରୀର କରୁଣ କାହାଣୀ । ରାଧାନାଥ ଏହାକୁ କାବ୍ୟ ରୂପ ଏପରି ଭାବରେ ଦେଇଛନ୍ତି ଯେ ଏହି କାବ୍ୟର କଥାବସ୍ତୁ କ୍ରମେ ପରମ୍ପରା ସୃଷ୍ଟି କରିଛି । ଏହି କାବ୍ୟ ପରବର୍ତ୍ତୀ କାଳରେ ଓଡ଼ିଶାର ବହୁ କବି, ନାଟ୍ୟକାରମାନଙ୍କୁ କାବ୍ୟ, କବିତା, ନାଟକ ବା ଗୀତିନାଟ୍ୟ ରଚନା କରିବାପାଇଁ ଅନୁପ୍ରାଣିତ କରିଛି । କବି ସଚ୍ଚିଦାନନ୍ଦ ରାଉତରାୟଙ୍କର 'ଅସମାପିକା', ଡଃ ହରେକୃଷ୍ଣ ମହତାବଙ୍କ 'ଚାରି ଚକ୍ଷୁ', ନାଟ୍ୟକାର ବୈଷ୍ଣବ ପାଣିଙ୍କ 'ନନ୍ଦିକେଶ୍ୱରୀ' ଗୀତାଭିନୟ ଏହି ବିଷୟବସ୍ତୁକୁ ନେଇ ରଚିତ ହୋଇଅଛି ।

ନନ୍ଦିକେଶ୍ୱରୀ କାବ୍ୟରେ ଯୁଦ୍ଧକୁ ସୈନ୍ୟମାନେ ଓଡ଼ିଶାର ବିଭିନ୍ନ ଅଞ୍ଚଳରୁ ଆସିବାର ବର୍ଣ୍ଣନା ଛଳରେ କବି ଐତିହାସିକ ପ୍ରସିଦ୍ଧ ଓ ଦେବଦେବୀ ଥିବା ସ୍ଥାନମାନଙ୍କର ବର୍ଣ୍ଣନା କରିଛନ୍ତି । ଏଥିରୁ ତାଙ୍କର ଦେଶପ୍ରୀତିର ପରିଚୟ ମିଳେ । ପ୍ରକୃତି ବର୍ଣ୍ଣନା ମଧ୍ୟ ଚିତ୍ତାକର୍ଷକ ହୋଇପାରିଛି । କ୍ଷୁଦ୍ର ପ୍ରେମାସକ୍ତ କାବ୍ୟଟିରେ କବି କାବ୍ୟିକ ଅଳଙ୍କାର ମଧ୍ୟ ପ୍ରୟୋଗ ନ କରି ଛାଡ଼ି ନାହାନ୍ତି । ସର୍ବୋପରି ମନୁଷ୍ୟର ନିଗୂଢ଼ତମ ପ୍ରଦେଶର ବାଧା ଓ ବେଦନା ପ୍ରକାଶନରେ କବି ଅଭୂତପୂର୍ବ ସଫଳତା ହାସଲ କରିଛନ୍ତି ।

**ଉଷା**

ଏହା ୧୮୮୮ରେ ପ୍ରକାଶ ପାଇଥିଲା । ଏହା ମଧ୍ୟ ଓଭିଡଙ୍କର 'ହିପୋମିନସ ଏଣ୍ଡ ଆଟ୍‌ଲାଣ୍ଟା' କାବ୍ୟ ଓ ଉଇଲିୟମ ମରିସଙ୍କ 'ଦି ଆର୍ଥଲି ପାରାଡାଇଜ୍' କାବ୍ୟ ଅନ୍ତର୍ଗତ 'ଆଟଲାଣ୍ଟ୍ ରେସ' ଅବଲମ୍ବନରେ ରଚିତ ।

'ଉଷା' କାବ୍ୟର କେନ୍ଦ୍ରସ୍ଥଳୀ ବାଲେଶ୍ୱର ସହର । ବାଲେଶ୍ୱର ନୃପ ରାଜାଙ୍କର ଏକମାତ୍ର କନ୍ୟା ଉଷା । ସେ ଥିଲେ ସୁନ୍ଦରୀ ଓ ବୁଦ୍ଧିମତୀ । ପୁରୁଷମାନଙ୍କ ପରି ଅସ୍ତ୍ରଚାଳନା ଓ ଶିକାର ଆଦିରେ ନିପୁଣା ଥିଲା । ଯଥାସମୟରେ ଉଷା ଯୌବନପ୍ରାପ୍ତ ହେଲେ । ଯୁବତୀ ଉଷା ରୂପରେ ସମସ୍ତଙ୍କୁ ବଳିଗଲେ । ଅନେକ ରାଜପୁରୁଷ ତାଙ୍କୁ ପତ୍ନୀଭାବେ ପାଇବାକୁ ଲାଳାୟିତ ହେଲେ । ମାତ୍ର ତାଙ୍କୁ ଦଉଡ଼ିବାରେ ଯିଏ ପରାସ୍ତ କରିବେ, ସେହି ପୁରୁଷକୁ ସେ ପତି ରୂପେ ବରଣ କରିବେ ବୋଲି ପଣ କରିଥିଲେ । ଏହି ପ୍ରତିଯୋଗିତାରେ ବହୁ ରାଜକୁମାର ଅଂଶ ଗ୍ରହଣ କରି ବିଫଳ ହେଲେ ଓ ପ୍ରାଣ ବିସର୍ଜନ କଲେ ।

ହେମପୁରର ରାଜକୁମାର ଜୟନ୍ତ କିନ୍ତୁ ଥିଲେ ଅଦ୍ୱିତୀୟ ବୀର । ସେ ରୂପରେ ମଧ୍ୟ କନ୍ଦର୍ପ ଭଳି ସୁନ୍ଦର ଥିଲେ । ସେ ଉଷାଙ୍କୁ ପତ୍ନୀ ରୂପେ ପାଇବାପାଇଁ କାର୍ତ୍ତିକେୟଙ୍କର ଶରଣାପନ୍ନ ହେଲେ । କାର୍ତ୍ତିକ ତାଙ୍କୁ ତିନି ଗୋଟି ସୁନାର ପଦ୍ମ ଦେଲେ ଓ ତାହା ସାହାଯ୍ୟରେ ଉଷାଙ୍କୁ ପରାସ୍ତ କରିପାରିବେ ବୋଲି କହିଲେ । ପ୍ରତିଯୋଗିତା ହେଲା । ଏଥିରେ ଉଷା ଜୟନ୍ତକୁ ପଛରେ ପକାଇଦେଇ ଧାବମାନ ହେଲେ । ଜୟନ୍ତ କାର୍ତ୍ତିକେୟଙ୍କଠାରୁ ପାଇଥିବା ସୁନାର ପଦ୍ମ ଫିଙ୍ଗିଲେ । ଉଷା ଗୋଟିକ ପରେ ଗୋଟିଏ ସୁନାପଦ୍ମ ଗୋଟାଇବାରେ ବିଳମ୍ବ ହେଲା । ଜୟନ୍ତ ଜୟଯୁକ୍ତ ହେଲେ । ଉଭୟଙ୍କର ବିବାହ ଉତ୍ସବ ଅନୁଷ୍ଠିତ ହେଲା; କିନ୍ତୁ ବିବାହ ବେଦୀରେ ଉଭୟଙ୍କର ପ୍ରାଣବାୟୁ ଉଡ଼ିଗଲା । ପୂର୍ବଜନ୍ମରେ ସେମାନେ ଥିଲେ ଅଭିଶପ୍ତ ଗନ୍ଧର୍ବ । କିଛି କାଳ ଅଭିଶାପ ପାଇ ମର୍ତ୍ତ୍ୟରେ ରହିବାପରେ ସେମାନେ ସ୍ୱର୍ଗପୁରକୁ ଫେରିଗଲେ । ଏହି ହେଲା 'ଉଷା' କାବ୍ୟର ବିଷୟବସ୍ତୁ ।

କବି ରାଧାନାଥ ଓଭିଡଙ୍କର ଓ ଉଇଲିୟମ ମୋରିସଙ୍କ କାବ୍ୟରୁ ବିଷୟବସ୍ତୁ ଗ୍ରହଣ କଲେ ମଧ୍ୟ ସମ୍ପୂର୍ଣ୍ଣ ଓଡ଼ିଶୀ ରୂପ ଦେଇଛନ୍ତି । ଆଟଲାଣ୍ଟା ଓଡ଼ିଶୀ ପରିବେଶରେ ହୋଇଛନ୍ତି ଉଷା । ମିଲାନିୟନ ହୋଇଛନ୍ତି ଜୟନ୍ତ । ଓଡ଼ିଶାର ବାଲେଶ୍ୱର ହୋଇଛି କଥାବସ୍ତୁର କେନ୍ଦ୍ର । ମୂଳ ଗ୍ରନ୍ଥରେ ଥିବା ସୁନାର ଆତ ହୋଇଯାଇଛି ରାଧାନାଥଙ୍କ 'ଉଷା' କାବ୍ୟର ସୁନାର ପଦ୍ମ । ଗ୍ରୀକ୍ ଦେବତା ଅଭିଶାପ ଦେଇ ପ୍ରଣୟୀ ପ୍ରଣୟିନୀଙ୍କୁ ସିଂହ କରିଦେଇଛନ୍ତି । ରାଧାନାଥ କିନ୍ତୁ ଗନ୍ଧର୍ବ ଓ ଅପ୍‌ସରା ପରିକଳ୍ପନା କରି ଉଭୟଙ୍କର ମୃତ୍ୟୁ ଘଟାଇଛନ୍ତି । ଏହି କାବ୍ୟରେ ରାଧାନାଥ ସମଗ୍ର ବାଲେଶ୍ୱର ଜିଲ୍ଲାର ଭୌଗୋଳିକ ଚିତ୍ର ଦେଇଛନ୍ତି । ବାଲେଶ୍ୱର ଜିଲ୍ଲାର ସୁନହଟ ଗ୍ରାମର ଉତ୍ତରରେ ଅବସ୍ଥିତ ଉଷା ମେଢ଼ ବା ଉଷା ମଣ୍ଡପ କାବ୍ୟର ନାୟକ ଓ ନାୟିକା ଯଥାକ୍ରମେ ଉଷା ଓ ଜୟନ୍ତଙ୍କର ସମାଧିସ୍ଥଳ ହୋଇଯାଇଛି । ଉପସଂହାରରେ କବି ଲେଖିଛନ୍ତି –

"କୀର୍ତ୍ତି କୀଟ କାଳ କେଉଁ କୀର୍ତ୍ତି ପ୍ରତି
ନୁହଇ ବାମ
ମଣ୍ଡପ ଗଲାଣି କାଳଗର୍ଭେ ମାତ୍ର
ରହିଛି ନାମ ।"

## ପାର୍ବତୀ

ଏହା ୧୮୯୦ ମସିହାରେ ପ୍ରଥମେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହେବାପରେ ପୁସ୍ତକ ଆକାରରେ ଆତ୍ମପ୍ରକାଶ କଲା ।

ଅନ୍ୟ କାବ୍ୟମାନଙ୍କ ପରି ରାଧାନାଥ ଇତିହାସର ଏକ ଉପାଖ୍ୟାନକୁ ନେଇ 'ପାର୍ବତୀ' କାବ୍ୟ ରଚନା କରିଛନ୍ତି । ଉତ୍କଳର ମହାରାଜା ଗଙ୍ଗେଶ୍ୱର ମୟୂରଭଞ୍ଜର ରନ୍ପୁର ଅବରୋଧ କରିଛନ୍ତି । ଦୀର୍ଘ ଦିନ ଧରି ଯୁଦ୍ଧ ଚାଲିଛି । ରାଜାଙ୍କ ସହିତ ଥିଲେ ତାଙ୍କ ରୂପସୀ କନ୍ୟା କୌଶଲ୍ୟା । ରାଜା କାମାସକ୍ତ ହୋଇ କନ୍ୟାକୁ ଉପଭୋଗ କରିଛନ୍ତି । କୌଶଲ୍ୟା ହୋଇଛନ୍ତି ଗର୍ଭବତୀ । ରାଜାଙ୍କ ଆଦେଶରେ କୌଶଲ୍ୟାଙ୍କୁ ନବଜାତ ଶିଶୁ ପୁତ୍ର ସହିତ ପୁରୀ ଜିଲ୍ଲା ଧଉଳିପାହାଡ଼ ନିକଟବର୍ତ୍ତୀ ଗୋଟିଏ କୂପରେ ପକାଇ ଦିଆଯାଇଛି । ରାଣୀ ପାର୍ବତୀ କୌଶଲ୍ୟାଙ୍କ ପ୍ରେତଠାରୁ ସମସ୍ତ ବିଷୟ ଅବଗତ ହୋଇଛନ୍ତି । ସେ ମର୍ମାହତା ହୋଇପଡ଼ିଛନ୍ତି । ରାଜା ବିଜୟ ପରେ ରାଜ୍ୟକୁ ଫେରିଆସିଛନ୍ତି । ରାଣୀ ଏକ ସମ୍ବର୍ଦ୍ଧନା ଉତ୍ସବର ଆୟୋଜନ କରନ୍ତି । ରାଜାଙ୍କୁ ଏକ ଦୋଳିରେ ବସାଇ ହାତ ପାଦକୁ ଫୁଲମାଳରେ ବାନ୍ଧି ଦେଇ ଉଗ୍ରମୂର୍ତ୍ତି ଧାରଣପୂର୍ବକ ଶାଣିତ କଟୁରିରେ ହତ୍ୟା କରିଛନ୍ତି ।

କବି ରାଧାନାଥ ଗ୍ରୀକ୍ କବି ହୋମରଙ୍କ 'ଇଲିୟଡ', ଆସକାଇଲାସଙ୍କ 'ଆଗାମେମ୍ନନ' ନାଟକ, ସେକ୍ସପିୟରଙ୍କ 'ହ୍ୟାମଲେଟ' ଓ ମାଦଳାପାଞ୍ଜିର ଗଙ୍ଗେଶ୍ୱର ଦେବ କାହାଣୀକୁ ନେଇ 'ପାର୍ବତୀ' କାବ୍ୟ ରଚନା କରିଛନ୍ତି । ଆଗାମେମ୍ନନ ନାଟକରେ ପିତା ଓ କନ୍ୟାର ପ୍ରେମ ନାହିଁ । ହେଲେନ ଉଦ୍ଧାରପାଇଁ ଆଗାମେମ୍ନନ୍ ଗ୍ରୀକ୍ ସୈନ୍ୟମାନଙ୍କୁ ନେଇ ଯାଉଛନ୍ତି । ଭବିଷ୍ୟତ୍ ବକ୍ତାଙ୍କ ପରାମର୍ଶକ୍ରମେ ରାଜା ନିଜର ଯୁବତୀ କନ୍ୟାକୁ ଡାଏନାଙ୍କ ପାଖରେ ବଳି ଦେଇଛନ୍ତି । ରାଜ୍ୟ ଜୟ କରି ଫେରିଆସିବାପରେ ସମ୍ବର୍ଦ୍ଧନା ଦିଆଯାଇଛି । ସେତିକିବେଳେ ସେ ରାଣୀଙ୍କଦ୍ୱାରା ନିହତ ହୋଇଛନ୍ତି । 'ହ୍ୟାମ୍ଲେଟ' ନାଟକ ଅବଲମ୍ବନରେ କୌଶଲ୍ୟାଙ୍କ ପ୍ରେତର ଆବିର୍ଭାବ ହୋଇଛି । ସେ ମଧ୍ୟ କୋଶଳଗଙ୍ଗ ନାମକ ଏକ କିମ୍ବଦନ୍ତୀକୁ ଗ୍ରହଣ କରିଛନ୍ତି । କୋଶଳଗଙ୍ଗ କିମ୍ବଦନ୍ତୀ ବିଷୟରେ

ଐତିହାସିକ ଷ୍ଟର୍ଲିଂ ୧୮୨୫ରେ ପ୍ରଥମେ ଇଂରାଜୀରେ ଲେଖିଥିଲେ । କିଟୋ ମଧ ଏସିଆଟିକ୍ ସୋସାଇଟି ପତ୍ରିକାରେ ୧୮୩୭ରେ ଏହି କିମ୍ବଦନ୍ତୀର ଉଲ୍ଲେଖ କରିଥିଲେ । ମାଦଳାପାଞ୍ଜିରେ ମଧ ଗଙ୍ଗେଶ୍ୱରଦେବ ରାଜତ୍ୱ କରୁଥିବା ବର୍ଣ୍ଣିତ ଅଛି । ଏହି ସମସ୍ତକୁ ଉପାଦାନଭାବେ ଗ୍ରହଣ କରି ରାଧାନାଥ ସୃଷ୍ଟି କରିଛନ୍ତି ପାର୍ବତୀ ।

ପାର୍ବତୀ କାବ୍ୟ ଇତିହାସସମ୍ମତ ନୁହେଁ । ଚୋଡ଼ଗଙ୍ଗଙ୍କଠାରୁ ଶେଷ ଗଙ୍ଗରାଜାମାନଙ୍କ ମଧରେ ଗଙ୍ଗେଶ୍ୱର ବୋଲି କେହି ରାଜା ନ ଥିଲେ । ଗଙ୍ଗବଂଶର ରାଜଧାନୀ ପୁରୀରେ ମଧ ନ ଥିଲା । ସୁତରାଂ ସମସ୍ତ ନାୟକ ଓ ନାୟିକାମାନେ ଯେ କାଳ୍ପନିକ, ଏହା ଅତି ସ୍ପଷ୍ଟ

'ପାର୍ବତୀ' କାବ୍ୟ ଏକ କରୁଣରସ ପୂର୍ଣ୍ଣ ବିୟୋଗାନ୍ତକ କାବ୍ୟ । କୌଶଲ୍ୟା ଏଥିରେ ଏକ ଅତି ଜୀବନ୍ତ ଓ ଅତି କରୁଣ ଚରିତ୍ର । ଜୀବନର ସମସ୍ତ ଦୁଃଖ, ବେଦନା ଓ ଅଭିଶାପର ସେ ଏକ ମୂର୍ତ୍ତିମନ୍ତ ପ୍ରକାଶ । ମାତାଙ୍କ ନିକଟରେ ତା'ର ଆତ୍ମପ୍ରକାଶ ଅତି କରୁଣ ଓ ମର୍ମସ୍ପର୍ଶୀ ହୋଇଉଠିଛି ।

"ମହାପାପେ ମହାପାପ ସଂଗୋପନ ସଂକଳ୍ପ ମନାସି ମନେ
ଶିଶୁ ସଙ୍ଗେ ମୋତେ ଧଉଳି ପର୍ବତେ ପଠାଇଦେଲେ ଗୋପନେ ।"

ଦୁଃଖିନୀ ଓ ଅଭିଶପ୍ତା କୌଶଲ୍ୟା କୂପ ମଧରେ କେବଳ ପାପର ଦଂଶନ ଜ୍ୱାଳାରେ ଅସ୍ଥିର ହୋଇପଡ଼ିଛନ୍ତି ତାହା ନୁହେଁ, ସର୍ବଗ୍ରାସୀ କ୍ଷୁଧାର ତାଡ଼ନାରେ ନିଜ ରକ୍ତମାଂସ ଜାତ ସନ୍ତାନର ସଢ଼ାଦେହକୁ ଦରାଣ୍ଡିଛନ୍ତି । କବିଙ୍କ ଭାଷାରେ –

"କିଣିଲା ଶୋକକୁ ଜଠର ଯାତନା ହୃଦୟ ହେଲା ଅସ୍ଥିର
କେମନ୍ତେ କହିବି କିପାଁ ଦରାଣ୍ଡିଲି ଶିଶୁର ସଢ଼ା ଶରୀର ।"

ଏଥିରେ କବିତ୍ୱ ଅତି ଉଚ୍ଚକୋଟୀର ହୋଇଛି । ପ୍ରକୃତି ବର୍ଣ୍ଣନାରେ କବି ମଧ ନୈପୁଣ୍ୟ ଦେଖାଇଛନ୍ତି । ଦକ୍ଷିଣରେ ଋଷିକୂଲ୍ୟାଠାରୁ ଉତ୍ତରରେ ସୁବର୍ଣ୍ଣରେଖା ପର୍ଯ୍ୟନ୍ତ ସମସ୍ତ ରାଜ୍ୟ ଗଙ୍ଗେଶ୍ୱର ଦେବ ଜୟ କରିଥିବା ଦର୍ଶାଇ ସେହି ସମସ୍ତ ଅଞ୍ଚଳ ସମେତ ଓଡ଼ିଶାର ସମସ୍ତ ପ୍ରସିଦ୍ଧ ସ୍ଥାନଗୁଡ଼ିକର ପ୍ରାକୃତିକ ଚିତ୍ର ଯେପରି ଦେଇଛନ୍ତି, ଓଡ଼ିଆ ସାହିତ୍ୟରେ ତା'ର ପଟାନ୍ତର ନାହିଁ ।

ଏକ କୁତ୍ସିତ କିମ୍ବଦନ୍ତୀକୁ କାବ୍ୟ ରୂପ ଦେଇ କବି ଇତିହାସକୁ କଳଙ୍କିତ କରିଛନ୍ତି ବୋଲି ବହୁ ସମାଲୋଚକ ମତ ଦେଇଥିଲେ । ରାଧାନାଥ ସେଥିରେ ବିବ୍ରତ ହୋଇ କାବ୍ୟଟି ଅସମ୍ପୂର୍ଣ୍ଣ ରଖିଥିବା ସମ୍ଭବ ।

## ଚିଲିକା

ଓଡ଼ିଆ ସାହିତ୍ୟକୁ ରାଧାନାଥଙ୍କ ବିଶିଷ୍ଟ ଦାନ ହେଲା 'ଚିଲିକା' । ଏହା ୧୮୯୦ ମସିହାରେ ରଚିତ ହୋଇଥିଲା ।

ଉତ୍କଳ ପ୍ରାକୃତିକ ଶୋଭାର ଗନ୍ତାଘର । ଏଥିରେ ବହୁ ନଦନଦୀ ପ୍ରବାହିତ ହେଉଛନ୍ତି । ଅଗଣିତ ପାହାଡ଼ ପର୍ବତ ଯୁଗ ଯୁଗ ଧରି ମସ୍ତକ ଉତ୍ତୋଳନ କରି ଦଣ୍ଡାୟମାନ ହୋଇଛନ୍ତି । ଚିଲିକା, ଅଂଶୁପା ପ୍ରଭୃତି ବହୁ ହ୍ରଦ ନିଜ ନିଜର ଶୋଭା ଦେଖାଉଛନ୍ତି । କିନ୍ତୁ ଏପର୍ଯ୍ୟନ୍ତ କୌଣସି କବି ଏଗୁଡ଼ିକୁ କେନ୍ଦ୍ର କରି ସ୍ୱତନ୍ତ୍ର କାବ୍ୟ ରଚନା କରି ନ ଥିଲେ । ଠାଏ ଠାଏ ବଣ, ପାହାଡ଼, ସରୋବର ପ୍ରଭୃତିର ଚିତ୍ର ଓଡ଼ିଆ କାବ୍ୟରେ ଅବଶ୍ୟ ମିଳେ; ମାତ୍ର 'ଚିଲିକା' ପରି ଅନ୍ୟ କୌଣସି କବି ପ୍ରକୃତି ସୁନ୍ଦରୀକୁ ଏପରି ସ୍ୱତନ୍ତ୍ର ଆସନ ଦେଇ ନାହାନ୍ତି । ପ୍ରକୃତି ପ୍ରତି ରାଧାନାଥଙ୍କର ନିବିଡ଼ ଆକର୍ଷଣ । ସେ କେବଳ ପ୍ରକୃତି ବର୍ଣ୍ଣନା କରି ନାହାନ୍ତି, ପ୍ରକୃତି ଆରାଧନାକୁ ସେ ନିଜର ଆଭିମୁଖ୍ୟ ଭାବେ ଗ୍ରହଣ କରିଛନ୍ତି । ଆଲୋଚକଙ୍କ ମତରେ, "ଏହି କାବ୍ୟ ରାଧାନାଥଙ୍କୁ ନୂତନ ଯୁଗର ପ୍ରବର୍ତ୍ତକ ହେବା ଦାବି ସପକ୍ଷରେ ବଳିଷ୍ଠ ପ୍ରମାଣ ଯୋଗାଇଦିଏ । ଆଉ କିଛି ରଚନା କରି ନ ଥିଲେ ମଧ ରାଧାନାଥ ଯଦି ଖାଲି 'ଚିଲିକା' ଲେଖିଥାନ୍ତେ, ତେବେ ସେ ଯୁଗସ୍ରଷ୍ଟା ମାନ୍ୟତା ଯେ ପାଇଥାନ୍ତେ, ଏଥିରେ ସନ୍ଦେହର ଅବକାଶ ନାହିଁ ।"

କବି ପ୍ରଥମେ ଚିଲିକାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିଛନ୍ତି । ଚିଲିକା ହେଉଛି ଉତ୍କଳ କମଳାର ବିଳାସସ୍ଥଳୀ । ଏହା ଏକ ଅପରୂପ ଭୁବନ । ଏହାର ନୀଳ ଜଳ, ବିହଙ୍ଗ, ପାହାଡ଼, ପର୍ବତ, ଗିରି, ଖୋଲ, ନାସି, କାନ୍ତାର, କନ୍ଦରା, ଦ୍ୱୀପ ସବୁ ସୁନ୍ଦର । ଚିଲିକା ତୀରର ବିଭିନ୍ନ ପ୍ରକାର ଫୁଲ, ଫଳ, ବୃକ୍ଷ, ଲତା ପ୍ରଭୃତିର ଚମତ୍କାର ବର୍ଣ୍ଣନା କବି କରିଛନ୍ତି । କବିଙ୍କ ଭାଷାରେ –

"ସୁନ୍ଦର ତୃପ୍ତିର ଅବସାଦ ନାହିଁ
ଯେତେ ଦେଖିଲେ ତହିଁ ନୂଆ ଦିଶୁଥାଇ ।"

କବି ଏହା ପରେ ପଶ୍ଚିମ ତୀରର ଶୋଭା ବର୍ଣ୍ଣନା କରିଛନ୍ତି । ଏଠାରେ ଭାଲେରି, ଜଟିଆ ନାସି, ସାଳିଆ ଓ ତା'ର ତୀରବର୍ତ୍ତୀ ଘଣ୍ଟଶିଳା, ସୋଲରି, ଖଣ୍ଡାହଣା ପ୍ରଭୃତି ପାହାଡ଼ଗୁଡ଼ିକ ଅବସ୍ଥିତ । ଚିଲିକାକୁ ଆସୁଥିବା ଯାତ୍ରୀମାନଙ୍କୁ ଏହା ବିମଳ ଆନନ୍ଦ ଦେଇଥାଏ । ବିଶେଷତଃ, ଚିଲିକାର ସାନ୍ଧ୍ୟକାଳୀନ ଦୃଶ୍ୟ ଅତୀବ ଉପଭୋଗ୍ୟ । ଭାସମାନ ଖଣ୍ଡ ଖଣ୍ଡ ମେଘ ଉପରେ ଅସ୍ତଗାମୀ ସୂର୍ଯ୍ୟର ଆରକ୍ତ କିରଣ ପଡ଼ି ତାହାକୁ ନାନା ରଙ୍ଗରେ ରଞ୍ଜିତ କରିଦିଏ । ସେହି ଦୃଶ୍ୟରେ କବି ଆତ୍ମହରା ହୋଇପଡ଼ିଛନ୍ତି ।

ପୁଣି ଚିଲିକାର ଚନ୍ଦ୍ର ରଜନୀ ଆହୁରି ସୁନ୍ଦର । ଧୀବରମାନଙ୍କ ନୌକାଯାତ୍ରା ପ୍ରାଣରେ ଶିହରଣ ସୃଷ୍ଟି କରେ । ମନ୍ଦ ମନ୍ଦ ପବନରେ ଭାସି ଆସୁଥିବା କବିସୂର୍ଯ୍ୟଙ୍କର ସଙ୍ଗୀତ ପ୍ରାଣରେ ଉନ୍ମାଦନା ସୃଷ୍ଟି କରେ । କବି ତାହା ଭାଷାରେ ପ୍ରକାଶ କରିଛନ୍ତି -

''ଅଟେ ସର୍ବଶୋଭା ସୀମନ୍ତର ଟୀକା
ପ୍ରକୃତିର ଚାରୁ ଆଲେଖ୍ୟ ଶାଳିକା ।''

କବି ଭାରତର ବିଭିନ୍ନ ଅଞ୍ଚଳ ଭ୍ରମଣ କରିଥିଲେ । ସେଠାରେ ବିଭିନ୍ନ ପ୍ରକାର ପ୍ରାକୃତିକ ଦୃଶ୍ୟ ଦେଖିଛନ୍ତି । ସେ ଦେଖିଛନ୍ତି ଭାରତର ଉତ୍ତର ସୀମାରେ ନଗାଧିରାଜ ହିମାଳୟ, ରାଜସ୍ଥାନର ବିରାଟ ମରୁଭୂମି, ବିନ୍ଧ୍ୟ ପର୍ବତ, ଧୂଆଁଧାର ଜଳପ୍ରପାତ, ଘଞ୍ଚ ଦଣ୍ଡକାରଣ୍ୟ ପ୍ରଭୃତି । ସେହି ସବୁ ରୁକ୍ଷ ଦୃଶ୍ୟ କବିଙ୍କ ହୃଦୟରେ ଭୀତି ସଞ୍ଚାର କରିଥିଲା । କବି ତାହା ପ୍ରକାଶ କରିଛନ୍ତି –

''ସ୍ତବ୍ଧ ଭାବେ ଏହି ମହା ଦୃଶ୍ୟମାନ
ଦେଖିଲି ଭାରତେ ଭ୍ରମି ନାନା ସ୍ଥାନ ।''

କିନ୍ତୁ ଚିଲିକା ବିରାଟ ନୁହେଁ । ସୁବୃହତ୍ ମାତ୍ର । ଏହାକୁ ଦର୍ଶନ କରି କବି ସ୍ତମ୍ଭୀଭୂତ ହୋଇ ନାହାନ୍ତି । ତାହାର ସୌନ୍ଦର୍ଯ୍ୟ ଉପଭୋଗ କରିଛନ୍ତି –

''ବିରାଟ ନୋହି ତୁ ଯେଣୁ ସୁବୃହତ
ସ୍ତବ୍ଧ ନୋହି ମନ ହୁଅଇ ଉନ୍ନତ ।''

କବି ଚିଲିକାର ପକ୍ଷୀମାନଙ୍କର କଳରବ, ବିବିଧ ବର୍ଣ୍ଣର ମତ୍ସ୍ୟମାନଙ୍କର କ୍ରୀଡ଼ା କୌତୁକ ବର୍ଣ୍ଣନା କରିଛନ୍ତି । ସନ୍ତରଣଶୀଳ ଅସଂଖ୍ୟ ହଂସମାନଙ୍କୁ ଦେଖି ବିମୋହିତ ହୋଇଛନ୍ତି । ଏ ଶୋଭାର ପଟାନ୍ତର ନାହିଁ ବୋଲି ଭାବିଛନ୍ତି –

''ଆହା ଏ ଶୋଭାର ନାହିଁ ପଟାନ୍ତର
ଥିଲେ ଥିବ ସ୍ୱର୍ଗେ ମର୍ତ୍ତ୍ୟେ ଅଗୋଚର ।''

ଚିଲିକାରେ ନାନା ନଦୀ, ଯଥା – ଦୟା, ଭାର୍ଗବୀ, ରତ୍ନଚୀରା, ଅଠରନଳା ପ୍ରଭୃତି ପଡ଼ିଛନ୍ତି । ତର୍ଥରାଜ ସମୁଦ୍ର ସଙ୍ଗେ ଚିଲିକାର ଜଳ ବିନିମୟ ହୁଏ । ଚିଲିକାର ଅଦୂରରେ ତାରା, ଚଣ୍ଡୀ ଓ ଭଗବତୀଙ୍କ ମନ୍ଦିର ଅବସ୍ଥିତ । ତେଣୁ ଏହା ତୀର୍ଥ ସ୍ଥାନ ବୋଲି କବି କହିଛନ୍ତି ।

ପ୍ରକୃତି ବର୍ଣ୍ଣନା କରୁ କରୁ କବି ଓଡ଼ିଶାର ଅତୀତ ଇତିହାସ ଓ କିମ୍ବଦନ୍ତୀ ଉପରକୁ ଦୃଷ୍ଟି ପକାଇଛନ୍ତି । ପୁରୁଷୋତ୍ତମଦେବଙ୍କ କାଞ୍ଚି ଅଭିଯାନ ଇତିହାସର ଏକ ଗୌରବୋଜ୍ଜ୍ୱଳ ଘଟଣା । କବି କଳ୍ପନା ଚକ୍ଷୁରେ ଦେଖିଛନ୍ତି ରାଜା ପୁରୁଷୋତ୍ତମ

ଦେବ ରାଜଜେମା ପଦ୍ମାବତୀଙ୍କୁ ଧରି କାଞ୍ଚିରୁ ଚିଲିକା ବାଟ ଦେଇ ସ୍ୱଦେଶକୁ ଫେରିଆସିବା କଥା । 'ମାଦଳାପାଞ୍ଜି'ରେ ରକ୍ତବାହୁର ଉତ୍କଳ ଆକ୍ରମଣ ବିଷୟ ବର୍ଣ୍ଣିତ ଅଛି । ରକ୍ତବାହୁ କିପରି ଚିଲିକାର ଝଡ଼ବତାସରେ ପ୍ରାଣ ହରାଇଛି ତାହା ବର୍ଣ୍ଣନା କରିଛନ୍ତି । ଉତ୍କଳର ଶତ୍ରୁ ସଂହାରପାଇଁ ଚିଲିକା କିପରି ରୁଦ୍ର ମୂର୍ତ୍ତି ଧାରଣ କରେ, ତାହା ଦର୍ଶାଇଛନ୍ତି ।

ଚିଲିକାର ସୌନ୍ଦର୍ଯ୍ୟ ଦେଖି କବି ନିଜ ଜୀବନର ଦୁଃଖ-ଜଞ୍ଜାଳ କଥା ଚିନ୍ତା କରିଛନ୍ତି । ସେ ଭାବିଛନ୍ତି ଯେ ଏଭଳି ବିମଳ ଆନନ୍ଦ ତାଙ୍କ ଭାଗ୍ୟରେ ନାହିଁ । ତାଙ୍କ ଜୀବନ ହେଉଛି ଜୀବନ୍ତ ମରଣ । ସଂସାରରେ ତେଣୁ ଉଦାସୀନ ହୋଇ ରହିବାକୁ ସେ ଚାହିଁଛନ୍ତି -

"ଛାର ଭାଗ୍ୟ ମୋର ପିହିତ ପାଷାଣେ
ମୋ ଜୀବନ ଗଢ଼ା ଅନ୍ୟ ଉପାଦାନେ,
ଚିର ହାହାକାର ମୟ ଏ ଛାର ଜୀବନ
ଜୀବନ ନୁହଇ ଜୀବନ୍ତ ମରଣ
ଚିରଦିନ ଦୁଃଖ ପ୍ରହାରେ ଜର୍ଜର
ପଟ୍ଟଶିଷ୍ୟ ମୁହିଁ ଦୁଃଖ ଗୁରୁଙ୍କର ।"

ଚିଲିକାର ଶେଷ ଭାଗରେ କବିଙ୍କ ଖେଦ ପ୍ରକାଶ ପାଇଛି । କବିମାନଙ୍କ କୃପାରୁ କ୍ଷୁଦ୍ର ନଦୀ ସିପ୍ରା, କ୍ଷୁଦ୍ର ହ୍ରଦ ପୁଷ୍କର, କ୍ଷୁଦ୍ର ଗିରି ଗୋବର୍ଦ୍ଧନ ବିଖ୍ୟାତ ହୋଇ ପଡ଼ିଥିଲାବେଳେ, ଅନ୍ୟତମ ବୃହତମ ନଦୀ ମହାନଦୀ, ଶୋଭାର ଖଣି ଚିଲିକା, ଅଂଶୁପା ବା ମେଘାସନ ପର୍ବତ ପ୍ରଭୃତି କୌଣସି କାବ୍ୟରେ ସ୍ଥାନ ପାଇ ନ ଥିବାରୁ ଅଜ୍ଞାତ ହୋଇ ରହିଛନ୍ତି । ସେଥିପାଇଁ ସେ ଦୁଃଖିତ । ସେ ବାଗ୍‌ଦେବୀ ସରସ୍ୱତୀଙ୍କୁ ସମ୍ବୋଧନ କରି କହିଛନ୍ତି -

"ତୋ କୃପା ବିହୁନେ ଉତ୍କଳ ମାତାର
ନାମ ଖ୍ୟାତି ଗ୍ରନ୍ଥେ ପଡ଼ି ନାହିଁ ଗାର ।"

ପ୍ରସଙ୍ଗକ୍ରମେ ମୟୂରଭଞ୍ଜର ରାଜା ରାମଚନ୍ଦ୍ର ଭଞ୍ଜ ଓ ବାମଣ୍ଡାର ରାଜା ସାର୍ ସୁଢଳଦେବଙ୍କ ସାହିତ୍ୟପ୍ରୀତି କଥା ଉଲ୍ଲେଖ କରି କବି ଉତ୍କଳ ଭାଷାର ଉନ୍ନତି ଯେ ନିଶ୍ଚୟ ହେବ, ସେ ଆଶା ପୋଷଣ କରିଛନ୍ତି । କବିଙ୍କ ଭାଷାରେ -

"ପାହିଲାଣି ତୋର ତାମସୀ ରଜନୀ
ଫୁଟିବ ଉତ୍କଳ ଭାଷା କମଳିନୀ ।"

ଏହିଠାରେ କାବ୍ୟର ପରିସମାପ୍ତି ଘଟିଛି ।

'ଚିଲିକା' କାବ୍ୟ ଓଡ଼ିଆ ସାହିତ୍ୟରେ ରାଧାନାଥଙ୍କୁ ଶ୍ରେଷ୍ଠ ପ୍ରକୃତିକବିର ଗୌରବ ଦେଇଅଛି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଉତ୍କଳ ସାହିତ୍ୟରେ 'ଚିଲିକା' କାବ୍ୟଟି ଯଥାର୍ଥରେ ଶୋଭାର ଭଣ୍ଡାର ।

## ମହାଯାତ୍ରା

ଏହା ୧୮୯୧-୯୨ ମସିହାରେ ପ୍ରଥମେ 'ଉତ୍କଳ ପ୍ରଭାତ'ରେ ପ୍ରକାଶ ପାଇଲା । ୧୮୯୨ ମସିହାରେ ଏହା ପୁସ୍ତକ ରୂପେ ପ୍ରକାଶିତ ହେଲା । ଏହା ସମ୍ପୂର୍ଣ୍ଣ କାବ୍ୟ ନୁହେଁ । ମାତ୍ର ସାତୋଟି ସର୍ଗ ଏଥିରେ ଅଛି । ରାଧାନାଥ ତିରିଶ ସର୍ଗ ପର୍ଯ୍ୟନ୍ତ ରଚନା କରିଥିବାର ଜଣାଯାଏ । ମାତ୍ର ସରକାର କେତେକ ଅଂଶକୁ ଆପତ୍ତି କରିବାରୁ ଆପତ୍ତିକର ଅଂଶତକ ଉଠାଇ ଦିଆଯାଇଥିଲା । କବି ଏଥିପାଇଁ ଦୁଃଶ୍ଚିନ୍ତାରେ ଜର୍ଜରିତ ହୋଇପଡ଼ିଥିଲେ । ତାଙ୍କ ସ୍ୱାସ୍ଥ୍ୟର ବହୁ ଅବନତି ମଧ୍ୟ ଘଟିଥିଲା । କବି 'ମହାଯାତ୍ରା'ର ଅଷ୍ଟମରୁ ଦ୍ୱାଦଶ ସର୍ଗ ପର୍ଯ୍ୟନ୍ତ ପାଞ୍ଚୋଟି ସର୍ଗ ଓ ଅବଶିଷ୍ଟ ସର୍ଗର ଖସଡ଼ା ପ୍ରଭୃତିକୁ ଅଗ୍ନିରେ ନିକ୍ଷେପ କରିଥିଲେ । ଏପରିକି ଓଡ଼ିଆ ସାହିତ୍ୟରେ କିଛି ନ ଲେଖିବାପାଇଁ ସ୍ଥିର କରିଥିଲେ । ତେବେ ଯେଉଁ ସାତୋଟି ସର୍ଗ ରହିଛି, ସେଥିରୁ କବିଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ପ୍ରତିଭାର ପରିଚୟ ମିଳେ । ବାସ୍ତବିକ 'ମହାଯାତ୍ରା' ହିଁ ରାଧାନାଥଙ୍କ ପ୍ରତିଭାର ଜୟଯାତ୍ରା ।

ମହାଭାରତ ମହାକାବ୍ୟରୁ ଏହାର ମୂଳ ବିଷୟବସ୍ତୁ ଗ୍ରହଣ କରାଯାଇଛି । ଶ୍ରୀକୃଷ୍ଣଙ୍କର ମୃତ୍ୟୁ ସମ୍ବାଦ ପାଇ ପାଣ୍ଡବମାନେ ଭାଙ୍ଗିପଡ଼ିଛନ୍ତି । ସେମାନେ ଶାସନରେ ଆଉ ନ ରହିବାକୁ ସ୍ଥିର କରିଛନ୍ତି । ପରୀକ୍ଷିତଙ୍କୁ ହସ୍ତିନା ସିଂହାସନରେ ବସାଇ ପାଣ୍ଡବ ପାଞ୍ଚ ଭାଇ ଦ୍ରୌପଦୀଙ୍କ ସହ ମହାପ୍ରସ୍ଥାନ କରିଛନ୍ତି ।

ସଂସ୍କୃତ ମହାଭାରତରେ ପାଣ୍ଡବମାନେ ଆସି ଲୋହିତ୍ୟାରେ ପହଞ୍ଚିଛନ୍ତି । ସେଠାରୁ ହୋଇଛି ହିମାଳୟ ଆରୋହଣ । ସାରଳା ଦାସ କିନ୍ତୁ ପାଣ୍ଡବମାନଙ୍କୁ ଦ୍ରୌପଦୀଙ୍କ ସହିତ ଓଡ଼ିଶାକୁ ନେଇ ଆସିଛନ୍ତି । ରାଧାନାଥ ଉଭୟ ସଂସ୍କୃତ ମହାଭାରତ ଓ ସାରଳା ଦାସଙ୍କ ମହାଭାରତକୁ ଅନୁସରଣ କରିଛନ୍ତି । ପାଣ୍ଡବମାନେ ଏଥିରେ ଦ୍ରୌପଦୀଙ୍କ ସହ ହସ୍ତିନାରୁ ବାହାରି ଆଧୁନିକ ଉତ୍ତରପ୍ରଦେଶ, ବିହାର ଓ ବଙ୍ଗଳାର ତୀର୍ଥସ୍ଥଳୀମାନଙ୍କୁ ଯାଇ ପରେ ପୁରୀ ଶ୍ରୀକ୍ଷେତ୍ରରେ ପହଞ୍ଚିଛନ୍ତି । ମହୋଦଧିଠାରେ ଅଗ୍ନିଙ୍କର ଆବିର୍ଭାବ ହୋଇଛି । ତାଙ୍କ ନିର୍ଦ୍ଦେଶରେ ଅର୍ଜୁନ ସମୁଦ୍ରକୁ ତାଙ୍କର ଗାଣ୍ଡୀବ ଧନୁ ଫିଙ୍ଗି ଦେଇଛନ୍ତି । ଅଗ୍ନି ସେଠାରେ ଜଗନ୍ନାଥଧାମର ମହିମା ବଖାଣିଛନ୍ତି । ଅଗ୍ନିଦେବତାଙ୍କ ସହ ପାଣ୍ଡବମାନେ ମହାନଦୀ କୂଳେ କୂଳେ ଓଡ଼ିଶାର

ପଶ୍ଚିମ ସୀମା ପର୍ଯ୍ୟନ୍ତ ଯାଇଛନ୍ତି । ମଧ୍ୟଭାରତର ବହୁ ସ୍ଥାନ ଅତିକ୍ରମ କଲା ପରେ ସେମାନେ ସହ୍ୟାଦ୍ରି ପର୍ବତ ଉପରେ ପହଞ୍ଚିଛନ୍ତି । ସେଠାରେ ଅଗ୍ନି ଯୁଧିଷ୍ଠିରଙ୍କୁ ଦେଇଛନ୍ତି ଅଞ୍ଜନ – ଯାହା ବଳରେ ଯୁଧିଷ୍ଠିର ଦେଖିଛନ୍ତି ଦେଶର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତ୍ ।

ଯୁଧିଷ୍ଠିର ଦେଖିଛନ୍ତି ଯେ ଭାରତବର୍ଷରୁ ଧର୍ମ, ସତ୍ୟ, ନ୍ୟାୟ, କ୍ଷମା, ଶୌର୍ଯ୍ୟ, ସାହସ ପ୍ରଭୃତି ଲୋପ ପାଇଗଲାଣି । ତା' ବଦଳରେ କାମ, କ୍ରୋଧ, ଲୋଭ, ମିଥ୍ୟା, କଳହ ଆଳସ୍ୟ ପ୍ରଭୃତି ବିସ୍ତାର କରିବାରେ ଲାଗିଛି । ଭାରତବର୍ଷର ସାମାଜିକ ଅବସ୍ଥା ଭାଙ୍ଗିପଡୁଛି । ବ୍ରାହ୍ମଣ, କ୍ଷତ୍ରିୟ ପ୍ରଭୃତିଙ୍କର ପତନ ଘଟୁଛି । ବହୁ ପ୍ରକାର ଉପଜାତିମାନଙ୍କର ସୃଷ୍ଟି ହେଉଛି । ଫଳରେ କଳି ଦ୍ୱନ୍ଦ୍ୱ ଦେଖାଦେଉଛି । ବୁଦ୍ଧଦେବଙ୍କର ଜନ୍ମ ମଧ୍ୟ ସେ ଦିବ୍ୟଚକ୍ଷୁରେ ଦେଖିଛନ୍ତି । ମାତ୍ର ଅଳ୍ପ କାଳ ପରେ ଭାରତରେ ବୌଦ୍ଧଧର୍ମ ଲୋପ ପାଇଛି । ହିନ୍ଦୁ ଧର୍ମର ପୁରୋହିତମାନେ ପୁଣି ପ୍ରଭୁତ୍ୱ ବିସ୍ତାର କରିଛନ୍ତି । ଏହାପରେ ଯୁଧିଷ୍ଠିର ଦିବ୍ୟ ଅଞ୍ଜନ ବଳରେ ଭବିଷ୍ୟତ୍‌ରେ ଭାରତରେ ବିପର୍ଯ୍ୟୟ ଦେଖାଦେବା କଥା ଜାଣିପାରିଛନ୍ତି । ପୃଥ୍ୱୀରାଜ ଜୟଚନ୍ଦ୍ରଙ୍କର ସିଂହାସନପାଇଁ ବାଦ, ଜୟଚନ୍ଦ୍ରଙ୍କର ମହମ୍ମଦ ଘୋରୀଙ୍କୁ ଆମନ୍ତ୍ରଣ, ପ୍ରଥମ ଓ ଦ୍ୱିତୀୟ ତିରୋରୀ ଯୁଦ୍ଧ ଓ ଭାରତର ଗୌରବ ଲୋପ ହେବା ଦେଖିପାରିଛନ୍ତି । ଦ୍ୱିତୀୟ ତିରୋରୀ ଯୁଦ୍ଧରେ ସେନାପତି ଅମର୍ଷୀଙ୍କର ଉଦ୍‌ବୋଧନ ଦେବା ଛଳରେ କବି ଦେଶପ୍ରେମ ବହ୍ନି ପ୍ରଜ୍ୱଳିତ କରିବାପାଇଁ ଚେଷ୍ଟା କରିଛନ୍ତି –

''ଏହିକି ସେ ଆର୍ଯ୍ୟଭୂମି ? ଏ ଭୂମିର ସୁତ
ତୁମ୍ଭେଟିକି ଆର୍ଯ୍ୟ–ନାମ ଦାୟାଦ ଜଗତେ ?
ବିନା ଯୁଦ୍ଧେ ନ ଦେବାର ସୂଚ୍ୟଗ୍ର ମେଦିନୀ
ପଣ ଯେଉଁ ଆର୍ଯ୍ୟଙ୍କର, ତାଙ୍କର ଶୋଣିତ
ବହେଟିକି ଆହେ ଯୋଦ୍ଧେ, ତୁମ୍ଭ ଧମନୀରେ ?''

ସାହିତ୍ୟିକ ଶିବନାରାୟଣ ଦେବଙ୍କ ଭାଷାରେ 'ମହାଯାତ୍ରା' ଅସମ୍ପୂର୍ଣ୍ଣ ହେଲେହେଁ ସେଥିରେ ବୀରରସର ଯେପରି ସ୍ଫୂର୍ତ୍ତି ଦେଖାଯାଏ, ପ୍ରାଚୀନ ଉତ୍କଳ ସାହିତ୍ୟରେ ସେଥିର ପଟାନ୍ତର ଅଛି କି ନାହିଁ ସନ୍ଦେହ ।

'ମହାଯାତ୍ରା' କାବ୍ୟରେ କବି ପ୍ରଥମଥରପାଇଁ ଅମିତ୍ରାକ୍ଷର ଛନ୍ଦ ପ୍ରବର୍ତ୍ତନ କରିଛନ୍ତି । ଏହା ପୂର୍ବରୁ ବଙ୍ଗଳାରେ ମାଇକେଲ ମଧୁସୂଦନ ଦତ୍ତ ଅମିତ୍ରାକ୍ଷର ଛନ୍ଦରେ କବିତା ରଚନା କରିଥିଲେ । ଭକ୍ତକବି ମଧୁସୂଦନ ଏହି ବିଷୟରେ ମନ୍ତବ୍ୟ ଦେଇଥିଲେ –

''ବଙ୍ଗୀୟ ପଦ୍ୟର ଏକାନ୍ତ ଅନୁରୂପ ଉତ୍କଳ ପଦ୍ୟସାହିତ୍ୟ ମଧ୍ୟରେ ଏହି ନୂତନ ଛନ୍ଦ ଅବତାରଣାଦ୍ୱାରା କବି ଶ୍ରୀରାଧାନାଥ କିଛି ମୌଳିକତା ଦେଇ ନାହାନ୍ତି, କିନ୍ତୁ ମୁଁ ମୁକ୍ତ କଣ୍ଠରେ କହିପାରେ ଯେ ତାଙ୍କ ଛଡ଼ା ଅନ୍ୟ କୌଣସି ଉତ୍କଳୀୟ ଲେଖକ ଏହି ଛନ୍ଦର ଯଥାଯଥ ପ୍ରୟୋଗ ବିଷୟରେ ଦକ୍ଷତା ଦେଖାଇପାରନ୍ତେ ନାହିଁ ।'' 'ମହାଯାତ୍ରା' ସମ୍ପର୍କରେ ସେ ମତ ଦେଇଛନ୍ତି –

''ଆଧୁନିକ ଉତ୍କଳ ସାହିତ୍ୟ ମନ୍ଦିରର ସର୍ବଶ୍ରେଷ୍ଠ ବିନ୍ଧାଣି ରାଧାନାଥ । × × × ମହାଯାତ୍ରାରେ ସେ ବର୍ଣ୍ଣନା ଦିଗରେ ଯେଉଁ ଶକ୍ତି, ସୌନ୍ଦର୍ଯ୍ୟ ଓ କୌଶଳ ଦେଖାଇ ଅଛନ୍ତି, ତାହା ଅସାମାନ୍ୟ ଏବଂ ସମଗ୍ର ଉତ୍କଳ ସାହିତ୍ୟ ମଧ୍ୟରେ ଅତୁଲ୍ୟ ବୋଇଲେ ଅତ୍ୟୁକ୍ତି ହେବ ନାହିଁ ।''

ଓଡ଼ିଶାର ଆଉ ଜଣେ ବିଶିଷ୍ଟ କବି ଓ ସାହିତ୍ୟିକ ଡଃ ମାୟାଧର ମାନସିଂହ ମତାମତ ଦେଇ କହିଛନ୍ତି ଯେ ମହାକାବ୍ୟଟି ଝୁଙ୍ଗ ଶୈଳୀରେ ଓ ନାଦେଦାର ଅମିତ୍ରାକ୍ଷର ଛନ୍ଦରେ ରଚିତ । ଯୁଦ୍ଧ, ପ୍ରକୃତି ବର୍ଣ୍ଣନା ଓ ଭାରତୀୟ ଆର୍ଯ୍ୟମାନଙ୍କର କ୍ରମିକ ଅଧୋଗତିର ବର୍ଣ୍ଣନା ମହାକାବ୍ୟୋଚିତ୍ ରୀତିରେ ଲିଖିତ । ଭଗ୍ନ କୋଣାର୍କ ପରି ରାଧାନାଥଙ୍କ 'ମହାଯାତ୍ରା' ଖଣ୍ଡିତ ହୋଇ ମଧ୍ୟ ମହତ୍ ।

## ଦରବାର

ଏହା ଏକ ବ୍ୟଙ୍ଗାତ୍ମକ କାବ୍ୟ । ପାଶ୍ଚାତ୍ୟ ଦେଶରେ ବ୍ୟଙ୍ଗାତ୍ମକ ସାହିତ୍ୟର ସମ୍ମାନ ଓ ଆଦର ଥିବା ଦୃଷ୍ଟିରୁ ରାଧାନାଥ ପାଶ୍ଚାତ୍ୟ ବ୍ୟଙ୍ଗାତ୍ମକ ସାହିତ୍ୟ ଅଧ୍ୟୟନ କରିଥିବା ଅନୁମାନ କରାଯାଏ । ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ସେ ବ୍ୟଙ୍ଗାତ୍ମକ ରଚନା ଦିଗରେ ମନୋନିବେଶ କଲେ ।

୧୮୯୪ ମସିହା ଅଗଷ୍ଟ ମାସ ୨୯ ତାରିଖରେ କଟକର ବାରବାଟୀ ଦୁର୍ଗ ପ୍ରାଙ୍ଗଣରେ ଗୋଟିଏ ଦରବାର ଅନୁଷ୍ଠିତ ହୋଇଥିଲା । ଏହି ଦରବାରରେ ସାମନ୍ତ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଓ କାଉପୁର ଜମିଦାର ଗୋବିନ୍ଦବଲ୍ଲଭ ରାୟଙ୍କୁ ରାୟବାହାଦୁର ଉପାଧି ଦେବାର ବ୍ୟବସ୍ଥା ହୋଇଥିଲା । ସେଦିନ ଭ୍ରମବଶତଃ ଚନ୍ଦ୍ରଶେଖର ଉପସ୍ଥିତ ହୋଇ ନ ପାରିବାରୁ କେବଳ କାଉପୁର ଜମିଦାର ଗୋବିନ୍ଦବଲ୍ଲଭ ରାୟଙ୍କୁ ରାୟବାହାଦୁର ଉପାଧି ପ୍ରଦାନ କରାଗଲା । ପରେ ଚନ୍ଦ୍ରଶେଖରଙ୍କୁ ଏକ ସ୍ୱତନ୍ତ୍ର ଦରବାରରେ ସମ୍ମାନିତ କରାଯାଇଥିଲା । ଏହି ଦରବାରରେ ବହୁ ରାଜା, ଜମିଦାର ଓ ସରକାରୀ କର୍ମଚାରୀ ଯୋଗ ଦେଇଥିଲେ । ୧୮୯୫ ମସିହା ଅଗଷ୍ଟ ମାସରେ ରାଧାନାଥଙ୍କ 'ଦରବାର'ର କିଛି ଅଂଶ ବାଲେଶ୍ୱରରୁ ପ୍ରକାଶିତ ଓଡ଼ିଆ ଓ ନବସମ୍ବାଦରେ ପ୍ରକାଶ ପାଇଲା ।

ଏଥିରେ ମଧ୍ୟ 'ଦରବାର' ନାମ ଦିଆଯାଇ ନ ଥିଲା । କାଉପୁର ଜମିଦାର ଗୋବିନ୍ଦବଲ୍ଲଭ ରାୟ ରାଧାନାଥଙ୍କ ଭଗିନୀପତି ଥିଲେ । ତାଙ୍କୁ ଉପହାସ କରିବାପାଇଁ ରାଧାନାଥ ଏହା ରଚନା କରିଥିଲେ ବୋଲି କେହି କେହି କହିଥାନ୍ତି । ୧୮୯୭ ମସିହାରେ 'ଦରବାର' ସମ୍ପୂର୍ଣ୍ଣଭାବେ ପ୍ରକାଶିତ ହେଲା । ଏଥିରେ କବି ସେ କାଳର ରାଜା, ଜମିଦାର ଓ କ୍ଷମତାଭୋଗୀ ଶ୍ରେଣୀକୁ କଟୁ ସମାଲୋଚନା କରିଛନ୍ତି । ତାଙ୍କ ମତରେ ରାଜା, ଜମିଦାର, ଧନୀ, କ୍ଷମତାସୀନ କର୍ମଚାରୀ ଗୋଷ୍ଠୀର ମିଳନ ପୀଠ ଦରବାର ପୃଥିବୀର ସବୁଯାକ ଅନ୍ୟାୟ, ଅନୀତି ଓ ଅତ୍ୟାଚାରର ପ୍ରଦର୍ଶନ କ୍ଷେତ୍ରରେ ପରିଣତ ହୋଇଅଛି । ସେ ରାଜନ୍ୟମଣ୍ଡଳୀକୁ ତିରସ୍କାର କରିଛନ୍ତି, ଯଥା –

"ଆହେ ମାନଶୌଣ୍ଡ ଭୂପାଳ ମଣ୍ଡଳୀ
ଦେଇଛ କି କୁଳଧର୍ମେ ଜଳାଞ୍ଜଳି ।"

ସେମାନଙ୍କର ଭୋଗବିଳାସକୁ ନିନ୍ଦା କରିଛନ୍ତି –

"ଗ୍ରାମ୍ୟାମୋଦ ପଙ୍କେ ଶୂକର ପରାଏ
ଘାଣ୍ଟି ହେଉଅଛ କେତେ ଦିନ ଯାଏ ?"

ରାଜା ଜମିଦାରମାନଙ୍କର ଚକଚକିଆ ପୋଷାକକୁ ମଧ୍ୟ ଆକ୍ଷେପ କରିଛନ୍ତି –

"ପିନ୍ଧି ନୂଆ ଚକଚକିଆ ପୋଷାକ
ଥୋକାଏ ବହନ୍ତି ମନେ ବଡ଼ ଝାଁକ
ଭ୍ରମନ୍ତି ଚୌଦିଗେ ଅଙ୍ଗଭଙ୍ଗୀ କରି
ଅହମିକା ବନେ ପ୍ରଜାପତି ପରି ।"

ସାହେବୀ ପୋଷାକ ପିନ୍ଧିଥିବା ବାବୁମାନଙ୍କୁ ସେ ମଧ୍ୟ ବିଦ୍ରୂପ କରିଛନ୍ତି –

"ସାହେବୀ ପୋଷାକ କେହୁ ଅବା ପିନ୍ଧି
ସସ୍ମିତେ କହଇ ବଙ୍କା ବଙ୍କା ହିନ୍ଦୀ
ଥରେ ଥରେ କାଶି ସାହେବୀ ଠାଣିରେ
ପୋଛଇ ବଦନ ରୋମାଲ କାନିରେ ।"

ପୋଲିସ କର୍ମଚାରୀଙ୍କୁ ସେ ତୀବ୍ର ସମାଲୋଚନା କରି କହିଛନ୍ତି –

"ଆନ ବୋଲେ ମୁହିଁ ଅଟଇ ପୁଲିସ
ବିନା ମେଘେ ସୃଜି ପାରଇ କୁଳିଶ ।"

ଅଥବା – "କିବା ଦୁଃଖୀ ରଙ୍କୀ କି କୋଟିପତିଏ
ଲାଲ ପଗଡ଼ିକୁ ନ ଡରନ୍ତି କିଏ ?"

ଶେଷରେ କବି ଉତ୍କଳର ସେହି ଧନହୀନ ଜ୍ୟୋତିଷ ପଠାଣି ସାମନ୍ତଙ୍କୁ ନିଜର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଛନ୍ତି –

''ମଣ୍ଡିଅଛ କିପାଁ ଆସି ସଭାଘର
ଉତ୍କଳ ଶେଖର ହେ ଚନ୍ଦ୍ରଶେଖର,
× × ×
ଜାଣେ ମୁଁ ନ ଥିଲ, ସମ୍ମାନ ଆଶାୟୀ
ସମ୍ମାନ ତୁମ୍ଭକୁ ଲୋଡ଼ିଗଲା ଯାଇ ।
ତୁମ୍ଭ ମୁଖ୍ୟ କର୍ମ ତପ ଆଚରିବା
ଦୁନିଆର ଯଶେ ଯାଏ ଆସେ କିବା ?''

ରାଧାନାଥ କାବ୍ୟ ଭିତରେ ବହୁ ନୀତିବାକ୍ୟ ଶୁଣାଇଛନ୍ତି । ବହୁ ଉପଦେଶ ଦେଇଛନ୍ତି । ଧର୍ମର ମହତ୍ତ୍ୱ ବଖାଣିଛନ୍ତି, ଯଥା –

''ଧର୍ମ ଏକା ସିନା ମହତ ପଣିଆ
ଆଉ ବଡ଼ ପଣ ଅଢ଼େଇ ଦିନିଆ ।''

ଅଥବା – × × ×

''ବଡ଼ ପଣ ସେହି, ଅନ୍ତେ ସୁଦ୍ଧା ଯାର
ସୌରଭେ ଚହଟୁଥାଏ ଏ ସଂସାର ।''

ଏହି କାବ୍ୟରେ କବିତା ଅତି ଅଳ୍ପ ଅଛି । ରାଧାନାଥ ନିଜେ ଗଙ୍ଗାଧରଙ୍କୁ ଏକ ପତ୍ରରେ ଜଣାଇଥିଲେ – ''ପ୍ରକୃତ ପକ୍ଷରେ ତାହା କବିତା ନୁହେଁ, ଉପଦେଶ ଅଟେ ।'' 'ଦରବାର' କାବ୍ୟରେ ଆବେଗ ଅପେକ୍ଷା ଅଭିଜ୍ଞାନ ମାତ୍ରା ଯେ ଅଧିକ ଏହା ସମସ୍ତେ ସ୍ୱୀକାର କରିବେ । ତେବେ ଜାତିକୁ ଉତ୍ତମ ପଥ ଦେଖାଇବାକୁ କବି ଚେଷ୍ଟା କରିଥିବା ଦୃଷ୍ଟିରୁ ନମସ୍ୟ ଅଟନ୍ତି ।

## ଯଯାତିକେଶରୀ

ଏହା ଏକ ଆଦି ରସାତ୍ମକ କାବ୍ୟ । ରାଧାନାଥଙ୍କ ଆଭିମୁଖ୍ୟ ଯେ ଭଞ୍ଜବିରୋଧୀ ନୁହେଁ, ଏକଥା ଏଥିରେ ପ୍ରମାଣିତ ହୋଇଅଛି । ରାଧାନାଥ କେତେକାଂଶରେ ସେକ୍ସପିୟରଙ୍କର 'ସମ୍ବେଲିନ' କାବ୍ୟେ ଓ ବଙ୍ଗଳା କବି ଭାରତଚନ୍ଦ୍ରଙ୍କ 'ବିଦ୍ୟାସୁନ୍ଦର' କାବ୍ୟଦ୍ୱାରା ପ୍ରଭାବିତ ହୋଇଛନ୍ତି । ମାତ୍ର ଏଥିରେ ପ୍ରଭାବର ପରିମାଣ ବେଶି ନୁହେଁ ।

ବିଷୟବସ୍ତୁ ମଧ୍ୟ ସେପରି ହୃଦ୍ୟ ନୁହେଁ । ପ୍ରାଚୀନ କାଳରେ ମଗଧ ରାଜାଙ୍କର ଦୁଇଟି ଯମଜ ସନ୍ତାନ ଥିଲେ । ପୁତ୍ର ଯଯାତି ଓ କନ୍ୟା ବିମଳା ।

ବିମାତାର ପ୍ରରୋଚନାରେ ଦୁଇ ଜଣ ନିର୍ବାସିତ ହୋଇ ଓଡ଼ିଶା ଆସି ଯାଜପୁରରେ ରହିଛନ୍ତି । ଭଉଣୀ ବିମଳା ପୁରୁଷ ବେଶରେ ରହିଛନ୍ତି । ଦୁହିଁଙ୍କର ଚେହେରାରେ ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ଏକଦା ଯଯାତି ଦେବୀଙ୍କପାଇଁ ଫୁଲହାର ଗୁନ୍ଥୁଥିଲେ । ବିମଳା ଅରଣ୍ୟକୁ ଶିକାରପାଇଁ ଯାଇଥିଲେ । ଉତ୍କଳ ରାଜଜେମା ଲଳିତା ସଖୀମାନଙ୍କ ସହ ବିରଜା ଦର୍ଶନକୁ ଆସିଥିଲେ । ଯଯାତି ଲଳିତାଙ୍କୁ ଦେଖି ପ୍ରଣୟାସକ୍ତ ହେଲେ । ରାଜଜେମା ଲଳିତା ମଧ ବିମଳାଙ୍କୁ ପୁରୁଷ ବେଶରେ ଦେଖି ଆସକ୍ତା ହେଲେ । ମାତ୍ର ପରେ ନାରୀ ବୋଲି ଜାଣିବାପରେ ଅନୁତପ୍ତା ହେଲେ । ଯଯାତି ଏକଥା ଜାଣିପାରିଛନ୍ତି । ସେ ବିମଳାବେଶରେ ରାଜଅନ୍ତଃପୁରରେ ପ୍ରବେଶ କରି ଲଳିତାଙ୍କ ସହ ଗୋପନ ପ୍ରଣୟରେ ଲିପ୍ତ ରହିଛନ୍ତି । ରାଜା ଏକଥା ଜାଣିପାରି ଯଯାତିଙ୍କୁ ପ୍ରାଣଦଣ୍ଡ ଆଦେଶ ଦେଇଛନ୍ତି । ମାତ୍ର ମା' ବିରଜାଙ୍କର ସ୍ୱପ୍ନାଦେଶ ହୋଇଛି । ଯଯାତି ଓ ଲଳିତାଙ୍କ ବିବାହ ହୋଇଛି । ଯଯାତିକେଶରୀ ହୋଇଛନ୍ତି ଉତ୍କଳର ରାଜା ।

କାବ୍ୟର ଚତୁର୍ଥ ସର୍ଗଟି ଆଦିରସାତ୍ମକ । ନାୟକ ନାୟିକାଙ୍କ ଗୁପ୍ତ ମିଳନ ଦୃଶ୍ୟକୁ କବି ବର୍ଣ୍ଣନା କରିଛନ୍ତି –

''ଶମହରି ଛାୟା ମଣ୍ଡପ ରତନ
ପଲଙ୍କ ହେଲା ବେଦିକା
ନାୟକ ନାୟିକା ଭୁଜ ଯୁଗ୍ମ ହେଲା
ଚରଣ-ପୁଷ୍ପ-ମାଳିକା ।

× × ×

ତପ୍ତ ଥାଉଁ ଯଥା ଲୌହକୁ ପୋଡ଼ଇ
ଅୟୋଘନେ ଲୌହକାର
ପ୍ରହାରି ବିଶିଖେ ରସିକା ରସିକେ
ଯୋଖିଲା ତେସନେ ମାର ।''

ଏହି କାବ୍ୟରେ ପ୍ରାଚୀନ ରସିକତା ଓ ନବ୍ୟ ସମୀଚୀନତାର ଏକତ୍ର ସମାବେଶ ହୋଇଛି ବୋଲି କେହି କେହି ମତ ଦେଇଛନ୍ତି ।

ଆଲୋଚକ ଶିବନାରାୟଣ ଦେବଙ୍କ ଭାଷାରେ '''ଯଯାତିକେଶରୀ' ପ୍ରଣେତା ରାଧାନାଥ ପ୍ରାଚୀନ କବିମାନଙ୍କର ନିତାନ୍ତ ଅଯୋଗ୍ୟ ପ୍ରତିଦ୍ୱନ୍ଦ୍ୱୀ ନୁହନ୍ତି ।''

## ତୁଳସୀ ସ୍ତବକ

ଏହା ୧୮୯୪ ମସିହାରେ ପ୍ରକାଶିତ ହୋଇଥିଲା । ରାଧାନାଥଙ୍କର କେବଳ ଯେ ବଙ୍ଗଳା ବା ବିଦେଶୀ ସାହିତ୍ୟ ପ୍ରତି ଅନୁରାଗ ଥିଲା ତା' ନୁହେଁ, ହିନ୍ଦୀ ସାହିତ୍ୟରେ ମଧ ତାଙ୍କର ପ୍ରବେଶ ଥିଲା । ସେ ତୁଳସୀ ଦାସଙ୍କ 'ଶ୍ରୀରାମଚରିତ ମାନସ'କୁ ଅଧ୍ୟୟନ କରିଥିଲେ । ତାହାରି ଅବଲମ୍ବନରେ ସେ ବର୍ଷା ଓ ଶରତଋତୁ ସମ୍ବନ୍ଧରେ ଦୁଇଟି ଗୀତିକବିତା ରଚନା କରିଛନ୍ତି । କବି ତାଙ୍କ ଉତ୍ସର୍ଗପତ୍ରରେ କେତେଗୁଡ଼ିଏ ତୁଳସୀ ଦଳରେ ଏହି ସ୍ତବକ ପ୍ରସ୍ତୁତ ହୋଇଥିବାର ପ୍ରକାଶ କରିଛନ୍ତି । କବି କେତେକ ସ୍ଥାନରେ ତୁଳସୀ ଦାସଙ୍କ କବିତା ଅନୁବାଦ କରିଛନ୍ତି । କେତେକ ସ୍ଥାନରେ 'ରାମଚରିତ ମାନସ'ର ଭାବକୁ ବିଶଦ ଓ ପୁଷ୍କଳ ଭାବରେ ପ୍ରକାଶ କରିଛନ୍ତି । ସେ ତୁଳସୀ ଦାସଙ୍କ ଭାବ ଗ୍ରହଣ କରିଥିଲେ ମଧ ନିଜର ଯଥେଷ୍ଟ ମୌଳିକତା ଦେଖାଇଛନ୍ତି ।

ବର୍ଷା କବିତାର ଆରମ୍ଭରେ ରାଧାନାଥଙ୍କ ବଳିଷ୍ଠ ନିଜସ୍ୱତା ପରିସ୍ଫୁଟ ହୋଇଛି, ଯଥା –

''ପ୍ରସ୍ରବଣ ଶଇଳେ କଳେ ବସତି
ସୌମିତ୍ରି ସଙ୍ଗେ ପ୍ରଭୁ ରାଘବପତି ।''

କବି ବର୍ଷାକାଳର ଯବନିକା ପକାଇଛନ୍ତି –

''ବରଷାକାଳ ଅଟେ ଉଦ୍ଭିଦ ମିତ୍ର
ମାତ୍ର ପଙ୍କଜ ମଳା ନୁହେଁ ବିଚିତ୍ର ।
ଜଳ ଗହଳ ହେଲା ତା' ପକ୍ଷେ ଯମ
ଅତି ସମ୍ପଦ ବାବୁ ମହାବିଷମ ।''

ସେହିପରି ଶରତଋତୁ ବର୍ଣ୍ଣନାରେ କବି ନିଜର ମୌଳିକତା ଦେଖାଇଛନ୍ତି –

''ବର୍ଷାଗତେ ଆସିଲା ଋତୁ ବିମଳ
ଦିଶନ୍ତି କାନ୍ତିବାସେ ଦିଶେ ଉଜ୍ଜ୍ୱଳ ।''

ଅଥବା – ''ଜଗତୀ ବରଷାର ଧବଳ ଜଟା
କାଶ କୁସୁମେ ଶୁକ୍ଳ ତଟିନୀପଠା ।''

'ତୁଳସୀ ସ୍ତବକ'ରେ ରାଧାନାଥଙ୍କ ସ୍ୱାକ୍ଷର ଉଜ୍ଜ୍ୱଳ । କବି ରାଧାମୋହନ ଗଡ଼ନାୟକଙ୍କ ମତରେ – ''ସେଇ ବର୍ଷା ଓ ଶରତ କବିତା ଯୋଡ଼ିକ ଓଡ଼ିଆ କବିତା କ୍ଷେତ୍ରରେ ଦିଓଟି ରତ୍ନ ।''

## ଉର୍ବଶୀ

ଏହା ଏକ ଅସମ୍ପୂର୍ଣ୍ଣ କାବ୍ୟ । ଏକଦା ଅରଣ୍ୟ ମଧ୍ୟରେ ପୁରୁରବା ଉର୍ବଶୀଙ୍କୁ ସଂଜ୍ଞାହୀନ ଅବସ୍ଥାରେ ଦେଖିଛନ୍ତି । ତାଙ୍କ ଉପରେ ଜଳ ସିଞ୍ଚନ କରି ସଂଜ୍ଞା ଫେରାଇ ଆଣିଛନ୍ତି । ପୁଣି ତାଙ୍କୁ ସାଙ୍ଗରେ ନେଇ ହେମକୂଟ ଗିରିକୁ ଯାଇଛନ୍ତି । ବାଟରେ ତାଙ୍କ ଦେହର ସ୍ପର୍ଶ ପାଇ ଉର୍ବଶୀଙ୍କ ଦେହରେ ଶିରହଣ ଖେଳିଛି । କିନ୍ତୁ ପୁରୁରବା ବିଦାୟ ନେଇ ଚାଲିଯାଇଛନ୍ତି । ଅବଶିଷ୍ଟ ଅଂଶ ଗଦ୍ୟାକାରରେ ଲିଖିତ । ଏଥିରେ କବି ପ୍ରତିଭାର ପରିଚୟ ମିଳେ ନାହିଁ ।

## ଭାରତ ଗୀତିକା

କବି ମଧ୍ୟ ସଂସ୍କୃତରେ ବହୁ କବିତା ରଚନା କରିଛନ୍ତି । ସେଗୁଡ଼ିକ ମଧ୍ୟରେ 'ଭାରତ ଗୀତିକା' ଅନ୍ୟତମ । ଏଥିରେ ଭାରତମାତାର ସ୍ତୁତି କରାଯାଇଛି । ଏହା ବଡ଼ ବଡ଼ ସମ୍ମିଳନୀମାନଙ୍କରେ ପ୍ରାରମ୍ଭିକ ସଙ୍ଗୀତରୂପେ ଗାନ କରାଯାଏ ।

## କ୍ଷୁଦ୍ର ରଚନାବଳୀ

'ତିନି ବନ୍ଧୁ' ଏକ କ୍ଷୁଦ୍ର ରଚନା । କବି ଏଥିରେ ଧର୍ମର ମହତ୍ତ୍ୱ ପ୍ରତିପାଦନ କରିଛନ୍ତି । ଧନ, ଜନ ଓ ଧର୍ମ ମନୁଷ୍ୟର ତିନି ବନ୍ଧୁ ହେଲେହେଁ ଧନ ଓ ଜନ ମନୁଷ୍ୟର ପରକାଳକୁ ସାହାଯ୍ୟକାରୀ ନୁହନ୍ତି । ଧର୍ମହିଁ ପରକାଳର ଏକମାତ୍ର ସହାୟକ । ଧର୍ମପଥ ଅବଲମ୍ବନ କରିବାକୁ ସେ ସମାଜକୁ ଆହ୍ୱାନ କରିଛନ୍ତି । କବିଙ୍କର ଆଉ ଏକ କ୍ଷୁଦ୍ର ରଚନା ହେଉଛି 'ଦଶରଥ ବିଳାପ' । ଏଥିରେ ରାମଚନ୍ଦ୍ରଙ୍କ ବନବାସ ଯୋଗୁଁ ଦଶରଥଙ୍କ ଅନୁଶୋଚନା ବର୍ଣ୍ଣିତ । 'ଧବଳେଶ୍ୱର ସ୍ତୋତ୍ରମ୍' ଏକ ସଂସ୍କୃତ ରଚନା । ଏଥିରେ ଧବଳେଶ୍ୱରଙ୍କ ମହିମା ଗାନ କରାଯାଇଛି । ୧୯୦୪ରେ ତାଙ୍କର କ୍ଷୁଦ୍ର କାବ୍ୟ 'ବାଣହରଣ' ପ୍ରକାଶ ପାଇଥିଲା । ଏହା ଦୁଇ ଗୋଟି ସର୍ଗରେ ରଚିତ । କବି ତାଙ୍କର ପୂର୍ବପୁରୁଷ ଉଦୟନାରାୟଣ ରାୟଙ୍କ ଲିଖିତ ବଙ୍ଗଳା ମହାଭାରତର ଏକ ଆଖ୍ୟାନକୁ ଅବଲମ୍ବନ କରି ଏହାକୁ ରଚନା କରିଛନ୍ତି । ୧୯୦୪ ମସିହାରେ 'ଉତ୍କଳ ସାହିତ୍ୟ'ରେ ଦୁର୍ଯ୍ୟୋଧନଙ୍କ ରକ୍ତ ନଦୀ ସନ୍ତରଣ କବିତା ପ୍ରକାଶ ପାଇଥିଲା । ପୁତ୍ର ଲକ୍ଷ୍ମଣକୁମାରଙ୍କର ଶବ ଦେଖି ଦୁର୍ଯ୍ୟୋଧନ ଯେପରି କ୍ରନ୍ଦନ କରିଛନ୍ତି, ତାହା ଅତି କରୁଣ ହୋଇପଡ଼ିଛି । ଓଡ଼ିଆ ସାହିତ୍ୟରେ ଏ ପ୍ରକାର କରୁଣ ରସାତ୍ମକ ବର୍ଣ୍ଣନା ବିରଳ । ୧୯୦୪ ମସିହାରେ ତାଙ୍କର 'ଶ୍ମଶାନ ଦୃଶ୍ୟ' କବିତା ପ୍ରକାଶ ପାଇଥିଲା, ପୁରାଣର ଏକ ଆଖ୍ୟାନ ଉପରେ ଏହା ଆଧାରିତ । ସେହି ବର୍ଷ କବିଙ୍କର 'ଏକାଗ୍ରତା' କବିତା ମଧ୍ୟ ପ୍ରକାଶ ପାଇଥିଲା । ସାବିତ୍ରୀ ସତ୍ୟବାନ୍ ପ୍ରସଙ୍ଗକୁ ନେଇ 'ସାବିତ୍ରୀ ଚରିତ'

ରଚିତ । ସତୀ ପ୍ରତି ସତୀଦ୍ରୋହୀର ଉକ୍ତି କବିତାରେ ସେ ନିଜର ନୈତିକ ଜୀବନର ସ୍ଖଳନର ଚିତ୍ର ଦେଇଛନ୍ତି । ଏଥିରେ ସେ ନିଜର ସରଳା ପତ୍ନୀଙ୍କ ସମ୍ମୁଖରେ ନିଜର ଦୋଷ ସ୍ୱୀକାର କରିବା ସଙ୍ଗେ ସଙ୍ଗେ କ୍ଷମା ଭିକ୍ଷା କରିଛନ୍ତି । ଏହାଛଡ଼ା ତାଙ୍କ ଟିପାଖାତାରେ ଥିବା କେତେକ କବିତା ପରେ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଥିଲା । ମାତ୍ର ସେଗୁଡ଼ିକ କବିପ୍ରତିଭାର ଯଥାର୍ଥ ପରିଚୟ ଦିଏ ନାହିଁ ।

## ଶେଷ ଜୀବନ

୧୯୦୩ ମସିହା ସେପ୍ଟେମ୍ବର ମାସରେ ୫୫ବର୍ଷ ବୟସରେ କବି ସରକାରୀ କାର୍ଯ୍ୟରୁ ଅବସର ଗ୍ରହଣ କଲେ । ତା'ର ତିନି ବର୍ଷ ପୂର୍ବେ ଅର୍ଥାତ୍ (୫୨ ବର୍ଷ ବୟସରେ) ୧୯୦୦ ମସିହାରେ ସେ ବର୍ଦ୍ଧମାନ ଶିକ୍ଷା ସର୍କଲର ଇନ୍‌ସପେକ୍ଟର ଭାବେ ଯୋଗ ଦେଇଥିଲେ । ସେତେବେଳେ ହୁଗୁଳୀର ବଙ୍ଗୀୟ ମହିଳା ନଗେନ୍ଦ୍ରବାଳାଙ୍କ ସହିତ ତାଙ୍କର ସାହିତ୍ୟିକ ସମ୍ପର୍କ ସ୍ଥାପିତ ହୋଇଥିଲା । ଉଭୟେ ଉଭୟଙ୍କ ରଚନାବଳୀ ପ୍ରତି ଆକର୍ଷିତ ହୋଇଥିଲେ । ପରେ ତାହା ପାପ ପ୍ରଣୟରେ ରୂପାନ୍ତରିତ ହେଲା । ୧୯୦୨ ମସିହାରେ ରାଧାନାଥଙ୍କ ପତ୍ନୀ ପରଶମଣିଙ୍କ ସାଦର ନିମନ୍ତ୍ରଣକ୍ରମେ ନଗେନ୍ଦ୍ରବାଳା ଓଡ଼ିଶା ପରିଭ୍ରମଣରେ ଆସିଥିଲେ । ସେ ଧବଳେଶ୍ୱର ପଠାକୁ ଯାଇ ତା'ର ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମୋହିତ ହୋଇପଡ଼ିଥିଲେ । ପରେ 'ଧବଳେଶ୍ୱର' କାବ୍ୟ ରଚନା କରି ରାଧାନାଥଙ୍କୁ ଉପହାର ଦେଇଥିଲେ । ରାଧାନାଥ ମଧ ନଗେନ୍ଦ୍ରବାଳାଙ୍କର ରଚନାଗୁଡ଼ିକର ବିଶେଷ ପ୍ରଶଂସା କରୁଥିଲେ । ତାଙ୍କର ପ୍ରଣୟ ଚାରି ବର୍ଷ କାଳ ଚାଲିଲାପରେ ସେଥିରେ ଭଙ୍ଗା ପଡ଼ିଲା । ସେ ମଧ ଅବସର ଜୀବନ କଟକରେ ନିଜ ଗୃହରେ କଟାଇଲେ । ଚରିତ୍ର ସ୍ଖଳନ ହେତୁ ସେ ମାନସିକ ଅବସାଦଗ୍ରସ୍ତ ହୋଇପଡ଼ିଥିଲେ । ସେ ମଧ ବାୟୁଶୂଳ ରୋଗରେ ଆକ୍ରାନ୍ତ ହେଲେ । ଯନ୍ତ୍ରଣା ଯୋଗୁଁ ଅଧିକାଂଶ ସମୟ ଶୋଇ ରହୁଥିଲେ । ସେ ତାଙ୍କର ଚରିତ୍ର ସ୍ଖଳନ ଘଟିଥିବା କଥା ଆତ୍ମଲିପିରେ ପ୍ରକାଶ କରିଛନ୍ତି । ଏହାପରେ ସେ କିଞ୍ଚିତ୍ ପରିମାଣରେ ଶାନ୍ତି ଲାଭ କରିଥିଲେ ।

କବିଙ୍କ ପୁତ୍ର ଶଶିଭୂଷଣ ପିତାଙ୍କର ମାନସିକ ଶାନ୍ତିପାଇଁ ଚେଷ୍ଟା କରିଥିଲେ । ତାଙ୍କୁ କୌଣସି ନା କୌଣସି କାର୍ଯ୍ୟରେ ବ୍ୟସ୍ତ ରଖିବାକୁ ଲାଗିପଡ଼ିଥିଲେ । ତାଙ୍କପାଇଁ ଦୁଇ ଜଣ ଶିକ୍ଷକ ମଧ ନିଯୁକ୍ତ ହୋଇଥିଲେ । ଜଣେ ବୃଦ୍ଧ ରାଧାନାଥଙ୍କୁ ସିତାର ଶିକ୍ଷା ଦେଉଥିଲେ, ଆଉ ଜଣେ ତାଙ୍କ ସଙ୍ଗେ ସଂସ୍କୃତ ଆଲୋଚନା କରୁଥିଲେ । ତାଙ୍କର ଅବସର ଜୀବନ ଯାପନପାଇଁ ପୁତ୍ର ଶଶିଭୂଷଣ ପ୍ରାକୃତିକ

ସୌନ୍ଦର୍ଯ୍ୟପୂର୍ଣ୍ଣ ଧବଳେଶ୍ୱର ପଠାରେ ନିଭୃତ ନିଳୟ ୧୯୦୧ ମସିହାରେ ନିର୍ମାଣ କରିଥିଲେ । ୧୯୦୮ ମସିହା ଜାନୁଆରୀ ମାସ ୧୯ ତାରିଖରେ ସେ ସେଠାରେ ଯାଇ ରହିଲେ । ସେ ସେଠାରେ 'ଧବଳେଶ୍ୱର ସ୍ତୋତ୍ରମ୍' ରଚନା କରିଥିବାର ଜଣାଯାଏ ।

ତାଳଚେର ରାଜାଙ୍କ ନିମନ୍ତ୍ରଣ ପାଇ ରାଧାନାଥ ଧବଳେଶ୍ୱରରୁ ତାଳଚେର ଯାଇଥିଲେ । ସେଠାରେ କବି ଦେଢ଼ ମାସ ରହିଥିଲେ । ସେଠାରେ ଧର୍ମ ଓ ସାହିତ୍ୟ ଆଲୋଚନାରେ ଭାଗ ନେଇଥିଲେ । ସେହିଠାରେ ମଧ ଗୈରିକ ବସନ ପରିଧାନ ଆରମ୍ଭ କରିଥିଲେ । ସେଠାରୁ ରାଜାଙ୍କ ନିମନ୍ତ୍ରଣକ୍ରମେ କବି ପାଲଲହଡ଼ା ଯାଇଥିଲେ । ସେଠାରେ ମାର୍ଚ୍ଚ ମାସ ୨୪ ତାରିଖରେ ତାଙ୍କୁ ରାଜ–ସମ୍ବର୍ଦ୍ଧନା ଦିଆଯାଇଥିଲା । ରାଜା ତାଙ୍କୁ ସୁନା ଛାଉଣି ହୋଇଥିବା ଦୁଆତ ଓ କଲମ ଉପହାର ଦେଇଥିଲେ । କବି ସେଠାରେ ୧୨ ଦିନ ରହିଥିଲେ । ସେ ସେଠାରୁ ଦେବଗଡ଼ ଗଲେ । ସେଠାରେ ଦୈନିକ ଦୁଇ ତିନି ଘଣ୍ଟା ସାହିତ୍ୟ ଆଲୋଚନାରେ ସମୟ କଟାଇଲେ । ବିଖ୍ୟାତ ପ୍ରଧାନପାଟ ଜଳପ୍ରପାତ ଦେଖି ସେ ଅପାର ଆନନ୍ଦ ଅନୁଭବ କରିଥିଲେ । ଏହାପରେ ସେ କୁଚିଣ୍ଡା ଗଲେ । ସେଠାରେ ସେ ଆମାଶୟ ରୋଗାକ୍ରାନ୍ତ ହୋଇପଡ଼ିଲେ । ଅପ୍ରେଲ ମାସ ୭ ତାରିଖରେ ସେ କଟକ ଫେରିଆସିଲେ ।

'ଉତ୍କଳ ସାହିତ୍ୟ ସମାଜ'ର ପ୍ରଥମ ଅଧିବେଶନ ବିନୋଦବିହାରୀ ନିକଟସ୍ଥ ଟାଉନ ଭିକ୍ଟୋରିଆ ସ୍କୁଲରେ ଅନୁଷ୍ଠିତ ହୋଇଥିଲା । ସେଥିରେ ସେ ସଭାପତିତ୍ୱ କରିଥିଲେ । ଉର୍ଦ୍ଧ୍ୱ ଆକାଶକୁ ଚାହିଁରହିବା ଅଭ୍ୟାସ ତାଙ୍କର ବହୁ ଦିନରୁ ଥିଲା । ନିର୍ଜନ ସ୍ଥାନରେ ବିଶ୍ରାମର ସୁବିଧା ପାଇଲେ ସେ ଅନନ୍ତ ଆକାଶକୁ ଚାହିଁ ରହୁଥିଲେ । ଏହା କରିବାକୁ ଭୂଦେବବାବୁ ତାଙ୍କୁ ବାରଣ କରିଥିଲେ । ଏଥିରେ ନିଜର ଅକିଞ୍ଚିତ୍‌କରତା ପରିସ୍ଫୁଟ ହୋଇଥାଏ ବୋଲି ତାଙ୍କର ମତ ଥିଲା । ତଥାପି କବି ଏହି ଅଭ୍ୟାସ ଛାଡ଼ିପାରି ନ ଥିଲେ । ମୃତ୍ୟୁର ଅବ୍ୟବହିତ ପୂର୍ବରୁ ସେ ଉର୍ଦ୍ଧ୍ୱକୁ ଚାହିଁ ରହିଥିଲେ – ସତେ ଯେପରି ଉର୍ଦ୍ଧ୍ୱ ଜଗତରେ ବିଚରଣ କରୁଛନ୍ତି, ପାଖରେ ପଡ଼ି ରହିଥିଲା ଇଂରାଜୀ ବହି 'Ideal Suggestions' । ଉନ୍ମୋଚିତ ହୋଇ ରହିଥିବା ଅଧ୍ୟାୟଟି ହେଲା Look Upwards । ସେଇ ଅବସ୍ଥାରେ ୧୯୦୫ ମସିହା ଅପ୍ରେଲ ମାସ ୧୬ ତାରିଖରେ ପୃଥିବୀପୃଷ୍ଠରୁ ତାଙ୍କର ହୋଇଥିଲା ଶେଷ ଯାତ୍ରା ।

ରାଧାନାଥ ଥିଲେ ଅସାଧାରଣ ପ୍ରତିଭାସମ୍ପନ୍ନ କବି । ତାଙ୍କର ପ୍ରତିଟି ସୃଷ୍ଟି ଗୋଟିଏ ଗୋଟିଏ ମନୋଜ୍ଞ ଗଳ୍ପକୁ ନେଇ ରଚିତ । ତାହା ମଧ ଯୁଗୀୟ କାବ୍ୟ

ପରମ୍ପରାକୁ ଅନୁସରଣ ନ କରି ସାଧାରଣ ବାସ୍ତବ ଜୀବନକୁ ଯେପରି ସ୍ପର୍ଶ କରିଅଛି, ତାହା ବିସ୍ମୟ ସୃଷ୍ଟି କରେ । ପରିବେଷିତ ଶୈଳୀ ମଧ ସରଳ, ସୁନ୍ଦର ଓ ଅତୀବ ମନୋମୁଗ୍ଧକର । ସେ କଥାବସ୍ତୁ ଉଭୟ ବିଦେଶୀ ଓ ସ୍ୱଦେଶରୁ ସଂଗ୍ରହ କରିଥିଲେ ମଧ ତାହା ସମ୍ପୂର୍ଣ୍ଣ ଓଡ଼ିଶୀ ରୂପଗ୍ରହଣ କରିଅଛି । ସାହିତ୍ୟରେ ସେ ପୁଣି ପ୍ରଥମେ ଜାତୀୟ ଭାବନାର ସଞ୍ଚାର କରିଛନ୍ତି । ଓଡ଼ିଶାର ନଦନଦୀ, ପାହାଡ଼, ପର୍ବତ, ହ୍ରଦ, ସମୁଦ୍ର ତାଙ୍କ ଲେଖନୀରେ ଅଭିନବ ବ୍ୟକ୍ତିତ୍ୱ ଲାଭ କରିଛନ୍ତି । ସମଗ୍ର ଓଡ଼ିଶାର ପ୍ରକୃତି ରାଧାନାଥଙ୍କ କାବ୍ୟସଂସାରରେ ଇନ୍ଦ୍ରଜାଲ ସୃଷ୍ଟି କରିଥିଲା ପରି ମନେହୁଅନ୍ତି । ପୁଣି ବର୍ଣ୍ଣନାବିଳାସ, ରୂପବିଭବ ପ୍ରଭୃତିରେ ରାଧାନାଥଙ୍କ ସମକକ୍ଷ କବି ଓଡ଼ିଆ ସାହିତ୍ୟରେ ଦୁର୍ଲଭ । ବ୍ୟାସକବି ଫକୀରମୋହନ 'ଉତ୍କଳ ଭ୍ରମଣ' କବିତାରେ ରାଧାନାଥ ଓ ତାଙ୍କର କାବ୍ୟଗୁଡ଼ିକୁ ଅମରତ୍ୱ ପ୍ରଦାନ କରିଛନ୍ତି –

''ଧନ୍ୟ ରାଧାନାଥ ତୁମ୍ଭ ଜନମ ସଫଳ
ବ୍ୟାପି ରହିଅଛି କୀର୍ତ୍ତି ଓଡ଼ିଶା ମଣ୍ଡଳ
କେତେ ତ ଅଛନ୍ତି ରାଜା କେତେ ଧନବନ୍ତ
କେଉଁ ଲୋକ ଅଛନ୍ତି ତୁମ୍ଭ ପରି କୀର୍ତ୍ତିମନ୍ତ ?

× × ×

ଧନ ମାନ ପଦ ସବୁ କାଳର ଅଧୀନ
'ପାର୍ବତୀ' 'କେଦାରଗୌରୀ' ଥିବ ଚିରଦିନ ।''



## ଭକ୍ତକବି
# ମଧୁସୂଦନ

ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ସାହିତ୍ୟର ଘୋର ଦୁର୍ଦ୍ଦିନରେ ଯେଉଁ କେତେଜଣ ଉତ୍କଳୀୟ ସୁଯୋଗ୍ୟ ସନ୍ତାନ ଲେଖନୀ ଚାଳନା କରିଥିଲେ, ସେମାନଙ୍କ ମଧ୍ୟରେ ମଧୁସୂଦନ ହେଉଛନ୍ତି ଅନ୍ୟତମ । ମଧୁସୂଦନ ଥିଲେ ଏକାଧାରରେ ବ୍ରହ୍ମ ଉପାସକ, ଦାର୍ଶନିକ, ସମାଲୋଚକ, ଶିକ୍ଷକ ଓ କବି । ମୁଖ୍ୟତଃ, ସେ କିନ୍ତୁ ଥିଲେ ସାରସ୍ୱତ ତପୋବନର ଏକ ପବିତ୍ରକାୟ ଋଷି । ତାଙ୍କ ହୃଦୟରେ ରାଗ, ମାୟା ଈର୍ଷା, ତମ, ମୋହ ପ୍ରଭୃତିର ସ୍ଥାନ ନ ଥିଲା । ସେ ଥିଲେ ଧର୍ମନିଷ୍ଠାର ଜୀବନ୍ତ ଅବତାର । ତେଣୁ ସେ ଯେଉଁ ଗୀତିକବିତାଗୁଡ଼ିକ ରଚନା କରିଛନ୍ତି, ତାହା ଭକ୍ତି ରସାପ୍ଳୁତ ହୋଇଯାଇଛି । ରଚନାରେ ପ୍ରଗାଢ଼ ଧର୍ମନିଷ୍ଠା ଓ ବିଭୁପରାୟଣତା ଯୋଗୁଁ ସେ ଉତ୍କଳରେ ଭକ୍ତକବି ଆଖ୍ୟା ଲାଭ କରିଛନ୍ତି ।

### ବଂଶ ପରିଚୟ

ମୋଗଲ ଶାସନ ପରେ ଓଡ଼ିଶା ମରହଟ୍ଟାମାନଙ୍କଦ୍ୱାରା ଅଧିକୃତ ହେଲା । ମରହଟ୍ଟାମାନେ ୧୭୫୧ରୁ ୧୮୦୩ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଓଡ଼ିଶାରେ ଶାସନ କରିଥିଲେ । ଏହି ସମୟରେ ବହୁ ମରହଟ୍ଟା ସୈନ୍ୟ ଓଡ଼ିଶାରେ ସ୍ଥାୟୀ ବାସିନ୍ଦା

ହୋଇ ରହିଗଲେ । ସେମାନଙ୍କ ମଧ୍ୟରେ ଥିଲେ ସଦାଶିବ ରାଓ । ସେ ଜାତିରେ କ୍ଷତ୍ରିୟ ଥିଲେ ଓ ପୁରୀ କୁଣ୍ଡେଇବେଣ୍ଟ ସାହିରେ ବସବାସ କରି ରହୁଥିଲେ । ତାଙ୍କର ପୁତ୍ର ଭାଗୀରଥି ରାଓ ପୋଲିସ ବିଭାଗରେ କନେଷ୍ଟବଲ ଚାକିରିରେ ନିଯୁକ୍ତ ହେଲେ । ତାଙ୍କର ସ୍ତ୍ରୀଙ୍କ ନାମ ଅମ୍ବିକା ବାଈ । ସେମାନଙ୍କ ଜ୍ୟେଷ୍ଠପୁତ୍ର ମଧୁସୂଦନ ରାଓ ୧୮୫୩ ମସିହା ଜାନୁଆରୀ ମାସ ୨୯ ତାରିଖ ଶ୍ରୀପଞ୍ଚମୀ ଦିନ ଜନ୍ମଗ୍ରହଣ କରିଥିଲେ ।

## ବାଲ୍ୟ ଜୀବନ

ମଧୁସୂଦନଙ୍କୁ ପାଞ୍ଚ ବର୍ଷ ହୋଇଥିଲାବେଳେ ମାତା ଅମ୍ବିକା ଦେବୀଙ୍କର ମୃତ୍ୟୁ ହେଲା । ସେ ମାତୃସ୍ନେହରୁ ବଞ୍ଚିତ ହୋଇ ବ୍ୟଥିତ ହୋଇପଡ଼ିଲେ । ଏହା ସେ ତାଙ୍କର 'ମୋ ଜନନୀ' କବିତାରେ ଉଲ୍ଲେଖ କରିଛନ୍ତି –

''ପାଞ୍ଚ ବର୍ଷ ଦିନୁ ମୁହିଁ ଅଟଇ ଅନାଥ ହେ ହରାଇ ଜନନୀ
କିନ୍ତୁ ଆହା ବିଶ୍ୱପତି ଦୟାବହି ମୋର ପ୍ରତି
ଦେଇଛନ୍ତି ମୋର ପ୍ରାଣେ ମହା ସ୍ୱର୍ଣମଣି ଗୋ ମହା ସ୍ୱର୍ଣମଣି ।''

ଏହାପରେ ମଧୁସୂଦନ ଓ ତାଙ୍କ କନିଷ୍ଠ ଭ୍ରାତା ଜଗନ୍ନାଥ ମାମୁ ଓ ମାଇଁଙ୍କଦ୍ୱାରା ଲାଳିତ ପାଳିତ ହେଲେ । ମାତ୍ର ଉପଯୁକ୍ତ ଯତ୍ନ ଅଭାବରୁ ପିଲା ଦୁହିଁଙ୍କର ସ୍ୱାସ୍ଥ୍ୟରେ ଅବନତି ଘଟିଲା । ପିତା ଭାଗୀରଥି ସେତେବେଳକୁ ଜମାଦାର ଭାବେ ଗୋପରେ କାର୍ଯ୍ୟ କରୁଥାନ୍ତି । କଥିତଅଛି ଯେ ଭାଗୀରଥିଙ୍କୁ ଦିନେ ତାଙ୍କ ସ୍ତ୍ରୀ ଅମ୍ବିକାଦେବୀ ସ୍ୱପ୍ନରେ ଦେଖାଦେଇ ଦୁଇ ପୁତ୍ରଙ୍କର ମାମୁ ଘରେ ଉପଯୁକ୍ତ ଯତ୍ନ ନିଆଯାଉ ନ ଥିବା କଥା ଜଣାଇଲେ । ଭାଗୀରଥି ତା' ପରଦିନ ପୁରୀ ଗଲେ ଓ ଦୁଇ ପୁତ୍ରଙ୍କୁ ଧରି ଗୋପକୁ ଆସିଲେ । ମଧୁସୂଦନ ପିତା ଭାଗୀରଥିଙ୍କଠାରୁ ଉଭୟ ପିତୃମାତୃ ସ୍ନେହ ଲାଭ କଲେ । ବାଲ୍ୟକାଳରୁ ମନଃପ୍ରାଣ ଦେଇ ପିତାଙ୍କ ସେବା କରିବା ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା ।

## ଶିକ୍ଷାଲାଭ

ଗୋପ ଥାନାକୁ ଲାଗି ମାଟିବଂଶ ଅବଧାନଙ୍କର ଗୋଟିଏ ଚାଟଶାଳୀ ଥିଲା । ସେହି ଚାଟଶାଳୀରେ ମଧୁସୂଦନଙ୍କ ଶିକ୍ଷା ଜୀବନ ଆରମ୍ଭ ହେଲା । ସେ ମଧ ପାଠପଢ଼ାରେ ମନୋଯୋଗ ଦେଲେ । ଖୁବ୍ ଶୀଘ୍ର ଚାଟଶାଳୀ ପାଠକୁ ଆୟତ୍ତ କରିନେଲେ । ଅବସର ସମୟରେ ସେ 'ମଥୁରାମଙ୍ଗଳ', 'କପଟପାଶା', 'ମନବୋଧ ଚଉତିଶା' ଓ 'ଭାଗବତ'ର ପଦମାନ ସୁନ୍ଦର ଭାବରେ ବୋଲୁଥିଲେ । ସେ ଏହାକୁ ବୋଲିଲାବେଳେ ଭକ୍ତିରସରେ ତନ୍ମୟ ହୋଇପଡୁଥିଲେ ।

ଚାଟଶାଳୀ ପାଠ ଶେଷ ବେଳକୁ ଭାଗୀରଥି ଗୋପ ଥାନାରୁ ଭୁବନେଶ୍ୱର ଥାନାକୁ ବଦଳି ହୋଇଆସିଲେ । ଭୁବନେଶ୍ୱରରେ ସେତେବେଳକୁ ଗୋଟିଏ ସରକାରୀ ମାଇନର ସ୍କୁଲ ଥିଲା । ସେଥିରେ ସେ ନାମ ଲେଖାଇଲେ । ସେତେବେଳକୁ ଓଡ଼ିଆ ଭାଷାରେ କୌଣସି ପାଠ୍ୟପୁସ୍ତକ ନ ଥିଲା । ବିଦ୍ୟାଳୟମାନଙ୍କରେ ବଙ୍ଗଳା ପୁସ୍ତକ ପାଠ୍ୟପୁସ୍ତକ ରୂପେ ଚଳୁଥିଲା । ମଧୁସୂଦନ ସେହି ବଙ୍ଗଳା ଭାଷାରେ ଲିଖିତ ପାଠ୍ୟପୁସ୍ତକମାନ ପଢ଼ି ଭୁବନେଶ୍ୱର ମାଇନର ସ୍କୁଲରୁ ଉତ୍ତୀର୍ଣ୍ଣ ହେଲେ । ମଧୁସୂଦନ ସେହି ସ୍କୁଲରେ ଅଧ୍ୟୟନ କଲାବେଳେ ଓଡ଼ିଶାର ସ୍କୁଲ ବିଭାଗର ଇନ୍‌ସପେକ୍ଟର ଉଡ୍ରୋ ସାହେବ ସ୍କୁଲ ପରିଦର୍ଶନରେ ଆସିଥିଲେ । ସେ ମଧୁସୂଦନଙ୍କୁ ଗଣିତ ଓ ଭୂଗୋଳର ବହୁ ପ୍ରଶ୍ନ ପଚାରିଲେ । ମଧୁସୂଦନ ମଧ୍ୟ ସେ ସେସବୁର ଠିକ୍ ଉତ୍ତର ଦେଲେ । ମଧୁସୂଦନଙ୍କ ବିଦ୍ୟା ଅନୁରାଗ, ବିନୟ ଓ ମଧୁର ବ୍ୟବହାରରେ ପ୍ରୀତ ହୋଇ ସେ ପୁରୀ ଜିଲ୍ଲା ସ୍କୁଲରେ ବିନା ଦରମାରେ ଶିକ୍ଷାର ବ୍ୟବସ୍ଥା ନିମନ୍ତେ ସୁପାରିସ କଲେ ।

୧୮୬୨ ମସିହାରେ ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ କରିବାପାଇଁ ମଧୁସୂଦନ ପୁରୀ ଆସିଲେ । ଏହା ଫଳରେ ତାଙ୍କୁ ପିତାଙ୍କ ସାନ୍ନିଧ ହରାଇବାକୁ ପଡ଼ିଲା । ସେ ପିତାଙ୍କର ଜଣେ ବନ୍ଧୁ ବଳରାମଜୀଙ୍କ ଘରେ ରହି ଅଧ୍ୟୟନ କଲେ । ଅଳ୍ପ ଦିନ ମଧ୍ୟରେ ସେ ନିଜର ସ୍ୱଭାବସୁଲଭ ଗୁଣରେ ସମସ୍ତଙ୍କର ସ୍ନେହଭାଜନ ହୋଇପଡ଼ିଲେ । ଛାତ୍ରଭାବେ ସେ ମଧ୍ୟ ନିଜର କୃତିତ୍ୱ ଦେଖାଇଲେ । ଶ୍ରେଣୀରେ ସେ ପ୍ରତିବର୍ଷ ପ୍ରଥମ ସ୍ଥାନ ଅଧିକାର କରୁଥିଲେ । ପ୍ରତ୍ୟେକ ବିଷୟରେ ପ୍ରଥମ ହେବାର ଗୌରବ ତିନି ବର୍ଷ ଧରି ହାସଲ କରି ସେ ରେୱା ମହାରାଜ ପ୍ରଦାନ କରିଥିବା ରୌପ୍ୟ ପଦକ ଲାଭ କଲେ । ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ପ୍ରତିବର୍ଷ ବିଭିନ୍ନ ବିଷୟରେ କୃତିତ୍ୱ ହାସଲ କରି ପୁରସ୍କାର ଲାଭ କରୁଥିବା ମଧୁସୂଦନଙ୍କୁ ଅଜସ୍ର ପ୍ରଶଂସା କରିଥିଲେ । ସେ ଏପରି ବିଚକ୍ଷଣ ଓ ବୁଦ୍ଧିମାନ୍ ଛାତ୍ର ଥିଲେ ଯେ ବର୍ଷକରେ ଦୁଇଟି କ୍ଲାସ ଅକ୍ଳେଶରେ ଉଠିଗଲେ । ସେ ମାଇନର ପାସ୍ କରି ଅଷ୍ଟମ ଶ୍ରେଣୀରେ ନାମ ଲେଖାଇଲେ ।

## ବିବାହ

ସେତେବେଳେ ସମାଜରେ ବାଲ୍ୟବିବାହ ପ୍ରଥା ପ୍ରଚଳିତ ଥିଲା । କୁଳ ପ୍ରଥା ଅନୁଯାୟୀ ତାଙ୍କୁ ଏଗାର ବର୍ଷ ବୟସ ହୋଇଥିଲାବେଳେ ପଦ୍ମାବାଈ ନାମକ ଜଣେ ନଅ ବର୍ଷ ବୟସର ବାଳିକା ସହ ତାଙ୍କର ବିବାହ ହେଲା ।

## ଜନସେବା

ଇଂରେଜ ଶାସନ କାଳରେ ୧୮୬୬ ମସିହାରେ ଓଡ଼ିଶାରେ ଭୟାବହ ଦୁର୍ଭିକ୍ଷ ଦେଖାଦେଲା । ପୁରୀର ଗଜପତି ରାଜା ଦିବ୍ୟସିଂହଦେବଙ୍କ ନବମ ଅଙ୍କରେ ପଡ଼ିଥିବାରୁ ଏହାକୁ ନ'ଅଙ୍କ ଦୁର୍ଭିକ୍ଷ କୁହାଯାଏ । ସେହି ଦୁର୍ଭିକ୍ଷରେ ଶହ ଶହ ଲୋକ ଖାଇବାକୁ ନ ପାଇ ପ୍ରାଣ ହରାଇଲେ । ସେତେବେଳେ ମଧୁସୂଦନ ଏକାଦଶ ଶ୍ରେଣୀରେ ପଢୁଥିଲେ । ସେ ଦୁର୍ଭିକ୍ଷ ପ୍ରପୀଡ଼ିତ ବ୍ୟକ୍ତିମାନଙ୍କ ଦୁଃଖ ଦେଖି ବ୍ୟଥିତ ହୋଇପଡ଼ିଲେ । ସେ ଏକ ସ୍ୱେଚ୍ଛାସେବକ ବାହିନୀ ଗଢ଼ି ଦୁଃସ୍ଥ ଲୋକଙ୍କୁ ଚୁଡ଼ା ଚାଉଳ ବାଣ୍ଟିବାକୁ ଲାଗିଲେ । ତାଙ୍କର ଏହି ଜନସେବା ଅନ୍ୟମାନଙ୍କୁ ସେ ଦିଗରେ ବ୍ରତୀ ହେବାପାଇଁ ପ୍ରେରଣା ଯୋଗାଇଲା । ମାତ୍ର ଏଥିଯୋଗୁଁ ତାଙ୍କ ପାଠପଢ଼ାରେ ବ୍ୟାଘାତ ଘଟିଲା । ସେ ସେହି ବର୍ଷ ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବାକୁ ପ୍ରସ୍ତୁତ ହୋଇପାରି ନ ଥିଲେ ।

## ବିଶିଷ୍ଟ ବ୍ୟକ୍ତିଙ୍କ ପ୍ରଭାବ

ଛାତ୍ରାବସ୍ଥାରେ ମଧୁସୂଦନଙ୍କ ପରିଚୟ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ସହ ହୋଇଥିଲା । ପ୍ରଥମ ଜଣକ ହେଲେ ହରିହର ଦାସ । ସେ ବଡ଼ ପଣ୍ଡିତ ଥିଲେ । ତାଙ୍କର ନିଜସ୍ୱ ବିଚାରଧାରା ମଧ ଥିଲା । ସେ ସନାତନ ହିନ୍ଦୁଧର୍ମର କୁସଂସ୍କାର ଓ ଅନ୍ଧବିଶ୍ୱାସଗୁଡ଼ିକ ପ୍ରତି ମଧୁସୂଦନଙ୍କ ଦୃଷ୍ଟି ଆକର୍ଷଣ କଲେ । ହରିହର ମଧ ନାସ୍ତିକ ଥିଲେ । ମଧୁସୂଦନ ହରିହରଙ୍କ ପାଣ୍ଡିତ୍ୟରେ ମୁଗ୍ଧ ହୋଇପଡ଼ିଲେ । ଛୁଟିଦିନମାନଙ୍କରେ ତାଙ୍କ ସହିତ ସମୟ କଟାଇବାକୁ ସେ ଆଗ୍ରହ ଦେଖାଉଥିଲେ । ମଧୁସୂଦନ ଅବଶ୍ୟ ନାସ୍ତିକ ନ ଥିଲେ; ମାତ୍ର ହରିହରଙ୍କ ଚିନ୍ତାଧାରା ଯେ ମଧୁସୂଦନଙ୍କୁ ଗଭୀରଭାବେ ପ୍ରଭାବିତ କରିଥିଲା, ଏଥିରେ ସନ୍ଦେହ ନାହିଁ । ଦ୍ୱିତୀୟ ବ୍ୟକ୍ତି, ଯାହା ସଂସ୍ପର୍ଶରେ ମଧୁସୂଦନ ଆସିଲେ, ସେ ହେଉଛନ୍ତି ରାଧାନାଥ ରାୟ । ମଧୁସୂଦନ ସ୍କୁଲର ଶେଷ ବର୍ଷରେ ପଢୁଥିଲାବେଳେ ରାଧାନାଥ ଦ୍ୱିତୀୟ ଶିକ୍ଷକଭାବେ ସେଠାରେ ଯୋଗ ଦେଲେ । ପୂର୍ବରୁ ଅବଶ୍ୟ ଜଗନ୍ନାଥ ଦର୍ଶନପାଇଁ ସେ ପୁରୀ ଆସିଥିବା ସମୟରେ ମଧୁସୂଦନଙ୍କର ପରିଚୟ ପାଇଥିଲେ । ମାତ୍ର ଜିଲ୍ଲା ସ୍କୁଲକୁ ଆସିବାପରେ ସମ୍ପର୍କ ଆହୁରି ଘନିଷ୍ଠ ହେଲା । ରାଧାନାଥ ସ୍କୁଲରେ ଭୂଗୋଳ ଓ ଇତିହାସ ପଢ଼ାଉଥିଲେ । ମଧୁସୂଦନଙ୍କ ଗଣିତରେ ଦୁର୍ବଳ ଥିବା ଉପଲବ୍ଧି କରି ନିୟମିତଭାବେ ଗଣିତ ପଢ଼ାଇବାକୁ ଲାଗିଲେ । ରାଧାନାଥ ମଧ ସେତେବେଳକୁ ସାହିତ୍ୟ ଚର୍ଚ୍ଚା କରୁଥାନ୍ତି । ମଧୁସୂଦନଙ୍କର ସାହିତ୍ୟ ପ୍ରତି ଅନୁରାଗ ଥିଲା । ରାଧାନାଥ କାଳିଦାସ, ମାଘ, ଭାରବି, ଶ୍ରୀହର୍ଷ, ଭର୍ତ୍ତୃହରି

ପ୍ରଭୃତି ସଂସ୍କୃତ କବିମାନଙ୍କର ଲେଖା ମଧୁସୂଦନଙ୍କୁ ଶୁଣାଉଥିଲେ । ପୁରାତନ ଓଡ଼ିଆ କବି ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ଓ କବିସୂର୍ଯ୍ୟଙ୍କ ଲେଖାବଳୀ ମଧ୍ୟ ତାଙ୍କୁ ଶୁଣାଉଥିଲେ । ତୁଳସୀ ଦାସଙ୍କ ରଚିତ ରାମଚରିତ ମାନସ ମଧ୍ୟ ଦୁଇ ଜଣଙ୍କର ଅତି ପ୍ରିୟ ବିଷୟ ଥିଲା । ସଂସ୍କୃତ ସାହିତ୍ୟ ବ୍ୟତୀତ ସେକ୍‌ସପିଅର, ୱାଡ୍‌ସୱାର୍ଥ, ସେଲି, କିଟ୍‌ସ ପ୍ରଭୃତି ଇଂରେଜୀ କବିମାନଙ୍କ କବିତାମାନ ପଢ଼ି ଶୁଣାଉଥିଲେ । ରାଧାନାଥଙ୍କ ସହୃଦୟତାରେ ମଧୁସୂଦନ ମୁଗ୍ଧ ହୋଇପଡ଼ିଥିବା ଜଣାଯାଏ ।

ରାଧାନାଥଙ୍କ ଯତ୍ନ ଓ ସାହାଯ୍ୟ ଫଳରେ ମଧୁସୂଦନ ୧୮୬୯ ମସିହାରେ ଏଣ୍ଟ୍ରାନ୍‌ସ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାସ୍ କଲେ । ସେ ମାସିକ ଦଶ ଟଙ୍କା ସରକାରୀ ବୃତ୍ତି ପାଇ ଏଫ୍.ଏ. ପଢ଼ିବାପାଇଁ ସାନଭାଇ ଜଗନ୍ନାଥଙ୍କ ସହ କଟକ ଆସିଲେ ।

କଟକରେ ଏଫ୍.ଏ. ଅଧ୍ୟୟନ କଲାବେଳେ ମଧୁସୂଦନଙ୍କର ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ସହ ବନ୍ଧୁତା ହେଲା । ପ୍ୟାରୀମୋହନ ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରୁଥିଲେ । ତେଣୁ ଉଭୟେ ପରସ୍ପର ପ୍ରତି ଆକୃଷ୍ଟ ହେବା ସ୍ୱାଭାବିକ । ମଧୁସୂଦନଙ୍କର ଅନ୍ୟ ସହପାଠୀ ଥିଲେ ବିପ୍ରଚରଣ ଚାଟାର୍ଜୀ, ବଳରାମ ଦାସ ପ୍ରଭୃତି । ବିପ୍ରଚରଣଙ୍କ ଥଟ୍ଟା ପରିହାସ ଓ ବଳରାମଙ୍କ ସାହିତ୍ୟପ୍ରୀତି ତାଙ୍କୁ ପ୍ରଭାବିତ କରିଥିଲା । ସେତେବେଳେ ତାଙ୍କର ଶିକ୍ଷକ ଥିଲେ ହରନାଥ ଭଟ୍ଟାଚାର୍ଯ୍ୟ । ସେ କଲେଜରେ ଅଧ୍ୟାପକ ଥିଲେ ଓ ବ୍ରାହ୍ମଧର୍ମରେ ତାଙ୍କର ଅଟଳ ବିଶ୍ୱାସ ଥିଲା । ମଧୁସୂଦନ ଓ ପ୍ୟାରୀମୋହନ ଏହାଙ୍କ ପାଖରେ ବସି ଧର୍ମଚର୍ଚ୍ଚା କରୁଥିଲେ । ୧୮୭୧ ମସିହାରେ ମଧୁସୂଦନ କଟକ କଲେଜରୁ ଏଫ୍.ଏ. ପରୀକ୍ଷାରେ କୃତିତ୍ୱର ସହ ପାସ୍ କଲେ । ତାଙ୍କୁ ମଧ୍ୟ ଉଚ୍ଚ ଶିକ୍ଷା ଲାଭ ନିମନ୍ତେ ସରକାରୀ ବୃତ୍ତି ମିଳିଲା । ସେ କଲିକତାରେ ବି.ଏ. ପଢ଼ିବାକୁ ଇଚ୍ଛା ପୋଷଣ କରିଥିଲେ । ମାତ୍ର ସୁଦୂର କଲିକତାରେ ବି.ଏ. ପଢ଼ିବାପାଇଁ ତାଙ୍କର ପିତା ରାଜି ହୋଇ ନ ଥିଲେ । ସେ ପିତାଙ୍କ ଇଚ୍ଛା ବିରୋଧରେ ଯାଇ ନ ଥିଲେ । ଫଳରେ ତାଙ୍କର ସାଧାରଣ ଶିକ୍ଷା ଶେଷ ହେଲା ।

## ବ୍ରାହ୍ମ ଧର୍ମ ଗ୍ରହଣ

ମଧୁସୂଦନ କଟକ କଲେଜରେ ପଢୁଥିଲାବେଳେ ବ୍ରାହ୍ମଧର୍ମର ଉପାସକ ହରନାଥ ଭଟ୍ଟାଚାର୍ଯ୍ୟ ଦର୍ଶନ ଅଧ୍ୟାପକ ଥିବା ପୂର୍ବରୁ ବର୍ଣ୍ଣିତ । ହରନାଥଙ୍କ ବ୍ୟକ୍ତିତ୍ୱ ଓ ଆଦର୍ଶ ମଧୁସୂଦନଙ୍କ ଉପରେ ଗଭୀର ରେଖାପାତ କରିଥିଲା ।

ସେହି ସମୟରୁ ହିଁ ସେ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ମଧୁସୂଦନ ବାଲ୍ୟକାଳରେ ଈଶ୍ୱରବିଶ୍ୱାସୀ ଥିଲେ । ସେ ବିଷ୍ଣୁଙ୍କ ଅପେକ୍ଷା ଶିବଙ୍କୁ ଅଧିକ ଭକ୍ତି କରୁଥିଲେ । ଥରେ ଗୋଟିଏ ପାହାଡ଼ ଉପରେ ବଡ଼ ଶିବ ଲିଙ୍ଗ ଦର୍ଶନ କରି ଭକ୍ତିରେ ବିହ୍ୱଳ ହୋଇପଡ଼ିଥିଲେ । ବ୍ରାହ୍ମଧର୍ମ ଗ୍ରହଣ କରିବା ସମୟରେ ତାଙ୍କ ମନରେ ବହୁ ଦ୍ୱନ୍ଦ୍ୱ ଦେଖାଦେଇଥିଲା । ମାତ୍ର ସ୍ୱପ୍ନରେ ସେ ଜଣେ ଦିବ୍ୟପୁରୁଷଙ୍କୁ ଦେଖିଲେ । ତାଙ୍କର ଇଙ୍ଗିତ ଅନୁସାରେ ସେ ଏକେଶ୍ୱରବାଦକୁ ଗ୍ରହଣ କଲେ ଓ ପ୍ୟାରୀମୋହନ ସହ ମିଶି ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ । ଏଥିରେ ସେ ଅବଶ୍ୟ ପିତାଙ୍କର ବିରାଗଭାଜନ ହୋଇପଡ଼ିଲେ; ମାତ୍ର ପରେ ତାଙ୍କ ପିତା ପୁତ୍ରର ଧର୍ମନିଷ୍ଠାର ଉଚ୍ଚ ପ୍ରଶଂସା କରିଥିଲେ । ବ୍ରାହ୍ମଧର୍ମରେ ଦୀକ୍ଷିତ ହେବା ଯୋଗୁଁ ତାଙ୍କୁ ସମାଜର ତାଡ଼ନା ଓ ବିଦ୍ରୂପ ସହିବାକୁ ପଡ଼ିଥିଲା । ପରବର୍ତ୍ତୀ କାଳରେ ମଧୁସୂଦନ ବ୍ରାହ୍ମସମାଜର ମୁଖ୍ୟ ସଞ୍ଚାଳକ ଭାବେ ସର୍ବ-ଭାରତୀୟ କ୍ଷେତ୍ରରେ ଖ୍ୟାତି ଲାଭ କରିଥିଲେ ।

## କର୍ମଜୀବନ

ଅଠର ବର୍ଷ ବୟସରେ ମଧୁସୂଦନ ତାଙ୍କର କର୍ମଜୀବନ ଆରମ୍ଭ କଲେ । ପିଲାଦିନୁ ସେ ଶିକ୍ଷକଭାବେ ଜୀବନ କଟାଇବାକୁ ମନସ୍ଥ କରିଥିଲେ । ସେ ପ୍ରଥମେ ପୁରୀ ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକ ଭାବେ ଯୋଗ ଦେଲେ । ସେହି ସମୟରେ ସେ ବହୁ ଇଂରାଜୀ କବିତାର ଓଡ଼ିଆ ଅନୁବାଦ କରିଥିଲେ । ଏହାପରେ ସେ ଯାଜପୁରସ୍ଥ ଗୋଟିଏ ମାଇନର ସ୍କୁଲରେ ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । ସେଠାରେ ସେ ନବବିବାହିତା ପତ୍ନୀ ପଦ୍ମାବାଈ, ଭାଇ ଜଗନ୍ନାଥ ଓ ଜଣେ ବିଧବା ମାଉସୀଙ୍କୁ ନେଇ ରଖିଲେ । ସେ ସେଠାରେ ଜଣେ ଉତ୍ତମ ଶିକ୍ଷକଭାବେ ଖ୍ୟାତି ଅର୍ଜନ କଲେ ।

ଏହାର ଦେଢ଼ ବର୍ଷ ପରେ ସେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଦ୍ୱିତୀୟ ଶିକ୍ଷକ ଭାବେ ନିଯୁକ୍ତ ହେଲେ । ସେଠାରେ ରାଧାନାଥ ଓ ଫକୀରମୋହନଙ୍କ ସହ ଏକାଠି ହେବାର ସୁଯୋଗ ମିଳିଲା । ଏହାକୁ କେହି କେହି ତ୍ରିବେଣୀ ସଙ୍ଗମ ବୋଲି କହିଥାନ୍ତି । ଏହି ସାହିତ୍ୟିକ ବନ୍ଧୁମାନେ ମିଶି 'ଉତ୍କଳ ଦର୍ପଣ' ନାମକ ଗୋଟିଏ ମାସିକ ପତ୍ରିକା ପ୍ରକାଶ କଲେ । ଏଥିରେ ମଧୁସୂଦନଙ୍କ ଲିଖିତ 'ଅଯୋଧ୍ୟା ପ୍ରତ୍ୟାଗମନ' ପ୍ରକାଶିତ ହେଲା । ଏଥିରେ ଅନେକ ପ୍ରବନ୍ଧ ଓ କବିତା ପ୍ରକାଶ ପାଇଲା । ପରେ ସେଗୁଡ଼ିକ ସଙ୍କଳିତ ହୋଇ ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହେଲା ।

ମଧୁସୂଦନ ୨୪ ବର୍ଷ ବୟସରେ ୧୮୭୫ ଖ୍ରୀଷ୍ଟାବ୍ଦରେ କଟକ କଲେଜିଏଟ୍ ସ୍କୁଲରେ ଅତିରିକ୍ତ ଶିକ୍ଷକ ଭାବେ ଯୋଗ ଦେଲେ । କିଛି କାଳ ପରେ ସେ ସେଠାରେ ଦ୍ୱିତୀୟ ଶିକ୍ଷକଭାବେ ନିଯୁକ୍ତ ହେଲେ । ସେ ଛାତ୍ରବତ୍ସଳ ଥିଲେ । ଛାତ୍ରମାନଙ୍କ ଜ୍ଞାନବୃଦ୍ଧି ଓ ଚରିତ୍ରର ବିକାଶ ଉପରେ ଦୃଷ୍ଟି ଦେଉଥିଲେ । ଶିକ୍ଷକତା ବାହାରେ ସେ ଅନେକ ସାଂସ୍କୃତିକ କାର୍ଯ୍ୟରେ ଯୋଗ ଦେଉଥିଲେ । ଏହା ଫଳରେ ସେ ଛାତ୍ର, ଶିକ୍ଷକ ଓ ଅଭିଭାବକମାନଙ୍କର ପ୍ରିୟପାତ୍ର ହୋଇପଡ଼ିଲେ । ଏହି ସମୟରେ ତାଙ୍କର ଗୋଟିଏ ପୁତ୍ର ଜନ୍ମ ହେଲା । ତାଙ୍କର ନାମ ଜୟନ୍ତ । ଏହି ସ୍କୁଲରେ ଥିଲାବେଳେ ସେ ପାରିବାରିକ ଶାନ୍ତି, କର୍ମରେ ଯଶ ଓ ସମାଜରେ ପ୍ରତିଷ୍ଠା ଲାଭ କରିଥିଲେ ।

୧୮୮୦ ଖ୍ରୀଷ୍ଟାବ୍ଦରେ ମଧୁସୂଦନ ସ୍କୁଲ ଶିକ୍ଷକତା ଛାଡ଼ି କଟକ ଜିଲ୍ଲା ସ୍କୁଲମାନଙ୍କର ଡେପୁଟି ଇନ୍‌ସପେକ୍ଟର ଭାବେ ଯୋଗ ଦେଲେ । ପାଣ୍ଡିତ୍ୟ, ଶୃଙ୍ଖଳା ଜ୍ଞାନ ଓ ମଧୁର ବ୍ୟବହାରଦ୍ୱାରା ସେ ଉତ୍ତମ ଶିକ୍ଷକଭାବେ ଖ୍ୟାତି ଅର୍ଜନ କରିଥିଲେ । ଶିକ୍ଷା ପ୍ରଶାସନ କ୍ଷେତ୍ରରେ ମଧ ଅସାମାନ୍ୟ ସଫଳତା ଲାଭ କଲେ ।

ମଧୁସୂଦନ ଦୀର୍ଘ ଏଗାର ବର୍ଷ କାଳ ଡେପୁଟି ଇନ୍‌ସପେକ୍ଟର ଭାବେ କାର୍ଯ୍ୟ କଲେ । ଖାଇସାରି ମଫସଲ ଦୌଡ଼ିବାକୁ ପଡୁଥିବାରୁ ସେ ଶୂଳ ରୋଗାକ୍ରାନ୍ତ ହୋଇପଡ଼ିଲେ । ଫଳରେ ସେ ଏହି ଚାକିରି ଛାଡ଼ି କଲେଜିଏଟ୍ ସ୍କୁଲର ପ୍ରଧାନ ଶିକ୍ଷକ ଭାବେ ଯୋଗ ଦେଲେ । ସେ ଏହି ସ୍କୁଲର ପ୍ରଥମ ଓଡ଼ିଆ ପ୍ରଧାନ ଶିକ୍ଷକ ହେବାର ଗୌରବ ଅର୍ଜନ କରିଥିଲେ ।

କଲେଜିଏଟ୍ ସ୍କୁଲରେ ମଧ ମଧୁସୂଦନ ବେଶି ଦିନ ରହିପାରି ନ ଥିଲେ । କଲେଜର ପ୍ରିନ୍‌ସିପାଲଙ୍କ ସହ ନୀତି ଦୃଷ୍ଟିରୁ ତାଙ୍କର ମତାନ୍ତର ହେଲା । ସେ ତେଣୁ ବାଲେଶ୍ୱରକୁ ପୁଣି ଡେପୁଟି ଇନ୍‌ସପେକ୍ଟର ଭାବେ ବଦଳି ହେଲେ । ସେଠାରେ ଛଅ ମାସ ରହିବା ପରେ କଟକ ଟ୍ରେନିଂ ସ୍କୁଲରେ ୧୮୯୩ ମସିହାରେ ଅଧ୍ୟକ୍ଷ ଭାବେ ଯୋଗ ଦେଲେ । ସେ ଏହି କାର୍ଯ୍ୟଟିକୁ ବେଶି ପସନ୍ଦ କରୁଥିଲେ । ତା'ର କାରଣ ସେ ସେଠାରେ କର୍ତ୍ତବ୍ୟପରାୟଣ, ଆଦର୍ଶ ଶିକ୍ଷକ ଗୋଷ୍ଠୀ ଗଠନ କରିବାକୁ ସୁଯୋଗ ପାଇଲେ । ସେ ମଧ ନିଜର ଶିକ୍ଷାଦାନର କୁଶଳତା ଓ ବ୍ୟକ୍ତିଗତ ଉଦାହରଣଦ୍ୱାରା ଆଦର୍ଶ ଶିକ୍ଷକ ଶ୍ରେଣୀ ସୃଷ୍ଟି କରିବାରେ କ୍ଷମ ହେଲେ ।

ମଧୁସୂଦନ ସମଗ୍ର ସ୍କୁଲ ସମୂହର କାର୍ଯ୍ୟକାରୀ ଇନ୍‌ସପେକ୍ଟର ଭାବେ ନିଯୁକ୍ତ ହୋଇଥିଲେ । ଅବସର ଗ୍ରହଣ ବେଳକୁ ସେ ଭାରତୀୟ ଶିକ୍ଷା ସେବାକୁ ଉନ୍ନୀତ ହୋଇଥିଲେ । ତାଙ୍କର ମାସିକ ଦରମା ସେତେବେଳେ ଥିଲା ୫୦୦ ଟଙ୍କା ।

## ନୂତନ ବିଦ୍ୟାଳୟ ପ୍ରତିଷ୍ଠା

ଶିକ୍ଷାକ୍ଷେତ୍ରରେ ମଧୁସୂଦନଙ୍କର ଗୋଟିଏ ନୂତନ ଦୃଷ୍ଟିକୋଣ ଥିଲା । ତାହା କାର୍ଯ୍ୟକାରୀ କରିବାପାଇଁ ତଥା ଆଦର୍ଶ ଶିକ୍ଷାର ଦୃଷ୍ଟାନ୍ତ ଦେବାପାଇଁ ସେ ୧୮୮୧ ମସିହାରେ କଟକ ଟାଉନ ସ୍କୁଲ ନାମରେ ଏକ ମଧ୍ୟ ଇଂରାଜୀ ବିଦ୍ୟାଳୟ ସ୍ଥାପନ କଲେ । ବିଶ୍ୱନାଥ କର ଏହି ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଭାବେ ନିଯୁକ୍ତ ହେଲେ । ବହୁ ଦରିଦ୍ର ଛାତ୍ର ଏଥିରେ ଅଧ୍ୟୟନ କରିବାର ସୁବିଧା ପାଇଲେ । ସେ ଏହାକୁ ୧୮୮୯ ମସିହାରେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କଲେ । ମାତ୍ର ବ୍ୟୟଭାର ତୁଲାଇ ନ ପାରିବାରୁ ଏହା ପୁଣି ମଧ୍ୟ ଇଂରାଜୀ ବିଦ୍ୟାଳୟରେ ପରିଣତ ହେଲା । ମଧୁସୂଦନ ଏଥିପାଇଁ ବ୍ୟଥିତ ହୋଇପଡ଼ିଲେ । ଦରିଦ୍ର ଛାତ୍ରମାନଙ୍କୁ ଉଚ୍ଚ ଶିକ୍ଷାର ସୁବିଧା ଦେବା ନିମନ୍ତେ ୧୯୦୧ ମସିହାରେ ପୁଣି ସେ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ପରିଣତ କଲେ । ଏହାର ଆର୍ଥିକ ସ୍ୱଚ୍ଛଳତାପାଇଁ ତାଙ୍କୁ ଜୀବନସାରା ସଂଗ୍ରାମ କରିବାକୁ ପଡ଼ିଥିଲା । ଭାରତ ସାମ୍ରାଜ୍ଞୀ ଭିକ୍ଟୋରିଆଙ୍କ ମୃତ୍ୟୁ ପରେ ସ୍କୁଲର ନାମ ଭିକ୍ଟୋରିଆ ହାଇସ୍କୁଲ ରଖାଗଲା । ଏବେ ଏହା ଭକ୍ତ ମଧୁ ବିଦ୍ୟାପୀଠ ନାମରେ ନାମିତ ହୋଇଅଛି ।

## ଉତ୍କଳ ସାହିତ୍ୟ ସମାଜ

ମଧୁସୂଦନ ଓଡ଼ିଆ ସାହିତ୍ୟର ବିକାଶ ଦିଗରେ ଯତ୍ନବାନ୍ ଥିଲେ । କଟକ ଟ୍ରେନିଂ ସ୍କୁଲରେ ଅଧ୍ୟକ୍ଷ ଭାବେ ନିଯୁକ୍ତ ହେବା ପରେ ସେ ଛାତ୍ରମାନଙ୍କ ମଧ୍ୟରେ ସାହିତ୍ୟର ଉପଯୁକ୍ତ ବାତାବରଣ ସୃଷ୍ଟିପାଇଁ ଆଗ୍ରହୀ ହେଲେ । ସେ ଏ ବିଷୟରେ ସହକର୍ମୀମାନଙ୍କ ସହିତ ଆଲୋଚନା କଲେ । ଅଧ୍ୟାପକ ଓ ଛାତ୍ରମାନଙ୍କ ମଧ୍ୟରେ ସେ ଆଗ୍ରହ ଥିବାର ଲକ୍ଷ୍ୟ କଲେ । ୧୮୯୩ ମସିହାର କୌଣସି ଏକ ଶନିବାର ଦିନ ସାହିତ୍ୟ ଆଲୋଚନା ସଭା ଆରମ୍ଭ ହେଲା । ବହୁ ଛାତ୍ର ଅଧ୍ୟାପକ ଏଥିରେ ଯୋଗ ଦେଲେ । ଓଡ଼ିଆ ସାହିତ୍ୟ ଉପରେ ଆଲୋଚନା ଚାଲିଲା । ଏହାର ଆଲୋଚନା ଉଚ୍ଚ ସ୍ତରର ହେଉଥିବାରୁ ବାହାରର ସାହିତ୍ୟିକ ଓ ସାହିତ୍ୟ ଅନୁରାଗୀମାନେ ଏହି ଆଲୋଚନାରେ ଯୋଗ ଦେଲେ ଓ କ୍ରମେ ଏହି ଆଲୋଚନା ସଭାର ସଭ୍ୟ ହେଲେ । ସେମାନଙ୍କ ମଧ୍ୟରେ ଥିଲେ ବିଶ୍ୱନାଥ କର, ନନ୍ଦକିଶୋର ବଳ, କୃଷ୍ଣପ୍ରସାଦ ଚୌଧୁରୀ । ଉତ୍କଳ ଗୌରବ ମଧୁସୂଦନ ଦାସ ମଧ୍ୟ ବେଳେ ବେଳେ ଏଥିରେ ଯୋଗ ଦେଉଥିଲେ ।

କଟକରେ ଏହି ଆଲୋଚନା ସଭା ହିଁ ଥିଲା ପ୍ରଥମ ସାହିତ୍ୟ ସଭା । ଶିକ୍ଷକ ଚନ୍ଦ୍ରମୋହନ ମହାରଣା ଏହାର ପ୍ରଥମ ସମ୍ପାଦକ ହେଲେ । ଏହି ଆଲୋଚନା

ସଭା ହିଁ ପରବର୍ତ୍ତୀ କାଳରେ 'ଉତ୍କଳ ସାହିତ୍ୟ ସମାଜ'ରେ ପରିଣତ ହେଲା । ଏହା ପ୍ରାୟ ୧୯୦୩ ମସିହାର ଘଟଣା ।

## ରଚନାବଳୀ

ଓଡ଼ିଆ ସାହିତ୍ୟର ଦୁର୍ଦ୍ଦିନରେ ମଧୁସୂଦନଙ୍କର ଆବିର୍ଭାବ ହୋଇଥିଲା ବୋଲି ପୂର୍ବରୁ ବର୍ଣ୍ଣିତ । ଓଡ଼ିଆ ଭାଷା ସାହିତ୍ୟକୁ ଲୋପ କରିଦେବାପାଇଁ ଚେଷ୍ଟା ଚାଲିଥିଲାବେଳେ ଫକୀରମୋହନ ଏହାର ଦୃଢ଼ ମୁକାବିଲା କରିବାପାଇଁ ଅଣ୍ଟାଭିଡ଼ି ବାହାରିଲେ । ଏ ଦିଗରେ ସେ ଯେଉଁମାନଙ୍କର ଅକୁଣ୍ଠ ସାହାଯ୍ୟ ଓ ସହଯୋଗ ପାଇଲେ, ସେମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ମଧୁସୂଦନ ।

ସେତେବେଳେ ଓଡ଼ିଶାର ବିଦ୍ୟାଳୟମାନଙ୍କରେ ଓଡ଼ିଆ ପୁସ୍ତକର ଘୋର ଅଭାବ ଥିଲା । ତେଣୁ ଫକୀରମୋହନ, ରାଧାନାଥ, ଗୌରୀଶଙ୍କର ଓ ମଧୁସୂଦନ ପ୍ରଭୃତି ଓଡ଼ିଆ ପାଠ୍ୟପୁସ୍ତକ ପ୍ରଣୟନ କରିବାରେ ମନୋନିବେଶ କଲେ । ଓଡ଼ିଶାର ଅଗଣିତ ବାଳକବାଳିକାମାନଙ୍କୁ ବର୍ଣ୍ଣ ପରିଚୟ କରାଇବା ଉଦ୍ଦେଶ୍ୟରେ ମଧୁସୂଦନ ମଧ କଲମ ଧରିଲେ । ବିଦ୍ୟାଳୟମାନଙ୍କପାଇଁ ସାହିତ୍ୟ ପୁସ୍ତକ ଲେଖିବା ଥିଲା ତାଙ୍କର ପ୍ରଥମ ଓ ଶେଷ ଲକ୍ଷ୍ୟ ।

## ଶିଶୁ ସାହିତ୍ୟ

ମଧୁସୂଦନ ଆଜୀବନ ଶିକ୍ଷକ ଥିଲେ । ଶିକ୍ଷାର ପରିମାଣାତ୍ମକ ତଥା ଗୁଣାତ୍ମକ ବିକାଶ ଘଟାଇବା ତାଙ୍କର ଏକାନ୍ତ ଇଚ୍ଛା ଥିଲା । ସେ ତେଣୁ ପ୍ରଥମେ ଶିଶୁ ସାହିତ୍ୟ ଉପରେ ଦୃଷ୍ଟି ପକାଇଲେ । ଶିଶୁମାନଙ୍କ ଅଧ୍ୟୟନ ନିମନ୍ତେ ଓଡ଼ିଆରେ 'ବର୍ଣ୍ଣବୋଧ' ରଚନା କଲେ ।

## ବର୍ଣ୍ଣବୋଧ

ବର୍ଣ୍ଣବୋଧରେ ଦିଆଯାଇଥିବା ପାଠ୍ୟକ୍ରମ ପ୍ରତି ଦୃଷ୍ଟିପାତ କଲେ ଜଣାଯିବ ଯେ ଏହା ଓଡ଼ିଆ ଭାଷାର ବର୍ଣ୍ଣମାଳା, ଯୁକ୍ତାକ୍ଷର ଆଦିର କ୍ରମ ପ୍ରୟୋଗରେ ଋଦ୍ଧିମନ୍ତ ହୋଇଛି । ଏହା ଶିଶୁର ମାନସିକ ବିକାଶ ଉପରେ ଦୃଷ୍ଟି ରଖି ରଚିତ ହୋଇଛି ।

ମଧୁସୂଦନ ଅକାରାନ୍ତ, ଆକାରାନ୍ତ, ଇକାରାନ୍ତ କ୍ରମରେ ଶିକ୍ଷାଦାନ ପ୍ରଣାଳୀକୁ ପସନ୍ଦ କରୁଥିଲେ । ତାହାର କେତୋଟି ଉଦାହରଣ ସେ ଦେଇଛନ୍ତି, ଯଥା –

ଅକାରାନ୍ତ – ଧବଳଟଗର, କଟକ ନଗର
ଆକାରାନ୍ତ – ଆକାଶର ତାରା, ବରଷାର ଧାରା
ଈକାରାନ୍ତ – ସମୀର ବହଇ ଧୀର, ଶୀତଳ ନଦୀର ନୀର
ଉକାରାନ୍ତ – ଦୁ ଦୁ କରି ଡାକିଲି ମୁହିଁ

ଏହି 'ବର୍ଣ୍ଣବୋଧ'ର ଭାଷା ଶୁଦ୍ଧ, ସରଳ ଅଥଚ ରୁଚିପୂର୍ଣ୍ଣ । ଆଜିକାଲି ବର୍ଣ୍ଣ ପରିଚୟ ସକାଶେ ବହୁ ପୁସ୍ତକ ରଚିତ ହୋଇଥିଲେ ମଧ୍ୟ ମଧୁସୂଦନଙ୍କ ରଚିତ 'ବର୍ଣ୍ଣବୋଧ'ର ସ୍ଥାନ ଯେ ସବୁଠାରୁ ଉଚ୍ଚରେ ଏକଥା ସମସ୍ତେ ସ୍ୱୀକାର କରିବେ । ଓଡ଼ିଶାର ପ୍ରାୟ ସମସ୍ତ ପ୍ରତିଷ୍ଠିତ ବ୍ୟକ୍ତି ବାଲ୍ୟକାଳରେ ଏହାକୁ ଯେ ପଢ଼ିଥିବେ, ଏହା ସହଜରେ ଅନୁମାନ କରାଯାଇପାରେ । ଏବେ ମଧ୍ୟ ବିଭିନ୍ନ ପ୍ରକାଶନ ସଂସ୍ଥା ଏହାକୁ ପ୍ରକାଶ କରି ଲାଭବାନ୍ ହେଉଛନ୍ତି ।

ଶିକ୍ଷକର ପ୍ରେରଣା ନେଇ ମଧୁସୂଦନ ମଧ୍ୟ 'ଶିଶୁବୋଧ' ଓ 'ବାଲ୍ୟବୋଧ' ରଚନା କରିଛନ୍ତି । ଏଥିରେ ବାର ମାସ, ଛଅ ଋତୁର ବର୍ଣ୍ଣନା ମିଳେ । ଏହା ସାଙ୍ଗରେ ମନୁଷ୍ୟ ଜୀବନରେ ବିଭିନ୍ନ ଋତୁରେ ଆସୁଥିବା ଦୁଃଖକଷ୍ଟକୁ ମଧ୍ୟ ସେ ସ୍ଥାନ ଦେଇଛନ୍ତି ।

ମଧୁସୂଦନ 'ସାହିତ୍ୟ କୁସୁମ', 'ସାହିତ୍ୟ ପ୍ରସଙ୍ଗ' ପ୍ରଭୃତି ପାଠ୍ୟପୁସ୍ତକ ରଚନା କରିଥିଲେ । 'ସାହିତ୍ୟ କୁସୁମ'ରେ ପିଲାଟି ଉପଯୋଗୀ କାହାଣୀ, ଜୀବନୀ, ଜନ୍ତୁ, ହ୍ରଦ, ପ୍ରାଚୀନ କୀର୍ତ୍ତି ପ୍ରଭୃତି ଅଛି । 'ସାହିତ୍ୟ ପ୍ରସଙ୍ଗ'ରେ ମଧ୍ୟ କେତେକ ଜୀବନୀ, ଆଖ୍ୟାୟିକା, ପ୍ରବନ୍ଧ ଓ ବିଜ୍ଞାନ ସମ୍ପର୍କୀୟ ଲେଖା ଦେଖିବାକୁ ମିଳେ । ଏଥିରେ ଥିବା ରଚନାଗୁଡ଼ିକ ଛାତ୍ରର ଜ୍ଞାନପ୍ରସାର କରିବା ସଙ୍ଗେ ସଙ୍ଗେ ଛାତ୍ର ମନରେ ଗଭୀର କୌତୂହଳ, ଆଦର୍ଶବତ୍ତା ଓ ନୈତିକତା ସୃଷ୍ଟି କରିଥାଏ । ଶିଶୁର ମନୋରଞ୍ଜନପାଇଁ ଠାଏ ଠାଏ ହାସ୍ୟରସର ପରିବେଷଣ ମଧ୍ୟ କରାଯାଇଛି । ଏହି ରଚନାଗୁଡ଼ିକ ବିଦ୍ୟାଳୟମାନଙ୍କରେ ଅନେକ କାଳ ଧରି ଜନପ୍ରିୟତା ହାସଲ କରିଥିଲା । ଶିଶୁ ସାହିତ୍ୟ ସୃଷ୍ଟିରେ ମଧୁସୂଦନ ଓଡ଼ିଆ ସାହିତ୍ୟରେ ଯେ ଅଗ୍ରଣୀ, ଏହା ସମସ୍ତେ ସ୍ୱୀକାର କରନ୍ତି ।

## ଗୀତିକବିତା

ମଧୁସୂଦନ ବ୍ରାହ୍ମ ସମାଜରେ ଯୋଗ ଦେଇଥିଲେ । ସେ ଆଦର୍ଶ ଜୀବନଯାପନ କରିବାରେ ବ୍ରତୀ ଥିଲେ । ସେ ମଧ୍ୟ ବ୍ୟକ୍ତିଗତ ଜୀବନରେ ବିନୟୀ, ସତ୍ୟବାଦୀ ଓ ଅମାୟିକ ଥିଲେ । ସାହିତ୍ୟ ସୃଷ୍ଟି ତାଙ୍କର ସୌଖୀନ ବିଳାସ ନ ଥିଲା । ସୁସ୍ଥ, ସୁନ୍ଦର ସମାଜ ଗଠନ ତାଙ୍କର ଲକ୍ଷ୍ୟ ଥିଲା । ଏହି ସମାଜକୁ ସୁଧାରିବାପାଇଁ ଯେଉଁ ପ୍ରକାର ଚିନ୍ତା କରୁଥିଲେ, ତାହା ରଚନା ମାଧ୍ୟମରେ ପ୍ରକାଶ କରୁଥିଲେ । ମଧୁସୂଦନ ତାଙ୍କର ଅସଂଖ୍ୟ ଗୀତ, କବିତା ମାଧ୍ୟମରେ ନିଜ ଅନ୍ତରର ଧର୍ମଭାବକୁ ହିଁ ପ୍ରକଟ କରିଅଛନ୍ତି । ମଧୁସୂଦନଙ୍କର ଏହି ଧର୍ମ ସଂକୀର୍ଣ୍ଣ ନୁହେଁ । ଜୀବାତ୍ମା ସହିତ ପରମାତ୍ମାଙ୍କ ମିଳନହିଁ ତାଙ୍କର ଲକ୍ଷ୍ୟ । ନିଖିଳ ମାନବ ହୃଦୟ ସହିତ

ହୃଦୟ ମିଶାଇ ଦେବାକୁ ସେ ଦେଇଛନ୍ତି ଆହ୍ୱାନ । ଏକ ମାନବ ଜାତିର ସେ ହୋଇଛନ୍ତି ଉଦ୍‌ଗାତା ।

କବିଙ୍କର ପ୍ରଧାନ କୃତି ହେଲା 'ଛାନ୍ଦମାଳା' (୧ମ ଓ ୨ୟ ଭାଗ), 'କବିତାବଳୀ' (୧ମ ଓ ୨ୟ ଭାଗ), 'ବିବିଧ କବିତା', 'କୁସୁମାଞ୍ଜଳି', 'ବସନ୍ତ ଗାଥା', 'ଉତ୍କଳ ଗାଥା', 'ହିମାଳୟେ ଉଦୟ ଉତ୍ସବ', ଅନ୍ୟାନ୍ୟ କବିତା ଓ ସଙ୍ଗୀତମାଳା ।

## ଛାନ୍ଦମାଳା (୧ମ ଓ ୨ୟ ଭାଗ)

'ଛାନ୍ଦମାଳା' ପ୍ରଥମ ଭାଗରେ ୨୨ଟି ଓ ଦ୍ୱିତୀୟ ଭାଗରେ ୮ଟି କବିତା ସଙ୍କଳିତ ହୋଇଛି । ଏଥିରେ ପ୍ରଭାତ, ସନ୍ଧ୍ୟା, ବସନ୍ତ, ଗ୍ରୀଷ୍ମ, ବର୍ଷା, ଶରତ ପ୍ରଭୃତି ଋତୁ ଉପରେ କବିତାମାନ ଅଛି । 'ଶ୍ରୀରାମ ବନବାସ' ଓ 'କର୍ଣ୍ଣ ବଧ' ଏଇ ଦୁଇଟି ପୌରାଣିକ ବିଷୟ ଉପରେ ଆଧାରିତ କବିତା, 'ଜନ୍ମଭୂମି ଓ ମାତୃଭୂମି' ପ୍ରଭୃତି ଦେଶପ୍ରୀତିମୂଳକ କବିତା, 'ମୋ ଜନନୀ', 'ସ୍ତବ', 'ଉପଦେଶ' ପ୍ରଭୃତି କବିତାମାନ ଅଛି । ଏଥିରେ ବାଳକମାନଙ୍କୁ ସତ୍ୟ ଓ ଧର୍ମ ଅନୁରାଗୀ ହେବାକୁ ଉପଦେଶ ଦିଆଯାଇଛି । 'ମୋ ଜନନୀ' କବିତାରେ କବି ତାଙ୍କର ମାତୃବିୟୋଗ ଦୁଃଖ ବର୍ଣ୍ଣନା କରିଛନ୍ତି । 'ସ୍ତବ' କବିତାରେ ସେ ନିଜକୁ ପ୍ରଭୁଙ୍କ ପାଦପଦ୍ମରେ ସମର୍ପଣ କରିଦେଇଛନ୍ତି । 'ଛାନ୍ଦମାଳା'ର ଦ୍ୱିତୀୟ ଭାଗରେ 'ଅଖିଳ ବ୍ରହ୍ମାଣ୍ଡ ପ୍ରତି ମୋ ଜୀବନ ସ୍ୱାମୀ' ଗୀତଟି ସନ୍ନିବେଶିତ ହୋଇଛି । ଗୀତଟା ହେଲା –

''ଅଖିଳ ବ୍ରହ୍ମାଣ୍ଡ ପତି ହେ ଜୀବନ ସ୍ୱାମୀ
ହେ ପରମ ପିତାମାତା ପ୍ରଭୁ ଅନ୍ତର୍ଯାମୀ
ଧନ୍ୟ କରୁଣା ତୋହର
ହେ କରୁଣା ସିନ୍ଧୁ କାହିଁ
ତା'ର ପଟାନ୍ତର

× × ×

ସତ୍ୟ ପଥେ ଧର୍ମ ପଥେ ଘେନି ଯାଅ ମୋତେ
ଭସାଅ ପରାଣ ମୋର ତବ ପ୍ରେମ ସ୍ରୋତେ
ପ୍ରଭୋ ! ପରମ ଶରଣ
ଏ ଜୀବନ ଶ୍ରୀଚରଣେ କଲି ସମର୍ପଣ ।''

ଏଥିରେ ଭଗବାନ୍‌ଙ୍କ ପ୍ରତି ଭକ୍ତ ହୃଦୟର ଅନାବିଳ ପ୍ରେମ ପ୍ରକଟିତ ହୋଇଛି । ଏହା ଏବେ ମଧ ବିଭିନ୍ନ ଶିକ୍ଷାୟତନରେ ଛାତ୍ରମାନଙ୍କଦ୍ୱାରା ଆବୃତ୍ତି ହେଉଅଛି ।

## ବାଳ ରାମାୟଣ

କବି ଏଥିରେ ଅଯୋଧ୍ୟା କାଣ୍ଡର ବିଷୟକୁ ସଂକ୍ଷେପରେ ବର୍ଣ୍ଣନା କରିଛନ୍ତି । ଅଯୋଧ୍ୟାରେ ଦଶରଥଙ୍କର ରାଜତ୍ୱ, ରାମ, ଭରତ ପ୍ରଭୃତି ଚାରି ଭାଇଙ୍କର ଜନ୍ମ, ବିଶ୍ୱାମିତ୍ରଙ୍କ ସହ ବନଗମନ, ତାଡ଼କାବଧ, ହରଧନୁ ଭଙ୍ଗ ଓ ସୀତା ବିବାହ, ଅଯୋଧ୍ୟା ପ୍ରତ୍ୟାଗମନ ପ୍ରଭୃତି ବିଷୟ ଏଥିରେ ବର୍ଣ୍ଣିତ । ପିଲାମାନେ ରାମାୟଣ ବିଷୟ ଜାଣିବା ନିମନ୍ତେ ଏହାକୁ କବି ରଚନା କରିଥିବାର ଜଣାଯାଏ ।

## କବିତାବଳୀ (୧ମ ଓ ୨ୟ ଭାଗ)

ଏହା ରାଧାନାଥ ଓ ମଧୁସୂଦନଙ୍କର ମିଳିତ କବିତା ସଂଗ୍ରହ । ଏହାର ପ୍ରଥମ ଭାଗରେ 'ସ୍ତୋତ୍ର', 'ଭାରତୀ', 'ବନ୍ଦନା', 'ନିର୍ବାସିତର ବିଳାପ', 'ଶ୍ମଶାନ', 'ଶରତ ପ୍ରଭାତ', 'ସୀତା ବନବାସ', 'ନିଶୀଥ ଚିନ୍ତା' ଓ ଦ୍ୱିତୀୟ ଭାଗରେ 'ଆକାଶ ପ୍ରତି', 'ଜୀବନ ଚିନ୍ତା' ଓ 'ଅଯୋଧ୍ୟା ପ୍ରତ୍ୟାଗମନ' ପ୍ରଭୃତି କବିତାଗୁଡ଼ିକ ଅଛି ।

ସ୍ତୋତ୍ରରେ କବି ଈଶ୍ୱରଙ୍କ ମହିମା କୀର୍ତ୍ତନ କରିଛନ୍ତି, ଯଥା –

"ଏ ଅନନ୍ତ ବିଶ୍ୱ ତୁମ୍ଭ ମହିମା କୀର୍ତ୍ତନ
ଅଶେଷ ପ୍ରକାରେ ବିଭୋ, କର ଅନୁକ୍ଷଣ ।"

'ଭାରତୀ ବନ୍ଦନା'ରେ କବି ବାଗ୍‌ଦେବୀ ସରସ୍ୱତୀଙ୍କ ବର୍ଣ୍ଣନା କରିଛନ୍ତି । 'ଶରତ ପ୍ରଭାତ'ରେ କବି ଶରତ ଋତୁର ଏକ ସୁନ୍ଦର ଚିତ୍ର ଦେଇଛନ୍ତି, ଯଥା –

"ଛାଡ଼ ବନ୍ଧୁ ନଗର ଚହଳ
ଯିବା ଚାଲି ଯେଉଁ ସ୍ଥାନେ        ଗୋପାଳ କୃଷକମାନେ
ଆନନ୍ଦେ କାଟନ୍ତି ଦିନ        ସୁଖେନ୍ଦୁ ବିମଳ
ଯାହାର ଚିତ୍ତାକାଶେ ସର୍ବଦା ଉଜ୍ଜ୍ୱଳ ।"

'ନିର୍ବାସିତର ବିଳାପ' ଏକ ଅନୁବାଦ କବିତା । ଏଥିରେ କବି ପ୍ରଥମେ ନିଃସଙ୍ଗବୋଧତାର ଚିତ୍ର ଦେଇଛନ୍ତି । ଏହାପରେ ନିର୍ବାସିତ ମନରେ ଆତ୍ମୀୟସ୍ୱଜନଙ୍କ ଚିନ୍ତା ଓ ଶେଷରେ ଈଶ୍ୱରଙ୍କ ଅପାର କରୁଣା ଲାଭର ଚିତ୍ର ଦେଇଛନ୍ତି । କବି ଏଥିରେ ମୂଳ କବିତାର ଭାବକୁ ନିଜସ୍ୱ କରି ନିଜ ଭାଷାରେ ପ୍ରକାଶ କରିଛନ୍ତି । ଏଥିରେ ତାଙ୍କର ମୌଳିକତା ସୁସ୍ପଷ୍ଟ ।

'ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ' ମଧୁସୂଦନଙ୍କ ପ୍ରଥମ ଅନୁବାଦ କବିତା । କାଳିଦାସଙ୍କ ରଚିତ ରଘୁବଂଶର ତ୍ରୟୋଦଶ ସର୍ଗକୁ କବି ଅନୁବାଦ କରିଛନ୍ତି । ଏହାକୁ ପାଠ୍ୟପୁସ୍ତକ ଉଦ୍ଦେଶ୍ୟରେ କବି ରଚନା କରିଥିବାର ଅନୁମାନ କରାଯାଏ ।

'ସୀତା ବନବାସ' ରାମାୟଣ କଥାବସ୍ତୁ ଉପରେ ଆଧାରିତ । ଗର୍ଭବତୀ ସୀତା ନିର୍ବାସିତା ହୋଇ ବାଲ୍ମୀକି ଆଶ୍ରମରେ ଆଶ୍ରୟ ନେବା ବିଷୟ ଏଥିରେ ବର୍ଣ୍ଣିତ । ଏଥିରେ କବିଙ୍କ ଅପୂର୍ବ କଳାକୃତି ପ୍ରଦର୍ଶିତ ହୋଇଅଛି । କବି ଏହାକୁ ଏପରି ଆରମ୍ଭ କରିଛନ୍ତି –

"ଅଗ୍ରଜ ଆଜ୍ଞାବହ ସୌମିତ୍ରି ରଥୀ
ରାମ–ହୃଦୟ–ଜ୍ୟୋତ୍ସ୍ନା ବୈଦେହୀ ସତୀ
ବିସର୍ଜି ଭାଗୀରଥି ତୀର କାନନେ
ଲେଉଟାଇଲେ ରଥ ଅଥୟ ମନେ ।"

ପୁଣି କବି ଲକ୍ଷ୍ମଣଙ୍କର ଅବସ୍ଥା ବର୍ଣ୍ଣନା କରିଛନ୍ତି –

"ଘନ ଘନ ଲୋତକଧାରା ନୟନୁ
ଝରି ତିନ୍ତିଲା ବକ୍ଷ, ତିନ୍ତିଲା ଧନୁ ।"

ଲକ୍ଷ୍ମଣଙ୍କର ଶୋକାର୍ତ୍ତ ରୂପ ଅତି ହୃଦୟସ୍ପର୍ଶୀ ହୋଇଛି । ପତିପ୍ରାଣା ଜାନକୀଙ୍କର ବିଳାପ ମଧ୍ୟ ଅତି ପ୍ରାଣସ୍ପର୍ଶୀ ।

'ଶ୍ମଶାନ' କବିତାରେ କବିଙ୍କ ଦାର୍ଶନିକ ଚିନ୍ତା ପ୍ରକଟିତ ହୋଇଛି, ଯଥା –

"ଚିରସ୍ଥାୟୀ ନୁହେଁ କିଛି ସକଳ ଅସ୍ଥିର
ଜୀବନ ଯୌବନ ଧନ ପଦ୍ମପତ୍ର ନୀର
ରାଜା ପ୍ରଜା ମୂର୍ଖ ଜ୍ଞାନୀ ଦୁଃଖୀ ଧନବାନ
ନିଷ୍ଠୁର ଶମନଠାରେ ସମସ୍ତେ ସମାନ ।"

'ଜୀବନ ଚିନ୍ତା' କବି ହୃଦୟର ଆଉ ଏକ ଦାର୍ଶନିକ ଅଭିବ୍ୟକ୍ତି । କବି ଗାଇଛନ୍ତି –

"ରେ ଆତ୍ମନ ନିଦ୍ରା ପରିହରି
ଫେଡ଼ି ଚିନ୍ତାର ଲୋଚନ          କର କର ନିରୀକ୍ଷଣ
ନିଃଶବ୍ଦେ ଜୀବନ–ସ୍ରୋତ ଧାଉଁଛି କିପରି
ଭେଟିବାକୁ ମୃତ୍ୟୁ ସିନ୍ଧୁ କରାଳ ଲହରୀ ।"

କବି ଏଥିରେ ନିଜକୁ ସଚେତନ ହେବାକୁ ନିର୍ଦ୍ଦେଶ ଦେଇଛନ୍ତି । ଜୀବନରୂପକ ସ୍ରୋତ ମୃତ୍ୟୁରୂପକ ସିନ୍ଧୁ ସହିତ ଭେଟିବାକୁ ସତତ ଧାବମାନ । ଏହି ସ୍ରୋତର ପ୍ରବାହ ସହିତ ଜୀବନର ସୁଖ ରାଶି ହଜିଯାଉଛି । କାଳ ସ୍ରୋତରେ ସଂସାରର ସବୁ ଦମ୍ଭ ଆଡ଼ମ୍ବର ଲୁଚି ଯାଉଛି । ଏହି ମୃତ୍ୟୁଆଡ଼କୁ ଧନୀ, ଦରିଦ୍ର ତଥା ସମ୍ରାଟ୍ ସମସ୍ତେ ଧାବମାନ ହେଉଛନ୍ତି । କବିତାର ଶେଷଆଡ଼କୁ କବି ନିଃସ୍ୱାର୍ଥ, ପବିତ୍ର ଜୀବନଯାପନ କରିବାକୁ ପରାମର୍ଶ ଦେଇଛନ୍ତି । ଈଶ୍ୱରଙ୍କ ଦର୍ଶନରେ ଆତ୍ମା ପବିତ୍ର ହେବ । କବି ସେହି ଈଶ୍ୱରଙ୍କ ସାନ୍ନିଧ ଲାଭ କରିବାକୁ ଅଭିଳାଷ କରିଛନ୍ତି । ତାଙ୍କ ଆତ୍ମସମର୍ପଣ ଜୀବନ୍ତ ହୋଇଉଠିଛି –

"ଆସ ନାଥ ଅଗତିର ଗତି
ତୁମ୍ଭ ବିନା ଏ ସଂସାରେ ମରଇ ମୁଁ ହାହାକାରେ
ତାର ମୋତେ ମହାପ୍ରଭୁ ଦେଇଣ ସୁମତି
ଅନନ୍ତ ଦୟା ତୁମ୍ଭର ଅନନ୍ତ ଶକତି ।"

'କବିତାବଳୀ' କବି ପ୍ରତିଭାର ମଧପର୍ବ ବୋଲି ଆଲୋଚକ ବୈଷ୍ଣବ ଚରଣ ସାମଲ ମତ ଦେଇଛନ୍ତି ।

## ବିବିଧ କବିତା

ଧର୍ମ, ପବନ, ନବ ବର୍ଷ, ଆଶୀର୍ବାଦ, ପରଲୋକଗତା ସୁଲକ୍ଷଣା ଦେବୀ, ଭାରତୀ ବନ୍ଦନା, ନୀତି ରତ୍ନମାଳା, ଦୃଷ୍ଟାନ୍ତ ମାଳା ପ୍ରଭୃତି ବିବିଧ କବିତା ଏଥିରେ ଅଛି । ଏସବୁ କବିତାଗୁଡ଼ିକ ଉପଦେଶାତ୍ମକ । 'ଧର୍ମ' କବିତାରେ କବି ଧର୍ମ ସଞ୍ଚିବାକୁ ଉପଦେଶ ଦେଇଛନ୍ତି, ଯଥା –

"ବାଲ୍ୟ କାଳୁ ଧର୍ମ ଧନ ହିଁ ସଞ୍ଚିବି
ଏ ଜୀବନ ଅନିଶ୍ଚିତ
କେ ଜାଣେ କାହାର ଆଜି ମୃତ୍ୟୁ କାଳ
ହୋଇଯିବ ଉପସ୍ଥିତ ।"

## କୁସୁମାଞ୍ଜଳି

'କୁସୁମାଞ୍ଜଳି' କବି ପ୍ରତିଭାର ବିକଶିତ କୁସୁମର ସୌନ୍ଦର୍ଯ୍ୟ ଓ ସୌରଭ ବିତରଣ କରିଥାଏ ବୋଲି ଆଲୋଚକ ମତ ଦେଇଛନ୍ତି । ଏଥିରେ ନବବସନ୍ତ ଭାବନା, ଏ ସୃଷ୍ଟି ଅମୃତମୟ ହେ, ନବଯୁଗର ଅଭିଷେକ, ଧରଣୀ ପ୍ରତି, ଆଶା, ଆତ୍ମସମର୍ପଣ, ଭାରତୀ ଭାବନା, ଋଷିପ୍ରାଣେ ଦେବାବତରଣ ପ୍ରଭୃତି କବିତାଗୁଡ଼ିକ ସନ୍ନିବେଶିତ ।

'ନବ ବସନ୍ତ ଭାବନା' ଗୋଟିଏ ସୁନ୍ଦର କବିତା । ଏହା ଚାରୋଟି ପର୍ଯ୍ୟାୟରେ ବିଭକ୍ତ । ପ୍ରଥମ ପର୍ଯ୍ୟାୟରେ ବସନ୍ତର ପ୍ରଭାବରେ ବିଶ୍ୱର ରନ୍ଧ୍ରେ ରନ୍ଧ୍ରେ ଏକ ଅପୂର୍ବ ଆନନ୍ଦ ଓ ଉଦ୍ଦୀପନା ଖେଳିଯାଇଛି । ଦ୍ୱିତୀୟ ପର୍ଯ୍ୟାୟରେ କବି ମନୁଷ୍ୟର ଜୀବନ କିପରି ନୈରାଶ୍ୟ ଜର୍ଜ୍ଜରିତ, ତାହା ଦର୍ଶାଇଛନ୍ତି । ତୃତୀୟ ପର୍ଯ୍ୟାୟରେ ସେ ନବସଙ୍ଗୀତର ବାଣୀ ଶୁଣିଛନ୍ତି । ଚତୁର୍ଥ ପର୍ଯ୍ୟାୟରେ କବି ଆଶାବାଦୀ ହୋଇଛନ୍ତି । ବିଭୁ ପଦରେ ପ୍ରାଣ ସମର୍ପଣ କଲେ ନବ ଜୀବନ ପ୍ରବାହିତ ହେବ ଓ ଅନ୍ତର ମଧରେ ବସନ୍ତ ଉପଲବ୍‌ଧି ହେବ । ଜୀବନ ଶୁଦ୍ଧ, ସୁନ୍ଦର ଓ ନିର୍ମଳ ହେବ, ଯଥା –

''ଆଶା ପାରିଜାତ ଫୁଟିବ ହୃଦ ନନ୍ଦନ ବନେ

× × ×

ସ୍ୱରଗର ଶିରୀ ସଂପଦେ ହେବୁ ତୁହି ସୁନ୍ଦର
ଅମୃତ ସଙ୍ଗୀତ ଝଙ୍କାରେ ପୂରିଯିବ ଅନ୍ତର ।''

ଆଉ ଗୋଟିଏ କବିତା ହେଲା 'ଏ ସୃଷ୍ଟି ଅମୃତମୟ ହେ' । ମଧୁସୂଦନ ସତ୍ୟ, ଶିବ ଓ ସୁନ୍ଦରର ଉପାସକ ଥିଲେ । ଜୀବନରେ ଦୁଃଖ, ବ୍ୟଥା, ବେଦନା ଥିଲେ ମଧ କବି ସଦାସର୍ବଦା ସ୍ୱର୍ଗୀୟ ସୁଧା ପାନ କରୁଥିଲେ । ସେ ତେଣୁ ଦୁଃଖ, ବ୍ୟାଧି ଓ ଜଞ୍ଜାଳଗ୍ରସ୍ତ ମଣିଷକୁ ଅମୃତର ସନ୍ଧାନ ଦେଇଛନ୍ତି । ଗଗନ ପବନ, ନଦନଦୀ, ପାହାଡ଼ ପର୍ବତ – ସବୁଠି ଅମୃତ ବିରାଜମାନ କରୁଛି । ବୃକ୍ଷଲତା, କୀଟପତଙ୍ଗ, ପଶୁପକ୍ଷୀ, ମଣିଷ – ସମସ୍ତେ ଅମୃତର ସନ୍ତାନ । ସେହି ଅମୃତର ଉପାସନା କରିବାକୁ କବି କହିଛନ୍ତି –

''ମଧୁମୟ ସୃଷ୍ଟି ସୁଧାମୟ ସୃଷ୍ଟି
ଏ ସୃଷ୍ଟି ଅମୃତମୟ ହେ
ଜାଗ ନରନାରୀ ଅମୃତ ସନ୍ତତ
ପିଅ ସେ ଅମୃତମୟ ହେ ।
ପିଇ ସେ ଅମୃତ ଦିବସ ଶର୍ବରୀ
ଗାଅ ଅମୃତର ଜୟ ହେ ।''

କବିଙ୍କର ଈଶ୍ୱରଙ୍କଠାରେ ଅଚଳାଭକ୍ତି ଥିଲା । ସେ ଯେ କେତେ ତୁଚ୍ଛ, ତାହା 'ଆତ୍ମସମର୍ପଣ' କବିତାରେ ବର୍ଣ୍ଣନା କରିଛନ୍ତି । ସେ ଈଶ୍ୱରଙ୍କଠାରେ ପୂରାପୂରି ନିଜକୁ ସମର୍ପଣ କରିଦେଇଛନ୍ତି, ଯଥା –

''ମୁହିଁ କ୍ଷୁଦ୍ର ଊର୍ମି ତୁମ୍ଭେ ମହାସିନ୍ଧୁ
ଊର୍ମି ସିନ୍ଧୁ ଏକାକାର

ଅନନ୍ତ ମଙ୍ଗଳ ସଙ୍କଳ୍ପ ସମ୍ଭୂତ
ମୁହିଁ ତୁମ୍ଭ ମହିମାନ
× × ×
ଏ କ୍ଷୁଦ୍ର ପ୍ରାଣର ପ୍ରେମ ପ୍ରତିଦାନ
ପାଦ ପଦ୍ମେ ପ୍ରାଣବଳି
ଅର୍ପଇ ଆନନ୍ଦେ ଘେନ ମହାପ୍ରଭୁ
ଘେନ ଏ ଦୁଃଖୀର ଅଳି ।''

'ଋଷିପ୍ରାଣେ ଦେବାବତରଣ' କବିଙ୍କର ପରିଣତ ବୟସର ରଚନା । ଏହା କବିଙ୍କର ଦୃଷ୍ଟି ଓ ଦର୍ଶନର ଉଜ୍ଜ୍ୱଳ ସ୍ୱାକ୍ଷର । ଦିନେ ଜଣେ ବୈଦିକ ଋଷି ପବିତ୍ର ଉଷା କାଳରେ ଶତଦ୍ରୁ ଜଳରେ ସ୍ନାନ କରିବାକୁ ଆସିଥିଲେ । ତାଙ୍କର ପଶ୍ଚାତ୍‌ଭାଗରେ ଥିଲା ନଭଶ୍ଚୁମ୍ବୀ ହିମାଳୟ । ପୁରୋଭାଗରେ ଥିଲା ଉଷାଲୋକ ରଞ୍ଜିତ ଆକାଶ । ସେ ପ୍ରକୃତିର ରନ୍ଧ୍ରେ ରନ୍ଧ୍ରେ ପରମାତ୍ମାଙ୍କର ପୂର୍ଣ୍ଣ ଅସ୍ତିତ୍ୱ ଉପଲବ୍‌ଧି କରିପାରିଥିଲେ । ସେ ପରମାତ୍ମା, ପରାତ୍ପର, ପ୍ରାଣବିଧାତା । ସେ ବିଶ୍ୱର ପିତାମାତା । କବିଙ୍କ ଭାଷାରେ –

''ସୁଗମ୍ଭୀର ଉଦ୍‌ଗିରଣେ ଏ କ୍ଷୁଦ୍ରେ ପରାଣେ,
ଅବତୀର୍ଣ୍ଣ ବାଣୀ ରୂପେ ଅଦ୍ଭୁତ ବିଧାନେ,
ଜାଣିଅଛି ପରାତ୍ପର ଏ ପ୍ରାଣ ବିଧାତା,
ଅଟ ହେ ପ୍ରତ୍ୟକ୍ଷ ତୁମ୍ଭେ ବିଶ୍ୱ ପିତାମାତା ।''

ଉପନିଷଦ୍‌ର ଋଷିଙ୍କ ଭଳି ଭକ୍ତ କବି ମଧୁସୂଦନଙ୍କର ମଧ ଏହାହିଁ ଥିଲା ଅନୁଭବ । ଏହା କବିଙ୍କର ଅନ୍ୟତମ ଶ୍ରେଷ୍ଠ କୃତି ଭାବେ ଗଣ୍ୟ ହୁଏ । ଏହାର ଅନୁବାଦ ବିଶ୍ୱକବି ରବୀନ୍ଦ୍ରନାଥ ପାଠ କରି ମତ ଦେଇଥିଲେ ଯେ ସେ 'ଋଷିପ୍ରାଣେ ଦେବାବତରଣ'ରେ ପ୍ରକୃତ ବେଦମନ୍ତ୍ରର ଧ୍ୱନି ଶୁଣିପାରିଛନ୍ତି ।

**ବସନ୍ତଗାଥା**

ମଧୁସୂଦନ ଓଡ଼ିଆ ଭାଷାରେ ପ୍ରଥମେ ସନେଟ୍ ଲେଖିଥିଲେ । ମାତ୍ର ଚଉଦଟି ଧାଡ଼ିରେ କବି ତାଙ୍କ ହୃଦୟର ଭାବ ସୁନ୍ଦର ଭାବରେ ପ୍ରକାଶ କରିଛନ୍ତି ।

'ବସନ୍ତଗାଥା' କବିଙ୍କର ଶ୍ରେଷ୍ଠ ସନେଟ୍ ସଙ୍କଳନ । ବାଣୀ, ସତ୍ୟ, ପାପୀର ତ୍ରାସ, ଅତୀତ, ହୃଦୟ ସଙ୍ଗୀତ, ଜରା ଆକ୍ରମଣ, ଶଙ୍ଖଧ୍ୱନି ପ୍ରଭୃତି ସନେଟ୍‌ଗୁଡ଼ିକ ତତ୍ତ୍ୱପୂର୍ଣ୍ଣ । ପ୍ୟାରୀମୋହନ ଆଚାର୍ଯ୍ୟ, ବାମଣ୍ଡା ନରପତି ଶ୍ରୀ ସୁଢଳଦେବ, କବିବର ରାଧାନାଥ ରାୟ, ଫକୀରମୋହନ ସେନାପତି

ଶୀର୍ଷକ ସନେଟଗୁଡ଼ିକରେ କବି ପ୍ରଶସ୍ତିଗାନ କରିଛନ୍ତି । ପତିତାରମଣୀ ଏକ ସଂସ୍କାରମୂଳକ କବିତା । ଜଣେ ବନ୍ଧୁଙ୍କ ପତ୍ନୀବିୟୋଗରେ ସେ ବିଚ୍ଛେଦ ସନେଟଟି ରଚନା କରିଥିଲେ ।

"ହଜି ନାହିଁ ଯା'ର କେବେ କିଛି ହିଁ ରତନ
ଏ ମର୍ତ୍ତ୍ୟ ସଂସାରେ ସେହି ଦୀନ ଅକିଞ୍ଚନ ।

× × ×

ଶୋକର ଅସୀମ ମସୀମୟ ଅନ୍ଧକାରେ
ପ୍ରେମର ପ୍ରଦୀପ ଜାଳି ମର୍ମ ବେଦନାରେ ।
ଯେ ଜନ ଜପଇ ଶିବ ରାତ୍ରି ଜାଗରଣେ
ଅଶ୍ରୁପୂତେ ପ୍ରେମମନ୍ତ୍ରେ ହୃଦୟ ରଚନେ
ସେହି ଏକା ଏ ଜଗତେ ମହାଧନେ ଧନୀ
ଅକ୍ଷୟ ଭଣ୍ଡାର ତା'ର ଦିବସରଜନୀ ।"

ଏଠାରେ କବି ମଣିଷର ଶୋକ ପ୍ରତି ସମ୍ମାନ ପ୍ରଦର୍ଶନ କରିଛନ୍ତି । ମାନବୀୟ ଆବେଗକୁ ସବୁବେଳେ ଆଧ୍ୟାତ୍ମିକତାର ରୂପ ସେ ଯେ ଦେଉ ନ ଥିଲେ, ଏହା ତାହାର ପ୍ରମାଣ ।

## ଉତ୍କଳ ଗାଥା

ଏହା କବିଙ୍କ ଉତ୍କଳପ୍ରୀତିର ଅପୂର୍ବ ନିଦର୍ଶନ । ଏହି ଉତ୍କଳରେ ଅଛି ବୌଦ୍ଧ ଗୁମ୍ଫା, ଶୈବତୀର୍ଥ ଭୁବନେଶ୍ୱର, ପୁଣ୍ୟ ଶ୍ରୀକ୍ଷେତ୍ର ଓ କୋଣାର୍କ । ସେ ଉତ୍କଳର ଗିରି, କାନନ, ପଲ୍ଲୀ, ସହରର ବର୍ଣ୍ଣନା କରିଛନ୍ତି । ଏହାର ଅତୀତ ଗୌରବକୁ ସ୍ମରଣ କରି ପ୍ରଣାମ କରିଛନ୍ତି ।

'ଉତ୍କଳ ବନ୍ଦନା' କବିତାରେ ଭୁବନେଶ୍ୱରର କୀର୍ତ୍ତିରାଜିକୁ ସ୍ମରଣ କରି ଈଶ୍ୱରଙ୍କୁ ପ୍ରାର୍ଥନା କରିଛନ୍ତି –

"ମାଗଇ କାତରେ ବିଭୁ ପାଦ ପଦ୍ମ ତଳେ
ହେ ଭୂମା ଭୁବନେଶ୍ୱର ଉଦ୍ଧାର ଉତ୍କଳେ ।"

ସେ ଉତ୍କଳର ଉନ୍ନତି ବିଧାନପାଇଁ ଚେଷ୍ଟା କରିଛନ୍ତି । କୁଶିକ୍ଷା, କୁସଂସ୍କାର ନାଗଫାଶରୁ ମୁକ୍ତ ହେବାପାଇଁ ଉତ୍କଳୀୟମାନଙ୍କୁ ଆହ୍ୱାନ ଜଣାଇଛନ୍ତି ।

'ନବଯୁଗ' ଶୀର୍ଷକ କବିତାରେ ସେ ଗାଇଛନ୍ତି –

"ତେଜି ମୋହ ନିଦ୍ରା ବହନ ଉଠ ଉତ୍କଳବାସୀ
କୁସଂସ୍କାର ନାଗଫାଶକୁ ଜ୍ଞାନ ଖଡ଼୍‌ଗେ ନାଶି ।"

ଉତ୍କଳର ପୂର୍ବ ଗୌରବ ଫେରିଆସିବ ବୋଲି ସେ ଆଶା ପୋଷଣ କରିଛନ୍ତି ।

''ବିଧାତାର ଆଶୀର୍ବାଦେ ଲକ୍ଷ୍ମୀ ମୂର୍ତ୍ତିମତୀ
ହେବୁ ତୁ ଉତ୍କଳ ଭୂମି ବୀରମାତା ସତୀ ।''

## ହିମାଳୟେ ଉଦୟ ଉତ୍ସବ

ଏହା ୧୯୧୧ରେ ରଚିତ ହୋଇଥିଲା । ହିମାଚଳରେ କୌଣସି ଏକ ବ୍ରାହ୍ମ ମୁହୂର୍ତ୍ତରେ କବି ଉଦୟ ଉତ୍ସବ ଦେଖିଛନ୍ତି । ଆକାଶ ପୃଥିବୀର ତାହା ପରିଣୟ ଉତ୍ସବ ଥିଲା । ପ୍ରକୃତି ଅପରୂପ ଶୋଭା ଧାରଣ କରିଥିଲା । କବିଙ୍କ ମନରେ ଏହି ଉତ୍ସବ ଅପୂର୍ବ ଭାବ ସୃଷ୍ଟି କରିଥିଲା ।

କବି ଗାଇଛନ୍ତି –

''ମୋ ପ୍ରାଣ ବିଲୀନ ହେଲା ପ୍ରକୃତିର ପ୍ରାଣେ
ପ୍ରକୃତିର ପ୍ରାଣ ଉଚ୍ଛ୍ୱସିତ ମୋ ପରାଣେ ।''

ତାଙ୍କର ଦେହ, ମନ, ପ୍ରାଣ ପୁଲକିତ ହୋଇଉଠିଲା । ସେ ସେହି ଉଷାର ପ୍ରଭାମୟ ଆଲୋକରେ ଗାଇଲେ –

''ଅଣୁରେ ଅଣୁରେ ନାଥ ଏ ମହା ବିଶ୍ୱର
ବାଜୁଅଛି ଅନାହତ ବୀଣା ବଂଶୀସ୍ୱର,
ପ୍ରାଣେ ପ୍ରତିଧ୍ୱନି ତା'ର ଉଠଇ ସଞ୍ଚରି
ମୋହରି ମୋହରି ତୁମ୍ଭ ମୋ'ହରି ମୋ'ହରି ।''

ଏହି କବିତାଟି ମଧୁସୂଦନଙ୍କ ପ୍ରେମ, ବିଶ୍ୱାସ ଓ ଆନନ୍ଦର ମଧୁର ମିଳନ । ଏହା ତାଙ୍କର ଓଡ଼ିଆ ସାହିତ୍ୟକୁ କାହିଁକି, ବିଶ୍ୱ ସାହିତ୍ୟକୁ ଶ୍ରେଷ୍ଠ ଦାନ ବୋଲି କୁହାଯାଇପାରେ ।

## ସଙ୍ଗୀତମାଳା

କବି ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ ଓ ଆଜୀବନ ବ୍ରାହ୍ମଧର୍ମର ବିଶ୍ୱସ୍ତ କର୍ମୀ ଥିଲେ । ୧୦୪ ଗୋଟି ସଙ୍ଗୀତକୁ ନେଇ ସେ ରଚନା କରିଥିଲେ 'ସଙ୍ଗୀତମାଳା' । ଏହା ବ୍ରାହ୍ମସମାଜର ଷଟଷଷ୍ଠିତମ ଉତ୍ସବ ଉପଲକ୍ଷେ ପ୍ରକାଶିତ ହୋଇଥିଲା । କବି ଏଥିରେ ସ୍ପଷ୍ଟ କହିଛନ୍ତି –

''ବ୍ରହ୍ମ ସମ ପ୍ରାଣ ସଖା ନାହିଁ ଆଉ
ତା' ପାଦ ଚିନ୍ତନେ ମୋର ଦିନ ଯାଉ ।''

ବ୍ରହ୍ମ ପାଦପଦ୍ମରେ ନିଜକୁ ସମ୍ପୂର୍ଣ୍ଣ ସମର୍ପଣ କଲେ ପରମ ଆନନ୍ଦ ମିଳିପାରିବ । କବି ସଂସାର ଜଞ୍ଜାଳ ଭିତରେ ବୁଡ଼ି ରହିଥିଲେ ମଧ୍ୟ ବ୍ରହ୍ମ ଜ୍ୟୋତିର ଅମ୍ଳାନ ସ୍ପର୍ଶ ଲାଭ କରି ଅପାର ଆନନ୍ଦ ଅନୁଭବ କରୁଥିଲେ ।

ଏହି ଗ୍ରନ୍ଥର ପ୍ରତି ସଙ୍ଗୀତରେ ଈଶ୍ୱର ପ୍ରେମର ପ୍ରତିଧ୍ୱନି ପ୍ରତିଫଳିତ ହେଉଥିବାରୁ ଏହାର ସାର୍ବଜନୀନ ଆବେଦନ ଅଛି ।

## ଅନ୍ୟାନ୍ୟ କବିତା

କବି 'ରାଧାନାଥ ବିୟୋଗେ' ଶୀର୍ଷକ ଏକ ଶୋକ ଗୀତ ରଚନା କରିଛନ୍ତି । ସେହିପରି ମୟୂରଭଞ୍ଜ ମହାରାଜା ଓ ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କ ଉପରେ ଏକ ଶୋକଗୀତି ରଚନା କରିଥିଲେ । ବ୍ରାହ୍ମସମାଜର ପ୍ରତିଷ୍ଠାତା ଦେବେନ୍ଦ୍ରନାଥ ଠାକୁର ଏକ ବନ୍ଦନାମୂଳକ କବିତା । ବାମଣ୍ଡା ରାଜାଙ୍କୁ ଅଭିନନ୍ଦନ ଜଣାଇ ସେ ଏକ କବିତା ଓ ଢେଙ୍କାନାଳ ରାଜାଙ୍କ ରାଜ୍ୟ ପ୍ରାପ୍ତି ଉତ୍ସବ ଉପଲକ୍ଷେ ଏକ କବିତା ରଚନା କରିଥିଲେ । 'ସାବାସ୍ ସାହିତ୍ୟ ଚର୍ଚ୍ଚା', 'ସାବାସ୍ ସାବାସ୍' ଓ 'ଭଣ୍ଡ ରସାୟନ କାବ୍ୟ' – ତାଙ୍କର ଦୁଇଟି ବ୍ୟଙ୍ଗ କବିତା । 'ଇନ୍ଦ୍ରଧନୁ ଓ ବିଜୁଳି' ସଂଘର୍ଷକୁ କେନ୍ଦ୍ର କରି ଏହା ରଚିତ ହୋଇଥିଲା । ସେ ସେଥିରେ ଭଞ୍ଜ ସାହିତ୍ୟ ବିରୋଧୀମାନଙ୍କୁ କଠୋର ସମାଲୋଚନା କରିଛନ୍ତି, ଯଥା –

''ସେ ଉତ୍କଳ କୁଳାଙ୍ଗର ମତ ଅବିବେକ
ନ ଜାଣଇ ନିଷ୍କଳଙ୍କ ଭଞ୍ଜ କବି ଟେକ ।''

ଏଥିରେ କଥିତ ଓ ଆଳଙ୍କାରିକ ଭାଷାର ସଫଳ ସମନ୍ୱୟ ଘଟିଛି । ଏହାର କଳା–କୁଶଳତା ମଧ୍ୟ ପାଠକକୁ ବିସ୍ମିତ କରେ ।

## ଗଦ୍ୟସାହିତ୍ୟ

ମଧୁସୂଦନ ମଧ୍ୟ ଗଦ୍ୟସାହିତ୍ୟ ସ୍ରଷ୍ଟା ଥିଲେ । ତାଙ୍କର ଗଦ୍ୟସାହିତ୍ୟ ପରମ୍ପରାମୁକ୍ତ ନୂତନ ସାହିତ୍ୟ ଥିଲା । ଏଥିରେ ପ୍ରାଚୀନ ସାହିତ୍ୟର କ୍ଲିଷ୍ଟତା ଦେଖାଯାଏ ନାହିଁ । ସେ ନବଭାବର ବାର୍ତ୍ତାବହ ଥିଲେ । ତଥାପି ସେ କାଳଉପଯୋଗୀ ଏକ ଉନ୍ନତ ଗଦ୍ୟଶୈଳୀ ପ୍ରସାରପାଇଁ ଯତ୍ନଶୀଳ ଥିଲେ । ଶିକ୍ଷିତ ଯୁବକ-ଯୁବତୀମାନଙ୍କର ଭାଷା ଶୁଦ୍ଧ ଓ ତ୍ରୁଟିପୂର୍ଣ୍ଣ ହେବା ଉଚିତ ବୋଲି ସେ ମନେ କରୁଥିଲେ । ସରଳ ଭାଷା ବିନ୍ୟାସର ବିରୋଧୀ ନ ଥିଲେ; କିନ୍ତୁ ଶିକ୍ଷା ପରିସରପାଇଁ ଭାଷାର ଗାମ୍ଭୀର୍ଯ୍ୟ ଗୁଣକୁ ସେ ଅଧିକ ପସନ୍ଦ କରୁଥିଲେ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ –

''ମଧୁବାବୁ ପ୍ରଥମରୁ ଗଦ୍ୟଲେଖା ଆରମ୍ଭ କରି ଭାଷାରେ ଯେ ରୁଚି, ସଙ୍ଗୀତ ଓ ପବିତ୍ରତା ଦେଖାଇଛନ୍ତି ତାହା ସେତେବେଳେ ଅନ୍ୟ ପ୍ରକାରେ ଲେଖିଥିଲେ ହୋଇଥାନ୍ତା କି ନାହିଁ ସନ୍ଦେହ । × × × କେବଳ ତାଙ୍କର ଲେଖା ନୁହେଁ, ତାଙ୍କର ସମସ୍ତ ଜୀବନ ସଂସ୍କୃତ ଥିଲା । ସେ ଜୀବନକୁ ଗଢ଼ିବାପାଇଁ ଯେପରି ବ୍ୟାକୁଳ ଥିଲେ ଭାଷା ବିନ୍ୟାସରେ ସେଥିରୁ ଅନ୍ୟଥା ଆଶା କରିବା ସ୍ୱାଭାବିକ ନୁହେଁ ।''

ମଧୁସୂଦନ 'ପ୍ରଣୟର ପରିଣାମ' ନାମକ ଏକ ଗଳ୍ପ ରଚନା କରିଛନ୍ତି । ଏଥିରେ ନାୟକ ହେନେରୀ ମାର୍ଟିଲଡାଙ୍କ ପ୍ରଣୟରେ ନିରାଶ ହୋଇ ଚିରଦିନ ଅବିବାହିତ ରହିଛନ୍ତି । 'ହେମମାଳା' ତାଙ୍କର ଆଉ ଏକ ଗଳ୍ପ । ଏଥିରେ ବିକ୍ରମ ହେମମାଳାଙ୍କୁ ପ୍ରେମ କରୁଥିଲେ । ମାତ୍ର ବିବାହ ପୂର୍ବରୁ ହେମମାଳାଙ୍କର ମୃତ୍ୟୁ ହେଲା । ବିକ୍ରମ ସନ୍ନ୍ୟାସୀଙ୍କ ସହ ହେମମାଳାଙ୍କ ସ୍ମୃତିକୁ ସଞ୍ଚାଳି କରି ବୁଲିଲେ । 'ପ୍ରବନ୍ଧ ମାଳା' ତାଙ୍କର ଆଉ ଏକ ସୃଷ୍ଟି । ଏଥିରେ ଚିନ୍ତା ଓ ତତ୍ତ୍ୱମୂଳକ ପ୍ରବନ୍ଧମାନ ସନ୍ନିବେଶିତ ହୋଇଛି ।

ମଧୁସୂଦନଙ୍କ କାବ୍ୟକୃତି ବିଷୟରେ ସେତେବେଳେ ସମ୍ବଲପୁରରୁ ପ୍ରକାଶିତ 'ସମ୍ବଲପୁର ହିତୈଷିଣୀ' ମନ୍ତବ୍ୟ ଦେଇଥିଲା – ''ସୌନ୍ଦର୍ଯ୍ୟ ସଙ୍ଗେ ଗାମ୍ଭୀର୍ଯ୍ୟ ଓ ପବିତ୍ରତାର ମିଳନ ରାଓ କବିଙ୍କର କବିତାର ବିଶେଷତ୍ୱ । ଏ ସମ୍ବନ୍ଧରେ ତାଙ୍କ ସହିତ କେହି ନାହିଁ କହିଲେ କିଛି ମାତ୍ର ଅତ୍ୟୁକ୍ତି ହେବ ନାହିଁ । ଯଥାର୍ଥରେ ରାଓ କବିଙ୍କ ଲେଖା ପାଠ କଲାବେଳେ ମନ ସଂସାରର ଆବର୍ଜନାପୂର୍ଣ୍ଣ ଧୂଳିରାଶି ପରିତ୍ୟାଗ କରି ଅନନ୍ତ ଆକାଶରେ ବିଚରଣ କରେ । ଅତୀନ୍ଦ୍ରିୟ ମାଧୁରୀରେ ପ୍ରାଣ ଅଭିଷିକ୍ତ ହୁଏ ।''

## ଶେଷ ଜୀବନ

କବି ସରକାରୀ ଚାକିରିରେ ଉଚ୍ଚ ପଦବୀରେ ଥାଇ ବିଶେଷ ଯଶ ଅର୍ଜନ କରିଥିଲେ । ବିଦ୍ୟାଳୟ ପ୍ରତିଷ୍ଠା କରି ସେ ମଧ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ତାଙ୍କର ଏ ସମସ୍ତ କାର୍ଯ୍ୟ ନିମନ୍ତେ ବଙ୍ଗଳାର ପଣ୍ଡିତ ଶିବନାଥ ଶାସ୍ତ୍ରୀ ମଧୁସୂଦନଙ୍କୁ 'ଉତ୍କଳର ବିଦ୍ୟାସାଗର' ନାମରେ ନାମିତ କରିଥିଲେ । ଇଂରେଜ ସରକାର ମଧ ତାଙ୍କୁ ୧୯୦୭ ମସିହାରେ 'ରାୟ ବାହାଦୁର' ଉପାଧିରେ ଭୂଷିତ କରିଥିଲେ ।

୧୯୦୯ ମସିହାରେ ତାଙ୍କର କୈଶୋରର ସଖା, ଶିକ୍ଷାଗୁରୁ, ହିତାକାଙ୍କ୍ଷୀ ବନ୍ଧୁ ରାଧାନାଥଙ୍କର ପରଲୋକ ହେଲା । ସେ ଏଥିରେ ବ୍ୟଥିତ ହୋଇପଡ଼ିଲେ । ସେ ତାଙ୍କ ଅସଂପୂର୍ଣ୍ଣ କବିତାରେ ଲେଖିଥିଲେ –

"କୈଶୋରର ଶିକ୍ଷାଗୁରୁ ସଦା ସୁବତ୍ସଳ
ଯୌବନର ପ୍ରାଣବନ୍ଧୁ ଏକାନ୍ତ ସରଳ
ପିତାମାତା ଗୁରୁ ସଖା ଯେବେ ଏ କଥାରେ
ଲଭିଥିଲି ମାଗୋ ତାକୁ ପାଇ ତୋ କୃପାରେ ।"

୧୯୦୯ ମସିହାରେ ସେ ଚାକିରିରୁ ଅବସର ଗ୍ରହଣ କଲେ । ସେଇ ବର୍ଷ ତାଙ୍କ ପିତୃବିୟୋଗ ଘଟିଲା । ମଧୁସୂଦନ ପିତାଙ୍କୁ ଭାରି ଭକ୍ତି କରୁଥିଲେ । ପିତା ଦେବତା ବୋଲି 'ନାମରତ୍ନମାଳା'ରେ ଲେଖିଛନ୍ତି –

"ପ୍ରତ୍ୟକ୍ଷ ଦେବତା ବୋଲି ଜାଣିବ ହେ ଜନନୀ ଜନକେ
କରିବ ଦୁହିଁଙ୍କ ସେବା ପ୍ରାଣପଣେ ବାଳିକା ବାଳକେ
ଅଟନ୍ତି ପରମ ଗୁରୁ ପିତାମାତା ଘେନ ଏହି ଦୀକ୍ଷା
ଆକାଶଠୁଁ ବଡ଼ ପିତାମାତା ବଡ଼ ପୃଥିବୀ ଅପେକ୍ଷା ।"

ପିତାଙ୍କ ଉପଯୁକ୍ତ ସେବା କରିପାରି ନ ଥିବାରୁ ସେ ଅନୁତାପାନଳରେ ଦଗ୍ଧ ହୋଇଥିଲେ । ସେ ସବୁବେଳେ 'ହା ବାବା' 'ହା ବାବା' କହି ଉଠୁଥିଲେ ।

ମଧୁସୂଦନ ଅବସର ନେଲେ ମଧ୍ୟ କର୍ମରୁ ବିରତ ହୋଇ ନ ଥିଲେ । ସେ ନିଜର ଦେହ ପ୍ରତି ଭ୍ରୂକ୍ଷେପ ନ କରି ଭିକ୍ଟୋରିଆ ସ୍କୁଲର ଗୃହ ନିର୍ମାଣରେ ଲାଗିପଡ଼ିଥିଲେ । ସେ ଏଥିପାଇଁ ଓଡ଼ିଶାର ବିଭିନ୍ନ ସ୍ଥାନକୁ ଚାନ୍ଦା ସଂଗ୍ରହପାଇଁ ଯାଉଥିଲେ । ଦୁଇ ବର୍ଷ ଅକ୍ଳାନ୍ତ ଉଦ୍ୟମ ଫଳରେ ସ୍କୁଲର ନୂତନ ଗୃହ ଉଦ୍‌ଘାଟିତ ହେଲା ।

ମଧୁସୂଦନ ବହୁଦିନୁ ଶୂଳ ରୋଗରେ ପୀଡ଼ିତ ଥିଲେ । ରୋଗର ଉପଶମପାଇଁ ଗାଧୁଆ ପରେ ଅଦା, ଲୁଣ ପ୍ରଭୃତି ଖାଉଥିଲେ । ନିରାମିଷ ଭୋଜନ ମଧ୍ୟ କରୁଥିଲେ । ଅବସର ସମୟରେ ପୁସ୍ତକ ପାଠ ବା କବିତା ରଚନା କରୁଥିଲେ । ସନ୍ଧ୍ୟାବେଳେ ନିୟମିତଭାବେ ପ୍ରାର୍ଥନା କରୁଥିଲେ । ସ୍ତବ ବୋଲୁଥିଲାବେଳେ ଚକ୍ଷୁରୁ ଲୁହ ଝରି ପଡୁଥିଲା ।

ଦୀର୍ଘ ଦିନ ଧରି ଶୂଳ ରୋଗାକ୍ରାନ୍ତ ହୋଇପଡ଼ିବାରୁ ସେ ଦୁର୍ବଳ ହୋଇପଡ଼ିଲେ । ସ୍ୱପ୍ନରେ ତାଙ୍କର ଅଟଳ ବିଶ୍ୱାସ ଥିଲା । ସ୍ୱର୍ଗୀୟ ପ୍ୟାରୀମୋହନ ଓ ରାଧାନାଥ ମୃତପୁତ୍ରକୁ ଧରି ପାଖରେ ପହଞ୍ଚିବା ସେ ସ୍ୱପ୍ନରେ ଦେଖି ତାଙ୍କର ମୃତ୍ୟୁ ନିକଟବର୍ତ୍ତୀ ବୋଲି ଜାଣିପାରିଥିଲେ । ୧୯୧୨ ମସିହା ଡିସେମ୍ବର ମାସଆଡ଼କୁ ତାଙ୍କ ଅବସ୍ଥା ଖରାପ ହୋଇପଡ଼ିଲା । ଶୂଳରୋଗ ସାଙ୍ଗକୁ ବାନ୍ତି ଆରମ୍ଭ ହେଲା । ସେଇ ମାସ ୧୯ ତାରିଖରେ ସେ

ଶଯ୍ୟାଶାୟୀ ହୋଇପଡ଼ିଲେ । ଡିସେମ୍ବର ମାସ ୨୬ ତାରିଖରେ ପ୍ରାଣାଧିକ ଭାଇ କଲିକତା ଯିବାକୁ ବାହାରିଲେ । ମଧୁସୂଦନ ତାକୁ ୨୮ ତାରିଖ ସୁଦ୍ଧା ଫେରିଆସିବାକୁ କହିଲେ । ସାନଭାଇ ଜଗନ୍ନାଥ ମଧ ସେହି ଦିନ (୧୯୬୨ ମସିହା ଡିସେମ୍ବର ୨୮ ତାରିଖ) କଲିକତାରୁ ଫେରିଲେ । ସେ ଫେରିବାର କିଛି ସମୟ ପରେ ମଧୁସୂଦନଙ୍କ ମହାନ୍ ଜୀବନର ଅବସାନ ହେଲା ।

ଉତ୍କଳର ସାରସ୍ୱତ ଆକାଶରେ ମଧୁସୂଦନ ମହର୍ଷି ଭଳି ଦୃଶ୍ୟ ହୁଅନ୍ତି । ଈଶ୍ୱରଙ୍କ ସନ୍ତାନ ସେ, ଈଶ୍ୱରଙ୍କ ସତ୍ତା ସର୍ବତ୍ର ଅନୁଭବ କରୁଥିଲେ । ମୋହ, ମାୟା ମରୀଚିକା ଗ୍ରସ୍ତ ବିଭ୍ରାନ୍ତ ମାନବପାଇଁ ସତ୍ ଓ ଜ୍ଞାନର ମାର୍ଗ ଉନ୍ମୋଚନ କରିଥିଲେ । ନାନାବିଧ ଗୀତ, କବିତା ଓ ପ୍ରବନ୍ଧ ମାଧ୍ୟମରେ ସେ ପ୍ରାୟ ଗତ ଏକ ଶତାବ୍ଦୀ ହେଲା ଓଡ଼ିଆ ଜାତିର ଆତ୍ମାକୁ ପବିତ୍ର କରିବାରେ ଶକ୍ତିଶାଳୀ ପ୍ରଭାବ ପକାଇଥିଲେ । ତାଙ୍କର ସ୍ଥାନ ଯେ ପୂରଣ ହେବ, ସେ ବିଷୟରେ ବ୍ୟାସକବି ଫକୀରମୋହନ ସନ୍ଦେହ ପ୍ରକାଶ କରିଥିଲେ –

''ଏକାନ୍ତ ଈଶ୍ୱରନିଷ୍ଠା ଧର୍ମ ଆଚରଣେ
ସେ ମଧୁ ସମାନ ଆଉ ଦେଖି ନାହିଁ ଜଣେ ।
ମଧୁ ସ୍ଥାନ ପୂର୍ଣ୍ଣ ହେବା କେବେ ସମ୍ଭାବନା
କେତେ ଯୁଗ ଯୁଗାନ୍ତରେ ଈଶ୍ୱରଙ୍କୁ ଜଣା ।''

ତାହା ସତ୍ୟରେ ପରିଣତ ହୋଇଅଛି ।



## ସ୍ୱଭାବକବି
# ଗଙ୍ଗାଧର ମେହେର

ଓଡ଼ିଆ ସାହିତ୍ୟ ଆକାଶରେ ଗଙ୍ଗାଧର ଏକ ଉଜ୍ଜ୍ୱଳତମ ନକ୍ଷତ୍ର । ପ୍ରାଚ୍ୟ ପରମ୍ପରା ଓ ଆଦର୍ଶରେ ଅନୁପ୍ରାଣିତ କବି ଗଙ୍ଗାଧର ଭାରତୀୟ ସଂସ୍କୃତି ଓ ସାହିତ୍ୟକୁ ଆଧାରିତ କରି ଅଜସ୍ର କାବ୍ୟ-ବିଭବ ସୃଷ୍ଟି କରିଛନ୍ତି । ସାହିତ୍ୟିକ ଓ ସମାଲୋଚକମାନେ ତାଙ୍କ କାବ୍ୟଗୁଡ଼ିକରେ ମହାକାବ୍ୟର ଲକ୍ଷଣମାନ ଥିବାର ସନ୍ଧାନ ପାଇଅଛନ୍ତି । ବାସ୍ତବରେ ତାଙ୍କର ମୌଳିକ ସୃଜନୀ ପ୍ରତିଭା, ଉଚ୍ଚାଙ୍ଗ ସାହିତ୍ୟବୋଧ, ଚରିତ୍ରଗତ ମହନୀୟତା, ଶ୍ରୁତିମଧୁର ଶବ୍ଦ ଭାଷା ସଙ୍ଗେ ଶାଶ୍ୱତ ଭାବନାର ବିଚିତ୍ର ସମନ୍ୱୟ ତାଙ୍କୁ ଓଡ଼ିଆ ସାହିତ୍ୟରେ ଅପ୍ରତିଦ୍ୱନ୍ଦ୍ୱୀ ସ୍ରଷ୍ଟା ଭାବେ ଦଣ୍ଡାୟମାନ କରିଅଛି ।

### ବାଲ୍ୟଶିକ୍ଷା

୧୮୬୨ ମସିହା ଅଗଷ୍ଟ ମାସ ୯ ତାରିଖ ଶ୍ରାବଣ ପୂର୍ଣ୍ଣିମା ଦିନ ଗଙ୍ଗାଧର ସମ୍ବଲପୁର ଜିଲ୍ଲାର ବରପାଲିର ଏକ ଭୁଲିଆ ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପୂର୍ବପୁରୁଷମାନେ ଉତ୍ତରପ୍ରଦେଶ କିମ୍ବା ଛତିଶଗଡ଼ ଅଞ୍ଚଳରୁ ଓଡ଼ିଶାକୁ ଆସିଥିବା ଅନୁମାନ କରାଯାଏ । ତାଙ୍କ ପିତାଙ୍କ ନାମ ଚୈତନ୍ୟ ଓ ମାତାଙ୍କ ନାମ ସେବତୀ । ଦେହର ରଙ୍ଗ ଗୌରବର୍ଣ୍ଣ ଥିଲା ଓ ସେ ବଳିଷ୍ଠ ଏବଂ ହୃଷ୍ଟପୁଷ୍ଟ ଥିଲେ ।

ଗଙ୍ଗାଧର ୭/୮ ବର୍ଷ ବୟସରେ ଚାହାଳିରେ ବିଦ୍ୟା ଆରମ୍ଭ କଲେ । 'ରାସ ପଞ୍ଚାଧ୍ୟାୟ'ର ଚତୁର୍ଥ ଅଧ୍ୟାୟ ପର୍ଯ୍ୟନ୍ତ ସେ ସେଠାରେ ପଢ଼ିଥିଲେ । ମାତ୍ର ଚାହାଳିଟି ବନ୍ଦ ହୋଇଯିବାରୁ ପିତା ତାଙ୍କୁ 'ନାମରତ୍ନଗୀତା' ପଢ଼ାଇବାକୁ ଆରମ୍ଭ କଲେ । ସେ 'ଭାଗବତ', 'ମଥୁରାମଙ୍ଗଳ', 'ଗୋପୀଭାଷା' କେବଳ ପଢ଼ିପାରୁ ନ ଥିଲେ, ଗାଇ ବି ପାରୁଥିଲେ । ସେ ବଳରାମ ଦାସଙ୍କ 'ରାମାୟଣ' ପଢ଼ିବାରେ ଆଗ୍ରହ ଦେଖାଇଲେ । ପଞ୍ଚମ ଶ୍ରେଣୀ ପର୍ଯ୍ୟନ୍ତ ଅଧ୍ୟୟନ ମଧ୍ୟରେ ସେ 'ଚାରୁପାଠ' ୧ମ, ୨ୟ, ୩ୟ, ଦୁଇ ଭାଗରେ 'କାଦମ୍ବରୀ' ଓ ବ୍ୟାକରଣ ପ୍ରଭୃତି ପାଠ କଲେ । ୧୮୮୨ ମସିହାରେ ସେ ପଞ୍ଚମ ଶ୍ରେଣୀ ପରୀକ୍ଷା ଦେବାକୁ ସମ୍ବଲପୁର ଯାଇଥିଲେ । ମାତ୍ର ଗଣିତରେ ନମ୍ବର କମିଯିବାରୁ ଭିଲେଜ ସ୍କୁଲ ସାର୍ଟିଫିକେଟ ପାଇପାରି ନ ଥିଲେ । ତାଙ୍କୁ କେବଳ ଦେଶୀୟ ପାଠଶାଳା ସାର୍ଟିଫିକେଟ ମିଳିଲା । ଛାତ୍ର ଜୀବନରେ ତାଙ୍କୁ ଦାରିଦ୍ର୍ୟର କଶାଘାତ ସହିବାକୁ ପଡ଼ିଥିଲା । ମାତ୍ର ୨ଟଙ୍କାର ପୁସ୍ତକ ସେ କିଣି ପାରିଥିଲେ । ଅବଶିଷ୍ଟ ପୁସ୍ତକପାଇଁ ସେ ସହାଧ୍ୟାୟୀମାନଙ୍କ ଉପରେ ନିର୍ଭର କରୁଥିଲେ । କେବଳ ସେତିକି ନୁହେଁ, ସ୍କୁଲ ଶିକ୍ଷା ଶେଷ ପର୍ଯ୍ୟନ୍ତ ସାମାନ୍ୟ କୁରୁତା ଖଣ୍ଡେ ମଧ୍ୟ କରିପାରି ନ ଥିଲେ । ଥରେ ପିତାମାତାଙ୍କ ପାଖରେ ଧୋତିପାଇଁ ଅଳି କଲାବେଳେ ତାଙ୍କର ପିତୃବ୍ୟ ଖଣ୍ଡେ କୋଷା ଧୋତି ବାହାର କରି ପିନ୍ଧିବାକୁ ଦେଇଥିଲେ ।

ଉତ୍କଟ ଦାରିଦ୍ର୍ୟ ହେତୁ ଗଙ୍ଗାଧର ଉଚ୍ଚଶିକ୍ଷା ଲାଭ କରିପାରି ନ ଥିଲେ । କିନ୍ତୁ ସେ ଅଧ୍ୟୟନ ଓ ଜ୍ଞାନ ଆହରଣରୁ ବିରତ ହୋଇ ନ ଥିଲେ । ବିଦ୍ୟାଳୟ ଛାଡ଼ିବା ପରେ ସେ 'ଲାବଣ୍ୟବତୀ', 'ସୁଭଦ୍ରା ପରିଣୟ', 'ରସିକ ହାରାବଳୀ', 'ବୈଦେହୀଶବିଳାସ' ଓ 'ରସକଲ୍ଲୋଳ' ପ୍ରଭୃତି କାବ୍ୟ ଅଧ୍ୟୟନ କରିଥିଲେ । ବଙ୍ଗ ଭାଷାରେ ମଧ୍ୟ ତାଙ୍କର ପ୍ରବେଶ ଥିଲା । ବିଶେଷତଃ, ସେ ବଙ୍କିମଚନ୍ଦ୍ରଙ୍କର ଗ୍ରନ୍ଥାବଳୀ ପାଠ କରିଥିଲେ । ସମ୍ବଲପୁର ଓ ରାଜସ୍ଥାନ ଇତିହାସ ମଧ୍ୟ ଆଗ୍ରହ ସହକାରେ ପାଠ କରିଥିଲେ । ସାମାନ୍ୟ ଭାବରେ ଇଂରାଜୀ ତାଙ୍କୁ ମଧ୍ୟ ଜଣା ଥିଲା । ସେ ତମସୁକ ଲେଖି ଯେଉଁ ଅର୍ଥ ଉପାର୍ଜନ କରୁଥିଲେ, ସେଥିରେ ପୁସ୍ତକ କ୍ରୟକରି ପାଠ କରୁଥିଲେ ।

ମାତ୍ର ଷୋଳ ବର୍ଷ ବୟସରେ ୧୮୭୮ରେ ତାଙ୍କର ବିବାହ ହୋଇଥିଲା । ଶିକ୍ଷା ସମାପ୍ତି ପରେ ପରିବାର ପ୍ରତିପୋଷଣର ଦାୟିତ୍ୱ ତାଙ୍କୁ ବହନ କରିବାକୁ ପଡ଼ିଲା । ସେ ଅନ୍ୟ ଉପାୟ ନ ଦେଖି ପୈତୃକ ବୃତ୍ତି ଅବଲମ୍ବନ କଲେ । ସୂର୍ଯ୍ୟ ଉଦୟରୁ ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତ ବସ୍ତ୍ର ବୟନ କରିବାରେ ନିଜକୁ ନିୟୋଜିତ କଲେ । ରାତ୍ରିରେ ଦୀପାଲୋକରେ ସେ ଗ୍ରନ୍ଥ ଅଧ୍ୟୟନ କରୁଥିଲେ । କାବ୍ୟକବିତା ଚର୍ଚ୍ଚା

ଯୋଗୁଁ ତାଙ୍କୁ ବସ୍ତ୍ର ବୟନଜନିତ ଶ୍ରମ ବାଧୁ ନ ଥିଲା । ଏହି ସମୟରେ ସେ ଭଞ୍ଜୀୟ କାବ୍ୟରୀତି ଅନୁସାରେ 'ରସ ରତ୍ନାକର' ନାମରେ ଏକ କ୍ଷୁଦ୍ର କାବ୍ୟ ରଚନା କରିଥିଲେ । ଏ ଦିଗରେ କବିବର ରାଧାନାଥ ତାଙ୍କୁ ଉତ୍ସାହିତ କଲେ । ଫଳରେ ସେ କାବ୍ୟ ରଚନାପାଇଁ ଆଗ୍ରହୀ ହେଲେ ।

## କର୍ମ ନିଯୁକ୍ତି

୧୮୮୫ ମସିହାରେ ବରପାଲିର ତତ୍କାଳୀନ ଜମିଦାର ଗଙ୍ଗାଧରଙ୍କ ବିଦ୍ୟାବୁଦ୍ଧିର ପରିଚୟ ପାଇ ଅମୀନ ଚାକିରିରେ ମାସିକ ମାତ୍ର ୭ ଟଙ୍କା ବେତନରେ ନିଯୁକ୍ତ କଲେ । ଏହି ୭ ଟଙ୍କା କ୍ରମେ ୮ ଟଙ୍କା ଓ ୧୦ ଟଙ୍କାକୁ ବଢ଼ିଲା । ୧୮୯୯ ମସିହାରେ ଜୁଡ଼ିସିଏଲ ମୋହରିର ଭାବେ ତାଙ୍କର ପଦୋନ୍ନତି ହେଲା । ସେଥିରେ ସେ ମାସକୁ ୧୫ ଟଙ୍କା ବେତନ ପାଇଲେ । ଏହାପରେ ୨୦ ଟଙ୍କା ଓ ତା'ପରେ ୩୦ ଟଙ୍କାକୁ ବୃଦ୍ଧି ପାଇଲା । ୧୯୧୭ ମସିହାରେ ୫୫ବର୍ଷ ବୟସରେ ସେ ଅବସର ନେଲେ । ସେତେବେଳେ ସେ ମାସକୁ ୩୫ ଟଙ୍କା ବେତନ ପାଉଥିଲେ । ସେ ଅବସର ନେବାପରେ ପେନ୍‌ସନ ପ୍ରଥମେ ପାଇଲେ ୯ଟଙ୍କା । ଏହା ପରେ ୧୧ଟଙ୍କା ହେଲା ।

ଅବସରପ୍ରାପ୍ତି ପରେ ମଧ୍ୟ କବିଙ୍କୁ ଫତେପୁର, ବିଜେପୁର ପ୍ରଭୃତି ଜମିଦାରୀରେ ଚାକିରି କରିବାକୁ ପଡ଼ିଥିଲା । ସମ୍ବଲପୁର ଅଞ୍ଚଳରେ 'ମୋହରିର ଗଙ୍ଗାଧର' ଭାବେ ସେ ପରିଚିତ ଥିଲେ ।

ଗଙ୍ଗାଧରଙ୍କର ଜୀବନ ଦୁଃଖପୂର୍ଣ୍ଣ ଥିଲା । ଅଭାବ ଅନଟନ ତାଙ୍କର ଚିର ସହଚର ଥିଲା । ବହୁ ଝଡ଼-ଝଞ୍ଜାର ମଧ୍ୟ ସମ୍ମୁଖୀନ ହେବାକୁ ପଡୁଥିଲା । ତଥାପି ସେ ବାଣୀ ଆରାଧନା କରି ଶାନ୍ତି ପାଉଥିଲେ । ସେ ନିଜେ ଏହା ଉଲ୍ଲେଖ କରିଛନ୍ତି –

''ଦରିଦ୍ରତା ପଙ୍କ ପୂର୍ଣ୍ଣ ମୋ ଜୀବନ ସର
ଜଞ୍ଜାଳ-ଜଳଦ-ଜଳେ ଆବିଳ ଉଦର
ଶରଦ ସଦୃଶ ତୋତେ କରି ଦରଶନ
ହୋଇ ଯାଉଅଛି ସେ ତ ସ୍ୱତଃ ପରସନ୍ନ ।''

ଗଙ୍ଗାଧର ଏକାଧାରରେ କାବ୍ୟକାର ଓ ଗୀତିକବି ଥିଲେ । ସେ ପାଶ୍ଚାତ୍ୟ ସାହିତ୍ୟ ପାଠ କରି ନ ଥିଲେ । ପ୍ରାଚ୍ୟ ସାହିତ୍ୟ ଆଦର୍ଶକୁ ସେ ଗ୍ରହଣ କରିବା ସ୍ୱାଭାବିକ । ତାଙ୍କର ପଦ୍ୟଗୁଡ଼ିକରେ ତେଣୁ ପ୍ରାଚ୍ୟ ଭାବଧାରାର ବନ୍ଦନା, ଆଦର୍ଶ ଦାମ୍ପତ୍ୟ ପ୍ରେମର ଉପାସନା, ଆର୍ଯ୍ୟ ଚେତନା ପ୍ରତିଷ୍ଠା ପ୍ରଭୃତି ଦେଖିବାକୁ ମିଳେ । ତାଙ୍କର ଆଦ୍ୟ ରଚନା ହେଲା 'ରସ ରତ୍ନାକର' ।

## ରସ ରତ୍ନାକର

ଏହା କବି ଗଙ୍ଗାଧରଙ୍କ ଆଦ୍ୟ ରଚନା । ଉପେନ୍ଦ୍ର ଭଞ୍ଜଙ୍କ 'କଳାକଉତୁକ' ଓ ଦୀନକୃଷ୍ଣଙ୍କ 'ରସକଲ୍ଲୋଳ'ର ପ୍ରଥମ ଛାନ୍ଦ ଯେପରି ଆଦ୍ୟ ଓ ପ୍ରାନ୍ତରେ 'କ' ଅକ୍ଷର ଥାଇ ରଚିତ, ସେହି ଶୈଳୀର ଅନୁସରଣରେ ଆଦ୍ୟ ଓ ପ୍ରାନ୍ତରେ 'ର' ଥାଇ 'ରସରତ୍ନାକର' ରଚିତ । ଗଙ୍ଗାଧର 'ରସକଲ୍ଲୋଳ' ପଢ଼ିଥିବା କଥା ଆତ୍ମଜୀବନୀରେ ଉଲ୍ଲେଖ କରିଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ 'କଳା କଉତୁକ' ମଧ୍ୟ ସେ ପଢ଼ିଥିବା ସମ୍ଭବ । ପୁରାଣର ବାଣାସୁରର କନ୍ୟା ଉଷା ସହିତ କୃଷ୍ଣଙ୍କ ପୁତ୍ର ଅନିରୁଦ୍ଧର ପ୍ରଣୟ ଓ ପରିଣୟ ଏହାର ବିଷୟବସ୍ତୁ ।

ଉପେନ୍ଦ୍ର ଭଞ୍ଜଙ୍କ ପରି ଗଙ୍ଗାଧର ଏଥିରେ ପ୍ରଥମେ ରାମଙ୍କ ବନ୍ଦନା କରିଛନ୍ତି । ଦ୍ୱିତୀୟ ଛାନ୍ଦରେ ରୂପବର୍ଣ୍ଣନା ଅଛି । ଚତୁର୍ଥ ଛାନ୍ଦରେ ଉଷାର ସ୍ୱପ୍ନ ଦର୍ଶନ ବୃତ୍ତାନ୍ତ ବର୍ଣ୍ଣିତ । ସପ୍ତମ ଛାନ୍ଦରେ କବି ଯେଉଁ ସମର ଚିତ୍ର ଦେଇଛନ୍ତି, ସେ ଚିତ୍ର ପୁରାତନ ଯୁଗର ଶିଳ୍ପୀମାନଙ୍କ ଚିତ୍ର ସହିତ ସମାନ । ଛାନ୍ଦଗୁଡ଼ିକରେ ଲାବଣ୍ୟବତୀ ଓ ରସିକ ହାରାବଳୀର ପ୍ରଭାବ ସୁସ୍ପଷ୍ଟ । ଭାଷା ଓ ଭାବରେ ଭଞ୍ଜୀୟ କ୍ଳିଷ୍ଟତା ଦେଖାଯାଏ । କବି ମଧ୍ୟ ଶୃଙ୍ଗାର ରସର ବ୍ୟଞ୍ଜନା ଉପରେ ଅଧିକ ଗୁରୁତ୍ୱ ଦେଇଛନ୍ତି । ଆଲୋଚକ କେଶବ ଚନ୍ଦ୍ର ମେହେର ଏହି କାବ୍ୟ ଉପରେ କହିଛନ୍ତି –

"'ରସ ରତ୍ନାକର' ମେହେର ପ୍ରତିଭାର ଅଙ୍କୁର ମାତ୍ର । ଏହାର ଦୁର୍ବଳତା ଅଙ୍କୁରର ଦୁର୍ବଳତା ହିଁ ଅଟେ । ପରବର୍ତ୍ତୀ ଜୀବନରେ ଏହି ଅଙ୍କୁର ପଲ୍ଲବିତ, କୋରକିତ, ପୁଷ୍ପିତ ହୋଇ ବନସ୍ପତିର ଦୃଢ଼ତା ଲାଭ କରି ନିଜର ଅପୂର୍ବ ମହିମାରେ ଦଣ୍ଡାୟମାନ ।"

ଏହି କାବ୍ୟରେ ପରିବେଷିତ ରସ ଅତୀବ ସୌନ୍ଦର୍ଯ୍ୟବୋଧର ପରିଚାୟକ ବୋଲି ଆଉ ଜଣେ ଆଲୋଚକ ଡଃ ନଟବର ସାମନ୍ତରାୟ ମତ ଦେଇଛନ୍ତି ।

'ରସ ରତ୍ନାକର' ପ୍ରାଚୀନ ଶୈଳୀର କବିତା ଭାବରେ ହୃଦୟଗ୍ରାହୀ ହୋଇ ନ ଥିଲା । ପ୍ରାଚୀନ ଧାରାର ସଫଳତା ଏହା ମଧ୍ୟ ହାସଲ କରିପାରି ନ ଥିଲା । ଏହା ତେଣୁ ପ୍ରକାଶିତ ହୋଇ ନ ଥିଲା । ସମ୍ଭବତଃ, ଏହାର ଶୈଳୀକୁ ଆଧୁନିକ କବି ଅନୁସରଣ କରୁ ନ ଥିବାରୁ ଗଙ୍ଗାଧର ଏହାକୁ ଲୋକଲୋଚନକୁ ଆଣିବାକୁ ସଙ୍କୋଚ ବୋଧ କରିଥିଲେ । ବରପାଲୀ ଯୁବରାଜଙ୍କ ଗୃହଶିକ୍ଷକ ସୂର୍ଯ୍ୟକୁମାର ମିତ୍ର ମଧ୍ୟ 'ରସରତ୍ନାକର' ଉପରେ ମନ୍ତବ୍ୟ ଦେବାକୁ ଯାଇ ଆଧୁନିକ ଧରଣର କବିତା ଲେଖିବାକୁ ପରାମର୍ଶ ଦେଇଥିଲେ । ଯୁଗରୁଚି ଅନୁଯାୟୀ ନିଜର କବିତା ରଚନା ଭଙ୍ଗୀରେ ପରିବର୍ତ୍ତନ ଆଣିବାକୁ କବି ଆଗ୍ରହୀ ହେଲେ ।

## ଅହଲ୍ୟାସ୍ତବ

ଏହା ୧୮୯୨ ମସିହାରେ ରଚିତ ହୋଇଥିଲା । ଗଙ୍ଗାଧର ପ୍ରଥମେ ସଂସ୍କୃତ ଛନ୍ଦ ନିୟମରେ ଏହାକୁ ରଚନା କରି କବିଗୁରୁ ରାଧାନାଥଙ୍କ ପାଖକୁ ତାଙ୍କ ଅଭିମତ ସକାଶେ ପଠାଇଲେ । ରାଧାନାଥ ସେଥିରୁ କବିଙ୍କ ଅନ୍ତର୍ନିହିତ ପ୍ରତିଭାର ପରିଚୟ ପାଇଲେ । ମାତ୍ର ଶାର୍ଦ୍ଦୂଳ ବିକ୍ରୀଡ଼ିତ ଛାନ୍ଦ ଓଡ଼ିଆ ଭାଷାରେ ଉପଯୋଗୀ ହେବ କି ନାହିଁ ସେ ସମ୍ପର୍କରେ ତାଙ୍କର ସନ୍ଦେହ ଜାତ ହୋଇଥିଲା । ରାଧାନାଥଙ୍କ ଉପଦେଶ ଅନୁଯାୟୀ କବି ସଂସ୍କୃତ ଛନ୍ଦ ପରିହାର କରି ବଙ୍ଗଳାଶ୍ରୀ ଛାନ୍ଦରେ ରଚନା କଲେ । ଏହାର ଏକ ଉଦାହରଣ –

"ହେ ମହୀମଣ୍ଡଳ ଜଗତ ବନ୍ଦନ
ଭକତି ମୁକତିଖଣି
ସଂସାର ସାଗର ରଣ ତତ୍ପର
କଇବର୍ତ୍ତ ଚୂଡ଼ାମଣି ।"

ପାପ ପ୍ରଣୟ ହେତୁ ଅହଲ୍ୟା ଅଭିଶପ୍ତା । ସେ ପ୍ରସ୍ତରରେ ପରିଣତ ହୋଇଛନ୍ତି । ଶ୍ରୀରାମଙ୍କ ଚରଣ ବନ୍ଦନାହିଁ 'ଅହଲ୍ୟା ସ୍ତବ'ର ବିଷୟବସ୍ତୁ ।

କବି 'ଅଧ୍ୟାତ୍ମ ରାମାୟଣ' ଓ ହିନ୍ଦୀର 'ତୁଳସୀ ରାମାୟଣ'ର ଅହଲ୍ୟାଙ୍କ ସ୍ତବ ଦ୍ୱାରା ପ୍ରଭାବିତ ହୋଇଥିବାର ଜଣାଯାଏ ।

'ଅହଲ୍ୟା ସ୍ତବ' ଓଡ଼ିଆ ସାହିତ୍ୟରେ ଭକ୍ତିରସାତ୍ମକ ଏକ ଅନବଦ୍ୟ ସୃଷ୍ଟି । କବି ଅହଲ୍ୟାଙ୍କ ତୁଣ୍ଡରେ ଶ୍ରୀରାମଙ୍କୁ ସ୍ତୁତି କରିଛନ୍ତି –

"ବାସୁକି କହିଲେ ଅଶେଷ ବଦନେ
ମାହାତ୍ମ୍ୟ ଯା ନ ସରେ
ବର୍ଣ୍ଣି ପାରିବି କି ଅବୋଧ ଯୁବତୀ
ସାମାନ୍ୟ ମୋ ଭାଷାରେ
ଘେନା ହେଉ ମୋ ବିନତି ସଦୟରେ
ଶ୍ରୀ ପଙ୍କଜ ତଳେ
ତୁମ୍ଭ ଶ୍ରୀଚରଣାମୃତେ ରହୁ ସଦା
ଚିତ୍ତ ମୋ ନିଶ୍ଚଳେ ।"

ଜୀବନର ବ୍ରାହ୍ମମୁହୂର୍ତ୍ତରେ ବିରଚିତ 'ଅହଲ୍ୟା ସ୍ତବ'ଟି କବିଙ୍କ ଭକ୍ତିପୂତ ହୃଦୟର ସମୁଜ୍ଜ୍ୱଳ ଆଲେଖ୍ୟ ।

## ଇନ୍ଦୁମତୀ

ଗଙ୍ଗାଧରଙ୍କ ଏହା ପ୍ରଥମ ପ୍ରକାଶିତ କାବ୍ୟ । ଏହା କାଳିଦାସଙ୍କ ରଘୁବଂଶ କାବ୍ୟର ପଞ୍ଚମ ସର୍ଗଠାରୁ ଅଷ୍ଟମ ସର୍ଗ ପର୍ଯ୍ୟନ୍ତ କଥାବସ୍ତୁ ଉପରେ ଆଧାରିତ । କବିବର ରାଧାନାଥ ଇନ୍ଦୁମତୀର ପାଣ୍ଡୁଲିପି ପଢ଼ି ଅତ୍ୟନ୍ତ ପ୍ରୀତ ହୋଇଥିଲେ ଏବଂ ସେ ଲେଖିଥିଲେ – ''ମୂଳଚରିତ ରଘୁବଂଶରୁ ସଂଗୃହୀତ ହୋଇଥିଲେହେଁ ଏହାର ଭାବ ଓ ଭାଷା ଦୃଷ୍ଟିରୁ ମୁଁ ଏହାକୁ ଅଭିନବ ଏବଂ ଉତ୍କୃଷ୍ଟ କାବ୍ୟ ରୂପେ ଗ୍ରହଣ କରିବାକୁ ଲେଶମାତ୍ର କୁଣ୍ଠିତ ହେବି ନାହିଁ । ଗ୍ରନ୍ଥାକାର ଏଥିରେ ଅନେକ ନୂତନ ଓ ସୁନ୍ଦର ଭାବ ସନ୍ନିବେଶିତ କରିଛନ୍ତି ।''

କାବ୍ୟଟି ବଙ୍ଗଳାଶ୍ରୀ ବୃତ୍ତରେ ରଚିତ ଓ ଏହା ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗରେ ସ୍ୱୟଂବର ଓ ଅଯୋଧ୍ୟାର ରାଜା କିପରି ରାଜାମାନଙ୍କୁ ପରାସ୍ତ କରି ବିଦର୍ଭ ରାଜକୁମାରୀ ଇନ୍ଦୁମତୀଙ୍କୁ ବିବାହ କଲେ ତାହା ବର୍ଣ୍ଣିତ ଅଛି । ଦ୍ୱିତୀୟ ଭାଗରେ ରଘୁଙ୍କ ବାନପ୍ରସ୍ଥ ଅବଲମ୍ବନ କଥା, ଅଜଙ୍କ ରାଜ୍ୟଶାସନର ମହତ୍ତ୍ୱ, ଦଶରଥଙ୍କ ଜନ୍ମ, ଦେବ ପୁଷ୍ପ ଦ୍ୱାରା ଆଘାତପ୍ରାପ୍ତ ହୋଇ ଇନ୍ଦୁମତୀଙ୍କର ମୃତ୍ୟୁ ଓ ଅଜଙ୍କର କରୁଣ ବିଳାପ ବର୍ଣ୍ଣିତ ।

କବି ଗଙ୍ଗାଧର ରଘୁବଂଶମ୍‌ରୁ ବିଷୟବସ୍ତୁ ଆହରଣ କରିଥିଲେ ମଧ୍ୟ ନିଜସ୍ୱ ଓ ସ୍ୱାତନ୍ତ୍ର୍ୟ ଫୁଟାଇଛନ୍ତି । କବି ମୂଳ ବିଷୟବସ୍ତୁର ବହୁ ଅଂଶ ପରିହାର କରିଛନ୍ତି । ଗ୍ରହଣ କରିଥିବା ବିଷୟବସ୍ତୁକୁ ମଧ୍ୟ ଯଥାଯଥ ସଂସ୍ଥାପନ କରିଛନ୍ତି । କାବ୍ୟର ଆରମ୍ଭ, ଅଭିବୃଦ୍ଧି ଓ ପରିସମାପ୍ତିକୁ ଏକ ମଧୁର ଯୋଗସୂତ୍ରରେ ବାନ୍ଧି ରଖିଛନ୍ତି । କ୍ଷୁଦ୍ର ସୀମା ମଧ୍ୟରେ ରସ ପରିବେଷଣ କରିବାରେ ସଫଳ ହୋଇଛନ୍ତି । ତାଙ୍କର ଚରିତ୍ର ଚିତ୍ରଣ ମଧ୍ୟ ଉଚ୍ଚକୋଟୀର । ପ୍ରକୃତି ଚିତ୍ରଣ ମନୋଜ୍ଞ ହୋଇଛି । ଏହାର ଭାଷା ସରଳ । ରାଧାନାଥଙ୍କ ଭାଷାରେ 'ଅକ୍ଲିଷ୍ଟ ଓ ଶ୍ରୁତିମଧୁର' । ଉପମା ପ୍ରୟୋଗରେ ମୌଳିକତା ପରିଦୃଷ୍ଟ ହୁଏ, ଯଥା –

''ଚିରସ୍ଥାୟୀ ନୁହେଁ ଶରୀର ପାଦପ
ଭବ ତରଙ୍ଗିଣୀ ତୀରେ
ପ୍ରାଣ ମୂଳମାଟି ଧୌତ ହୋଇଗଲେ
ଭାସିଯାଏ କାଳ ନୀରେ ।''

ଅଥବା –

''ଅଥବା ରତନ ଖଣି ଗର୍ଭେ ହେଲା
ଦୀପଶିଖା ପ୍ରଜ୍ୱଳିତ
ନବ ବିକଶିତ କମଳ କାନନେ
କମଳା ବା ବିରାଜିତ ।''

ସର୍ବୋପରି କବିଙ୍କ ବର୍ଣ୍ଣନାଚାତୁରୀ ହୃଦୟଗ୍ରାହୀ ଓ ଚିତ୍ତାକର୍ଷକ ହୋଇପାରିଛି । ଗଙ୍ଗାଧର ଇନ୍ଦୁମତୀ କାବ୍ୟର ପାଣ୍ଡୁଲିପି ଉତ୍କଳ ପ୍ରଭାକୁ ପ୍ରକାଶପାଇଁ ପଠାଇଥିଲେ । ଏହା ମଧ୍ୟ ପ୍ରକାଶଯୋଗ୍ୟ ବିବେଚିତ ହେଲା ଏବଂ ୧୮୯୪ ମସିହା ଫେବୃୟାରୀ ଓ ଅପ୍ରେଲ ସଂଖ୍ୟାମାନଙ୍କରେ ପ୍ରକାଶିତ ହେଲା । ଏହାର ଅପୂର୍ବ ବିଭବପାଇଁ ମୟୂରଭଞ୍ଜ ମହାରାଜାଙ୍କଦ୍ୱାରା ପୁରସ୍କୃତ ହେଲା । ଏହା ଉତ୍କଳ ଭାରତୀଙ୍କ ସ୍ଥାୟୀ ସମ୍ପତ୍ତି ହେଲା ଓ ଗଙ୍ଗାଧର ଅସାଧାରଣ ସାହିତ୍ୟସ୍ରଷ୍ଟା ଭାବେ ଖ୍ୟାତି ଅର୍ଜନ କଲେ ।

ଆଲୋଚକ ଅସିତ କବିଙ୍କ ଭାଷାରେ "ଇନ୍ଦୁମତୀ ଗଙ୍ଗାଧରଙ୍କ ପ୍ରତିଭା ସୁମନର ଦିବ୍ୟ ସୁରଭି ।"

ପଲ୍ଲୀକବି ନନ୍ଦକିଶୋର ଇନ୍ଦୁମତୀ ପାଠ କରି ଅଭିଭୂତ ହୋଇପଡ଼ିଥିଲେ । ସେ ତାଙ୍କ ପାଖକୁ ଏକ ପତ୍ରରେ ଲେଖିଲେ –

"ପଢ଼ିଅଛି 'ଇନ୍ଦୁମତୀ' କାବ୍ୟ କେତେଥର,
ସେହିଠାରେ ପରିଚୟ ତୁମ୍ଭର ମୋହର ।"

ଗଙ୍ଗାଧର ଓଡ଼ିଶାରେ ଜନ୍ମ ଗ୍ରହଣ ନ କରି ଉନ୍ନତ ଦେଶରେ ଯଦି ଜନ୍ମ ଗ୍ରହଣ କରିଥାନ୍ତେ, ତେବେ ତାଙ୍କର ଯଶ ଚାରିଆଡ଼େ ପରିବ୍ୟାପ୍ତ ହୋଇଥାନ୍ତା ବୋଲି ସେ ମତ ପ୍ରକାଶ କରିଥିଲେ –

"ଜନ୍ମିଥାନ୍ତ ଯେବେ ସଭ୍ୟ ଉନ୍ନତ ଦେଶରେ
ବାଜୁଥାନ୍ତା ନାମ ତବ ଦିଗ ଦିଗନ୍ତରେ ।"

**ଉତ୍କଳ ଲକ୍ଷ୍ମୀ**

୧୮୯୪ରେ 'ଉତ୍କଳଲକ୍ଷ୍ମୀ' ବାରିପଦାରୁ ଅସମ୍ପୂର୍ଣ୍ଣଭାବେ ପ୍ରକାଶିତ ହେଲା । ଏହାକୁ ରାଧାନାଥ ସଂଶୋଧନ କଲେ । ପରେ ୧୯୧୪ ମସିହାରେ ଏହା ପୂର୍ଣ୍ଣାଙ୍ଗ ରୂପ ଧାରଣ କରି ଆତ୍ମପ୍ରକାଶ କଲା ।

ଗଙ୍ଗାଧରଙ୍କ ସମୟରେ ସମ୍ବଲପୁର ମଧ୍ୟପ୍ରଦେଶର ଏକ ଜିଲ୍ଲା ଥିଲା । ସେଠାରେ ଓଡ଼ିଆ ପରିବର୍ତ୍ତେ ହିନ୍ଦୀ ପ୍ରଚଳନପାଇଁ ବିଚାର ଚାଲିଥିଲା । ଗଙ୍ଗାଧର 'ସମ୍ବଲପୁର ହିତୈଷିଣୀ'ରେ ଭାରତୀ ରୋଦନ ଶୀର୍ଷକ କବିତାରେ ଉତ୍କଳଭାଷୀଙ୍କୁ ସତର୍କ କରାଇ ଦେଇଥିଲେ –

"ବେଳ ଥାଉ ଥାଉ ବନ୍ଧ ବାନ୍ଧରେ କୁମର ।"

ଗଙ୍ଗାଧର ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବାର କଳ୍ପନା କରିଥିଲେ । ସେହି ଉଦ୍ଦେଶ୍ୟରେ ସେ ଗଢ଼ି ବସିଲେ ଏକ ଲକ୍ଷ୍ମୀ ମୂର୍ତ୍ତି । ଏହି ଲକ୍ଷ୍ମୀ ହେଉଛନ୍ତି ଉତ୍କଳ ଲକ୍ଷ୍ମୀ ।

ପ୍ରକୃତିର ପୂଜାରୀ ରାଧାନାଥ ତାଙ୍କର କାବ୍ୟଗୁଡ଼ିକରେ ଉତ୍କଳର ବହୁ ସ୍ଥାନ ବର୍ଣ୍ଣନା କରିଥିଲେ; ମାତ୍ର ସମ୍ବଲପୁର ଅଞ୍ଚଳର ପ୍ରାକୃତିକ ସୌନ୍ଦର୍ଯ୍ୟ ପ୍ରତି ଦୃଷ୍ଟି ଦେଇପାରି ନ ଥିଲେ । ତେଣୁ ଉତ୍କଳ ଲକ୍ଷ୍ମୀରେ ଗଙ୍ଗାଧର ମୁଖ୍ୟତଃ ପଶ୍ଚିମ ଓଡ଼ିଶାର ପ୍ରକୃତି ବର୍ଣ୍ଣନା କରିଛନ୍ତି । କବି ପ୍ରଧାନପାଟ ଜଳପ୍ରପାତ, ମହାନଦୀର ସାତକୋଶିଆ ଗଣ୍ଡ ପ୍ରଭୃତିର ପ୍ରାକୃତିକ ଦୃଶ୍ୟ ଦେଖି ଆତ୍ମହରା ହୋଇଉଠିଛନ୍ତି । ଏହାଛଡ଼ା ସମ୍ବଲପୁର ଅଞ୍ଚଳର ନଦନଦୀ, ତୀର୍ଥ, ବଣ, ପାହାଡ଼, ଚିରସ୍ମରଣୀୟ ବ୍ୟକ୍ତିବିଶେଷଙ୍କ କଥା କାବ୍ୟରେ ଲିପିବଦ୍ଧ କରିଛନ୍ତି । ସେହି ପାହାଡ଼, ପର୍ବତର ନାମ ସେ ଗଡ଼ଜାତ ଗେଜେଟିଅରରୁ ସଂଗ୍ରହ କରିଛନ୍ତି ।

କବି ଉତ୍କଳଲକ୍ଷ୍ମୀଙ୍କୁ ସମ୍ବୋଧନ କରି କହିଛନ୍ତି –

''କାହିଁ କୁସୁମିତ ଲତା ଦୋଳିମାନ
ହୋଇଅଛି ସୁସଜ୍ଜିତ
ତୋତେ ଦୋଳାୟିତ ପାଇଁ ବିହଙ୍ଗମେ
ବସି ଗାଉଛନ୍ତି ଗୀତ ।''

ପୁଣି –

''ଚିଲିକା ଅଂଶୁପା ଅଟନ୍ତି ପରା ତୋ
ପ୍ରିୟ କେଳି ସରୋବର
ତହିଁ ମଧ୍ୟେ କେତେ କେତେ ଗିରି କେଳି
ମଣ୍ଡପ ଅତି ସୁନ୍ଦର ।''

ଉତ୍କଳ ଲକ୍ଷ୍ମୀଙ୍କ ସେବାରେ ଷଡ଼ଋତୁ ମଧ୍ୟ ତତ୍ପର ହୋଇଉଠିଛନ୍ତି । ବସନ୍ତ ନବ ମଲ୍ଲିକା, କଞ୍ଚନ ଓ ମାଧବୀ ଯୋଗାଏ । ଗ୍ରୀଷ୍ମ ଦିଏ ଚମ୍ପକ, ବକୁଳ ପ୍ରଭୃତି । ବର୍ଷା ଉପହାର ଦିଏ କୁଟଜ ସ୍ତବକ । ଏମିତି ସବୁ ଋତୁ ଉତ୍କଳଲକ୍ଷ୍ମୀଙ୍କୁ ସେବା କରନ୍ତି । ଏହି ଉତ୍କଳଲକ୍ଷ୍ମୀଙ୍କ ପ୍ରତି ଆକୃଷ୍ଟ ହୋଇ ପ୍ରଭୁ ଜଗନ୍ନାଥ ନୀଳାଚଳରେ ଅବସ୍ଥାନ କରିଛନ୍ତି । ତ୍ରିଲୋଚନ ମଧ୍ୟ ଏକାମ୍ର କାନନରେ ରହିଛନ୍ତି । ଜାହ୍ନବୀ ଚିତ୍ରୋତ୍ପଳା ନାମରେ ପ୍ରବାହିତ ହେଉଅଛି । ସମଲାଇ ଦେବୀ ମଧ୍ୟ ଏଠାରେ ଅଛନ୍ତି । ମେଘାସନ, କପିଳାସ, ମହେନ୍ଦ୍ରଗିରି, ଭାଲେରୀ, ସୋଲେରୀ ପ୍ରଭୃତି ପର୍ବତ, ବ୍ରାହ୍ମଣୀ, ବୈତରଣୀ, ଭାର୍ଗବୀ, ବିରୂପା, ଦୟା, ଋତ୍ପିରା, ତେଲ, ଋଷିକୂଲ୍ୟା ପ୍ରଭୃତି ନଦୀ, ନୃସିଂହନାଥ, ପାଟଣେଶ୍ୱରୀ, ରାମଚଣ୍ଡୀ ପ୍ରଭୃତି ଦେବଦେବୀ ଏଠାରେ ବିଦ୍ୟମାନ ।

ଗଙ୍ଗାଧର ମଧ୍ୟ ମୟୂରଭଞ୍ଜ ରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ, ସୁତଳଦେବ, ଯଯାତି କେଶରୀ, ଅନଙ୍ଗଭୀମଦେବ, ଲାଙ୍ଗୁଳା ନରସିଂହଦେବ, ଚୋଡ଼ଗଙ୍ଗଦେବ, ପୁରୁଷୋତ୍ତମଦେବ, ପଦ୍ମାବତୀ, ନନ୍ଦିକା, କୌଶଲ୍ୟା, ପାର୍ବତୀ, ସାରଳା ଦାସ, ଜଗନ୍ନାଥ ଦାସ, ବଳରାମ ଦାସ, ଦୀନକୃଷ୍ଣ ଦାସ, ଉପେନ୍ଦ୍ର ଭଞ୍ଜ, ଅଭିମନ୍ୟୁ ସାମନ୍ତସିଂହାର ପ୍ରଭୃତି ନାନା ରାଜା ଓ କବିମାନଙ୍କର ବର୍ଣ୍ଣନା କରିଛନ୍ତି ।

କବି ପରବର୍ତ୍ତୀ ଖଣ୍ଡରେ ଦେଖିଛନ୍ତି ଜଣୈକା ଆରାଧ୍ୟ ଦେବୀଙ୍କୁ । ସେହି ଦେବୀ ହେଉଛନ୍ତି ଉତ୍କଳ ଲକ୍ଷ୍ମୀ । ଓଡ଼ିଶାର ବହୁ ଅଞ୍ଚଳ ବିଚ୍ଛିନ୍ନ ହୋଇ ବିଭିନ୍ନ ପ୍ରଦେଶରେ ରହିଛି । ସେହି ବିଚ୍ଛିନ୍ନାଞ୍ଚଳର ଏକୀକୃତ ରୂପ ହେଉଛି ଏହି ଦେବୀ ।

ଉତ୍କଳ ଲକ୍ଷ୍ମୀଙ୍କୁ ଗଙ୍ଗାଧରଙ୍କ ଜାତୀୟ ଭାବ ଚେତନାର କାବ୍ୟ ରୂପ ବୋଲି ଗ୍ରହଣ କରାଯାଇପାରେ । ଆଲୋଚକ ଗୋବିନ୍ଦଚନ୍ଦ୍ର ଉଦ୍‌ଗାତାଙ୍କ ମତରେ ଏହାକୁ ଆଧୁନିକ ଓଡ଼ିଶାର ଜାତୀୟତା ବିଚାରରେ ପ୍ରଥମ କାବ୍ୟର ଗୌରବ ଦେବା ଅସମୀଚୀନ ହେବ ନାହିଁ ।

'ସମ୍ବଲପୁର ହିତୈଷିଣୀ' ୧୮୯୬ ମସିହା ଜାନୁଆରୀ ପହିଲାରେ ଏହି ଅସମ୍ପୂର୍ଣ୍ଣ କାବ୍ୟର କଠୋର ସମାଲୋଚନା କରିଥିଲା । ଏହି ପୁସ୍ତିକାରେ ଉତ୍କଳର ସାଧାରଣ ଦୃଶ୍ୟ ସଂକ୍ଷେପରେ ବର୍ଣ୍ଣିତ ହୋଇଥିଲେ ମଧ୍ୟ ପାଠକମାନେ ତୃପ୍ତିଲାଭ କରିପାରିବାର ବିଶ୍ୱାସ ହେଉ ନାହିଁ ବୋଲି ମତ ଦେଇଥିଲା । ଗଙ୍ଗାଧରଙ୍କ ପରି ବ୍ୟକ୍ତି ଏହି ଅକିଞ୍ଚିତ୍‌କର କାର୍ଯ୍ୟରେ ହସ୍ତକ୍ଷେପ କରିବା ପ୍ରତିଭାର ଅପବ୍ୟବହାର ବୋଲି ମଧ୍ୟ କହିଥିଲା । ସମ୍ଭବତଃ, ମେହେର ଏହି ସମାଲୋଚନା ଫଳରେ ହତୋତ୍ସାହ ହୋଇ ପଡ଼ିଥିଲେ । ଦୀର୍ଘକାଳ ଧରି ସେ ଆଉ କୌଣସି ରଚନାରେ ମନ ଦେଇ ନ ଥିଲେ । ଏହାକୁ ଲକ୍ଷ୍ୟ କରି ସମ୍ଭବତଃ ନନ୍ଦକିଶୋର ଏକ କବିତାରେ ଲେଖିଲେ –

''ଖଣ୍ଡେ କାବ୍ୟ ଲେଖି ଦେଇ ରହିଲ ନିଶ୍ଚିନ୍ତ
ଐଶୀ ଶକ୍ତି ନାଶୀ କର୍ମେ ହେବା କି ଉଚିତ ?''

ସେ ଗଙ୍ଗାଧରଙ୍କୁ ପୁଣି କାବ୍ୟ ଲେଖିବାପାଇଁ କବିତାରେ ଅନୁରୋଧ କରିଥିଲେ –

''ପବିତ୍ର ସୁନ୍ଦର କାବ୍ୟ ଲେଖି ପ୍ରିୟ କବି
ସମୁଜ୍ଜ୍ୱଳ କର ମାତୃଭୂମି ମୁଖଛବି ।''

ଫଳରେ ପୁଣି ପ୍ରକାଶ ପାଇଲା ଗଙ୍ଗାଧରଙ୍କ ଆଉ ଏକ ସଫଳ କୃତି– 'କୀଚକ-ବଧ' ।

## ବ୍ୟକ୍ତିଗତ ଜୀବନ

ଯୌବନର ପ୍ରଥମ ଭାଗରେ ଗଙ୍ଗାଧର ଦୁଇଟି ପୁତ୍ର ଓ ଦୁଇଟି କନ୍ୟାଙ୍କର ଜନକ ଥିଲେ । ତାଙ୍କର ବୈବାହିକ ଜୀବନ ସୁଖମୟ ଥିଲା । କିନ୍ତୁ ଅଭାବ ଅନଟନ ଚିରଦିନ ଲାଗି ରହିଥିବାରୁ ସେ ସୁଖୀ ନ ଥିଲେ । ବରପାଲିର ଜମିଦାରଙ୍କ ଅଧୀନରେ ଚାକିରି କରିବାକୁ ସେ ଚାହୁଁ ନ ଥିଲେ । ସେ ନିଜର ଦୁଃଖକୁ ରାଧାନାଥଙ୍କୁ ଲେଖି ଜଣାଇଥିଲେ । ଏଭଳି ପ୍ରତିଭାସମ୍ପନ୍ନ ବ୍ୟକ୍ତିଙ୍କର ଏପରି ଦଶାରେ ରାଧାନାଥ ଦୁଃଖ ପ୍ରକାଶ କରିଥିଲେ । ବରପାଲି ରାଜବାଟୀରେ ତାଙ୍କର ଗୁଣ ଗ୍ରହଣ କରିବାର ବ୍ୟକ୍ତି ନ ଥିବା ସମ୍ଭବପର ବୋଲି ମତ ଦେଇଥିଲେ । ଗଙ୍ଗାଧର ଶିକ୍ଷାବିଭାଗରେ ଚାକିରି କରିବାପାଇଁ ଆଗ୍ରହୀ ଥିଲେ । ରାଧାନାଥ ଗଙ୍ଗାଧରଙ୍କୁ ଦେଇଥିବା ପତ୍ରରୁ ଏହାର ସୂଚନା ମିଳେ । ଶିକ୍ଷାବିଭାଗରେ ପ୍ରବେଶ କଲେ ଆର୍ଥିକ ଅବସ୍ଥାର ଅଧିକ ଉନ୍ନତି ହେବାର ସମ୍ଭାବନା ନାହିଁ ବୋଲି ରାଧାନାଥ ତାଙ୍କୁ ପତ୍ରରେ ଜଣାଇ ଦେଇଥିଲେ । କିନ୍ତୁ ମାନସିକ ଶାନ୍ତି ସେଥିରେ ମିଳିପାରିବ ସୂଚାଇ ସେଥିରେ କୃତକାର୍ଯ୍ୟ ହେଲେ ସେ ସମ୍ବାଦ ତାଙ୍କୁ ପ୍ରଥମେ ଦେବାକୁ ଅନୁରୋଧ କରିଥିଲେ । ମାତ୍ର ବରପାଲି ଜମିଦାର ତାଙ୍କ ଭଳି ନିଷ୍ଠାପର କର୍ମଚାରୀଙ୍କୁ କାର୍ଯ୍ୟରେ ରଖିବାକୁ ଆଗ୍ରହୀ ଥିଲେ । ସମ୍ଭବତଃ, ଶିକ୍ଷକ ଚାକିରି ତାଙ୍କୁ ମିଳି ନ ଥିଲା । ତେଣୁ ସେ ସେଥିରେ ରହିବାକୁ ବାଧ ହେଲେ ।

୧୮୯୭ ମସିହାରେ ତାଙ୍କର ପତ୍ନୀ ଶାନ୍ତାଦେବୀଙ୍କର ଅକାଳ ବିୟୋଗ ଘଟିଲା । ସେ ଅତ୍ୟନ୍ତ ଧର୍ମପରାୟଣା ମହିଳା ଥିଲେ । ସେ ମଧ ସ୍ୱାମୀଙ୍କ ସୁଖଦୁଃଖରେ ଭାଗ ନେଉଥିଲେ । ତାଙ୍କର ବିୟୋଗରେ ଗଙ୍ଗାଧର ଅତିମାତ୍ରାରେ ଭାଙ୍ଗି ପଡ଼ିଲେ । ମୃତ୍ୟୁପୂର୍ବରୁ ତାଙ୍କ ସ୍ତ୍ରୀ ଗଙ୍ଗାଧରଙ୍କୁ ଦ୍ୱିତୀୟ ବିବାହ କରିବାପାଇଁ ଅନୁରୋଧ କରିଥିଲେ । ପତ୍ନୀଙ୍କ ଅନୁରୋଧ ଓ ପୁତ୍ର କନ୍ୟାଙ୍କ ଲାଳନ ପାଳନପାଇଁ ଶେଷରେ ଗଙ୍ଗାଧର ଏଥିରେ ସମ୍ମତ ହେଲେ । ୧୮୯୮ ମସିହାରେ ସେ ଦ୍ୱିତୀୟବାର ବିବାହ କଲେ । ସେହି ବର୍ଷ ମଧ ସଞ୍ଚିତ ଅର୍ଥ ବିନିମୟରେ ବରପାଲିରେ ଆଠ ଏକର ଜମି କ୍ରୟ କଲେ ।

୧୮୯୯ ମସିହାରେ ବରପାଲି ଜୁଡ଼ିସିଏଲ ମୋହରିରଙ୍କର ମୃତ୍ୟୁ ହେଲା । ଜମିଦାର ସୁପାରିସ କରି ସେହି କାର୍ଯ୍ୟ ଖଣ୍ଡିକ ଗଙ୍ଗାଧରଙ୍କୁ କରାଇଦେଲେ । ଗଙ୍ଗାଧର ୧୮୯୯ରୁ ୧୯୦୧ ଏହି ତିନି ବର୍ଷ ବରପାଲିରେ ରହି ଜମିଦାରଙ୍କ ଅଧୀନରେ କାର୍ଯ୍ୟ କଲେ । ଏହି ଚାକିରି ସହିତ ସେ ଘରୋଇ ଭାବରେ ମାଲମୋହରିର ଦାୟିତ୍ୱ ବହନ କଲେ ।

୧୯୦୧ ମସିହାରେ ସେ ସମ୍ବଲପୁରକୁ ବଦଳି ହୋଇ ଆସିଲେ । ପରେ ପରେ ପିତା ଚୈତନ୍ୟ ମେହେରଙ୍କର ମୃତ୍ୟୁ ହେଲା । ୧୯୦୨ ମସିହାରେ ଜ୍ୟେଷ୍ଠପୁତ୍ର ଅର୍ଜୁନଙ୍କର ବିବାହ କାର୍ଯ୍ୟ ସଂପନ୍ନ ହେଲା । କିନ୍ତୁ ଏହାର ଛଅ ମାସ ପରେ ତାଙ୍କ ଜୀବନରେ ସବୁଠାରୁ ଦୁଃଖପୂର୍ଣ୍ଣ ଘଟଣା ଘଟିଲା । ଅର୍ଜୁନ ବିସୂଚିକା ରୋଗାକ୍ରାନ୍ତ ହୋଇ ଅକାଳ ମୃତ୍ୟୁ ବରଣ କଲେ । ଏଥିରେ ସେ ଅଧିକ ମ୍ରିୟମାଣ ହୋଇପଡ଼ିଲେ ।

ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ଏଇ ସମୟ ମଧ୍ୟରେ ଗଙ୍ଗାଧର ରଚନା କରିଥିଲେ କେତୋଟି କବିତା । ପ୍ରଥମଟି ହେଲା 'ମହିମା' । ଏହା ୧୮୯୭ ମସିହା ଜାନୁଆରୀ ମାସରେ ଉତ୍କଳ ସାହିତ୍ୟରେ ପ୍ରକାଶିତ ହୋଇଥିଲା । ଏହା ଏକ ଉପଦେଶାତ୍ମକ କବିତା ।

ଧର୍ମ ମାର୍ଗରେ ଯିବାକୁ ତାଙ୍କର ଉପଦେଶ –

"ଧର୍ମ ମହାତରୁ ପକ୍ଷରେ ମାନବ
ହୃଦୟ କ୍ଷେତ୍ର ଉର୍ବର
ସୁଶିକ୍ଷା ଲଙ୍ଘଂନେ ଚଷି ଧର୍ମବୀଜ
ତହିଁରେ ରୋପଣ କର ।"

୧୯୦୨ ମସିହାରେ ସେ ଆଉ ଏକ କବିତା ରଚନା କଲେ । ତାହା ହେଲା 'ବର୍ଷା ଚିତ୍ର' । ଏହା ମଧ୍ୟ 'ଉତ୍କଳ ସାହିତ୍ୟର' ଜୁନ୍ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ଏଥିରେ କବି ବର୍ଷାକାଳକୁ ନାଟ୍ୟକାର ସହିତ ତୁଳନା କରିଛନ୍ତି, ଯଥା –

"ନାଟ୍ୟକାର ପରି ଆସି ବରଷା ସମୟ
ଦେଖାଇଲେ ଲୋକେ ନବ ନବ ଅଭିନୟ ।"

**କୀଚକ-ବଧ**

ଏହି କ୍ଷୁଦ୍ର କାବ୍ୟଟି 'ସାରଳା ମହାଭାରତ'ର ଏକ ଚିତ୍ତାକର୍ଷକ ଉପାଖ୍ୟାନକୁ ନେଇ ରଚିତ । କବି କିନ୍ତୁ ଏହି ପ୍ରାଚୀନ କାହାଣୀକୁ ସମ୍ପୂର୍ଣ୍ଣ ନୂତନ ଭାବରେ ଉପସ୍ଥାପିତ କରିଛନ୍ତି । କଥାବସ୍ତୁ ଆହରଣରେ ମୌଳିକତା ଦେଖାଇବାରେ କବି ଯେପରି ଶକ୍ତିମତ୍ତା ଦେଖାଇଛନ୍ତି, ତାହା ପ୍ରାଚୀନ କି ଆଧୁନିକ ଯେକୌଣସି କବିଙ୍କ ପକ୍ଷରେ ଗୌରବ ବିଷୟ ବୋଲି ରାଧାନାଥ ମତ ଦେଇଥିଲେ ।

ପାଣ୍ଡବମାନେ ଅଜ୍ଞାତବାସରେ ଥିଲାବେଳେ ବିରାଟ ନଗରର ରାଜାଙ୍କ ଘରେ ଗୁପ୍ତରେ ଆଶ୍ରୟ ନେଇଥିଲେ । ଯୁଧିଷ୍ଠିର ହେଲେ ରାଜ ସଭାସଦ୍ । ଭୀମ ରାଜାଙ୍କ ସୂପକାର, ଅର୍ଜୁନ ସଙ୍ଗୀତ ଶିକ୍ଷକ, ନକୁଳ ଅଶ୍ୱପାଳ ଓ ସହଦେବ ଗାଭୀରକ୍ଷକ

ହୋଇଥିଲେ । ପାଣ୍ଡବ ବଧୂ ଯାଜ୍ଞସେନୀ ବେଶକାରିଣୀ ସୈରିନ୍ଧ୍ରୀ ସାଜିଥିଲେ । ବସନ୍ତ ଋତୁରେ ରାଣୀ ସୁଦେଷ୍ଣା ବନଦୁର୍ଗା ମନ୍ଦିରକୁ ଯାଉଥିବାବେଳେ ବିରାଟ ରାଜାଙ୍କ ଶାଳକ କୀଚକଙ୍କ ଦୃଷ୍ଟି ସୈରିନ୍ଧ୍ରୀଙ୍କ ଉପରେ ପଡ଼ିଲା । ରୂପସୀ ସୈରିନ୍ଧ୍ରୀ ହେଲେ କୀଚକର ଧେୟ । ସୈରିନ୍ଧ୍ରୀଙ୍କ ନିକଟକୁ କୀଚକ ଦୂତୀ ପଠାଇଲା । ସୈରିନ୍ଧ୍ରୀ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଦେଲେ ଓ ପୁଣି ସତର୍କ ମଧ କରାଇଦେଲେ । କୀଚକ ବ୍ୟର୍ଥ ମନୋରଥ ହୋଇ ରାଣୀ ସୁଦେଷ୍ଣାଙ୍କ ଉପରେ ଚାପ ପ୍ରୟୋଗ କଲା । ସୁଦେଷ୍ଣାଙ୍କ ଅନୁରୋଧକ୍ରମେ ସୈରିନ୍ଧ୍ରୀ ମଦ୍ୟପାତ୍ର ନେଇ କୀଚକ ପାଖକୁ ଗଲେ । କାମାନ୍ଧ କୀଚକ ସୈରିନ୍ଧ୍ରୀଙ୍କୁ ଧରିବାପାଇଁ ଅନୁଧାବନ କଲା । କିନ୍ତୁ ତରୁଶାଖା ଆଘାତରେ ତାହା ବ୍ୟର୍ଥ ହେଲା । ସୈରିନ୍ଧ୍ରୀ ଭୀମଙ୍କ ନିକଟକୁ ଯାଇ କୀଚକର ଅଭିଳାଷ ଜଣାନ୍ତେ, ଭୀମ କୀଚକ ବିନାଶପାଇଁ ଯୋଜନା କଲେ । ନୃତ୍ୟଘରେ ସୈରିନ୍ଧ୍ରୀ ବେଶରେ ଭୀମ ଅପେକ୍ଷା କଲେ ଓ ଶେଷରେ କୀଚକର ମୃତ୍ୟୁ ହେଲା ।

ପୁରାଣର କଥାବସ୍ତୁକୁ ନେଇ କାବ୍ୟ ରଚନା କଲେ ମଧ କବି ଏଥିରେ ଅଭୂତପୂର୍ବ ଶିଳ୍ପନୈପୁଣ୍ୟ ଦେଖାଇଛନ୍ତି । ଚରିତ୍ର ଚିତ୍ରଣରେ କବି ଅସାଧାରଣ ସଫଳତା ହାସଲ କରିଛନ୍ତି । କୀଚକର ଲମ୍ପଟତା, ଦ୍ରୌପଦୀଙ୍କର ସେବା ଧର୍ମ, ସୁଦେଷ୍ଣାଙ୍କର କୋମଳତା ଓ ଅଯଥା ଭ୍ରାତୃବତ୍ସଳତା ପ୍ରଭୃତି ଚମତ୍କାରଭାବେ ଏଥିରେ ଚିତ୍ରିତ ହୋଇଅଛି । କବିଙ୍କର ପ୍ରକୃତି ବର୍ଣ୍ଣନା ମଧ ଅତି ଉଚ୍ଚକୋଟୀର ହୋଇଅଛି । ବିଶେଷତଃ, ବସନ୍ତ ଋତୁର ବର୍ଣ୍ଣନା ଅତି ଚିତ୍ତାକର୍ଷକ ହୋଇଛି । ବସନ୍ତ ଋତୁ ଆଗମନ ବିଷୟରେ କବି ବର୍ଣ୍ଣନା କରିଛନ୍ତି –

''ବସନ୍ତ ବିଜୟ ବାରତା ପ୍ରଚାରିଲା ଭୁବନେ
ପାଦପ ଆନୀତ ପତର ପରଭୃତ ପଠନେ
ଗ୍ରହରାଜ କର୍ଣ୍ଣେ ପଡ଼ିଲା ଋତୁ ସମ୍ରାଟ୍ ଭାଷା
ଗମିଲେ ସରଳ ପଥରେ ତେଜି ଦକ୍ଷିଣ ଆଶା ।''

ତାଙ୍କର ପ୍ରକୃତି ଜଡ଼ ନୁହେଁ, ସଜୀବ । ବସନ୍ତ ଋତୁକୁ ସ୍ୱାଗତ କରି ଅବନୀ ରାଣୀ ବହୁ ପ୍ରକାର ପଦାର୍ଥ ଯୋଗାଡ଼ କରିରଖିଛି –

''ବସନ୍ତ ଅତିଥି ପୀରତିପାଇଁ ଅବନୀରାଣୀ
ଯୋଗାଡ଼ି ରଖିଲା ଭଣ୍ଡାରେ ନାନା ପଦାର୍ଥ ଆଣି ।''

କବିବର ରାଧାନାଥ 'କୀଚକ-ବଧ' ପାଣ୍ଡୁଲିପି ପାଠକରି ମତ ଦେଇଥିଲେ – ''ଗଙ୍ଗାଧର ଉଚ୍ଚ ଶ୍ରେଣୀର କବି; ବହିଃପ୍ରକୃତି ଓ ଅନ୍ତଃପ୍ରକୃତି ଉଭୟର ଯଥାଯଥ ଚିତ୍ରାଙ୍କନରେ ଗଙ୍ଗାଧର ସିଦ୍ଧହସ୍ତ । × × × ଯେତେବେଳେ ଯାହା ଲେଖନ୍ତି, ପ୍ରକୃତିକୁ ସ୍ୱଚକ୍ଷୁରେ ଦେଖି ଲେଖନ୍ତି ।''

ମେହେରଙ୍କ ପ୍ରକୃତି ବର୍ଣ୍ଣନା ଯୋଗୁଁ 'କୀଚକ-ବଧ' କାବ୍ୟଟି ରସପୂର୍ଣ୍ଣ ଓ ଋଦ୍ଧିମନ୍ତ ହୋଇପାରିଛି । ଆଉ କିଛି ନ ଲେଖିଲେ ମଧ କେବଳ 'ଇନ୍ଦୁମତୀ' ଓ 'କୀଚକ-ବଧ'ଦ୍ୱାରା ଗଙ୍ଗାଧର ଓଡ଼ିଆ ସାହିତ୍ୟ ଜଗତରେ ଅମର ହୋଇ ରହିବେ ବୋଲି ରାଧାନାଥ ଯଥାର୍ଥରେ କହିଛନ୍ତି ।

## ପଦ୍ମିନୀ

ଗଙ୍ଗାଧର ପଦ୍ମିନୀ କାବ୍ୟ ୧୯୦୨–୦୩ ମସିହାରେ ରଚନା କରିଥିଲେ । ଚିତୋର ଦୁର୍ଗର ଅଧିପତି ମିବାରର ରାଣା ଭୀମ ସିଂହଙ୍କ ପତ୍ନୀ ଥିଲେ ପଦ୍ମିନୀ । ସେ ଅସାମାନ୍ୟା ସୁନ୍ଦରୀ ଥିଲେ । ତାଙ୍କୁ ପାଇବାପାଇଁ ଦିଲ୍ଲୀ ସମ୍ରାଟ୍ ଆଲାଉଦ୍ଦିନ ଚକ୍ରାନ୍ତ ଚଳାଇଲେ । ସେ ଭୀମ ସିଂହଙ୍କୁ ପଦ୍ମିନୀଙ୍କୁ ପଠାଇବାକୁ ପତ୍ର ଦେଲେ । ତାହା ବ୍ୟର୍ଥ ହେଲା । ପରେ ଦାସୀ ଲୀଳାକୁ ପଦ୍ମିନୀଙ୍କ ପାଖକୁ ସନ୍ୟାସିନୀ ବେଶରେ ପଠାଇଲେ । ଏ ଚକ୍ରାନ୍ତ ମଧ ବ୍ୟର୍ଥ ହେଲା । ପଦ୍ମିନୀଙ୍କୁ ପାଇବାପାଇଁ ଆଲାଉଦ୍ଦିନ ବ୍ୟାକୁଳ ହୋଇପଡ଼ିଲେ । ଶେଷରେ ଚିତୋର ଅବରୋଧ କଲେ । ମାତ୍ର ବୀର ରାଜପୁତ୍‌ମାନେ ଦୁର୍ଗ ପ୍ରାଚୀର ଉପରୁ ପ୍ରବଳ ଭାବରେ ପଥର ବୃଷ୍ଟି କଲେ । ଆଲାଉଦ୍ଦିନ କ୍ରୋଧରେ ଥରହର ହୋଇ ନିଜ ଶିବିରକୁ ଫେରିଆସିଛନ୍ତି । କାବ୍ୟଟି ଅସମ୍ପୂର୍ଣ୍ଣ ରହିଛି ।

ଭାରତ ଇତିହାସର ବୀରା ରାଣୀ ପଦ୍ମିନୀଙ୍କର ସତୀତ୍ୱର ଅପୂର୍ବ ପରାକାଷ୍ଠା ଦେଖାଇବା ସମ୍ଭବତଃ ଗଙ୍ଗାଧରଙ୍କର ଲକ୍ଷ୍ୟ ଥିଲା । ମାତ୍ର କୌଣସି କାରଣରୁ ତାହା ସମ୍ପୂର୍ଣ୍ଣ କରିପାରି ନାହାନ୍ତି । ସେ ବ୍ରଜମୋହନ ପଣ୍ଡାଙ୍କ ପାଖକୁ ଦେଇଥିବା ଏକ ପତ୍ରରେ ଲେଖିଥିଲେ ଯେ ରାଜସ୍ଥାନର ଜଣେ ନାୟିକାଙ୍କୁ ନେଇ ଏକ କାବ୍ୟ ପ୍ରଣୟନ କରିବା ତାଙ୍କର ପ୍ରଧାନ କର୍ତ୍ତବ୍ୟ ହୋଇଅଛି । ସେ ପୁଣି ଲେଖିଥିଲେ –

"ଈଶ୍ୱର ତହିଁରେ ମୋତେ ସିଦ୍ଧକାମ କରନ୍ତୁ, ଏହାହିଁ କାମନା ।"

ଏହା ସମ୍ପୂର୍ଣ୍ଣ ହୋଇଥିଲେ ଓଡ଼ିଆ ସାହିତ୍ୟରେ ଐତିହାସିକ କାବ୍ୟର ଅଭାବ ଯେ ଦୂର ହୋଇଥାନ୍ତା, ଏଥିରେ ସନ୍ଦେହ ନାହିଁ ।

## କବିତା କଲ୍ଲୋଳ

ଏହା ୧୯୧୨ରେ ପ୍ରକାଶିତ ହେଲା । ଏଥିରେ ବେଦବ୍ୟାସ, ଚନ୍ଦ୍ର ରଜନୀ, ବସନ୍ତ ବାସର, ସୋମନାଥ ବିଜୟ ଓ ବର୍ଷା ଚିତ୍ର ଏହିପରି ପାଞ୍ଚୋଟି ଦୀର୍ଘ କବିତା ସନ୍ନିବେଶିତ ହୋଇଅଛି । 'ବେଦବ୍ୟାସ' କବିତାରେ କବି ଶଙ୍ଖ ଓ କୋଇଲିର ସଙ୍ଗମ ସ୍ଥଳ ବେଦବ୍ୟାସ ତୀର୍ଥ, ଗାଙ୍ଗପୁର ରାଜ୍ୟର ବେଦବ୍ୟାସ ପର୍ବତ, ପଶ୍ଚିମ-ଓଡ଼ିଶାର ବନ୍ଧୁ ପର୍ବତ, ନଦୀ, କାନନ ପ୍ରଭୃତିର ବର୍ଣ୍ଣନା କରିଛନ୍ତି ।

ସେହିପରି 'ସୋମନାଥ ବିଜୟ' କବିତାରେ ମହାନଦୀ ତୀରସ୍ଥ ଶିବପୀଠ ସୋମନାଥଙ୍କ ପ୍ରସିଦ୍ଧି ଓ ମହାନଦୀର ଶୋଭା ବର୍ଣ୍ଣନା କରିଛନ୍ତି । 'ବସନ୍ତ ବାସ'ର କବିତାରେ କବି ବସନ୍ତକୁ ମଙ୍ଗଳମୟ ରୂପରେ ଦେଖିଛନ୍ତି, ଯଥା –

"ହେମନ୍ତ ଶିଶିର ଆସି ନେଲେ ଅବସର
ହିତସାଧି ଆସିଅଛି ବସନ୍ତ ବାସର ।
କରୁଅଛି ପାଦ ତାଙ୍କ ଜୀର୍ଣ୍ଣ ସଂସ୍କରଣ
ମାନବ ଶରୀରେ ନବରକ୍ତ ସଞ୍ଚରଣ ।
ପ୍ରଭାତେ ପ୍ରଦୋଷେ ଦେଇ ମଧୁର ପବନ
ପଲ୍ଲବିତ କରୁଅଛି ମାନବ ଜୀବନ ।"

## ଅଯୋଧ୍ୟା ଦୃଶ୍ୟ

ଏହା ୧୯୧୪ରେ ପ୍ରକାଶ ପାଇଥିଲା । କବି ଗଙ୍ଗାଧର ପ୍ରଥମେ ଏହାକୁ ତିନି ଦୃଶ୍ୟ ରୂପେ କଳ୍ପନା କରିଥିଲେ । ସେ ଏହାର ପାଣ୍ଡୁଲିପିକୁ ନନ୍ଦକିଶୋର ବଳଙ୍କ ପାଖକୁ ପଠାଇଥିଲେ । ତିନି ଦୃଶ୍ୟରେ ତିନୋଟି ବିଭିନ୍ନ ଦୃଶ୍ୟର ବର୍ଣ୍ଣନା ଥିଲେ ମଧ୍ୟ ଅଯୋଧ୍ୟାର ଏହି ତିନୋଟି ଦୃଶ୍ୟ ମଧ୍ୟରେ ଅଖଣ୍ଡତା ଥିବାର ଉପଲବ୍ଧି କରି ଏହାର ନାମ ଅଯୋଧ୍ୟା ଦୃଶ୍ୟ ରଖିବାକୁ ନନ୍ଦକିଶୋର ଗଙ୍ଗାଧରଙ୍କୁ ପରାମର୍ଶ ଦେଲେ । ଗଙ୍ଗାଧର ମଧ୍ୟ ତାଙ୍କ ମତାନୁସାରେ ଏହାର ନାମକରଣ କଲେ 'ଅଯୋଧ୍ୟା ଦୃଶ୍ୟ' ।

ଏଥିରେ ତିନୋଟି ସର୍ଗ ଅଛି । ପ୍ରଥମ ସର୍ଗରେ ରାମଙ୍କର ଜନ୍ମ ଓ ବନବାସ ବର୍ଣ୍ଣିତ । ଦ୍ୱିତୀୟ ସର୍ଗରେ ନିର୍ବାସିତ ପୁତ୍ରର ଭାବନାରେ କୌଶଲ୍ୟାଙ୍କର ବେଦନା ପ୍ରକାଶ ପାଇଛି । ରାମଙ୍କ ବନବାସ ଯୋଗୁଁ ମାତା କୌଶଲ୍ୟାଙ୍କର ବିଳାପ ଅତି ଜୀବନ୍ତ ହୋଇଛି । କବିଙ୍କ ଭାଷାରେ –

"ଶେଷ ଜୀବନରେ ପାଇ କୁମାର ରତନ
କରିଥିଲି ପ୍ରାଣଠାରୁ ଅଧିକ ଯତନ
ତାକୁ ବନେ ପେଷି ମୋତେ ରଖାଇଛି ଘରେ,
ହୋଇଛି ସୁନ୍ଦର ଏହା ବିଧି ବିବେକରେ ।
ଦେହ ମାତ୍ର ଘରେ ଅଛି ତୋ'ଠାରେ ଜୀବନ,
ବେନି ନାବେ ପାଦ ଦେଇ ମରୁଅଛି ମନ ।"

ଏପରିକି ରାମଙ୍କ ବିହୁନେ ମୃତ୍ୟୁବରଣ କରିବାକୁ କୌଶଲ୍ୟା ଚାହିଁଛନ୍ତି –

"ମରୁଅଛି ମନ କିନ୍ତୁ ପାରୁ ନାହିଁ ମରି,
କିପାଁ ବୁଡ଼ି ଯାଉ ନାହିଁ ମୋ ଜୀବନ ତରୀ !"

ଏହି ପୁତ୍ର ବିଚ୍ଛେଦକୁ କୌଶଲ୍ୟା ପୂର୍ବଜନ୍ମ ପାପର ଫଳ ବୋଲି ମନେକରିଛନ୍ତି । ଅତି ସୁନ୍ଦର ଉପମା ଦେଇ କବି ତାହା ପ୍ରକାଶ କରିଛନ୍ତି –

"ପୂର୍ବ ଜନ୍ମେ କରିଥିଲି କେତେ କେତେ ପାପ
କା ପୁତ୍ର ଛଡ଼ାଇ ତାକୁ ଦେଇଥିଲି ତାପ ।
ପକ୍ଷୀର ଶାବକ ଅବା ଆଣିଥିଲି ଧରି,
କାନ୍ଦୁଥିଲା ପକ୍ଷିଣୀ ତା' କୁମରକୁ ସ୍ମରି ।"

ତୃତୀୟ ସର୍ଗରେ ରାମଙ୍କ ପ୍ରତ୍ୟାଗମନ ଓ ରାଜ୍ୟାଭିଷେକ ବର୍ଣ୍ଣିତ । ରାମଙ୍କର ବନବାସ ପରେ ଅଯୋଧ୍ୟାର ଦୃଶ୍ୟ ଅତି କରୁଣ ଓ ଜୀବନ୍ତ କରିବା କେବଳ ଗଙ୍ଗାଧରଙ୍କ ଭଳି ଶିଳ୍ପୀ ପକ୍ଷେ ସମ୍ଭବ, ଯଥା –

"ରାଜପୁର ହୋଇଥିଲା ବସନ୍ତ କାନନ
ହସୁଥିଲା ପୁଷ୍ପରୂପେ ରାଣୀଙ୍କ ଆନନ ।
ରାମ ତହିଁ ଚନ୍ଦ୍ର ସୀତା ଚନ୍ଦ୍ରିକା ସୁନ୍ଦର
ଖେଳୁଥିଲେ ସଉମିତ୍ରି ହୋଇ ପିକବର ।
ମନ୍ଥରା ମନ୍ତ୍ରଣା–ମେଘ ଆସି ଅକସ୍ମାତ୍
ସବୁ ନଷ୍ଟ କଲା କରି କରକା ନିପାତ ।
ନାହିଁ ଚନ୍ଦ୍ର ନାହିଁ ଆଉ ଚନ୍ଦ୍ରିକାର ଛଟା
ଘୋଟିଛି କେବଳ ଗାଢ଼ ବିଷାଦର ଘଟା ।"

## ତପସ୍ୱିନୀ

'କୀଚକ-ବଧ'ରେ କୀଚକର ପାପ ପ୍ରଣୟର ବର୍ଣ୍ଣନା ଅଛି । ଏଥିରେ ପାପୀ କୀଚକର ମୃତ୍ୟୁ ହେଲେ ମଧ୍ୟ ପାପ ପ୍ରଣୟର ବର୍ଣ୍ଣନା ଯୁବକ ଯୁବତୀଙ୍କ ମନରେ ବିକାର ସୃଷ୍ଟି କରିପାରେ ବୋଲି ନନ୍ଦକିଶୋର ଆଶଙ୍କା ପ୍ରକାଶ କରି ପତ୍ର ଲେଖିଥିଲେ । ମାନବ ଚରିତ୍ର ଚିତ୍ରଣରେ ଉଚ୍ଚ ଆଦର୍ଶ ସୃଷ୍ଟି କରିବାପାଇଁ ସେ ମଧ୍ୟ ସୂଚାଇଥିଲେ । ଗଙ୍ଗାଧର ତେଣୁ 'ବାଲ୍ମୀକି ରାମାୟଣ', 'ଅଧ୍ୟାତ୍ମ ରାମାୟଣ', 'ରାମଚରିତ ମାନସ', 'ଉତ୍ତର ରାମଚରିତ', 'ରଘୁବଂଶ', ସଂସ୍କୃତରେ ଶକୁନ୍ତଳା ପ୍ରଭୃତି ଅଧ୍ୟୟନ କଲେ । ଫଳରେ ସେ ରଚନା କଲେ ଅମର କାବ୍ୟ ତପସ୍ୱିନୀ । ଏହା ୧୯୧୪ରେ ପ୍ରକାଶିତ ହେଲା ।

ଲଙ୍କା ଅଧିପତି ରାବଣକୁ ବିନାଶ କଲାପରେ ରାମ ଲକ୍ଷ୍ମଣ ଓ ସୀତାଙ୍କ ସହ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି । ସାମାନ୍ୟ କେତେ ଦିନ ରାଜ-ଐଶ୍ୱର୍ଯ୍ୟରେ କାଳ କାଟିବାପରେ ରାମ ଲୋକ ଅପବାଦ ଯୋଗୁଁ ବୈଦେହୀଙ୍କ ଚରିତ୍ରରେ ତିଳେମାତ୍ର ସନ୍ଦେହ ନ ଥିଲେ ମଧ୍ୟ ଲକ୍ଷ୍ମଣଙ୍କ ହସ୍ତେ ବନକୁ ପଠାଇଛନ୍ତି ।

ବାଲ୍ମୀକି ଆଶ୍ରମ ନିକଟରେ ସୀତାଙ୍କୁ ଛାଡ଼ି ଲକ୍ଷ୍ମଣ ପ୍ରତ୍ୟାବର୍ତ୍ତନ କରିଛନ୍ତି । 'ତପସ୍ୱିନୀ' କାବ୍ୟର ଆରମ୍ଭ ଏହିଠାରୁ ହୋଇଅଛି ।

ବାଲ୍ମୀକି ଆଶ୍ରମର ଅନତିଦୂରରେ ସତୀ ସୀତା ଏକାକିନୀ କ୍ରନ୍ଦନ କରିଛନ୍ତି । କବି ପ୍ରକୃତିକୁ ସୀତାଙ୍କ ଦୁଃଖରେ ସମଦୁଃଖିନୀ କରାଇଛନ୍ତି । ସତୀଙ୍କ ଦୁଃଖରେ ସୂର୍ଯ୍ୟଦେବ ଲଜ୍ଜାରେ ମୁହଁ ଲୁଚାଇଛନ୍ତି । ପୁଣି –

''ବାୟା–ବସା ଦୂଣୀରକୁ ଝାଡ଼ି ବାରମ୍ବାର
ପତ୍ର–କଙ୍କ ପତ୍ର କଲା କି ଅବା ବାହାର ?''

× × ×

ଭରି କି ସୀସକ ଗୁଳି ତରଙ୍ଗର ତୋପେ
ନିୟତିକୁ ଭାଗୀରଥୀ ପ୍ରହାରିଲା କୋପେ ।''

ଚେତା ପାଇବାପରେ ସୀତା ଯେଉଁ ଦିଗକୁ ଚାହିଁଛନ୍ତି ସେଠି ପତିଙ୍କ ଛବି ଦେଖି କାନ୍ଦି ଉଠିଛନ୍ତି । ସେ ସ୍ୱାମୀଙ୍କ ପ୍ରତି କ୍ରୋଧ ପ୍ରକାଶ କରି ନାହାନ୍ତି । ପ୍ରଜାରଞ୍ଜନପାଇଁ ତାଙ୍କୁ ଯେ ବିଦାୟ ଦିଆଯାଇଛି, ଏକଥା ଉପଲବ୍ଧି କରିଛନ୍ତି । ସେଥିପାଇଁ ଅଦୃଷ୍ଟକୁ ଦୋଷ ଦେଇଛନ୍ତି ।

ମୁନି-କୁମାରୀମାନେ ସୀତାଙ୍କ କ୍ରନ୍ଦନ ଶୁଣି ଘଟଣାସ୍ଥଳରେ ପହଞ୍ଚିଛନ୍ତି । ସୀତାଙ୍କର ଶୋକ ଦ୍ୱିଗୁଣିତ ହୋଇଛି । ସେମାନେ ଆଶ୍ରମକୁ ଫେରିଯାଇ ବାଲ୍ମୀକିଙ୍କୁ ସବୁ କଥା ଜଣାଇଛନ୍ତି । ବାଲ୍ମୀକି ମୁନିକୁମାରୀ ଓ ହରିଣ-ହରିଣୀମାନଙ୍କ ସହ ସେଠାକୁ ଆସି ସୀତାଙ୍କୁ ଆଶ୍ୱାସନା ଦେଇଛନ୍ତି ଓ ନିଜ ଆଶ୍ରମକୁ ନେଇଛନ୍ତି ।

ପରବର୍ତ୍ତୀ ସର୍ଗରେ କବି କାବ୍ୟର ନାୟକ ରାମଚନ୍ଦ୍ରଙ୍କର ମାନସିକ ଅବସ୍ଥା ଅତି ଚମତ୍କାରଭାବେ ପ୍ରକାଶ କରିଛନ୍ତି । ରାଜା ହିସାବରେ ସେ ସୀତାଙ୍କୁ ସାଧାରଣ ପ୍ରଜା ହିସାବରେ ଗ୍ରହଣ କରିଛନ୍ତି । କିନ୍ତୁ ସେ ରାଜା ହେଲେବି ସୀତାଙ୍କର ପତି । ପତି ହିସାମରେ ରାଜାଙ୍କ ବିଚାରକୁ ସେ ଅନୁମୋଦନ କରିପାରି ନାହାନ୍ତି । ସୀତାଙ୍କ ବିହୁନେ ତାଙ୍କ ଆତ୍ମା ବିଳପି ଉଠିଛି । ରାଜଅନ୍ତଃପୁରର ସମସ୍ତ ଜିନିଷ ତାଙ୍କୁ ତୁଚ୍ଛ ମନେ ହୋଇଛି, ଯଥା –

''ପିଞ୍ଜରୁ ବାହାରି ଯିବେ ଶୁକ ଶାରୀ
ଛାଡ଼ିଦେବି ରାତି ପାହୁ
ତୋତେ ଉତ୍ତେଜିତ କରିବା ନିମନ୍ତେ
ନ ବୋଲିବେ ସୀତା ଆଉ ।''

ପୁଣି –

"ମୟୂର ଯୁଗଳ ରାବି ଅନର୍ଗଳ
କାହିଁକି ରହିବେ ଆଉ
ଉଚ୍ଚାରବ ସ୍ୱନ କା ଅନୁରଣନ
କରି ଭୀମରାଜ ଯାଉ ।"

ଏକ ଦିଗରେ କଠୋର କର୍ତ୍ତବ୍ୟପରାୟଣତା, ଅନ୍ୟ ଦିଗରେ ପ୍ରିୟତମା ପତ୍ନୀଙ୍କର ବିରହ ଯନ୍ତ୍ରଣା ରାମଚନ୍ଦ୍ରଙ୍କ ଚରିତ୍ରକୁ ମହୀୟାନ୍ କରି ତୋଳିଛି ।

କାବ୍ୟର ଚତୁର୍ଥ ସର୍ଗରେ କବି ତପସ୍ୱିନୀ ଜୀବନର ପ୍ରଥମ ପ୍ରଭାତର ଅପୂର୍ବ ଶୋଭା ଅପୂର୍ବ ଭାବରେ ଚିତ୍ରଣ କରିଛନ୍ତି । ଏଠାରେ ପ୍ରକୃତି ଜୀବନ୍ତ । ସୀତାଙ୍କ ଦର୍ଶନପାଇଁ ଉଷା ଅପେକ୍ଷା କରିଛି –

"ମଙ୍ଗଳେ ଅଇଲା ଉଷା ବିକଚ ରାଜୀବ ଦୃଶା
ଜାନକୀ ଦର୍ଶନ ତୃଷା ହୃଦୟେ ବହି
କର ପଲ୍ଲବେ ନୀହାର ମୁକ୍ତାଧରି ଉପହାର
ସତୀଙ୍କ ବାସ-ବାହାର ପ୍ରାଙ୍ଗଣେ ରହି
କଳ-କଣ୍ଠ କଣ୍ଠେ କହିଲା ।
ଦରଶନ ଦିଅ ସତୀ ରାତି ପାହିଲା ।"

ସେହିପରି ତମସା ମଧ୍ୟ ସୀତାଙ୍କୁ ଆଲିଙ୍ଗନ କରି ପବିତ୍ର ହୋଇଛି । ମୌନ ବନଲକ୍ଷ୍ମୀ ମୁଖର ହୋଇଉଠିଛନ୍ତି । ଶେଷର ପତିଙ୍କ ମୂର୍ତ୍ତିକୁ ଚକ୍ଷୁ ସମ୍ମୁଖରେ ରଖି ସୀତା ଉଷାର ପଦ ବନ୍ଦନା କରିଛନ୍ତି ।

ଋଷି ଆଶ୍ରମରେ ସୀତା ମୁନିକୁମାରୀମାନଙ୍କ ସହିତ ଜଳ ଆଣି ବୃକ୍ଷମାନଙ୍କରେ ଦେଇଛନ୍ତି । ବୃଦ୍ଧା ଅନୁକମ୍ପାଙ୍କର ବାତ୍ସଲ୍ୟ ମମତା ଝରିପଡ଼ିଛି । ସୀତା ତପସ୍ୱିନୀ ଭାବେ ବାଲ୍ମୀକି ଆଶ୍ରମରେ ତାପସ ତାପସୀଙ୍କ ମେଳରେ କାଳ କାଟିଛନ୍ତି ।

ରାମଙ୍କ ମାନସିକ ଦ୍ୱନ୍ଦ୍ୱ ଭଳି ସୀତାଙ୍କର ମାନସିକ ଦ୍ୱନ୍ଦ୍ୱ ଦେଖାଦେଇଛି । ମିଥ୍ୟା ଅପବାଦରେ ନିର୍ବାସିତା ହେଲେ ମଧ୍ୟ ତାଙ୍କର ମନରେ ସ୍ୱାମୀଙ୍କ ପ୍ରତି କ୍ରୋଧ ଜାତ ହୋଇ ନାହିଁ । ସ୍ୱାମୀ କର୍ତ୍ତବ୍ୟ ପାଳନ କରିଛନ୍ତି ବୋଲି ସେ ଉପଲବ୍ଧି କରିଛନ୍ତି । ପତ୍ନୀ ହିସାବରେ ପତିର ମଙ୍ଗଳ କାମନା କରିବା ଏକମାତ୍ର କର୍ତ୍ତବ୍ୟ ବୋଲି ଭାବିଛନ୍ତି । ବଂଶର ଆଦର୍ଶ ପ୍ରତିଷ୍ଠାପାଇଁ ସେ ପ୍ରାଣତ୍ୟାଗ ମଧ୍ୟ କରି ନାହାନ୍ତି । ଆଦର୍ଶ ରୂପକ ଯଜ୍ଞବେଦୀରେ ସେ ନାରୀର ବାସ୍ତବ ରୂପକୁ ବଳି ଦେଇଛନ୍ତି ।

ଆଲୋଚକ ନଟବର ସାମନ୍ତରାୟଙ୍କ ମତରେ 'ତପସ୍ୱିନୀ' କାବ୍ୟରେ ଆଦର୍ଶ ଓ ବାସ୍ତବର ସଂଘର୍ଷ ଫଳରେ ଆଦର୍ଶ ହିଁ ଜୟଯୁକ୍ତ ହୋଇଛି । ତାଙ୍କ ଭାଷାରେ – "ସ୍ଥୂଳତଃ ତପସ୍ୱିନୀ କାବ୍ୟର ବିଷୟବସ୍ତୁ ଆଦର୍ଶ ଓ ବାସ୍ତବର ସଂଘର୍ଷ ଉପରେ ପ୍ରତିଷ୍ଠିତ । ଏ ଦ୍ୱନ୍ଦ୍ୱ, ଏ ଚିତ୍ତ ସଂଘର୍ଷ ପରିସ୍ଥିତି ଭେଦରେ ଯେପରି ଶୋକପ୍ରଦ ଓ କରୁଣ ରସସିକ୍ତ, ତାକୁ ରୂପାୟନ କରିଥିବା କବିତା ମଧ୍ୟ ସେମିତି ବିଚିତ୍ର ଓ କମନୀୟ ।"

ବାଲ୍ମୀକି ଆଶ୍ରମରେ ସୀତା ଜନ୍ମ ଦେଇଛନ୍ତି ଦୁଇଟି ସନ୍ତାନ – ଲବ ଓ କୁଶ । ସେମାନଙ୍କ ପ୍ରତି ମାତା ଜାନକୀଙ୍କ ଗଭୀର ବାତ୍ସଲ୍ୟ ପ୍ରକାଶ ପାଇଛି । ମହର୍ଷି ବାଲ୍ମୀକି ଲବ, କୁଶଙ୍କୁ ରାମାୟଣ ରଚନା କରି ଶିଖାଇଛନ୍ତି ।

ଅଯୋଧ୍ୟାରେ ରାମ ଅଶ୍ୱମେଧ ଯଜ୍ଞର ଆୟୋଜନ କରିଛନ୍ତି । ତାଙ୍କର ନିମନ୍ତ୍ରଣ ବାଲ୍ମୀକିଙ୍କ ପାଖକୁ ଆସିଛି । ଯଜ୍ଞପାଇଁ ଶାସ୍ତ୍ରର ନୀତି ଅନୁଯାୟୀ ରାମ ଦ୍ୱିତୀୟ ଦାରା ଗ୍ରହଣ କରିବେ ବୋଲି ସୀତା ଭାବିଛନ୍ତି । ମାତ୍ର ତାଙ୍କର କ୍ରୋଧ ପ୍ରକାଶ ପାଇ ନାହିଁ । କେଉଁ ପୁଣ୍ୟ ବଳରେ, କେଉଁ ସାଧନା ଫଳରେ ରାମଚନ୍ଦ୍ରଙ୍କର ପତ୍ନୀ ହେବାର ସୌଭାଗ୍ୟ ଆଉ କେଉଁ ନାରୀ ଲାଭ କରିପାରନ୍ତି – ତାହା ଜାଣିବାକୁ ସେ ବ୍ୟାକୁଳ ହୋଇପଡ଼ିଛନ୍ତି । ତାଙ୍କୁ ଭୁଲିଯିବାକୁ ମନେ ମନେ ଅନୁରୋଧ କରିଛନ୍ତି, ଯଥା –

"ବୈଦେହୀର ପ୍ରଣୟକୁ ମଣିବ ସପନ
ଚାହିଁ ନବ ପ୍ରଣୟିନୀ ପ୍ରଫୁଲ୍ଲ ଲପନ ।"

କିନ୍ତୁ ଲବକୁଶଙ୍କର କୌତୂହଳଜନିତ ପ୍ରଶ୍ନରେ ତାଙ୍କର ସନ୍ଦେହ ଦୂର ହୋଇଯାଇଛି । ଲବ ଓ କୁଶ ପଚାରିଛନ୍ତି –

"ଥିଲା କି ଜନନୀ ତାଙ୍କୁ ନାୟିକା ଦୁର୍ଲଭ
ଅନ୍ୟ ଜାୟା ନ ଇଚ୍ଛିଲେ ଜାନକୀ ବଲ୍ଲଭ ?"

× × ×

କାନକୀ ଜାନକୀ ରାମ ରଖିଛନ୍ତି ପାଶେ ।"

ସୀତାଙ୍କର ଭ୍ରମ ଦୂର ହୋଇଛି । ସେ ନିଜକୁ ପାପିନୀ ବୋଲି ମନେ କରିଛନ୍ତି । ଚିତ୍ତ ଦୁର୍ବଳତାପାଇଁ ସେ ପ୍ରଭୁଙ୍କର କ୍ଷମା ଭିକ୍ଷା କରିଛନ୍ତି । କବିଙ୍କ ଭାଷାରେ –

"ମନେ ମନେ ବୋଇଲେ, ହା, ମୁଁ ଚିର ପାପିନୀ,
ଲେଖୁଥିଲି ଭାଷା ପ୍ରଭୁ-ହୃଦୟ ତାପିନୀ ।
ମୁଁ ସିନା ଅବଳା ଅତି ଦୁର୍ବଳ ହୃଦୟା
ଅନନ୍ତ ଅଗାଧ ମୋର ପ୍ରଭୁଙ୍କର ଦୟା
ଅପରାଧ କ୍ଷମ ନାଥ, କ୍ଷମାର ସାଗର
ବିଧିକଲା ମୋତେ ତୁମ୍ଭ ହୃଦୟର ଗିର ।"

ସ୍ୱାମୀଙ୍କ କୋଳରେ ପୁତ୍ରଦ୍ୱୟଙ୍କୁ କଳ୍ପନା କରି ସେ ନିଜକୁ ଧନ୍ୟ ମନେ କରିଛନ୍ତି । କି ରାମ, କି ତପସ୍ୱିନୀ ସୀତା ସମସ୍ତଙ୍କର ଜୀବନର ମହତ୍ତ୍ୱ ବର୍ଣ୍ଣନାରେ କବି ଅସାଧାରଣ ସଫଳତା ହାସଲ କରିଛନ୍ତି । ଏଥିରେ କବି ଆଶ୍ରମ ଜୀବନର ଏକ ନିଖୁଣ ଚିତ୍ର ଦେଇଛନ୍ତି । ପ୍ରାଣହୀନ ପ୍ରକୃତିକୁ ସମ୍ପୂର୍ଣ୍ଣ ଜୀବନ୍ତ କରିଛନ୍ତି । ସୁମଧୁର ଭାଷା ଓ ଛନ୍ଦର ପ୍ରୟୋଗରେ ତପସ୍ୱିନୀ ଏକ ମହନୀୟ କାବ୍ୟରୂପ ନେଇଛି । ପ୍ରାୟ ସବୁ ଆଲୋଚକ 'ତପସ୍ୱିନୀ'କୁ ହିଁ କବି ଗଙ୍ଗାଧରଙ୍କ ସର୍ବଶ୍ରେଷ୍ଠ କାବ୍ୟ ବୋଲି ଗ୍ରହଣ କରନ୍ତି । "ତପସ୍ୱିନୀ କାଳସ୍ରୋତ ମଧ୍ୟରେ ନିଶ୍ଚିହ୍ନ ନ ହୋଇ କାଳଗର୍ଭରେ ଏକ ଦ୍ୟୁତିମନ୍ତ ଆଲେଖ୍ୟରୂପେ ପରିଦୃଶ୍ୟମାନ ଯେ ହେଉଥିବ, ଏଥିରେ ସନ୍ଦେହ ନାହିଁ ।"

## ପ୍ରଣୟ ବଲ୍ଲରୀ

ଗଙ୍ଗାଧର ଉପାଧିଧାରୀ ନ ଥିଲେ ମଧ୍ୟ ବିଜ୍ଞ ବ୍ୟକ୍ତି ଥିଲେ । ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ହିନ୍ଦୀ ଭାଷାରେ ତାଙ୍କର ଯଥେଷ୍ଟ ପ୍ରବେଶ ଥିଲା । ବିଶେଷତଃ, ସଂସ୍କୃତ ଭାଷା ପ୍ରତି ତାଙ୍କର ଗଭୀର ମମତା ଥିଲା । ସେ ତେଣୁ ସଂସ୍କୃତ ସାହିତ୍ୟର ବିଶ୍ୱବିଶ୍ରୁତ କବି କାଳିଦାସଙ୍କ କାବ୍ୟକୃତିକୁ ଅଧ୍ୟୟନ କରିଥିଲେ । ସେ 'ଅଭିଜ୍ଞାନ ଶାକୁନ୍ତଳମ୍'ର କଥାବସ୍ତୁକୁ ନେଇ ରଚନା କଲେ ଆଉ ଏକ ଅମର କାବ୍ୟ – 'ପ୍ରଣୟ ବଲ୍ଲରୀ' । ୧୯୧୫ ମସିହାରେ ଏହା ପ୍ରକାଶ ପାଇଲା ।

ମୂଳ ସଂସ୍କୃତ ନାଟକରେ ସାତ ଗୋଟି ସର୍ଗ ଥିଲା ଭଳି 'ପ୍ରଣୟବଲ୍ଲରୀ' ମଧ୍ୟ ସାତୋଟି ସର୍ଗରେ ବିଭକ୍ତ । ତାହାହେଲା ପ୍ରଣୟାଙ୍କୁର, ପ୍ରଣୟ ପଲ୍ଲବ, ପ୍ରଣୟ ପ୍ରସୂନ, ପ୍ରଣୟ ସୌରଭ, ପୁଷ୍ପେ କୀଟ, ପ୍ରଣୟ ଫଳ ଓ ପ୍ରଣୟ ଛାୟା । ଏହା ନିର୍ମଳ ଓ ସଂଯତ ପ୍ରଣୟର ଉତ୍ସ । ଉତ୍କଳ ସାହିତ୍ୟରେ ପବିତ୍ର ପ୍ରଣୟ ଚିତ୍ରର ଅଭାବ ଦୂର ନିମନ୍ତେ ଏହା ରଚିତ ।

ଗଙ୍ଗାଧର କାବ୍ୟର ପ୍ରାରମ୍ଭରେ ମହାକବି ବ୍ୟାସଦେବ ଓ କାଳିଦାସ ଉଭୟଙ୍କର ସ୍ତୁତି ଗାନ କରିଛନ୍ତି ।

"ଜୟ ଦେବବ୍ୟାସ ଜୟଂ କାଳିଦାସ
ଭାରତୀ–ପ୍ରିୟ–ନନ୍ଦନ
ତୁମ୍ଭେ ଜ୍ଞାନ ଗୁରୁ କବି ମଣ୍ଡଳୀର
ଲଲାଟ ଶୋଭି ଚନ୍ଦନ ।"

'ପ୍ରଣୟ ବଲ୍ଲରୀ'ର ନାୟକ ହସ୍ତିନାର ନରପତି ଦୁଷ୍ମନ୍ତ । ନାୟିକା ହେଉଛନ୍ତି ଋଷି ବିଶ୍ୱାମିତ୍ର ଓ ମେନକାଙ୍କ ଗର୍ଭସମ୍ଭୂତା ଓ କଣ୍ୱ ଋଷିଙ୍କଦ୍ୱାରା ପାଳିତା ଶକୁନ୍ତଳା । ମୃଗୟା ଉଦ୍ଦେଶ୍ୟରେ ଦୁଷ୍ମନ୍ତ ବଣକୁ ଆସି ଲତା ଅନ୍ତରାଳରେ ଦେଖିଛନ୍ତି ଅପୂର୍ବ ରୂପ-ଲାବଣ୍ୟସମ୍ପନ୍ନା ଶକୁନ୍ତଳାଙ୍କୁ । ପ୍ରଥମ ଦର୍ଶନରେହିଁ ଦୁଷ୍ମନ୍ତ ଓ ଶକୁନ୍ତଳା ପରସ୍ପର ପ୍ରତି ଆକୃଷ୍ଟ ହୋଇଛନ୍ତି । ଦୁଷ୍ମନ୍ତଙ୍କୁ ଦେଖି ଶକୁନ୍ତଳାଙ୍କ ଭାବାନ୍ତର ଓ ପ୍ରତିକ୍ରିୟା କବି ଚମତ୍କାରଭାବେ ବର୍ଣ୍ଣନା କରିଛନ୍ତି –

"ବଦନ ଦୀଧିତି ଥରେ ଚାହିଁ ତାଙ୍କ
ମୁଖ କଲା ଅବନତ
ଲାଜକୁଳୀ ଲତା ଅଙ୍ଗେ କି ସହସା
ଲାଗିଗଲା କାହା ହସ୍ତ ?"

ଉଭୟଙ୍କର ଆରମ୍ଭ ହୁଏ ପ୍ରଣୟ ଓ ଶେଷରେ ହୋଇଛି ଗାନ୍ଧର୍ବ ମତରେ ପରିଣୟ । ପରେ ହସ୍ତିନାକୁ ନେବାର ପ୍ରତିଶ୍ରୁତି ଦେଇ ଦୁଷ୍ମନ୍ତ ପ୍ରତ୍ୟାବର୍ତ୍ତନ କରିଛନ୍ତି । ଏହାପରେ ଆରମ୍ଭ ହୋଇଛି ଶକୁନ୍ତଳାଙ୍କ ମନ ଭିତରେ ବିଚଳିତ ଭାବ । କବିଙ୍କ ଭାଷାରେ –

"ଶକୁନ୍ତଳା ତେଣେ କୁଟୀରକୁ ଗଲା
ସ୍ଥିର ହେଉ ନାହିଁ ମନ
ସଖୀଙ୍କୁ ଲୁଚାଇ ପୁନଃ ପୁନଃ କରେ
ଅଙ୍ଗୁରୀୟ ଦରଶନ ।
× × ×
ମନ ତା' ରହିଲା ନୃପ ଭାବନାରେ
କାର୍ଯ୍ୟ କରୁଥାଏ ହସ୍ତ
କରଣୀୟ କାର୍ଯ୍ୟ ଅତିକ୍ରମ କରି
ଅନ୍ୟ କର୍ମେ ହୁଏ ନ୍ୟସ୍ତ ।"

ଶକୁନ୍ତଳାଙ୍କ ଏହି ଅବସ୍ଥାରେ ଦିନେ ଆଶ୍ରମରେ ପହଞ୍ଚିଛନ୍ତି ଋଷି ଦୁର୍ବାସା । ଚିତ୍ତ ବିଭ୍ରମ ହେତୁ ଶକୁନ୍ତଳା ଅତିଥିଙ୍କ ସତ୍କାର କରିପାରି ନାହାନ୍ତି । ଦୁର୍ବାସା କ୍ରୋଧରେ ଅଭିଶାପ ଦେଇଛନ୍ତି । କିନ୍ତୁ ପ୍ରିୟ ସଖୀ ଅନସୂୟା ଓ ପ୍ରିୟମ୍ବଦାଙ୍କ ଅନୁରୋଧକ୍ରମେ ଅଭିଶାପ ଖଣ୍ଡନର ଉପାୟ ବତାଇଛନ୍ତି ।

କଣ୍ୱ ତପସ୍ୟା ଶେଷ ହୁଅନ୍ତେ ଆଶ୍ରମକୁ ଫେରିଛନ୍ତି । ଧ୍ୟାନ ବଳରେ ଶକୁନ୍ତଳାଙ୍କ ବିବାହ ବିଷୟ ଅବଗତ ହୋଇଛନ୍ତି । କନ୍ୟାକୁ ପତି ଗୃହକୁ ବିଦାୟ ଦେବାକୁ ବ୍ୟବସ୍ଥା କରିଛନ୍ତି । ପିତୃ ହୃଦୟର ବିଳାପ କାବ୍ୟରେ ଅତି ଜୀବନ୍ତ ହୋଇଛି । ବିଦାୟ ବେଳେ କନ୍ୟାକୁ ଉପଦେଶ ଦେଇଛନ୍ତି । ଚତୁର୍ଥ ସର୍ଗରେ ପାରିବାରିକ ଜୀବନରେ ଗୃହିଣୀର କର୍ତ୍ତବ୍ୟ ବିଷୟରେ ଗଙ୍ଗାଧର ବର୍ଣ୍ଣନା କରିଛନ୍ତି –

''ନାବ ବିନା କେହି ସଂସାରେ ପଶିଲେ
ଲଭଇ ଘୋର ବିପଦ
ସଂସାର ସାଗର ପାଇଁ ମହାପୋତ
ଏକ ମାତ୍ର ସ୍ୱାମୀ ପଦ

× × ×

ସ୍ୱାମୀ ପଦେ ଭକ୍ତି ଅର୍ଚ୍ଚନାରେ ମତି
ଅର୍ପି ତୁ କରିବୁ କର୍ମ ।''

ଏହାପରେ ଶକୁନ୍ତଳା ପତି ଗୃହକୁ ଯାଇଛନ୍ତି । ବାଟରେ ପ୍ରିୟତମ ଦେଇଥିବା ମୁଦ୍ରିକାକୁ ହଜାଇ ଦେଇଛନ୍ତି । ଅଭିଶାପ ଫଳରେ ଦୁଷ୍ମନ୍ତ ମଧ୍ୟ ଅତୀତକୁ ପାସୋରି ଯାଇଛନ୍ତି । କଣ୍ୱ ମୁନିଙ୍କ ପତ୍ର ପାଇ ଦୁଷ୍ମନ୍ତଙ୍କର ପ୍ରତିକ୍ରିୟା ପୁଷ୍ପେ କୀଟରେ ବର୍ଣ୍ଣିତ –

''ସତ୍ୟ ନା କୁହୁକ ବୁଝିପାରୁ ନାହିଁ
କି ଦେବି ଏଥି ଉତ୍ତର
ପଠନ ଭ୍ରମ ବା ବୋଲି ଆଉ ଥରେ
ପଢ଼ିଲେ ପୁଣି ପତର ।''

ଦୁଷ୍ମନ୍ତ ଶକୁନ୍ତଳାଙ୍କୁ ଗ୍ରହଣ କରି ନାହାନ୍ତି । ଶକୁନ୍ତଳା ହେମକୂଟ ପର୍ବତରେ ଭାଗ୍ୟକୁ ଆଦରି ରହିଛନ୍ତି । ସେଠାରେ ତାଙ୍କର ସନ୍ତାନ ମଧ୍ୟ ଜନ୍ମ ହୋଇଛି । ଧୀବର ହାତରୁ ନାମାଙ୍କିତ ମୁଦ୍ରିକା ପାଇବାପରେ ଦୁଷ୍ମନ୍ତଙ୍କର ଅତୀତ ସ୍ମୃତି ଜାଗ୍ରତ ହୋଇଛି । ଅନୁତାପାନଳରେ ସେ ଦଗ୍ଧ ହୋଇଛନ୍ତି । କବି ଗଙ୍ଗାଧର ଅନବଦ୍ୟ ଭାଷାରେ ତାହାକୁ ପ୍ରକାଶ କରିଛନ୍ତି –

''ଆଉ କିଏ ଦଗଧ ଜୀବନେ ମିଳିବ
ସୁରଭି ସୁମନ ଆସି
ତା' କଷ୍ଟ ରଜନୀ ମୋ ତାପ ଦିବସ
ଦାରୁଣତା ଦେବ ନାଶି ।''

ପୁଣି – "ବଲ୍ଲଭୀ ହେମନ୍ତ ବିଭାବରୀ ହୋଇ
ବର୍ଷୁଥିବ ଅଶ୍ରୁକଣ
ନୟନ ମୋହର ବାରି ବରଷୁଛି
ହୋଇ ପ୍ରାବୃଟର ଘନ ।"

ଶେଷରେ ଅସୁର ବିନାଶପାଇଁ ଦୁଷ୍ମନ୍ତ ସ୍ୱର୍ଗକୁ ଯାତ୍ରା କରିଛନ୍ତି । ଫେରିବା ସମୟରେ ହେମକୂଟ ପର୍ବତରେ ପତ୍ନୀ ଓ ପୁତ୍ର ସହିତ ମିଳନ ହୋଇଛି । ପ୍ରଣୟ ପୁଷ୍ପ ପ୍ରସ୍ଫୁଟନଦ୍ୱାରା କାବ୍ୟର ପରିସମାପ୍ତି ଘଟିଛି ।

"ପବିତ୍ର ଦମ୍ପତି ପ୍ରେମ ସୁଖ ଚାହିଁ
ଗିରି ହେଲା ପୁଲକିତ
ଫୁଟିଗଲା ଫୁଲ କଳିକା ଫୁଟିଲା
କୁସୁମ ହେଲା ସ୍ଖଳିତ ।"

କାବ୍ୟରେ ପ୍ରଣୟ ମୁଖ୍ୟ ସ୍ଥାନ ଅଧିକାର କରିଥିବାରୁ କାବ୍ୟର ନାମ 'ପ୍ରଣୟ ବଲ୍ଲରୀ' ହୋଇଛି ।

ବିଶିଷ୍ଟ ସାହିତ୍ୟିକ ପଣ୍ଡିତ ନୀଳକଣ୍ଠ ଦାସ 'ପ୍ରଣୟ ବଲ୍ଲରୀ'କୁ କେବଳ ସୁନ୍ଦର ଅନୁବାଦର ଗୌରବ ଦେଇଛନ୍ତି । ଆହୁରି ବହୁ ସମାଲୋଚକ ଏହି ମତକୁ ସମର୍ଥନ କରନ୍ତି । ମାତ୍ର ଏହା ଯଥାର୍ଥ ନୁହେଁ । 'ପ୍ରଣୟ ବଲ୍ଲରୀ'ର ସୃଷ୍ଟି ସୌନ୍ଦର୍ଯ୍ୟରେ କବି ପ୍ରତିଭାର ମୌଳିକତା ସୁସ୍ପଷ୍ଟ । ଆଲୋଚକ ଅସିତ କବି କହିଛନ୍ତି ଯେ କବିତିଳକ କାଳିଦାସଙ୍କ ଅପରୂପ ସୃଷ୍ଟି 'ଅଭିଜ୍ଞାନ ଶାକୁନ୍ତଳମ୍' ଅନୁସରଣରେ ଗଙ୍ଗାଧର 'ପ୍ରଣୟବଲ୍ଲରୀ' କାବ୍ୟ ପ୍ରଣୟନ କରିଥିଲେ ମଧ୍ୟ ସ୍ୱୟଂ ଯାଦୁକରୀ ପ୍ରତିଭାଦ୍ୱାରା ଆହରଣରେ ମୌଳିକତା, କଳ୍ପନା ବିଳାସ ଓ ବର୍ଣ୍ଣନାର ମାଧୁର୍ଯ୍ୟ ତଥା ଚାତୁର୍ଯ୍ୟରେ ସ୍ୱକୀୟତାର ଯେଉଁ ମଧୁର ସ୍ପର୍ଶ ଦେବାକୁ ସମର୍ଥ ହୋଇପାରିଛନ୍ତି, ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ ।

ପ୍ରାଚ୍ୟ ପରମ୍ପରା ଆଦର୍ଶରେ ପ୍ରେମଧର୍ମ ପ୍ରତିଷ୍ଠାରେ ସତ୍ୟଧର୍ମର ବିଜୟ ଘୋଷଣା ନିମନ୍ତେ କବି କାବ୍ୟଟି ରଚନା କରିଛନ୍ତି । ଚରିତ୍ର ଚିତ୍ରଣ ମଧ୍ୟ ଚମତ୍କାର ହୋଇଛି । କବି ଶକୁନ୍ତଳାଙ୍କୁ ପ୍ରଣୟ-ମୁଗ୍ଧା ସରଳ-ହୃଦୟା ନାରୀ ଭାବେ ଚିତ୍ରଣ କରିଛନ୍ତି । ଶକୁନ୍ତଳା ଏଠାରେ ପ୍ରେମଗତପ୍ରାଣା । ଗୌତମୀ ଓ ତାପସ କୁମାରଙ୍କ ଆଗରେ ସେ ବିଜନ ପ୍ରେମ କଥା କହି ନାହାନ୍ତି । ପତିଙ୍କ ବିରୋଧାଭାଷକୁ ପରିହାସ ବୋଲି ମନେ କରିଛନ୍ତି । ଶକୁନ୍ତଳା କବିଙ୍କର ଏକ ସ୍ୱତନ୍ତ୍ର ସୃଷ୍ଟି । କାବ୍ୟରେ ମଧ୍ୟ ପ୍ରକୃତି ସହିତ କବିପ୍ରାଣର ସଂଯୋଗ ସ୍ଥାପିତ ହୋଇଛି । ତାଙ୍କ ପ୍ରକୃତିରେ ବ୍ୟକ୍ତିତ୍ୱ ଆରୋପ କରି କବି ଜଡ଼ ପ୍ରକୃତିକୁ

ସଚେତନ କରିଦେଇଛନ୍ତି । କାବ୍ୟରେ ପ୍ରକୃତି ସହାନୁଭୂତିଶୀଳା । ମଣିଷର ଦୁଃଖରେ ଅଧୀରା, କାତରା । ପୁଣି ତା'ର ଆନନ୍ଦରେ ଆନନ୍ଦମୟୀ ।

କେତେକ ଆଲୋଚକଙ୍କ ମତରେ 'ପ୍ରଣୟ ବଲ୍ଲରୀ' ହିଁ କବିଙ୍କ ଶ୍ରେଷ୍ଠ କାବ୍ୟକୃତି ।

**ଅର୍ଘ୍ୟଥାଳୀ**

ଏହା ୧୯୧୮ ରେ ପ୍ରକାଶିତ ହୋଇଥିବା ! ଏଥିରେ ଥିବା ଅନେକ କ୍ଷୁଦ୍ର କବିତା ଏଥି ପୂର୍ବରୁ ପତ୍ରପତ୍ରିକାମାନଙ୍କରେ ପ୍ରକାଶ ପାଇଥିଲା ।

ସେହି କବିତା ମଧ୍ୟରୁ କେତେକ ଭକ୍ତିମୂଳକ । ତାହାର ଗୋଟିଏ ଉଦାହରଣ -

''କି ଦେଇ ପୂଜିବି ଯାହା ମୁଁ ଦେଖୁଛି
ସବୁ ତୁମରି ପ୍ରସାଦ
ଯାହା ପରସାଦ ତାକୁ ଅରପିଲେ
ହେବ ସିନା ଅପରାଧ
× × ×
ଦୂରୁ ଶ୍ରୀଚରଣ ଅର୍ପଣ କରୁଛି
ଘେନ ତା' ବିଶ୍ୱ ସମ୍ରାଟ୍ ।''

ତାଙ୍କର ଅନେକ କବିତା ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ. ଯଥା -

''ମୁଁ ତ ଅମୃତ ସାଗର ବିନ୍ଦୁ
ନଭେ ଉଠିଥିଲି ତେଜି ସିନ୍ଧୁ
ଖସି ମିଶିଛି ଅମୃତଧାରେ
× × ×
ଅମୃତମୟ ଅମୃତମୟ
ସହିତ ମିଶିବି ସାଗରେ ।''

କେତେକ କବିତାରେ ତାଙ୍କର ଜାତୀୟତା ଭାବ ମିଳେ ।

ଉଦ୍‌ବୋଧନ କବିତାରେ ସେ ମାତୃଭାଷାକୁ ଉଚ୍ଚ କରିବାପାଇଁ କହିଛନ୍ତି, ଯଥା -

''ଉଚ୍ଚ ହେବାପାଇଁ କର ଯେବେ ଆଶା
ଉଚ୍ଚ କର ଆହେ ନିଜ ମାତୃଭାଷା ।''

'ମାତୃଭୂମି' କବିତାରେ କବି ମାତୃଭୂମି ପ୍ରୀତିର ପରିଚୟ ଦେଇଛନ୍ତି ।

''ମାତୃଭୂମି ମାତୃ ଭାଷାର ମମତା
ଯା ହୃଦେ ଜନମି ନାହିଁ
ତାକୁ ଯେବେ ଜ୍ଞାନୀ ଗଣରେ ଗଣିବା
ଅଜ୍ଞାନୀ ରହିବେ କାହିଁ ?

ପୁଣି – "ମାତୃଭୂମି ମାତୃଭାଷାର ବଦନ
ଦୀପ୍ତକର ଦେଇ ଧନ ଧ୍ୟାନ ମନ ।"

ଜୀବନରେ ସାଧୁତା ବା ଶ୍ରେଷ୍ଠତା ଲାଭପାଇଁ କବି କେତେକ କବିତା ଲେଖିଛନ୍ତି । ସେଥିମଧ୍ୟରୁ ଗୋଟିଏ ହେଲା ସୁଭାବ ଓ ସ୍ୱଭାବ । ଏଥିରେ ସେ ଲେଖିଛନ୍ତି –

"ଚଣ୍ଡାଳ କୁଟୀରେ ଜନ୍ମ ହେଲେ କିସ ହେବ
ସାଧୁତାରେ ନର ମଧ୍ୟ ହୋଇପାରେ ଦେବ ।"

କର୍ମଗୁଣ ବିଷୟରେ ଗଙ୍ଗାଧର କହିଛନ୍ତି –

"ଉଚ୍ଚ ସେହୁ ଉଚ୍ଚ କର୍ମ କରେ ଯେହୁ ଜନ
କରମ ନିମନ୍ତେ ନାହିଁ ବଂଶ ପ୍ରୟୋଜନ ।
ନୀଚ ହୋଇ କରେ ଯେବେ ଉତ୍ତମ କରମ
ତା' ଚରଣେ ଉଚ୍ଚ ସେବେ ସଂସାର ଧରମ ।"

'ଏଭରେଷ୍ଟ' ଓ 'ପ୍ରଧାନପଟ' ପ୍ରଭୃତି କେତେକ ଚତୁର୍ଦ୍ଦଶପଦୀ କବିତା ମଧ୍ୟ ଏଥିରେ ଅଛି ।

'ପଞ୍ଚାୟତ' କବିତାରେ କବି ହଇରାଣ କରୁଥିବା ଗ୍ରାମ ଅଧିପତିମାନଙ୍କୁ ନିନ୍ଦା କରିଛନ୍ତି । 'ବିଦୁର ପ୍ରଜାଗର' କବିତାରେ କବି ଅସାଧୁ କର୍ମଚାରୀ, ମୂର୍ଖ, ତୋଷାମଦକାରୀ ପ୍ରଭୃତିଙ୍କୁ କଠୋର ଭାବରେ ସମାଲୋଚନା କରିଛନ୍ତି । ରାଧାନାଥ ରାୟ, ମଧୁସୂଦନ ରାଓଙ୍କ 'ସ୍ୱର୍ଗାରୋହଣ ଦୃଶ୍ୟ', 'ସ୍ୱର୍ଗୀୟା କୃଷ୍ଣାକୁମାରୀ', 'ଫକୀରମୋହନଙ୍କ ମୃତ୍ୟୁଶଯ୍ୟା ନିକଟରେ ଉତ୍କଳ ମାତାର ରୋଦନ' ପ୍ରଭୃତି କବିତାରେ ସେ ସେମାନଙ୍କ ପ୍ରତି ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଛନ୍ତି ।

## କୃଷକ ସଙ୍ଗୀତ

ପଦ୍ମପୁରରେ ରହିଥିଲାବେଳେ ଗୁଣଗ୍ରାହୀ ଜମିଦାର, ଦେବାନ ପ୍ରଭୃତି କୃଷକମାନଙ୍କପାଇଁ ଗୋଟିଏ ପୁସ୍ତକ ରଚନା କରିବାକୁ ଗଙ୍ଗାଧରଙ୍କୁ ଅନୁରୋଧ କରିଥିଲେ । ଫଳରେ ସେ ଚାଷୀମାନଙ୍କପାଇଁ ଏକ ପୁସ୍ତକ ରଚନା ଦିଗରେ ବ୍ରତୀ ହେଲେ । ତାହା 'କୃଷକ ସଙ୍ଗୀତ' ରୂପରେ ପ୍ରକାଶିତ ହେଲା । ଏହା ମଧ୍ୟ ସେତେବେଳେ ସେ ଅଞ୍ଚଳରେ ଜନପ୍ରିୟତା ହାସଲ କରିଥିଲା ।

ଅନ୍ନର ମହିମା କବିତାରେ ସେ ଅନ୍ନର ଗୁରୁତ୍ୱ ପ୍ରତିପାଦନ କରିଛନ୍ତି ।

"ଅନ୍ନପାଇଁ ମାନବ ବୁଲଇ ଭୁବନେ
ଅନ୍ନପାଇଁ ବିହଙ୍ଗ ଉଡ଼ଇ ଗଗନେ ।"

ଅଥବା – "ଅନ୍ନ ଘେନି ରହିଛି ଅଖିଳ ସଂସାର
ଅନ୍ନ ବିନା ଜଗତେ ଉଠେ ହାହାକାର ।"

'କୃଷିର ଗୌରବ' କବିତାରେ ମାନବ ସଭ୍ୟତାର କ୍ରମବିକାଶ ବର୍ଣ୍ଣିତ ।

"ବୁଲୁଥିଲା ମାନବ ଦେଶ ଦେଶାନ୍ତର
କୃଷି ତାକୁ କହିଲା ରହ କରି ଘର
ସ୍ଥାୟୀ ଘରେ ଥିବାରୁ ସ୍ଥିର ହେଲା ମନ ।
ତେବେ ସିନା କରିଛ ମାନବ ଉନ୍ନତି ବିଧାନ ।"

ଏହାଛଡ଼ା ଆଖୁଚାଷ, ଭୂମି ବିଭାଗ, ଧାନ ଚାଷ, ଗହମ, କନ୍ଦମୂଳ, ପିଆଜ, ବାଇଗଣ, ଆଳୁ, କୋବି, କଦଳୀ, ସାରୁ, କପା, ପାନ ପ୍ରଭୃତି ଚାଷର ବର୍ଣ୍ଣନା ଏଥିରେ ଅଛି । ପାନ ଖାଇବାର ବ୍ୟାପକତା ସମ୍ପର୍କରେ କବି 'ପାନ' କବିତାରେ ଲେଖିଛନ୍ତି –

"ପୂରିଲାଣି ଏ ଦେଶ ପର୍ଣ୍ଣସେବି ଲୋକେ
ଶୁଭ୍ର ଦନ୍ତ କେବଳ ରହିଛନ୍ତି ଥୋକେ ।"

ବିଶ୍ୱରେ କୃଷି ସାହିତ୍ୟରେ ଭର୍ଜିଲ୍‌ଙ୍କ ନାମ ଉଲ୍ଲେଖଯୋଗ୍ୟ । ବିଶ୍ୱ ସାହିତ୍ୟରେ କୃଷି ଉପରେ ଗୌରବ ଅର୍ଜନ କରିଥିବା କବିଙ୍କ ସଂଖ୍ୟା ଅତି ନଗଣ୍ୟ । ସମଗ୍ର ଭାରତରେ ସେ ଗୌରବର ଅଧିକାରୀ ଜଣେ ମାତ୍ର କବି । ଆଲୋଚକଙ୍କ ମତରେ ସେ ହେଉଛନ୍ତି ଦରିଦ୍ର ଉତ୍କଳର ନିଃସ୍ୱ ଓ ସ୍ୱଳ୍ପଶିକ୍ଷିତ ସାହିତ୍ୟିକ ଗଙ୍ଗାଧର ।

**ଭାରତୀ ଭାବନା**

କବିଙ୍କର ଶେଷ ଅବଦାନ ହେଉଛି 'ଭାରତୀ ଭାବନା' । ଏହା ୧୯୨୩ ମସିହାରେ ପ୍ରକାଶିତ ହୋଇଥିଲା । ଭାରତରେ ୧୯୨୦ ମସିହାରୁ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ସ୍ୱାଧୀନତା ଆନ୍ଦୋଳନ ଆରମ୍ଭ ହେଲା । ସମ୍ବଲପୁରରେ, ଏପରିକି ବରପାଲିର ବହୁ ବ୍ୟକ୍ତି ସ୍ୱାଧୀନତା ସଂଗ୍ରାମରେ ଝାସ ହେଲେ । କବିଙ୍କୁ ସେତେବେଳକୁ ଷାଠିଏ ବର୍ଷ ହୋଇଥିଲେ ମଧ ସେ ଏଥିରେ ଉଦ୍‌ବୁଦ୍ଧ ହୋଇପଡ଼ିଥିବା ସ୍ପଷ୍ଟ । 'ଭାରତୀ ଭାବନା' ଜାତୀୟତାବୋଧର ପରିଚୟ ଦିଏ । ଏହି କବିତାରେ କବି ଦ୍ୱ୍ୟର୍ଥବୋଧକ ପଦ ବ୍ୟବହାର କରିଛନ୍ତି । ଗୋଟିଏ ଅର୍ଥରେ ଏହା ପୌରାଣିକ କଥାବସ୍ତୁକୁ ବୁଝାଏ । ଅପର ଅର୍ଥରେ ଇଂରେଜ ଶାସନରେ ଭାରତୀୟମାନଙ୍କ ଦୁର୍ଦ୍ଦଶା ବୁଝାଇଥାଏ । ତା'ର ଉଦାହରଣ –

"ତୁମ୍ଭରି ଆଗରେ ତୁମ୍ଭର ପରାୟେ
ମୁସଲମାନ ଥିଲେ ଆସି
କୋପନ ସ୍ୱଭାବ ହେଲେହେଁ ତାଙ୍କର
ସମସ୍ତେ ଥିଲେ ନାହିଁ ଗ୍ରାସୀ ।"

ଗୋଟିଏ ଅର୍ଥରେ, କୃଷ୍ଣଙ୍କ ବଡ଼ ଭାଇ ମୂଷଳୀ ଅର୍ଥାତ୍ ବଳରାମ ଆସିଥିଲେ । ସେ ରାଗିଥିଲେ ମଧ୍ୟ ପିନ୍ଧିବା ଲୁଗା ପର୍ଯ୍ୟନ୍ତ ହରଣ କରି ନ ଥିଲେ । କୃଷ୍ଣ କିନ୍ତୁ ବସ୍ତ୍ର ହରଣ କଲେ ! ଅପର ଅର୍ଥରେ, ଇଂରେଜମାନଙ୍କ ପୂର୍ବରୁ ମୁସଲମାନମାନେ ଶାସନ କରିଥିଲେ । ସେମାନେ କ୍ରୋଧୀ ଥିଲେ ମଧ୍ୟ ସବୁ ନେଇ ନ ଥିଲେ । କିନ୍ତୁ ଇଂରେଜମାନେ ଏ ଦେଶର ବୟନ ଶିଳ୍ପକୁ ମଧ୍ୟ ଧ୍ୱଂସ କଲେ ।

ଏହି କବିତା ଜନ ସମାଜକୁ ପ୍ରଭାବିତ କରିଥିବାର ଜଣାଯାଏ । ଏ ପୁସ୍ତକରେ ଇଂରେଜ ବିରୋଧୀ ଭାବ ଥିବାରୁ ଭାରତ ସରକାର ଏହାକୁ ବାଜ୍ୟାପ୍ତ କରିଥିଲେ ।

ଗଦ୍ୟ ରଚନା

ଗଙ୍ଗାଧର ତାଙ୍କର ଆତ୍ମଜୀବନୀ ଲେଖିବାକୁ ଆଗ୍ରହୀ ନ ଥିଲେ । ଯୁବବନ୍ଧୁ ବ୍ରଜମୋହନ ପଣ୍ଡାଙ୍କ ବାରମ୍ବାର ଅନୁରୋଧ ଫଳରେ ସେ ଆତ୍ମଜୀବନୀ ଲେଖିବା ଆରମ୍ଭ କଲେ ସତ୍ୟ, ମାତ୍ର ଅଧିକ ଅଗ୍ରସର ହୋଇପାରି ନ ଥିଲେ । ସେ ବଡ଼ ନମ୍ର ସ୍ୱଭାବର ଥିଲେ । ନିଜକୁ ନଗଣ୍ୟ ବୋଲି ମନେକରୁଥିଲେ । ତେଣୁ ତାକୁ ପୂର୍ଣ୍ଣାଙ୍ଗ କରିବାକୁ ଇଚ୍ଛା ନ କରିବା ସ୍ୱାଭାବିକ । 'ନୃପରାଜ ସିଂହ', 'କବି ଫକୀରମୋହନ' ପ୍ରଭୃତି ଜୀବନୀ ରଚନା । 'ଶିକ୍ଷିତ, ଅଶିକ୍ଷିତ ଓ ଶିକ୍ଷାଭିମାନୀ' ତାଙ୍କର ଏକମାତ୍ର ବିଶ୍ଳେଷଣାତ୍ମକ ପ୍ରବନ୍ଧ । ସ୍ୱଳ୍ପ ହେଲେ ମଧ୍ୟ ସେହି ଗଦ୍ୟ ରଚନାରୁ ତାଙ୍କର ନୈସର୍ଗିକ ପ୍ରତିଭାର ପରିଚୟ ମିଳେ ।

**ଶେଷ ଜୀବନ**

କବିବର ରାଧାନାଥ ଗଙ୍ଗାଧରଙ୍କ ପ୍ରତିଭାର ପୂଜାରୀ ଥିଲେ ବୋଲି ଆଗରୁ ବର୍ଣ୍ଣିତ । ଦୁହିଁଙ୍କ ମଧ୍ୟରେ ମଧ୍ୟ ଘନିଷ୍ଠ ବନ୍ଧୁତ୍ୱ ଥିଲା । ଗଙ୍ଗାଧର ବ୍ୟକ୍ତିଗତ ଜୀବନରେ ମଧୁରାଳାପୀ ଥିଲେ । ତାଙ୍କର ସୌମ୍ୟ ମୂର୍ତ୍ତି, ନମ୍ର ବ୍ୟବହାର ଓ ସୌଜନ୍ୟ ରାଧାନାଥଙ୍କୁ ଅଭିଭୂତ କରିପକାଇଥିଲା । ସେ ଗଙ୍ଗାଧରଙ୍କ ପାଖକୁ ପତ୍ର ଲେଖିବାକୁ ଅଶେଷ ଆନନ୍ଦ ପାଉଥିଲେ । ରାଧାନାଥ ଥରେ କହିଥିଲେ ଯେ ଓଡ଼ିଶାକୁ ସ୍ନେହ କରିବାର ତାଙ୍କର ଯେବେ ଅନ୍ୟ କାରଣ ନ ଥାଆନ୍ତା, ଏକମାତ୍ର (ଗଙ୍ଗାଧରଙ୍କ) ହେତୁ ସେ ଓଡ଼ିଶାକୁ ସ୍ନେହ କରିବେ । ଗଙ୍ଗାଧର ମଧ୍ୟ ରାଧାନାଥଙ୍କୁ ବନ୍ଧୁଭାବେ ଗ୍ରହଣ କରିଥିଲେ । ସେ କେବଳ ସ୍ୱରଚିତ ପୁସ୍ତକପାଇଁ ମତାମତ ମାଗୁ ନ ଥିଲେ, ଦୁଃଖ, ଦୁର୍ଦ୍ଦିନରେ ତାଙ୍କଠାରୁ ଉପଦେଶ ମାଗୁଥିଲେ । ରାଧାନାଥ ମଧ୍ୟ ତାହା ଦେବାକୁ ସବୁବେଳେ ପ୍ରସ୍ତୁତ ଥିଲେ ।

ସେହିପରି ଗଙ୍ଗାଧରଙ୍କର ଫକୀରମୋହନଙ୍କ ସହିତ ସମ୍ପର୍କ କେବଳ ପତ୍ର ଆଦାନ ପ୍ରଦାନ ମଧ୍ୟରେ ସୀମିତ ନ ଥିଲା । କୌଣସି କାର୍ଯ୍ୟରେ ଫକୀରମୋହନ ସମ୍ବଲପୁର ଯାଇଥିଲାବେଳେ ଗଙ୍ଗାଧରଙ୍କୁ ସାକ୍ଷାତ୍ କରିଥିଲେ । ସେ ଭାବାବେଗରେ ଗଙ୍ଗାଧରଙ୍କୁ କୁଣ୍ଢାଇ ପକାଇଥିଲେ । ଦୁହେଁ ସମ୍ବଲପୁରର ଦର୍ଶନୀୟ ସ୍ଥାନମାନ ବୁଲି ଦେଖିଥିଲେ । ଗଙ୍ଗାଧର ମଧ୍ୟ ଉତ୍କଳ ସମ୍ମିଳନୀରେ ଯୋଗ ଦେବାକୁ ଯାଇଥିଲାବେଳେ ଫକୀରମୋହନଙ୍କ ଗୃହରେ ରହିଥିଲେ । ସେଠାରେ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଆଲୋଚନା କରିଥିଲେ ।

କବି ନନ୍ଦକିଶୋର ବଳ ମଧ୍ୟ ଗୁଣଗ୍ରାହୀ ଥିଲେ । ସେ 'ଇନ୍ଦୁମତୀ' କାବ୍ୟ ପାଠକରି ଅଭିଭୂତ ହୋଇପଡ଼ିଥିଲେ । ସେ ନୂତନ କାବ୍ୟ ପ୍ରଣୟନ କରିବାପାଇଁ ଗଙ୍ଗାଧରଙ୍କୁ ଯେପରି ଭାବରେ ଉତ୍ସାହ ବାଣୀ ଶୁଣାଇଥିଲେ ତାହା ପୂର୍ବରୁ ବର୍ଣ୍ଣିତ । ନନ୍ଦକିଶୋର ସମ୍ବଲପୁର ଜିଲ୍ଲା ସ୍କୁଲରେ ହେଡ଼ମାଷ୍ଟର ଭାବେ ଥିଲାବେଳେ ଉଭୟଙ୍କ ମଧ୍ୟରେ ଘନିଷ୍ଠ ବନ୍ଧୁତ୍ୱ ସ୍ଥାପିତ ହୋଇଥିଲା । ସେ ଗଙ୍ଗାଧରଙ୍କୁ ସମ୍ବଲପୁର କାହିଁକି ସମଗ୍ର ଉତ୍କଳର ରତ୍ନ ବୋଲି ଆଖ୍ୟା ଦେଇଥିଲେ । ଗଙ୍ଗାଧରଙ୍କ ଭଳି ରତ୍ନର ଆଦର ନ ହେବାରୁ ସେ ଦୁଃଖ ପ୍ରକାଶ କରିଥିଲେ ।

୧୯୦୩ ମସିହାରେ ଗଙ୍ଗାଧର ଉତ୍କଳ ସମ୍ମିଳନୀରେ ଯୋଗ ଦେବାକୁ କଟକ ଗଲେ । ସେତେବେଳେ ସେ କବିବର ରାଧାନାଥଙ୍କ ଗୃହରେ ଅବସ୍ଥାନ କରିଥିଲେ । ରାଜା ବୈକୁଣ୍ଠନାଥଦେବଙ୍କ ସହ ସାକ୍ଷାତ୍ ବେଳେ ରାଧାନାଥ ଗଙ୍ଗାଧରଙ୍କୁ ଉତ୍କଳର ରବିବର୍ମା ବୋଲି ଅଭିହିତ କରିଥିଲେ । ରାଜାସାହେବ ମଧ୍ୟ ଗଙ୍ଗାଧରଙ୍କୁ ଗଭୀର ସମ୍ମାନ ଦେଖାଇଥିଲେ । ତାଙ୍କ ଯିବା ପରେ ଧରାକୋଟର ରାଜା ସେଠାରେ ଉପସ୍ଥିତ ହେଲେ । ତାଙ୍କୁ ମଧ୍ୟ ରାଧାନାଥ ସେହିଭାବେ ପରିଚୟ କରାଇଲେ । ଧରାକୋଟ ରାଜା ତାଙ୍କୁ ସମ୍ମାନ ପ୍ରଦର୍ଶନ କରି ଧରାକୋଟ ଯିବାପାଇଁ ଅନୁରୋଧ କରିଥିଲେ ।

ରାଧାନାଥଙ୍କ ମୃତ୍ୟୁ ଗଙ୍ଗାଧରଙ୍କୁ ବ୍ୟଥିତ କରିପକାଇଲା । ତାଙ୍କର ତିରୋଧାନ ପରେ ନୂଆ ନୂଆ କବିମାନେ ଆବଶ୍ୟକୀୟ ଉତ୍ସାହ ପାଇବେ ନାହିଁ ବୋଲି ସେ ଆଶଙ୍କା କରିଥିଲେ । ରାଧାନାଥଙ୍କ ସ୍ମୃତି ଆଜୀବନ ତାଙ୍କ ହୃଦୟରେ ଜାଗରୂକ ରହିଥିଲା । ସ୍ୱର୍ଗୀୟ କବିବରଙ୍କୁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରି ସେ ଲେଖିଥିଲେ –

"ଆସିଥିଲ ରାଧାନାଥ ବିଧିର ପ୍ରେରଣେ
ଆବଶ୍ୟକ ସମୟରେ ଉତ୍କଳର ପାଇଁ
ଭାରତୀଙ୍କୁ ମଣ୍ଡିବାକୁ ସୁରମ୍ୟ ଭୂଷଣେ
ରତନ ଖଣିର ପଥ ଦେବାକୁ ଫିଟାଇ ।"

ଓଡ଼ିଶାର ବହୁ ରାଜା ମହାରାଜା ମଧ୍ୟ ଗଙ୍ଗାଧରଙ୍କ ପ୍ରତିଭାରେ ମୁଗ୍ଧ ହୋଇଥିଲେ । ୧୯୦୫ ମସିହାରେ ସେ ବରପାଲି ଜମିଦାରଙ୍କ ସହ ବାମଣ୍ଡା ରାଜା ସଚ୍ଚିଦାନନ୍ଦ-ତ୍ରିଭୁବନଦେବଙ୍କ ଜ୍ୟେଷ୍ଠ ପୁତ୍ରର ବ୍ରତୋପନୟନ ଉପଲକ୍ଷେ ଦେବଗଡ଼ ଯାଇଥିଲେ । ସେଠାରେ ଏକ ଦରବାର ଅନୁଷ୍ଠିତ ହୋଇଥିଲା । ନମ୍ରତା ହେତୁ ଗଙ୍ଗାଧର ବରପାଲି ଜମିଦାରଙ୍କ ପଶ୍ଚାତ୍‌ଭାଗରେ ଦଣ୍ଡାୟମାନ ହୋଇଥିଲେ । ମାତ୍ର ବାମଣ୍ଡା ରାଜା ଆଗ୍ରହ ସହିତ ତାଙ୍କ ନିକଟକୁ ଡାକିନେଇ ଏକ ଉଚ୍ଚ ଆସନରେ ବସାଇଲେ । ବରପାଲି ଜମିଦାର ଏ ବିଷୟରେ ରାଜାଙ୍କ ଦୃଷ୍ଟି ଆକର୍ଷଣ କରନ୍ତେ, ଗୁଣଗ୍ରାହୀ ରାଜା ଉତ୍ତର ଦେଲେ ଯେ ଗଙ୍ଗାଧର ତାଙ୍କର ଚାକର ହୋଇପାରନ୍ତି; କିନ୍ତୁ ସେ ହେଉଛନ୍ତି ତାଙ୍କର (ରାଜାଙ୍କର) ହୃଦୟର ରାଜା । ପଦ୍ମପୁରର ଜମିଦାର ରାଜେନ୍ଦ୍ର ସିଂହ ବରିହା ମଧ୍ୟ ତାଙ୍କର ସ୍ତାବକ ଥିଲେ । ତାଙ୍କର ଆନୁକୂଲ୍ୟରେ 'ପ୍ରଣୟବଲ୍ଲରୀ' କାବ୍ୟ ପ୍ରକାଶିତ ହୋଇଥିଲା । ଗଙ୍ଗାଧର ଅବସର ଗ୍ରହଣ କଲାପରେ ପଦ୍ମପୁର ଜମିଦାର ତାଙ୍କୁ ଗୋଟିଏ ଛୋଟ ଗ୍ରାମ ପୁରସ୍କାରସ୍ୱରୂପ ଦେଇଥିଲେ । ତାଙ୍କ ସମ୍ମାନାର୍ଥେ କବିବରପୁର ନାମରେ ଏକ ନୂତନ ଗ୍ରାମ ବସାଇଥିଲେ ।

୧୯୧୪ ମସିହାରେ ଉତ୍କଳ ସମ୍ମିଳନୀର ପ୍ରଚାରକ ଅନନ୍ତ ମିଶ୍ର ପଦ୍ମପୁର ଗସ୍ତରେ ଯାଇଥିଲେ । ସେଠାରେ ଗଙ୍ଗାଧର ସ୍ୱଳ୍ପ ବେତନଭୋଗୀ କର୍ମଚାରୀଭାବେ ନିଯୁକ୍ତ ଥିବା ଦେଖିଥିଲେ । ତାଙ୍କର ଆର୍ଥିକ ଦୁରବସ୍ଥା ମଧ୍ୟ ଜାଣିବାକୁ ପାଇ ସମ୍ବାଦପତ୍ର ମାଧ୍ୟମରେ ଓଡ଼ିଶାର ରାଜାମହାରାଜାମାନଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ବାମଣ୍ଡାର ରାଜା ସଚ୍ଚିଦାନନ୍ଦ ସାଙ୍ଗେ ସାଙ୍ଗେ ବାମଣ୍ଡାରେ କବିଙ୍କର ରହିବାର ବ୍ୟବସ୍ଥା କରିବେ ବୋଲି ଜଣାଇଲେ । ଆଉ କେତେକ ରାଜାମାନେ ମଧ୍ୟ କବିଙ୍କୁ ସାହାଯ୍ୟ କରିବାପାଇଁ ଆଗ୍ରହ ପ୍ରକାଶ କଲେ । ମାତ୍ର ଜନ୍ମଭୂମି ବରପାଲି ପ୍ରତି କବିଙ୍କର ପ୍ରଗାଢ଼ ମମତା ଥିଲା । ତେଣୁ ସେ ତାଙ୍କ ଜୀବନର ଶେଷ ଭାଗରେ ଦୂରବର୍ତ୍ତୀ ସ୍ଥାନମାନଙ୍କରେ ରହିବାକୁ ଚାହିଁ ନ ଥିଲେ ।

୧୯୧୭ ମସିହାରେ ଗଙ୍ଗାଧର ବରପାଲିର ଭାବୀ-ଜମିଦାର ସୂର୍ଯ୍ୟୋଦୟ ସିଂହଙ୍କ ବାରମ୍ବାର ଅନୁରୋଧକ୍ରମେ ବରପାଲିକୁ ଆସି ବସବାସ କରି ରହିଲେ । ପ୍ରଥମେ ସେ ପ୍ରାୟ ପ୍ରତି କଥାରେ ଗଙ୍ଗାଧରଙ୍କର ପରାମର୍ଶ ନେଲେ । ମାତ୍ର ପରେ ସେ ତାହାଙ୍କୁ ହେୟ ମନେକଲେ । ଗଙ୍ଗାଧର ତାଙ୍କୁ ନାନା ଉପଦେଶ ଦେଇ ଆଦର୍ଶ ଚରିତ୍ରଭାବେ ଗଢ଼ିବାକୁ ଚାହିଁଥିଲେ ମଧ୍ୟ ତାହା ସଫଳ ହୋଇ ନ ଥିଲା । ଜମିଦାର ହେବା ପରେ ସେ ନୂତନ ଦେବାନ ମଧ୍ୟ ନିଯୁକ୍ତ କଲେ । ତାଙ୍କ ସହିତ ମନାନ୍ତର ହେବାରୁ ଗଙ୍ଗାଧର ବରପାଲି ଛାଡ଼ି

ଚାଲିଗଲେ । କ୍ରମେ ଜମିଦାରଙ୍କର ଧନର ଅଭାବ ହେଲା । ସେ ଅବୈଧ ଉପାୟରେ ଧନ ଆଦାୟ କରିବାକୁ ଲାଗିଲେ । ରାଜପରିବାରର ବହୁ ବିଶିଷ୍ଟ ବ୍ୟକ୍ତି ତାଙ୍କ ଅତ୍ୟାଚାରର ଶିକାର ହେବା ଭୟରେ ରାଜପ୍ରାସାଦ ଛାଡ଼ି ଚାଲିଗଲେ । ପ୍ରଜାମାନଙ୍କ ଉପରେ ମଧ ଅତ୍ୟାଚାର ଆରମ୍ଭ ହେଲା । ଜମିଦାରଙ୍କ ଅନୁଚରମାନେ ପ୍ରଜାଙ୍କ ଗାଈଗୋରୁ, ଛେଳି ମେଣ୍ଢା ବଳପୂର୍ବକ ଅପହରଣ କରିନେଲେ । ବହୁ ବ୍ୟକ୍ତି ଗଙ୍ଗାଧରଙ୍କ ପାଖରେ ଆସି ଆପତ୍ତି କଲେ ମଧ ସେ କିଛି କରିପାରୁ ନ ଥିଲେ । ଶେଷରେ କେତେକ ଭଦ୍ରବ୍ୟକ୍ତିଙ୍କୁ ନେଇ ସାଧୁ ସମିତି ନାମରେ ଏକ ସମିତି ଗଢ଼ିଲେ । ସେଥିରେ ଜମିଦାରଙ୍କୁ ସଭାପତି କରାଗଲା । କିଛିଦିନ ସୁରୁଖୁରୁରେ ଚାଲିଲା । ମାତ୍ର ଏହା ଜମିଦାରଙ୍କ ଦୁର୍ଦାନ୍ତ ଅନୁଚରମାନଙ୍କ ପକ୍ଷେ ସହ୍ୟ ହୋଇ ନ ଥିଲା । କାନକୁହା ଓ ଖଳ-ପ୍ରକୃତିର ଲୋକେ ଜମିଦାରଙ୍କୁ କୁମନ୍ତ୍ରଣା ଦେବାକୁ ଲାଗିଲେ । ସେମାନେ ମଧ ସାଧୁ ସମିତି ବିରୋଧରେ ସରକାରଙ୍କ ନିକଟରେ ବହୁ ଅଭିଯୋଗ ଆଣିଲେ । ବରଗଡ଼ ଏସ୍.ଡି.ଓ. ତ୍ରିବିକ୍ରମ ପୂଜାରୀ ବରପାଲିକୁ ଆସି ସମିତିର କାର୍ଯ୍ୟାବଳୀ ତଦନ୍ତ କଲେ । ମାତ୍ର ଏହାର କାର୍ଯ୍ୟରେ କୌଣସି ତ୍ରୁଟି ଥିବାର ସେ ଦେଖିପାରି ନ ଥିଲେ । ଖଳ ଲୋକଙ୍କ ଚେଷ୍ଟାରେ କିନ୍ତୁ ସମିତିର ବହୁ ସଭ୍ୟଙ୍କୁ କୌଶଳକ୍ରମେ ହସ୍ତଗତ କରାଗଲା । ଫଳରେ ସମିତିଟି ଭାଙ୍ଗିଗଲା ।

ଜମିଦାର ମଧ ଗଙ୍ଗାଧରଙ୍କୁ କୌଣସିମତେ କାବୁ କରିବାକୁ ବସିଲେ । ସାମାଜିକ ଭେଦଭାବ ସୃଷ୍ଟିପାଇଁ ଜମିଦାରଙ୍କଦ୍ୱାରା ବ୍ରାହ୍ମଣସଭା ଗଠନ କରାଗଲା । ଜମିଦାରଙ୍କ ପ୍ରତିନିଧିଭାବେ ଗଙ୍ଗାଧରଙ୍କୁ ସେହି ସଭାରେ ଯୋଗ ଦେବାକୁ ଡକାଗଲା । ମାତ୍ର ତାଙ୍କୁ ଅପମାନିତ କରାଯିବାରୁ ଗଙ୍ଗାଧର ସଭାଛାଡ଼ି ଚାଲିଆସିଲେ । ଶେଷରେ ଜମିଦାରଙ୍କ ସହିତ ସେ ସମ୍ପର୍କ ଛିନ୍ନ କରିଦେବାକୁ ବାଧ ହେଲେ । ଏଥିରେ ଜମିଦାର ଆହୁରି କ୍ରୋଧାନ୍ୱିତ ହୋଇପଡ଼ିଲେ । ଗଙ୍ଗାଧରଙ୍କୁ ଆହୁରି ଲଜ୍ଜିତ ଓ ଅପମାନିତ କରିବାପାଇଁ କେତେକ ମେହେର ବା ଭୁଲିଆ ଜାତିର ଲୋକଙ୍କୁ ନିଜ ପକ୍ଷକୁ ନେଇ ସେମାନଙ୍କୁ ମେହେର ସମାଜର ପ୍ରଧାନ କର୍ତ୍ତା କରାଗଲା । ଜମିଦାରଙ୍କ ପ୍ରଭାବ ବୃଦ୍ଧି କରିବା ଏହାର ଲକ୍ଷ୍ୟ ଯେ ଥିଲା, ଏହା ଅତି ସ୍ପଷ୍ଟ । ଗଙ୍ଗାଧରଙ୍କ ସପକ୍ଷରେ ଥିବା ବ୍ୟକ୍ତିମାନଙ୍କ ଉପରେ ଘୋର ଅତ୍ୟାଚାର ଆରମ୍ଭ ହେଲା । ସେମାନଙ୍କୁ ଧୋବା ଭଣ୍ଡାରି ବନ୍ଦ କରାଗଲା । ସେମାନଙ୍କୁ ମଧ ଶାରୀରିକ ନିର୍ଯାତନା ଦିଆଗଲା । ପରିସ୍ଥିତି ଆତଙ୍କପୂର୍ଣ୍ଣ ହୋଇପଡ଼ିଲା । ବହୁ ଲୋକେ ଗଙ୍ଗାଧରଙ୍କ ପାଖେ ଅଭିଯୋଗ କଲେ ମଧ ସେମାନଙ୍କୁ ଧୈର୍ଯ୍ୟ ଧରିବାକୁ ଗଙ୍ଗାଧର ସବୁବେଳେ ପରାମର୍ଶ ଦେଉଥିଲେ ।

ଗଙ୍ଗାଧର ତାଙ୍କର ସମର୍ଥକଙ୍କ ସହଯୋଗରେ ସମଗ୍ର ସମ୍ବଲପୁର ଅଞ୍ଚଳର ମେହେରମାନଙ୍କୁ ଡାକି ଏକ ମହାସଭାର ଆୟୋଜନ କଲେ । ମେହେର ଜାତି ମଧ୍ୟରେ ଥିବା କୁସଂସ୍କାର ଦୂର କରି ଆଦର୍ଶ ସମାଜ ଗଢ଼ିବା ଏହାର ଲକ୍ଷ୍ୟ ଥିଲା । ମାତ୍ର ଜମିଦାର ଏହାର ଘୋର ବିରୋଧ କଲେ । ତାଙ୍କର ଅନୁଚରମାନେ ମହାସଭା ମଣ୍ଡପରେ ଥିବା ପତାକାଟିକୁ କାଢ଼ି ତହିଁରେ ମଳମୂତ୍ର ତ୍ୟାଗ କରି ଗଙ୍ଗାଧରଙ୍କ ଗୃହରେ ପକାଇଦେଲେ । ଗଙ୍ଗାଧର ଅସୁସ୍ଥ ଥିଲେ ମଧ୍ୟ ମହାସଭାର ସଭ୍ୟମାନଙ୍କ ଅନୁରୋଧ ରକ୍ଷା କରି ସଭାସ୍ଥଳକୁ ଯାଇ ଅଳ୍ପ ସମୟ ରହି ଫେରିଆସିଲେ । ମହାସଭା କାର୍ଯ୍ୟ ମଧ୍ୟ ସୁଚାରୁରୂପେ ଚାଲିଲା । ଏହାର ଅଳ୍ପ ଦିନ ପରେ ଜମିଦାରଙ୍କ ନିର୍ଦ୍ଦେଶରେ ଦୁର୍ବୃତ୍ତମାନେ କବିଙ୍କ ଉପରେ ପ୍ରକାଶ୍ୟ ଭାବରେ ଆକ୍ରମଣ କଲେ । ୧୯୨୪ ମସିହା ଚୈତ୍ର ମାସ ଅମାବାସ୍ୟା ଦିନ ଗଙ୍ଗାଧର ଇହଲୀଳା ସାଙ୍ଗ କଲେ ।

କବି ଗଙ୍ଗାଧର ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଥିଲେ ଅନନ୍ୟ ପ୍ରତିଭା । ପ୍ରାଚୀନ କାବ୍ୟ-କବିତାରୁ ସେ ତାଙ୍କ ବିଷୟବସ୍ତୁ ଆହରଣ କରିଥିଲେ ମଧ୍ୟ ଚରିତ୍ର ଚିତ୍ରଣ, ଭାଷା ବିନ୍ୟାସ, ସଂଯୋଜନା ଓ ବିଷୟବସ୍ତୁର ଅବତାରଣାରେ ଯେଉଁ ନିଜସ୍ୱ ମୌଳିକତା ଦେଖାଇଛନ୍ତି, ତାହା ବାସ୍ତବିକ ଅଭୂତପୂର୍ବ । ତାଙ୍କ କାବ୍ୟକବିତାରେ ମଧ୍ୟଯୁଗର ଛନ୍ଦମୟତା ଓ ଆଧୁନିକ ଯୁଗର ସରଳତାର ଅପୂର୍ବ ସମାବେଶ ଦେଖିବାକୁ ମିଳେ । ପ୍ରକୃତିକୁ ମଧ୍ୟ ନିଜ ଲେଖନୀଦ୍ୱାରା କବି ଜୀବନ୍ୟାସ ଦେଇଛନ୍ତି । ତାହାହିଁ ମଧ୍ୟ ତାଙ୍କର ବୈଶିଷ୍ଟ୍ୟ ପ୍ରତିପାଦନ କରେ । ଏବେବି ଓଡ଼ିଶାର ଗାଁ-ଗହଳରେ, ନଗର, ଜନପଦରେ ପାଲାଗାୟକଙ୍କ କଣ୍ଠରେ 'ପ୍ରଣୟବଲ୍ଲରୀ', 'ତପସ୍ୱିନୀ' ବା 'କୀଚକ-ବଧ'ର ଲଳିତ ମଧୁର ପଦ ଶୁଣିବାକୁ ମିଳେ । ସେହି ଛନ୍ଦମଧୁର ପଦାବଳୀର ମନୋରମ ବର୍ଣ୍ଣନାରେ ଆଜି ବି ଓଡ଼ିଆ ପ୍ରାଣ ପୁଲକିତ ହୋଇଉଠେ ।

ପୃଥିବୀରେ ଯେତେଦିନ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟ ରହିଥିବ, ଗଙ୍ଗାଧର ସେତେଦିନ ଜୀବିତ ରହିବେ ବୋଲି ନନ୍ଦକିଶୋର ବଳ ଯଥାର୍ଥରେ କହିଛନ୍ତି –

''ଭିକ୍ଷୁକ ସଙ୍ଗତେ ନୃପ ମୁକୁଟ ମଣ୍ଡିତ
କାଳ ବଳେ ହେବେ ସର୍ବେ ଭବୁ ଅନ୍ତର୍ହିତ
କିନ୍ତୁ ତୁମ୍ଭେ ଦୀନ କବି ରହିବ ଜୀବିତ
ଯେତେ ଦିନ ଭବେ ଥିବ ଓଡ଼ିଆ ସାହିତ୍ୟ ।''



# ପଲ୍ଲୀକବି
# ନନ୍ଦକିଶୋର ବଳ

ଆଧୁନିକ ଓଡ଼ିଆ ସାହିତ୍ୟରେ ନନ୍ଦକିଶୋର ବଳ ଏକ ବିଶିଷ୍ଟ ଆସନର ଅଧିକାରୀ । ଓଡ଼ିଶାର ପାଣି-ପବନକୁ ସରଳ ଭାଷାରେ ଓ ସରସ ଛନ୍ଦରେ ରୂପାୟିତ କରି ସେ ଯେଉଁ ଆବେଗ ସୃଷ୍ଟି କରିଛନ୍ତି, ତା'ର ପଟାନ୍ତର ନାହିଁ । ବାସ୍ତବରେ ସେ ହେଉଛନ୍ତି ପଲ୍ଲୀକବି । ତାଙ୍କ କବିତାରେ ପଲ୍ଲୀ ଜୀବନ ଓ ପଲ୍ଲୀ ପ୍ରକୃତିର ଅପୂର୍ବ ବର୍ଣ୍ଣନା ଦେଖିବାକୁ ମିଳେ । ତାଙ୍କ କବିତାରୁ ପଲ୍ଲୀ ମାଟିର ଗନ୍ଧ ବାରିହୁଏ । ସର୍ବୋପରି ସେ ଥିଲେ ଜଣେ ଶିଳ୍ପୀ । ମଣିଷ ଜୀବନର ସୁଖ, ଦୁଃଖ, ଆନନ୍ଦ, ବେଦନା, ଶୋକ, ସନ୍ତାପ ମଧ୍ୟରେ ଯେଉଁ ଶାଶ୍ୱତ ରହସ୍ୟ କାଳ କାଳ ଧରି ଶିଳ୍ପୀପ୍ରାଣକୁ ଆଲୋଡ଼ିତ କରିଛି, ନନ୍ଦକିଶୋର ଥିଲେ ତା'ର ସଫଳ ଗୀତିକାର ।

**ଜନ୍ମ ଓ ବାଲ୍ୟଶିକ୍ଷା**

ନନ୍ଦକିଶୋର ୧୮୭୫ ମସିହା ଡିସେମ୍ବର ମାସ ୨୨ ତାରିଖ କୃଷ୍ଣପକ୍ଷ ଏକାଦଶୀ ତିଥିରେ ମାହାଙ୍ଗା ଥାନା ଅନ୍ତର୍ଗତ ରମଣୀୟ କୁସୁପୁର ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ପିତାଙ୍କ ନାମ ଭଜନାନନ୍ଦ ବେହେରା ଓ ମାତାଙ୍କ ନାମ ହିରଣ୍ମୟୀ ଦେବୀ । ସେ ଥିଲେ ପିତାମାତାଙ୍କ ଚତୁର୍ଥ ପୁତ୍ର । ବାଲ୍ୟକାଳରେ ସେ

ରସାନନ୍ଦ ଜେନା ନାମରେ ପରିଚିତ ଥିଲେ । ପୋଷ୍ୟପୁତ୍ର ହେଲା ପରେ ତାଙ୍କର ନାମ ହେଲା ନନ୍ଦକିଶୋର ବଳ । ପୋଷ୍ୟପୁତ୍ର ହେଲେ ମଧ୍ୟ ସେ କୁସୁପୁରରେ ବାଲ୍ୟଜୀବନ କଟାଇଥିଲେ ।

ସେ କାଳରେ ଶିକ୍ଷାପାଇଁ ଗ୍ରାମମାନଙ୍କରେ ଚାଟଶାଳୀ ଥିଲା । ସେ ନିଜ ଗ୍ରାମ ଚାଟଶାଳୀରେ ଶିକ୍ଷା ଆରମ୍ଭ କଲେ । ସେଠାରେ ସକାଳେ ଖଡ଼ିପାଠ ହେଉଥିଲା । ଉପରଓଳି ପୋଥି ବୋଲା ହେଉଥିଲା । ନନ୍ଦକିଶୋର ଅନ୍ୟ ପିଲାଙ୍କପରି ପଣିକିଆ, କଡ଼ାଗଣ୍ଡା, ଶୋଧି, ଓଡ଼ାଙ୍କ, ମେଲାଙ୍କ ପ୍ରଭୃତି ଶେଷ କଲେ । ସେ ଉଚ୍ଚସ୍ୱରରେ ଆବୃତ୍ତି କରିପାରୁଥିଲେ । ତାଙ୍କ ଶିକ୍ଷାଗୁରୁ ଥିଲେ ଅନନ୍ତ ମିଶ୍ର । ସେ ଚଳତ୍‌ଶକ୍ତିହୀନ ଥିଲେ; ମାତ୍ର ଚାରି ପାଞ୍ଚ ହାତ ଲମ୍ବର ବେତ ଖଣ୍ଡେ ଧରି ଛାତ୍ରମାନଙ୍କ ଗତିବିଧି ନିୟନ୍ତ୍ରଣ କରୁଥିଲେ । ନନ୍ଦକିଶୋରଙ୍କ ଅଭିଭାବକମାନେ ଅଧିକ ବିଦ୍ୟା ଶିକ୍ଷା ନିଷ୍ପ୍ରୟୋଜନ ବୋଲି ମନେକଲେ । ସେ ତେଣୁ ଜମିଦାରଙ୍କ ସିରସ୍ତାରେ କାର୍ଯ୍ୟ କରିବାପାଇଁ ତାଲିମ ପାଇଲେ ।

**ଉଚ୍ଚ ଶିକ୍ଷା**

କବିବର ରାଧାନାଥ ସେ ସମୟରେ ଓଡ଼ିଶା ଶିକ୍ଷାବିଭାଗର ଜଏଣ୍ଟ ଇନ୍‌ସପେକ୍ଟର ଥିଲେ । ସେ ଥରେ ମଧୁସୂଦନ ରାଓଙ୍କ ସହିତ ଲଳିତଗିରି ପରିଦର୍ଶନରେ ଆସିଥିଲେ । କୁସୁପୁରରେ ବିଶ୍ରାମ କରୁଥିଲାବେଳେ ମୁଖିଆ ବ୍ୟକ୍ତିମାନେ ଗ୍ରାମରେ ଗୋଟିଏ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ସ୍ଥାପନ କରିବାକୁ ପ୍ରସ୍ତାବ ଦେଲେ । ରାଧାନାଥ ଏହି ପ୍ରସ୍ତାବରେ ସମ୍ମତ ହେଲେ ଓ ଆବଶ୍ୟକୀୟ ପଦକ୍ଷେପ ନେଲେ । ୧୮୮୭ ମସିହାରେ ଗ୍ରାମରେ ଉଚ୍ଚ ପ୍ରାଥମିକ ବିଦ୍ୟାଳୟ ଖୋଲିଲା । ନନ୍ଦକିଶୋର ଜମିଦାରୀ ସିରସ୍ତାରେ ତାଲିମ ନେବା ବନ୍ଦ କରି ଏହି ବିଦ୍ୟାଳୟରେ ନାମ ଲେଖାଇଲେ । ସେହି ବର୍ଷ ନଅ ଜଣ ଛାତ୍ର ଉଚ୍ଚ ପ୍ରାଥମିକ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ । ସେ କଟକ ଜିଲ୍ଲାରେ ପ୍ରଥମ ହୋଇ ବୃତ୍ତି ଲାଭ କଲେ ।

ଏହାପରେ ନନ୍ଦକିଶୋର କଟକ ଟାଉନ ସ୍କୁଲରେ ନାମ ଲେଖାଇଲେ । ସେ ଅଗ୍ରଜ ଦୟାନିଧି ଜେନାଙ୍କ ଗୃହରେ ରହି ଅଧ୍ୟୟନ କଲେ । ଏହି ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଉତ୍କଳ ସାହିତ୍ୟ ପତ୍ରିକାର ସମ୍ପାଦକ ବିଶ୍ୱନାଥ କର । ଭକ୍ତକବି ମଧୁସୂଦନ ମଧ୍ୟ ଏହି ବିଦ୍ୟାଳୟର ପ୍ରତିଷ୍ଠାତା ସମ୍ପାଦକ ଥିଲେ । ମଧୁସୂଦନ ଓ ବିଶ୍ୱନାଥଙ୍କର ବ୍ୟକ୍ତିତ୍ୱ ଯେ ତାଙ୍କ ଉପରେ ବିଶେଷ ପ୍ରଭାବ ପକାଇଥିଲା, ଏଥିରେ ସନ୍ଦେହ ନାହିଁ । ନନ୍ଦକିଶୋର ଡବଲ ପ୍ରମୋସନ ପାଇ

ମାଇନର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ସେ ସାଧାରଣ ମେଧା ବୃତ୍ତି ପାଇବା ସଙ୍ଗେ ସଙ୍ଗେ ଗଣିତରେ ଭଲ କରିଥିବା ଯୋଗୁଁ ବିଶେଷ ବୃତ୍ତି ମଧ୍ୟ ପାଇଥିଲେ ।

ନନ୍ଦକିଶୋର ଏହାପରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ଅଧ୍ୟୟନ କଲେ । ସେଠାରେ ପ୍ରଧାନ ଶିକ୍ଷକ ଥିଲେ ମଧୁସୂଦନ ରାଓ । ସେତେବେଳକୁ ସେ ବ୍ରାହ୍ମଧର୍ମ ଗ୍ରହଣ କରିସାରିଥିଲେ । ସେ ଓଡ଼ିଶାରେ ଏହାର ପ୍ରସାରପାଇଁ ଆଗ୍ରହୀ ହେବା ସ୍ୱାଭାବିକ । ନନ୍ଦକିଶୋର ମଧ୍ୟ ତାଙ୍କଠାରୁ ପ୍ରଭାବିତ ହୋଇ ବ୍ରାହ୍ମଧର୍ମ ପ୍ରତି ଆକୃଷ୍ଟ ହେଲେ । ସେ କାଳେ ହିନ୍ଦୁଧର୍ମ ତ୍ୟାଗ କରି ବ୍ରାହ୍ମଧର୍ମ ଗ୍ରହଣ କରିବେ, ଏହି ଆଶଙ୍କାରେ ତାଙ୍କର ଅଭିଭାବକମାନେ ତାଙ୍କୁ ରେଭେନ୍‌ସା କଲିଜିଏଟ୍ ସ୍କୁଲରୁ ଉଠାଇ ଆଣି କେନ୍ଦ୍ରାପଡ଼ା ଉଚ୍ଚ ଇଂରେଜୀ ବିଦ୍ୟାଳୟରେ ପଢ଼ାଇଲେ । ୧୮୯୭ ମସିହାରେ ସେ ପ୍ରଥମ ଶ୍ରେଣୀରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ।

## କଲେଜ ଶିକ୍ଷା

ନନ୍ଦକିଶୋର ରେଭେନ୍‌ସା କଲେଜରେ ପଢ଼ିବାପାଇଁ କଟକ ଆସିଲେ । କଟକରେ ପୂର୍ବ ସଙ୍ଗଠନଗୁଡ଼ିକରୁ ଦୂରେଇ ରଖିବାପାଇଁ ତାଙ୍କର ଅଭିଭାବକମାନେ ଉପାୟ ପାଞ୍ଚିଲେ । ଅଳ୍ପ ବୟସରେ କଟକ ଜିଲ୍ଲାର ଅସୁରେଶ୍ୱର ପ୍ରଗଣା ଅନ୍ତର୍ଗତ ବନ୍ତଲା ଗ୍ରାମର ହରେକୃଷ୍ଣ ସାମଲଙ୍କ କନ୍ୟା କୋକିଳ ଦେବୀଙ୍କ ସହିତ ତାଙ୍କୁ ବିବାହ କରାଇଦେଲେ ।

## ସାହିତ୍ୟିକ ପରିବେଶ

କଲେଜରେ ଛାତ୍ର ଥିବା ଅବସ୍ଥାରେ ନନ୍ଦକିଶୋର ସାହିତ୍ୟ ଅନୁରାଗୀ ହେଲେ । ସେ ଓଡ଼ିଆ ସାହିତ୍ୟ ଗଭୀର ଭାବରେ ଅଧ୍ୟୟନ କଲେ । ୧୮୯୪ ମସିହାରୁ ଗଢ଼ା ହୋଇଥିବା ଆଲୋଚନା ସଭା ସହିତ ଗଭୀର ଭାବରେ ସଂଶ୍ଳିଷ୍ଟ ହେଲେ । ସେ ଏଥିରେ ନିୟମିତ ଭାବରେ ଯୋଗ ଦେଉଥିଲେ । ପରବର୍ତ୍ତୀକାଳରେ 'କଟକ ଆଲୋଚନା ସଭା' ନାମରେ ଏକ ସାହିତ୍ୟିକ ଅନୁଷ୍ଠାନ ଗଢ଼ାହେଲା । ଏହାର ବୈଠକ ସବୁ ମଧୁସୂଦନଙ୍କ ବାସଭବନରେ ବା କେତେବେଳେ କଟକ ପ୍ରିଣ୍ଟିଂ କମ୍ପାନୀ କୋଠାରେ ହେଉଥିଲା । ନନ୍ଦକିଶୋର ଏଥିରେ ଯୋଗ ଦେଇ ଆଲୋଚନାରେ ସକ୍ରିୟ ଭାଗ ନେଉଥିଲେ । ଏଠାରେ ସେ କବିବର ରାଧାନାଥ ଓ ମଧୁସୂଦନ ପ୍ରଭୃତିଙ୍କ ସମ୍ପର୍କରେ ଆସିଲେ ।

ନନ୍ଦକିଶୋର ଏହି ସମୟରେ ରାଧାନାଥଙ୍କ କାବ୍ୟାବଳୀର ଆଲୋଚନା ପ୍ରସଙ୍ଗରେ କହିଥିଲେ – "ସେ ଏମନ୍ତ ଚିତ୍ର ଉତ୍କଳରେ ଦେଇପାରି ନାହାନ୍ତି,

ଯାହା ଘେନି ଓଡ଼ିଆଜାତି ନବଯୁଗର ନବ ଆଦର୍ଶ ପ୍ରତି ଆକୃଷ୍ଟ ହେବ, ନବୀନ ଉଦ୍ୟମରେ ମାତି ପୃଥିବୀର ଉନ୍ନତ ଜାତିମାନଙ୍କ ସହିତ ଉନ୍ନତି ପଥରେ ଜ୍ଞାନ, ପ୍ରୀତି ଓ କର୍ମର ଧ୍ୱଜା ହସ୍ତରେ ଧରି ଅଗ୍ରସର ହେବ ।''

ତୃତୀୟ ବାର୍ଷିକ ଶ୍ରେଣୀରେ ପଢୁଥିଲାବେଳେ ନନ୍ଦକିଶୋର ଉତ୍କଳର ପଲ୍ଲୀଜୀବନ ଉପରେ ଏକ ପ୍ରବନ୍ଧ ପ୍ରତିଯୋଗିତାରେ ଭାଗ ନେଇଥିଲେ । ତାଙ୍କର ପ୍ରବନ୍ଧଟି ଶ୍ରେଷ୍ଠ ବୋଲି ବିବେଚିତ ହେବାରୁ ସେ ତାଲଚେର ପଦବୀ ଲାଭ କଲେ । ପରବର୍ତ୍ତୀ କାଳରେ ଉକ୍ତ ପ୍ରବନ୍ଧକୁ ସେ କବିତାର ସୁଲଳିତ ଧାରାରେ ରଚନା କଲେ । ତାହା ହେଲା 'ପଲ୍ଲୀ ଚିତ୍ର' ।

## କର୍ମରେ ନିଯୁକ୍ତି

କଲେଜ ଶିକ୍ଷା ଶେଷ ନ ହେଉଣୁ ନନ୍ଦକିଶୋରଙ୍କ ପିତାଙ୍କର ଅକାଳ ବିୟୋଗ ଘଟିଲା । ଏହାପରେ ପରିବାର ପ୍ରତିପୋଷଣର ଗୁରୁ ଦାୟିତ୍ୱ ତାଙ୍କ ଉପରେ ପଡ଼ିଲା । ୧୮୯୯ ମସିହାରେ ବି.ଏ. ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାପରେ ଭକ୍ତକବି ମଧୁସୂଦନଙ୍କଦ୍ୱାରା ସ୍ଥାପିତ ଟାଉନ ସ୍କୁଲରେ ସେ ଶିକ୍ଷକଭାବେ ନିଯୁକ୍ତ ହେଲେ ।

ଶିକ୍ଷକତା ସାଙ୍ଗେ ସାଙ୍ଗେ ନନ୍ଦକିଶୋର ବାଣୀ ଆରାଧନାରେ ନିମଜ୍ଜିତ ହେଲେ । ଏହି ସମୟରେ ସେ 'ଓଡ଼ିଆ ଲଳନା' ନାମରେ ଏକ କବିତା ଲେଖି ଚହଳ ପକାଇଦେଲେ । ଏଥିରେ ଓଡ଼ିଶାର ନାରୀମାନଙ୍କର ବେଶଭୂଷା, ଚାଲିଚଳଣି ପ୍ରଭୃତିର ସମାଲୋଚନା କରାଯାଇଥିଲା । ଏହା ସମାଜରେ ସେତେବେଳେ ତୁମୁଳ ଆଲୋଡ଼ନ ସୃଷ୍ଟି କଲା । ପଣ୍ଡିତ ଗୋପବନ୍ଧୁ ପ୍ରଭୃତି ଏହାର ଦୃଢ଼ ପ୍ରତିବାଦ କଲେ । କବିତାର ରଚୟିତା ଓଡ଼ିଆ ନୁହନ୍ତି ବୋଲି ସମସ୍ତଙ୍କର ଧାରଣା ହୋଇଥିଲା । ଓକିଲମାନେ ଏହା ବିରୋଧରେ ମୋକଦ୍ଦମା କରିବାକୁ ପ୍ରସ୍ତୁତ ହେଲେ । ମାତ୍ର ନନ୍ଦକିଶୋର ଏହାର ଲେଖକ ବୋଲି ଜଣାପଡ଼ିବାରୁ ସେଥିରୁ ନିବୃତ୍ତ ହେଲେ । ଏହାଦ୍ୱାରା ନନ୍ଦକିଶୋର ଶିକ୍ଷିତ ସମାଜର ଦୃଷ୍ଟି ଆକର୍ଷଣ କଲେ ।

ଏହି ଟାଉନ ସ୍କୁଲ (ପରେ ଭିକ୍ଟୋରିଆ ହାଇସ୍କୁଲ)ରେ ଶିକ୍ଷକତା କଲାବେଳେ ନନ୍ଦକିଶୋର ରଚନା କଲେ 'ପଲ୍ଲୀଚିତ୍ର', 'ନିର୍ଝରିଣୀ', 'ଚାରୁଚିତ୍ର', 'ନିର୍ମାଲ୍ୟ', 'କୃଷ୍ଣାକୁମାରୀ' ଓ 'ସୀତା ବନବାସ' ଭଳି କାବ୍ୟ ।

## ପଲ୍ଲୀଚିତ୍ର

ଏହାର ପ୍ରଥମ ଭାଗ ୧୮୯୮ ମସିହାରେ ପ୍ରକାଶ ପାଇଲା ଏବଂ ଏହା ଓଡ଼ିଶାର ସାହିତ୍ୟ କ୍ଷେତ୍ରରେ ସୃଷ୍ଟି କଲା ଗଭୀର ଆଲୋଡ଼ନ । ଏହି ପୁସ୍ତକ

ଆଠୋଟି ଭାଗରେ ବିଭକ୍ତ । ପ୍ରଥମ ଦୃଶ୍ୟରେ ପଲ୍ଲୀବାସୀ, ଦ୍ୱିତୀୟ ଦୃଶ୍ୟରେ ଗ୍ରାମଖଳା, ତୃତୀୟ ଦୃଶ୍ୟରେ ଗ୍ରାମ ଚାଟଶାଳୀ, ଚତୁର୍ଥ ଦୃଶ୍ୟରେ ଗ୍ରାମ ତୋଟା, ପଞ୍ଚମ ଦୃଶ୍ୟରେ ଗ୍ରାମ ଦେବତା, ଷଷ୍ଠ ଦୃଶ୍ୟରେ ଗ୍ରାମ ମହାଦେବ, ସପ୍ତମ ଦୃଶ୍ୟରେ ଗ୍ରାମ ଶ୍ମଶାନ ଓ ଅଷ୍ଟମ ଦୃଶ୍ୟରେ ଗ୍ରାମ ହାଟ ଶୀର୍ଷକ କବିତାମାନ ଅଛି ।

ପ୍ରଥମରେ କବି ନିଜର ପଲ୍ଲୀପ୍ରାଣତାର ପରିଚୟ ଦେଇଛନ୍ତି । ସେ ନଗରୀର ରାଜସୁଖଠାରୁ ଦୂରେଇ ରହି ସରଳ ପବିତ୍ର ମଧୁରିମାମୟ ପଲ୍ଲୀ ଜୀବନକୁ ଫେରିଯିବାକୁ ଚାହିଁଛନ୍ତି । କବିଙ୍କ ଭାଷାରେ –

''ଶାନ୍ତିପୂର୍ଣ୍ଣ ଆରେ ପଲ୍ଲୀଗ୍ରାମ
ମଧୁରିମା ତୋର ନାମ
ନଗରୀର ରାଜସୁଖ ମୋହ ପକ୍ଷେ ଘୋର ଦୁଃଖ
ଆଗେ ପ୍ରିୟ ପଲ୍ଲୀ, ତୋ ପଲ୍ଲବମୟ ଅଙ୍କ
ଛାୟାତଳେ ଆଶ୍ରିବାକୁ ମୁହିଁ ସଦା ରଙ୍କ ।''

ଏହାପରେ ପଲ୍ଲୀର ଜୀବନ୍ତ ଚିତ୍ର ଅଙ୍କିତ ହୋଇଛି । ଗ୍ରାମଖଳା ବିଷୟରେ କବିଙ୍କ ବର୍ଣ୍ଣନା ଅତି ବାସ୍ତବ, ଯଥା –

''ଗ୍ରାମ ପ୍ରାନ୍ତେ କରି ଲୋକେ ଖଳା
ମେରି ପୋତି ପକାନ୍ତି ବେଙ୍ଗଳା
ବାନ୍ଧି ମଞ୍ଚ ମଧ ସ୍ଥାନେ ଜଗନ୍ତି ରାତ୍ରିରେ ଧାନେ
ମିଛେ ସତେ ଦେଖିଥାନ୍ତି ଯେ ସର୍ବ ଘଟଣା
କଳ୍ପନା ବଳରେ ପ୍ରାତେ କରନ୍ତି ବର୍ଣ୍ଣନା ।

× × ×

ପ୍ରଭାତୁ ଉଠିଣ ଗ୍ରାମବାସୀ
ମେଳ ହୋଇ ଏହିଠାରେ ଆସି
ଖାଏ ପିକା କେହୁ ବସି ଗଳ୍ପ କରେ କେହୁ ହସି
ମୁହୁର୍ମୁହୁଃ ଛିଙ୍କି କରେ କେ ନସ୍ୟ ଗ୍ରହଣ
ଜଳ ତୀରେ ବସି କରେ କେ ଦନ୍ତ ଧାପନ ।''

ଗ୍ରାମ ଚାଟଶାଳୀ କବିତାରୁ ରଚନା ମାଧୁର୍ଯ୍ୟ ଜଣାପଡ଼େ –

''ଗ୍ରାମେ ପଡ଼େ ଚାଟଶାଳା ଯମଦଣ୍ଡ ଅବଧାନ ଜ୍ୱାଳା
ବିଳମ୍ବେ ଯେହୁ ଆସିବ 'ଶୂନ' ଖାଇ ପ୍ରାଣ ଯିବ
'ଏକ' 'ଦୁଇ' ମାଗି କ୍ଲାସେ ହୁଅନ୍ତି ଅନ୍ତର ।''

କେବଳ ସେତିକି ନୁହେଁ, ପ୍ରବାସୀ ପ୍ରିୟଜନମାନଙ୍କପାଇଁ ଖବର ପାଇବା ନିମନ୍ତେ କାକକୁ ତଣ୍ଡୂଳ ଦାନ, ରାଜପଥରେ ବାଟୋଇର ଗମନ, ନାଥର କେନ୍ଦରା, କେଳାକେଲୁଣୀଙ୍କ ଧୁଡୁକି ବାଦନ, ଗ୍ରାମ୍ୟ ସୀମନ୍ତିନୀମାନଙ୍କର ସ୍ନାନ, ଗୋପାଳୁଣୀର ଦୁଧ, ଦହି ବିକ୍ରୟ, ଗ୍ରାମ ଭାଗବତ ଘରେ ଭାଗବତ ପାଠ, ଗ୍ରାମ୍ୟ ମହାଜନଙ୍କ ବ୍ୟବସାୟ, ଗ୍ରାମ୍ୟ ରମଣୀମାନଙ୍କ କଳହ, କୀର୍ତ୍ତନ ଗାୟକଙ୍କ ଓଡ଼ିଆ ଓ ବଙ୍ଗଳା ଭାଷାରେ କୀର୍ତ୍ତନ ପ୍ରଭୃତି ନିତ୍ୟନୈମିତ୍ତିକ କାର୍ଯ୍ୟ 'ପଲ୍ଲୀଚିତ୍ର'ରେ ସ୍ଥାନ ପାଇଛି । ପଲ୍ଲୀର ପ୍ରାଣପ୍ରବାହ ଏହି କବିତାମାନଙ୍କରେ ଜୀବନ୍ତ ହୋଇଉଠିଛି । ଗ୍ରାମ ଶ୍ମଶାନ ଓ ପଲ୍ଲୀର ବାଣିଜ୍ୟସ୍ଥଳ ଗ୍ରାମ ହାଟ ପ୍ରଭୃତି ଏଥିରେ ନିଖୁଣ ଭାବରେ ବର୍ଣ୍ଣିତ ।

'ପଲ୍ଲୀଚିତ୍ର'ର ପ୍ରଥମ ଭାଗର କବିତାବଳୀ ହିଁ କବି ପ୍ରତିଭାର ବିଜୟ ବୈଜୟନ୍ତୀ । ଏହାହିଁ କବିଙ୍କୁ ପଲ୍ଲୀକବି ଭାବେ ଉତ୍କଳରେ ପରିଚିତ କରାଇଛି ।

## ନିର୍ଝରିଣୀ

ଏହା ୧୯୦୦ରେ ପ୍ରକାଶିତ ହେଲା । ଏଥିରେ ଅଦିନ ମେଘ, ନବବର୍ଷ ଭାବନା, ବର୍ଷାମଙ୍ଗଳ, ଅତୀତ ଚିନ୍ତା, ବାଲ୍ୟସ୍ମୃତି, ଜରା ମରଣ, ଡାଆଣିଆ ଖରା, ପ୍ରଭାତ ଅବକାଶ, ନିର୍ଝରିଣୀ ପ୍ରଭୃତି କବିତାଗୁଡ଼ିକ ସନ୍ନିବେଶିତ ହୋଇଅଛି । ଏଥିରେ କବି ପ୍ରତିଭାର ଚୂଡ଼ାନ୍ତ ବିକାଶ ଦେଖିବାକୁ ମିଳେ ।

ବିଶିଷ୍ଟ ଆଲୋଚକ ଡଃ ନଟବର ସାମନ୍ତରାୟ 'ନିର୍ଝରିଣୀ' କାବ୍ୟର ଉଚ୍ଛ୍ୱସିତ ପ୍ରଶଂସା କରି କହିଛନ୍ତି ଯେ ଚିରାଚରିତ କାବ୍ୟ ସୃଷ୍ଟି ପରମ୍ପରାର ନିଗଡ଼ ବନ୍ଧନରୁ କବି ନିଜକୁ ବିମୁକ୍ତ କରି ତା'ର ଭାଷା, ଭାବ, ପ୍ରକାଶଭଙ୍ଗୀ, ସୃଷ୍ଟି ଆଭିମୁଖ୍ୟ, ସମଗ୍ର ସୃଷ୍ଟି ସୌନ୍ଦର୍ଯ୍ୟର ସାର୍ଥକ ରୂପାୟନ କରିବା ଦିଗରେ ଏକ ନୂତନ ସ୍ୱତନ୍ତ୍ର ସାହିତ୍ୟ ସଂସ୍କାରର ପରମ୍ପରା ସୃଷ୍ଟି କରିଛନ୍ତି । ''ମାତ୍ର ବାଇଶ ତେଇଶ ବର୍ଷର କଲେଜ ଛାତ୍ର ପକ୍ଷେ ଏହା ଅଭୂତପୂର୍ବ ଓ ଅଶ୍ରୁତପୂର୍ବ କୀର୍ତ୍ତି ବ୍ୟତୀତ ଆଉ କିଛି ନୁହେଁ ।'' ତାଙ୍କ ମତରେ 'ନିର୍ଝରିଣୀ' କାବ୍ୟରେ ଥିବା ନବବର୍ଷ ଭାବନା, ଅଦିନ ମେଘ, ବର୍ଷା ମଙ୍ଗଳ, କାକବାରତା ବା ଡାଆଣିଆ ଖରା – ''ଏମାନେ ଓଡ଼ିଆ ଭାଷାର ଅନ୍ୟାନ୍ୟ କବିତା ଭଳି ସାଧାରଣଧର୍ମୀ କବିତା ନୁହନ୍ତି, ଏମାନେ କବି ହୃଦକନ୍ଦର–ନିସୃତ ଅପୂର୍ବ ମୂର୍ଚ୍ଛନା ବିମଣ୍ଡିତ କଳନାଦୀ ନିର୍ଝରର ଏକ ସୃଷ୍ଟି ମାତ୍ର ।''

ଅଦିନ ମେଘ ଦେଖି ପଲ୍ଲୀବାସୀଙ୍କର ସମସ୍ତ କାର୍ଯ୍ୟକୁ କବି ଅତି ସରଳ ଓ ସୁନ୍ଦର ଭାବରେ ଉପସ୍ଥାପିତ କରିଛନ୍ତି –

''ପାଣି ସଙ୍ଗେ ପଥେ ସ୍ୱରଗ ପଥର
ତାହା ଦେଖି ପିଲାମାନେ
ସାଉଁଟି ଖାଇଣ ଗୀତ ଗାଉଥାନ୍ତି
ନାଚି କୁଦି ତାନ ମାନେ ।''

କବିଙ୍କର ମନେପଡ଼ିଛି ନିଜର ଶୈଶବର କଥା –

''ଡିବି ଡିବି ବାଜେ ଯୋଡ଼ି ନାଗରାଲୋ
କାଉ ଡାକେ କାଆ କାଆ
ଖରା କରୁଅଛି ମେଘ ବରଷୁଛି
ବିଲୁଆ ପୁଅର ବାହା ।''

ମେଘର ଟପର ଟପର ଶବ୍ଦ ଗ୍ରାମ୍ୟ ଶିଶୁମାନଙ୍କ ମଧ୍ୟରେ ବିମଳ ଆନନ୍ଦ ସୃଷ୍ଟି କରେ । ତାକୁ କବି ଲକ୍ଷ୍ୟ କରିଛନ୍ତି –

''ମେଘ ବରଷଇ ଟପର ଟପର'
କେଶୁର ମାଇଲା ଗଜା
କୋଉ ରାଇଜରେ ରହିଲେ ମୋ ରଜା
ତେଲିଙ୍ଗି ବାଇଦ ବଜା ।''

ନବ ବର୍ଷା ଭାବନା କବିଙ୍କର ସୁନ୍ଦର ବାଲ୍ୟଜୀବନର ଏକ ମୁଗ୍ଧ ମଧୁର ପଦଧ୍ୱନି । ଏଥିରେ ନନ୍ଦକିଶୋରଙ୍କର ଭାବନା ଅପୂର୍ବ ରୂପ ନେଇଛି –

''ମେଘ ବରଷଇ ବିଜୁଳି ମାରଇ
ପବନ ବହଇ ଖରେ
ତରୁଣ ଯୌବନ ପରାଣ ପ୍ରତିମା
ଛାଡ଼ି ଆସିଥିଲି ଘରେ ।
ଭାବର ଆବେଗେ ଦୂର ପରବାସେ
ମନେ ପଡ଼େ ପ୍ରିୟ ଯାହା
ତାହାରି ସଙ୍ଗତେ ଦରଶନ ଦିଏ
ଅତୀତ ଜୀବନ ଛାୟା ।''

ଏହି କବିତାରେ ମଧ୍ୟ କବି ନିତିଦିନିଆ ଗ୍ରାମ୍ୟ ଜୀବନର ଏକ ନିଖୁଣ ଚିତ୍ର ଦେଇଛନ୍ତି –

''ପ୍ରଭାତୁ ଉଠିଣ ଯାନ୍ତି ଯେଝା ଦୁଃଖେ
ଦୁଃଖୀ ଗ୍ରାମବାସୀମାନେ
ସାରି ବାସି କାମ ସାତ ପାଞ୍ଚ ମିଳି
ବଧୂମାନେ ଯାନ୍ତି ସ୍ନାନେ

ହୁଙ୍କା ବାଲି ବିଲେ ଫୁଟି ଉଠେ ଛତୁ
ଘୋର-ଘନ-ନୀର ପାଇ
ସାନ ସାନ ପିଲା ଛତୁ ତୋଳୁଥାନ୍ତି
ପ୍ରଭାତରୁ ଉଠିଯାଇ ।''

କାକବାରତା କବିଙ୍କର ଗୋଟିଏ ସୁନ୍ଦର କବିତା । ସେ ଅଳ୍ପ ବୟସ ବାଳକ-ବାଳିକାମାନଙ୍କପାଇଁ କେତୋଟି ରଚନା କରିଛନ୍ତି । ବାଳକ-ବାଳିକାମାନେ ସର୍ବଦା ଚଞ୍ଚଳ । ସେମାନେ ଗୋଟିଏ ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଧ୍ୟାନ ଦେଇପାରନ୍ତି ନାହିଁ । ତାହାକୁ ଲକ୍ଷ୍ୟ ରଖି ପରସ୍ପର ସହିତ ସମ୍ପର୍କ ନ ଥିବା ଏହି କବିତାଟି ଲେଖିଛନ୍ତି –

''ଡାମରା କାଉରେ ଡାମରା କାଉ
ଉଚ୍ଚ ପରବତେ ବୋବାଉଥାଉ
ଉଚ୍ଚ ପରବତ ଘୁଞ୍ଚି ଘୁଞ୍ଚିକା
ତହିଁରେ ବସିଛି ତିନି ମିଞ୍ଚିକା ।
ତିନି ତିନି ପଣ ଅଠରପଣ
ଭାଇଙ୍କି ଡକାଇ କଉଡ଼ି ଗଣ
କଉଡ଼ି ଗଣୁ ଗଣୁ ପାଇଲା ରାତି
ଚୋର ନେଇଗଲା କଜଳପାତି ।''

ସେମିତି ଆଉ ଗୋଟିଏ କବିତା ଡାଆଣିଆ ଖରା ।

''ଡାଆଣିଆ ଖରା ପଡ଼ିଛି ବେଳ ଯାଉଛି ବୁଡ଼ି
କି ସୁନ୍ଦର ପାରା ଯୋଡ଼ିଏ ଯାଉ ଅଛନ୍ତି ଉଡ଼ି ।
ଆସ ଆସ ପାରା ଯୋଡ଼ିକ ମୋର ପିଣ୍ଡାରେ ବସ
ଖାଇବାକୁ ଦେବି ତୁମ୍ଭଙ୍କୁ ମୁହିଁ ନଡ଼ିଆ ରସ ।''

ଆଲୋଚକ ଭାଗୀରଥି ନେପାକଙ୍କ ଭାଷାରେ – ''ସେ ଏଥିରେ ନିର୍ଦ୍ଦିଷ୍ଟ ଭାବରେ କିଛି ଶୁଣାଇବାକୁ ଚାହିଁ ନାହାନ୍ତି, ଅଥଚ ଗ୍ରାମ୍ୟ ଜୀବନର ଅନେକ କିଛି କହିଯାଇଛନ୍ତି । ଏଥିରେ କିଛି ନିର୍ଦ୍ଦିଷ୍ଟ ବାର୍ତ୍ତା ନାହିଁ ସତ୍ୟ, କିନ୍ତୁ ପଲ୍ଲୀଜୀବନର ବହୁ ବାର୍ତ୍ତା ରହିଛି । ତେଣୁ ଏହା ପାଠକଲେ ମନ ମଧ୍ୟରେ ବିଜୁଳିର ସ୍ପନ୍ଦନ ଖେଳିଯାଏ ।''

ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ନନ୍ଦକିଶୋରଙ୍କ 'ନିର୍ଝରିଣୀ', ବିଶେଷରେ ତାହାର କାକବାରତା କବିତାଟି ଓଡ଼ିଶାର କାବ୍ୟକଳାର ଗୋଟିଏ ଅଦ୍ଭୁତ ସୃଷ୍ଟି । ଏହା ସବୁଠି ଥିଲା, ଅଥଚ କାହିଁ ନ ଥିଲା । ସେ ପୁଣି କହିଛନ୍ତି ଯେ ଡାମରାକାଉ ଅମରକୀର୍ତ୍ତି ଅର୍ଜନ କରି ବସିଛି । ଏ କୀର୍ତ୍ତି ନିକଟରେ ଅତିକ୍ରାନ୍ତ ହେବାର ନୁହେଁ ।

## ପଲ୍ଲୀ ଚିତ୍ର (ଦ୍ୱିତୀୟ ଭାଗ)

ଋତୁଚିତ୍ର କ୍ରମାନ୍ୱୟରେ ଏହା ଗ୍ରୀଷ୍ମରୁ ଆରମ୍ଭ ହୋଇ ବସନ୍ତରେ ଶେଷ ହୋଇଛି । ବିଭିନ୍ନ ଋତୁର ଅପରୂପ ପ୍ରାକୃତିକ ଶୋଭା ସହିତ ବିଭିନ୍ନ ପର୍ବପର୍ବାଣିର ବର୍ଣ୍ଣନା ରହିଛି । ଏହାର ପରିକଳ୍ପନା ସମ୍ପୂର୍ଣ୍ଣ ଅଭିନବ ଓ ମୌଳିକ ।

ଗ୍ରୀଷ୍ମଋତୁର ବର୍ଣ୍ଣନା ଉଦାହରଣସ୍ୱରୂପ ନିଆଯାଇପାରେ –

''ବୈଶାଖ ମାସରେ ପଣା ସଂକ୍ରାନ୍ତି
ହୁଅଇ ପଣା ଛତୁଆ
କାଠ ଗୋଡ଼ ପିନ୍ଧି ମଙ୍ଗଳା ମୁଣ୍ଡାଇ
ନାଚନ୍ତି ଘଣ୍ଟ ପାଟୁଆ ।

ପୁଣି – ଏଇ ମାସେ ହୁଏ ଚନ୍ଦନ ଯାତରା
ନାବ କେଳି ଏଇ ମାସେ
ନାବକେଳି କରି ଯୁବକ ମଉଜ
କରୁଥାନ୍ତି କ୍ରୀଡ଼ା ହାସେ ।
ରାଣୀ ଫୁଲପରି ପଡ଼ିଥାଏ ଜହ୍ନ
ପଦା ପାହା ଭାଗେ ବସି
ପଲ୍ଲୀ ସୀମନ୍ତିନୀ ଚାନ୍ଦିନୀ ରାତିରେ
କରନ୍ତି ଆଳାପ ବସି ।''

ବର୍ଷାଋତୁର ବର୍ଣ୍ଣନା ଆହୁରି ହୃଦ୍ୟ, ଆହୁରି ଚମତ୍କାର, ଯଥା –

''ପହିଲି ଆଷାଢ଼େ ଘୋଟଇ ଆକାଶେ
ବଉଦ କଳାହାଣ୍ଡିଆ
ତଳି ଉପାଡ଼ିଣ ଡିହ ଜମିବାଡ଼ି
ଲଗାନ୍ତି ଚାଷୀ ମାଣ୍ଡିଆ
ଘଡ଼ ଘଡ଼ି ଶୁଣି କାଙ୍କଣ ହାଣ୍ଡିରୁ
କାଙ୍କଣ ମାରଇ ଗଜା
ସଲରା ବାଡ଼ିରୁ ମଡ଼ାଏ କୃଷକ
ଘରଣୀ ଦେଇଛି ରଞ୍ଜା ।

ଅଥବା – ''ବିଲ କାମ ସାରି ଗୀତ ଗାଇ ଗାଇ
ବାହୁଡ଼ଇ ଚଷା ଘରେ
ପୋଡ଼ ପିଠା ମୁଢ଼ି ଖାଇ ମହାସୁଖେ
ବସିବ ଚୁଲି ମୁଣ୍ଡରେ ।''

ଆଲୋଚକ ଡଃ ନଟବର ସାମନ୍ତରାୟଙ୍କ ମତରେ ଏହି କବିତାଗୁଡ଼ିକରେ ପ୍ରାକୃତିକ ଦୃଶ୍ୟର ଉନ୍ମୋଚନ ହୋଇଥିଲେହେଁ, ଏହା ମୁଖ୍ୟ ଉପାଦାନ ନୁହେଁ । ଏହି କବିତାଗୁଡ଼ିକରେ ଦୁଇଟି ସୌନ୍ଦର୍ଯ୍ୟର ସମନ୍ୱୟ ଘଟିଛି । ଗୋଟିଏ ହେଲା ପ୍ରାକୃତିକ ସୌନ୍ଦର୍ଯ୍ୟ, ଅନ୍ୟଟି ହେଲା ଜୀବନ ସୌନ୍ଦର୍ଯ୍ୟ । ‘‘ଉଭୟଙ୍କର ସୁଚିନ୍ତିତ ସମବାୟରେ ଫୁଟିଉଠିଛି ପଲ୍ଲୀଜୀବନରେ ଏକ ଅନବଦ୍ୟ ଚିତ୍ରପଟ ।’’

ପଲ୍ଲୀଚିତ୍ରର ତୃତୀୟ ଭାଗରେ ଜାତୀୟ ଭାବ ସମନ୍ୱିତ କବିତାମାନ ଅଛି । ଏଗୁଡ଼ିକ ମୁଖ୍ୟତଃ ପ୍ରଚାର ଭାବାପନ୍ନ ହୋଇଛି ।

**ବସନ୍ତ କୋକିଳ**

ଏଥିରେ କୋକିଳ ପ୍ରତି, ପିକ ପ୍ରତି, ପ୍ରବାସୀର ପତ୍ର, ମଧୁଶଯ୍ୟା, ତରୁଣୀ, ଜନନୀଙ୍କ ସ୍ମୃତି, ଭଗିନୀଙ୍କ ଉପହାର ପ୍ରଭୃତି କବିତାମାନ ଅଛି ।

କବି ଆଦ୍ୟ ଯୌବନରେ ବ୍ୟର୍ଥ ପ୍ରେମର ସମ୍ମୁଖୀନ ହୋଇଥିଲେ । ତାହା ଅତୃପ୍ତ ପ୍ରେମ କବିତାରୁ ଉପଲବ୍ଧି କରିହୁଏ ।

‘‘ନିୟତି ନୀରେ ଭାସିଗଲା ମୋ ଆଶା
ପ୍ରକାଶି ନ ପାରଇ ମୋ ଦୁଃଖ ଭାଷା
ଛିନ୍ନ ହୋଇଛି ମୂଳୁ ମୋ ସୁଖ ଦ୍ରୁମ
ପଡ଼ିଛି ବୃନ୍ତୁ ଝଡ଼ି ପ୍ରୀତି କୁସୁମ ।’’

କିନ୍ତୁ ପରେ ସେ ପତ୍ନୀଙ୍କ ପ୍ରେମରେ ବାନ୍ଧି ହୋଇ ରହିଛନ୍ତି । ମଧୁଶଯ୍ୟା ପରି ମଧୁ ସ୍ମୃତି ବିଜଡ଼ିତ ବିଷୟକୁ ସଂଯତ ଓ ବାସ୍ତବ ରୂପ ଦେଇଛନ୍ତି ।

‘‘ପେଲି ଦେଇ କିଏ କାହାକୁ ପଦାରେ ଥାଇ
କହେ ଆଉଜାଇ କବାଟ, ଫେରନ୍ତି ନାହିଁ ।
ବାସ ଚନ୍ଦନରେ ମହକି ପଡୁଛି ହିଆ
ଚରଣେ ଅଳତା, ସୁନ୍ଦରୀ କୋଣରେ ଠିଆ
କରେ କରଧରି ନିଅନ୍ତେ, ଲାଜେ ଯୁବତୀ
ଘର୍ମାଦ୍ର ସକଳ ଶରୀର, କମ୍ପିତା ଅତି ।’’

ଏହି ମଧୁଶଯ୍ୟାର ଚିତ୍ରଣ ଅତି ଜୀବନ୍ତ ହୋଇଛି । ସେହିପରି କବି ପ୍ରଥମ ମିଳନର ଅନୁଭୂତି ପ୍ରକାଶ କରିଛନ୍ତି, ଯଥା –

‘‘ପ୍ରଥମ ଦିନର ସେହି ପ୍ରଥମ ପ୍ରଣୟ
ପ୍ରାଣେ ଥିବାଯାଏ ନ ଭୁଲିବ ମୋ ହୃଦୟ
ନିଷ୍କପଟ ତୋ ସେହି ଆତ୍ମ ବିସର୍ଜନ
ଅତୁଳ ସମ୍ପଦ ବୋଲି ସମ୍ପାଦିଛି ମନ ।’’

ପ୍ରବାସରେ ଥିଲାବେଳେ ପ୍ରିୟତମା ପତ୍ନୀଙ୍କ ସ୍ମୃତି ତାଙ୍କୁ ବ୍ୟଥିତ କରିଛି । ତା'ର ଏକ ସୁନ୍ଦର ଓ ଅଭିନବ ଚିତ୍ର ପ୍ରବାସୀର ପତ୍ର କବିତାରେ ମିଳେ ।

"ଅର୍ଦ୍ଧପ୍ରାଣେ ପଡ଼ିଅଛି ଦୁଃଖର ପ୍ରବାସେ
ବିଚ୍ଛେଦ-ବହ୍ନି ବିଦଗ୍‌ଧ ହୋଇବା ସକାଶେ
ସୌଦାମିନୀ ଜିଣି ତୋର ଝଟ ଝଟ ତନୁ
ପ୍ରାଣ ଥିବା ଯାଏଁ ନ ପାସୋରି ଯିବ ମନୁ ।"

କେବଳ ତନୁର ଝଟକ ନୁହେଁ, ପ୍ରାଣସମା ପତ୍ନୀଙ୍କ ଗୁଣ ସ୍ଫୁରି ହୋଇଛନ୍ତି –

"ରୋଗେ ସ୍ୱାସ୍ଥ୍ୟେ ଦୁଃଖ ସୁଖେ ଥାଏ ଯଥାତଥା
ମନେ ମନେ ପଡୁଥାଏ ସଜନୀ ତୋ କଥା
ରୋଗ ଶଯ୍ୟା ପାଶେ ତୋର ବିଷଣ୍ଣ ବଦନ
ତପ୍ତ ବାରି ବିନ୍ଦୁ ସେବା ସ୍ନେହ ପରାୟଣ
କି ଦେଇ ହେ ଦେବ ! ଋଣ ପାଶୁ ମୁକ୍ତ ହେବି
କେମନ୍ତେ ମୁଁ ସେ ପ୍ରୀତିର ପରିଶୋଧ ଦେବି ?"

ପ୍ରଣୟ ସୌରଭର ସ୍ୱକୀୟତା ହେତୁ ନନ୍ଦକିଶୋରଙ୍କ ପ୍ରୀତିମୂଳକ ଗୀତିକବିତା ନବ ସତେଜତା ଓ ନବୀନ ପ୍ରାଣ-ପ୍ରାଚୁର୍ଯ୍ୟରେ ପ୍ରାଣବନ୍ତ ହୋଇପାରିଛି ବୋଲି ଆଲୋଚକ ନଟବର ସାମନ୍ତରାୟ ମତ ଦେଇଛନ୍ତି ।

## ଚାରୁଚିତ୍ର

ଏଥିରେ ଥିବା ପ୍ରଭାତ, ଚାରୁଚିତ୍ର, ମଧ୍ୟାହ୍ନ, ସନ୍ଧ୍ୟା, ନିଶୀଥ ପ୍ରଭୃତି କବିତାମାନଙ୍କରେ ପ୍ରକୃତି ଚିତ୍ରଣ କରାଯାଇଛି । ନାରୀ, ନାରୀଶିକ୍ଷା, ବାଳବିଧବା, ବୃଦ୍ଧବିବାହ, ବାଳବିବାହ ପ୍ରଭୃତି କବିତାଗୁଡ଼ିକ ସଂସ୍କାରମୂଳକ । ଉତ୍କଳ ଶୀର୍ଷକ କବିତାରେ କବି ଜାତୀୟତା ଭାବ ସୃଷ୍ଟି ନିମନ୍ତେ ଆଗ୍ରହୀ ହୋଇଛନ୍ତି ।

ଊନବିଂଶ ଶତାବ୍ଦୀର ଶେଷଭାଗରେ କବିମାନେ ଜାତୀୟତାକୁ ସାହିତ୍ୟ ରାଜ୍ୟରେ ସ୍ୱତନ୍ତ୍ର ସ୍ଥାନ ଦେଇଥିଲେ । ତାହା ବସ୍ତୁତଃ ଅତୀତର ଐତିହ୍ୟ ଓ ଐଶ୍ୱର୍ଯ୍ୟ ଉପରେ ଆଧାରିତ ଥିଲା । ନନ୍ଦକିଶୋର ମଧ୍ୟ ଉତ୍କଳର ଅତୀତ ଗୌରବ ବର୍ଣ୍ଣନା କରିଛନ୍ତି । କୋଣାର୍କର ଶିଳ୍ପଚାତୁରୀ, ପୁଣ୍ୟ ଶ୍ରୀକ୍ଷେତ୍ରର ମହିମା, ଉପେନ୍ଦ୍ର ଭଞ୍ଜ, କବିସୂର୍ଯ୍ୟ ଓ ଅଭିମନ୍ୟୁ ପ୍ରଭୃତି କବିମାନଙ୍କ ମହତ୍ତ୍ୱ, ଭାଗବତ, ରାମାୟଣ ଓ ମହାଭାରତର ଗୌରବ, ପଞ୍ଚସଖାଙ୍କ ବୈଶିଷ୍ଟ୍ୟ ପ୍ରଭୃତି ଏଥିରେ ସ୍ଥାନ ପାଇଛି । ବହୁ ସ୍ଥାନରେ କବିତା ନୀତିମୂଳକ ଓ ଉପଦେଶାତ୍ମକ ହୋଇଛି ।

**ତରଙ୍ଗିଣୀ**

ପ୍ରଣୟ ସ୍ମୃତି, ହତାଶ ପ୍ରଣୟ, କେତକୀ ଝର, ବିରହିଣୀ ରାଈ, କଳଙ୍କିନୀ, ଚମ୍ପାବତୀ ରାଜକନ୍ୟାର ସ୍ୱପ୍ନ, ରାଜପୁତ୍ରର ସ୍ୱପ୍ନ ପ୍ରଭୃତି କବିତା ପ୍ରଣୟମୂଳକ । କବିତା ପ୍ରତି ନନ୍ଦକିଶୋରଙ୍କ ମାନସିକ ଦ୍ୱନ୍ଦ୍ୱ ରୂପାୟିତ ହୋଇଛି । କବିତା ପ୍ରତି କବିଙ୍କର ମଧୁର ଆକର୍ଷଣ ଥିଲା । ଅନ୍ୟ ଦିଗରେ ବିଷୟଭୋଗ ଲାଳସା ମଧ କବିଙ୍କର ରହିବା ସ୍ୱାଭାବିକ । ଏହି ଦୁଇଟି ମଧ୍ୟରୁ ସେ କାହାକୁ ଗ୍ରହଣ କରିବେ ସେ ବିଷୟରେ ସେ ଦ୍ୱନ୍ଦ୍ୱରେ ପଡ଼ିଥିଲେ । ବହୁ ପ୍ରଲୋଭନ ସତ୍ତ୍ୱେ ସେ କବିତା ସୁନ୍ଦରୀଙ୍କୁ ଗ୍ରହଣ କରିଛନ୍ତି । କବିତା ସୁନ୍ଦରୀଙ୍କୁ ଲକ୍ଷ୍ୟ କରି କବି କହିଛନ୍ତି –

''ହେଉ ବା ନ ହେଉ ସଂସାର ମୋର ପରାଣ ଧନ
ତବ ପ୍ରେମ ଅଙ୍କେ ପ୍ରେୟସୀ ! ଯାଉ ଏ ମୋ ଜୀବନ
ପ୍ରାଣର ଗଭୀର ବେଦନା ନ ପାରଇ ସହି ମୁହିଁ
ଆକୁଳ ଆବେଗେ ନିରତେ ମୁଁ ଯେ ହୁଅଇ ଦହି ।''

ଏହି ନଶ୍ୱର ବିଶ୍ୱରେ ତାଙ୍କର ନାମ ଚିରଦିନପାଇଁ ରହିବ ବୋଲି ସେ ଆଶା ପୋଷଣ କରିଛନ୍ତି –

''କେତେ କେତେ ଜନେ ଉଭେଇଯିବେ ଦୁଇ ଦିନରେ
ମୋ ପ୍ରାଣ ମହକୁଥିବ ଏ ଭୁବନରେ ।''

'କବିର ପ୍ରାର୍ଥନା' କବିତାରେ କବି କବିତା ରଚନା କରିବା ନିମିତ୍ତ ଶକ୍ତି ଦେବାପାଇଁ ଈଶ୍ୱରଙ୍କଠାରେ ପ୍ରାର୍ଥନା କରିଛନ୍ତି, ଯଥା –

''ହେ ଶୁଦ୍ଧ ଅପାପବିଦ୍ଧ, ହେ ସଚ୍ଚିଦାନନ୍ଦ
ମହକିଯାଉ ମୋ ଗୀତେ ମୋ ପ୍ରାଣ ସୁଗନ୍ଧ
କବିର ଜୀବନ ସଙ୍ଗେ ସାଧୁର ଜୀବନ
ଦିଅ ଅନ୍ତର୍ଯାମୀ ନାଥ ପତିତପାବନ ।''

ପୁଣ୍ୟ ଚିନ୍ତା ଓ ପୁଣ୍ୟ ଭାଷା ଦେବାପାଇଁ ଈଶ୍ୱରଙ୍କଠାରେ ଅଳି କରିଛନ୍ତି ।

''ମୋ କବିତା ମୁଗ୍‌ଧ ଯୁବା ଯୁବତୀ ଯେସନେ
ପିଇ ମୋ କବିତାରସ ପବିତ୍ରତା ମନେ
ମଧୁମୟ ପ୍ରାଣେ ପୂତ କରନ୍ତୁ ଭୁବନେ
ଦିଅ ପ୍ରଭୁ ପୂତ ଭାଷା ପୁଣ୍ୟ ଚିନ୍ତା ମନେ ।''

## ଜନ୍ମଭୂମି

ଏହାର ପ୍ରଥମ ଭାଗ ୧୯୦୩ରେ ପ୍ରକାଶ ପାଇଥିଲା । ଏହି ସଙ୍କଳନରେ ବହୁ ସ୍ୱଦେଶପ୍ରୀତିମୂଳକ ଓ ଜାତୀୟତାଭାବ ସୃଷ୍ଟି କରୁଥିବା କବିତାମାନ ସନ୍ନିବେଶିତ ଅଛି । ଏଥିରେ ମଧ ଉତ୍କଳର ଦୁଃଖଦୁର୍ଦ୍ଦଶା ଦୂର ହେବାପାଇଁ କେଉଁ ପନ୍ଥା ଗ୍ରହଣ କରିବାକୁ ହେବ କବି ତାହାର ସୂଚନା ଦେଇଛନ୍ତି । ଖଣ୍ଡିତ ଉତ୍କଳର ଏକତ୍ରୀକରଣ ତାଙ୍କର କାମ୍ୟ ଥିଲା । ସେ ଏହା ନବୀନ ସମ୍ରାଟ୍‌ଙ୍କ ନିକଟରେ ଉତ୍କଳମାତାର ଗୁହାରି ଶୀର୍ଷକ କବିତାରେ ପ୍ରକାଶ କରିଛନ୍ତି –

''କୋଟି ସୁତ ମାତାହୋଇ ମୁଁ ସମ୍ରାଟ୍
ଅର୍ଦ୍ଧ କୋଟି ସୁତ ଅଛି ହରାଇ
ଗଞ୍ଜାମ ସମ୍ବଲପୁର କାଟି ନେଲେ
ମାନ୍ଦ୍ରାଜ, ମଧ୍ୟଭୂ ବଙ୍ଗ ଛଡ଼ାଇ ।''

ସେ ଉତ୍କଳବାସୀଙ୍କର ଦୁଃଖ–ଦୁର୍ଦ୍ଦଶାର ଏକ କରୁଣ ଚିତ୍ର ପ୍ରଦାନ କରିଛନ୍ତି –

''ଭଗିନୀ ସୁତ ମୋ ବଡ଼ ବଡ଼ ଯେତେ
ରାଜକର୍ମମାନ ବସନ୍ତି ମାଡ଼ି
କୋଟି ପୁତ୍ରେ ମୋର ଦୂରେ ଦୂରେ ଥାଇ
ମୂଲ ଲାଗୁଛନ୍ତି ଯେସନେ ହାଡ଼ି ।''

ଓଡ଼ିଆ ଭାଷାକୁ କବି ଅତି ଭଲ ପାଉଥିଲେ । ଓଡ଼ିଆ ଭାଷାକୁ ଅବଜ୍ଞା କରୁଥିବା ବ୍ୟକ୍ତିଙ୍କୁ ସେ କଠୋରଭାବେ ସମାଲୋଚନା କରିଛନ୍ତି ।

ନନ୍ଦକିଶୋର ପାଶ୍ଚାତ୍ୟ ଶିକ୍ଷାର ପକ୍ଷପାତୀ ଥିଲେ । ପ୍ରାଚ୍ୟ ଓ ପାଶ୍ଚାତ୍ୟ ସାହିତ୍ୟର ସମନ୍ୱୟ ଘଟାଇବାକୁ ସେ ଉତ୍କଳ ଭାରତୀ କବିତାରେ ଆହ୍ୱାନ କରିଛନ୍ତି –

''ଉଠ ହେ ଉତ୍କଳବାସୀ ପାହିଛି ରଜନୀ
ନିଖିଳ ଜଗତ ଆସି ଅଛଇ ବରଣୀ
ପ୍ରାଚ୍ୟ ପ୍ରତୀଚି ଏହି ସମନ୍ୱୟ ସ୍ଥଳେ
ନବ ସାହିତ୍ୟର ଜନ୍ମ ହେଉ ଏ ଉତ୍କଳେ ।''

ଶେଷରେ ପାଶ୍ଚାତ୍ୟ ଶିକ୍ଷା, ପାଶ୍ଚାତ୍ୟ ବିଜ୍ଞାନ ପ୍ରଭୃତିର ଯଥାଯଥ ସୁଯୋଗ ନେଲେ ଉତ୍କଳବାସୀଙ୍କ ଦଶା ଫେରିଆସିବ ଓ ସେମାନେ ନୂଆ ଜୀବନ ଲାଭ କରିବେ ବୋଲି କବି ଆଶା ପୋଷଣ କରିଛନ୍ତି –

''ପାହିଛି ବିଷାଦ ରଜନୀ, ଉଠ ଉଠ ଉତ୍କଳ
ହୃଦୟେ ଧରିଣ ନବୀନ ଆଶା ନବୀନ ବଳ
ପାଶ୍ଚାତ୍ୟ ବିଜ୍ଞାନ ଅମୃତେ ପିଇ କୋଟି ନନ୍ଦନ
ତୋ ଦଶା ଏଣିକି ଫେଡ଼ିବେ ଲଭି ନବ ଜୀବନ ।''

'ଜନ୍ମଭୂମି' (ଦ୍ୱିତୀୟଭାଗ) ୧୯୦୮ରେ ରଚିତ ହୋଇଥିଲା । ଏଥିରେ ଥିବା କବିତାଗୁଡ଼ିକ ଉତ୍କଳ ସାହିତ୍ୟ ସମାଜ, ଉତ୍କଳ ସମ୍ମିଳନୀ ସଭା, ଗଞ୍ଜାମ ଛାତ୍ର ସମିତି ପ୍ରଭୃତିଙ୍କ ଅନୁରୋଧକ୍ରମେ ରଚିତ ହୋଇଥିଲା । ଏହା ବ୍ୟତୀତ ସାମନ୍ତ ଚନ୍ଦ୍ରଶେଖର, ରାଧାନାଥ ରାୟ, ମଧୁସୂଦନ ରାଓ, ମଧୁସୂଦନ ଦାସ ପ୍ରଭୃତି ମହାନ୍ ବ୍ୟକ୍ତିମାନଙ୍କ ଉପରେ ପ୍ରଶସ୍ତିମୂଳକ କବିତା ଏଥିରେ ସ୍ଥାନ ପାଇଛି । ଏହି କବିତାଗୁଡ଼ିକ ଜାତୀୟତାବୋଧର ନିଦର୍ଶନ ।

## ନିର୍ମାଲ୍ୟ

ଏହି ସଙ୍କଳନରେ କବିଙ୍କ ଧର୍ମପ୍ରାଣତାର ପରିଚୟ ମିଳେ । କବି ସତ୍ୟ ଓ ଧର୍ମନିଷ୍ଠ ଜୀବନକୁ ଶ୍ରେଷ୍ଠ ବିବେଚନା କରିଛନ୍ତି । ଏହାର ପ୍ରଥମ କବିତା ତୀର୍ଥଯାତ୍ରା । ଈଶ୍ୱର ଆଉ କେଉଁଠି ନାହାନ୍ତି । ସେ ମନୁଷ୍ୟର ହୃଦୟରେ ବିରାଜମାନ କରୁଛନ୍ତି । ଏହା ରୂପାୟିତ ହୋଇଛି ଏହି କବିତାରେ –

"ଅଲକ୍ଷିତେ ବୋଇଲା କେ ଗିର । ଖୋଜ ଖୋଜ ହୃଦୟ ମନ୍ଦିର
ବାହାରର ତେଜି ଆଡ଼ମ୍ବର, ପ୍ରବେଶ ତୁ ଅନ୍ତରେ ନିଜର
ନ ଦେଖିଲେ ହୃଦୟ କନ୍ଦରେ, ନ ମିଳିବ ବିଶ୍ୱ ବ୍ରହ୍ମାଣ୍ଡରେ ।"

ଏକାକାର କବିତାରେ ମଧ୍ୟ ସେହି ଭାବର ପରିପ୍ରକାଶ ଘଟିଛି –

"ଜଳେ ସ୍ଥଳେ ପ୍ରାଣେ ଆକାଶେ ସେଇ ଏକା ଦେବତା ।"

'ସ୍ୱର୍ଗଦୂତ' କବିତାରେ କବି ଈଶ୍ୱରଙ୍କଠାରେ ପ୍ରାର୍ଥନା କରିଛନ୍ତି –

"ହେ ସତ୍ୟ ମଙ୍ଗଳମୟ ଦିଅ ବଳଦାନ
ତୁମ୍ଭ ଇଚ୍ଛା ପୂର୍ଣ୍ଣ କରୁ ଏ କ୍ଷୁଦ୍ର ପରାଣ ।"

ଏଥିରେ ନନ୍ଦକିଶୋରଙ୍କ ବହୁ କବିତା ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ । ଏହି କବିତାଗୁଡ଼ିକ ମଧୁସୂଦନଙ୍କ ଧର୍ମଭାବନାଦ୍ୱାରା ଯେ ପ୍ରଭାବିତ ହୋଇଅଛି, ଏହା ଅତି ସ୍ପଷ୍ଟ । ନିର୍ମାଲ୍ୟ ପ୍ରାଣରେ ଭକ୍ତି ଓ ପବିତ୍ରତାର ଭାବ ଉଦ୍ରେକ କରେ । ସଙ୍କଳନରେ ଥିବା କେତେକ କବିତା ସେଇ ଭାବର ଆଶ୍ରୟରେ ରଚିତ ହୋଇଥିବାରୁ ଏହାର ନାମକରଣ ଯଥାର୍ଥ ।

ନିର୍ମାଲ୍ୟ ତଥାପି ମୌଳିକ ସୃଷ୍ଟି ପ୍ରତିଭାର ଯଥାର୍ଥ ପରିଚୟ ଦିଏ ନାହିଁ ।

## ପ୍ରଭାତ ସଙ୍ଗୀତ

ପ୍ରଭାତ, ବର୍ଷ ମେଲାଣି, ନବ ବର୍ଷ, ବନପ୍ରିୟ, ଚନ୍ଦ୍ରତାରା, ଖଦ୍ୟୋତ, ଧର୍ମର ଜୟ ପ୍ରଭୃତି ବହୁ କବିତା ବିଭୁପ୍ରୀତିର ପରିଚୟ ଦିଏ । ଏକଲବ୍ୟ, ମୁନୀନ୍ଦ୍ର ମଙ୍ଗଳ, ଗୌତମ, କିସା ଗୌତମୀ, କୁନାଳ ପ୍ରଭୃତି ହେଉଛନ୍ତି ଗାଥାକବିତା ।

ବିଷୟ ଜଞ୍ଜାଳରେ ଘାଣ୍ଟି ହେବାରୁ କବିଙ୍କ ଜୀବନ ଶୁଷ୍କ ହୋଇପଡ଼ିଛି । ସେ ତାହା ଗୀତିକବିତାରେ ପ୍ରକାଶ କରିଛନ୍ତି –

"ଗାଇଥିଲି ଗୀତ ଦିନେ ଦେବୀ ବୀଣାପାଣି
ଦୁର୍ଲଭ କବିତା ଯେବେ ଦେଇଥିଲ ଆଣି
× × ×
ବାଣୀ ଆରାଧନା ତେଜି ସେବିଲି ସଂସାର
ମନା ହୋଇଗଲା ମୋତେ ଶ୍ରୀକୋଠଭଣ୍ଡାର
କବିତା ଲୋଡ଼ଇ ସିନା ଏକାନ୍ତ ଅନ୍ତର
ନୋହିଲେ କି ହେବ ଯୋଡ଼ି ଶବଦ. ମାତର
× × ×
ନାହିଁ ସେ ଅଭ୍ୟାସ ଆଜି ଦେବୀ ଅନୁଗ୍ରହ
ନାହିଁ ସେ ଆବେଗ ଅଛି ଶବଦ ନିବହ ।"

ଏଥିରେ ବହୁ ଚତୁର୍ଦ୍ଦଶ ପଦ କବିତା ଅଛି । ମିତ୍ରାକ୍ଷର, ଅମିତ୍ରାକ୍ଷର ଓ ଅତି କ୍ଷୁଦ୍ର କବିତା ମଧ୍ୟ ଏଥିରେ ସନ୍ନିବିଷ୍ଟ ।

**ସନ୍ଧ୍ୟାସଙ୍ଗୀତ**

ସନ୍ଧ୍ୟା ଆରତି, ସନ୍ଧ୍ୟା ତାରା, ସୂର୍ଯ୍ୟମୁଖୀ ଫୁଲ, ପ୍ରକୃତି ଓ ମନ, ଚିତ୍ରୋତ୍ପଳା ତଟେ, ଦକ୍ଷିଣା ପବନ, ବିରୂପାତଟେ ପ୍ରଭୃତି ୩୧ଟି କବିତା ଏଥିରେ ସନ୍ନିବେଶିତ ଅଛି ।

କବିଙ୍କର ବହୁ କବିତାରେ ବାଲ୍ୟଜୀବନର ଅନୁଭୂତି ରୂପାୟିତ ହୋଇଥିବାର ଦେଖିବାକୁ ମିଳେ । 'ସନ୍ଧ୍ୟାସଙ୍ଗୀତ' ବିରୂପା ତଟେ କବିଙ୍କ ସେହି ଆଦ୍ୟ ଜୀବନର ମଧୁର ସ୍ମୃତି ବିଜଡ଼ିତ ବାସ୍ତବ ଅନୁଭୂତିର ଆଲେଖ୍ୟ ।

"ନଦୀ ନାମ ଶୁଣି ବିରୂପା ନାମ ପଡ଼େ ଗୋ ମନେ
କୋଟି ବାଲ୍ୟସ୍ମୃତି ଝଲସିଉଠେ ସ୍ମୃତି କାନନେ
× × ×
ଏଇ ଯେ ବିରୂପା ତଟେ ମୋର ବାଲ୍ୟ କୁଟୀର
ଯା ତୀରେ କାନନ ପର୍ବତ ଦିଶୁଥିଲା ରୁଚିର ।
ମନେ ପଡ଼େ ଦେଖିଲଇଁ ବାଲ୍ୟେ ନିସର୍ଗ ଶିରୀ
ଆସିଥା ଆଳତି ଉଦୟଗିରି ଲଳିତଗିରି ।"

ଆସିଆ, ଆଳତି, ଉଦୟଗିରି, ଲଳିତଗିରି ପ୍ରଭୃତି କବିଙ୍କ ରଚନାରେ ଯେ ସ୍ଥାନ ପାଇଛି ତାହା ନୁହେଁ, ଗ୍ରାମର ଅଖ୍ୟାତ ସୀତାଅପା, କୁମୁଦଅପା ପ୍ରଭୃତି ନନ୍ଦକିଶୋରଙ୍କ ରଚନାରେ ଜୀବନ୍ତ ହୋଇଉଠିଛନ୍ତି ।

''ଶୁଣିଲି ତା' ଶବ୍ଦ ରାତ୍ରିରେ ଥରେ ଉଝଟ ବେଳେ
କିନ୍ତୁ ଜାଣେ ତାହା କୁମୁଦ ଅପା ଡରାଣ ଛଳେ ।''

କୋଇଲି ଚଉତିଶା ଏକ ଚଉତିଶା । କବି ଏଥିରେ ପୁରାତନ ଶୈଳୀରେ ନୂତନ ଭାବ ପ୍ରକାଶ କରିଛନ୍ତି –

''କୋଇଲି ! ସଦାଜୀବ ସାଧୁକାର୍ଯ୍ୟ କଲେ
ସଂସାର ତେଜନ୍ତେ ସ୍ୱର୍ଗେ ଯିବ ସିନା ଭଲେ ଲୋ ।''

## ନାନାବାୟାଗୀତ (ପ୍ରଥମ ଓ ଦ୍ୱିତୀୟ ଭାଗ)

ନନ୍ଦକିଶୋରଙ୍କର ଓଡ଼ିଆ ସାହିତ୍ୟକୁ ଆଉ ଏକ ଦାନ ହେଉଛି ଶିଶୁ କବିତା । ମା' କୋଳରେ ପିଲାକୁ ଗୀତ ମାଧ୍ୟମରେ ଶୁଆଇ ଦିଆଯାଏ । ପିଲାଟି ମା'ଠୁଁ ଅବୋଧ ଗୀତ ଶୁଣୁ ଶୁଣୁ ଶୋଇପଡ଼େ । ସେଭଳି ଗୀତ ପୃଥିବୀର ସବୁଆଡ଼େ ଅଛି । ତାହାକୁ ଇଂରାଜୀରେ ନର୍ସରୀ ସଙ୍ଗ୍ (Nursery song) କୁହାଯାଏ । ନନ୍ଦକିଶୋର ତା'ର ନାମ 'ନାନାବାୟା ଗୀତ' ଦେଲେ ବୋଲି ପଣ୍ଡିତ ନୀଳକଣ୍ଠ ଦାସ ମତ ଦେଇଛନ୍ତି ।

ନନ୍ଦକିଶୋର ମଧ୍ୟ ଏପରି ଗୀତ କାହିଁକି ରଚନା କଲେ ତାହାର କାରଣ ଉଲ୍ଲେଖ କରିଛନ୍ତି । ଶିଶୁ ସ୍ୱଭାବତଃ ଯେଉଁସବୁ ଜିନିଷ ଦେଖିବାକୁ ଓ ଶୁଣିବାକୁ ଖୁସି ହୁଏ ବା ଆନନ୍ଦ ପାଏ, ସେହିସବୁ ବିଷୟ ସାହାଯ୍ୟରେ ତାକୁ ଶିକ୍ଷା ଦେଲେ ତାହା ଗ୍ରହଣୀୟ ହୋଇଥାଏ । ସୁତରାଂ ଶିଶୁ ଚିତ୍ତକୁ ଆମୋଦ ଦେଲାଭଳି ସେ ବହୁ କ୍ଷୁଦ୍ର କବିତା ରଚନା କରିଥିବାର ଜଣାଯାଏ । ସେଥିମଧ୍ୟରୁ ଅନେକ ହୁଏତ ନିରର୍ଥକ । କିନ୍ତୁ ସେହି କବିତାଗୁଡ଼ିକ ହୃଦୟକୁ ସ୍ପନ୍ଦିତ କରେ । ସେଥିପାଇଁ ଏହି ଗୀତଗୁଡ଼ିକ ଓଡ଼ିଶାର ଘରେ ଘରେ ଆଦର ଲାଭ କରିଛି । କେତୋଟି ଉଦାହରଣ –

''ଚୁଟିଆ ମୂଷାରେ ଚୁଟେଇ ମୂଷି
ଧାନ ଅମାରକ ଖାଉଥା ବସି
କରୁଥା ଯାହା ତୋ ମନର ଖୁସି
ଘର ଛାଡ଼ି ମୁହିଁ ଯାଉଛି ରୁଷି

× × ×

ଟୁକୁ ମୂଷାରେ ଟୁକେଇ ମୂଷି
ଖାଇବୁ ଯେତେକ ଖାରେ ଖୁସି ।''

ଗାଁ ବଣର ବିଲୁଆନନା ମଧ୍ୟ ତାଙ୍କ ଶିଶୁ କବିତାରେ ସ୍ଥାନ ପାଇଛି, ଯଥା

''ବିଲୁଆ ଭାଇରେ ବିଲୁଆ ଭାଇ
ଏତେ ବୋବାଉ ତୁ କୋଉଥିପାଇଁ
ବୋବାଇ ଉଠୁ ତୁ ହୁକେ ହୋଓ
କୁକୁର ଭୁକଇ ଭୋଓ ଭୋଓ
ହୁକେ ହୋଓରେ ହୁକେ ହୋଓ ।''

ରୋଷେଇ ଘରର ବିଲେଇନାନୀ ସମ୍ପର୍କରେ ତାଙ୍କର କ୍ଷୁଦ୍ର ଗୀତ -

''ଆଖି ବୁଜି ଖାଉ ସର ଲବଣି
ନ ଦେଖିବେ କେହି ବିଲେଇ ନାନୀ ।''

ବାରିପଟେ ଶୋଇଥିବା କୁକୁର ମଧ୍ୟ ତାଙ୍କ କବିତାରୁ ବାଦ୍ ଯାଇ ନାହିଁ, ଯଥା –

''ଆରେ ଆରେ ପୋଷା କୁକ
ତତେ କି କରୁଛି ଭୋକ
ବାରିଆଡ଼େ ଶୋଇଥାଉ
ଭାତ ଦେଲେ ଗଣ୍ଡେ ଖାଉ ।''

କବିଙ୍କର ଧୋ ରେ ବାୟା ଧୋ ଆଉ ଏକ ଅନବଦ୍ୟ ସୃଷ୍ଟି । ତାହାର ଉଦାହରଣ

''ଦିନ ତ ଯାଇଛି ମାଡ଼ି ରାତି ତ ଆସୁଛି
ହୋରେ ବାଇଆ ହୋଓ
ଝଙ୍କାଳିଆ ଗଛର ଗହଳିଆ ଡାଳେ
ତୁନି ହୋଇ କରି ଶୋଓ
ଦିନ ତ ଯାଇଛି ରାତି ତ ଆସିଛି
ହୋରେ ବାଇଆ ହୋଓ
ହାଣ୍ଡିଶାଳ ପାଖେ ଚୁଲି ମୁଣ୍ଡରେ ତୁ
ଉଷୁମ ଜାଗାରେ ଶୋଓ ।''

ଗେଣ୍ଡାଳିଆ ଉପରେ କବି ଏକ ମନୋରମ କବିତା ଲେଖିଛନ୍ତି

''ଉଡ଼ିଗଲା ଗେଣ୍ଡାଳିଆ ଝାଡ଼ି ଦେଲେ ପର
ଜେମାଦେଈ କାନ୍ଦୁଛନ୍ତି ଦେଖି ବୁଢ଼ାବର ।''

କବି ଅବଶ୍ୟ 'ଧୋ ରେ ବାୟା ଧୋ' କିମ୍ବା 'ବିଲୁଆନନାରେ' ବା 'ଉଡ଼ିଗଲା ଗେଣ୍ଡାଳିଆ' ପ୍ରଭୃତି କବିତାଗୁଡ଼ିକର ବହୁ ଅଂଶ ସଙ୍କଳିତ ହୋଇ ନ ଥିବା ପଲ୍ଲୀ ସାହିତ୍ୟରୁ ଆଣିଥିଲେ । କିନ୍ତୁ ସେହି ସୁପ୍ରଚଳିତ ଲୋକଗୀତଗୁଡ଼ିକର ଭାବ, ଭାଷା ଓ ପଦ୍ୟାଂଶକୁ ଅବଲମ୍ବନ କରି ତା'ର ଯଥାଯଥ ବିନିଯୋଗ କରି ନନ୍ଦକିଶୋର ବଳ ଯେଉଁ ଅପୂର୍ବ ସାହିତ୍ୟ ସୃଷ୍ଟି କରିଛନ୍ତି, ତାହା ତାଙ୍କୁ ଅପୂର୍ବ ସ୍ରଷ୍ଟାର ମର୍ଯ୍ୟାଦା ଦେଇଛି ।

କବିଙ୍କର ସାମସମୟିକ ଓ ବାଲ୍ୟବନ୍ଧୁ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାରେ, ''କବି ଉତ୍କଳର ଢଗଢମାଳି ସଂଗ୍ରହ କରି ଜାତୀୟ ସାହିତ୍ୟ ଭଣ୍ଡାରକୁ ପୂର୍ବ କବି ମଣ୍ଡଳୀର ଅପରିଚିତ ବା ଅବହେଳିତ ଗୋଟିଏ ରତ୍ନ ଦାନ କରିଛନ୍ତି ।''

ଭକ୍ତକବି ମଧୁସୂଦନ ନନ୍ଦକିଶୋରଙ୍କ କବିତାରେ ମୁଗ୍ଧ ହୋଇ ଲେଖିଛନ୍ତି –

''ସ୍ୱଦେଶୀୟ ଭାବ ମାଧୁରୀ-ସ୍ନିଗ୍ଧ ସ୍ୱଦେଶୀୟ ସ୍ମୃତି ପବିତ୍ରିତ ଓଡ଼ିଶାର ଅକୃତ୍ରିମ ଜନପଦ ଭାବୋଚ୍ଛ୍ୱାସ ସମ୍ବଳିତ ଏପରି ମଧୁମୟ ମର୍ମସ୍ପର୍ଶୀ ଓ ବିଚିତ୍ର ଭଲ ସଙ୍ଗୀତ ଆଧୁନିକ ଉତ୍କଳ ସାହିତ୍ୟ କୁଞ୍ଜରେ ଇତିପୂର୍ବେ କୂଜିତ ହୋଇ ନ ଥଲା କହିଲେ ଅତ୍ୟୁକ୍ତି ହେବ ନାହିଁ ।''

## କାବ୍ୟ କୃତି

କବି ତିନୋଟି କାବ୍ୟସୌଧ ନିର୍ମାଣ କରିଛନ୍ତି । ସେଗୁଡ଼ିକ ହେଲା – 'କୃଷ୍ଣାକୁମାରୀ', 'ସୀତା ବନବାସ' ଓ 'ଶର୍ମିଷ୍ଠା' । ଏହାର ମୂଳ ଉପାଦାନ ସେ ଇତିହାସ ଓ ପୁରାଣରୁ ସଂଗ୍ରହ କରିଛନ୍ତି । ରାଧାନାଥ ତାଙ୍କ କାବ୍ୟରେ ନାରୀକୁ ଉପଭୋଗର ସାମଗ୍ରୀଭାବେ ଉପସ୍ଥାପିତ କଲାବେଳେ ନନ୍ଦକିଶୋର ନାରୀକୁ ତ୍ୟାଗର ମହିମାରେ ଗୌରବାନ୍ୱିତ କରିଛନ୍ତି ।

## କୃଷ୍ଣାକୁମାରୀ

ଏହା ୧୯୦୧ ମସିହାରେ ପୁସ୍ତକାକାରରେ ପ୍ରକାଶ ପାଇଥିଲା । ଇତିହାସ ପ୍ରସିଦ୍ଧ ମିବାର ରାଜକନ୍ୟା କୃଷ୍ଣାକୁମାରୀଙ୍କ ଅପୂର୍ବ ଆତ୍ମବଳି ଉପରେ ଏହି କ୍ଷୁଦ୍ର କାବ୍ୟଟି ରଚିତ ।

କୃଷ୍ଣାକୁମାରୀଙ୍କର ଜୟପୁର ନରପତି ଜଗତ୍‌ସିଂହଙ୍କ ସହିତ ବିବାହ ସ୍ଥିର ହୋଇଥିଲା । କିନ୍ତୁ ନୀଚ କୁଳୋଦ୍ଭବ ଯୋଧପୁର ରାଜା ମାନସିଂହ ତାଙ୍କର ପ୍ରତିଦ୍ୱନ୍ଦ୍ୱୀ ଭାବେ ଠିଆ ହେଲେ । ଦୁହିଁଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ଅମୀର ଖାଁଙ୍କ କୌଶଳରେ ମାନସିଂହ ପରାସ୍ତ ହେଲେ । ମାତ୍ର ଅମୀର ଖାଁ କୃଷ୍ଣାକୁମାରୀଙ୍କ ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇପଡ଼ିଲେ । ତାଙ୍କୁ ବିବାହ କରିବାପାଇଁ ପିତା ଭୀମ ସିଂହଙ୍କ

ପାଖକୁ ପ୍ରସ୍ତାବ ଦେଲେ । ରାଜା ଭୀମ ସିଂହ ଶେଷରେ ଦେଶର ମାନସମ୍ମାନ ରକ୍ଷାପାଇଁ କନ୍ୟାକୁ ବିଷପାନ କରି ମୃତ୍ୟୁବରଣ କରିବାକୁ ଆଦେଶ ଦେଲେ ।

କନ୍ୟାର ଶୋଚନୀୟ ପରିଣତି ଦେଖି ମାତାଙ୍କର ଅବସ୍ଥା ହୃଦୟବିଦାରକ ହୋଇପଡ଼ିଛି । କବିଙ୍କ ଭାଷାରେ –

''ଦଶ ମାସ ତୋତେ ଗରଭେ ଧରିଣ
ସହିଲି ଅସଂଖ୍ୟ ଯାତନା ଘୋର
ଆଶା କରିଥିଲି ମୁଖ ଦେଖି ତୋର
ପାସୋରି ଯିବି ସେ କଷଣ ମୋର ।

× × ×

ଆଖି ଲୁହ ଛାଡ଼ି ପଥର କରିଣ
କେମନ୍ତେ ବଞ୍ଚିବି ତେଜି ତୋ ମାୟା ।''

କିନ୍ତୁ କୃଷ୍ଣାକୁମାରୀ ବିଚଳିତ ହୋଇ ନାହାନ୍ତି । ଦେଶ ଓ ଦଶପାଇଁ ଜୀବନ ଦେବାକୁ ପଛଘୁଞ୍ଚା ଦେଇ ନାହାନ୍ତି । ମାତାଙ୍କୁ ଆଶ୍ୱାସନା ଦେଇଛନ୍ତି –

''କାନ୍ଦନା ଜନନୀ କାନ୍ଦନା ଆଉ
ଥାଆନ୍ତୁ ଜନକ ନିରାପଦେ ରହି
ଗଲେ ପଛେ ମୋର ଜୀବନ ଯାଉ ।''

କୃଷ୍ଣାକୁମାରୀ ଶେଷରେ ବିଷପାନ କରି ମୃତ୍ୟୁବରଣ କରିଛନ୍ତି । ଆଲୋଚକ ଡଃ ନଟବର ସାମନ୍ତରାୟଙ୍କ ମତରେ 'କୃଷ୍ଣାକୁମାରୀ' କବିଙ୍କ ଜାତୀୟତା ଭାବ ବା ସ୍ୱଦେଶପ୍ରୀତିର କାବ୍ୟରୂପ ମାତ୍ର ।

## ସୀତା ବନବାସ

ଏହା ୧୯୦୧ରେ ରଚିତ । ଲୋକ ଅପବାଦ ହେତୁ ରାମଚନ୍ଦ୍ର ସୀତାଙ୍କୁ ନିର୍ବାସନ ଦଣ୍ଡ ଦେଇଛନ୍ତି । ସେ ଏହା କରିଛନ୍ତି ପ୍ରଜାମାନଙ୍କର ସନ୍ତୋଷ ବିଧାନପାଇଁ । ଏପରିକି ସେଥିପାଇଁ ପ୍ରାଣରୁ ଅଧିକ ତିନି ଭାଇଙ୍କୁ ତ୍ୟାଗ କରିବାକୁ ସେ କୁଣ୍ଠିତ ହେବେ ନାହିଁ ବୋଲି କହିଛନ୍ତି । ରାଜ୍ୟ ଶାସନ ରାଜାର ବା ତା'ର ପରିବାର ସ୍ୱାର୍ଥସାଧନପାଇଁ ନୁହେଁ । ଏହି କ୍ଷୁଦ୍ର କାବ୍ୟରେ ରାମଙ୍କର ଆଦର୍ଶବୋଧ ଛତ୍ରେ ଛତ୍ରେ ଫୁଟିଉଠିଛି –

''ପ୍ରଜାତୁଷ୍ଟି ପାଇଁ ତେଜିପାରେ ପ୍ରାଣାଧିକ ତିନି ଭାଇ
ରାଜାର ଜୀବନ ଧନ ସର୍ବ ପ୍ରଜା ପାଇଁ
ଆତ୍ମ ପରିବାର ସ୍ୱାର୍ଥ ନୃପତିର ନାହିଁ ।''

ସୀତା ସ୍ୱାମୀଙ୍କଦ୍ୱାରା ନିର୍ବାସିତା ହୋଇଛନ୍ତି; ମାତ୍ର ସ୍ୱାମୀଙ୍କ ପ୍ରତି ବିମୁଖ ହୋଇ ନାହାନ୍ତି । ତାହା ସେ ପୂର୍ବଜନ୍ମର ଫଳ ବୋଲି ଭାବିଛନ୍ତି । ନିଜର ଦୁଃଖପାଇଁ ବିଚଳିତ ହୋଇ ନାହାନ୍ତି । ବରଂ –

"ମୋର ବିରହେ ଶ୍ରୀରାମଙ୍କ ଦୁଃଖେ ମୁଁ ଚିନ୍ତିତ ।"

ବିଷାଦ-ପ୍ରତିମ ସୀତାଦେବୀଙ୍କର ଅନ୍ତିମ ଜୀବନ ବିଷାଦମୟ ହୋଇଛି । ସେହି ଅଂଶଟି ସରଳ, ମଧୁର ଓ ହୃଦୟସ୍ପର୍ଶୀ ଭାବରେ ବର୍ଣ୍ଣିତ । କରୁଣରସ ବର୍ଣ୍ଣନାରେ କବି ବିଶେଷ ଦକ୍ଷତା ଦେଖାଇଛନ୍ତି ।

### ଶର୍ମିଷ୍ଠା

୧୧ଟି ସର୍ଗରେ ରଚିତ ଏହା କବିଙ୍କର ଏକ ସୁନ୍ଦର ସୃଷ୍ଟି । ମହାଭାରତର ଗଳ୍ପଟି ନେଇ କବି ତାକୁ କାବ୍ୟିକ ସୌରଭରେ ପୂର୍ଣ୍ଣ କରି ପାଠକମାନଙ୍କ ଆଗରେ ଉପସ୍ଥାପିତ କରିଛନ୍ତି ।

ଦେବାସୁର ଯୁଦ୍ଧ ହେତୁ ଦାନବ ଗୁରୁ ଶୁକ୍ରାଚାର୍ଯ୍ୟ ନିଜ କନ୍ୟା ଦେବଯାନୀଙ୍କ ସହ ଦାନବରାଜ ବୃଷପର୍ବାଙ୍କ ଗୃହରେ ଅବସ୍ଥାନ କରୁଥିଲେ । ରାଜକନ୍ୟା ଶର୍ମିଷ୍ଠା ଓ ଗୁରୁକନ୍ୟା ଦେବଯାନୀ ଥିଲେ ବାଲ୍ୟସଙ୍ଗିନୀ । ଇନ୍ଦ୍ରଙ୍କ ଚକ୍ରାନ୍ତରେ ସେମାନଙ୍କ ମଧ୍ୟରେ ହୋଇଛି ବିବାଦ । ଶର୍ମିଷ୍ଠାଙ୍କ ଇଙ୍ଗିତରେ ଦାସୀମାନେ ଦେବଯାନୀଙ୍କୁ ଟଣାଓଟରା କରିବାରୁ ଦେବଯାନୀ କୂପ ମଧ୍ୟରେ ପଡ଼ିଗଲେ । ପରେ ଯଯାତି ତାଙ୍କୁ କୂପରୁ ଉଦ୍ଧାର କଲେ । ଦେବଯାନୀ ପ୍ରତିଶୋଧପରାୟଣା ହୋଇ ଶୁକ୍ରାଚାର୍ଯ୍ୟଙ୍କୁ ରାଜନବର ତ୍ୟାଗ କରିବାକୁ କହିଲେ । ଶୁକ୍ରାଚାର୍ଯ୍ୟ ମଧ୍ୟ ରାଜନବର ତ୍ୟାଗ କରିବାକୁ ବସିଲେ । ରାଜା ବୃଷପର୍ବା କନ୍ୟାର ଦୋଷ ମାର୍ଜନା କରିବାକୁ ପ୍ରାର୍ଥନା କଲେ । ଦେବଯାନୀର ସର୍ତ୍ତ ଅନୁସାରେ ଶର୍ମିଷ୍ଠା ଆଜୀବନ ଦାସୀ ହେଲେ । ପରବର୍ତ୍ତୀ କାଳରେ ଦେବଯାନୀ ଓ ଯଯାତିଙ୍କର ବିବାହ ହେଲା । ଶର୍ମିଷ୍ଠା ମଧ୍ୟ ଦେଶର ସ୍ୱାର୍ଥପାଇଁ ଦେବଯାନୀଙ୍କ ଦାସୀ ପଦରେ ନିଜର ଜୀବନ ଉତ୍ସର୍ଗ କଲେ ।

ଶର୍ମିଷ୍ଠାଙ୍କ ମାତା କନ୍ୟାର ଦୁର୍ଦ୍ଦଶାରେ ଅଧୀର ହୋଇପଡ଼ିଲେ । ମାତ୍ର ଶର୍ମିଷ୍ଠାଙ୍କ ମହନୀୟତା ପ୍ରକାଶ ପାଇଛି –

"ଶୋଚନା ନାହିଁ ଲୋ ଜନନୀ ତହିଁ ମୋ
ସ୍ୱଜାତି ସ୍ୱଧର୍ମ ପାଇଁ
ଦିଏ ଯେହୁ ନିଜ ଜୀବନ ତା'ଠାରୁ
ପୁଣ୍ୟବତୀ କେହି ନାହିଁ ।"

ପୁଣି ସେ କହିଛନ୍ତି –

"ପିତୃ ସତ୍ୟ, ଜାତି ସ୍ୱାଧୀନତା ଲାଗି
ସମର୍ପିଛି ଏ ଜୀବନ
ଦାନବ କୁଳରେ ଲାଗିବ କଳଙ୍କ
ନ ଦେଖା ମା' ପ୍ରଲୋଭନ ।"

କବି ନନ୍ଦକିଶୋର କାବ୍ୟରେ ତ୍ୟାଗର ମାହାତ୍ମ୍ୟ ଗାନ କରିଛନ୍ତି । ଜାତୀୟ ଜୀବନରେ ଉଦ୍‌ବୁଦ୍ଧ ହୋଇ ଶର୍ମିଷ୍ଠା ଦଧୀଚିଙ୍କ ପରି ନିଜ ଜୀବନର ସମସ୍ତ ସୁଖସମ୍ଭୋଗକୁ ବଳି ଦେଇଛନ୍ତି –

"ମୁଁ ସିନା ଗୋଟିଏ ସୁତା ତୋର ମାତଃ ଅଗଣନ ପ୍ରଜାବଂଶ
ରାଣୀ ଗୋ ତୋହରି ଆଶ୍ରିତ ସନ୍ତାନ ହୋଇଯିବେ ପରା ଧ୍ୱଂସ ।
କ୍ଷଣିକ ଜୀବନ କ୍ଷଣିକ ଯୌବନ କ୍ଷଣିକ ଏ ଧନଜନ
ନଶ୍ୱର ଜଗତ ଲୀଳା ଦେଖ ମାତଃ ସ୍ଥିର କରି ଆତ୍ମା ମନ ।"

ପୁଣି ଯଯାତିଙ୍କୁ ପାଇବାକୁ ଶର୍ମିଷ୍ଠାଙ୍କ ମନ ମଧ୍ୟରେ ଦୁର୍ବାର କାମନା ଜାତ ହୋଇଛି । ସେ ତାହା ମଧ୍ୟ ପରିତ୍ୟାଗ କରିଛନ୍ତି । ଗୋଟିଏ ଦିଗରେ ଆଦର୍ଶ, ଅନ୍ୟ ଦିଗରେ ଯଯାତିଙ୍କ ଲାଗି ଦୁର୍ବଳତା । ଏଇ ଆଦର୍ଶ ଓ ବାସ୍ତବର ସଂଘର୍ଷ ଫଳରେ ଆଦର୍ଶର ବିଜୟ ହୋଇଛି । କାମନା-ସମ୍ପର୍କ ଦୈହିକ ପ୍ରେମ ତାଙ୍କୁ ତୁଚ୍ଛ ମନେ ହୋଇଛି । ଚିରନ୍ତନ ଶାଶ୍ୱତ ପ୍ରେମର ପୂଜାରିଣୀ ହୋଇଛନ୍ତି । କବିଙ୍କ ଭାଷାରେ

"ଅଳ ସଙ୍ଗ ଭୋଗ ଅଢ଼େଇ ଦିନର
ନଶ୍ୱର ଯୌବନ ଶୋଭା
× × ×
ନଶ୍ୱର ଦେହରେ ଯୌବନ କୁସୁମ
ଫୁଟି ଦୁଇ ଦିନେ ଝଡ଼େ,
ଚିରନ୍ତନ ପ୍ରୀତି ତ୍ରିଦିବ କୁସୁମ
ଫୁଟି ଦିନୁଁ ଦିନ ବଢ଼େ ।"

କାବ୍ୟ ରଚନାରେ କବି ମଧ୍ୟ ପଲ୍ଲୀ ପ୍ରକୃତିକୁ ବାଦ ଦେଇ ନାହାନ୍ତି । ଯେଉଁଠାରେ ତାଙ୍କୁ ସୁବିଧା ମିଳିଛି, ସେଠାରେ ସେ ପଲ୍ଲୀ ଜୀବନର ନିଖୁଣ ଚିତ୍ର ଦେଇଛନ୍ତି 'ଶର୍ମିଷ୍ଠା' କାବ୍ୟର ଶେଷ ଭାଗରେ ଥିବା ପ୍ରକୃତି ଚିତ୍ରଣ ଅତି ମନୋରମ ହୋଇଛି, ଯଥା –

"ସିଙ୍କୁ ଆଙ୍କୁବାଡ଼େ ଲଙ୍କାପିତା ଡାଳେ
ଫୁଟେ ତୋରା ଜହ୍ନି ଫୁଲ
ବାଡ଼ ପାଶେ ପଥ ନୀଳ ନଭେ ପୂରା
ଛାୟାପଥ ଯା'ର ତୁଲ ।"

## କନକଲତା

କାବ୍ୟକବିତା ସହିତ ନନ୍ଦକିଶୋର ମଧ୍ୟ ଗଦ୍ୟ-ସାହିତ୍ୟ ସୃଷ୍ଟି କରିଛନ୍ତି । ଅଳ୍ପ ପରିମାଣର ହେଲେ ମଧ୍ୟ ଉପନ୍ୟାସ, ଗଳ୍ପ, ପ୍ରବନ୍ଧ, ଜୀବନୀ ଓ ସମାଲୋଚନା ଆଦି ରଚନା କରି ଓଡ଼ିଆ ସାହିତ୍ୟରେ ପ୍ରତିଷ୍ଠା ଅର୍ଜନ କରିଛନ୍ତି । ନନ୍ଦକିଶୋରଙ୍କ ପ୍ରଥମ ଓ ଶେଷ ଉପନ୍ୟାସ ହେଉଛି 'କନକଲତା' ।

ନନ୍ଦକିଶୋର ବାଲେଶ୍ୱରରେ ଥିଲାବେଳେ ତାଙ୍କର ଗଳ୍ପ ଆଖଣ୍ଡଳମଣି ଫକୀରମୋହନଙ୍କୁ ପଢ଼ି ଶୁଣାଇଥିଲେ । ତାଙ୍କର ପରାମର୍ଶକ୍ରମେ ସେ କେତେକ ପରିଚ୍ଛେଦ ରଚନା କରି ଉତ୍କଳ ସାହିତ୍ୟରେ ପ୍ରକାଶ କରିଥିଲେ । ଏହାକୁ ସମ୍ପୂର୍ଣ୍ଣ କରିବାପାଇଁ କୌଣସି ଉଦ୍ୟମ କରି ନ ଥିଲେ । ୧୯୨୫ରେ ସମ୍ପୂର୍ଣ୍ଣ 'କନକଲତା' ଉପନ୍ୟାସ ପ୍ରକାଶ ପାଇଲା ।

ଉପନ୍ୟାସର କାହାଣୀ ପଲ୍ଲୀଭିତ୍ତିକ । ହୀରାପୁରର ସମ୍ଭ୍ରାନ୍ତ ଖଣ୍ଡାୟତକୁଳର ବଜ୍ରଧର ହରିଚନ୍ଦନଙ୍କ କନ୍ୟା କନକଲତା । ତା'ର ଜନ୍ମଦିବସ ଉପଲକ୍ଷେ ତା'ର ପରିବାର ଆଖଣ୍ଡଳମଣିଙ୍କ ଦର୍ଶନପାଇଁ ଆସିଛନ୍ତି । ଦୈବକ୍ରମେ ସେଦିନ ମୋତିଝର ଇନ୍ଦ୍ରଜିତ୍ ପାଇକରାୟଙ୍କ ପରିବାର ମଧ୍ୟ ଦେବଦର୍ଶନକୁ ଆସିଛନ୍ତି । ଉଭୟ ପରିବାରର ସାକ୍ଷାତ ହୋଇଛି । ହରିଚନ୍ଦନଙ୍କ କନ୍ୟା କନକଲତା ଓ ପାଇକରାୟଙ୍କ ପୁତ୍ର ଧନଞ୍ଜୟ ପରସ୍ପର ପ୍ରତି ଆକର୍ଷିତ ହୋଇଛନ୍ତି । ଯଥାସମୟରେ ଉଭୟଙ୍କର ବିବାହ ପ୍ରସ୍ତାବ ପଡ଼ିଛି । ମାତ୍ର ଇନ୍ଦ୍ରଜିତ୍ ପାଇକରାୟଙ୍କ ଭାଇ ପୁରଞ୍ଜୟ ବହୁ ଯୌତୁକଦାବି କରିଛନ୍ତି । ଶେଷରେ ବଜ୍ରଧର ହରିଚନ୍ଦନଙ୍କ ଚତୁର୍ଥ ପୁତ୍ର ରାଜେନ୍ଦ୍ର ନିଜ ଅଂଶକୁ ଯୌତୁକ ଭାବେ ଦେବାକୁ ପ୍ରତିଶ୍ରୁତି ଦେବାରୁ ବିବାହ ହୋଇଛି । କନକଲତାଙ୍କ ବିବାହ ପରେ ରାଜେନ୍ଦ୍ର ଇନ୍ଦ୍ରଜିତ୍‌ଙ୍କ ଗୃହକୁ ଯାଇଛନ୍ତି । ସେଠାରେ ଦେଖା ହୋଇଛି ଧନଞ୍ଜୟଙ୍କ ଭଗ୍ନୀ ବାଲ୍ୟବିଧବା ଉମା ସହିତ । ରାଜେନ୍ଦ୍ର ଉମା ପ୍ରତି ଆକୃଷ୍ଟ ହୋଇ ବିବାହ କରିବାକୁ ସ୍ଥିର କରନ୍ତି । ମାତ୍ର ଉମାର ଅକାଳ ବିୟୋଗ ଘଟିଛି । ଫଳରେ ରାଜେନ୍ଦ୍ର ସଂସାର ତ୍ୟାଗ କରିଛନ୍ତି । ଶେଷରେ ସେ ପୁରୀ ଆସନ୍ତି ଓ ସେଠାରେ ଉଭୟ ପରିବାରର ହୋଇଛି ମିଳନ ।

ଏହି ଉପନ୍ୟାସ ପ୍ରକାଶ ପାଇଲାପରେ ଉତ୍କଳ ସାହିତ୍ୟ ଓ ବାରୁଣି ପତ୍ରିକାରେ ବାଦାନୁବାଦ ଆରମ୍ଭ ହୋଇଗଲା । ଉତ୍କଳ ସାହିତ୍ୟର ସମ୍ପାଦକ ଏହାର ବିଶେଷ ପ୍ରଶଂସା କରିଥିଲେ । 'ଛ'ମାଣ ଆଠ ଗୁଣ୍ଠ' ପରେ ଏହା ଗୋଟିଏ ଖାଣ୍ଟି ଓଡ଼ିଆ ଉପନ୍ୟାସ ବୋଲି ମତ ଦେଇଥିଲେ । ଆଧୁନିକ ଯୁଗର ବିଶିଷ୍ଟ କବି ଡଃ ମାୟାଧର ମାନସିଂହ ମଧ୍ୟ ଏହି ଉପନ୍ୟାସଟି କବିତା ଭଳି ପଲ୍ଲୀ ଜୀବନର ଓ ପଲ୍ଲୀ ପ୍ରକୃତିର ସୌରଭ ବିତରଣ କରେ ବୋଲି ମତ

ଦେଇଛନ୍ତି । କନକଲତାର ଚରିତ୍ର ଚିତ୍ରଣ ମଧ୍ୟ ଉଚ୍ଚକୋଟୀର ହୋଇଥିବା ଦର୍ଶାଇଛନ୍ତି । ଆଲୋଚକଙ୍କ ଭାଷାରେ – "ନାୟିକା କନକଲତା ଆମ ଆଗରେ ପଲ୍ଲୀ ପୁଷ୍କରିଣୀର ନିର୍ମଳ ସଲୀଳରେ ଏକ ରକ୍ତ ପୁଷ୍କର ପରି ଆସ୍ତେ ଆସ୍ତେ ଫୁଟିଉଠିଛି ।" ତତ୍କାଳୀନ ଓଡ଼ିଆ ସମାଜର ବିବିଧ ଚିତ୍ର ଓ ଚରିତ୍ର ଚିତ୍ରଣରେ କଥାକାର କୃତିତ୍ୱ ଯେ ଦେଖାଇଛନ୍ତି, ଏହା ନିଃସନ୍ଦେହ । ଚରିତ୍ରମାନଙ୍କର ଉକ୍ତି-ପ୍ରତ୍ୟୁକ୍ତି ମଧ୍ୟ ଅତି ଚମତ୍କାର ହୋଇଛି । ଏହାର ଏକ ଉଦାହରଣ – "କି ପେଟ ଭିତରେ ଏତେ କଥା । ଉପରେ ଭାଇ କହନ୍ତି ଆମ ଭଉଣୀ କିଛି ଜାଣେ ନାହିଁ, ଋଷିକନ୍ୟା । ତଳମୁହାଁ, ମଉନିମୁହାଁ, ଧୂଳିଆ ଜନ୍ଦାକୁ ବିଶ୍ୱାସ ନାହିଁ ।"

ଏହା ସତ୍ତ୍ୱେ ଉପନ୍ୟାସରେ ବହୁ ଦୁର୍ବଳତା ପରିଦୃଷ୍ଟ ହୁଏ । ଉପନ୍ୟାସ ନନ୍ଦକିଶୋରଙ୍କ ପ୍ରକୃଷ୍ଟ କ୍ଷେତ୍ର ନୁହେଁ ବୋଲି ସେତେବେଳକାର ବାରୁଣି ପତ୍ରିକା ମତ ଦେଇଥିଲା । ଏହା କେତେକାଂଶରେ ମଧ୍ୟ ଯଥାର୍ଥ । ଗଳ୍ପର ବିକାଶ ସେପରି ଉନ୍ନତ ନୁହେଁ । ପ୍ରଥମାଂଶ ଓ ଶେଷାଂଶ ମଧ୍ୟରେ ଶିଳ୍ପଗତ ପ୍ରଭେଦ ଦେଖାଯାଏ । କେତେକ ଚରିତ୍ରର ଚିନ୍ତା ଓ ବକ୍ତବ୍ୟରେ ଯୁକ୍ତିବାଦିତା ଓ ବହୁଦର୍ଶିତା ପ୍ରବନ୍ଧତୁଲ୍ୟ ମନେହୁଏ । କେତେକ ପରିଚ୍ଛେଦରେ ସଂସ୍କୃତ ପ୍ରଭାବିତ ଓଡ଼ିଆ ଗଦ୍ୟର ପ୍ରୟୋଗ ଅଛି । ଦ୍ୱିତୀୟାର୍ଦ୍ଧ ମଧ୍ୟ ପ୍ରଚାରମୂଳକ ହୋଇଛି ।

## ଲକ୍ଷ୍ମୀ

ଏହା ଏକ କ୍ଷୁଦ୍ର ଗଳ୍ପ । ସମାଜରେ ପ୍ରଚଳିତ ଥିବା କନ୍ୟାସୁନା ପ୍ରଥାକୁ ନେଇ ଏହା ରଚିତ । ଏକ ବାସ୍ତବ ଘଟଣାକୁ ନେଇ ନନ୍ଦକିଶୋର ଏହାକୁ ସମାଜ ସଂସ୍କାର ଉଦ୍ଦେଶ୍ୟରେ ରଚନା କରିଥିଲେ ମଧ୍ୟ ଏହାର କଳାତ୍ମକ ମୂଲ୍ୟ ବିଶେଷ ନାହିଁ ।

## ଅନ୍ୟାନ୍ୟ ରଚନା

ଭାରତର ଭବିଷ୍ୟତ୍ ଭାଷା ଶୀର୍ଷକ ପ୍ରବନ୍ଧରେ ହିନ୍ଦୀ ଭାଷା ଦିନେ ଭାରତର ଜାତୀୟ ଭାଷା ହେବ ବୋଲି ନନ୍ଦକିଶୋର କହିଛନ୍ତି । କବି ରାଧାନାଥ ଓ ତଦୀୟ କବିତା ଏକ ତୁଳନାତ୍ମକ ପ୍ରବନ୍ଧ । ଏହା ଅତି ଉଚ୍ଚକୋଟୀର ହୋଇଛି । ସେହିପରି କବି ମଧୁସୂଦନ ରାଓ ଓ ଫକୀରମୋହନଙ୍କ ଜୀବନୀ ମଧ୍ୟ ରଚନା କରିଛନ୍ତି ।

## ଶେଷ ଜୀବନ

ନନ୍ଦକିଶୋର ଟାଉନ ସ୍କୁଲରେ ଶିକ୍ଷକଭାବେ ନିଯୁକ୍ତ ହୋଇଥିବା ବିଷୟ ପୂର୍ବେ ବର୍ଣ୍ଣିତ ଅଛି । କେତେ ବର୍ଷ ଶିକ୍ଷକତା କଲା ପରେ ୧୯୦୩ ମସିହାରେ ସେ ସ୍କୁଲ ସବଇନ୍‌ସପେକ୍ଟର ଭାବେ ନିଯୁକ୍ତ ହେଲେ । ତାଙ୍କୁ ସେଥିରେ ଘନ

ଘନ ଗସ୍ତ କରିବାକୁ ପଡୁଥିଲା । ଖାଦ୍ୟପେୟ ଓ ରହିବାର ଅବ୍ୟବସ୍ଥା ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭଙ୍ଗ ହେଲା । ସେ ବହୁ ଚେଷ୍ଟା କରି କଟକ ଟ୍ରେନିଂ ସ୍କୁଲରେ ସହକାରୀ ଶିକ୍ଷକଭାବେ ୧୯୦୭ ମସିହାରେ ଯୋଗ ଦେଲେ । ସେତେବେଳେ ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ ଚନ୍ଦ୍ରମୋହନ ମହାରଣା । ତାଙ୍କ ସଙ୍ଗେ ସେ ସାହିତ୍ୟ ଆଲୋଚନା କରୁଥିଲେ । ୧୯୧୦ରେ ସେ ଶିକ୍ଷକ ତାଲିମପାଇଁ କଲିକତା ଗଲେ । ସେଠାରେ ଡେଭିଡ ହେୟାର ଟ୍ରେନିଂ କଲେଜରେ ଏକ ବର୍ଷ ତାଲିମ ନେଲେ । ସେଠାରୁ ଫେରିଆସି ସେ ପୁଣି ଟ୍ରେନିଂ ସ୍କୁଲରେ ଶିକ୍ଷକଭାବେ ଯୋଗ ଦେଲେ । ୧୯୧୧ରେ ସେ ସମ୍ବଲପୁର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକଭାବେ ବଦଳି ହେଲେ । ସେଠାରେ ଥିଲାବେଳେ ସେ ଖ୍ୟାତନାମା କବି ଗଙ୍ଗାଧରଙ୍କ ନିକଟତମ ହୋଇଥିଲେ । କ୍ରମେ ସେ ତାଙ୍କ ପ୍ରେରଣାର ଉତ୍ସ ହୋଇପଡ଼ିଲେ । ତାଙ୍କ ଅନୁରୋଧରେ କବି ଗଙ୍ଗାଧର 'ପ୍ରଣୟବଲ୍ଲରୀ' କାବ୍ୟ ରଚନା ସଂପୂର୍ଣ୍ଣ କଲେ । ମେହେରଙ୍କ କବିତ୍ୱ କଲ୍ଲୋଳର ପ୍ରକାଶନ ଭାର ନନ୍ଦକିଶୋର ନେଇଥିଲେ । ସମ୍ବଲପୁରରେ ଗୋଟିଏ ବର୍ଷ କାମ କରିବାପରେ ସେ ପୁଣି କଟକ ଟ୍ରେନିଂ ସ୍କୁଲକୁ ବଦଳି ହୋଇ ଆସିଲେ ।

କଟକରେ ଦୁଇ ମାସ ରହିବାପରେ ନନ୍ଦକିଶୋର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକଭାବେ ବାଲେଶ୍ୱର ଗଲେ । ପୁଣି ସେହି ଜିଲ୍ଲାର ଡେପୁଟି ସ୍କୁଲ ଇନ୍‌ସପେକ୍ଟର ହେଲେ । ସେଠାରେ ବ୍ୟାସକବି ଫକୀରମୋହନଙ୍କ ସାନ୍ନିଧ ଲାଭ କଲେ । ଫକୀରମୋହନ ସେତେବେଳକୁ କର୍ମରୁ ଅବସର ନେଇ ବାଲେଶ୍ୱରରେ ଅବସ୍ଥାନ କରୁଥାଆନ୍ତି । ଉଭୟେ ସାହିତ୍ୟ ଆଲୋଚନାରେ ବହୁ ସମୟ କଟାଉଥିଲେ । ଫକୀରମୋହନ ସେହି ସମୟରେ ରଚନା କଲେ ତାଙ୍କର ବିଖ୍ୟାତ ଉପନ୍ୟାସ 'ମାମୁଁ' । ଏହା ନନ୍ଦକିଶୋରଙ୍କ ବର୍ଣ୍ଣିତ ଏକ ବାସ୍ତବ ଘଟଣା ଉପରେ ଆଧାରିତ । ନନ୍ଦକିଶୋରଙ୍କ ପ୍ରେରଣା ଓ ଉତ୍ସାହ ଫଳରେ ସେ ଏକ ଅପୂର୍ବ ମିଳନ ଉପନ୍ୟାସ ସମ୍ପୂର୍ଣ୍ଣ କଲେ । ପରେ ତାହା 'ଲଛମା' ନାମରେ ପ୍ରକାଶ ପାଇଲା । ୧୯୧୭ ମସିହାରେ ନନ୍ଦକିଶୋରଙ୍କ ପଦୋନ୍ନତି ହେଲା । ସେ ହେଲେ ସ୍କୁଲ ବିଭାଗର ଆସିଷ୍ଟାଣ୍ଟ ଇନ୍‌ସପେକ୍ଟର । ସେ କଟକରେ ପାଞ୍ଚ ବର୍ଷ କାଳ ଏକାଦିକ୍ରମେ ରହିଥିଲେ ।

କଟକରେ ଥିଲାବେଳେ ପଣ୍ଡିତ ଗୋପବନ୍ଧୁଙ୍କ ସହିତ କବିଙ୍କର ପରିଚୟ ହେଲା । ଗୋପବନ୍ଧୁ ସେତେବେଳେ ବିହାର-ଓଡ଼ିଶା ଲେଜିସଲେଟିଭ କାଉନସିଲ୍‌ର ସଭ୍ୟ ଥିଲେ । ଶିକ୍ଷାପ୍ରଣାଳୀ ଓ ପ୍ରକୃତି ଉପରେ ଦୁହିଁଙ୍କ ମଧ୍ୟରେ ଆଲୋଚନା ହେଉଥିଲା । କଟକରେ ସେତେବେଳକୁ ନାଟ୍ୟକାର ବୈଷ୍ଣବ ପାଣିଙ୍କ

ଗୀତିନାଟ୍ୟଗୁଡ଼ିକ ଜନପ୍ରିୟ ହୋଇ ଉଠିଥାଏ । ସରକାର ପାଣିଙ୍କ ପୁସ୍ତକଗୁଡ଼ିକର ସମୀକ୍ଷା କରି ଗୁପ୍ତ ରିପୋର୍ଟ ଦେବାପାଇଁ ନିର୍ଦ୍ଦେଶ ଦେଲେ । ଓଡ଼ିଆ ଯାତ୍ରା ସାହିତ୍ୟକୁ ବୈଷ୍ଣବ ପାଣି ନୂତନ ଦୃଷ୍ଟିକୋଣ ଦେଇଥିବାରୁ ତାଙ୍କୁ ରାୟସାହେବ ଉପାଧିରେ ଭୂଷିତ କରିବାକୁ ସେ ସରକାରଙ୍କୁ ସୁପାରିସ କରିଥିଲେ । କିନ୍ତୁ ପୋଲିସ କର୍ତ୍ତୃପକ୍ଷ ତାହା ବିରୋଧରେ ମତ ଦେବାରୁ ନନ୍ଦକିଶୋରଙ୍କ ସୁପାରିସ କାର୍ଯ୍ୟକାରୀ ହୋଇ ନ ଥିଲା ।

ଏଥି ମଧ୍ୟରେ ଆସିଷ୍ଟାଣ୍ଟ ଇନ୍‌ସପେକ୍ଟର ପଦ ଉଠିଗଲା । ନନ୍ଦକିଶୋର ତେଣୁ ୧୯୨୦ ମସିହାରେ ପୁରୀ ଜିଲ୍ଲା ସ୍କୁଲ ସମୂହର ଇନ୍‌ସପେକ୍ଟର ଭାବେ ନିଯୁକ୍ତ ହେଲେ । ପୁରୀରେ ସେ ଛଅ ବର୍ଷ ରହିଲେ । ତାଙ୍କର କର୍ମକୁଶଳତା ଯୋଗୁଁ ସରକାର ତାଙ୍କୁ ରାୟସାହେବ ଉପାଧିରେ ଭୂଷିତ କରିଥିଲେ ।

ପୁରୀରେ ଛଅ ବର୍ଷ କର୍ମମୟ ଜୀବନ କଟାଇବାପରେ ସେ ବାଲେଶ୍ୱରକୁ ପୁଣି ପ୍ରଧାନ ଶିକ୍ଷକ ଭାବେ ବଦଳି ହେଲେ । ସେତେବେଳକୁ ସେ ବହୁମୂତ୍ର ରୋଗରେ ପଡ଼ି ଦୁର୍ବଳ ହୋଇପଡ଼ିଥିଲେ । ତଥାପି ସରକାରୀ ଆଦେଶ ମାନି ବାଲେଶ୍ୱରରେ କର୍ମରେ ଯୋଗଦେଲେ । ସେତେବେଳେ ଫକୀରମୋହନ ଇହଜଗତରେ ନ ଥିଲେ । ଉପଯୁକ୍ତ ସଙ୍ଗୀର ଅଭାବ ସେ ଅନୁଭବ କଲେ । ଶାରୀରିକ ଓ ମାନସିକ କ୍ଲାନ୍ତି ମଧ୍ୟରେ ସେ ଗୋଟିଏ ବର୍ଷ ସେଠାରେ କଟାଇଲେ । ଏହାପରେ ସେ ସ୍ୱାସ୍ଥ୍ୟହାନି ଯୋଗୁଁ ଦୀର୍ଘ କାଳ ଛୁଟି ନେଲେ ଓ ଶେଷରେ ସରକାରୀ କର୍ମରୁ ଅବସର ନେଲେ ।

କୁସୁପୁରରେ ସେ ଜନ୍ମଗ୍ରହଣ କରିଥିଲେ । ପଲ୍ଲୀର ଶାନ୍ତିମୟ ମଧୁର କୋଳରେ ରହି ସାରସ୍ୱତ ସେବାରେ ସେ ଅବଶିଷ୍ଟ ଜୀବନ କଟାଇବାପାଇଁ ଚାହିଁଥିଲେ । ମାତ୍ର ତାହା ପୂର୍ଣ୍ଣ ହୋଇ ନ ଥିଲା । କ୍ରମାଗତଭାବେ ରୋଗ ଲାଗିରହିଲା । ଦୃଷ୍ଟିଶକ୍ତି ମଧ୍ୟ କ୍ଷୀଣ ହୋଇଆସିଲା । ତାଙ୍କର କନ୍ୟା ସରସ୍ୱତୀ ତାଙ୍କୁ ଲେଖାଲେଖିରେ ସାହାଯ୍ୟ କଲେ । ସେ ଯାହା ମୁହେଁ ମୁହେଁ ଡାକୁଥିଲେ, ସରସ୍ୱତୀ ତାକୁ ଲେଖି ଯାଉଥିଲେ । ଚିକିତ୍ସା ଚାଲିଲା, ମାତ୍ର ରୋଗର ଉପଶମ ହେଲା ନାହିଁ । ତେଣୁ ତାଙ୍କୁ କଟକ ନେବାର ପ୍ରସ୍ତାବ ହେଲା । ସେ କଟକ ଯିବାକୁ ଅନିଚ୍ଛୁକ ଥିଲେ । ନିଜ ଗାଁ ମାଟିରେ ଶେଷ ନିଶ୍ୱାସ ତ୍ୟାଗ କରିବା ଆଶା ଥିଲା । ସେ ଆଶା ବି ପୂର୍ଣ୍ଣ ହୋଇ ନ ଥିଲା । ଉପଯୁକ୍ତ ଚିକିତ୍ସାପାଇଁ ତାଙ୍କୁ କଟକ ନିଆଗଲା । ସମସ୍ତ ପ୍ରକାର ଚିକିତ୍ସା ସତ୍ତ୍ୱେ ସେ ୧୯୨୮ ମସିହା ଜୁଲାଇ ମାସ ଏକ ତାରିଖରେ ଇହଧାମ ତ୍ୟାଗ କଲେ । ସେତେବେଳକୁ ତାଙ୍କୁ ମୋଟେ ୫୨ ବର୍ଷ ହୋଇଥିଲା । ସତୀଚଉରାଠାରେ ତାଙ୍କର ମରଦେହ ମାଟିରେ ମିଶିଗଲା ।

ଓଡ଼ିଆ ସାହିତ୍ୟରେ ଗଳ୍ପ, ଉପନ୍ୟାସ, କାବ୍ୟ ପ୍ରଭୃତି ରଚନା କରିଥିଲେ ମଧ୍ୟ ନନ୍ଦକିଶୋରଙ୍କ ପ୍ରତିଭା ଥିଲା ମୁଖ୍ୟତଃ ଗୀତିଧର୍ମୀ । ସେ ବହୁ ଗୀତିକବିତା ରଚନା କରି ଓଡ଼ିଆ ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ସେ ମଧ୍ୟ ସେଥିରେ ଅସାମାନ୍ୟ ସଫଳତା ହାସଲ କରିଛନ୍ତି । ବସ୍ତୁତଃ, ରାଧାନାଥଙ୍କଠାରୁ ଓଡ଼ିଆ ସାହିତ୍ୟରେ ଗୀତିକବିତାର ଯେଉଁ ଜୟଯାତ୍ରା ଆରମ୍ଭ ହୋଇଛି, ସେହି ଯୁଗର ଶ୍ରେଷ୍ଠ ବିନ୍ଧାଣି ହେଲେ କବି ନନ୍ଦକିଶୋର ।

ନନ୍ଦକିଶୋର ମଧ୍ୟ ଗୀତିକବିତାରେ ବହୁ ପରୀକ୍ଷା-ନିରୀକ୍ଷା କରିଛନ୍ତି । ତାଙ୍କ ସୃଷ୍ଟି ସର୍ଜନାରେ ଆମେ ବହୁବିଧ ରୂପ ପାଉ । ସେସବୁ ହେଲା ଶିଶୁକବିତା, ସ୍ତୋତ୍ର କବିତା, ଜାତୀୟତାବାଦୀ କବିତା ଓ ଶୋକଗୀତିକା । ସେ ମଧ୍ୟ ବହୁ ଚତୁର୍ଦ୍ଦଶପଦୀ କବିତା ରଚନା କରି ଓଡ଼ିଆ ସନେଟ୍ ଧାରାକୁ ସମୃଦ୍ଧ ଓ ଗତିଶୀଳ କରିଛନ୍ତି । ପୁଣି ତାଙ୍କ କବିତାରେ ଅଛି ପଲ୍ଲୀପ୍ରାଣତା । ଓଡ଼ିଶାର ମାଟି, ପାଣି, ପବନକୁ ନେଇ ଫକୀରମୋହନ କଥାସାହିତ୍ୟ ସୃଷ୍ଟି କଲେ । ରାଧାନାଥଙ୍କ ସୃଷ୍ଟିରେ କିନ୍ତୁ ପଲ୍ଲୀପ୍ରାଣତାର ସ୍ପର୍ଶ ଅନୁଭବ କରି ହୁଏ ନାହିଁ । ନନ୍ଦକିଶୋର ହିଁ ସର୍ବପ୍ରଥମେ ପଲ୍ଲୀ ଜୀବନକୁ ତାଙ୍କ ସାରସ୍ୱତ ସୃଷ୍ଟିର ପ୍ରଧାନ ଉପଜୀବ୍ୟ ଭାବେ ଗ୍ରହଣ କଲେ । ଓଡ଼ିଶାର ଅବହେଳିତ ଗ୍ରାମ ଜନପଦକୁ ଅପୂର୍ବ ସୁଷମାରେ ଭରିଦେଲେ । ଅତି ସାଧାରଣ ଗାଉଁଲି କଥା ତାଙ୍କ ତୂଳିକାରେ ହୋଇଗଲା କମନୀୟ ।

କବି ନନ୍ଦକିଶୋର 'ପଲ୍ଲୀ କବି' ଓ 'ପଲ୍ଲୀ ପ୍ରାଣ' ଉପାଧିରେ ଭୂଷିତ ହୋଇଛନ୍ତି । ଏହି ଉପାଧି ତାଙ୍କୁ କେହି ଦେଇ ନାହିଁ; ଅଥଚ ଏଇ ଉପାଧି ସମସ୍ତଙ୍କଦ୍ୱାରା ପ୍ରଦତ୍ତ । ତାହାହିଁ ହେଉଛି ତାଙ୍କର ସାରସ୍ୱତ ପ୍ରତିଭାର ବିଶେଷତ୍ୱ ।

ଓଡ଼ିଶାର ଯୁଗସ୍ରଷ୍ଟା ଫକୀରମୋହନ ଯଥାର୍ଥରେ ତାଙ୍କ କବିତାର ମୂଲ୍ୟାୟନ କରି କହିଛନ୍ତି –

"ପଢ଼ିଗଲି ବେଳେ ପଲ୍ଲୀ ପ୍ରସଙ୍ଗ ବାରତା
କେହି କେବେ କହି ନାହିଁ ଏ ପ୍ରକାର କଥା ।"

ଆୟକାଳ ଦୃଷ୍ଟିରୁ ନନ୍ଦକିଶୋର ଥିଲେ କ୍ଷଣଜୀବୀ; କିନ୍ତୁ ସୃଷ୍ଟି ଦୃଷ୍ଟିରୁ ସେ ହେଉଛନ୍ତି କାଳଜୟୀ ।



## ନାରୀକବି
# କୁନ୍ତଳା କୁମାରୀ ସାବତ

ଓଡ଼ିଆ ସାରସ୍ୱତ କ୍ଷେତ୍ରରେ କୁନ୍ତଳା କୁମାରୀ ହେଉଛନ୍ତି ଅନନ୍ୟା ଓ ଅଦ୍ୱିତୀୟା । କର୍ମ ଜଞ୍ଜାଳ ଓ ଜୀବନଯାତ୍ରାର ବାଧା ବନ୍ଧନ ଅତିକ୍ରମ କରି ସାଧିକା କୁନ୍ତଳା କୁମାରୀ ଯେପରି ସାହିତ୍ୟ ସୃଷ୍ଟିରେ ମନୋନିବେଶ କରିଥିଲେ, ତାହାର ଦୃଷ୍ଟାନ୍ତ ଅନ୍ୟତ୍ର ବିରଳ । କବୟିତ୍ରୀ, ଔପନ୍ୟାସିକା, ସମ୍ପାଦିକା ଓ ସମାଜସେବିକା ଭାବରେ ନିଜ ପ୍ରତିଭାର ପରିଚୟ ଦେଇଥିଲେହେଁ କାବ୍ୟକବିତାହିଁ ଥିଲା ତାଙ୍କର ପ୍ରକୃତ ଚାରଣଭୂମି । ଡଃ ମାୟାଧର ମାନସିଂହଙ୍କ ଭାଷାରେ, କୁନ୍ତଳାଙ୍କର କବିତାବଳୀ ମୂଳରୁ ଶେଷଯାଏଁ ପଢ଼ିଲେ ଏହି ଧାରଣା ହୁଏ ଯେ ଗୋଟିଏ ଛଳ ଛଳ ନାରୀ ପ୍ରାଣ କେବଳ ବହିଯିବାକୁ ହିଁ ଯେପରି ଚେଷ୍ଟା କରୁଛି । ପୁଣି ନିଜର ସୃଷ୍ଟି ମଧ୍ୟରେ ସେ ଜଣେ ଭକ୍ତ, ସାଧିକା, ପ୍ରେମିକା, ଶିଳ୍ପୀ ଓ ଦେଶ ପ୍ରେମିକା ଭାବରେ ନିଜର ବ୍ୟକ୍ତିତ୍ୱର ପରିଚୟ ଦେଇଛନ୍ତି । ସର୍ବୋପରି, ତାଙ୍କର ଜୀବନ ଓ ବ୍ୟକ୍ତିତ୍ୱ ଥିଲା ଅଧିକ ବର୍ଣ୍ଣାଢ଼୍ୟ ଓ ମହତ୍ତର । ପ୍ରଚଣ୍ଡ କର୍ମପ୍ରେରଣାର ସେ ଯେପରି ଥିଲେ ଏକ ସ୍ଫୁଲିଙ୍ଗମୟୀ ଆଗ୍ନେୟଉତ୍ସ ଓ ସେହି ସ୍ଫୁଲିଙ୍ଗର କିୟଦଂଶ ତାଙ୍କର ସୃଷ୍ଟିସମ୍ଭାର ମଧ୍ୟରେ ବିକୀର୍ଣ୍ଣ ଓ ବିଚ୍ଛୁରିତ ।

## ପୂର୍ବପୁରୁଷ

ପିପିଲି ନିକଟସ୍ଥ ଦାଣ୍ଡମୁକୁନ୍ଦପୁରରେ ଥିଲେ ସାବୁତ ପରିବାର । ସେମାନେ ଜାତିରେ ବ୍ରାହ୍ମଣ ଥିଲେ । ତାଙ୍କର ଖାଦ୍ୟ ବସ୍ତ୍ରରେ ଅଭାବ ନ ଥିଲା । ଫସଲ କରି କଞ୍ଚା ପଇସା ପାଉଥିଲେ । କପାକୁ ଭିଣି ତୁଳା କରି ସ୍ତ୍ରୀଲୋକମାନେ ସୂତା କାଟୁଥିଲେ । ସେହି ସୂତା ଦେଇ ତନ୍ତୀଠାରୁ ଧୋତି, ଚାଦର, ଶାଢ଼ି ଆଦି ଆଣୁଥିଲେ । ଏହି ପରିବାରରେ ବ୍ରଜବନ୍ଧୁ ସାବୁତ ଅତି କୃପଣ ଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ଥିଲା ଶୋଭା । ବାର ବର୍ଷର ନିଃସନ୍ତାନ ଜୀବନ ପରେ ପୁଅଟିଏ ହୋଇ ମରିଯିବାରୁ ବ୍ରଜବନ୍ଧୁ ପୁରୀ କୁଣ୍ଢେଇବେଣ୍ଟ ସାହି ବିଦ୍ୟାଧର ଦାସଙ୍କଠାରୁ ପୁଅଟିଏ ଆଣିଲେ । ସେଇ ପୁଅର ନାମ ଥିଲା ଶ୍ୟାମରତନ । ସେ ପିପିଲି ମିସନ ସ୍କୁଲରେ ପଢୁଥିଲା । ଦିନେ କେନ୍ଦୁଲି କସ୍ତାପାଇଁ ବ୍ରଜବନ୍ଧୁ ଓ ଶୋଭାଙ୍କ ମଧ୍ୟରେ କଳିଆ ଲାଗିଲା । ବ୍ରଜବନ୍ଧୁ ଶୋଭାକୁ ଅତ୍ୟଧିକ ଝିଙ୍ଗାସିବାରୁ ଶୋଭା କୂଅରେ ପଡ଼ି ପ୍ରାଣତ୍ୟାଗ କଲେ । ବ୍ରଜବନ୍ଧୁ ମଧ୍ୟ ନିଜର ଭୁଲ ବୁଝିପାରି ସେଇ କୂଅକୁ ଡେଇଁପଡ଼ିଲେ । ଦଶ ବର୍ଷର ଛେଉଣ୍ଡ ଶ୍ୟାମରତନଟି ଏ ପନ୍ଦାଡ଼ ସେ ପନ୍ଦାଡ଼ ହୋଇ ଶେଷରେ ପିପିଲିର ପାଦ୍ରି ରେଭେରେଣ୍ଡ ଜେ. ମିଲରଙ୍କ ପାଖେ ରହିଲା । କେତେକ ଆତ୍ମୀୟସ୍ୱଜନ ତାଙ୍କୁ ଫେରାଇ ଆଣିବାକୁ ଗଲେ ମଧ କିଛି ଫଳ ହେଲା ନାହିଁ । ଶ୍ୟାମରତନ ଶେଷରେ ଅନିଚ୍ଛାସତ୍ତ୍ୱେ ତୁବନ ବିଧିରେ ଖ୍ରୀଷ୍ଟିୟାନ ହୋଇ ପାଠ ପଢ଼ିଲା । ସେହି ପାଦ୍ରି ବିଲାତ ଫେରିବା ପୂର୍ବରୁ ସାଧବୀ ବୋଲି ଗୋଟାଏ ଝିଅ ସହିତ ଶ୍ୟାମରତନର ବିବାହ କରାଇଦେଲେ । ସେ ଖଣ୍ଡାୟତ ଘରର ଝିଅ ହେଲେ ମଧ ତା' ବାପା ଖ୍ରୀଷ୍ଟିୟାନ ହୋଇଥିଲେ । ଶ୍ୟାମରତନ ଓ ସାଧବୀ ଖୋର୍ଦ୍ଧାରେ ଖିରସ୍ତାନ ସାହିରେ ଘରବାଡ଼ି ପାଇଲେ । ଜମି ଖଣ୍ଡିଏ ପାଇ ସେଠାରେ ଚଳାଚଳ ହେଲେ । ଏହି ଶ୍ୟାମରତନ ଓ ସାଧବୀ ସାବୁତ ହେଉଛନ୍ତି କୁନ୍ତଳା କୁମାରୀଙ୍କ ଜେଜେବାପା ଓ ଜେଜେମା । କୁନ୍ତଳା ତାହାଙ୍କୁ ଗୋସାଇଁବାପ ଓ ଗୋସେଇଁମା' ବୋଲି ଡାକୁଥିଲେ ।

ଶ୍ୟାମରତନ ଓ ସାଧବୀଙ୍କର ଏକମାତ୍ର ପୁତ୍ର ଥିଲା । ତା'ର ନାମ ଦାନିଏଲ ସାବୁତ । 'ସାବୁତ' ସଂଜ୍ଞା ଦାନିଏଲ୍‌ଙ୍କଠାରୁ 'ସାବତ' ଭାବରେ ଲେଖାଗଲା । ସେ ଖୋର୍ଦ୍ଧା ମାଇନର ସ୍କୁଲର ହେଡମାଷ୍ଟର ତିମନ୍ତି ସାମନ୍ତରାୟଙ୍କ କନ୍ୟା ମୋନିକାଙ୍କୁ ବିବାହ କଲେ । ଏଣ୍ଟ୍ରାନ୍‌ସ ପାସ୍ କରି ଦାନିଏଲ ଡାକ୍ତର ହେଲେ । ସେ ପ୍ରଥମେ ବସ୍ତର ଷ୍ଟେଟ୍‌ର ଜଗଦଲପୁରରେ ଚାକିରି ଆରମ୍ଭ କଲେ । ଜଗଦଲପୁରରେ ରହିଲାବେଳେ କୁନ୍ତଳା ୧୯୦୧ ମସିହା ଫେବୃୟାରୀ ମାସ ୮ ତାରିଖରେ ଜନ୍ମଗ୍ରହଣ କରିଥିଲେ । ପିତା ଦାନିଏଲ୍ ଜଗଦଲପୁରରେ ଦୁଇ ବର୍ଷ

ରହିବା ପରେ ଅଧିକ ବେତନ ପାଇ ବର୍ମା ଚାଲିଗଲେ । ସେଠାରେ ସେ ଚଉଦ ବର୍ଷ ରହିଥିଲେ ।

ପିତାମାତାଙ୍କ ଗହଣରେ କୁନ୍ତଳା ତାଙ୍କର ଶୈଶବ ଓ କୈଶୋର ବର୍ମାରେ କଟାଇଲେ । ସେଠାରେ ସେ ସଂପୂର୍ଣ୍ଣ ଅଣଓଡ଼ିଆ ପରିବେଶରେ ବଢ଼ିଲେ । ଯେଉଁ ଅଞ୍ଚଳରେ ତାଙ୍କ ପିତା ରହୁଥିଲେ, ସେଠାରେ ସମସ୍ତେ ପ୍ରାୟ ଥିଲେ ହିନ୍ଦୀ ଭାଷାଭାଷୀ । କୌଣସି ଓଡ଼ିଆ ପଡ଼ୋଶୀ ନ ଥିଲେ । ତେଣୁ କୁନ୍ତଳା ଶିଶୁ ଅବସ୍ଥାରୁ ହିନ୍ଦୀ ଭାଷା ସହିତ ପରିଚିତ ହେଲେ । ସେ ହିନ୍ଦୀରେ ହିଁ ଅକ୍ଷର ଚିହ୍ନିଲେ । କେତେବେଳେ କେମିତି ମାତାଙ୍କୁ ସୁବିଧା ହେଲେ ଓଡ଼ିଆ ଶିକ୍ଷା ଦେଉଥିଲେ । ପିତା ମଧ୍ୟ ସାମୟିକଭାବେ ଇଂରାଜୀ ପଢ଼ାଉଥିଲେ ।

କୁନ୍ତଳାଙ୍କ ସମେତ ଅନ୍ୟ ସମସ୍ତ ଭାଇ-ଭଉଣୀଙ୍କୁ ଓଡ଼ିଆ ଭାଷା ଶିକ୍ଷା ଦେବାପାଇଁ ପିତାମାତାଙ୍କର ପ୍ରବଳ ଆଗ୍ରହ ଥିଲା । ପିତା ପିଲାଙ୍କୁ ଓଡ଼ିଆ ଶିକ୍ଷାର ଅଧିକ ସୁଯୋଗ ଦେବା ଉଦ୍ଦେଶ୍ୟରେ ଓଡ଼ିଆ ଭାଷା ଶିକ୍ଷାର ପ୍ରଥମ ପୁସ୍ତକ ମଧୁସୂଦନ ରାଓଙ୍କ ପ୍ରଣୀତ 'ବର୍ଣ୍ଣବୋଧ' ଯୋଗାଇ ଦେଇଥିଲେ । ଆଉ ଏକ ପୁସ୍ତକ 'ଶିଶୁ ପାଠ' ମଧ୍ୟ ଆଣି ଦେଇଥିଲେ । ଓଡ଼ିଆ ଭାଷା ସହ ପରିଚିତ ହୋଇଗଲାପରେ ପିତା ଦାନିଏଲ୍ 'ସାହିତ୍ୟ କୁସୁମ' ଓ 'ସାହିତ୍ୟ ତରଙ୍ଗ' ପ୍ରଭୃତି ଯୋଗାଇ ଦେଇଥିଲେ । କୁନ୍ତଳା ଏହି ସୁଯୋଗକୁ ହାତଛଡ଼ା କରି ନ ଥିଲେ । ଅଧିକରୁ ଅଧିକ ଜାଣିବାପାଇଁ ପିତାଙ୍କ ପାଖରେ ଅଳି କରୁଥିଲେ । ଫଳରେ ପିତା ଓଡ଼ିଆ ବ୍ୟାକରଣ, ଇତିହାସ, ଭୂଗୋଳ ପ୍ରଭୃତି ବହି ଆଣି ଦେଇଥିଲେ । କୁନ୍ତଳାଙ୍କର ସ୍ମରଣଶକ୍ତି ପ୍ରଖର ଥିବାରୁ ସେ ଘରେ ଘରେ ବାଇବେଲକୁ ମୁଖସ୍ଥକରି ମୁହେଁ ମୁହେଁ ବୋଲି ପାରୁଥିଲେ । ସେ ମଧ୍ୟ ଓଡ଼ିଆ ଭଜନମାନ ମାତାଙ୍କଠାରୁ ଶୁଣି ସେସବୁକୁ ବି ସୁନ୍ଦରଭାବେ ଗାନ କରିପାରୁଥିଲେ ।

ଯେତେବେଳେ କୁନ୍ତଳାଙ୍କୁ ସାତ ବର୍ଷ ବୟସ, ସେ ହିନ୍ଦୀ ଓ ବଙ୍ଗଳା ଭାଷା ଶିକ୍ଷାପାଇଁ ଆଗ୍ରହୀ ହେଲେ । ତାଙ୍କର ମାତା ମଧ୍ୟ ହିନ୍ଦୁସ୍ଥାନୀ ଓ ବଙ୍ଗୀୟ ଝିଅ ବୋହୂଙ୍କୁ ହିନ୍ଦୀ ଓ ବଙ୍ଗଳା ଶିକ୍ଷା ଦେବାପାଇଁ ଡକାଇ ଆଣୁଥିଲେ । ସେମାନଙ୍କଠାରୁ ସେ ବଙ୍ଗଳା ଓ ହିନ୍ଦୀ ଭାଷାରେ କିଛି ଜ୍ଞାନ ଆହରଣ କରିପାରିଲେ ।

କୁନ୍ତଳା ନିର୍ଭୀକ ସ୍ୱଭାବର ଥିଲେ । ବର୍ମାର ମହିଳାମାନଙ୍କ ପରି ସାହସିନୀ ମଧ୍ୟ ଥିଲେ । ଥରେ ଜଣେ ପଡ଼ୋଶୀ ମରହଟ୍ଟା କ୍ରୋଧରେ ଅଜ୍ଞାନ ହୋଇ ତା'ର ସ୍ତ୍ରୀଙ୍କୁ ବାଡ଼ିରେ ବାଡ଼େଇବାରେ ଲାଗିଲେ । ତାଙ୍କର ବିକଳ କ୍ରନ୍ଦନ କୁନ୍ତଳା ସହ୍ୟ ନ କରିପାରି ଘରୁ ବାହାରି ଗର୍ଜିଉଠି କହିଚାଲିଲେ –

''କ୍ୟା ପିଟ୍ ପିଟ୍ କର ମାର ଡାଲେଗା''

କେବଳ ସେତିକି ନୁହେଁ ପୁଲିସକୁ ଇତଲା ଦେବାକୁ କୁନ୍ତଳା ଧମକାଇଲେ । ଫଳରେ ସେ ବ୍ୟକ୍ତି ଜଣକ କୁନ୍ତଳାଙ୍କ ସାମ୍ନାରେ ତା' ସ୍ତ୍ରୀଙ୍କ ପାଦ ତଳେ ପଡ଼ି କ୍ଷମା ମାଗିଲେ ।

## ଖୋର୍ଦ୍ଧା ଜୀବନ

ବର୍ମାରେ କୁନ୍ତଳା କେତୋଟି ବର୍ଷ ରହିବା ପରେ ଦୁଃଖ ମାଡ଼ି ଆସିଲା । କୁନ୍ତଳାଙ୍କ ମାଉସୀ ଆଗ୍ରହୀ ଥିବାରୁ ମାତା ମନିକା ଦେବୀ ତାଙ୍କୁ ବର୍ମାକୁ ନେଇଯାଇଥିଲେ । ମାତ୍ର ପିତା ଦାନିଏଲ ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ । ପରିବାରର ସମ୍ମାନ ରକ୍ଷାପାଇଁ ମନିକା ପାଞ୍ଚୋଟିଯାକ ପୁତ୍ର କନ୍ୟାଙ୍କୁ ଧରି ଖୋର୍ଦ୍ଧାସ୍ଥ ଶ୍ୱଶୁରଙ୍କ ଗୃହକୁ ଚାଲିଆସିଲେ ଓ ସେଠାରେ ଅବସ୍ଥାନ କଲେ । ଦାନିଏଲ୍ ନିଜ ପରିବାରଠୁଁ ଦୂରରେ ରହିଲେ ମଧ ପରିବାରର ଭରଣପୋଷଣପାଇଁ ମାସିକ ଟଙ୍କା ପଠାଇଲେ । ମନିକା ନିଜ କର୍ମଫଳ ବୋଲି ଘଟଣାକୁ ଗ୍ରହଣ କରିବାକୁ ବାଧ ହେଲେ । ମାତାଙ୍କ ଆଖିରୁ ନିରନ୍ତର ଲୁହ ବୋହିବା ଦେଖି କୁନ୍ତଳା ବ୍ୟଥାତୁର ହୋଇପଡୁଥିଲେ । ସେ ମଧ ଭାଇଭଉଣୀମାନଙ୍କୁ ସ୍ନେହ ଆଦର ଦେଇ ବଢ଼ାଇଲେ ।

କ୍ରମେ ମନିକା କନ୍ୟାମାନଙ୍କର ଭବିଷ୍ୟତ୍ ପ୍ରତି ଦୃଷ୍ଟି ଦେଲେ । ସେମାନଙ୍କୁ ଶିକ୍ଷାନୁଷ୍ଠାନମାନଙ୍କରେ ଅଧ୍ୟୟନ ଲାଗି ବ୍ୟବସ୍ଥା କଲେ । କୁନ୍ତଳାଙ୍କର କଟକର ରେଭେନ୍‌ସା ଗାର୍ଲ୍‌ସ ସ୍କୁଲରେ ପଢ଼ିବା ସ୍ଥିର ହେଲା । କିନ୍ତୁ ତାହା କାର୍ଯ୍ୟକାରୀ ହେଉ ହେଉ ୧୯୧୫ ମସିହାର କେତେ ମାସ ଓ ୧୯୧୬ ସମୁଦାୟ ଚାଲିଗଲା । ଏତକ ସମୟ କୁନ୍ତଳା ଖୋର୍ଦ୍ଧାର ଖ୍ରୀଷ୍ଟିୟାନ ସାହିରେ କଟାଇଲେ ।

କୁନ୍ତଳା ରହୁଥିବା ସାହିର କିଛି ଦୂରରେ ହିନ୍ଦୁ ଲୋକମାନଙ୍କର ଏକ ସାହି ଥିଲା । ସେଠା ଝିଅମାନଙ୍କ ସହିତ ସେ ମିଶୁଥିଲେ । ସେମାନଙ୍କର ଆଚାର-ବିଚାରକୁ ଆପଣେଇଥିଲେ । ମାଆଙ୍କର ନିଷେଧସତ୍ତ୍ୱେ ସେ ହଳଦି ଲଗାଇ ପ୍ରିୟ ସଙ୍ଗାତ କୁମୁଦିନୀଙ୍କ ସହିତ ସାହି ମୁଣ୍ଡରେ ଥିବା ହରିଚନ୍ଦନ ପୋଖରୀକୁ ଗାଧେଇ ଯାଉଥିଲେ । କାହାକୁ ବଉଳ କାହାକୁ ଆମ୍ବକଷି ବା ଗଜାମୁଗ ନାମରେ ଡକାଡକି କରିବାକୁ ଭଲ ପାଉଥିଲେ । ସେ ଥରେ କୁମୁଦିନୀଙ୍କୁ କୁଣ୍ଢେଇ ଧରି କହିଥିଲେ –

''ସଙ୍ଗାତ ! ମୁଁ ହେଲେ ତୁମପରି ହିନ୍ଦୁ ଘରେ ଜନ୍ମ ହୋଇଥାନ୍ତି !''

ହିନ୍ଦୁ ବାଳିକାମାନଙ୍କର ସରଳତା, ଅମାୟିକତା, ନମ୍ରତା ଓ ସ୍ନେହ ଆଦିରେ କୁନ୍ତଳା ମୁଗ୍ଧ ହୋଇପଡୁଥିଲେ ।

କୁନ୍ତଳା ମା'ଙ୍କଠାରୁ ମୂର୍ତ୍ତିପୂଜା ବିରୋଧରେ ନିରନ୍ତର ଶୁଣୁଥିଲେ । କିନ୍ତୁ ତାଙ୍କ ମନ ସେଥିରେ ମାନୁ ନ ଥିଲା । କିପରି ମୂର୍ତ୍ତି ପୂଜା ହୁଏ ତାହା ଜାଣିବାକୁ ବ୍ୟାକୁଳ ହେଉଥିଲେ । ସଙ୍ଗାତ କୁମୁଦିନୀ ବ୍ରାହ୍ମଣ ଘର ଝିଅ । ତାଙ୍କ ଯୋଗୁଁ ଗୋଟିଏ ପୂଜା ଦେଖିବାର ସୁଯୋଗ କୁନ୍ତଳା ପାଇଲେ । ସେ କାଳରେ ଖ୍ରୀଷ୍ଟିୟାନମାନଙ୍କୁ ଘୃଣା କରାଯାଉଥାଏ । ମାଇପେ କହୁଥିଲେ –

''ବାର ଜାତି ତେର ଗୋଲା
ଖ୍ରୀଷ୍ଟାନ ହେଲେ ସବୁ ଗଲା ।''

ତେବେ କୁନ୍ତଳାଙ୍କ ଶାନ୍ତଶିଷ୍ଟ ଚେହେରା, ମିଷ୍ଟ ସ୍ୱର ଓ କୋମଳ କଥାବାର୍ତ୍ତାରେ କୁମୁଦିନୀଙ୍କ ମାଆ ଖୁସି ଥିଲେ । କୁମୁଦିନୀର ବାପାଙ୍କୁ ବୁଝାଉଥିଲେ –

''କାଷ୍ଠ ପାଷାଣ ତରୁ ତୃଣ
ସକଳ ଦେହେ ନାରାୟଣ ।''

କୁମୁଦିନୀଙ୍କ ବାପା ମଧ୍ୟ କୁନ୍ତଳାଙ୍କୁ ଘରକୁ ଯିବାରେ ବାଧା ଦେଉ ନ ଥିଲେ ।

ସେଇ ବର୍ଷ ଦଶହରା ପଡ଼ିଲା । କୁମୁଦିନୀଙ୍କ ଘରେ ମହାନବମୀ ପୂଜା ହେଉଥାଏ । ସକାଳୁ ସକାଳୁ କୁମୁଦିନୀ କୁନ୍ତଳାଙ୍କୁ ଡାକି ଆଣିଲେ । ପୂଜା ଚାଲିଥାଏ । ଅଗୁରୁ ଧୂପ ପ୍ରଭୃତିରେ ଘର ବାସି ଉଠୁଥାଏ । ଏହାପରେ ପୁଷ୍ପାଞ୍ଜଳି ଦିଆଗଲା । ସମସ୍ତେ ମୁଣ୍ଡିଆ ମାରିଲେ । କୁନ୍ତଳା ବି ସଙ୍ଗାତଙ୍କ ସହିତ ମିଶି ମୁଣ୍ଡିଆ ମାରିଲେ । ଗୋଟାଏ ଗୁପ୍ତ କୋଠରିରେ ସେମାନେ ହସଖୁସିରେ ଭୋଗ ବି ଖାଇଲେ । କୁନ୍ତଳାଙ୍କର ତାହା ବହୁକାଳ ଅପାସୋରା ହୋଇ ରହିଥିଲା ।

ଖୋର୍ଦ୍ଧାରେ କୁନ୍ତଳାଙ୍କର ଆଉ ଗୋଟିଏ ଝିଅ ସାଙ୍ଗ ଥିଲା । ତା' ନାଁ ହେମ । ସେ ଜାତିରେ କରଣ ଥିଲା । ଦିନେ ତା' ସାଙ୍ଗେ ହେମ ହରିଚନ୍ଦନ ପୋଖରୀକୁ ଗଲେ । ଗାଧେଇ ସାରି କଷି କାକୁଡ଼ି ବସିଲେ । କିଛି ଦିନ ପରେ ହେମ କୁନ୍ତଳାକୁ ଘରକୁ ଯିବାକୁ ବାଧ କଲା । କୁନ୍ତଳା ମାଆଙ୍କୁ କହି ହେମ ଘରକୁ ଗଲେ । ଘରେ ପାଦ ଦେଲା ବେଳକୁ ହେମର ପିଇସୀ ବୁଢ଼ୀ 'ଯା ଯା' କହି ତଡ଼ି ଆଣିଲେ –

''ଆଲୋ କାଲି ବାପ ଶ୍ରାଦ୍ଧ କରିବ, ଏ କ'ଣ ଏବେ ହେଲା ?'' ଲାଜରେ କୁନ୍ତଳା ପଳାଇବାକୁ ବସନ୍ତେ ହେମ ତାଙ୍କୁ କୁଣ୍ଢାଇ ପକାଇ ଢିଙ୍କିଶାଳକୁ ନେଇଗଲା । ଲିପା ପୋଛା ହୋଇଥିବା ଢିଙ୍କିଶାଳରେ ପାଦଦେବା ମାତ୍ରକେ ପିଇସୀ ଚିତ୍କାର କରି ଉଠିଲେ – ''ଆରେ ଭୋବନି ! ସବୁ ମାରା କଲାରେ ମାରା କଲା । × × × ଖିରସ୍ତାନ ଛୁଆଁ ହେଲା । ବଉଁଶ ବୁଡ଼ିଯିବରେ ବାପ... ।''

କୁନ୍ତଳା ଆଉ ସହି ପାରିଲେ ନାହିଁ । ଢିଙ୍କିଶାଳରୁ ବାହାରିଆସି ଜୋର୍ କରି କହିଲେ – ''ପିଉସୀ ! ମୁଁ କ'ଣ ଗାଈ ବାଛୁରୀଠୁଁ ହୀନ ?... କୁକୁର ପୁଣି ତୁମ ଢିଙ୍କିଶାଳ ଭିତରେ ପଶି ଯାଉଥିବ । ତା'ଠୁଁ ମୁଁ କ'ଣ ହୀନ ?''

ପିଉସୀ ସେମିତି ଚିତ୍କାର କରି କହିଲେ – ''କିଏ ଲୋ ତୁ ? ହଇଲୋ ତୋର ପିଉସୀ ମୁଁ ? ଆଲୋ, ମ୍ଲେଚ୍ଛ ଧରମ ପରା ଧରିଛ । ପେଟ ବିକଳରେ ମାଧିଆ ଯୋଗୀ ! ଦୁର୍ଭିକ୍ଷରେ ଯା କଲ ! ଛତର ଖାଇଲ...''

ଆଉ କ'ଣ କହିଥାନ୍ତେ, ଗୃହସ୍ୱାମୀ ସେଠାରେ ପହଞ୍ଚିଗଲେ । ଭଉଣୀକୁ ଚୁପ୍‌ଚାପ୍ କରାଇଲେ । କୁନ୍ତଳାଙ୍କୁ ଖାଇବାକୁ ଦେଇ ବିଦା କରିବାକୁ ନିର୍ଦ୍ଦେଶ ଦେଲେ । ହେମ ବି କୁନ୍ତଳାଙ୍କୁ ତାଙ୍କ ଘରେ ଛାଡ଼ିଦେଇ ଆସିଲା ।

ଖୋର୍ଦ୍ଧାରେ ତାଙ୍କର ଦିନଗୁଡ଼ିକ ହସଖୁସିରେ କଟିଥିଲା ।

କୁନ୍ତଳା ଥରେ ଲେଖିଥିଲେ – ''ଖୋର୍ଦ୍ଧା ଜୀବନହିଁ ମୋର କାବ୍ୟକବିତା । ହିନ୍ଦୁ ଯୁବତୀମାନେ ମୋତେ କିଣି ନେଇଥିଲେ । ଆହା, ସେହି ସୁକୋମଳ ଦରହାସ୍ୟପୂରିତ ଶିଷ୍ଟ ମଧୁର କଥାଭାଷା ମନେପଡ଼ିଲେ ମୁଁ ଅଥୟ ହୋଇଯାଏ । ସ୍ୱର୍ଗର ଦେବୀ ଯେବେ କେହି କଳ୍ପନା କରୁଥାଏ, ସେ କେବଳ ହିଁ ଦେଖିଛି ସେଇଠି ।''

କୁନ୍ତଳା କଳ୍ପନା କରିଥିଲେ – ''ମୋର ଲକ୍ଷେ ଟଙ୍କା ସମ୍ପୂର୍ଣ୍ଣ ହେଲେ ମୁଁ ଖୋର୍ଦ୍ଧାର ବରୁଣେଇ ପାହାଡ଼ ତଳେ ଗୋଟିଏ ନାରୀଶିକ୍ଷା ମନ୍ଦିର ଗଢ଼ି ଓଡ଼ିଆ ନାରୀଙ୍କୁ ମୋର କଳ୍ପନାମତେ ଉତ୍କଳର ଐତିହାସିକ ଦୃଷ୍ଟିକୋଣରୁ ଗଢ଼ିବି ।''

ଖୋର୍ଦ୍ଧାରେ ଆଉ ଗୋଟିଏ ଘଟଣା ଘଟିଥିଲା । ଖ୍ରୀଷ୍ଟିୟାନ ସାହିରେ ନୟନଯୋଡ଼ି ନ ଥିଲା । ବର୍ଷା ଦିନେ ପାଣି ଜମୁଥିଲା । ମଶା ବିସ୍ତର ଥିଲେ । ସାହିଲୋକ ଭିତରୁ ଜଣେ ଏକ ଦରଖାସ୍ତ ଖୋର୍ଦ୍ଧାର ସବ୍‌ଡିଭିଜନାଲ ଅଫିସର ମାକ୍ ଫରସନ୍ ସାହେବଙ୍କ ପାଖକୁ ପଠାଇଦେଲେ । ସାହେବ ତଦନ୍ତ କରିବାକୁ ଦିନ ଧାର୍ଯ୍ୟ କଲେ ଏବଂ ଆସିଲେ । ସାହେବ ଥିଲେ ଟିକିଏ କଡ଼ା ଲୋକ । ସେ ଗରମ ହୋଇ ଇଂରାଜୀରେ ପଚାରିଲେ, ''ତୁମର କ'ଣ ସବୁ ଅସୁବିଧା ଅଛି ।'' ସେ ପଚାରି ଚାଲିଲେ । ଯେତେଥର ପଚାରିଲେ, ସେହି ନିରୀହ ସାହି ଲୋକ କହି ଚାଲିଲେ, 'ୟେସ୍ ସାର୍ ।' ସାହେବ ବିରକ୍ତ ହୋଇ ଇଂରାଜୀରେ କହିଲେ –

''ହ୍ୱାଟ୍ ୟେସ୍ ସାର୍ ? ଆନସର୍ ମାଇଁ କୋଶ୍ଚିନ୍ ?''

ଅର୍ଥାତ୍, ମୋର ପ୍ରଶ୍ନର ଉତ୍ତର ଦିଅ ।

ସାହେବ ରାଗରେ ହତଜ୍ଞାନ ହୋଇ ଫେରିଯାଉଥିଲେ । କିଶୋରୀ କୁନ୍ତଳା ବାହାରିପଡ଼ି ସୁନ୍ଦର ଇଂରାଜୀରେ କହିଲେ – "ସାର୍, ଆମ ଲୋକେ ତ ଆବେଦନ ପତ୍ରରେ ଅଭାବ ଅସୁବିଧା ଜଣାଇଛନ୍ତି । ଆପଣ ବୋଧେ ତାହା ପଢ଼ି ନାହାନ୍ତି । ଆମର ନୟନଯୋଡ଼ି (ଡ୍ରେନ୍) ନାହିଁ । ରାସ୍ତା ନାହିଁ ।" ଏହିପରି ଯାବତୀୟ ଅସୁବିଧା କହିଗଲେ ।

ସାହେବ କୁନ୍ତଳାଙ୍କ ସାହସରେ ମୁଗ୍ଧ ହୋଇପଡ଼ିଲେ । ତାଙ୍କ ସାଙ୍ଗରେ କୁନ୍ତଳାଙ୍କୁ ବଙ୍ଗଳାକୁ ନେଲେ ଓ ସ୍ତ୍ରୀଙ୍କ ସହିତ ଚିହ୍ନା କରାଇଦେଲେ । ପର୍ବଦିନଗୁଡ଼ିକରେ ମେମ୍ କୁନ୍ତଳାଙ୍କୁ ଘରକୁ ଆମନ୍ତ୍ରଣ କରୁଥିଲେ ।

ଖୋର୍ଦ୍ଧାରେ ଗୋଟିଏ ବାଳିକା ମାଇନର ସ୍କୁଲ ଥିଲା । କୁନ୍ତଳା ସେଠାକୁ ବେଳେ ବେଳେ ଯାଉଥିଲେ । ଶିକ୍ଷୟିତ୍ରୀମାନଙ୍କ ସହିତ ଆଳାପ-ଆଲୋଚନା କରୁଥିଲେ । ସେହି ମାଇନର ସ୍କୁଲରୁ ବହି ଆଣି ପଢ଼ିବାର ସୁଯୋଗ ପାଇଥିଲେ । ଖୋର୍ଦ୍ଧାର ହାଇସ୍କୁଲରୁ ମଧ୍ୟ ଉପାଦେୟ ବହିମାନ ଆଣି ପଢୁଥିଲେ । ଓଡ଼ିଆ ଭାଷାରେ ଯେତେଗୁଡ଼ିଏ ବହି ସେସମୟରେ ପ୍ରକାଶିତ ହୋଇଥିଲା, କୁନ୍ତଳା ପ୍ରାୟ ସେସବୁକୁ ପଢ଼ି ପକାଇଥିଲେ । ଏହାଛଡ଼ା ବଙ୍ଗଳା ଓ ଇଂରାଜୀ ବହି ମଧ୍ୟ ଆଣି ପଢ଼ିଥିଲେ ।

ଖୋର୍ଦ୍ଧା ଥିଲା କୁନ୍ତଳାଙ୍କର ପ୍ରେରଣାର ଉତ୍ସ । ଗୋସାଇଁବାପା ଓ ଗୋସାଇଁମାଆ ତାଙ୍କୁ ଭାରତୀୟ ସଂସ୍କୃତିର ପୁସ୍ତକ, ଯଥା – ରାମାୟଣ ଓ ମହାଭାରତର କାହାଣୀମାନ ଶୁଣାଉଥିଲେ । ସେ ସୀତା ସାବିତ୍ରୀ ପ୍ରଭୃତିଙ୍କ ଚରିତ୍ର ଶୁଣି ଅଭିଭୂତା ହୋଇପଡୁଥିଲେ । ଶକୁନ୍ତଳା ଓ ଦମୟନ୍ତୀ ପ୍ରଭୃତିଙ୍କର ଜୀବନଚରିତ ଶୁଣି ତାଙ୍କ ପ୍ରାଣ ଉଲ୍ଲସିତ ହୋଇଉଠୁଥିଲା । ସେ ମନେ ମନେ ଭାବୁଥିଲେ – "ମୋ ଦେଶର ପୁରାଣ, ମୋ ଦେଶର ସଂସ୍କୃତି, ମୋ ଦେଶର ଇତିହାସକୁ ଭୁଲି ପାଶ୍ଚାତ୍ୟର ସଂସ୍କୃତିକୁ କାହିଁକି ଗ୍ରହଣ କରିବି ?"

କୁନ୍ତଳା କ୍ରମେ ହିନ୍ଦୁ ଧର୍ମ ପ୍ରତି ଆକୃଷ୍ଟ ହେଲେ । କିନ୍ତୁ ଯେଉଁ ଧର୍ମ ସଂପ୍ରଦାୟରେ ଜନ୍ମ ହୋଇଛନ୍ତି, ସେହି ଧର୍ମ ପ୍ରତି ତାଙ୍କର ଘୃଣା ନ ଥିଲା । ସେ ଖ୍ରୀଷ୍ଟିୟାନ ଧର୍ମ ବିରୋଧରେ କେବେ ସ୍ୱର ଉଠାଇ ନାହାନ୍ତି ।

## ବିବାହ ଉଦ୍ୟମ

ଏହି ସମୟରେ ତାଙ୍କ ମାଆ ମନିକା ଦେବୀ କୁନ୍ତଳାଙ୍କୁ ବିବାହ କରାଇବାକୁ ବ୍ୟାକୁଳ ହୋଇପଡ଼ିଲେ । ଏକ ଧନାଢ଼୍ୟ ପରିବାରର କିରଣବିହାରୀଙ୍କ ସହିତ ତାଙ୍କର ବିବାହ ପ୍ରସ୍ତାବ ପଡ଼ିଲା । ମାତ୍ର କୁନ୍ତଳା ସେଥିରେ ରାଜି ହୋଇ ନ ଥିଲେ ।

## କଟକରେ ଅଧ୍ୟୟନ

୧୯୧୭ ମସିହାରେ କଟକ ରେଭେନ୍‌ସା ବାଳିକା ବିଦ୍ୟାଳୟରେ କୁନ୍ତଳା ନାମ ଲେଖାଇଲେ । କେଶରପୁରରେ ରହୁଥିବା ଜଣେ ଆତ୍ମୀୟଙ୍କ ଘରେ ସେ ରହି ପଢ଼ିଲେ । ୮ମ ଶ୍ରେଣୀର ଶିକ୍ଷା ଆଉ ଚାରି ମାସ ଥିଲା । ସେ ଶ୍ରେଣୀରେ ବାର୍ଷିକ ପରୀକ୍ଷାରେ ପ୍ରଥମ ହୋଇ ୯ମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲେ । ସେ ପ୍ରତ୍ୟେକ ବିଷୟରେ ସବୁ ପିଲାଙ୍କଠାରୁ ଅଧିକ ନମ୍ବର ରଖିଥିଲେ । ସ୍କୁଲର ପ୍ରିନ୍‌ସିପାଲ ଥିଲେ ମିସେସ୍ ବ୍ୟାଙ୍କ । ସେ ସେହି ବୁଦ୍ଧିମତୀ ଛାତ୍ରୀଙ୍କୁ ବିଲାତ ନେଇଯିବାକୁ ଚାହିଁଥିଲେ । କିନ୍ତୁ ବିଲାତ ଯିବାପାଇଁ କୁନ୍ତଳା ଅନିଚ୍ଛା ପ୍ରକାଶ କଲେ । ଗାର୍ଲସ୍ ସ୍କୁଲରେ କିଛି ବର୍ଷ ପଢ଼ି କଲେଜରେ ପଢ଼ିବାକୁ ତାଙ୍କର ଇଚ୍ଛା ଥିଲା । ମାତ୍ର ମାଆ ଓ ଭାଇ ଭଉଣୀଙ୍କ ଚଳାଚଳପାଇଁ ସେ ସ୍କୁଲ ତ୍ୟାଗ କରି ୧୯୧୮ ମସିହାରେ ମେଡିକାଲ ସ୍କୁଲରେ ନାମ ଲେଖାଇଲେ ।

## ମେଡିକାଲ ସ୍କୁଲ ଜୀବନ

ମେଡିକାଲ ସ୍କୁଲରେ ନାମ ଲେଖାପାଇଁ ୪୦ଜଣ ପିଲାଙ୍କ ଇଣ୍ଟରଭିଉ ହେଲା । କୁନ୍ତଳାକୁମାରୀ ଦ୍ୱିତୀୟ ସ୍ଥାନ ଅଧିକାର କଲେ । କିନ୍ତୁ କୁନ୍ତଳା ତାଙ୍କ ପ୍ରତି ପକ୍ଷପାତ କରାଯାଇଛି ବୋଲି ପ୍ରିନ୍‌ସିପାଲଙ୍କଠାରେ ଆପତ୍ତି କଲେ । ଦ୍ୱିତୀୟବାର ପରୀକ୍ଷାରେ କୁନ୍ତଳା ପ୍ରଥମ ହୋଇ ମେଡିକାଲ ସ୍କୁଲରେ ନାମ ଲେଖାଇଲେ । କେଶରପୁରରେ ତ ରହୁଥାନ୍ତି, ସାଙ୍ଗରେ ରହିଲେ ସାଆନ୍ତମା' ସାଧବୀ ଦେବୀ । ଅଳ୍ପ ଖର୍ଚ୍ଚରେ ସେ କଟକରେ ଚଳି ଯାଉଥିଲେ । କୁନ୍ତଳା ଗୋସାଇଁମାଆଙ୍କ ସାଙ୍ଗରେ ଚାଲି ଚାଲି ସ୍କୁଲ ଯାଉଥିଲେ । ଆସିଲାବେଳେ ସାଆନ୍ତମା' ତାଙ୍କୁ ଆଣିବାକୁ ଯାଉଥିଲେ ।

ଦାରିଦ୍ର୍ୟତା ମଧ୍ୟରେ ଗତି କରୁଥିଲେ ମଧ୍ୟ କୁନ୍ତଳା ପାଠପ୍ରତି ଅବହେଳା କରୁ ନ ଥିଲେ । ସେ ପ୍ରଥମ ବାର୍ଷିକ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କଲେ । ଜଣେ ବଙ୍ଗୀୟ ବୃଦ୍ଧ ଅଧ୍ୟାପକ ସ୍ୱତଃପ୍ରବୃତ୍ତ ହୋଇ ଏକକାଳୀନ ଦୁଇ ଶହ ଟଙ୍କା ସାହାଯ୍ୟ ଦେବାରୁ ସେ ବହିପତ୍ର ଖରିଦ କରିପାରିଲେ ଓ ତାଙ୍କର ବହୁ ଅଭାବ ଦୂର ହୋଇଗଲା । ସେ ଉତ୍ତମ ଛାତ୍ରୀ ଥିଲେ; ପୁଣି ତାଙ୍କର ଅମାୟିକ ଓ ଭଦ୍ର ବ୍ୟବହାର ଯୋଗୁଁ ଶିକ୍ଷକମାନଙ୍କର ପ୍ରଶଂସାଭାଜନ ହୋଇପାରିଥିଲେ । ଜଣେ ଖଳପ୍ରକୃତିର ଛାତ୍ର ତାଙ୍କ ପ୍ରତି ଈର୍ଷାନ୍ୱିତ ହୋଇ ତାଙ୍କୁ ଅପମାନିତ କରିଥିଲା । ଏପରିକି ସ୍କୁଲର ଅନ୍ଧକାର କୋଠରିରେ ଆକ୍ରମଣ କରିବାକୁ ଉଦ୍ୟମ କରିଥିଲା । ସେ ଯୁବକକୁ ସ୍କୁଲରୁ ବହିଷ୍କୃତ କରିବାକୁ ସ୍ଥିର

ହୋଇଥିଲା । ଅଧ୍ୟୟନରେ ମଧ୍ୟ ଅବିରତ ବ୍ୟସ୍ତ ଥିବାରୁ କୁନ୍ତଳାଙ୍କର କୌଣସି କ୍ଷତି କେହି କରିପାରି ନ ଥିଲେ ।

ବହୁ ଦୁର୍ଘଟଣାରୁ କୁନ୍ତଳାଙ୍କୁ ରକ୍ଷା କରିଥିଲେ ମେଡିକାଲ ସ୍କୁଲର ଜଣେ ଉଦାରମନା ଶିକ୍ଷକ – କୈଳାସଚନ୍ଦ୍ର ରାଓ । ସେ ରୁକ୍ଷ ପ୍ରକୃତିର ଥିଲେ । ସାମାନ୍ୟ ତ୍ରୁଟି ଦେଖିଲେ ଅକଥନୀୟ ଗାଳି ଦେଉଥିଲେ । କୁନ୍ତଳା ତାଙ୍କୁ ପ୍ରଥମେ ପ୍ରଥମେ ଭୟ କରୁଥିଲେ ।

ଦ୍ୱିତୀୟ ଓ ତୃତୀୟ ବର୍ଷ କୁନ୍ତଳା ମଧ୍ୟ ଅଧିକ ନମ୍ବର ରଖି ପ୍ରଥମ ହୋଇ ପାସ୍ କଲେ । ଏଥିମଧ୍ୟରେ କିନ୍ତୁ ଆର୍ଥିକ ଦୁର୍ଦ୍ଦଶା ଦେଇ ଗତି କରୁଥିଲେ । ପିତା ଟଙ୍କା ପଠାଉ ନ ଥିଲେ । ଭାଇ ସାମୁଏଲ୍ ମଧ୍ୟ ଜ୍ୱର ରୋଗରେ ପଡ଼ି ପ୍ରାଣ ତ୍ୟାଗ କଲା । ତଥାପି ସେ ଦୃଢ଼ ମନୋବଳ ନେଇ ଲକ୍ଷ୍ୟପଥରେ ଗତି କଲେ ।

**ପ୍ରଣୟ**

ଏଥି ମଧ୍ୟରେ କୁନ୍ତଳାଙ୍କର କୈଳାସଚନ୍ଦ୍ରଙ୍କ ସହିତ ଅଚାନକ ଭେଟ ହେଲା । ଦିନେ ଭୀଷଣ ବର୍ଷା ହେତୁ ସେ ତିନ୍ତି ତିନ୍ତି ଘରକୁ ଫେରୁଥିଲେ । ଶୂନ୍ୟ ରାଜପଥରେ ଘୋଡ଼ାଗାଡ଼ି ଆସୁଥିବା ଜଣାଗଲା । କୁନ୍ତଳା ଆଡ଼େଇ ହୋଇଗଲେ । ସେଥିରେ ବସିଥିଲେ ମେଡିକାଲ ସ୍କୁଲର ଶିକ୍ଷକ କୈଳାସଚନ୍ଦ୍ର । ଗାଡ଼ି ଅଟକାଇ ତାଙ୍କୁ ଗାଡ଼ିରେ ଯିବେ କି ପଚାରିଲେ । କୁନ୍ତଳାଙ୍କ ଆର୍ଦ୍ର ଶୋଭାରେ ସେ ମୁଗ୍ଧ ହୋଇପଡ଼ିଥିଲେ । ତାଙ୍କ ଅନୁରୋଧରେ କୁନ୍ତଳା ଗାଡ଼ିରେ ଚଢ଼ି ବାମ ପାଖରେ ବସିପଡ଼ିଲେ । କୈଳାସଚନ୍ଦ୍ର ପଚାରିଲେ – ‘‘କେଉଁ ସାହସରେ ମୋର ବାଁ ପାଖେ ବସିଗଲ ।’’

ଗୁରୁ ନିକଟରେ ଶିଷ୍ୟା କ’ଣ ବସିପାରିବ ନାହିଁ’’ – ଏହି ଥିଲା କୁନ୍ତଳାଙ୍କର ଉତ୍ତର ।

ଏହାପରଠୁଁ ଡାକ୍ତର ରାଓ କୁନ୍ତଳାଙ୍କର ଏକାନ୍ତ ଆପଣାର ହୋଇଗଲେ । ଆଉ ଅଚାନକ ଘଟିଥିବା ଘଟଣାଟି ଗୋପନରେ ରହିଗଲା ।

କୁନ୍ତଳାକୁମାରୀ ୧୯୨୧ ମସିହାରେ ବିହାର ଓ ଓଡ଼ିଶାର ମେଡିକାଲ ବୋର୍ଡ ପରୀକ୍ଷାରେ ଅତ୍ୟଧିକ ନମ୍ବର ରଖି ସର୍ବପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ସେ ମଧ୍ୟ ଏଥିପାଇଁ ସ୍ୱର୍ଣ୍ଣପଦକ ଲାଭ କଲେ । ସେ ମେଡିକାଲ ଚାରି ବର୍ଷ ପରୀକ୍ଷା ମଧ୍ୟରେ ୧୬ଗୋଟି ରୌପ୍ୟ ଓ ସ୍ୱର୍ଣ୍ଣପଦକ ପାଇଥିଲେ ।

ଏହାପରେ କୁନ୍ତଳା କୁମାରୀ ନିଜ ଗୋଡ଼ରେ ଠିଆ ହେବାପାଇଁ ସାହସ ବାନ୍ଧିଲେ । ସେ ଡାକ୍ତରୀ ପରୀକ୍ଷାରେ କୃତିତ୍ୱର ସହ ଉତ୍ତୀର୍ଣ୍ଣ ହୋଇଥିଲେ ମଧ୍ୟ

ସରକାରୀ ଚାକିରିରେ ଯୋଗ ନ ଦେଇ ସ୍ୱାଧୀନ ଭାବରେ ଚିକିତ୍ସା କରିବାକୁ ସ୍ଥିର କଲେ । ଡାକ୍ତର କୈଳାସଚନ୍ଦ୍ର ତାଙ୍କୁ ସବୁପ୍ରକାର ସାହାଯ୍ୟ ଦେଲେ । ତାଙ୍କ ମଧ୍ୟସ୍ଥତାରେ କୁନ୍ତଳା କିଛି ଟଙ୍କା ଋଣ ଆଣିଲେ । ଗଙ୍ଗାମନ୍ଦିରରେ ଗୋଟିଏ ପୁରାତନ କୋଠାଘର ଭଡ଼ାରେ ନେଲେ । ଡାକ୍ତରୀ ବ୍ୟବସାୟର ପ୍ରାଥମିକ ପର୍ଯ୍ୟାୟରେ ଯେଉଁ ଆନୁଷଙ୍ଗିକ ଯନ୍ତ୍ରପାତି ଆବଶ୍ୟକ, ତାହା କ୍ରୟ କରାଗଲା । କୈଳାସଚନ୍ଦ୍ରଙ୍କ ସୁପାରିସ ଫଳରେ ବହୁସଂଖ୍ୟକ ରୋଗୀଙ୍କ ଚିକିତ୍ସାର ସୁବିଧା ମଧ୍ୟ ପାଇଲେ ।

ଋଣ ପରିଶୋଧ କରିବାକୁ ଏବଂ ନିଜର ଖର୍ଚ୍ଚ ଏବଂ ଭାଇଭଉଣୀଙ୍କୁ ପୋଷିବାପାଇଁ କୁନ୍ତଳା କଠୋର ପରିଶ୍ରମ କରୁଥିଲେ । ଅସ୍ତ୍ରୋପଚାର ଦିଗରେ ତାଙ୍କର ଦକ୍ଷତା ଥିଲା । ତାଙ୍କର ମଧୁର ବ୍ୟବହାର ତଥା ନିଷ୍ଠାପରତା ତାଙ୍କର ସୁନାମ ଆଣିଲା । ପ୍ରସବ ନିମିତ୍ତ ଯେତେବେଳେ କେହି ଯାଉଥିଲେ ରାତ୍ରତମାମ ରୋଗିଣୀ ପାଖରେ ସେ ଜଗି ରହୁଥିଲେ । ଅଳ୍ପ ଦିନ ମଧ୍ୟରେ କୁନ୍ତଳା ଜଣେ ଖ୍ୟାତନାମା ଡାକ୍ତରାଣୀ ହୋଇଗଲେ ।

କୈଳାସଚନ୍ଦ୍ର ରାଓଙ୍କ ସଙ୍ଗେ ଏଥିମଧ୍ୟରେ କୁନ୍ତଳାଙ୍କ ସମ୍ପର୍କ ନିବିଡ଼ ହୋଇଉଠିଥାଏ । କୈଳାସଚନ୍ଦ୍ର ହିନ୍ଦୁ ରକ୍ଷଣଶୀଳ ମରହଟ୍ଟା ପରିବାରର ଥିଲେ । ସେ ବିବାହିତ ଥିଲେ । ପୁଣି ଗୋଟିଏ କନ୍ୟାର ଜନକ ଥିଲେ । ଘରେ ମଧ୍ୟ ତାଙ୍କର ରୁଗ୍‌ଣା ସ୍ତ୍ରୀ ଥିଲେ । କୁନ୍ତଳା ଖ୍ରୀଷ୍ଟିଆନ ସଂପ୍ରଦାୟର ଥିଲେ । ପୁଣି କୈଳାସଚନ୍ଦ୍ରଙ୍କଠୁଁ ୧୬ବର୍ଷ ସାନ ଥିଲେ । ତେବେ ପରିଣତି ଯାହା ହେଉନା କାହିଁକି, ଯାହା ପ୍ରତି ପ୍ରଥମେ ହୃଦୟ ସମର୍ପଣ କରିଦେଇଛନ୍ତି ତା' ବ୍ୟତୀତ ଆଉ କାହାରିକୁ ବିବାହ କରିବେ ନାହିଁ – ଏହି ସିଦ୍ଧାନ୍ତରେ କୁନ୍ତଳା ଦୃଢ଼ ରହିଲେ ।

ଦିନ ଗଡ଼ି ଚାଲିଲା । ପ୍ରତିଦିନ କୈଳାସଚନ୍ଦ୍ର କୁନ୍ତଳାଙ୍କ ପାଖକୁ ଆସୁଥିଲେ । ଭଲ ଉପଦେଶ ଦେଇ ଚାଲି ଯାଉଥିଲେ । କ'ଣ କରିବେ କୈଳାସଚନ୍ଦ୍ର ନିଜେ ମଧ୍ୟ ସ୍ଥିର କରିପାରୁ ନ ଥିଲେ । ଆଉ କୁନ୍ତଳା ? ତାଙ୍କର ନିଜର କର୍ତ୍ତୃତ୍ୱ ନ ଥିଲା । ତାରୁଣ୍ୟ ମଣିଷକୁ ହଠାତ୍ ଅମଡ଼ାବାଟକୁ ମଡ଼ାଇ ନିଏ । ତାହା ମଧ୍ୟ ହେଲା ।

କୁନ୍ତଳା ଅବସର ସମୟରେ କବିତା ଲେଖାଲେଖି କରୁଥାଆନ୍ତି । ସେ ସବୁ କବିତାକୁ କୁନ୍ତଳା କୈଳାସଚନ୍ଦ୍ରଙ୍କୁ ଦେଖାଉ ଥାଆନ୍ତି । କୈଳାସଚନ୍ଦ୍ର ମନୋଯୋଗ ଦେଇ ସେଗୁଡ଼ିକ ପଢୁଥିଲେ । କୁନ୍ତଳାଙ୍କର ପ୍ରତିଭା ଥିବାର ସେ ଲକ୍ଷ୍ୟ କରିଥିଲେ । ସେସବୁ କବିତାକୁ ଲୋକଲୋଚନକୁ ଆଣିବାକୁ କୈଳାସଚନ୍ଦ୍ର ସ୍ଥିର କଲେ ।

କୁନ୍ତଳାଙ୍କ କବିତାଗୁଡ଼ିକ କିନ୍ତୁ ବ୍ୟକ୍ତିକୈନ୍ଦ୍ରିକ ଥିଲା । ସେଗୁଡ଼ିକ ବ୍ୟକ୍ତିଗତ ଜୀବନର ଘଟଣାବଳୀ ଉପରେ ରଚିତ ହୋଇଥିଲା । କବିତାଗୁଡ଼ିକର କେନ୍ଦ୍ରବିନ୍ଦୁ ଥିଲେ ସେ ନିଜେ । କୈଳାସଚନ୍ଦ୍ର ଏହା ଜାଣିପାରି ବିଚଳିତ ହୋଇପଡ଼ିଲେ । ଗୋଟାଏ ଉପାୟ ପାଞ୍ଚି ସେ କୁନ୍ତଳାଙ୍କୁ ଆଧୁନିକ ରୁଚିର କବିତା ଲେଖିବାକୁ ପରାମର୍ଶ ଦେଲେ ।

କୁନ୍ତଳା ମଧ୍ୟ କୈଳାସଚନ୍ଦ୍ରଙ୍କ ପରାମର୍ଶ ଅନୁସାରେ ଗୋଟିଏ ଭିନ୍ନ ଧରଣର କବିତାଟିଏ ଲେଖିଲେ । ନାମ ଦେଲେ – 'ତାରାପ୍ରତି' । ତା'ର ଗୋଟିଏ ପଦ –

''ଦୂର ଗଗନରେ ଝୁଲୁଝୁଲୁ ଚାହିଁ ହସୁ ତୁହି କ୍ଷୁଦ୍ର ତାରା
କ୍ଷଣିକେ ହୃଦୟେ ପରଶି ମୋହର କେତେ ଚିନ୍ତା ଆଣୁ ପରା ।''

କୈଳାସଚନ୍ଦ୍ର ଏହି କବିତାଟିକୁ କେତେଜଣ ବନ୍ଧୁଙ୍କୁ ଦେଖାଇଲେ । ସେମାନେ ପ୍ରଶଂସା କରି ଲେଖିକା କିଏ ବୋଲି ପଚାରିଲେ । କୈଳାସଚନ୍ଦ୍ର କହିଲେ –

''ଗୋଟିଏ ଖ୍ରୀଷ୍ଟିୟାନ ବାଳିକା ଏହା ଲେଖିଛି ।''

କୈଳାସଚନ୍ଦ୍ର ଏହାପରେ କୁନ୍ତଳାଙ୍କର କବିତାଟିକୁ ପ୍ରକାଶ କରିବାପାଇଁ ଲାଗିପଡ଼ିଲେ । ସେ କବିତାଟିକୁ ନେଇ 'ଉତ୍କଳ ସାହିତ୍ୟ'ର ସମ୍ପାଦକ ବାଗ୍ମୀ ବିଶ୍ୱନାଥ କରଙ୍କୁ ଦେଖାଇଲେ । ବିଶ୍ୱନାଥ କବିତାଟି ପଢ଼ି ଖୁସି ହେଲେ ଏବଂ ଲେଖିକାଙ୍କ ପରିଚୟ ଚାହିଁଲେ । ଯେତେବେଳେ ଜାଣିଲେ ଯେ ଜଣେ ବାଳିକା ଏହା ଲେଖିଛନ୍ତି, ସେତେବେଳେ ସାହିତ୍ୟପ୍ରେମୀ ବିଶ୍ୱନାଥ କର ଲେଖିକାଙ୍କୁ ସାକ୍ଷାତ୍ କରିବାପାଇଁ ଆଗ୍ରହୀ ହେଲେ ।

'ତାରା ପ୍ରତି' କବିତାଟି 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ପାଇଲା । ପରେ ପରେ 'ଶେଫାଳି ପ୍ରତି', 'କମଳ ପ୍ରତି' ପ୍ରଭୃତି ପ୍ରକାଶ ପାଇଲା । ପତ୍ରିକାର କେତୋଟି ସଂଖ୍ୟା ପ୍ରକାଶିତ ହେବାପରେ ଏକାବେଳକେ ଦଶ ବାରଟି ଚିଠି ବିଶ୍ୱନାଥ କରଙ୍କ ପାଖେ ପହଞ୍ଚିଲା । ସେଇ ଗୋଟାଏ କଥା – ''ଗୋଟିଏ ଓଡ଼ିଆ ନାରୀ ଏପରି କବିତା ଲେଖିପାରେ !''

କୁନ୍ତଳାଙ୍କର କବିତା ଆହୁରି ପ୍ରକାଶ ପାଉ ବୋଲି ପତ୍ରପ୍ରେରକମାନେ ଅନୁରୋଧ କରିଥିଲେ ।

କୁନ୍ତଳା ଏଥିରେ ଉତ୍ସାହିତ ହୋଇପଡ଼ିଲେ । ସେ 'ଆବାହନ' ନାମକ ଗୋଟିଏ କବିତା କୈଳାସଚନ୍ଦ୍ରଙ୍କ ପାଦ ତଳେ ମଥା ରଖି ଉପହାର ଦେଇଥିଲେ । ତା'ର ଗୋଟିଏ ପଦ –

''ମାତୃଭାଷା ଦୀପେ ଜାଳି ତବ ଧର୍ମାଲୋକ
ବିତରିବି ଯେହ୍ନେ ତା'ର ମୟୂଖ ଉଜ୍ଜ୍ୱଳ
ସେ ଆଲୋକେ ପାସୋରିଣ ଦୈନ୍ୟ ଦୁଃଖ ଶୋକ
ତବ ଚରଣ ରାଜୀବ ସେବିବି ସତତ''... ।।

ଏ କବିତା ଭଳି ଶହ ଶହ କବିତା କୈଳାସଚନ୍ଦ୍ରଙ୍କ ଉଦ୍ଦେଶ୍ୟରେ କୁନ୍ତଳାକୁମାରୀ ଯେ ଲେଖିଥିଲେ, ଏହା ଅତି ସ୍ପଷ୍ଟ । କୈଳାସଚନ୍ଦ୍ର ଏଥିରେ ଆହୁରି ବିଚଳିତ ହୋଇପଡ଼ିଲେ । ତାଙ୍କୁ ବୁଝାଇଲେ – ''କୁନ୍ତଳା ! ତୁଚ୍ଛ ବ୍ୟକ୍ତିର ପୂଜା କର ନାହିଁ ।''

କୁନ୍ତଳା କିନ୍ତୁ ଯାହାଙ୍କୁ ହୃଦୟ ଅର୍ପଣ କରି ଥରେ ଭଲ ପାଇ ବସିଛନ୍ତି, ତାଙ୍କୁ ଭୁଲିବେ କିପରି ? ତାହାଙ୍କୁ ପତି ଭାବରେ ପାଇବାପାଇଁ ତାଙ୍କର ପ୍ରବଳ ବାସନା ସୃଷ୍ଟି ହେଲା । ହୃଦୟରେ ମାତୃତ୍ୱ କାମନା ମଧ୍ୟ ପ୍ରଜ୍ୱଳିତ ହେବାକୁ ଲାଗିଲା । ନାରୀ ଡାକ୍ତର ଭାବରେ ଗର୍ଭବତୀ ସ୍ତ୍ରୀଙ୍କର ପ୍ରସବ କାର୍ଯ୍ୟରେ ସହାୟତାପାଇଁ ସବୁଆଡ଼େ ଯାଉଥିଲେ । ସେଠାରେ ସଦ୍ୟଜାତ ଶିଶୁ ଓ ପ୍ରସବିନୀ ମଧ୍ୟରେ ମମତା ସମ୍ପର୍କରେ ଅନୁଭବ କରିବାଦ୍ୱାରା ସେ ନିଜେ ମାତୃତ୍ୱ ଲାଭ କରିବାପାଇଁ ବ୍ୟାକୁଳ ହୋଇପଡ଼ିବା ସ୍ୱାଭାବିକ ।

କୁନ୍ତଳା ମନେ ମନେ ଯୁକ୍ତି ବାଢୁଥିଲେ, ସେ ଯେବେ ସେହି ସାମୟିକ ଉତ୍ତେଜନାରୁ ନିବୃତ୍ତ ରହିଥାନ୍ତେ ଆଜି ତାଙ୍କୁ ଏହି ଅନୁଶୋଚନା କରିବାକୁ ପଡୁ ନ ଥାନ୍ତା । ସେ ଅନ୍ୟମାନଙ୍କ ପରି ଜଣଙ୍କୁ ସାଥୀ କରି ସୁନ୍ଦର ଗାର୍ହସ୍ଥ୍ୟ ଜୀବନ କଟାଇଥାଆନ୍ତେ ! କିନ୍ତୁ ଯେଉଁ ସିଦ୍ଧି ତାଙ୍କୁ କୈଳାସ ଦେଲେ, ତାହା ସେ କାହୁଁ ପାଇଥାଆନ୍ତେ ! ଉତ୍କଳ ସାହିତ୍ୟ କିଏ, ଖ୍ରୀଷ୍ଟିୟାନ ନାରୀ କିଏ ? ପୁଣି ଦୁନିଆର ପ୍ରଶଂସା ତାଙ୍କୁ କିପରି ମିଳନ୍ତା ? କୈଳାସ ହିଁ ତାଙ୍କୁ ଏ ବୈଶିଷ୍ଟ୍ୟ ଦେଇଛନ୍ତି !

ପରମୁହୂର୍ତ୍ତରେ କୁନ୍ତଳା ଭାବୁଥିଲେ – ''ତା'ହେଲେ ମଧ୍ୟ ସେ ଏ କୀର୍ତ୍ତି, ପ୍ରସିଦ୍ଧି କ'ଣ କରିବେ ? ନାରୀ କ'ଣ ଏତିକି ଚାହେଁ ? ନିଃସଙ୍ଗ ଜୀବନ ସେ ଅତିବାହିତ କରିବେ କିପରି ?''

ମନ ତାଙ୍କର ମାନୁ ନ ଥିଲା । ଆତ୍ମା ବିଳପି ଉଠୁଥିଲା । ଥରେ ଏକ ସ୍ୱପ୍ନବୃତ୍ତାନ୍ତ ବର୍ଣ୍ଣନା କରି କୁନ୍ତଳା କୈଳାସଚନ୍ଦ୍ରଙ୍କ ପାଖକୁ ଲେଖିଲେ – ''ଦେଖ, ତୁମକୁ ଏ ସ୍ୱପ୍ନ ବିଷୟ କିପରି ଲାଗୁଛି ?... ଏ କ'ଣ ମିଛ ? ପୁଣି ଦେଖ, ତୁମର ମୋର ଜୀବନକୁ ଅନାଅ । ମୋତେ ଦେଖିଲାମାତ୍ରେ ତୁମେ ଭଲ ପାଇଲ । ମୋର ଭଲ ଶୁଣିଲେ ତୁମେ ସୁଖୀ ହେଲ ।'' ସେଥିରେ ପୁଣି ଲେଖାଥିଲା –''ଏ ସ୍ୱପ୍ନ ଦେଖିଲା ପରେ ତୁମକୁ ମୋର ଦେବତା ବୋଲି ମନେ ହେଉଛି । ଆଉ ତୁମ ସହିତ ମୋର ମିଳନ ଯେ କାହିଁକି ହେଉ ନାହିଁ, ତା'ର କାରଣ ବୁଝି ମୁଁ ବିସ୍ମୟରେ ନିର୍ବାକ... ।'' ଇତ୍ୟାଦି

କୁନ୍ତଳା ବିଶେଷ ସୁନ୍ଦରୀ ନ ଥିଲେ । କିନ୍ତୁ କୈଳାସଚନ୍ଦ୍ରଙ୍କୁ ପାଇବାପାଇଁ ନିଜକୁ ସଜାଇବାକୁ ବ୍ୟାକୁଳ ହୋଇପଡୁଥିଲେ । ସେ ଦୋତାଲା ଉପରେ ସୁସଜ୍ଜିତ ହୋଇ ତଳ ମହଲାକୁ ଆସି ସେଠାରେ ଗୋଟିଏ ବଡ଼ ଆଇନାରେ ପୁଣି ନିଜକୁ ଦେଖି ଫେରିଯାଉଥିଲେ । ପୁଣି ଯାଇ ଆଉ ଥରେ ମୁଣ୍ଡ କୁଣ୍ଡାଇ ବସୁଥିଲେ । ଏପରି ଅବସ୍ଥାରେ ଥିଲାବେଳେ ତାଙ୍କର ବେଳେ ବେଳେ ଚେତା ବୁଡ଼ିଯାଉଥିଲା । ଏହା ଦେଖିଲେ କେହି କେହି ଛଳନା ବୋଲି ଭାବୁଥିଲେ; ମାତ୍ର ବାସ୍ତବରେ ତାହା ସତ୍ୟ ଥିଲା । ସେ ସଦାସର୍ବଦା ଝୁରି ହେଉଥିଲେ – ''ତାଙ୍କ ଜୀବନକୁ ସେ କ'ଣ କଲେ ! ତାଙ୍କର ଏ ପ୍ରତିଷ୍ଠା କ'ଣ ଲୋଡ଼ା ଥିଲା !''

କୈଳାସଚନ୍ଦ୍ର କିନ୍ତୁ ନିଜ ପରିବାର ପ୍ରତି କର୍ତ୍ତବ୍ୟବୋଧ ବିଷୟରେ ସଚେତନ ଥିଲେ । ସେ ବୁଝାନ୍ତି – ''କୁନ୍ତଳା ! ତୁମର ଯେପରି ଖ୍ୟାତି ବଢ଼ିଗଲାଣି, ଦରିଦ୍ର କୈଳାସ ତୁମକୁ ବିବାହ କରିବା କି ଅସୁନ୍ଦର ନ ହେବ ? ମୁଁ ହୀରାଖଣ୍ଡେ କୋଇଲାଖଣିରୁ ପାଇଥିଲି । ତା' ଦେହରେ ଲାଗିଥିବା ମଇଳାଟିକୁ ଲୁଗା କାନିରେ ଥରେ ଦୁଇ ଥର ଦଳି ସଫା କରିଦେଇଛି ମାତ୍ର ! ହୀରକ କେବେ ଗୋଟାଇବା ଲୋକର ହୋଇଯାଏ କି ? ତାହା କୌଣସି ସମ୍ଭ୍ରାନ୍ତ, ବିଦ୍ୱାନ୍ ଓ ପ୍ରତିଷ୍ଠାପନ୍ନ ବ୍ୟକ୍ତିର ବ୍ୟବହାରରେ ସିନା ଆସିବ ?''

ଆଉ ବେଳେବେଳେ ପୁଣି ବୁଝାନ୍ତି – ''ଦେଖ କୁନ୍ତଳା, ତୁମକୁ ଯାହା କରିଦେବାର ମୁଁ କରିଦେଲି । ତୁମେ ଗେରୁଆ ପିନ୍ଧ । ତୁମେ ମାଛ, ମାଂସ, ଅଣ୍ଡା, ଘିଅ ଏସବୁ ଛାଡ଼ିଦିଅ । ତପସ୍ୱିନୀ ଭାବରେ କାଳ ଯାପନ କର । ତୁମର ରାଜସିକ ମନୋଭାବ ଦୂର ହୋଇ ମାତୃଭାବ ଆପେ ଆସିଯିବ ।''

''ବାଃ ବେଶ୍ ତ !'' କୁନ୍ତଳା ଏଥିରେ ରାଜି ହୁଅନ୍ତି କେତେବେ ? ଯାହା ହେଉ ସେ କୈଳାସଙ୍କୁ ବିବାହ କରିବେ ଓ ସୁଖୀ ହେବେ । ସେ ଦ୍ୱିଚାରିଣୀ ହେବେ ନାହିଁ – ଏହି ସିଦ୍ଧାନ୍ତରେ ସେ ଅଟଳ ଥାଆନ୍ତି ।

କୁନ୍ତଳାଙ୍କ ମାଆ ମନିକା ଦେବୀ ମଧ୍ୟ କୁନ୍ତଳାଙ୍କୁ ସବୁବେଳେ ବୁଝାଉଥିଲେ – ''କୁନ୍ତଳା, ତୋର ଏକ୍ଷଣି ଯେଉଁ ଖ୍ୟାତି ତାହା ତୁ ଜାଣିଶୁଣି ନଷ୍ଟ କରୁଛୁ । ରାଜା ମହାରାଜା ପରି ତୁ ଘରବାଡ଼ି କରି ଲକ୍ଷ ଲକ୍ଷ ଟଙ୍କାର ମାଲିକାଣୀ ହୋଇ ସୁଖୀ ହୁଅନ୍ତୁ । ଦରିଦ୍ର କୈଳାସକୁ ତୋର ଆଶା ରଖିବା ଅନୁଚିତ । ଦେଖ, ସେ ହିନ୍ଦୁ ଲୋକ । ତା'ର ଭାରିଯା ଏକ ମୂର୍ଖ ସ୍ତ୍ରୀଲୋକ, ପୁଣି ଅତି କ୍ରୋଧିନୀ । କୈଳାସକୁ ତୁ ଦେଖୁଛୁ, ସେ କିପରି ଉଦ୍ଧତ ! ତା' ହାତରେ ଧନ କିଛିମାତ୍ର ନାହିଁ । ବିଶାଳ କୁଟୁମ୍ବ ପ୍ରତିପାଳନରେ ଦେଇ ଦେଇ କାଙ୍ଗାଳ । ତା'ର ବା ଆଉ କୋଉ ବୟସ ଅଛି ? ତୁ ଯୁବତୀ ଝିଅଟା । ଏତେ ଗୁଣର ହୋଇ କାହିଁକି ପ୍ରମାଦରେ ପଡୁଛୁ ?''

କୁନ୍ତଳା ମା'ଙ୍କର କଥା ଯେ ଭାବୁ ନ ଥିଲେ ତାହା ନୁହେଁ । କିନ୍ତୁ ସେ ତାଙ୍କର ଦୃଢ଼ତା ପରିହାର କରିବାକୁ ଅନିଚ୍ଛୁକା ଥିଲେ ।

"କୈଳାସ ତାଙ୍କୁ ହତ୍ୟା କରନ୍ତୁ; ତାଙ୍କଠାରେ ସେ ଲୀନ ହେବେ ।" ଏହି ଥିଲା ତାଙ୍କର ପ୍ରତିଜ୍ଞା ।

୧୯୨୪ ମସିହାରେ ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ କଟକରେ ବସିଲା । ପ୍ରିୟ କୈଳାସଚନ୍ଦ୍ରଙ୍କ ଅନୁରୋଧରେ କୁନ୍ତଳାକୁମାରୀ ଗୋଟିଏ କବିତା ରଚନା କଲେ । ତାହାର ପ୍ରଥମ ପଦଟି ହେଲା –

"କୋଟି କୀର୍ତ୍ତି ମୁକ୍ତା–ମାଳିନୀ
କାନ୍ତି କମଳା କଳା କୁଶଳା ଶାନ୍ତି ଶାଳିନୀ ।
କୋଟି ସୁତ ସ୍ନେହଶୀଳା
କୋଟି ତୀର୍ଥ ସ୍ୱର୍ଗଲୀଳା
ରତ୍ନହାରା ଚିତ୍ରୋତ୍ପଳା
ସିନ୍ଧୁ ଧୌତା–ପୁଣ୍ୟ ବେଳା
ନୀଳାଚଳ ଚିଲିକା ପ୍ଳାବିନୀ –
ଶକ୍ତି, ମୁକ୍ତି, ଭକ୍ତିଦାନେ ଭକ୍ତ ପାଳିନୀ ।"

ଆଲାମଚାନ୍ଦବଜାର ଓ କାଜିବଜାରର ସଙ୍ଗୀତଜ୍ଞଙ୍କଦ୍ୱାରା ତାହା ଗୀତ ହୋଇଥିଲା । କୈଳାସ ନିଜେ କ୍ଲାରିନେଟ୍ ବଜାଇଥିଲେ । ତାଙ୍କ ଭାଇ ହରି ଗୀତଟି ଅଧିବେଶନରେ ଗାନ କରିଥିଲେ ।

କୁନ୍ତଳାକୁମାରୀ କ୍ରମେ କୈଳାସଚନ୍ଦ୍ରଙ୍କ ସହିତ ବିବାହପାଇଁ ବ୍ୟାକୁଳ ହୋଇ ପଡ଼ିଲେ । କୈଳାସଙ୍କ ଉଦ୍ଦେଶ୍ୟରେ କବିତାମାନ ଲେଖି ଚାଲିଥାନ୍ତି, ଯଥା –

"ସକାଳରୁ ସଞ୍ଜେ ତୁମରି ଲାଗି ମୁଁ ଅନାଇଁ ବସିଛି ପଥେ,
ଛାତି ଥର ଥରେ ଆଖି ଝର ଝରେ ଆସିଲ ଆସିଲ ସତେ !
ସାରା ପରାଣଟି ତୃଷ୍ଣାରେ ପୂରି
ସାରା ମରମଟା ହେଉଛି ଝୁରି

× × ×

ତୁଚ୍ଛାକୁ ତୁଚ୍ଛାକୁ କାନ୍ଦିବସେ ମାନେ ଜୀବନ ରହିବ ସତେ
ଏତେ ଦୁଃଖ ଯଦି ଦେବ ଭାଳିଥିଲ ବେଳୁ ନ କହିଲ ମୋତେ ?"

କୈଳାସଙ୍କୁ କିନ୍ତୁ ଏହା ଭଲ ଲାଗୁ ନ ଥିଲା । ଅତି କର୍କଶବାଣୀ ଶୁଣାଉ ଥିଲେ । ତାଙ୍କର ଭୁଲ୍ ନୁହେଁ, ସବୁ ଭୁଲ୍ ଏଇ ନାରୀର ବୋଲି ଦୋଷ ଦେଉଥିଲେ ।

୧୯୨୫ ମସିହାରେ କୁନ୍ତଳା କୁମାରୀ ରେଡ଼କ୍ରସ୍ ବିଭାଗରେ ହେଲ୍‌ଥ ଭିଜିଟର ଚାକିରିରେ ଯୋଗ ଦେଲେ । ଦରିଦ୍ର ଜନସାଧାରଣଙ୍କ ସ୍ତ୍ରୀ ପିଲାଙ୍କୁ ସାମୟିକ ଦେଖିବା ତାଙ୍କ କାର୍ଯ୍ୟ ହେଲା । ବିହାର ଓ ଓଡ଼ିଶା ସରକାର ଦରମା ଓ ପରିଚାଳନା ଖର୍ଚ୍ଚ ରେଡ଼କ୍ରସ ମାଧ୍ୟମରେ ଦେଉଥିଲେ । ବଡ଼ ବଡ଼ ସରକାରୀ ଅଫିସରମାନେ ପରିଦର୍ଶନ କରି କୁନ୍ତଳାଙ୍କ କାର୍ଯ୍ୟର ଉଚ୍ଚ ପ୍ରଶଂସା କରୁଥିଲେ ।

କୁନ୍ତଳାଙ୍କର ଆଉ ଅର୍ଥର ଅଭାବ ରହିଲା ନାହିଁ । ନିୟମିତଭାବେ ଅର୍ଥ ରୋଜଗାର ହେଲା । କର୍ମରେ ମଧ ଉଚ୍ଚ ପ୍ରଶଂସା ମିଳିଲା । କିନ୍ତୁ ପତ୍ନୀ ହେବାର ଆକାଙ୍‌କ୍ଷା ତାଙ୍କର ପୂର୍ଣ୍ଣ ହେଲା ନାହିଁ । କୈଳାସଚନ୍ଦ୍ରଙ୍କୁ କିପରି ବିବାହ କରିବେ –ଏଇ ଚିନ୍ତାରେ ସେ ଘାରି ହେଲେ । ଏପରିକି କୈଳାସଙ୍କର ବିବାହିତା ସ୍ତ୍ରୀଙ୍କର ଦାସୀ ଭାବେ ରହିବାକୁ ପ୍ରସ୍ତୁତ ହୋଇଗଲେ । ସାଧାରଣ ସ୍ତ୍ରୀମାନଙ୍କ ପରି ନିତି କାନ୍ଦି କାନ୍ଦି କଟାଇଲେ ।

ଶେଷରେ କୈଳାସଚନ୍ଦ୍ର କୁନ୍ତଳାଙ୍କୁ ବ୍ରାହ୍ମଧର୍ମ ଗ୍ରହଣ କରିବାକୁ ପରାମର୍ଶ ଦେଲେ । ହୁଏତ ସେଥିରେ କିଛି ବାଟ ମିଳିପାରେ – ଏହି ଆଶା ତାଙ୍କର ଥିଲା ।

୧୯୨୪ ମସିହାରେ କୁନ୍ତଳା କୁମାରୀ କେଶବଚନ୍ଦ୍ର ସେନଙ୍କ ପ୍ରତିଷ୍ଠିତ ବ୍ରାହ୍ମସମାଜର ସଭ୍ୟା ହେଲେ । ନଗେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କ ମଧ୍ୟସ୍ଥତାରେ ଏହି ଧର୍ମାନ୍ତର କାର୍ଯ୍ୟ ସୁରୁଖୁରୁରେ ହୋଇଗଲା । ଧର୍ମାନ୍ତର ଯୋଗୁଁ ତାଙ୍କର ବିବାହରେ ଆଉ ବାଧା ନାହିଁ ବୋଲି କୁନ୍ତଳା ଭାବିଲେ । ପୁଣି ହିନ୍ଦୁ ପରିବାରର ବୋହୂ ହୋଇପାରିବେ ଜାଣି ସେ ଆଶ୍ୱସ୍ତା ହେଲେ ।

କୁନ୍ତଳାକୁମାରୀଙ୍କ ବ୍ରାହ୍ମଧର୍ମ ଗ୍ରହଣ କିନ୍ତୁ ଖ୍ରୀଷ୍ଟିୟାନ ସମାଜ ଉଦାରଭାବେ ଗ୍ରହଣ କରିପାରି ନ ଥିଲା । ବରଂ କୁନ୍ତଳାଙ୍କ ପ୍ରତି କ୍ରୋଧାନ୍ୱିତ ହୋଇପଡ଼ିଲେ । କୁନ୍ତଳାଙ୍କ ପାଖକୁ ବେନାମି ପତ୍ର ଆସିଲା । ଏପରିକି ଘରକୁ ଟେକା ପଥର ଫିଙ୍ଗାଗଲା । ତାଙ୍କ ବିରୋଧରେ ଷଡ଼୍‌ଯନ୍ତ୍ର ହେବାର କୁନ୍ତଳା ଜାଣିପାରିଲେ ।

କୁନ୍ତଳା ସେଥିପ୍ରତି ଭ୍ରୂକ୍ଷେପ ନ କରି ଜିଲ୍ଲା କଲେକ୍ଟରଙ୍କୁ ଦରଖାସ୍ତ ଦେଲେ । ପୋଲିସ ହସ୍ତକ୍ଷେପ ଫଳରେ ଅବସ୍ଥା ସମ୍ଭଳା ପଡ଼ିଲା । କିନ୍ତୁ କେତେକ ଖ୍ରୀଷ୍ଟିୟାନ କର୍ମଚାରୀଙ୍କ ଷଡ଼୍‌ଯନ୍ତ୍ର ଫଳରେ କୈଳାସଚନ୍ଦ୍ରଙ୍କୁ କଟକ ମେଡ଼ିକାଲରୁ ବାଲେଶ୍ୱର ପୋଲିସ ହସ୍‌ପିଟାଲକୁ ବଦଳି କରାଗଲା ।

ଧର୍ମାନ୍ତର ପରେ କୁନ୍ତଳା ଦିନେ ସାହସ ବାନ୍ଧି ବାଲେଶ୍ୱର ଗଲେ ଓ କୈଳାସଙ୍କ ଘରେ ଅଚାନକ ପହଞ୍ଚିଲେ । କୈଳାସ ଏପରି ଅପ୍ରତ୍ୟାଶିତଭାବେ କୁନ୍ତଳାଙ୍କର ପହଞ୍ଚିବାଟା କଳ୍ପନା ମଧ କରି ନ ଥିଲେ । ତେବେ ସେ କୁନ୍ତଳାଙ୍କୁ

ଆଦର ସମ୍ଭାଷଣ କଲେ । ଦୁହିଁଙ୍କ ମଧ୍ୟରେ ପ୍ରୀତି ଆଳାପ ଚାଲିଥିଲାବେଳେ କୈଳାସଙ୍କ ପତ୍ନୀ ତୁଳସୀ ସେଠାରେ ପହଞ୍ଚିଗଲେ ଓ କ୍ରୋଧାନ୍ଧ ହୋଇ ଗାଳିବର୍ଷଣ କରିବାକୁ ଲାଗିଲେ । କୁନ୍ତଳା ମଧ୍ୟ କ୍ରନ୍ଦନ କରିବାକୁ ଲାଗିଲେ । କୈଳାସ ତୁଳସୀଙ୍କୁ ବହୁବାର ଗାଳି ବନ୍ଦ କରିବାକୁ କହିଲେ । ମାତ୍ର ତୁଳସୀ ନ ମାନି କଟୂକ୍ତି ପ୍ରୟୋଗ କରି ଚାଲିଲେ । କୈଳାସ ଶେଷରେ ସଂହାର ମୂର୍ତ୍ତି ଧାରଣ କରି ମାଡ଼ ଦେବାକୁ ଗୋଡ଼ାଇଲେ । ତୁଳସୀ ନିଜର ମୃତ୍ୟୁ ସନ୍ନିକଟ ଜାଣି ଧାଇଁବାକୁ ଲାଗିଲେ । ମାଡ଼ ଯେ ଖାଇଲେ, ଏଥିରେ ସନ୍ଦେହ ନାହିଁ ।

ତୁଳସୀ ଅଭିଶାପ ଦେଇଥିଲେ – "ଯେଉଁ ହାତରେ ମତେ ମାରିବାକୁ ଧାଇଁଛ, ସେହି ହାତ ଦିନେ ପଙ୍ଗୁ ହୋଇଯିବ । ମୁଁ ଖୁଆଇ ଦେବି ମୋ ହାତର ଅନ୍ନ । ସତ୍ୟ, ସତ୍ୟ, ତ୍ରିବାର ସତ୍ୟ ।"

ତୁଳସୀଙ୍କ ଅଭିଶାପ ମଧ୍ୟ ଫଳି ଥିଲା । ଶେଷ ଜୀବନରେ କୈଳାସଙ୍କ ହାତର ଶିରା ଅଚଳ ହୋଇପଡ଼ିଥିଲା । ତୁଳସୀ ଖୁଆଇ ଦେଉଥିଲେ । ତୁଳସୀଙ୍କ ମୃତ୍ୟୁ ପରେ ତାହା ଅଳ୍ପ କାର୍ଯ୍ୟକ୍ଷମ ହୋଇପାରିଥିଲା ।

କୈଳାସ ମଧ୍ୟ ଆଉ କୁନ୍ତଳାଙ୍କ ପ୍ରୀତି ନିବେଦନକୁ ଅବହେଳା କରିପାରିଲେ ନାହିଁ । ତାଙ୍କୁ କୋଳାଗ୍ରତ କରିବାପାଇଁ ପ୍ରସ୍ତୁତ ହୋଇଗଲେ । କୁନ୍ତଳା ମଧ୍ୟ ଗୋପନରେ ଲୁଚି ଲୁଚି କୈଳାସଙ୍କ ପାଖକୁ ଆସିବାକୁ ଲାଗିଲେ । ଦୁହେଁ ମନଭରି କଥାବାର୍ତ୍ତା କରିବାକୁ ଲାଗିଲେ । ତୁଳସୀଙ୍କୁ ମଧ୍ୟ କ୍ରମେ ଏହା ଅଛପା ରହିଲା ନାହିଁ ।

ଆଉ ଦିନେ କୁନ୍ତଳା ତୁଳସୀଙ୍କ ଘରେ ପହଞ୍ଚିଗଲେ ଓ ମନର ଦୁଃଖ ବେଦନା ତାଙ୍କ ଆଗେ ପ୍ରକାଶ କଲେ । ଅତୀତର ସମସ୍ତ ଘଟଣା ସ୍ପଷ୍ଟଭାବେ ଜଣାଇଲେ । ତୁଳସୀ ମଧ୍ୟ ଏହି ଗୋପନ କଥା ସବୁ ଜାଣିବାପରେ କୁନ୍ତଳାଙ୍କୁ କ୍ଷମା ଦେଲେ । ଭାବ ଗଦ୍‌ଗଦ ହୋଇ କହିଉଠିଲେ – "ତୁ ଏମିତି କଥା ମୋତେ କହି ନାହୁଁ । ଏହାର ଟିକିଏ ସୂଚନା ପାଇଥିଲେ କଥା ଏତେ ଦୂର ଯାଇ ନ ଥାନ୍ତା । ଆମେ ଦି' ଭଉଣୀ ହୋଇ ଆଜିଠୁଁ ରହିବା ।"

ନିଜ ହାତରେ ତୁଳସୀ କୁନ୍ତଳାଙ୍କ ମୁଣ୍ଡରେ ସିନ୍ଦୂର ଟୋପା ପିନ୍ଧାଇଦେଇ ବିବାହିତାର ମର୍ଯ୍ୟାଦା ଦେଲେ । କୁନ୍ତଳା ଆନନ୍ଦରେ ବିଭୋରା ହୋଇଉଠିଲେ । ତାଙ୍କର ଅଭିଳାଷ ଯେ ପୂର୍ଣ୍ଣ ହେବାକୁ ଯାଉଛି – ଏହା ଭାବିନେଲେ ।

ମାତ୍ର କିଛି ଦିନ ପରେ କୁନ୍ତଳାଙ୍କ ହୃଦୟରେ ନୈରାଶ୍ୟର ଅନ୍ଧାର ମାଡ଼ିଆସିଲା । ବ୍ରାହ୍ମ ସମାଜରେ ଯୋଗ ଦେବାପରେ ପୁରୋହିତ ନଗେନ ବାନାର୍ଜୀ ତାଙ୍କୁ

ବିବାହ ହୋଇଯିବାର ପ୍ରତିଶ୍ରୁତି ଦେଇଥିଲେ । ମାତ୍ର ସେ କୌଣସି ପଦକ୍ଷେପ ନେଲେ ନାହିଁ । କୈଳାସ ମଧ ବାଲେଶ୍ୱରରୁ ଘାଟଶିଳା ବଦଳି ହୋଇ ଗଲେ । କୈଳାସଚନ୍ଦ୍ର ଅବଶ୍ୟ ବାଲେଶ୍ୱରରେ ଥିଲାବେଳେ ସେଠାକାର ବ୍ରାହ୍ମଧର୍ମ ସହିତ ସମ୍ପର୍କ ରଖିଥିଲେ । ମାତ୍ର ସେ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇ ନ ଥିଲେ । କୁନ୍ତଳା କେତେବାର ଘାଟଶିଳା ମଧ ଗଲେ । ଶେଷରେ ଜଗନ୍ନାଥଙ୍କ ଶରଣ ପଶିଲେ ।

'ଜୀବନର ଏକ ନିଷ୍ପତ୍ତି ଜଗନ୍ନାଥେ କରିଦେବେ' – କୁନ୍ତଳା କହିଚାଲିଥାନ୍ତି । ଶେଷରେ କୁନ୍ତଳା ମୁକ୍ତିମଣ୍ଡପର ସମ୍ପାଦକ କାବ୍ୟକଣ୍ଠ ସଦାଶିବ ମିଶ୍ରଙ୍କ ପାଖକୁ ଏକ ପତ୍ର ଦେଲେ । ତାଙ୍କର ପ୍ରାର୍ଥନା ପୂର୍ଣ୍ଣ କରନ୍ତୁ ବୋଲି ଆକୁଳ ନିବେଦନ କରିଥିଲେ ।

ଜୀବନର ଏହି ଘଡ଼ିସନ୍ଧି ବେଳେ ଜଣେ ଭଦ୍ରଲୋକଙ୍କ ସହିତ କୁନ୍ତଳାଙ୍କର ସାକ୍ଷାତ୍ ହେଲା । ସେହି ଭଦ୍ରବ୍ୟକ୍ତି ଅଜଣା ଓ ଅପରିଚିତ ଥିଲେ । ତାଙ୍କ ନାମ ଥିଲା କୃଷ୍ଣପ୍ରସାଦ ବ୍ରହ୍ମଚାରୀ । ସେ ଦିଲ୍ଲୀରୁ ଆସି ତାଙ୍କ ଘରେ ଅଚାନକ ପହଞ୍ଚିଗଲେ ।

ସେଦିନ ଦ୍ୱିପ୍ରହରବେଳେ ନବାଗତ ବ୍ରହ୍ମଚାରୀଙ୍କ ସଙ୍ଗେ ବୈଦିକ ଧର୍ମ ଉପରେ ଆଲୋଚନା ହେବାର ସ୍ଥିର ହେଲା । ମାଆହେଲେ ଖାଣ୍ଟି ଖ୍ରୀଷ୍ଟିୟାନ୍ । ସେ ଏସବୁ ରୀତିନୀତି ଦେଖି ବିରକ୍ତିରେ ସୂତାହାଟସ୍ଥ ତାଙ୍କ ବନ୍ଧୁଘରକୁ ଚାଲିଗଲେ । କୈଳାସଙ୍କ ଝିଅଟି ସ୍କୁଲକୁ ପଢ଼ିବାକୁ ଚାଲିଗଲା ।

ପ୍ରଥମ ସାକ୍ଷାତରେ ହିଁ ବ୍ରହ୍ମଚାରୀଙ୍କ ବ୍ୟବହାର କୁନ୍ତଳାଙ୍କୁ ମୁଗ୍‌ଧ କଲା । ସେ ବ୍ରହ୍ମଚାରୀଙ୍କ ପ୍ରତି ଆକର୍ଷିତା ହେଲେ । ଆନନ୍ଦରେ ଅଧୀରା ହୋଇ ଗୀତ ଗାଇବାକୁ ଲାଗିଲେ –

"ପଥ ମଧରେ କୃଷ୍ଣ ଦେଖା
ଆଉ ନ ଯିବି ବୃନ୍ଦାବନେ
ଏବେ ମନମୋହନ ଶ୍ୟାମଘନ
ରାଜେ ହୃଦ–ପଦ୍ମାସନେ ।" ଇତ୍ୟାଦି

ତାଙ୍କ ମାଆ ବସାକୁ ଫେରି ଘୋର ବିରକ୍ତ ହେଲେ । ତାଙ୍କର ଏହି ସମୟର ମନ୍ତବ୍ୟ –

"ଏବେ କୁନ୍ତଳା ଭ୍ରଷ୍ଟା ହେଲା ।"

କୁନ୍ତଳା ଏହା ଶୁଣି ମଧ ନ ଶୁଣିଲା ପରି ହେଲେ । ବ୍ରହ୍ମଚାରୀ ମାସାଧିକ ସମୟ ରହି ଚାଲିଗଲେ । ସେ ନିଜକୁ ପୁରୀ ଜିଲ୍ଲାବାସୀ ଡାକ୍ତର ବୋଲି

କହିଥିଲେ । ମାତ୍ର ପରେ ତାଙ୍କ ଘର କେନ୍ଦ୍ରାପଡ଼ା ବୋଲି ଜଣାଗଲା । ସେ ମଧ୍ୟ ଅକ୍ଷୟବାବୁଙ୍କ ଦୋକାନରେ କମ୍ପାଉଣ୍ଡର ଥିବା ଜଣାପଡ଼ିଲା । କୁଳପଦବୀ 'ବ୍ରହ୍ମଚାରୀ' ନୁହେଁ, 'ଦାସ' ଥିଲା । କୁଳତ୍ୟାଗିନୀ ସ୍ତ୍ରୀଲୋକଙ୍କୁ ସଂଗ୍ରହ କରି ଦିଲ୍ଲୀରେ ବିଧବାଶ୍ରମ ନାମକ ଏକ ନାରୀ ବିକାକିଣା କେନ୍ଦ୍ରରେ ଦାଖଲ ଦେଇ ଅର୍ଥଲାଭ କରୁଥିଲେ ବୋଲି ଶୁଣାଯାଉଥିଲା ।

କୁନ୍ତଳାଙ୍କ ଜଣେ ହିତାକାଂକ୍ଷୀ ସଂସ୍କାରକ ବୈରାଗୀ ମଉସାଙ୍କୁ ବ୍ରହ୍ମଚାରୀଙ୍କ ଅସଲ ରୂପ ଅଜ୍ଞାତ ନ ଥିଲା । ସେ କହିଥିଲେ – ''ଏଟା ଅତି ଲଫଙ୍ଗା, ମୂର୍ଖ । କିଛି ଜାଣେ ନାହିଁ । ସେ ମାଇକିନିଆ କିଣାବିକା ବ୍ୟବସାୟ କରେ ।'' କୁନ୍ତଳାଙ୍କ ଭବିଷ୍ୟତ୍ ବିପଦ ମଧ୍ୟ ସେ ଆଶଙ୍କା କରିଥିଲେ –

''କୁନ୍ତଳାଙ୍କୁ ନେଇ ସେଠି କାହାକୁ ବିକିଦେବା ତା' ପକ୍ଷେ ଅସମ୍ଭବ ନୁହେଁ । କୈଳାସବାବୁ ଗଲେ ତାଙ୍କୁ ମଧ୍ୟ ବିପଦଗ୍ରସ୍ତ କରିଦେଇପାରେ...'' ।

ବୈରାଗୀବାବୁ କୈଳାସବାବୁଙ୍କୁ ମଧ୍ୟ ସବୁ କଥା ଗୋପନରେ ଜଣାଇ ଦେଇଥିଲେ ।

କୁନ୍ତଳା କିନ୍ତୁ ବୈରାଗୀଙ୍କ ଆଶଙ୍କାକୁ ଏଡ଼ାଇ ଦେଇ କହିଥିଲେ – ''ବୈରାଗୀ ମଉସାଙ୍କ କଥା ତ ସମୁଦାୟ ଆଶଙ୍କା ଭିତ୍ତିହୀନ ... ନଈ ନ ଦେଖି ଲଙ୍ଗଳା... !''

କୁନ୍ତଳା କୃଷ୍ଣସ୍ୱାମୀଙ୍କୁ ସାକ୍ଷାତ ଈଶ୍ୱରଙ୍କ ଅବତାର ବୋଲି ବର୍ଣ୍ଣନା କରୁଥିଲେ । ପାଳିତପୁତ୍ର ଚକ୍ରଧରଙ୍କ ପାଖକୁ ୧୯୨୮ ମସିହା ମେ ମାସରେ ଦେଇଥିବା ପତ୍ରରେ ଲେଖିଥିଲେ – ''ଶୁଣ ଚକ୍ରଧର ! ସେ ତୁମ୍ଭର ଗୁରୁ, ମୋର ଗୁରୁ । ଡାକ୍ତରବାବୁଙ୍କର ମଧ୍ୟ ଗୁରୁ । ଆମର ଆରାଧ୍ୟ ଶ୍ରୀକୃଷ୍ଣ । ସମୁଦାୟ ଭାରତ ବୁଲି ସେ ଯାହା ଯଶ, ଖ୍ୟାତି, କୀର୍ତ୍ତି ଓ ଜ୍ଞାନ ଅର୍ଜନ କରିଛନ୍ତି, ଭାରତୀ ତପୋବନ ପ୍ରତିଷ୍ଠା କରି ସେ ସମୁଦାୟ ଲଗେଇଦେବେ ।''

ଓଡ଼ିଶାର ବ୍ରାହ୍ମସମାଜ କୁନ୍ତଳାଙ୍କୁ କୈଳାସଙ୍କ ସହ ବିବାହପାଇଁ ସୁଯୋଗ ଦେଲେ ନାହିଁ । ଦିଲ୍ଲୀ ବ୍ରାହ୍ମସମାଜ ହୁଏତ ଏ ଦିଗରେ ସାହାଯ୍ୟ କରିପାରେ, ଏହି ଆଶାରେ କୁନ୍ତଳା ଦିଲ୍ଲୀ ଯାତ୍ରା କଲେ । ସାଥିରେ ଯିବାକୁ କୈଳାସଙ୍କୁ ଅନୁରୋଧ କଲେ; ମାତ୍ର କୈଳାସ ଏଥିରେ ରାଜି ହେଲେ ନାହିଁ । କିଛି ଦିନ ରହିବା ପରେ ମଧ୍ୟ କୁନ୍ତଳା ଓଡ଼ିଶା ଫେରିଆସିଲେ ।

କୁନ୍ତଳା ଏଥି ମଧ୍ୟରେ ଚାକିରିରୁ ଇସ୍ତଫା ଦେଇସାରିଥିଲେ । ସେ ବ୍ରହ୍ମଚାରୀଙ୍କୁ ଧରି ଘାଟଶିଳା ଗଲେ । ୧୯୨୮ ମସିହା ଜୁନ ମାସ ୮ ତାରିଖରେ ସେଠାରେ ପହଞ୍ଚିଲେ । ଡାକ୍ତର କୈଳାସ ମଧ୍ୟ ଉପଯୁକ୍ତ ଆତିଥ୍ୟ ପ୍ରଦାନ କଲେ ।

ଜୁନ୍ ୮ ତାରିଖରୁ ୩୦ ତାରିଖ ପର୍ଯ୍ୟନ୍ତ ସେମାନେ ସେଠାରେ ରହିଲେ । ଉଦ୍ଦେଶ୍ୟ କୈଳାସବାବୁଙ୍କୁ ରାଜି କରାଇ ଦିଲ୍ଲୀ ନେବାକୁ । ମାତ୍ର କୈଳାସବାବୁ ସ୍ପଷ୍ଟ ଭାବେ ଜଣାଇଲେ ଯେ କୁନ୍ତଳା ଦିଲ୍ଲୀ ଯାଆନ୍ତୁ । ସରକାର ଛୁଟି ଦେଉ ନ ଥିବା କଥା ସେ ଦର୍ଶାଇଲେ । ଦଶ ବାର ଦିନ ଭିତରେ ଛୁଟି ମଞ୍ଜୁର ହୋଇଗଲେ ସେ ଦିଲ୍ଲୀ ଯାଇ ପହଞ୍ଚିବେ ବୋଲି ପ୍ରତିଶ୍ରୁତି ଦେଲେ । ଜୁଲାଇ ପହିଲାରେ କୁନ୍ତଳା ଦିଲ୍ଲୀ ଯିବା ମଧ୍ୟ ସ୍ଥିର ହେଲା ।

ସେହି ଦିନ କୁନ୍ତଳାକୁମାରୀ ଦିଲ୍ଲୀ ଯାତ୍ରୀ ହେଲେ । ସଙ୍ଗରେ ଗଲେ ବ୍ରହ୍ମଚାରୀ । ବିଦାୟ ବେଳାରେ କୈଳାସଚନ୍ଦ୍ର ଶୀଘ୍ର ଦିଲ୍ଲୀରେ ପହଞ୍ଚିବାପାଇଁ ସେ ଅନୁରୋଧ କରିଥିଲେ । ଏହିଠାରୁ କୁନ୍ତଳା କୁମାରୀଙ୍କର ଓଡ଼ିଶା ଜୀବନର ଅନ୍ତ ହେଲା ।

## ବିବାହ

କୁନ୍ତଳା ଦିଲ୍ଲୀରେ ବିଧବାମନ୍ଦିର ପରିଚାଳକ ଜ୍ୱାଳାପ୍ରସାଦଙ୍କ ତତ୍ତ୍ୱାବଧାନରେ ରହିଲେ । ସେଠାର ପରିବେଶ କୁନ୍ତଳାଙ୍କୁ ଆନନ୍ଦ ଦେଲା । ମାତ୍ର କୈଳାସଙ୍କ ସ୍ମୃତି ଅପାସୋରା ହୋଇଥିଲା । ପତ୍ର ପରେ ପତ୍ର କୈଳାସଙ୍କ ପାଖକୁ ଦିଅନ୍ତି; ମାତ୍ର କୌଣସି ଉତ୍ତର ପାଇଲେ ନାହିଁ ।

ଦିଲ୍ଲୀରେ ରହିଲାବେଳେ ସେ ଉର୍ଦ୍ଦୁଭାଷା ଶିକ୍ଷା କଲେ । ଏଥିରେ ଜ୍ୱାଳାପ୍ରସାଦଙ୍କ ଶ୍ୱଶୁର ବିଶେଷ ସାହାଯ୍ୟ କରିଥିଲେ ।

୧୯୨୮ ମସିହା ଜୁଲାଇ ମାସ ୨୯ ତାରିଖରେ କୁନ୍ତଳାକୁମାରୀ ଆର୍ଯ୍ୟ ସମାଜଭୁକ୍ତ ହେଲେ । ଆର୍ଯ୍ୟସମାଜ ତାଙ୍କୁ ବିବାହ ଲାଗି ଅନୁମତି ଦେଲା ।

ଅନୁମତି ପାଇ କୁନ୍ତଳା ଆନନ୍ଦରେ ଅଧୀରା ହୋଇପଡ଼ିଲେ । ଏବେ ସେ କୈଳାସଙ୍କୁ ବିବାହ କରିପାରିବେ ଜାଣି ଆଶ୍ୱସ୍ତା ହେଲେ । କୈଳାସଙ୍କୁ ଏହି ସମ୍ବାଦ ମଧ୍ୟ ଦେଲେ । ବିବାହ ଲାଗି ରାଜି ହେବାକୁ ମଧ୍ୟ ଅନୁରୋଧ କଲେ । ମାତ୍ର କୌଣସି ଉତ୍ତର ପାଇଲେ ନାହିଁ । ଦୁଃଖ ବେଦନା ଜଣାଇ ପତ୍ର ପରେ ପତ୍ର ଦେଲେ । ତାର ପରେ ତାର କଲେ । ମାତ୍ର କୌଣସି ଉତ୍ତର ନ ପାଇ ବ୍ୟସ୍ତ ହୋଇପଡ଼ିଲେ । ଶେଷକୁ ବି କୈଳାସଙ୍କୁ ଆଣିବାପାଇଁ ବ୍ରହ୍ମଚାରୀଙ୍କୁ ଘାଟଶିଳା ପଠାଇଲେ ।

ଆଲୋଚକ ଚକ୍ରଧର ମହାପାତ୍ରଙ୍କ ମତରେ କୁନ୍ତଳା ଏଥି ମଧ୍ୟରେ ବ୍ରହ୍ମଚାରୀଙ୍କୁ ବିବାହ କରିବାକୁ ସ୍ଥିର କରିସାରିଥାନ୍ତି । କୈଳାସଙ୍କୁ ଶିଶୁପାଳ କରିବାକୁ ଯୋଜନା ହୋଇଥିଲା । ଏହା ଅନୁଯାୟୀ କୈଳାସବାବୁ ଦିଲ୍ଲୀରେ ଉପସ୍ଥିତ ହେବେ ।

ତାଙ୍କ ଆଗେ ବ୍ରହ୍ମଚାରୀଙ୍କୁ କୁନ୍ତଳାଙ୍କ ସଙ୍ଗେ ବିବାହ ଦେବେ । କୈଳାସ ନିରୁପାୟ ହେବେ । କିନ୍ତୁ କୈଳାସଚନ୍ଦ୍ର ଦୂରେଇ ରହିଲେ ।

ବ୍ରହ୍ମଚାରୀ ଘାଟଶିଳା ଗଲେ । ସେଠାରେ ଅନୁସନ୍ଧାନ ଚଳାଇଲେ । କୁନ୍ତଳାଙ୍କୁ କୈଳାସଙ୍କ ବ୍ୟତୀତ ଅନ୍ୟ କେହି ବିବାହ କଲେ ଅସୁବିଧାର ସମ୍ମୁଖୀନ ହେବେ ବୋଲି ସେ ଜାଣିପାରିଲେ । କୈଳାସ ଅବଶ୍ୟ ତାଙ୍କୁ ଖୋଲି କୌଣସି କଥା କହିଲେ ନାହିଁ । ବ୍ରହ୍ମଚାରୀ ଦିଲ୍ଲୀ ଫେରିଆସିଲେ ।

କୁନ୍ତଳା ଭଗବାନ୍‌ଙ୍କଠାରେ ଆତ୍ମସମର୍ପଣ କରି ଏକ ଘଣ୍ଟା ସମୟ ନେଇ ବ୍ରହ୍ମଚାରୀଙ୍କ ସହ ବିବାହପାଇଁ ସମ୍ମତି ଦେଲେ । ହିନ୍ଦୁ କନ୍ୟା ଭଳି ହଳଦିଠୁଁ ଆରମ୍ଭ କରି ଆୟ ଅଳଙ୍କାର ପର୍ଯ୍ୟନ୍ତ ଲଗାଇଲେ । ସମସ୍ତ କ୍ରିୟାକର୍ମ ହେଲା । ଅଗଷ୍ଟ ମାସ ୯ ତାରିଖରେ ବୈଦିକ ରୀତିରେ ସର୍ବ ଶୁଭରେ ବିବାହ ହୋଇଗଲା ।

ପାଳିତପୁତ୍ର ଚକ୍ରଧରଙ୍କୁ ଏକ ପତ୍ରରେ କୁନ୍ତଳା ଜଣାଇଲେ – ''ଡାକ୍ତରବାବୁ ଶେଷ ପର୍ଯ୍ୟନ୍ତ ମୋତେ ଠକାଇଲେ, ନିର୍ଯାତନା ଦେଲେ । ଶେଷକୁ ଫେରିଆସ ବୋଲି ଲେଖିଲେ ।''

ପୁଣି ଲେଖିଥିଲେ – ''ଭଗବାନ୍ ମୋତେ ବୈଦିକ ବ୍ରାହ୍ମଣୀ କରାଇ ବୈଦିକ ବ୍ରାହ୍ମଣ ବ୍ରହ୍ମଚାରୀଙ୍କୁ ମୋର ପତିରୂପେ ଧର୍ମାନୁସାରେ ଦାନ କଲେ । ସମଗ୍ର ଜଗତ୍ ଚରାଚର ଓ ପରମାତ୍ମାଙ୍କ ସାକ୍ଷାତରେ ଆମେ ଉଭୟେ ଧର୍ମତଃ ପତିପତ୍ନୀ । ଏପରି ପ୍ରେମ, ଏପରି ଆନନ୍ଦ, ଏପରି ଜୀବନର ପୂର୍ଣ୍ଣତ୍ୱ ମୁଁ ଜାଣି ନ ଥିଲି । ଏ ମୋର ବହୁ ଜନ୍ମଜନ୍ମାନ୍ତରର ପୁଣ୍ୟଫଳ ।''

ଡାକ୍ତର କୈଳାସଚନ୍ଦ୍ର ମଧ୍ୟ ଘାଟଶିଳାରୁ ଅଗଷ୍ଟ ମାସ ୧୨ ତାରିଖରେ ଚକ୍ରଧରଙ୍କ ପାଖକୁ ନିଜର ପ୍ରତିକ୍ରିୟା ଜଣାଇଲେ – ''ତୁମର କର୍ଣ୍ଣ ଯଦି ବଧିର ନ ହୁଏ, ଚକ୍ଷୁ ଅନ୍ଧ ନ ହୁଏ, ମସ୍ତିଷ୍କ ଯଦି ବିକୃତ ନ ହୁଏ, ତା'ହେଲେ ଗୋଟାଏ ସମ୍ବାଦ ଜଣାଇବି । ତୁମର ମାତା (କୁନ୍ତଳା କୁମାରୀ) ଡଃ ବ୍ରହ୍ମଚାରୀଙ୍କୁ ବିବାହ କରିଛନ୍ତି । ବିବାହ ଗତ ୯ ତାରିଖ ଦିନ ସମ୍ପନ୍ନ ହୋଇଅଛି ।''

ପୁଣି ଲେଖିଥିଲେ – ''ଶୁଣ, ସେମାନେ ମୋ ସହିତ ଶତ୍ରୁତା କଲେ; କିନ୍ତୁ ଦୁହିଁଙ୍କ ଉପରେ ଆଦୌ ରାଗ କିମ୍ବା ଈର୍ଷା ନାହିଁ । ଖାଣ୍ଟି ପ୍ରେମରେ ଦ୍ୱେଷ, ଈର୍ଷାର ସ୍ଥାନ ନାହିଁ । ଦିନ ଆସିବ, ଯେତେବେଳେ ଶ୍ରୀମତୀ ଆମ ଦୁହିଁଙ୍କର ତାରତମ୍ୟ ବୁଝିପାରିବେ । ସମସ୍ତ ଭାର ଭଗବାନ୍‌ଙ୍କ ହାତରେ ଦେଇ ଏଠାରେ ସ୍ଥିର ନିର୍ବାକ୍ ହୋଇ ବସିଅଛି ।''

କୁନ୍ତଳା ଅବଶ୍ୟ ଆଦ୍ୟ ଜୀବନର ପ୍ରଣୟକୁ ଭୁଲିପାରି ନ ଥିଲେ । ସହଯୋଗୀ ହୋଇ ରହିବାକୁ ସେ ପୁଣି କୈଳାସଙ୍କୁ ଅନୁରୋଧ କରି ପତ୍ର ଦେଇଥିଲେ । ମାତ୍ର କୈଳାସଚନ୍ଦ୍ର ତାଙ୍କର ମନୋଗତ ଭାବ ଚକ୍ରଧରଙ୍କ ଜରିଆରେ କୁନ୍ତଳାଙ୍କୁ ଜଣାଇ ଦେଇଥିଲେ – "ଆଉ ମୋର ପୂର୍ବର ଅକୃତ୍ରିମ ସ୍ନେହ ସମ୍ଭବପର ନୁହେଁ । ସେଥିପାଇଁ ପୃଥକ୍ ଓ ମୌନ ରହିବାକୁ ଚାହେଁ ।"

## ଦିଲ୍ଲୀ ଜୀବନ

କୁନ୍ତଳା ଡାକ୍ତରୀ ଚିକିତ୍ସା ଖୁବ୍ ନିଷ୍ଠାର ସହିତ ଚଳାଇଲେ । ତାଙ୍କର ଉତ୍ତମ ଓ ଆନ୍ତରିକ ପୂର୍ଣ୍ଣ ବ୍ୟବହାର ତାଙ୍କୁ ସୁନାମ ଆଣିଦେଲା । ବିଭିନ୍ନ ସ୍ଥାନରୁ ରୋଗୀମାନେ ଚିକିତ୍ସାପାଇଁ ଆସୁଥିଲେ । ତେଣୁ ଅର୍ଥର ଅଭାବ ତାଙ୍କର ନ ଥିଲା । ବରଂ ପ୍ରାଚୁର୍ଯ୍ୟ ଭିତରେ ଜୀବନ ଅତିବାହିତ କଲେ ।

କୁନ୍ତଳା ଡାକ୍ତରୀ ଚିକିତ୍ସାରେ ଖ୍ୟାତି ଲାଭ କଲେ । ସାହିତ୍ୟ ସାଧନାପାଇଁ ତେଣୁ ତାଙ୍କୁ ସମୟ ମିଳୁ ନ ଥାଏ । ତଥାପି ସମୟ ମିଳିଲେ ସାହିତ୍ୟ ପୁସ୍ତକମାନ ପଢୁଥିଲେ ଓ ଲେଖାଲେଖି କରୁଥିଲେ । ସ୍ୱାମୀ ବ୍ରହ୍ମଚାରୀ କିନ୍ତୁ ସାହିତ୍ୟ ସାଧନା ପରିବର୍ତ୍ତେ ରୋଜଗାରରେ ମନୋନିବେଶ କରିବାକୁ କହୁଥିଲେ । ଏପରିକି ସାହିତ୍ୟ ସାଧନା ବନ୍ଦ କରିଦେବାକୁ କହୁଥିଲେ । ସ୍ୱାମୀ ଯେ ସାହିତ୍ୟ ପ୍ରତି ଏଡ଼େ ଅନାସକ୍ତ, ତାହାର ସୂଚନା କୁନ୍ତଳା ଆଗରୁ ପାଇ ନ ଥିଲେ । ସେ ମନେ ମନେ ଆଘାତ ପାଇଲେ ମଧ୍ୟ ମୁହଁ ଖୋଲି ପ୍ରତିବାଦ କରି ନ ଥିଲେ । ବ୍ରହ୍ମଚାରୀ ତାଙ୍କୁ ବିବାହ କରି ମାନସିକ ଶାନ୍ତି ଦେଇଥିଲେ । ପୁଣି ମାତୃତ୍ୱ ଗୌରବ ମଧ୍ୟ ଦେଲେ । ପ୍ରବାସରେ ଖ୍ୟାତି ଲାଭ ଦିଗରେ ବ୍ରହ୍ମଚାରୀ ହେଳା କରୁ ନ ଥାନ୍ତି । ତେଣୁ ବ୍ରହ୍ମଚାରୀଙ୍କ ନିର୍ଦ୍ଦେଶକୁ ସେ ଅମାନ୍ୟ କରିବେ କିପରି ? ତେଣୁ ସ୍ୱାମୀଙ୍କୁ ଖୁସି କରିବାପାଇଁ ସାହିତ୍ୟ ସାଧନାପାଇଁ ସେପରି ଗୁରୁତ୍ୱ ଦେଲେ ନାହିଁ । ବସ୍ତୁତଃ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କ ଲାଗି 'ପ୍ରେମ ଚିନ୍ତାମଣି' ରଚନା ପରେ କୁନ୍ତଳା ଓଡ଼ିଆ ସାହିତ୍ୟ ସହିତ ସେପରି ସମ୍ପର୍କ ରଖି ନ ଥିଲେ ।

ଓଡ଼ିଶାଠାରୁ ଘଟଣାକ୍ରମେ ଦୂରେଇଗଲେ ମଧ୍ୟ ଓଡ଼ିଶାକୁ ସେ ଭୁଲିପାରି ନ ଥିଲେ । ଓଡ଼ିଆ ଜୀବନ, ଚାଲିଚଳଣ, ସାମାଜିକ ଜୀବନ ଓ ପର୍ବପର୍ବାଣି ତାଙ୍କ ଆଖି ଆଗରେ ନାଚୁଥିଲା । ଓଡ଼ିଶାର ପ୍ରାକୃତିକ ସୌନ୍ଦର୍ଯ୍ୟ ମନେପଡ଼ିଲେ ସେ ପୁଲକିତ ହୋଇଉଠୁଥିଲେ । ଦିଲ୍ଲୀରୁ ଚାଲିଆସିବାପାଇଁ ବାରମ୍ବାର ପରିକଳ୍ପନା କଲେ ମଧ୍ୟ ତାହା ସମ୍ଭବ ହେଉ ନ ଥିଲା । ସ୍ୱାମୀଙ୍କ ବିନା ଅନୁମତିରେ ସେ ଦିଲ୍ଲୀ ଛାଡ଼ିବାପାଇଁ ତାଙ୍କର ସାହସ ନ ଥିଲା । ଦିଲ୍ଲୀରେ ଥାଇ ଆତ୍ମୀୟସ୍ୱଜନମାନଙ୍କ ପାଖକୁ ପତ୍ର ଲେଖୁଥିଲେ । ତାଙ୍କଠାରୁ ପତ୍ର ପାଇଲେ ସେ ଆନନ୍ଦରେ ବିଭୋର ହୋଇପଡୁଥିଲେ ।

ଦିଲ୍ଲୀରେ ଥିଲାବେଳେ କୁନ୍ତଳା ନିୟମିତ ଓଡ଼ିଆ ପତ୍ରପତ୍ରିକା ମଗାଉଥିଲେ ଓ ନିୟମିତଭାବେ ପଢୁଥିଲେ । ଡାକ୍ତରି ଚିକିତ୍ସା କାର୍ଯ୍ୟ ଓ ଘରୋଇ ଜଞ୍ଜାଳ ମଧ୍ୟରେ ରାତିରେ ମଧ୍ୟ ଓଡ଼ିଆ ପତ୍ରିକା, ସମ୍ବାଦପତ୍ରମାନ ପଢୁଥିଲେ । ଓଡ଼ିଶାର ସମସ୍ୟା ସମ୍ପର୍କରେ ଅବଗତ ହେଉଥିଲେ ।

ଦିଲ୍ଲୀରେ କୁନ୍ତଳା ମଧ୍ୟ 'ଭାରତୀ ତପୋବନ' ନାମକ ଏକ ସଂଗଠନ ଗଢ଼ିବା ଦିଗରେ ଲାଗିପଡ଼ିଲେ । ଓଡ଼ିଆ ସାହିତ୍ୟର ବିକାଶ ଏହାର ଲକ୍ଷ୍ୟ ଥିଲା । ଓଡ଼ିଆ ଲେଖକମାନେ କିପରି ସଂଘବଦ୍ଧ ହୋଇ କାର୍ଯ୍ୟ କରିବେ, ସେ ଦିଗରେ ସେ ଚେଷ୍ଟିତ ଥିଲେ । ଓଡ଼ିଆ ଭାଷାରେ ଅପ୍ରକାଶିତ ପାଣ୍ଡୁଲିପିମାନ ପ୍ରକାଶ କରାଇବା ଏହାର ଅନ୍ୟତମ ଲକ୍ଷ୍ୟ ଥିଲା । 'ଭାରତୀ ତପୋବନ' ମାଧ୍ୟମରେ ସେ ଭଲ ଭଲ ପାଣ୍ଡୁଲିପିମାନ ପ୍ରକାଶର ବ୍ୟବସ୍ଥା କରିଥିଲେ । ଓଡ଼ିଶାର କଳା ଓ ଭାସ୍କର୍ଯ୍ୟ କିପରି ଆନ୍ତର୍ଜାତିକ ସ୍ତରରେ ମର୍ଯ୍ୟାଦା ଲାଭ କରିବ, ସେ ଦିଗରେ ମଧ୍ୟ ସେ କେତେକ ପଦକ୍ଷେପ ନେଇଥିଲେ ।

ଦିଲ୍ଲୀର ପରିବେଶ କିନ୍ତୁ କୁନ୍ତଳାଙ୍କୁ ଗୋଟାଏ ଭାଷାରେ ସୀମାବଦ୍ଧ କରିପାରିଲା ନାହିଁ । ସେ ହିନ୍ଦୀ ସାହିତ୍ୟ ପ୍ରତି ଆକୃଷ୍ଟ ହେଲେ । ସେ ହିନ୍ଦୀ ଶିକ୍ଷା କଲେ ଓ ଅଳ୍ପ ଦିନରେ ହିନ୍ଦୀ ଭାଷାକୁ ଆୟତ୍ତ କରିନେଲେ । ସେ ଏକ ପତ୍ରରେ ଚକ୍ରଧରଙ୍କ ପାଖକୁ ଲେଖିଥିଲେ – ''ମୁଁ ବର୍ତ୍ତମାନ ହିନ୍ଦୀରେ ଭଲ ଲେଖିପାରେ, ପଢ଼ିପାରେ, ବକ୍ତୃତା ଦେଇପାରେ । ମୋଟ କଥା, ତାକୁ ମାତୃଭାଷା ଭଳି ଆୟତ୍ତ କରିସାରିଲିଣି । ଅତଏବ ବର୍ତ୍ତମାନ ଉତ୍କଳ ସାହିତ୍ୟକୁ ଭାରତରେ ପରିଚିତ କରାଇବାର ସୁଯୋଗ କିପାଁ ଛାଡ଼ିବି ?''

ହିନ୍ଦୀ ସାହିତ୍ୟ ପ୍ରତି ତାଙ୍କର ଆସକ୍ତି ଯୋଗୁଁ କୁନ୍ତଳା ହିନ୍ଦୀ ସାହିତ୍ୟସଭାର ଉପସଭାପତି ହୋଇଥିଲେ । ପରେ ହିନ୍ଦୀ ନାଟ୍ୟ ପରିଷଦର ସଭାପତି ଆସନ ଅଳଂକୃତ କରିଥିଲେ । କୁନ୍ତଳା ହିନ୍ଦୀ ସାହିତ୍ୟରେ ଏପରି ନୈପୁଣ୍ୟ ଲାଭ କଲେ ଯେ ସେ 'ସ୍ତ୍ରୀ ଭୂଷଣ' ନାମକ ହିନ୍ଦୀ ପତ୍ରିକାର ସମ୍ପାଦନା ଦାୟିତ୍ୱ ତୁଲାଇଲେ । 'ଜୀବନ', 'ମାନମୌଜି', 'ନାରୀ' ଓ 'ଭାରତୀ' ପ୍ରଭୃତି କେତୋଟି ହିନ୍ଦୀ ପତ୍ରିକାର ସାମୟିକ ଭାବରେ ସମ୍ପାଦନା କରୁଥିଲେ । କୁନ୍ତଳା ମଧ୍ୟ ଓଡ଼ିଆ ସାହିତ୍ୟ ସମ୍ପର୍କରେ ଏକ ପ୍ରବନ୍ଧ ହିନ୍ଦୀ ପତ୍ରିକାରେ ପ୍ରକାଶ କରିବାପାଇଁ ଉଦ୍ୟମ କରିଥିଲେ । ସେହି ପ୍ରବନ୍ଧ ରଚନାପାଇଁ ସେ ଓଡ଼ିଶାର ଶିକ୍ଷାବିତ୍‌ମାନଙ୍କୁ ଅନୁରୋଧ କରିଥିଲେ । ୧୯୩୭ ମସିହାରେ 'ବୀରଶ୍ରୀ' ଓଡ଼ିଆ କବିତାକୁ ହିନ୍ଦୀ ଲିପିରେ ମୁଦ୍ରଣ କରିଥିଲେ ।

## ଯଶ ଗୌରବ

କ୍ରମେ କୁନ୍ତଳା ଜଣେ ଅସାଧାରଣ ନାରୀ ଭାବେ ପ୍ରତିଷ୍ଠା ପାଇଲେ । ଏଲ୍ଲାବାଦ ବିଶ୍ୱବିଦ୍ୟାଳୟ ଓ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟ ପ୍ରଭୃତି ଉଚ୍ଚ ଶିକ୍ଷାନୁଷ୍ଠାନମାନଙ୍କରେ ବିଶିଷ୍ଟ ଅତିଥିଭାବେ ଯୋଗ ଦେବାର ଗୌରବ ଅର୍ଜନ କଲେ । ବହୁ ହିନ୍ଦୀ ଭାଷାଭାଷୀ ଶିକ୍ଷାନୁଷ୍ଠାନମାନଙ୍କରେ ପୁରସ୍କାର ବିତରଣ ଉତ୍ସବରେ ସେ ଯୋଗ ଦେଲେ । ୧୯୨୧ ମସିହାରେ କୁନ୍ତଳା ବୃନ୍ଦାବନ ଗୁରୁକୁଳ ବିଶ୍ୱବିଦ୍ୟାଳୟର ଉପାଧି ବିତରଣ ଉତ୍ସବରେ ଯୋଗ ଦେଇ ଉପାଧି ବିତରଣ କରିଥିଲେ । ୧୯୩୦ ମସିହାରେ ନିଖିଳ ଭାରତ ଯୁବସଂଘର ସଭାପତି ହେଲେ । ଏପରି ଗୌରବ ପୂର୍ବରୁ କୌଣସି ଓଡ଼ିଆ ନାରୀ ପାଇ ନ ଥିଲେ । ୧୯୩୧ ମସିହାରେ ବାଲେଶ୍ୱରଠାରେ ହୋଇଥିବା ରାଜ୍ୟସ୍ତରୀୟ ମହିଳା ଅଧିବେଶନରେ କୁନ୍ତଳା ସଭାପତିତ୍ୱ କରିଥିଲେ । ବିଭିନ୍ନ ପ୍ରାନ୍ତରୁ ମହିଳାମାନେ ସେଠାକୁ ଆସିଥିଲେ । କୁନ୍ତଳା ତାଙ୍କ ଭାଷଣରେ ନାରୀ ସମାଜର ସମସ୍ୟା ଓ ସମାଧାନ ଉପରେ ସାରଗର୍ଭକ ଭାଷଣ ଦେଇଥିଲେ । ତାହା ମଧ୍ୟ ସମସ୍ତଙ୍କ ମନଛୁଆଁ ହୋଇପାରିଥିଲା । ୧୯୩୨ ମସିହା ଫେବୃଆରୀ ମାସରେ ଆର୍ଯ୍ୟ ମହିଳା ମହାସମ୍ମିଳନୀରେ ସେ ଅଧ୍ୟକ୍ଷତା କରିଥିଲେ । ୧୯୩୫ ମସିହାରେ ଆଲିଗଡ଼ଠାରେ ଗଢ଼ା ହୋଇଥିବା ଷ୍ଟୁଡେଣ୍ଟସ୍ ଫେଡେରେସନ୍ ସଙ୍ଗଠନର ସେ ହେଲେ ସଭାନେତ୍ରୀ । ୧୯୩୭ ମସିହାରେ ଗ୍ୱାଲିୟର୍‌ର ଝାନ୍‌ସୀରାଣୀ ଲକ୍ଷ୍ମୀବାଈଙ୍କ ଉତ୍ସବ ପାଳିତ ହୋଇଥିଲା । ସେ ସଭାପତି ଆସନ ଅଳଂକୃତ କରିଥିଲେ । ଶାରଦା ଆଇନ ପ୍ରଣେତା ହରପ୍ରସାଦ ଶାରଦା ହିନ୍ଦୁ ଆଇନକୁ ବାସ୍ତବ ରୂପ ଦେବାପାଇଁ ଲାଗିପଡ଼ିଥିଲେ । ଏଥିପାଇଁ ଗଢ଼ା ଯାଇଥିବା କମିଟିରେ କୁନ୍ତଳା ଅଧ୍ୟକ୍ଷାଭାବେ ମନୋନୀତା ହୋଇଥିଲେ । ଏ ପଦବୀ ଯୋଗୁଁ ତାଙ୍କର ଖ୍ୟାତି ଆହୁରି ବଢ଼ିଗଲା । ଏଥିପାଇଁ ତାଙ୍କୁ ପଞ୍ଜାବ, ଦିଲ୍ଲୀ ପ୍ରଭୃତି ଗସ୍ତ କରିବାକୁ ପଡ଼ିଲା । ଏଥିପାଇଁ ବିଭିନ୍ନ ଅଞ୍ଚଳରେ ମହିଳା ସଂଗଠନ ପକ୍ଷରୁ ସେ ସମ୍ବର୍ଦ୍ଧିତ ହେଉଥିଲେ । ୧୯୪୧ ମସିହାରେ କୁନ୍ତଳା ରାଜ୍ୟସ୍ତରୀୟ ଉତ୍କଳ ମହିଳା ସଭାନେତ୍ରୀ ହେବାର ଗୌରବ ଅର୍ଜନ କରିଥିଲେ ।

ପୁରୀର ବିଖ୍ୟାତ 'ମୁକ୍ତିମଣ୍ଡପ ପଣ୍ଡିତ ପରିଷଦ' ସେତେବେଳେ କୁନ୍ତଳାଙ୍କ କାବ୍ୟପ୍ରତିଭାକୁ ଭୂରି ଭୂରି ପ୍ରଶଂସା କରୁଥିଲେ । ସେଠାର 'ମହିଳାବନ୍ଧୁ ସମିତି' କୁନ୍ତଳାଙ୍କୁ 'ଉତ୍କଳ ଭାରତୀ' ଉପାଧିରେ ଭୂଷିତ କରିଥିଲେ ।

## ହାହାକାରମୟ ଜୀବନ

କୁନ୍ତଳା କିନ୍ତୁ ବିବାହ ପରେ ସୁଖୀ ହୋଇପାରି ନ ଥିଲେ । ଏକେ ତ ତାଙ୍କର ସ୍ୱାମୀ ତଥା ଜୀବନସାଥୀ ହେବାର ଯୋଗ୍ୟତା ବ୍ରହ୍ମଚାରୀଙ୍କର ନ ଥିଲା । ସମାଜରେ ବି ତାଙ୍କର ପ୍ରତିଷ୍ଠା ନ ଥିଲା । ଶିକ୍ଷାଗତ ଯୋଗ୍ୟତାର ଘୋର ଅଭାବ ଥିଲା । ବ୍ରହ୍ମଚାରୀ ମଧ୍ୟ ପର୍ଦ୍ଦା ପ୍ରଥା ଗ୍ରହଣ କରିବାକୁ ଆଗ୍ରହୀ ଥିଲେ । ଏପରିକି କୁନ୍ତଳା ପୁରୁଷମାନଙ୍କ ସହିତ ମିଳାମିଶାର ପକ୍ଷପାତୀ ନ ଥିଲେ । ଡାକ୍ତରାଣୀ ପୁଣି ଗୃହିଣୀ ଭାବରେ ଚଳିବେ – ଏହା କୁନ୍ତଳାକୁମାରୀଙ୍କୁ ବିବ୍ରତ କରିବା ସ୍ୱାଭାବିକ ।

ବ୍ରହ୍ମଚାରୀ ସମ୍ଭବତଃ କୁନ୍ତଳାଙ୍କ ଚରିତ୍ରକୁ ସନ୍ଦେହ କରୁଥିଲେ ।

ଦିଲ୍ଲୀରେ ବ୍ରହ୍ମଚାରୀଙ୍କ ଉଦ୍ୟମରେ ଭାରତୀ ମେଡ଼ିକାଲ ହଲ୍ ନାମରେ ଏକ ପ୍ରତିଷ୍ଠାନ ଖୋଲାଗଲା । ସୁନା ରୁପା ଦେଣନେଣ, ଔଷଧ କାରବାର ଓ ଅନ୍ୟାନ୍ୟ ଆସବାବପତ୍ରର ବ୍ୟବସାୟ ଏହି ପ୍ରତିଷ୍ଠାନ କରୁଥିଲା । ଏହି ପ୍ରତିଷ୍ଠାନପାଇଁ କୁନ୍ତଳାଙ୍କଠାରୁ ବ୍ରହ୍ମଚାରୀ ହଜାର ହଜାର ଟଙ୍କା ନେଉଥିଲେ । ମାତ୍ର ସବୁ ପାଣିରେ ପଡୁଥିଲା । ଥରେ ଜଣେ ଶଠ–ସୁନା ବ୍ୟବସାୟୀ ସହ ମିଳିତ ହୋଇ କିଛି ସୁନା କ୍ରୟ କଲେ । ଏହି ସୁନା ବିକ୍ରୟ କରି ଦଶ ହଜାର ଟଙ୍କା ଆୟ କରିପାରିବେ ବୋଲି ସେହି ବ୍ୟବସାୟୀ ତାଙ୍କୁ ଧାରଣା ଦେଇଥିଲେ । ମାତ୍ର ଶେଷରେ ବ୍ରହ୍ମଚାରୀଙ୍କୁ କ୍ଷତି ସହିବାକୁ ପଡ଼ିଲା । ଠକ ବ୍ୟବସାୟୀ ଜଣକ ମଧ୍ୟ ମୋକଦ୍ଦମା ରୁଜୁ କଲେ । ସେତେବେଳକୁ 'ଭାରତୀ ମେଡ଼ିକାଲ ହଲ୍' ପରିବର୍ତ୍ତିତ ହୋଇ 'କୁନ୍ତଳା ବ୍ରହ୍ମଚାରୀ ଇଣ୍ଡିଆ ଲିମିଟେଡ୍' ଭାବରେ ନାମିତ ହୋଇଥାଏ । ଏହି ଅନୁଷ୍ଠାନକୁ ପକ୍ଷଭୁକ୍ତ କରାଗଲା । ଏକତରଫା ଫଏସଲା ହେଲା, "କୁନ୍ତଳା ବ୍ରହ୍ମଚାରୀ ଇଣ୍ଡିଆ ଲିମିଟେଡ୍‌କୁ ଦଶ ହଜାର ଟଙ୍କା ଦେବାକୁ ପଡ଼ିଲା । ବାଧ୍ୟ ହୋଇ କୁନ୍ତଳା ଦଶ ହଜାର ଟଙ୍କା ଦେବାରେ ବ୍ରହ୍ମଚାରୀ ମୋକଦ୍ଦମାରୁ ଖଲାସ ହେଲେ ।"

ବ୍ରହ୍ମଚାରୀ ମଧ୍ୟ ସି.ଏସ୍.ଭଣ୍ଡାରି ନାମକ ଜଣେ ଚିହ୍ନା ବ୍ୟକ୍ତିଙ୍କ ପରାମର୍ଶରେ ଗୋଟିଏ ପ୍ରେସ କ୍ରୟ କରିବାକୁ ମନ ବଳାଇଲେ । ଟଙ୍କା ଧାର ଆଣିବାକୁ ଭଣ୍ଡାରି ବ୍ୟବସ୍ଥା କରିଦେଲେ । ପ୍ରେସର ମୂଲ୍ୟ ଦଶଟି କିସ୍ତିରେ ଦେବାର ସ୍ଥିର ହେଲା । ପ୍ରତି କିସ୍ତିରେ ୫ହଜାର ଟଙ୍କା ଦେବାକୁ ଚୁକ୍ତି ହେଲା । ବ୍ରହ୍ମଚାରୀ ଏହାର ଦାୟିତ୍ୱରେ ରହିଲେ । ପ୍ରଥମ କିସ୍ତିପାଇଁ ୫ହଜାର ଟଙ୍କା କମ୍ପାନୀକୁ ଦେବା କଥା । ପୁଣି ପ୍ରେସ ଚାଲିବାପାଇଁ ଆଉ ୫ହଜାର ଟଙ୍କା ଆବଶ୍ୟକ ହେଲା । ବ୍ରହ୍ମଚାରୀ କୁନ୍ତଳାଙ୍କୁ ମାଗିଲେ । କୁନ୍ତଳା ମଧ୍ୟ କାଳବିଳମ୍ୱ ନ କରି ଟଙ୍କା ଦେବାରେ ପ୍ରେସ ଚାଲିଲା ।

ପ୍ରଥମେ ପ୍ରଥମେ ପ୍ରେସଟି ଭଲ ଚାଲିଲା । କିଛି ଅର୍ଥ ମଧ୍ୟ ଆସିଲା । ଲାଭାଂଶରୁ 'ମହାବୀର' ନାମକ ସାପ୍ତାହିକ ଇଂରାଜୀ ପତ୍ରିକା ପ୍ରକାଶିତ ହେଲା ।

କୁନ୍ତଳା ଏହାର ସମ୍ପାଦନା ଦାୟିତ୍ୱ ତୁଲାଇଲେ । ଏହାର ମଧ୍ୟ କାଟତି ହେଲା । କିନ୍ତୁ ବ୍ରହ୍ମଚାରୀ ନିଜର ନାମ ନେବାପାଇଁ ଆଗ୍ରହୀ ହେଲେ । ତେଣୁ ସମ୍ପାଦକ ସ୍ଥାନରେ ନିଜର ନାମକୁ ରଖିଲେ । କୁନ୍ତଳା କ୍ରମେ ସମ୍ପାଦନାରୁ ଦୂରେଇଗଲେ । ବ୍ରହ୍ମଚାରୀଙ୍କ ସଂପୂର୍ଣ୍ଣ ତତ୍ତ୍ୱାବଧାନରେ ସମ୍ବାଦପତ୍ରଟି ପ୍ରକାଶିତ ହେଲା । କିନ୍ତୁ ସେ ତ ଯୋଗ୍ୟବ୍ୟକ୍ତି ନ ଥିଲେ । ଫଳରେ ସମ୍ବାଦପତ୍ରଟି ଲୋକପ୍ରିୟତା ହରାଇଲା । ସମ୍ପାଦକୀୟ ସ୍ତମ୍ଭରେ ଗୋଟିଏ କପୋଳକଳ୍ପିତ ଘଟଣା ପ୍ରକାଶ ପାଇଲା । ଫଳରେ 'ମହାବୀର' ନାମରେ ମୋକଦ୍ଦମା ହେଲା । ଠିକ୍ ସମୟରେ ଚୁକ୍ତି ଟଙ୍କା ପୈଠ ନ ହେବା ଫଳରେ ତା' ତରଫରୁ ବ୍ରହ୍ମଚାରୀଙ୍କ ନାମରେ ଆଉ ଏକ ମୋକଦ୍ଦମା ହେଲା । ଘରେ ନୋଟିସ ଆସି ପହଞ୍ଚିଲା । କୁନ୍ତଳା ବିଚଳିତା ହୋଇପଡ଼ିଲେ । ନିଜେ ପ୍ରେସକୁ ଗଲେ ଓ ତାଲାଟିଏ ପକାଇଦେଇ ଫେରିଲେ । ଦୁଇଟିଯାକ ମୋକଦ୍ଦମାରେ ବ୍ରହ୍ମଚାରୀ ଦୋଷୀ ସାବ୍ୟସ୍ତ ହେଲେ । ୪୦ହଜାର ଟଙ୍କା ବ୍ରହ୍ମଚାରୀଙ୍କଠାରୁ ପାଇବାପାଇଁ କୋର୍ଟ ରାୟ ଦେଲେ । ବ୍ରହ୍ମଚାରୀଙ୍କର କୌଣସି ସମ୍ପତ୍ତିବାଡ଼ି ନ ଥିଲା । ଘର ବି ନ ଥିଲା । ଆର୍ଯ୍ୟସମାଜ ଘରେ କୁନ୍ତଳା ଓ ବ୍ରହ୍ମଚାରୀ ରହୁଥିଲେ । ଶେଷରେ ଅଚଳ ପ୍ରେସଟିକୁ କମ୍ପାନୀ ସେଠାରୁ ଉଠାଇନେଲେ ।

କୁନ୍ତଳା ଏକ ପତ୍ରରେ ପାଳିତ ପୁତ୍ରଙ୍କ ପାଖକୁ ଦୁଃଖରେ ଲେଖିଥିଲେ – ''ଆଜି ହୃଦୟର ଅନ୍ତସ୍ତଳରୁ ଏକପ୍ରକାର କରୁଣ ଆର୍ତ୍ତନାଦ ଉଠୁଛି । ଏହା ବନ୍ଦୀତ୍ୱର ବିଷମ ହାହାକାର । ଅଧିକ କ'ଣ ଲେଖିବି, ବ୍ରହ୍ମଚାରୀ ତ ଜାଣ ଅସାହିତ୍ୟିକ । ସେ ବ୍ୟବସାୟୀ । ସାହିତ୍ୟର କ୍ଷତି, ବୃଦ୍ଧି, ଲାଭ, ଲୋକସାନ ବୁଝନ୍ତି ନାହିଁ । ତାଙ୍କର ଇଚ୍ଛା ଯାହା ପଇସା ସଂଗ୍ରହ କରି ନ ପାରିବ, ସେ ମୋତେ ସେଥିରେ ଆଉ ଲଗାଇବେ ନାହିଁ । ତେଣୁ ସାହିତ୍ୟ ଛାଡ଼ିଲି । ଯେଉଁ ସାହିତ୍ୟ ଯୋଗୁଁ ମଣିଷ ହେଲି, ତାକୁ ବାଧ୍ୟ ହୋଇ ତ୍ୟାଗ କରି ବସିଛି... ।''

ସ୍ୱାମୀଙ୍କର ଦିଲ୍ଲୀରେ କୌଣସି ପ୍ରସିଦ୍ଧି ନ ଥିଲା । କୁନ୍ତଳା କିନ୍ତୁ ଅଳ୍ପ ଦିନ ମଧ୍ୟରେ ଖ୍ୟାତି ଅର୍ଜନ କରିପାରିଥିଲେ । ଫଳରେ ବିଭିନ୍ନ ଉତ୍ସବରେ ଯୋଗ ଦେବାପାଇଁ ନିମନ୍ତ୍ରିତ ହେଉଥିଲେ । ଏହି ନିମନ୍ତ୍ରଣପତ୍ରମାନ କେବଳ ତାଙ୍କ ନାମରେ ଆସୁଥିଲା । କୁନ୍ତଳା ସେହି ସଭାସମିତିରେ ଯୋଗ ଦେଉ ନ ଥିଲେ । ମନେ ମନେ ଭାବନ୍ତି – ''ମୋ ସ୍ୱାମୀ ତ ଅଭାଜନ, ମୁଁ ଏ ସ୍ୱର୍ଗ ସୁଖ କାହିଁକି ଆଶା କରିବି ।'' କେହି ନ ଯିବାର କାରଣ ପଚାରିଲେ ନିଜର ବ୍ୟକ୍ତିଗତ ଅସୁବିଧା ଦର୍ଶାଉଥିଲେ । କେବେ ସମୟ ଅଭାବରୁ ନିମନ୍ତ୍ରଣ ରକ୍ଷା କରିବା ସମ୍ଭବ ହେଲା ନାହିଁ ବୋଲି କହିଦେଉଥିଲେ ।

ପ୍ରେସ୍ ବ୍ୟବସାୟରେ କ୍ଷତି ହେଲାପରେ ବ୍ରହ୍ମଚାରୀ ଦିଲ୍ଲୀରେ ଆଉ ରହିଲେ ନାହିଁ । କୁନ୍ତଳାଙ୍କ ଅଗୋଚରରେ ଓଡ଼ିଶା ପଳାଇ ଆସିଲେ ।

ବ୍ରହ୍ମଚାରୀ ଓଡ଼ିଶା ଆସି ଲାଗିପଡ଼ିଲେ କିପରି ଜେଲ୍ ଯାଇ ଦେଶସେବକ ତାଲିକାରେ ନାମ ରଖିବେ । ମାଟ୍ରିକ୍ୟୁଲେସନ ପରୀକ୍ଷାର୍ଥୀଙ୍କୁ ବିଦାୟ ଦେବାପାଇଁ ପୁରୀ ଟାଉନ ହଲ୍‌ରେ ସମ୍ବର୍ଦ୍ଧନା ଦିଆଯାଉଥିଲା । ସେ ସଭାରେ ଆମନ୍ତ୍ରିତ ନ ହୋଇ ମଧ ଭାଷଣ ଦେବାରୁ ଛଅ ମାସ ଜେଲ୍ ଯିବାକୁ ପଡ଼ିଲା ।

ସ୍ୱାମୀ ପୁରୀ ଜେଲ୍‌ରେ ଥିଲାବେଳେ କୁନ୍ତଳା ପୁରୀ ଗଲେ ଓ ଜଗନ୍ନାଥଙ୍କୁ ଦର୍ଶନ କଲେ । ଜେଲ୍‌ରେ ମଧ ବ୍ରହ୍ମଚାରୀଙ୍କୁ ସାକ୍ଷାତ୍ କଲେ । ଏହାପରେ ବ୍ରହ୍ମଚାରୀଙ୍କୁ ହଜାରିବାଗ ଜେଲ୍‌କୁ ନେବାପାଇଁ ଆଦେଶ ଆସିଲା ।

**ସନ୍ତାନସନ୍ତତି**

୧୯୨୯ ମସିହା ଡିସେମ୍ବର ମାସରେ କୁନ୍ତଳାଙ୍କର ପ୍ରଥମ କନ୍ୟା ଜନ୍ମଲାଭ କଲା । ସେଠାରେ ଆନନ୍ଦ ଉଲ୍ଲାସ ଖେଳିଗଲା । ସ୍ନେହରେ କୁନ୍ତଳା ନାମ ରଖିଲେ 'ଉତ୍କଳ କୁମାରୀ' । କୁନ୍ତଳା ପୁଅଟିଏପାଇଁ ଏକାନ୍ତ ବ୍ୟାକୁଳ ଥିଲେ । ମାତ୍ର ଦ୍ୱିତୀୟ କନ୍ୟା ଜନ୍ମ ହେଲା । ଝିଅର ନାମ ଦିଆଗଲା 'ଚିତ୍ରୋତ୍ପଳା' । ପୁଣି କୁନ୍ତଳା ନାମ ପରିବର୍ତ୍ତନ କରି ରଖିଲେ 'ସବିତା କୁମାରୀ' । ଏହାପରେ ତାଙ୍କର ଏକ ପୁତ୍ର ଜନ୍ମ ହେଲା । ମାତ୍ର ୧ ମାସ ୧୫ ଦିନ ପରେ ସେ ମୃତ୍ୟୁମୁଖରେ ପଡ଼ିଲା ।

କୁନ୍ତଳା ପାଗଳର ପ୍ରଳାପ ଭଳି ଚକ୍ରଧର ପାଖକୁ ପତ୍ରରେ ଲେଖିଥିଲେ – ''ଜଗନ୍‌ମୋହନ ମୋର ପାର୍ଥିବ କୋଳରେ ନାହିଁ । ମାତ୍ର ଅଦ୍ଭୁତ ଦେବମୂର୍ତ୍ତି ରୂପେ ମୋର ହୃଦୟରେ ଅବସ୍ଥିତ ।''

**କାବ୍ୟକବିତା**

କୁନ୍ତଳା କୁମାରୀଙ୍କ ଜୀବନ କାଳ ଥିଲା ସୀମିତ । ମାତ୍ର ଏହି ସୀମିତ ସମୟ ମଧରେ ସେ ଓଡ଼ିଆ କାବ୍ୟକବିତା ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି । କୁନ୍ତଳାଙ୍କ ପ୍ରଥମ କବିତା ପୁସ୍ତକ 'ଅଞ୍ଜଳି' ୧୯୨୨ ମସିହାରେ ଦର୍ପଣୀରାଣୀଙ୍କଦ୍ୱାରା ପ୍ରକାଶିତ ହେଲା । କୁନ୍ତଳା ନିଜର କୃତଜ୍ଞତା ଜଣାଇ ରାଣୀଙ୍କୁ ତାହା ଉତ୍ସର୍ଗ କରିଥିଲେ ।

କାବ୍ୟ ସାଧନାର ଉନ୍ମେଷ କାଳରୁ କୁନ୍ତଳାଙ୍କ ଲେଖନୀରେ ବିଭୁଚେତନା ଏକ ସ୍ଥାୟୀ ଭାବ ସଞ୍ଚାର କରିଛି । ତାଙ୍କ କବିତାରେ ଫୁଟିଉଠିଛି ବିଭୁପ୍ରେମର ଅମିୟଧାରା । ତାଙ୍କ ରଚନାରୁ ଦି' ଧାଡ଼ି ଏଠାରେ ଉଲ୍ଲେଖ କରାଯାଇପାରେ –

''ଲତା ପବନରେ, କୁସୁମ ଫଳରେ
ଜଳେ ସ୍ଥଳେ, ନଭେ ପବନେ,
ଭାସି ବୁଲୁଛି କି ତା' ଅରୂପ ରୂପ
ମଜାଇ ତା' ପ୍ରାଣ ଗୋପନେ ।'' (ଅଞ୍ଜଳି)

ତାଙ୍କର କେତେକ କବିତାରେ ରହସ୍ୟବାଦୀ ଚେତନା ଗୁମ୍ଫିତ ହୋଇଛି, ଯଥା –

"ତୁମେ ମହାପ୍ରଭୁ ଜାଣିଛ ଅନ୍ତରେ
ତୁମେ ଚରାଚର ମୋ ଆତ୍ମା ଭିତରେ
ଲୟ ରଖି ମନ ତୁମରି ପୟରେ
ସତ୍ୟ ପଥେ ଆତ୍ମା ରହେ ।" (ପୂଜାପଦ୍ଧତି–ଅଞ୍ଜଳି)

କୁନ୍ତଳାଙ୍କ ଦୃଷ୍ଟିରେ ପ୍ରକୃତି ହୋଇଛି ଆନନ୍ଦ ଓ ଆଶାର ଗନ୍ତାଘର । ତା'ର ଉଦାହରଣ –

"ହସି ଉଠିଲାଣି ପରା ଶତଦଳ
ଉଜ୍ଜ୍ୱଳ ବିମଳ ରମ୍ୟ ନୀଳ ଜଳ
ବାତ ଆନ୍ଦୋଳିତ ଚଞ୍ଚଳ ତରଳ
କ୍ଷରି ମକରନ୍ଦ ବାସ
ମୋହି ଜନ ମନ କଲାଣି ଆକୁଳ
ଦୁଃଖ ଦୈନ୍ୟ କରି ନାଶ ।" (ଅଞ୍ଜଳି)

**ଉଚ୍ଛ୍ୱାସ**

ଗଙ୍ଗାମନ୍ଦିରରେ ଥିଲାବେଳେ କୁନ୍ତଳା ଉତ୍କଳ ସାହିତ୍ୟ ପ୍ରେସରେ 'ଉଚ୍ଛ୍ୱାସ' କବିଖଣ୍ଡକ ପ୍ରକାଶ କରାଇଥିଲେ । ଏହା ୬ଟି ଖଣ୍ଡକବିତାର ସମଷ୍ଟି । ଏଥିରେ 'ତାରାପ୍ରତି' କବିତାଟି ସ୍ଥାନ ପାଇଥିଲା । 'ଶେଫାଳି', 'କାମିନୀ', 'କମଳ' ପ୍ରଭୃତିକୁ ନେଇ ଏ କବିତାମାନ ରଚିତ ହୋଇଥିଲା । 'ଉଚ୍ଛ୍ୱାସ'ର ଭୂମିକା ଲେଖିଥିଲେ ପଲ୍ଲୀକବି ନନ୍ଦକିଶୋର ବଳ । ଶେଫାଳି କବିତାଟି ମଧ୍ୟ ବିଶେଷ ପ୍ରଶଂସା ଲାଭ କରିଥିଲା । ଶେଫାଳି ପୁଷ୍ପର ଦର୍ଶନ କୁନ୍ତଳାଙ୍କ ପ୍ରାଣରେ ସୃଷ୍ଟି କରିଥିଲା ସ୍ୱର୍ଗୀୟ ଆନନ୍ଦ । ସେ ଗାଇଛନ୍ତି –

"ଶାରଦ ଦିନାନ୍ତେ ବସି–ବାତାୟନ ପାଶରେ
ବୁଡ଼ିଅଛି ମନ ମୋର କିବା ପ୍ରେମ ରସରେ,
ଆବେଗେ ପୁଲକେ ମୋର ନୟନରୁ ବହେ ଧାର
ହୃଦତନ୍ତ୍ରୀ ବାଜିଉଠେ କି ଅମୃତ ସ୍ୱରରେ
ନିମିଷେ ଭାବେ ମୁଁ ତ ଅଛି କିବା ସ୍ୱର୍ଗରେ ।" (ଶେଫାଳି)

ବିଭୁ ପାଦପଦ୍ମରେ କୁନ୍ତଳା ନିଜ ଶରୀରକୁ ଲୋଟାଇ ଦେବାର ଇଚ୍ଛା ପ୍ରକାଶ କରିଛନ୍ତି –

"ଶେଷ ରାତି ନୁହେଁ ମୋର ମୃତ୍ୟୁ କେଉଁ କାଳରେ
ମରିବାକୁ ଫୁଟି ନାହିଁ ଭବତରୁ ଡାଳରେ
ଅଛି ରମ୍ୟ ଉପବନ ଯହିଁ ମୁହିଁ ଫୁଟି ଚିରନ୍ତନି
ଅନନ୍ତ ଅମୃତ ପ୍ରେମ ସୁଧାମୟ ସୁବାସେ
ମୋହିବି ମୋ ପ୍ରାଣପ୍ରିୟ ଦେବତାଙ୍କୁ ଉଲ୍ଲାସେ ।" (ଶେଫାଳି)

## ଅର୍ଚ୍ଚନା

ଏହା ୧୯୨୭ ମସିହାରେ ପ୍ରକାଶ ପାଇଥିଲା । ଏହା ଚାରି ଭାଗରେ ବିଭକ୍ତ । ପ୍ରଥମ ଖଣ୍ଡ 'ବିଲ୍ୱଦଳ' କୁନ୍ତଳା ରାଧାନାଥ ରାୟଙ୍କୁ ଉତ୍ସର୍ଗ କରିଥିଲେ । ଏ ଖଣ୍ଡରେ କେବଳ ଦେଶାତ୍ମବୋଧ କବିତାମାନ ସ୍ଥାନ ପାଇଛି । ଦ୍ୱିତୀୟ ଖଣ୍ଡ 'ଦୂର୍ବାଦଳ' । ପଲ୍ଲୀକବି ନନ୍ଦକିଶୋରଙ୍କୁ ସେ ତାକୁ ଉତ୍ସର୍ଗ କରିଥିଲେ ।

''ନାହିଁ ମୋର ହୀରାହାର କନକ ମୁକୁତା
ଦିଓଟି ଏ ଦୂର୍ବାଦଳ ଭକ୍ତିସୂତ୍ରେ ଗୁନ୍ଥା ।
ଅଯୋଗ୍ୟ ଏ ଉପହାର ଅର୍ପିଲି ପୟରେ
ଘେନ ଗୁଣାକର ନିଜ ଗୁଣେ ସମାଦରେ ।''

ଏ ଖଣ୍ଡର କବିତାଗୁଡ଼ିକ ତାଙ୍କ ବ୍ୟକ୍ତିଗତ ଜୀବନକୁ ନେଇ ରଚିତ । କୁନ୍ତଳା ନିଜକୁ ଲୀଳାମୟଙ୍କଠାରେ ସମର୍ପଣ କରିଦେଇଛନ୍ତି । ତା'ର ଉଦାହରଣ –

''ସୁନ୍ଦରେ ସୁନ୍ଦରେ ହୃଦୟ ମୋହର
ହେଉ ନାଥ ଚିର ସୁନ୍ଦର
ମଧୁରେ ମଧୁରେ ହୃଦୟ ମୋହର
ହେଉ ନାଥ ଚିର ମଧୁର ।''(ଦୂର୍ବାଦଳ-ଅର୍ଚ୍ଚନା)

ତୃତୀୟ ଖଣ୍ଡ 'ଚମ୍ପାଦଳ'ଟି କୁନ୍ତଳା ଭକ୍ତକବି ମଧୁସୂଦନ ରାଓଙ୍କୁ ଅର୍ପଣ କରିଥିଲେ । ଏଥିରେ ଈଶ୍ୱର ଭାବନା ଉପରେ କବିତା ସ୍ଥାନ ପାଇବା ସଙ୍ଗେ ସଙ୍ଗେ ବ୍ୟକ୍ତିଗତ ଜୀବନକୁ ନେଇ କେତୋଟି କବିତା ସ୍ଥାନ ପାଇଛି । ଏ କବିତାର କିଛି ଅଂଶ –

''ଜୀବନ ନୁହେଁ ମୋ ସପନ ଛଳଣା
ଜୀବନ ଆନନ୍ଦମୟ ହେ
କରମ ଲାଗି ମୁଁ ଜନମ ଲଭିଛି
କରମେ ଲଭିବି ଜୟ ହେ ।'' (ଚମ୍ପାଦଳ-ଅର୍ଚ୍ଚନା)

ଚତୁର୍ଥଖଣ୍ଡ 'ମୁକୁର' ପ୍ରେସ୍ର ସ୍ୱତ୍ୱାଧିକାରୀ ବ୍ରଜସୁନ୍ଦର ଦାସଙ୍କ ଶିଶୁପୁତ୍ର ସତ୍ୟସୁନ୍ଦରଙ୍କୁ ଉତ୍ସର୍ଗ କରାଯାଇଥିଲା ।

କୁନ୍ତଳାଙ୍କର ମାତୃଭୂମି ଉତ୍କଳ ପ୍ରତି ଗଭୀର ଶ୍ରଦ୍ଧା ଥିଲା । ପ୍ରାଚୀନ ଉତ୍କଳର ଗୌରବଗାଥା ତାଙ୍କ କବିତାରେ ଜୀବନ୍ତ ହୋଇଉଠିଛି । ପୁଣି ଏବର ଉତ୍କଳର ଅବସ୍ଥା ଦେଖି ସେ ଦୁଃଖରେ ମ୍ରିୟମାଣ ହୋଇପଡ଼ିଛନ୍ତି, ଯଥା –

''ନ ବିଳସେ ଆଉ ଓଡ଼ିଆର ତରୀ
ଘନ ନୀଳ ନୀର ଚିଲିକା ଲହରୀ
ଧଳା ପାଗ ତୋଳି ସେ ତୋଳି
ନ ଆଣେ ରତନ ପାରାବାରେ

ଜାଭା ବାଲି ଲଙ୍କା ବୋର୍ଣ୍ଣିଓ ବିଜୟ
ଭୁଲି ତ ଗଲାଣି ଓଡ଼ିଆ ତୁମର
ହର୍ଷ ହୁଳହୁଳି ବନ୍ଦାପନା ଥାଳି
ନ ଦିଏ ସାଧବ ବୋହୂ ପରଶି । (ଅର୍ଚ୍ଚନା)

## ସ୍ଫୁଲିଙ୍ଗ

ଏହା ୧୯୨୯ ମସିହାରେ ପ୍ରକାଶ ପାଇଥିଲା । ଏଥିରେ କବିଙ୍କର ଦଳିତ ଓ ଲାଞ୍ଛିତ ବ୍ୟକ୍ତିଙ୍କ ପ୍ରତି ଦରଦ ପ୍ରକାଶ ପାଇଛି । ମଣିଷ ଧନକୁ ନେଇ ଭେଦଭାବ ସୃଷ୍ଟି କରେ । ସେ ଶୋଷକ ସାଜି ଶୋଷିତକୁ ହୀନ ଦୃଷ୍ଟିରେ ଦେଖେ । ଶୋଷକ ଓ ଶୋଷିତ ମଧ୍ୟରେ ବ୍ୟବଧାନ ରହିଲେ ସମାଜରେ ବିଶୃଙ୍ଖଳା ସୃଷ୍ଟି ହୁଏ । କୁନ୍ତଳା ଶୋଷକ ବିରୋଧରେ ବିଦ୍ରୂପର ସ୍ୱର ଉଠାଇଛନ୍ତି, ଯଥା –

"ଅଗାଧ ଐଶ୍ୱର୍ଯ୍ୟ ତବ ମୁଁ ଦୀନ ମୂଲିଆ
ତୁମେ ଶୁଭ ସିଂହାସନ ମୁଁ ପାଦ ତଳିଆ
ମୋ ରକତ ସିନ୍ଧୁ ମନ୍ଥି ଦରପ ମନରେ
ଦୁଇ ଦିନ ହସୁଥାଅ ଭାସି ଅମୃତରେ ।" (ସ୍ଫୁଲିଙ୍ଗ)

ଅଥବା "ବୋଲାଉଚ ବାବୁ ବସି ଉଚ୍ଚ ଆସନରେ
ଲାଜ ଲୁଚାଅ କିନ୍ତୁ ମୋ ଦତ୍ତ ବସନରେ
ମୋ ଦରି ଅଶନ ପୁଣି ନିୟତ ଭୋକ
ତୁଙ୍ଗ ପ୍ରାସାଦରେ ତୁମ୍ଭେ, ତଳେ ମୋ ଦରବ ।" (ସ୍ଫୁଲିଙ୍ଗ)

ଏହି ପୁସ୍ତକର ପୃଷ୍ଠା ସଂଖ୍ୟା ୭୦ । 'ବିଷାଦିତର ବିଶ୍ୱାସ', 'ନାରୀ ଶକ୍ତି', 'ଅଭିଶପ୍ତର ଅଭିମାନ' ପ୍ରଭୃତି କେତୋଟି ଉଚ୍ଚସ୍ତରର କବିତା ଏଥିରେ ସ୍ଥାନ ପାଇଛି । ସେ ଓଡ଼ିଆ ଜାତିକୁ ଜାଗ୍ରତ କରିବାପାଇଁ ସାଧ୍ୟମତେ ଚେଷ୍ଟା କରିଥିଲେ । ସେ ତରୁଣକୁଳକୁ ଏହାକୁ ଉତ୍ସର୍ଗ କରିଛନ୍ତି, ଯଥା –

"କ୍ଷୁଦ୍ର ଏ ସ୍ଫୁଲିଙ୍ଗ କ୍ଷୁଦ୍ର ଅନଳ କଣିକା
କ୍ଷୀଣ ପ୍ରାଣ ନାହିଁ ସୂର୍ଯ୍ୟ ତେଜ ଶିଖା
ତରୁଣ ଉତ୍କଳସୁତଙ୍କର କମଳରେ
ଅର୍ପିଲି ଆନନ୍ଦ ଶ୍ରଦ୍ଧା ସୁଧା ସ୍ନେହଭରେ ।
ହେଉ ସେହି କ୍ଷୁଦ୍ର ହେଉ ଅତି ହୀନ ସାନ
ଛୁଇଁବ ଯଦି ସେ ମୋର ଭ୍ରାତା ଭଗ୍ନୀ ପ୍ରାଣ,
ଜାଳିବ ଯଦି ସେ ଚିତ୍ତେ ଦେଶପ୍ରେମ ବହ୍ନି
ସାର୍ଥକ ମଣିବି ସୁଖେ ଅୟସ ଲେଖନୀ ।"

## ଆହ୍ୱାନ

୧୯୩୦ ମସିହାରେ ପ୍ରକାଶ ପାଇଲା କୁନ୍ତଳାଙ୍କ କବିତା ପୁସ୍ତକ 'ଆହ୍ୱାନ' । ଏହାଥିଲା ଉଗ୍ର ଜାତୀୟତାବାଦୀ ଚେତନାର ବାହକ । ମହାତ୍ମା ଗାନ୍ଧୀଙ୍କ ଆହ୍ୱାନ ଭାରତୀୟଙ୍କ ପ୍ରାଣରେ ନୂତନ ସ୍ପନ୍ଦନ, ନୂତନ ଉଦ୍ଦୀପନା ସୃଷ୍ଟି କରିଥିଲା, ତା'ର ଚିତ୍ର ଏଥିରେ ମିଳେ ।

''ସାବରମତୀର ସ୍ୱରାଜ୍ୟ ସୈନିକ
ଉଠ ଭାରତର ଯୁବକ ନିର୍ଭୀକ
ଉଠ ଭାରତର ବୀରପୁତ୍ରଯାକ
ସେନାପତି ଆଜି ଦେଇଛନ୍ତି ଡାକ ।''

ସାତ ସମୁଦ୍ର ତେର ନଦୀ ପାର ହୋଇ ଆସିଥିବା ବିଦେଶୀମାନେ କିପରି ଦେଶରେ ଅତ୍ୟାଚାର ଚଳାଇଛନ୍ତି, ତା'ର ଜୀବନ୍ତ ଚିତ୍ର କୁନ୍ତଳା ଉପସ୍ଥାପିତ କରିଛନ୍ତି, ଯଥା –

''ପେଟେ ନାହିଁ ଦାନା ଦେହେ ନାହିଁ କନା
ଦିନ ରାତି ଭୋକ ଟିକସ ଭାବନା
ପଖାଳ ଗଣ୍ଡାକୁ ଟିପେ ନାହିଁ ଲୁଣ
ବାହୁନିବା କିବା ଶାସନର ଗୁଣ ।'' (ଆହ୍ୱାନ)

ବ୍ରିଟିଶ ଶାସନରେ ଦରିଦ୍ର ଭାରତୀୟଙ୍କ ଆର୍ତ୍ତ ଚିତ୍କାର ପ୍ରତି ପୃଷ୍ଠାରେ ବର୍ଣ୍ଣିତ ।

## ଓଡ଼ିଆଙ୍କ କାନ୍ଦଣା

୧୯୩୭ ମସିହାରେ ଏହା ପ୍ରକାଶ ପାଇଲା । କୁନ୍ତଳା ଓଡ଼ିଶାର ବାସ୍ତବ ପରିସ୍ଥିତି ପ୍ରତି ସଜାଗ ଥିଲେ । ବନ୍ୟା ହେଉଛି ଓଡ଼ିଶାର ଚିର ସହଚର । ଏହା ପ୍ରତି ଓଡ଼ିଶାବାସୀଙ୍କର ଭୟ ଓ ଆତଙ୍କ କମ୍ ନୁହେଁ । ଏହି ସମସ୍ୟା ପ୍ରତି ସେ ଓଡ଼ିଶାବାସୀଙ୍କୁ ସଚେତନ କରାଇଦେଇଛନ୍ତି 'ଓଡ଼ିଆଙ୍କ କାନ୍ଦଣା' କବିତା ଗ୍ରନ୍ଥରେ ।

''ମହାନଦୀ କୂଳେ ମିଛେ ବାନ୍ଧିଛୁ ବସା
ତା' ଟାଣ ସୁଅ ମୁହଁକୁ ନାହିଁ ଭରସା ।''

କୁନ୍ତଳା ମଧ୍ୟ ତା'ର ନିରାକରଣପାଇଁ ସାଧ୍ୟମତେ ଚେଷ୍ଟା କରିବେ ବୋଲି କହିଛନ୍ତି, ଯଥା --

''ବଢ଼ି ଲାଗି ଯା ଦିଶିବ ବାଟ କରିବି,
ଲାଟ ନିକଟରେ ନିଶ୍ଚେ ଲଢ଼ିବି ।
ରାଇଜ ଲୋକଙ୍କୁ ମେଳି କରିବି ଆଣି
ଆମ ଦୁଃଖ କଥା ତାଙ୍କ ଆଗେ ବଖାଣି ।''

## ଗଡ଼ଜାତ କୃଷକ

'ଗଡ଼ଜାତ କୃଷକ' କୁନ୍ତଳାଙ୍କର ଅନ୍ୟ ଏକ କବିତା ଗ୍ରନ୍ଥ । ଏହା ୧୯୩୯ରେ ପ୍ରକାଶିତ ହୋଇଥିଲା । ରାଜା, ଜମିଦାର ଓ ମହାଜନମାନଙ୍କର ଅତ୍ୟାଚାରରେ ଗରିବ କିପରି ନିଷ୍ପେଷିତ ହୁଏ, ତା'ର ଜୀବନ୍ତ ଚିତ୍ର ଏଥିରେ ମିଳେ ।

ମଣିଷ ମନରେ ବେଳେ ବେଳେ ଈଶ୍ୱରଙ୍କ ପ୍ରତି ବିଶ୍ୱାସ ତୁଟିଯାଏ । ଏହା ଦାରିଦ୍ର୍ୟ ଓ ଅନଟନରୁ ହେଉ ବା ଅନ୍ୟ ମାନସିକ ପ୍ରକ୍ରିୟାରୁ ହେଉ, ମଣିଷ ଈଶ୍ୱରଙ୍କ ପ୍ରତି ବିଦ୍ରୋହୀ ହୋଇଉଠେ । ତା'ର ଏକ ସୁନ୍ଦର ଚିତ୍ର କୁନ୍ତଳା ଦେଇଛନ୍ତି ।

''ଗୋକୁଳି ନାୟକ ଗୋକୁଳି ନାୟକ ସବୁ ତ ସହୁ
ମିଛରେ ଡାକୁ ବୋଲି ହେ ମହାପ୍ରଭୁ ?
ପଥର ପଥର ଥିବ ଚିରକାଳ ବୋଲି ସିନ୍ଦୂର
ଡାକିଲେ ତୋ ଦୁଃଖ ଶୁଣିବ କି ସେ'ରେ ହେଲୁ ବାତୁଳ ?

## ପ୍ରେମ ଚିନ୍ତାମଣି

କୁନ୍ତଳା କୁମାରୀଙ୍କ ଗୋଟିଏ କାବ୍ୟ 'ପ୍ରେମ ଚିନ୍ତାମଣି' ୧୯୩୦ ମସିହାରେ ପ୍ରକାଶ ପାଇଥିଲା । ଶିକ୍ଷାବିତ୍ ଆର୍ତ୍ତବଲ୍ଲଭ ମହାନ୍ତି ଏହାର ମୁଖବନ୍ଧ ଲେଖିଥିଲେ । ସେ ଏହାର ପାଣ୍ଡୁଲିପିକୁ ବହୁବାର ପାଠ କରି ଆନନ୍ଦରେ ବିଭୋର ହୋଇ ଉଠୁଥିଲେ । ନାରୀକବିମାନଙ୍କ ମଧ୍ୟରେ କୁନ୍ତଳାକୁମାରୀ ଶ୍ରେଷ୍ଠ ଆସନର ଅଧିକାରୀ ବୋଲି  ମନ୍ତବ୍ୟ ଦେଇଥିଲେ । ଆଲୋଚକ ଅପୂର୍ବରଞ୍ଜନଙ୍କ ଭାଷାରେ 'ପ୍ରେମ ଚିନ୍ତାମଣି' ମାନବୀୟ ପ୍ରଣୟ ଚେତନାର ମୂର୍ତ୍ତିମନ୍ତ ପରିପ୍ରକାଶ । ଏହାର ଭାବବିଭବରେ ତୀବ୍ରତା ଓ ଉଷ୍ମତା ଭରିରହିଛି । ସମଗ୍ର କାବ୍ୟଟିକୁ ପ୍ରଣୟ ଚେତନା ଆଚ୍ଛନ୍ନ କରି ରଖିଛି, ଯଥା –

''ଆତ୍ମା ଚିହ୍ନିଲା ଆତ୍ମାର ସାଥୀ
ନ ଫୁଟିଲା ମୁଖେ କଥା,
ସରିତ ଚିହ୍ନିଲା ସାଗର ତରଙ୍ଗ
ପାଦପ ଚିହ୍ନିଲା ଲତା ।
ଦୀପ ଆଲିଙ୍ଗିଲା ଅନଳ ଶିଖାଟି
ହେମ ଆବୋରିଲା ହୀରା
ରକ୍ତେ ଛୁଟିଲା ଉଷ୍ମ ଆନନ୍ଦ
ଚମକାଇ ଶିରା ଶିରା ।''

କୁନ୍ତଳା କୁମାରୀ ବହିରେ ନିଜ କଥା ଲେଖିଥିଲେ – ''ଦୁଇ ବର୍ଷ ତଳେ ମୋର ପ୍ରିୟଭୂମି କଟକ ନଗରରେ ମୁଁ ଥିବାବେଳେ କେତେଗୁଡ଼ିଏ ସ୍ୱର ବିଶିଷ୍ଟ ଖଣ୍ଡକବିତା ଲେଖିଥିଲି । × × × ×

ବହିର ନାୟକ-ନାୟିକାଙ୍କୁ ରାଧାକୃଷ୍ଣ ଭାବରେ ଚିତ୍ରଣ କରିବାପାଇଁ ମୋର ଆଦୌ ଇଚ୍ଛା ନ ଥିଲେ ହେଁ ପୁଣି ମହାଭାବପୂର୍ଣ୍ଣ ରାଧାକୃଷ୍ଣ ଲୀଳା ଓ ତତ୍‌ସମ୍ବନ୍ଧୀୟ ପୁସ୍ତକମାନଙ୍କ ବର୍ଣ୍ଣିତ ବିଷୟରେ ମୁଁ ଅନଭିଜ୍ଞ ଥିଲେ ହେଁ, ଚକ୍ରଧରଙ୍କ ସନିର୍ବନ୍ଧ ଅନୁରୋଧ ଉପେକ୍ଷା କରି ନ ପାରି ବହିର ନାମ 'ପ୍ରେମ ଚିନ୍ତାମଣି' ଓ ନାଟକର ନାୟକ-ନାୟିକାଙ୍କୁ ଜଗଦ୍‌ବରେଣ୍ୟ ଶ୍ରୀମତୀ ଓ ଶ୍ରୀକୃଷ୍ଣ ନାମରେ ରଖିଅଛି ।''

ଶ୍ରୀକୃଷ୍ଣ ଉପରେ ଏକ କବିତା –

''କହନ୍ତୁ ଲୋ ଲୋକେ ଶ୍ୟାମ କପଟିଆ
କହନ୍ତୁ କାଳିଆ କୁଳ-କଳଙ୍କିଆ
ଗଳାରେ ମୋହର ଛୁରି ଦେଇ ଭରେ
ରହି ଆନ ଆନନ୍ଦରେ
ମଥାମଣି ସମ ମଣିଛି ମିତଣୀ
କିସ ତା'ର ବ୍ୟଚ୍ଛଦରେ ?

ଏହି କବିତା ପୁସ୍ତକ ଲାଗି କୁନ୍ତଳା କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ ଆସନର ଅଧିକାରିଣୀ ବୋଲି ଶ୍ରୀଯୁକ୍ତ ମହାନ୍ତି ମତ ଦେଇଛନ୍ତି ।

**ମଣିକାଞ୍ଚନ**

ସାବିତ୍ରୀ ଓ ସତ୍ୟବାନଙ୍କ ଚରିତ୍ରକୁ ନେଇ କୁନ୍ତଳାକୁମାରୀ 'ମଣିକାଞ୍ଚନ' ରଚନା କରିଛନ୍ତି । ଏହାକୁ ସେ ସଂପୂର୍ଣ୍ଣ କରିପାରି ନାହାନ୍ତି; ମାତ୍ର ଅସମ୍ପୂର୍ଣ୍ଣ କାବ୍ୟକୃତିଟି ପାଠକମାନଙ୍କୁ ଅଭିଭୂତ କରେ ।

ଅରଣ୍ୟର ଶୋଭା ନିମ୍ନୋକ୍ତଭାବେ ବର୍ଣ୍ଣିତ –

''ମାଡ଼ି ମାଡ଼ି ଆସେ ନିଶା ତମୋରାଶି
ଛାଡ଼ି ଛାଡ଼ି ଆସେ ଦିନ
ଗୋଟି ଗୋଟି ତାରା ଫୁଟି ଫୁଟି ନଭ
ଶ୍ରେଣୀ ନୀଳ ନୀର-ବେଣୀରେ
ସରେ ନବୀନ ନଳିନ ।''

ସାବିତ୍ରୀଙ୍କ ମନର ଭାବ ଏହିପରି ପ୍ରକାଶ ପାଇଛି –

''ଝର ଝର ଝର ଭରା ବିଭବରୁ
ଝଡ଼ି ପଡୁଥିଲା ଧାର
ଥର ଥର ଥର ଥରି ଉଠୁଥିଲା
ତନୁ ତରୁ ଲତିକାର ।

ସର ସର ବହେ ସମୀର
ମରମର କଥା–ମରମେ ଉଲୁସି
ଉଠେ ବି ସାବିତ୍ରୀ ଶରୀର ।''

ଓଡ଼ିଆ ଭାଷାକୋଷର ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜଙ୍କ ଭାଷାରେ – ''ଖାଇବା ଯେପରି ପକ୍ଷୀମାନଙ୍କର ନୈସର୍ଗିକ ପ୍ରକୃତି, କବିତା ସେହିପରି କୁନ୍ତଳାଙ୍କ ପାଖେ ପ୍ରାକୃତିକ ଥିଲା । ଓଡ଼ିଆ ଭାଷାରେ ଯେଉଁ ଜୀବନୀଶକ୍ତି ସଞ୍ଚରିତ କରିଯାଇଛନ୍ତି, ଓଡ଼ିଆ ଜାତି ଆଜି ତାହା ହୃଦୟଙ୍ଗମ କରି ନାହିଁ ।'' × × ×

କୁନ୍ତଳାଙ୍କ କବିତା ସମ୍ପର୍କରେ ମାୟାଧର ମାନସିଂହଙ୍କ ମନ୍ତବ୍ୟ – ''× × × ସ୍ତରେ ସ୍ତରେ ନିଜକୁ ଏପରି ପ୍ରକାଶ କରିଛନ୍ତି, ଯେପରି ଜଣାପଡ଼େ ଗୋଟିଏ ଗୁଳ୍ମ ଜନ୍ମ ବ ବ୍ରତତୀ ତା'ର ପ୍ରାଣପଣେ ଚେଷ୍ଟା କରିଛି ସମସ୍ତ ବାଧା ବନ୍ଧନକୁ ଭାଙ୍ଗି ଓ ଏଡ଼ି ବାହାରକୁ ଆସିବାକୁ ମୁକ୍ତ ଆକାଶରେ ସୂର୍ଯ୍ୟାଲୋକ ସଙ୍ଗେ ପରିଚୟ ପାଇବାପାଇଁ । ନିରବଚ୍ଛିନ୍ନ ସଂଗ୍ରାମରେ ଲତାର ଦେହଶ୍ରୀ ରୁଗ୍‌ଣ, ନିସ୍ତେଜ ଦେଖାଗଲେ ମଧ ତା'ର ଶିରାରେ ଶିରାରେ ଆନନ୍ଦର ପ୍ରବାହ ଖେଳୁଛି, ଏହି ମାତ୍ର ଲାଗି ଯେ ସୂର୍ଯ୍ୟଙ୍କ ସହିତ ତା'ର ପରିଚୟ ହୋଇପାରିଛି ।''

## ଉପନ୍ୟାସ

କୁନ୍ତଳାକୁମାରୀ ହିଁ ଓଡ଼ିଶାର ପ୍ରଥମ ଔପନ୍ୟାସିକା । ତାଙ୍କ ପୂର୍ବରୁ କୌଣସି ଔପନ୍ୟାସିକା ଓଡ଼ିଆରେ ଉପନ୍ୟାସ ରଚନା କରି ନାହାନ୍ତି । ସୁଯୋଗ୍ୟ ସମ୍ପାଦକ ବ୍ରଜସୁନ୍ଦର ଦାସଙ୍କ ଉଦ୍ୟମରେ ୧୯୨୪ ମସିହାରେ 'ମୁକୁର ଉପନ୍ୟାସମାଳା' ଆରମ୍ଭ ହେଲା । କୁନ୍ତଳା କୁମାରୀଙ୍କ ଲିଖିତ 'ପରଶମଣି' ପ୍ରଥମ ଉପନ୍ୟାସ ଭାବେ ମୁକ୍ତି ଲାଭ କଲା । ତା' ପୂର୍ବରୁ ଅର୍ଥାତ୍ ୧୯୨୩ ମସିହାରେ 'ଭ୍ରାନ୍ତି' ଉପନ୍ୟାସ ପ୍ରକାଶ ପାଇଥିଲା ।

## ଭ୍ରାନ୍ତି

ବିଷୟବସ୍ତୁ ଗତାନୁଗତିକ । ହରିହର ହେଉଛନ୍ତି ଜମି ଦାର । ତାଙ୍କର କନ୍ୟା ଶେଫାଳି । ପିତୃମାତୃହୀନ ଅନଙ୍ଗ ପରିବାରରେ ଆଶ୍ରିତ ବୟସ ବଢ଼ିବା ସଙ୍ଗେ ଉଭୟେ ନିକଟତର ହୋଇଛନ୍ତି । ଦୁହେଁ ଶିକ୍ଷିତ ଓ ଶିକ୍ଷିତା । ଜମିଦାର ପରିବାରରେ ଆଉ ଜଣେ ଆଶ୍ରିତ ସାନନ୍ଦ ଦାସ । ତାଙ୍କର କନ୍ୟା ମାଳତୀ । ଅସୁନ୍ଦରୀ ଆଉ ରୋଗାକ୍ରାନ୍ତ । ମାଳତୀ କିନ୍ତୁ ଅନଙ୍ଗଙ୍କୁ ବିବାହପାଇଁ ଆଗ୍ରହୀ । ସାନନ୍ଦଙ୍କ ପକ୍ଷରୁ ଆରମ୍ଭ ହୋଇଛି ଚକ୍ରାନ୍ତ । ଅନଙ୍ଗ ଓ ଶେଫାଳିଙ୍କ ମଧ୍ୟରେ ସନ୍ଦେହ ସୃଷ୍ଟି ହୋଇଛି । ଅନଙ୍ଗ ଘରଛାଡ଼ି ଚାଲିଯାଆନ୍ତି । ପରେ ଅନୁଶୋଚନାରେ ରୋଗାକ୍ରାନ୍ତ

ହୋଇଥିବା ଶେଫାଳିର ସେବାଶୁଶ୍ରୂଷାପାଇଁ ଫେରି ଆସିଛନ୍ତି । ଶେଫାଳି ଆରୋଗ୍ୟ ହେବାପରେ ଅନଙ୍ଗଙ୍କ ସହିତ ବିବାହ ହୋଇଛି ।

'ଭ୍ରାନ୍ତି' ଏକ ପାରିବାରିକ ଜୀବନକୁ ନେଇ ରଚିତ । ପ୍ରଥମ ଉପନ୍ୟାସ ହୋଇଥିବାରୁ ଏହାର ଭାଷା ସେପରି ମାର୍ଜିତ ହୋଇପାରି ନାହିଁ । ପ୍ରବନ୍ଧର ଭାଷା ବୋଲି ମନେ ହୁଏ । ଭାବର ପ୍ରକାଶପାଇଁ କୁନ୍ତଳା ଗାମ୍ଭୀର୍ଯ୍ୟପୂର୍ଣ୍ଣ ଭାଷା ଠାଏ ଠାଏ ପ୍ରୟୋଗ କରିଛନ୍ତି । ବଙ୍ଗଳା ଭାଷାର ପ୍ରଭାବ ମଧ୍ୟ ଲକ୍ଷ୍ୟ କରାଯାଏ ।

## ନଅ ତୁଣ୍ଡୀ

୧୯୨୫ ମସିହାରେ 'ନଅ ତୁଣ୍ଡୀ' ପ୍ରକାଶ ପାଇଲା । ଗ୍ରାମ୍ୟ ଚରିତ୍ର ଓ ଘଟଣାକୁ ନେଇ ଏହା ରଚିତ ହୋଇଛି ।

ନାୟିକା ରତନୀ ହେଉଛି ମୁଖରା ଓ କଳହପ୍ରିୟା । ଥରେ କଳି ଆରମ୍ଭ କରିଦେଲେ କ୍ଲାନ୍ତ ହେବ ନାହିଁ । ପାଟିରୁ ପାଣି ଶୁଖିଗଲେ ପାଣି ପିଇବ ପଛେ, ଚୁପ୍ ହେବ ନାହିଁ । ସେ ମଧ୍ୟ ପରିଶ୍ରମକାତରା ନୁହେଁ । କୌଣସି କାମ କରିବାକୁ ସେ ପଛାଏ ନାହିଁ । ସେ ବି ସାହସିନୀ । ଶିକ୍ଷା ପାଇ ତା' ଜୀବନରେ ଆସିଛି ପରିବର୍ତ୍ତନ । ଜମିଦାର ଘରର ପୁତ୍ର କୃଷ୍ଣଚନ୍ଦ୍ରଙ୍କ ସଙ୍ଗେ ତା'ର ବିବାହ ହୋଇଛି । ସ୍ୱାମୀ ଭାବରେ ପାଇ ତା'ର ଜୀବନ ଧନ୍ୟ ହୋଇଛି । ମୁଖରା ହୋଇଥିବାରୁ ଲେଖିକା ଉପନ୍ୟାସର ନାମକରଣ କରିଛନ୍ତି 'ନଅ ତୁଣ୍ଡୀ' ।

ନଅ ତୁଣ୍ଡୀ ଓଡ଼ିଆ ଘରର ଏକ ଜୀବନ୍ତ ପ୍ରତିଛବି – ଏଥିରେ ସନ୍ଦେହ ନାହିଁ ।

## କାଳୀ ବୋହୂ

କୁନ୍ତଳା ହିନ୍ଦୁ ଧର୍ମରେ ସଂସ୍କାର ଆଣିବାକୁ ଚାହିଁଥିଲେ । ସେ ବାଲ୍ୟବିବାହର ବିରୋଧ କରିଛନ୍ତି । ୧୯୨୯ରେ ପ୍ରବର୍ତ୍ତିତ ସାରଦା ଆଇନକୁ ସେ ସମର୍ଥନ କରିଥିଲେ । "ଧୂଳିଖେଳ ଭିତରେ ଯାହାର ଜୀବନ ଗତି କରୁଛି ସେ ସମାଜ ଓ ପାରିବାରିକ ବନ୍ଧନ ବିଷୟରେ ସଚେତନ ହେବ ବା କିପରି ?"

କୁନ୍ତଳା କେବଳ ବାଲ୍ୟବିବାହର ବିରୋଧ କରି ନୀରବ ରହି ନାହାନ୍ତି । ବୈଧବ୍ୟ ଯନ୍ତ୍ରଣା ଦୂର କରିବା ଉଦ୍ଦେଶ୍ୟରେ ସେ ବିଧବା ବିବାହ ସଂପର୍କରେ ମତ ଦେଇଛନ୍ତି । ବଙ୍ଗନାରେ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର ବିଧବା ବିବାହପାଇଁ ଯେଉଁ ଆନ୍ଦୋଳନ କରିଥିଲେ ତାକୁ ଅକୁଣ୍ଠ ସମର୍ଥନ କରିଛନ୍ତି ।

ନାୟିକା ଲକ୍ଷ୍ମୀର ବୟସ ମାତ୍ର ଦଶ ହୋଇଥିବାବେଳେ ବିଧବା ହୋଇଛି । ସେ ପୁଣି କାଳୀ ବୋହୂ । ସେ ବାଲ୍ୟବିଧବା ହୋଇ ଯେତେବେଳେ ଦୁଃଖ ସାଗରରେ ବୁଡ଼ି ରହିଛି ସେତେବେଳେ ଲେଖିକା ତା'ର ପିତା ଉଦ୍ଦେଶ୍ୟରେ

କହିଛନ୍ତି – ''ତୁମ୍ଭ ଅଙ୍ଗରେ ଚନ୍ଦନ, ଅତର, ପାନ ବୋଳରେ ଓଠ ପାଚିଛି, ମାଣିଆବନ୍ଧି, ଟସରଯୋଡ଼ି ହେଲେ ତୁମ୍ଭର ଚଳୁ ନାହିଁ । ଅଥଚ ତୁମର ଯୁବତୀ କନ୍ୟା ତୁମରି ଆଗରେ ନିରାଭରଣା ମ୍ଳାନମୁଖୀ ଛେଦା ଲୁଗା ପିନ୍ଧି ବୁଲୁଚି ।''

ବିଧବାର ମାତାଙ୍କୁ ତାଙ୍କର ବ୍ୟଙ୍ଗୋକ୍ତି – ''ଆହେ ମାତା ! ନିଜେ ବୃଦ୍ଧା ବୟସରେ ପାଟିଆ, ସିନ୍ଦୂର, ମହଣ, କଜ୍ଜଳ ଛାଡ଼ି ନାହଁ । ପାନ ରଙ୍ଗରେ ଅଧର ରଙ୍ଗାଇଛ । × × ×

ତୁମରି କଡ଼ରେ ଠିଆ ହୋଇଥିବା ବିଧବା ଝିଅଟିର ହୃଦୟଭେଦୀ ଦୀର୍ଘ ନିଶ୍ୱାସ ତୁମକୁ ଶୁଭୁ ନାହିଁ କି ?''

ସମାଜ ବିରୋଧରେ ମଧ ଲେଖିକା ସ୍ୱର ଉତ୍ତୋଳନ କରିଛନ୍ତି – ''ଲକ୍ଷ୍ମୀ କିପାଁ ଆଜି ଏକାନ୍ତ ନିରାଶ୍ରୟା, ନିଃସଙ୍ଗ ଜୀବନ ବହନ କରି ଏ ଜଗତରେ ବଞ୍ଚିଛି ? କିପାଁ ଜଗତର ସମଗ୍ର ଭୋଗ ତା'ପାଇଁ ବାରଣ ? କିପାଁ ନାରୀତ୍ୱ, ମାତୃତ୍ୱରୁ ଆଜି ସେ ବଞ୍ଚିତା ?

ଶେଷକୁ ବିଧବା ଲକ୍ଷ୍ମୀଙ୍କୁ ଚନ୍ଦ୍ରୋଦୟ ପତ୍ନୀ ଭାବରେ ଗ୍ରହଣ କରିଛି । ସେଥିପାଇଁ ସେ ସମାଲୋଚିତ, ଲାଞ୍ଛିତ । ଏପରିକି ସମାଜ ପରିତ୍ୟକ୍ତ । ପିତା ଦ୍ୱାରିକାନାଥ କିନ୍ତୁ ଆନନ୍ଦିତ ହୋଇଛନ୍ତି । ସେ କହିଛନ୍ତି – ''ଆମ ପୁତ୍ର ଚନ୍ଦ୍ରୋଦୟ ଓଡ଼ିଶାର ଅନ୍ଧାର ଆକାଶରେ ଚନ୍ଦ୍ରୋଦୟ ।'' ସେମାନଙ୍କୁ ଆଶୀର୍ବାଦ କରିଛନ୍ତି ଓ ଦୀର୍ଘଜୀବୀ ହୋଇ ଦେଶର ହିତପାଇଁ ଲାଗିପଡ଼ିବାକୁ ପରାମର୍ଶ ଦେଇଛନ୍ତି ।

**ପରଶମଣି**

ଏହା ୧୯୨୪ ମସିହାରେ ବ୍ରଜସୁନ୍ଦର ଦାସଙ୍କ ସଂପାଦିତ 'ମୁକୁର' ଉପନ୍ୟାସ ମାଳାରେ ପ୍ରକାଶ ପାଇଥିଲା । ଏହା ହେଉଛି ଏ ପର୍ଯ୍ୟାୟର ପ୍ରଥମ ଉପନ୍ୟାସ ।

ପାରିବାରିକ ଜୀବନର ହସ ଓ ଅଶ୍ରୁ ଭିତରେ ତାଙ୍କର ଏହି ଉପନ୍ୟାସଟି ଗଢ଼ି ଉଠିଛି ।

ଗୋଟିଏ ମଧ୍ୟବିତ୍ତ ପରିବାରର ବୋହୂ ହୋଇଛି ଲଳିତା । ବୋହୂଭାବେ ଶାଶୂ ଓ ନଣନ୍ଦଙ୍କ ସ୍ନେହ ଓ ଆଦରରୁ ସେ ହୋଇଛି ବଞ୍ଚିତା । ସ୍ୱାମୀ ବିଦ୍ୟାଧର ମଧ ଉପଯୁକ୍ତ ଶ୍ରଦ୍ଧା ବା ସମ୍ମାନ ଦିଅନ୍ତି ନାହିଁ । ଶାଶୂ ଓ ନଣନ୍ଦ ଦୁର୍ବ୍ୟବହାର ତାଙ୍କୁ ଆଘାତ ଦେଇଛି । କାହାକୁ ବା ଭରସା କରି ଚଳିବେ ?

ମାତ୍ର କୁନ୍ତଳାଙ୍କ ଉପଦେଶ – ସଂସାର ବନ୍ଧନରେ ବାନ୍ଧି ହୋଇ ଗଲେ ସବୁଟା ସହିନେବାକୁ ପଡ଼ିବ । ଧୈର୍ଯ୍ୟ ଓ ସାହସ ଧରି କାର୍ଯ୍ୟ କଲେ ସବୁ ଦୁଃଖ ଦୂର ହେବ । ଲଳିତାଙ୍କ ଜୀବନରେ ତାହାହିଁ ଘଟିଛି । ସେ ସବୁ ଦୁଃଖ, ଦୈନ୍ୟ

ସହି ନେଇଛନ୍ତି । କୌଣସି ପ୍ରତିବାଦ କରି ନାହାନ୍ତି । ତାଙ୍କର ସହନଶୀଳ ଶକ୍ତିରେ ସମସ୍ତେ ଅବାକ୍ ହୋଇପଡ଼ିଛନ୍ତି । ଶେଷରେ ସେ ସମସ୍ତଙ୍କର ପ୍ରିୟପାତ୍ରୀ ହୋଇଛନ୍ତି । ଲଳିତା ପରଶମଣି ପାଲଟି ଯାଇଛନ୍ତି ।

ନାରୀ ଲାଗି ନାରୀ ଜାତି ଯେ ଶତ୍ରୁତା ଆଚରଣ କରେ, ତାହା ଏଥିରେ କୁନ୍ତଳା ପ୍ରତିପାଦନ କରିଛନ୍ତି । ନାରୀ ତା'ର ସ୍ୱଭାବଚରିତ୍ରର ସମୀକ୍ଷା କରି ତାହାକୁ ମାର୍ଜିତ କରିବା ଆବଶ୍ୟକ ବୋଲି କହିଛନ୍ତି ।

## ରଘୁ ଅରକ୍ଷିତ

ଏହା ସତ୍ୟ ଘଟଣା ଉପରେ ଆଧାରିତ । ପିତୃମାତୃହୀନ ରଘୁ ଓ ଜମିଦାର ଚନ୍ଦ୍ରଶେଖରଙ୍କ କନ୍ୟା ସୀତା ବାଲ୍ୟସାଥୀ । ବୟସ ବଢ଼ିବା ସଙ୍ଗେ ସଙ୍ଗେ ବାଲ୍ୟକାଳର ସ୍ନେହ ମମତା ପ୍ରେମରେ ପରିଣତ ହୋଇଛି । ମାତା ସରସ୍ୱତୀ, ପୁତ୍ର ବାବୁ ଓ ଗୃହର ଆଶ୍ରିତା ପୀତେଇ ନାନୀ – ସମସ୍ତେ ଚାହିଁଛନ୍ତି ରଘୁ ସହିତ ସୀତାର ବିବାହ ହେଉ । କିନ୍ତୁ ରଘୁ ଦରିଦ୍ର ଓ ନିଃସହାୟ ହୋଇଥିବାରୁ ଜମିଦାର ଚନ୍ଦ୍ରଶେଖର ସୀତାଙ୍କୁ ଏକ ଧନାଢ଼୍ୟ ପରିବାରର ଦିବାକର ସହିତ ବିବାହ ଦେଇଛନ୍ତି । ମାତ୍ର ବାପଘରକୁ ସୀତା ପଳାଇ ଆସିଛି । ପରେ ଅବଶ୍ୟ ସ୍ୱାମୀଙ୍କ ଘରକୁ ଯାଇଛି । ଗୋଟିଏ ପୁତ୍ରର ଜନନୀ ମଧ ହୋଇଛି । ଅତ୍ୟଧିକ ମଦ୍ୟପାନ ହେତୁ ଦିବାକର ଅକାଳ ମୃତ୍ୟୁମୁଖରେ ପଡ଼ିଛି । ସୀତା ପୁଣି ବାପଘରକୁ ଫେରିଆସିଛି ଓ ବୃଦ୍ଧ ପିତାଙ୍କ ସେବା କରିଛି । ରଘୁନାଥ ମଧ ମନଦୁଃଖରେ ଘର ଛାଡ଼ି ଚାଲିଯାଇଛି । ପରେ ମାୟାଙ୍କ ସହ ତା'ର ବିବାହ ହୋଇଛି । ମାୟାଙ୍କ ସହିତ ସେ ବି ସୁଖରେ ରହିଛି । ମାତ୍ର ପରେ ମାୟାର ଅକାଳ ମୃତ୍ୟୁ ହୋଇଛି । ବିଧବା ସୀତାକୁ ବିବାହ କରି ନ ପାରି ଶେଷରେ ରଘୁନାଥ ଦେଶସେବାରେ ନିଜକୁ ଉତ୍ସର୍ଗ କରିଛନ୍ତି ।

ନବଭାରତ ଷଷ୍ଠ ବର୍ଷ ୧୧ଶ ଓ ୧୬ଶ ସଂଖ୍ୟାରେ ରଘୁନାଥ ମିଶ୍ର 'ରଘୁ ଅରକ୍ଷିତ' ଉପନ୍ୟାସ ସମ୍ପର୍କରେ ଲେଖିଥିଲେ – ''ଫଳରେ ତାହା (ରଘୁ ଅରକ୍ଷିତ) ଉଦ୍ଦେଶ୍ୟମୂଳକ ହୋଇ ଗୋଟିଏ କପୋଳକଳ୍ପିତ ଘଟଣାରେ ପରିଣତ ହୋଇଛି । × × × ପ୍ରତିକୂଳ ଭାଗ୍ୟର ତାଡ଼ନାରେ ବଳିଷ୍ଠ ମାନବିକତା ଫୁଟିଉଠେ । ଏ ଆଦର୍ଶରେ ରଘୁନାଥଙ୍କୁ ଚିତ୍ରଣ କରିଥିଲେ ଉପନ୍ୟାସ ଅତି ସ୍ୱାଭାବିକ ଓ ଶିକ୍ଷଣୀୟ ହୋଇଥାନ୍ତା, କିନ୍ତୁ ଲେଖିକା ରଘୁ ଅରକ୍ଷିତଙ୍କୁ ଭାଗ୍ୟଦେବୀର ବରପୁତ୍ର କରି ଠିଆ କରାଇଛନ୍ତି । × × × ଏହି ହିସାବରେ ଦେଖିଲେ ରଘୁ ଅରକ୍ଷିତ ଗୋଟିଏ ଗଳ୍ପ ପରି ମନେ ହୁଏ ।''

## ଦିଲ୍ଲୀ ଚିଠି

ବିବାହ ପରେ କୁନ୍ତଳା କୁମାରୀ ଦିଲ୍ଲୀରେ ଅବସ୍ଥାନ କଲେ । କିଛି ଦିନ ପର୍ଯ୍ୟନ୍ତ ସେ ଓଡ଼ିଆ ସାହିତ୍ୟ ସହିତ ସମ୍ପର୍କ ରକ୍ଷା କରିପାରିଥିଲେ । ସେ ଅନ୍ୟାନ୍ୟ କାର୍ଯ୍ୟ ସହିତ ସେ 'ଦିଲ୍ଲୀ ଚିଠି' ନାମକ ଏକ ସାରସ୍ୱତ ପତ୍ର ଲେଖୁଥିଲେ ।

କୁନ୍ତଳା ଦିଲ୍ଲୀରେ ରହିଲେ ମଧ୍ୟ ଓଡ଼ିଶାକୁ ଭୁଲିପାରି ନ ଥିଲେ । ସେ ଓଡ଼ିଶାର ପାଣି, ପବନ ଏହାର ଐତିହ୍ୟ ଓ ପରମ୍ପରାକୁ ଖୁବ୍ ଭଲ ପାଉଥିଲେ । ତାହା ତାଙ୍କ ଭଳି ପ୍ରବାସୀ ଓଡ଼ିଆ ଜୀବନରେ କିପରି ପ୍ରଭାବ ପକାଇଛି, ତାହା ସେ ପ୍ରକାଶ କରୁଥିଲେ । ଏହା ମଧ୍ୟ ସାଧାରଣ ରଚନା ନ ଥିଲା ଓ ତାହାର ସାହିତ୍ୟିକ ମୂଲ୍ୟ ଖୁବ୍ ବେଶି ଥିଲା । ଚିଠିଗୁଡ଼ିକ ଜୀବନକୁ ଉନ୍ନତ ଓ ମାର୍ଜିତ କରିବାପାଇଁ ପ୍ରେରଣା ଯୋଗାଉଥିଲା । ଏହା ମଧ୍ୟ ପାଠକ ମହଲରେ ଘୋର ଆଗ୍ରହ ସୃଷ୍ଟି କରିଥିଲା ।

'ଦିଲ୍ଲୀ ଚିଠି' ପ୍ରଥମେ ଦୈନିକ 'ସମାଜରେ' ପ୍ରକାଶ ପାଇଲା । ତାହା ମଧ୍ୟ ବିଶେଷ ଆଦୃତ ହେଲା । ମାତ୍ର କେତେକ କାରଣ ଯୋଗୁଁ ତାହାର ପ୍ରକାଶନ ବନ୍ଦ ହୋଇଗଲା । ଓଡ଼ିଶାର ଆଗ୍ରହୀ ପାଠକ ଏଥିରେ ନିରାଶ ହୋଇପଡ଼ିଲେ । ପାଠକମାନଙ୍କ ଆଗ୍ରହ ଲକ୍ଷ୍ୟ କରି କୁନ୍ତଳା 'ସମାଜରେ' ପ୍ରକାଶ ପାଉଥିବା 'ଦିଲ୍ଲୀ ଚିଠି'କୁ ତତ୍କାଳୀନ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା 'ସହକାର'ରେ ପୁନଃ ପ୍ରକାଶର ବ୍ୟବସ୍ଥା କଲେ । ଆଠୋଟି 'ଦିଲ୍ଲୀ ଚିଠି' ପ୍ରକାଶ ପାଇଲାପରେ ତାହାର ପ୍ରକାଶନ ମଧ୍ୟ ବନ୍ଦ ହୋଇଗଲା ।

ପ୍ରଥମ ଦିଲ୍ଲୀ ଚିଠିରେ କୁନ୍ତଳା କୁମାରୀ କଳିଙ୍ଗର ଅତୀତ ଗୌରବଗାଥା ମନେପକାଇ ଦେଇଛନ୍ତି । ଦିନେ କଳିଙ୍ଗ ସନ୍ତାନ ଶୌର୍ଯ୍ୟ, ବୀର୍ଯ୍ୟ, ବୀରତ୍ୱପାଇଁ ବିଶ୍ୱରେ ସମ୍ମାନିତ ହେଉଥିଲା । ଏବେ କିନ୍ତୁ ତାକୁ ଭୀରୁତା ଓ ଦୁର୍ବଳତା ଗ୍ରାସ କରିଛି । କୁନ୍ତଳା ସରକାରୀ ନଥିପତ୍ରରୁ 'ଓଡ଼ିଶା' ଶବ୍ଦ ଉଠାଇଦେଇ 'ଅଙ୍ଗ କଳିଙ୍ଗ' ଲେଖାଯିବାକୁ ପରାମର୍ଶ ଦେଇଛନ୍ତି । ଆଉ ଆହ୍ୱାନ ଦେଇଛନ୍ତି –

"ଅଙ୍ଗ ବଙ୍ଗ ତୈଲଙ୍ଗ ପଞ୍ଜାବ ଆଗେ
ଉତ୍କଳର ତୂର୍ଯ୍ୟନାଦ ଶୁଣାଅ ସରାଗେ ।"

ଅଖଣ୍ଡ ଉତ୍କଳ ଗଠନପାଇଁ କୁନ୍ତଳା ଆହ୍ୱାନ ଦେଇଛନ୍ତି । ବିଚ୍ଛିନ୍ନାଞ୍ଚଳ ଉତ୍କଳ ସହିତ ମିଶିବା ଆବଶ୍ୟକ । ସିଂହଭୂମ, ମେଦିନୀପୁର, ଜୟପୁର, ଫୁଲଝର, କାନ୍ଥି ଓ ବସ୍ତର ପ୍ରଭୃତି ଖାଣ୍ଟି ଓଡ଼ିଆ ଅଞ୍ଚଳ ସବୁ ମିଶ୍ରଣରେ ବିଶାଳ ଉତ୍କଳ ଗଠନ ସମ୍ଭବ ହେବ । ସମସ୍ତ ଓଡ଼ିଆଙ୍କୁ ଏ ଦିଗରେ ମନଃପ୍ରାଣ ଢାଳି ଦେବାକୁ ଡାକ ଦେଇଛନ୍ତି ।

ଦ୍ୱିତୀୟ ଦିଲ୍ଲୀ ଚିଠିରେ ନିଜ ଜାତି ଓ ନିଜ ଦେଶକୁ ମହାନ୍ କରି ତୋଳିବାକୁ କୁନ୍ତଳା କହିଛନ୍ତି । ତା'ର ଉଦାହରଣ – "ଆମର ଜୟଦେବ, କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ, କବି ଦୀନକୃଷ୍ଣ ପ୍ରମୁଖ ଥାଉ ଥାଉ ବିଶ୍ୱକବି ରବୀନ୍ଦ୍ରନାଥଙ୍କୁ ଗୁରୁତ୍ୱ ଦିଆଯାଉଛି କାହିଁକି ?"

ସେ ପୁଣି ଖେଦ ପ୍ରକାଶ କରିଛନ୍ତି – "ଆମେ ପରର ଅଇଣ୍ଠା ପତର ସାଉଁଟିବାରେ ବ୍ୟସ୍ତ । ଆମ ପୁଅଙ୍କର ଶିଳ୍ପ, ସାହିତ୍ୟ, ସଙ୍ଗୀତ, ରାଜନୀତି ସିନା ଆମର ସମ୍ପତ୍ତି !"

କୁନ୍ତଳା ପୂଜ୍ୟ ପୂଜା ପ୍ରତି ଗୁରୁତ୍ୱ ପ୍ରଦାନ କରିଛନ୍ତି । ଉତ୍କଳମଣି ଗୋପବନ୍ଧୁ, ଉତ୍କଳଗୌରବ ମଧୁସୂଦନ, ଉତ୍କଳର ତାନସେନ ମୋହନ ଗୋସ୍ୱାମୀ, ସାମନ୍ତ ଚନ୍ଦ୍ରଶେଖର ଓ ଐତିହାସିକ କୃପାସିନ୍ଧୁ ପ୍ରଭୃତିଙ୍କୁ ଉପଯୁକ୍ତ ସମ୍ମାନ ଦେବାକୁ ନିବେଦନ କରିଛନ୍ତି ।

ବିପ୍ଳବୀ ଭଗତ ସିଂହଙ୍କ ଭଳି ଫାଶୀଖୁଣ୍ଟରେ ଝୁଲିବାପାଇଁ ଆଗେଇ ଆସିବାପାଇଁ ସେ ଓଡ଼ିଆମାନଙ୍କୁ ଡାକରା ଦେଇଛନ୍ତି ।

ତୃତୀୟ ଦିଲ୍ଲୀ ଚିଠିରେ ଓଡ଼ିଆ ପୁଅର ଅତୀତ ଗୌରବ କଥା ମନେ ପକେଇ ଦେଇଛନ୍ତି । ଏଇ ଓଡ଼ିଆ ପୁଅ ମୁଣ୍ଡରୁ ଦିଗବାରିଣୀ ଯନ୍ତ୍ର ବାହାରିଥିଲା । ପ୍ରମାଣ ହେଉଛି କୋଣାର୍କର ମନ୍ଦିର ଉପରେ ଥିବା ଚୁମ୍ବକ । ଉତ୍କଳର ସାଧବବୋହୂମାନେ ବୋଇତ ବନ୍ଦାପନା କରିବାକୁ ଯାଉଥିଲେ । ଭାରତରେ ଅନ୍ୟ କୋଉ ଜାତିର ଇତିହାସରେ ବୋଇତ ବନ୍ଦାଣର ଚିତ୍ର ନାହିଁ । ନୌବାଣିଜ୍ୟରେ ଓଡ଼ିଆ ଜାତି ଯେ ପ୍ରସିଦ୍ଧି ଲାଭ କରିଥିଲା, ଏହା ତାହାର ପ୍ରମାଣ ଦିଏ ବୋଲି ସେ କହିଛନ୍ତି । କୁନ୍ତଳା ଭଗବାନ୍‌ଙ୍କଠାରେ ପ୍ରାର୍ଥନା କରିଛନ୍ତି –

"ସେଦିନ ଶୀଘ୍ର ଆସୁ । ଉତ୍କଳ ଧନ, ଜନ, ଲକ୍ଷ୍ମୀର ଭଣ୍ଡାର ହେଉ ।"

ଦିଲ୍ଲୀରେ ଥିଲାବେଳେ କୁନ୍ତଳା ବିଭିନ୍ନ ଅଞ୍ଚଳ ଭ୍ରମଣ କରିଥିଲେ । ସେ ଓଡ଼ିଶାବାସୀଙ୍କ ଚଳଣି ସହିତ ଅନ୍ୟ ଅଞ୍ଚଳବାସୀଙ୍କ ଚଳଣି ସହିତ ତୁଳନା କରିଛନ୍ତି । ସେ ଦୁଃଖର ସହିତ ଉଲ୍ଲେଖ କରିଛନ୍ତି ଯେ ଓଡ଼ିଆମାନେ ଉତ୍ତମ ଖାଦ୍ୟ ଖାଇବାକୁ ପାଆନ୍ତି ନାହିଁ । କଲିକତା ବା ରେଙ୍ଗୁନ ପ୍ରଭୃତି ସହରକୁ ଶ୍ରମଜୀବୀ ହିସାବରେ ଯାଆନ୍ତି । ଦିଲ୍ଲୀର ମହିଳାମାନଙ୍କ ବିଷୟରେ ସେ ଲେଖିଛନ୍ତି ଯେ ସେମାନେ ସାହସୀ, ସେମାନେ ଅତିଥିପରାୟଣା । ସେମାନେ ଏପରିକି ପଶୁପକ୍ଷୀମାନଙ୍କୁ ପ୍ରତିଦିନ ଖୁଆଇବାରେ ତୃପ୍ତି ଲାଭ କରନ୍ତି । ଓଡ଼ିଶାବାସୀ ସେହିଭଳି ଆଦର୍ଶ ସ୍ଥାନୀୟ ହେବେ ବୋଲି ସେ ଆଶା କରିଛନ୍ତି । ଏହିସବୁ ବିଷୟ 'ଦରିଦ୍ର ଓଡ଼ିଆଙ୍କ ଦୁର୍ଦ୍ଦଶା' ଶିରୋନାମରେ ପ୍ରକାଶ ପାଇଥିଲା ।

ପଞ୍ଚମ ଦିଲ୍ଲୀ ଚିଠିରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣପାଇଁ ସେ ଓଡ଼ିଶାବାସୀଙ୍କୁ ଆହ୍ୱାନ ଦେଇଛନ୍ତି । ସେ ଲେଖିଥିଲେ –

''ଟାଣୁଆ ଓଡ଼ିଆ ଜିଣିଲୁ ଦରିଆ
କଲୁ କାରିଗରି ପଥରରେ ଠିଆ,
ତୋର ଚକ୍ରବର୍ତ୍ତୀ ଗଜପତି ପାଦେ
ପୃଥିବୀ ପଣନ୍ତ ଥିଲା ପାରି ।''

ଷଷ୍ଠ ଦିଲ୍ଲୀ ଚିଠିରେ କୁନ୍ତଳା ମେଦିନୀପୁର ବିଷୟ ଉଲ୍ଲେଖ କରିଛନ୍ତି । ମେଦିନୀପୁର ଖାଣ୍ଟି ଓଡ଼ିଆ ଅଞ୍ଚଳ । ଏହି ଅଞ୍ଚଳ ଓଡ଼ିଶାରେ ଅନ୍ତର୍ଗତ ହେବାକୁ ଚାହିଁଛନ୍ତି । କେଶ ମିଶ୍ରଣ କମିଟିଦ୍ୱାରା ନ ହେଲେ ମଧ ଆଶା ନ ହରାଇ ନୂତନ ଶକ୍ତି ସଞ୍ଚୟ କରି ଆଗେଇବାକୁ ଉଦ୍‌ବୋଧନ ଦେଇଛନ୍ତି । ସେଠାରେ ଓଡ଼ିଆ ପ୍ରଚାର ଦିଗରେ ଲାଗିପଡ଼ିବାକୁ ତାଗିଦା ଦେଇଛନ୍ତି । ତାଙ୍କରି ଭାଷାରେ – ''ଓଡ଼ିଆ ଭାଷା, ଓଡ଼ିଆର ଅତୀତ ଗୌରବ, ଜାତୀୟତା ପ୍ରଚାର ଯଦି ତୁମ୍ଭେ ମେଦିନୀପୁରରେ ନିଜେ ନ କରିବ, ବଙ୍ଗାଳୀଙ୍କ ପ୍ରଭାବରେ ସେଠି ଓଡ଼ିଆଙ୍କର କୃତିତ୍ୱ ଲୋପ ପାଇଯିବ ।'' ଏହି ଚିଠିଟି 'ମେଦିନୀପୁର ମିଶ୍ରଣ' ଶିରୋନାମରେ ୧୯୩୨ ମସିହାରେ ପ୍ରକାଶ ପାଇଥିଲା ।

ସପ୍ତମ ଦିଲ୍ଲୀ ଚିଠିରେ କୁନ୍ତଳା ଅସ୍ପୃଶ୍ୟତା ନିବାରଣ ବିଷୟ ଉଲ୍ଲେଖ କରିଛନ୍ତି । ଅସ୍ପୃଶ୍ୟତା ନିବାରଣପାଇଁ ମହାତ୍ମା ଗାନ୍ଧୀ ଆନ୍ଦୋଳନ ଚଳାଇଥିଲେ । ଏହାର ମୂଳୋତ୍ପାଟନ ନ ହେଲେ ପ୍ରଗତି ଅସମ୍ଭବ ବୋଲି କୁନ୍ତଳା କୁମାରୀ କହିଛନ୍ତି । ଓଡ଼ିଶା ଏ ଦିଗରେ ପ୍ରଥମେ ପଦକ୍ଷେପ ନେବାକୁ ସେ ପରାମର୍ଶ ଦେଇଛନ୍ତି ।

ଅଷ୍ଟମ ଦିଲ୍ଲୀ ଚିଠିରେ କୁନ୍ତଳା ଓଡ଼ିଆଙ୍କ ହୀନମନ୍ୟତାକୁ ନିନ୍ଦା କରିଛନ୍ତି । ଓଡ଼ିଶାର ନରପତିମାନେ 'ବୀରଶ୍ରୀ' ଉପାଧି ଧାରଣ କରୁଥିଲେ । ଓଡ଼ିଆ ନିଜକୁ 'ବୀରଶ୍ରୀ' ଓ 'ବୀର ଶ୍ରୀମତୀ' ମନେ କରିପାରିଲେ ଓଡ଼ିଆମାନଙ୍କ ମଧ୍ୟରେ ସ୍ୱାଭିମାନ ସୃଷ୍ଟି ହେବ ଓ ସେମାନେ ପ୍ରଗତି ପଥରେ ଆଗେଇବେ । ସେ ଏହି ଲକ୍ଷ୍ୟରେ ଲେଖିଛନ୍ତି –

''ଆମେ କଳିଙ୍ଗର ବୀରଶ୍ରୀ ସନ୍ତାନ
ବୀରଶ୍ରୀ ଆମର ଜାତୀୟ ସମ୍ମାନ
ବୀରଶ୍ରୀ ଜଗତେ ଆମ ଜୟ ଧ୍ୱଜା
ଭାରତର ପ୍ରତି ପ୍ରାନ୍ତେ ପାଉ ପୂଜା ।

× × ×

ବୀରଶ୍ରୀ ଭାରତ ବୀରଶ୍ରୀ ଉତ୍କଳ
ଯଶୋଗାନେ ପୂରୁ ପୃଥିବୀ ମଣ୍ଡଳ ।''

ସୁଦୂର ଦିଲ୍ଲୀରେ ରହିଲେ କୁନ୍ତଳା । ଏହି ପତ୍ର ମାଧ୍ୟମରେ ଓଡ଼ିଆ ପ୍ରାଣରେ ସେ ସ୍ପନ୍ଦନ ସୃଷ୍ଟି କରିଛନ୍ତି । ଭାରତର ଅନ୍ୟ କୌଣସି ସାହିତ୍ୟରେ ଏପରି ପତ୍ର ରଚନା ଦେଖାଯାଏ ନାହିଁ । ଏହାହିଁ ହେଉଛି କୁନ୍ତଳା କୁମାରୀଙ୍କ ବୈଶିଷ୍ଟ୍ୟ ଓ ଗୌରବ ।

## ହିନ୍ଦୀ କବିତା

କୁନ୍ତଳାଙ୍କର ହିନ୍ଦୀ ସାହିତ୍ୟ ପ୍ରତି ଗଭୀର ଶ୍ରଦ୍ଧା ଥିଲା । ସେ ତେଣୁ ହିନ୍ଦୀ ଭାଷାକୁ ଅଳ୍ପ ଦିନରେ ଆୟତ୍ତ କରିପାରିଥିଲେ । ସେ କ୍ରମେ ହିନ୍ଦୀ ଭାଷାରେ କବିତା ରଚନା ଆରମ୍ଭ କଲେ । ସେ ସ୍ୱରଚିତ 'ବରମାଳା'ର ମୁଖବନ୍ଧରେ ଲେଖିଛନ୍ତି – ''ମୁଁ ହିନ୍ଦୀ ସାହିତ୍ୟକୁ କିଛି ଦେବାକୁ ଯାଉ ନାହିଁ ଅଥବା ସେଥିରେ ପ୍ରଶଂସା ପାଇବାର ଆଶା ରଖି ନାହିଁ । ତଥାପି ହିନ୍ଦୀ ଭାଷାରେ ଗୁଡ଼ିଏ ଗାଇବାପାଇଁ ପ୍ରବଳ ଇଚ୍ଛା ଜନ୍ମିବାରୁ ମୁଁ ଯେକୌଣସି ରୂପରେ ହିନ୍ଦୀରେ ଗାଇ ମୋର ଅନ୍ତରକୁ ହାଲୁକା କରୁଛି ।''

ତାଙ୍କର ଗୋଟିଏ ହିନ୍ଦୀ କବିତାର ଗୋଟିଏ ଅଂଶ –

''କୋଇ ସୁନେ ଅଗର ନ ସୁନେ ୟହି ଗାନ୍
କୋଇ କରେ ମାନ୍ ଅଥବା ଅପମାନ୍
ମୁଝେ ଉସ୍‌ମେ କ୍ୟା ହୈ ମୈ ତୋ ମତବାଲି
ଭରି ହୁଇ ଦିଲ୍‌କୀ ପାନୀ କରୁଁ ଖାଲି ।'' ଇତ୍ୟାଦି

'ଦିଲ୍‌କା ଦର୍‌ଦ', 'ପରମ ପ୍ରେମିକ' ପ୍ରଭୃତି କେତୋଟି କବିତା 'ବରମାଳା'ରେ ଅଛି । 'ଦିଲ୍‌କି ଦର୍‌ଦ'ର ଗୋଟିଏ ପଦ –

ଦିଲ୍‌କା ଦର୍ଦ ମୈଁ କହୁଁ କିସ୍‌କୋ
କୋଇ ଦର୍ଦ ସୁନନେବାଲୀ ଭୀ ହୈ
ଆଖ କେ ଆଁସୁଆ 'ଖେଲାଉଁ କିସେ
କୋଇ ଉସେ ଛନେବାଲୀ ଭୀ ହୈ ।''

ହିନ୍ଦୀ ସାହିତ୍ୟ ଓ ହିନ୍ଦୀ ଭାଷାଭାଷୀ ସାହିତ୍ୟିକଙ୍କ ସହ କୁନ୍ତଳାଙ୍କର ଘନିଷ୍ଠ ସମ୍ପର୍କ ଥିଲା । ହିନ୍ଦୀ ସାହିତ୍ୟର ଜଣେ ପ୍ରତିଷ୍ଠିତ ସାହିତ୍ୟିକ 'ଜୈନେନ୍ଦ୍ର କୁମାର' କୁନ୍ତଳାଙ୍କ ଜୀବନକୁ ଆଧାର କରି 'କଲ୍ୟାଣୀ' ନାମରେ ଏକ ଉପନ୍ୟାସ ରଚନା କରିଛନ୍ତି । ଓଡ଼ିଶାର ଜଣେ ସାରସ୍ୱତ ସାଧିକାଙ୍କ ଜୀବନକୁ କେନ୍ଦ୍ର କରି ଉପନ୍ୟାସ ଅନ୍ୟ ଭାଷାରେ ରଚନା କରିବା ଏହା ହେଉଛି ପ୍ରଥମ ।

**ଇଂରାଜୀ ରଚନା** : The Neglected Land

କୁନ୍ତଳା କୁମାରୀ ମଧ୍ୟ ଇଂରାଜୀରେ କବିତା ରଚନା କରିଥିଲେ । ତାଙ୍କ ରଚିତ କେତେକ କବିତା ଏବେ ମିଳୁ ନାହିଁ । ତେବେ ଗୋଟିଏ କବିତା

'The Neglected Land' ମିଳିଅଛି । ଦେଶ ମିଶ୍ରଣ ବେଳେ ଏହା ରଚିତ ହୋଇଥିଲା । ଏଥିରୁ ତାଙ୍କର ଇଂରାଜୀ ଭାଷାରେ ଦକ୍ଷତା ଧାରଣା କରି ହୁଏ ।

The Neglected Land
" Oh ! Land of famine, fire, flood.
Thou home of pain and misery
In all rivers, flows warm thy blood
'We sigh and shed our tears for thee.
Weep no more, Oh ! I weep no more,
Hail the coming happy man
× × ×
In the battle field of life,
Let us firmly take our stand
Lift our heads in stormy strife,
With faith in God and motherland !"

କୁନ୍ତଳା କୁମାରୀ ଥିଲେ ଅସାଧାରଣ ଶକ୍ତିର ଅଧିକାରିଣୀ । ପାରିବାରିକ ଜଞ୍ଜାଳ ମଧ୍ୟରେ ଥାଇ ସେ ସାହିତ୍ୟର ବିଭିନ୍ନ ବିଭାଗରେ ଯେପରି ଲେଖନୀ ଚାଳନା କରିଛନ୍ତି, ତାହା ବାସ୍ତବିକ ବିସ୍ମୟୋଦ୍ଦୀପକ । ମନକୁ ଯେତେବେଳେ ଯାହା ଆସିଛି, ସେ ଲେଖିଛନ୍ତି । ଭଲ ମନ୍ଦର ବିଚାର କୁନ୍ତଳାଙ୍କ ପାଖରେ ନ ଥିଲା । ଭାବନାକୁ ପ୍ରକାଶ କରିବା ଥିଲା ତାଙ୍କର ସହଜାତ ଗୁଣ ।

ବିଶିଷ୍ଟ କବି ମାୟାଧର ମାନସିଂହଙ୍କ ଭାଷାରେ – "ବାଦକ ବଂଶୀର ଫୋଡ଼ରେ ଆଙ୍ଗୁଠି ମାରୁ ମାରୁ ହଠାତ୍ ଯେପରି ମନୋମତ ସ୍ୱର ପାଇଯାଏ, କୁନ୍ତଳା ଏଣୁ ତେଣୁ ଗାଉ ଗାଉ ଈଶ୍ୱରଙ୍କ କଥା ଗାଇବାକୁ ଆସି ସେହିପରି ତାଙ୍କ ପ୍ରାଣ ବୀଣାର ଗୋଟିଏ ତାରକୁ ହାତମାରି ଦେଇଛନ୍ତି, ତାହାର ସ୍ୱର ତାଙ୍କର ସକଳ ବ୍ୟକ୍ତିତ୍ୱକୁ ଏପରି ଝଂକୃତ କରିଦେଲା ଯେ ସେ ଆଉ ସେ ସ୍ୱରର ମୋହ ଜୀବନଯାକ ଛାଡ଼ି ପାରିଲେ ନାହିଁ ।"

## ଶେଷ ନିଶ୍ୱାସ ତ୍ୟାଗ

ବିବାହ ପରଠୁଁ କୁନ୍ତଳା ଦିନକପାଇଁ ସୁଦ୍ଧା ସୁଖୀ ନ ଥିଲେ ବୋଲି କୁହାଯାଏ । ତାଙ୍କର ଦୁଇଟି କନ୍ୟା ସନ୍ତାନ ପରେ ଗୋଟିଏ ପୁତ୍ରସନ୍ତାନ ଜନ୍ମ ହେଲା । ସେ କିନ୍ତୁ ୧ ମାସ ୧୫ ଦିନ ପରେ ମୃତ୍ୟୁବରଣ କଲା । କୁନ୍ତଳା ତା' ମୃତ୍ୟୁରେ ପାଗଳିନୀ ଭଳି ହୋଇଯାଇଥିଲେ । ୧୯୩୭ ମସିହା ଶେଷ ଆଡ଼କୁ ତାଙ୍କର ପୁଣି ଗର୍ଭ ଲକ୍ଷଣ ଦେଖାଦେଲା । କୁନ୍ତଳା ଆନନ୍ଦରେ ଆତ୍ମହରା ହୋଇପଡ଼ିଲେ । ତାଙ୍କର କୁଳଭୂଷଣ ସନ୍ତାନ ଜନ୍ମ ହେବ, ଆଉ କି ଭୟ ? ପ୍ରସବ ପରେ ତାଙ୍କର ଅଧିକ ରକ୍ତସ୍ରାବ ହେଲା । ପୁତ୍ରଟିଏ ମଧ୍ୟ ଜନ୍ମ

ହେଲା । କ'ଣ ହେଲା ବୋଲି ସେ ପଚାରିଲେ । ଦାସୀ ଆସି କହିଲା – ପୁଅଟିଏ । ସେ ଆନନ୍ଦରେ ଅଧୀର ହୋଇ ହସୁ ହସୁ ମୂର୍ଚ୍ଛା ହୋଇଗଲେ । ପରେ ପରେ କୁନ୍ତଳାକୁମାରୀ ଚିରଦିନପାଇଁ ଆଖି ବୁଜିଦେଲେ ।

କୁନ୍ତଳାଙ୍କର ଶବସତ୍କାର ହିନ୍ଦୁ ବ୍ରାହ୍ମଣମାନଙ୍କଦ୍ୱାରା ହେଲା । ଶବ ଶୋଭାଯାତ୍ରାରେ ବହୁ ଦେଶକର୍ମୀ, ଗଣ୍ୟମାନ୍ୟ ବ୍ୟକ୍ତି, ବହୁ ସ୍କୁଲ କଲେଜର ଛାତ୍ର, ଅଧ୍ୟାପକ, ବିଭିନ୍ନ ସଂସ୍ଥାର ପ୍ରତିନିଧିମାନେ ଯୋଗ ଦେଇଥିଲେ । ଯମୁନା କୂଳରେ ହିନ୍ଦୁ ଶ୍ମଶାନରେ ତାଙ୍କ ଶବ ଦାହ କରାଯାଇଥିଲା ।

ଓଡ଼ିଶାର ବିଶିଷ୍ଟ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ କୁନ୍ତଳାଙ୍କ ଶ୍ରଦ୍ଧାଞ୍ଜଳି ଦେଇ ଲେଖିଥିଲେ – ''କୁନ୍ତଳାଙ୍କ ପରି ପ୍ରତିଭାଶାଳିନୀ ନାରୀକବି ଆଜିଯାକେ ଓଡ଼ିଶାରେ ଜନ୍ମିଥିବାର ଦ୍ୱିତୀୟ ଉଦାହରଣ ଖୋଜିବାପାଇଁ ବିଶୁଦ୍ଧତମ ଓଡ଼ିଆ ଭକ୍ତଙ୍କ ମୁଣ୍ଡ ମଧ୍ୟ ବୁଲାଇଯିବ । ଜୀବନର ଅଧିକାଂଶ ସମୟ ବିଦେଶରେ ରହି, ପୃଥକ୍ ଧର୍ମଗୋଷ୍ଠୀରେ ଜନ୍ମ ଏବଂ ବିଦେଶୀ ଭାଷାରେ ଶିକ୍ଷା ଲାଭ କରି ମଧ୍ୟ କୁନ୍ତଳା ଏହାର ନଦୀ, ନାଳ, ଗ୍ରାମ ପ୍ରାନ୍ତର, ଦେବଦେବୀ, ଧନୀ–ଦରିଦ୍ର ଓ ସୁଖ–ଦୁଃଖପାଇଁ ଯେତେ ପ୍ରାଣ ଓ ଆବେଗ ଢାଳି ଦେଇଥିଲେ, ତାହାକୁ ଓଜନ କରି ତାଙ୍କଠାରୁ ଅଧିକ ଓଡ଼ିଆ ହୋଇ ଆଉ କେଉଁ ପୁଅ ବା କେଉଁ ଝିଅ ଏ ଦେଶରୁ ମିଳିବେ ?''

ରାୟବାହାଦୁର ଭିକାରିଚରଣ ପଟ୍ଟନାୟକ ମଧ୍ୟ କୁନ୍ତଳାକୁମାରୀଙ୍କ ଅକାଳ ମୃତ୍ୟୁରେ ଖେଦ ପ୍ରକାଶ କରିଛନ୍ତି । ସେ ଯେଉଁ କାବ୍ୟକବିତା ରଚନା କରିଛନ୍ତି ତାହା ସବୁଦିନପାଇଁ ଓଡ଼ିଶାରେ ସୌରଭ ବିତରଣ କରୁଥିବ ବୋଲି ଆଶା ପ୍ରକାଶ କରିଛନ୍ତି ।

''× × × ×
ଅକାଳରେ ଯାହା ଯାଇଅଛ ଚାଲି
ତୁମ୍ଭ ସ୍ଥାନ ଟିକେ ରଖିଦେଇ ଖାଲି
କିନ୍ତୁ ବାଜିଅଛି ଯେଉଁ ବୀଣା ତାର
ଶୁଭୁଥିବ ସଦା ତାହାର ଝଙ୍କାର,
ଗୁନ୍ଥିଅଛ ଯେଉଁ କୁସୁମ ଯତନେ
ସୌରଭ ସଦା ତ ଖେଳିବ ପବନେ ।''

ଏହା ସତ୍ୟ ପ୍ରମାଣିତ ହୋଇଅଛି । କୁନ୍ତଳା କୁମାରୀ ଓଡ଼ିଆ ସାହିତ୍ୟ ଆକାଶରେ ଜାଜ୍ୱଲ୍ୟମାନ ତାରକା ଭଳି ପ୍ରତିଭାତ ହେଉଛନ୍ତି ।



## ବ୍ୟାସକବି
# ଫକୀରମୋହନ

ଫକୀରମୋହନ ସେନାପତି ଆଧୁନିକ ଓଡ଼ିଆ ସାହିତ୍ୟର ଏକ ଯୁଗାନ୍ତକାରୀ ସ୍ରଷ୍ଟା । ସେ ଆବିର୍ଭାବ ହେଲା ବେଳକୁ ଓଡ଼ିଶାରେ ଚରମ ବିପତ୍ତି ପଡ଼ିଥିଲା । ଇଂରେଜମାନେ ରାଜ୍ୟ ଶାସନ କରୁଥିଲେ । ଲୋକମାନଙ୍କର ଦୁଃଖ-ଦୁର୍ଦ୍ଦଶାର ସୀମା ନ ଥିଲା । ଶାସକମାନେ ନିଜ ଧର୍ମ ପ୍ରଚାର କରିବା ଫଳରେ ଧର୍ମ ଜଗତରେ ଗ୍ଲାନି ଦେଖାଦେଇଥିଲା । ଭାଷା କ୍ଷେତ୍ରରେ ମଧ୍ୟ ଚଡ଼କ ପଡ଼ିଥିଲା । ବଙ୍ଗଳା ଭାଷାର ପ୍ରଚଳନପାଇଁ ଯୋଗାଡ଼ ଚାଲିଥିଲା । ଏପରି ଦୁର୍ଦ୍ଦିନରେ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବାପାଇଁ ଯେଉଁମାନେ ଲେଖନୀ ଚାଳନା କଲେ, ସେମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଥିଲେ ବ୍ୟାସକବି ଫକୀରମୋହନ । ସେ ଉପନ୍ୟାସ, ଗଳ୍ପ ପ୍ରଭୃତି ଲେଖି ଓଡ଼ିଆ ସାହିତ୍ୟକୁ ଦୀପ୍ତିମନ୍ତ କଲେ । ଫକୀରମୋହନ ଆଧୁନିକ ଓଡ଼ିଆ ସାହିତ୍ୟ ଆକାଶରେ ଏବେବି କାଳସୂର୍ଯ୍ୟ ପରି ଶୋଭା ପାଉଛନ୍ତି ।

### ଜନ୍ମ ଓ ବାଲ୍ୟକାଳ

ଫକୀରମୋହନ ୧୮୪୩ ମସିହା ଜାନୁଆରୀ ମାସ ମକର ସଂକ୍ରାନ୍ତି ଦିନ ବାଲେଶ୍ୱର ଜିଲ୍ଲାର ମଲିକାଶପୁର ନାମକ ସ୍ଥାନରେ ଜନ୍ମଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଲକ୍ଷ୍ମଣଚରଣ ସେନାପତି ଓ ମାତାଙ୍କ ନାମ ତୁଳସୀ ଦେଈ ।

ତାଙ୍କର ବଡ଼ଭାଇ ଫକୀରମୋହନଙ୍କ ଜନ୍ମ ପୂର୍ବରୁ ମୃତ୍ୟୁ ମୁଖରେ ପଡ଼ିଥିଲେ । ସେଥିପାଇଁ ତାଙ୍କ କାନର ଉପରିଭାଗକୁ ଫୋଡ଼ି ଦିଆଯାଇଥିଲା । ତାହା କଲେ ଯମ ଦେବତାଙ୍କ ଦୃଷ୍ଟି ପଡ଼େ ନାହିଁ ବୋଲି ବିଶ୍ୱାସ ଥିଲା । ଦେଢ଼ବର୍ଷ ବୟସରେ ଫକୀରମୋହନଙ୍କ ପିତୃବିୟୋଗ ଘଟିଲା । ତା'ର ବର୍ଷକ ପରେ ମା'ଙ୍କର ମୃତ୍ୟୁ ହେଲା । ଏହାପରେ ସେ ପିତାମହୀ କୁଚିଳାଦେଈଙ୍କଦ୍ୱାରା ଲାଳିତ ପାଳିତ ହେଲେ । ଫକୀରମୋହନ ତାଙ୍କୁ ଠାକୁରମା' ବୋଲି ଡାକୁଥିଲେ ।

ପିଲାଦିନେ ଫକୀରମୋହନ ଅର୍ଶ ପ୍ରଭୃତି ରୋଗରେ ପୀଡ଼ିତ ହେଲେ । ପିତାମହୀଙ୍କ ଅକ୍ଳାନ୍ତ ଯତ୍ନ ଓ ସେବା ଫଳରେ ସେ କ୍ରମେ ଆରୋଗ୍ୟ ଲାଭ କଲେ । ଫକୀରମୋହନଙ୍କ ପ୍ରଥମ ନାମ ଥିଲା ବ୍ରଜମୋହନ । ମାତ୍ର ରୋଗମୁକ୍ତିପାଇଁ ପିତାମହୀ ତାଙ୍କୁ ପୀରଙ୍କଠାରେ ଯାଚିଥିଲେ । ରୋଗ ଭଲ ହେଲେ ତାଙ୍କୁ ପୀରଙ୍କର ଗୋଲାମ ବା ଫକୀର କରିଦେବେ ବୋଲି କଥା ଦେଇଥିଲେ । ରୋଗମୁକ୍ତ ହେଲା ପରେ ସେ ଅବଶ୍ୟ ଫକୀରମୋହନଙ୍କୁ ପୀରଙ୍କୁ ଦେଇ ନ ଥିଲେ । ମାତ୍ର ପ୍ରତିଜ୍ଞା ରକ୍ଷା ଲାଗି ପୁତ୍ରକୁ ମହରମ ସମୟରେ ଫକୀର କରାଇଥିଲେ । ସେ ଫକୀର ବେଶ ଧରି ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଭିକ୍ଷା ମାଗୁଥିଲେ । ଯାହା ମିଳୁଥିଲା ସେଥିରେ ସିର୍ଣ୍ଣି ବା ଭୋଗ ପୀରଙ୍କୁ ଦିଆଯାଉଥିଲା । ପିତାମହୀ ମଧ୍ୟ ନାମ ବଦଳାଇ ଫକୀରମୋହନ ରଖିଲେ । କଳ୍ପିତ ନାମ ବ୍ରଜମୋହନ ଲୋପ ପାଇଲା ।

**ଶିକ୍ଷା**

ନଅ ବର୍ଷ ହୋଇଥିଲାବେଳେ ଫକୀରମୋହନ ଗ୍ରାମ୍ୟ ଚାଟଶାଳୀରେ ନାମ ଲେଖାଇଲେ । ତାଙ୍କର ଶିକ୍ଷାଗୁରୁ ଥିଲେ ବୈଷ୍ଣବ ମହାନ୍ତି । ସକାଳଓଳି ଖଡ଼ିପାଠ ହେଉଥିଲା । ଉପରଓଳି ବିଭିନ୍ନ ବହି ପଢ଼ା ଯାଉଥିଲା ଓ ପଢ଼ା ସରିଲେ ତାଙ୍କ ବ୍ୟତୀତ ଆଉ ସମସ୍ତେ ଗୃହକୁ ଫେରୁଥିଲେ । ଫକୀରମୋହନଙ୍କୁ କିନ୍ତୁ ଶିକ୍ଷକଙ୍କ ରୋଷାଇ କାର୍ଯ୍ୟ କରିବାକୁ ପଡୁଥିଲା । ତାଙ୍କ ବଡ଼ବାପା ପୁରୁଷୋତ୍ତମ ସେନାପତି ନିଷ୍ଠୁର ପ୍ରକୃତିର ଥିଲେ । ଶିକ୍ଷକଙ୍କ ମାସିକ ଦରମା ଦେବାକୁ କୁଣ୍ଠିତ ହେଉଥିଲେ । ତାଙ୍କ ପ୍ରରୋଚନାରେ ଚାଟଶାଳୀର ଅବଧାନ ଫକୀରମୋହନଙ୍କୁ ଅକଥନୀୟ ଦଣ୍ଡ ଦେଉଥିଲେ ।

ଅବଧାନ ବୈଷ୍ଣବ ମହାନ୍ତି କିଛିଦିନ ସେଠାରେ ରହି ଗ୍ରାମକୁ ଚାଲିଗଲେ । ତେଣୁ ଫକୀରମୋହନ ଅନ୍ୟ ଏକ ଚାଟଶାଳୀରେ ନାମ ଲେଖାଇଲେ । ସେ ମଧ୍ୟ ଏକ ଅବୈତନିକ ପାର୍ଶୀ ସ୍କୁଲରେ ଅଧ୍ୟୟନ କରି ପତ୍ର ଲେଖିବା ଶିକ୍ଷା କଲେ । ଏହାପରେ ପାଠପଢ଼ା ଛାଡ଼ି ବଡ଼ବାପାଙ୍କ ଅଖାଲ ସିଲାଇ ଓ ନିମକ

ମାହାଲ କାର୍ଯ୍ୟରେ ନିଯୁକ୍ତ ହେଲେ । ମାତ୍ର ତାହା ବନ୍ଦ ହୋଇଯିବାରୁ ସେ ବାଲେଶ୍ୱରର ବାରବାଟୀ ସ୍କୁଲରେ ଅଧ୍ୟୟନ କଲେ । ବର୍ଷ ଶେଷରେ ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ମାତ୍ର ଅର୍ଥାଭାବରୁ ଆଉ ଅଧିକ ପାଠ ପଢ଼ିବା ସମ୍ଭବ ହେଲା ନାହିଁ । କିଛି ଦିନ ଘରେ ବସିବାପରେ ସେ ସେହି ସ୍କୁଲର ତୃତୀୟ ଶିକ୍ଷକ ଭାବେ ନିଯୁକ୍ତ ହେଲେ । ସେତେବେଳେ ତାଙ୍କର ବେତନ ଥିଲା ମାସିକ ଅଢ଼େଇ ଟଙ୍କା ମାତ୍ର ।

ବାରବାଟୀ ସ୍କୁଲରେ ଶିକ୍ଷକତା କରୁଥିଲାବେଳେ ଫକୀରମୋହନ ବଙ୍ଗଳା ଓ ସଂସ୍କୃତ ଭାଷା ଶିକ୍ଷା କରିଥିଲେ । ଏହାପରେ ବାଲେଶ୍ୱର ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ପଦ ଖାଲି ପଡ଼ିଲା । ୧୮୬୪ ମସିହାରେ ସେ ଏହି କର୍ମରେ ନିଯୁକ୍ତ ହେଲେ ।  ପ୍ରଥମେ ସେ ନିଜକୁ ଜଣେ ଦକ୍ଷ ଓ ଆଦର୍ଶ ଶିକ୍ଷକଭାବେ ପ୍ରତିଷ୍ଠିତ କଲେ । ସେ ମଧ୍ୟ ଏହି ସମୟରେ ଓଡ଼ିଆ, ବଙ୍ଗଳା, ସଂସ୍କୃତ ଓ ଇଂରାଜୀରେ ବିଭିନ୍ନ ଗ୍ରନ୍ଥମାନ ଅଧ୍ୟୟନ କଲେ ।

ମିସନ୍ ସ୍କୁଲର ପ୍ରଧାନ ଶିକ୍ଷକ ଥିଲାବେଳେ ଫକୀରମୋହନ ବାଲେଶ୍ୱର ଜିଲ୍ଲା କଲେକ୍ଟର ଜନ୍ ବୀମ୍ସଙ୍କ ସଂସ୍ପର୍ଶରେ ଆସିଲେ । ସେ ସେତେବେଳକୁ ପ୍ରତିଷ୍ଠିତ ଭାରତୀୟ ଭାଷାମାନଙ୍କର ତୁଳନାତ୍ମକ ବ୍ୟାକରଣ ରଚନା କରୁଥିଲେ । ସେହି ପୁସ୍ତକରେ ସାହାଯ୍ୟ କରିବାପାଇଁ ସେ ଜଣେ ଦକ୍ଷ ବ୍ୟକ୍ତିଙ୍କୁ ଖୋଜୁଥିଲେ । ସେ ଫକୀରମୋହନଙ୍କୁ ପାଇ ଆନନ୍ଦିତ ହେଲେ । ଜନ୍ ବୀମ୍ସଙ୍କ ସଙ୍ଗେ ତାଙ୍କର ସମ୍ପର୍କ ଦୃଢ଼ ହେଲା । ବୀମ୍ସ ତାଙ୍କର ସର୍ବପ୍ରକାର ସାଂସାରିକ ଉନ୍ନତିର ମୂଳାଧାର ହୋଇ ପଡ଼ିଲେ ବୋଲି ଫକୀରମୋହନ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି ।

ଫକୀରମୋହନଙ୍କ ଶିକ୍ଷକତା ସମୟରେ ୧୮୬୬ ମସିହାରେ ଓଡ଼ିଶାରେ ନ'ଅଙ୍କ ଦୁର୍ଭିକ୍ଷ ପଡ଼ିଲା । ସେତେବେଳକୁ ତାଙ୍କୁ ପ୍ରାୟ ୩୩ ବର୍ଷ । ଲୋକମାନଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରତି ସେ ସହାନୁଭୂତିଶୀଳ ଥିଲେ । ସେ ତାଙ୍କ ଆତ୍ମଜୀବନୀରେ ଲେଖିଛନ୍ତି –

''ପ୍ରତିଦିନ ପୂର୍ବାହ୍ନ ନଅ ଘଣ୍ଟା ସମୟରେ ସ୍ନାନ କରି ଖଣ୍ଡିଏ କମ୍ବଳାସନ କାଖରେ ଜାକି ଏକାକୀ ଧାନ ବିଲକୁ ଯାଏ । ବିଲ ମଧ୍ୟରେ ଆସନପାରି ଈଶ୍ୱରଙ୍କଠାରେ ଲୋକମାନଙ୍କ ରକ୍ଷା ନିମନ୍ତେ ବସି ପ୍ରାର୍ଥନା କରେ... ।''

## ଠାକୁରମା'ଙ୍କ ମୃତ୍ୟୁ

୧୮୬୭ ମସିହାରେ ୭୪ ବର୍ଷ ବୟସରେ ଠାକୁରମା'ଙ୍କର ଦେହାନ୍ତ ହେଲା । ବାଲ୍ୟକାଳରେ ସେ ତାଙ୍କର ସମସ୍ତ ଯତ୍ନ ନେଇଥିଲେ । ତାଙ୍କର

ଜୀବନ ମଧ୍ୟ ରକ୍ଷା କରିଥିଲେ । ଜୀବନର ଯାହା କିଛି ଉନ୍ନତି ସବୁ ଠାକୁରମା'ଙ୍କର ପୁଣ୍ୟର ଫଳ ବୋଲି ସେ ଭାବୁଥିଲେ । ତାଙ୍କର ତ୍ୟାଗ ଫକୀରମୋହନଙ୍କ ଜୀବନରେ ଅବିସ୍ମରଣୀୟ ହୋଇ ରହିଥିଲା । ସେ ତାଙ୍କର ସ୍ମୃତିଚାରଣ କରିଛନ୍ତି ପିତାମହୀ କବିତାରେ –

''ମୋତେ ବଞ୍ଚାଇବାପାଇଁ ଆହେ ବିଶ୍ୱପତି
ଆପଣ କି ଠାକୁର ମା'ଙ୍କୁ ପଠାଇଅଛନ୍ତି ?

× × ×

ଠାକୁର ମା'ର ଦୟା ଦେଖି ଭାବିଛି ତ ମନେ
ତୁମ୍ଭେ ଏହିପରି ଦୟା କର ପ୍ରାଣୀଗଣେ ।''

## ସମ୍ବାଦପତ୍ର ପ୍ରକାଶ

୧୮୬୮ ମସିହାରେ ଫକୀରମୋହନ ବାଲେଶ୍ୱରଠାରେ ଏକ ଛାପାକଳ ପ୍ରତିଷ୍ଠା କଲେ । ପ୍ରଥମେ ସେ ପ୍ରଭୂତ କ୍ଷତି ସହିଲେ ମଧ୍ୟ ପରେ ଲାଭବାନ୍ ହେଲେ । ଏହି ପ୍ରେସ୍‌ରୁ 'ବାଲେଶ୍ୱର ସମ୍ବାଦବାହିକା' ନାମରେ ଏକ ସମ୍ବାଦପତ୍ର ଓ 'ବୋଧଦାୟିନୀ' ନାମରେ ଏକ ସାହିତ୍ୟ ପତ୍ରିକା ପ୍ରକାଶ ପାଇଲା । 'ବାଲେଶ୍ୱର ସମ୍ବାଦବାହିକା' ସମ୍ପାଦକ ଥିଲେ ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ । ଏହା ଥିଲା ଓଡ଼ିଶାର ଦ୍ୱିତୀୟ ସମ୍ବାଦପତ୍ର । 'ଉତ୍କଳଦୀପିକା' କର୍ମଯୋଗୀ ଗୌରୀଶଙ୍କର ରାୟଙ୍କଦ୍ୱାରା କଟକରୁ ୧୮୬୬ ମସିହାରୁ ପ୍ରକାଶ ପାଉଥିଲା । ଏହି ଦୁଇଟି ସମ୍ବାଦପତ୍ର ସେତେବେଳେ ଉତ୍କଳର ଜାଗ୍ରତ ପ୍ରହରୀ ଥିଲେ କହିଲେ ଚଳେ ।

## ଭାଷା ଆନ୍ଦୋଳନ

ସେତେବେଳେ କାନ୍ତି ଭଟ୍ଟାଚାର୍ଯ୍ୟ ନାମକ ଜଣେ ବଙ୍ଗବାସୀ ତାଙ୍କର କ୍ଷମତାଶାଳୀ ଜାତିଭାଇଙ୍କୁ ଧରି ଓଡ଼ିଶାର ସ୍କୁଲମାନଙ୍କରେ ଓଡ଼ିଆ ଭାଷା ଉଠାଇଦେଇ ବଙ୍ଗଳା ଭାଷା ପ୍ରଚଳନ କରାଇବାପାଇଁ ଲାଗିପଡ଼ିଥିଲେ । ସ୍କୁଲମାନଙ୍କରେ ମଧ୍ୟ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ପଢ଼ାହେଲା । ଫକୀରମୋହନ ଏହା ବିରୋଧରେ ଅଣ୍ଟାଭିଡ଼ି ବାହାରିଲେ । ସେ ବାଲେଶ୍ୱରର ବହୁ ସରକାରୀ କର୍ମଚାରୀ ତଥା ଜନସାଧାରଣଙ୍କୁ ଏକାଠି କରି ମାତୃଭାଷା ରକ୍ଷାପାଇଁ ଆନ୍ଦୋଳନ ଚଳାଇଲେ । ସେ ଓଡ଼ିଆମାନଙ୍କୁ ସଚେତନ କରିବାକୁ ଆହ୍ୱାନ ଦେଲେ –

''ଏହି ଯେ ସ୍କୁଲମାନଙ୍କରେ ଓଡ଼ିଆ ଉଠିଯାଇ ବଙ୍ଗଳା ପଢ଼ା ହେଉଛି; ଏହା ସରକାରଙ୍କ ହୁକୁମ ନୁହେଁ । ବଙ୍ଗାଳୀମାନେ ଚକ୍ରାନ୍ତ କରି ସ୍କୁଲ ଇନ୍‌ସପେକ୍ଟରଙ୍କୁ

ଭୁଲାଇ ଏପରି କରିଛନ୍ତି । ସେମାନେ ଅଳ୍ପ ଦିନ ଉତ୍ତାରେ କଚେରିରୁ ମଧ ଓଡ଼ିଆ ଭାଷା ଉଠାଇଦେବେ ।''

ଓଡ଼ିଆ ଭାଷାକୁ ବଞ୍ଚାଇବାପାଇଁ ଫକୀରମୋହନ କେତେଖଣ୍ଡ ପାଠ୍ୟପୁସ୍ତକ ରଚନା କଲେ । ତାଙ୍କ ରଚିତ 'ଭାରତବର୍ଷର ଇତିହାସ' ବୃତ୍ତି ପରୀକ୍ଷାରେ ପାଠ୍ୟପୁସ୍ତକ ରୂପେ ମନୋନୀତ ହେଲା । ସେଥିପାଇଁ ସରକାରୀ ସ୍କୁଲ ଇନ୍‌ସପେକ୍ଟର ମଧ ତାଙ୍କୁ ସାତ ଶହ ଟଙ୍କା ପୁରସ୍କାର ଦେଲେ । କମିସନର ରେଭେନ୍‌ସା ସାହେବ ମଧ ତାଙ୍କୁ ତିନି ଶହ ଟଙ୍କା ପୁରସ୍କାର ଦେଇଥିଲେ । ସେ ସମ୍ବାଦପତ୍ର ମାଧମରେ ବଙ୍ଗ ଭାଷାର ପ୍ରଚଳନ ବିରୋଧରେ କଟୁ ମନ୍ତବ୍ୟମାନ ଦେଲେ । ଫଳରେ ବଙ୍ଗାଳୀମାନେ ତାଙ୍କୁ 'ଶାଳା ରିଙ୍ଗ୍ ଲିଡର' ବୋଲି କହୁଥିଲେ । ବଙ୍ଗୀୟମାନଙ୍କର ଆଉ ଜଣେ ନେତା ଥିଲେ ବାଲେଶ୍ୱରର ଜମିଦାର ବୃନ୍ଦାବନ ଚନ୍ଦ୍ର ମଣ୍ଡଳ । ସରକାରୀ ଦପ୍ତରମାନଙ୍କରେ ଓଡ଼ିଆ ପରିବର୍ତ୍ତେ ବଙ୍ଗଳା ପ୍ରଚଳନପାଇଁ ସେ ଆପ୍ରାଣ ଚେଷ୍ଟା କରିଥିଲେ । ଫକୀରମୋହନ ବାରବାଟୀ ସ୍କୁଲ ପରିଚାଳନା କମିଟିରେ ଏକମାତ୍ର ଓଡ଼ିଆ ସଭ୍ୟ ଥିଲେ । ଥରେ ତାଙ୍କ ଅନୁପସ୍ଥିତିର ସୁଯୋଗ ନେଇ ତାଙ୍କୁ କମିଟିରୁ ବାହାର କରିଦେବାପାଇଁ ସେ ପ୍ରସ୍ତାବ ଗୃହୀତ କରାଇ ନେଇଥିଲେ । କିନ୍ତୁ ଫକୀରମୋହନଙ୍କୁ ଜିଲ୍ଲା ସ୍କୁଲ ପରିଚାଳନା କମିଟିର ସଭ୍ୟ ଭାବେ ପୁଣି ନିଆଯିବାରୁ ସେମାନେ ହତୋତ୍ସାହ ହୋଇପଡ଼ିଲେ । ବାସ୍ତବିକ ସେ ସମୟରେ ଫକୀରମୋହନ ଓଡ଼ିଆ ସାହିତ୍ୟର ସେନାପତି ଭାବେ କାର୍ଯ୍ୟ କରିଥିଲେ ।

## ବିବାହ

ମାତ୍ର ୧୩ ବର୍ଷ ବୟସରେ ଫକୀରମୋହନଙ୍କର ମାଣିକ ଖମ୍ବର ନାରାୟଣ ପରିଡ଼ାଙ୍କ କନ୍ୟା ଲୀଳାବତୀଙ୍କ ସହିତ ବିବାହ ହେଲା । କିନ୍ତୁ ସେ ଅତି ନିଷ୍ଠୁରା ଓ କର୍କଶ ସ୍ୱଭାବର ଥିଲେ । ପତ୍ନୀଙ୍କ ସହ ତାଙ୍କର ସମ୍ପର୍କ ତେଣୁ ତିକ୍ତ ହୋଇଉଠିଲା । ରୋଗ ଯନ୍ତ୍ରଣାଠାରୁ ତାଙ୍କର ଦାମ୍ପତ୍ୟ ଜୀବନ ଆହୁରି ଯନ୍ତ୍ରଣାଦାୟକ ହୋଇପଡ଼ିଥିଲା । ଲୀଳାବତୀ କିନ୍ତୁ ଅଳ୍ପ ଦିନରେ ରୋଗଗ୍ରସ୍ତ ହୋଇ ମୃତ୍ୟୁବରଣ କଲେ । ଏହାପରେ ଫକୀରମୋହନଙ୍କ ଫୌଜଦାରୀ ହେଡ଼କ୍ଲର୍କ ଶିବପ୍ରସାଦ ଚୌଧୁରୀଙ୍କ କନ୍ୟା କୃଷ୍ଣାକୁମାରୀଙ୍କ ସହ ବିବାହ ହେଲା । ସେତେବେଳେ ଫକୀରମୋହନଙ୍କୁ ୨୯ ବର୍ଷ ବୟସ ହୋଇଥିଲା । କୃଷ୍ଣାକୁମାରୀଙ୍କର ବୟସ ମାତ୍ର ଏଗାର ଥିଲା । ମାତ୍ର କୃଷ୍ଣାକୁମାରୀ ଅତୀବ ଧର୍ମପରାୟଣା ଥିଲେ । ସ୍ୱାମୀଙ୍କ ସେବାଶୁଶ୍ରୂଷା କରିବା ତାଙ୍କର ଜୀବନର ବ୍ରତ ଥିଲା । ଏ ବିବାହ ଫକୀରମୋହନଙ୍କ ଜୀବନରେ ଅମୃତର ଧାରା ଛୁଟାଇଲା । ତାଙ୍କର

ସମସ୍ତ ପ୍ରକାର ଦୁଃଖ ଅବସାଦ ଦୂର ହୋଇଗଲା । ସେ ସାହିତ୍ୟ ସେବାରେ କେବଳ ଯେ ଲାଗିପଡ଼ିଲେ ତା' ନୁହେଁ, ସେ ହେଲେ ନୂତନ ଓଡ଼ିଆ ସାହିତ୍ୟର ଭାଗୀରଥୀ ।

## ଧର୍ମ

ଫକୀରମୋହନ ହିନ୍ଦୁ ହେଲେ ମଧ୍ୟ ବାଇବେଲ ପଢ଼ୁଥିଲେ । ଖ୍ରୀଷ୍ଟିଆନ ସାହେବମାନଙ୍କ ସହିତ ଧର୍ମ ବିଷୟରେ ଆଲୋଚନା କରୁଥିଲେ । ସେ ହିନ୍ଦୁଧର୍ମରେ ଥିବା ବହୁ ଦେବଦେବୀ ପୂଜାକୁ ଘୃଣା କରୁଥିଲେ । ସେ ରାଧାନାଥ ରାୟଙ୍କ ସହିତ ମିଶି ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ସ୍ଥିର କରିଥିଲେ । କିନ୍ତୁ ରାଧାନାଥ ପରେ ତାଙ୍କ ମତ ପରିବର୍ତ୍ତନ କଲେ । ଫକୀରମୋହନ ତେଣୁ ଏକାକୀ ସନାତନ ହିନ୍ଦୁଧର୍ମ ତ୍ୟାଗ କରିବାକୁ ସାହସ କରିପାରି ନ ଥିଲେ ।

## ଦେବାନ ଭାବେ ନିଯୁକ୍ତି

ବାଲେଶ୍ୱର ଜିଲ୍ଲା ମାଜିଷ୍ଟ୍ରେଟ୍ ଜନ୍ ବୀମ୍ସଙ୍କ ସୁପାରିସକ୍ରମେ ଫକୀରମୋହନ ପ୍ରଥମେ ନୀଳଗିରିର ଦେବାନଭାବେ ନିଯୁକ୍ତ ହେଲେ । ଦେବାନ ହିସାବରେ ସେ ବହୁ ଜନହିତକର କାର୍ଯ୍ୟ କରିଥିଲେ । ନୀଳଗିରିଠାରୁ ସେରଗଡ଼ ପର୍ଯ୍ୟନ୍ତ ଚାରି ମାଇଲ ଲମ୍ବ ଏକ ସଡ଼କ ନିର୍ମାଣ, ସାପ୍ତାହିକ ହାଟ, କୋବିଚାଷ, ରେଶମ ଚାଷ ପ୍ରଭୃତି ତାଙ୍କ ସମୟରେ ହୋଇଥିଲା । ମାତ୍ର ପଟାଦାରମାନଙ୍କୁ ପଥର କାଟିବାକୁ ଅନୁମତି ନ ଦେବାରୁ ପ୍ରଜାମେଳି ହେଲା । କଟକ କମିସନର ରେଭେନ୍ସା ସାହେବ ଫକୀରମୋହନଙ୍କୁ ଏଥିପାଇଁ ଦାୟୀ କଲେ । ପୋଷ୍ୟପୁତ୍ର ବିଷୟ ନେଇ ନୀଳଗିରି ରାଜାଙ୍କ ସହ ତାଙ୍କର ମନାନ୍ତର ହେଲା । ସେ ତେଣୁ ୧୮୭୫ ମସିହାରେ ଦେବାନ ପଦରୁ ଇସ୍ତଫା ଦେଲେ ।

ଫକୀରମୋହନ ବୀମ୍ସ ସାହେବଙ୍କୁ ପୁଣି ଦେଖାକଲେ । ଫଳରେ ଡମପଡ଼ାର ଦେବାନ ଭାବରେ ସେ ପୁଣି ନିଯୁକ୍ତ ହେଲେ । ଡମପଡ଼ାରେ ପ୍ରଜାମାନଙ୍କ ବିରୋଧ ସତ୍ତ୍ୱେ ସେ ଜମି ଜରିବ କରାଇଲେ । ଖଜଣା ମଧ୍ୟ ବୃଦ୍ଧି ହେଲା । ବନ୍ଦୋବସ୍ତ କାମ ଶେଷ ହେବା ବେଳକୁ ଫକୀରମୋହନ ଢେଙ୍କାନାଳ ଗଡ଼ଜାତର ଆସିଷ୍ଟାଣ୍ଟ୍ ମ୍ୟାନେଜର ଭାବେ ନିଯୁକ୍ତ ହେଲେ । ଡମପଡ଼ା ରାଜା ଫକୀରମୋହନଙ୍କୁ ନଗଦ ପାଞ୍ଚ ହଜାର ଟଙ୍କା ଓ ନିଜେ ଲେଖୁଥିବା ଦୁଆତକୁ ଉପହାର ସ୍ୱରୂପ ଦେଇଥିଲେ ।

୧୮୭୭ ମସିହାରେ ଫକୀରମୋହନ ଢେଙ୍କାନାଳରେ କର୍ମରେ ଯୋଗ ଦେଲେ । ସେଠାରେ ତାଙ୍କର ପ୍ରଥମ ପୁତ୍ରର ମୃତ୍ୟୁ ହେଲା । ସ୍ତ୍ରୀଙ୍କର ଦୁଃଖ ଦୂର

କରିବାପାଇଁ ସେ ବଳରାମ ଦାସଙ୍କ 'ରାମାୟଣ' ପାଠ ଆରମ୍ଭ କଲେ । ମାତ୍ର ତାହା ବୁଝିବା ସହଜସାଧ୍ୟ ନ ହେବାରୁ ସଂସ୍କୃତ ବାଲ୍ମୀକିରାମାୟଣ ଆଣି ତା'ର ଗଦ୍ୟାନୁବାଦ ଆରମ୍ଭ କଲେ । ସେ ଦିନବେଳା ଅନୁବାଦ କରି ସନ୍ଧ୍ୟାରେ ସ୍ତ୍ରୀଙ୍କୁ ଶୁଣାଉଥିଲେ । 'ରାମାୟଣ' ବାଳକାଣ୍ଡର ପ୍ରଥମ ମୁଦ୍ରଣଟି ସେ ଜନ୍ ବୀମ୍‌ସଙ୍କୁ ଉତ୍ସର୍ଗ କରିଥିଲେ । କିଛିକାଳ ପରେ ସେ ଅସୁସ୍ଥ ହୋଇପଡ଼ିବାରୁ ଛଅ ମାସ ଛୁଟି ନେଲେ । ସେହି ସମୟରେ ତାଙ୍କ ବିରୋଧରେ ସୁପରିଣ୍ଟେଣ୍ଡେଣ୍ଟ୍‌ଙ୍କ ନିକଟରେ ଅଭିଯୋଗ ହେଲା । ସେ ବନ୍ଧୁ ନନ୍ଦକିଶୋରଙ୍କ ପରାମର୍ଶ ଅନୁଯାୟୀ ତାଙ୍କ ପଦରୁ ଇସ୍ତଫା ଦେଲେ ।

ଏହା ପରେ ଫକୀରମୋହନ ଦଶପଲ୍ଲାର ଦେବାନ ପଦ ଗ୍ରହଣ କଲେ । ସେ ସେଠାରେ ବହୁ ଲୋକହିତକର କାର୍ଯ୍ୟ କରିଥିଲେ । ମହାନଦୀର କିଛି ଅଂଶରେ ଲୋକ ଲଗାଇ ପଥରବନ୍ଧ ପକାଇଥିଲେ । ଫଳରେ ଲୋକେ ବନ୍ୟା ଦାଉରୁ ରକ୍ଷା ପାଇଲେ । ସେ ମଧୁବନଠାରୁ ବରଗଡ଼ ପର୍ଯ୍ୟନ୍ତ କଏଦୀମାନଙ୍କଦ୍ୱାରା ଏକ ସଡ଼କ ନିର୍ମାଣ ଆରମ୍ଭ କରିଥିଲେ । କୋବି, ମଟର, ମୂଳା ପ୍ରଭୃତିର ଚାଷ ତାଙ୍କ ସମୟରେ ଆରମ୍ଭ ହେଲା । ମାତ୍ର ରାଜାଙ୍କ ସହିତ ତାଙ୍କର ମନାନ୍ତର ହେଲା । ଗଡ଼ଜାତ ସୁପରିଣ୍ଟେଣ୍ଡେଣ୍ଟ୍ ମେଟକାଫ୍‌ଙ୍କ ପରାମର୍ଶ ଅନୁଯାୟୀ ସେ ସେଥିରୁ ଇସ୍ତଫା ଦେଲେ । ସେ କିଛିଦିନପାଇଁ ପ୍ରଜାମେଳିକୁ ଦବାଇବା ନିମିତ୍ତ ପ୍ରଥମ ଶ୍ରେଣୀ ମାଜିଷ୍ଟ୍ରେଟ୍ କ୍ଷମତାପାଇ ପାଲଲହଡ଼ା ଯାଇଥିଲେ ।

୧୮୮୭ ମସିହାରେ ଫକୀରମୋହନ ପୁଣି ଆନନ୍ଦପୁର ଇଲାକାର ମ୍ୟାନେଜର ଭାବେ ନିଯୁକ୍ତ ହେଲେ । ତାଙ୍କର ମାସିକ ଦରମା ଥିଲା ଏକ ଶହ ଟଙ୍କା । ତାହା ପରେ ୧୨୦ଟଙ୍କାକୁ ବୃଦ୍ଧି କରାଯାଇଥିଲା ।

୧୮୯୧ ମସିହାରେ କେନ୍ଦୁଝରରେ ଏକ ବଡ଼ ଧରଣର ପ୍ରଜା ମେଳି ହେଲା । ଏହା ମାଛକାନ୍ଦଣା ଯୋରର ପାଣି ସକାଶେ ହେଇଥିଲା । ଗୋଟିଏ ପାହାଡ଼ ଭାଙ୍ଗି ମାହାରା ଖୋଳାଇବାପାଇଁ ରାଜାଙ୍କ ଆଦେଶରେ ଭୂୟାଁ ପ୍ରଜାମାନଙ୍କୁ ବେଠି ଖଟିବାକୁ ପଡୁଥିଲା । ସକାଳୁ ସନ୍ଧ୍ୟାଯାଏ ଖଟିବା ସମ୍ଭବ ନ ଥିଲା । ତେଣୁ ଭୂୟାଁମାନେ ବଡ଼ ଧରଣର ମେଳି ଆରମ୍ଭ କଲେ । ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ଧରଣୀଧର । ସେ ପ୍ରଥମେ କେନ୍ଦୁଝରର ସର୍ଭେୟର ଭାବେ କାମ କରୁଥିଲେ । ପରେ ଭୂୟାଁ ପ୍ରଜାଙ୍କ ଉପରେ ଅନ୍ୟାୟ ଅତ୍ୟାଚାର ଦେଖି ସେମାନଙ୍କର ନେତୃତ୍ୱ ନେଲେ । ଫକୀରମୋହନ ମଧ ନିଜେ ଏହି ଭୂୟାଁମାନଙ୍କଦ୍ୱାରା ବନ୍ଦୀ

ହୋଇଥିଲେ । ସେ ଧରଣୀଧରଙ୍କୁ କହି ନିଜର ଜଣେ ପରିଚିତ ବନ୍ଧୁ ଲୋକନାଥଙ୍କ ପାଖକୁ ଏକ ପତ୍ର ଦେଲେ । ସେହି ପତ୍ର ଅତି ବିଚକ୍ଷଣତାର ସହ ଲେଖାହୋଇଥିଲା । ଗୋରା ସୈନ୍ୟ ଏହି ପତ୍ର ଅନୁସାରେ କେନ୍ଦୁଝରର ଆସି ଫକୀରମୋହନଙ୍କୁ ଖଲାସ କଲେ । ପ୍ରଜାମେଳିକୁ ଦମନ କରାଗଲା । ବିଦ୍ରୋହୀ ନେତା ଧରଣୀଧର ଛଅ ବର୍ଷ କାରାଦଣ୍ଡ ପାଇଲେ । ଫକୀରମୋହନ ଅତି କୌଶଳରେ ନିଜକୁ ଓ ରାଜପରିବାରକୁ ରକ୍ଷା କଲେ ।

୧୮୯୪ ମସିହାରେ ଫକୀରମୋହନ ଦ୍ୱିତୀୟଥରପାଇଁ ଡମପଡ଼ା ରାଜାଙ୍କର ଦେବାନ ଭାବେ ନିଯୁକ୍ତ ହେଲେ । ତାଙ୍କ ଦରମା ଥିଲା ମାସିକ ୧୨୦ଟଙ୍କା । ସେ ରାଜାଙ୍କ ବିଧବା ମାତା ରାଧିକା ପାଟମହାଦେଈଙ୍କ ଅନ୍ତ୍ୟେଷ୍ଟିକ୍ରିୟାରେ ଯୋଗଦେବାପାଇଁ ଟିକାଲି ଯାଇ ସେଠାରେ ପ୍ରାୟ ଛଅ ମାସ ରହିଥିଲେ । ସେତେବେଳେ ସେ ଜଣେ ତେଲୁଗୁ ଶିକ୍ଷକଙ୍କଠାରୁ ତେଲୁଗୁ ଶିକ୍ଷା କଲେ । ସେଠାରେ ଥିଲାବେଳେ ପ୍ରିୟତମା ପତ୍ନୀ କୃଷ୍ଣାକୁମାରୀଙ୍କର ମାତ୍ର ୩୦ବର୍ଷ ବୟସରେ ପରଲୋକ ହେଲା । ସେ ତାଙ୍କୁ ଅତ୍ୟଧିକ ଭଲ ପାଉଥିଲେ । ତାଙ୍କ ସ୍ମୃତିକୁ ସଞ୍ଚାଳି କରି ସେ ଅବଶିଷ୍ଟ ଜୀବନ କଟାଇଲେ । ଡମପଡ଼ା ରାଣୀଙ୍କ ପ୍ରରୋଚନାରେ ଫକୀରମୋହନ ପଦଚ୍ୟୁତ ହେଲେ ।

ଫକୀରମୋହନ ୧୮୯୮ ମସିହାରେ କଂଗ୍ରେସ ସଭ୍ୟ ହିସାବରେ ମାନ୍ଦ୍ରାଜରେ ହେଉଥିବା ଭାରତୀୟ ଜାତୀୟ କଂଗ୍ରେସ ସଭାରେ ଯୋଗ ଦେଇଥିଲେ । ସେ ମଧ ବ୍ରାହ୍ମ ସମାଜର ପ୍ରତିନିଧି ଭାବେ ଭାରତୀୟ ଏକେଶ୍ୱରବାଦୀଙ୍କ ମହାସଭାରେ ଯୋଗ ଦେଇଥିଲେ ।

୧୮୯୯ ମସିହାରେ ଫକୀରମୋହନ କେନ୍ଦ୍ରାପଡ଼ାର ଜମିଦାର ଲକ୍ଷ୍ମୀନାରାୟଣ ଜଗଦେବଙ୍କ ଅଧୀନରେ କିଛି କାଳ କାର୍ଯ୍ୟ କଲା ପରେ କଟକ ଆସିଲେ । ସେ ବାଖରାବାଦରେ ଗୋଟିଏ ସୁନ୍ଦର ଗୃହ ନିର୍ମାଣ କରି ଅବଶିଷ୍ଟ ଜୀବନ ସାହିତ୍ୟ ସେବାରେ କଟାଇବାକୁ ସ୍ଥିର କଲେ । ସେ ମଧ୍ୟ ଏହି ସମୟରେ ଉପନ୍ୟାସ ରଚନା ଆରମ୍ଭ କଲେ । ୧୯୦୫ ମସିହାରେ ତାଙ୍କ ପୁତ୍ର ସବ୍‌ଡେପୁଟି ହିସାବରେ ନିଯୁକ୍ତ ହୋଇ ବାଲେଶ୍ୱରରେ ଅବସ୍ଥାପିତ ହେଲେ । ସେ ତେଣୁ ସେଠାକୁ ଗଲେ । ସେଠାରେ 'ମାମୁ', 'ପ୍ରାୟଶ୍ଚିତ୍ତ' ପ୍ରଭୃତି ଉପନ୍ୟାସ ରଚନା କରିଥିଲେ । ସେତେବେଳେ ବାଲେଶ୍ୱର ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଥିଲେ କବି ନନ୍ଦକିଶୋର ବଳ । ଉଭୟେ ଓଡ଼ିଆ ସାହିତ୍ୟର ଉନ୍ନତିପାଇଁ ବହୁ ସମୟରେ ଏକାଠି ଆଲୋଚନା କରୁଥିବାର ଜଣାଯାଏ ।

## ସାହିତ୍ୟ ସୃଷ୍ଟି

ଫକୀରମୋହନଙ୍କର ପ୍ରଥମ ଗଳ୍ପ 'ଲଛମନିଆ' ୧୮୬୮ ମସିହାରେ ସାହିତ୍ୟ ପତ୍ରିକା 'ବୋଧଦାୟିନୀ'ରେ ପ୍ରକାଶ ପାଇଲା । ଏହା ପୂର୍ବରୁ ସେ ୧୮୬୬ ମସିହାରେ ବଙ୍ଗଭାଷାରେ ଲିଖିତ ଜୀବନଚରିତ ପୁସ୍ତକର ଅନୁବାଦ କରିଥିଲେ । ସେ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକର ଅଭାବ ଦୂର କରିବାପାଇଁ 'ଭାରତ ଇତିହାସ', 'ରାଜପୁତ ଇତିହାସ', 'ଅଙ୍କମାଳା' ପ୍ରଭୃତି ରଚନା କରିଥିଲେ । ତାଙ୍କ ପତ୍ନୀ କୃଷ୍ଣାକୁମାରୀ ରୋଗଶଯ୍ୟାରେ ପଡ଼ିଥିଲାବେଳେ ସେ ତାଙ୍କର ଚିତ୍ତ ବିନୋଦନପାଇଁ ଅନୁବାଦରେ ମନ ଦେଲେ । ସାତଖଣ୍ଡ 'ରାମାୟଣ', ଅଠରଖଣ୍ଡ 'ମହାଭାରତ', 'ଶ୍ରୀମଦ ଭାଗବତ', 'ଗୀତା', ମୂଳ ହରିବଂଶ ପ୍ରଭୃତି ହେଉଛି ତାଙ୍କର ଅନୁବାଦ ଗ୍ରନ୍ଥ । ସମ୍ଭବତଃ, ସେଥିପାଇଁ ତାଙ୍କୁ ଉତ୍କଳର ବ୍ୟାସକବି କୁହାଯାଏ ।

## ଉତ୍କଳ ଭ୍ରମଣ

କେନ୍ଦୁଝର ଭୂୟାଁ ମେଳି ବେଳେ ଫକୀରମୋହନ କୌଣସିମତେ ମୁକ୍ତିଲାଭ କରି ହାତୀ ଉପରେ ବସି ଭଦ୍ରକରୁ ଆନନ୍ଦପୁରକୁ ଚାଲିଆସିଥିଲେ । ସେହି ସମୟରେ ତାଙ୍କର ଯେଉଁ ମାନସିକ ଅବସାଦ ଆସିଥିଲା, ତାହା ଉତ୍କଳ ଭ୍ରମଣ କାବ୍ୟରେ ପ୍ରତିଫଳିତ ହୋଇଛି । ୧୮୯୨ ମସିହାରେ ଏହା ପ୍ରକାଶ ପାଇଥିଲା । ଏହା ଏକ ବ୍ୟଙ୍ଗାତ୍ମକ କାବ୍ୟ । ଏଥିରେ ସେ ସେହି ସମୟର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠା ଲାଭ କରିଥିବା ବିଶିଷ୍ଟ ଲୋକମାନଙ୍କ ସମ୍ପର୍କରେ ନିର୍ଭୀକ ମତାମତ ଦେଇଛନ୍ତି । ସେ ମହାରାଜା ରାମଚନ୍ଦ୍ର ଭଞ୍ଜ, ବୈକୁଣ୍ଠନାଥ ଦେ, ରାଧାଚରଣ ଦାସ, ଗୋବିନ୍ଦ ଚନ୍ଦ୍ର ପଟ୍ଟନାୟକ, ନନ୍ଦକିଶୋର ଦାସ, ରାଧାନାଥ ରାୟ, ମଧୁସୂଦନ ରାଓ, ମଧୁସୂଦନ ଦାସ, ଜନ୍ ବୀମ୍ସ, ବିଶ୍ୱନାଥ କର, ପ୍ୟାରୀମୋହନ ଆଚାର୍ଯ୍ୟ, ମୃତ୍ୟୁଞ୍ଜୟ ରଥ, ପଠାଣି ସାମନ୍ତ, ବାମଣ୍ଡାର ରାଜା ସାର୍ ସୁଢଳଦେବ, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, କୃପାସିନ୍ଧୁ ମିଶ୍ର, ଗୋଦାବରୀଶ ମିଶ୍ର, ଜୟପୁରର ମହାରାଜା ବିକ୍ରମଦେବ ପ୍ରଭୃତିଙ୍କ ବିଷୟରେ ନାନା ମନ୍ତବ୍ୟ ଦେଇଛନ୍ତି । ସେଥିରୁ ସେ କାଳର ସାମାଜିକ ଜୀବନ ସମ୍ପର୍କରେ ସ୍ପଷ୍ଟ ଧରଣା କରିହୁଏ ।

ଫକୀରମୋହନ ମଧୁସୂଦନ ଦାସଙ୍କୁ ପ୍ରଶଂସା କରି ଲେଖିଛନ୍ତି –

''ରୁପା ତାରକସି କାମ ଶିଙ୍ଗର ପାନିଆ ।
ଅବଶ୍ୟ କହିବି ଏହା ସବୁ ନୂଆ ନୂଆ ।''

ଭକ୍ତକବି ମଧୁସୂଦନଙ୍କୁ ସେ ଆଦର୍ଶ ମନୁଷ୍ୟ ଭାବେ ଚିତ୍ରଣ କରିଛନ୍ତି –

''ଆଦର୍ଶ ମଣିଷ ଯେବେ ଦେଖିବାକୁ ଚାହଁ
ଧାଇଁ ଯାଇ ଥରେ ଦେଖି ଆସ ମଧୁରାଓ ।''

'ଉତ୍କଳ ସାହିତ୍ୟ'ର ସମ୍ପାଦକ ବିଶ୍ୱନାଥ କରଙ୍କ ବିଷୟରେ ଲେଖିଥିଲେ –

''ଓଡ଼ିଶାର ଯୋଗ୍ୟ ପୁତ୍ର ଆହେ ବିଶ୍ୱନାଥ
ମାତୃ ସେବା ବିଷୟରେ ଦେଇଅଛ ହାତ ।''

ମାତୃଭାଷା ଅବହେଳା ଦେଖି ସେ ଦୁଃଖ ପ୍ରକାଶ କରିଛନ୍ତି, ଯଥା –

''ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ ହାୟ ଲାଜକଥା କହିବି କାହାକୁ ?''

ପୁରୀ ମନ୍ଦିରର ପଣ୍ଡାମାନଙ୍କୁ ସେ ମଧୁର ଭର୍ତ୍ସନା କରିବାକୁ ପଛାଇ ନାହାନ୍ତି –

''କୁହାରିଣ କାକ ଚତୁର୍ଭୁଜ କଳ୍ପ ବଟେ
ଉପସ୍ଥିତ ହେଲି ମୁକ୍ତି ମଣ୍ଡପ ନିକଟେ
ଦେଖିଲି ସେଠାରେ ଲାଗିଅଛି ଗଣ୍ଡଗୋଳ
ପାଠ ଛାଡ଼ି ଅଣ୍ଟାଖୋଷା ହୋଇଅଛି ମୂଳ ।''

## ପୁଷ୍ପମାଲ୍ୟ, ଉପହାର

୧୮୯୧ ମସିହା ପରଠାରୁ କବି ଗୀତିକବିତା ରଚନାରେ ମନ ଦେଲେ । ବିଶେଷତଃ, ପତ୍ନୀ କୃଷ୍ଣାକୁମାରୀଙ୍କ ଅକାଳ ମୃତ୍ୟୁରେ ସେ ଶୋକାଭିଭୂତ ହୋଇପଡ଼ିଲେ । ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ସେ ୧୮୯୪ ମସିହାରେ 'ପୁଷ୍ପମାଲ୍ୟ' ରଚନା କରିଥିଲେ । ତାହାକୁ ମଧ ପରଲୋକଗତା ପତ୍ନୀଙ୍କୁ ଉତ୍ସର୍ଗ କରିଥିଲେ । ଏଥିରେ ୫୫ଟି କବିତା ସ୍ଥାନ ପାଇଛି । 'ହସି ହସି ଗଲା ମତେ କନ୍ଦାଇ କନ୍ଦାଇ'ରେ ସେ ତାଙ୍କର ମର୍ମ ବେଦନା ପ୍ରକାଶ କରିଛନ୍ତି –

''କୁସୁମ କଳିକା ଥିଲା ସୌରଭର ଖଣି
ମଧୁମୟ ହାସ୍ୟମୁଖୀ ପ୍ରେମଲତା ମଣି
ଦୁଇ ଦିନ ପାଇଁ ମାୟା ମମତା ଲଗାଇ ।
ହସି ହସି ଗଲା ମତେ କନ୍ଦାଇ କନ୍ଦାଇ ।''

କାହିଁଛନ୍ତି ବନ୍ଧୁ ମୋର କିଏ ଦେବ କହି କବିତା ତାଙ୍କ ହୃଦୟର ଅତି କରୁଣ ଅଭିବ୍ୟକ୍ତି । ପୁଣି କି ଦେଖିବି ସେହି ସହାସ୍ୟ ବଦନ, ସାହାଡ଼ା ଗଛର କ୍ରନ୍ଦନ, ମୋ କ୍ଷୁଦ୍ର ତାରା ପ୍ରଭୃତି କବିତାର ଛତ୍ରେ ଛତ୍ରେ ତାଙ୍କର ବିରହ ବ୍ୟଥା

ଫୁଟିଉଠିଛି । କୃଷ୍ଣାକୁମାରୀଙ୍କ ଭଳି ପତିବ୍ରତା ନାରୀ ଦେଖି ନାହାନ୍ତି ବୋଲି କବି ପ୍ରକାଶ କରିଛନ୍ତି –

"ଛାଡ଼ି ଯାଇଅଛି ମୋର ନୟନ ପ୍ରତିମା
ମିଶାଇ ହୃଦୟ ରସେ ସେ ଗୁଣ ଗାରିମା
ତୁମ୍ଭ ସମାଜରେ ଦେଖି ନାହିଁ ପୁଣ୍ୟବତୀ
ତୁମ୍ଭ ପରି ଦେଖି ନାହିଁ ପତିବ୍ରତା ସତୀ ।"

ଉପହାର ମଧ୍ୟ ଆଉ ଏକ ପତ୍ନୀବିୟୋଗଜନିତ ହୃଦୟର କରୁଣ ଅଭିବ୍ୟକ୍ତି ।

## ଅବସର ବାସରେ

କବି ଚିର ରୁଗ୍ଣ ଥିଲେ । ଶାରୀରିକ ପୀଡ଼ାରେ ବାଧ୍ୟତାମୂଳକ ବିଶ୍ରାମ ନେଲାବେଳେ ବା ଅନ୍ୟ କୌଣସି ଦୁଃଖ ଦୁର୍ବିପାକ ଦେଖାଦେଲେ ସେ ଗୀତ ରଚନା କରି ଶାନ୍ତି ପାଉଥିଲେ ବୋଲି ଆତ୍ମଚରିତରେ ଉଲ୍ଲେଖ କରିଛନ୍ତି ।

'ଅବସର ବାସରେ' ୧୯୦୮ରେ ପ୍ରକାଶିତ ହୋଇଥିଲା । ଏଥିରେ ସର୍ବମୋଟ ୧୯୬ଟି ଗୀତିକବିତା ସ୍ଥାନ ପାଇଛି । କେତେଗୁଡ଼ିଏ କବିତା ଦାର୍ଶନିକ ତତ୍ତ୍ୱପୂର୍ଣ୍ଣ । କେତେକ କବିତାରୁ ଈଶ୍ୱର ବିଶ୍ୱାସର ପରିଚୟ ମିଳେ । ସ୍ଥାନବିଶେଷର ବର୍ଣ୍ଣନା କେତେକ ଗୀତିକବିତାରେ ଅଛି । ସମାଜ ଉପରେ ସେ କେତେକ କବିତା ରଚନା କରିଛନ୍ତି । ସେଥିମଧ୍ୟରେ ଚନ୍ଦ୍ରପ୍ରଭାର ନିର୍ଜଳା ଏକାଦଶୀ ଅନ୍ୟତମ । ଏଥିରେ ସେ ସାମାଜିକ ବିଧିବିଧାନକୁ ବିଦ୍ରୂପ କରିଛନ୍ତି –

"ଷାଠିଏ ବରଷ ବୁଢ଼ା ବିଭା ହୋଇପାରେ
ବାଳିକା ସକାଶେ ଶାସ୍ତ୍ର ବିଧାନ ବାହାରେ ।"

କେତେକ କବିତାରୁ କବିଙ୍କ ଦେଶପ୍ରେମର ପରିଚୟ ମିଳେ । ସେ ଭାରତୀୟମାନଙ୍କୁ ଉନ୍ନତି ପଥରେ ଧାବମାନ ହେବାକୁ ଆହ୍ୱାନ କରିଛନ୍ତି –

"ହେ ଉତ୍କଳ ଭେଣ୍ଡା ନୁହଁ ତ ହେ ମେଣ୍ଢା
ହୋଇ ଶାର୍ଦ୍ଦୂଳ ସନ୍ତାନ
ଅଧମ ବେଭାରେ ଅନ୍ୟ ଜାତିଠାରେ
ହେଉଅଛ ହୀନିମାନ ।"

ତାଙ୍କର ଓଡ଼ିଆ ଭାଷାପ୍ରୀତି ହାଟବାହୁଡ଼ା କବିତାରୁ ଜଣାଯାଏ –

"ଓଡ଼ିଶୀ ସାହିତ୍ୟେ ଯେ ବଣିଜ କଲା,
ଜାଣିଥିବ ସେହି ଲୋକଟି ମଲା ।"

## ପୂଜାଫୁଲ, ଧୂଳି

'ପୂଜାଫୁଲ' ୧୯୧୨ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ମାନବ ବନ୍ଦନା, ଦେଶପ୍ରୀତି ଓ ମାତୃଭାଷା ପ୍ରଭୃତି ବହୁ ଗୀତିକବିତା ଅଛି । ମାତୃଭାଷାର ଶ୍ରେଷ୍ଠତ୍ୱ ସେ ଏକ କବିତାରେ ପ୍ରତିପାଦନ କରିଛନ୍ତି –

''ପଢ଼ିଲି ନାନା ଦେଶ ଭାଷା
କାହିଁ ତ ନ ପୂରିଲା ଆଶା
ହେଉ ପଛକେ ସେ ନିକୃଷ୍ଟ
ମୋ ମାତୃଭାଷା ମୋତେ ଶ୍ରେଷ୍ଠ ।''

'ଧୂଳି' କାବ୍ୟ ୧୯୧୨ ମସିହାରେ ରଚିତ ହୋଇଥିଲା । ଏଥିରେ ଦାର୍ଶନିକ ଭାବଧାରା ପ୍ରବାହିତ ହେଉଅଛି । କବିଙ୍କୁ ଧନ, ସଂସାର ସବୁ ତୁଚ୍ଛ ଲାଗିଛି । ଈଶ୍ୱରପ୍ରୀତି ତାଙ୍କ ହୃଦୟରେ ଜାତ ହୋଇଛି । ପ୍ରଭୁଙ୍କ ପଦାରବିନ୍ଦରେ ସେ ନିଜକୁ ସମର୍ପଣ କରିଦେବାପାଇଁ ଇଚ୍ଛା ପ୍ରକାଶ କରିଛନ୍ତି –

''ସଂସାର ସଂଭ୍ରମ ବିତ୍ତ କରି ତୁଚ୍ଛ ଜ୍ଞାନ
କର କୃପା ତବ ପଦେ ରଖିଥିବି ଧ୍ୟାନ
ଆସିଛି ଏକାକୀ ଯିବି ଏକାକୀ ଚକ୍ରବାଳ
ଅନ୍ତିମ କାଳରେ ତବ କରୁଣା ସମ୍ବଳ ।''

## ବୌଦ୍ଧାବତାର

ଏହି କାବ୍ୟ ୧୯୧୨ ମସିହାରେ ପ୍ରକାଶିତ ହେଲା । ଏହା ବଙ୍ଗୀୟ କବି ନବୀନ ଚନ୍ଦ୍ର ସେନଙ୍କ 'ଅମିତାଭ' କାବ୍ୟ ଅବଲମ୍ବନରେ ରଚିତ ହୋଇଥିବା ଜଣାଯାଏ । ଏହାର ମୁଖବନ୍ଧଟି ଅତୀବ ପାଣ୍ଡିତ୍ୟପୂର୍ଣ୍ଣ ହୋଇଛି । ଏହା ଓଡ଼ିଶାର ପ୍ରବନ୍ଧ ସାହିତ୍ୟକୁ ଏକ ଅମୂଲ୍ୟ ଦାନ ବୋଲି ଧରାଯାଏ । ଏହାର ୧୯ଟି ସର୍ଗ ଅଛି ।

କାବ୍ୟରେ ବୁଦ୍ଧଦେବଙ୍କ ଜୀବନଚରିତ ବର୍ଣ୍ଣିତ ଅଛି । ବୁଦ୍ଧଦେବଙ୍କର ଜନ୍ମ, କୋଷ୍ଠି ଗଣନା, ବାଲ୍ୟଜୀବନ, ଜୀବେ ପ୍ରତି ଦୟା, ଗୋପାଙ୍କ ସହିତ ବିବାହ, ବୈରାଗ୍ୟ ସଞ୍ଚାର, ଗୃହତ୍ୟାଗ, ସନ୍ନ୍ୟାସ ବ୍ରତ ଅବଲମ୍ବନ, ତପସ୍ୟା, ସିଦ୍ଧିଲାଭ, ବୁଦ୍ଧତ୍ୱ ପ୍ରାପ୍ତି, ଧର୍ମ ପ୍ରଚାର ଓ ଶେଷରେ ପତ୍ନୀ ପୁତ୍ରଙ୍କ ସହ ମିଳନ ପ୍ରଭୃତି ଏହାର ବିଷୟବସ୍ତୁ । କିନ୍ତୁ ଫକୀରମୋହନ ଏହାକୁ ଯେପରି ରଚନା କରିଛନ୍ତି, ତାହା ଅତ୍ୟନ୍ତ ହୃଦୟସ୍ପର୍ଶୀ ହୋଇଉଠିଛି । ଏହାକୁ ପାଠ କଲେ ସ୍ଥଳବିଶେଷରେ

ଚକ୍ଷୁରୁ ଲୋତକ ଝରିପଡ଼େ । ନବାକ୍ଷରୀ ବୃତ୍ତିରୁ ଆରମ୍ଭ କରି ଅମିତ୍ରାକ୍ଷର ପର୍ଯ୍ୟନ୍ତ ସମସ୍ତ ଛନ୍ଦରେ ଏହା ରଚିତ ହୋଇଅଛି ।

## ଗଦ୍ୟସାହିତ୍ୟ : ଉପନ୍ୟାସ ଓ ଗଳ୍ପ

ଫକୀରମୋହନଙ୍କ ସାରସ୍ୱତ ପ୍ରତିଭା କିନ୍ତୁ ଗଦ୍ୟସାହିତ୍ୟରେ ଫୁଟିଉଠିଥିଲା । ଲୋକକଥିତ ଭାଷାରେ ଓଡ଼ିଆ ସମାଜର କାହାଣୀକୁ ଯେପରି ସଫଳତାର ସହ ସେ ରୂପ ଦେଲେ, ତାହା ବହୁକାଳ ପରେ ଅନ୍ୟ ପ୍ରାନ୍ତୀୟ ଉପନ୍ୟାସ ସାହିତ୍ୟରେ ସମ୍ଭବ ହେଲା । ଫକୀରମୋହନ ବାସ୍ତବରେ ହେଉଛନ୍ତି ଓଡ଼ିଆ ସାହିତ୍ୟର କଥାସମ୍ରାଟ୍ ।

ଚାକିରି ଜୀବନରୁ ଅବସର ନେଲା ପରେ ନିଜ ଜୀବନର ଶେଷ କୋଡ଼ିଏ ବର୍ଷ ମଧ୍ୟରେ ଫକୀରମୋହନ ଚାରି ଖଣ୍ଡ ଉପନ୍ୟାସ ଓ ପ୍ରାୟ କୋଡ଼ିଏଟି କ୍ଷୁଦ୍ର ଗଳ୍ପ ରଚନା କରିଛନ୍ତି । ଏହି ଉପନ୍ୟାସଗୁଡ଼ିକ ହେଲା 'ଛ'ମାଣ ଆଠଗୁଣ୍ଠ', 'ଲଛମା', 'ମାମୁଁ' ଓ 'ପ୍ରାୟଶ୍ଚିତ୍ତ' । ଦୀର୍ଘ ଦୁଇ ଶହ ବର୍ଷ ମଧ୍ୟରେ ଯେଉଁ ପ୍ରଶାସନିକ, ଆର୍ଥନୀତିକ, ସାମାଜିକ ଓ ସାଂସ୍କୃତିକ ପରିବର୍ତ୍ତନ ଘଟିଲା, ତାହାକୁ ଏଗୁଡ଼ିକରେ ରୂପାୟନ କରିବାରେ ଔପନ୍ୟାସିକ ଫକୀରମୋହନ ଅସାଧାରଣ ସାଫଲ୍ୟ ଅର୍ଜନ କରିଛନ୍ତି ।

## ଛ'ମାଣ ଆଠଗୁଣ୍ଠ

ଏହା ଫକୀରମୋହନଙ୍କ ପ୍ରଥମ କ୍ରାନ୍ତିକାରୀ ଉପନ୍ୟାସ । ଏହା ପ୍ରଥମେ ଉତ୍କଳ ସାହିତ୍ୟ ପତ୍ରିକାରେ ୧୮୯୭ ଅକ୍ଟୋବର ମାସରେ ପ୍ରକାଶ ପାଇଲା ଓ ୧୮୯୯ ମସିହାରେ ଶେଷ ହେଲା । ଏହା ଅବଶ୍ୟ ଧୂର୍ଜଟି ଛଦ୍ମ ନାମରେ ପ୍ରକାଶ ପାଇଥିଲା । ଏଥିରେ ସମାଜରେ ଥିବା ଅନ୍ୟାୟ, ଅତ୍ୟାଚାର ଓ ପରଦ୍ରବ୍ୟ ଅପହରଣର କରୁଣ କାହାଣୀ ବର୍ଣ୍ଣିତ ଅଛି । ବ୍ୟର୍ଥତା ଓ ହାହାକାର ହେଉଛି ଏହାର ମର୍ମବାଣୀ ।

ଅନ୍ୟାୟ ଅତ୍ୟାଚାରର ପ୍ରତୀକ ହେଉଛି ଛ'ମାଣ ଆଠଗୁଣ୍ଠର ଖଳନାୟକ ରାମଚନ୍ଦ୍ର ମଙ୍ଗରାଜ । ମଙ୍ଗରାଜ ପିତାମାତାଙ୍କର ପରିଚୟ ନାହିଁ । ଅର୍ଥାଭାବରୁ ବାପାଙ୍କର ଶୁଦ୍ଧିକ୍ରିୟା କରିପାରି ନାହାନ୍ତି । ହେଲେ ବୁଦ୍ଧି ବଳରେ ପରବର୍ତ୍ତୀ ଅବସ୍ଥାରେ ହୋଇପାରିଛନ୍ତି ଜମିଦାର । ଅନ୍ୟର ବିତ୍ତ ଅପହରଣ କରିବାରେ ବୁଦ୍ଧି ଖଟାଇଛନ୍ତି । ଚକ୍ରାନ୍ତ କରି ଫତେପୁରର ଶେଖ ଦିଲବର ମିଆଁଠାରୁ ଫତେପୁର ଷରଷଣ୍ଡ ଜମିଦାରୀର ମାଲିକ ହୋଇଛନ୍ତି । ରାଣ୍ଡୀ ଖଣ୍ଡୀଙ୍କ ସମ୍ପତ୍ତି

ଅପହରଣ କରିଛନ୍ତି । ଶେଷରେ ତାଙ୍କର ଲୋଲୁପ ଦୃଷ୍ଟି ପଡ଼ିଛି ଶାରିଆ ଭଗିଆଙ୍କର ଛ'ମାଣ ଆଠଗୁଣ୍ଠ ଜମି ଉପରେ । ଏହି କାର୍ଯ୍ୟରେ ସାହାଯ୍ୟ କରିଛି ପୋଇଲୀ ଚମ୍ପା । ପୋଇଲୀ ହେଲେ ବି ତା'ର କ୍ଷମତା ବହୁତ – ଏପରିକି ସାଆନ୍ତାଣୀଙ୍କଠାରୁ ଢେର୍ ବେଶୀ । ମଙ୍ଗରାଜ ଶାରିଆର ଜମିକୁ ହସ୍ତଗତ କରିବାପାଇଁ ଚମ୍ପାକୁ ଲଗାଇଛନ୍ତି । ଚମ୍ପା ବି କଳକୌଶଳ କରି ଶାରିଆର ଛ'ମାଣ ଆଠଗୁଣ୍ଠ ଜମିକୁ କଣ୍ଟକବଲା କରାଇ ନେଇଛି । ମଙ୍ଗରାଜ ଶେଷରେ ସେହି ଜମିର ମାଲିକ ହୋଇଛନ୍ତି । ଶାରିଆର ନେତକୁ ନେବାକୁ ବି ଛାଡ଼ି ନାହାନ୍ତି । ଭଗିଆ ପାଗଳ ହୋଇଛି । ଶାରିଆ ଜମିଦାରଙ୍କ ବାରିପିଣ୍ଡାରେ ଅନାହାରରେ ପଡ଼ି ପଡ଼ି ମୃତ୍ୟୁବରଣ କରିଛି । ମଙ୍ଗରାଜଙ୍କ କାର୍ଯ୍ୟ ସେତିକିରେ ଶେଷ ହୋଇ ନାହିଁ । ବାଘସିଂହ ବଂଶର ସର୍ବନାଶ କରିଛନ୍ତି । ଏହି ବିଷୟରେ ମଙ୍ଗରାଜ ଓ ଚମ୍ପା ମଧ୍ୟରେ ମନ୍ତ୍ରଣା ଚାଲିଥିଲାବେଳେ ସାଆନ୍ତାଣୀ ଏପରି କାର୍ଯ୍ୟରୁ ନିବୃତ୍ତ ହେବାପାଇଁ ନିବେଦନ କରିଛନ୍ତି । ହେଲେ ଚମ୍ପା ତାଙ୍କୁ ଅବଜ୍ଞା କରିଛି । ଟାଙ୍ଗୀ ମାଉସୀ ବେଶରେ ଚମ୍ପା ବାଘସିଂହଙ୍କ ଘର ପୋଡ଼ି ଦେଇଛି । ମଙ୍ଗରାଜଙ୍କ ପତ୍ନୀଙ୍କର ବିୟୋଗ ହୋଇଚି । ସେ ମଧ୍ୟ ଜେଲ୍ ଯାଇଛନ୍ତି । ଜେଲରେ ପାଗଳ ଭଗିଆ ତାଙ୍କୁ କାମୁଡ଼ି ପକାଇଛି । ଶେଷରେ ମଙ୍ଗରାଜ ଜେଲରୁ ମୁକୁଳି ଘରକୁ ଆସିଛନ୍ତି । ଚଉତରା ପାଖରେ ପଡ଼ି ମୃତ୍ୟୁବରଣ କରିଛନ୍ତି । ଗ୍ରାମ୍ୟ ଜୀବନକୁ ନେଇ ଫକୀରମୋହନ ସୃଷ୍ଟିର ହର୍ମ୍ୟ ନିର୍ମାଣ କରିଛନ୍ତି । କୁଚକ୍ରୀ ମଙ୍ଗରାଜ, ସତୀ ସାଆନ୍ତାଣୀ, ନିରୀହା ଶାରିଆ ବା ନିଷ୍ଠୁରା ଚମ୍ପା ପ୍ରଭୃତିଙ୍କର ଚରିତ୍ର ଚିତ୍ରଣ ସ୍ୱାଭାବିକ ହୋଇପାରିଛି । ସର୍ବୋପରି ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ନୈତିକତା ଓ ଆଧ୍ୟାତ୍ମିକତା ପ୍ରଭୃତି ବିଭିନ୍ନ ବିଭବରେ ଏହାକୁ ସର୍ବାଙ୍ଗ ସୁନ୍ଦର କରିଛନ୍ତି । 'ଛ'ମାଣ ଆଠଗୁଣ୍ଠ' ଓଡ଼ିଆ ଉପନ୍ୟାସ ଜଗତର ଏକ ବିସ୍ମୟ ବୋଲି ମନେହୁଏ । ବିଶ୍ୱ ସାହିତ୍ୟର ଏକ ମର୍ଯ୍ୟାଦାବନ୍ତ ସ୍ଥାନ ପାଇବାର ଯୋଗ୍ୟ ବୋଲି ସମସ୍ତେ ମତ ଦିଅନ୍ତି ।

**ଲଛମା**

ଏହା ଏକ ଐତିହାସିକ ଉପନ୍ୟାସ । ୧୯୧୧ ମସିହାରୁ କ୍ରମାଗତଭାବେ ଉତ୍କଳ ସାହିତ୍ୟରେ ପ୍ରକାଶ ପାଇଥିଲା । ପତ୍ରିକାରେ ପ୍ରକାଶ ପାଉଥିଲାବେଳେ ଏହାର ନାମ ଥିଲା ଅପୂର୍ବ ମିଳନ । ପରେ ପୁସ୍ତକ ଆକାରରେ ପ୍ରକାଶ ହେଲାବେଳକୁ ଫକୀରମୋହନ ଏହାର ନାମ 'ଲଛମା' ରଖିଲେ । ଏହା ତାଙ୍କର ଦ୍ୱିତୀୟ ଉପନ୍ୟାସ ।

ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟ ଭାଗରେ ମରହଟ୍ଟାମାନେ ଓଡ଼ିଶାରେ ଶାସନ କରୁଥିଲେ । ଫୌଜଦାରମାନେ ଓଡ଼ିଶାକୁ ଶୋଷଣ କରି ଚାଲିଥିଲେ । ଦେଶରେ ଶାସନଗତ ଶୃଙ୍ଖଳା ନ ଥିଲା । ବର୍ଗୀମାନେ ଦଳବଳ ହୋଇ ଗାଁଗଣ୍ଡା ଲୁଟ କରୁଥିଲେ । ଫକୀରମୋହନ ସେହି ଅତ୍ୟାଚାରର ଏକ ନିଖୁଣ ଚିତ୍ର ଉପନ୍ୟାସରେ ଅଙ୍କନ କରିଛନ୍ତି ।

ଉପନ୍ୟାସର ନାୟିକା ଲଛମା । ଛତିଶଗଡ଼ରୁ ଆସିଥିବା ଜଗନ୍ନାଥ ଯାତ୍ରୀଙ୍କ ମଧ୍ୟରେ ସେ ଓ ବାଦଲ ସିଂହ ଥିଲେ । ସେମାନଙ୍କ ମଧ୍ୟରେ ଥିଲା ଅନାବିଳ ପ୍ରେମ । ବିବାହପାଇଁ ସେମାନେ ମଧ ସଙ୍କଳ୍ପବଦ୍ଧ ଥିଲେ । ମାତ୍ର ବର୍ଗୀମାନଙ୍କ ଅତ୍ୟାଚାରରେ ସେମାନେ ପରସ୍ପରଠାରୁ ବିଚ୍ଛିନ୍ନ ହୋଇଛନ୍ତି । ଲଛମା ରାଇବଣିଆର ଗଡ଼ପତି ମାନଧାତାଙ୍କ ନିକଟରେ ଆଶ୍ରୟ ନେଇଛି । ମାନଧାତା ମଧ ବଙ୍ଗଳାର ସୁବେଦାର ଆଲିବର୍ଦ୍ଦି ଖାଁଙ୍କର ସାହାଯ୍ୟ ନେଇଛନ୍ତି । ମାତ୍ର ମାନଧାତାଙ୍କର ମୃତ୍ୟୁ ହୋଇଛି । ଦୁର୍ଗର ପତନ ଘଟିଛି । ଲଛମା ପୁରୁଷ ବେଶ ଧାରଣ କରିଛି । ତା'ର ଲକ୍ଷ୍ୟ ହୋଇଛି ଓଡ଼ିଶାର ଭାବୀ ମରହଟ୍ଟା ଶାସକ ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିବା । ବାଦଲ ସିଂହ ମଧ ଆଲିବର୍ଦ୍ଦି ଖାଁଙ୍କର ପ୍ରିୟପାତ୍ର ହୋଇପାରିଛି । ଉଭୟେ ମିଶି ଭାସ୍କର ପଣ୍ଡିତଙ୍କୁ ହତ୍ୟା କରିଛନ୍ତି । ଗୟା କ୍ଷେତ୍ରରେ ଉଭୟଙ୍କର ମିଳନ ହୋଇଛି ।

ଇତିହାସ ପଟ୍ଟଭୂମିରେ ମଧ୍ୟବର୍ତ୍ତୀକାଳୀନ ଓଡ଼ିଶାର ଜୀବନ ଚିତ୍ର ଫକୀରମୋହନ ଏହି ଉପନ୍ୟାସରେ ଅତି ସୁନ୍ଦର ଭାବରେ ଦେଇଛନ୍ତି । ଉପନ୍ୟାସର ଛତ୍ରେ ଛତ୍ରେ ଜାତୀୟତାଭାବ ପ୍ରତିଫଳିତ । ଇତିହାସର ଶୁଷ୍କ ଘଟଣାବଳୀକୁ ସେ ବର୍ଣ୍ଣନାର ଚମତ୍କାରିତାରେ ପ୍ରାଣବନ୍ତ କରିଛନ୍ତି । ଐତିହାସିକ ଉପନ୍ୟାସ ହିସାବରେ ଓଡ଼ିଆ ସାହିତ୍ୟରେ ଏହାର ସ୍ଥାନ ଅତୁଳନୀୟ ବୋଲି ଆଲୋଚକ ପଠାଣି ପଟ୍ଟନାୟକ ମତ ଦେଇଛନ୍ତି ।

## ମାମୁ

ଏହା ଲେଖକଙ୍କର ତୃତୀୟ ଉପନ୍ୟାସ । ଏହା ୧୯୧୩ ମସିହାରେ ପ୍ରକାଶ ପାଇଥିଲା । ଓଡ଼ିଶାରେ ଊନବିଂଶ ଶତାବ୍ଦୀର ଦ୍ୱିତୀୟଭାଗ ବେଳକୁ ସାମାଜିକ ବ୍ୟବସ୍ଥାରେ ବହୁ ପରିବର୍ତ୍ତନ ଘଟିଯାଇଥିଲା । ନୂତନ ଜମିଦାର ଗୋଷ୍ଠୀ ସଙ୍ଗେ ସଙ୍ଗେ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ ହୋଇଥିଲା । ଏମାନେ ଚାକିରି, କ୍ଷମତା ଓ ଅର୍ଥ ବଳରେ କୌଶଳ କରି ଅନ୍ୟମାନଙ୍କୁ ଶୋଷଣ

କରିବାକୁ ଲାଗିଲେ । ଏହାକୁ ଭିତ୍ତି କରି ଫକୀରମୋହନ ରଚନା କଲେ 'ମାମୁଁ' ଉପନ୍ୟାସ ।

ଏଥିରେ ଗ୍ରାମ୍ୟ ଜୀବନର ଚିତ୍ର ଥିଲେ ମଧ୍ୟ ଏହା ଗୌଣ ସ୍ଥାନ ଅଧିକାର କରିଅଛି । ସହର ଜୀବନର ଚିତ୍ତ ସଂଘର୍ଷ 'ମାମୁଁ' ଉପନ୍ୟାସରେ ସ୍ପଷ୍ଟ ଭାବରେ ପ୍ରତିଫଳିତ ହୋଇଅଛି ।

କଟକ କିଲଟରୀ ମୁନ୍‌ସିଖାନାର ମୋହରିର ହେଉଛନ୍ତି ଦାଶରଥି ଦାସ । ତାଙ୍କର ଦୁଇ ପୁତ୍ର ହେଲେ ବାନାମ୍ବର ଓ ନଟବର । ଏକମାତ୍ର କନ୍ୟା ଚାନ୍ଦମଣି । ସମୟକ୍ରମେ ଚାନ୍ଦମଣିର ବିବାହ ନିଜପୁରଗଡ଼ର ଅଧୀଶ୍ୱର ପ୍ରତାପ ଉଦ୍ଦିତ ମଲ୍ଲ ଉତ୍ତରରାୟଙ୍କ ସହିତ ହୋଇଛି । ଦାଶରଥି ମଧ୍ୟ ଅବସର ଗ୍ରହଣ ପରେ ପରିବାର ସହିତ ଗ୍ରାମକୁ ଚାଲିଯାଇଛନ୍ତି । ସାନପୁଅ ନଟବର ଏଣ୍ଟ୍ରାନ୍‌ସ ପାସ୍ କରି କଟକ କଚେରିରେ ନାଜର ହୋଇଛନ୍ତି । ତାଙ୍କର ବିବାହ ହୋଇଛି ପରମ୍ପରାହୀନ ଏକ ପରିବାରରେ । ବିବାହ ପରେ ପତ୍ନୀ ବିଶାଖା ଦେଈଙ୍କୁ ଧରି କଟକରେ ରହିଛନ୍ତି । ସେଠି ଚିତ୍ରକଳା ନାମକ ଚତୁରୀ ଓ ସୁନ୍ଦରୀ ନାରୀ ସହିତ ଅବୈଧ ସମ୍ପର୍କ ସ୍ଥାପିତ ହୋଇଛି । ସେ ନଟବରଙ୍କୁ ହାତ କରି ପ୍ରତିଷ୍ଠା ଲାଭ କରିବାକୁ ଚାହିଁଛି । ସେ ତାଙ୍କୁ ବଶୀଭୂତ କରି ନିଜର ସ୍ୱାର୍ଥ ହାସଲ କରିଚାଲିଛି । ତାଙ୍କୁ ସାହାଯ୍ୟ କରିଛି ଆଉ ଜଣେ ସଇତାନ – ପ୍ରଭୁଦୟାଲ । ପୁଣି ଘରେ ଆସି ରହିଛନ୍ତି ବିଶାଖା ଦେଈଙ୍କ ମାତା ମଙ୍ଗଳା ଦେଈ ଓ ଶଳା ରାଘବ ମହାନ୍ତି । ଏମାନେ ନିର୍ବୋଧ ହୋଇଥିବାରୁ ପ୍ରଭୁଦୟାଲର ହାତବାରିସି ହୋଇଛନ୍ତି ।

ଏହି ସମୟରେ ପ୍ରତାପ ଉଦ୍ଦିତ ମଲ୍ଲଙ୍କର ଅକାଳ ବିୟୋଗ ହୋଇଛି । ନଟବର ଚାନ୍ଦମଣିଙ୍କର ସମ୍ପତ୍ତି ଗ୍ରାସ କରିବାପାଇଁ ମାୟାଜାଲ ବିସ୍ତାର କରିଛନ୍ତି । ସମସ୍ତ ଅଳଙ୍କାର ସିନ୍ଦୁକ ଭିତରେ ସଜାଡ଼ିବାକୁ ଯାଇ ଚିତ୍ରକଳା ସାହାଯ୍ୟରେ ହସ୍ତଗତ କରିଛନ୍ତି । ମିଃ ଡାଉସନ୍‌ଙ୍କୁ ପ୍ରଭାବିତ କରି ଜମିଦାରୀ ନିଜେ ବୁଝିଛନ୍ତି । ଜମିଦାରୀରେ ଅତ୍ୟାଚାର ଆରମ୍ଭ ହୋଇଛି । କ୍ରମେ ନଟବରଙ୍କର ଲୋଭ ବଢ଼ିଛି । ସରକାରୀ ତହବିଲରୁ ଆଦାୟ ଟଙ୍କା ନେଇ ଘରେ ରଖିଛନ୍ତି ।

ନଟବର ଶେଷରେ ତାଙ୍କର କର୍ମଫଳ ଭୋଗ କରିଛନ୍ତି । ଚିତ୍ରକଳା ଓ ପ୍ରଭୁଦୟାଲ ରାଘବକୁ ହାତକରି ନାଟବନ୍ଦି ଟଙ୍କା ଚୋରାଇ ନେଇଛନ୍ତି । ରାଘବ ମହାନ୍ତି ଧରାପଡ଼ିଛି । ମାଡ଼ ହେବାରୁ ସବୁ କଥା କହିଛି । ମୋକଦ୍ଦମା ହୋଇଛି । ନଟବର ନିର୍ଦ୍ଦୋଷରେ ଖଲାସ ହୋଇଛନ୍ତି । ଚିତ୍ରକଳା ନିଜର କୃତକର୍ମପାଇଁ ପାଞ୍ଚ ବର୍ଷ ଜେଲ ଦଣ୍ଡ ଭୋଗିଛି ।

'ମାମୁ' ଫକୀରମୋହନଙ୍କ ଆଉ ଏକ ସାର୍ଥକ ସୃଷ୍ଟି । ଅନ୍ୟ ଉପନ୍ୟାସ ଭଳି ଏହା ଚରିତ୍ର ପ୍ରଧାନ । ଚାନ୍ଦମଣି, ଚିତ୍ରକଳା, ସରସ୍ୱତୀ ଦେଈ, ମେନକା ଦେଈ, ଗେହ୍ଲେଇ, ନାକଫୋଡ଼ିଆ ମା', ରାଘବ ମହାନ୍ତି, ହରିବୋଲ ବାରିକ ପ୍ରଭୃତିଙ୍କର ଚରିତ୍ର ଚିତ୍ରଣ ଅତି ବାସ୍ତବ ହୋଇଛି । ଏପରିକି ଡାଉସନ୍ ସାହେବ, ତାଙ୍କ ପତ୍ନୀ, ମେକଫରସନ ପ୍ରଭୃତି ବିଦେଶୀ ଚରିତ୍ରଗୁଡ଼ିକ ଜୀବନ୍ତ ହୋଇଉଠିଛନ୍ତି । ଗୋରା ହାକିମମାନେ କିପରି ଜଣେ ସାଧାରଣ ନାଜରର ହାତବାରିସି ହେଉଥିଲେ ଓ ଲୋକେ କିପରି ବିଦେଶୀ ଶାସନରେ ନ୍ୟାୟ ପାଉ ନ ଥିଲେ, ତାହାର ଏକ ଚିତ୍ର ଦେଇଛନ୍ତି । ସେ କାଳର ଇଂରେଜ ପଢୁଆ ବାବୁମାନେ କିପରି ବେଶ୍ୟାସକ୍ତ ହେଉଥିଲେ, ତାହା ଫକୀରମୋହନ ବର୍ଣ୍ଣନା କରିଛନ୍ତି । ପ୍ରତାପ ଉଦ୍ଦିତ ଓ ଚାନ୍ଦମଣିଙ୍କ ଅପୂର୍ବ ଦାମ୍ପତ୍ୟ ପ୍ରେମର ଅବତାରଣା କରାଯାଇଛି । ଆଲୋଚିକା ରଞ୍ଜିତା ନାୟକଙ୍କ ମତରେ, ''ସୁବ୍ୟବସ୍ଥିତ ଓ ଶୃଙ୍ଖଳିତ ପରିବାର ତଥା ସମାଜ ସୃଷ୍ଟିପାଇଁ ସେ ଯେଉଁ ସ୍ୱପ୍ନ ଦେଖିଛନ୍ତି, ତା'ର ରୂପରେଖ ଏହି ମାମୁ ଉପନ୍ୟାସରେ ଦେଇଛନ୍ତି ।'' କେତେକଙ୍କ ମତରେ ମାମୁ ଫକୀରମୋହନଙ୍କ ସର୍ବଶ୍ରେଷ୍ଠ କୃତି ।

**ପ୍ରାୟଶ୍ଚିତ୍ତ**

ଏହା ୧୯୧୫ ମସିହାରେ ରଚିତ ହୋଇଥିଲା । ଏଥିରେ ଲେଖକଙ୍କର ସଂସ୍କାରପ୍ରାଣତାର ପରିଚୟ ମିଳେ ।

ବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଭାରତୀୟ ସମାଜ-ସଂସ୍କାର ବାତ୍ୟା ପ୍ରବଳ ବେଗରେ ବହିଥିଲା । ଶିକ୍ଷିତ ଯୁବକମାନେ ଇଂରାଜୀ ଶିକ୍ଷା ଲାଭ କରି ହିନ୍ଦୁଧର୍ମରେ ସଂସ୍କାର ଆଣିବାପାଇଁ ଲାଗିପଡ଼ିଥିଲେ । ବହୁ ଶିକ୍ଷିତ ବ୍ୟକ୍ତି ପରମ୍ପରାର ବିରୋଧ କଲେ । ଜାତି ପ୍ରଥା ମଧ୍ୟ ଶିଥିଳ ହୋଇପଡ଼ିଲା । ଇଂରେଜ ଶିକ୍ଷାପ୍ରାପ୍ତ ଯୁବକମାନେ ନିଜ ନିଜର ମନୋନୀତ କନ୍ୟାମାନଙ୍କୁ ବିବାହ କଲେ । ଏହି ପଟ୍ଟଭୂମିରେ ଫକୀରମୋହନ ରଚନା କରିଛନ୍ତି ତାଙ୍କର ଶେଷ ଉପନ୍ୟାସ 'ପ୍ରାୟଶ୍ଚିତ୍ତ' ।

ଉପନ୍ୟାସର ନାୟକ ହେଉଛନ୍ତି ଗୋବିନ୍ଦଚନ୍ଦ୍ର । ତାଙ୍କ ପିତା ଜମିଦାର ବୈଷ୍ଣବ ଚରଣ ପଟ୍ଟନାୟକ ଥିଲେ ଶ୍ରୀକରଣ । ଶଙ୍କର୍ଷଣ ମହାନ୍ତି ଜାହାଜରେ କୁଲି କାମ କରି ପଇସା ସଞ୍ଚୟ କରି ଜମିଦାରୀ କିଣିଲେ ଓ ନିଜକୁ ଜମିଦାର ବୋଲାଇଲେ । ସେ ବୈଷ୍ଣବ ଚରଣଙ୍କର କଲେଜ ପଢୁଆ ପୁଅ ସଙ୍ଗେ ନିଜ କନ୍ୟା ଇନ୍ଦୁମତୀଙ୍କୁ ବିବାହ ଦେଇ ଶ୍ରୀଚରଣ ଗୋଷ୍ଠୀରେ ମିଶିବାକୁ ଚାହିଁଲେ । ମାତ୍ର ବୈଷ୍ଣବଚରଣ ଏ ପ୍ରସ୍ତାବକୁ ରୋକଠୋକ ମନା କରିଦେଲେ । ଶଙ୍କର୍ଷଣ

ମହାନ୍ତିଙ୍କ ପୋଇଲିପୁଅ ରାଜୀବଲୋଚନ ଗୋବିନ୍ଦଚନ୍ଦ୍ରଙ୍କ ସହପାଠୀ ଥିଲେ । ସେ ଶଙ୍କର୍ଷଣଙ୍କ ପ୍ରରୋଚନାରେ ଗୋବିନ୍ଦଚନ୍ଦ୍ରଙ୍କର ଇନ୍ଦୁମତୀ ସହ ବିବାହପାଇଁ ଲାଗିପଡ଼ିଲେ । ଇନ୍ଦୁମତୀ ନାମରେ ଲେଖା ଏକ କବିତା ଗୋବିନ୍ଦଚନ୍ଦ୍ରଙ୍କ ଆଗରେ ପଢ଼ିଛନ୍ତି । ଶେଷରେ ଗୋବିନ୍ଦଚନ୍ଦ୍ର ଇନ୍ଦୁ ପ୍ରତି ଆକୃଷ୍ଟ ହୋଇଛନ୍ତି ଓ ପିତାମାତାଙ୍କ ଅଜାଣତରେ ତାଙ୍କୁ ବିବାହ କରିଛନ୍ତି ।

ପୁତ୍ରର ଏପରି କାର୍ଯ୍ୟରେ ପିତା ବୈଷ୍ଣବଚରଣ ଭାଙ୍ଗି ପଡ଼ିଛନ୍ତି । ମାତା ହରପ୍ରିୟା ଦେବୀଙ୍କର ବିୟୋଗ ହୋଇଛି । ଗୋବିନ୍ଦଚନ୍ଦ୍ରଙ୍କ ପ୍ରତି ରାଜୀବଲୋଚନ ଶଠତା ଆଚରଣ କରିଛି । ଗୋବିନ୍ଦଚନ୍ଦ୍ର ମଧ ଘଟଣାଚକ୍ରରେ ପତ୍ନୀଙ୍କଠାରୁ ମାଡ଼ଖାଇ କ୍ଷତବିକ୍ଷତ ହୋଇପଡ଼ିଛନ୍ତି । ଇନ୍ଦୁମତୀ ନିଜକୁ ଦାୟୀ କରି ନଦୀରେ ପ୍ରାଣ ବିସର୍ଜନ କରନ୍ତି । ଗୋବିନ୍ଦଚନ୍ଦ୍ର ସନ୍ୟାସୀ ହୋଇଛନ୍ତି । ଶଙ୍କର୍ଷଣ ମଧ ସବୁ କାମ ପାଇଁ ନିଜକୁ ଦାୟୀ କରିଛନ୍ତି । ଭୁଲର ପ୍ରାୟଶ୍ଚିତ୍ତପାଇଁ ବୃନ୍ଦାବନ ଯାତ୍ରା କରିଛନ୍ତି । ବୈଷ୍ଣବଚରଣ ମଧ ନିଜ ଜାତିର ଟେକ ରଖିବାପାଇଁ ଭୁଲ କରିଥିବାରୁ ଦୁଃଖିତ ହେଇ ବୃନ୍ଦାବନକୁ ଯାଇଛନ୍ତି । ସମସ୍ତଙ୍କର ସାକ୍ଷାତ୍ ବୃନ୍ଦାବନରେ ହୋଇଛି । ପିତା ଓ ଶ୍ୱଶୁରଙ୍କ ନିର୍ଦ୍ଦେଶରେ ଗୋବିନ୍ଦଚନ୍ଦ୍ର ନିଜ ଜମିଦାରୀକୁ ଫେରିପାଇଛନ୍ତି । ଦୁଇ ଜମିଦାରୀ ମିଶିଯାଇଛି । ଗୋବିନ୍ଦଚନ୍ଦ୍ର କୁଳଦେବତା ବିନୋଦବିହାରୀଙ୍କ ମାର୍ଫତଦାର ଭାବେ ରହିଛନ୍ତି ।

ଫକୀରମୋହନ ବାସ୍ତବବାଦୀ ଥିଲେ । ତାଙ୍କର ସମସ୍ତ ରଚନା ଓଡ଼ିଶାର ପୁରପଲ୍ଲୀ ଅଞ୍ଚଳର ଏକ ଆଲୋକ ଚିତ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ତଥାପି ସେ ସ୍ୱପ୍ନ ଦେଖୁଥିଲେ । ସେ ଏକ ବଳିଷ୍ଠ ସମାଜ ଗଠନ ଦିଗରେ ବ୍ରତୀ ଥିଲେ । ସେ ସମାଜର ଦୋଷ–ଦୁର୍ବଳତାକୁ ସତର୍କତାର ସହ ଲକ୍ଷ୍ୟ କରିଥିଲେ ଓ ତାଙ୍କୁ ସଂସ୍କୃତ, ମାର୍ଜିତ ଓ ସୁସ୍ଥ କରିବାପାଇଁ ଯତ୍ନଶୀଳ ଥିଲେ । 'ପ୍ରାୟଶ୍ଚିତ୍ତ' ଉପନ୍ୟାସରେ ସେ ଜାତିପ୍ରଥା ପରି କଳଙ୍କିତ ବ୍ୟବସ୍ଥାର ସମାଲୋଚନା କରିଛନ୍ତି ।

### ଗଳ୍ପ ସମ୍ଭାର

ଆଲୋଚକ ସୁରେନ୍ଦ୍ର ମହାନ୍ତିଙ୍କ ମତରେ ଫକୀରମୋହନ ସମଗ୍ର ଭାରତୀୟ ଭାଷାମାନଙ୍କରେ ପ୍ରଥମ କ୍ଷୁଦ୍ରଗଳ୍ପ ସ୍ରଷ୍ଟା । ତାଙ୍କ ପୂର୍ବରୁ ଯେଉଁ କେତେଜଣ ପ୍ରତିବେଶୀ ସାହିତ୍ୟର ସ୍ରଷ୍ଟା ଗଳ୍ପ ରଚନା କରିଥିଲେ, ସେମାନଙ୍କ ଗଳ୍ପସବୁ ଫକୀରମୋହନଙ୍କ ପରି ଉତ୍କୃଷ୍ଟ କଳାଶ୍ରୀରେ ମଣ୍ଡିତ ନୁହେଁ । ଦେଶରେ ଆଧୁନିକ କଥାସାହିତ୍ୟ ସୃଷ୍ଟିରେ ସେ ହେଉଛନ୍ତି ଅଗ୍ରଗଣ୍ୟ ।

୧୮୬୮ ମସିହାରେ ଲଛମନିଆ ନାମରେ ତାଙ୍କର ଏକ କ୍ଷୁଦ୍ର ଗଳ୍ପ ବାଲେଶ୍ୱରରୁ ପ୍ରକାଶିତ 'ବୋଧଦାୟିନୀ' ପତ୍ରିକାରେ ପ୍ରକାଶ ପାଇଲା । ଓଡ଼ିଆ ଗଳ୍ପ ସାହିତ୍ୟରେ ଏହା ପ୍ରଥମ ବୋଲି ଧରାଯାଏ । ଏହା ଅବଶ୍ୟ ଫକୀରମୋହନଙ୍କ ଗଳ୍ପ ସଙ୍କଳନରେ ସ୍ଥାନ ପାଇ ନାହିଁ । ଫକୀରମୋହନଙ୍କ ପ୍ରସିଦ୍ଧ ଗଳ୍ପ 'ରେବତୀ' ୧୮୯୮ ମସିହାରେ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାରେ ପ୍ରକାଶିତ ହେଲା । ନାରୀ ଶିକ୍ଷା ପ୍ରତି ସେତେବେଳକାର ସମାଜର ମନୋଭାବ ଏଥିରେ ପ୍ରତିଫଳିତ ହୋଇଅଛି । 'ଡାକମୁନ୍‌ସି' ଗଳ୍ପରେ ଫକୀରମୋହନ ତତ୍କାଳୀନ ଇଂରାଜୀ ଶିକ୍ଷିତ ଯୁବକମାନଙ୍କର ମତିଗତି ଓ ତଜ୍ଜନିତ ନିରୀହ ପିତାର ଅସହାୟ ଭାବ ଅତି କରୁଣଭାବେ ବର୍ଣ୍ଣନା କରିଛନ୍ତି । 'ପେଟେଣ୍ଟ ମେଡ଼ିସିନ୍'ରେ ସମାଜରେ ମଧ୍ୟବିତ୍ତ ଶ୍ରେଣୀରେ ଦେଖା ଦେଇଥିବା ବ୍ୟଭିଚାରକୁ ପଦାରେ ପକାଇ ଦେଇଛନ୍ତି । 'ଧୂଳିଆବାବା'ରେ ଧର୍ମ ନାମରେ ଭଣ୍ଡାମିର ସ୍ୱରୂପକୁ ଉଦ୍‌ଘାଟିତ କରିଛନ୍ତି । 'ଅଧର୍ମ ବିତ୍ତ'ରେ ସେହିପରି ଅସତ୍ ଉପାୟରେ ଧନ ଅର୍ଜନ କରିବାର କରୁଣ ପରିଣତି ଦର୍ଶାଇଛନ୍ତି । 'ପାଠୋଇବୋହୂ', 'ସଭ୍ୟ ଜମିଦାର', 'ବୀରେଇ ବିଶ୍ୱାଳ', 'ରାଣ୍ଡୀ ପୁଅ ଅନନ୍ତା', 'ବଗଲା ବଗୁଲୀ', 'ସୁନାବୋହୂ', 'ଗାରୁଡ଼ିମନ୍ତ୍ର' ପ୍ରଭୃତି ଗଳ୍ପରେ ତତ୍କାଳୀନ ସମାଜରେ ଦେଖା ଦେଇଥିବା ଅନ୍ୟାୟ, ଅତ୍ୟାଚାର, ଅନ୍ଧବିଶ୍ୱାସ, ହୃଦୟହୀନତା ଓ ଚରିତ୍ରହୀନତାର ଚିତ୍ର ପ୍ରଦାନ କରିଛନ୍ତି । ଅର୍ଦ୍ଧଶତାବ୍ଦୀ ବିତି ଯାଇଥିଲେ ମଧ୍ୟ ଫକୀରମୋହନଙ୍କର ଗଳ୍ପଗୁଡ଼ିକରେ ଲୋକପ୍ରିୟତା ହ୍ରାସ ପାଇ ନାହିଁ । କାଳର କଷଟି ପଥରରେ ସେଗୁଡ଼ିକ ପରୀକ୍ଷିତ । ପ୍ରତ୍ୟେକ ଗଳ୍ପ ଓଡ଼ିଆ ସାହିତ୍ୟର ଅମୂଲ୍ୟରତ୍ନ ରୂପେ ବିବେଚିତ ହେଉଛି ।

## ଆତ୍ମଚରିତ

ଫକୀରମୋହନଙ୍କ ଆତ୍ମଚରିତର କିୟଦଂଶ ୧୯୧୫ ମସିହାରେ 'ସମ୍ବଲପୁର ହିତୈଷିଣୀ'ରେ ପ୍ରକାଶିତ ହୋଇଥିଲା । ପରେ ୧୯୧୬ ମସିହାରେ 'ସତ୍ୟବାଦୀ' ସାହିତ୍ୟ ପତ୍ରିକାରେ ଧାରାବାହିକ ଭାବେ ଏହା ପ୍ରକାଶ ପାଇଲା । ଫକୀରମୋହନଙ୍କ ମୃତ୍ୟୁ ପରେ ତାଙ୍କ ପୁତ୍ର ମୋହିନୀମୋହନ ସେନାପତି ଆତ୍ମଚରିତକୁ ପୁସ୍ତକ ଆକାରରେ ପ୍ରକାଶ କଲେ । ଏହାକୁ ସେ ଅନେକ ସ୍ଥଳରେ ସଂକ୍ଷିପ୍ତ କରିଦେଇଛନ୍ତି । କେତେକ ଅଂଶକୁ ମଧ୍ୟ ବାଦ୍ ଦେଇଛନ୍ତି ।

ଆତ୍ମଜୀବନୀରେ ଫକୀରମୋହନ ତାଙ୍କ ଜୀବନର ମୁଖ୍ୟ ଘଟଣାଗୁଡ଼ିକର ସବିଶେଷ ବିବରଣୀ ଦେଇଛନ୍ତି । ଏଥିରେ ସେ ତାଙ୍କର ପରିବାର, ଠାକୁରମା'ଙ୍କର ଅନାବିଳ ସ୍ନେହ, ବଡ଼ବାପାଙ୍କ କଠୋରତା, ଶିକ୍ଷାଲାଭ, ଅଝାଲ ସିଲାଇ ଓ ନିମକ ମାହାଲରେ ନିଯୁକ୍ତି, ଶିକ୍ଷକତା, ପାଠ୍ୟପୁସ୍ତକ ରଚନା, ପ୍ରଥମ ପତ୍ନୀବିୟୋଗ, କୃଷ୍ଣାକୁମାରୀଙ୍କ ସହ ବିବାହ, ଜନ୍ ବୀମ୍‌ସଙ୍କ ଅନୁଗ୍ରହ, ବିଭିନ୍ନ ଗଡ଼ଜାତମାନଙ୍କରେ ନିଯୁକ୍ତି, ପରିଣତ ବୟସରେ ଉପନ୍ୟାସ ପ୍ରଭୃତି ରଚନା ଆଦିକୁ ବିଶଦଭାବେ ବର୍ଣ୍ଣନା କରିଛନ୍ତି । ମୁଖ୍ୟତଃ, ଏଥିରେ ଓଡ଼ିଶାର ନୌବାଣିଜ୍ୟ, ଲବଣ ବ୍ୟବସାୟର ଦୁର୍ଦ୍ଦଶା, ମିସନାରୀମାନଙ୍କର ନୂଆ ଶିକ୍ଷାବ୍ୟବସ୍ଥା, ଅମଲାମାନଙ୍କ ଦୁର୍ନୀତି, ଗଡ଼ଜାତ ରାଜାମାନଙ୍କ ସ୍ୱେଚ୍ଛାଚାରିତା, ମାତୃଭାଷାର ଦୁରବସ୍ଥା, ଓଡ଼ିଶାରୁ ଓଡ଼ିଆ ଭାଷାକୁ ଉଠାଇ ଦେବାକୁ ଚକ୍ରାନ୍ତ, ସଂସ୍କାର ଆନ୍ଦୋଳନ ପ୍ରଭୃତି ଅତି ବିଶ୍ୱସ୍ତଭାବେ ବର୍ଣ୍ଣିତ ଅଛି । ଏହାକୁ ଅର୍ଦ୍ଧଶତାବ୍ଦୀର ସାମାଜିକ, ସାଂସ୍କୃତିକ ଓ ରାଜନୀତିକ ଜୀବନର ଜୀବନ୍ତ ଇତିହାସ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏହାର ଭାଷା ମଧ୍ୟ ସାବଲୀଳ । ଏହା ଉପନ୍ୟାସ ପରି ସୁଖପାଠ୍ୟ । ସେଥିପାଇଁ ଏହା ଓଡ଼ିଆ ସାହିତ୍ୟରେ ମର୍ଯ୍ୟାଦାପୂର୍ଣ୍ଣ ସ୍ଥାନ ଅଧିକାର କରିଅଛି ।

ଭାରତୀୟ ସାହିତ୍ୟରେ ଏପରି ଏକ ଆତ୍ମଚରିତ ଦୁର୍ଲଭ ବୋଲି ଜଣେ ବିଶିଷ୍ଟ ବଙ୍ଗୀୟ ଆଲୋଚକ ସ୍ୱୀକାର କରିଛନ୍ତି । ପଣ୍ଡିତ ନୀଳକଣ୍ଠ ଦାସଙ୍କ ମତରେ ଫକୀରମୋହନ ତାଙ୍କର ଦୈନ୍ୟ, ଦୁର୍ବଳତା ପର୍ଯ୍ୟନ୍ତ ପ୍ରକାଶ କରି ତାଙ୍କର ଗଭୀର ଆତ୍ମଗ୍ଲାନିକୁ ଆତ୍ମଶ୍ଳାଘାରେ ପରିଣତ କରିଛନ୍ତି । ସେ ପୁଣି ଲେଖିଛନ୍ତି – ''ଏପରି ଆତ୍ମଜୀବନୀ ଆମ ଜାଣିବାରେ ସାହିତ୍ୟରେ ଲେଖାହୋଇଛି ବୋଲି ମନେହୁଏ ନାହିଁ ।''

## ନନାଙ୍କ ପାଞ୍ଜି

ଏହା ଫକୀରମୋହନଙ୍କ ଏକ ରମ୍ୟ ରଚନା । ଏହା ଛଦ୍ମନାମ (ପଞ୍ଚୁଚନ୍ଦ୍ର ଧୀରେନ୍ଦ୍ର)ରେ ୧୯୦୩ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ଓଡ଼ିଆ ସାହିତ୍ୟର ଦୁରବସ୍ଥା, ସାମାଜିକ ଜୀବନ, ତତ୍କାଳୀନ ଶାସନ, ଇଂରାଜୀ ଶିକ୍ଷାପ୍ରାପ୍ତ ତଥା ବିରୋଧୀ ଯୁବକଙ୍କର ଚିତ୍ତ ଓ ବିଭିନ୍ନ ସମସ୍ୟାମାନ ନିଜ ଭଙ୍ଗୀରେ ପ୍ରକାଶ ପାଇଅଛି । ଏଥିରେ ଲେଖକ ତାଙ୍କର ସଂସ୍କାରପ୍ରାଣତାର ପରିଚୟ ଦେଇଛନ୍ତି ।

'ଯୋଗଶାସ୍ତ୍ର' ହେଉଛି ଫକୀରମୋହନଙ୍କ ଏକ ଦୀର୍ଘ ପ୍ରବନ୍ଧ । 'ବୌଦ୍ଧାବତାର' କାବ୍ୟରେ ଦୀର୍ଘ ମୁଖବନ୍ଧ ଲେଖି ସେ ନିଜର ପ୍ରାବନ୍ଧିକ ପ୍ରତିଭାର ପରିଚୟ ଦେଇଛନ୍ତି ।

କବି ଗୋପାଳକୃଷ୍ଣ ପଟ୍ଟନାୟକ, କବି ମାଇକେଲ ମଧୁସୂଦନ ଓ ମେଘନାଦ ବଧ, ଶ୍ରୀକ୍ଷେତ୍ରରେ ଚୈତନ୍ୟ ମହାପ୍ରଭୁ ପ୍ରଭୃତି ତାଙ୍କର ଅନ୍ୟାନ୍ୟ ଗଦ୍ୟ ରଚନା ।

## ଶେଷ ଜୀବନ

ଔପନ୍ୟାସିକ ଫକୀରମୋହନଙ୍କ ଶେଷ ଜୀବନ ଦୁଃଖମୟ ଥିଲା । ୧୯୦୯ ମସିହାରୁ ସେ ରୋଗାକ୍ରାନ୍ତ ହୋଇପଡ଼ିଲେ । ଗୁମାସ୍ତା ଦେଇଥିବା ଗନ୍ଧକ ଦ୍ରାବକ ପିଇ ସେ ବହୁକାଳ ଶଯ୍ୟାଶାୟୀ ହୋଇପଡ଼ିଲେ । ସୌଭାଗ୍ୟବଶତଃ, ସେ ନିଶ୍ଚିତ ମୃତ୍ୟୁରୁ ରକ୍ଷା ପାଇଥିଲେ । ଏହାପରେ ପୃଷ୍ଠବ୍ରଣ, ଉରୁସ୍ତମ୍ଭ ପ୍ରଭୃତି ରୋଗରେ ପଡ଼ିଲେ । ୧୯୧୫ ମସିହାରେ ପଣ୍ଡିତ ଗୋପବନ୍ଧୁ କଲିକତାରୁ ଫେରିଲାବେଳେ ତାଙ୍କୁ ଭେଟିଥିଲେ । ତାଙ୍କର ନିଃସହାୟତା ଦେଖି ସେ ଦୁଃଖ ପ୍ରକାଶ କରିଥିଲେ । ସେ କହିଥିଲେ – "ମୁଁ ଦୁଇ ଦିନ ଏଠାରେ ରହି ଆପଣଙ୍କ ଅବସ୍ଥା ବୁଝିଲି । ଆପଣ ନିତାନ୍ତ ଦୁର୍ବଳ, ନିଃସହାୟ ଓ ଏକାକୀ ହୋଇ ପଡ଼ିଛନ୍ତି । ଆପଣଙ୍କର ସେବା ଓ ସାହାଯ୍ୟ ସକାଶେ ଆତ୍ମୀୟ ଲୋକ ପାଖରେ ରହିବା ଆବଶ୍ୟକ ।"

## ସରସ୍ୱତୀ ଉପାଧି

୧୯୧୬ ମସିହାରେ ଫକୀରମୋହନଙ୍କୁ ବାମଣ୍ଡା ରାଜଦରବାର ପକ୍ଷରୁ 'ସରସ୍ୱତୀ' ଉପାଧିରେ ସମ୍ମାନିତ କରାଯାଇଥିଲା । ୧୯୧୭ ମସିହା ଶେଷ ଭାଗରେ କଟକରେ ଉତ୍କଳ ସମ୍ମିଳନୀ ବସିଥିଲା । ସେ ତା'ର ସଭାପତି ଆସନ ଅଳଂକୃତ କରିଥିଲେ ।

୧୯୧୮ ମସିହା ଜୁନ୍ ମାସ ୧୪ ତାରିଖରେ ତାଙ୍କର କର୍ମମୟ ଜୀବନର ଅବସାନ ହେଲା ।

ଫକୀରମୋହନ ହେଉଛନ୍ତି ଯଥାର୍ଥରେ ଆଧୁନିକ ଓଡ଼ିଆ ସାହିତ୍ୟର ସେନାପତି । ଓଡ଼ିଆ ଭାଷାର ଘୋର ଦୁର୍ଦ୍ଦିନରେ ସେ ଲେଖନୀ ଚାଳନା କରି ସରଳ, ସରସ, ମୌଳିକ ଓ ମାର୍ଜିତ ଗଦ୍ୟସାହିତ୍ୟ ସୃଷ୍ଟି କରିଗଲେ । କୌଣସି ପରମ୍ପରା ନ ଥିଲେ ସୁଦ୍ଧା ସେ ପ୍ରଥମଥରପାଇଁ ସମାଜର ଅବହେଳିତ,

ନିଷ୍ପେଷିତ, ଜୀବନ ସଂଗ୍ରାମରେ ଉତ୍ପୀଡ଼ିତ ବ୍ୟକ୍ତିଙ୍କର ସମସ୍ୟାକୁ ଲୋକଲୋଚନକୁ ଆଣିଲେ । ତାହା ପୁଣି ସହଜ ସାବଲୀଳ ଭଙ୍ଗୀରେ, ସାଧାରଣ ଜନତାର ତୁଣ୍ଡର ଭାଷାରେ । ପଣ୍ଡିତ ନୀଳକଣ୍ଠଙ୍କ ଭାଷାରେ, ''ଫକୀରମୋହନଙ୍କ ଉପନ୍ୟାସରେ ରୁଚିର ଅଭାବ ନାହିଁ, ଗରିମା ଅଛି ଅଥଚ ଗ୍ରାମ୍ୟତା ନାହିଁ ।'' ତାଙ୍କୁ କେହି କେହି ଓଡ଼ିଆ ଉପନ୍ୟାସର ଟମାସ୍ ହାର୍ଡି କହିଥାନ୍ତି । ଡସ୍କାଲେଟ୍, ଫିଲଡିଂ ବା ହଥର୍ଣ୍ଣଙ୍କ ଭଳି ବିଦେଶୀ ଔପନ୍ୟାସିକମାନଙ୍କ ଉପନ୍ୟାସ ସହିତ ତାଙ୍କ ଉପନ୍ୟାସ ତୁଳନୀୟ ହୋଇପାରେ । ତାଙ୍କର ସାହିତ୍ୟ କୌଣସି ଏକ ନିର୍ଦ୍ଦିଷ୍ଟ ଗୋଷ୍ଠୀ ବା ଦଳପାଇଁ ଉଦ୍ଦିଷ୍ଟ ନ ଥିଲା । ତାଙ୍କର ପାଠକ ଥିଲେ ଅଗଣିତ ଜନସାଧାରଣ । ଫକୀରମୋହନ ଓଡ଼ିଶାରେ ଉପନ୍ୟାସର ଶିଶୁ ଅବସ୍ଥାରେ ଲେଖନୀ ଚାଳନା କରିଥିଲେହେଁ ଏପର୍ଯ୍ୟନ୍ତ ଓଡ଼ିଆ ଗଳ୍ପ, ଉପନ୍ୟାସ ଜଗତରେ ଅନତିକ୍ରମଣୀୟ ହୋଇ ରହିଛନ୍ତି ।



## ଉତ୍କଳଘଣ୍ଟ
# ଯଦୁମଣି ମହାପାତ୍ର

ଯଦୁମଣି ମହାପାତ୍ର ଥିଲେ ରୀତିଯୁଗର ଆଉ ଏକ କବି । ସେ କେବଳ ଜାତିରେ ବିନ୍ଧାଣି ନ ଥିଲେ, ସେ ଥିଲେ ରୀତିଯୁଗ କାବ୍ୟର ଅନ୍ୟତମ ଶ୍ରେଷ୍ଠ ବିନ୍ଧାଣି । ତାଙ୍କ କାବ୍ୟକବିତା ଭିନ୍ନ ଭିନ୍ନ ଅନୁପ୍ରାସ, ଭିନ୍ନ ଭିନ୍ନ ଯମକ ଏବଂ ଶ୍ଳେଷ ପ୍ରଭୃତି ଅଳଙ୍କାର ବିଭବରେ ପରିପୂର୍ଣ୍ଣ । ଶାବ୍ଦିକ ଚାତୁର୍ଯ୍ୟରେ ସେ କେତେକ ସ୍ଥଳରେ ଉପେନ୍ଦ୍ର ଭଞ୍ଜଙ୍କୁ ବଳି ଯାଇଛନ୍ତି ବୋଲି ମନେହୁଏ । ନିଜର ଅସାଧାରଣ ପାଣ୍ଡିତ୍ୟ, କବିତ୍ୱ ଓ ପ୍ରତ୍ୟୁତ୍ପନ୍ନମତି ଯୋଗୁଁ ସେ ସମଗ୍ର ଉତ୍କଳ ଭୂମିରେ ଖ୍ୟାତି ଅର୍ଜନ କରିଛନ୍ତି ।

**ବାଲ୍ୟଜୀବନ**

ଯଦୁମଣି ମହାପାତ୍ର ଗଞ୍ଜାମ ଜିଲ୍ଲାର ଆଠଗଡ଼ ତାଲୁକାସ୍ଥ ମଥୁରା ଗ୍ରାମରେ ୧୭୮୩ ମସିହାରେ ଚିତ୍ରକାର ବଂଶରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ମୁକୁନ୍ଦ ମହାପାତ୍ର । ମାତା ଶୋଭା ଦେବୀ । ତାଙ୍କର ପୂର୍ବପୁରୁଷମାନେ ପୁରୀରୁ ଆସିଥିବାରୁ ସେମାନଙ୍କୁ ସମସ୍ତେ ମର୍ଯ୍ୟାଦା ଦେଉଥିଲେ । ମୁକୁନ୍ଦ ମହାପାତ୍ରଙ୍କର କୌଳିକ ବୃତ୍ତି ଥିଲା ପାଷାଣ କାଟି ମୂର୍ତ୍ତି ଗଢ଼ିବା ବା କାଠରେ ପ୍ରତିମା ନିର୍ମାଣ କରିବା । ସେ ରାଜ ଅନୁଗ୍ରହରୁ ଭଲରେ ଚଳି ଯାଉଥିଲେ । ଶୋଭା ଦେବୀ

ଦାରୁ ନିର୍ମିତ 'ଯଦୁକୃଷ୍ଣ' ମୂର୍ତ୍ତିକୁ ପୂଜା କରି ପୁତ୍ରସନ୍ତାନ ଲାଭ କରିବାରୁ ତା'ର ନାମ ଦେଲେ ଯଦୁମଣି ।

ଆଠଗଡ଼ ରାଜ୍ୟରେ ଚୋରମାନଙ୍କ ଉପଦ୍ରବ ଦେଖାଦେଲା । ଦିନେ ସେମାନେ ମୁକୁନ୍ଦଙ୍କୁ ମାଡ଼ ମାରି ତାଙ୍କର ସର୍ବସ୍ୱ ଲୁଣ୍ଠନ କରିନେଲେ । ଯାହାବି ଥିଲା ତାହା ପୁତ୍ରର ଏକୋଇଶିଆରେ ଖର୍ଚ୍ଚ ହୋଇଗଲା । ମୁକୁନ୍ଦ ତେଣୁ ଦୈନିକ ମଜୁରିରେ ଚଳିଲେ । ୧୭୯୧ ମସିହା ଆଡ଼କୁ ଦୁର୍ଭିକ୍ଷ ପଡ଼ିବାରୁ ମୁକୁନ୍ଦ ଭରଣପୋଷଣ କରିବାକୁ ସମର୍ଥ ହୋଇ ନ ଥିଲେ । ଏପରିକି ଦିନେ ଦିନେ ଉପବାସରେ ରହିବାକୁ ପଡ଼ିଲା । ଏହି ସମୟରେ ନୟାଗଡ଼ର ରାଜା ପଥରରେ ଏକ ମୂର୍ତ୍ତି ନିର୍ମାଣ କରିବାପାଇଁ ମୁକୁନ୍ଦଙ୍କୁ ଡକାଇ ପଠାଇଲେ । ମୁକୁନ୍ଦ ମହାପାତ୍ର ନିଜର ପତ୍ନୀ ଶୋଭାଦେବୀ ଓ ପୁତ୍ର ଯଦୁମଣିଙ୍କୁ ଧରି ନୟାଗଡ଼ ଆସିଲେ ।

### ବାଲ୍ୟଶିକ୍ଷା

ଯଦୁମଣିଙ୍କର ୪ ବର୍ଷ ୪ ମାସ ୪ ଦିନରେ ଖଡ଼ିଛୁଆଁ ହେଲା । ସେ ଦୁଷ୍ଟ ପ୍ରକୃତିର ଥିଲେ । ପାଠ ପଢ଼ାରେ ଆଗ୍ରହ ନ ଥିଲା । ତେବେ ଉପେନ୍ଦ୍ର ଭଞ୍ଜଙ୍କ ଛାନ୍ଦମାନ ସୁନ୍ଦର ଭାବରେ ବୋଲିପାରୁଥିଲେ ।

ନୟାଗଡ଼ରେ ସେ ଚାଟଶାଳୀ ପାଠ ଶେଷ କରି ସଂସ୍କୃତ ଅଧ୍ୟୟନ କଲେ ।'ଅମରକୋଷ' ଅଧ୍ୟୟନ ଶେଷ କଲେ । ରାଧାମୋହନଙ୍କ ମୂର୍ତ୍ତି ଓ ମନ୍ଦିର ନିର୍ମାଣ ଶେଷ ହେବା ପରେ ମଧ ରାଜା ମୁକୁନ୍ଦଙ୍କୁ ସ୍ଥାୟୀ ଭାବରେ ନୟାଗଡ଼ରେ ରଖିଲେ । ମାତ୍ର ତାଙ୍କ ଗୃହଟି ପୋଡ଼ିଯିବାରୁ ତାଙ୍କପାଇଁ ଇଟାମାଟିରେ ଗୃହ ନିର୍ମାଣ କରାଇଦେଲେ ।

### ହୟଗ୍ରୀବ ମନ୍ତ୍ର ସାଧନ

ଯଦୁମଣିଙ୍କର କବି ହେବାର ବାସନା ଥିଲା । ଉପେନ୍ଦ୍ର ଭଞ୍ଜଙ୍କ ପରି କୌଣସି ମନ୍ତ୍ରରେ ସିଦ୍ଧିଲାଭ କରିବାକୁ ସେ ଆଗ୍ରହୀ ହେଲେ । ୧୬ ବର୍ଷ ବୟସ ହୋଇଥିଲାବେଳେ ଗୁରୁଙ୍କ ଆଗରେ ତାଙ୍କ ଇଚ୍ଛା ପ୍ରକାଶ କଲେ । ତାଙ୍କର ଗୁରୁ ଥିଲେ ପଣ୍ଡିତ ବିଦ୍ୟାକର ମହାପାତ୍ର । ବିଦ୍ୟାକର ପ୍ରିୟ ଶିଷ୍ୟଙ୍କୁ ଘୁମୁସରର ଭଗବାନ୍ କବିରାଜ ବାହିନୀପତିଙ୍କ ନିକଟକୁ ପଠାଇଲେ । ବାଳକ ଯଦୁମଣି ପଚାରି ପଚାରି ବିଷ୍ଣୁଚକ୍ର ନାମକ ଗ୍ରାମକୁ ଗଲେ । ସେଠାରେ କବିରାଜ ବାହିନୀପତିଙ୍କୁ ଦେଖା କଲେ । ବାହିନୀପତିଙ୍କ କୃପାରୁ ସେ ମନ୍ତ୍ର ସାଧନାରେ ମଗ୍ନ ହେଲେ । ଶେଷରେ ସେ ସିଦ୍ଧି ଲାଭ କଲେ । ତନ୍ଦ୍ରା ଅବସ୍ଥାରେ ଅଶ୍ୱମୁଖ ବିଶିଷ୍ଟ ହୟଗ୍ରୀବ ତାଙ୍କ ସମ୍ମୁଖରେ ଉଭା ହୋଇ ପଣ୍ଡିତ ହେବାକୁ ବର

ଦେଲେ । କିନ୍ତୁ ତାଙ୍କୁ ପରିହାସ କରିଥିବାରୁ ସେ ହାସ୍ୟରସିକଭାବେ ଖ୍ୟାତିଲାଭ କରିବେ ଜଣାଇ ଅଦୃଶ୍ୟ ହୋଇଗଲେ । ତନ୍ଦ୍ରା ଭାଙ୍ଗିଯିବାପରେ ଯଦୁମଣିଙ୍କର ଚୈତନ୍ୟ ଲୋପ ପାଇଗଲା । ପରେ ପିତାମାତା ତାଙ୍କୁ ଖୋଜି ଖୋଜି ବିଷ୍ଣୁଚକ୍ର ଗ୍ରାମରେ ପହଞ୍ଚି ଅଚେତ ଅବସ୍ଥାରେ ପଡ଼ିଥିବାର ଦେଖିଲେ । ତାଙ୍କୁ ଚେତା କରାଇ ଶଗଡ଼ରେ ଲଦି ଗ୍ରାମକୁ ଫେରିଲେ ।

## ଦଶପଲ୍ଲାରେ ରହଣି

ଯଦୁମଣି ଦଶପଲ୍ଲାର କୁଞ୍ଜବନଗଡ଼ରେ ଅଜା ରଥୀ ଭାସ୍କରଙ୍କ ଗୃହରେ ରହି ଅଧ୍ୟୟନ କଲେ । ସେତେବେଳକୁ ତାଙ୍କୁ ୧୭/୧୮ ବର୍ଷ ବୟସ ହୋଇଥାଏ । ଅଜା ରଥୀ ଭାସ୍କରଙ୍କ ପଡ଼ୋଶୀ ଥିଲେ ରଘୁନାଥ ସୂତ୍ରରାୟ । ସେ ବିତ୍ତଶାଳୀ ଥିଲେ । ସେହି ପରିବାରର କନ୍ୟା ଥିଲେ ଖଞ୍ଜନା । ସେ ଅସାମାନ୍ୟା ସୁନ୍ଦରୀ ଥିଲେ । ଯଦୁମଣିଙ୍କର ମଧ୍ୟ ଆକର୍ଷଣୀୟ ଚେହେରା ଥିଲା । ଉଭୟଙ୍କ ମଧ୍ୟରେ ପ୍ରଣୟ ହେଲା । ଶେଷରେ ଦୁହିଁଙ୍କର ବିବାହ ହେଲା । ମଧୁଶଯ୍ୟା ଘରେ ବାର ବର୍ଷର ପିଲାକନ୍ୟା ସହ ସେ ରାତ୍ରି କଟାଇ ଥିବାରୁ ଘୋର ନିନ୍ଦା ହେଲା । ଅଷ୍ଟମଙ୍ଗୁଳା ଦିନ ତାଙ୍କର ଲୁଆଇଁ ଭାବରେ ଲୁଚି ରହିବାର କଥା । ମାତ୍ର ସେ ଲୁଚିବେ କ'ଣ, ଘରୁ ବାହାରି ପୁରୀ ପଳାଇଲେ ।

## ପୁରୀ ଯାତ୍ରା

ପୁରୀରେ ଯଦୁମଣି ପ୍ରଥମେ ଜଣେ ପଣ୍ଡିତଙ୍କ ଘରେ ରହି ସଂସ୍କୃତ କାବ୍ୟମାନ ପାଠ କଲେ । ପୁରୀରେ ରଥଯାତ୍ରା ସମୟରେ ତିଳୋତ୍ତମା ନାମ୍ନୀ ଜଣେ ଯୁବତୀଙ୍କ ସହିତ ଭେଟ ହେଲା । ତା' ସହିତ ପ୍ରେମାଳାପ ହେଲା । ସେହି ଯୁବତୀର ଘର ବାଘମାରି ଥିଲା । ସେ ବାଘମାରି ଆସି ଯୁବତୀ ଗୃହରେ ଛଅ ମାସ ରହିଲେ ।

ଏଣେ ଯଦୁମଣିଙ୍କୁ ତାଙ୍କର ପିତାମାତା ଏବଂ ଶ୍ୱଶୁରଘର ଲୋକେ ଖୋଜି ଖୋଜି ଅସ୍ଥିର ହୋଇପଡ଼ିଲେ । ତାଙ୍କର କୌଣସି ସନ୍ଧାନ ମିଳିଲା ନାହିଁ । ଶେଷରେ ବାଘମାରି ଗ୍ରାମରେ ତାଙ୍କୁ ଭେଟିଲେ । ଯଦୁମଣି ମଧ୍ୟ ଶ୍ୱଶୁରଙ୍କ ସହ ଗ୍ରାମକୁ ଆସିଲେ । ପତ୍ନୀ ଖଞ୍ଜନା ମଧ୍ୟ ଇଟାମାଟିକୁ ଆସିଲେ ।

ପିତା ମୁକୁନ୍ଦଙ୍କ ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନ ଥିଲା । ରାଜା ବିନାୟକ ମୁକୁନ୍ଦଙ୍କୁ ବାଟିଏ ଜମି ଚାଷ କରିବାକୁ ଦେଇଥିଲେ । ମାତ୍ର ତାହା ଡିପ ଜମି ଥିଲା । ଯାହା ସେଥିରୁ ପାଆନ୍ତି, ତା'ର ବହୁ ଅଂଶ ଖଜଣାରେ ଚାଲିଯାଉଥିଲା । ଖଞ୍ଜନା ବାପଘରକୁ ଯାଇ ଧନ ସଂଗ୍ରହ କରି ଆଣୁଥିଲେ ଓ ସେଥିରେ ପରିବାରଟି ଚଳୁଥିଲେ । ମାତ୍ର ଅଭାବ କ୍ରମେ ଲାଗିରହିଲା ।

## ନୟାଗଡ଼ ରାଜାଙ୍କ ସହିତ ପରିଚୟ

ଦୁଇଟି ଘଟଣାରେ ଯଦୁମଣି ଡକାହୋଇ ନୟାଗଡ଼ ରାଜାଙ୍କ ପାଖକୁ ଯାଇଥିଲେ । ଥରେ ଗୋଟିଏ ଗଉଡୁଣୀ ତାଙ୍କ ଦୁଆରରେ ଦହି, ଛେନା ବିକୁଥିଲା । ଶିଙ୍ଘାଣୀ ତା' ଲୁଗା କାନିରେ ପୋଛିବାରୁ ଯଦୁମଣି ତାହାକୁ ଶିଙ୍ଘାଣିପୋଛା କନା କହି ନିଜ ଶିଙ୍ଘାଣି ସେଥିରେ ପୋଛିଲେ । ଗଉଡୁଣୀ ତେଣୁ ରାଜାଙ୍କ ପାଖରେ ଆପତ୍ତି କଲା । ମାତ୍ର ସେ କୌଣସିମତେ ସେଥିରୁ ରକ୍ଷା ପାଇଗଲେ । ଦ୍ୱିତୀୟଥର ଗୋଟିଏ ତେଲୀ ମହାଜନ ରାଜାଙ୍କଠାରୁ ଅର୍ଥ ଆଣି ପ୍ରଜାଙ୍କ ବେଠିରେ ଦେବତାଙ୍କର ମଣ୍ଡପ ନିର୍ମାଣ କଲା । ଉକ୍ତ ମଣ୍ଡପଟି ସେ ନିଜ ନାମରେ ପ୍ରତିଷ୍ଠା କରିବାକୁ ବସନ୍ତେ, ଯଦୁମଣି ଏକ କବିତା ଲେଖି ପିଲାଙ୍କୁ ଶିଖାଇ ବୋଲାଇଲେ । ତେଲୀ ମହାଜନଟି ରାଜାଙ୍କ ପାଖେ ଆପତ୍ତି କରନ୍ତେ, ଯଦୁମଣି ତା'ର ଅର୍ଥ ରାଜାଙ୍କୁ ବୁଝାଇଦେଲେ । ରାଜା ପ୍ରକୃତ କଥା ଜାଣିପାରି ତାଙ୍କୁ ମୁକ୍ତ କଲେ । ଏହି ସମୟରେ ଯଦୁମଣିଙ୍କର ଏକ କନ୍ୟା ଜନ୍ମ ହେଲା । ତା'ର ନାମ ରମା ଦିଆଗଲା ।

ଅଭାବରୁ ଯଦୁମଣି ଓ ମୁକୁନ୍ଦଙ୍କ ମଧ୍ୟରେ ଝଗଡ଼ା ଲାଗିଲା । ଥରେ ଖଞ୍ଜନା ଘରେ ନ ଥିବାବେଳେ କଳି ସୃଷ୍ଟି ହେଲା । ଯଦୁମଣି ଅସମ୍ମାନିତ କଥା କହିବାରୁ ପିତା ରାଜାଙ୍କ ନିକଟରେ ଗୁହାରି କଲେ । ଖଞ୍ଜନା ବାପଘରୁ ଫେରିଆସିବାପରେ ଏହି ବିବାଦର ପରିସମାପ୍ତି ଘଟିଲା ।

ଯଦୁମଣି ଏହି ସମୟରେ କେତେକ ଚିତ୍ର ଅଙ୍କନ କରି ରାଜାଙ୍କର ପ୍ରଶଂସାଭାଜନ ହୋଇଥିଲେ ।

## ପିତାଙ୍କ ମୃତ୍ୟୁ

୧୮୦୮ ମସିହାରେ ପିତା ମୁକୁନ୍ଦ ମହାପାତ୍ରଙ୍କର ମୃତ୍ୟୁ ହେଲା । ତାଙ୍କର ଶବ କୌଣସିମତେ ଯଦୁମଣି ଦାହ କଲେ । ମାତ୍ର ଅନ୍ତ୍ୟେଷ୍ଟିକ୍ରିୟାପାଇଁ ହାତରେ ଧନ ନ ଥିଲା । ଶେଷରେ ସେ ଏକ ଉପାୟ ପାଞ୍ଚିଲେ । ନିଜର ସର୍ବାଙ୍ଗକୁ ବସ୍ତ୍ରରେ ଆବୃତ କରି ରାଧାମୋହନଙ୍କ ମନ୍ଦିର ଦୁଆରେ ଶୋଇରହିଲେ । ପଣ୍ଡାମାନେ ଆସି ଉଠିବାକୁ କହିଲେ ମଧ୍ୟ ସେ ସେଥିରେ କର୍ଣ୍ଣପାତ କଲେ ନାହିଁ । ଶେଷରେ ରାଜା ସେଠାକୁ ଆସିଲେ । ରାଧାମୋହନଙ୍କ ମୂର୍ତ୍ତିଟି ପିତା ନିର୍ମାଣ କରିଥିବାରୁ ସେ ତାଙ୍କର ଭାଇସଦୃଶ ଓ ପିତାଙ୍କର ଶୁଦ୍ଧି କାର୍ଯ୍ୟପାଇଁ ରାଧାମୋହନ ଦୁଇ ଶହ ଟଙ୍କା ଦେବା ଉଚିତ ବୋଲି କହିଲେ । ରାଜା ମଧ୍ୟ ବିରକ୍ତ ନ ହୋଇ ମୁକୁନ୍ଦଙ୍କର ଶୁଦ୍ଧିକ୍ରିୟାପାଇଁ ଦୁଇ ଶହ ଟଙ୍କା ଦେଲେ । ମୁକୁନ୍ଦଙ୍କର ଶୁଦ୍ଧିକ୍ରିୟା ମହାସମାରୋହରେ ଅନୁଷ୍ଠିତ ହେଲା ।

ଏହାପରେ ଯଦୁମଣି ଓ କନ୍ୟା ବେମାରରେ ପଡ଼ିଲେ । ପିତାଙ୍କ କାମ ଶେଷ ହେଲାବେଳକୁ ଘରେ ଖୁଦଟିଏ ମଧ ନ ଥିଲା । ଖଞ୍ଜନା ସ୍ୱାମୀ ଓ କନ୍ୟାଙ୍କୁ ବଞ୍ଚାଇବାପାଇଁ ସମସ୍ତ ଅଳଙ୍କାର ଗୋଟି ଗୋଟି କରି ବିକ୍ରୟ କରି ଚାଲିଲେ । ନାନା ଉପାୟ କଲେ ମଧ ଯଦୁମଣି ସୁସ୍ଥ ହେଲେ ନାହିଁ । ଏହି ସମୟରେ ବାଘମାରି ଗ୍ରାମର ସଙ୍ଗିନୀ ତିଳୋତ୍ତମା କୌଣସି ସୂତ୍ରରୁ ଯଦୁମଣିଙ୍କ ଅସୁସ୍ଥତାର ଖବର ପାଇ କିଛି ଅର୍ଥ ଦେବାରୁ ଯଦୁମଣି ସୁସ୍ଥ ହେଲେ ।

## କବି ଚକ୍ରପାଣିଙ୍କ ସହିତ ଭେଟ

ଖଲିକୋଟର ଚକ୍ରପାଣି ପଟ୍ଟନାୟକ ଜଣେ ବିଦ୍ୱାନ୍ ଓ ପଣ୍ଡିତ ଥିଲେ । ସେ ଥରେ ନୟାଗଡ଼ ରାଜସଭାରେ ପହଞ୍ଚିଲେ । ସେ ବାଟରେ ଆସୁଥିବାବେଳେ ଯଦୁମଣି ତାଙ୍କୁ ଭେଟିଲେ । ସେ ଯଦୁମଣିଙ୍କ ପ୍ରତିଭାରେ ବିସ୍ମିତ ହୋଇପଡ଼ିଲେ । ସେ କିନ୍ତୁ ରାଜସଭାରେ ବସୁ ନ ଥିବା ଜାଣି ଦୁଃଖିତ ହେଲେ । ଚକ୍ରପାଣି ଯଦୁମଣିଙ୍କ ସହିତ ଶାସ୍ତ୍ରଚର୍ଚ୍ଚା କରିବେ ବୋଲି କହିବାରୁ ରାଜା ଲୋକ ପଠାଇ ଯଦୁମଣିଙ୍କୁ ଡାକି ଆଣିଲେ । ରାଜଦରବାରରେ ଦୁହିଁଙ୍କ ମଧରେ ଶାସ୍ତ୍ରଚର୍ଚ୍ଚା ହେଲା । ଯଦୁମଣି ଚକ୍ରପାଣିଙ୍କ ସମସ୍ତ ପ୍ରଶ୍ନର ଉତ୍ତର ଦେଲେ । ଶେଷରେ ଯଦୁମଣି ଚକ୍ରପାଣିଙ୍କୁ ଗୋଟିଏ ପ୍ରଶ୍ନ ପଚାରିଲେ । ଚକ୍ରପାଣି ତା'ର ଉତ୍ତର ଦେଇପାରିଲେ ନାହିଁ । ଚକ୍ରପାଣି ମଧ ପରାସ୍ତ ହୋଇଥିବା କଥା ସ୍ୱୀକାର କଲେ । ଉତ୍କଳକବିଗୌରବ ଲାଭ କରିବେ ବୋଲି ସେ ଯଦୁମଣିଙ୍କୁ ଆଶୀର୍ବାଦ କଲେ ।

ନୟାଗଡ଼ର ରାଜା ଯଦୁମଣିଙ୍କ ପ୍ରତିଭାର ପରିଚୟ ପାଇ ତାଙ୍କୁ ଏକ ବାଟି ନିଷ୍କର ଜମି ଦାନ କଲେ । ପରେ ତାଙ୍କୁ ନିଜ ସଭାରେ ଯଥାଯୋଗ୍ୟ ଆସନ ଦେଲେ ।

ରାଜା ନିଷ୍କର ଜମି ଦାନ କଲେ ମଧ କଚେରିର ବେବର୍ତ୍ତା କରଣ ଦେବାକୁ ଟାଳଟୁଳ କରିବାରୁ ଯଦୁମଣି ବ୍ୟସ୍ତ ହୋଇପଡ଼ିଲେ । ଶେଷରେ ବେବର୍ତ୍ତା ଗୋଟିଏ ଅତି ଢିପ ଟାଙ୍ଗରା ଜମି ଯଦୁମଣିଙ୍କ ନାମରେ କରିଦେଲେ । ଯଦୁମଣି ପଟ୍ଟା ଅନୁସାରେ ଜମି ମଡ଼ାଣ ନେବାକୁ ଯାଇ ତାହାକୁ ଦେଖି ହତାଶ ହେଲେ । ରାଜାଙ୍କୁ ସେ କବିତା ମାଧମରେ ଜଣାଇଲେ –

''ଦେଉ ଆଜ୍ଞା ଦେଲେ ହରଷେ
କରଣ ତା' କଲେ ବରଷେ
ବାଛି ବାଛି କରି ଦେଲେ ପଡ଼ିଆ
ଶ୍ରାବଣ ମାସରେ ଭାଙ୍ଗେ ନଡ଼ିଆ
ଏମନ୍ତ ସେ ଭୂଇଁ
ଚାକୁଣ୍ଡା ବୁଣିଲେ ଉଠଇ ନାହିଁ ।''

ରାଜା ତାହା ସତ୍ୟ ବୋଲି ତଦନ୍ତରୁ ଜାଣିପାରିଲେ । ଫଳରେ ତାଙ୍କୁ ଏକ ବାଟି ମୂଲ୍ୟବାନ୍ ଦୋଫସଲି ଜମି ମିଳିଲା ।

## ନୟାଗଡ଼ ରାଜାଙ୍କ ସହିତ ଆତ୍ମୀୟତା

ଏହାପରେ ନୟାଗଡ଼ ରାଜାଙ୍କ ସହିତ ତାଙ୍କର ଆତ୍ମୀୟତା ବୃଦ୍ଧି ପାଇଲା । ଯଦୁମଣି ରାଜାଙ୍କର ପରମ ବିଶ୍ୱାସୀ ହୋଇପଡ଼ିଲେ । ଯଦୁମଣିଙ୍କ ବ୍ୟଙ୍ଗ, ବିଦ୍ରୂପ ଓ କଠୋର ମନ୍ତବ୍ୟକୁ ରାଜା ସହ୍ୟ କରୁଥିଲେ । ତାଙ୍କର ପାଣ୍ଡିତ୍ୟ ଓ ପ୍ରତ୍ୟୁତ୍ପନ୍ନମତିତା ତାଙ୍କୁ ମୁଗ୍ଧ କରୁଥିଲା । ବିଶେଷତଃ, ତାଙ୍କର ସ୍ୱାଧୀନ ମନୋଭାବକୁ ସେ ପ୍ରଶଂସା କରୁଥିଲେ । ଯଦୁମଣିଙ୍କ ପରିବାର ଚଳାଇବା ଅସୁବିଧା ଲକ୍ଷ୍ୟ କରି ଦୁଇ ବାଟି ଜମି ପୁଣି ଜାଗିରି ସୂତ୍ରେ ଦେଲେ । ସେ ରାଜାଙ୍କଠାରୁ ନାନା ଉପଢୌକନ, ବସ୍ତ୍ର, ଶଯ୍ୟା, ଶାଢ଼ି, ପାଟ, ବାସନ ପ୍ରଭୃତି ଲାଭ କରି ପରମ ଆନନ୍ଦରେ କାଳ ଯାପନ କଲେ । ଯଦୁମଣି ମଧ୍ୟ ରାଣୀଙ୍କର ପ୍ରିୟପାତ୍ର ଥିଲେ ।

## ବକ୍ସି ଜଗବନ୍ଧୁଙ୍କୁ ସାହାଯ୍ୟ

୧୮୧୭ ମସିହାରେ ଖୋର୍ଦ୍ଧାରେ ବିଦ୍ରୋହ ହେଲା । ଏହି ବିଦ୍ରୋହର ନେତୃତ୍ୱ ନେଇଥିଲେ ବକ୍ସି ଜଗବନ୍ଧୁ । ବିଦ୍ରୋହ ଦମନ ହେବା ପରେ ବକ୍ସି ଜଗବନ୍ଧୁ ନୟାଗଡ଼ ଅଞ୍ଚଳରେ ଦେବାନ କୃଷ୍ଣଚନ୍ଦ୍ରଙ୍କ ସହ ଗୋପନରେ ରହୁଥିଲେ । ଯଦୁମଣିଙ୍କର ବକ୍ସି ଜଗବନ୍ଧୁଙ୍କ ସହିତ ସାକ୍ଷାତ୍ ବାଉଁଶିଆପଡ଼ାସ୍ଥ ଏକ ଅରଣ୍ୟରେ ହୋଇଥିଲା ।

ବକ୍ସି ଜଗବନ୍ଧୁଙ୍କ କାର୍ଯ୍ୟପ୍ରତି ଯଦୁମଣିଙ୍କର ସମର୍ଥନ ଥିଲା । ସେ ନୟାଗଡ଼ର ରାଜା ବିନାୟକଙ୍କୁ ଜଣାଇ ପ୍ରଭୂତ ଅର୍ଥ, ସାମଗ୍ରୀ ସାହାଯ୍ୟ କରିଥିଲେ । ତାଙ୍କର ପ୍ରରୋଚନାରେ ରଣପୁର ରାଜା ବକ୍ରଧର ନରେନ୍ଦ୍ର ମଧ୍ୟ ବକ୍ସିଙ୍କୁ ସାହାଯ୍ୟ ଦେଉଥିଲେ । ଏହା ଏଡ଼େ ଗୋପନରେ ହେଉଥିଲା ଯେ ଇଂରେଜମାନେ ଏହାର ସୁରାକ ପାଇପାରୁ ନ ଥିଲେ । ଏହାପରେ ବକ୍ସି ବାଣପୁର ଅଞ୍ଚଳରେ ଗୋପନରେ ରହିଲେ । ସେଠାକୁ ମଧ୍ୟ ଖାଦ୍ୟ, ବସ୍ତ୍ର ଓ ନାନା ଉପଢୌକନମାନ ପଠାଯାଉଥିଲା । ଥରେ ଯଦୁମଣି ଏସବୁ ନେଇଗଲାବେଳେ ବାଟରେ ଧରା ପଡ଼ିଲେ । ମାତ୍ର ଚତୁର ଯଦୁମଣି ଭଗବତୀଙ୍କ ନିକଟକୁ ବଳି ପକାଇବାକୁ ଯାଉଛନ୍ତି କହି ଇଂରେଜ ଗୁପ୍ତଚରଙ୍କୁ ଦୁଇଟି ବୋଦା ଦେଇ ଖଲାସ ହେଲେ । ଇଂରେଜମାନେ ରଣପୁର ଓ ନୟାଗଡ଼ ରାଜାଙ୍କୁ ଧମକ ଦେଲେ ମଧ୍ୟ ଯଦୁମଣିଙ୍କଦ୍ୱାରା ନାନା କୌଶଳରେ ଜଗବନ୍ଧୁଙ୍କୁ ସାହାଯ୍ୟ ଦିଆଯାଉଥିଲା । ଯଦୁମଣି ମଧ୍ୟ 'ଜଗବନ୍ଧୁ ବିଳାପ' ନାମରେ ଏକ ପୁସ୍ତିକା ରଚନା କରିଥିବାର ଜଣାଯାଏ ।

ନୟାଗଡ଼ ରାଜପରିବାର ସହିତ ମକରଚୁଡ଼ରେ ଯୋଗ ନ ଦେବାରୁ ରାଜାଙ୍କ ସହିତ ଯଦୁମଣିଙ୍କର ସାମୟିକ ମନାନ୍ତର ହୋଇଥିଲେହେଁ ତାଙ୍କର ରାଜାଙ୍କ ସହିତ ନିବିଡ଼ ସମ୍ପର୍କ ଥିଲା ।

## ପୁତ୍ରର ମୃତ୍ୟୁ

ଯଦୁମଣିଙ୍କର ଏକମାତ୍ର ବାଳକପୁତ୍ର କପିଧ୍ୱଜର ଅତି ଶୋଚନୀୟଭାବେ ମୃତ୍ୟୁ ହେଲା । ଯଦୁମଣି ଏଥିରେ ଅତି ଅସହାୟ ବୋଧ କଲେ । ଏହାପରେ ସେ ସସ୍ତ୍ରୀକ ପୁରୀ ଗଲେ । ଜଗନ୍ନାଥ ମନ୍ଦିରରେ ବିଶିଷ୍ଟ କବି ବଳଦେବଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ବଳଦେବ ଜଗନ୍ନାଥଙ୍କ ସମ୍ମୁଖରେ ସର୍ପଜଣାଣଟି ଗାନ କରିବାପରେ ଯଦୁମଣି ଅତି ଦୁଃଖରେ ଗାଇଲେ –

"ନୀଳାଚଳ କଳାକର ! ସତ କି ଏ ମିଛ ?
ଦେଲ ଯାହା ନେଲ ତାହା ଏଥିକୁ କିପାଇଁ
ମହା ଦାତା ପଣେ ପତାକା ବାନ୍ଧିଛ ।"

ଏହି ଗୀତଟି ଗାଇସାରିବାପରେ ତାଙ୍କ ଆଖିରୁ ଲୁହ ଝର ଝର ହୋଇ ବୋହି ପଡ଼ିଲା । ସେ ଏହାପରେ ରଚନା କଲେ 'ରାଘବ ବିଳାସ' ।

## କନ୍ୟାର ବିବାହ

ଏକମାତ୍ର କନ୍ୟା ରମାକୁ ଖଣ୍ଡପଡ଼ା ନିବାସୀ ପିତୃମାତୃହୀନ ନରସିଂହ ଗୁଣୀନ୍ଦ୍ରଙ୍କ ସଙ୍ଗେ ବିବାହ କରି ଘରଜ୍ୱାଇଁ କରି ରଖିଲେ । ରମାର ଏକ ପୁତ୍ର ଜନ୍ମ ହେଲା । ତା'ର ନାମ ତାଳଧ୍ୱଜ ଦିଆଗଲା । ଯଦୁମଣି ତାକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କଲେ ।

## ବଳଦେବ ରଥଙ୍କ ସହିତ ବନ୍ଧୁତ୍ୱ

କବିସୂର୍ଯ୍ୟ ବଳଦେବ ମଧ ଥରେ ନୟାଗଡ଼ ରାଜସଭାକୁ ଆସିଥିଲେ । ଯଦୁମଣିଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା । ବଳଦେବ ଅତି ପ୍ରତିଷ୍ଠିତ ବ୍ୟକ୍ତି ଥିଲେ ମଧ ଉଦାରମନା ହେତୁ ଯଦୁମଣିଙ୍କୁ ବନ୍ଧୁଭାବେ ଗ୍ରହଣ କଲେ । ଦୁହିଁଙ୍କ ମଧରେ ଜିନିଷପତ୍ରର ଆଦାନ ପ୍ରଦାନ ହେଲା । ବଳଦେବ ଥରେ 'ଶୁଆ ଦିଆଗଲା, ଶାରୀ ଦିଆଗଲା' ଲେଖି ଆମ୍ବ ଦୁଇ ବୋଝ ପଠାଇଲେ । ଯଦୁମଣି ମଧ ତା'ର ଯଥୋଚିତ ଉତ୍ତର ଦେଇଥିଲେ ।

## ଗଜପତି ମୁକୁନ୍ଦଦେବଙ୍କ ସହିତ ସାକ୍ଷାତ

୧୮୧୭ର ବିଦ୍ରୋହର ଅବ୍ୟବହିତ ପୂର୍ବରୁ ଯଦୁମଣି ତାଙ୍କର ସ୍ତ୍ରୀ, ଶାଳୀ, ସଢୁ, ଶଳା, ଶଳାଭାଉଜ ପ୍ରଭୃତିଙ୍କ ସହ ପୁରୀ ଯାଇଥିଲେ । ସିଂହଦ୍ୱାରଠାରେ

ଗଜପତି ମହାରାଜାଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା । ହାସ୍ୟରସିକଭାବେ ତାଙ୍କୁ ଜାଣି ତାଙ୍କର ଇଚ୍ଛା କ'ଣ ପଚାରନ୍ତେ, ଯଦୁମଣି ବହୁ ଲୋକଙ୍କ ମଧ୍ୟରେ କବିତାଟିଏ ଗାଇଲେ –

''ଧନୁ ମାସ ହେଲା ହନୁ ନ ଚଳିଲା
କହିବାକୁ ବଡ଼ ଲାଜ,
ମୁଁ ଆଁ କରିଛି ମୁଆଁ ଖାଇବାକୁ
ଦେବା ହେଉ ମହାରାଜ ।''

ସେ ମୁଆଁ ଖାଇବାକୁ ଚାହିଁଛନ୍ତି ବୋଲି ସାଧାରଣ ଲୋକେ ବୁଝିଲେ । ମାତ୍ର ସେ ଦୁର୍ବଳ ହୋଇପଡ଼ିଛନ୍ତି ଓ ତାହା କହିବାକୁ ଲଜ୍ଜା ଅନୁଭବ କରୁଛନ୍ତି ବୋଲି ଅନ୍ୟ ଅର୍ଥରେ ବୁଝାଉଥିଲା । ଅସ୍ତ୍ର ଧାରଣ କରି ଇଂରେଜମାନଙ୍କୁ ଦେଶରୁ ତଡ଼ିବାକୁ ଏଥିରେ ପ୍ରଚ୍ଛନ୍ନ ଇଙ୍ଗିତ ଥିଲା ।

**ଉତ୍କଳ ଘଣ୍ଟ !**

ପୁରୀର ବିଶିଷ୍ଟ ପଣ୍ଡିତ ଜଗନ୍ନାଥ ରାୟଗୁରୁ ଯଦୁମଣିଙ୍କୁ ମହାରାଜାଙ୍କଠାରୁ କୌଣସି ପଦବୀ ଗ୍ରହଣ କରିବାକୁ କହନ୍ତେ, ଯଦୁମଣି ଉତ୍ତର ଦେଲେ –

''ହୟଗ୍ରୀବ ମହାପ୍ରଭୁ ପ୍ରତାପେ
ଥୋଡ଼ା ନୁହେଁ ଲୋଡ଼ା କରନ୍ତି ଭୂପେ
× × ×
ନବ ଦୂର୍ବାଦଳ ଶ୍ୟାମଳ କୃପାରୁ
ମୋ ନାମ ଉତ୍କଳ ଘଣ୍ଟ ଯେ ।''

ହୟଗ୍ରୀବ ମହାପ୍ରଭୁଙ୍କ କୃପାରୁ ସମସ୍ତ ରାଜାମାନେ ତାଙ୍କୁ ଲୋଡୁଛନ୍ତି । ତେଣୁ ପଦପଦବୀରେ ତାଙ୍କର ଆବଶ୍ୟକତା ନାହିଁ । ବୃଦ୍ଧ ରାୟଗୁରୁ ମଧ୍ୟ ତାଙ୍କୁ କୁଣ୍ଢାଇ ପକାଇ ତାଙ୍କର ଘଣ୍ଟାଧ୍ୱନିରେ ସମସ୍ତ ଜଗତ ଚମତ୍କୃତ ହୋଇପଡ଼ିବ ବୋଲି ଆଶା ପ୍ରକାଶ କଲେ । ଇଟାମାଟିର ଯଦୁମଣି ସୁପ୍ରତିଷ୍ଠିତ ବ୍ୟକ୍ତି ଥିଲେ ।

**ରାଜା ବିନାୟକ ଓ ରାଣୀଙ୍କ ବିୟୋଗ**

ଯଦୁମଣିଙ୍କୁ ୫୦ ବର୍ଷ ବୟସ ହୋଇଥିଲାବେଳେ ରାଣୀ କୁମୁଦିନୀଙ୍କର ଦେହାନ୍ତ ହେଲା । ତା'ର ବର୍ଷକ ନ ପୂରୁଣୁ ରାଜା ବିନାୟକଙ୍କ ମୃତ୍ୟୁ ହେଲା । ବିନାୟକଙ୍କ ପରେ ତାଙ୍କ ପୁତ୍ର ବ୍ରଜବଲ୍ଲଭ ନୟାଗଡ଼ର ରାଜା ହେଲେ । ଏହାପରେ ଯଦୁମଣିଙ୍କ ଦୁଃଖର କାଳରାତ୍ରି ମାଡ଼ିଆସିଲା । ରାଜା ବିନାୟକଙ୍କ ମୃତ୍ୟୁର ଦୁଇ

ବର୍ଷ ନ ପୂରୁଣୁ ଯଦୁମଣି ଜାଗିରି ଜମି ହରାଇଲେ । ନୂତନ ରାଜା ମଧ ମଦ, ଜୁଆ ପ୍ରଭୃତିରେ ଲିପ୍ତ ରହିଲେ । କୁଟୁମ୍ବଙ୍କର ଜୀବନ ରକ୍ଷାପାଇଁ ବିଭିନ୍ନ ରାଜ୍ୟକୁ ଯିବା ଛଡ଼ା ତାଙ୍କର ଅନ୍ୟ ଗତି ରହିଲା ନାହିଁ ।

**ହାସ୍ୟରସିକତା**

ଯଦୁମଣି ଯେପରି ମହାକବି ଥିଲେ, ସେହିପରି ହାସ୍ୟରସିକ ଥିଲେ । ତାଙ୍କର ତୁରନ୍ତ ଜବାବ ଓ ହାସ୍ୟୋଦ୍ଦୀପକ କ୍ରିୟାକଳାପ ସମସ୍ତଙ୍କର ଚିତ୍ତ ବିନୋଦନ କରୁଥିଲା । କି ରାଜା କି ପ୍ରଜା ସମସ୍ତେ ତାଙ୍କ ଆଶୁ କବିତ୍ୱରେ ମୁଗ୍ଧ ହୋଇପଡୁଥିଲେ । ତାଙ୍କର ଏହିସବୁ କୀର୍ତ୍ତି ବଜାରରେ 'ଯଦୁମଣି ରହସ୍ୟ' ନାମରେ ବିକ୍ରି ହେଉଅଛି । ତା'ର ଆଦର ଏବେ ମଧ ଅଛି ।

ନୟାଗଡ଼ ରାଜା ଦିନେ ଯଦୁମଣିଙ୍କୁ ହରାଇବା ଉଦ୍ଦେଶ୍ୟରେ ସମସ୍ତଙ୍କ ସମ୍ମୁଖରେ କହିଲେ, ''ତୁ ଗୋଟିଏ କୁକୁର ।''

ଯଦୁମଣି ସଙ୍ଗେ ସଙ୍ଗେ ଉତ୍ତର ଦେଲେ – ''ହଁ ଆଜ୍ଞା, ଛାମୁ ତୁଳସୀ ଗଛ ।'' ତୁଳସୀ ଗଛ କହିଥିବାରୁ ରାଜା ପ୍ରଥମେ ଖୁସି ହେଲେ, କିନ୍ତୁ ପରେ ବୁଝିଲେ ଯେ ସେ ହାରିଗଲେ । କୁକୁର ତୁଳସୀ ଗଛ ଉପରେ ମୂତିଥାଏ । ରାଜା ମନେ ମନେ ଲଜ୍ଜିତ ହେଲେ ।

ନୟାଗଡ଼ର ରାଜା ବିନାୟକଙ୍କ ସଙ୍ଗେ ଯଦୁମଣିଙ୍କର ବନ୍ଧୁତା ସ୍ଥାପିତ ହେଲା । ଦୁହିଁଙ୍କ ମଧରେ ବେଶ୍ ଥଟ୍ଟା ପରିହାସ ଚାଲୁଥିଲା । ଦିନେ ରାଜା ବଡ଼ି ପାହାନ୍ତାରୁ ଯଦୁମଣିଙ୍କୁ ଡକାଇ ଆଣିଲେ । ରାଜା କହିଲେ, ''ଆମ୍ଭେ ପାହାନ୍ତା ସ୍ୱପ୍ନରେ ଦେଖିଲୁ ଯେ ତୁମ୍ଭ ଦେହତମାମ ବିଷ୍ଠା ବୋଳା ହୋଇଛି ।'' ଏହା ଶୁଣି ଅନ୍ତରାଳରେ ହସ ବୃଷ୍ଟି ହେଲା । ଯଦୁମଣି ମଧ ହସି ହସି କହିଲେ, ''ଆଜ୍ଞା ମୁଁ ମଧ ପାହାନ୍ତ ସ୍ୱପ୍ନରେ ଦେଖିଲି ଯେ ମୋ ଦେହରେ ବିଷ୍ଠା ବୋଳାଯାଇଛି, ଶ୍ରୀଛାମୁଙ୍କ ଅଙ୍ଗରେ ମହାପ୍ରସାଦ ବୋଳା ହୋଇଛି । ଛାମୁ ମୋ ଦେହକୁ ମୁଁ ଛାମୁଙ୍କ ଶ୍ରୀଅଙ୍ଗକୁ ଚାଟି ପକାଉଛି ।'' ଏଥିରେ ହସର କୁଆର ସୃଷ୍ଟି ହେଲା ।

ଆଉ ଦିନେ ନୟାଗଡ଼ ରାଜା ଓ ରାଣୀଙ୍କ ମଧରେ ବିଚାର ଚାଲିଲା ଯଦୁମଣିଙ୍କୁ କିପରି ହରାଇବେ । ବହୁ ଆଲୋଚନା ପରେ ରାଜା କେତେକ ପ୍ରଶ୍ନ ଠିକ୍ କଲେ । ଯଦୁମଣିଙ୍କୁ ଅପରାହ୍ନରେ ଡକାଇଆଣି କହିଲେ – ''ଯଦୁମଣି ତୋଟାକୁ ଯିବା ।''

ଏହାର ଦୁଇ ଅର୍ଥ ଥିବା ଯଦୁମଣି ସଙ୍ଗେ ସଙ୍ଗେ ଜାଣିପାରିଲେ । ତୋଟା ବୋଇଲେ ଆମ୍ବତୋଟା ବା ପଣସତୋଟା ଆଦିକୁ ବୁଝାଏ । କିନ୍ତୁ ତୋ, ଟା

ଅର୍ଥାତ୍ ତୋ ଭାରିଯା ପାଖକୁ ଯିବାକୁ ବୁଝାଏ । ଯଦୁମଣି ଡେରି ନ କରି ଉତ୍ତର ଦେଲେ –''ଆଜ୍ଞା ମୁଁ ଟିକେ ତୋରାଣି କରି ଆସେ ।''

ଏହାର ମଧ୍ୟ ଦୁଇ ଅର୍ଥ ହୋଇପାରେ । ଅପରାହ୍ଣରେ ତୋରାଣି ପିଇବା ଅର୍ଥକୁ ବୁଝାଏ । ଅନ୍ୟ ଅର୍ଥରେ 'ତୋ' ରାଣୀଠାରେ କାମସାରି ଆସେ' ମଧ୍ୟ ବୁଝାଇଥାଏ ।

କହିବା ବାହୁଲ୍ୟ ଯେ ସମସ୍ତେ ଏଥିରେ ହସି ହସି ଗଡ଼ିଗଲେ । ଏହା ମଧ୍ୟ କବିଙ୍କ ନିର୍ଭୀକତାର ପରିଚୟ ଦେଲା ।

ଥରେ ବିଶିଷ୍ଟ ସଂସ୍କୃତ ପଣ୍ଡିତ ଚକ୍ରପାଣି ପଟ୍ଟନାୟକ ନୟାଗଡ଼ର ରାଜଦରବାରକୁ ପରିଣତ ବୟସରେ ଆସିଲେ । ବାଟରେ ଯଦୁମଣି ତାଙ୍କୁ ଭେଟି ତାଙ୍କର ନାମ ପଚାରିଲେ । ଏକ ଗାଉଁଲି ଯୁବକର ଏ ପ୍ରଶ୍ନ ଶୁଣି ସେ ଗମ୍ଭୀର ଭାବରେ ଉତ୍ତର ଦେଲେ – ''ବିଷ୍ଣୁ ପର୍ଯ୍ୟାୟରେ ମୋର ନାମ ମିଳିବ ।''

ପ୍ରତ୍ୟୁତ୍ପନ୍ନମତି ଯଦୁମଣି କହିଲେ, ''ତେବେ ଆପଣଙ୍କର ନାମ ଗୁହ'' । ଗୁହ କହିଲେ ମଳକୁ ବୁଝାଏ ଓ ପୁଣି ବିଷ୍ଣୁଙ୍କୁ ମଧ୍ୟ ବୁଝାଏ । ମାତ୍ର ଗୁହ ଶବ୍ଦ ଶୁଣି ଚକ୍ରପାଣିଙ୍କ ସଙ୍ଗେ ଯାଉଥିବା ଭଣ୍ଡାରିଟି ହସି ପକାଇଲା । ଚକ୍ରପାଣି ଯଦୁମଣିଙ୍କ ପ୍ରତିଭାର ପରିଚୟ ପାଇ ଅବାକ୍ ହୋଇଗଲେ ।

ଆଉ ଥରେ ନୟାଗଡ଼ର ରାଜା ଓ ଯଦୁମଣିଙ୍କ ସଙ୍ଗେ ଶାସ୍ତ୍ର ଆଲୋଚନା ଚାଲିଥିବାବେଳେ ରାଣୀ ଅନ୍ତରାଳରେ ଥାଇ ଶୁଣୁଥିଲେ । ଅଦୂରରେ ଗୋଟିଏ ବଟ ବୃକ୍ଷ ଉପରେ ବାନର ବାନରୀଙ୍କ ରତିକ୍ରୀଡ଼ା ଦେଖିବାକୁ ପାଇଲେ । ରାଣୀ ଗୋଟିଏ ଫୁଲ ପେଣ୍ଡା ରାଜାଙ୍କ ଉପରକୁ ପକାଇଲେ । ରାଣୀ ଫୁଲ ପେଣ୍ଡା ପକାଇଥିବା କଥା ରାଜା ଜାଣିପାରିଲେ । ଯଦୁମଣିଙ୍କୁ ପରୀକ୍ଷା କରିବାକୁ କହିଲେ –

''ମନେ କି ପାଞ୍ଚିଲା, ହସି ଫୁଲ ପେଣ୍ଡା ପକାଇଦେଲା ।''

ଯଦୁମଣି ମଧ୍ୟ ସଙ୍ଗେ ସଙ୍ଗେ ପାଦ ପୂରଣ କଲେ, ଯଥା –

''ବଟବୃକ୍ଷ ପରେ ବାନରୀ ରତ
ଦେଖି ବାନ୍ଧବୀର ବଳିଲା ଚିତ୍ତ
ମନେ ସେ ଇଚ୍ଛିଲା ।
ହସି ଫୁଲପେଣ୍ଡା ପକାଇଦେଲା ।''

ରାଜା ଖୁସି ହେଇ ନିଜ ମୂଲ୍ୟବାନ୍ ଚାଦରଖଣ୍ଡ ଯଦୁମଣିଙ୍କୁ ପୁରସ୍କାରସ୍ୱରୂପ ଦେଲେ । ଏଥିରୁ ଯଦୁମଣିଙ୍କ ଆଶୁ କବିତ୍ୱର ପରିଚୟ ମିଳେ ।

ଯଦୁମଣି ମଧ୍ୟ ସତ୍ୟନିଷ୍ଠ ଓ ସତ୍‌ସାହସୀ ଥିଲେ । ରାଜାମାନଙ୍କ ସାହାଯ୍ୟରେ ଚଳୁଥିଲେ ମଧ୍ୟ କଦାପି ନିଜର ସମ୍ମାନ ବଳି ଦେଉ ନ ଥିଲେ । କେତେକ କ୍ଷେତ୍ରରେ ସେ ରାଜାମାନଙ୍କର ତୀବ୍ର ସମାଲୋଚନା କରୁଥିଲେ ।

ବୌଦଗଡ଼ର ରାଜା ଯଦୁମଣିଙ୍କୁ ତାଙ୍କ ପାଖେ ଚାକିରି କରିବାକୁ କହନ୍ତେ, ସେ ଉତ୍ତର ଦେଲେ –

"ଅବଧାନ ଦେଲେ ତୁଚ୍ଛା ମୁକୁତା
ଅବଶ୍ୟ ହୁଅନ୍ତି ମୁଁ ଛାମୁ କୁତା ।"

ସେ ନୟାଗଡ଼ ମାନଧାତାଙ୍କର ସଖା ଭଳି ଥିଲେ । ବୌଦଗଡ଼ର ରାଜାଙ୍କ ମନରୁ ଭ୍ରମ ଧାରଣା ଦୂର କରିବାପାଇଁ ସେ ଏହା କହିଥିଲେ । ବୌଦ ରାଜା ଏଥିରେ ଲଜ୍ଜିତ ହେଲେ । ସେହିପରି ବଡ଼ମ୍ବା ରାଜା ପିଣ୍ଡିକ ମଙ୍ଗରାଜ ଭୋଜନ ସାମଗ୍ରୀରେ ଦୁର୍ଗନ୍ଧ ଘିଅ ପଠାଇଥିଲେ । ଯଦୁମଣି ଏହା ଜାଣିପାରି ସେହି ଘିଅକୁ ଗୋଟିଏ ମାଟି ପାତ୍ରରେ ରଖିଲେ । ମୂଲ୍ୟବାନ୍ ଗିନାଟି ବନ୍ଧାଦେଇ ଦୋକାନୀଠାରୁ ଭଲ ଘିଅ ଆଣି ଭୋଜନ ଶେଷ କଲେ । ସେହି ଘିଅରେ ନାସ ପ୍ରସ୍ତୁତ କରି ଗୋଟିଏ ସୁନ୍ଦର ଦାନିରେ ସାଇତି ରଖିଲେ । ତା' ପରଦିନ ରାଜାଙ୍କୁ ଭେଟିବାବେଳେ ଦୁର୍ଗନ୍ଧ ନାସକୁ ରାଜାଙ୍କୁ ଦେଲେ । ରାଜା ତାକୁ ଶୁଙ୍ଘିବାମାତ୍ରେ ଭୀଷଣ ଗନ୍ଧ ହେଲା । ଯଦୁମଣି କବିତାରେ କହିଲେ –

"ରାଜା ଚନ୍ଦ୍ର ସିନା ଖନ୍ଦା ଦେଇଥିଲ ତୃତୀୟ ପାଟଣା ଆଜ
ଗିନା ବନ୍ଧାଦେଇ ଖନ୍ଦା ଚଳାଇଲି ଗନ୍ଧ ଶୁଙ୍ଘ ମହାରାଜ ।"

ରାଜା ବହୁ ମାନ୍ୟ ଓ ବିଦାକି ଦେଇ ଶେଷରେ ଯଦୁମଣିଙ୍କୁ ବିଦାୟ କଲେ । ସେ ମଧ୍ୟ ରଣପୁର ରାଜାଙ୍କୁ କନ୍ଧ, ଅନ୍ଧ ଓ ଢେଙ୍କାନାଳ ରାଜାଙ୍କୁ ଚଣ୍ଡାଳ ଆଖ୍ୟା ଦେବାକୁ ପଶ୍ଚାତ୍‌ପଦ ହୋଇ ନ ଥିଲେ ।

## ରଚନାବଳୀ

ଛୋଟ ଛୋଟ ରଚନାକୁ ବାଦ୍ ଦେଲେ ଯଦୁମଣି ଦୁଇ ଖଣ୍ଡ କାବ୍ୟ ରଚନା କରିଛନ୍ତି । ସେ ଦୁଇଟି ହେଲା 'ରାଘବ ବିଳାସ' ଓ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ।

ରାଘବ ବିଳାସ ରାମଙ୍କ ଚରିତ୍ରକୁ କେନ୍ଦ୍ରକରି ରଚିତ । ଏହା ଅଳଙ୍କାରପୂର୍ଣ୍ଣ ଓ ଅଧିକ ଚାତୁର୍ଯ୍ୟସମ୍ପନ୍ନ । ରାମଚନ୍ଦ୍ରଙ୍କ ବର୍ଣ୍ଣନା କରିଛନ୍ତି ଏହି ପଦରେ –

"ଦରିଦ୍ର ନାଶିଣ ହରିକି ହରି ହରି ଆସନେ
ହରି–ବିଭୀଷଣ ମଇତ୍ର ଘେନି ବସି ସଘନେ ।"

ରାବଣ ନିଧନ କବି ବର୍ଣ୍ଣନା କରିଛନ୍ତି -

''କନ୍ଦର୍ପ ଦର୍ପାରି ତନୁଜ କନ୍ଧେ ବିଜୟ କରି
ମୟ ଦୈତ୍ୟ ସୁତା ପତିକି ବ୍ରହ୍ମଶର ସଂଘାରି ।''

କଲିକତା ବିଶ୍ୱବିଦ୍ୟାଳୟର ପୂର୍ବତନ ଅଧ୍ୟାପକ ପଣ୍ଡିତ ବିନାୟକ ମିଶ୍ରଙ୍କ ମତରେ 'ଇନ୍ଦ୍ରଜିତ୍ ବଧ' ଛାନ୍ଦରେ ଉକ୍ତି-ପ୍ରତ୍ୟୁକ୍ତିରେ ଚାତୁରୀ ପର୍ଯ୍ୟାୟୋକ୍ତି ଅଳଙ୍କାର ଅଛି । ଏପରି ଅଳଙ୍କାର ଆଉ କୌଣସି ପ୍ରାଚୀନ ଓଡ଼ିଆ କାବ୍ୟରେ ଦେଖାଯାଏ ନାହିଁ । ସେହିପରି 'ବିଭୀଷଣ ଶରଣ' ଛାନ୍ଦର ଅର୍ଥଗୌରବ ସଂସ୍କୃତ ସାହିତ୍ୟରେ ବିରଳ ।

## ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର

କବି ଯଦୁମଣିଙ୍କ ମତରେ ଦୁଇ ପ୍ରକାର ପୂର୍ଣ୍ଣଚନ୍ଦ୍ର ହୁଏ । ଭୌତିକ ପୂର୍ଣ୍ଣଚନ୍ଦ୍ର ଓ ଆଧ୍ୟାତ୍ମିକ ପୂର୍ଣ୍ଣଚନ୍ଦ୍ର । ରୁକ୍ମିଣୀ ଭୌତିକ ପୂର୍ଣ୍ଣ ଚନ୍ଦ୍ର । ଶ୍ରୀକୃଷ୍ଣ ହେଉଛନ୍ତି ଆଧ୍ୟାତ୍ମିକ ପୂର୍ଣ୍ଣଚନ୍ଦ୍ର । ଦୁହିଁଙ୍କର ମିଳନରେ ପୁରୁଷାର୍ଥ ଓ ପାରମାର୍ଥିକ ଦୁଇ ପୂର୍ଣ୍ଣ ଚନ୍ଦ୍ର ।

କାବ୍ୟଟି ସଂକ୍ଷିପ୍ତ । ଅଳ୍ପ କଥାରେ ବିସ୍ତୃତ ଅନୁଭୂତିର ଚିତ୍ର ଉପଲବ୍ଧି କରିହୁଏ ।

ଆଲୋଚକ ପଣ୍ଡିତ ବିନାୟକ ମିଶ୍ରଙ୍କ ଭାଷାରେ – ''ଚମତ୍କାର ଉକ୍ତି, ବିଚିତ୍ର ଉପମା, ପ୍ରସଙ୍ଗ ବୈଚିତ୍ର୍ୟ, ଗଭୀର ଚିନ୍ତାର ଉନ୍ମେଷ, ନିଜର ଅଭିଜ୍ଞତା, ଭୂୟୋଦର୍ଶନ ପ୍ରଭୃତି ବିବିଧ ଗୁଣ ଥିବା 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' ପରି ଅନ୍ୟ କୌଣସି ପ୍ରାଚୀନ ଓଡ଼ିଆ କାବ୍ୟ ମୋ ନଜରରେ ପଡ଼ି ନାହିଁ ।''

## ଶେଷ ଜୀବନ

ନୟାଗଡ଼ ରାଜା ବିନାୟକଙ୍କ ମୃତ୍ୟୁ ପରେ ଯଦୁମଣିଙ୍କ ଅବସ୍ଥା ଖରାପ ହୋଇପଡ଼ିଲା ବୋଲି ଆଗରୁ ବର୍ଣ୍ଣିତ । ସେ ପରିବାରର ଭରଣ ପୋଷଣପାଇଁ ରଣପୁର, ଦଶପଲ୍ଲା, ଢେଙ୍କାନାଳ, ତିଗିରିଆ, ବଡ଼ମ୍ବା, ସୋନପୁର, ଅନୁଗୁଳ, ବୌଦ, ଆଠଗଡ଼, ଖଲିକୋଟ, ମହୁରୀ ପ୍ରଭୃତି ରାଜ୍ୟକୁ ଯାଇଥିଲେ । ଅନୁଗୁଳର ରାଜା ତାଙ୍କୁ ଉପଯୁକ୍ତ ମର୍ଯ୍ୟାଦା ସହକାରେ ରଖାଇଥିଲେ । ସେଠାରେ ଶାସ୍ତ୍ର ଚର୍ଚ୍ଚା ହେଲା । ସେ ଅତ୍ୟାଚାରୀ ରାଜା ଥିଲେ ମଧ୍ୟ ଯଦୁମଣିଙ୍କୁ ବିଦାକି ସହିତ ଶାଲ, କୁଣ୍ଡଳ, ପାଟ ପ୍ରଭୃତି ଦେଇଥିଲେ ।

ଯଦୁମଣି ମାମୁ ଘରକୁ ଯିବା ସମୟରେ ରଣପୁର ରାଜାଙ୍କୁ ଭେଟୁଥିଲେ । ରଣପୁର ରାଜା ମଧ୍ୟ ତାଙ୍କୁ ଯଥୋଚିତ ସାହାଯ୍ୟ ଦେଇଥିଲେ । ଚାଦର, ଶାଲ,

ବିଦାକି ପ୍ରଭୃତି ପାଇ କବି ଫେରିଲେ । ଗୃହଦାହ ଯୋଗୁଁ ସେ ଗୃହନିର୍ମାଣ କରାଇଥିଲେ । ଖଲିକୋଟର ରାଜା, ମଞ୍ଜୁରୀର ରାଣୀ, ଆଠଗଡ଼ର ରାଜା ତାଙ୍କୁ ବହୁ ଧନ ଦେଇଥିଲେ । ବଡ଼ମ୍ବାର ମଙ୍ଗରାଜ ମଧ୍ୟ ତାଙ୍କୁ ସମ୍ମାନିତ କରିଥିଲେ ।

ଖଣ୍ଡପଡ଼ା ରାଜ୍ୟର ଇଚ୍ଛାପୁରରେ ହେଉଥିବା ସଂସ୍କୃତ ଭାଗବତ ଚର୍ଚ୍ଚାରେ ଯଦୁମଣି ଯୋଗ ଦେଇଥିଲେ । ସେ ସେଠାରେ ଦଶ ଦିନ ରହିଥିଲେ । କୃଷ୍ଣଚରିତ ତାଙ୍କୁ ଅମୃତ ସମାନ ବୋଧ ହେଲା । ସେ ଏହାପରେ ରଚନା କଲେ 'ପ୍ରବନ୍ଧ ପୂର୍ଣ୍ଣଚନ୍ଦ୍ର' । ସେତେବେଳେ ତାଙ୍କୁ ୫୯ ବର୍ଷ ବୟସ ହୋଇଥିଲା । ସେ ମଧ୍ୟ ପଣ୍ଡିତସଭାରେ ଯୋଗଦେବାପାଇଁ ଢେଙ୍କାନାଳ ଯାଇଥିଲେ । ରାଜା ତାଙ୍କୁ ଚିଡ଼ାଇ ପ୍ରଶ୍ନ କଲେ, 'କ୍ୟୋତୁ' । ଯଦୁମଣି ମଧ୍ୟ ଛାଡ଼ିବାର ଲୋକ ନ ଥିଲେ । ସେ ଗାଇଉଠିଲେ –

''ଶ୍ରୀ ଦେଉ ଶ୍ରୀମୁଖେ ବାନ୍ଧି ଦେଇଛନ୍ତି
ନବ ଗ୍ରହୁ ଏକ ଗ୍ରହେ ।''

ଅର୍ଥାତ୍ ରାଜା କେତୁଭଳି ଚଣ୍ଡାଳ ଗ୍ରହକୁ ମୁହଁରେ ରଖିଛନ୍ତି । ତେଣୁ ଚଣ୍ଡାଳ ପରି ଭାଷା ବ୍ୟବହାର କରୁଛନ୍ତି । ରାଜା ମଧ୍ୟ ଉଦାର ପ୍ରକୃତିର ଲୋକ ଥିଲେ । ସେ ଯଦୁମଣିଙ୍କୁ କୁଣ୍ଢାଇ ପକାଇଲେ । ମନରେ ଆଘାତ ଦେଇଥିବାରୁ କ୍ଷମା ଭିକ୍ଷା କଲେ ।

## ନୟାଗଡ଼ ମେଳି

ନୟାଗଡ଼ର ଯୁବକ ରାଜା ଅତ୍ୟାଚାରୀ ହୋଇପଡ଼ିଲେ । ଅଶୀ ପ୍ରକାର କର ପ୍ରଜାଙ୍କ ଉପରେ ବସାଇଲେ । ୧୮୫୧ ମସିହାରେ ଯଦୁମଣିଙ୍କ ଗୁପ୍ତ ନିର୍ଦ୍ଦେଶରେ ପ୍ରଜାମେଳି ହେଲା । ରାଜା ବ୍ରଜବଲ୍ଲଭ ନିରୁପାୟ ହୋଇ ଇଂରେଜମାନଙ୍କ ଶରଣ ପଶିଲେ । ଫଳରେ ହରମୋହନ ଲାଲା ନାମକ ଜଣେ ବଡ଼ ପାହ୍ୟାର ଅଫିସର ତଦନ୍ତପାଇଁ ନୟାଗଡ଼ରେ ପହଞ୍ଚିଲେ । ଯଦୁମଣି ଏହି ମେଳିର ମୂଳରେ ଅଛନ୍ତି ବୋଲି ରାଜାଙ୍କ ଲୋକମାନେ କହିଲେ । ହାଜର ହେବାପାଇଁ ଯଦୁମଣିଙ୍କୁ ନୋଟିସ୍ ମଧ୍ୟ କରାଗଲା । କିନ୍ତୁ ଯଦୁମଣିଙ୍କୁ ଡାକିବା ଅମର୍ଯ୍ୟାଦା ହେବ ବୋଲି ଲାଲା ଚିନ୍ତାକରି ନିଜେ ତାଙ୍କ ଇଟାମାଟିସ୍ଥ ଗୃହର ଦ୍ୱାରରେ ପହଞ୍ଚିଲେ । ଯଦୁମଣି ମେଳିର ପ୍ରକୃତ କାରଣ କହନ୍ତେ ହରମୋହନ ଲାଲା ଏହାକୁ ବିଶ୍ୱାସ କଲେ ଓ ସେହି ଅନୁସାରେ କାର୍ଯ୍ୟାନୁଷ୍ଠାନ କଲେ । ଫଳରେ ମେଳି ଭାଙ୍ଗିଗଲା ।

. ନୟାଗଡ଼ ରାଜା ଅତ୍ୟଧିକ ମଦପିଇ ମୃତ୍ୟୁ ବରଣ କଲେ । ରାଜ୍ୟ କୋର୍ଟ ଅଫ୍ ୱାର୍ଡସ୍ ହେଲା । ୧୮୫୨ରେ ନୟାଗଡ଼ରେ ବନ୍ଦୋବସ୍ତ ହେଲା । ଯଦୁମଣି ବିନାୟକ ମାନଧାତାଙ୍କଠାରୁ ୫ ବାଟି ଜମି ଜାଗିରିସୂତ୍ରେ ପାଇଥିଲେ । ତାଙ୍କର ସର୍ବମୋଟ ୨୬ ଏକର ଜମି ଥିଲା । ମାତ୍ର ବ୍ରଜବଲ୍ଲଭଙ୍କ ସମୟରେ ତାଙ୍କୁ କେତେକ ଜମିରୁ ଉଚ୍ଛେଦ କରାଗଲା । ବାକି ଜମି ତାଙ୍କ ଦଖଲରେ ଥିଲା । ସେଥିରୁ ଖଜଣା ଛାଡ଼ କରାଗଲା ।

## ପୋଷ୍ୟପୁତ୍ରର ବିବାହ

ପୋଷ୍ୟପୁତ୍ର ତାଳଧ୍ୱଜର ନୟାଗଡ଼ ଗ୍ରାମନିବାସୀ ଶତ୍ରୁଘ୍ନ ମହାପାତ୍ରଙ୍କ କନ୍ୟା କମଳା ସହିତ ନିରାଡ଼ମ୍ବରଭାବେ ବିବାହ ହେଲା । କମଳାଙ୍କର ଗୋଟିଏ ପୁତ୍ର ଯଦୁମଣିଙ୍କ ଜୀବିତାବସ୍ଥାରେ ଜନ୍ମ ହୋଇଥିଲା ।

## ପୁଣି ସାହାଯ୍ୟପାଇଁ ଯାତ୍ରା

ଯଦୁମଣି ରଣପୁର ରାଜାଙ୍କ ପାଖକୁ ସାହାଯ୍ୟପାଇଁ ଯାଇଥିଲେ । ମାତ୍ର ରାଜା ତାଙ୍କୁ କୌଣସି କାରଣରୁ ଦେଖା ଦେଲେ ନାହିଁ । ବହୁ କଷ୍ଟରେ ଦରବାରବେଳେ ରାଜାଙ୍କ ଦେଖା ପାଇଲେ । ସେ ଗୋଟିଏ ହସ୍ତନିର୍ମିତ ବିଷ୍ଣୁପ୍ରତିମାକୁ କନାରେ ଗୁଡ଼ାଇ ଦେବତା ବୋଲି ରାଜାଙ୍କୁ ଅର୍ପଣ କଲେ । ରାଜା ବ୍ରଜଧର ତାହାକୁ ଫିଟାଇ ଫିଟାଇ ନୟାନ୍ତ ହୋଇଗଲେ । ବିଷ୍ଣୁପ୍ରତିମା ବାହାରିଲା ନାହିଁ । ରାଜା କ୍ଲାନ୍ତ ହୋଇ ତଳେ ରଖିଦେଲେ । ଯଦୁମଣି ସଙ୍ଗେ ସଙ୍ଗେ ଗାଇଲେ –

''ଅନ୍ଧ ଦେଶକୁ ଗଲି ଦର୍ପଣ ବିକି
କନ୍ଧ ହାତରେ ଦେଲି ଗୋଦାନ ଟେକି ।

× × ×

ହେ ରାଜା କି କଲ
ବିଷ୍ଣୁ ପ୍ରତିମାକୁ ତଳେ ଥୋଇଲ ?''

ଯଦୁମଣି ରାଜାଙ୍କୁ କନ୍ଧ ବୋଲି ଅଭିହିତ କରିଥିଲେ । ଫଳରେ ସେ ଅପମାନିତ ବୋଧକରି ସେଠାରୁ ଉଠିଗଲେ । ଯଦୁମଣିଙ୍କୁ ଦରବାରରୁ ତଡ଼ି ଦିଆଗଲା । ରାଜା ସେହିଦିନୁ ତାଙ୍କ ମୁହଁ ଚାହିଁ ନ ଥିଲେ । ଯଦୁମଣି ଅଭାବ ମୋଚନପାଇଁ ପୁଣି ଦଶପଲ୍ଲା ଗଲେ । ସେଠାରେ କୁଞ୍ଜବନଗଡ଼ରେ ଜଗନ୍ନାଥ ମୂର୍ତ୍ତି ପ୍ରତିଷ୍ଠା ହେଉଥାଏ । ରାଜା ମଧୁସୂଦନ ଦେଓଭଞ୍ଜ ମଧ ତାଙ୍କୁ ସାକ୍ଷାତ୍ ଦେଲେ ନାହିଁ । ରାଜା ଯିବା ପୂର୍ବରୁ ଯଦୁମଣି ମନ୍ଦିରକୁ ଗଲେ ଓ ରାଜାଙ୍କୁ ଅପେକ୍ଷା କଲେ । ରାଜା ଶେଷରେ ତାଙ୍କୁ ସାକ୍ଷାତ୍ ଦେଲେ । ଯଦୁମଣି ଗାଇଲେ –

''କୁଞ୍ଜବନେ ଜଗନ୍ନାଥ ନ ହେବ ଗୋସାଇଁ
ରଥ ବୋଲି ଭଣ୍ଡି ନେବେ ରଥରେ ବସାଇ
ଭୋଗ ବୋଲି ଖଞ୍ଜିଦେବେ କଡ଼ିକିଆ ମୁଆଁ
ଧୂପ ବୋଲି ମାଡ଼ିଦେବେ ନିଆଁଖୁଣ୍ଟା ଧୂଆଁ ।''

ରାଜା ନିଜର ତ୍ରୁଟି ଜାଣିପାରି ଲଜ୍ଜିତ ହେଲେ ଓ ତାଙ୍କପାଇଁ ଯଥୋଚିତ ବ୍ୟବସ୍ଥା କଲେ । ରାଜା ଯଦୁମଣିଙ୍କୁ କେତେକ ଚଉପଦୀ ଲେଖିବାକୁ ବରାଦ ଦେଲେ । ଯଦୁମଣି ଶାଳପତ୍ରରେ ଚଉପଦୀଗୁଡ଼ିକ ନେଇ ପହଞ୍ଚିଲେ । ସମସ୍ତେ ଏହା ଦେଖି ହସିଉଠିଲେ । ମାତ୍ର ରାଜା ସେପରି ରସିକ ନ ଥିଲେ । ସାମାନ୍ୟ ବିଦାକି ଯଦୁମଣିଙ୍କୁ ଦେଲେ । ଆଉ ଅଧିକ ମିଳିବାର ଆଶା ନ ଥିଲା । ଯଦୁମଣି ତେଣୁ ଦଶପଲ୍ଲା ଛାଡ଼ି ସାତକୋଶିଆ ଦେଇ ବୌଦରେ ପହଞ୍ଚିଲେ । ସେ ରାଜା ତାଙ୍କୁ ଆଦର ଅଭ୍ୟର୍ଥନା କଲେ । ନୟାଗଡ଼ ରାଜାଙ୍କ ପାଖେ ଥିବା ଭଳି ତାଙ୍କ ପାଖେ ଚାକିରି କରି ରହିବାକୁ ପ୍ରସ୍ତାବ ଦେଲେ । ମାତ୍ର ଯଦୁମଣି ତାହାକୁ ଗ୍ରହଣ କରି ନ ଥିଲେ ।

ଏହାପରେ ଯଦୁମଣି ଖଣ୍ଡପଡ଼ାରେ ପହଞ୍ଚିଲେ । ସେଠାରେ ରାଜା ତାଙ୍କୁ ବହୁ ସମ୍ମାନ ଦେଖାଇଲେ । ବହୁ ଅର୍ଥ ଦେଇ ବିଦା କଲେ । ଅଭାବ ଓ ଅନଟନରେ ପଡ଼ି ଖଞ୍ଜନା କ୍ରମେ ଦୁର୍ବଳ ହୋଇପଡ଼ିଲେ । ୭୫ ବର୍ଷ ବୟସରେ ତାଙ୍କର ମୃତ୍ୟୁ ହେଲା । ଯଦୁମଣି ତାଙ୍କ ମୃତ୍ୟୁରେ ଶୋକାଭିଭୂତ ହୋଇପଡ଼ିଲେ ।

୮୩ ବର୍ଷ ବୟସରେ ଯଦୁମଣି କିନ୍ତୁ ବେଶ ସୁସ୍ଥ ଓ ସବଳ ଥିଲେ । ସେ ଚୋବେଇ ଖାଇପାରୁଥିଲେ । ଚକ୍ଷୁର ଦୀପ୍ତି ମଧ ମଳିନ ପଡ଼ି ନ ଥିଲା । ପୁତ୍ର ଓ ପୁତ୍ରବଧୂଙ୍କୁ ସୁଖରେ ରଖିବାପାଇଁ ବାର୍ଦ୍ଧକ୍ୟରେ ମଧ ସାହାଯ୍ୟ ଆଶାରେ ରାଜାମାନଙ୍କ ପାଖକୁ ପୁଣି ଯାଇଥିଲେ । ସେ ପ୍ରଥମେ ତିଗିରିଆରେ ପହଞ୍ଚିଲେ । ଦେହ ଅବସ୍ଥା ଭଲ ନ ଥିବାରୁ ସେ ଏକ ପତ୍ର ତାଙ୍କର ଭଗ୍ନୀ ନରସିଂହପୁର ରାଣୀ ରତ୍ନମଞ୍ଜରୀଙ୍କ ପାଖକୁ ପଠାଇଲେ । ଯଦୁମଣି ଚାଲି ଚାଲି ଦୁଇ ଦିନରେ ନରସିଂହପୁରରେ ପହଞ୍ଚିଲେ । ରାଣୀ ରତ୍ନମଞ୍ଜରୀ ବିଦୁଷୀ ଥିଲେ । କାବ୍ୟ, ନାଟକ, ଇତିହାସ, ନ୍ୟାୟ, ଦର୍ଶନ ପ୍ରଭୃତି ଅଧୟନ କରିଥିଲେ । ମାତ୍ର ରାଜା ସେପରି ଶିକ୍ଷିତ ନ ଥିଲେ । ରାଜପଣ୍ଡିତ ଈର୍ଷାପରାୟଣ ବ୍ୟକ୍ତି ଥିଲେ । ସେ ଯଦୁମଣିଙ୍କୁ ରାଜାଙ୍କ ସହିତ ସାକ୍ଷାତ୍ କରାଇ ଦେବାକୁ ଚାହିଁ ନ ଥିଲେ । ଯଦୁମଣି ଦେଇଥିବା ପତ୍ର ମଧ ରାଣୀଙ୍କୁ ଦେଇ ନ ଥିଲେ । ରାଜାଙ୍କ ସଙ୍ଗେ ଦେଖା ହୋଇପାରିବ ନାହିଁ ବୋଲି ଯଦୁମଣିଙ୍କୁ ଜଣାଇଦେଲେ । ଯଦୁମଣି ବ୍ୟର୍ଥ ମନୋରଥ ହୋଇ ଗୃହକୁ ଫେରିଲେ ।

ଗୃହକୁ ଫେରିବାପରେ ତାଙ୍କୁ ସାମାନ୍ୟ ଜ୍ୱର ହେଲା । ଶ୍ରୀଗୁଣ୍ଡିଚା ଦିନ ସେ ଗୃହର ଚଉରା ମୂଳେ ବତିଖୁଣ୍ଟକୁ ଦୁର୍ବଳ ଦେହକୁ ଆଉଜାଇ ଗାଇଲେ –

''ଓଜଶୀଳ ଭୋଜରାଜ ଜୀବନ ହରଣ ତେଜ
ଅର୍ପଣ କଲ କୃପଣ ନୋହି ।''

ରଥରେ ଜଗନ୍ନାଥ ବିଜେ ହେଉଥିବାବେଳେ କବିଙ୍କ ପ୍ରାଣବାୟୁ ଉଡ଼ିଗଲା । ସେ ଦିନ ଥିଲା ୧୮୬୬ ମସିହା ଆଷାଢ଼ ଶୁକ୍ଳ ଦ୍ୱିତୀୟା ।

ନରସିଂହପୁର ରାଣୀ କେତେଦିନ ପରେ ପତ୍ର ପାଇ ଯଦୁମଣିଙ୍କ ପାଖକୁ ୧୨୧ ଟଙ୍କା ପଠାଇଥିଲେ । ତାହା ତାଙ୍କ ଅନ୍ତ୍ୟେଷ୍ଟି କ୍ରିୟାରେ ଖର୍ଚ୍ଚ ହେଲା । ରଣପୁର, ଖଣ୍ଡପଡ଼ା ଓ ନୟାଗଡ଼ର ରାଜାମାନେ ମଧ୍ୟ ଯଥାସମ୍ଭବ ସାହାଯ୍ୟ ଦେଇଥିଲେ ।

ଯଦୁମଣି ଉତ୍କଳର ହାସ୍ୟରସିକ କବିଭାବେ ପରିଚିତ । ଉତ୍ତର-ଭାରତର ବୀରବଲଙ୍କ ପରି ଯଦୁମଣି ମହାପାତ୍ର ତାଙ୍କର ଆଶୁକବିତାପାଇଁ ପ୍ରସିଦ୍ଧି ଲାଭ କରିଛନ୍ତି । ଏବେ ମଧ୍ୟ ଯଦୁମଣିଙ୍କ ତୁରନ୍ତ ଜବାବ ଓ ହାସ୍ୟୋଦ୍ଦୀପକ କ୍ରିୟାକଳାପ ଲୋକଙ୍କ କଥାବାର୍ତ୍ତାର ଅଂଶ ହୋଇଥାଏ । ଏବେ ମଧ୍ୟ ଯଦୁମଣିଙ୍କ ନାମ ଉଠିଲେ ହାସ୍ୟରସ ସୃଷ୍ଟି ହୁଏ । ଉତ୍କଳରେ ଏପରି ଭାବରେ ମାନବ ଜୀବନ ଉପରେ ପ୍ରଭାବ ବିସ୍ତାର କରିଥିବା ଦ୍ୱିତୀୟ ହାସ୍ୟରସିକ କବିଙ୍କ ନାମ ଖୋଜିଲେ ମିଳେ ନାହିଁ । ସେ ନିଜକୁ ଉତ୍କଳର ଘଣ୍ଟ ବୋଲି କହୁଥିଲେ । ଘଣ୍ଟାଧ୍ୱନିରେ ଦୁନିଆ ମୋହିତ ହୁଏ । ଯଦୁମଣିଙ୍କ ଧ୍ୱନିରେ ସମଗ୍ର ରାଜ୍ୟ ଚମକି ଉଠିଥିଲା ।



# ବିଜ୍ଞାନ ଯୁଗର ବିସ୍ମୟ
# ସାମନ୍ତ ଚନ୍ଦ୍ରଶେଖର

ଊନବିଂଶ ଶତାବ୍ଦୀରେ ଓଡ଼ିଶାର ଏକ ଗଡ଼ଜାତ ଅଞ୍ଚଳରେ ଯେଉଁ ଯୋଗଜନ୍ମା ପୁରୁଷ ଜନ୍ମଗ୍ରହଣ କରି ଆଧୁନିକ ଯନ୍ତ୍ରପାତି ବିନା ବ୍ୟବହାରରେ ସୂକ୍ଷ୍ମ ବୈଜ୍ଞାନିକ ତଥ୍ୟ ପ୍ରଦାନ କରି ସମଗ୍ର ବିଶ୍ୱକୁ ଚମତ୍କୃତ କରିଛନ୍ତି, ସେ ହେଉଛନ୍ତି ସାମନ୍ତ ଚନ୍ଦ୍ରଶେଖର ବା ପଠାଣି ସାମନ୍ତ । ସେ ଆଧୁନିକ ବିଜ୍ଞାନ ଜଗତର ଏବେବି ବିସ୍ମୟ ହୋଇ ରହିଛନ୍ତି ।

## ଜନ୍ମ ଓ ବାଲ୍ୟଜୀବନ

ଚନ୍ଦ୍ରଶେଖର ୧୮୩୫ ମସିହା ପୌଷମାସ କୃଷ୍ଣପକ୍ଷ ଅଷ୍ଟମୀ ଦିନ ପୁରୀ ଜିଲ୍ଲାର ଖଣ୍ଡପଡ଼ାରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ଶ୍ୟାମବନ୍ଧୁ ସିଂହ ଓ ମାତାଙ୍କ ନାମ ବିଷ୍ଣୁମାଳୀ ଦେବୀ । ପିତା ଶ୍ୟାମବନ୍ଧୁ ସିଂହ ରାଜବଂଶୀୟ ଥିଲେ । ଖଣ୍ଡପଡ଼ା ରାଜବଂଶର ସପ୍ତମ ରାଜା ନୃସିଂହ ମର୍ଦ୍ଦରାଜ ଭ୍ରମରବର ରାୟଙ୍କର ଛଅ ଗୋଟି ପୁତ୍ର ଥିଲେ । ପଞ୍ଚମ ପୁତ୍ର ହେଲେ ଶ୍ୟାମବନ୍ଧୁ ସିଂହ । ଲୋକେ ତାଙ୍କୁ ବନ୍ଧୁ ସାମନ୍ତ ବୋଲି ଡାକୁଥିଲେ । ତାଙ୍କର ନଅ ଗୋଟି କନ୍ୟା ଓ ଗୋଟିଏ ପୁତ୍ର ଥିଲେ । କାଳକ୍ରମେ ଦୁଇଟି କନ୍ୟା ଓ ଏକମାତ୍ର ପୁତ୍ରର ମୃତ୍ୟୁ ହେଲା । ମାତା ବିଷ୍ଣୁମାଳୀ ଶୋକାଭିଭୂତା ହୋଇପଡ଼ିଲେ । ସେ

ଖୁଣ୍ଟପଡ଼ା ଗ୍ରାମର ରାମେଶ୍ୱର ମହାଦେବଙ୍କ ଶରଣାପନ୍ନ ହେଲେ । କଥିତ ଅଛି ଯେ ଶକ୍ତି ନିକଟରୁ ଏକ କୃଷ୍ଣଶିଳା ଭକ୍ଷଣ କରନ୍ତେ, ତାଙ୍କର ଗର୍ଭ ଉଦୟ ହେଲା । ଶିବଙ୍କର ପ୍ରସାଦରୁ ଜନ୍ମ ହୋଇଥିବାରୁ ତାଙ୍କର ନାମ ଚନ୍ଦ୍ରଶେଖର ରଖାଗଲା ।

ଜନ୍ମପରେ ଚନ୍ଦ୍ରଶେଖରଙ୍କୁ ଏକ ପଠାଣକୁ ବିକି ଦିଆଗଲା । ଅନ୍ୟ ଜାତିକୁ ଦେଇଦେଲେ ଯମ ଛୁଏଁ ନାହିଁ ବୋଲି ସେତେବେଳେ ବିଶ୍ୱାସ ଥିଲା । ତେଣୁ ତାଙ୍କୁ ପଠାଣି ବୋଲି ଡକାଗଲା । ସେଇ ପଠାଣି ନାମରେ ସେ ଖ୍ୟାତ ହେଲେ ।

ନିର୍ଦ୍ଦିଷ୍ଟ ସମୟ ମଧରେ ତାଙ୍କର ଦାନ୍ତ ମଧ ଉଠି ନ ଥିଲା । କଥିତଅଛି ଯେ ତାଙ୍କ ପିତା ରାମେଶ୍ୱର ମହାଦେବଙ୍କୁ କେତେକ ରୁପାର ଦାନ୍ତ ଲାଗି କରିବାରୁ ତାଙ୍କର ଦାନ୍ତ ଉଠିଲା ।

ଶ୍ୟାମବନ୍ଧୁ ମଧ ଜ୍ୟୋତିଷଙ୍କୁ ଡାକି ପୁତ୍ରକୁ ଦେଖାଇଲେ । ପାଦରେ ତାଙ୍କର ଦୁଇଟି ସମାନ୍ତରାଳ ରେଖା ଥିଲା । ସେଥିରୁ ସେ ଯଶସ୍ୱାନ୍ ହେବେ ବୋଲି ଜଣା ପଡ଼ିଥିଲା । ସେ ଅସାଧାରଣ ପଣ୍ଡିତ ହେବେ ବୋଲି ଜ୍ୟୋତିଷମାନେ ଭବିଷ୍ୟଦ୍‌ବାଣୀ କରିଥିଲେ ।

**ବାଲ୍ୟ ଶିକ୍ଷା**

ପଞ୍ଚମ ବର୍ଷ ବୟସରେ ଚନ୍ଦ୍ରଶେଖରଙ୍କର ବିଦ୍ୟାରମ୍ଭ ହେଲା । ତାଙ୍କର ବାଲ୍ୟଗୁରୁ ଥିଲେ କୃତ୍ତିବାସ ରଥ । ସେ ବର୍ଣ୍ଣଶିକ୍ଷାଠାରୁ ଆରମ୍ଭ କରି ଦଶକ ପଣିକିଆ ଶିକ୍ଷା କରିଥିଲେ । ଶ୍ରୀ ମଧୁସୂଦନ ମହାପାତ୍ର ତାଙ୍କୁ ମନ୍ତ୍ରୋପଦେଶ ଦେଇଥିଲେ । ସାମନ୍ତ 'ଗୋପୀଭାଷା', 'ଭାଗବତ', 'ମଥୁରା ମଙ୍ଗଳ', 'ବିଦଗ୍ଧ ଚିନ୍ତାମଣି' ପ୍ରଭୃତି କାବ୍ୟ ଅଧ୍ୟୟନ କଲେ । ସେତେବେଳେ ମୁଦ୍ରିତ ପୁସ୍ତକ ନ ଥିଲା । ସମସ୍ତ କାବ୍ୟ ତାଳପତ୍ର ପୋଥିରୁ ପଢ଼ିଥିଲେ । ସେ ଏହାପରେ ସଂସ୍କୃତ ଗ୍ରନ୍ଥମାନ ଅଧ୍ୟୟନ କଲେ । 'ରଘୁବଂଶ', 'କୁମାର ସମ୍ଭବ', 'କିରାତାର୍ଜ୍ଜୁନୀୟମ୍', 'ମେଘଦୂତମ୍' ପ୍ରଭୃତି ଶେଷ କଲେ । ଚନ୍ଦ୍ରଶେଖର ପନ୍ଦର ବର୍ଷ ବୟସରେ ନୈଷଧ ଚରିତ ପାଠାରମ୍ଭ କଲେ । ସେ ଏହି କାବ୍ୟକୁ ଅତ୍ୟନ୍ତ ଭଲ ପାଉଥିଲେ । ଥରେ ତାଙ୍କର ଗୁରୁ ନୈଷଧ କାବ୍ୟରୁ ଏକ ଶ୍ଲୋକକୁ ବ୍ୟାଖ୍ୟା କରିବାକୁ କହିଲେ । ସେ ଅନ୍ୱୟ ସହିତ ଏପରି ସୁନ୍ଦର ଭାବରେ ବ୍ୟାଖ୍ୟା କଲେ ଯେ ତାଙ୍କ ପିତା ତାଙ୍କୁ ଆନନ୍ଦରେ କୋଳକୁ ନେଲେ ଓ ବଂଶର ପ୍ରଦୀପ ବୋଲି କହିଲେ । 'ନୈଷଧ ଚରିତ' ପାଠ କରିବାପରେ ସେ ନିଜେ 'ଅନର୍ଘ ରାଘବ', 'ବିଦଗ୍ଧ

ମାଧବ', 'ମହାନାଟକ', 'ଶକୁନ୍ତଳା', 'ଉତ୍ତର ରାମଚରିତ', 'ଗୀତଗୋବିନ୍ଦ' ପ୍ରଭୃତି ସଂସ୍କୃତ ଗ୍ରନ୍ଥମାନ ଅଧ୍ୟୟନ କଲେ । ସ୍ମୃତିଶାସ୍ତ୍ରରେ ମଧ୍ୟ ସେ ପାଣ୍ଡିତ୍ୟ ଅର୍ଜନ କଲେ । 'ମନୁ ସଂହିତା', 'ପରାଶର ସଂହିତା', 'ଯାଜ୍ଞବଲ୍କ୍ୟ', 'ଗଦାଧର ପଦ୍ଧତି', 'ରଘୁନନ୍ଦନ ସ୍ମୃତି' ପ୍ରଭୃତି ସ୍ମୃତି ଶାସ୍ତ୍ର ଅଧ୍ୟୟନ କରିଥିଲେ । କେବଳ ସଂସ୍କୃତ ସାହିତ୍ୟ ନୁହେଁ, ଓଡ଼ିଆ ସାହିତ୍ୟ ପ୍ରତି ତାଙ୍କର ଗଭୀର ଅନୁରାଗ ଥିଲା । ସେ 'ବୈଦେହୀଶ ବିଳାସ', 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ', 'ଲାବଣ୍ୟବତୀ', 'ଚନ୍ଦ୍ରକଳା', 'କିଶୋରୀ ଚମ୍ପୂ' ପ୍ରଭୃତି ସମସ୍ତ ପ୍ରାଚୀନ ଓଡ଼ିଆ କାବ୍ୟ ଅଧ୍ୟୟନ କରିଥିଲେ । ବଳରାମ ଦାସଙ୍କ 'ରାମାୟଣ', ସାରଳା ଦାସଙ୍କ 'ମହାଭାରତ', ଜଗନ୍ନାଥ ଦାସଙ୍କ 'ଭାଗବତ', କାର୍ତ୍ତିକ ମାହାତ୍ମ୍ୟ ପ୍ରଭୃତି ପୁରାଣ ପାଠ କରିଥିଲେ ।

## ଜ୍ୟୋତିଷ ଶିକ୍ଷା

ବାଲ୍ୟକାଳରୁ ସାମନ୍ତ ଜ୍ୟୋତିଷଶାସ୍ତ୍ର ପ୍ରତି ଆକୃଷ୍ଟ ହେଲେ । ପିତା ଶ୍ୟାମବନ୍ଧୁ ଦଶ ବର୍ଷ ବୟସରେ ପୁତ୍ରକୁ ସାମାନ୍ୟ ଫଳିତ ଜ୍ୟୋତିଷ ଶିକ୍ଷା ଦେଇଥିଲେ । ଚନ୍ଦ୍ରଶେଖର ମଧ୍ୟ ପିଲାଦିନେ ଖେଳିବା ସମୟରେ ସୂର୍ଯ୍ୟକିରଣ ଦେଖି ଛାୟାର ମାପ ରଖୁଥିଲେ । ସେ ଯେ ଦିନେ ଜ୍ୟୋତିର୍ବିଦ୍ ହେବେ ତାହା ସେହି କାଳରୁ ଜଣା ପଡ଼ିଥିଲା । ସେ କ୍ରମେ ନକ୍ଷତ୍ରମାନଙ୍କର ସ୍ଥାନ ପରିବର୍ତ୍ତନ ବିଷୟରେ ଜାଣିବାକୁ ଆଗ୍ରହୀ ହେଲେ । ଏହାପରେ ଗ୍ରହମାନଙ୍କର ଗତିବିଧି ନିରୂପଣ କରିବାକୁ ସ୍ଥିର କଲେ । ସେ ମଧ୍ୟ ଏହି ସମୟରେ 'ଜାତିକାଳଙ୍କାର', 'ଜ୍ୟୋତିଷ ଚନ୍ଦ୍ରୋଦୟ', 'ବୃହଜ୍ଜାତକ', 'ସିଦ୍ଧାର୍ଥ ଚିନ୍ତାମଣି' ପ୍ରଭୃତି ଜ୍ୟୋତିଷ ଗ୍ରନ୍ଥ ଅଧ୍ୟୟନ କଲେ । ଚଉଦ ବର୍ଷ ବୟସରେ ସେ ଗଣିତ ଜ୍ୟୋତିଷ ଚର୍ଚ୍ଚା ଆରମ୍ଭ କଲେ । ସୂର୍ଯ୍ୟ ଉଦୟ ଓ ଅସ୍ତ, ଅନ୍ୟାନ୍ୟ ଗ୍ରହମାନଙ୍କର ଉଦୟ ଓ ଅସ୍ତ, ଚନ୍ଦ୍ରର କେଉଁ ତାରା ସହିତ କେତେ ଭୋଗ – ସେଗୁଡ଼ିକୁ ସେ ପରୀକ୍ଷା କରିବାରେ ଲାଗିଲେ । ଦିନରେ ବହି ପଢ଼ିବା ଓ ରାତିରେ ସେଗୁଡ଼ିକୁ ପରୀକ୍ଷା କରିବା ତାଙ୍କର ଦୈନିକ କାମ ଥିଲା । ଏପରିକି ଗୃହର ଚାଳରେ ରନ୍ଧ୍ର କରି ସେହି ବାଟେ ଦିବସରେ ସୂର୍ଯ୍ୟ କିରଣ ଓ ରାତ୍ରିରେ ଚନ୍ଦ୍ର କିରଣ ପାତ କରାଇ ତାହା ପର୍ଯ୍ୟବେକ୍ଷଣ କରୁଥିଲେ ।

ଗ୍ରହନକ୍ଷତ୍ର ଦେଖିବାପାଇଁ ସେ ନିଜ ଯନ୍ତ୍ରପାତି ବ୍ୟବହାର କରୁଥିଲେ । ତାଳପତ୍ର, ବାଉଁଶନଳୀ ଓ ବାଉଁଶକାଠିରେ ସେ ତାହା ନିର୍ମାଣ କରିଥିଲେ । ଗୋଲଯନ୍ତ୍ର ସାହାଯ୍ୟରେ ସେ ଆକାଶକୁ ଚାହୁଁଥିଲେ । ଉଲ୍ଲମୀ ଯନ୍ତ୍ର ସାହାଯ୍ୟରେ ସେ ସମୟ ଜାଣୁଥିଲେ । ସୂର୍ଯ୍ୟର ଛାଇ ଅନୁସାରେ ସେ ସୂର୍ଯ୍ୟଘଡ଼ି ତିଆରି କରି ସେଥିରୁ ସମୟ ଜାଣୁଥିଲେ ।

## ବିବାହ

ବାଇଶ ବର୍ଷ ବୟସରେ ଅନୁଗୁଳ ରାଜବଂଶର ତୁରଙ୍ଗ ଗ୍ରାମ ନିବାସୀ ଦାଶରଥି କ୍ଷତ୍ରିୟବର ସିଂହଙ୍କ କନ୍ୟା ସୀତା ଦେବୀଙ୍କ ସହ ତାଙ୍କର ବିବାହ ହେଲା । ସୀତା ଦେବୀ ସୁନ୍ଦରୀ ଥିଲେ । ବିବାହ ବେଦୀରେ ସାମନ୍ତଙ୍କର କୁରୂପ ଦେଖି ପରିବାରରେ କାନ୍ଦବୋବାଳି ପଡ଼ିଗଲା । ସୀତାଦେବୀଙ୍କ ମାତା କନ୍ୟାଙ୍କୁ ସାମନ୍ତଙ୍କ ସହିତ ବିବାହ ଦେବାକୁ ସ୍ପଷ୍ଟ ମନା କରିଦେଲେ । ମାତ୍ର ଚନ୍ଦ୍ରଶେଖର ନିଜର ପାଣ୍ଡିତ୍ୟର ପରିଚୟ ଦେବାକୁ ଯାଇ 'ନୈଷଧ କାବ୍ୟ'ର ଗୋଟିଏ ପରେ ଗୋଟିଏ ଶ୍ଲୋକର ବ୍ୟାଖ୍ୟା କରିବାକୁ ଲାଗିଲେ । ସାମନ୍ତଙ୍କର ମେଘଗମ୍ଭୀର ସ୍ୱର ଓ ଅପୂର୍ବ ପାଣ୍ଡିତ୍ୟରେ ସମସ୍ତେ ମୁଗ୍ଧ ହୋଇପଡ଼ିଲେ । ଶେଷରେ ସର୍ବ ଶୁଭରେ ବିବାହ କାର୍ଯ୍ୟ ଶେଷ ହେଲା ।

## ସାଧନା

ଚନ୍ଦ୍ରଶେଖର ବହୁ ଜ୍ୟୋତିଷଶାସ୍ତ୍ର ଅଧ୍ୟୟନ କରିଥିବା ପୂର୍ବରୁ ବର୍ଣ୍ଣିତ ଅଛି । ସେ 'ସୂର୍ଯ୍ୟ ସିଦ୍ଧାନ୍ତ'ର ଦେବୀଦାସ ଅଢ଼ଣା ପାଠ କରି ଗାଣିତିକ ନିୟମମାନ ଆୟତ୍ତ କଲେ । ସେ ସୂର୍ଯ୍ୟ ଚନ୍ଦ୍ରଙ୍କ ଗତି, ପୂର୍ଣ୍ଣିମା, ଅମାବାସ୍ୟା, ଚନ୍ଦ୍ରବର୍ଷ, ସୌରବର୍ଷ, ମଳମାସ, ଚନ୍ଦ୍ରଗ୍ରହଣ, ସୂର୍ଯ୍ୟୋପରାଗ ବିଷୟରେ ଗବେଷଣା ଚଳାଇଲେ । ଆଗରୁ ଯେଉଁ ପଞ୍ଜିକାମାନ ଓଡ଼ିଶାରେ ଚଳୁଥିଲା, ସେଥିରେ ବହୁତ ଭୁଲ ଥିଲା । ଗ୍ରହଣ, ପରାଗ ପ୍ରଭୃତିର ଆରମ୍ଭ ଓ ଶେଷ ପଞ୍ଜିକା ଅନୁଯାୟୀ ଘଟୁ ନ ଥିଲା । ସେ ଦୂରବୀକ୍ଷଣ ଯନ୍ତ୍ର ବିଷୟରେ ଜାଣି ନ ଥିଲେ । ନିଜ ତିଆରି ଯନ୍ତ୍ର ଦ୍ୱାରା ସେ ପରୀକ୍ଷା ଚଳାଇଲେ । ଦିନେ ନିଜ ଗୃହର ଟାଳଟାଟିର ଅତି ସୂକ୍ଷ୍ମ ରନ୍ଧ୍ର ଦେଇ ତୀର୍ଯ୍ୟକ୍ ଭାବରେ ପତିତ ସୂର୍ଯ୍ୟବିମ୍ବ ଦେଖି କେତେକ ବିଷୟର ପ୍ରମାଣ ପାଇଲେ । ସେଥିରୁ ସେ ପୃଥିବୀଠାରୁ ସୂର୍ଯ୍ୟଙ୍କ ଦୂରତା ନିର୍ଣ୍ଣୟ କରିବାରେ କ୍ଷମ ହେଲେ । 'ଅଥର୍ବ ବେଦ' ସାହାଯ୍ୟରେ ସୂର୍ଯ୍ୟଙ୍କର ବ୍ୟାସ ଗଣନା କରିପାରିଲେ । ସେହିପରି ପୃଥିବୀଠାରୁ ଚନ୍ଦ୍ରର ଦୂରତା ମଧ୍ୟ ନିର୍ଣ୍ଣୟ କଲେ । ନିଜ ଯନ୍ତ୍ରମାନଙ୍କ ସାହାଯ୍ୟରେ ପର୍ବତର ଉଚ୍ଚତା, ଦୂରତା ଓ ବିସ୍ତାର ମଧ୍ୟ ନିର୍ଣ୍ଣୟ କରିପାରିଲେ ।

## ପ୍ରତିଷ୍ଠା ଲାଭ

ପଠାଣି ସାମନ୍ତଙ୍କ ଖ୍ୟାତି କ୍ରମେ ଚାରିଆଡ଼କୁ ବ୍ୟାପିଲା । ଥରେ ସେ ଖଣ୍ଡପଡ଼ା ରାଜାଙ୍କ ବିବାହ ଉତ୍ସବରେ ଯୋଗ ଦେବାକୁ ପାରିକୁଦ ଯାଇଥିଲେ । ସେଠି ମଞ୍ଜୁଷାର ରାଜା ଜଗନ୍ନାଥ ରାଜମଣି ଦେଓଙ୍କ ସହିତ ସାକ୍ଷାତ୍ ହେଲା ।

ସେ ଚନ୍ଦ୍ରଶେଖରଙ୍କ ଜ୍ଞାନ ପରୀକ୍ଷା ନିମନ୍ତେ ଚନ୍ଦ୍ରଶେଖରଙ୍କୁ ମଞ୍ଜୁଷା ନେଲେ । ସେଠାରେ ମହେନ୍ଦ୍ର ପର୍ବତର ଉଚ୍ଚତା ନିର୍ଣ୍ଣୟ କରିବାକୁ କହିଲେ । ଚନ୍ଦ୍ରଶେଖର ନିଜର ବାଉଁଶ ନଳୀ ସାହାଯ୍ୟରେ ମହେନ୍ଦ୍ର ପର୍ବତର ଉଚ୍ଚତା ନିର୍ଣ୍ଣୟ କଲେ । ତାହା ପୂର୍ବ ନିର୍ଦ୍ଧାରିତ ଉଚ୍ଚତା ସହିତ ସମାନ ଥିଲା । ଫଳରେ ସମସ୍ତେ ବିସ୍ମିତ ହୋଇପଡ଼ିଲେ । ତାଙ୍କୁ ସେଠାରେ ଦୁଇ ଶହ ଟଙ୍କା ପୁରସ୍କାର ମିଳିଲା । ସାମନ୍ତ ଚନ୍ଦ୍ରଶେଖର ମଧ୍ୟ ପ୍ରଧାନ ଜ୍ୟୋତିଷୀ ବୋଲି ଦାକ୍ଷିଣାତ୍ୟରେ ପରିଚିତ ହେଲେ ।

ଚନ୍ଦ୍ରଶେଖର ମଧ୍ୟ ଗଣନା କରି ବିଲାତରେ ସୂର୍ଯ୍ୟଗ୍ରହଣ କେବେ ଦୃଶ୍ୟ ହେବ ତାହା ପ୍ରକାଶ କଲେ । ମଞ୍ଜୁଷାର ରାଜା ମାନ୍ଦ୍ରାଜର ଲାଟଙ୍କୁ ଏହା ଜଣାଇଲେ । ମାନ୍ଦ୍ରାଜର ଲାଟ ଇଂଲଣ୍ଡକୁ ଏ ଖବର ଦେଲେ । ବିଲାତର ଜ୍ୟୋତିର୍ବିତ୍‌ମାନେ ଉତ୍କଣ୍ଠାର ସହିତ ସେହି ସମୟକୁ ଅପେକ୍ଷା କରି ରହିଲେ । ପଠାଣିଙ୍କ ଗଣନା ଅନୁଯାୟୀ ଠିକ୍ ସେହି ଦିନ ସେଇ ସମୟରେ ସୂର୍ଯ୍ୟୋପରାଗ ହେଲା । ଏଥିରେ ସମସ୍ତେ ଚକିତ ହୋଇପଡ଼ିଲେ ।

ବିଶାଖାପାଟଣାରେ ରଘୁନାଥ ଆଚାର୍ଯ୍ୟ ନାମକ ଜଣେ ବଡ଼ ଗଣକ ଥିଲେ । ସେ ଚନ୍ଦ୍ରଶେଖରଙ୍କ ପ୍ରତିଭାକୁ ସ୍ୱୀକାର କରୁ ନ ଥିଲେ । ଚନ୍ଦ୍ରଶେଖର ଥରେ ଗୋଟିଏ ନିର୍ଦ୍ଦିଷ୍ଟ ଦିନରେ ସୂର୍ଯ୍ୟୋପରାଗ ଘଟିବ ବୋଲି ରଘୁନାଥଙ୍କୁ ଜଣାଇଲେ । ଏହା ମଧ୍ୟ ସେହି ସମୟରେ ଘଟିବାରୁ ରଘୁନାଥ ତାଙ୍କୁ ଶ୍ରେଷ୍ଠ ଜ୍ୟୋତିର୍ବିତ୍ ବୋଲି ମାନିଲେ ।

ସେହିପରି ଆମେରିକାରେ ଏକ ନିର୍ଦ୍ଦିଷ୍ଟ ସମୟରେ ଚନ୍ଦ୍ରଗ୍ରହଣ ଦୃଶ୍ୟ ହେବ ବୋଲି ସେ ରେଭେନ୍‌ସା କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଯୋଗେଶବାବୁଙ୍କୁ ପତ୍ର ଦ୍ୱାରା ଜଣାଇଲେ । ଆମେରିକାର ଜ୍ୟୋତିର୍ବିତ୍‌ମାନେ ମଧ୍ୟ ସେଠାରେ ଉତ୍କଣ୍ଠାର ସହ ଏହାକୁ ଲକ୍ଷ୍ୟ କଲେ । ଯଥା ସମୟର ମାତ୍ର ଦୁଇ ସେକେଣ୍ଡ ବିଳମ୍ବରେ ଚନ୍ଦ୍ରଗ୍ରହଣ ସେଠାରେ ଦୃଶ୍ୟ ହେଲା । ଠିକ୍ ସମୟରେ କିନ୍ତୁ ଶେଷ ହୋଇଥିଲା । ସେଠାର ଜଣେ ଜ୍ୟୋତିର୍ବିଜ୍ଞାନୀ ଯୋଗେଶବାବୁଙ୍କ ଜରିଆରେ ଚନ୍ଦ୍ରଶେଖରଙ୍କ ପାଖକୁ ଲେଖିଥିଲେ – "ମହାଶୟ ! କେବଳ ପୁସ୍ତକ ଜ୍ଞାନରୁ ଗଣନା କରି ତଥ୍ୟ ଯୋଗାଇ ପାରିବାର କ୍ଷମତା ଆପଣଙ୍କର ଅଛି । ଏହା ଆମକୁ ସ୍ତମ୍ଭୀଭୂତ କରିଛି ।"

ଆଉ ଥରେ ଭଗବାନ ମିଶ୍ର ନାମକ ଜଣେ ଜ୍ୟୋତିର୍ବିତ୍ ଜୟପୁରରୁ ପୁରୀକୁ ଜଗନ୍ନାଥ ଦର୍ଶନରେ ଆସିଥିଲେ । ସେ ଫେରିବା ସମୟରେ ଖଣ୍ଡପଡ଼ା ଯାଇ ସାମନ୍ତଙ୍କୁ ଭେଟିଲେ । ସେ ତାଙ୍କୁ କେତେଗୁଡ଼ିଏ ପ୍ରଶ୍ନ ପଚାରି ତା'ର ଯଥାର୍ଥ ଉତ୍ତର ପାଇ ବିସ୍ମିତ ହୋଇପଡ଼ିଲେ । ଫଳରେ ତାଙ୍କର ନାମ ସୁଦୂର ଜୟପୁରରେ ପ୍ରଚାରିତ ହେଲା ।

## ଯଶ ବିସ୍ତାର

କ୍ରମେ ଚନ୍ଦ୍ରଶେଖରଙ୍କ ଯଶ ପରିବ୍ୟାପ୍ତ ହେଲା । ଦେଶବିଦେଶରୁ ବହୁ ଛାତ୍ର ତାଙ୍କ ପାଖକୁ ଅଧ୍ୟୟନ କରିବାକୁ ଆସିଲେ । ତାଙ୍କ ଛାତ୍ରଙ୍କ ମଧ୍ୟରୁ ମେଦିନୀପୁରର ରୁଦ୍ରନାରାୟଣ ଭଟ୍ଟାଚାର୍ଯ୍ୟ, ମଞ୍ଜୁଷାର ବଲ୍ଲଭ ବିଦ୍ୟାଭୂଷଣ, ଶ୍ରୀଧର ପ୍ରହରାଜ, ଗଦାଧର ବିଦ୍ୟାଭୂଷଣ, ଦାମୋଦର ବାଣୀଭୂଷଣ, ଖୋର୍ଦ୍ଧାର ସଦାଶିବ ଖଡ଼ିରତ୍ନ, ଘୁମୁସରର ହରିହର ଶତପଥୀ ଓ କଟକର ଆଦିକନ୍ଦ ତ୍ରିପାଠୀ ପ୍ରଧାନ ।

କଲିକତା ସଂସ୍କୃତ କଲେଜର ଅଧକ୍ଷ ମହେଶ ଚନ୍ଦ୍ର ନ୍ୟାୟରତ୍ନ ରେଭେନ୍‌ସା କଲେଜର ଅଧ୍ୟାପକ ଯୋଗେଶବାବୁଙ୍କ ଜରିଆରେ ଚନ୍ଦ୍ରଶେଖରଙ୍କୁ ସାକ୍ଷାତ୍ କଲେ । ସେମାନଙ୍କ ମଧ୍ୟରେ କଟକରେ ଦୀର୍ଘ ଆଠ ଦିନ ଧରି ତାତ୍ତ୍ୱିକ ଆଲୋଚନା ହେଲା । ନ୍ୟାୟରତ୍ନଙ୍କ ସମସ୍ତ ପ୍ରଶ୍ନର ଉତ୍ତର ଚନ୍ଦ୍ରଶେଖର ଦେଲେ । ସଂସ୍କୃତରେ ତାଙ୍କର ଅନର୍ଗଳ ଭାଷଣ ସମସ୍ତଙ୍କୁ ଚମତ୍କୃତ କଲା ।

ପାଶ୍ଚାତ୍ୟ ଜ୍ୟୋତିର୍ବିତ୍ ଥିବେଟ ମଧ୍ୟ ଚନ୍ଦ୍ରଶେଖରଙ୍କ ଜ୍ଞାନର ପରୀକ୍ଷାପାଇଁ କଟକ ଆସିଲେ । କଟକରେ ଥିବେଟ, ଦୁଇ ଜଣ ସାହେବ, ଚନ୍ଦ୍ରଶେଖର, ଯୋଗେଶବାବୁ ଓ ମଧୁସୂଦନ ରାଓ ପ୍ରଭୃତିଙ୍କ ମଧ୍ୟରେ ଆଲୋଚନା ହେଲା । ଯୋଗେଶବାବୁ ଥିବେଟଙ୍କର ସମସ୍ତ ପ୍ରଶ୍ନ ଓଡ଼ିଆରେ ଓ ଚନ୍ଦ୍ରଶେଖରଙ୍କର ଉତ୍ତର ଇଂରେଜୀରେ ଅନୁବାଦ କଲେ । ଦୁଇ ଦିନ ଧରି ଆଲୋଚନା ଚାଲିଲା । ଚନ୍ଦ୍ରଶେଖରଙ୍କ ଜ୍ଞାନ ଓ ପ୍ରତିଭାରେ ଥିବେଟ ଅଭିଭୂତ ହୋଇପଡ଼ିଲେ । ସେ ନିଜେ ସ୍ୱୀକାର କରିଛନ୍ତି – "ପଠାଣି ସାମନ୍ତଙ୍କ ପରି ତଥ୍ୟନିପୁଣ ତଥା ସିଦ୍ଧ ପରିପକ୍ୱ ବିଜ୍ଞାନୀ ମୁଁ ଦେଖି ନାହିଁ । ମୁଁ ଆଶ୍ଚର୍ଯ୍ୟ ହୁଏ ଯେ ଆଧୁନିକ ଯନ୍ତ୍ର ବ୍ୟବହାର ନ କରି, ବିଶ୍ୱର ବିଭିନ୍ନ ତତ୍ତ୍ୱ ନ ଜାଣି, ବିଭିନ୍ନ ଦେଶ ଭ୍ରମଣ ନ କରି ଏହି ମହାନ୍ ବ୍ୟକ୍ତି ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀ ସମ୍ବନ୍ଧୀୟ ନିର୍ଭୁଲ ଜ୍ଞାନ ଲାଭ କଲେ କିପରି ? ଏ ନିଶ୍ଚୟ ଈଶ୍ୱରଶକ୍ତି ଲାଭ କରିଛନ୍ତି । ଏଥିରେ ସନ୍ଦେହର ଅବକାଶ ନାହିଁ ।"

ଥିବେଟ ଅବଶ୍ୟ ଚନ୍ଦ୍ରଶେଖରଙ୍କ କେତେକ ମତକୁ ଗ୍ରହଣ କରି ନ ଥିଲେ । ପୃଥିବୀ ସ୍ଥିର ଓ ସୂର୍ଯ୍ୟ ତା'ର ଚାରିପଟରେ ବୁଲୁଛି ବୋଲି ଚନ୍ଦ୍ରଶେଖର ମତପୋଷଣ କରିଥିଲେ । ସୂର୍ଯ୍ୟ ଚାରିପଟେ ପୃଥିବୀ ବୁଲୁଅଛି – ଏହି ମତ ପୋଷଣ କରିବାକୁ ସେ ଚନ୍ଦ୍ରଶେଖରଙ୍କୁ ଅନୁରୋଧ କଲେ । ଏହା କଲେ ସେ ବ୍ରିଟିଶ ସରକାରଙ୍କ ପ୍ରିୟପାତ୍ର ହେବେ ଓ ତାଙ୍କର ମାସିକ ବୃତ୍ତି ଏକ ଶହ ଟଙ୍କାକୁ ବୃଦ୍ଧି କରାଯିବ ବୋଲି କହିଲେ, ଚନ୍ଦ୍ରଶେଖର ଅତି ନିର୍ଭୀକ ଭାବେ ଉତ୍ତର ଦେଲେ – "ମୁଁ ମୋର ମତ ପରିବର୍ତ୍ତନ କରିପାରିବି ନାହିଁ । ମୁଁ ଯାହା କହୁଛି ଓ ଲେଖିଛି ତାହା ଖଣ୍ଡନ କରିଦେଲେ ବଳେ ସରକାରଙ୍କ ମତ ରହିବ ।"

ପୁଣି ସେ କହିଥିଲେ – ''ମୋହର ମତ ମୁଁ ପରିବର୍ତ୍ତନ କରିପାରିବି ନାହିଁ । ଏଥିପାଇଁ ସରକାର ମତେ ହାଜତରେ ରଖନ୍ତୁ ବା ଜେଲ୍ ଦିଅନ୍ତୁ ।''

## ପୃଥିବୀର ସ୍ଥିରତା ପ୍ରସଙ୍ଗ

ପାଶ୍ଚାତ୍ୟ ଜ୍ୟୋତିର୍ବିତ୍‌ମାନଙ୍କ ମତରେ ପୃଥିବୀ ସୂର୍ଯ୍ୟ ଚାରିପଟେ ବୁଲୁଅଛି । କିନ୍ତୁ ସାମନ୍ତଙ୍କ ମତରେ ପୃଥିବୀ ସ୍ଥିର ଭାବରେ ରହିଅଛି, ସୂର୍ଯ୍ୟ ପୃଥିବୀ ଚାରିପଟେ ଭ୍ରମଣ କରୁଅଛି । ଦୃଶ୍ୟମାନ ଅନ୍ୟ ପାଞ୍ଚୋଟି ଗ୍ରହ, ଯଥା – ବୁଧ, ମଙ୍ଗଳ, ବୃହସ୍ପତି ଓ ଶନି ସୂର୍ଯ୍ୟ ଚାରିପଟେ ଘୂରୁଅଛି । ଏହି ପାଞ୍ଚୋଟି ଗ୍ରହକୁ ସାଥିରେ ନେଇ ସୂର୍ଯ୍ୟ ପୃଥିବୀ ପରିକ୍ରମା କରୁଅଛି । ସେ ତାଙ୍କ ମତରେ ଦୃଢ଼ ଥିଲେ ମଧ 'ସିଦ୍ଧାନ୍ତ ଦର୍ପଣ'ର ମୁଦ୍ରଣ ପୂର୍ବରୁ ତାଙ୍କ ମନରେ ସନ୍ଦେହ ଜାତ ହେଲା । ସମଗ୍ର ପୃଥିବୀର ମତ ବିରୋଧରେ ନିଜ ମତକୁ ଲିପିବଦ୍ଧ କରିବାକୁ ସାହସ କରିପାରିଲେ ନାହିଁ । ସନ୍ଦେହ ମୋଚନପାଇଁ ସେ ଦୈବୀ ପ୍ରମାଣ ଅପେକ୍ଷାରେ ରହିଲେ ।

ଭଗବାନ୍‌ଙ୍କ ଅପାର କରୁଣାରୁ କୋଦଳା ଆଠଗଡ଼ରୁ ଜଣେ ସର୍ବଜ୍ଞ ବ୍ରାହ୍ମଣ ଏହି ସମୟରେ ପଠାଣି ସାମନ୍ତଙ୍କ ଘରେ ପହଞ୍ଚିଲେ । ତାଙ୍କର ନାମ ଥିଲା ଚକ୍ରପାଣି ମିଶ୍ର । ସେ ଦେବୀ ଉପାସକ ଥିଲେ । ତାହାଙ୍କ କୃପାରୁ ସେ ସର୍ବଜ୍ଞତା ଲାଭ କରିଥିଲେ । ସାମନ୍ତ ତାଙ୍କୁ ପରୀକ୍ଷା କରିବାପାଇଁ ନିଜ ହାତରେ ଗୋଟିଏ ଶୁଖିଲା ବରକୋଳି ମଞ୍ଜି ଧରି ହାତରେ ତାଙ୍କର କ'ଣ ଅଛି ବୋଲି ସର୍ବଜ୍ଞଙ୍କୁ ପଚାରିଲେ । ମିଶ୍ର ମଧ ଧ୍ୟାନରେ ବସି ସେ ଧରିଥିବା ବସ୍ତୁଟି ବଦରି ବୀଜ ବୋଲି ପ୍ରକାଶ କଲେ । ଦେବୀଙ୍କ ସହାୟତା ବିଷୟରେ ଚନ୍ଦ୍ରଶେଖରଙ୍କର ଆଉ ସନ୍ଦେହ ରହିଲା ନାହିଁ । ସେ ପୁଣି ମିଶ୍ରଙ୍କୁ ସୂର୍ଯ୍ୟ ଓ ପୃଥିବୀର ସ୍ଥିରତା ଉପରେ ପ୍ରଶ୍ନ କଲେ । ମିଶ୍ରେ ମଧ ପୂର୍ବଭଳି ଧ୍ୟାନରେ ବସି ଗୋଟିଏ ତେଜୀୟାନ୍ ଓ ଆଉ ଗୋଟିଏ ତେଜୋହୀନ ପଦାର୍ଥ ବିଷୟରେ ପ୍ରଶ୍ନ କରୁଛନ୍ତି ବୋଲି ଉତ୍ତର ଦେଲେ । ଶେଷରେ ପୃଥିବୀ ସ୍ଥିର ରହିଛି ଓ ସୂର୍ଯ୍ୟ ସର୍ବଦା ଗତି କରୁଅଛି ବୋଲି ସ୍ପଷ୍ଟ ଭାବେ ପ୍ରକାଶ କଲେ । ଏଥିରେ ସାମନ୍ତଙ୍କର ଯାହା ବା ସନ୍ଦେହ ଥିଲା ତାହା ଦୂର ହୋଇଗଲା ।

## ସିଦ୍ଧାନ୍ତ ଦର୍ପଣ ରଚନା

ଚନ୍ଦ୍ରଶେଖରଙ୍କ ଜୀବନର ପ୍ରଧାନ କାର୍ଯ୍ୟ ଥିଲା 'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥର ପ୍ରଣୟନ । ଏଥିପାଇଁ ତାଙ୍କୁ କୋଡ଼ିଏ ବର୍ଷ କାଳ କଠୋର ଅଧବସାୟ କରିବାକୁ ପଡ଼ିଥିଲା । ସେ ୧୮୫୦ ମସିହାରେ ଏହି କାର୍ଯ୍ୟ ଆରମ୍ଭ କରି ୧୮୭୦

ମସିହାରେ ଶେଷ କରିଥିଲେ । ଗ୍ରନ୍ଥଟି ପାଞ୍ଚଟି ଅଧିକାର ଓ ୨୪ଟି ପ୍ରକାଶରେ ବିଭକ୍ତ । ଅଧିକାରଗୁଡ଼ିକ ହେଲା ମାଧମାଧିକାର (ଚାରୋଟି ପ୍ରକାଶ), ସ୍ଫୁଟାଧିକାର (ଦୁଇଟି ପ୍ରକାଶ), ତ୍ରିପ୍ରଶ୍ନାଧିକାର (ନଅଟି ପ୍ରକାଶ), ଗୋଲାଧିକାର (ଛଅଟି ପ୍ରକାଶ) ଓ କାଳାଧିକାର (ତିନୋଟି ପ୍ରକାଶ) ।

ପ୍ରଥମ ପ୍ରକାଶରେ କାଳବର୍ଣ୍ଣନ, ଦ୍ୱିତୀୟରେ ଲଗନାଦିର ବର୍ଣ୍ଣନା ଅଛି । ତୃତୀୟ ପ୍ରକାଶରେ ଗ୍ରହାନୟନ ବର୍ଣ୍ଣନ, ଚତୁର୍ଥରେ ନାନାବିଧ ସଂସ୍କାର ବର୍ଣ୍ଣିତ । ପଞ୍ଚମରେ ଗ୍ରହ ସ୍ଫୁଟୀକରଣ, ଷଷ୍ଠ ପ୍ରକାଶରେ ସୂକ୍ଷ୍ମ ପଞ୍ଜିକା ଇତ୍ୟାଦି ବର୍ଣ୍ଣନା ଅଛି । ସପ୍ତମ ପ୍ରକାଶରେ ଶଙ୍କୁ ଛାୟାଦି ବର୍ଣ୍ଣନ, ଅଷ୍ଟମରେ ଚନ୍ଦ୍ରଗ୍ରହଣ ବର୍ଣ୍ଣନ, ନବମରେ ସୂର୍ଯ୍ୟଗ୍ରହଣ ବର୍ଣ୍ଣନ, ଦଶମରେ ପରିଲେଖ ବର୍ଣ୍ଣନ ମିଳେ । ଏକାଦଶ ପ୍ରକାଶରେ ଗ୍ରହ ଯୁକ୍ତି ବର୍ଣ୍ଣନ, ଦ୍ୱାଦଶରେ ଉପଗ୍ରହଯୋଗ ବର୍ଣ୍ଣନ ଦେଖିବାକୁ ପାଉ । ତ୍ରୟୋଦଶ ପ୍ରକାଶରେ ଗ୍ରହର୍କ୍ଷୋଦୟାସ୍ତ ସମୟ ବର୍ଣ୍ଣନ, ଚତୁର୍ଦ୍ଦଶରେ ଚନ୍ଦ୍ରୋଶୃଙ୍ଗୋନ୍ନତି ବର୍ଣ୍ଣନ, ପଞ୍ଚଦଶରେ ମହାପାତ ବର୍ଣ୍ଣନ ଅଛି । ଷୋଡ଼ଶରେ ପ୍ରଶ୍ନ ବର୍ଣ୍ଣନ, ସପ୍ତଦଶରେ ଭୂଗୋଳ ସ୍ଥିତି ବର୍ଣ୍ଣନ, ଅଷ୍ଟାଦଶରେ ଭୂଗୋଳ ବିବରଣ, ଊନବିଂଶରେ ଭୂଗୋଳ ଓ ଗୋଳ ବର୍ଣ୍ଣନ ମିଳେ । ବିଂଶ ପ୍ରକାଶରେ ଗୋଳାଦି ଯନ୍ତ୍ରର ବର୍ଣ୍ଣନା ଅଛି । ଏକବିଂଶରେ ବାସନା ଶେଷ ରହସ୍ୟ ବର୍ଣ୍ଣନା, ଦ୍ୱାବିଂଶରେ ସମ୍ବତ୍ସରାଦି ବର୍ଣ୍ଣନା, ତ୍ରୟୋବିଂଶରେ ପୁରୁଷୋତ୍ତମ ସ୍ତବ ବର୍ଣ୍ଣନା, ଚତୁର୍ବିଂଶ ପ୍ରକାଶରେ ଉପସଂହାର ବର୍ଣ୍ଣିତ ଅଛି ।

ଗ୍ରନ୍ଥର ଶ୍ଳୋକ ସଂଖ୍ୟା ମୋଟ ୨୫୦୦ । ସେଥିମଧ୍ୟରୁ ୨୨୮୪ଟି ସାମନ୍ତଙ୍କର ଅଛି । ଅବଶିଷ୍ଟ ୨୧୬ଟି ଶ୍ଳୋକ ଅନ୍ୟ ଗ୍ରନ୍ଥରୁ ଉଦ୍ଧୃତ ହୋଇଅଛି ।

'ସିଦ୍ଧାନ୍ତ ଦର୍ପଣ' ଗ୍ରନ୍ଥରେ ଚନ୍ଦ୍ରଶେଖର ଦଶ କୋଟି ଦିନ ନିମନ୍ତେ ରବିଙ୍କର ପଦକ ନିର୍ଣ୍ଣୟ କରିଅଛନ୍ତି । ଏହି ପଦକାନୁସାରେ ଦଶ କୋଟି ଦିନ ପର୍ଯ୍ୟନ୍ତ ପଞ୍ଜିକା ଗଣନା ନିର୍ଭୁଲ ହେବ ।

ସାମନ୍ତ ୩୪ଟି ଶ୍ଳୋକରେ ସୂର୍ଯ୍ୟ ପୃଥିବୀ ଚାରିପଟେ ବୁଲୁଅଛି ବୋଲି ପ୍ରମାଣ କରିଛନ୍ତି । ଏହା ପ୍ରଶ୍ନ ଓ ଏହା ଉତ୍ତର ଛଳରେ ବର୍ଣ୍ଣିତ ।

## ରାଜନିଗ୍ରହ

ଏତେ ବଡ଼ ପ୍ରତିଭାର ଅଧିକାରୀ ହେଲେ ମଧ ସାମନ୍ତ ଅଭାବରେ ଚଳୁଥିଲେ । ରାଜାଙ୍କ ଅନୁଗ୍ରହରୁ ସେ ବଞ୍ଚିତ ଥିଲେ । ସେତେବେଳେ ଖଣ୍ଡପଡ଼ାର ରାଜା ଥିଲେ ନଟବର ସିଂହ । ସେ ପ୍ରଜାପୀଡ଼କ ଥିଲେ । ପରଶ୍ରୀକାତରତା ତାଙ୍କର ସ୍ୱଭାବଗତ ଦୋଷ ଥିଲା । ନିଜେ ବିଦ୍ୟାଶୂନ୍ୟ ଥିବାରୁ ସାମନ୍ତଙ୍କ ପ୍ରତି

ତାଙ୍କର ଈର୍ଷାଜାତ ହେଉଥିଲା । ସାମନ୍ତଙ୍କ ପ୍ରତିଷ୍ଠା ତାଙ୍କୁ ବିଷବତ୍‌ବୋଧ ହେଉଥିଲା । ସାମନ୍ତ ମଧ ସ୍ପଷ୍ଟବାଦୀ ଥିଲେ । ସେ ରାଜାଙ୍କୁ ସ୍ପଷ୍ଟ କଥା କହିବାକୁ କୁଣ୍ଠିତ ହେଉ ନ ଥିଲେ । ତାଙ୍କର ଅନୁପସ୍ଥିତିରେ କେତେକ ବ୍ୟକ୍ତି ରାଜାଙ୍କ ଆଗରେ ତାଙ୍କର ଗୁଣଗୁଡ଼ିକୁ ଦୋଷରୂପେ ବର୍ଣ୍ଣନା କରି ତାଙ୍କର କ୍ରୋଧକୁ ବହୁଗୁଣିତ କରିଦେଉଥିଲେ ।

## ମହାମହୋପାଧ୍ୟାୟ ଉପାଧିଲାଭ

ଯୋଗେଶବାବୁ ଚନ୍ଦ୍ରଶେଖରଙ୍କ ପ୍ରତିଭା ବିଷୟରେ କମିସନର କେ.ଜି. ଗୁପ୍ତଙ୍କୁ ଜଣାଇଲେ ଓ ତାଙ୍କୁ ମହାମହୋପାଧ୍ୟାୟ ଉପାଧି ଦେବାପାଇଁ ପ୍ରସ୍ତାବ ଦେଲେ । କମିସନର ଚନ୍ଦ୍ରଶେଖରଙ୍କ ଆବିଷ୍କାର ବିଷୟରେ ପ୍ରତ୍ୟକ୍ଷଭାବେ ଜାଣିବାକୁ ଚାହିଁବାରେ, ଯୋଗେଶବାବୁ କମିସନର ଗୁପ୍ତଙ୍କୁ ଧରି ଖଣ୍ଡପଡ଼ାରେ ପହଞ୍ଚିଲେ । ଚନ୍ଦ୍ରଶେଖର ତାଙ୍କୁ ଆଦର ଅଭ୍ୟର୍ଥନା କଲେ । ଦୁହେଁ ଖଣ୍ଡପଡ଼ାରେ ରାତ୍ରିଯାପନ କଲେ ।

କଥାବାର୍ତ୍ତା ବେଳେ ଗୁପ୍ତସାହେବ ସାମନ୍ତଙ୍କର ଆଟୁଘର ଦେଖି ତାହା ପରିବର୍ତ୍ତେ କୋଠାଘର କରିବାକୁ କହନ୍ତେ, ସାମନ୍ତ ନିଜର ଆର୍ଥିକ ଦୁରବସ୍ଥା ଓ ରାଜାଙ୍କ ଶୁଭଦୃଷ୍ଟି ତାଙ୍କ ଉପରେ ନ ଥିବା କଥା ଜଣାଇଲେ । କମିସନର ସାହେବ ତାଙ୍କୁ ରାଜାଙ୍କ ସହିତ ମିଳାଇ ଦେବାକୁ ପ୍ରସ୍ତାବ ଦେଲେ । ସେପରି କରିବା ଉଚିତ ହେବ ନାହିଁ ବୋଲି ସାମନ୍ତ ଉତ୍ତର ଦେଲେ । ପୁଣି କହିଲେ ଯେ ରାଜା ଅବଶ୍ୟ ଭୟରେ ବାହାରେ ମିଳିଯିବେ, ମାତ୍ର ପରେ ଅଭିଯୋଗ କରିଥିବା ହେତୁ ତାଙ୍କ ଉପରେ ଆହୁରି କ୍ରୋଧାନ୍ୱିତ ହୋଇପଡ଼ିବେ । ଫଳରେ ଆହୁରି ଅନିଷ୍ଟ ସାଧିତ ହେବ । କୌଶଳରେ ତାହା କରାଇଦେବେ ବୋଲି କମିସନର କହିଲେ । ମାତ୍ର ସେପରି କରିବାକୁ ସେ ଓଡ଼ିଶାରେ ଅଧିକକାଳ ରହି ନ ଥିଲେ ।

ଚନ୍ଦ୍ରଶେଖର ଗୁପ୍ତସାହେବଙ୍କୁ ନିଜର ହାତତିଆରି ମାନଯନ୍ତ୍ର, ଶଙ୍କୁ ପ୍ରଭୃତି ସାହାଯ୍ୟରେ ଗ୍ରହ-ନକ୍ଷତ୍ରମାନଙ୍କର ଗତିବିଧି ଦେଖାଇଲେ । କମିସନର ଏଥିରେ ଅତିଶୟ ମୁଗ୍ଧ ହୋଇ ତାଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କରିବାକୁ ଓ ମାସିକ ବୃତ୍ତି ୫୦ ଟଙ୍କା ଦେବାକୁ ସରକାରଙ୍କୁ ସୁପାରିସ କଲେ । ସେତେବେଳେ ବଙ୍ଗ, ବିହାର ଓ ଓଡ଼ିଶାପାଇଁ ଜଣେ ଲାଟ ଥିଲେ । ସେ କମିସନରଙ୍କ ପ୍ରସ୍ତାବକୁ ଗ୍ରହଣ କଲେ ଓ ଚନ୍ଦ୍ରଶେଖରଙ୍କୁ ମହାମହୋପାଧ୍ୟାୟ ଉପାଧିରେ ସମ୍ମାନିତ କରିବାପାଇଁ ଦିନ ଧାର୍ଯ୍ୟ କରିବାକୁ ଗଡ଼ଜାତ ମହଲର ସୁପରିଣ୍ଟେଣ୍ଡେଣ୍ଟ କୁକ୍‌ଙ୍କୁ ପତ୍ର ଲେଖିଲେ । କୁକ୍ ମଧ ସଙ୍ଗେ ସଙ୍ଗେ ଉପାଧି ଦିଆଯିବାର ଦିନଧାର୍ଯ୍ୟ କରି ପ୍ରତିଷ୍ଠିତ ବ୍ୟକ୍ତିମାନଙ୍କ ପାଖକୁ ପତ୍ର ଦେଲେ । ସସମ୍ମାନେ ଚନ୍ଦ୍ରଶେଖରଙ୍କୁ କଟକ ପଠାଇବାର ବନ୍ଦୋବସ୍ତ କରିବାକୁ ଖଣ୍ଡପଡ଼ାର ରାଜାଙ୍କୁ ଜଣାଇଦେଲେ ।

ଖଣ୍ଡପଡ଼ାର ରାଜା ନଟବର ସିଂହ ଚନ୍ଦ୍ରଶେଖରଙ୍କ ପ୍ରତି ଈର୍ଷାଳୁ ଥିବା ଆଗରୁ ବର୍ଣ୍ଣିତ ଅଛି । ଉପାଧି ମିଳିବା କଥା ଶୁଣି ତାଙ୍କର କ୍ରୋଧ ପ୍ରଜ୍ୱଳିତ ହେବାକୁ ଲାଗିଲା । ସେ ତେଣୁ ଚନ୍ଦ୍ରଶେଖରଙ୍କୁ କଟକ ପଠାଇବାକୁ ଅନିଚ୍ଛା ପ୍ରକାଶ କଲେ । ଏ ସମ୍ବାଦ ପଣ୍ଡିତ ରାଜବଲ୍ଲଭ ମିଶ୍ର ଗଡ଼ଜାତର ସୁପରିଣ୍ଟେଣ୍ଡେଣ୍ଟ ମହାପ୍ରତାପୀ କୁକ୍ ସାହେବଙ୍କୁ ଜଣାଇଲେ । କୁକ୍ ମଧ କ୍ରୁଦ୍ଧ ହୋଇ ଖଣ୍ଡପଡ଼ାର ରାଜାଙ୍କ ନାମରେ ୱାରଣ୍ଟ ଜାରି କରିବାକୁ ଆଦେଶ ଦେଲେ । କଟକର ମଧୁସୂଦନ ଦାସ ରାଜାଙ୍କୁ ପତ୍ର ଦ୍ୱାରା ଶୀଘ୍ର ଚନ୍ଦ୍ରଶେଖରଙ୍କୁ କଟକ ପଠାଇବାପାଇଁ ବ୍ୟବସ୍ଥା କରିବାକୁ ପରାମର୍ଶ ଦେଲେ । ରାଜା ତେଣୁ ବାଧହୋଇ ଦରବାରର ଦୁଇ ଦିନ ପୂର୍ବରୁ କଟକ ଯିବାକୁ ସାମନ୍ତଙ୍କୁ ଅନୁରୋଧ କଲେ । ଚନ୍ଦ୍ରଶେଖର ୨୮ ତାରିଖ ଦିନ କଟକରେ ପହଞ୍ଚିଲେ । ସେତେବେଳକୁ ଦରବାରର ସମୟ ଗଡ଼ିଯାଇଥିଲା । ଖଣ୍ଡପଡ଼ାର ରାଜାଙ୍କ ନାମରେ ୱାରଣ୍ଟ ମଧ ଜାରି ହୋଇସାରିଥିଲା । ଆଠଗଡ଼ ରାଜାଙ୍କଠାରୁ ଏ ଖବର ପାଇ ଚନ୍ଦ୍ରଶେଖର ସଙ୍ଗେ ସଙ୍ଗେ କମିସନରଙ୍କ ପାଖକୁ ଗଲେ । କମିସନର ସାହେବ ତା'ର ପରଦିନ ଆସିବାକୁ କହିଲେ । ତା' ପରଦିନ ସାମନ୍ତ ସୁଦାମ ନାଏକଙ୍କ ସଙ୍ଗେ ଯାଇ କମିସନରଙ୍କୁ ଦେଖାକଲେ । କମିସନର ଚନ୍ଦ୍ରଶେଖରଙ୍କୁ ସପ୍ତଶଯ୍ୟା ପାହାଡ଼ର ଉଚ୍ଚତା ନିର୍ଣ୍ଣୟ କରିବାପାଇଁ କହିଲେ । ପୁତ୍ରଦ୍ୱାରା ବସାରୁ ଉପକରଣ ଅଣାଗଲା । ହାତତିଆରି ମାନଯନ୍ତ୍ର ଓ ଶଙ୍କୁ ସାହାଯ୍ୟରେ ଚନ୍ଦ୍ରଶେଖର ଗଣନା କରି ପାହାଡ଼ର ଉଚ୍ଚତା ୧୧୭୮ ହାତ ଷୋହଳ ଆଙ୍ଗୁଳ ବୋଲି କହିଲେ । ଏହା ନକ୍ସାରେ ଥିବା ଉଚ୍ଚତା ସଙ୍ଗେ ମିଳିଯିବାରୁ କମିସନର ଅବାକ୍ ହୋଇଗଲେ । ସାମନ୍ତଙ୍କୁ ଉଚ୍ଛ୍ୱସିତ ଅଭିନନ୍ଦନ ଜଣାଇଲେ । ସାମନ୍ତଙ୍କ ଅନୁରୋଧକ୍ରମେ ଖଣ୍ଡପଡ଼ା ରାଜାଙ୍କ ବିରୋଧରେ ଜାରି ହୋଇଥିବା ୱାରଣ୍ଟକୁ ଉଠାଇନେଲେ ।

ମହାମହୋପାଧ୍ୟାୟ ଉପାଧି ଦେବାପାଇଁ ପୁଣି ଦିନ ଧାର୍ଯ୍ୟ ହେଲା । ଉତ୍କଳ ଗୌରବ ମଧୁସୂଦନ ଦାସ, କବିବର ରାଧାନାଥ, ଅଧ୍ୟାପକ ଯୋଗେଶ ରାୟ ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ଏଥିରେ ଯୋଗ ଦେଇଥିଲେ । ବହୁ ରାଜା ଓ ଯୁବରାଜ ମଧ ଏଥିରେ ଉପସ୍ଥିତ ଥିଲେ । ସାମନ୍ତଙ୍କୁ ଉପଯୁକ୍ତ ପୋଷାକ ସୁଦାମବାବୁ ପିନ୍ଧାଇ ଦେଲେ । କମିସନର ସାହେବ ତାଙ୍କ ଗଳାରେ ପୁଷ୍ପମାଲ୍ୟ ଲମ୍ବାଇଲେ ଓ ତାଙ୍କୁ ମହାମହୋପାଧ୍ୟାୟ ଉପାଧିରେ ଭୂଷିତ କଲେ । ଉପାଧି ଦେଲାବେଳେ କମିସନର କହିଥିଲେ – "ଆପଣ ଏ ଦେଶର ଏକ ମାନ୍ୟ ରାଜକୁଳୋଦ୍ଭବ ବ୍ୟକ୍ତି ଅଟନ୍ତି । ମାତ୍ର ସାଧାରଣ ରାଜବଂଶୀୟ ଲୋକଙ୍କ ଭଳି ବିଳାସିତା ଓ ସାମାନ୍ୟ ସାଂସାରିକ ସୁଖରେ କାଳଯାପନ ନ କରି ସଂସ୍କୃତ ବିଦ୍ୟା

ଏବଂ ବିଜ୍ଞାନ ବିଶେଷତଃ, ଜ୍ୟୋତିଷଶାସ୍ତ୍ର ସେବାରେ ଅହରହ ନିଯୁକ୍ତ ରହି ଉଚ୍ଚ ସୁଖ୍ୟାତି ଅର୍ଜନପୂର୍ବକ ଆପଣଙ୍କର ଜୀବନ ସାର୍ଥକ କରିଛନ୍ତି । ଆପଣ ଇଉରୋପୀୟ ଯନ୍ତ୍ରମାନଙ୍କ ସାହାଯ୍ୟ ବିନା ସ୍ବକପୋଳକଳ୍ପିତ ଉପାୟଦ୍ୱାରା ନକ୍ଷତ୍ରାଦିର ସଞ୍ଚାର କାଳ ଏପରି ବିଶୁଦ୍ଧଭାବେ ଗଣନା କରିଅଛନ୍ତି ଯେ ଇଉରୋପୀୟ ପଞ୍ଜିକା ସହିତ ଠିକ୍ ମେଳ ହେଉଅଛି ।''

ସେଥିରେ ପୁଣି ଲେଖାଥିଲା - ''ଆପଣଙ୍କର ଏ କାର୍ଯ୍ୟ ଅତି ପ୍ରଶଂସନୀୟ । ଅସାଧାରଣ ପାଣ୍ଡିତ୍ୟର ମଧ୍ୟ ପରିଚୟ ଅଟେ । ଆମେ ଆଶା କରୁ ଅଦ୍ୟ ଆପଣଙ୍କୁ ଯେଉଁ ସମ୍ମାନ ପ୍ରଦତ୍ତ ହେଲା ତାହା ଆପଣ ଦୀର୍ଘକାଳ ଭୋଗ କରନ୍ତୁ ଓ ଆପଣଙ୍କ ଆଦର୍ଶକୁ ଏବେ ଦେଶବାସୀ ଅନୁକରଣ କରିବାରେ ତତ୍ପର ହୁଅନ୍ତୁ ।''

ଚନ୍ଦ୍ରଶେଖରଙ୍କ ପୂରା ନାମ ଥିଲା ସାମନ୍ତ ଚନ୍ଦ୍ରଶେଖର ସିଂହ । ପୁରୀର ଗଜପତି ରାଜା ତାଙ୍କୁ ହରିଚନ୍ଦନ ମହାପାତ୍ର ଉପାଧି ଦେଇ ଆଗରୁ ସମ୍ମାନିତ କରିଥିଲେ । ଇଂରେଜ ସରକାର ତାଙ୍କୁ ମହାମହୋପାଧ୍ୟାୟ ଉପାଧି ଦେଲେ ।

## ଅଭ୍ୟର୍ଥନା ସଭା

ଉପାଧି ଗ୍ରହଣର ପରଦିନ କଟକ ପ୍ରିଣ୍ଟିଂ କମ୍ପାନୀ ଗୃହରେ ଚନ୍ଦ୍ରଶେଖରଙ୍କପାଇଁ ଅଭ୍ୟର୍ଥନା ସଭାର ଆୟୋଜନ କରାଗଲା । ପ୍ରିଣ୍ଟିଂକମ୍ପାନୀର ପରିଚାଳକ ସୁଦାମବାବୁ, ଯୋଗେଶବାବୁ, କବିବର ରାଧାନାଥ, ମଧୁସୂଦନ ରାଓ, ଗୌରୀଶଙ୍କର ପ୍ରଭୃତି ବିଶିଷ୍ଟ ବ୍ୟକ୍ତିମାନେ ଏ ସଭାରେ ଉପସ୍ଥିତ ଥିଲେ । ଢେଙ୍କାନାଳ, ଆଠଗଡ଼, ବଡ଼ମ୍ବା, ନରସିଂହପୁର, କନିକା ପ୍ରଭୃତି ରାଜ୍ୟର ରାଜାମାନେ ମଧ୍ୟ ଏହି ସଭାରେ ଯୋଗ ଦେଇଥିଲେ । ସେଥିରେ ଚନ୍ଦ୍ରଶେଖରଙ୍କୁ ଅଜସ୍ର ପ୍ରଶଂସା କରାଗଲା । ପଣ୍ଡିତମାନେ ମଧ୍ୟ ତାଙ୍କର ଗୁଣ ଗାନ କଲେ ।

## ସିଦ୍ଧାନ୍ତ ଦର୍ପଣ ପ୍ରକାଶନ

କବିବର ରାଧାନାଥ ଗୁଣଗ୍ରାହୀ ଥିଲେ । ସେ, ଯୋଗେଶବାବୁ ପ୍ରଭୃତି 'ସିଦ୍ଧାନ୍ତ ଦର୍ପଣ'ର ପ୍ରକାଶନପାଇଁ ସ୍ଥିର କଲେ । ଏହା ୧୮୯୪ ମସିହା ଘଟଣା । ଏହାପରେ ଯୋଗେଶବାବୁ ସାମନ୍ତଙ୍କୁ ଖଣ୍ଡପଡ଼ାରୁ ଡକାଇ ଆଣିଲେ । ଚାନ୍ଦିନୀଚୌକ ଡାକଘର ସମ୍ମୁଖସ୍ଥ କୋଠାରେ ସାମନ୍ତ ଅବସ୍ଥାନ କଲେ । ସେଠାରେ ଏକ ମାସ କାଳ 'ସିଦ୍ଧାନ୍ତ ଦର୍ପଣ' ଉପରେ ଆଲୋଚନା ହେଲା । ସାମନ୍ତ ରୁଗ୍ଣ ଓ ଦୁର୍ବଳ ହୋଇପଡ଼ିଥିଲେ ମଧ୍ୟ ସବୁ ପ୍ରଶ୍ନର ଉତ୍ତର ଦେଇଥିଲେ ।

ସୁଦାମବାବୁ ସାମନ୍ତଙ୍କ ପୁସ୍ତକ ପ୍ରକାଶନ କାର୍ଯ୍ୟ ନିମନ୍ତେ ଆଠମଲ୍ଲିକ ରାଜା ମହେନ୍ଦ୍ର ଦେଓଙ୍କ ପାଖକୁ ପତ୍ର ଦେଲେ । ସେ ବଦାନ୍ୟ ରାଜା ଥିଲେ । ମନିଅର୍ଡ଼ରଦ୍ୱାରା ସେ ଏକ ହଜାର ଟଙ୍କା କଟକକୁ ପଠାଇଲେ । ବାମଣ୍ଡାରାଜା ସୁଡଳଦେବ ଚନ୍ଦ୍ରଶେଖରଙ୍କ ପୁସ୍ତକର ମୁଦ୍ରଣ ନିମନ୍ତେ ରାଧାନାଥଙ୍କ ହାତରେ ଦୁଇ ଶହ ଟଙ୍କା ଦେଲେ ଓ କବିବର ତାହା ଗୃହ ଠିକଣାରେ ଚନ୍ଦ୍ରଶେଖରଙ୍କ ପାଖକୁ ପଠାଇଲେ । ଅଧ୍ୟାପକ ଯୋଗେଶବାବୁ ଅବଶିଷ୍ଟ ଟଙ୍କାପାଇଁ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ରଦେବଙ୍କୁ ଅନୁରୋଧ କଲେ । ରାଜା ସଙ୍ଗେ ସଙ୍ଗେ ଚ୍ଚାରି ଶହ ଟଙ୍କା ଯୋଗେଶବାବୁଙ୍କ ପାଖକୁ ପଠାଇଲେ । ସେଥିମଧ୍ୟରୁ ଦୁଇ ଶହ ପଚାଶ ଟଙ୍କା ବ୍ୟୟିତ ହେଲା । ଅବଶିଷ୍ଟ ୧୫୦ ଟଙ୍କା ଯୋଗେଶବାବୁ ସାମନ୍ତଙ୍କ ନିକଟକୁ ପଠାଇଦେଲେ । ଗ୍ରନ୍ଥର ମୁଦ୍ରଣରେ ପ୍ରାୟ ବାର ଶହ ପଚାଶ ଟଙ୍କା ବ୍ୟୟିତ ହୋଇଥିବାର ଜଣାଯାଏ ।

୧୮୯୪ ମସିହାରେ ମୁଦ୍ରଣ କାର୍ଯ୍ୟ ଆରମ୍ଭ ହୋଇ ୧୮୯୯ ମସିହାରେ ଏହା ଶେଷ ହେଲା । ଅଧ୍ୟାପକ ଯୋଗେଶବାବୁ 'ସିଦ୍ଧାନ୍ତ ଦର୍ପଣ'ର ମୁଖବନ୍ଧ ଇଂରାଜୀରେ ଲେଖିଲେ । ପ୍ରୁଫ୍‌ଗୁଡ଼ିକ ଖଣ୍ଡପଡ଼ାକୁ ଆସୁଥିଲା । ଶିଷ୍ୟ ରାଜବଲ୍ଲଭ ମିଶ୍ର ସାମନ୍ତଙ୍କୁ ଶୁଣାଇ ଦେଉଥିଲେ ଓ ସାମନ୍ତ ସେଗୁଡ଼ିକର ସଂଶୋଧନ କରିଦେଉଥିଲେ । 'ସିଦ୍ଧାନ୍ତ ଦର୍ପଣ' ପ୍ରାୟ ୫୦୦୦ ଖଣ୍ଡ ଛପାହୋଇଥିଲା । ସେଥିମଧ୍ୟରୁ ଜର୍ମାନୀକୁ ୧୦୦୦ ଖଣ୍ଡ ଓ ଆମେରିକାକୁ ୮୦୦ ଗ୍ରନ୍ଥ ପଠାଗଲା । 'ସିଦ୍ଧାନ୍ତ ଦର୍ପଣ'ର ଅନୁବାଦ ବା ଟୀକା ଏପର୍ଯ୍ୟନ୍ତ ହୋଇ ନାହିଁ ।

ବିଶିଷ୍ଟ କବି ଓ ଜନନାୟକ ଉତ୍କଳମଣି ଗୋପବନ୍ଧୁ ଦାସ 'ସିଦ୍ଧାନ୍ତ ଦର୍ପଣ'କୁ ଉତ୍କଳର କୋଷ୍ଠୀ ଭାବେ ଅଭିହିତ କରିଛନ୍ତି –

''ସିଦ୍ଧାନ୍ତ ଦର୍ପଣ ସ୍ୱଦେଶର କୋଷ୍ଠୀ
ଦେଖିକରି ଏକ ଲୟ ।''

'ସିଦ୍ଧାନ୍ତ ଦର୍ପଣ' ଉତ୍କଳର ଗୌରବ ହୋଇ ରହିବ ବୋଲି କବିବର ରାଧାନାଥ ତାଙ୍କ 'ଦରବାର କବିତା'ରେ ପ୍ରକାଶ କରିଛନ୍ତି, ଯଥା –

''ମାତ୍ର ଉତ୍କଳର ଦର୍ପ ଚିତ୍ ପ୍ରସୂତି
ଜ୍ୟୋତିଷ ଦର୍ପଣ ଦରିଦ୍ରର କୃତି
ସିଦ୍ଧାନ୍ତ ଦର୍ପଣ ହେବ ନାହିଁ ଲୟ
ନର ଦେହେ ଥିବ ଯାବତ ହୃଦୟ ।''

## ଇଂରେଜ ସରକାରଙ୍କ ବୃତ୍ତି

କମିସନର ସାମନ୍ତଙ୍କୁ ମାସିକ ୫୦ ଟଙ୍କା ବୃତ୍ତି ଦେବାକୁ ସୁପାରିସ କରିଥିଲେ । ଭାରତର ବଡ଼ଲାଟ ମଧ ତାହାକୁ ବିଲାତ ସରକାରଙ୍କ ପାଖକୁ ପଠାଇଲେ । ୧୯୦୩ ମସିହା ନଭେମ୍ବର ମାସ ୨୦ ତାରିଖରେ ବିଲାତ ସରକାର ଉକ୍ତ ବୃତ୍ତି ମଞ୍ଜୁର କଲେ । ସେଥିରେ ଲେଖାଥିଲା – ''ହିନ୍ଦୁ ଜ୍ୟୋତିଷରେ ଉଲ୍ଲେଖଯୋଗ୍ୟ ଅବଦାନପାଇଁ ଖଣ୍ଡପଡ଼ାର ସାମନ୍ତ ଚନ୍ଦ୍ରଶେଖର ସିଂହ ହରିଚନ୍ଦନ ମହାପାତ୍ରଙ୍କୁ ମାସିକ ୫୦ ଟଙ୍କା ବୃତ୍ତି ଦେବାପାଇଁ ଆପଣ ଯେଉଁ ସୁପାରିସ କରିଛନ୍ତି, ତାହା ଆମ୍ଭେ ବିଚାର କରି ମଞ୍ଜୁର କଲୁ ।''

## ନିଜ ପଞ୍ଜିକା

ପୂର୍ବରୁ ପ୍ରଚଳିତ ଥିବା ପାଞ୍ଜିରେ ବହୁ ଭୁଲ ଥିବାରୁ ପଠାଣି ସାମନ୍ତ ନିଜେ ଏକ ସୂକ୍ଷ୍ମ ପଞ୍ଜିକା ବାହାର କଲେ । ୧୮୭୬ ମସିହାରେ ପୁରୀ ଜଗନ୍ନାଥ ମନ୍ଦିରର ନିତ୍ୟନୈମିତ୍ତିକ କାର୍ଯ୍ୟର ପରିଚାଳନା ନିମନ୍ତେ ଏକ ସଭା ହେଲା । ସେହି ସଭାରେ ସାମନ୍ତଙ୍କର ପଞ୍ଜିକାର ବିଶୁଦ୍ଧତା ପ୍ରମାଣିତ ହେଲା । ପୂର୍ବ ପଞ୍ଜିକା ପରିବର୍ତ୍ତେ ସାମନ୍ତଙ୍କ ପଞ୍ଜିକା ଅନୁସାରେ ମନ୍ଦିରର ସମସ୍ତ କାର୍ଯ୍ୟ ପରିଚାଳିତ ହେଲା । ସେଥିପାଇଁ ପୁରୀର ଗଜପତି ମହାରାଜା ଚନ୍ଦ୍ରଶେଖରଙ୍କୁ 'ହରିଚନ୍ଦନ' ଉପାଧିରେ ଭୂଷିତ କଲେ । ଏବେ ଜଗନ୍ନାଥଙ୍କ 'ନୀତି, ପୂନେଇ ପରବ ଓ ଶୁଭଦିନ' ଆଦି ପଠାଣି ସାମନ୍ତଙ୍କ ଗଣନା ଅନୁସାରେ ହେଉଅଛି । ପ୍ରତ୍ୟେକ ହିନ୍ଦୁ ଗୃହସ୍ଥପାଇଁ ଏହା ଏକ ଆବଶ୍ୟକ ବସ୍ତୁ । ହିନ୍ଦୁମାନଙ୍କର ସମସ୍ତ ଧର୍ମ କର୍ମ ଏହି ପଞ୍ଜିକାର ନିୟମାନୁସାରେ ହୋଇଥାଏ ।

## ପାଣ୍ଡିତ୍ୟ

ସାମନ୍ତ ଚନ୍ଦ୍ରଶେଖର ମହାପଣ୍ଡିତ ଥିଲେ । ବହୁ ବଡ଼ ପଣ୍ଡିତମାନେ ତାଙ୍କର ପାଣ୍ଡିତ୍ୟର ପ୍ରଶଂସା କରିଛନ୍ତି । ତାଙ୍କର ସ୍ମରଣଶକ୍ତି ଅସାଧାରଣ ଥିଲା । ଯାହା ଥରେ ଅଧ୍ୟୟନ କରୁଥିଲେ, ତାହା ତାଙ୍କର ସ୍ମୃତିପଟରେ ଚିରଦିନପାଇଁ ଅଙ୍କିତ ହୋଇଯାଉଥିଲା । 'ଭାଗବତ'ର ପ୍ରାୟ ଅଷ୍ଟାଦଶ ସହସ୍ର ଶ୍ଳୋକ ତାଙ୍କ କଣ୍ଠରେ ଥିଲା । ଯେଉଁମାନେ ତାଙ୍କ ସଂସ୍ପର୍ଶରେ ଆସୁଥିଲେ ସେମାନେ ତାଙ୍କ ସ୍ମୃତିଶକ୍ତିର ପ୍ରଖରତା ଦେଖି ବିସ୍ମିତ ହୋଇପଡୁଥିଲେ । ଖଣ୍ଡପଡ଼ାବାସୀ ଅଧିକାଂଶ ଲୋକଙ୍କର ପିତା, ପିତାମହମାନଙ୍କର ନାମ ସେ କହିପାରୁଥିଲେ । ଗଡ଼ଜାତର ଅଧିକାଂଶ ରାଜବଂଶର ଇତିହାସ ତାଙ୍କୁ ଜଣା ଥିଲା । ତାଙ୍କ ଭଳି ସ୍ମୃତିଧର ପଣ୍ଡିତ ଏ ଯୁଗରେ ଜନ୍ମ ହୋଇ ନାହାନ୍ତି ବୋଲି କେହି କେହି ମତ ଦିଅନ୍ତି ।

## କବିତ୍ୱ

ଚନ୍ଦ୍ରଶେଖର ଏକାଧାରରେ ପଣ୍ଡିତ ଓ କବି ଥିଲେ । 'ସିଦ୍ଧାନ୍ତ ଦର୍ପଣ' ବ୍ୟତୀତ ଓଡ଼ିଆରେ 'ଦର୍ପଣସାର' ଓ ସଂସ୍କୃତରେ 'ଦର୍ପ ଦୀପିକା' ନାମକ ଦୁଇଟି ଗ୍ରନ୍ଥ ସେ ପ୍ରଣୟନ କରିଛନ୍ତି । ପୁରୁଷୋତ୍ତମ ସ୍ତବରେ ତାଙ୍କର ପାଣ୍ଡିତ୍ୟ ତଥା କବିତ୍ୱର ପରିଚୟ ମିଳେ । ଗ୍ରନ୍ଥର କାନ୍ତ କୋମଳ ପଦ୍ୟାବଳୀ ହୃଦୟକୁ ସ୍ପର୍ଶ କରେ ।

## ବିଶେଷ ଗୁଣ

ଏତେ ବଡ଼ ପଣ୍ଡିତ ହେଲେ ମଧ୍ୟ ସାମନ୍ତଙ୍କ ମନରେ ଲେଶ ମାତ୍ର ଗର୍ବ ନ ଥିଲା । କେହି ତାଙ୍କ ପ୍ରଶଂସା କଲେ ସେ ସେମାନଙ୍କ କୃପାରୁ ଜ୍ଞାନଲାଭ କରିଛନ୍ତି ବୋଲି ଉତ୍ତର ଦେଉଥିଲେ । ସେ କାହା ମନରେ ଦୁଃଖ ଦେବାକୁ ଚାହୁଁ ନ ଥିଲେ । ମହେଶଚନ୍ଦ୍ର ନ୍ୟାୟରତ୍ନ, କମିସନର କେ.ଜି. ଗୁପ୍ତ, ଅଧ୍ୟାପକ ଯୋଗେଶଚନ୍ଦ୍ର, କବିବର ରାଧାନାଥ, କର୍ମବୀର ଗୌରୀଶଙ୍କର ଓ ରାଜାମାନଙ୍କ ମଧ୍ୟରୁ ଆଠମଲ୍ଲିକର ରାଜା ମହେନ୍ଦ୍ର ଦେବ, ନୟାଗଡ଼ର ଲଡୁକେଶ୍ୱର, ମଞ୍ଜୁଷାର ଜଗନ୍ନାଥ ରାଜମଣି, ବାମଣ୍ଡାର ସୁଢଳଦେବ ଓ ମୟୂରଭଞ୍ଜର ଶ୍ରୀରାମଚନ୍ଦ୍ର ଭଞ୍ଜଦେବ ପ୍ରଭୃତି ସାମନ୍ତଙ୍କର ସୌଜନ୍ୟରେ ଅଭିଭୂତ ହୋଇପଡୁଥିଲେ ।

ଚନ୍ଦ୍ରଶେଖର ମଧ୍ୟ ଈଶ୍ୱରବିଶ୍ୱାସୀ ଥିଲେ । ସେ ଅନ୍ୟ ବିଷୟରେ ବ୍ୟାପୃତ ଥିଲେ ମଧ୍ୟ ଈଶ୍ୱର ଆରାଧନାରେ କାଳ କଟାଉଥିଲେ । ଜଗନ୍ନାଥଙ୍କ ପ୍ରତି ତାଙ୍କର ଅଶେଷ ଭକ୍ତି ଥିଲା । ସେ ବ୍ରାହ୍ମଣମାନଙ୍କୁ ଭକ୍ତି କରୁଥିଲେ । ସକାଳ ଓ ସନ୍ଧ୍ୟାରେ ନିୟମିତଭାବେ ପୂଜାପାଠ କରୁଥିଲେ ।

ସାମନ୍ତ ମଧ୍ୟ ସ୍ପଷ୍ଟବାଦୀ ଓ ସତ୍ୟବାଦୀ ଥିଲେ । ସେ ମିଥ୍ୟା କହିବାକୁ ଘୃଣା କରୁଥିଲେ । ନୟାଗଡ଼ ଓ ଖଣ୍ଡପଡ଼ା ରାଜାଙ୍କ କଳହରେ ଗଡ଼ଜାତର ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ନନ୍ଦକିଶୋରବାବୁ ଅନୁସନ୍ଧାନ କରିବାକୁ ଆସିଥିଲେ । କାହାରି କଥାରେ ତାଙ୍କର ବିଶ୍ୱାସ ହେଲା ନାହିଁ । ସେ ସାମନ୍ତଙ୍କର ପରିଚୟ ପାଇ ତାଙ୍କୁ ପ୍ରକୃତ କଥା ପଚାରିଲେ । ସେ ମଧ୍ୟ ସତ୍ୟ କଥା କହିବାରେ ନୟାଗଡ଼ ରାଜା ରଘୁନାଥ ସିଂହ ସ୍ଥାୟୀ ହେଲେ । ଫଳରେ ସେ ଖଣ୍ଡପଡ଼ା ରାଜାଙ୍କର ଆହୁରି ଚକ୍ଷୁଃଶୂଳ ହେଲେ । ସେ ମଧ୍ୟ ନିର୍ଭୀକ ଥିଲେ । ଖ୍ୟାତନାମା ବାରିଷ୍ଟର ମଧୁସୂଦନ ଦାସ ଥରେ ଖଣ୍ଡପଡ଼ା ଆସିଥିବାରୁ ଗୋଟିଏ ସମ୍ବର୍ଦ୍ଧନା ସଭା ହୋଇଥିଲା ।

ପଣ୍ଡିତମାନେ ତାଙ୍କୁ ପ୍ରଶଂସା କରି ଶ୍ଳୋକ ପାଠ କରିଥିବାରୁ ମଧୁସୂଦନ ସେମାନଙ୍କୁ ନିର୍ବୁଦ୍ଧିଆ କହି ଅପମାନ ଦେଇଥିଲେ । ବ୍ରାହ୍ମଣମାନଙ୍କର ନିନ୍ଦା ଶୁଣି ସେ ସ୍ଥିର ହୋଇ ରହିପାରି ନ ଥିଲେ । ସେ ଏକ ଶ୍ଳୋକ ବୋଲି ମହାପଣ୍ଡିତମାନେ ମଧ ସମୟରେ ମୂଢ଼ଙ୍କଠାରୁ ପରାଜୟ ଲାଭ କରନ୍ତି ବୋଲି ଜଣାଇଲେ । ଫଳରେ ରାଜା ନଟବର ସିଂହ ଓ ମଧୁସୂଦନଙ୍କର ମୁଖ ମଳିନ ପଡ଼ିଗଲା । ମଧୁବାବୁ ତାଙ୍କ ଘରକୁ ପରଦିନ ଯାଇ କ୍ଷମା ମାଗିଲେ ।

ଅତିଥିଚର୍ଯ୍ୟା ସାମନ୍ତଙ୍କ ଜୀବନର ବ୍ରତ ଥିଲା । ପ୍ରତ୍ୟହ ଭିକ୍ଷା ଦାନପାଇଁ ଚାଉଳ ଗୃହର ଦାଣ୍ଡତରଫରେ ରଖାଯାଉଥିଲା । କୌଣସି ଭିକ୍ଷୁକ ଦ୍ୱାରରୁ ଯେପରି ଫେରି ନ ଯିବେ, ସେଥିପାଇଁ ସେ ଦୃଷ୍ଟି ଦେଉଥିଲେ । କୌଣସି ଅତିଥି ଆସିଲେ ସେ ତାଙ୍କୁ ପ୍ରଥମେ ଭୋଜନ କରାଇ ପରେ ଭୋଜନ କରୁଥିଲେ । ସେ ପରୋପକାରୀ ଥିଲେ । ବିନା ପାରିଶ୍ରମିକରେ ସେ ଅସଂଖ୍ୟ କୋଷ୍ଠୀ ଗଣନା କରି ଫଳାଫଳ କହୁଥିଲେ । ଫଳରେ ସେ ଅଞ୍ଚଳର ପ୍ରାୟ ସମସ୍ତେ ତାଙ୍କ ନିକଟକୁ ଆସି ତାଙ୍କୁ ବ୍ୟସ୍ତ କରିପକାଉଥିଲେ । କୌଣସି ବ୍ୟକ୍ତି ରାଜାଙ୍କ ସହିତ ସାକ୍ଷାତ୍ କରିବାକୁ ଚାହିଁଲେ, ସେ ସୁପାରିସ ପତ୍ର ଲେଖି ଦେଉଥିଲେ । ମେଧାବୀ ଛାତ୍ରମାନଙ୍କୁ ସେ ବିନା ପାରିଶ୍ରମିକରେ ଶିକ୍ଷା ଦାନ କରୁଥିଲେ । ଏପରିକି ଛାତ୍ରମାନେ ତାଙ୍କ ଗୃହରେ ଖାଇ ପିଇ ଶିକ୍ଷା ଲାଭ କରୁଥିଲେ । ସେଥିପାଇଁ ପରିବାରବର୍ଗଙ୍କୁ ବେଳେ ବେଳେ ଅନାହାରରେ ରହିବାକୁ ପଡୁଥିଲା । ଚନ୍ଦ୍ରଶେଖର ମଧ ଦରିଦ୍ରମାନଙ୍କୁ ଯଥାଶକ୍ତି ଦାନ କରିବାରେ ଅଭ୍ୟସ୍ତ ଥିଲେ । ନିଜ ପୈତୃକ ସମ୍ପତ୍ତିରୁ କିଛି ଭୂମି ସେ ନିଜର ଗୁରୁ ଓ ମନ୍ତ୍ରଦାତାଙ୍କୁ ଦାନ ଦେଇଥିଲେ । ବ୍ରାହ୍ମଣମାନଙ୍କ ପୁତ୍ରର ବ୍ରତୋପନୟନ ବା କନ୍ୟାର ବିବାହ ନିମନ୍ତେ ସାହାଯ୍ୟ କରୁଥିଲେ । ଏକଦା ଜଣେ ବ୍ରାହ୍ମଣପୁତ୍ରର ବ୍ରତୋପନୟନ ନିମନ୍ତେ ସେ ଗୃହର ପିତଳ ହଣ୍ଡା ବନ୍ଧା ପକାଇ ୩୦ ଟଙ୍କା ପ୍ରଦାନ କରିଥିଲେ । ଆଉ ଥରେ ନୟାଗଡ଼ ଅଞ୍ଚଳର ଜଣେ ବ୍ରାହ୍ମଣ ଶ୍ରାଦ୍ଧଖର୍ଚ୍ଚପାଇଁ କିଛି ସାହାଯ୍ୟ ମାଗିଲେ । ସେଦିନ ତାଙ୍କ ପାଖରେ କିଛି ନ ଥିବାରୁ ନିଜ ହସ୍ତରୁ ସୁନା ମୁଦିଟିଏ କାଢ଼ି ବନ୍ଧକ ଦେଇ ଦୁଇ ଟଙ୍କା ଆଣି ଦେଇଥିଲେ । ଆଉ ଥରେ ଜଣେ ବ୍ରାହ୍ମଣ ପାଖରୁ ସାରିଣ ପୋଥିଟିଏ ପାଇବାପରେ ତା'ର ମୂଲ୍ୟସ୍ୱରୂପ ଯାବତୀୟ କଂସାବାସନ ଏକ ଶଗଡ଼ରେ ବୋଝାଇ କରି ବ୍ରାହ୍ମଣର ଝିଅ ବିବାହ ଦିନ ଦେଇଆସିଥିଲେ ।

ସାମନ୍ତ ମଧ ପରିହାସପ୍ରିୟ ଥିଲେ । ବନ୍ଧୁମାନଙ୍କ ସହ ଥଟ୍ଟାପରିହାସରେ ସମୟ କଟାଉଥିଲେ । ବାଦୀ ପାଲା, ଝାମୁନାଟ, ଚୈତି ଘୋଡ଼ା ନାଟ ଏପରିକି

କେଳା ନାଟ ଦେଖିବା ତାଙ୍କର ସଉକ ଥିଲା । ହାବେଳି ବାଣ ନିର୍ମାଣରେ ସେ ଦକ୍ଷ ଥିଲେ ।

ମୃତ୍ୟୁର ଚାରି ମାସ ପୂର୍ବରୁ ସେ 'ଲାବଣ୍ୟବତୀ' ପୋଥିଖଣ୍ଡିକ ପୁତ୍ର ଗଦାଧରଙ୍କୁ ଆଣିବାକୁ କହିଲେ । ସେ ଏହାର କାରଣ ପଚାରନ୍ତେ, ମନକୁ ସରସ କରିବାପାଇଁ ଏହା ଆବଶ୍ୟକ କରୁଛନ୍ତି ବୋଲି ଉତ୍ତର ଦେଲେ ।

## ଶେଷ ଜୀବନ

ଚନ୍ଦ୍ରଶେଖରଙ୍କ ଶେଷ ଜୀବନ ଦୁଃଖମୟ ଥିଲା । ପ୍ରଥମତଃ, ସେ ଗଡ଼ଜାତ ଅଞ୍ଚଳରେ ଜନ୍ମ ଗ୍ରହଣ କରିଥିଲେ । ରାଜାମାନଙ୍କର କ୍ଷମତା ଅସୀମ ଥିଲା । ସେ ରାଜାଙ୍କର କୋପ ଦୃଷ୍ଟିରେ ପଡ଼ିଥିଲେ । ଚନ୍ଦ୍ରଶେଖରଙ୍କ ପାଞ୍ଚ ପୁଅ ଓ ଛଅ ଝିଅ ଥିଲେ । ପୁଅମାନଙ୍କ ବହୁ ଘରରେ ଓ ଝିଅମାନଙ୍କ ବିଭାଘରରେ ସେ ଧନହୀନ ହୋଇପଡ଼ିଲେ । ସାରା ଜୀବନ ତାଙ୍କୁ ଅଭାବ, ଅନଟନ ଦେଇ ଗତି କରିବାକୁ ପଡ଼ିଲା । ବେଳେ ବେଳେ ଘରର ଗହଣା ସବୁ ବନ୍ଧା ପକାଇ ଗୁଜୁରାଣ ମେଣ୍ଟାଉଥିଲେ । ରାତିସାରା ଉଜାଗର ରହି ସେ ଗ୍ରହନକ୍ଷତ୍ରମାନଙ୍କର ଗତିବିଧି ନିରୀକ୍ଷଣ କରୁଥିଲେ । ଫଳରେ ଅନିଦ୍ରା ଯୋଗୁଁ ସେ ଅଜୀର୍ଣ୍ଣ, ଅର୍ଶ, ଅନ୍ତବୃଦ୍ଧି ପ୍ରଭୃତି ରୋଗାକ୍ରାନ୍ତ ହୋଇପଡ଼ିଲେ । ମହମ୍ମଦ ୟୁସୁଫ ନାମକ ଜଣେ ବୈଦ୍ୟଙ୍କଦ୍ୱାରା ସେ ଚିକିତ୍ସିତ ହେଉଥିଲେ । ରୋଗ ବୃଦ୍ଧି ହେତୁ ସେ ଦାରୁଣ ଅର୍ଥାଭାବର ସମ୍ମୁଖୀନ ହେଲେ । ସାମନ୍ତ ଚନ୍ଦ୍ରଶେଖରଙ୍କର ପୁରୀରେ ଦେହତ୍ୟାଗ କରିବା ବାସନା ବହୁକାଳରୁ ଥିଲା । ସେ ନିଜର ଆୟୁଗଣନା କରି ମୃତ୍ୟୁର ସମୟ ଜାଣିପାରିଥିଲେ । ମୃତ୍ୟୁ ଦିବସ ଯେତିକି ପାଖେଇ ଆସୁଥାଏ, ପୁରୀ ଯିବାପାଇଁ ତାଙ୍କର ଉତ୍କଣ୍ଠା ବଢ଼ୁଥିଲା । ତାଙ୍କର ପରିବାର କିନ୍ତୁ ତାଙ୍କୁ ପୁରୀ ପଠାଇବାକୁ ଅନିଚ୍ଛୁକ ଥିଲେ । ମାତ୍ର ପୁରୀ ଟ୍ରେଜେରୀ କର୍ତ୍ତୃପକ୍ଷ ସରକାର ଦେଇଥିବା ବୃତ୍ତିକୁ ନିଜେ ଆସି ପ୍ରଥମଥର ନେବାକୁ ଜଣାଇବାରୁ ଶେଷରେ ତାଙ୍କର ପୁରୀ ଯିବାର ସ୍ଥିର ହେଲା ।

ଏହା ତାଙ୍କର ଶେଷ ଯାତ୍ରା ବୋଲି ଚନ୍ଦ୍ରଶେଖର ସମସ୍ତଙ୍କୁ ସୂଚନା ଦେଲେ । ରାଜା ନଟବର ସିଂହଙ୍କଠାରୁ ବିଦାୟ ନେବାବେଳେ କହିଲେ, "ମୁଁ ଚଉଦ କୋଶ ଛାଡୁଛି, ଅଳ୍ପଦିନ ପରେ ଚଉଦପା ଛାଡ଼ିବି ।" ସମସ୍ତେ ଦୁଃଖରେ ମ୍ରିୟମାଣ ହୋଇ ଗଲେ । ତାଙ୍କର ଶେଷ ଦର୍ଶନପାଇଁ ବହୁଲୋକ ଗୃହରେ ରୁଣ୍ଡ ହେଲେ । ଜଣ ଜଣଙ୍କଠାରୁ ସେ ବିଦାୟ ନେଲେ ।

ପୁତ୍ର ଗଦାଧର ସହିତ ସେ ଶବାରିରେ ପୁରୀ ଯାତ୍ରା କଲେ । ବାଟରେ ଯାଉ ଯାଉ ଶବାରି ଟିକିଏ ଅଟକିଲେ, ସେ ବ୍ୟାକୁଳ ହୋଇପଡୁଥିଲେ । ପୁରୀରେ ପହଞ୍ଚିବା ପୂର୍ବରୁ ତାଙ୍କର କାଳେ ମୃତ୍ୟୁ ହୋଇଯିବ – ଏହି ଆଶଙ୍କା ସେ କରୁଥିଲେ । ଶେଷରେ ନିର୍ବିଘ୍ନରେ ସେ ପୁରୀରେ ପହଞ୍ଚିଲେ ।

ସାମନ୍ତ ଅତିଶୟ ଦୁର୍ବଳ ହୋଇପଡ଼ିଥିଲେ । ସେ ଅତି କଷ୍ଟରେ ଦୁଇ ଜଣଙ୍କ ସାହାଯ୍ୟରେ ମନ୍ଦିର ମଧ୍ୟରେ ପ୍ରବେଶ କଲେ । ଗରୁଡ଼ସ୍ତମ୍ଭ ନିକଟରେ ଜଗନ୍ନାଥଙ୍କୁ ଦର୍ଶନ କରି ଦଶଟି ଦଣ୍ଡପ୍ରଣାମ କଲେ । ଏହା ପରେ ବେଢ଼ା ଭିତରକୁ ଯାଇ ଜଗନ୍ନାଥଙ୍କ ସ୍ତୁତି ପାଠ କଲେ । କ୍ଷମା ଦେବାକୁ ଆକୁଳ ନିବେଦନ କରି ଗୃହକୁ ଫେରିଲେ । ସେହି ଥିଲା ତାଙ୍କର ଶେଷ ଦର୍ଶନ ।

ପୁରୀରେ ମାର୍କଣ୍ଡସାହିସ୍ଥ ପାରିକୁଦ ରାଜାଙ୍କ ବସାରେ ସେ ରହିଲେ । ବସାକୁ ଆସିବାପରେ ଆହୁରି ଅସୁସ୍ଥ ହୋଇପଡ଼ିଲେ । ଜ୍ୱର ଆଉ ଛାଡ଼ିଲା ନାହିଁ । ଗଦାଧର ଔଷଧ ଦେଲେ ମଧ୍ୟ ସବୁ ବ୍ୟର୍ଥ ହେଲା । ହିକ୍କା ପରେ ହିକ୍କା ଉଠିଲା । ଅନ୍ତିମ ମୁହୂର୍ତ୍ତ ଆସିଯାଇଛି ବୋଲି ସାମନ୍ତ ଜାଣିପାରିଲେ । ତାଙ୍କୁ ସ୍ନାନ କରାଇଦେବାପାଇଁ ଗଦାଧରଙ୍କୁ କହିଲେ । ସ୍ନାନ ପରେ କୌଷେୟ ବସ୍ତ୍ର ତାଙ୍କୁ ପିନ୍ଧାଇ ଦିଆଗଲା । ତିଳକ ଗ୍ରହଣ କଲା ପରେ ଗଦାଧର ଗଳାରେ ତୁଳସୀମାଳା ପକାଇଦେଲେ । ଜଗନ୍ନାଥଙ୍କ ନାମ ଉଚ୍ଚାରଣ କରୁ କରୁ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

୧୯୦୪ ମସିହା ଜ୍ୟୈଷ୍ଠମାସ କୃଷ୍ଣପକ୍ଷ ଦ୍ୱାଦଶୀ ପୂର୍ବାହ୍ନରେ ତାଙ୍କର ଦେହାନ୍ତ ହେଲା । ସାମନ୍ତଙ୍କର ଅନ୍ତ୍ୟେଷ୍ଟିକ୍ରିୟା ପୁରୀ ଓ ଖଣ୍ଡପଡ଼ାରେ ମହାସମାରୋହରେ ହୋଇଥିଲା ।

**ତୀର୍ଥସ୍ଥଳୀ-ଖଣ୍ଡପଡ଼ା**

ମହାତ୍ମା ଚନ୍ଦ୍ରଶେଖର ଅଖ୍ୟାତ ଗଡ଼ଜାତ ଖଣ୍ଡପଡ଼ାରେ ଜନ୍ମଗ୍ରହଣ କରିଥିଲେ । ବଞ୍ଚିଥିଲାବେଳେ ତାଙ୍କୁ ଭେଟିବାପାଇଁ ବହୁ ପଣ୍ଡିତ ଓ ବିଶିଷ୍ଟ ବ୍ୟକ୍ତି ଖଣ୍ଡପଡ଼ା ଆସୁଥିଲେ । ମୃତ୍ୟୁପରେ ମଧ୍ୟ ବହୁ ବ୍ୟକ୍ତି ସାମନ୍ତଙ୍କ ଜନ୍ମସ୍ଥଳୀ ଦେଖିବାପାଇଁ ଖଣ୍ଡପଡ଼ା ଆସିଲେ । ଖଣ୍ଡପଡ଼ା ଉତ୍କଳ କାହିଁକି ଭାରତ ବିଖ୍ୟାତ ହୋଇଗଲା । ୧୯୫୫ ମସିହାରେ ଉତ୍କଳର ଜଣେ ବିଶିଷ୍ଟ ଜନନାୟକ ଓ କବି ପଣ୍ଡିତ ଗୋଦାବରୀଶ ମିଶ୍ର ସାମନ୍ତଙ୍କ ଜନ୍ମ ଉତ୍ସବରେ ଖଣ୍ଡପଡ଼ା ଯାଇ ଯାହା କହିଥିଲେ ତାହା ଉଲ୍ଲେଖଯୋଗ୍ୟ – ''ଚନ୍ଦ୍ରଶେଖରଙ୍କ ଜନ୍ମ ଯୋଗେ ଖଣ୍ଡପଡ଼ା ଓଡ଼ିଶାର ଆଜି ଏକ ମହାନ୍ ତୀର୍ଥରେ ପରିଣତ ହୋଇଅଛି । ଏହାର ପାଣି,

ପବନ, ଧୂଳି, ମାଟି ଓ ଲୋକେ ସମସ୍ତେ ପବିତ୍ର । ସେହି ମାଟିରେ ପାଦ ଦେଇ ସେଇ ଲୋକଙ୍କୁ ଭେଟି ମୁଁ ଆଜି ପବିତ୍ର ହୋଇଯାଇଛି ।''

ପବିତ୍ର ଭାରତଭୂମିରେ ବହୁ ଜ୍ୟୋତିର୍ବିତ୍ ଆବିର୍ଭୂତ ହୋଇ ସ୍ୱୀୟ ଜ୍ଞାନାଲୋକରେ ପୃଥିବୀକୁ ଉଦ୍ଭାସିତ କରିଯାଇଛନ୍ତି । ସେମାନଙ୍କ ମଧ୍ୟରେ ଥିଲେ ବରାହମିହିର, ଆର୍ଯ୍ୟଭଟ୍ଟ, ବ୍ରହ୍ମଗୁପ୍ତ ଏବଂ ଭାସ୍କରାଚାର୍ଯ୍ୟ । ଓଡ଼ିଶାର ଜଣେ ବରପୁତ୍ର ଗୁଣଗ୍ରାହୀ କବିବର ରାଧାନାଥ ସାମନ୍ତ ଚନ୍ଦ୍ରଶେଖରଙ୍କୁ ଭାରତର ଦ୍ୱିତୀୟ ଭାସ୍କରାଚାର୍ଯ୍ୟ ଭାବେ ଅଭିହିତ କରିଛନ୍ତି । କବିଙ୍କ ଭାଷାରେ –

''ଏକାମ୍ର କୋଣାର୍କେ ଯାକୀର୍ତ୍ତି ଭାସ୍ୱର
ଯୋଗ୍ୟପୁତ୍ର ତୁମେ ସେହି ଉତ୍କଳର

× × ×

ଉତ୍କଳ ଉଦୟ ଅଚଳେ ଭାସ୍ୱର
ହେଲ ଭାରତର ଦ୍ୱିତୀୟ ଭାସ୍କର ।''

## ଅନନ୍ୟ ଭକ୍ତ
# ଦାସିଆ ବାଉରି

ଦେବଭୂମି ଉତ୍କଳ ହେଉଛି ସାଧୁସନ୍ଥମାନଙ୍କର ପବିତ୍ର ଭୂମି । ସେହି ଉତ୍କଳରେ ବିଶେଷତଃ ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କ ଗୁଣଗାନ କେତେ ଯେ ଭକ୍ତ କରିଯାଇଛନ୍ତି, ତା'ର କଳନା ନାହିଁ । ସେହି ସାଧୁସନ୍ଥଙ୍କ ମଧ୍ୟରୁ ବାଲିଗାଁ ଦାସ ବା ଦାସିଆ ବାଉରି ହେଉଛନ୍ତି ଅନ୍ୟତମ ।

### ଜନ୍ମସ୍ଥାନ ଓ ସମୟ

ଭକ୍ତ ଦାସିଆ ପୁରୀ ଜିଲ୍ଲାର ଅତି ଅଖ୍ୟାତ ପଲ୍ଲୀ ବାଲିଗାଁରେ ଜନ୍ମଗ୍ରହଣ କରିଥିଲେ । ଏହି ଗ୍ରାମ ସାତଶଙ୍ଖ ନିକଟବର୍ତ୍ତୀ ତେଇଶିପୁର ମୌଜାର କିଛି ଦୂରରେ ଅବସ୍ଥିତ । ଏହି ଗ୍ରାମର ପୂର୍ବ ଦିଗରେ ଜଗନ୍ନାଥ ସଡ଼କ, ପଶ୍ଚିମରେ ବ୍ରାହ୍ମଣ ଶାସନ ପ୍ରହରାଜପୁର, ଉତ୍ତରରେ ଆବୁଲପୁର ଓ ଦକ୍ଷିଣରେ ଖୋର୍ଦ୍ଧାରୋଡ଼୍ ରେଳପଥ ପଡ଼େ । ପୁରୀଠାରୁ ଏହାର ଦୂରତା ପ୍ରାୟ ୩୦ କିଲୋମିଟର । ଭୁବନେଶ୍ୱରଠାରୁ ଏହାର ଦୂରତା ମଧ୍ୟ ସେଇ ୩୦ କିଲୋମିଟର । ଅଜ୍ଞାତ, ଅଖ୍ୟାତ ବାଲିଗାଁ ଭକ୍ତ ଦାସିଆଙ୍କ ଯୋଗୁଁ ଖ୍ୟାତି ଲାଭ କଲା ।

ଭକ୍ତ ଦାସିଆଙ୍କ ଜନ୍ମ ସମୟ ନିରୂପଣ କରିବାରେ ବହୁ ଅସୁବିଧା ଦେଖାଯାଏ । ସେ ଐତିହାସିକ ବ୍ୟକ୍ତିବିଶେଷ ନୁହନ୍ତି । ତାଙ୍କ ବିଷୟରେ ତେଣୁ ଐତିହାସିକ ବିବରଣୀ ନାହିଁ । ମାତ୍ର ତାଙ୍କ ବିଷୟରେ ବହୁ କିମ୍ବଦନ୍ତୀ ଓ ସାହିତ୍ୟିକ ସ୍ୱୀକାରୋକ୍ତି ରହିଛି । ମାତ୍ର ସେଗୁଡ଼ିକ ବିରୋଧାତ୍ମକ ହୋଇଥିବାରୁ ଆନୁମାନିକ ସମୟ ନିର୍ଦ୍ଧାରଣ ସମ୍ଭବ ନୁହେଁ । ଦୃଷ୍ଟାନ୍ତସ୍ୱରୂପ, ଭକ୍ତିମାଳିକା ପୋଥିରେ ଭକ୍ତ ଦାସିଆ ପଞ୍ଚଦଶ ଶତାବ୍ଦୀର ପ୍ରତାପରୁଦ୍ରଦେବଙ୍କ ସାମସମୟିକ ପଞ୍ଚସଖାଙ୍କଦ୍ୱାରା ପରୀକ୍ଷିତ ହୋଇଥିବାର ବର୍ଣ୍ଣିତ ଅଛି । ମାତ୍ର ପ୍ରତାପରୁଦ୍ରଦେବଙ୍କ ପିତାଙ୍କ ନାମ ରାମଚନ୍ଦ୍ରଦେବ ବୋଲି ସେଥିରେ ଉଲ୍ଲେଖ ଅଛି । ସେହିପରି ଏକ ପୋଥିରେ ପ୍ରତାପରୁଦ୍ରଦେବଙ୍କ ପୁତ୍ରର ନାମ ଲାଙ୍ଗୁଳା ନରସିଂହଦେବ ବୋଲି ବର୍ଣ୍ଣିତ ଅଛି । ଏହା ମଧ୍ୟ ଭ୍ରମାତ୍ମକ । ଅଷ୍ଟାଦଶ ଶତାବ୍ଦୀରେ ରାଜତ୍ୱ କରୁଥିବା ଦ୍ୱିତୀୟ ରାମଚନ୍ଦ୍ରଦେବଙ୍କ ରାଜତ୍ୱ କାଳର କେତେକ ଘଟଣାର ମଧ୍ୟ ଉଲ୍ଲେଖ

ଅଛି । କବି ତାଙ୍କ ରଚିତ ଭକ୍ତିମାଳିକା ପୋଥିରେ ଦୀନକୃଷ୍ଣ ଦାସ, ଦିବାକର ଦାସ, ମହାଦେବ ଦାସ ପ୍ରଭୃତି କବିମାନଙ୍କର ନାମ ଉଲ୍ଲେଖ କରିଛନ୍ତି । ଏହି କବିମାନେ ସପ୍ତଦଶ ଶତାବ୍ଦୀରେ ଜନ୍ମଗ୍ରହଣ କରି ପୁରାଣ, କାବ୍ୟମାନ ରଚନା କରି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଥିଲେ । ତା'ହେଲେ ଭକ୍ତ ଦାସିଆ ସେମାନଙ୍କ ସାମସମୟିକ ହେବେ । ସେଇ ଦୃଷ୍ଟିରୁ ସେ ପଞ୍ଚସଖାଙ୍କଦ୍ୱାରା ପରୀକ୍ଷିତ ହୋଇଥିବା ବା ଜଗନ୍ନାଥ ଦାସଙ୍କଦ୍ୱାରା ଦୀକ୍ଷିତ ହେବା କଳ୍ପନାପ୍ରସୂତ ବୋଲି ମନେହୁଏ । ସେ ଯାହାହେଉ, ତାଙ୍କ ସମୟ ନିରୂପଣ କରିବାପାଇଁ ଅଧିକ ଗବେଷଣାର ଆବଶ୍ୟକତା ଯେ ଅଛି, ଏହା ସମସ୍ତେ ସ୍ୱୀକାର କରିବେ ।

## କୌଳିକ ବ୍ୟବସାୟ

ଭକ୍ତ ଦାସିଆ ବା ବାଲିଗାଁ ଦାସ ଜାତିରେ ଖନ୍ଦାଳ ଥିଲେ । ରାମଦାସଙ୍କ ରଚିତ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ସେ ଜାତିରେ ବାଉରି ଥିବାର ବର୍ଣ୍ଣିତ ଅଛି ।

''ଶ୍ରୀକ୍ଷେତ୍ରକୁ ଛଡ଼ା ବେନି କୋଣ । ବାଲି ଗ୍ରାମରେ ତା'ର ବାସ ।
ଜାତିରେ ଅଟଇ ଖନ୍ଦାଳ । ନ ଜାଣେ ପାପ ପୁଣ୍ୟ ଫଳ ।
ନାମ ତା' ଦାସିଆ ବାଉରି । ଶବର ଜାତି ତୁଲେ ସରି ।''

ଦାସିଆ ବାଉରିକୁଳରେ ଜନ୍ମ ହୋଇଥିଲେ । ଲୁଗା ବୁଣି ନିଜର ଜୀବିକା ନିର୍ବାହ କରୁଥିଲେ । ସେ ବିବାହ କରିଥିଲେ, ମାତ୍ର ତାଙ୍କର କୌଣସି ସନ୍ତାନ ନ ଥିଲେ । ସେ ବାଲ୍ୟକାଳରୁ ଭକ୍ତିଭାବାତ୍ମକ ଥିଲେ । ଯେଉଁଠାରେ ପୁରାଣ ପାଠ ହେଉଥିଲା ବା ନାମ ସଂକୀର୍ତ୍ତନ ହେଉଥିଲା, ସେଠାରେ ସେ ଉପସ୍ଥିତ ରହୁଥିଲେ । ବୟସ ବୃଦ୍ଧି ସଙ୍ଗେ ସଙ୍ଗେ ସେ ମାଳା ଓ ତିଳକ ପିନ୍ଧି ହରିନାମ ଜପିବାକୁ ଲାଗିଲେ ।

## ପ୍ରଭୁଙ୍କ ଦର୍ଶନ

ଥରେ ପୁରୀରେ ଗୁଣ୍ଡିଚା ଯାତ୍ରା ସମୟରେ ବିଭିନ୍ନ ଅଞ୍ଚଳରୁ ହଜାର ହଜାର ସଂଖ୍ୟାରେ ଲୋକେ ଜଗନ୍ନାଥ ସଡ଼କରେ ଯାଉଥିବାର ଦାସିଆ ଦେଖିଲେ । ସେ ମଧ୍ୟ ଜଗନ୍ନାଥଙ୍କ ଦର୍ଶନପାଇଁ ଯାତ୍ରୀମାନଙ୍କ ସହିତ ପୁରୀ ଗଲେ । ରଥଯାତ୍ରା ବେଳେ ଜଗନ୍ନାଥଙ୍କୁ ଦେଖି ସେ ତନ୍ମୟ ହୋଇଗଲେ । ଦେହରେ ରୋମାଞ୍ଚ ସୃଷ୍ଟି ହେଲା । ଆଖିରୁ ଧାର ଧାର ଲୁହ ବହିଗଲା । ସେ ଜଗନ୍ନାଥଙ୍କୁ ନିଜର ଦୁଃଖ ଜଣାଇ ଗ୍ରାମକୁ ଫେରିଆସିଲେ ।

ପୁରୀରୁ ଫେରିବାପରେ ଗୃହରେ ହବିଷ୍ୟାନ୍ନ ଖାଇବାର ବିଧି ଥିଲା । ତେଣୁ ଦାସିଆଙ୍କ ପତ୍ନୀ ନୂଆ ହାଣ୍ଡିରେ ଅରୁଆଚାଉଳ ରାନ୍ଧିଦେଲେ । ପୂର୍ଣ୍ଣ ହାଣ୍ଡି ଉପରେ ପେଜର ଗୋଟିଏ ସର ପଡ଼ିଥାଏ । ତା' ଉପରେ ମେଞ୍ଚାଏ ଶାଗଭଜା

ରଖି ସ୍ୱାମୀଙ୍କୁ ଖାଇବାକୁ ଦେଲେ । ମାତ୍ର ଭକ୍ତ ଦାସିଆଙ୍କୁ ତାହା ଜଗନ୍ନାଥଙ୍କ କଳା କଳା ଚକ୍ଷୁ ବୋଲି ଜଣାଗଲା । ତାଙ୍କର ମନେହେଲା ସତେ ଯେପରି ଜଗନ୍ନାଥ ତାଙ୍କ ଆଗରେ ଉପସ୍ଥିତ ଅଛନ୍ତି । ସେ ଏହି ଅଲୌକିକ ଦୃଶ୍ୟରେ ଆତ୍ମହରା ହୋଇଗଲେ । କରତାଳି ଦେଇ ସେ ପ୍ରଭୁଙ୍କ ମହିମା ଗାନ କରିବାକୁ ଲାଗିଲେ । ରାମ ଦାସ ଅତି ସୁନ୍ଦର ଭାବରେ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଏହା ବର୍ଣ୍ଣନା କରିଛନ୍ତି –

"ସୁରଙ୍ଗ ଦିଶେ ହାଣ୍ଡିଧାର । ମଧ୍ୟେ ଧବଳ ପେଜ ସର ॥
ତା' ମଧେ ଶାଗ ଦିଶେ କଳା । ବୋଲେ ଏ ଶ୍ୱେତ ପଦ୍ମ ଡୋଳା ॥
ନେତ୍ର ଯୁଗଲୁ ଲୁହ ଗଳି । ଟାଙ୍କୋରି ଗଲା ରୋମାବଳୀ ॥
ଉଠିଲା ବାଇ ପ୍ରାୟ ହୋଇ । କାହାକୁ ଅବା କିସ କହି ॥"

ଦାସିଆଙ୍କର ଏ ଅବସ୍ଥା ଦେଖି ତାଙ୍କର ପତ୍ନୀ କାନ୍ଦବୋବାଳି ପକାଇଲେ । ସେ ପାଗଳ ହୋଇଯାଇଛନ୍ତି ବୋଲି ତାଙ୍କର ଧାରଣା ହେଲା । ମାତ୍ର ଦାସିଆଙ୍କର ଏଥିପ୍ରତି ଭ୍ରୂକ୍ଷେପ ନ ଥିଲା । ସେ ପ୍ରଭୁଙ୍କ ଯଶ ଓ ମହିମାଗାନ କରିବାରେ ଲାଗିଲେ । ପ୍ରଭୁଙ୍କ ସହିତ ନିଜକୁ ମିଶାଇଦେବାକୁ ସେ ବ୍ୟଗ୍ର ହେଲେ । ପ୍ରଭୁଙ୍କୁ ଦର୍ଶନ କରିବାକୁ ତାଙ୍କ ପ୍ରାଣ ଉଚ୍ଚାଟ ହେଲା ।

ଭକ୍ତର ଡାକ ମଧ ଭଗବାନ୍ ଶୁଣିଲେ । କଥିତଅଛି ଦାସିଆ ଶୋଇଥିବା ବେଳେ ଜଗନ୍ନାଥ ଆସି ତା'ର ମୁଣ୍ଡ ପାଖରେ ବସିଲେ । ଶୋଇଥିବା ଅବସ୍ଥାରେ ଠାକୁରଙ୍କୁ ଦେଖି ସେ ବିହ୍ୱଳ ହୋଇପଡ଼ିଲେ । ତାଙ୍କର ଯେଉଁ ଅପୂର୍ବ ଅନୁଭୂତି ହେଲା, ତାହା 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ବର୍ଣ୍ଣିତ ଅଛି ।

"ରଥେ ମୁଁ ଦେଖିଥିଲି ଯାହା । ସାକ୍ଷାତେ ଦେଖିଲଇଁ ତାହା" ॥

ନିଜକୁ ଦୀନ ହୀନ ବୋଲି କହି ପ୍ରଭୁଙ୍କୁ ଗୃହକୁ ବିଜେ କରିବାକୁ ନିବେଦନ କଲେ –

"ମୁଁ ଯେ ଅଜ୍ଞାନୀ ହୀନ ଜାତି । ନାହିଁ ମୋ ଭକ୍ତି କ୍ରିୟାଗତି ॥
ବିଜୟ କର ମୋର ପୁର । ହେ ପ୍ରଭୁ ବ୍ରହ୍ମାଣ୍ଡ ଠାକୁର ॥"

ପ୍ରଭୁ ବିଜେ ହୋଇଛନ୍ତି । ପୁଣି ବର ମାଗିବାପାଇଁ ଦାସିଆକୁ କହିଛନ୍ତି । ମାତ୍ର ଭକ୍ତ ଆତ୍ମହରା ହୋଇପଡ଼ିଛନ୍ତି । କୌଣସି ପାର୍ଥିବ ପଦାର୍ଥ ପ୍ରତି ତାଙ୍କର ଆସକ୍ତି ନାହିଁ । ଯେତେବେଳେ ଚାହିଁବେ ସେତେବେଳେ ପ୍ରଭୁଙ୍କୁ ଦର୍ଶନ କରିବେ – ଏହା ଥିଲା ତାଙ୍କର ଆତୁର ନିବେଦନ ।

"ଯେବେ ମୁଁ ମନରେ ଭାବିବି । ତୁମ୍ଭ ଦର୍ଶନ ପାଉଥିବି ॥
ଏ ବର ମୋତେ ଆଜ୍ଞା ହେଉ । ଅଧିକ ଲୋଡ଼ା ନାହିଁ ଆଉ ॥"

ପ୍ରଭୁ ଏଥିରେ ସମ୍ମତି ଦେଇଛନ୍ତି । କେବଳ ସେତିକି ନୁହେଁ, ଭକ୍ତ ଦାସିଆ ଯେଉଁ ଦ୍ରବ୍ୟ ଦେବ ତାହାକୁ ସେ ଆନନ୍ଦରେ ଗ୍ରହଣ କରିବେ ବୋଲି କହି ଅନ୍ତର୍ଦ୍ଧାନ ହୋଇଗଲେ ।

## ସତ୍ୟାସତ୍ୟ ନିରୂପଣ

ପରଦିନ ପ୍ରଭୁଙ୍କ କଥାର ସତ୍ୟାସତ୍ୟ ଜାଣିବାକୁ ଦାସିଆ ବ୍ୟଗ୍ର ହୋଇପଡ଼ିଲେ । ବହୁଦିନ ତଳୁ ସେ ଗୋଟିଏ ଲୁଗା ବୁଣି ରଖିଥିଲେ । ତାହାକୁ ଧରି ଜନୈକ ବ୍ରାହ୍ମଣ ନିକଟକୁ ଗଲେ ଓ ଲୁଗାଟି ବଦଳରେ ଗୋଟିଏ ନଡ଼ିଆ ଆଣିଲେ । ପୁରୀ ଯାଉଥିବା ଜଣେ ଯାତ୍ରୀଙ୍କୁ ଭେଟି ତାଙ୍କ ହସ୍ତରେ ନଡ଼ିଆଟି ଦେଲେ । ଗରୁଡ଼ସ୍ତମ୍ଭ ପଛରେ ଥାଇ ଜଗନ୍ନାଥଙ୍କୁ ବଢ଼ାଇ ଦେବାକୁ କହିଲେ । ଯଦି ପ୍ରଭୁ ଏହାକୁ ହାତ ବଢ଼ାଇ ଗ୍ରହଣ ନ କରନ୍ତି, ତେବେ ନଡ଼ିଆକୁ ଫେରସ୍ତ ଆଣିବାକୁ ମଧ କହିଲେ ।

ଯାତ୍ରୀଜଣକ ପ୍ରଥମେ ବିସ୍ମିତ ହୋଇପଡ଼ିଲେ । ଶେଷରେ ପ୍ରଭୁଙ୍କ ନିକଟରେ ଲାଗି କରିବାକୁ ନଡ଼ିଆକୁ ନେଲେ । ପୁରୀରେ ଜଗନ୍ନାଥଙ୍କୁ ଦର୍ଶନ କଲେ । ଦାସିଆଙ୍କ କହିବା ଅନୁଯାୟୀ ଗରୁଡ଼ସ୍ତମ୍ଭ ପଛରେ ରହି ପ୍ରଭୁଙ୍କ ଉଦ୍ଦେଶ୍ୟରେ ନଡ଼ିଆ ବଢ଼ାଇଲେ । ସତକୁ ସତ ନଡ଼ିଆ ତାଙ୍କ ହସ୍ତରୁ ଅଦୃଶ୍ୟ ହୋଇଗଲା । ସେ ଦାସିଆଙ୍କ ଅଦ୍ଭୁତ ଭକ୍ତି ଭାବରେ ଅଭିଭୂତ ହୋଇପଡ଼ିଲେ । ଭକ୍ତ ଦାସିଆଙ୍କ ନଡ଼ିଆ ଭୋଗ କଥା ମଧ ସବୁଆଡ଼େ ପ୍ରଚାର ହୋଇଗଲା ।

## ପାଚିଲା ଆମ୍ବ ଭୋଗ

ଆଉ ଥରେ ଭକ୍ତ ଦାସିଆ ଶ୍ରୀକ୍ଷେତ୍ରକୁ ଯିବାପାଇଁ ମନ ବଳାଇଲେ । ମାତ୍ର ଖାଲି ହାତରେ ସେ ଯିବେ ବା କିପରି ? ସେ ତେଣୁ ଗ୍ରାମବାସୀଙ୍କଠାରୁ ଆମ୍ବ ଦଶ ପୁଞ୍ଜା ସଂଗ୍ରହ କରି ପୁରୀ ଗଲେ । ଶ୍ରୀମନ୍ଦିର ଦ୍ୱାରରେ ସେ ଆମ୍ବସହ ଉପସ୍ଥିତ ହେଲେ । ଆମ୍ବ ଦେଖି ମନ୍ଦିରର ପଣ୍ଡାମାନେ ଲୋଭାନ୍ୱିତ ହୋଇପଡ଼ିଲେ । ସେମାନଙ୍କ ମଧରେ ଏଥିପାଇଁ କଳିତକରାଳ ମଧ ଆରମ୍ଭ ହୋଇଗଲା । ମାତ୍ର ଦାସିଆ ପଣ୍ଡାମାନଙ୍କୁ ନ ଦେଇ ନିଜ ହାତରେ ଧରି ମହାପ୍ରଭୁଙ୍କୁ ସମର୍ପଣ କଲେ । ପ୍ରଭୁ ମଧ ସଙ୍ଗେ ସଙ୍ଗେ ତାହା ଗ୍ରହଣ କଲେ । ଚାହୁଁ ଚାହୁଁ ହାତରୁ ଆମ୍ବଗୁଡ଼ିକ ଅଦୃଶ୍ୟ ହୋଇଗଲା । ପଣ୍ଡାମାନେ ଅବାକ୍ ହୋଇଗଲେ । ଏହା ଦାସିଆଙ୍କ ଏକ ଭୋଜବାଜି ଭାବି ରତ୍ନ ସିଂହାସନ ଆଡ଼କୁ ଧାଇଁଲେ । ମାତ୍ର ବିସ୍ମୟ ପରେ ବିସ୍ମୟ । ରତ୍ନ ସିଂହାସନ ନିକଟରେ ଆମ୍ବଚୋପାଗୁଡ଼ିକ ପଡ଼ିଥିବାର ଦେଖିଲେ । ଦାସିଆଙ୍କ ଅପୂର୍ବ ଭକ୍ତିର ଚାକ୍ଷୁଷ ପ୍ରମାଣ ପାଇ ଭକ୍ତପ୍ରବରଙ୍କ ଗଳାରେ ଚକାଡୋଳାଙ୍କ

ଧଣ୍ଡାମାଳ ପକାଇ ଆଦର-ଅଭ୍ୟର୍ଥନା କଲେ । ଦାସିଆ ମଧ୍ୟ ସ୍ୱଭାବସୁଲଭ ଢଙ୍ଗରେ ନତଜାନୁ ହୋଇ ପ୍ରଣିପାତ ହେଲେ ଓ ଠାକୁରଙ୍କ ଗୁଣଗାନ କରିବାକୁ ଲାଗିଲେ । 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ଏହାର ବର୍ଣ୍ଣନା ଅଛି

''ଅନେକ ଦଣ୍ଡବତ କରି । ବୋଲଇ ମୁଁ ଛାର ବାଉରି ।।
ମୋଠାରେ ଏତେ କୃପା କଲ । ତେଣୁ ମୋହର ଭାଗ୍ୟ ଭଲ ।।''

ଭକ୍ତର ଇଚ୍ଛା ଏତିକିରେ ଶେଷ ହୋଇ ନାହିଁ । ନୀଳଚକ୍ରରେ ମତ୍ସ୍ୟ, କୂର୍ମ ପ୍ରଭୃତି ଦଶାବତାର ଦୃଶ୍ୟ ଦେଖିବାପାଇଁ ପୁଣି ପ୍ରାର୍ଥନା କରିଛନ୍ତି । ମହାପ୍ରଭୁ ମଧ୍ୟ ଭକ୍ତର ମନୋବାଞ୍ଛା ପୂର୍ଣ୍ଣ କରିଛନ୍ତି । ତାହା ମଧ୍ୟ 'ଦାର୍ଢ୍ୟତାଭକ୍ତି ରସାମୃତ'ରେ ବର୍ଣ୍ଣିତ ଅଛି, ଯଥା –

''ଏମନ୍ତ ବିଚାରନ୍ତେ ଚିତ୍ତେ । ତାହା ଜାଣିଲେ ଜଗନ୍ନାଥେ ।।
ନୀଳ ଚକ୍ରରେ ବିଜେ କରି । ଯେବଣ ବିଧି ରୂପ ଧରି ।।
ମତ୍ସ୍ୟ କଲ୍କି ରୂପ ଯାଏ । ଦର୍ଶନ କଲେ ଦେବ ରାୟେ ।।''

ଚର୍ମଡୋଳାରେ ଏ ଅଲୌକିକ ଦୃଶ୍ୟ ଦେଖି ଦାସିଆ ନିଜକୁ ଭାଗ୍ୟବାନ୍ ମନେ କରିଛନ୍ତି । ଭବସାଗରରୁ ନିସ୍ତାର ପାଇଲେ ବୋଲି ବ୍ୟକ୍ତ କରିଛନ୍ତି –

''ବୋଲଇ ନିସ୍ତରିଲି ମୁହିଁ । ତୋ କୃପା ଆହାଲାଦ ପାଇ ।।''

## ପଞ୍ଚସଖାଙ୍କ ପରୀକ୍ଷା

ଭକ୍ତ ଦାସିଆଙ୍କ ମହିମା ଶ୍ରୀକ୍ଷେତ୍ର ଓ ନିକଟବର୍ତ୍ତୀ ଅଞ୍ଚଳକୁ ବ୍ୟାପିଗଲା । ବହୁ ଭକ୍ତ ତାଙ୍କ ପାଖକୁ ଆସିଲେ । ସେ ସମୟରେ ଜଗନ୍ନାଥ ଦାସ, ବଳରାମ ଦାସ, ଅଚ୍ୟୁତ ଦାସ ପ୍ରଭୃତି ମହାପୁରୁଷମାନେ ନିଜ ନିଜ ଗ୍ରନ୍ଥମାନ ରଚନା କରି ଖ୍ୟାତି ଅର୍ଜନ କରିଥିଲେ । ସେମାନଙ୍କର ଯଶକୀର୍ତ୍ତି ସବୁଆଡ଼େ ପ୍ରଚାରିତ ହେଉଥିଲା । ସେମାନେ ଦାସିଆଙ୍କ ଭକ୍ତିଭାବ ପରୀକ୍ଷା କରିବାକୁ ଚାହିଁଲେ ।

ଏକଦା ଦାସିଆ ବାଙ୍କିମୁହାଣଠାରେ ଜଗନ୍ନାଥ ଦାସଙ୍କୁ ଦର୍ଶନ କରି ଫେରୁଥିବା ବେଳେ ବଡ଼ଦାଣ୍ଡରେ ବଳରାମ ଦାସଙ୍କ ସହ ସାକ୍ଷାତ ହେଲା । ସେ ତାଙ୍କ (ଦାସିଆଙ୍କ) ମଠକୁ ଯାଇ ଭକ୍ତି ପରୀକ୍ଷା କରିବାପାଇଁ ପ୍ରସ୍ତାବ ଦେଲେ । ଦାସିଆ ଏଥିରେ ବିବ୍ରତ ହୋଇପଡ଼ି ନ ଥିଲେ । ସେ ଥିଲେ ପ୍ରଭୁଙ୍କ ଅନନ୍ୟ ଭକ୍ତ । ପ୍ରଭୁଙ୍କ କରୁଣାର ଯେ ଅଧିକାରୀ, ସେ ଇତର ଜନକୁ ଭୟ ବା କରନ୍ତେ କାହିଁକି ? ମନେ ମନେ ପ୍ରଭୁଙ୍କୁ ସ୍ମରଣ କଲେ –

''ନମସ୍ତେ ବାସୁଦେବାୟ । ନମସ୍ତେ ମୀନ ରୂପ ।।
ନମସ୍ତେ କୂର୍ମ ରୂପ । ବରାହ ନୃସିଂହ ସ୍ୱରୂପ ।।''

ଭକ୍ତ ଡାକରେ ପ୍ରଭୁ ଜଗନ୍ନାଥ ଥୟ ଧରି ରହିବେ ବା କିପରି ? ସେ ସଙ୍ଗେ ସଙ୍ଗେ ଭକ୍ତଙ୍କ ଆଗରେ ଉପସ୍ଥିତ ହେଲେ ଓ ତାଙ୍କୁ ଡାକିବାର କାରଣ ପଚାରିଲେ । ଭକ୍ତ ଦାସିଆ ଅତି ବିନୀତ ଭାବେ ଯାହା ଉତ୍ତର ଦେଲେ ତା'ର ସାରମର୍ମ ହେଲା –

ପଞ୍ଚସଖା ତାଙ୍କ ନିକଟକୁ ଆସିବେ । ମାତ୍ର ସେ ତ ହେଉଛନ୍ତି ଅଧମ, ମୂର୍ଖ । ସେମାନଙ୍କର ଜ୍ଞାନ ଓ ପାଣ୍ଡିତ୍ୟ ଅସୀମ । ସେମାନଙ୍କ ପ୍ରଶ୍ନର ଉତ୍ତର ଦେବା ସମ୍ଭବ ନୁହେଁ । ତାଙ୍କର ତେଣୁ ସାହାଯ୍ୟ ଆବଶ୍ୟକ ।

ଭଗବାନ୍ ତ ଭକ୍ତ ପାଖେ ସବୁବେଳେ ବନ୍ଧା । ସେ ଦାସିଆଙ୍କୁ ପଞ୍ଚସଖାଙ୍କ ଆଗମନର ଉଦ୍ଦେଶ୍ୟ ଜଣାଇଲେ । ସ୍ୱୟଂ ସରସ୍ୱତୀ ସାହା ହୋଇଥିବାରୁ ସେମାନେ ତାଙ୍କୁ (ଦାସିଆଙ୍କୁ) ଶାସ୍ତ୍ରର ଗୂଢ଼ତତ୍ତ୍ୱମାନ ପଚାରିବେ । କିଏ କେଉଁ ପ୍ରଶ୍ନ ପଚାରିବେ ସେ ବିଷୟରେ ମଧ୍ୟ ଜଣାଇଲେ –

''ଶିଶୁ ଅନନ୍ତ ପଚାରିବେ । ତୁମ୍ଭଙ୍କୁ ଅନାଦି ସୂର୍ଯ୍ୟ ବିଚାର ।।
ଯଶୋବନ୍ତ ମହାଦେବ ତୋତେ । ରାଧା ଅର୍ଦ୍ଧଅଙ୍ଗ ପଚାରିବେ ।।''

କେବଳ ସେତିକି ନୁହେଁ, ନୀଳଚକ୍ରରେ ତାଙ୍କୁ (ଜଗନ୍ନାଥ) ଲୁଚାଇଦେଇ ତାଙ୍କର ବର୍ତ୍ତମାନ ସ୍ଥିତି ସମ୍ପର୍କରେ ପ୍ରଶ୍ନ କରିବେ ବୋଲି କହି ପ୍ରଭୁ ଅନ୍ତର୍ଦ୍ଧାନ ହେଲେ ।

ପରଦିନ ପ୍ରଭାତରେ ଜଗନ୍ନାଥ, ବଳରାମ, ଅଚ୍ୟୁତ, ଯଶୋବନ୍ତ ଓ ଅନନ୍ତ ପ୍ରଭୃତି ପଞ୍ଚସଖା ଦାସିଆଙ୍କ ଗୃହରେ ଉପସ୍ଥିତ ହେଲେ । ଦାସିଆ ସେମାନଙ୍କର ଆଦର ଅଭ୍ୟର୍ଥନା କଲେ । ବଳରାମ ଦାସଙ୍କୁ ପୁଷ୍କରିଣୀରେ ଦଶ ଅବତାର ଦୃଶ୍ୟ ହେଲା । ଏହାପରେ ଦାସିଆଙ୍କୁ ପଞ୍ଚସଖାଗଣ ଶାସ୍ତ୍ରର ତତ୍ତ୍ୱମାନ ପଚାରିଲେ । ଦାସିଆ ମଧ୍ୟ ଜଗନ୍ନାଥଙ୍କ ଅପାର କରୁଣାରୁ ସବୁ ପ୍ରଶ୍ନର ଉତ୍ତର ଦେଲେ । ଶେଷ ପ୍ରଶ୍ନ ସେମାନଙ୍କର ଥିଲା –

''ପ୍ରଭୁ ଜଗନ୍ନାଥ ବର୍ତ୍ତମାନ କେଉଁଠି ?''

ଦାସିଆଙ୍କ କଣ୍ଠରେ ପ୍ରଭୁ ଉତ୍ତର ଦେଲେ – ''ତୁମ୍ଭେମାନେ ମନ୍ତ୍ରଦ୍ୱାରା ପ୍ରଭୁଙ୍କୁ ନୀଳଚକ୍ରରେ ବସାଇଛ । ରତ୍ନ ସିଂହାସନ ବର୍ତ୍ତମାନ ଖାଲି ପଡ଼ିଛି । ପ୍ରଭୁଙ୍କ ଶ୍ରୀଅଙ୍ଗରୁ ଶ୍ରମ ଝାଳ ଝରିପଡୁଛି ।''

ପଞ୍ଚସଖାଗଣ ଦାସିଆଙ୍କ ଅପୂର୍ବ ଭକ୍ତିର ପରିଚୟ ପାଇ ଅବାକ୍ ହୋଇଗଲେ । ତାଙ୍କୁ ଜଗନ୍ନାଥଙ୍କ ଶ୍ରେଷ୍ଠ ଭକ୍ତଭାବେ ସ୍ୱୀକାର କଲେ । ଅତିବଡ଼ୀ ଜଗନ୍ନାଥ ଦାସ ମଧ୍ୟ ତାଙ୍କୁ ନିଜର ଶିଷ୍ୟ ଭାବେ ଗ୍ରହଣ କରି ରାଧା ପ୍ରେମ, କୃପା ଓ ଭକ୍ତି ତତ୍ତ୍ୱ ଶିକ୍ଷା ଦେଲେ । ଭକ୍ତ ଦାସିଆ ତାଙ୍କ ରଚିତ ଭକ୍ତିମାଳିକାର ପ୍ରଥମ ଅଧ୍ୟାୟରେ ଏହି ବିଷୟଟି ଉଲ୍ଲେଖ କରିଛନ୍ତି ।

ଦାସିଆ ବାଉରିକୁଳରେ ଜନ୍ମ ହୋଇଥିଲେ ମଧ୍ୟ ଜଗନ୍ନାଥଙ୍କ ସେବାରେ ମଗ୍ନ ରହିଥିଲେ । ଏପରିକି ତାଙ୍କ ସଙ୍ଗେ ପ୍ରଭୁ କଥାବାର୍ତ୍ତା କରୁଥିବା ପରି ତାଙ୍କୁ ବୋଧ ହେଉଥିଲା । ସେ ଅନ୍ତଃଚକ୍ଷୁରେ ପ୍ରଭୁଙ୍କ ସାନିଧ୍ୟ ଯେ ପାଉଥିଲେ, ଏହା ଅତି ସ୍ପଷ୍ଟ ।

ଦାସିଆ ଭକ୍ତମାନଙ୍କ ପରି ସରଳ ଓ ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ନିଜକୁ ସେ ଦୀନହୀନ ମନେ କରୁଥିଲେ । ଭକ୍ତିର ବିଭିନ୍ନ ସୋପାନ ଅତିକ୍ରମ କଲାପରେ ଭକ୍ତ ତାଦାତ୍ମ୍ୟ ଅବସ୍ଥାରେ ପହଞ୍ଚେ । ତାହାର ବାହ୍ୟ ଜ୍ଞାନ ଲୋପ ହୁଏ । ସେ ସବୁଥିରେ ଈଶ୍ୱରଙ୍କ ସତ୍ତା ଅନୁଭବ କରେ । ତେଣୁ ଦାସିଆଙ୍କ କୁଟୀରରେ ଜଗନ୍ନାଥ ମହାପ୍ରଭୁଙ୍କ ପ୍ରବେଶ ବା ତାଙ୍କ ସହିତ ଆଳାପ ସେହିଭଳି 'ତାଦାତ୍ମ୍ୟ ଭକ୍ତିର' ପ୍ରକୃଷ୍ଟ ଉଦାହରଣ ବୋଲି ଧରା ଯାଇପାରେ ।

## ପୂର୍ବଜନ୍ମ ସ୍ମରଣ

ଭକ୍ତମାନେ ତାଙ୍କର ଅଲୌକିକ ଶକ୍ତି ବଳରେ ପୂର୍ବଜନ୍ମ କଥା ସ୍ମରଣ କରି ପାରୁଥିଲେ । ସାରଳାଙ୍କଠାରୁ ଆରମ୍ଭ କରି ପଞ୍ଚସଖା ଯୁଗ ପର୍ଯ୍ୟନ୍ତ ସମସ୍ତ ଭକ୍ତମାନେ ବିଭିନ୍ନ ସମୟରେ କେଉଁଠାରେ କି ଭାବରେ ଜନ୍ମ ହୋଇଥିଲେ ତାହା ବର୍ଣ୍ଣନା କରିଛନ୍ତି । ଭକ୍ତ ଦାସିଆ ମଧ୍ୟ ସେହିପରି ତାଙ୍କ ପୂର୍ବ ଜନ୍ମ କଥା ଜାଣିଥିଲେ । ଭକ୍ତିମାଳିକା ଗ୍ରନ୍ଥର ଦ୍ୱିତୀୟ ଅଧ୍ୟାୟରେ ବର୍ଣ୍ଣିତ ଅଛି ଯେ ପ୍ରଭୁ ଜଗନ୍ନାଥ ଦାସିଆଙ୍କୁ ତାଙ୍କର ସାତ ଜନ୍ମ ବୃତ୍ତାନ୍ତ କହିଛନ୍ତି । ପ୍ରଥମ ଚାରି ଜନ୍ମ ପର୍ଯ୍ୟନ୍ତ ସେ ଶୂଦ୍ର ଥିଲେ । ଦ୍ୱିତୀୟ ପର୍ଯ୍ୟାୟରେ ସେ ବ୍ରାହ୍ମଣ ଘରେ ଜନ୍ମ ହୋଇଥିଲେ, ମାତ୍ର ଅନୀତି ଯୋଗୁଁ ପୁଣି ବାଉରିକୁଳରେ ଜନ୍ମ ହୋଇଛନ୍ତି, ଯଥା –

"ବ୍ରାହ୍ମଣଘରେ ତୁ ଜନ୍ମ ହୋଇଥିଲୁ ତିନି ଜନ୍ମ ପରିଯନ୍ତେ ।
ପୂଜାରେ ତୁମ୍ଭର ଅନୀତି ହୋଇଲା ପାପ ଲାଗିଲା ଯୁଗତେ ।
ତେଣୁ କରି ତୁମ୍ଭେ ବାଉରି ହୋଇଲ ହୀନକର୍ମ କଲ ଯେତେ ।"

ପ୍ରଭୁ ମଧ୍ୟ ପଞ୍ଚସଖା ବିଶେଷତଃ, ଜଗନ୍ନାଥ ଦାସଙ୍କ ଜନ୍ମ ବିବରଣୀ ପ୍ରଦାନ କରିଛନ୍ତି । ସେ (ଜଗନ୍ନାଥ ଦାସ) ଅନାମ ପଣ୍ଡା ନାମକ ବ୍ରାହ୍ମଣର ପୁତ୍ରଭାବେ ଜାତ ହେଲେହେଁ, ରାଧାଙ୍କ ଅଂଶରେ ତାଙ୍କର ଶରୀର ଗଢ଼ା । ସେ ସ୍ତ୍ରୀ ନୁହନ୍ତି ବା ପୁରୁଷ ନୁହନ୍ତି । ପ୍ରଭୁ ମଧ୍ୟ ଦାସିଆଙ୍କୁ ଚଉଷଠି ମନ୍ତ୍ରର ବୀଜ ଦେଇଛନ୍ତି ।

## ଶ୍ରୀମନ୍ଦିରରେ ଚହଳ

ପ୍ରଭୁ ଜଗନ୍ନାଥ ଭକ୍ତ ଦାସିଆଙ୍କ ଗୃହରେ ବହୁ ସମୟରେ ଉପସ୍ଥିତ ରହିବାରୁ ଶ୍ରୀମନ୍ଦିରରେ ନାନା ଅବ୍ୟବସ୍ଥା ଦେଖାଦେଲା । ଭୋଗ ସମୟରେ ଜଗନ୍ନାଥ ପଣ୍ଡାଙ୍କୁ ଦୃଶ୍ୟ ଦେଲେ ନାହିଁ । କବି ତାହା ପ୍ରକାଶ କରିଛନ୍ତି –

"ଷାଠିଏ ପୌଟି ଭୋଗମାନ । ଦଇତାପତି କଲେ ଚୂର୍ଣ୍ଣ ।
ପଣ୍ଡା ବସିଲା ଚଳୁ ଧରି । ମନ୍ତ୍ର ସୁମରି ସ୍ୱାହା କରି ।
ଚଳୁ ଟୋକିଣ ଧଇଲା । ପ୍ରଭୁଙ୍କ ଦର୍ଶନ ନୋହିଲା ।।"

ସାରା ମନ୍ଦିରରେ ହୁଳସ୍ଥୁଳ ପଡ଼ିଗଲା । ମହାରାଜା ପ୍ରତାପରୁଦ୍ରଦେବଙ୍କ କର୍ଣ୍ଣରେ ମଧ ଏହା ପଡ଼ିଲା । ସେ ପଣ୍ଡା-ପଡ଼ିହାରୀମାନଙ୍କୁ କାରାଗାରରେ ନିକ୍ଷେପ କଲେ । ସେମାନଙ୍କର ବିଚାର ମଧ ହେବ ବୋଲି ଆଦେଶ ଦେଲେ । ଶରଣବତ୍ସଳ ହରି ପଣ୍ଡାମାନଙ୍କ ଆର୍ତ୍ତ ନିବେଦନ ଶୁଣିଲେ । ସେହି ରାତ୍ରିରେ ରାଜାଙ୍କୁ ସ୍ୱପ୍ନରେ ସମସ୍ତ ବୃତ୍ତାନ୍ତ ଜଣାଇଲେ –

"ବାଉରି କୁଳେ ତା'ର ଜନ୍ମ
ବାଲିଗାଁ ଦାସ ତା'ର ନାମ ।।
ତା'ର ମନରେ ଥିଲି ମୁହିଁ ।
ଭଗତ ଭାବେ ବନ୍ଦୀ ହୋଇ ।।"

ମହାରାଜା ପ୍ରତାପରୁଦ୍ରଦେବ ଏହା ଶୁଣି ସେବକମାନଙ୍କୁ ମୁକ୍ତି ଦେଲେ ।

## ଭକ୍ତଙ୍କ ରଚନା ପରୀକ୍ଷା

ଦାସିଆ ବାଉରିକୁଳରେ ଜନ୍ମ ହୋଇଥିଲେ । ସେ ସମୟରେ ସେହି କୁଳରେ ଜନ୍ମ ହୋଇ ଶିକ୍ଷା ଲାଭ କରିବା ସମ୍ଭବ ନ ଥିଲା । ଗ୍ରନ୍ଥ ରଚନା କରିପାରିବା ଭଳି ଜ୍ଞାନର ଅଧିକାରୀ ହେବା ଆହୁରି ଅସମ୍ଭବ ଥିଲା । କିନ୍ତୁ ପ୍ରଭୁଙ୍କ କୃପା ବଳରେ ଅସାଧ ସାଧନ କରିହୁଏ । ସମ୍ଭବତଃ, ଜଗନ୍ନାଥଙ୍କ ମହିମାରୁ ସେ ଦିବ୍ୟଜ୍ଞାନର ଅଧିକାରୀ ହୋଇଥିଲେ । ଜନ୍ମରୁ ମୂର୍ଖ ସନ୍ଥ କବିର ବହୁ ସଂଖ୍ୟାରେ ବ୍ରହ୍ମଜ୍ଞାନମୂଳକ ଦୋହା ରଚନା କରି ଅମର ହୋଇଛନ୍ତି । ସେହିପରି ବୈଷ୍ଣବକବି ସୁରଦାସ ଜନ୍ମରୁ ଅନ୍ଧ ଥିଲେ ମଧ ଅସାଧାରଣ କବିତ୍ୱ ଶକ୍ତିର ଅଧିକାରୀ ହୋଇଥିଲେ । ସୁତରାଂ ବିଭୁ କୃପା ବଳରେ ଅକ୍ଷରଜ୍ଞାନଶୂନ୍ୟ ଦାସିଆ ଯେ ଅସାଧାରଣ ପଣ୍ଡିତ ହେଲେ, ଏଥିରେ ବିଚିତ୍ରତା କିଛି ନାହିଁ । ତାଙ୍କର କବିତ୍ୱ ଶକ୍ତି ଲାଭ ବିଷୟ ତାଙ୍କ ରଚିତ ଭାଗବତ ବା ଆଗତ ଭବିଷ୍ୟତରେ ବର୍ଣ୍ଣିତ ଅଛି ।

ଦିନେ ଦାସିଆ କୌଳିକ କର୍ମରେ ବ୍ୟସ୍ତ ଥିଲେ । ଏହି ସମୟରେ ପ୍ରଭୁ ଜଗନ୍ନାଥ ବ୍ରାହ୍ମଣ ରୂପ ଧାରଣ କରି ଦାସିଆଙ୍କ ଦ୍ୱାରଦେଶରେ ଉପସ୍ଥିତ ହେଲେ ଓ ତାଙ୍କ ନାମଧରି ଡାକିଲେ । ତନ୍ତର ଠୁକ୍ ଠୁକ୍ ଶବ୍ଦରେ ପ୍ରଭୁଙ୍କ ଡାକ ସେ ଶୁଣିପାରି ନ ଥିଲେ । ଦାସିଆଙ୍କ ପାଖରେ ତାଙ୍କର ସ୍ତ୍ରୀ ମଧ ଲୁଣ୍ଡିରୁ ସୂତା ବାହାର କରୁଥିଲେ । କେତେ ସମୟ ପରେ ଦାସିଆ ଡାକ ଶୁଣିପାରି ଲୁଗାବୁଣା

ବନ୍ଦ କରି ଦ୍ୱାରଦେଶକୁ ଗଲେ । ସେଠାରେ ଶଙ୍ଖ-ଚକ୍ରାଦିଥିବା ଅପୂର୍ବ ତେଜସ୍ୱୀ ବ୍ରାହ୍ମଣଙ୍କୁ ଦେଖି ସାଷ୍ଟାଙ୍ଗ ପ୍ରଣିପାତ ହେଲେ । ପ୍ରଭୁ ତାଙ୍କୁ ଉଠାଇଲେ । ଏହା ପର ଘଟଣା ବର୍ଣ୍ଣିତ ଅଛି –

''ପ୍ରଭୁ ବୋଇଲେ ଉଠ ଦାସେ । ଆମ୍ଭେ ଆଇଲୁ ତୁମ୍ଭ ପାଶେ ।''

ପ୍ରଭୁ ମଧ ଭୋଜନ କରିବାକୁ ଅଭିଳାଷ ଜଣାନ୍ତେ, ଦାସିଆ ଚାରି ଗୋଟି ପଇଡ଼ ଆଣିଦେଲେ । ପ୍ରଭୁ ନିଜେ ଆଣିଥିବା ଲେଖନୀ ଧରି ଲେଖିବା ଆରମ୍ଭ କଲେ । ଗ୍ରନ୍ଥର ନାମ ହେଲା ଆଗତ ଭବିଷ୍ୟ ।

## ଆଗତ ଭବିଷ୍ୟ

ଆରମ୍ଭରେ ଭକ୍ତ ଜଗନ୍ନାଥଙ୍କର ସ୍ତୁତି କରିଛନ୍ତି । ଏଥିରେ ବିଷ୍ଣୁଙ୍କର ଦଶ ଅବତାରର ବର୍ଣ୍ଣନା ଅଛି । ସେ ଜଗନ୍ନାଥଙ୍କୁ ବିଷ୍ଣୁଙ୍କ ଏକ ଅବତାରଭାବେ ଗ୍ରହଣ କରିଛନ୍ତି । ଦ୍ୱିତୀୟ ଅଧ୍ୟାୟରେ ଓଡ଼ିଶାର ରାଜା କିଏ ହେବେ ତା'ର ବର୍ଣ୍ଣନା କରିଛନ୍ତି । ଅବଶ୍ୟ ଐତିହାସିକ ଧାରାବାହିକତା ଏଥିରେ ନାହିଁ । ଦିଆଯାଇଥିବା କେତେକ ତଥ୍ୟ ମଧ ଭ୍ରମାତ୍ମକ । ତଥାପି କେତେକ ଐତିହାସିକ ଉପାଦାନ ଏଥିରୁ ମିଳେ । କଳା ପାହାଡ଼ର ଅତ୍ୟାଚାର ଓ ଖୋର୍ଦ୍ଧା ରାଜବଂଶର ଇତିହାସ ଏଥିରୁ ମିଳେ । ଭୋଇବଂଶର ଗଜପତି ରାଜା ରାମଚନ୍ଦ୍ରଦେବଙ୍କ ସମୟରେ ମାନସିଂହ ଆସି ଖୋର୍ଦ୍ଧା ଆକ୍ରମଣ କରିବା ଓ ତାଙ୍କୁ ଶେଷରେ ଗଜପତି ରାଜା ଭାବେ ସ୍ୱୀକାର କରିବା ମଧ ବର୍ଣ୍ଣିତ ଅଛି ।

''ହସ୍ତିନା ମାନସିଂହ ଆସି । ଓଡ଼ିଶା ସବୁ ପଣେ ବସି ।
ମାନ ଯେ ସିଂହ ବିଚାରିବ । ରାମଙ୍କୁ ଟୀକା ଦେଇଯିବ ।।''

ପ୍ରଥମ ରାମଚନ୍ଦ୍ରଦେବଙ୍କ ପରେ ତାଙ୍କ ପୁତ୍ର ପୁରୁଷୋତ୍ତମଦେବ ଖୋର୍ଦ୍ଧା ସିଂହାସନରେ ବସିବା କଥା ଏଥିରେ ଉଲ୍ଲେଖ ଅଛି । ସେ ମୁସଲମାନମାନଙ୍କର ଆକ୍ରମଣରେ ମୁକାବିଲା କରିପାରିଥିଲେ । ତାଙ୍କ ପରେ ନରସିଂହଦେବ ସିଂହାସନରେ ବସିଲେ । ମୋଗଲମାନଙ୍କଦ୍ୱାରା ତାଙ୍କର ମୃତ୍ୟୁ ହୋଇଥିବା ବିଷୟ ଏଥିରେ ବର୍ଣ୍ଣିତ ଅଛି ।

''କ୍ଷେତ୍ର ଭିତରେ ରାଜା ଥିବ । ମୁଗୁଲ ମୁଣ୍ଡ କାଟି ଦେବ ।''

ଦିବ୍ୟସିଂହଦେବଙ୍କ ସମୟରେ ମୋଗଲମାନେ ପ୍ରଚଣ୍ଡ ଆକ୍ରମଣ ଚଳାଇଥିବାର ବର୍ଣ୍ଣନା ଏଥିରେ ଅଛି । ତାଙ୍କ ଯୋଗୁଁ ପୁରୀ ମନ୍ଦିରର ବିଗ୍ରହମାନଙ୍କର କୌଣସି କ୍ଷତି ସାଧିତ ହୋଇ ନ ଥିଲା । ରାଜା କୌଶଳରେ ବିଗ୍ରହମାନଙ୍କୁ ଅପସାରଣ କରି ତାଙ୍କ ସ୍ଥାନରେ କାଷ୍ଠବିଗ୍ରହମାନ ବସାଇଥିଲେ । ଏହା ମଧ ଐତିହାସିକ ତଥ୍ୟ ଦ୍ୱାରା ସମର୍ଥିତ । ଦ୍ୱିତୀୟ ରାମଚନ୍ଦ୍ରଦେବ ଯବନକନ୍ୟାର

ପାଣିଗ୍ରହଣ କରି ବିଧର୍ମୀ ହୋଇଥିବା ଓ ଶେଷରେ ରାଜ୍ୟରୁ ବିତାଡ଼ିତ ହେବା ବିଷୟ ଏଥିରେ ବିସ୍ତୃତ ଭାବରେ ବର୍ଣ୍ଣିତ ଅଛି । କବିଙ୍କ ଭାଷାରେ –

"ରାମ ଯେ ଚନ୍ଦ୍ର ହେବ ପୁଣ । ରାଜା ଭକ୍ଷିବ ସୁରାପାନ ।
ରାଜ୍ୟରୁ ଛାଡ଼ି ପଳାଇବ । ପଶ୍ଚିମେ ଗୋପ୍ୟାନ ହୋଇବ ।"

ରାମଚନ୍ଦ୍ରଦେବ ମୋଗଲମାନଙ୍କଦ୍ୱାରା ବିତାଡ଼ିତ ହୋଇ ପଶ୍ଚିମ ଦିଗରେ ଥିବା ଗଡ଼ଜାତ ରାଜ୍ୟରେ ଲୁଚି ରହିବା ମଧ ମାଦଳାପାଞ୍ଜିଦ୍ୱାରା ସମର୍ଥିତ ହୁଏ ।

ତୃତୀୟ ଅଧ୍ୟାୟରେ ଜଗନ୍ନାଥ ମନ୍ଦିର ଉପରେ ମୋଗଲମାନଙ୍କ ଘନ ଘନ ଆକ୍ରମଣର ବିସ୍ତୃତ ବର୍ଣ୍ଣନା ଅଛି । ପଣ୍ଡାମାନେ ଶ୍ରୀଜଗନ୍ନାଥଙ୍କ ବିଗ୍ରହଗୁଡ଼ିକୁ ଚିଲିକା ଅଞ୍ଚଳରେ ଲୁଚାଇ ରଖିଥିଲେ । ଫଳରେ ରଥଯାତ୍ରା ପ୍ରଭୃତି ପାଞ୍ଚ ବର୍ଷ କାଳ ହୋଇ ନ ଥିଲା । ଭକ୍ତକବି ଏହାର ମଧ ଉଲ୍ଲେଖ କରିଛନ୍ତି –

"ଆମ୍ଭେ ଯେ କ୍ଷେତ୍ର ଛାଡ଼ିଯିବୁ,
ଦକ୍ଷିଣେ ଯାଇଣ ଲୁଚିବୁ ।

× × ×

ପାଞ୍ଚ ବରଷ ନୋହେ ଯାତ,
ହୋଇବ କଳି ଯେ ଭାରତ ।"

ଏହା ମଧ 'ମାଦଳାପାଞ୍ଜି' ତଥ୍ୟ ଦ୍ୱାରା ପ୍ରମାଣିତ । ଚତୁର୍ଥ ଅଧ୍ୟାୟରେ ମୋଗଲ ମରହଟ୍ଟା ଯୁଦ୍ଧ ବର୍ଣ୍ଣନା ଅଛି । ପଞ୍ଚମ ଅଧ୍ୟାୟରେ ମୋଗଲମାନଙ୍କୁ ପରାସ୍ତ କରି ମରହଟ୍ଟାମାନେ ଶାସନଭାର ଗ୍ରହଣ କରିବା ବିଷୟ ବର୍ଣ୍ଣିତ ଅଛି । ସେମାନେ ହିନ୍ଦୁ ହୋଇଥିବାରୁ ଜଗନ୍ନାଥ ମନ୍ଦିର ଉପରେ ଆଉ କୌଣସି ଆକ୍ରମଣ କରି ନ ଥିଲେ । ଫଳରେ ଶାନ୍ତି ସ୍ଥାପିତ ହୋଇଥିଲା । ଏହିଠାରେ ଗ୍ରନ୍ଥ ଶେଷ ହୋଇଛି ।

ଏହା ଲୋକପ୍ରିୟ ଛନ୍ଦ ଭାଗବତ ବାଣୀରେ ଓ ନବାକ୍ଷରୀ ବୃତ୍ତରେ ରଚିତ । ଏହାର ଭାଷା ସରଳ ଓ ସାବଲୀଳ । କଥୋପକଥନ ଶୈଳୀରେ ଲେଖା ହୋଇଥିବାରୁ ସମସ୍ତଙ୍କର ବୋଧଗମ୍ୟ ହୋଇପାରିଛି । କବି ଏହାର ନାମ 'ଭାଗବତ' ରଖିଛନ୍ତି ।

**ଭକ୍ତିମାଳିକା**

ଏହା ସମ୍ଭବତଃ କବିଙ୍କ ପରିଣତ ବୟସର ରଚନା । ତେର ଅଧ୍ୟାୟ ବିଶିଷ୍ଟ ଏହି ପୋଥିରେ କବି ଜଟିଳ ତତ୍ତ୍ୱମାନଙ୍କର ବ୍ୟାଖ୍ୟା କରିଛନ୍ତି । ସେ ଅଶିକ୍ଷିତ ଥିଲେ ମଧ ଐଶୀ ଶକ୍ତି ବଳରେ ଏପରି ତାତ୍ତ୍ୱିକ ଆଲୋଚନାପୂର୍ଣ୍ଣ ପୋଥି ଯେ ରଚନା କରିପାରିଥିଲେ, ଏହା ଅତି ସ୍ପଷ୍ଟ ।

ପ୍ରଥମ ଅଧ୍ୟାୟରେ କବି ପଞ୍ଚସଖାଙ୍କ ପରୀକ୍ଷା ବିଷୟର ଉଲ୍ଲେଖ କରିଛନ୍ତି । ଦ୍ୱିତୀୟ ଅଧ୍ୟାୟରେ ଜ୍ଞାନମାର୍ଗର ଗହନତତ୍ତ୍ୱ ବୁଝାଇଛନ୍ତି । ତୃତୀୟ ଓ ଚତୁର୍ଥ ଅଧ୍ୟାୟରେ ଉତ୍କଳର ଭକ୍ତମାନଙ୍କର ନାମ ଓ ଚରିତର ବର୍ଣ୍ଣନା ଅଛି । ପଞ୍ଚମ ଓ ଷଷ୍ଠ ଅଧ୍ୟାୟରେ ବହୁ ଭକ୍ତଙ୍କର ବିବରଣୀ ଦେଇଛନ୍ତି । ସପ୍ତମ ଅଧ୍ୟାୟରେ ଦ୍ୱାପର ଯୁଗର ଷୋଳ ସହସ୍ର ଗୋପୀ କଳି ଯୁଗରେ କେଉଁ କେଉଁ ଭକ୍ତଭାବେ ଜନ୍ମ ଗ୍ରହଣ କରିଛନ୍ତି ତାହା ବର୍ଣ୍ଣନା କରାଯାଇଛି । ଅଷ୍ଟମ ଅଧ୍ୟାୟରେ ତ୍ରେତା ଯୁଗର ସୁଗ୍ରୀବ, ଅଙ୍ଗଦ, ଜାମ୍ବବାନ ପ୍ରଭୃତି ଭକ୍ତମାନେ କଳିଯୁଗରେ କେଉଁଠାରେ ଜନ୍ମଗ୍ରହଣ କରିଛନ୍ତି ତାହାର ଉଲ୍ଲେଖ ଅଛି । ନବମ ଅଧ୍ୟାୟରେ କେତେକ ଭବିଷ୍ୟଦ୍‌ବାଣୀ ଅଛି । ଦଶମ ଅଧ୍ୟାୟରେ ଲୋକଚରିତ୍ରର କିପରି ପରିବର୍ତ୍ତନ ଘଟିବ ତାହାର ସୂଚନା ଦେଇଛନ୍ତି । ଏକାଦଶ ଅଧ୍ୟାୟରେ ଚଉଦ ବ୍ରହ୍ମାଣ୍ଡର ଭକ୍ତବୃନ୍ଦଙ୍କ ବିବରଣୀ ଅଛି । ଦ୍ୱାଦଶ ଓ ତ୍ରୟୋଦଶ ଅଧ୍ୟାୟରେ କବି ନାମଭଜନର ଉତ୍କର୍ଷ ଦର୍ଶାଇଛନ୍ତି । ଶେଷରେ ଭକ୍ତପ୍ରବର ଜଗନ୍ନାଥଙ୍କୁ ସ୍ତୁତି କରିଛନ୍ତି –

''ଜୟ ହେ ଶ୍ରୀ ମଧୁସୂଦନ
ନମସ୍ତେ ଦେବ ନାରାୟଣ ।
ନମସ୍ତେ ଜୟ ଜଗନ୍ନାଥ,
ଭରା ନିବାରେ ତୋର ।''

ଏହିଠାରେ ପୋଥିଟି ଶେଷ ହୋଇଛି । 'ଭକ୍ତିମାଳିକା' ପୋଥିର ଭାଷା ସରଳ ନୁହେଁ । ଏହା ଅତି ପାଣ୍ଡିତ୍ୟପୂର୍ଣ୍ଣ ହୋଇଛି । ଶୈଳୀ ମଧ୍ୟ କବିତ୍ୱପୂର୍ଣ୍ଣ । ଏଥିରେ ବ୍ରହ୍ମଜ୍ଞାନର ସମୀକ୍ଷା ଅତି ଉଚ୍ଚକୋଟୀର ହୋଇଛି ।

ଯୁଗେ ଯୁଗେ ସାଧୁସନ୍ଥମାନେ ସମାଜର ମଙ୍ଗଳପାଇଁ ଚେଷ୍ଟା କରିଆସିଛନ୍ତି । ଭକ୍ତ ଦାସିଆ ମଧ୍ୟ କଳିକାଳରେ ଜାତିଭେଦ ରହିବ ନାହିଁ, ସମସ୍ତେ ଅର୍ଥ ପଛରେ ଗୋଡ଼ାଇବେ, ସାମାଜିକ ବାତାବରଣ କଳୁଷିତ ହେବ, ଅକାଳରେ ବର୍ଷା ହେବ, ଏପରିକି ବଡ଼ଦେଉଳରୁ ପଥର ଖସିବ ବୋଲି ଭବିଷ୍ୟଦ୍‌ବାଣୀ କରି ଜନସାଧାରଣଙ୍କୁ ସାବଧାନ କରାଇ ଦେଇଛନ୍ତି । ନାମ ଭଜନ କରି ସଂସାର ସାଗରୁ ତରିଯିବାପାଇଁ ଉପଦେଶ ଦେଇଛନ୍ତି ।

ଭକ୍ତ ଦାସିଆ ଭାଗବତ ଓ ଭକ୍ତିମାଳିକା – ଏଇ ଦୁଇ ଗ୍ରନ୍ଥ ରଚନା କରି ଓଡ଼ିଆ ସନ୍ଥ ସାହିତ୍ୟକୁ ସମୃଦ୍ଧ କରିଛନ୍ତି ।

ଭକ୍ତ ଭାବରେ ଦାସିଆଙ୍କ ସ୍ଥାନ ଅତି ଉଚ୍ଚରେ । ବସ୍ତୁତଃ ତାଙ୍କପାଇଁ ପ୍ରଭୁଙ୍କର ଅଦେୟ କିଛି ନ ଥିଲା । ଯାହା ଯେତେବେଳେ ସେ ଜଗନ୍ନାଥଙ୍କୁ ମାଗିଛନ୍ତି, ତାହା ସେ ପୂରଣ କରିଛନ୍ତି । ଅସାମାନ୍ୟ ଭକ୍ତିବାଦ ଯୋଗୁଁ ସେ ଲୋକମୁଖରେ ଏବେବି ଜୀବିତ ଅଛନ୍ତି ।

### ସନ୍ଥ

# ରଘୁ ଅରକ୍ଷିତ

ରଘୁ ଅରକ୍ଷିତ ଥିଲେ ଜଗନ୍ନାଥଙ୍କ ଅସାଧାରଣ ଭକ୍ତ । ଭକ୍ତ ଭାବରେ ତାଙ୍କର ଖ୍ୟାତି ଉତ୍କଳର ପୁରପଲ୍ଲୀକୁ ବ୍ୟାପିଥିଲା । ମାଦଳାପାଞ୍ଜିରୁ ଜଣାଯାଏ ଯେ ରଘୁ ଅରକ୍ଷିତ ଏକ ଐତିହାସିକ ବ୍ୟକ୍ତି ଥିଲେ । ସେ କେବଳ ଯେ ଗଜପତି ରାଜା ପ୍ରତାପରୁଦ୍ରଦେବଙ୍କ ସାମସମୟିକ ଥିଲେ ତାହା ନୁହେଁ, ସେ ପ୍ରତାପରୁଦ୍ରଦେବଙ୍କୁ ଭଗବତୀ ଦୀକ୍ଷା ଦେଇଥିଲେ । ରାମଦାସଙ୍କ 'ଦାର୍ଢ୍ୟତା ଭକ୍ତି', 'ମାଦଳାପାଞ୍ଜି' ଷୋଡ଼ଶ ଶତାବ୍ଦୀର ଅପ୍ରକାଶିତ 'ଲୋହ ଗୀତା'ରୁ ତାଙ୍କର ଜୀବନଚରିତ ମିଳେ ।

### ଜନ୍ମ ଓ ବାସସ୍ଥାନ

ରଘୁନାଥ ବଙ୍ଗଦେଶର ହରିପୁର ସହରର ଅଧିବାସୀ ଥିଲେ । ତାଙ୍କର ପିତାଙ୍କ ନାମ କୃଷ୍ଣଚନ୍ଦ୍ର ମହାପାତ୍ର ଓ ମାତାଙ୍କ ନାମ କମଳା । ସେ ପିତାମାତାଙ୍କର ଏକମାତ୍ର ପୁତ୍ର ଥିଲେ । ପିତା କୃଷ୍ଣଚନ୍ଦ୍ର ମହାପାତ୍ର ଓ ମାତା କମଳା ଦେବୀ ପରୋପକାରୀ ଓ ଧର୍ମପରାୟଣ ବ୍ୟକ୍ତି ଥିଲେ । କୌଣସି ଦୁଃଖୀ ଓ ଦରିଦ୍ର ତାଙ୍କ ଗୃହରୁ ନିରାଶ ହୋଇ ଫେରୁ ନ ଥିଲେ ।

ରଘୁନାଥ ମଧ୍ୟ ବାଲ୍ୟକାଳରୁ ସୁଶୀଳ ଓ ନମ୍ର ସ୍ୱଭାବର ଥିଲେ । ସତର ବର୍ଷ ବୟସ ହୋଇଥିଲାବେଳେ ସେହି ବଙ୍ଗଦେଶର କଳାବତୀପୁର ଗଙ୍ଗାଧର କରଣଙ୍କର କନ୍ୟା ଅନ୍ନପୂର୍ଣ୍ଣାଙ୍କ ସହିତ ତାଙ୍କର ବିବାହ ହେଲା । କିଛି ଦିନ ପରେ ପିତାଙ୍କର ମୃତ୍ୟୁ ହେଲା । ମାତା ମଧ୍ୟ ସ୍ୱାମୀଙ୍କ ଚିତାଗ୍ନିରେ ଝାସ ଦେଇ ମୃତ୍ୟୁବରଣ କଲେ ।

ପିତାମାତାଙ୍କ ଭଳି ରଘୁ ମଧ୍ୟ ପରୋପକାରୀ ଥିଲେ । ଅତିଥି ଅଭ୍ୟାଗତମାନଙ୍କୁ ସେ ଉତ୍ତମରୂପେ ଚର୍ଚ୍ଚା କରୁଥିଲେ । କିଛି କାଳ ପରେ ସେ କପର୍ଦ୍ଦକହୀନ ହୋଇପଡ଼ିଲେ । ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗି କ୍ଷୁଧା ନିବାରଣ କଲେ ।

'ଦାର୍ଢ୍ୟତାଭକ୍ତି'ରେ ଏହାର ବର୍ଣ୍ଣନା ଅଛି –

> ''ରହିଲା ଏକଇ କୁମର । ଦଇବେ ଅତି ସୁକୁମାର
> ତା' କଷ୍ଟ କହୁଁ ନ ସରଇ । ଭିକ୍ଷା ମାଗିଣ ସେ ଜିଅଇ ।''

## ପୁରୀ ଯାତ୍ରା

ଦିନେ ରଘୁନାଥ ବୃକ୍ଷ ମୂଳରେ ବିଶ୍ରାମ କରୁଥିଲାବେଳେ ଭଗବତ୍ କୃପା ଲାଭପାଇଁ ବ୍ୟାକୁଳ ହେଲେ । ଭିକ୍ଷା ମାଗି ଇନ୍ଦ୍ରିୟ ପରିତୃପ୍ତି କେବଳ ଜୀବନର ଲକ୍ଷ୍ୟ ନୁହେଁ ବୋଲି ମନେକଲେ । ଶେଷରେ ସେ ଶ୍ରୀକ୍ଷେତ୍ରରେ ଜଗନ୍ନାଥଙ୍କୁ ଦର୍ଶନ କରି ତାଙ୍କରି ଶ୍ରୀଚରଣରେ ଆଶ୍ରୟ ନେବାକୁ ସ୍ଥିର କଲେ ।

ରଘୁନାଥଙ୍କର ପତ୍ନୀ ଅନ୍ନପୂର୍ଣ୍ଣା ମଧ୍ୟ ସେତେବେଳକୁ ପିତୃ ଗୃହରେ ରହୁଥିଲେ । ରଘୁନାଥ ଗୃହତ୍ୟାଗ କରି ପୁରୀ ଅଭିମୁଖେ ଯାତ୍ରା କଲେ । ଜଗନ୍ନାଥଙ୍କୁ ସେଠାରେ ଦର୍ଶନ କରି ପରମ ସନ୍ତୋଷ ଲାଭ କଲେ । ଭିକ୍ଷା ମାଗି ଯାହା ମିଳିଲା ସେଥିରେ ମହାପ୍ରସାଦ ସେବନ କରି ପ୍ରଭୁଙ୍କ ନାମକୀର୍ତ୍ତନରେ ଦିନ କାଟିବାକୁ ଲାଗିଲେ ।

## ପତ୍ନୀକୁ ଅନ୍ୟତ୍ର ବିବାହ ବ୍ୟବସ୍ଥା

ରଘୁନାଥ ଶ୍ରୀକ୍ଷେତ୍ରରେ ରହୁଥିବା ବିଷୟ ଅନ୍ନପୂର୍ଣ୍ଣାଙ୍କ ପିତୃଗୃହରେ ପହଞ୍ଚିଲା । ଶ୍ୱଶୁର ଗଙ୍ଗାଧର କରଣ ମନ୍ଦ ପ୍ରକୃତିର ଲୋକ ଥିଲେ । ସେ ଅନ୍ନପୂର୍ଣ୍ଣାଙ୍କୁ ଅନ୍ୟତ୍ର ବିବାହ ଦେବାପାଇଁ ସ୍ଥିର କରି ଜାମାତା ଅନ୍ୱେଷଣରେ ରହିଲେ । ଶେଷରେ ମନ୍ତ୍ରୀଙ୍କର ପୁତ୍ର ବାସୁ ମହାପାତ୍ରଙ୍କ ସଙ୍ଗେ ବିବାହ ଦେବାପାଇଁ ସ୍ଥିର କଲେ ।

ଅନ୍ନପୂର୍ଣ୍ଣା ଏହା ଶୁଣି ଦୁଃଖରେ ଅଭିଭୂତା ହୋଇପଡ଼ିଲେ । ସ୍ୱାମୀ ଜୀବିତ ଥାଉ ଥାଉ ଆଉ ବିବାହ କରିବେ ବା କିପରି ? ସେ ନିଜ ଜୀବନକୁ ଧିକ୍କାର କରିବାକୁ ଲାଗିଲେ । କବିଙ୍କ ଭାଷାରେ –

''ମନେ ବିଚାର ହେଲା ତା'ର । ଧିକ ଜୀବନ ଅଟେ ମୋର ।।
ମୋ ପ୍ରାଣନାଥ ଥାଉ ଥାଉ । ବିଭା କରିବେ ମୋତେ ଆଉ ।।''

ଅନ୍ନପୂର୍ଣ୍ଣା ବିକଳରେ ପ୍ରଭୁଙ୍କୁ ଡାକିବାକୁ ଲାଗିଲେ । ଦୟାମୟ ସେ । ଗଜକୁ ଘୋର ଜଳରୁ ଉଦ୍ଧାର କରିଛନ୍ତି । ଦ୍ରୌପଦୀର ଲଜ୍ଜା ନିବାରଣ କରିଛନ୍ତି । ମୃଗୁଣୀକୁ ମଧ୍ୟ ଘୋର ବିପଦରୁ ରକ୍ଷା କରିଛନ୍ତି । ତାଙ୍କୁ ମଧ୍ୟ ଏହି ମହା ବିପଦରୁ ଉଦ୍ଧାର କରିବାକୁ ଆକୁଳ ନିବେଦନ କଲେ –

''ଏମନ୍ତେ ମନେ ବିଚାରିଣ । ଚିତ୍ତେ ଚିନ୍ତିଲା ନାରାୟଣ ।।
ହେ ପ୍ରଭୁ ଗଜ ନିସ୍ତାରଣ । ଦ୍ରୌପଦୀ ଲଜ୍ଜା ନିବାରଣ ।।
ମୃଗୁଣୀ ଉଦ୍ଧାରଣ ପ୍ରାୟେ । ମୋତେ ଉଦ୍ଧର ଦେବରାଏ ।।''

ଏହି ସମୟରେ ଗ୍ରାମର କେତେଜଣ ଧର୍ମପରାୟଣ ବ୍ୟକ୍ତି ଜଗନ୍ନାଥଙ୍କ ଦର୍ଶନପାଇଁ ପୁରୀ ଯାଉଥିଲେ । ଦାସୀଠାରୁ ଅନ୍ନପୂର୍ଣ୍ଣା ଏ ଖବର ପାଇ ସ୍ୱାମୀଙ୍କ ପାଖକୁ ଗୋପନରେ ପତ୍ର ଲେଖାଇଲେ –

''ଆସନ୍ତା ଫଗୁଣ ମାସରେ । ଶୁକଳ ପକ୍ଷ ପଞ୍ଚମୀରେ ।।
ଏ ରାଜ୍ୟ ପାତ୍ର କୁମରକୁ । ବିଭା କରିବେ ମୋତେ ତାକୁ ।।
ଏଥିକୁ ଚାହିଁ ବେଗେ ଆସ । ମୋଠାରେ ଅଛି ଯେବେ ଆଶ ।।''

ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ନ ଆସିଲେ ସେ ଆତ୍ମହତ୍ୟା କରିବେ ଓ ସେଇ ହତ୍ୟା ତାଙ୍କୁ ଲାଗିବ ବୋଲି ମଧ୍ୟ ପତ୍ରରେ ଜଣାଇଲେ ।

ପତ୍ର ଲେଖି ତୀର୍ଥଯାତ୍ରୀମାନଙ୍କୁ ଦେଇ ତାହାକୁ ରଘୁନାଥଙ୍କୁ ଦେବାକୁ ଅନ୍ନପୂର୍ଣ୍ଣା ଆକୁଳ ନିବେଦନ କଲେ ।

## ରଘୁନାଥଙ୍କ ଚିନ୍ତା

ଶ୍ରୀକ୍ଷେତ୍ରରେ ବହୁ ଭିକାରିଙ୍କ ମଧ୍ୟରୁ ରଘୁ ଅରକ୍ଷିତଙ୍କୁ ଠାବ କରିବା ସେପରି ସହଜସାଧ୍ୟ ନ ଥିଲା । ବହୁ ଖୋଜାଖୋଜି କରିବାପରେ ସିଂହଦ୍ୱାରରେ ସେମାନେ ରଘୁ ଅରକ୍ଷିତଙ୍କୁ ଭେଟିଲେ ଓ ପତ୍ରଟି ଦେଲେ ।

ପତ୍ରପାଇ ରଘୁନାଥ ସମସ୍ତ ବିଷୟ ଅବଗତ ହେଲେ । ପୁରୀରୁ କଳାବତୀପୁର ପ୍ରାୟ ଏକ ମାସର ବାଟ ଥିଲା । ଆଉ ଦଶ ଦିନ ମାତ୍ର ହାତରେ ଥିବାରୁ ରଘୁନାଥ କ'ଣ କରିବେ ଚିନ୍ତା କରିପାରିଲେ ନାହିଁ । ଶେଷରେ ସେଇ ନାରାୟଣଙ୍କୁ ମନେ ମନେ ସ୍ମରଣ କଲେ –

''ବୋଇଲା ପ୍ରଭୁ ଚକ୍ରପାଣି । ଚିନ୍ତାର୍ଥ ଜନ ଚିନ୍ତାମଣି ।।
ନମସ୍ତେ ବାଞ୍ଛା କଳ୍ପତରୁ । କୃପା ସମୁଦ୍ର ମହାମେରୁ ।।
ଭୃତ୍ୟ କାମନା କାମଧେନୁ । ଘୋର ବିପତ୍ତି ତମ ଭାନୁ ।।

× × ×

ମୋର ସଙ୍କଟ ନିବାରଣେ । ତୁମହୁଁ ନାହିଁ ଅନ୍ୟ ଜଣେ ।।''

ରଘୁନାଥ ଏହା କହି ଛିଣ୍ଡା କତରା ପାରି ସିଂହଦ୍ୱାରରେ ଶୋଇପଡ଼ିଲେ । ଭକ୍ତର ଡାକ ଭଗବାନ୍‌ଙ୍କ କାନରେ ପଡ଼ିଲା । ବେତାଳକୁ ଡାକି ଆଜ୍ଞା ଦେଲେ –

''ବୋଇଲେ ଏହିକ୍ଷଣି ଯିବ । ମୋର ଭକ୍ତକୁ ବହିନେବ ।।
ସେ କଳାବତୀ ପାଟଣାର । ରଘୁ ଅର୍କ୍ଷିତ ବନ୍ଧୁ ଘର ।।
ଛାଡ଼ି ଆସିବ ସେହିଠାର । ଯାଅରେ ବିଳମ୍ବ ନ କର ।।''

ବେତାଳମାନେ ରଘୁନାଥଙ୍କୁ ମାୟା ପଲଙ୍କରେ ଶୁଆଇ ଶୂନ୍ୟ ମାର୍ଗରେ ବହିନେଲେ ଓ କଳାବତୀପୁରରେ ରଘୁନାଥଙ୍କ ଶ୍ୱଶୁରଘର ଦୁଆରେ ରଖିଲେ । ସକାଳୁ ଉଠି ଶ୍ୱଶୁର ଗଙ୍ଗାଧର କରଣ ଦ୍ୱାର ସମ୍ମୁଖରେ ରଘୁନାଥଙ୍କୁ ଦେଖି ଅବାକ୍ ହୋଇଗଲେ । ପତ୍ନୀ ଅନ୍ନପୂର୍ଣ୍ଣା ସ୍ୱାମୀଙ୍କୁ ଦେଖି ଆନନ୍ଦିତ ହୋଇଉଠିବା ସ୍ୱାଭାବିକ । ମାତ୍ର ଶ୍ୱଶୁର ଓ ଶଳା ପ୍ରଭୃତିଙ୍କର ମୁଖ ମଳିନ ପଡ଼ିଗଲା । ଲୋକଲଜ୍ଜାକୁ ଡରି ତାଙ୍କୁ ଗୃହ ଭିତରକୁ ନେଇ ଆଦର ଅଭ୍ୟର୍ଥନା କଲେ । ସ୍ନାନ ମାଜଣା ପ୍ରଭୃତି କରାଇଲେ । କିନ୍ତୁ ରଘୁନାଥଙ୍କୁ କିପରି ଜୀବନରେ ମାରିଦେବେ ସେଇ ଚିନ୍ତାରେ ରହିଲେ । ଶେଷରେ ଭୋଜନରେ ବିଷ ଦେବାର ବ୍ୟବସ୍ଥା ହେଲା ।

ଅନ୍ନପୂର୍ଣ୍ଣା ଏକଥା ଜାଣିପାରିଥିଲେ । ସ୍ୱାମୀଙ୍କର ଜୀବନ ରକ୍ଷା କରିବାପାଇଁ ସେ ପ୍ରଭୁଙ୍କୁ ପ୍ରାର୍ଥନା କଲେ । ଏକ କ୍ଷୁଦ୍ର ପତ୍ର ଲେଖି ସବୁ କଥା ଜଣାଇ ଏକ ପିଷ୍ଟକ ମଧ୍ୟରେ ରଖିଲେ । ରଘୁନାଥ ପ୍ରଥମେ ଭୋଜନଦ୍ରବ୍ୟ ଜଗନ୍ନାଥଙ୍କୁ ଅର୍ପଣ କଲେ । ଏହାପରେ ପିଷ୍ଟକ ମଧ୍ୟରେ ପତ୍ର ପାଇ ସମସ୍ତ ବିଷୟ ଅବଗତ ହେଲେ । ପ୍ରଭୁଙ୍କୁ ବିଷମିଶ୍ରିତ ଖାଦ୍ୟ ଅର୍ପଣ କରିଥିବାରୁ ନିଜକୁ ଦୋଷୀ ମନେ କଲେ । ମାତ୍ର ତାହା ମହାପ୍ରସାଦରେ ପରିଣତ ହୋଇଥିବା ଜ୍ଞାନକରି ସମସ୍ତ ଭୋଜନଦ୍ରବ୍ୟ ଉଦରସ୍ଥ କଲେ । ଧୀରେ ଧୀରେ ତାଙ୍କ ଶରୀର ଅବଶ ହୋଇପଡ଼ିଲା ଓ ତାଙ୍କର ପ୍ରାଣବାୟୁ ଉଡ଼ିଗଲା । ଶ୍ୱଶୁରଘର ଲୋକେ ତାଙ୍କର ଶବକୁ ପରଦିନ ପ୍ରଭାତରେ ପୋତିଦେବାର ବ୍ୟବସ୍ଥା କରି ଆନନ୍ଦରେ ନିଦ୍ରା ଗଲେ ।

ଯାହା ଅନୁମାନ କରୁଥିଲେ ତାହାହିଁ ଘଟିବାରୁ ଅନ୍ନପୂର୍ଣ୍ଣା ଶୋକାଭିଭୂତା ହୋଇପଡ଼ିଲେ । ସେ ତେଣୁ ପ୍ରଭୁଙ୍କୁ ଡାକିଲେ । ପ୍ରଭୁଙ୍କ ରତ୍ନ ସିଂହାସନ କମ୍ପିବାକୁ ଲାଗିଲା । ପ୍ରଭୁ ଜାଣିଲେ ଭକ୍ତର ଦୁଃଖ । ନିଜେ ଆସି ରଘୁନାଥ ପଡ଼ିଥିବା ଗୃହରେ ପହଞ୍ଚିଲେ । ଅନ୍ଧକାରାଚ୍ଛନ୍ନ କୋଠରି ଆଲୋକରେ ଝଲସି ଉଠିଲା । ରଘୁନାଥଙ୍କ ଦେହରେ ହାତ ମାରି କହିଲେ –

''ବୋଇଲେ ଉଠରେ ନନ୍ଦନ । କିପାଇଁ ନିଦେ ଅଚେତନ ।।
ଯାହା ସହାୟ ପୀତବାସ । ତା'ର ଗରଳ ଛାର କିସ ।।''

ରଘୁନାଥ ସଙ୍ଗେ ସଙ୍ଗେ ଜୀବନ ପାଇଲେ । ଜଗନ୍ନାଥଙ୍କ ଅପାର କରୁଣାରୁ ଜୀବନଲାଭ କଲେ ବୋଲି ଜାଣି ବିହ୍ୱଳ ହୋଇଉଠିଲେ ଓ ପ୍ରଭୁଙ୍କ ନାମକୀର୍ତ୍ତନ କରିବାରେ ଲାଗିଲେ ।

ରାତ୍ରି ଶେଷ ହୁଅନ୍ତେ ଗଙ୍ଗାଧର କରଣ ରଘୁନାଥଙ୍କୁ ଜୀବିତ ଥିବା ଦେଖି ବିସ୍ମିତ ହୋଇପଡ଼ିଲେ । ସେ ସାଧାରଣ ଲୋକ ନୁହନ୍ତି ବୋଲି ଜାଣିପାରି

ତାଙ୍କଠାରେ କ୍ଷମାଭିକ୍ଷା କଲେ । ରଘୁନାଥ ମଧ୍ୟ ସ୍ୱୀୟ ଉଦାର ଗୁଣରେ ତାଙ୍କୁ କ୍ଷମା ଦେଲେ । ସେ କହିଲେ –

''ତୁମର କିଛି ନାହିଁ ଦୋଷ । ପୂର୍ବେ କାହାକୁ ଦେଲି ବିଷ ।।
ତେଣୁ ଏ ଜନ୍ମେ କଲି ପାନ । ଅର୍ଜିଲା କଥା ନୋହେ ଆନ ।।''

ରଘୁନାଥ ପୁରୀକୁ ଯିବାକୁ ବାହାରିଲେ । ଗଙ୍ଗାଧର ନିଜ କନ୍ୟାକୁ ରଘୁଙ୍କ ସଙ୍ଗେ ଯିବାପାଇଁ ବାରଣ କଲେ ମଧ୍ୟ ଅନ୍ନପୂର୍ଣ୍ଣା ଏଥିରେ ସମ୍ମତ ହେଲେ ନାହିଁ । ତାଙ୍କ ମୁଖରେ କବି କହିଛନ୍ତି –

''କୁମାରୀ ବୋଲେ ଶୁଣ ତାତ । ଯିବି ମୁଁ ସ୍ୱାମୀର ସଙ୍ଗତ ।।
ସେ ଯୋଗୀ ମୁଁ ତାହାର ଥାଳ । ମୋତେ ରଖିଲେ ଅମଙ୍ଗଳ ।।''

ଅନ୍ୟ ଉପାୟ ନ ଦେଖି ଶ୍ୱଶୁର ଅନ୍ନପୂର୍ଣ୍ଣାଙ୍କୁ ରଘୁନାଥଙ୍କ ହସ୍ତେ ଅର୍ପଣ କଲେ । ରଘୁ ପତ୍ନୀଙ୍କ ସଙ୍ଗେ ଶ୍ରୀକ୍ଷେତ୍ର ଅଭିମୁଖେ ଯାତ୍ରା କଲେ ।

ଶ୍ୱଶୁର ଗଙ୍ଗାଧର କିନ୍ତୁ ଅତି ନୀଚ ପ୍ରକୃତିର ବ୍ୟକ୍ତି ଥିଲେ । ସଙ୍ଗେ ସଙ୍ଗେ ଦୂତ ହସ୍ତେ ପତ୍ର ଦେଇ ଏ ସମସ୍ତ ବୃତ୍ତାନ୍ତ ପାତ୍ରର ପୁତ୍ରକୁ ଜଣାଇ ଏହାର ପ୍ରତିକାର ଲୋଡ଼ିଲେ ।

''ତୁମ୍ଭ ଉପାୟ ଥିଲେ କର । ବାଟେ ଅଛନ୍ତି କନ୍ୟାବର ।।''

ପାତ୍ର ମଧ୍ୟ କୋପଭର ହୋଇ ସୈନ୍ୟସାମନ୍ତ ଘେନି ଦମ୍ପତିଙ୍କ ନିକଟରେ ପହଞ୍ଚିଲେ । ରଘୁନାଥଙ୍କୁ କନ୍ୟାକୁ ଛାଡ଼ିଦେବାକୁ କହିଲେ । ଅନ୍ନପୂର୍ଣ୍ଣା ଏଥିରେ ଭୟଭୀତା ହୋଇପଡ଼ିଲେ । ନିଶ୍ଚୟ ପ୍ରାଣ ଯିବ ବୋଲି ସ୍ୱାମୀଙ୍କୁ କହିଲେ । ମାତ୍ର ରଘୁନାଥ ଆଶ୍ୱାସନା ଦେଲେ –

''ମୋ ପ୍ରଭୁ ଦାରୁ ବ୍ରହ୍ମ ମୂର୍ତ୍ତି । ଏ ଛାର କେତେକ ବିପତ୍ତି ।।
ଯେ ତୋତେ ମୋତେ ଭେଟ କରି । ଯେ ବିଷ ତାକୁ କଲେ ପାରି ।।
ଏବେ ରଖିବେ ସେହି ମତେ । ଭୋ ସଖୀ ଭୟ କିପାଁମତେ ।।''

ଏହି ସମୟରେ ଦୁଇ ଜଣ ଅପୂର୍ବ ବୀରପୁରୁଷ ରଘୁନାଥ ଓ ଅନ୍ନପୂର୍ଣ୍ଣାଙ୍କୁ ଭେଟିଲେ । ରଘୁନାଥ ଶତ୍ରୁର ମନ୍ଦ ଉଦ୍ଦେଶ୍ୟ କଥା କହିଲେ । ଦୁଇ ଜଣ ବୀରପୁରୁଷ ରଘୁନାଥଙ୍କୁ ନିର୍ଭୟରେ ଯିବାକୁ କହିଲେ । ଗୋବିନ୍ଦ ମାୟା ଭିଆଇଲେ । ଶତ୍ରୁକୁ ରଘୁନାଥ ଓ ଅନ୍ନପୂର୍ଣ୍ଣାଙ୍କ ଚତୁଃପାର୍ଶ୍ୱରେ ଲକ୍ଷ ଲକ୍ଷ ସୁସଜ୍ଜିତ ସୈନ୍ୟ ରହିଥିବାର ଦୃଶ୍ୟ ହେଲା । ନିଜ ପ୍ରାଣ ରକ୍ଷାପାଇଁ ସେମାନେ ସେଠାରୁ ପଳାଇଲେ । ସେହି ରାଜ୍ୟର ସୀମା ପାର କରାଇଦେଇ ସେଇ ଦୁଇ ବୀରପୁରୁଷ ବିଦାୟ ନେଲେ । ସେ ଦୁଇ ଜଣ ଯେ ସ୍ୱୟଂ ଜଗନ୍ନାଥ ଓ ବଳଭଦ୍ର ଓ ସେମାନେ

ତାଙ୍କୁ ରକ୍ଷା କରିବାପାଇଁ ଆସିଥିଲେ – ଏ କଥା ପରେ ରଘୁନାଥ ବୁଝିପାରିଲେ । ନିରାପଦରେ ସେମାନେ ପୁରୀରେ ପହଞ୍ଚିଲେ ।

ଗଙ୍ଗାଧର କରଣ ଦେଇଥିବା ଧନରେ ଶ୍ରୀମନ୍ଦିର ନିକଟରେ ଏକ ସୁଦୃଶ୍ୟ ଗୃହ କ୍ରୟ କରି ଉଭୟେ ବାସ କରିବାରେ ଲାଗିଲେ । ପ୍ରଭୁଙ୍କ ନାମ କୀର୍ତ୍ତନ କରିବା ତାଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ ହେଲା ।

## ଅତିଥି ସେବା

ରଘୁନାଥ ପିତାଙ୍କ ପରି ଅତିଥିପରାୟଣ ଥିଲେ । ନିଜେ ଭିକ୍ଷା ମାଗି ଜୀବନ ଧାରଣ କରୁଥିଲେ ମଧ୍ୟ ଯାହା କିଛି ବଳୁଥିଲା ସେଥିରେ ଅତିଥି ଚର୍ଚ୍ଚା କରୁଥିଲେ । କେହି ଅତିଥି ଗୃହରୁ ନିରାଶ ହୋଇ ଫେରୁ ନ ଥିଲେ । ତାଙ୍କର ନମ୍ର ଓ ବିନୟ ସ୍ୱଭାବ ସମସ୍ତଙ୍କୁ ମୁଗ୍ଧ କରୁଥିଲା । ଲୋକେ ତାଙ୍କୁ ଧନ୍ୟ ଧନ୍ୟ କହୁଥିଲେ । କବିଙ୍କ ଭାଷାରେ –

"ଲୋକେ ବୋଇଲେ ଧନ୍ୟ । ରଘୁ ଅର୍କ୍ଷିତର ଜୀବନ ।।
ଦରିଦ୍ର ହେଲେ କିସ ହେବ । ଦୁର୍ଲଭ ଅଟେ ତା'ର ଭାବ ।।
ଭିକ୍ଷା ସେ ମାଗିଣ ଜୀଇଛି । ଯେ ଯାହା ମାଗିଲେ ଦେଉଛି।।
ଆବର ପ୍ରଭୁ ନାମ ଯେତେ । ଗାୟନ କରୁଥାଇ ନିତ୍ୟେ ।।
କହେ ବିନୟ ଧୀର ବାଣୀ । ଧନ୍ୟ ଅଟନ୍ତି ବେନି ପ୍ରାଣୀ ।।"

ଥରେ ପାଞ୍ଚ ସାତ ଜଣ ବୈଷ୍ଣବ ପୁରୀରେ ପହଞ୍ଚିଲେ । ସେମାନେ ଜଗନ୍ନାଥଙ୍କୁ ଦର୍ଶନ କଲେ । ଭୋଜନ ନିମନ୍ତେ ବହୁଆଡ଼ ବୁଲି ରଘୁନାଥଙ୍କ କଥା ଲୋକମୁଖରୁ ଶୁଣି ତାଙ୍କ ଗୃହକୁ ଗଲେ ଓ ଭୋଜନ କରିବାର ଅଭିଳାଷ ଜଣାଇଲେ । କିନ୍ତୁ ରଘୁନାଥଙ୍କ ଗୃହରେ କିଛି ନ ଥିଲା । ସେ ବିଷମ ସମସ୍ୟାରେ ପଡ଼ିଲେ । ପତ୍ନୀଙ୍କ ସଙ୍ଗେ ପରାମର୍ଶ କଲେ –

"ଏଥିକୁ କି ବୁଦ୍ଧି କରିବା । କେମନ୍ତେ କରି ଚରଚିବା ।।
ଘରେ ତ କିଛି ନାହିଁ ଧନ। କହ ଗୋ ଯୁବତୀ ରତନ ।।"

ଅନ୍ନପୂର୍ଣ୍ଣା ଦେହର ଗହଣା ବନ୍ଧା ପକାଇ ଅତିଥି ଚର୍ଚ୍ଚା କରିବାକୁ କହିଲେ । ଏଥିରେ ରଘୁନାଥ ଆନନ୍ଦିତ ହେଲେ ମଧ୍ୟ ଅଳଙ୍କାର ନେଇ ନିଜେ ମହାଜନ ଗୃହକୁ ଯିବାକୁ ରାଜି ହୋଇ ନ ଥିଲେ । ତାଙ୍କ ପାଖରେ ଏତେ ଅଳଙ୍କାର ଦେଖି ତାଙ୍କୁ ସମସ୍ତେ ଚୋର ଭାବିବେ ବୋଲି ଆଶଙ୍କା କଲେ । ସେ ତେଣୁ ଅନ୍ନପୂର୍ଣ୍ଣାଙ୍କୁ ମହାଜନ ଗୃହକୁ ଯାଇ ଧନ ଆଣିବାକୁ ନିର୍ଦ୍ଦେଶ ଦେଲେ । ଅନ୍ନପୂର୍ଣ୍ଣା ସ୍ୱାମୀଙ୍କ ଆଦେଶ ଅନୁସାରେ ମହାଜନ ଗୃହରେ ପହଞ୍ଚି ଅଳଙ୍କାର ବନ୍ଧାରଖି ଧନ

ଦେବାକୁ କହିଲେ । ମହାଜନ କିନ୍ତୁ ଅନ୍ନପୂର୍ଣ୍ଣାଙ୍କ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ଥରେ ମାତ୍ର ରତିଦାନ କଲେ ଧନ ପାଇବେ ବୋଲି କହିଲା । ଅନ୍ନପୂର୍ଣ୍ଣା ସେଠାରୁ ଫେରିଆସି ସ୍ୱାମୀଙ୍କୁ ସମସ୍ତ ବିଷୟ ଜଣାଇଲେ । ସ୍ୱାମୀ ମଧ ଅତିଥିମାନଙ୍କୁ ଗୃହରୁ ଫେରାଇଦେବା ଅନୁଚିତ ବୋଲି କହି ମହାଜନ କଥାରେ ରାଜିହୋଇ ଧନ ଆଣିବାକୁ କହିଲେ । 'ଦାର୍ଢ୍ୟତାଭକ୍ତି'ରେ ଏହାର ବର୍ଣ୍ଣନା ଅଛି –

''ସାଧୁମାନଙ୍କ ଉପକାରେ । ଲାଗିବ ଆମ୍ଭର ଭାଗ୍ୟରେ ।।
ଯାହା ବୋଇଲା ମହାଜନ ।ସମ୍ମତ କରି ଧନ ଆଣ ।।''

ଅନ୍ନପୂର୍ଣ୍ଣାଙ୍କର ଆଉ କୌଣସି ଉପାୟ ନ ଥିଲା –

''ତୁମ୍ଭର ଆଜ୍ଞା ପାଇ ମୁହିଁ । ଗଲିଟି ମୋର ଦୋଷ ନାହିଁ ।।''

ମହାଜନ ଅତି ଆନନ୍ଦରେ ଧନ ଗଣିଦେଲା । ରଘୁନାଥ ସେହି ଧନରେ ଖିରି ଖେଚେଡ଼ି, ଶାଳି ଅନ୍ନ, ବିଭିନ୍ନ ପ୍ରକାର ବ୍ୟଞ୍ଜନ ପ୍ରଭୃତି ପ୍ରସ୍ତୁତ କରି ଅତିଥିମାନଙ୍କର ସତ୍କାର କଲେ । ସେମାନେ ରଘୁନାଥଙ୍କ ପ୍ରଶଂସା କରି ଗୃହରୁ ବିଦାୟ ନେଲେ ।

## ଭକ୍ତକୁ ପୁଣି ଉଦ୍ଧାର

ରାତ୍ରି ହୁଅନ୍ତେ ଅନ୍ନପୂର୍ଣ୍ଣା ମହାଜନ ଅପେକ୍ଷାରେ ରହିଲେ । ସ୍ୱାମୀ ମଧ ଅତିଥି ସେବାରେ ବ୍ୟାଘାତ ସୃଷ୍ଟି ନ କରିବାକୁ ସେଠାରୁ ଦୂର ହୋଇଗଲେ । ମହାଜନ ଗୃହରେ ପ୍ରବେଶ କଲା । ମାତ୍ର ଏ କ'ଣ ଦେଖୁଛି ?

''ଦେଖିଲା ବସିଛି ସୁନ୍ଦରୀ । ଅତି ଆନନ୍ଦେ ମନ କରି ।।
ତାହାର ପଛେ ଦେବ ହରି । ସତୀଙ୍କୁ କୋଳାଗ୍ରତ କରି ।।

× × ×

ବିଜୟ ପ୍ରଭୁ ଆଦିମୂଳ । ଧନୀ ଦେଖିଣ ହେଲା ଭୋଳ ।।''

ସାକ୍ଷାତରେ ଅନ୍ନପୂର୍ଣ୍ଣା ହୁତାଶନ ଭଳି ମହାଜନକୁ ବୋଧ ହେଲେ । ମହାଜନଙ୍କର ସମସ୍ତ ଅଙ୍ଗ ଥରିବାକୁ ଲାଗିଲା । କବିଙ୍କ ଭାଷାରେ –

''ତା' ଦେଖି ଧନୀ ପାଞ୍ଚେ ମନ । ଏତ ଜ୍ୱଳନ୍ତ ହୁତାଶନ ।।
ଡେଇଁବାପାଇଁ କରୁଥିଲି ମନ । କେମନ୍ତେ ଧରିବି ଜୀବନ ।।
ନିଜ ଜନନୀ ଠାରେ ଯେହ୍ନେ । ମୂଢ଼ ଦୁର୍ବୁଦ୍ଧି ଇଚ୍ଛେ ମନେ ।।
ମୁଁ ହୃଦ କେହ୍ନେ ମନ କଲି । ଫଣୀ ଫଣାରେ ହସ୍ତ ଦେଲି ।।''

ମହାଜନ ସତୀଙ୍କ ପାଦପଦ୍ମରେ ଲୋଟିପଡ଼ିଲା । ନେତ୍ରରୁ ତା'ର ଅଶ୍ରୁଧାରା ଝରି ପଡ଼ିଲା । ରଘୁନାଥ ମଧ୍ୟ ସେହି ସମୟରେ ସେଠାରେ ପ୍ରବେଶ ହେଲେ । ମହାଜନ ରଘୁନାଥଙ୍କ ପାଦଦ୍ୱୟକୁ ଧରି ବାରମ୍ବାର କ୍ଷମା ମାଗିବାକୁ ଲାଗିଲା ।

ପତିପତ୍ନୀ ଶ୍ରୀହରିଙ୍କ ଚରଣ ଚିନ୍ତି କେତେକାଳ ବଞ୍ଚିବା ପରେ ମୃତ୍ୟୁବରଣ କଲେ ।

## କବିତ୍ୱ

ରଘୁନାଥ ମଧ୍ୟ ଜଣେ ପ୍ରତିଷ୍ଠିତ କବି ଥିଲେ । ସେ ଅନେକ ଭଜନ ରଚନା କରିଅଛନ୍ତି । ସେଗୁଡ଼ିକ ଅବଶ୍ୟ ଲୋକଲୋଚନକୁ ଏ ପର୍ଯ୍ୟନ୍ତ ଆସି ନାହିଁ । ତାଙ୍କର ରଚନାବଳୀ ମଧ୍ୟରେ 'ଗୋଚରାଚର ଗୀତା' ପ୍ରଧାନ ।

## ଗୋଚରାଚର ଗୀତା

ଏଥିରେ ୧୭୭ଟି ପଦ ଅଛି । କବିଙ୍କ ମତରେ ମହାଭାରତ ଯୁଦ୍ଧ ପ୍ରତି ବ୍ୟକ୍ତିର ଶରୀର ମଧ୍ୟରେ ପ୍ରତିଦିନ ସଂଘଟିତ ହେଉଛି । ଏହି ମହାଭାରତ ଯୁଦ୍ଧ ପାଞ୍ଚଟି ବସ୍ତୁପାଇଁ ହେଉଛି । ତାହା ହେଲା ଆକାଶ, ବାୟୁ, ଅନଳ, ଜଳ ଓ ମହୀ । ଏହି ପାଞ୍ଚଟି ବସ୍ତୁ ନେଇ ମନ ଓ ସତ୍ୟ ମଧ୍ୟରେ ଚିରଦିନ ସଂଗ୍ରାମ ଚାଲିଛି । ଦୁର୍ଯ୍ୟୋଧନର ଅପର ନାମ ମାନଗୋବିନ୍ଦ । କବି ଦୁର୍ଯ୍ୟୋଧନଙ୍କୁ ମନର ପ୍ରତୀକ ଓ ଯୁଧିଷ୍ଠିରଙ୍କୁ ସତ୍ୟର ପ୍ରତୀକଭାବେ ଗ୍ରହଣ କରିଛନ୍ତି ।

ଦୁର୍ଯ୍ୟୋଧନଙ୍କ ପଟେ ଥିଲେ କାମ (ଭୀଷ୍ମ), ତୃଷ୍ଣା (ଦ୍ରୋଣ), କ୍ରୋଧ (କର୍ଣ୍ଣ), ଲୋଭ (ଶକୁନି) । ଅପରପକ୍ଷେ ଯୁଧିଷ୍ଠିରଙ୍କ ପଟେ ଅଛନ୍ତି ଧୈର୍ଯ୍ୟ (ଭୀମ), ଜ୍ଞାନ (ଅର୍ଜ୍ଜୁନ), ବିବେକ (ନକୁଳ) ଓ ଶାନ୍ତି (ସହଦେବ) । ଏଥିରେ ଅହଂଗୁଣଗୁଡ଼ିକର ବିନାଶ ଘଟେ । ଶେଷରେ ମନରୂପୀ ଦୁର୍ଯ୍ୟୋଧନ ନିଦ୍ରାର ମନ୍ଦିର (ବ୍ୟାସ ସରୋବର)ରେ ଆଶ୍ରୟ ନିଅନ୍ତି । କିନ୍ତୁ ଶେଷରେ ଧୈର୍ଯ୍ୟରୂପୀ ଭୀମ ହାତରେ ମୃତ୍ୟୁବରଣ କରନ୍ତି ।

ରଘୁ ଅରକ୍ଷିତ ଜ୍ଞାନମାର୍ଗୀୟ ଭକ୍ତ ଥିଲେ । ତାଙ୍କ ମତରେ କଳିଯୁଗରେ ଯଜ୍ଞ, କର୍ମ, ଧର୍ମ ସବୁ ବୃଥା । କେବଳ ଭାବଭକ୍ତି ହେଉଛି ସାର । ଈଶ୍ୱରଙ୍କ ପାଦପଦ୍ମରେ ଆଶ୍ରା କଲେ ମୁକ୍ତିଲାଭ ହୁଏ । ଗ୍ରନ୍ଥ ଶେଷରେ କବି କହିଛନ୍ତି –

''ପାଦପଦ୍ମେ ଆଶ୍ରାକରି
ଛାର ରଘୁ ଗଲା ତରି

× × ×

ଯେ ଗୀତା ଗୋଚରାଚର
ଜ୍ଞାନୀମାନଙ୍କ ବିଚାର ।''

ଭଜନ

କବି ବହୁ ଭଜନ ରଚନା କରିଥିଲେହେଁ ସେଗୁଡ଼ିକର ସନ୍ଧାନ ମିଳୁ ନାହିଁ । 'ଗୋଚରାଚର' ଗୀତାରେ ରଘୁନାଥ ଜଗନ୍ନାଥଙ୍କ କୃପା ଭିକ୍ଷା କରିଛନ୍ତି, ଯଥା–

''ଭାବକୁ ମହିମା ମେରୁ । ନାମ ତାଙ୍କ କଳ୍ପତରୁ ।।
କଳ୍ପତରୁ ବୋଲି ଯହୁଁ । ଭରସା କରିଅଛି ତହୁଁ ।।
× × ×
ପତିତ ମୁକୁଟ ମଣି । ଦୀନ ମଧ୍ୟେ ମୋତେ ଗଣି ।।
ପାଦପଦ୍ମେ ମୋର ଆଶ୍ରା । ଚରଣ ଧରି ଭରସା ।।''

ତାଙ୍କର ଆଉ ଏକ ଜନପ୍ରିୟ ଭଜନ –

''ଜଗତେ ଜଗବନ୍ଧୁ ତୁମର
ନାମ ପଢୁଅଛି ଯେ ନିରନ୍ତର ।''

ଜଗନ୍ନାଥଙ୍କ ପ୍ରତି ପ୍ରଗାଢ଼ ଓ ଅନାବିଳ ଭକ୍ତି ଯୋଗୁଁ ରଘୁ ଅରକ୍ଷିତ ଅନେକ ଅସହାୟ ମୁହୂର୍ତ୍ତରେ ଯେପରି ଅନାବିଳ ଭଗବତ୍ କୃପା ଲାଭ କରିଛନ୍ତି, ସେଥିରୁ ସେ ଅରକ୍ଷିତ ନୁହନ୍ତି ବରଂ ଭକ୍ତି ଭାବରେ ଜଣେ ବିତ୍ତଶାଳୀ ବ୍ୟକ୍ତି ଭାବେ ଜଣାପଡ଼ନ୍ତି । ତାଙ୍କର ଭକ୍ତି ଓ ନିଷ୍ଠା ଆଜିର ଏହି ନାସ୍ତିକ, ଜାନ୍ତବ ମନୁଷ୍ୟ ସମାଜକୁ ଭଗବତ୍ ଚିନ୍ତାଧାରାରେ ଅନୁପ୍ରାଣିତ କରିବାକୁ ଯେ କ୍ଷମ, ଏଥିରେ ସନ୍ଦେହ ନାହିଁ ।

# ଭକ୍ତପ୍ରବର
# ସାଲବେଗ

ସପ୍ତଦଶ ଶତାବ୍ଦୀର ଆରମ୍ଭରେ ଉତ୍କଳରେ ଭକ୍ତକବି ସାଲବେଗ ଜନ୍ମ ହୋଇ ନିଜର ଅଟଳ ବିଶ୍ୱାସ ଫଳରେ ଭଗବାନ୍‌ଙ୍କୁ ନିଜସ୍ୱ କରିପାରିଥିଲେ । କେବଳ ସେତିକି ନୁହେଁ, ଈଶ୍ୱରଙ୍କୁ ଧ୍ୟେୟ କରି ସେ ଯେଉଁ ସରଳ ଓ ସର୍ବଜନାଦୃତ ଭଜନଗୁଡ଼ିକ ରଚନା କରିଥିଲେ, ସେଥିପାଇଁ ସେ ଓଡ଼ିଆ ସାହିତ୍ୟ ଆକାଶରେ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ଶୋଭା ପାଉଛନ୍ତି ।

## ଜନ୍ମ

ସାଲବେଗଙ୍କର ପିତାଙ୍କର ନାମ ଥିଲା ଲାଲବେଗ । ତାହା ତାଙ୍କର ଡାକ ନାମ ଥିଲା । ପ୍ରକୃତ ନାମ ଥିଲା ଜାହାଙ୍ଗୀର କୁଲି ଖାଁ । ସେ ନିଜାମଙ୍କ ପୁତ୍ର ଥିଲେ । ମୋଗଲ ସମ୍ରାଟ୍ ହୁମାୟୁନଙ୍କ ସମୟରେ ନିଜାମ ଗ୍ରନ୍ଥାଧ୍ୟକ୍ଷଭାବେ କାର୍ଯ୍ୟ କରୁଥିଲେ । ଲାଲବେଗ ତାଙ୍କର ବୁଦ୍ଧି, ସାହସ ଓ ଦକ୍ଷତା ବଳରେ ସମ୍ରାଟ୍ ଜାହାଙ୍ଗୀରଙ୍କର ବିଶ୍ୱସ୍ତ ହୋଇପାରିଥିଲେ । ଜାହାଙ୍ଗୀର ତାଙ୍କୁ ପ୍ରଥମେ ମୁଖ୍ୟ ସର୍ଦାରଭାବେ ନିଯୁକ୍ତ କଲେ । ପରେ ସେ ଚାରି ହଜାର ଘୋଡ଼ସବାରର ମୁଖ୍ୟ ବା ମନସବଦାର ରୂପେ ବିହାରର ସୁବାଦାର ଭାବେ ନିଯୁକ୍ତ ହେଲେ । ସେତେବେଳେ ବଙ୍ଗଳାର ସୁବାଦାର ଥିଲେ କୁତବୁଦ୍ଦୀନ୍ ଶେର୍ । ସେ ଆଫଗାନମାନଙ୍କଦ୍ୱାରା ନିହତ ହେଲେ । ମୋଗଲ ସମ୍ରାଟ୍ ଜାହାଙ୍ଗୀର ତେଣୁ ଜାହାଙ୍ଗୀର କୁଲି ଖାଁ ବା ଡାକନାମ ଲାଲବେଗଙ୍କୁ ବଙ୍ଗଳାର ସୁବାଦାର ଭାବେ ନିଯୁକ୍ତ କଲେ । 'ଇକବଲ ନାମା-ଜାହାଙ୍ଗୀର'ରୁ ଜଣାଯାଏ ଯେ ଲାଲବେଗ ୧୬୦୭ ମସିହା ମେ ମାସ ୩୦ ତାରିଖରେ ବଙ୍ଗଳାର ସୁବାଦାର ହେଲେ । ସେ ବଙ୍ଗଳାର ସୁବାଦାର ହେବାମାତ୍ରେ ପୂର୍ବବର୍ତ୍ତୀ ସୁବାଦାରମାନଙ୍କ ଭଳି ଓଡ଼ିଶା ଉପରେ ଲୋଲୁପ ଦୃଷ୍ଟି ପକାଇଲେ ।

ଲାଲବେଗଙ୍କ ବହୁପୂର୍ବରୁ ବଙ୍ଗଳାର ସୁବାଦାରମାନେ ଓଡ଼ିଶା ଆକ୍ରମଣ କରି ଧନ ରତ୍ନ ଲୁଣ୍ଠନ କରି ନେଇଯାଉଥିଲେ । ବିଶେଷତଃ, ସେମାନେ ହିନ୍ଦୁ ଜଗତର ଆରାଧ୍ୟ ପୀଠ ଶ୍ରୀଜଗନ୍ନାଥଙ୍କ ଧାମ ଉପରେ ଆକ୍ରମଣ କରିବାକୁ

ପବିତ୍ର କର୍ତ୍ତବ୍ୟବୋଲି ମନେକରୁଥିଲେ । ୧୩୬୦ ଖ୍ରୀଷ୍ଟାବ୍ଦରେ ଗଙ୍ଗବଂଶର ରାଜା ଭାନୁଦେବଙ୍କ ସମୟରେ ଦିଲ୍ଲୀ ସୁଲତାନ ଫିରୋଜ ଶାହା ତୋଗଲକ ଶ୍ରୀଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଥିଲେ । ସୂର୍ଯ୍ୟବଂଶର ଗଜପତି ପ୍ରତାପରୁଦ୍ରଙ୍କ ସମୟରେ ବଙ୍ଗ ସୁଲତାନ ହୁସେନ ଶାହା ୧୫୧୦ ଖ୍ରୀଷ୍ଟାବ୍ଦରେ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିଥିଲେ । ୧୫୬୮ରେ କଳାପାହାଡ଼ ମଧ ମନ୍ଦିର ଆକ୍ରମଣ କରି ବହୁ କ୍ଷତି କରିଥିଲେ । ଭୋଇବଂଶର ରାଜା ପୁରୁଷୋତ୍ତମଦେବ ୧୬୦୦-୧୬୨୧ ପର୍ଯ୍ୟନ୍ତ ଖୋର୍ଦ୍ଧାରେ ରାଜତ୍ୱ କରୁଥିଲେ । ତାଙ୍କ ସମୟରେ ଲାଲବେଗ ଓଡ଼ିଶା ଆକ୍ରମଣ କରିଥିବା ଜଣାଯାଏ । କେହି କେହି କହନ୍ତି ଯେ ୧୫୯୨ ଖ୍ରୀଷ୍ଟାବ୍ଦରେ ରାଜା ମାନସିଂହଙ୍କ ନେତୃତ୍ୱରେ ମୋଗଲ ସେନା ଓଡ଼ିଶା ଆକ୍ରମଣ କରିଥିଲେ । ସେହି ସେନାଦଳରେ ଲାଲବେଗ ଓଡ଼ିଶା ଆସିଥିଲେ । ମାତ୍ର ତାହା ଭ୍ରମାତ୍ମକ । ଲାଲବେଗ ବଙ୍ଗଳାର ସୁବାଦାର ୧୬୦୭ ମସିହାରେ ହୋଇଥିବାର ପ୍ରମାଣ ମିଳେ । ସୁତରାଂ ତା' ପୂର୍ବରୁ ସେ ଓଡ଼ିଶା ଆସିଥିବା ସମ୍ଭବପର ନୁହେଁ ।

ସେତେବେଳେ ମୋଗଲ ସୁବାଦାରମାନେ କଟକରେ ଶିବିର ସ୍ଥାପନ କରି ସେଠାରୁ ଅନ୍ୟଆଡ଼କୁ ଅଭିଯାନରେ ବାହାରୁଥିଲେ । ଲାଲବେଗ ବଙ୍ଗଳାରୁ ଆସି କଟକରେ ଶିବିର ସ୍ଥାପନ କରିଥିବା ଅନୁମାନ କରାଯାଏ । ସେ ସେଠାରୁ ଦିଲ୍ଲୀ ସମ୍ରାଟ୍ ଜାହାଙ୍ଗୀରଙ୍କ ଖୁସି ନିମନ୍ତେ ଜଗନ୍ନାଥ ମନ୍ଦିର ଉପରେ ଆକ୍ରମଣ କରିବାକୁ ସେନାବାହିନୀ ନେଇ ବାହାରିଲେ । 'ଦାର୍ଢ୍ୟତାଭକ୍ତି ରସାମୃତ'ର ରଚୟିତା କବି ରାମଦାସ ଲାଲବେଗଙ୍କ ଆକ୍ରମଣ ବିଷୟରେ ଉଲ୍ଲେଖ କରିଛନ୍ତି–

''କଟକ ନାମରେ ସହର । ଲାଲବାଗରେ ତା'ର ଘର ।।
ଜାତିରେ ଅଟଇ ପଠାଣ । ତାହାର କଥା ଏବେ ଶୁଣ ।।
ମୁଗୁଲ ନାମେ ଲାଲବେଗ । ତାହାର ପୁତ୍ର ସାଲବେଗ ।।
× × ×
ସେ ଲାଲବେଗ ଅତି ଦୁଷ୍ଟ । ଖଳ ପ୍ରପଞ୍ଚ ବୁଦ୍ଧି ନଷ୍ଟ ।।
ଶ୍ରୀ ଗଜପତି ଦଣ୍ଡଧାରୀ । ସଙ୍ଗତେ ଶତ୍ରୁପଣ କରି ।।
ଅନେକ ସୈନ୍ୟ ଠୁଳ କଲା । ଓଡ଼ିଶା ଯୁଝିବାକୁ ଗଲା ।।''

ଏହି ଆକ୍ରମଣ ସମୟରେ ମୁସଲମାନ ସୈନ୍ୟମାନେ ବାଟରେ ପଡୁଥିବା ଗ୍ରାମମାନଙ୍କୁ ପୋଡ଼ି ଛାରଖାର କରିପକାଉଥିଲେ । ଦେବଦେବୀ ମନ୍ଦିରଗୁଡ଼ିକୁ ଭାଙ୍ଗି ପକାଉଥିଲେ । ଧନ ରତ୍ନ ଲୁଟି ନେଉଥିଲେ । ଲୋକମାନେ ତେଣୁ ଘରଦ୍ୱାର, ଧନରତ୍ନ ଛାଡ଼ି ପିଲାକବିଲା ଧରି ବଣ ଜଙ୍ଗଲକୁ ପଳାଇ ଆତ୍ମରକ୍ଷା

କରୁଥିଲେ । ସୈନ୍ୟମାନେ ଗଲାପରେ ସେମାନେ ଘରକୁ ଫେରିଆସି ପୂର୍ବଭଳି ଜୀବନଯାପନ କରୁଥିଲେ ।

ଜାହାଙ୍ଗୀର କୁଲ୍ଲୀ ଖାଁ ବା ଲାଲବେଗ ପୁରୀ ଅଭିମୁଖେ ସୈନ୍ୟମାନଙ୍କୁ ନେଇ ଯାଉଥିବାବେଳେ ଦାଣ୍ଡମୁକୁନ୍ଦପୁର ଶାସନରେ ପହଞ୍ଚିଲେ । ଏହି ଦାଣ୍ଡମୁକୁନ୍ଦପୁର ଗୋଟିଏ ବ୍ରାହ୍ମଣ ଶାସନ ଥିଲା । ଏହି ଶାସନଟି ରାଜା ମୁକୁନ୍ଦଦେବଙ୍କଦ୍ୱାରା ସ୍ଥାପିତ ହୋଇଥିଲା । କଥିତଅଛି ଯେ ରାଜା ମୁକୁନ୍ଦ ଦେବ ଏଠାରେ ସାତ ଶହ ବାବନ ଜଣ ନୈଷ୍ଠିକ ବ୍ରାହ୍ମଣଙ୍କୁ ଦାନ ଦେଇଥିଲେ । ଏହା ସେତେବେଳେ 'ଦାନମୁକୁନ୍ଦପୁର' ନାମରେ ନାମିତ ଥିଲା । ପରେ ଏହା ଦାଣ୍ଡମୁକୁନ୍ଦପୁରରେ ପରିଣତ ହେଲା ।

ଲାଲବେଗ ଦାଣ୍ଡମୁକୁନ୍ଦପୁରରେ ପହଞ୍ଚିଲାବେଳକୁ ଦୈବ ଯୋଗେ ସେହି ଶାସନର ଜଣେ ସୁନ୍ଦରୀ ବିଧବା କନ୍ୟା ପୁଷ୍କରିଣୀକୁ ସ୍ନାନ କରିବାକୁ ଯାଉଥିଲେ । ତାଙ୍କର ନାମ ଥିଲା ଲଳିତା । ମୁସଲମାନ ସୈନ୍ୟମାନଙ୍କ ଆଗରେ ପଡ଼ିଯିବାରୁ ସେ ସ୍ତମ୍ଭୀଭୂତା ହୋଇ ରହିଗଲେ । ନିଜର ରକ୍ଷାପାଇଁ ମନେ ମନେ ଇଷ୍ଟ ଦେବତାଙ୍କୁ ସୁମରଣା କରିବାରେ ଲାଗିଲେ । 'ଦାର୍ଢ୍ୟତାଭକ୍ତି'ରେ ଏହାର ସୁନ୍ଦର ବର୍ଣ୍ଣନା ଅଛି –

ଗ୍ରାମମାନଙ୍କେ ଯେ ଉତ୍ତମ । ଦାଣ୍ଡମୁକୁନ୍ଦପୁର ନାମ ।।
× × ×
ତହିଁ ଏକ ବିଧବା ନାରୀ । ଯାଉଥିଲା ଯେ ସ୍ନାନ କରି ।।
ଏକାକୀ ବନ ଜଳ ଘାଟେ । ସୈନ୍ୟ ତା' ଦେଖିଲା ନିକଟେ ।।
ଡରେ ସେ ନ ପାରିଲା ଯାଇ । ରହିଲା ସ୍ତମ୍ଭୀଭୂତ ହୋଇ ।।

ଏହି ସମୟରେ ଲାଲବେଗ ସେଠାରେ ପହଞ୍ଚିଲେ । ଅନିନ୍ଦ୍ୟ ସୁନ୍ଦରୀ କନ୍ୟାଙ୍କୁ ଦେଖି ସେ ବଳପୂର୍ବକ ଧରିନେଲେ ଓ ଅଶ୍ୱପୃଷ୍ଠରେ ବସାଇ କଟକ ପଳାଇଲେ । କନ୍ୟାଟି ଯେତେ କ୍ରନ୍ଦନ କଲେ ମଧ ଏପରିକି ପ୍ରାଣ ହରାଇବାକୁ କହିଲେ ମଧ ତା'ର ଫଳ କିଛି ହେଲା ନାହିଁ । ଲାଲବେଗ ବହୁ ଅନୁନୟ କଲେ । ଦେହରେ ଅଳଙ୍କାର ଓ ସୁନ୍ଦର ସୁନ୍ଦର ବସନ ଆଣିଦେଲେ । କାଳକ୍ରମେ ଲଳିତା ବନ୍ଧୁ, ପରିଜନ ଓ କୁଟୁମ୍ବଙ୍କୁ ପାସୋରିଲେ ଓ ତାଙ୍କର ପତ୍ନୀ ହୋଇ ରହିଲେ । କଟକରେ ରହିବା କାଳରେ ତାଙ୍କ ଗର୍ଭରୁ ଗୋଟିଏ ପୁତ୍ର ଜାତ ହେଲା । ପିତା ସେହି ପୁତ୍ରର ନାମ ରଖିଲେ ସାଲବେଗ । ରାମଦାସ ଏହାକୁ ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି –

''ଏମନ୍ତ ବେଳେ ଲାଲବେଗ । ଆସି ମିଳିଲା ତା'ର ଆଗ ॥
ଦେଖିଲା ଅତ୍ୟନ୍ତ ସୁନ୍ଦରୀ । ମଦନ ଶରେ ହେଲା ଘାରି ॥

× × ×

ବସାଇ ଅଶ୍ୱର ଉପରେ । ସେ ନାରୀ ଦଇବ ସୁମରେ ॥
ନୟନୁ ଅଶ୍ରୁଧାର ଗଳେ । କାନ୍ଦି ଗଡ଼ଇ ମହୀତଳେ ॥
ତା' ନିଜ କୁଟୁମ୍ବ ସୁମରି । ବୋଲଇ ଦେବି ପ୍ରାଣ ହାରି ॥
ଅନେକ ବିନୟେ କହିଲା । କୋଳେ ବସାଇ ଚୁମ୍ବଦେଲା ॥

× × ×

ତା'ଠାରୁ ରତି ସୁଖ ପାଇ । ରହିଲା ପତ୍ନୀ ପ୍ରାୟ ହୋଇ ॥
ଏମନ୍ତେ କେତେ ଦିନ ଗଲା । ସେ ନାରୀ ପୁତ୍ର ପ୍ରସବିଲା ॥

× × ×

ପୁତ୍ରକୁ ଦେଖି ଲାଲବେଗ । ତା' ନାମ ଦେଲେ ସାଲବେଗ ॥''

**ଯବନ ମାତା ?**

ବଳଗଣ୍ଡି ଛତାମଠରୁ ସଂଗୃହୀତ ତାଳପତ୍ର ପୋଥି 'ଅରଜଗୀତିକା'ରେ ସାଲବେଗଙ୍କୁ ଲାଲ୍‌ବେଗଙ୍କ ଯବନ ପତ୍ନୀଙ୍କ ପୁତ୍ରଭାବେ ବର୍ଣ୍ଣନା କରାଯାଇଛି –

''ମାତା ମୋର ଇନ୍ଦୁଡ଼ିରେ ମୋତେ ଛାଡ଼ିଗଲା ।
ପିତା ମୋର ବାହାଦୁର ଲାଲବେଗ ଥିଲା ॥

× × ×

ଜାହାଙ୍ଗୀର ବାଦଶାହ ଅମଳ କରିଲା ।
ଓଡ଼ିଶା ରାଜ୍ୟରେ ସେହୁ ସୁବାଦାର ହେଲା ॥
ବିବି ତା'ର ଫତିମା ଯେ କରିଣ ଜନମ ।
ପୁରୁଷୋତ୍ତମ କଟକରେ ଅଟଇ ରାଜନ ॥

× × ×

ମୋତେ ନେଇ ଅନ୍ତୁଡ଼ିରୁ ମାତାଙ୍କୁ ସମ୍ପିଲା ।
ବ୍ରାହ୍ମଣ ଅଟଇ ବଡ଼ କୃଷ୍ଣରେ ଭକତି
ନିଶାକାଳେ ଗୀତା ଭାଗବତ ଯେ ପଢ଼ନ୍ତି ॥''

'ଶ୍ରୀମନ୍ଦିର ସମାଚାର'ରେ ମଧ୍ୟ ଏହାର ଉଲ୍ଲେଖ ଅଛି । ସାଲବେଗଙ୍କର ଜନ୍ମର କିଛିକ୍ଷଣ ପରେ ଅର୍ଥାତ୍ ଅନ୍ତୁଡ଼ିଶାଳାରେ ଫତିମାଙ୍କର ମୃତ୍ୟୁ ହେଲା । ଫଳରେ ତାଙ୍କର ଲାଳନ ପାଳନ ଭାର ବ୍ରାହ୍ମଣୀ ମାତାଙ୍କ ଉପରେ ପଡ଼ିଲା ।

ମାତ୍ର 'ଦାର୍ଢ୍ୟତାଭକ୍ତି'ରେ ଏହାର ସବିଶେଷ ବର୍ଣ୍ଣନା ଥିବାରୁ 'ଅରଜଗୀତିକା'ର ବିଷୟବସ୍ତୁର ସତ୍ୟାସତ୍ୟ ନିରୂପଣ ସହଜସାଧ ନୁହେଁ ।

**ବାଲ୍ୟଜୀବନ**

ଭକ୍ତକବି ରାମଦାସଙ୍କ ରଚନାରୁ ଜଣାଯାଏ ଯେ, ଶୈଶବ ଅବସ୍ଥାରେ ସାଲବେଗ ମାତାଙ୍କଠାରୁ କେବଳ ଯେ କ୍ଷୀର ପାନ କରି ସୁସ୍ଥ ସବଳ ହେଲେ ତା' ନୁହେଁ, ସେ ପିତାଙ୍କର ସ୍ନେହ ଓ ଆଦର ପାଇଲେ । ଲାଲବେଗ ବିଧିମତେ ତାଙ୍କୁ ଲାଳନପାଳନ କରିଥିଲେ । ପୁତ୍ର ଦେହରେ ବହୁ ଅଳଙ୍କାର ମଧ ଖଞ୍ଜି ଦେଇଥିଲେ । ରାମଦାସ ଅବଶ୍ୟ ପ୍ରାୟ ଶହେ ବର୍ଷ ପରେ ଲୋକମୁଖରୁ ଏହା ଶୁଣି ଲେଖିଛନ୍ତି । ମାତ୍ର ସେଥିରେ ସତ୍ୟ ଥିବାର ଅନୁମାନ କରାଯାଏ । ଲାଲବେଗ କେବଳ ଲଳିତାଙ୍କୁ ଘେନି ଆସିଥିଲେ ତା' ନୁହେଁ, ତାଙ୍କୁ ପତ୍ନୀର ସମ୍ମାନ ଦେଇଥିଲେ । ସାଲବେଗଙ୍କୁ ନିଜର ପୁତ୍ରଭଳି ଲାଳନ ପାଳନ କରିଥିଲେ । ରାମଦାସ ଲେଖିଛନ୍ତି –

''ମାତା ପିତାଙ୍କ ସ୍ନେହ ପାଇ । କ୍ଷୀର ପାନରେ ସୁସ୍ଥ ହୋଇ ।।
ଦିନକୁ ଦିନ ବର୍ଦ୍ଧମାନ । ହୋଇଲା ସେ ନବ ନନ୍ଦନ ।।
ପାଳିଲେ ବିଧିମତେ କରି । ଅନେକ ଅଳଙ୍କାରେ ଭରି ।।''

କ୍ରମେ ସାଲବେଗଙ୍କ ବୟସ ବୃଦ୍ଧି ହେଲା । କେହି କେହି କହନ୍ତି ଯେ ମାତାଙ୍କ ସହିତ ସେ ହିନ୍ଦୁ ମନ୍ଦିରକୁ ଯାଉଥିଲେ । ମାତ୍ର ଥରେ ରକ୍ଷଣଶୀଳ ପୂଜାପଣ୍ଡାଙ୍କଠାରୁ ଅପମାନିତ ହୋଇ ହିନ୍ଦୁଧର୍ମ ପ୍ରତି ବିମୁଖ ହେଲେ । ଏହାପରେ ସେ ଯୁଦ୍ଧବିଦ୍ୟା ପ୍ରତି ଆକୃଷ୍ଟ ହେଲେ । କିଶୋର ଅବସ୍ଥାରେ ସେ ସେନାବାହିନୀରେ ଯୋଗ ଦେଲେ ଓ ସେଥିରେ କୃତିତ୍ୱ ଦେଖାଇଲେ । ବିଶେଷତଃ, ଅଶ୍ୱାରୋହଣ, ଖଣ୍ଡା ଚଳାଇବା, ଶର ନିକ୍ଷେପରେ ସେ ବିଶେଷ ଦକ୍ଷତା ଦେଖାଇଲେ । ଭକ୍ତ ରାମଦାସଙ୍କ ବର୍ଣ୍ଣନାରୁ ଜଣାଯାଏ ଯେ ସାଲବେଗ ଯୁବକ ଅବସ୍ଥାରେ ଦିନେ ପିତାଙ୍କ ସାଙ୍ଗରେ ଯୁଦ୍ଧକୁ ଗଲେ ଓ ସେଠାରେ ଆଘାତପ୍ରାପ୍ତ ହେଲେ । ଦେହର ସାତୋଟି ସ୍ଥାନରେ ଆଘାତ ପାଇଲେ ଓ ସେଇଠି ଟଳିପଡ଼ିଲେ । ଦେହରୁ ରକ୍ତ ଧାର ଧାର ହୋଇ ବୋହିଗଲା । ତାଙ୍କୁ ଲୋକମାନେ ଘରକୁ ଟେକି ନେଇଗଲେ, ଯଥା –

''ଏମନ୍ତେ କେତେ କାଳ ଗଲା । ଯୁବା ଅବସ୍ଥା ଆସି ହେଲା ।।
ଶିଖିଲା କ୍ଷତ୍ରି ବୃତ୍ତି ଯେତେ । ଅଶ୍ୱାଦି ଚଢ଼ିବା ସହିତେ ।।
କାଣ୍ଡ ଖଣ୍ଡାରେ ବିଚକ୍ଷଣ । ଆଡ଼ ଉହାଡ଼ରେ ମାରଣ ।।

× × ×

ଏମନ୍ତେ କେତେ କାଳ ଗଲା । ତା' ପିତା ଯୁଦ୍ଧେ ବାହାରିଲା ।।
ପିତାଙ୍କୁ ଘେନି ସାଲବେଗ । ସୈନ୍ୟ ସଙ୍ଗତେ ଗମେ ବେଗ ।।

× × ×

ଯୁଦ୍ଧରେ ଶସ୍ତ୍ରଘାତ ପାଇ । ଟଳି ପଡ଼ିଲା ରଣ ଭୂଇଁ ।।
ସପତଖଣ୍ଡ ଘାତ ହେଲା । ରୁଧିର ଧାର ବହିଗଲା ।।
ପଡ଼ିଲା ମୂର୍ଚ୍ଛାଗତ ହୋଇ । ଦେଖି ସଙ୍ଗରେ ଲୋକେ ଧାଇଁ ।।
ସାଲବେଗକୁ ବହିନେଲେ । ତା' ନିଜ ପୁରେ ପ୍ରବେଶିଲେ ।।''

ସମ୍ଭବତଃ, ତାଙ୍କ ପିତା ଯୁଦ୍ଧରେ ଭାଗନେଇ ନ ଥିଲେ । କଟକରେ ଲାଲବେଗ ମାତ୍ର ଗୋଟିଏ ବର୍ଷ ରହିଥିବା ଜଣାଯାଏ । ସମ୍ଭବତଃ, ଲଳିତାଙ୍କ ସହ ସମ୍ପର୍କ ନେଇ ତାଙ୍କ ରହଣି ମଧ୍ୟରେ ସେ ଶ୍ରୀମନ୍ଦିର ଆକ୍ରମଣ କରି ନ ଥିଲେ । ଲାଲବେଗଙ୍କୁ ଯେଉଁ ଉଦ୍ଦେଶ୍ୟପାଇଁ ପଠାଯାଇଥିଲା, ତାହା ସଫଳ ନ ହେବାରୁ ସମ୍ଭବତଃ ସମ୍ରାଟ୍ ତାଙ୍କୁ ସ୍ଥାନାନ୍ତରିତ କରିବାକୁ ଚାହିଁଥିଲେ । ଓଡ଼ିଶାକୁ ଗୋଟିଏ ସ୍ୱତନ୍ତ୍ର ସୁବାରେ ପରିଣତ କରି ବଙ୍ଗଳାକୁ ଲାଲବେଗଙ୍କୁ ପଠାଇଲେ । ଗବେଷକ ନୀଳମଣି ମିଶ୍ରଙ୍କ ମତରେ ସେ ଓଡ଼ିଶାର ପ୍ରଥମ ସୁବାଦାର ହାସିମ୍ ଖାଁଙ୍କୁ ନିଜ ସ୍ତ୍ରୀ ଓ ପୁତ୍ର ସାଲବେଗଙ୍କ ସମସ୍ତ ଯତ୍ନ ନେବାକୁ ଅନୁରୋଧ କରିଥିଲେ । ସେମାନଙ୍କୁ ମଧ୍ୟ ସମସ୍ତ ସୁବିଧାରେ ରଖାଯାଇଥିବା ସମ୍ଭବ ।

ପ୍ରଶ୍ନ ଉଠେ, ସାଲବେଗ କେଉଁ ଯୁଦ୍ଧକୁ ଯାଇଥିଲେ ? ସମ୍ଭବତଃ, ମୋଗଲ ଓ ଆଫଗାନମାନଙ୍କର ଏକ ବଡ଼ଧରଣର ସଂଘର୍ଷ ହୋଇଥିଲା । ସାଲବେଗ ସେଥିରେ ଯୋଗଦେଇ ସାଂଘାତିକଭାବେ ଆଘାତପ୍ରାପ୍ତ ହେଲେ । ମୂର୍ଚ୍ଛାଗତ ସାଲବେଗଙ୍କୁ ଦେଖି ତାଙ୍କର ମାତା ଶୋକାଭିଭୂତା ହୋଇପଡ଼ିଲେ । ରାମଦାସ ଏହା ବର୍ଣ୍ଣନା କରିଛନ୍ତି –

''ଦେଖି ତାହାର ଗର୍ଭଧାରୀ । ରୁଣ ବାହୁନି ଶୋକକରି ।।''

ମାତା ସାଲବେଗଙ୍କ ସମସ୍ତ ଚିକିତ୍ସାର ବ୍ୟବସ୍ଥା କଲେ । ମାତ୍ର ଯେତେ ଉପଚାର କରାଇଲେ ମଧ୍ୟ ସାଲବେଗ ଭଲ ହେଲେ ନାହିଁ । ବରଂ ଦିନକୁ ଦିନ ଯନ୍ତ୍ରଣା ବୃଦ୍ଧି ପାଇଲା । ଅତି ଦୁଃଖରେ ସାଲବେଗ କ୍ରନ୍ଦନ କଲେ । ମାତା ପୁତ୍ରର ଦୁଃଖରେ ଅଧୀର ହୋଇ ତାଙ୍କୁ ସାନ୍ତ୍ୱନା ଦେବାକୁ ଲାଗିଲେ । ରାମଦାସ ଲେଖିଛନ୍ତି –

''କେବେ ହେଁ କୁଶଳ ନୋହିଲା । ଏମନ୍ତେ କେତେ ଦିନ ଗଲା ।।
ଅତି ଆରତେ ସାଲବେଗ । କହିଲା ଜନନୀର ଆଗ ।।
ଭୋ ମାତା ଶୁଣ ଗୋ ବଚନ । ଏଥର ଗଲାଟି ଜୀବନ ।।''

ରୋଗ ଯନ୍ତ୍ରଣାରେ ଅଧୀର ହୋଇ ପିତାଙ୍କୁ ନ ଦେଖି ସାଲବେଗ ତାଙ୍କର ମାତାଙ୍କୁ ପିତାଙ୍କ ବିଷୟରେ ପଚାରିଥିବା ସମ୍ଭବ । ମାତା ଉତ୍ତର ଦେଇଛନ୍ତି –

"ମୋତେ ତୁ ପଚାରିଲୁ ଯାହା । ଶୁଣ କହିବା ତୋତେ ତାହା ॥
ପଠାଣ ଅଟେ ତୋର ତାତ । ମୁହିଁ ବ୍ରାହ୍ମଣୀ ତୋର ମାତ ॥
ମୋ କଥା ଶୁଣ ଧୀରେ ବାବୁ । ଏ ଯେ ତୋହର ନିଜ ବାବୁ ॥
ତୋତେ ପାସୋରି ଦେଲା କାଳେ । ତା' ନିଜ ସୁତ ଦାରା ମେଳେ ॥
ରହିଲା ଅଚିନ୍ତା ହୋଇଣ । ମୁଁ ସିନା ହେଲି ଅକାରଣ ॥
ମୋ ଯୁବା ବୟସ ସରିଲା । ତେଣୁ ସେ ମୋତେ ପାସୋରିଲା ॥
ତୁ ହାଦେ ଦାସୀ ପୁତ୍ର ସିନା । ତାକୁ କି ଲାଗେ ତୋ ବେଦନା ॥"

ସାଲବେଗ ନିଜ ଜୀବନ ବୃତ୍ତାନ୍ତ ମାତାଙ୍କଠାରୁ ଶୁଣିଲେ । ଆତ୍ମଗ୍ଲାନିରେ ତାଙ୍କ ମନ ଭରିଗଲା । ଏପରିକି ସେ ଜୀବନପ୍ରତି ମମତା ହରାଇଲେ । ମାତା ନିଜର ଏକମାତ୍ର ପୁତ୍ରର ଜୀବନରକ୍ଷା ଲାଗି ସମସ୍ତ ପ୍ରକାର ଚେଷ୍ଟା କଲେ । ଶେଷରେ ଦେବ ଆରାଧନା କରିବାପାଇଁ ପୁତ୍ରଙ୍କୁ ପରାମର୍ଶ ଦେଲେ । ମାତ୍ର ଯବନ ବୀର୍ଯ୍ୟରୁ ଜାତ ହୋଇଥିବା ସାଲବେଗ ଯେ ଦେବପୂଜା ଆରାଧନା ପ୍ରଭୃତିରେ ମନ ଦେବେ, ଏ ବିଷୟରେ ତାଙ୍କର ସନ୍ଦେହ ହେଲା । ସୁତରାଂ ପୁତ୍ରକୁ ଶପଥ କରିବାକୁ କହିଲେ । ରାମଦାସ ଅତି ପ୍ରାଣସ୍ପର୍ଶୀଭାବେ ତାହା ବର୍ଣ୍ଣନା କରିଛନ୍ତି –

"ତୁ ଅଟୁ ମୋର ଜୀବ ଧନ । ତୋ ବିନୁ ମୋର ସର୍ବ ଶୂନ୍ୟ ॥
ତୁହି ମୋ ଅନ୍ଧର ଲଉଡ଼ି । ତୁ ସିନା ମୋ ଧନ କଉଡ଼ି ॥
କହ ମୋ କର୍ଣ୍ଣ ରତ୍ନମାଳା । ତୁହି ମୋ ନୟନ ପିତୁଳା ॥
ସ୍ୱରୂପ କହ ସ୍ଥିରେ ବାବୁ । ସତ କି ମୋ ବୋଲ କରିବୁ ॥
ସତ୍ୟ ତୁ କର ମୋର ଆଗ । ତା' ଶୁଣି ବୋଲେ ସାଲବେଗ ॥"

ସାଲବେଗ ଉଦ୍ଧାରର କୌଣସି ବାଟ ନ ପାଇ ମାତାଙ୍କ ଆଦେଶ ମାନିବେ ବୋଲି ଶପଥ କଲେ –

"ହେ ମାତ ଲକ୍ଷବାର ସତ୍ୟ । ତୋ ବୋଲ କରିବି ନିୟତ ॥"

ମାତ୍ର ଯବନ ସଂସ୍କୃତିରେ ସାଲବେଗ ଲାଳିତ ପାଳିତ ହୋଇଥିଲେ । କାହାକୁ ଭଜିବେ, ତାଙ୍କର ରୂପ, ଗୁଣ ଓ ବାସସ୍ଥଳୀ ବିଷୟରେ ସେ ମାତାଙ୍କୁ ପଚାରିଥିବା ସ୍ୱାଭାବିକ –

"ମୁଁ ତାଙ୍କୁ ଭଜିବି କେମନ୍ତେ । ବୁଝାଇ କହ ମାତ ମୋତେ ॥"

ପୁତ୍ର ଶପଥ କଲେ । ତାଙ୍କର ଆନ୍ତରିକତା ଉପରେ ମାତାଙ୍କର ହୃଦ୍‌ବୋଧ ହେଲା । ତାଙ୍କ ମୁହଁରେ ହସରେଖା ଫୁଟିଉଠିଲା । ସେ ପୁତ୍ରକୁ ବୃନ୍ଦାବନ ଚନ୍ଦ୍ର ଶ୍ରୀକୃଷ୍ଣଙ୍କ ବାସସ୍ଥାନ, ଲୀଳାଖେଳା ବିଷୟ ବର୍ଣ୍ଣନା କରିବାକୁ ଲାଗିଲେ –

''ଶୁଣି ଜନନୀ ମନ୍ଦେ ହସି । ବୋଇଲା ଶୁଣ ବାଳ ଶିଷି ॥
ନନ୍ଦରାଜା ଯେ ତାଙ୍କ ତାତ । ଯଶୋଦା ଦେବୀ ତାଙ୍କ ମାତ ॥
ଗୋପ ନଗରେ ତାଙ୍କ ଘର । ଅଶେଷ ପରଜା ତାହାର ॥
ରାଧିକା ନାମେ ତାଙ୍କ ନାରୀ । ସେ ଦୁହେଁ କିଶୋର କିଶୋରୀ ॥
ସେ ଗୋପେ ବୃନ୍ଦାବନେ ଭୂପ । କହିବି ଶୁଣ ତାଙ୍କ ରୂପ ॥''

ଏହା କହି ସେ ବୃନ୍ଦାବନବାସୀ ଶ୍ରୀକୃଷ୍ଣଙ୍କ ଦେହର ଘନ ନୀଳ କାନ୍ତି, ମର୍କତ ଜିଣି ଶୋଭା, ଶିରରେ ଚୂଳ ପ୍ରଭୃତି ବର୍ଣ୍ଣନା କରିବାକୁ ଲାଗିଲେ । ସାଲବେଗ ତନ୍ମୟ ହୋଇ ଶୁଣିଲେ । ମାତ୍ର ତଥାପି ତାଙ୍କର ଭ୍ରାନ୍ତି ଦୂର ହେଲା ନାହିଁ । ସେ ଭଜନର ମାର୍ଗ କ'ଣ ବୋଲି ମାତାଙ୍କୁ ପଚାରନ୍ତେ, ମାତା ତାଙ୍କୁ ବିଶ୍ୱାସର ସହିତ ଭଜନ କରିବାକୁ ଉପଦେଶ ଦେଲେ । କେବଳ ସେତିକି ନୁହେଁ, ବିଶ୍ୱାସର ସହିତ ଭଜନ ଚିନ୍ତନ କଲେ ବାର ଦିନରେ (ଦ୍ୱାଦଶ ଦିନେ ଭଲ ହେବୁ) ସମ୍ପୂର୍ଣ୍ଣ ଆରୋଗ୍ୟ ହେବେ ବୋଲି କହିଲେ । ସାଲବେଗ ତାହା ଶୁଣି ଶ୍ରୀକୃଷ୍ଣଙ୍କୁ ମନରେ ଧ୍ୟାନକରି ବାର ଦିନ ପର୍ଯ୍ୟନ୍ତ ଭଜନ କରିବାକୁ ଲାଗିଲେ । କିନ୍ତୁ ସେଥିରେ ତାଙ୍କର ବେଦନା ଉପଶମ ନ ହୋଇ ବରଂ ବୃଦ୍ଧି ପାଇଲା । ବାର ଦିନରେ ଆରୋଗ୍ୟ ହୋଇ ନ ଥିବାର କଥା ମାତାଙ୍କୁ ଜଣାଇ ସାଲବେଗ ଆତ୍ମହତ୍ୟା କରିବେ ବୋଲି କହିଲେ । ଭକ୍ତ ରାମଦାସ ତାହା ଲେଖିଛନ୍ତି –

''ତୁ ଯାହା ବୋଇଲୁ ଗୋ ମାତ । ଭଲ ନୋହିଲା ମୋର ଗାତ୍ର ॥
କଷ୍ଟ ତ ଆସି ପୂର୍ଣ୍ଣ ହେଲା । ଅଧିକ ବେଦନା ବଢ଼ିଲା ॥
ନିଶ୍ଚୟ ହେବ ମୋ ମରଣ । ରହିବ ନାହିଁ ମୋର ପ୍ରାଣ ॥''

ମାତାଙ୍କର କିନ୍ତୁ ଭଗବାନ୍ ଶ୍ରୀକୃଷ୍ଣଙ୍କ ପାଖେ ପୂରାପୂରି ଆସ୍ଥା ଥିଲା । ପୁତ୍ର ହତାଶ ହୋଇପଡ଼ିଲେ ମଧ୍ୟ ତାଙ୍କର ବିଶ୍ୱାସ ତିଳେମାତ୍ର ହ୍ରାସ ପାଇ ନ ଥିଲା । ଭକ୍ତ ହୃଦୟର ପରୀକ୍ଷା ଈଶ୍ୱର ଅତି କଠୋରଭାବେ କରିଥାନ୍ତି ବୋଲି ସେ ଉତ୍ତର ଦେଲେ । ସେ ମଧ୍ୟ ହୃଦୟରେ ଶ୍ରୀକୃଷ୍ଣଚନ୍ଦ୍ରଙ୍କୁ ଧ୍ୟାନ କରି ସ୍ତୁତି ଆରମ୍ଭ କଲେ –

''ଚିତ୍ତ ନିବେଶି ପଦ୍ମପାଦେ । ବୋଲନ୍ତି ମନର ବିଷାଦେ ॥
ହେ ଆର୍ତ୍ତତ୍ରାଣ ଦୀନବନ୍ଧୁ । ଭକ୍ତବତ୍ସଳ କୃପାସିନ୍ଧୁ ॥
ମୋ ଆର୍ତ୍ତ ଖଣ୍ଡ ଦେବରାଜ । ବିଳମ୍ବେ ନାହିଁ ଆଉ କାର୍ଯ୍ୟ ॥
ନିଶ୍ଚେ ମରିବୁ ମାଏ ପୋଏ । ହତ୍ୟା ହୋଇବୁ ତୁମ୍ଭ ପାଏ ॥''

ଶେଷରେ ଭକ୍ତର ଡାକ ଭଗବାନ୍ ଶୁଣିଲେ । ରୋଗାକ୍ରାନ୍ତ ସାଲବେଗଙ୍କ ଆଗରେ ଶ୍ରୀକୃଷ୍ଣ ବାଳମୁକୁନ୍ଦ ରୂପରେ ଦେଖାଦେଲେ ଓ ମୁଠାଏ ବିଭୂତି ଭକ୍ତର ଶରୀରରେ ବୋଳିଦେଲେ । ଦୁରାରୋଗ୍ୟ ବ୍ରଣ ସବୁ ଅଚିରେ ମଉଳିଗଲା । ତା'ପରେ ପ୍ରଭୁ ଅନ୍ତର୍ଦ୍ଧାନ ହୋଇଗଲେ ।

ସବୁ ରାତ୍ରି ପରି ସେ ରାତ୍ରିରେ ସାଲବେଗଙ୍କର ନିଦ୍ରାଭଙ୍ଗ ହେଲା ନାହିଁ । ପ୍ରଭାତରୁ ଉଠି ସେ ଦେହ ରୋଗମୁକ୍ତ ହୋଇଥିବାର ଦେଖିଲେ । ସେ ଯେ ବୃନ୍ଦାବନଚନ୍ଦ୍ରଙ୍କର କରୁଣାରୁ ରୋଗମୁକ୍ତ ହୋଇଛନ୍ତି, ସେ ବିଷୟରେ ସନ୍ଦେହ ରହିଲା ନାହିଁ । ସେ ମାତାଙ୍କୁ ଶେଯରୁ ଉଠାଇଲେ –

''ମାତାଙ୍କୁ ବୋଇଲାରେ ଶୁଣ। ତୋ କଥା ହୋଇଲା ପ୍ରମାଣ।।''

ମାତା ମଧ୍ୟ ତାଙ୍କ ଦେହକୁ ଚାହିଁ ସବୁ ଶୁଭ ଲକ୍ଷଣମାନ ଦେଖିବାକୁ ପାଇଲେ । ଦୁଃଖହାରୀ ହରିଙ୍କ ଅପାର ମହିମାରୁ ସେ ରୋଗମୁକ୍ତ ହେଲେ ବୋଲି ଉତ୍ତର ଦେଲେ ।

ଏହାପରେ ଯବନ ସାଲବେଗଙ୍କର ଶ୍ରୀକୃଷ୍ଣଙ୍କ ପ୍ରତି ଗଭୀର ଭକ୍ତି ଜାତ ହେଲା । ଯେଉଁ ଦେବତାର କରୁଣାରୁ ସେ ନିଶ୍ଚିତ ମୃତ୍ୟୁମୁଖରୁ ଉଦ୍ଧାର ପାଇଲେ, ତାଙ୍କୁ ଏଯାବତ୍ ଜାଣି ନ ଥିବାରୁ ନିଜକୁ ଧିକ୍କାର କଲେ –

''ଏମନ୍ତ ପ୍ରଭୁ ଥାଉ ଥାଉ । ସେ ଅନ୍ୟେ ଆଶ୍ରାକରେ ଆଉ ।।
ଧିକ ବୋଲିବା ତା' ଜୀବନ । ଏ ଦେହେ କିସ ପ୍ରୟୋଜନ ।।''

ଏହାପରେ ସେ ନିଜକୁ ଶ୍ରୀକୃଷ୍ଣଙ୍କ ପାଦପଦ୍ମରେ ସମର୍ପଣ କଲେ । ତାଙ୍କଠାରେ ପୂର୍ଣ୍ଣ ଆସ୍ଥା ସ୍ଥାପନ କରିବା ସଙ୍ଗେ ସଙ୍ଗେ ସେ ପ୍ରତିଭାସମ୍ପନ୍ନ ହୋଇଉଠିଲେ । ସଂସାର ସୁଖ ତ୍ୟାଗକରି ସେ ସନ୍ନ୍ୟାସ ବ୍ରତ ପାଳନପୂର୍ବକ କୃଷ୍ଣଙ୍କ ଗୁଣକୀର୍ତ୍ତନରେ କାଳଯାପନ କରିବାପାଇଁ ସ୍ଥିର କଲେ । ଭକ୍ତ ରାମଦାସ ଏହା ବର୍ଣ୍ଣନା କରିଛନ୍ତି –

''ପୁତ୍ର ବୋଇଲା ସତ୍ୟ ଏହି । ପବିତ୍ର କଲୁ ମୋର ଦେହୀ ।।
ପୁଣି ସନ୍ନ୍ୟାସୀ ହୋଇବହିଁ । ସଂସାର ସୁଖ ତେଜିବଇଁ ।।
ଏମନ୍ତ କହି ବସ୍ତ୍ର ଚିରି । ଡୋର କୌପୁନୀ ଆଶ୍ରେକରି ।।
ମାତାଙ୍କୁ ଦଣ୍ଡବତ କଲା । ଶୁଣ ଗୋ ଜନନୀ ବୋଲିଲା ।।
ଏମନ୍ତ କହି ଅନୁକୂଳ । କରି ଚଳିଲା ନୀଳାଚଳ ।।''

ସାଲବେଗ ମାତାଙ୍କର ଆଶୀର୍ବାଦ ଗ୍ରହଣ କରି ସନ୍ନ୍ୟାସୀ ହେଲେ । ସେ କିଛିଦିନ ନିକଟସ୍ଥ ଗ୍ରାମମାନଙ୍କରେ ଶ୍ରୀକୃଷ୍ଣଙ୍କ ଭଜନ ଗାନ କରିବାରେ ଲାଗିଲେ । କିମ୍ବଦନ୍ତୀରୁ ଜଣାଯାଏ ଯେ କୌଣସି ଏକ ସାଧୁଙ୍କଠାରୁ ଉପଦେଶ ପାଇ ସାଲବେଗ ସାଧୁମାନଙ୍କ ସଙ୍ଗେ ଶ୍ରୀକ୍ଷେତ୍ର ଯିବାକୁ ସ୍ଥିର କଲେ । ସେ ଏହି ସମୟରେ ଏକ ଜଣାଣ ରଚନା କରିଥିବା ସମ୍ଭବ ।

''ଶ୍ରୀପୁରୁଷୋତ୍ତମ ଯିବା ମନ । ସାଙ୍ଗ ହୋଇ ଯିବା ପାଞ୍ଚ ଜଣ ।।
ତୁନିହୋଇ ଯିବା କେହି ନ ଜାଣିବେ । ବସି ଭାବୁଥିବେ ମନେ ମନ ।।
ସଲଖ ସୁନ୍ଦର ବଡ଼ଦାଣ୍ଡ । ନବକୋଟି ଲୋକ ତହିଁ ରୁଣ୍ଡ ।।
ଦେଖିବା ମାତ୍ରେକେ ପାପ କ୍ଷୟ ଯିବା ପାପାଧି ପାତକ ହେବ ଖଣ୍ଡ ।।''

ଶ୍ରୀକ୍ଷେତ୍ରରେ ପହଞ୍ଚି ସେ ସେଠାରେ ବାସକରି ରହିବାକୁ ଚାହିଁଥିବା ସ୍ୱାଭାବିକ । ଏହା ତାଙ୍କ ଜଣାଣରେ ପରିଷ୍କାରଭାବେ ବର୍ଣ୍ଣିତ –

''ଚାଲ ସଖି ଆମ୍ଭେ ଦର୍ଶନ କରିବା । ନୀଳଗିରି କାଳିଆକୁ ।।''
କେଉଁ ସୁରପତି ବେଶ କରିଅଛି । ଗିରିବର କାଳିଆକୁ ।।''

ପୁରୀରେ ପହଞ୍ଚି ସେ ଜଗନ୍ନାଥଙ୍କର ଦର୍ଶନ ପାଇଲେ ନାହିଁ । ବିଧର୍ମୀ ବୋଲି ମନ୍ଦିରର ପଣ୍ଡାମାନେ ତାଙ୍କୁ ମନ୍ଦିର ଭିତରକୁ ଛାଡ଼ି ନ ଥିଲେ । ସେ ଦୁଃଖରେ ଗାଇଉଠିଲେ –

''ଆହେ ନୀଳାଚଳ ବାସୀ
ଶୋକ ଜଳଧିରେ ଗଲି ଭାସି
ବାରଣ ଭୟକୁ କାରଣ କର ହେ
ଶରଣ ପଞ୍ଜର ବାନା
ଆରତ ନାଶନ ଖଳ ବିନାଶନ
ବାରେ ହୁଅ ବକ୍ରସେନା ।''

ଦର୍ଶନ ନ ମିଳିବାରୁ ସେ ନିଜ ଜୀବନକୁ ତୁଚ୍ଛ ମନେ କରିଛନ୍ତି –

''କାଳିଆ ଧନ, ତୋ ଲାଗି ଯାଉ ଏ ଜୀବନ । ବାରେ ନ ଦେଲୁ ଦରଶନ ।।''

ସମ୍ଭବତଃ, ଏହି ସମୟରେ ସେ ସମସ୍ତଙ୍କର ଅତି ପ୍ରିୟ ଭଜନ ଆହେ ନୀଳ ଶଇଳ ରଚନା କରିଥିଲେ –

''ଆହେ ନୀଳ ଶଇଳ ପ୍ରବଳ ମତ୍ତ ବାରଣ
ମୋ ଆରତ ନଳିନୀ ବନକୁ କର ଦଳନ ।
× × ×
କହେ ସାଲବେଗ ହୀନ ଜାତିରେ ମୁଁ ଯବନ
ଶ୍ରୀରଙ୍ଗା ଚରଣ ତଳେ ରଖ ମୋତେ ଶରଣ ।''

ବଙ୍ଗୀୟ ଗବେଷକ ଶ୍ରୀ ସୁନ୍ଦରରାଜ ବିଦ୍ୟାବିନୋଦ 'ଶ୍ରୀକ୍ଷେତ୍ର' ନାମକ ଏକ ପୁସ୍ତକ ରଚନା କରିଥିଲେ । ସେଥିରୁ ଜଣାଯାଏ ଯେ ସାଲବେଗଙ୍କ

ଭକ୍ତିରେ ଅଭିଭୂତ ହୋଇ ଜଗନ୍ନାଥ ପତିତପାବନଭାବେ ସିଂହଦ୍ୱାରରେ ଆବିର୍ଭୂତ ହେଲେ । ବିଦ୍ୟାବିନୋଦ ଲେଖିଛନ୍ତି – ''କଥିତ ହୟ, ଜନୈକ ମୁସଲମାନ ପଠାନ୍ ସେନାପତି ଉତ୍କଳଦେଶେ ଆକ୍ରମଣ କଲେ । ଜନୈକା ଉତ୍କଳୀୟା ହିନ୍ଦୁ ରମଣୀକେ ହରଣ କରିୟା ଲଇୟା ଯାୟ । ତାହାର ଗର୍ଭେ ସାଲବେଗ ଜନ୍ମଗ୍ରହଣ କରେନ୍ । ଶ୍ରୀଜଗନ୍ନାଥ କ୍ଷେତ୍ରେ ଆସିୟା, ଶ୍ରୀଜଗନ୍ନାଥ ମନ୍ଦିରେର ଅଭ୍ୟନ୍ତରେ ପ୍ରବେଶ କରିତେ ନା ପାରିୟା, ସିଂହଦ୍ୱାରେର ବାହାରେ ଥାକିୟାଇ ସାଲବେଗ ପତିତପାବନ ଶ୍ରୀଜଗନ୍ନାଥକେ ସକାତରେ ଡାକିତେ ଥାକେନ । କଥିତ ହୟ, ତାଁ ଦ୍ୱାରା ଅତିକ୍ରନ୍ଦନେ ଆକୃଷ୍ଟ ହଇଆ ଶ୍ରୀଜଗନ୍ନାଥ ଦେବ ବଡ଼ଦେଉଳ ହଇତେ ସ୍ୱୟଂ ସିଂହଦ୍ୱାରେ ଉପନୀତ ହୟ ।''

ଶ୍ରୀ ବିଦ୍ୟାବିନୋଦଙ୍କ 'ଶ୍ରୀକ୍ଷେତ୍ର'ରୁ ଜଣାଯାଏ ଯେ ସାଲବେଗ ସଂସ୍କୃତରେ 'ପତିତପାବନାଷ୍ଟକ' ରଚନା କରିଥିଲେ ।

ପଣ୍ଡାମାନେ ସାଲବେଗଙ୍କୁ ଭିତରକୁ ଛାଡ଼ି ନ ଥିଲେ । ମାତ୍ର ରଥଯାତ୍ରା ସମୟରେ ଭକ୍ତକବିଙ୍କର ମନସ୍କାମନା ପୂର୍ଣ୍ଣ ହୋଇଛି । ନେତ୍ରୋତ୍ସବର ପରଦିନ ପହଣ୍ଡିବିଜେ ସମୟରେ ପ୍ରଭୁ ଜଗନ୍ନାଥଙ୍କ ମତ୍ତଗଜ ପ୍ରାୟ ଦୋଳାୟମାନ ଗତି ଦେଖି ସାଲବେଗ ତନ୍ମୟହୋଇ ଗାଇ ଉଠିଛନ୍ତି –

''ଅଣସର ଘରେ ଥିଲ ଆଜି ବାହାର ହୋଇଲ
ତ୍ରିଭଙ୍ଗୀ ଭଙ୍ଗୀ କରି ଚାହୁଁଛ ।
ଶ୍ରୀ ଭୁଜେ ଭୁଜପେଲି ମତ୍ତଗଜ ପ୍ରାୟ ଝୁଲି
ମହାପାତକ ମାନ ଦହୁଛ ।।

× × ×

କହେ ସାଲବେଗ ହୀନ ଏ ତ ଜଗମୋହନ
ଜଗମୋହନ ରୂପ ଧରିଛ ।''

୧୬୨୧–୨୨ ଖ୍ରୀଷ୍ଟାବ୍ଦରେ ନୂରଜାହାନଙ୍କ ଭାଇଙ୍କ ପୁତ୍ର ମିର୍ଜା ଅହମ୍ମଦ ବେଗ୍ ଓଡ଼ିଶାର ସୁବାଦାର ହେଲେ । ସେ ଅତି ହିନ୍ଦୁବିଦ୍ୱେଷୀ ଥିଲେ । ସେ ପୂର୍ବବର୍ତ୍ତୀ ସୁବାଦାରଙ୍କ ଭଳି ପୁରୀ ଆକ୍ରମଣ କଲେ । ଏଣୁ ପଣ୍ଡାମାନେ ବିଗ୍ରହମାନଙ୍କ ରକ୍ଷାପାଇଁ ଶଗଡ଼ରେ ବସାଇ ମଙ୍ଗଳା ନଦୀ ଘାଟରୁ ଜଳପଥରେ ଚିଲିକା ଭିତରର କୌଣସି ଅଜ୍ଞାତ ସ୍ଥାନକୁ ନେଇଗଲେ । ସାଲବେଗ ତାହା ସ୍ୱଚକ୍ଷୁରେ ଦେଖି ବ୍ୟଥିତ ହୋଇପଡ଼ିଥିଲେ । ସେ ଏହି ସମୟରେ ଜଣାଣ ରଚନା କରିଥିଲେ –

''କେଣେ ଘେନି ଯାଉଅଛ ଜଗନ୍ନାଥଙ୍କୁ
ଆମ୍ଭେ ଦର୍ଶନ କରିବୁ କାହାକୁ ?

× × ×

କୁଳବଧୂଙ୍କ ରଡ଼ି
ପଣ୍ଡାଏ ଗଡ଼ାଗଡ଼ି
ବିଧାତା ବାମ ହେଲା ଓଡ଼ିଶାକୁ ।''

ଜଗନ୍ନାଥଙ୍କ ଶ୍ରୀମୁଖରେ ଧୂଳି, ବାଲି ପଡୁଥିବାରୁ ସେ ଦୁଃଖ ପ୍ରକାଶ କରିଛନ୍ତି –

''ବଡ଼ ଦେଉଳୁ ବାହାରି
ଶଗଡ଼ିରେ ବିଜେ କରି
ରେଣୁ ଯେ ପଡୁଥିବ ଶ୍ରୀମୁଖକୁ ।''

ଶ୍ରୀଜଗନ୍ନାଥ ଦୂରକୁ ଯିବା ପରେ ନିର୍ମାଲ୍ୟ ସେବାରୁ ସେ ବଞ୍ଚିତ ହେବେ ଭାବି ନିଜ ଜୀବନକୁ ସେ ଧିକ୍କାର କରିଛନ୍ତି –

କହଇ ସାଲବେଗ
ନିର୍ମାଲ୍ୟ କାହିଁ ହେବ
ଧିକ ଧିକ ଆମ ଜୀବନକୁ ।''

## ବୃନ୍ଦାବନଧାମ ଯାତ୍ରା

ସାଲବେଗ ଶ୍ରୀକୃଷ୍ଣଙ୍କ ପରମ ଭକ୍ତ ଥିଲେ । ସେ ରୋଗାକ୍ରାନ୍ତ ହେବା ସମୟରେ ଶ୍ରୀକୃଷ୍ଣଙ୍କ ମୂର୍ତ୍ତି ଦେଖି ରୋଗମୁକ୍ତ ହୋଇଥିଲେ । ସେ ଜୀବନକାଳ ମଧ୍ୟରେ ଥରେ ବୃନ୍ଦାବନ ଯିବାକୁ ଆନ୍ତରିକ ଇଚ୍ଛା ପ୍ରକାଶ କରିଥିଲେ । ବୃନ୍ଦାବନ ଯାଇ ରାଧାକୁଣ୍ଡ ବା ଶ୍ୟାମକୁଣ୍ଡରେ ସ୍ନାନ କରିବା, ଯମୁନାର ଜଳପାନ କରିବା ବା ରାସସ୍ଥଳୀର ଧୂଳିରେ ଗଡ଼ି ଗଡ଼ି କଳେବରଙ୍କୁ ପବିତ୍ର କରିବାକୁ ଚାହିଁଥିଲେ । ସମ୍ପୂର୍ଣ୍ଣ ଆରୋଗ୍ୟ ହେବା ପୂର୍ବରୁ ସେ ଏହି ଜଣାଣଟି ରଚନା କରିଥିବା ସମ୍ଭବ –

''ଜୀବନରେ ଥିବି ଯେବେ ଯିବି ବୃନ୍ଦାବନ ।
ଦର୍ଶନ କରିବି ଯାଇ ଶ୍ରୀ ମଧୁସୂଦନ ।।
ରାଧାକୁଣ୍ଡେ ଶ୍ୟାମକୁଣ୍ଡେ କରିବି ସ୍ନାହାନ ।
ପରିକ୍ରମା କରୁଥିବି ଗିରି ଗୋବର୍ଦ୍ଧନ ।।''

ସାଲବେଗ ପୁରୀରେ କିଛି ଦିନ ରହିଥିଲେ । ସେଠାରେ ମହାପ୍ରଭୁଙ୍କ ରଥଯାତ୍ରା, ସ୍ନାନଯାତ୍ରା, ଚନ୍ଦନଯାତ୍ରା ସମୟରେ ମହାପ୍ରଭୁଙ୍କ ବାହାର ଦର୍ଶନ ପାଇଥିଲେ । ଏହାପରେ ସେ ଶ୍ରୀକୃଷ୍ଣଙ୍କ ଲୀଳାସ୍ଥଳୀ ବୃନ୍ଦାବନ ଧାମକୁ ପଦବ୍ରଜରେ

ଯାଇଥିଲେ । ସେଠାରେ ସେ ପ୍ରାୟ ଏକ ବର୍ଷ ରହିଥିଲେ । ଶ୍ରୀକୃଷ୍ଣଙ୍କ ଲୀଳା ବିଷୟରେ ସେ ସେଠାରେ ଭକ୍ତମାନଙ୍କଠାରୁ ଶ୍ରବଣ କରିଥିଲେ । ତାହା ଫଳରେ ଶ୍ରୀକୃଷ୍ଣଙ୍କ ପ୍ରତି ତାଙ୍କର ଅପାର ଭକ୍ତି ଜାତ ହୋଇଥିଲା । ସେ ବୃନ୍ଦାବନରୁ ଫେରି ଶ୍ରୀକୃଷ୍ଣଙ୍କ ବାଳଲୀଳା ଓ ରାସଲୀଳା ସମ୍ବନ୍ଧରେ କେତେଗୁଡ଼ିଏ ଭଜନ ଓ ଚଉପଦୀ ରଚନା କରିଥିଲେ । ସେଗୁଡ଼ିକ ମଧ୍ୟରେ 'ସୁନାପୁଅ ନାଚଇ'ରେ ଗୀତଟି ଅତି ପ୍ରାଣସ୍ପର୍ଶୀ –

''ସୁନାପୁଅ ନାଚଇରେ
ଖାଇବ ଲବଣି ସର ।
ନାହିଁ ନାହିଁ ବୋଲି ଶ୍ରୀମୁଖ ହଲାଇ
କହନ୍ତି କରୁଣାକର ।।
ସୁନା ତାଟିଆରେ ଗୋଟିକା ଅଧାମ
ସାଚିନି ନବାତ କ୍ଷୀର ।
ଖାଅ ବୋଲି ମାଏ ସରପୁଳି ଦେଇ
ଦିଅନ୍ତି ରଙ୍ଗା ଅଧର ।।''

କବି ଶ୍ରୀକୃଷ୍ଣଙ୍କ କିଶୋର ଲୀଳା ସମ୍ବନ୍ଧରେ ଭଜନ ରଚନା କରିଛନ୍ତି –

''ନବୀନ ନଟବର ମୂରତି ।
କୃଷ୍ଣଙ୍କୁ ଦେଖି କି ମୋ ବଳିଲା ମତି ।
କଦମ୍ବ ମୂଳରେ ହୋଇଛି ଉଭା ।
ଅଧରେ ମୁରଲୀ ପାଉଛି ଶୋଭା ।।
କାଳିଆ ଅଙ୍ଗରେ ଟୋପି ଚନ୍ଦନ ।
କଳାମେଘେ ଯେହ୍ନେ ପୂର୍ଣ୍ଣମୀ ଚନ୍ଦ୍ର ।
× × ×
କଟିତଳେ ଶୋହେ ପୀତ ବସନ ।
ନବଘନ କୋଳେ ବିଜୁଳି ଯେନ ।।''

ଯୁବକ ଶ୍ରୀକୃଷ୍ଣଙ୍କର ମନୋହର ରୂପରେ ଚନ୍ଦ୍ରାବଳୀ ମୁଗ୍ଧା ହୋଇ ଶ୍ରୀକୃଷ୍ଣଙ୍କ ପରିଚୟ ଜାଣିଥିଲେ ମଧ୍ୟ ଆଉ ଥରେ ଜାଣିବାର ଛଳନାକରି ଦୂତୀକୁ ଯାହା ପଚାରିଛନ୍ତି, ତାହା କବିଙ୍କ ଭାଷାରେ ପ୍ରକାଶ ପାଇଛି, ଯଥା –

''ସେତ ଚିକ୍‌କଣ କାଳିଆ କାହା ପୁଅ ଗୋ କହ କହ ।।
ସେତ କଦମ୍ବ ମୂଳିଆ କାହା ପୁଅ ଗୋ କହ କହ ।।
ସେତ କାଇଁଚ ମାଳିଆ କାହା ପୁଅ ଗୋ କହ କହ ।।

କଦମ୍ବ ମୂଳରେ କି ରୂପ ଦେଖିଲି ଚାହିଁ
ଚମକି ପଡ଼ିଲି ମୁହିଁ ।।
ଗୋ କହ କହ !''

ଶ୍ରୀକୃଷ୍ଣ ଓ ରାଧାଙ୍କର ପ୍ରେମକୁ ନେଇ ବହୁ ଜଣାଣ ଭକ୍ତକବି ରଚନା କରିଛନ୍ତି । ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନରେ ଗୋପୀମାନେ ଅଧୀର ହୋଇପଡ଼ିଲେ । ଶ୍ରୀରାଧା ମଧ୍ୟ ଶ୍ରୀକୃଷ୍ଣଙ୍କ ବଂଶୀସ୍ୱନରେ ଆତ୍ମହରା ହୋଇପଡ଼ିଲେ, ଯଥା –

''ଯାଅ ତୁମ୍ଭେ ନନ୍ଦ କହ୍ନାଇ ।
ମୋ ଆଗେ ମୁରଲୀ ବାଇଦ ନାହିଁ ।।
ଶିରରେ ତୁମ୍ଭର ମୟୂର ପୁଛ ।
ବାମେ ଆଉଜାଇ ବାନ୍ଧିବ ନାହିଁ ।।
ବାମେ ଆଉ ଜାଇ ବାନ୍ଧିବ ଯେମନ୍ତେ ।
ପୁଞ୍ଜା ପୁଞ୍ଜା ମଲ୍ଲୀ ଖଞ୍ଜିବ ନାହିଁ ।।''

ଶ୍ରୀକୃଷ୍ଣ ରାଧାଙ୍କ ମାନ ଅଭିମାନ, କେଳି କଉତୁକକୁ ନେଇ କବି ବହୁ କବିତାମାନ ରଚନା କରିଛନ୍ତି ।

ପ୍ରଭୁଙ୍କ ଲୀଳାସ୍ଥଳୀ ବୃନ୍ଦାବନ ଧାମରେ ସାଲବେଗ ଏକ ବର୍ଷ କଟାଇଥିଲେ । ସେ ଗୁଣ୍ଡିଚା ଯାତ୍ରା ବେଳକୁ ଶ୍ରୀକ୍ଷେତ୍ରକୁ ଫେରିଆସିବାକୁ ଚାହିଁଥିଲେ । ମାତ୍ର ପାଦରେ ଆସୁ ଆସୁ ବାଟରେ ଅସୁସ୍ଥ ହୋଇପଡ଼ିଲେ । ରଥଯାତ୍ରା ବେଳକୁ ପୁରୀରେ ଉପସ୍ଥିତ ହେବାର ଆଶା ନ ଥିଲା । କଥିତଅଛି ଯେ ପଥ ମଧ୍ୟରେ ଭକ୍ତ ସାଲବେଗ କାତର କଣ୍ଠରେ ପ୍ରଭୁଙ୍କୁ ଡାକିଲେ । ସେ ଯିବାଯାଏଁ ନନ୍ଦିଘୋଷରେ ଥିବେ ବୋଲି ନିବେଦନ କଲେ –

''ଜଗବନ୍ଧୁ ହେ ଗୋସାଇଁ !
ତୁମ୍ଭ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ।।
ସାତ ଶହ ପଞ୍ଚାଶ କୋଶ ଦିଗ ଦିଶୁ ନାହିଁ ।
ମୋହ ଯିବାଯାଏ ନନ୍ଦିଘୋଷେ ଥିବ ରହି।।

କଥିତଅଛି ଯେ ବଡ଼ଦାଣ୍ଡରେ ବଳଗଣ୍ଡିଠାରେ ଶ୍ରୀଜଗନ୍ନାଥଙ୍କ ରଥ ଅଟକି ରହିଲା । ଶହେଟି ହାତୀ ଆସି ଟାଣିଲେ ମଧ୍ୟ ରଥ ଚାଲିଲା ନାହିଁ । ଭକ୍ତପ୍ରବର ସାଲବେଗ ପୁରୀରେ ପହଞ୍ଚି ରଥରେ ଜଗନ୍ନାଥଙ୍କୁ ଦର୍ଶନ କରନ୍ତେ ରଥ ଚାଲିଲା ।

ଏ ଘଟଣା ପରେ ଗଜପତି ନରସିଂହଦେବ ସାଲବେଗଙ୍କୁ ଜଗନ୍ନାଥଙ୍କ ଅଦ୍ୱିତୀୟ ଭକ୍ତ ଭାବେ ସ୍ୱୀକାର କଲେ । ଶ୍ରୀମନ୍ଦିରରେ ମଧ୍ୟ ପ୍ରବେଶ ଅଧିକାର ଦେବାପାଇଁ ସ୍ଥିର କଲେ । ମାତ୍ର ମୁକ୍ତିମଣ୍ଡପ ଏଥିରେ ସମ୍ମତ ହେଲେ ନାହିଁ ।

ଭକ୍ତଶ୍ରେଷ୍ଠଙ୍କ ମନୋବଳ କିନ୍ତୁ ଏଥିରେ ଭାଙ୍ଗି ପଡ଼ି ନ ଥିଲା । ସେ ଦେଉଳ ଦ୍ୱାର ଦେଶରେ ରହି ପୂର୍ବଭଳି ଭଜନ କୀର୍ତ୍ତନ କରିବାକୁ ଲାଗିଲେ ।

ଏବେବି ରଥଯାତ୍ରା ସମୟରେ ନନ୍ଦିଘୋଷ ରଥ ସାଲବେଗଙ୍କ ସମାଧି ନିକଟରେ ଅଟକୁଛି । ଆଲୋଚକ ମିଶ୍ରଙ୍କ ଭାଷାରେ – "××× ଆଜକୁ ପ୍ରାୟ ଅଢ଼େଇ ଶହ ବର୍ଷ ତଳେ ନନ୍ଦିଘୋଷ ରହିଥିବାରୁ ଅଦ୍ୟାପି ଶ୍ରୀଜଗନ୍ନାଥଙ୍କ ରଥ ସେଠାରେ ଅଟକି ସାଲବେଗଙ୍କ ସ୍ମୃତିକୁ ଜାଗ୍ରତ କରାଉଛି ।"

ପରିଣତ ବୟସରେ କବି ବ୍ରହ୍ମଜ୍ଞାନ ଭଜନ ରଚନା ଦିଗରେ ମନ ଦେଲେ । ଏହା ପୂର୍ବରୁ ଅବଶ୍ୟ ଗୋରେଖନାଥ, ଅଚ୍ୟୁତାନନ୍ଦ ପ୍ରଭୃତି ଏପରି ଭଜନ ରଚନା କରିଥିଲେ । ସାଲବେଗ ଦୁର୍ବୋଧ୍ୟ ବ୍ରହ୍ମତତ୍ତ୍ୱଗୁଡ଼ିକୁ ଅତି ସହଜ ଓ ସରଳ ଉପାୟରେ ବୁଝାଇଛନ୍ତି । ତାହାଙ୍କ 'ଅଣାକାର ଭଜନ' ମଧ୍ୟରୁ କାହିଁକି ଆସିଲୁ ମନ କିସ ନେବାପାଇଁରେ ଅତ୍ୟନ୍ତ ଲୋକପ୍ରିୟ । ଗୋଟିଏ ଉଦାହରଣ –

"କାହିଁକି ଆସିଲୁ ମନ କିସ ନେବାପାଇଁ ତ !
ଆସିଲୁ ଲଙ୍ଗଳା ହୋଇ ଯିବୁ ଶୂନ୍ୟ ହୋଇ ତ !
ମାଟି ଘଟ ପଞ୍ଜୁରିରେ ସୁବର୍ଣ୍ଣ ଘଟ ଶୁଆ ତ !
ଅଠା କାଠି ଲଗାଇଛି ଭାବ ବିନୋଦିଆ ତ !

× × ×

ଭାଇବୋଲ ବନ୍ଧୁବୋଲ ସମ୍ପତ୍ତିର ସାଥିତ !
ମିଳିଣ ଭାଇ ବାନ୍ଧିବେ ନେବେଟି ଶ୍ମଶାନେ ତ !
ବନସ୍ତରୁ କାଠଆଣି ଲଗାଇବେ ଜୁଇ ତ !
ପିଙ୍ଗିବେ ହାଣ୍ଡି କୁଣ୍ଡେଇ ସିଞ୍ଚିବେ ଗୋମୟ ତ !

× × ×

ଏ ଜୀବନେ ନାହିଁ ଆଶା ହରିହର ବୋଲ ତ !"

ଅର୍ଥାତ୍ ମଣିଷ ଏ ସଂସାରରେ ଆସିଲାବେଳେ ସାଙ୍ଗରେ କିଛି ଆଣି ନ ଥାଏ । ଗଲାବେଳେ କିଛି ନେଇଯାଏ ନାହିଁ । ଜୀବନକାଳ ମଧ୍ୟରେ ନାନାପ୍ରକାର ଲୋଭରେ ପଡ଼ି ଛଟପଟ ହେଉଥାଏ । ହରିଙ୍କ ନାମ ଧରିଲେ ଏଥିରୁ କେବଳ ମୁକ୍ତି ପାଇପାରିବ ।

**ଶେଷ ଜୀବନ**

ଶେଷ ଜୀବନରେ ସାଲବେଗ ଶ୍ରୀକ୍ଷେତ୍ରରେ ବାସକରି ପ୍ରଭୁଙ୍କ ଛଡ଼ାତୁଳସୀ ପ୍ରସାଦ ପାଇ ଶ୍ରୀକ୍ଷେତ୍ରବାସୀ ରୂପେ ପରିଚିତ ହେବାକୁ ଚାହିଁଛନ୍ତି । ସେ ତାହା ଏକ ଭଜନରେ ବ୍ୟକ୍ତ କରିଛନ୍ତି, ଯଥା –

"ଶ୍ରୀ ପୁରୁଷୋତ୍ତମ ରହଣି କରିବା ·
ଖାଇବା ଛଡ଼ାତୁଳସୀ
କହେ ସାଲବେଗ ସିଂହଦ୍ୱାରଠାରେ
ହୋଇଥିବା କ୍ଷେତ୍ରବାସୀ ।"

ସେ ବଳଗଣ୍ଡିଠାରେ ଛତାମଠ ସ୍ଥାପନ କରିଥିଲେ – ଯେଉଁଠାରେ କି ଶ୍ରୀଜଗନ୍ନାଥଙ୍କ ରଥ ଅଟକିଥିଲା – ସେହିଠାରେ ଆସନ ପକାଇ ସାଲବେଗ ମୃତ୍ୟୁପର୍ଯ୍ୟନ୍ତ ଭଜନ କୀର୍ତ୍ତନରେ ଲାଗିପଡ଼ିଲେ ।

ଗବେଷକ ସୁନ୍ଦରରାଜ ବିଦ୍ୟାବିନୋଦ ଏକ କିମ୍ବଦନ୍ତୀ ଉଦ୍ଧାର କରି କହିଛନ୍ତି ଯେ ସାଲବେଗ ଛତାମଠରେ ରହିଥିବାବେଳେ ତାଙ୍କ ମା' ଲଳିତା ପୁରୀରେ ଶେଷ ଜୀବନ କଟାଇବାକୁ ଆସିଥିଲେ । ମାତା ଓ ପୁତ୍ରଙ୍କ ସାକ୍ଷାତ୍ ହେଲା । ଶ୍ରୀକ୍ଷେତ୍ରରେ ତାଙ୍କ ମାତା ଶେଷନିଶ୍ୱାସ ତ୍ୟାଗ କଲେ । ମାତାଙ୍କ ଇଚ୍ଛା ଅନୁଯାୟୀ ସାଲବେଗ ତାଙ୍କୁ ସ୍ୱର୍ଗଦ୍ୱାରରେ ହିନ୍ଦୁଧର୍ମ ଅନୁସାରେ ସତ୍କାର କରିଥିଲେ । ଏଥିରେ ପୁରୀର ରକ୍ଷଣଶୀଳ ବ୍ରାହ୍ମଣମାନେ କ୍ରୋଧାନ୍ୱିତ ହୋଇପଡ଼ିଥିଲେ । ସାଲବେଗଙ୍କୁ ସେଥିପାଇଁ ଲାଞ୍ଛିତ ହେବାକୁ ପଡ଼ିଥିଲା ।

ସାଲବେଗଙ୍କ ମୃତ୍ୟୁ ସମ୍ବନ୍ଧରେ ଏକାଧିକ କିମ୍ବଦନ୍ତୀ ଅଛି । କେତେକଙ୍କ ମତରେ ତାଙ୍କର ମରଶରୀରକୁ ସ୍ୱର୍ଗଦ୍ୱାରରେ ସତ୍କାର କରାଯାଇଥିଲା । ଆଉ କେତେକଙ୍କ ମତରେ ପୁରୀ ବଡ଼ଦାଣ୍ଡରେ ଭକ୍ତମାନେ ତାଙ୍କୁ ସମାଧି ଦେଇଥିଲେ । 'ଶ୍ରୀକ୍ଷେତ୍ର' ପୁସ୍ତକରୁ ଜଣାଯାଏ ଯେ ସମାଧି ପୀଠ ଉପରେ କୌଣସି ମନ୍ଦିର ନ ଥିଲା । ପରେ ବାଲେଶ୍ୱରର ଭାସ୍କର ପାତ୍ର ନାମକ ଜଣେ ଜମିଦାର ତାହା ଉପରେ ଏକ ମନ୍ଦିର ନିର୍ମାଣ କଲେ । ଆଉ କେତେକଙ୍କ ମତରେ ସାଲବେଗଙ୍କ ମରଶରୀର ସନ୍ଥ କବିରଙ୍କ ଭଳି ପୁଷ୍ପ ପାଲଟିଯାଇଥିଲା ।

ସାଲବେଗ ଶ୍ରୀକୃଷ୍ଣ, ରାମ, ମଙ୍ଗଳା ବା ଗଙ୍ଗାଦେବୀଙ୍କର ଭଜନ ମଧ୍ୟ ରଚନା କରିଛନ୍ତି । ମାତ୍ର ଜଗନ୍ନାଥଙ୍କ ପାଖେ ସେ ତାଙ୍କର ଆବେଗପୂର୍ଣ୍ଣ ଭକ୍ତିଅର୍ଘ୍ୟ ବାଢ଼ି ଦେଇଛନ୍ତି । ସରଳ ସାବଲୀଳ ଭାଷାରେ ତାଙ୍କ ଉଦ୍ଦେଶ୍ୟରେ ରଚିତ ହୃଦୟସ୍ପର୍ଶୀ ଭଜନଗୁଡ଼ିକ ଶ୍ରୀଜଗନ୍ନାଥ ଭକ୍ତି ରସାମୃତର ଆକର୍ଷଣୀୟ ଅଂଶ ହୋଇ ରହିଅଛି ।



# କନ୍ଧ କବି
# ଭୀମଭୋଇ

ଜୈନଧର୍ମ, ବୌଦ୍ଧଧର୍ମ, ଶୈବଧର୍ମ ଓ ବୈଷ୍ଣବଧର୍ମ ପରି ଅନ୍ୟ ଯେଉଁ ଧର୍ମର ଅଭ୍ୟୁଦୟ ଓଡ଼ିଶାରେ ହୋଇଥିଲା ଓ ଯାହା ଓଡ଼ିଶାର ସାହିତ୍ୟ ଓ ଜୀବନକୁ ପ୍ରଭାବିତ କରିଥିଲା, ତାହା ହେଉଛି ମହିମାଧର୍ମ ବା ଅଲେଖଧର୍ମ । ସମାଜରେ ପ୍ରଚଳିତ ଜାତିଭେଦ, ପ୍ରତିମାପୂଜା, ତେତିଶକୋଟି ଦେବଦେବୀଙ୍କ କଳ୍ପନା, ଆରାଧନା ଓ ବାହ୍ୟ ଆଡ଼ମ୍ବରକୁ ଏହା ପ୍ରତ୍ୟାଖ୍ୟାନ କରିଥିଲା । ଏହି ଧର୍ମର ପୁରୋଧା ଥିଲେ ଓଡ଼ିଶାର ମହିମାସ୍ୱାମୀ ଓ ତଦୀୟ ଗୃହୀ ଶିଷ୍ୟ ଅନ୍ଧ କବି ଭୀମଭୋଇ । ବୌଦ୍ଧଧର୍ମର ନାଗାର୍ଜୁନ, ଖ୍ରୀଷ୍ଟଧର୍ମର ସେଣ୍ଟ ପଲ୍ ଓ ବ୍ରାହ୍ମସମାଜର କେଶବଚନ୍ଦ୍ର ସେନଙ୍କ ପରି ମହିମାଧର୍ମରେ ଭୀମଭୋଇଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

## ରାଧା ଅବତାର

ପଞ୍ଚସଖା ଯୁଗର ପରମ ସାଧକ ଅଚ୍ୟୁତାନନ୍ଦ ଦାସ ତାଙ୍କର ସଂହିତାମାନଙ୍କରେ ଲେଖିଛନ୍ତି ଯେ ନିତ୍ୟସ୍ଥଳୀର ରାଧା ମାନବରୂପ ଧାରଣ କରି କନ୍ଧ ଗୃହରେ ଜନ୍ମ ଗ୍ରହଣ କରିବେ । ଅଚ୍ୟୁତାନନ୍ଦଙ୍କ 'କଳ୍ପସଂହିତା'ରେ ଏହାର ବର୍ଣ୍ଣନା ଅଛି, ଯଥା –

''ଭୂମି ଏକାନ୍ତ ଗ୍ରାମ ପୁରେ । ଯେ ଜମ୍ବୁଦ୍ୱୀପ ଧରିତ୍ରୀରେ ॥
ଯେ ନିତ୍ୟେ ରାଧା ମୋ ଭଗତ । ସେ ମର୍ତ୍ତ୍ୟେ ହୋଇଥିବ ଜାତ ॥
ତା' ଦ୍ୱାରେ ପ୍ରବେଶିବୁ ଯାଇ । ତା' ନାମ ଅଟେ ଭୀମଭୋଇ ॥''

ଏହାଛଡ଼ା 'ଆଦି ସଂହିତା', 'ନିର୍ଗୁଣ ସଂହିତା', 'ପରଂବ୍ରହ୍ମ ସଂହିତା' ଓ 'ମହାଶୂନ୍ୟ ସଂହିତା'ରେ ରାଧା ଭୀମଭୋଇ ରୂପେ ଅବତୀର୍ଣ୍ଣ ହେବା ଉଲ୍ଲେଖ ଅଛି ।

ଶ୍ରୀଧର ଦାସଙ୍କ 'ସିଦ୍ଧଚନ୍ଦ୍ରିକା'ରେ ଭୀମଭୋଇ ରାଧିକା ରୂପରେ ବର୍ଣ୍ଣିତ ।

ଏହି ପୋଥିରେ ମହାପ୍ରଭୁ ଜଗନ୍ନାଥ ଗରୁଡ଼ଙ୍କୁ କହିଛନ୍ତି -

''ବଉଦ ରେଢ଼ାଖୋଲଠାରେ । ପ୍ରଭୁ ବିଜୟ ଏକାନ୍ତରେ ॥
କନ୍ଧ ଅଂଶରେ ଜନ୍ମହୋଇ । ନିଜେ ରାଧିକା ଥିବ ତହିଁ ॥
ଫୁଲିଙ୍ଗେ ହୋଇଥିବ ଜାତ । ଜନ୍ମରୁ ତା' ନେତ୍ର ମୁଦ୍ରିତ ॥''

ମହିମା ଗୋସାଇଁ 'ଚଉତିଶା ମଧୁଚକ୍ର'ରେ ଭୀମଭୋଇଙ୍କୁ 'ରାଧା' ବୋଲି ସମ୍ବୋଧନ କରିଥିବାର ଜଣାଯାଏ, ଯଥା –

''ସରିଲାଣି ଆସି ପୃଥୀ ଜପତପ
ସାଧ୍ୟ ହୋଇବ ଏ ମହୀ
ଶରଣ ସମ୍ଭାଳି ଭକ୍ତଙ୍କୁ ରଖିଚି
ଚିହ୍ନି ନ ପାରିବେ କେହି
ହେ ରାଧା !''

ଭୀମଭୋଇ ମଧ ନିଜକୁ ନାରୀ ବୋଲି ବର୍ଣ୍ଣନା କରିଛନ୍ତି –

''ମୁଁ ଯେ ନବୀନ ନାରୀ, ବହୁତ ଆଶା କରି
ଛାମୁଙ୍କୁ ଅନୁସରି, ବଞ୍ଚିବଇଁ କିପରି ।''

ଭୀମଭୋଇ ନିଜ ଇଚ୍ଛାରେ ସମୟ ସମୟରେ ନାରୀ ରୂପ ଧାରଣ କରୁଥିବା ଅଧାପକ ଶତ୍ରୁଘ୍ନ ନାଥ ତାଙ୍କର 'ଭକ୍ତକବି ଭୀମଭୋଇ' ପୁସ୍ତିକାରେ ଉଲ୍ଲେଖ କରିଛନ୍ତି ।

ଥରେ ବାବା ଗଙ୍ଗାଧର ଦାସ ଭୀମଭୋଇଙ୍କୁ ନିଜର ସ୍ୱରୂପ ଦେଖାଇବାକୁ କହିଲେ । ଭୀମଭୋଇ ତାଙ୍କୁ ନିକଟବର୍ତ୍ତୀ ଜଙ୍ଗଲକୁ ନେଲେ ଓ ସେଠାରେ ଅଦ୍ଭୁତ ନାରୀ ରୂପ ଧାରଣ କଲେ । କିଛି କ୍ଷଣ ପରେ ତାଙ୍କର ପୂର୍ବ ରୂପ ଫେରିଆସିଲା । ସେ ମଧ କେତେକ ବାବାଙ୍କୁ ନାରୀରୂପ ଦେଖାଇ ଭୟଭୀତ କରିଥିବାର ଜଣାଯାଏ । ଶତ୍ରୁଘ୍ନ ନାଥ ପୁଣି ଲେଖିଛନ୍ତି –

''ଭୀମଙ୍କର ଏହି ନାରୀ ରୂପ ସମ୍ପର୍କରେ ପ୍ରମାଣ ପରବର୍ତ୍ତୀ ଲେଖକମାନଙ୍କ ଲେଖାରୁ ମଧ୍ୟ ମିଳେ । ସେମାନେ ତାଙ୍କୁ ମହାନିତ୍ୟ ରାଧା ବୋଲି ବର୍ଣ୍ଣନା କରିଛନ୍ତି ।'' 'ସ୍ତୁତି ଚିନ୍ତାମଣି' ପୁସ୍ତକର ମୁଖବନ୍ଧରେ ଅଧ୍ୟାପକ ଡଃ ଆର୍ତ୍ତବଲ୍ଲଭ ମହାନ୍ତି ମଧ୍ୟ ଏହା ପ୍ରକାଶ କରିଛନ୍ତି ।

## ଅଯୋନିସଂଭୂତ ?

ଭୀମଭୋଇଙ୍କୁ ତାଙ୍କର ଅନୁଗାମୀ ଭକ୍ତମଣ୍ଡଳୀ ଅଯୋନିସଂଭୂତ ବୋଲି କହିଥାନ୍ତି । ସେମାନେ ବିଶ୍ୱାସ କରନ୍ତି ଯେ ଭୀମଭୋଇ ସ୍ୱୟଂ ଭଗବାନ୍‌ଙ୍କ ଅବତାର ରୂପରେ ଜନ୍ମଗ୍ରହଣ କରିଥିଲେ ଓ ଅଲେଖ ହିଁ ତାଙ୍କର ପିତା ।

ସ୍ୱରଚିତ 'ସ୍ତୁତି ଚିନ୍ତାମଣି'ରେ ଭୀମ ଭୋଇ ମଧ୍ୟ ଏହାର ସୂଚନା ଦେଇଛନ୍ତି –

''ପିତା ଅଟନ୍ତି ମୋ ଅନାଦି ଠାକୁର
ମାତା ଆଦିଶକ୍ତି ନାରୀ
ଦୂତୀ ଯୁଗଳରୁ ଜନମ ଲଭିଛି
କବିକୃତ କଳା ଧରି ।''

ଅଥବା ''ଘର ଦ୍ୱାର ଇଷ୍ଟ ବନ୍ଧୁବର୍ଗ ଛାଡ଼ି
ବ୍ରହ୍ମାଣ୍ଡେ ବୁଲୁଛି ।
ମୋହର ପିତା ରହିଲା ଜଗତେ
ଖେଳ କରୁଅଛି ବସି ।''

'ଅନାଦି ସଂହିତା'ରେ ମଧ୍ୟ ଅଚ୍ୟୁତାନନ୍ଦ ଏହା ପ୍ରକାଶ କରିଛନ୍ତି –

''ଶୁଣଗୋ ସିଦ୍ଧଙ୍କ ବନିତା । ସେ ଭୀମସେନର କଥା ।।
ପୂର୍ବେ ସେ ମହାଶୂନ୍ୟ ବାସୀ । ରାଧାଙ୍କ ଯେ ଅରୂପ ଅଂଶୀ ।।
× × ×
ସେ ଭୀମ ହୋଇଲେ ସମ୍ଭୂତା । ଏ କଳି ଯୁଗେ ଶୁଣ ମିତ ।।
ଏ ମହାନିତ୍ୟ ସ୍ଥଳବାସୀ । କନ୍ଧକୁଳରେ ପରକାଶି ।।''

## ସମୟ

ଆଲୋଚକ ଭାଗୀରଥି ନେପାକଙ୍କ ମତରେ ଭୀମଭୋଇ ୧୮୫୦ ଖ୍ରୀଷ୍ଟାବ୍ଦ ବୈଶାଖ ପୂର୍ଣ୍ଣମୀ ଦିନ ରେଢ଼ାଖୋଲର ଜଟାସିଙ୍ଗା ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଆଉ ଜଣେ ଆଲୋଚକ ସୀତାକାନ୍ତ ମହାପାତ୍ର ଭୀମଭୋଇ ଶୀର୍ଷକ ଇଂରେଜୀ ପ୍ରବନ୍ଧରେ ଏହା ୧୮୪୬ରୁ ୧୮୫୦ ମସିହା ମଧ୍ୟରେ ବୋଲି କହିଛନ୍ତି । ମାତ୍ର ବିଶିଷ୍ଟ ଗବେଷକ ଆର୍ତ୍ତବଲ୍ଲଭ ମହାନ୍ତି 'ସ୍ତୁତି ଚିନ୍ତାମଣି' ପୁସ୍ତକର ମୁଖବନ୍ଧରେ ଭୀମଭୋଇ ୧୮୫୫ ଖ୍ରୀଷ୍ଟାବ୍ଦରେ ରେଢ଼ାଖୋଲରେ ଜନ୍ମ ହୋଇଥିଲେ ବୋଲି

ମତ ଦେଇଛନ୍ତି । ଡଃ କାହ୍ନୁଚରଣ ମିଶ୍ର ଓ ବିଶିଷ୍ଟ ସାହିତ୍ୟିକ ମାୟାଧର ମାନସିଂହ ମଧ୍ୟ ତାଙ୍କର ଜନ୍ମ ସମୟ ୧୮୫୫ ଖ୍ରୀଷ୍ଟାବ୍ଦ ବୋଲି ନିର୍ଦ୍ଧାରଣ କରିଛନ୍ତି । ଏହା ଅନେକଙ୍କଦ୍ୱାରା ଗୃହୀତ ହୋଇଅଛି ।

**ସ୍ଥାନ ଓ ପରିଚୟ**

କେତେକ ତାଙ୍କର ଜନ୍ମସ୍ଥାନ ଗ୍ରାମଡିହା କହୁଥିଲାବେଳେ ଆଉ କେତେକ ଆଲୋଚକ ତାହା ରେଢ଼ାଖୋଲର କାଙ୍କଣପଡ଼ା ବୋଲି କହନ୍ତି । ଅନ୍ୟ ଏକ ମତରେ ବୌଦ ସବ୍‌ଡିଭିଜନର ଲଣ୍ଡାର ଗ୍ରାମରେ ତାଙ୍କର ପିତାମାତା ବାସ କରୁଥିଲେ । ପରେ ସେମାନେ ଜଟାସିଙ୍ଗା ପଳାଇ ଆସିଲେ । ତାଙ୍କର ପିତାମାତାଙ୍କ ପରିଚୟ ଏ ପର୍ଯ୍ୟନ୍ତ ମିଳି ନାହିଁ । କେହି ତାଙ୍କୁ ଜନ୍ମ ଦେଇ ଜଟାସିଙ୍ଗା ଗ୍ରାମରେ ଛାଡ଼ିଦେଇଥିବା ଅନୁମାନ କରାଯାଏ । ସେ ଯାହାହେଉ, ଜଟାସିଙ୍ଗା ଗ୍ରାମର ଏକ ତାଳବଣିଆ ଭିତରେ ସେ ଅସହାୟ ଭାବରେ ପଡ଼ିଥିଲେ । କନ୍ଧ ସମ୍ପ୍ରଦାୟର ଦନାଇ ଭୋଇ ଓ ଗୁରୁବାରୀ ଜଟାସିଙ୍ଗାର ଏକ ପୋଖରୀହୁଡ଼ା ବା ବନ୍ଧ ଆଡ଼ିରେ ଥିବା ତାଳବଣରେ ତାଙ୍କର କ୍ରନ୍ଦନ ଶୁଣିବାକୁ ପାଇ ତାଙ୍କୁ ଉଠାଇ ଆଣିଲେ । ଉକ୍ତ କନ୍ଧଦମ୍ପତି ନିଃସନ୍ତାନ ଥିଲେ । ତେଣୁ ସେମାନେ ତାଙ୍କୁ ନିଜ ପୁତ୍ର ଭଳି ପ୍ରତିପାଳନ କଲେ । ଏହି ବଂଶମର୍ଯ୍ୟାଦାହୀନ ପୁତ୍ରଟିର ଆଖି ପଡାଟି ଓଲଟି ପଡ଼ିଥିଲା । ଭୀମଭୋଇ ଥିଲେ ଜନ୍ମରୁ ଅନ୍ଧ ।

କିଛି କାଳ ପରେ ଦନେଇ ଭୋଇଙ୍କ ମୃତ୍ୟୁ ହେଲା । ପ୍ରଥା ଅନୁଯାୟୀ ଯୁବତୀ ଗୁରୁବାରୀ ଦନାଇଙ୍କ ସାନ ଭାଇ ଧନେଶ୍ୱରଙ୍କୁ ବିବାହ କଲେ । ଧନେଶ୍ୱର ରେଢ଼ାଖୋଲ ସବ୍‌ଡିଭିଜନର କନ୍ଧରା ଗ୍ରାମରେ କୃଷିକର୍ମ କରି ଜୀବିକା ନିର୍ବାହ କରୁଥିଲେ । ଗୁରୁବାରୀ ତେଣୁ ପାଳିତପୁତ୍ର ଭୀମଭୋଇଙ୍କୁ ଧରି କନ୍ଧରା ଗ୍ରାମକୁ ଆସିଲେ । ଭୀମଭୋଇ ବହୁ ଭଜନରେ ଧନଶ୍ୱେରଙ୍କ ପୁତ୍ର ବୋଲି ନିଜକୁ ବର୍ଣ୍ଣନା କରିଛନ୍ତି –

''ଆହାର ଝିଙ୍କନ୍ତେ ଲାଠିକି ଗିଳିଲା
ଧୀବରକୁ କଲା ଗ୍ରାସ
ବିଛି ପଞ୍ଚବାଣ ଭୀମ ଦୀନ
ଧନେଶ୍ୱର ହୋଇ ବସ ।''

ଆଉ ଏକ ଭଜନରେ ମଧ୍ୟ ଭୀମଭୋଇ ନିଜର ପିତାଙ୍କ ନାମ ଧନେଶ୍ୱର ବୋଲି କହିଛନ୍ତି –

''କୁଜ୍ଞାନୀ କି ବିଷ । ଭକ୍ତ ମାନଙ୍କୁ ରସ
ସୁଜ୍ଞାନୀକୁ ଅନୁଭବ । ଚିତ୍ତରେ ଦୃଶ୍ୟ ।
ଭଣେ ଭୀମ ଅକ୍ଷିତ । ସେ ଧନେଶର ସୁତ ।''

କନ୍ଧରା ଗ୍ରାମକୁ ଆସିଲାପରେ ଗୁରୁବାରୀ ଦୁଇଟି ସନ୍ତାନଙ୍କୁ ଜନ୍ମ ଦେଲେ । ସେ ତାଙ୍କର ସମସ୍ତ ସ୍ନେହ ଦୁଇ ସନ୍ତାନଙ୍କ ଉପରେ ଢାଳିଦେଲେ । ଏହାପରେ ପାଞ୍ଚ ବରଷର ବାଳକ ଭୀମଙ୍କୁ ହତାଦର କରିବାକୁ ଲାଗିଲେ । କ୍ରମେ ପିତାମାତାଙ୍କ ଅତ୍ୟାଚାର ଅସହ୍ୟ ହେଲା । ଭୀମ ତେଣୁ ଗୃହ ତ୍ୟାଗ କରିବାକୁ ବାଧ୍ୟ ହେଲେ ।

ଏହି ସମୟରେ ଭୀମଭୋଇଙ୍କୁ ଅତୀବ ଦୁଃଖକଷ୍ଟ ସହିବାକୁ ପଡ଼ିଲା । ସେ ତାଙ୍କର ହୃଦୟର ବେଦନାକୁ ଅତି ସୁନ୍ଦରଭାବେ ବର୍ଣ୍ଣନା କରିଛନ୍ତି –

"ବୁଲୁଥାଇ ବନେ ନିତି ପ୍ରତିଦିନେ
ବସ୍ତାକୁ ସଙ୍ଗତେ ଘେନି ।
କ୍ଷୁଧା ତୃଷ୍ଣା କଲେ ଜୀବନ ବିକଳେ
ପିଉଥାଇ ଝରିପାଣି ।

× × ×

ଲୁହ ନାହିଁ ରକ୍ତ ବହୁଥାଏ ମୋର
ଶ୍ରୀ ହସ୍ତେ ଦିଅଇ ପୋଛି
କେହି ନ ଜାଣନ୍ତି ଶ୍ରୀଗୁରୁ ଜାଣନ୍ତି
ଯେତେ କଷ୍ଟ ପାଇଅଛି ।"

ଜନ୍ମରୁ ଅନ୍ଧ ଥିବାରୁ ଓ ଅତୀବ ଦୁଃସ୍ଥ ଥିବାରୁ ଶିକ୍ଷାଲାଭ କରିବାର ସୁବିଧା ଭୀମଙ୍କ ଭାଗ୍ୟରେ ଜୁଟି ନ ଥିଲା । ସେ ବାର ବର୍ଷ ପର୍ଯ୍ୟନ୍ତ ବଣରେ ବୁଲି ଗାଈ ଚରାଉଥିଲେ । ସେ 'ସ୍ତୁତି ଚିନ୍ତାମଣି'ରେ ଏହା ଉଲ୍ଲେଖ କରିଛନ୍ତି –

"ସପ୍ତ ବରଷରୁ ଅଷ୍ଟମ ନବମ ଦଶମ ଏଗାର ହେଲା ।
ବାର ବରଷରୁ ବସ୍ତାଙ୍କ ସଙ୍ଗତେ ବନେ ବୁଲି ଦିନ ଗଲା ।"

ଏହି ସମୟରେ ଚୈତନ ପ୍ରଧାନ କାଙ୍କଣପଡ଼ାର ଗୌନ୍ତିଆ ଥିଲେ । ବାର ବର୍ଷ ବୟସ ହୋଇଥିଲାବେଳେ ଭୀମ ଚୈତନ୍ୟ ପ୍ରଧାନଙ୍କର 'କୁଠିଆ' ଭାବେ ନିଯୁକ୍ତ ହେଲେ । ଗାଈ ଜଗିବା ଓ ଧାନ କୁଟିବା ତାଙ୍କର ପ୍ରଧାନ କାମ ହେଲା ।

ଏହି ସମୟରେ ଭୀମଭୋଇଙ୍କର ଏକ ଦୁର୍ଘଟଣା ଘଟିଲା । ଦିନେ ସେ ଗାଈ ଚରାଇବାକୁ ଜଙ୍ଗଲକୁ ଯାଇଥିଲାବେଳେ ଆକସ୍ମିକଭାବେ ଗୋଟିଏ କୂଅ ଭିତରେ ପଡ଼ିଗଲେ । ନିର୍ଜନ ବନରେ କୂଅ ମଧ୍ୟରୁ ଉଦ୍ଧାର କରିବାକୁ କେହି ନ ଥିଲେ । ସେ ତିନି ଦିନ କାଳ କୂଅ ମଧ୍ୟରେ ପଡ଼ିରହିଲେ । ସେ ନିଜ ଜୀବନ ଉପରୁ ସମସ୍ତ ଆଶା ଛାଡ଼ିଦେଲେ । ସେ ଭଗବାନ୍‌ଙ୍କ ନାମ ନେଇ ମୃତ୍ୟୁକୁ ଅପେକ୍ଷା କରି ରହିଥାନ୍ତି, ଠିକ୍ ଏହି ସମୟରେ ମହିମାଧର୍ମ ପ୍ରଚାରପାଇଁ ସେହି ବାଟରେ ଗୁରୁ ମହିମାସ୍ୱାମୀ ଯାଉଥିଲେ । ସେ କୂଅରୁ ଭୀମଙ୍କୁ ଉଦ୍ଧାର କଲେ ।

ଭୀମଭୋଇ ମହିମାସ୍ୱାମୀଙ୍କୁ ଦଣ୍ଡବତ ହେଲେ । ମହିମାସ୍ୱାମୀ ତାଙ୍କ ମସ୍ତକରେ ହାତମାରି କଲ୍ୟାଣ କଲେ । ସେତେବେଳେ ତାଙ୍କର ପ୍ରଧାନ ଶିଷ୍ୟ ଗୋବିନ୍ଦ ଦାସ ଉପସ୍ଥିତ ଥିଲେ । ସେ ଭୀମଭୋଇଙ୍କୁ ଚିହ୍ନାଇ ଦେଲେ -

"ବୋଲନ୍ତି ଅନାଦି ପୁରୁଷ । ଏ ପରା ଜଗନ୍ନାଥ ଦାସ ।"

ଭୀମଭୋଇ ଦୀକ୍ଷା ନେବାକୁ ଚାହିଁଲେ -

"କର ଅଞ୍ଜଳି ଶିରେ ଦେଇ । ଛାମୁରେ ପୁଣି ପଚାରଇ
ଦୀକ୍ଷା ସମ୍ଭବେ ମହାଗାଢ଼ । ନିର୍ବେଦ କରୁଛନ୍ତି ଦୃଢ଼
ସ୍ୱରୂପ କେମନ୍ତେ ଜାଣିବା । ହେ ପ୍ରଭୁ ଆଜ୍ଞା ମତେ ଦେବା ।।"

କଥିତଅଛି ଯେ ମହିମା ଗୋସ୍ୱାମୀ ଗୋବିନ୍ଦବାବାଙ୍କ ସହ ରାତ୍ରିକାଳରେ ଭୀମଙ୍କ ଦ୍ୱାରରେ ଉପସ୍ଥିତ ହେଲେ । ଭୀମ ଅନ୍ଧ ଥିବାରୁ ସ୍ୱାମୀଙ୍କୁ ଦୃଷ୍ଟିଶକ୍ତି ଦେବାକୁ ଅନୁରୋଧ କଲେ । ସ୍ୱାମୀ ତଥାସ୍ତୁ କହିବା ଫଳରେ ଭୀମ ଦୃଷ୍ଟିଶକ୍ତି ଫେରିପାଇଲେ । ସ୍ୱାମୀଙ୍କର ଏହି ଅଲୌକିକ ମହିମାରେ ଭୀମ ଆନନ୍ଦ-ବିହ୍ୱଳ ହୋଇଉଠିଲେ । ସେ ଗୁରୁଙ୍କୁ ଦର୍ଶନ କରି ସାଷ୍ଟାଙ୍ଗ ପ୍ରଣିପାତ ହେଲେ । ସ୍ୱାମୀ ମଧ ମହିମା ଧର୍ମ ପ୍ରଚାରରେ ନିଜକୁ ନିୟୋଜିତ କରିବାକୁ ନିର୍ଦ୍ଦେଶ ଦେଲେ । ଭୀମ ମହିମା ଗୋସ୍ୱାମୀଙ୍କୁ ଦର୍ଶନ କରି କୃତକୃତ୍ୟ ହେଲେ । ପୁଣି ସାଂସାରିକ ପଦାର୍ଥ ଦର୍ଶନ ନ କରିବାକୁ ଆଦେଶ ଦେବାକୁ ଅନୁରୋଧ କଲେ । ଦୀକ୍ଷା ଗ୍ରହଣ ପରେ ଭୀମ ଅନ୍ଧତ୍ୱ ବରଣ କଲେ ।

ସ୍ୱାମୀଙ୍କୁ ବିଦାୟ ଦେବା ବେଳରେ ଭୀମଭୋଇଙ୍କ ମୁଖରୁ ନିଃସୃତ ହେଲା -

"ବନ୍ଦନା ପାଦପଦ୍ମକୁ
ଧ୍ୟାୟୀ ଗୁରୁ ପୟରକୁ .... ।"

ଏହି କବିତା ମହିମା ଧର୍ମର ଆଦ୍ୟ କବିତା ଭାବେ ଖ୍ୟାତ ।

ଭୀମଭୋଇଙ୍କ କବିତ୍ୱ ଗୁରୁ ଆଶୀର୍ବାଦରୁ ଯେ ସମ୍ଭବ ହେଲା, ଏହା ଅତି ସ୍ପଷ୍ଟ । ଭୀମ ଅପଣ୍ଡିତ ଥିଲେ ବୋଲି ନିଜେ ସ୍ୱୀକାର କରିଛନ୍ତି -

"ଜନମ କାଳରୁ ମୂର୍ଖ ମୁଁ ହୋଇଥିଲି
ଷୋଳ ବରଷକେ କବି ମୁଁ କୃତ୍ୟ କଲି
ବେଦଶାସ୍ତ୍ର ବୋଲି କିଛି ମୁଁ ଜାଣେ ନାହିଁ
ଗୁରୁ ହୃଦ ପଦ୍ମେ ବସି ଯେ ଦେଲେ କହି ।"

ପୁଣି -

"ଯେତେବେଳେ କହିଯେ ଦିଅନ୍ତି ଭେଦ
ତେଣୁ ସେ ଯୋଡ଼ଇ କବି ଯେ କୃତ୍ୟ ପଦ ।"

ଗୁରୁଙ୍କ ଆଶୀର୍ବାଦ ଓ ଉତ୍ସାହ ଲାଭ କରି ଭୀମଭୋଇ ରଚନା କଲେ ରାଶି ରାଶି ଭଜନ, ଚଉପଦୀ ଓ ଚଉତିଶା । ନିଜେ ସ୍ୱଳ୍ପ ଶିକ୍ଷିତ ଥିଲେ ମଧ୍ୟ ଅଲେଖ ବ୍ରହ୍ମ ସମ୍ପର୍କୀୟ ଦର୍ଶନ, ତଥ୍ୟ ଓ ତତ୍ତ୍ୱକୁ ସାଧାରଣ ଲୌକିକ ଭାଷାରେ ଯେପରି ବ୍ୟାଖ୍ୟା କଲେ, ତାହା ହେଲା ଅନନ୍ୟ ସାଧାରଣ ।

ମହିମାସ୍ୱାମୀ ଭୀମଙ୍କ ରଚନା ସମୂହକୁ ଲିପିବଦ୍ଧ କରିବାପାଇଁ ଦୁଇ ଜଣ ଶିକ୍ଷିତ ବ୍ୟକ୍ତିଙ୍କୁ ପଠାଇଲେ । ସେମାନେ ହେଲେ ହରି ପଣ୍ଡା ଓ ବାସୁଦେବ ପଣ୍ଡା । ସେମାନେ ପ୍ରତ୍ୟେହ ତାଙ୍କ ପାଖକୁ ଆସି ତାଳପତ୍ରରେ ଟିପି ନେଉଥିଲେ । ଭୀମ ମଧ୍ୟ ସେଗୁଡ଼ିକୁ ଗୁରୁଙ୍କ ପାଖକୁ ପଠାଇ ଦେଉଥିଲେ ।

ଭୀମଭୋଇ ଥିଲେ ସ୍ୱଭାବସିଦ୍ଧ କବି । ସାହିତ୍ୟ ସୃଷ୍ଟି ତାଙ୍କର ଲକ୍ଷ୍ୟ ନ ଥିଲା । ତାଙ୍କ ରଚନାରେ ରୀତିଯୁଗୀୟ ଶବ୍ଦ କସରତ, ଭାଷା ଓ ଅଳଙ୍କାରର ଆଡ଼ମ୍ବର ତଥା ପାଣ୍ଡିତ୍ୟ ଦେଖାଯାଏ ନାହିଁ । ଧର୍ମର ପ୍ରଚାର ନିମନ୍ତେ ସେ ଗୀତ ରଚନା କରୁଥିଲେ । ତାଙ୍କ ରଚନାବଳୀ ପୁରପଲ୍ଲୀର ସରଳ ନିରକ୍ଷର ଲୋକଙ୍କପାଇଁ ଉଦ୍ଦିଷ୍ଟ ଥିଲା ।

## ସ୍ତୁତି ଚିନ୍ତାମଣି

ଭୀମଭୋଇଙ୍କ ରଚନାବଳୀ ମଧ୍ୟରେ ଏହି ଗ୍ରନ୍ଥଟି ସର୍ବଶ୍ରେଷ୍ଠ । ଏଥିରେ ଏକ ଶହ 'ବୋଲି' ବା ଅଧ୍ୟାୟ ଅଛି । ପ୍ରତି ବୋଲିରେ କୋଡ଼ିଏଟି ଲେଖାଏଁ ପଦ (ଯୋଡ଼ା) ଅଛି । ଗ୍ରନ୍ଥର ନାମକରଣ ବିଷୟରେ କବି ନବମ ବୋଲିରେ ଲେଖିଛନ୍ତି

"ଏ ଶାହାସ୍ତ୍ର ଆଦି ବିଭୂତି ବୃତ୍ତାନ୍ତ । ନାମ ସ୍ତୁତି ଚିନ୍ତାମଣି ।"

ଏହା ମହିମା ଧର୍ମ ଓ ଦର୍ଶନ ଉପରେ ରଚିତ ହେଲେହେଁ ଏଥିରେ କବିଙ୍କର ଜୀବନୀ ବେଶି ପ୍ରକାଶ ପାଇଛି । ଏଥିରେ କବିଙ୍କର ବାଲ୍ୟଜୀବନ, କୈଶୋର, ମହିମା ଗୋସାଇଁଙ୍କ ସହ ସାକ୍ଷାତ୍, ଦୀକ୍ଷା ଗ୍ରହଣ, କବିତ୍ୱ ପ୍ରାପ୍ତି ଓ ମହିମା ଧର୍ମ ପ୍ରଚାର ଓ ପ୍ରସାର ପ୍ରଭୃତି ଘଟଣା ଅତି ନିଖୁଣ ଭାବରେ ବର୍ଣ୍ଣିତ ଅଛି । ମହିମାସ୍ୱାମୀଙ୍କର ଅଲୌକିକ ମହିମା ଧର୍ମ ଅତି ସରଳ, ସୁନ୍ଦର ଓ ବୋଧଗମ୍ୟ ଭାଷାରେ କବି ବର୍ଣ୍ଣନା କରିଛନ୍ତି । ପୁଣି ମହିମା ଧର୍ମର ସନ୍ନ୍ୟାସ ଓ ଗୃହସ୍ଥ ଜୀବନର ନୀତି, ନିୟମ, ଶୃଙ୍ଖଳା ଓ ଆଚରଣ ବିଧି ଅତି ପ୍ରାଞ୍ଜଳ ଭାଷାରେ ଲିପିବଦ୍ଧ କରିଛନ୍ତି । ଓଡ଼ିଶାର ତତ୍କାଳୀନ ଅବସ୍ଥା, ଦୁର୍ନୀତି, ଦୁରାଚାର, ବ୍ରାହ୍ମଣ ତଥା ରାଜାମାନଙ୍କର ଆଚରଣ ଓ ଧର୍ମ ପ୍ରଚାର କ୍ଷେତ୍ରରେ ବାଧାବନ୍ଧନ ପ୍ରଭୃତିର ଏକ ନିଖୁଣ ଚିତ୍ର ଏହି ଗ୍ରନ୍ଥରେ ମିଳେ ।

ଗ୍ରନ୍ଥରେ ଜାତିଭେଦ, କର୍ମଫଳ, ପ୍ରତିମାପୂଜା ପ୍ରଭୃତିର ଘୋର ନିନ୍ଦା କରିବା ସଙ୍ଗେ ସଙ୍ଗେ ସମସ୍ତେ ପରମବ୍ରହ୍ମଙ୍କଠାରେ ଶରଣ ପଶିବାକୁ କବି ନିବେଦନ କରିଛନ୍ତି ।

ଭୀମଭୋଇ ମହିମାସ୍ୱାମୀଙ୍କ ନିକଟରେ ନିଜକୁ ପୂରାପୂରି ସମର୍ପଣ କରି ଦେଇଛନ୍ତି । କେତେବେଳେ ସେ ତାଙ୍କ ନିକଟରେ ଅଭିଯୋଗ ବାଢ଼ିଛନ୍ତି ତ କେତେବେଳେ ତାଙ୍କର ପ୍ରଶଂସାରେ ଶତମୁଖ ହୋଇଛନ୍ତି । କେତେବେଳେ ସେ କ୍ରୋଧ ଜର୍ଜରିତ ହୋଇ ପରମବ୍ରହ୍ମଙ୍କୁ ଗାଳିଦେଇଛନ୍ତି । କେତେବେଳେ ମଧ ଅନୁତପ୍ତ ହୋଇ କ୍ଷମା ମାଗିଛନ୍ତି । ଅନେକ ଦୁଃଖକଷ୍ଟ ସହିବା ପରେ ଅନ୍ତିମ ଜୀବନରେ ସୁଖ ସ୍ୱଚ୍ଛନ୍ଦରେ ଜୀବନ ଯାପନ କରିଥିବା କଥା ସେ ଉଲ୍ଲେଖ କରିଛନ୍ତି ।

## ଆଦିଅନ୍ତ ଗୀତା

ଏଥିରେ ଜୀବନର ପ୍ରତୀକ ରୂପେ ସ୍ତ୍ରୀକୁ ଓ ପରମର ପ୍ରତୀକ ରୂପେ ସ୍ୱାମୀକୁ ଗ୍ରହଣ କରାଯାଇଛି । ଏଠାରେ ଜୀବ ଅର୍ଥାତ୍ ସ୍ତ୍ରୀ ପରମ ଅର୍ଥାତ୍ ପୁରୁଷକୁ ଶରୀରର ଭେଦତତ୍ତ୍ୱ ବୁଝାଇଦେବାପାଇଁ କହିଛି ଓ ପରମ ସେ ପ୍ରଶ୍ନର ଉତ୍ତର ଦେଇଛି । ଏଥିରେ କାମଶାସ୍ତ୍ରର ବର୍ଣ୍ଣନା ଦିଆଯାଇଛି । ତେଣୁ ଏହି ଗ୍ରନ୍ଥ ସାଧୁ ଓ ବ୍ରହ୍ମଚାରୀମାନଙ୍କ ନିମନ୍ତେ ଉଦ୍ଦିଷ୍ଟ ନୁହେଁ । ଏହି ଗ୍ରନ୍ଥର ଶେଷରେ ଭୀମଭୋଇ ପ୍ରଶ୍ନୋତ୍ତର ଛଳରେ ବ୍ରହ୍ମ, ବ୍ରହ୍ମର ଲକ୍ଷଣ ଓ ବ୍ରହ୍ମପ୍ରାପ୍ତିର ଉପାୟମାନ ବର୍ଣ୍ଣନା କରିଛନ୍ତି ।

## ବ୍ରହ୍ମ ନିରୂପଣ ଗୀତା

ଏହା ମହିମାଧର୍ମୀମାନଙ୍କପାଇଁ ଏକ ଉପାଦେୟ ଗ୍ରନ୍ଥ । ଏଥିରେ ମହିମା ଧର୍ମ ଓ ଦର୍ଶନ ଅତି ସରଳ, ସୁନ୍ଦର ଓ ସାବଲୀଳ ଭାବରେ ବର୍ଣ୍ଣିତ । ଏଥିରେ କବି ମହିମା ଗୋସାଇଁଙ୍କର ଶକ୍ତି ଓ ମହିମା ବିଷୟରେ ଲେଖିଛନ୍ତି –

''ଅଦୃଷ୍ଟ ଭୁବନ ସେ ଯେ ନେତ୍ରେ ଚାହିଁ ନୋହେ
ଅବ୍ୟକ୍ତ ମହିମା ମୁଖରେ କହି ନୋହେ ।''

## ଶ୍ରୁତିନିଷେଧ ଗୀତା

ଶିଷ୍ୟ ଗୋବିନ୍ଦ ଓ ଗୁରୁ ଅନାଦିଙ୍କର ପ୍ରଶ୍ନ ଉତ୍ତର ମାଧମରେ ଏହି ଗ୍ରନ୍ଥର ପରିକଳ୍ପନା କରାଯାଇଛି । ମହିମାଧର୍ମର ଗୂଢ଼ତତ୍ତ୍ୱ ଏଥିରେ ବର୍ଣ୍ଣିତ । ଏହି ଗ୍ରନ୍ଥରେ ନିରାକାର ଓ ବେଦସାର ତତ୍ତ୍ୱ ବର୍ଣ୍ଣନା କରାଯାଇଛି । ବ୍ରହ୍ମା, ଶିବ, ବିଷ୍ଣୁ ନିର୍ଣ୍ଣୟ, ଦେବଦେବୀଙ୍କ ଚରିତ, ଦିବାରାତି ଚରିତ, ନିର୍ମାଲ୍ୟ ଚରିତ, ଏକାଦଶୀ ଚରିତ ପ୍ରଭୃତିର ଆଲୋଚନା କରାଯାଇଅଛି । ଭୀମଭୋଇ ପ୍ରତିମା ପୂଜାକୁ ନିନ୍ଦା କରିଛନ୍ତି–

''ଘଟରେ ବ୍ରହ୍ମଙ୍କୁ ନ ଚିହ୍ନି । ବାହ୍ୟରେ ଭ୍ରମୁଥାଇ ପ୍ରାଣୀ ।
ଚିତ୍ରପଟକୁ ନେତ୍ରେ ଦେଖି । ମନ ଆନନ୍ଦେ ହୋଇ ସୁଖୀ ।

ଏ ଘଟେ ଜଗନ୍ନାଥ ଅଛି । ପ୍ରତିମା ମିଛରେ ପୂଜିଛି ।
ମୂର୍ତ୍ତି ପ୍ରତିମା ଶୁଷ୍କ କାଠ । ସେ ପୁଣି ନେବ କି ବୈକୁଣ୍ଠ ?''

ପ୍ରଚଳିତ ହିନ୍ଦୁ ଦେବଦେବୀଙ୍କୁ ସେ ସ୍ୱୀକାର କରି ନାହାନ୍ତି –

''ଦେବଦେବୀରେ କାର୍ଯ୍ୟ ନାହିଁ । ନିଷ୍କାମ ଧର୍ମ କଲେ ଯାଇ ।

× × ×

ନିର୍ମାଲ୍ୟ ବୋଲି ଖାଇ ଭାତ । ଭକ୍ଷି ପୋଛନ୍ତି ହସ୍ତ ମାଥା ।
ତହିଁରେ ମୁକ୍ତି ନାହିଁ ଜାଣ''

ଜାତିପ୍ରଥା ବିଷୟରେ ଭୀମଭୋଇ କହିଛନ୍ତି –

''ଜାତି ଅଜାତି ନ ବାଛିବୁ । ସକଳ ଗୃହରେ ଭୁଞ୍ଜିବୁ ।।
ମତ୍ସ୍ୟ ମାଂସାଦି ଭାତ କାଞ୍ଜି । ଯା ଗୃହେ ପ୍ରଭୁ ଦେବେ ଖଞ୍ଜି ।।

× × ×

ବାଉନ ପାଟକ ଜାତିରେ । ବିକାର ନ ଧର ମନରେ ।।
ଅତି ନିର୍ବିକାରେ ଭୁଞ୍ଜଇ । ନିର୍ବେଦ ଘର ଧର୍ମ ଏହି ।।''

ସତ୍ୟ ମହିମା ଧର୍ମ ଗ୍ରହଣ କରି ଅଲେଖବ୍ରହ୍ମଙ୍କ ପାଖରେ ଶରଣ ପଶିବାକୁ ଭୀମଭୋଇ ଉପଦେଶ ଦେଇଛନ୍ତି ।

## ଅଷ୍ଟକବିହାରୀ ଗୀତା

ଏଥିରେ ଛଅଟି ଅଧ୍ୟାୟ ଅଛି । ପ୍ରତି ଅଧ୍ୟାୟ ଆଠ ଧାଡ଼ିରେ ଲେଖାହୋଇଛି । ଏଥିରେ କଳିଯୁଗ କଥା ବର୍ଣ୍ଣିତ । କଳିଯୁଗରେ ଲୋକଙ୍କର ମନ୍ଦ ଆଚରଣ ଦେଖି ମହିମା ଗୋସାଇଁ ଅନ୍ତର୍ଦ୍ଧାନ ହୋଇଛନ୍ତି । କଳିଯୁଗରେ ଉଦ୍ଧାର ପାଇବାକୁ ହେଲେ ମହିମା ଧର୍ମକୁ ଗ୍ରହଣ କରିବାକୁ ପଡ଼ିବ, ଯଥା –

''ଚେତାଇ କହୁଅଛୁ ଆମ୍ଭେ । ସୁମରି ସେ ଧର୍ମ ନାବେ ।
ଚଳ ସତ୍ୟାଦି ପଥେ ସର୍ବେ । ନାମକୁ ଆଶ୍ରା କରି ଦମ୍ଭେ ।''

## ନିର୍ବେଦ ସାଧନ

ଏଥିରେ ଅଲେଖ ବନ୍ଦନା, ମହିମା ଗୋସାଇଁଙ୍କ ସଙ୍ଗେ ସାକ୍ଷାତ୍, ମହିମା ଗୋସାଇଁଙ୍କ ଆଦି ଶିଷ୍ୟ ଗୋବିନ୍ଦବାବାଙ୍କର ପରିଚୟ ପ୍ରଭୃତି ବର୍ଣ୍ଣିତ । ଗୋବିନ୍ଦବାବା କିପରି ମହିମା ଗୋସାଇଁଙ୍କୁ ଦର୍ଶନ କଲେ ଓ ମହିମାଧର୍ମରେ ଦୀକ୍ଷିତ ହେଲେ ସେ କଥା ବର୍ଣ୍ଣନା କରାଯାଇଛି । ମହିମାଧର୍ମର ପ୍ରବର୍ତ୍ତକ ସତ୍ୟ ମହିମା ଗୋସାଇଁଙ୍କୁ ଅଲେଖ ସ୍ୱାମୀଙ୍କର ଅବତାରରୂପେ କବି ଗ୍ରହଣ କରିଛନ୍ତି ।

## ବ୍ରହ୍ମ ଚାଳକ

ଏହି ଗ୍ରନ୍ଥ ଦୁଇଟି ଭାଗରେ ବିଭକ୍ତ । ପ୍ରଥମ ଭାଗରେ ସେ ବ୍ରାହ୍ମଣମାନଙ୍କୁ ତୀବ୍ର ସମାଲୋଚନା କରିଛନ୍ତି, ଯଥା –

"ମଲା ଲୋକ ଦାନ ଦେଲେ ତୁମ୍ଭେ ଘେନି ଯାଅ ।
ସେ ଦାନରୁ ଆଣି ତୁମ୍ଭେ ବିକି ଭାଙ୍ଗି ଖାଅ ।"

କବି ଦ୍ୱିତୀୟ ଭାଗରେ ସୃଷ୍ଟିର ରହସ୍ୟ ପ୍ରକାଶ କରିଛନ୍ତି, ଯଥା –

"ଅଷ୍ଟାଙ୍ଗକୁ ଯାଇଣ ଯେ ଅଜପାକୁ ଜପ ।
ଦାରୁଣ ନିଷ୍ଠୁର ନାମ ନ ଲାଗଇ ପାପ ।"

## ପ୍ରଭାତ ଅବକାଶ

ମହିମା ଧର୍ମାବଲମ୍ବୀମାନେ ପ୍ରତିଦିନ ପ୍ରତ୍ୟୁଷରେ ଏହାକୁ ଗାନ କରନ୍ତି । ଆଦର୍ଶ ଜୀବନ ଗଠନପାଇଁ ଏହା ପ୍ରେରଣା ଯୋଗାଇଥାଏ ।

## ପଦ୍ମକଳ୍ପ

ଏଥିରେ କବି ଭବିଷ୍ୟଦ୍‌ବାଣୀ କରିଛନ୍ତି । ଭବିଷ୍ୟତ୍‌ରେ ବ୍ରାହ୍ମଣମାନେ ଅନ୍ୟାୟ କରିବେ, ମଦ ଖାଇବେ, ପରଦାରା ହରଣ କରିବେ, ସଂଧ୍ୟା କରିବେ ନାହିଁ ବୋଲି କହିଛନ୍ତି । କେବଳ ମହିମାଧର୍ମରେ ଦୀକ୍ଷିତ ହେଲେ ଅନିଷ୍ଟ ହେବ ନାହିଁ ବୋଲି ସେ ମତ ଦେଇଛନ୍ତି ।

## ଭଜନମାଳା ଓ ଚଉତିଶା

ଭୀମଭୋଇଙ୍କର ତିନି ଶହ ବାରଟି ଭଜନ ଓ ଏକଚାଳିଶଟି ଚଉତିଶା ମହିମା ଧର୍ମାବଲମ୍ବୀମାନେ ପ୍ରତିଦିନ ପ୍ରତ୍ୟୁଷରେ ଗାନ କରନ୍ତି । ବୀରକିଶୋରଦେବଙ୍କ ସଂକଳିତ 'ଭୀମଭୋଇ ଗ୍ରନ୍ଥାବଳୀ'ରେ ଏହା ପ୍ରକାଶ ପାଇଛି । ବହୁ ଭଜନ ସଙ୍ଗୀତ ସ୍ୱରରେ ରଚିତ ହୋଇଛି । କବି ବହୁ ନିର୍ଗୁଣ ଭକ୍ତି କବିତା ରଚନା କରିଛନ୍ତି । ସେଗୁଡ଼ିକ ଗଭୀର ଆନ୍ତରିକତା ଯୋଗୁଁ ଜୀବନ୍ତ ହୋଇଉଠିଛି । ଜନସାଧାରଣଙ୍କ ପ୍ରତି କବିଙ୍କର ଗଭୀର ମମତା ଥିଲା । କେବଳ ବ୍ୟକ୍ତିଗତ ଉଦ୍ଧାର ସେ ଚାହୁଁ ନ ଥିଲେ, ଜଗତବାସୀଙ୍କ ଉଦ୍ଧାର ଥିଲା ତାଙ୍କର ସ୍ୱପ୍ନ । ତାଙ୍କ କଣ୍ଠରୁ ବାହାରିଥିଲା –

"ପ୍ରାଣୀଙ୍କ ଆରତ, ଦୁଃଖ ଅପ୍ରମିତ
ଦେଖୁ ଦେଖୁ କିବା ସହୁ
ମୋ ଜୀବନ ପଛେ ନର୍କେ ପଡ଼ିଥାଉ
ଜଗତ ଉଦ୍ଧାର ହେଉ ।"

ତାଙ୍କ ପୂର୍ବରୁ କେହି ଉତ୍କଳୀୟ କବି ଜଗତ ଉଦ୍ଧାରପାଇଁ ଏପରି ଚିନ୍ତା କରିଥିବାର ଜଣାଯାଏ ନାହିଁ ।

ତାଙ୍କର ଆଉ ଗୋଟିଏ ଗୀତିକବିତା –

''ଧର ଧର ହୋ ଜୀବ ଗଲାଟି ସରି
ଏ ଭବ ସାଗରୁ କରିବେ ପାରି ।
କି ମାନ ହେଲାଣି ଜମ୍ବୁଦ୍ୱୀପ ମହୀ
ହେତୁ ଜ୍ଞାନ ଚେତା ନାହିଁ କାହାରି
ଚାରିବେଦେ ଯେଉଁ କ୍ରମ ଦେଇଥିଲେ
କିପାଇଁ ମନରୁ ଦେଲ ପାସୋରି ।''

ସକାମରେ ଭଗବାନ୍‌ଙ୍କୁ ଲାଭ କରାଯାଇପାରେ ନାହିଁ । ଏ ସଂକ୍ରାନ୍ତରେ ତାଙ୍କର ଏକ ଭଜନ ହେଲା –

''ବୋଲେ ଭୀମସେନ ଭୋଇ
ସକାମରେ ଜ୍ଞାନ ନାହିଁ
ନିଷ୍କାମ ଚିତ୍ତରେ ହୃଦେ ଧର ।''

ଏହା ଏପର୍ଯ୍ୟନ୍ତ ପ୍ରକାଶିତ ହୋଇ ନାହିଁ ।

ଭୀମଭୋଇ ଜଗନ୍ନାଥଙ୍କୁ ଛାଡ଼ି ମହିମା ଗୋସାଇଁଙ୍କୁ ଧ୍ୟାନ କରିବାକୁ କହିଛନ୍ତି । ତାଙ୍କର ଏହି ସଂକ୍ରାନ୍ତୀୟ ଭଜନ ହେଲା –

''ଜଗତ ଭଗତ ଜନ — ଆସ ଲୋଡ଼ିବା ପ୍ରଭୁଙ୍କୁ
ଶ୍ରୀପୁରୁଷୋତ୍ତମେ ଜାଣ — ଥିଲେ ଯେଉଁ ନାରାୟଣ
ସେହି ପ୍ରଭୁ କାହିଁ ଗଲେ — ତେଜିଲେ ତିନି ଦାରୁଙ୍କୁ

× × ×

ଭଣେ ଭୀମଭୋଇ କନ୍ଧ — କଥାକୁ ନ ବୁଝ ମନ୍ଦ
ବ୍ରହ୍ମାଣ୍ଡ ରହିବ ବୋଲି — ପରତେ ନାହିଁ ମନକୁ ।।''

ଭୀମଭୋଇଙ୍କ କବିତା ମହିମାଧର୍ମ ସମ୍ବନ୍ଧୀୟ । ସାହିତ୍ୟିକ ମୂଲ୍ୟବୋଧ ମଧ୍ୟ ତାହାର ଖୁବ୍ ବେଶି ।

## ଧର୍ମ ପ୍ରଚାର

ଭୀମଭୋଇ ମହିମା ଧର୍ମରେ ଦୀକ୍ଷିତ ହେବାପରେ ଢେଙ୍କାନାଳ ଜିଲ୍ଲାରେ ଅବସ୍ଥିତ ଜୋରନ୍ଦା ମହିମା ଗାଦିରେ କିଛି କାଳ ଅବସ୍ଥାନ କରିଥିଲେ । ସେଠାରେ ସେ ଅବଧୂତ ବାବାଜିମାନଙ୍କର ସଂସ୍ପର୍ଶରେ ଆସିଥିଲେ ଓ ମହିମାଧର୍ମ ତତ୍ତ୍ୱ ଆହରଣ କରିଥିଲେ । ଏହାପରେ ସେ ସେହି ଧର୍ମ ପ୍ରଚାରରେ ନିଜକୁ ନିୟୋଜିତ କଲେ ।

## ମହିମାଧର୍ମ

ମହିମା ଧର୍ମର ଆଦର୍ଶ ତଥା ରୀତିନୀତି ବିଷୟରେ ବଙ୍ଗଳା ଖବରକାଗଜ 'ସୁଲଭ ସମାଚାର'ରେ ୧୮୮୧ ମସିହା ମାର୍ଚ୍ଚ ମାସରେ ଏକ ସମ୍ବାଦ ବାହାରିଥିଲା । ସେଥିରୁ ଜଣାଯାଏ ଯେ ୧୮୬୪ ମସିହାରେ ଏହି ଧର୍ମ ସ୍ଥାପିତ ହୋଇଥିଲା । ସେମାନେ କୁମ୍ଭ (କୁମ୍ଭୀ) ନାମକ ଏକ ଗଛର ବକଳ ପିନ୍ଧୁଥିବାରୁ ସେମାନଙ୍କୁ କୁମ୍ଭିପଟିଆ ବାବା ବା ମହିମାବାବା କୁହାଯାଉଥିଲା । ସେମାନେ ହିନ୍ଦୁ ହେଲେ ମଧ୍ୟ ଦେବଦେବୀଙ୍କୁ ମାନନ୍ତି ନାହିଁ କିମ୍ବା ମୂର୍ତ୍ତିପୂଜା କରନ୍ତି ନାହିଁ । ଶ୍ରାଦ୍ଧାଦି ପାଳନରେ ଏମାନେ ବିଶ୍ୱାସ କରନ୍ତି ନାହିଁ । ସକଳ ପ୍ରକାର ମାଦକଦ୍ରବ୍ୟ ବା ମାଂସ, ଏପରିକି ଅପବିତ୍ର ଅନ୍ନ ମଧ୍ୟ ଗ୍ରହଣ କରନ୍ତି ନାହିଁ । ରାଜା, ବ୍ରାହ୍ମଣ, ମାଳାକାର, ଗଣକ, ଗଣିକା, ନାପିତ, ହାଡ଼ି ଏବଂ ରଜକଙ୍କ ଗୃହରୁ ଅନ୍ନଜଳ ଗ୍ରହଣ କରନ୍ତି ନାହିଁ । କାୟା ଶୋଧନ ନିମନ୍ତେ ଗୋମୟ ଲେପନ କରନ୍ତି ।

ମହିମାଧର୍ମୀମାନେ ଜାତିଭେଦରେ ବିଶ୍ୱାସ କରନ୍ତି ନାହିଁ । ସମସ୍ତେ ସମାନ । ଭୀମଭୋଇ ଗାଇଥିଲେ –

"ସ୍ଥାବର ଜଙ୍ଗମ କୀଟରୁ ପତଙ୍ଗ
ଚାହିଁଦେଲେ ଅନୁସରି ।
ସକଳ ଘଟରେ ପୂରି ସମାନରେ
ନୋହେ ସାନବଡ଼ କରି ।"

ମହିମା ଧର୍ମାବଲମ୍ବୀମାନେ ଧନ ସଞ୍ଚୟ କରନ୍ତି ନାହିଁ । ଭିକ୍ଷା ମାଗି ଜୀବନ ଧାରଣ କରନ୍ତି । ଭିକ୍ଷା କରିବା ସମୟରେ କେତେକ ନିୟମ ପାଳନ୍ତି । ଗୃହସ୍ଥର ଗୃହ ମଧ୍ୟରେ ବା ଧାତୁ ପାତ୍ରରେ ଭିକ୍ଷା ଗ୍ରହଣ କରନ୍ତି । ଭିକ୍ଷା ଦେଉଥିବା ବ୍ୟକ୍ତିମାନେ ମାନ୍ୟ ଦେଖାଇଲେ ସେ ଭିକ୍ଷା ଗ୍ରହଣ କରନ୍ତି ନାହିଁ । ଭିକ୍ଷା ଗ୍ରହଣ ବେଳେ ଭିକ୍ଷାଦାତାଙ୍କ ମୁଖକୁ ନ ଚାହିଁ ପାଦକୁ ଚାହାନ୍ତି । ଭିକ୍ଷା ଗ୍ରହଣ ପରେ ଦାତାପାଇଁ ଶୂନ୍ୟବ୍ରହ୍ମଙ୍କ ନିକଟରେ ପ୍ରାର୍ଥନା କରନ୍ତି ।

ମହିମାଧର୍ମୀମାନେ କୌଣସି ସ୍ଥାନରେ ଦୁଇ ଦିନ ରହନ୍ତି ନାହିଁ କିମ୍ବା କୌଣସି ଗୃହସ୍ଥଠାରୁ ଦୁଇ ଥର ଭିକ୍ଷା ଗ୍ରହଣ କରନ୍ତି ନାହିଁ । ଏମାନେ କୁମ୍ଭୀପଟକୁ ପରିଧାନ ରୂପେ ବ୍ୟବହାର କରନ୍ତି, ତାଳପତ୍ର ଛତ୍ର ଧାରଣ କରନ୍ତି ଓ ମସ୍ତକରେ ଜଟା ଧାରଣ କରିଥାନ୍ତି ।

ନିତିଦିନିଆ ଜୀବନରେ ଏମାନେ କେତେକ ସାଧାରଣ ନିୟମ ପାଳନ କରନ୍ତି । ସକାଳେ ସାତ ଥର ସୂର୍ଯ୍ୟ ପ୍ରଣାମ କରନ୍ତି । ସୂର୍ଯ୍ୟାସ୍ତ ପରେ ପାଞ୍ଚ ଥର ପ୍ରଣାମ କରନ୍ତି । ସୂର୍ଯ୍ୟାସ୍ତ ପରେ ଆହାର କରନ୍ତି ନାହିଁ । ଅବସର ସମୟ ଭଜନ, କୀର୍ତ୍ତନରେ କଟାନ୍ତି ।

ମହିମା ଧର୍ମାବଲମ୍ବୀମାନଙ୍କର ଦେବତା ହେଉଛନ୍ତି ଅଲେଖ ପୁରୁଷ । ରୋଗ ହେଲେ ସେମାନେ ଔଷଧ ଖାଆନ୍ତି ନାହିଁ । ରୋଗ ମୁକ୍ତିପାଇଁ ଅଲେଖଙ୍କ କୃପା ଉପରେ ନିର୍ଭର କରିଥାନ୍ତି ।

ସତ୍ୟକଥନ, ଆତ୍ମବିଶ୍ୱାସ ଓ ଗୁରୁଙ୍କଠାରେ ଆତ୍ମସମର୍ପଣ – ଏହି ଧର୍ମର ପ୍ରଧାନ ଅଙ୍ଗ । ଏମାନଙ୍କର ଜୀବନ ଜଗତର ମଙ୍ଗଳପାଇଁ ଉଦ୍ଦିଷ୍ଟ ।

'ସ୍ତୁତି ଚିନ୍ତାମଣି' ଏହି ଧର୍ମାବଲମ୍ବୀମାନଙ୍କର ଏକ ପ୍ରାମାଣିକ ଗ୍ରନ୍ଥ । ଏଥିରେ ଧର୍ମର ନିଗୂଢ଼ ତଥ୍ୟ ବର୍ଣ୍ଣିତ ।

ଭୀମଭୋଇ ହିନ୍ଦୁଧର୍ମର ଧର୍ମ, ଅର୍ଥ, ମୋକ୍ଷ, ପୁଣ୍ୟତୀର୍ଥ ପ୍ରଭୃତି ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ତାଙ୍କ ମତରେ ପରମବ୍ରହ୍ମଙ୍କ ମହିମାରୁ ହିଁ ଜଗତର ସୃଷ୍ଟି । ପରମବ୍ରହ୍ମ ହେଉଛନ୍ତି ଆଦି ମୂଳାଧାର, ଶୁଦ୍ଧ, ପବିତ୍ର, ଅନନ୍ତ, ଆନନ୍ଦମୟ, ସକଳ ଶକ୍ତିର ଆଧାର ଓ ସର୍ବବ୍ୟାପୀ । ସବୁବେଳେ ନିର୍ମଳ ନିଷ୍ପାପ ଜୀବନଯାପନ କରିବାକୁ ସେ ଉପଦେଶ ଦେଇଥିଲେ । ଜୀବନର ସମସ୍ତ ଦୁଃଖ-ଯନ୍ତ୍ରଣାରୁ ମୁକ୍ତି ପାଇବାପାଇଁ ପରମବ୍ରହ୍ମଙ୍କ ନିକଟରେ ଆତ୍ମସମର୍ପଣ କରିବା ଛଡ଼ା ଅନ୍ୟ ବାଟ ନାହିଁ ବୋଲି ସେ ଘୋଷଣା କରିଥିଲେ । ଆତ୍ମା ଓ ପରମବ୍ରହ୍ମଙ୍କ ମିଳନରେ ନିର୍ବାଣପ୍ରାପ୍ତି ହୁଏ ବୋଲି ମହିମା ଧର୍ମାବଲମ୍ବୀମାନେ ବିଶ୍ୱାସ କରନ୍ତି ।

ଭୀମଭୋଇ ନିଜେ ଅଲେଖ ପରମେଶ୍ୱରଙ୍କଠାରେ ସର୍ବସ୍ୱ ଅର୍ପଣ କରିଥିଲେ । ସେ ଏହା ବର୍ଣ୍ଣନା କରିଛନ୍ତି –

''ଏ ପିଣ୍ଡ ବ୍ରହ୍ମାଣ୍ଡ ଅଛୁଣିଆ କରି । ବ୍ରହ୍ମକୁ ଦେଇଛି ଟେକି ।।

× × ×

ମୋହ ପିଣ୍ଡ ପ୍ରାଣ ଦେଇଅଛି ଦାନ । ଅଲେଖ ପୁରୁଷ ପାଦେ ।।
ଶ୍ରୀ ଛାମୁରେ ମୁହିଁ ବ୍ରହ୍ମାଣ୍ଡରପାଇଁ । ଜଣାଣ କରୁଛି ପାଦେ ।।''

**କୁଳୁଣ୍ଡା ମଠ**

ଭକ୍ତ କବି ରେଢ଼ାଖୋଲରେ କେତେ ବର୍ଷ ଅତିବାହିତ କଲା ପରେ ସୋନପୁରର ଦଶ କୋଶ ଦୂର କୁଳୁଣ୍ଡା ଗ୍ରାମରେ ମଠ ସ୍ଥାପନ କଲେ । ସେଠାରେ ତାହାଙ୍କ ମାହାତ୍ମ୍ୟ ପ୍ରଚାରିତ ହେଲା । ଥରେ ପୁରୀରୁ ଫେରୁଥିବା ନାଗା ସନ୍ନ୍ୟାସୀମାନେ ଭୀମଭୋଇଙ୍କ ସହ ସାକ୍ଷାତ୍‌ପାଇଁ କୁଳୁଣ୍ଡା ମଠକୁ ଗଲେ । ତାଙ୍କ ସଙ୍ଗେ ଧର୍ମ ସମ୍ପର୍କୀୟ ଆଲୋଚନାରେ ସେମାନେ ସନ୍ତୁଷ୍ଟ ହେଲେ । ମାତ୍ର ସେବା ନୀତିରେ ବିରକ୍ତ ହୋଇ ସେମାନଙ୍କୁ ମାଡ଼ମାରି ଘଉଡ଼ାଇ ଦେଲେ ।

## ଭୀମଭୋଇ ଓ ଜଗନ୍ନାଥ

ଏହି କୁଳୁଣ୍ଡା ମଠରେ ଥିଲାବେଳେ ଭୀମଭୋଇ ପୁରୀ ଜଗନ୍ନାଥଙ୍କ ପୂଜା ବନ୍ଦ କରିଦେବାକୁ ଉଦ୍ୟମ କରିଥିଲେ । ସେମାନେ ଜଗନ୍ନାଥଙ୍କୁ ମାନୁ ନ ଥିଲେ । ମଣିଷର ହାତଗଢ଼ା ଦାରୁମୂର୍ତ୍ତିର ଅନ୍ୟକୁ ବଞ୍ଚାଇବାର ଶକ୍ତି ନାହିଁ ବୋଲି ବିଶ୍ୱସ କରୁଥିଲେ –

''ଯେହୁ ଗଢ଼ିଛି ଆପଣା ପିଣ୍ଡ ପ୍ରାଣ । ତାକୁ ସମର୍ପଣ ନାହିଁ ।।
ଦାରୁ ପ୍ରତିମା ମୂର୍ତ୍ତିକୁ ବୋଲୁଛନ୍ତି । ପ୍ରାଣୀକୁ ବଞ୍ଚାଅ ତୁହି ।।''

ଦାରୁ ପ୍ରତିମାଙ୍କର ମହିମା ଆଉ କାମ କରୁ ନାହିଁ ବୋଲି ସେ ମତ ଦେଇଥିଲେ –

''ଦାରୁ ପ୍ରତିମା ଶିଳାମୂର୍ତ୍ତି ପାଷାଣ । ଯେହୁ ଯେଉଁଠାରେ ଥିଲେ ।।
ଏହାଙ୍କ କରଣି ସରିଲାଣି । ସବୁ ନ କାଟଇ ଆଉ ବେଳେ ।।''

ଭୀମଭୋଇଙ୍କ ପ୍ରରୋଚନାରେ ତାଙ୍କର କେତେକ ଶିଷ୍ୟ ପୁରୀ ଶ୍ରୀମନ୍ଦିର ଉପରେ ଆକ୍ରମଣ କରିବାକୁ ଯାଇଥିଲେ । 'ଉତ୍କଳ ଦୀପିକା'ର ୧୮୮୧ ମସିହା ମାର୍ଚ୍ଚ ମାସ ୨୬ ତାରିଖ ସଂଖ୍ୟାରୁ ଜଣାଯାଏ ଯେ ଏହି ସମ୍ପ୍ରଦାୟର ଷୋଳଜଣ ଲୋକ ଉଲଗ୍ନ ହୋଇ ଭାତହାଣ୍ଡି ଧରି ଦିନ ଦ୍ୱିପ୍ରହର ସମୟରେ ମନ୍ଦିର ନିକଟରେ ପହଞ୍ଚିଲେ । ମନ୍ଦିର ଦ୍ୱାରରକ୍ଷୀ ସେମାନଙ୍କୁ ପଶିବାରେ ବାଧା ଦେବାରୁ ସେମାନେ ଗରୁଡ଼ସ୍ତମ୍ଭ ନିକଟରେ ଭାତହାଣ୍ଡି ରଖି କବାଟ ପେଲି ଧସେଇ ପଶିଲେ । ସେମାନେ ଭୋଗମଣ୍ଡପର କବାଟ ଭାଙ୍ଗି ଜଗମୋହନ ପାରହୋଇ ଜୟ ବିଜୟ ଦ୍ୱାର ନିକଟରେ ପହଞ୍ଚିଲେ । ପଡ଼ିହାରୀମାନେ ଦରଜା ବନ୍ଦ କରିଦେଲେ । ମନ୍ଦିରର କର୍ମଚାରୀ ଓ ଯାତ୍ରୀମାନେ କୌଣସିମତେ ସେମାନଙ୍କୁ ଦେଉଳ ମଧ୍ୟରୁ ବାହାର କରିଦେଲେ । ଦଶାରାମ ନାମକ ଜଣେ ସର୍ଦ୍ଦାର ଭୋଗମଣ୍ଡପ ନିକଟରେ ଥିବା ମହାଦେବ ମନ୍ଦିର ପାଖରେ ଝୁଣ୍ଟିପଡ଼ି ଅଚେତ ହୋଇପଡ଼ିଲେ । ତାଙ୍କର ସଙ୍ଗୀମାନେ ତାଙ୍କୁ ଉଠାଇ ଗରୁଡ଼ ସ୍ତମ୍ଭ ନିକଟକୁ ନେଇଗଲେ ଓ ମନଇଚ୍ଛା ଭାତ ଖୁଆଇଲେ । ପ୍ରାୟ ଏକ ଘଣ୍ଟା ପରେ ତା'ର ମୃତ୍ୟୁ ହେଲା । ବାକି ପନ୍ଦର ଜଣଙ୍କର ବିଚାର ହେଲା, ସେମାନଙ୍କୁ କାରାଦଣ୍ଡ ଦିଆଗଲା । ସେମାନେ ସମ୍ବଲପୁର ଓ ରାୟପୁର ଅଞ୍ଚଳର ଲୋକ ବୋଲି ଅନୁସନ୍ଧାନରୁ ଜଣାପଡ଼ିଥିଲା ।

ଏହି ଉଦ୍ୟମର ବ୍ୟର୍ଥତା ହୃଦୟଙ୍ଗମ କରି ଭୀମଭୋଇ ଅନୁଗାମୀମାନଙ୍କୁ କହିଲେ –

''ଜଗନ୍ନାଥ ବୁଦ୍ଧ ରୂପରେ ପୁରୀ ଛାଡ଼ି ଚାଲି ଯାଇଛନ୍ତି, ଯୁଦ୍ଧ ଆଉ କାହିଁପାଇଁ !''

ସରକାରୀ ରେକର୍ଡପତ୍ରରେ ଜଗନ୍ନାଥ ମନ୍ଦିର ଆକ୍ରମଣ ସମ୍ପର୍କୀୟ କାଗଜପତ୍ର ମିଳିଅଛି । ମନ୍ଦିର ଆକ୍ରମଣପାଇଁ ଯେଉଁମାନେ ଆସିଥିଲେ ସେମାନଙ୍କ ନାମ ସେଥିରେ ଉଲ୍ଲେଖ ଥିଲେ ମଧ ଭୀମଭୋଇଙ୍କ ନାମ ସେଥିରେ ନାହିଁ ।

## ଖଲିଆପାଲି ଆଶ୍ରମ ପ୍ରତିଷ୍ଠା

୧୮୭୭ ମସିହାରେ ମହିମାସ୍ୱାମୀଙ୍କ ତିରୋଧାନ ପରେ ଜୋରନ୍ଦା ଗାଦିଠାରେ ମହିମାଧର୍ମର ଏକ ମହାସଭାର ଆୟୋଜନ କରାଯାଇଥିଲା । ଗୃହୀ ସନ୍ନ୍ୟାସୀମାନେ ମଧ ଦୀକ୍ଷା ଦେଇପାରିବେ ବୋଲି ଭୀମଭୋଇ ସେଠାରେ ଯୁକ୍ତି କରିଥିଲେ । ମାତ୍ର ମହିମାଧର୍ମର ଅଧିକାଂଶ ସାଧୁ ଏହାକୁ ଗ୍ରହଣ ନ କରିବା ଫଳରେ ଭୀମଭୋଇ ବିରକ୍ତ ହୋଇ ସେଠାରୁ ଚାଲିଆସିଲେ । ସେ ବିଭିନ୍ନ ଗଡ଼ଜାତ ରାଜ୍ୟ ଭ୍ରମଣ କରି ସୋନପୁରରେ ପହଞ୍ଚିଲେ । ସେହି ରାଜ୍ୟର ଖଲିଆପାଲି ଗ୍ରାମରେ ଗାଦି ମନ୍ଦିର ନିର୍ମାଣ କରିବାକୁ ସ୍ଥିର କଲେ ।

ସୋନପୁର ରାଜ୍ୟର ରାଜା ଥିଲେ ନୀଳାଦ୍ରି ସିଂହଦେଓ । ସେ ମହିମା ଧର୍ମାବଲମ୍ବୀ ନ ହେଲେ ମଧ ଭୀମଭୋଇଙ୍କୁ ଖଲିଆପାଲି ଗ୍ରାମରେ ଏକ ଧର୍ମ ମନ୍ଦିର ନିର୍ମାଣ କରିବାକୁ ଅନୁମତି ଦେଲେ । ତାଙ୍କ ଅନୁରୋଧ ରକ୍ଷାକରି ମଠ ନିର୍ମାଣପାଇଁ ଜମି ଯୋଗାଇଦେଲେ । ସେତେବେଳକାର ଦେଓ୍ୱାନ ମଠ ନିକଟରେ ବିରାଟ ପୁଷ୍କରିଣୀଟିଏ ଖୋଳାଇଦେଲେ । ଭକ୍ତ ହରି ପଣ୍ଡା ଓ ବାସୁଦେବ ପଣ୍ଡା ନିଜ ଗ୍ରାମରୁ ବହୁ ଧନରତ୍ନ ଆଣି ଭୀମଭୋଇଙ୍କୁ ଦେଲେ । ଅନ୍ୟାନ୍ୟ ଭକ୍ତମାନେ ମଧ ବହୁ ସାହାଯ୍ୟ ଦେଲେ । ସମସ୍ତଙ୍କର ମିଳିତ ଚେଷ୍ଟା ଫଳରେ ୧୮୭୭ ମସିହାରେ ଆଶ୍ରମ ନିର୍ମିତ ହେଲା । ମହିମା ଧର୍ମର ଅନ୍ୟାନ୍ୟ ମନ୍ଦିର ଭଳି ଏଥିରେ କୌଣସି ମୂର୍ତ୍ତି ସ୍ଥାପନ କରାଯାଇ ନ ଥିଲା । ଶୂନ୍ୟବ୍ରହ୍ମଙ୍କ ଉପାସନା ଏଠାରେ କରାଯାଏ ।

ଭୀମଭୋଇ ଏହିଠାରେ ରହି ମହିମା ପ୍ରଚାରପାଇଁ ଆଠମଲ୍ଲିକ, ବୌଦ, ସମ୍ବଲପୁର, ରେଢ଼ାଖୋଲ ପ୍ରଭୃତି ଅଞ୍ଚଳକୁ ଯାଉଥିଲେ । କାର୍ଯ୍ୟ ଶେଷରେ ସେଠାକୁ ପୁଣି ଫେରିଆସୁଥିଲେ । ଛତିଶଗଡ଼, ବସ୍ତର, ରାୟଗଡ଼, ଇନ୍ଦୋର ପ୍ରଭୃତି ଅଞ୍ଚଳର ଲୋକ ଭୀମଭୋଇଙ୍କ ପାଖକୁ ଆସି ତାଙ୍କଠାରୁ ଦୀକ୍ଷା ଗ୍ରହଣ କଲେ । ଲୋକେ ତାଙ୍କ ଉପରେ ପ୍ରୀତ ହୋଇ ଧନରତ୍ନ ଆୟ–ଅଳଙ୍କାରମାନ ଦେଲେ । କେତେକ ତାଙ୍କର ପୁତ୍ରକନ୍ୟାଙ୍କୁ ସନ୍ନ୍ୟାସୀ ସନ୍ନ୍ୟାସିନୀ କରିବାପାଇଁ ଆଶ୍ରମରେ ଛାଡ଼ିଦେଲେ ।

ଭୀମଭୋଇଙ୍କ ମାହାତ୍ମ୍ୟ ଚାରିଆଡ଼େ ପ୍ରଚାରିତ ହେଲା । ତାଙ୍କଠାରୁ ଦୀକ୍ଷା ନେବାକୁ ପ୍ରତ୍ୟହ ଶହ ଶହ ଲୋକ ଖଲିଆପାଲିଲେ ଉପସ୍ଥିତ ହେଲେ ।

ସେମାନେ ଜାତି ଧର୍ମ ନିର୍ବିଶେଷରେ ଏକା ସଙ୍ଗରେ ଖାଇଲେ ଓ ଏକାଠି ଧର୍ମଚର୍ଚ୍ଚା କଲେ । ଫଳରେ ଆଖପାଖ ଅଞ୍ଚଳର ବ୍ରାହ୍ମଣ ଓ ପ୍ରତିଷ୍ଠିତ ବ୍ୟକ୍ତିମାନେ ଆତଙ୍କିତ ହୋଇପଡ଼ିଲେ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ଭୀମଭୋଇ ଶିଷ୍ୟ ଗ୍ରହଣ କରିଥିବାରୁ ସେମାନେ ଭାବିଲେ ଯେ ହିନ୍ଦୁ ଧର୍ମ ଆଉ ରହିବ ନାହିଁ । ତାଙ୍କର କୁତ୍ସାରଟନା କଲେ । ଭୀମଭୋଇ ମଧ୍ୟ ନିଜର ପ୍ରତିକ୍ରିୟା ଜଣାଇଛନ୍ତି –

''ଯହିଁ ଇଚ୍ଛା ତହିଁ ପରିହାସ କରି । ଭୀମଭୋଇ କନ୍ଧ ବୋଲି ।।
ପାଦଧୁଆ ଜଳ ପିଆଇଲା ବୋଲି । ସର୍ବେ ଦେଉଛନ୍ତି ଗାଳି ।।

× × ×

କାହାରି ଖଚ ମିଛରେ ମୁଁ ନ ଥାଇ । ଲୋଭ ନ କରିବା ବିଚାରେ ।।
କି ଅର୍ଥରେ ମୋତେ ନିନ୍ଦା କରୁଛନ୍ତି । ଏଭଳି ଯୁଗରେ ନରେ ।।''

ଖଳପ୍ରକୃତିର ଲୋକେ ସୋନପୁର ରାଜା ନୀଳାଦ୍ରି ସିଂହଦେଓଙ୍କ ପାଖେ ଅଭିଯୋଗ କଲେ ଯେ ଆଶ୍ରମରେ ବହୁ ଅନୀତି ଚାଲିଛି ଓ ଲୋକଙ୍କୁ ବିଧର୍ମୀ କରାଯାଉଛି । ରାଜା ମଧ୍ୟ ସେମାନଙ୍କ କଥାରେ ପଡ଼ି ସିପାହି ପଠାଇ ଭୀମଭୋଇ ଓ ଅନ୍ୟମାନଙ୍କୁ ନେଇ ବନ୍ଦୀ କଲେ । ନିଆଁରେ ପ୍ରବେଶ କରି ଧର୍ମ ପରୀକ୍ଷା ଦେବାକୁ ତାଙ୍କୁ କୁହାଗଲା । ଏଥିପାଇଁ ଦିନ ଧାର୍ଯ୍ୟ ହେଲା ଓ ମହାନଦୀ କୂଳ ଦିଲବାହାଲପୁର ଜଙ୍ଗଲରେ ଶଗଡ଼େ କାଠ ଜମା ହେଲା । ମାତ୍ର ଯୁବରାଜ ପ୍ରତାପ ସିଂହଦେଓ ଏଥିରେ ହସ୍ତକ୍ଷେପ କରିବାରୁ ଏହି ପରୀକ୍ଷା ୭ ଦିନକୁ ଘୁଞ୍ଚାଇ ଦିଆଗଲା । ମାତ୍ର ଏହା ପୂର୍ବରୁ ରାଜା ନୀଳାଦ୍ରି ସିଂହଦେଓଙ୍କୁ ବିଷଧର ସର୍ପ ଦଂଶନ କଲା । ସେ କାହିଁରେ ଭଲ ହେଲେ ନାହିଁ । ଶେଷରେ ତାଙ୍କର ମୃତ୍ୟୁ ହେଲା ।

ହରି ପଣ୍ଡାଙ୍କ ଅପ୍ରକାଶିତ ଗ୍ରନ୍ଥ ଧର୍ମପ୍ରକାଶରେ ଏହା ବିଶଦଭାବେ ବର୍ଣ୍ଣିତ, ଯଥା–

''ସୋନପୁର ରାଜ୍ୟ ରାଜଧାନୀ ବିଧାନ

× × ×

ନୀଳାଦ୍ରି ସିଂହ ଶିରରେ ଉଡ଼ଇ ପାଟ ।
କଳି ପୁରୁଷ ପ୍ରକାଶି ରାଜା ହୃଦର ।
ସତ୍ୟ ଧର୍ମ ବିବାଦ ଆଚରି ସତ୍ୱର ।
ଅନେକ ଭର୍ତ୍ସନା କରି ଦେଇଣ ଗାଳି ।

× × ×

ଅବଶ୍ୟ ଫଳିବ ବେଦ ବିଧାନ ଫଳ ।
ନୀଳାଦ୍ରି ସିଂହକୁ ନିଶ୍ଚେ ଗ୍ରାସିଲା କାଳ ।''

ଭୀମଭୋଇଙ୍କ ଲୋକପ୍ରିୟତା ଏହା ଫଳରେ ବହୁଗୁଣରେ ବୃଦ୍ଧି ପାଇଲା । ଭୀମଭୋଇଙ୍କ ଦ୍ୱିତୀୟ ପିତା ଧନେଶ୍ୱର ମଧ ଖଲିଆପାଲି ଆଶ୍ରମକୁ ଆସୁଥିଲେ । ତାଙ୍କ ଡାହାଣ ପାଦରେ ଧବଳ କୁଷ୍ଠ ଦେଖାହୋଇଥିଲା । ସେହି ପାଦରେ ଭୀମଙ୍କୁ ପିଲାଦିନେ ଗୋଇଠା ମାରିଥିବାରୁ ଧବଳ କୁଷ୍ଠ ରୋଗାକ୍ରାନ୍ତ ହୋଇପଡ଼ିଥିବା କଥା ଶୁଣାଯାଏ ।

## ଗୃହୀ ଜୀବନ

ଖଲିଆପାଲି ଆଶ୍ରମରେ ରହି ଭୀମ ଭୋଇ ବିଭିନ୍ନ ସ୍ଥାନକୁ ଯାଉଥିବା ପୂର୍ବରୁ ବର୍ଣ୍ଣିତ ଅଛି । ଥରେ ସୋନପୁର ଅନ୍ତର୍ଗତ ବିନିକାକୁ ଯାଇଥିବାବେଳେ ସ୍ୱପ୍ନରେ ବୈବାହିକ ଜୀବନଯାପନ କରିବାକୁ ମହିମା ଗୋସାଇଁଙ୍କ ଆଦେଶ ପାଇଲେ । ଏହାପରେ ସେ ଅନ୍ନପୂର୍ଣ୍ଣାଙ୍କୁ ବିବାହ କଲେ । ଅନ୍ନପୂର୍ଣ୍ଣା ଜାତିରେ ବ୍ରାହ୍ମଣ ଥିଲେ । ଭୀମଭୋଇଙ୍କୁ ବିବାହ କରିବାପାଇଁ ତାଙ୍କୁ ମଧ ସ୍ୱପ୍ନାଦେଶ ହୋଇଥିଲା । ସେ ଢେଙ୍କାନାଳରେ ଥିବା ଘର ଛାଡ଼ି ମାମୁ ଘର ବଲାଙ୍ଗୀର ଜିଲ୍ଲାର ଭୁର୍ସାପାଲିକୁ ଏକାକିନୀ ଆସିଥିଲେ । ସେଠାରେ ଭୀମଭୋଇଙ୍କ ସଙ୍ଗେ ତାଙ୍କର ଦେଖା ହେଲା ଓ ପରେ ବିବାହ ହେଲା ।

ଭୀମଭୋଇ ଘୋଷଣା କଲେ –

> ''ଗୃହଧର୍ମେ ଥିବି ଅନ୍ୟଥା ନୋହିବି, ଆଜ୍ଞା ହେଉ ଏହି ବାଗେ
> ଶ୍ରୀଗୁରୁ ଛାମୁରେ ଭୀମ ଅରକ୍ଷିତ କରପତ୍ର ଯୋଡ଼ି ମାଗେ ।''

ଭକ୍ତମାନେ ଭୀମଭୋଇଙ୍କୁ ଗୁରୁଭାବରେ ଓ ଅନ୍ନପୂର୍ଣ୍ଣାଙ୍କୁ ଆଦିମାତା ରୂପରେ ପୂଜା କରୁଥିଲେ । ତାଙ୍କର ଗୋଟିଏ ପୁତ୍ର ଓ ଗୋଟିଏ କନ୍ୟା ଥିଲେ । ପୁତ୍ରର ନାମ କପିଳେଶ୍ୱର ଓ କନ୍ୟାର ନାମ ଲାବଣ୍ୟବତୀ ଥିଲା । ଆଶ୍ରମବାସୀମାନେ ତାଙ୍କୁ ଶ୍ରଦ୍ଧାରେ 'ବାବୁ' ଓ 'ନନୀ' ବୋଲି ଡାକୁଥିଲେ । ପୁତ୍ର ଓ କନ୍ୟା ପବିତ୍ର ଜୀବନ ଯାପନ କରୁଥିଲେ । ସେମାନେ ୧୯୩୫–୩୭ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଜୀବିତ ଥିବାର ଜଣାଯାଏ ।

ଖଲିଆପାଲି ଆଶ୍ରମ ନିର୍ମାଣ ପରେ ପରେ ଭୀମଭୋଇ ପ୍ରତି ବର୍ଷ ମାଘ ପୂର୍ଣ୍ଣମୀଦିନ ଏକ ମେଳାର ଆୟୋଜନ କରୁଥିଲେ । ଶହ ଶହ ସଂଖ୍ୟାରେ ଭକ୍ତମାନେ ସେଥିରେ ଯୋଗ ଦେଉଥିଲେ । ସେଠାରେ ଏକ ବେଦି ନିର୍ମାଣ କରାଯାଉଥିଲା । ଅଷ୍ଟୋତ୍ତର ଶତ ଦୀପ ପ୍ରଜ୍ୱଳିତ କରାଯାଉଥିଲା । ବେଦି ଉପରେ ଉପବିଷ୍ଟ ଭୀମଭୋଇ ଓ ଅନ୍ନପୂର୍ଣ୍ଣାଙ୍କୁ ପୂଜା ଓ ଅର୍ଚ୍ଚନା କରାଯାଉଥିଲା । ବହୁସଂଖ୍ୟାରେ ଲୋକମାନେ ସେଠାକୁ ଆସୁଥିଲେ ଓ ପଂକ୍ତି ଭୋଜନରେ

ଯୋଗ ଦେଉଥିଲେ । ମାଘ ପୂର୍ଣ୍ଣିମା ବ୍ୟତୀତ କାର୍ତ୍ତିକ ଓ ବୈଶାଖ ମାସରେ ଏହି ଉତ୍ସବ ମଧ୍ୟ ପାଳିତ ହେଉଥିଲା ।

ଭୀମଭୋଇ ଦେଖିବାକୁ ଅତି ସୁନ୍ଦର ଥିଲେ । ସେ ଗାୟକ ଓ ବାଦକ ହିସାବରେ ଖ୍ୟାତି ଅର୍ଜନ କରିଥିଲେ । ସେ ନିଜେ ଗିନି ଓ ଖଞ୍ଜଣି ବଜାଉଥିଲେ । ସେ ସ୍ୱରଚିତ ଜଣାଣ ଓ ଭଜନ ସ୍ୱର ଓ ତାଳ ଦେଇ ଗାୟନ କଲାବେଳେ ଲୋକେ ମୋହିତ ହୋଇଯାଉଥିଲେ ।

୧୮୯୫ ଖ୍ରୀଷ୍ଟାବ୍ଦରେ କବିଙ୍କର ମାତ୍ର ୪୦ ବର୍ଷ ବୟସରେ ମୃତ୍ୟୁ ହେଲା । ପ୍ରାତଃଭଜନ ପରେ ସେ ପୂର୍ବାଭିମୁଖୀ ହୋଇ ମହିମାସ୍ୱାମୀଙ୍କୁ ସ୍ମରଣ କରୁ କରୁ ତାଙ୍କ ଆତ୍ମା ଶୂନ୍ୟବ୍ରହ୍ମରେ ଲୀନ ହୋଇଗଲା ।

ପ୍ରତିବର୍ଷ ଜୋରନ୍ଦା ପୀଠ ଭଳି ଖଲିଆପାଲି ଗ୍ରାମରେ ମାଘ ପୂର୍ଣ୍ଣମୀ ଦିନ ଏକ ବିରାଟ ମେଳା ହୁଏ । ଏହି ମେଳା ତିନି ଦିନ ଧରି ଚାଲେ । ସାଧୁମାନେ ଗେରୁଆ ବସ୍ତ୍ର ପରିଧାନ କରି ମୁଣ୍ଡର ଜଟକୁ ସୁନ୍ଦରଭାବରେ କପାଳ ଉପରେ ସଜାଡ଼ି ହାତରେ ବିରାଟକାୟ ତାଳପତ୍ର ଛତା ଓ ବାଡ଼ି ଧରି ଦୂର ଦୂରାନ୍ତରୁ ଏଠିକି ଆସନ୍ତି । ‘ଅଲେଖ’, ‘ମହିମା’ ଓ ଭୀମଭୋଇଙ୍କ ଜୟଧ୍ୱନିରେ ଗଗନ ପବନ ପ୍ରକମ୍ପିତ ହୋଇଉଠେ ।

ମହିମା ଧର୍ମ ପ୍ରଚାର ଫଳରେ ବ୍ରିଟିଶ ସରକାରଙ୍କ ପୃଷ୍ଠପୋଷକତା ଲାଭ କରିଥିବା ଖ୍ରୀଷ୍ଟଧର୍ମ ପ୍ରଚାରରେ ବାଧା ସୃଷ୍ଟି ହେଲା । ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଖ୍ରୀଷ୍ଟଧର୍ମ ପ୍ରବେଶ କରିପାରି ନ ଥିଲା । ପରିସଂଖ୍ୟାନରୁ ଜଣାଯାଏ ଯେ ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ସେତେବେଳେ ଧର୍ମାନ୍ତରୀ ଖ୍ରୀଷ୍ଟ ଧର୍ମାବଲମ୍ବୀମାନଙ୍କ ସଂଖ୍ୟା ଥିଲା ଖୁବ୍ କମ୍ ।

ଜାତି, ଧର୍ମ, ବର୍ଣ୍ଣ, ପଦପଦବୀ ନିର୍ବିଶେଷରେ ସମଗ୍ର ମାନବ ଜାତିକୁ ଗୋଟିଏ ଧର୍ମଦ୍ୱାରା ବାନ୍ଧି ରଖି ସମସ୍ତଙ୍କୁ ଏକ ପରିବାରଭୁକ୍ତ କରିବାପାଇଁ ପ୍ରାୟ ଏକ ଶହ ବର୍ଷ ତଳେ ଭୀମଭୋଇ ଯେଉଁ ଉଦ୍ୟମ କରିଥିଲେ, ତାହା ଥିଲା ବାସ୍ତବିକ ଅଭୂତପୂର୍ବ । ଉତ୍କଳୀୟ ସଂସ୍କୃତିର ଯେଉଁ କେତୋଟି ଅବଦାନପାଇଁ ଭାରତ ବିଶ୍ୱ ଦରବାରରେ ପ୍ରଶଂସିତ ହେଉଅଛି, ସେଥିମଧ୍ୟରୁ ସାର୍ବଜନୀନ ମହିମା ଧର୍ମ ଯେ ଅନ୍ୟତମ, ଏହା ସମସ୍ତେ ସ୍ୱୀକାର କରନ୍ତି ।



## ଅମର ସହିଦ
# ଜୟୀ ରାଜଗୁରୁ

ଊନବିଂଶ ଶତାବ୍ଦୀର ଆରମ୍ଭରେ ଯେଉଁମାନେ ବିଦେଶୀ କବଳରୁ ଦେଶ ଓ ଦଶକୁ ରକ୍ଷା କରିବାପାଇଁ ଲଢ଼ି ଲଢ଼ି ଶେଷରେ ପ୍ରାଣ ଦେଲେ, ସେମାନଙ୍କ ମଧ୍ୟରେ ଜୟୀ ରାଜଗୁରୁ ହେଉଛନ୍ତି ଅଗ୍ରଗଣ୍ୟ ।

### ବାଲ୍ୟ ଜୀବନ

ଜୟୀ ରାଜଗୁରୁ ଜାତିରେ କୌଶିକ ବାଜପେୟୀ ଥିଲେ । ତାଙ୍କର ବାସସ୍ଥାନ ଥିଲା ପୁରୀ ନିକଟବର୍ତ୍ତୀ ହରେକୃଷ୍ଣପୁର ଶାସନ । ତାଙ୍କର ଜଣେ ପୂର୍ବପୁରୁଷ ଶ୍ରୀକୃଷ୍ଣ ରାଜଗୁରୁ 'ନୀତି ରତ୍ନାକର' ନାମକ ଧର୍ମଶାସ୍ତ୍ର ପ୍ରଣୟନ କରି ଖୋର୍ଦ୍ଧାର ଗଜପତି ରାଜାଙ୍କଦ୍ୱାରା ବୃହତ୍ ପଣ୍ଡିତ ପଦବୀରେ ଭୂଷିତ ହୋଇଥିଲେ । ଶ୍ରୀକୃଷ୍ଣ ରାଜଗୁରୁଙ୍କ ତିନି ପୁତ୍ର ଥିଲେ । ଜ୍ୟେଷ୍ଠ ପୁତ୍ର ହଳଧର ରାଜଗୁରୁ ଭୋଇବଂଶର ରାଜା ହରେକୃଷ୍ଣଦେବ (୧୬୧୫-୧୬୨୦)ଙ୍କ ପାଟରାଣୀଙ୍କ ମନ୍ତ୍ରଦାତା ଥିଲେ । ସେ ଶାରଦ ବାଜପେୟୀ ନାମକ ଯଜ୍ଞ କରିଥିଲେ ଓ ରାଜାଙ୍କଠାରୁ ହରେକୃଷ୍ଣପୁର ଶାସନ ଦାନସୂତ୍ରେ ପାଇଥିଲେ । ତାଙ୍କର ସାନଭାଇ ନୀଳାମ୍ବର ରାଜଗୁରୁ ବେଦାନ୍ତ, ସ୍ମୃତି, ସାହିତ୍ୟ, ବ୍ୟାକରଣ, ଆୟୁର୍ବେଦ ପ୍ରଭୃତିରେ ପାଣ୍ଡିତ୍ୟ ଅର୍ଜନ କରିଥିଲେ । ତାଙ୍କ ପାଣ୍ଡିତ୍ୟରେ

ହରେକୃଷ୍ଣଦେବ ମୁଗ୍ଧ ହୋଇ ସୁନା ତାରା ଓ ଶ୍ରୀକୃଷ୍ଣଙ୍କ ପଦ ଚିହ୍ନ ଥିବା ଛତ୍ର, ଚାମର ପ୍ରଭୃତି ଦାନ କରିଥିଲେ । ନୀଳାମ୍ବରଙ୍କ ଔରସ ଓ ଜାନକୀ ଦେବୀଙ୍କ ଗର୍ଭରୁ ଗଦାଧର ଜନ୍ମଗ୍ରହଣ କରିଥିଲେ । ସେ 'କାଳସାର', 'ଆଚାରସାର', 'ଶୁଦ୍ଧସାର', 'ଦାନସାର', 'ବ୍ରତସାର' ପ୍ରଭୃତି ଅଠର ଗୋଟି ଧର୍ମଶାସ୍ତ୍ର ପ୍ରଣୟନ କରିଥିଲେ । ତାଙ୍କ ରଚିତ ଗ୍ରନ୍ଥମାନଙ୍କରେ କେବଳ ଦୁଇଟି ଗ୍ରନ୍ଥ 'କାଳସାର' ଓ 'ଆଚାରସାର' ଓଡ଼ିଆରେ ପ୍ରକାଶିତ ହୋଇଅଛି । ସେତେବେଳେ ଭାରତର କୌଣସି ଅଞ୍ଚଳରେ ଏପରି ବିରାଟ ଧର୍ମଗ୍ରନ୍ଥମାନ ରଚିତ ହୋଇଥିବାର ଜଣାଯାଏ ନାହିଁ। ଗଦାଧର ସ୍ମୃତିଶାସ୍ତ୍ରଗୁଡ଼ିକୁ ସମୂହଭାବରେ ଗଦାଧର ପଦ୍ଧତି ବୋଲି କୁହାଯାଏ । ତାଙ୍କର ଅସାଧାରଣ ପାଣ୍ଡିତ୍ୟରେ ମୁଗ୍ଧ ହୋଇ ଭୋଇବଂଶର ରାଜା ଦିବ୍ୟସିଂହଦେବ (୧୬୮୮-୧୭୧୪) ତାଙ୍କୁ ରାଜଗୁରୁଭାବେ ନିଯୁକ୍ତ କଲେ । ଜୟୀକୃଷ୍ଣ ବା ଜୟୀ ରାଜଗୁରୁ ହେଉଛନ୍ତି ଏହି ଗଦାଧର ରାଜଗୁରୁଙ୍କ ନାତି । ସେ ୧୭୩୯ ମସିହା ଅଁଳାନବମୀ ଦିନ ଜନ୍ମଗ୍ରହଣ କରିଥିଲେ ।

ଜୟୀ ରାଜଗୁରୁଙ୍କ ପିତାଙ୍କ ନାମ ଥିଲା ଚାନ୍ଦ ରାଜଗୁରୁ । ସେ ଗଦାଧରଙ୍କ ଦ୍ୱିତୀୟ ପୁତ୍ର ଥିଲେ । ଚାନ୍ଦ ରାଜଗୁରୁଙ୍କର ଅସାଧାରଣ ପାଣ୍ଡିତ୍ୟ ଓ ପ୍ରଗାଢ଼ ଧର୍ମନିଷ୍ଠା ଥିଲା । ସେ ଉତ୍କଳରେ ସ୍ମାର୍ତ୍ତ ମତର ପୁନଃପ୍ରତିଷ୍ଠା କରିଥିଲେ । ଜୟୀ ରାଜଗୁରୁ ମଧ୍ୟ ପୂର୍ବପୁରୁଷମାନଙ୍କ ପରି ଶାସ୍ତ୍ର ପ୍ରଭୃତିରେ ପାଣ୍ଡିତ୍ୟ ଅର୍ଜନ କଲେ । ସ୍ମୃତି ଓ ସାହିତ୍ୟ ଆଦିରେ ତାଙ୍କର ଅସାଧାରଣ ଜ୍ଞାନ ଥିଲା । କେବଳ ସେତିକି ନୁହେଁ, ସେ ଯୁଦ୍ଧବିଦ୍ୟାରେ ପାରଙ୍ଗମ ଥିଲେ । ସେ ମୁକୁନ୍ଦଦେବଙ୍କ ରାଜଗୁରୁଭାବେ ନିଯୁକ୍ତ ହେଲେ । ଦ୍ୱିତୀୟ ମୁକୁନ୍ଦଦେବ ନାବାଳକ ଥିବାରୁ ସେ ରାଜାଙ୍କ ଅଭିଭାବକଭାବେ ଶାସନ କାର୍ଯ୍ୟ ଚଳାଇଲେ ।

## ମରହଟ୍ଟାମାନଙ୍କ ଓଡ଼ିଶା ଅଧିକାର

ମୋଗଲମାନଙ୍କ ପରେ ମରହଟ୍ଟାମାନେ ଓଡ଼ିଶା ଅଧିକାର କରି ପଚାଶ ବର୍ଷ କାଳ ରାଜତ୍ୱ କରିଥିଲେ । ତାଙ୍କ ରାଜ୍ୟ ସୁବର୍ଣ୍ଣରେଖା ନଦୀଠାରୁ ଚିଲିକା ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଓଡ଼ିଶା ମଧ୍ୟ ସେତେବେଳେ ଦୁଇ ଭାଗରେ ବିଭକ୍ତ ଥିଲା । ଗଡ଼ଜାତ ରାଜାମାନେ ନାଗପୁରର ଭୋନ୍‌ସଲାଙ୍କ ପ୍ରତି ଆନୁଗତ୍ୟ ଦେଖାଇଲେ ଓ ତାଙ୍କୁ ବାର୍ଷିକ କର ଦେଇ ସାର୍ବଭୌମ ଅଧିକାର ଉପଭୋଗ କଲେ । ସେମାନଙ୍କର ପଦମର୍ଯ୍ୟାଦା ଅନୁଯାୟୀ ବାର୍ଷିକ ରାଜସ୍ୱ ସ୍ଥିର ହେଲା । ଖୋର୍ଦ୍ଧା ଭୋଇବଂଶର ରାଜାମାନେ ରାଜସ୍ୱ ଦେଉ ନ ଥିଲେ । ଜଗନ୍ନାଥଙ୍କ ସେବା କରୁଥିବାରୁ ମରହଟ୍ଟାମାନେ ତାଙ୍କଠାରୁ ରାଜସ୍ୱ ଦାବି ମଧ୍ୟ କରୁ ନ ଥିଲେ । ଖୋର୍ଦ୍ଧାର ରାଜାମାନେ ଉଣା ଅଧିକେ ସାର୍ବଭୌମ କ୍ଷମତା ଉପଭୋଗ କରୁଥିଲେ ।

ଭୋଇବଂଶର ରାଜା ବୀରକିଶୋରଦେବ ୧୭୩୯ରୁ ୧୭୯୩ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ । ୧୭୬୦ ଖ୍ରୀଷ୍ଟାବ୍ଦରେ ପାରଳାଖେମୁଣ୍ଡିର ରାଜା ନାରାୟଣଦେବ ଖୋର୍ଦ୍ଧା ଆକ୍ରମଣ କଲେ । ବୀରକିଶୋରଦେବ ଓଡ଼ିଶାର ମରହଟ୍ଟା ସୁବାଦାର ଶେଓଭଟ ସାଠେଙ୍କର ସାହାଯ୍ୟ ଲୋଡ଼ିଲେ । ସେ ଯୁଦ୍ଧ ଖର୍ଚ୍ଚବାବଦ ଏକ ଲକ୍ଷ ଟଙ୍କା ଦେବେ ବୋଲି ଚୁକ୍ତି କଲେ । ମରହଟ୍ଟାମାନଙ୍କ ସାହାଯ୍ୟରେ ପାରଳାଖେମୁଣ୍ଡି ସେନାବାହିନୀ ବିତାଡ଼ିତ ହେଲେ । ମାତ୍ର ରାଜା ଏତେ ବେଶି ଟଙ୍କା ଦେଇପାରିଲେ ନାହିଁ । ସେ ଲେମ୍ବାଇ, ରାହାଙ୍ଗ ଓ ଚବିଶକୁଦ ପ୍ରଭୃତି ଉତ୍କୃଷ୍ଟ ଅଞ୍ଚଳ ମରହଟ୍ଟାମାନଙ୍କୁ ବନ୍ଧା ଦେଲେ । ଟଙ୍କା ପୈଠ ହେବା ପରେ ରାଜା ଏହାକୁ ଫେରିପାଇବା ଚୁକ୍ତି ହେଲା । ଏହା ଫଳରେ ରାଜ୍ୟର ଆୟତନ ଓ ଆୟ ଯଥେଷ୍ଟ ହ୍ରାସ ପାଇଲା । ଜୟୀ ରାଜଗୁରୁ ସେଗୁଡ଼ିକୁ ଫେରିପାଇବାପାଇଁ ସୁବିଧା ଓ ସୁଯୋଗ ଅପେକ୍ଷାରେ ରହିଥିଲେ ।

## ନୂତନ ଶକ୍ତିର ଅଭ୍ୟୁଦୟ

ଊନବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ଇଂରେଜ ଶକ୍ତିର ଅଭ୍ୟୁଦୟ ହେଲା । ଭାରତର ଅନ୍ୟାନ୍ୟ ଅଞ୍ଚଳ ଭଳି ଇଂରେଜମାନେ ଓଡ଼ିଶାକୁ ପ୍ରଥମେ ବାଣିଜ୍ୟ କରିବାକୁ ଆସିଥିଲେ । ସେମାନେ ପ୍ରଥମେ ହରିହରପୁରଠାରେ ୧୬୩୩ ଖ୍ରୀଷ୍ଟାବ୍ଦରେ ଏକ ବାଣିଜ୍ୟ କୋଠି ନିର୍ମାଣ କରିଥିଲେ । ଏହା ପରେ ବାଲେଶ୍ୱର ଓ ସୁବର୍ଣ୍ଣରେଖା କୂଳରେ ଥିବା ପିପିଲିଠାରେ ବାଣିଜ୍ୟ କେନ୍ଦ୍ରମାନ ସ୍ଥାପନ କରିଥିଲେ । ସପ୍ତଦଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ସେମାନଙ୍କ କାର୍ଯ୍ୟ ବାଣିଜ୍ୟ ବ୍ୟବସାୟରେ ସୀମିତ ଥିଲା । ମାତ୍ର ଏହାପରେ ସେମାନେ ରାଜ୍ୟ ଜୟ ଦିଗରେ ମନ ଦେଲେ ।

ସପ୍ତଦଶ ଶତାବ୍ଦୀର ମଧ୍ୟଭାଗରେ ପ୍ରାୟ ୧୭୫୯ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଉତ୍ତର ସରକାର ସମେତ ଗଞ୍ଜାମ ଜିଲ୍ଲା ହାଇଦ୍ରାବାଦର ନିଜାମ ସଲାବତ୍‌ଜଙ୍ଗଙ୍କ ଠାରୁ ପାଇଲେ । ନିଜାମ ଓ ଇଂରେଜମାନଙ୍କ ମଧ୍ୟରେ ଏକ ଚୁକ୍ତି ହେଲା । ଏହି ଚୁକ୍ତି ୧୭୬୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୧୨ ତାରିଖରେ ମୋଗଲ ସମ୍ରାଟ୍‌ଙ୍କଦ୍ୱାରା ଅନୁମୋଦିତ ହୋଇଥିଲା । ୧୭୬୬ରେ ଇଂରେଜମାନେ ଗଞ୍ଜାମକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ରଖିଲେ । ସେନାପତି ବୋଟ୍‌ସଫୋର୍ଡ଼ ଗଞ୍ଜାମର ପ୍ରଥମ ପ୍ରେସିଡେଣ୍ଟ ହେଲେ । ବୋଟ୍‌ସଫୋର୍ଡ଼ଙ୍କ ଉଦ୍ୟମରେ ପାରଳାଖେମୁଣ୍ଡି, ଘୁମୁସର, ମହୁରୀ, ବଡ଼ଖେମୁଣ୍ଡି, ଆଠଗଡ଼, ଚିକିଟି, ଖଲିକୋଟ ପ୍ରଭୃତିର ଜମିଦାର ଇଂରେଜମାନଙ୍କର ବଶ୍ୟତା ସ୍ୱୀକାର କଲେ । ଇଂରେଜମାନେ ଋଷିକୁଲ୍ୟା

ନଦୀ ମୁହାଣ ନିକଟରେ ଥିବା ଗଞ୍ଜାମରେ ଦଳେ ସୈନ୍ୟ ରଖିଲେ । ପରେ ତାହା ଛତ୍ରପୁରକୁ ଉଠାଇନେଲେ । ଏହାପରେ ଇଂରେଜମାନେ ଉତ୍ତର ଓଡ଼ିଶା ଅଧିକାର ପ୍ରତି ଦୃଷ୍ଟି ଦେଲେ । ୧୭୫୭ ପଲାସୀ ଯୁଦ୍ଧରେ ଇଂରେଜମାନେ ବିଜୟ ହାସଲ କଲେ । ୧୭୬୫ ଖ୍ରୀଷ୍ଟାବ୍ଦ ଅଗଷ୍ଟ ୧୨ରେ ସେମାନେ ମୋଗଲ ସମ୍ରାଟ୍‌ଙ୍କଠାରୁ ବଙ୍ଗ-ବିହାର-ଓଡ଼ିଶାର ଦେଓ୍ୱାନୀ ଲାଭ କଲେ । ସେତେବେଳେ ଓଡ଼ିଶା କେବଳ ମେଦିନୀପୁର ଜିଲ୍ଲାକୁ ବୁଝାଉଥିଲା । ସୁବର୍ଣ୍ଣରେଖାର ଅପରପାର୍ଶ୍ୱରେ ମରହଟ୍ଟାମାନେ ଶାସନ କରୁଥିଲେ । ଶାସନର ସୁବିଧା ଦୃଷ୍ଟିରୁ ସେମାନେ ମରହଟ୍ଟାମାନଙ୍କଠାରୁ ଓଡ଼ିଶା ଅଧିକାର କରିବାପାଇଁ ସ୍ଥିର କଲେ ।

ଇଂରେଜମାନେ ପ୍ରଥମେ ବଳପ୍ରୟୋଗ ନ କରି ଶାନ୍ତିପୂର୍ଣ୍ଣ ଉପାୟରେ ଓଡ଼ିଶା ଅଧିକାର କରିବାପାଇଁ ଚେଷ୍ଟା କଲେ । ୧୭୬୬ ଖ୍ରୀଷ୍ଟାବ୍ଦରେ କ୍ଲାଇବ ସାର୍ ଟୋମାସ ମୋଟ ନାମକ ଜଣେ ସ୍ୱତନ୍ତ୍ର ଦୂତଙ୍କୁ ମରହଟ୍ଟାମାନଙ୍କ ପାଖକୁ ପଠାଇଲେ । ସେ କଟକରେ ମରହଟ୍ଟା ସୁବାଦାର ଭବାନୀ ପଣ୍ଡିତଙ୍କୁ ଭେଟିଲେ ଓ ଏକ ନିର୍ଦ୍ଦିଷ୍ଟ ପରିମାଣର ଅର୍ଥ ବଦଳରେ ସମଗ୍ର ଓଡ଼ିଶାକୁ ହସ୍ତାନ୍ତର କରିବାପାଇଁ ପ୍ରସ୍ତାବ ଦେଲେ । ମାତ୍ର ତାହା ଫଳପ୍ରଦ ହୋଇ ନ ଥିଲା । କ୍ଲାଇବଙ୍କ ପରେ ୱାରେନ୍ ହେଷ୍ଟିଙ୍ଗସ୍ ମରହଟ୍ଟାମାନଙ୍କର ମାଧୋଜୀ ଭୋନ୍‌ସଲାଙ୍କ ସହିତ କଥାବାର୍ତ୍ତା ଚଳାଇଲେ । ସେ ଓଡ଼ିଶା ମଧ୍ୟ ଦେଇ ଦକ୍ଷିଣଭାରତକୁ ଏକ ସେନାବାହିନୀ ପଠାଇବାପାଇଁ ଅନୁମତି ପାଇଲେ । ଲର୍ଡ଼ କର୍ଣ୍ଣୱାଲିସ ମଧ୍ୟ ଦ୍ୱିତୀୟ ରଘୁଜୀ ଭୋନ୍‌ସଲାଙ୍କ ସହିତ କଥାବାର୍ତ୍ତା କରିଥିଲେ ଓ ଓଡ଼ିଶା ମଧ୍ୟ ଦେଇ ଇଂରେଜ ସେନାବାହିନୀ ପଠାଇ ପାରିଥିଲେ । ମାତ୍ର ଓଡ଼ିଶା ଛାଡ଼ିବା ପ୍ରସ୍ତାବରେ ମରହଟ୍ଟାମାନେ ରାଜି ହୋଇ ନ ଥିଲେ । ଲର୍ଡ଼ ହେଷ୍ଟିଙ୍ଗ୍‌ସଙ୍କ ପରେ ୧୭୯୮ ଖ୍ରୀଷ୍ଟାବ୍ଦରେ ଉଏଲେସଲୀ ବଙ୍ଗର ଗଭର୍ଣ୍ଣର ଜେନେରାଲ ହେଲେ । ସେ ଭାରତରେ ଉଗ୍ର ଦମନ ନୀତି ଗ୍ରହଣ କଲେ । ତେଣୁ ସେ କଥାବାର୍ତ୍ତା ପରିବର୍ତ୍ତେ ସାମରିକ ଅଭିଯାନଦ୍ୱାରା ଓଡ଼ିଶା ଅଧିକାରପାଇଁ ବଦ୍ଧପରିକର ହେଲେ । ସେ ୧୮୦୩ ଖ୍ରୀଷ୍ଟାବ୍ଦ ଅଗଷ୍ଟ ମାସ ୩ ତାରିଖରେ ମରହଟ୍ଟାମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ ।

ଯୁଦ୍ଧ ଆରମ୍ଭର ବହୁ ପୂର୍ବରୁ ଚତୁର ଇଂରେଜମାନେ ଓଡ଼ିଶାର ରାଜା, ଜମିଦାର ତଥା ଜନସାଧାରଣଙ୍କର ସାହାଯ୍ୟ ଓ ସମର୍ଥନ ପାଇବାପାଇଁ ଉଦ୍ୟମ କରିଥିଲେ । ସେମାନଙ୍କୁ ନାନାପ୍ରକାରେ ପ୍ରଲୋଭିତ କରିଥିଲେ । ଜଗନ୍ନାଥ ମନ୍ଦିରର ସୁରକ୍ଷାପାଇଁ ଇଂରେଜମାନେ ମଧ୍ୟ ପ୍ରତିଶ୍ରୁତି ଦେଲେ । କଲିକତାର ଜଗନ୍ନାଥ ତ୍ରିବେଣୀ ନାମକ ପଣ୍ଡିତ ପୁରୀମନ୍ଦିରର ବଡ଼ପଣ୍ଡାଙ୍କୁ ଇଂରେଜମାନଙ୍କ

ଉଦାର ଧର୍ମନୀତି ବିଷୟରେ ଲେଖିଥିଲେ । ସେମାନେ ଉତ୍ତରପୂର୍ବ ସୀମାନ୍ତରେ ଥିବା ମୟୂରଭଞ୍ଜର ରାଜା ବିକ୍ରମଭଞ୍ଜ, 'ପୋଡ଼ାହାଟ' (ସିଂହଭୂମ)ର ରାଜା ଅଭିରାମ ସିଂହ, ଧଳଭୂମିର ରାଜା ଜଗନ୍ନାଥ ଧଳ ପ୍ରଭୃତି ରାଜାମାନଙ୍କ ସହିତ ଚୁକ୍ତି ସମ୍ପାଦନ କଲେ । ସେମାନଙ୍କଠାରୁ ସାହାଯ୍ୟ ମଧ୍ୟ ପାଇଲେ । ଏହାପରେ ଖୋର୍ଦ୍ଧାର ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ସମର୍ଥନ ପାଇବାର ଆବଶ୍ୟକତା ଦେଖାଦେଲା । ତା'ର ଦୁଇଟି କାରଣ ଥିଲା । ପ୍ରଥମରେ, ପ୍ରଧାନ ରାସ୍ତାଗୁଡ଼ିକ ଖୋର୍ଦ୍ଧା ରାଜ୍ୟ ଦେଇ ଯାଇଥିଲା । ଦ୍ୱିତୀୟରେ, ଖୋର୍ଦ୍ଧା ରାଜା ମରହଟ୍ଟାମାନଙ୍କୁ ସାହାଯ୍ୟ ଦେବାର ଆଶଙ୍କା ଥିଲା । ଏଥିପାଇଁ ଗଞ୍ଜାମର କଲେକ୍ଟର ଖୋର୍ଦ୍ଧା ରାଜାଙ୍କ ପାଖକୁ ଓକିଲ ପଠାଇଲେ । ଖୋର୍ଦ୍ଧା ରାଜା ମଧ୍ୟ ତାଙ୍କ ଓକିଲ ଗଞ୍ଜାମର କଲେକ୍ଟରଙ୍କ ପାଖକୁ ପଠାଇଥିଲେ । ସମ୍ଭବତଃ, ଜୟୀ ରାଜଗୁରୁ ଏହାର ବିରୋଧ କରିଥିଲେ । ସେ ଇଂରେଜମାନଙ୍କୁ ସାହାଯ୍ୟ ଦେବାକୁ ଅନିଚ୍ଛୁକ ଥିଲେ । ମାତ୍ର ମରହଟ୍ଟାମାନଙ୍କ ସହିତ ଯୁଦ୍ଧ ପରେ ମରହଟ୍ଟାମାନଙ୍କ ଅଧୀନରେ ଥିବା ଲେମ୍ବାଇ, ରାହାଙ୍ଗ, ଚବିଶକୁଦ ଅଞ୍ଚଳଗୁଡ଼ିକୁ ଫେରାଇ ଦିଆଯିବା ସର୍ତ୍ତରେ ସେ ସେମାନଙ୍କ ପ୍ରସ୍ତାବରେ ରାଜି ହେଲେ । ସମ୍ଭବତଃ, ଅବସ୍ଥାର ଗୁରୁତ୍ୱ ଦୃଷ୍ଟିରୁ ଇଂରେଜମାନେ ଏଥିରେ ସମ୍ମତ ହେଲେ । ଇଂରେଜମାନେ ମଧ୍ୟ ଏଥିପାଇଁ ୧୦,୦୦୦ ଟଙ୍କା ଦେଲେ ।

## ଓଡ଼ିଶା ଅଧିକାର

ଇଂରେଜମାନେ ଏକ ସମୟରେ ତିନି ଦିଗରୁ ଓଡ଼ିଶା ଆକ୍ରମଣ କଲେ । ସେନାପତି କ୍ୟାମ୍ପବେଲ୍ ଗଞ୍ଜାମରୁ ଅଭିଯାନପାଇଁ ବାହାରିଲେ । ମାତ୍ର ସେ ଅସୁସ୍ଥ ହୋଇପଡ଼ିବାରୁ ତାଙ୍କ ସ୍ଥାନରେ କର୍ଣ୍ଣେଲ ହାରକୋର୍ଟଙ୍କୁ ନିଯୁକ୍ତି ଦିଆଗଲା । ୧୮୦୩ ମସିହା ସେପ୍ଟେମ୍ବର ମାସ ୧୧ ତାରିଖରେ ହାରକୋର୍ଟ ତିନି ହଜାର ସୈନ୍ୟ ଓ ବହୁ ଅସ୍ତ୍ରଶସ୍ତ୍ର ଧରି ଗଞ୍ଜାମରୁ ବାହାରିଲେ । ସମୁଦ୍ର କୂଳେ କୂଳେ ଚିଲିକା ଦେଇ ସେ ମାଣିକପାଟଣାରେ ପହଞ୍ଚିଲେ । ସେଠାରେ ମରହଟ୍ଟାମାନେ ଫଉଜଦାର ଫତେ ମହମ୍ମଦଙ୍କୁ ଇଂରେଜମାନଙ୍କ ଗତିରୋଧ କରିବାପାଇଁ ରଖିଥିଲେ । ମାତ୍ର ଫତେ ମହମ୍ମଦ ମରହଟ୍ଟାମାନଙ୍କ ପକ୍ଷ ତ୍ୟାଗ କରି ଇଂରେଜମାନଙ୍କ ସହିତ ଯୋଗ ଦେଲେ । ହାରକୋର୍ଟ ବିନା ଯୁଦ୍ଧରେ ମାଣିକପାଟଣା ଅଧିକାର କରି ୧୭ ତାରିଖ ଦିନ ନରସିଂହପାଟଣାରେ ପହଞ୍ଚିଲେ । ସେଠାରେ ମଧ୍ୟ କୌଣସି ପ୍ରତିରୋଧର ସମ୍ମୁଖୀନ ହେଲେ ନାହିଁ । ସେ ୧୮ ତାରିଖରେ ପୁରୀରେ ପହଞ୍ଚିଲେ । ମରହଟ୍ଟାମାନେ ପୁରୀ ଛାଡ଼ି ପଳାଇଲେ । ଇଂରେଜମାନେ ସହଜରେ ପୁରୀ ଅଧିକାର କଲେ । ଜଗନ୍ନାଥ ମନ୍ଦିରର ଦାୟିତ୍ୱ ସିପାହିମାନଙ୍କୁ

ଦେଇ କର୍ଣ୍ଣେଲ ହାରକୋର୍ଟ କଟକ ଅଭିମୁଖେ ଯାତ୍ରା କଲେ । ମରହଟ୍ଟାମାନେ ପୁରୀରୁ ପଳାଇଯାଇ ଦାଣ୍ଡମୁକୁନ୍ଦପୁରଠାରେ ଲୁଚି ରହିଥିଲେ । ଇଂରେଜ ସୈନ୍ୟମାନେ ଜଗନ୍ନାଥ ସଡ଼କରେ ଚାଲି ଚାଲି ଯାଉଥିଲେ । ଅହମ୍ମଦପୁର ଓ ଦାଣ୍ଡମୁକୁନ୍ଦପୁରଠାରେ ଇଂରେଜମାନଙ୍କ ସହ ଖଣ୍ଡ ଯୁଦ୍ଧ ହେଲା । ମରହଟ୍ଟାମାନେ କିନ୍ତୁ ପରାସ୍ତ ହୋଇ ପଳାୟନ କଲେ ।

ହାରକୋର୍ଟ ପିପିଲିଠାରୁ ବାରଙ୍ଗବାଟେ କାଠଯୋଡ଼ି ନଦୀ ପାର ହୋଇ ଅକ୍ଟୋବର ମାସ ୮ ତାରିଖରେ କଟକରେ ପହଞ୍ଚିଲେ । ମରହଟ୍ଟାମାନେ ବାରବାଟୀ ଦୁର୍ଗକୁ ରକ୍ଷା କରିବାକୁ ଚେଷ୍ଟା କଲେ । ଇଂରେଜମାନେ ୮ ତାରିଖରୁ ୧୩ ତାରିଖ ପର୍ଯ୍ୟନ୍ତ ବାରବାଟୀ ଦୁର୍ଗ ଆଗରେ ବନ୍ଧୁକ ତଥା ଅସ୍ତ୍ରଶସ୍ତ୍ର ରଖିଲେ । ୧୪ ତାରିଖରେ ଗୁଳିବର୍ଷଣ କଲେ । ଶେଷରେ ପୂର୍ବ ଦ୍ୱାର ଭାଙ୍ଗି ଦୁର୍ଗ ମଧ୍ୟରେ ପ୍ରବେଶ କଲେ । ମରହଟ୍ଟାମାନେ ପ୍ରାଣମୂର୍ଚ୍ଛା ଲଢ଼େଇ କଲେ ମଧ୍ୟ ପରାସ୍ତ ହେଲେ । ବାରବାଟୀ ଦୁର୍ଗ ଇଂରେଜମାନଙ୍କଦ୍ୱାରା ଅଧିକୃତ ହେଲା ।

ବଙ୍ଗଳାରୁ କ୍ୟାପଟେନ୍ ମୋରଗାନ୍ ପାଞ୍ଚ ଶହ ସୈନ୍ୟ ଧରି ତିନୋଟି ଜାହାଜରେ ଆସି ବାଲେଶ୍ୱରର ସମୁଦ୍ର କୂଳବର୍ତ୍ତୀ ଜାମପଡ଼ାରେ ପହଞ୍ଚିଲେ । ସେଠାରେ ମରହଟ୍ଟା ଓ ଇଂରେଜମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ମରହଟ୍ଟାମାନେ ପଳାୟନ କଲେ ଓ ବାଲେଶ୍ୱର ଇଂରେଜମାନଙ୍କଦ୍ୱାରା ଅଧିକୃତ ହେଲା ।

ଏଥିମଧ୍ୟରେ କର୍ଣ୍ଣେଲ ଫର୍ଗୁସନ୍‌ଙ୍କ ନେତୃତ୍ୱରେ ଆଉ ଏକ ଦଳ କଲିକତାରୁ ବାହାରି ମେଦିନୀପୁର ବାଟେ ଆସି ଜଳେଶ୍ୱରରେ ପହଞ୍ଚିଲେ । ସେଠାରୁ ବାଲେଶ୍ୱର ଅଭିମୁଖେ ଯାତ୍ରା କରି ମୋରଗାନ୍‌ଙ୍କ ଦଳ ସହିତ ଯୋଗ ଦେଲେ । ଏହା ପରେ ମିଳିତ ସେନା ଦଳ କଟକ ଅଭିମୁଖେ ଯାତ୍ରା କଲେ । ମାତ୍ର କଟକରେ ପହଞ୍ଚିବା ପୂର୍ବରୁ ହାରକୋର୍ଟ ବାରବାଟୀ ଦୁର୍ଗ ଅଧିକାର କରିସାରିଥିଲେ ।

ହାରକୋର୍ଟ ମରହଟ୍ଟାମାନଙ୍କ ବିରୋଧରେ ମେଜର ଫୋର୍ବିସ୍‌ଙ୍କ ନେତୃତ୍ୱରେ ଦଳେ ସୈନ୍ୟ ବଉଦର ବଡ଼ମୂଳ ଘାଟିକୁ ପଠାଇଲେ । ମରହଟ୍ଟା ସୈନ୍ୟମାନେ ଏହା ପୂର୍ବରୁ ପଶ୍ଚିମ ଓଡ଼ିଶାକୁ ପଳାଇ ଯାଇଥିଲେ । ବଉଦ ଓ ସୋନପୁରର ରାଜାମାନେ ବଡ଼ମୂଳ ଘାଟିଠାରେ ଫୋର୍ବିସ୍‌ଙ୍କୁ ସାକ୍ଷାତ କଲେ ଓ ଇଂରେଜମାନଙ୍କର ବଶ୍ୟତା ସ୍ୱୀକାର କଲେ । ୧୮୦୪ ଜାନୁଆରୀରେ ମେଜର ବ୍ରାଉଟନ୍ ସମ୍ବଲପୁର ଜୟ କରିନେଲେ । ଶେଷରେ ଇଂରେଜ ଓ ମରହଟ୍ଟାମାନଙ୍କର ଦେଓଗାଁ ଚୁକ୍ତି ସ୍ୱାକ୍ଷରିତ ହେଲା । ଏଥିରେ ଇଂରେଜମାନଙ୍କର ଓଡ଼ିଶା ଅଧିକାର ଅନୁମୋଦିତ ହୋଇଗଲା ।

ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ ଇଂରେଜମାନଙ୍କର ଅଭିଯାନବେଳେ ବିରୋଧ କରି ନ ଥିଲେ । ସେ ନିଜ ଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ତିନି ଶହ ସୈନ୍ୟ ଓ ଅନ୍ୟାନ୍ୟ ସାମଗ୍ରୀ ଯୋଗାଇ ଦେବାପାଇଁ ଚାହିଁଥିଲେ । ମାତ୍ର ବାରବାଟୀ ଦୁର୍ଗର ପତନ ପରେ ରାଜାଙ୍କର ସାହାଯ୍ୟ ଆବଶ୍ୟକ ହୋଇ ନ ଥିଲା । ସେମାନେ ତେଣୁ ରାଜାଙ୍କ ସାହାଯ୍ୟ ନେଇ ନ ଥିଲେ ।

## ସର୍ତ୍ତ ପୂରଣରେ ଖିଲାପ

ଇଂରେଜମାନେ ଓଡ଼ିଶା ଜୟ ଲାଭ ପରେ ପୂର୍ବ ସର୍ତ୍ତ ଅନୁଯାୟୀ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଲେମ୍ବାଇ, ରାହାଙ୍ଗ, ଚବିଶକୁଦ ପ୍ରଭୃତି ଅଞ୍ଚଳ ଫେରାଇ ଦେବାକୁ କୌଣସି ପଦକ୍ଷେପ ନେଲେ ନାହିଁ । ମୁକୁନ୍ଦଦେବ ବହୁକାଳ ଅପେକ୍ଷା କଲା ପରେ ସେ ଅଞ୍ଚଳଗୁଡ଼ିକୁ ଫେରିପାଇବାକୁ ବ୍ୟଗ୍ର ହୋଇପଡ଼ିଲେ । ପୂର୍ବେ କୁହାଯାଇଛି ଯେ ରାଜା ନାବାଳକ ଥିବାରୁ ଜୟୀ ରାଜଗୁରୁ ରାଜ୍ୟର ଶାସନ ଭାର ତୁଲାଉଥିଲେ । ସେ ରାଜାଙ୍କ ପକ୍ଷରୁ ୧୮୦୪ ମସିହା ମାର୍ଚ୍ଚ ମାସରେ ଦୁଇ ହଜାର ସୈନ୍ୟ ନେଇ କଟକ ଗଲେ ଓ ହାରକୋର୍ଟଙ୍କ ସଙ୍ଗେ ଦେଖା କଲେ ଏବଂ ଚାରୋଟି ପ୍ରଗଣା ଫେରାଇଦେବାକୁ ଦାବି କଲେ । ଚୁକ୍ତି ଅନୁଯାୟୀ ପ୍ରାପ୍ୟ ଏକ ଲକ୍ଷ ଟଙ୍କାରୁ ଅବଶିଷ୍ଟ ଟଙ୍କା ଦେବାକୁ ମଧ୍ୟ ଅନୁରୋଧ କଲେ । କର୍ଣ୍ଣେଲ ହାରକୋର୍ଟ ସଙ୍ଗେ ସଙ୍ଗେ ଚାଳିଶ ହଜାର ଟଙ୍କା ଦେଲେ ଓ ପରେ ଅବଶିଷ୍ଟ ଟଙ୍କା ଦେବାକୁ କହିଲେ । ମାତ୍ର ଲେମ୍ବାଇ, ରାହାଙ୍ଗ ପ୍ରଭୃତି ଅଞ୍ଚଳ ଫେରାଇବାର ଘୋର ବିରୋଧ କଲେ । ସେଗୁଡ଼ିକ ପ୍ରଥମେ ମରହଟ୍ଟାମାନଙ୍କ ଅଧୀନରେ ଥିବାରୁ ସେଗୁଡ଼ିକୁ ଫେରାଇବା ପ୍ରଶ୍ନ ଉଠୁ ନାହିଁ ବୋଲି ଯୁକ୍ତି କଲେ । ଏପରିକି ଇଞ୍ଚେ ପରିମିତ ଜାଗା ମଧ୍ୟ ଦେଇପାରିବେନି ବୋଲି ରୋକଠୋକ ଜଣାଇଦେଲେ । ଜୟୀ ରାଜଗୁରୁଙ୍କୁ ୪୦,୦୦୦ ଟଙ୍କା ମଧ୍ୟ ଦିଆଗଲା ।

ରାଜଗୁରୁ ବ୍ୟର୍ଥ ମନୋରଥ ହୋଇ ଖୋର୍ଦ୍ଧା ଫେରିଲେ । ସେ ରାଜାଙ୍କୁ କହିଲେ – "ମୁଁ ପ୍ରଥମେ ଇଂରେଜମାନଙ୍କ ସହିତ ବନ୍ଧୁତା କରିବାକୁ ମନା କରୁଥିଲି । ସେମାନଙ୍କର ସୈନ୍ୟମାନଙ୍କୁ ରାସ୍ତା ଦେଖାଇବା ବିପକ୍ଷରେ ଥିଲି । ତା'ର ପରିଣାମ ଏବେ ଭୋଗ କରିବାକୁ ପଡୁଛି । ହାରକୋର୍ଟ ଯେ କେବଳ ଭଲ ଭଲ ପ୍ରଗଣାଗୁଡ଼ିକୁ ଫେରାଇବାକୁ ଚାହୁଁନି ତାହା ନୁହେଁ; ସେ ପୂର୍ବପୁରୁଷ ଅମଳର ଆମ ଦଖଲରେ ଥିବା ଅନ୍ୟ ଅଞ୍ଚଳଗୁଡ଼ିକୁ ନେଇଯିବା ମତଲବରେ ଅଛି ।"

ଖୋର୍ଦ୍ଧା ରାଜା ଦ୍ୱିତୀୟ ମୁକୁନ୍ଦଦେବ ଏଥିରେ କ୍ରୋଧାନ୍ୱିତ ହୋଇପଡ଼ିଲେ । ସେ ଇଂରେଜ ସରକାରଙ୍କ ସହ ଅସହଯୋଗ କରିବାକୁ ସ୍ଥିର କଲେ । ଏଥି

ମଧ୍ୟରେ ଇଂରେଜମାନେ ଅନ୍ୟ ଦେଶୀୟ ରାଜାମାନଙ୍କୁ ଅଧୀନସ୍ଥ କରିବାପାଇଁ ସର୍ତ୍ତ ସମ୍ବଳିତ ଚୁକ୍ତିପତ୍ର ପ୍ରସ୍ତୁତ କରିଥିଲେ । ଏହାକୁ ମଧ୍ୟ ସବୁ ରାଜାମାନେ ଗ୍ରହଣ କରିନେଇଥିଲେ । ମାତ୍ର ଜୟୀ ରାଜଗୁରୁଙ୍କ ପରାମର୍ଶ ଅନୁଯାୟୀ ଖୋର୍ଦ୍ଧା ରାଜା ଏଥିରେ ସ୍ୱାକ୍ଷର ଦେବାପାଇଁ ବିଳମ୍ବ କରିବାରେ ଲାଗିଲେ ।

ଚୁକ୍ତିପତ୍ରରେ ଶୀଘ୍ର ସ୍ୱାକ୍ଷର କରିବାକୁ ଇଂରେଜମାନେ ବାରମ୍ବାର ରାଜାଙ୍କୁ ଜଣାଇଲେ । ୧୮୦୩ ମସିହା ନଭେମ୍ବର ମାସ ୨୯ ତାରିଖ ଚିଠିରେ ସେମାନେ ରାଜାଙ୍କ ପ୍ରତିନିଧିଙ୍କୁ ଆଲୋଚନାପାଇଁ ଡକାଇଲେ । ପୁଣି ଡିସେମ୍ବର ମାସ ୧୭ ତାରିଖରେ ଚିଠି ଦ୍ୱାରା କୁପରାମର୍ଶ ଯୋଗୁଁ ସ୍ୱାକ୍ଷର କରୁ ନାହାନ୍ତି ବୋଲି ଅଭିଯୋଗ କଲେ । ସେତେବେଳେ ଖୋର୍ଦ୍ଧାରେ ଗୋବିନ୍ଦ ରାୟ ମାହେର ନାମକ ଜଣେ କାନୁନଗୋ ଥିଲେ । ତାଙ୍କୁ କମିସନର ପତ୍ର ଦ୍ୱାରା ଜଣାଇଲେ ଯେ ରାଜା ଜଣେ ଅନଭିଜ୍ଞ ଯୁବକଙ୍କ ପରାମର୍ଶଦ୍ୱାରା ପରିଚାଳିତ ହେଉଛନ୍ତି । ଖୋର୍ଦ୍ଧାରେ ଆଉ ପରାମର୍ଶଦାତା ରହିବା ଉଚିତ ନୁହେଁ ବୋଲି ଜଣାଇଲେ । ସେଇଦିନ ରାଜାଙ୍କୁ ଏକ ପତ୍ରରେ ଜଣାଇଥିଲେ ଯେ ପ୍ରାପ୍ୟ ଟଙ୍କାର ଅବଶିଷ୍ଟାଂଶ ତାଙ୍କ ନାମରେ ଗଚ୍ଛିତ ହୋଇ ରହିଛି । ପରାମର୍ଶଦାତାଙ୍କୁ ବିଦା କଲେ କେବଳ ସେ ଟଙ୍କା ପାଇପାରିବେ । ଚୁକ୍ତିପତ୍ରରେ ସ୍ୱାକ୍ଷର ନ କଲେ ଇଂରେଜ ସରକାରଙ୍କ ଅନୁଗ୍ରହରୁ ବଞ୍ଚିତ ହେବେ ବୋଲି ସତର୍କ କରିଦେଲେ ।

ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ଯେ କୁପରାମର୍ଶଦାତା ରୂପେ ଗ୍ରହଣ କରିଥିଲେ, ଏହା ଅତି ସ୍ପଷ୍ଟ । ଟଙ୍କାର ଲୋଭ ଦେଖାଇ, ଭୟ ପ୍ରଦର୍ଶନ କରି ସେମାନେ ରାଜାଙ୍କୁ ନିଜ ପକ୍ଷକୁ ନେବାକୁ ଆପ୍ରାଣ ଉଦ୍ୟମ କଲେ । ତାଙ୍କର ଚିରାଚରିତ କୂଟନୀତି ପ୍ରୟୋଗ କରି ରାଜା ଓ ଜୟୀ ରାଜଗୁରୁଙ୍କ ମଧ୍ୟରେ ବିଭେଦ ସୃଷ୍ଟି କରି ତାଙ୍କର ଲକ୍ଷ୍ୟ ସାଧନ କରିବାକୁ ଲାଗିପଡ଼ିଲେ । ମାତ୍ର ଇଂରେଜମାନେ ସେଥିରେ ବିଫଳ ହେଲେ । ଜୟୀ ରାଜଗୁରୁଙ୍କର ଦ୍ୱିତୀୟ ମୁକୁନ୍ଦଦେବଙ୍କ ଉପରେ ପ୍ରଭାବ ଅକ୍ଷୁଣ୍ଣ ରହିଥିଲା ।

୧୮୦୪ ମସିହା ଫେବୃୟାରୀ ମାସ ୨୦ ତାରିଖରେ ଆଉ ଏକ ପତ୍ରରେ ରାଜା କୁପରାମର୍ଶଦ୍ୱାରା ପରିଚାଳିତ ହେଉଛନ୍ତି ବୋଲି ପୂର୍ବଭଳି ଅଭିଯୋଗ କଲେ । ରାଜଗୁରୁଙ୍କୁ ମଧ୍ୟ ଏ ସଂକ୍ରାନ୍ତରେ ଆଲୋଚନାପାଇଁ କଟକ ଆସିବାକୁ ନିର୍ଦ୍ଦେଶ ଦେଲେ । ଇଂରେଜମାନେ ରାଜଗୁରୁଙ୍କ ପାଖକୁ ଏହି ପତ୍ର ଦେଇଥିଲେ । ରାଜାଙ୍କ ବ୍ୟକ୍ତିଗତ ବିଷୟ ଆଲୋଚନାପାଇଁ ତାଙ୍କର ଆସିବା ଜରୁରି ବୋଲି ଦର୍ଶାଇଥିଲେ । ତାଙ୍କ ପ୍ରତି ଉତ୍ତମ ବ୍ୟବହାର ପ୍ରଦର୍ଶନ କରିବାର ପ୍ରତିଶ୍ରୁତି

ମଧ୍ୟ ଦେଇଥିଲେ । କିନ୍ତୁ ଜୟୀ ରାଜଗୁରୁ ଇଂରେଜମାନଙ୍କର ଅଭିସନ୍ଧି ଉପଲବ୍ଧି କରି ହାରକୋର୍ଟଙ୍କ ସଙ୍ଗେ ସାକ୍ଷାତ୍ କରିବାକୁ ଗଲେ ନାହିଁ । ଇଂରେଜମାନଙ୍କ ବାରମ୍ବାର ତାଗିଦ ଫଳରେ ଦ୍ୱିତୀୟ ମୁକୁନ୍ଦଦେବ ୧୮୦୪ ମସିହା ଅଗଷ୍ଟ ମାସ ୨ ତାରିଖରେ ଶେଷରେ ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ । ସେ ଏହାଦ୍ୱାରା ଶାନ୍ତି ଆଣିପାରିଛନ୍ତି ବୋଲି ଘୋଷଣା କଲେ ।

ଚୁକ୍ତିପତ୍ରରେ ସ୍ୱାକ୍ଷର କଲା ପରେ ଚାରୋଟିଯାକ ପ୍ରଗଣା ଫେରାଇ ଦିଆଯିବ ବୋଲି ଦ୍ୱିତୀୟ ମୁକୁନ୍ଦଦେବ ଆଶା କରିଥିଲେ । କିନ୍ତୁ ଇଂରେଜମାନେ ସେ ପ୍ରଗଣାଗୁଡ଼ିକୁ ଫେରାଇଦେବା ମତଲବରେ ଆଦୌ ନ ଥିଲେ । ରାଜା ତେଣୁ ବାର୍ଷିକ ପେସ୍କସ ଦାଖଲ କଲେ ନାହିଁ । ୧୮୦୪ ମସିହା ଅଗଷ୍ଟ ମାସ ୨ ତାରିଖରେ ବାର୍ଷିକ ପେସ୍କସ କାଳ ବିଳମ୍ବ ନ କରି ଶୀଘ୍ର ପଠାଇବାକୁ ଇଂରେଜମାନେ ଜଣାଇଲେ । ମାତ୍ର ରାଜା ଏଥିରେ କର୍ଣ୍ଣପାତ କରି ନ ଥିଲେ ।

ଇଂରେଜମାନେ ଜୟୀ ରାଜଗୁରୁଙ୍କ ଉପରେ ଅତିଶୟ କ୍ରୋଧାନ୍ୱିତ ହୋଇପଡ଼ିଲେ । ଏଥିପାଇଁ ତାଙ୍କୁ ଦାୟୀ କରି ତାଙ୍କୁ ଅପସାରଣ କରିବାପାଇଁ ଦୃଢ଼ ଦାବି କଲେ । ଏପରିକି ଗୋଲାମ ଅମିନ ନାମକ ଜଣେ କର୍ମଚାରୀଙ୍କୁ ରାଜାଙ୍କ ପରାମର୍ଶଦାତାଭାବେ ନିଯୁକ୍ତ କରି ଖୋର୍ଦ୍ଧା ପଠାଇଲେ । ରାଜାଙ୍କୁ ମଧ୍ୟ ତାଙ୍କର ପରାମର୍ଶ ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଲେ ।

## ମୁକାବିଲାପାଇଁ ପ୍ରସ୍ତୁତି

ଜୟୀ ରାଜଗୁରୁ ମଧ୍ୟ ଏଥି ଭିତରେ ନିଶ୍ଚିନ୍ତରେ ବସି ନ ଥିଲେ । ଇଂରେଜମାନଙ୍କ ସହ ସଂଘର୍ଷ ହେବା ନିଶ୍ଚିତ ବୋଲି ସେ ଧରିନେଇଥିଲେ ଓ ଏଥିପାଇଁ ସମସ୍ତ ପ୍ରସ୍ତୁତି ଚଳାଇଥିଲେ । ଏକାକୀ ଇଂରେଜମାନଙ୍କ ସହ ଯୁଦ୍ଧ କରିବା ଅସମ୍ଭବ ବୋଲି ସେ ଜାଣିଥିଲେ । ତେଣୁ ଅନ୍ୟ ଶକ୍ତିର ସାହାଯ୍ୟ ଓ ସହଯୋଗ ଲୋଡ଼ିଲେ ।

ଏହି ସମୟରେ ନାଗପୁରର ଭୋନ୍‌ସଲା ପୁନର୍ବାର ଓଡ଼ିଶା ଦଖଲ କରିବାପାଇଁ ଯୋଜନା କରୁଥିଲେ । ତାଙ୍କ ସଙ୍ଗେ ଜୟୀରାଜଗୁରୁ ଯୋଗାଯୋଗ ସ୍ଥାପନ କଲେ । ରାୟପୁରଠାରେ ଅବସ୍ଥାପିତ ଥିବା ମରହଟ୍ଟା ରାଜକର୍ମଚାରୀ ଅନ୍ତାଜୀ ନାୟକ ରାଜାଙ୍କ ସହିତ ସାକ୍ଷାତ କରିବାକୁ ଆସିଥିଲେ । ସେ ମରହଟ୍ଟାମାନଙ୍କୁ ଏକ ପତ୍ରରେ ଲେଖିଥିଲେ –‘‘ମୁଁ ରାୟପୁରଠାରୁ ଖୋର୍ଦ୍ଧା ଆସିଛି ଓ ରାଜାଙ୍କ ସହ ସାକ୍ଷାତ କରିଅଛି । ସେ ମତେ ଏକ ହଜାର ଅଶ୍ୱ ଓ ପଦାତିକ ସୈନ୍ୟପାଇଁ କହିଛନ୍ତି । ସେ ଏହାର ଖର୍ଚ୍ଚ ବହନ କରିବେ ଓ ଆପଣଙ୍କୁ

ଏ ବିଷୟରେ ଜଣାଇବେ । ରାଜା ଓ ମୁଁ ଶୁଭ ମୁହୂର୍ତ୍ତ ସ୍ଥିର କରିଛୁ । ରଘୁନାଥ ବକ୍ସି ନାଗପୁରରୁ ଆସିବା ସମ୍ବାଦ ମିଳିଲେ ଅନ୍ୟ ଜମିଦାରମାନେ ଆମ ସହିତ ଯୋଗଦେବେ ।''

ଖୋର୍ଦ୍ଧା ରାଜା ଓ ବେରାର ରାଜାଙ୍କ ମଧ୍ୟରେ ସାମ୍ମୁଖ୍ୟ ଗଠନପାଇଁ କିଛି ବୁଝାମଣା ଯେ ହୋଇଥିଲା, ଏହା ଅତି ସ୍ପଷ୍ଟ । ଏକଥା ମଧ୍ୟ ନାଗପୁରରେ ଅବସ୍ଥାପିତ ଇଂରେଜ କର୍ମଚାରୀ ଏଲଫିନଷ୍ଟୋନଙ୍କଦ୍ୱାରା ସମର୍ଥିତ ହୋଇଥିଲା । ମାତ୍ର ଇଂରେଜମାନେ ବିହିତ ପଦକ୍ଷେପ ନେବା ଫଳରେ ଖୋର୍ଦ୍ଧା ରାଜା ମରହଟ୍ଟାମାନଙ୍କଠାରୁ କୌଣସି ପ୍ରକାର ସାହାଯ୍ୟ ପାଇପାରିଲେ ନାହିଁ ।

ଦ୍ୱିତୀୟ ମୁକୁନ୍ଦଦେବ ମଧ୍ୟ ଅନ୍ୟ କରଦ ରାଜାମାନଙ୍କ ସାହାଯ୍ୟ ନେବାପାଇଁ ଲାଗିପଡ଼ିଲେ । ସେ ଇଂରେଜଙ୍କ ବିରୋଧରେ ସଂଗ୍ରାମପାଇଁ ଏକଜୁଟ ହେବାକୁ ସମସ୍ତ ରାଜାଙ୍କୁ ନିବେଦନ କଲେ । ଶମ୍ଭୁଭାରତୀ ନାମକ ଜଣେ ବ୍ରାହ୍ମଣ ଗୋସାଇଁଙ୍କୁ ଜନମତ  ସୃଷ୍ଟି କରିବାପାଇଁ ନିଯୁକ୍ତି ଦିଆଗଲା । କନିକା ଓ କୁଜଙ୍ଗର ରାଜାମାନେ ଏଥିରେ ଯୋଗ ଦେଲେ । କନିକାର ରାଜା ଏକ ବଡ଼ ସେନାବାହିନୀ ଗଠନ କରିଥିଲେ । ଏହାର ପରିଚାଳନା ଭାର ଜଣେ ମରହଟ୍ଟା ସର୍ଦ୍ଦାରଙ୍କ ହାତରେ ନ୍ୟସ୍ତ କରାଗଲା । ସୁତରାଂ ଇଂରେଜମାନଙ୍କ ବିରୋଧରେ ଏକ ମେଣ୍ଟ ଯେ ହୋଇଥିଲା, ଏହା ଅତି ସ୍ପଷ୍ଟ ।

ରାଜା ଦ୍ୱିତୀୟ ମୁକୁନ୍ଦଦେବ ମଧ୍ୟ ନିଜର ସୈନ୍ୟ ସଂଖ୍ୟା ବୃଦ୍ଧି କରିଥିଲେ । କେତେକ ମରହଟ୍ଟା ସର୍ଦ୍ଦାରମାନଙ୍କୁ ନିଯୁକ୍ତି ଦେଇଥିଲେ ।  ଦେଶର ଆଭ୍ୟନ୍ତରୀଣ ସୁରକ୍ଷାପାଇଁ ରାସ୍ତାଘାଟ ମରାମତି ହୋଇଥିଲା । ଖୋର୍ଦ୍ଧାଗଡ଼ ବାହାରେ ଦୁଇ ଶହ ସୈନ୍ୟ ଓ ଦୁର୍ଗ ମଧ୍ୟରେ ତିନି ଶହ ସୈନ୍ୟ ଓ ଦୁଇଟି ତୋପ ରହିବାର ବ୍ୟବସ୍ଥା କରାଯାଇଥିଲା । ଘାଟି ଜାଗା, ଯଥା – ଡେଲାଙ୍ଗ, ବାଣପୁର, ତରତୁଆ, ଗଙ୍ଗପଡ଼ା ପ୍ରଭୃତି ସ୍ଥାନରେ ସୈନ୍ୟ ମୁତୟନ କରାଯାଇଥିଲା । ବିପଦବେଳେ ନିରାପଦ ସ୍ଥାନକୁ ଚାଲିଯିବାପାଇଁ ରାଜା ଉପଯୁକ୍ତ ସ୍ଥାନ ସ୍ଥିର କରିଥିଲେ । ଶେଷରେ ସେ ତାଙ୍କର ପ୍ରତିନିଧିଙ୍କୁ କଟକରୁ ଫେରାଇ ଆଣିଲେ ।

ରାଜାଙ୍କର ପ୍ରସ୍ତୁତି ଇଂରେଜମାନଙ୍କୁ ଅଛପା ରହିଲା ନାହିଁ । ବିଶେଷତଃ, ରାଜ-ପ୍ରତିନିଧି ଫେରାଇ ଆଣିବା ଇଂରେଜମାନଙ୍କ କ୍ରୋଧକୁ ବହୁଗୁଣିତ କରିଦେଲା । ଏହାର କୁପ୍ରଭାବ ଯେ ଅନ୍ୟ ରାଜାମାନଙ୍କ ଉପରେ ପଡ଼ିବ, ସେକଥା ଇଂରେଜମାନେ ହୃଦୟଙ୍ଗମ କରିପାରିଥିଲେ । ଅନ୍ୟ ରାଜାମାନେ ଏହା ଅନୁକରଣ କରିବାର ଆଶଙ୍କା ମଧ୍ୟ ଦେଖାଦେଲା । ହାରକୋର୍ଟ ଦୁଃଖର

ସହିତ ଉପର କର୍ତ୍ତୃପକ୍ଷଙ୍କୁ ଜଣାଇଲେ - ''ମୋର ଭୟ ହୁଏ ଯେ ଖୋର୍ଦ୍ଧା ରାଜାଙ୍କ ଏପରି କାର୍ଯ୍ୟକଳାପ ଅନ୍ୟ ରାଜାମାନଙ୍କ ଉପରେ କୁପ୍ରଭାବ ପକାଇବ । ଏଣୁ ସେହି ଲୋକଟାକୁ ଜବତ କରିବା ନିତାନ୍ତ ଦରକାର । ଅବଶ୍ୟ ମୁଁ ଚାହେଁନି ତାକୁ ଲୋପ କରିଦେବାପାଇଁ । ମୁଁ ତା'ର ସମସ୍ତ ସୈନ୍ୟମାନଙ୍କୁ ତଡ଼ିଦେବାକୁ ଚାହେଁ । ସେ ମଧ୍ୟ କାହା ସହିତ ମତ ଆଦାନ ପ୍ରଦାନ ଯେପରି ନ କରିପାରିବ, ତା'ର ବ୍ୟବସ୍ଥା ହେବା ଦରକାର ।''

ମାତ୍ର ଗଭର୍ଣ୍ଣର ଜେନେରାଲ ଲର୍ଡ ଉଏଲେସଲୀ ହାରକୋର୍ଟଙ୍କ ପ୍ରସ୍ତାବରେ ରାଜି ହୋଇ ନ ଥିଲେ । ତାଙ୍କର ଉଗ୍ର ଦମନ ନୀତି ଇଂଲଣ୍ଡରେ ଘୋର ସମାଲୋଚିତ ହୋଇଥିଲା । ବିଶେଷତଃ, ହୋଲକାରମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣାକୁ ଇଂଲଣ୍ଡରେ ସମସ୍ତେ ନିନ୍ଦା କରିଥିଲେ । ଆଉ ଯୁଦ୍ଧରେ ଲିପ୍ତ ହେବାକୁ ଇଂରେଜ କର୍ତ୍ତୃପକ୍ଷ ମଞ୍ଜୁର ନ କରିବାର ଆଶଙ୍କା ମଧ୍ୟ ଥିଲା । ଦ୍ୱିତୀୟରେ, ଖୋର୍ଦ୍ଧା ରାଜାଙ୍କ ବିରୋଧରେ ଯୁଦ୍ଧ ହେଲେ ଅନ୍ୟ ରାଜାମାନେ ଉତ୍‌କ୍ଷିପ୍ତ ହୋଇପାରନ୍ତି ବୋଲି ଉଏଲେସଲୀ ଆଶଙ୍କା କରିଥିଲେ । କେତେ ଦେଶୀୟ ରାଜା ଗୁପ୍ତରେ ଖୋର୍ଦ୍ଧା ରାଜାଙ୍କୁ ସାହାଯ୍ୟ ଦେଉଥିବାର ପ୍ରମାଣ ସେ ମଧ୍ୟ ପାଇଥିଲେ । ତେଣୁ ଯୁଦ୍ଧ ନ କରି ରାଜାଙ୍କୁ ବାଟକୁ ଆଣିବାପାଇଁ ଯଥାସାଧ୍ୟ ଚେଷ୍ଟା କରିବାକୁ ସେ କର୍ଣ୍ଣେଲ ହାରକୋର୍ଟଙ୍କୁ ପରାମର୍ଶ ଦେଲେ ।

ହାରକୋର୍ଟ ତେଣୁ ଯୁଦ୍ଧ ନ କରି ଅନ୍ୟ ସମସ୍ତ ପନ୍ଥା ଗ୍ରହଣ କଲେ । ପ୍ରଥମେ ଚିଠି ପତ୍ର ନେବାଆଣିବାପାଇଁ ନିଯୁକ୍ତ ହୋଇଥିବା ଶମ୍ଭୁଭାରତୀଙ୍କୁ ବନ୍ଦି କରାଗଲା । ଜୟୀ ରାଜଗୁରୁଙ୍କୁ ମଧ୍ୟ ହଟାଇନେବାପାଇଁ ପଦକ୍ଷେପ ନିଆଗଲା । ହାରକୋର୍ଟ ଏଥିପାଇଁ କ୍ୟାପ୍‌ଟେନ୍ ବ୍ଲଣ୍ଟଙ୍କୁ ରାଜାଙ୍କ ପାଖକୁ ପଠାଇଲେ । କ୍ୟାପ୍‌ଟେନ୍ ବ୍ଲଣ୍ଟଙ୍କୁ ସାଦରେ ଗ୍ରହଣ କରିବାପାଇଁ ରାଜାଙ୍କୁ ଅନୁରୋଧ କରିବାର ଦିନକ ପୂର୍ବରୁ ଜଣେ ପତ୍ରବାହକଙ୍କୁ ମଧ୍ୟ ପଠାଗଲା । ରାଜା ଦ୍ୱିତୀୟ ମୁକୁନ୍ଦଦେବ କ୍ୟାପଟେନ ବ୍ଲଣ୍ଟଙ୍କୁ ଭେଟିବାକୁ ପ୍ରଥମେ ସମ୍ମତ ହୋଇଥିଲେ । ମାତ୍ର ଜୟୀ ରାଜଗୁରୁଙ୍କ ଚାପରେ ମତ ପରିବର୍ତ୍ତନ କରିଥିବା ଅନୁମାନ କରାଯାଏ । ରାଜା କ୍ୟାପ୍‌ଟେନ୍ ବ୍ଲଣ୍ଟଙ୍କୁ ସାକ୍ଷାତ ଦେବେ ନାହିଁ ବୋଲି ଜୟୀ ରାଜଗୁରୁ ପତ୍ରବାହକଙ୍କୁ ଜଣାଇଲେ । ବ୍ଲଣ୍ଟ ମଧ୍ୟ ଖୋର୍ଦ୍ଧା ନ ଆସିବାକୁ ସେ ଦାବି କଲେ । କିନ୍ତୁ ପତ୍ରବାହକ ରାଜାଙ୍କ ସଙ୍ଗେ ବ୍ଲଣ୍ଟଙ୍କ ସାକ୍ଷାତ୍ ଉପରେ ଜୋର ଦେବାରୁ ଏ ଦିଗରେ ଚେଷ୍ଟା କରିବେ ବୋଲି ରାଜଗୁରୁ କହିଲେ । ଫଳରେ ପତ୍ରବାହକ ଦୀର୍ଘ ଚଉଦ ଦିନ ଖୋର୍ଦ୍ଧାରେ ଅପେକ୍ଷା କରି ରହିଲେ । ମାତ୍ର ଆଉ ରହିଲେ ତା'ର ପରିଣାମ ଗୁରୁତର ହେବ ବୋଲି ତାଙ୍କୁ ଜଣାଇ ଦିଆଗଲା । ତେଣୁ ସେ ବ୍ୟର୍ଥ ମନୋରଥ ହୋଇ କଟକ ଫେରିଗଲେ ।

ବ୍ଲଣ୍ଟ ମଧ୍ଧ ଖୋର୍ଦ୍ଧାକୁ ଆସିଲେ ନାହିଁ । ଇଂରେଜ ଓ ଖୋର୍ଦ୍ଧା ରାଜାଙ୍କ ମଧ୍ୟରେ ଆଲୋଚନାର ବାଟ ବନ୍ଦ ହୋଇଗଲା ।

୧୮୦୪ ମସିହା ମାର୍ଚ୍ଚ ମାସରେ ରାଜା ଜଗନ୍ନାଥଙ୍କ ରଥ ନିର୍ମାଣ ନିମନ୍ତେ ଚବିଶକୁଦର ତହସିଲଦାର ମୋରାର ପଣ୍ଡିତଙ୍କୁ ଦୁଇ ହଜାର ବଢ଼େଇ ଓ କୁଲି ପଠାଇବାକୁ ଆଦେଶ ଦେଲେ । ଏହା ନ କଲେ ବଳପୂର୍ବକ ବଢ଼େଇମାନଙ୍କୁ ନିଯୁକ୍ତ କରିବେ ବୋଲି ସତର୍କ କରିଦେଲେ । ସେ ମଧ୍ୟ ଇଂରେଜମାନେ ଅଧିକାର କରିଥିବା ପିପିଲି ନିକଟସ୍ଥ ବାଟଗାଁରୁ ଖଜଣା ଆଦାୟ କରିବାକୁ ବସିଲେ । ଏଥିପାଇଁ ଅଚ୍ୟୁତ ବାରିକ ନାମରେ ଜଣେ କର୍ମଚାରୀଙ୍କୁ ପଠାଇଲେ । ତତ୍ପରୁ ହରିଚନ୍ଦନ ନାମକ ଆଉ ଜଣେ ରାଜକର୍ମଚାରୀଙ୍କୁ ବରପଦା, ଖାରଡ଼ ଓ ମାଟିଆପଡ଼ାର ଖଜଣା ଆଦାୟ କରିବାକୁ ପଠାଗଲା । ସେ ମଧ୍ୟ ଦୁଇ ଶହ କାହାଣ କଉଡ଼ି ଆଦାୟ କଲେ । ରାହାଙ୍ଗ, ସେରାଇ ଓ ଚବିଶକୁଦ ଅଞ୍ଚଳରୁ ଛେଳି ମେଣ୍ଢା ପ୍ରଭୃତି ପଠାଇବାକୁ ରାଜା ମୋରାର ପଣ୍ଡିତଙ୍କୁ ନିର୍ଦ୍ଦେଶ ଦେଲେ । ୧୮୦୪ ମସିହା ଅକ୍ଟୋବର ମାସରେ ରାଜାଙ୍କର କେତେକ ସୈନ୍ୟ ପିପିଲି ନିକଟସ୍ଥ ଗ୍ରାମମାନଙ୍କ ଉପରେ ଚଢ଼ାଉ କରି ଗୋମହିଷାଦି ପଶୁ, ଘରର ଆସବାବ ଓ ଚଳନ୍ତି ସମ୍ପତ୍ତି ନେଇଗଲେ । ଇଂରେଜମାନେ ମୁକୁନ୍ଦଦେବଙ୍କୁ ଏଭଳି କାର୍ଯ୍ୟରୁ ବିରତ ରହିବାକୁ କଡ଼ା ନିର୍ଦ୍ଦେଶ ଦେଲେ । ଇଂରେଜ କମିସନର ନଭେମ୍ବର ମାସ ୧୦ ତାରିଖରେ ଲେମ୍ବାଇ, ରାହାଙ୍ଗ, ଚବିଶକୁଦ ପ୍ରଭୃତି ଅଞ୍ଚଳରେ ବନ୍ଦୋବସ୍ତ କାର୍ଯ୍ୟ ଆରମ୍ଭ କରିବାକୁ ପୁରୀର କଲେକ୍ଟର ହଣ୍ଟରଙ୍କୁ ନିର୍ଦ୍ଦେଶ ଦେଲେ । ଡିସେମ୍ବର ମାସ ୩ ତାରିଖରେ ଇଂରେଜ କର୍ତ୍ତୃପକ୍ଷ କୋଟଦେଶର ଖଣ୍ଡାଏତଙ୍କୁ ପାଇକ ଯୋଗାଇବାକୁ ଆଦେଶ ଦେଲେ ।

ଇଂରେଜମାନେ ଶେଷରେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କ ବିରୋଧରେ ଦୃଢ଼ ପଦକ୍ଷେପ ନେଲେ । ଦେଶର ଅବସ୍ଥା ମଧ୍ୟ ସେତେବେଳକୁ ସେମାନଙ୍କ ପ୍ରତି ଅନୁକୂଳ ଥିଲା । ଇଂରେଜ ଓ ମରହଟ୍ଟା ଶକ୍ତିମାନଙ୍କର ଯୁଦ୍ଧ ଶେଷ ହୋଇଯାଇଥିଲା । ମରହଟ୍ଟା ଓ ରାଜାଙ୍କ ମଧ୍ୟରେ ମେଣ୍ଟ ହେବାର ଭୟ ତେଣୁ ଦୂର ହୋଇଗଲା । ରାଜାଙ୍କ ବିରୋଧରେ ସାମରିକ କାର୍ଯ୍ୟ ଆରମ୍ଭ ହେଲା ।

ସୈନ୍ୟଚାଳନାର ଅବ୍ୟବହିତ ପୂର୍ବରୁ ୧୮୧୪ ମସିହା ଡିସେମ୍ବର ମାସ ୭ ତାରିଖରେ ଇଂରେଜମାନଙ୍କର ବିରୋଧାଚରଣ କରିଥିବା ହେତୁ ମୁକୁନ୍ଦଦେବ ରାଜ ପଦରୁ ତଡ଼ା ଖାଇଥିବା କଥା ଘୋଷଣା କରାଗଲା । ଇଂରେଜମାନଙ୍କ ପ୍ରତି ଆନୁଗତ୍ୟ ଦେଖାଇବାକୁ କୁହାଗଲା । ଡିସେମ୍ବର ମାସ ୭ ତାରିଖରେ

ରାଜା କରଜ କାହାଠାରୁ ନେବା ଅବୈଧ ବୋଲି ଘୋଷଣା କରାଗଲା । ପୁନଶ୍ଚ ଡିସେମ୍ବର ମାସ ୯ ତାରିଖରେ ଜଗନ୍ନାଥଙ୍କ ପୂଜାପାର୍ବଣ ପ୍ରଭୃତି ବେଳେ ରାଜାଙ୍କ ନାମ ନ ଧରିବାକୁ ଶ୍ରୀମନ୍ଦିରର ପରିଛା ମୋରାର ପଣ୍ଡିତଙ୍କୁ ନିର୍ଦ୍ଦେଶ ଦିଆଗଲା । ଇଂରେଜ ସରକାରଙ୍କର ରାଜା ସବୁଠାରୁ ବଡ଼ ଶତ୍ରୁ ବୋଲି ବିବେଚିତ ହେଲେ । ରାଜା ମଧ୍ୟ ବାହାରୁ ସାହାଯ୍ୟ ନ ପାଇପାରିବାର ସମସ୍ତ ବନ୍ଦୋବସ୍ତ କରାଗଲା । ରାଜାଙ୍କ ସହିତ ରାମେଶ୍ୱର ଦୁର୍ଗର ଦଳବେହେରା ଓ ତାଙ୍କ ଭାଇ ଭିକାରି ବଳିଆରସିଂହଙ୍କର ଗୁପ୍ତ ସମ୍ପର୍କ ଥିବାର ସନ୍ଦେହ କରି ସେମାନଙ୍କୁ ତାଗିଦ କରିଦିଆଗଲା । ମେଣ୍ଢାଶାଳର ଖଣ୍ଡାଏତମାନଙ୍କ ଉପରେ ତୀକ୍ଷ୍ଣ ଦୃଷ୍ଟି ରଖାଗଲା । ପଞ୍ଚଗଡ଼ର ଦଳବେହେରାଙ୍କୁ ଇଂରେଜମାନଙ୍କ ସହିତ ସହଯୋଗ କରିବାକୁ ଓ ଇଂରେଜମାନଙ୍କ ସହ ଅବିଳମ୍ବେ ଚୁକ୍ତି କରିବାକୁ କୁହାଗଲା । ଦାଣ୍ଡିମାହାଲର ବିଦ୍ରୋହୀ ନେତା ଦାମୋଦର ପଟ୍ଟନାୟକଙ୍କୁ ଗିରଫ କରିବାପାଇଁ ସମସ୍ତ ପଦକ୍ଷେପ ନିଆଗଲା ।

ଜୟୀ ରାଜଗୁରୁ ମଧ୍ୟ ରାଜ୍ୟକୁ ରକ୍ଷା କରିବାପାଇଁ ସମସ୍ତ ପଦକ୍ଷେପ ନେଲେ । ଇଂରେଜମାନଙ୍କ ଗତିବିଧି ଲକ୍ଷ୍ୟ କରିବାପାଇଁ ମହାନଦୀ କୂଳରେ ଦଳେ ସୈନ୍ୟ ରଖିଲେ । ଇଂରେଜମାନଙ୍କୁ ବା ତାଙ୍କର କୌଣସି ଜିନିଷ ଏ ପଟକୁ ନ ଛାଡ଼ିବାପାଇଁ କୁହାଗଲା । ବାରବାଟୀ ଗଡ଼ର ସୁରକ୍ଷାପାଇଁ ୨୫୦ ଅଶ୍ୱାରୋହୀ ଓ ୯୦୦ ସୈନ୍ୟ ମୁତୟନ ହେଲେ ।

## ସାମରିକ ପଦକ୍ଷେପ

ଇଂରେଜମାନେ ସାମରିକ କାର୍ଯ୍ୟାନୁଷ୍ଠାନ ଅତି ଦକ୍ଷତାର ସହିତ କରିଥିଲେ । କଟକଠାରୁ ଦଳେ ଇଂରେଜ ସୈନ୍ୟ ଖୋର୍ଦ୍ଧାକୁ ପଠାଗଲା । ଡେଲାଙ୍ଗଠାରେ ଅବସ୍ଥାପିତ ଥିବା ରାଜାଙ୍କ ସୈନ୍ୟମାନଙ୍କୁ କାବୁ କରିବାପାଇଁ ଗୋଟିଏ ଆଗୁଆ ଦଳ ପଠାଗଲା । ସେମାନଙ୍କ ସଂଖ୍ୟା ଏକ ଶହ କୋଡ଼ିଏ ଥିଲା । କ୍ୟାପ୍‌ଟେନ ହିକଲ୍ୟାଣ୍ଡଙ୍କ ନେତୃତ୍ୱରେ ସେମାନେ ପିପିଲିଠାରେ ନଭେମ୍ବର ମାସ ୨୨ ତାରିଖରେ ପହଞ୍ଚିଲେ ଓ ରାଜାଙ୍କ ସୈନ୍ୟମାନଙ୍କ ଉପରେ ଅତର୍କିତ ଆକ୍ରମଣ କଲେ । ପିପିଲି ଦୁର୍ଗ ନିକଟରେ ଖଣ୍ଡ ଯୁଦ୍ଧ ହେଲା । ରାଜାଙ୍କର ପ୍ରାୟ ଦୁଇ ଶହରୁ ଅଧିକ ସୈନ୍ୟ ଏଥିରେ ନିହତ ହେଲେ । ଇଂରେଜମାନଙ୍କ ମୃତ ବା ଆହତଙ୍କ ସଂଖ୍ୟା ଅତି କମ୍ ଥିଲା । ଜଣେ ଲସ୍କର, ଜଣେ ହାବିଲଦାର୍, ଜଣେ ବାଦ୍ୟକାର ଓ ଛଅ ଜଣ ସିପାହି ଯୁଦ୍ଧରେ ଆଘାତପ୍ରାପ୍ତ ହୋଇଥିଲେ । କିନ୍ତୁ ପିପିଲିରୁ ଫେରିବା ବାଟରେ ହିକଲ୍ୟାଣ୍ଡ୍ ଭୀଷଣ ପ୍ରତିରୋଧର ସମ୍ମୁଖୀନ ହେଲେ । ଶେଷରେ ପରାସ୍ତ ହୋଇ ପାଉତିପୁର ଠାରେ ଆଶ୍ରୟ ନେବାକୁ ବାଧ ହେଲେ ।

ମେଜର ଫ୍ଲେଚରଙ୍କ ନେତୃତ୍ୱରେ ଦଳେ ଇଂରେଜ ସୈନ୍ୟ ଉତ୍ତରଦିଗରେ ଥିବା ଟାଙ୍ଗିଆପଡ଼ା ବାଟେ ଖୋର୍ଦ୍ଧା ଦୁର୍ଗ ଉପରକୁ ଆକ୍ରମଣ କରିବାକୁ ବାହାରିଲେ । କେରଙ୍ଗର ମୁସ୍ତାଫା ଖାଁଙ୍କ ନେତୃତ୍ୱରେ ଦଳେ ରାଜାଙ୍କ ସୈନ୍ୟ ଟାଙ୍ଗିଆପଡ଼ାରେ ଇଂରେଜମାନଙ୍କୁ ଭେଟିଲେ । ମାତ୍ର କେହି ଏଥିରେ ଜୟଲାଭ କରିପାରି ନ ଥିଲେ ।

ହାରକୋର୍ଟଙ୍କ ନେତୃତ୍ୱରେ ଆଉ ଦଳେ ସୈନ୍ୟ ବଣଜଙ୍ଗଲ ପାର ହୋଇ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ରାଜାଙ୍କ ସୈନ୍ୟମାନେ ଖୋର୍ଦ୍ଧାଗଡ଼ଠାରେ ସେମାନଙ୍କୁ ଅପେକ୍ଷା କରିଥିଲେ । ହାରକୋର୍ଟ ଗଡ଼ର ପାଞ୍ଚ ଶହ ଗଜ ଦୂରରେ ଥାଇ ଗଡ଼ ଉପରେ କିପରି ଆକ୍ରମଣ କରାଯିବ ତାହା ଅନୁଧ୍ୟାନ କରିବାକୁ ଲାଗିଲେ ।

କ୍ୟାପ୍‌ଟେନ ଷ୍ଟୋରେଙ୍କ ନେତୃତ୍ୱରେ ଆଉ ଦଳେ ସୈନ୍ୟ ଗଙ୍ଗପଡ଼ାଠାରେ ପହଞ୍ଚିଲେ । ସେ ଆସିବାମାତ୍ରେ ଦୁର୍ଗ ରକ୍ଷୀମାନେ ବିପଦ ସଙ୍କେତ ଦେଲେ ଓ ଗୁଳି ଚାଳନା କରି ସେମାନଙ୍କୁ ଘଉଡ଼ାଇ ଦେଲେ । ଫଳରେ ବାହାର ଦୁର୍ଗ ଇଂରେଜମାନଙ୍କଦ୍ୱାରା ଅଧିକୃତ ହୋଇପାରିଲା ନାହିଁ ।

ଏହାପରେ ଗଡ଼ର ଚାରି ଦିଗରୁ ଆକ୍ରମଣ ଆରମ୍ଭ ହେଲା । ଆଗରୁ ଗଡ଼ ଚାରିପାଖେ ବାର ପାଉଣ୍ଡିଆ ବ୍ୟାଟେରୀ ଚାରୋଟି, କିଛି ଛଅ ପାଉଣ୍ଡିଆ ବ୍ୟାଟେରୀ, ହାୱାଜର ପ୍ରଭୃତି ଅତି ଆଧୁନିକ ତୋପମାନ ଖଞ୍ଜା ଯାଇଥାଏ । ମେଜର ଫ୍ଲେଚର ଅନ୍ତିମ ପର୍ଯ୍ୟାୟ ଆକ୍ରମଣର ନେତୃତ୍ୱ ନେଲେ । ସେ ମାନ୍ଦ୍ରାଜ ରେଜିମେଣ୍ଟର ପ୍ରାୟ ଏକ ଶହ କୋଡ଼ିଏ ୟୁରୋପୀୟ ସୈନ୍ୟ ଧରି ବାହାରିଲେ । ତାଙ୍କୁ ବଙ୍ଗଳା ପଦାତିକ ବାହିନୀର ଦ୍ୱିତୀୟ ସପ୍ତମ ବାଟାଲିୟନ ସାହାଯ୍ୟ ଦେବାର ବ୍ୟବସ୍ଥା ହେଲା । ଆଗରୁ ଖଞ୍ଜା ହୋଇଥିବା ତୋପ ଓ ଗୁଳି ଚାଳନା ଫଳରେ ଗଡ଼ର ବାହାର ପାଚେରିରେ ଗୋଟିଏ କଣା ହୋଇଗଲା । ସେହି ବାଟେ ଫ୍ଲେଚର ନିଶୁଣି ସାହାଯ୍ୟରେ ଦୁର୍ଗ ଭିତରେ ପହଞ୍ଚିଲେ । ରାଜା ତାଙ୍କର ବିଶ୍ୱସ୍ତ ସର୍ଦ୍ଦାରମାନଙ୍କୁ ନେଇ ଦୁର୍ଗରୁ ପଳାଇଯାଇ ବରୁଣାଇ ଜଙ୍ଗଲ ମଧ୍ୟରେ ଲୁଚିଲେ । ଜୟୀ ରାଜଗୁରୁ ଓ ଇଂରେଜମାନଙ୍କ ମଧ୍ୟରେ ଘୋର ଯୁଦ୍ଧ ହେଲା । ରାଜାଙ୍କ ସୈନ୍ୟମାନେ ବୀରତ୍ୱର ସହ ଗଡ଼ରକ୍ଷାପାଇଁ ଯୁଦ୍ଧ କଲେ । ବକ୍ସି, ଦେବାନ, ସର୍ଦ୍ଦାର ଓ ପାଇକ ସମସ୍ତେ ଏଥିରେ ଭାଗ ନେଇଥିବାର ଜଣାଯାଏ । ତିନି ଦିନ ଧରି ଯୁଦ୍ଧ ଚାଲିଲା । ମେଜର ଫ୍ଲେଚରଙ୍କ ନିଜ ପୁତୁରା ଯୁଦ୍ଧରେ ନିହତ ହେଲେ । ମାତ୍ର ତୋପ, କମାଣ ବାହିନୀ ଆକ୍ରମଣର ମୁକାବିଲା କରିବା ରାଜାଙ୍କ ସୈନ୍ୟଙ୍କ ପକ୍ଷେ ସମ୍ଭବ ନ ଥିଲା । ତେଣୁ ଦୁର୍ଗଟି ଇଂରେଜ ସୈନ୍ୟଙ୍କଦ୍ୱାରା ଅଧିକୃତ ହେଲା ।

## ଦୈବୀକୃପା

ଜୟୀ ରାଜଗୁରୁ ତନ୍ତ୍ର ସାଧନାରେ ସିଦ୍ଧିଲାଭ କରିଥିଲେ । କଥିତ ଅଛି ଯେ ଖୋରଧାଠାରେ ଅଧିଷ୍ଠାତ୍ରୀ ଦେବୀ ବରୁଣାଇ ଓ କରୁଣାଇ ସିଂହ ବାହନରେ ବସି ଯୁଦ୍ଧ କରୁଥିଲେ ।

## କାଞ୍ଚିଦେବ୍ୟା ଉପାଖ୍ୟାନ

ପୁଣି କଥିତ ଅଛି ଯେ ରାମେଶ୍ୱରଗଡ଼ର ଦଳବେହେରାଙ୍କ ଆତ୍ମୀୟା ଥିଲେ କାଞ୍ଚିଦେବ୍ୟା । ସେ ଜୟୀ ରାଜଗୁରୁଙ୍କୁ ବିବାହ କରିବାକୁ ଚାହିଁଥିଲେ । ମାତ୍ର ଜୟୀ ରାଜଗୁରୁ ସେ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେ ତେଣୁ ପ୍ରତିଶୋଧ ନେବାପାଇଁ ଇଂରେଜମାନଙ୍କୁ ଜଣାଇଦେଲେ ଯେ ଦେବୀ ବରୁଣାଇ ଓ କରୁଣାଇ ଯୁଦ୍ଧ କରୁଛନ୍ତି । ଷଣ୍ଢ ବଳି ଦେଲେ ବା ତା' ରକ୍ତରେ ଗୋଳା ବର୍ଷଣ କଲେ ଦେବୀ ଯୁଦ୍ଧ କ୍ଷେତ୍ରରୁ ପଳାୟନ କରିବେ ।

କର୍ଣ୍ଣେଲ ଫ୍ଲେଚର ଗୋଟିଏ ଗାଈର ମୁଣ୍ଡ କାଟି ତା'ର ରକ୍ତରେ ଗୋଳା ବୁଡ଼ାଇ ତାହାକୁ ରାଜାଙ୍କ ସୈନ୍ୟଙ୍କ ଉପରକୁ ନିକ୍ଷେପ କଲେ । ଫଳରେ ଦେବୀ ଯୁଦ୍ଧ କ୍ଷେତ୍ରରୁ ପଳାୟନ କଲେ ।

ଜୟୀ ରାଜଗୁରୁ ସ୍ମୃତି ପରିଷଦର ସମ୍ପାଦକ ଜଟାଧାରୀ ମିଶ୍ରଙ୍କ ତଥ୍ୟ ଅନୁଯାୟୀ ଜୟୀ ରାଜଗୁରୁ ବସବାସ କରୁଥିବା ଘରଟିକୁ ଇଂରେଜମାନେ ତାଲା ପକାଇଦେଲେ । ଏହି ଘର ମଧ୍ୟରେ ଗୋଟିଏ ସୁନା କୁଲେଇ ଥିଲା । ଏହି କୁଲେଇକୁ ମନ୍ତ୍ର ପଢ଼ି ବିଞ୍ଚିଲେ ଧୂମାବତୀ ଆବିର୍ଭୂତା ହେଉଥିଲେ । ସବୁଆଡ଼ ଧୂମମୟ ହୋଇଯାଉଥିଲା । ଫଳରେ ଜୟୀ ରାଜଗୁରୁଙ୍କୁ ଜୟ କରିବା ସହଜସାଧ୍ୟ ହେଉ ନ ଥିଲା । କିନ୍ତୁ ଜୟୀ ରାଜଗୁରୁ ଗୃହରେ ତାଲା ପଡ଼ିଥିବାର ଦେଖିଲେ । ସେ କୌଣସି ଦୈବୀଶକ୍ତିର ସାହାଯ୍ୟ ପାଇପାରିଲେ ନାହିଁ । ଜୟୀ ରାଜଗୁରୁ ଦୁର୍ଗରୁ ପଳାଇଯାଇ ରାଜାଙ୍କୁ କାଇପଦରଗଡ଼ର ଦକ୍ଷିଣ ଦିଗରେ ଥିବା କାଶିଆଗୋହିରି ଜଙ୍ଗଲରେ ଭେଟିଲେ ।

ରାଜା ଦ୍ୱିତୀୟ ମୁକୁନ୍ଦଦେବ ଜୟୀ ରାଜଗୁରୁଙ୍କ ନିରାପତ୍ତା ନେଇ ଚିନ୍ତିତ ଥିଲେ । ଇଂରେଜମାନେ ତାଙ୍କ ଉପରେ କ୍ରୋଧାନ୍ୱିତ ଥିବା କଥା ଜଣାଇ ଯେଉଁଠି ଇଚ୍ଛା ସେଠି ରହି ପ୍ରାଣ ବଞ୍ଚାଇବାକୁ ପରାମର୍ଶ ଦେଲେ ।

ମଧୁସୂଦନ ବିପ୍ରଙ୍କ ରଚିତ 'ଫିରିଙ୍ଗି କଳି ଭାରତ'ରେ ଏହାର ଉଲ୍ଲେଖ ଅଛି, ଯଥା–

''ଜୟୀ ମୁନିଟି ଆଜ୍ଞା କଲେକ ଗଜପତି ।
ତୁମ୍ଭ ଯୋଗୁଁ ରାଜ୍ୟ ହୋଇଲା ଏତେ ରୀତି ॥
ଯହିଁ ତହିଁ ପଶି ରଖ ନିଜ ପ୍ରାଣ ।
ଦାନବର ଘୋଷା ତୁମ୍ଭ ଉପରେ ବଡ଼ ଟାଣ'' ॥

ବିଦାୟ ବେଳେ ରାଜା ଜୟୀ ରାଜଗୁରୁଙ୍କୁ ଉପଯୁକ୍ତ ସମ୍ମାନ ଦେଇଥିବାର ଜଣାଯାଏ ।

''ଦୟାଶୀଳ ନୃପତି ଦୟାର ଭଣ୍ଡାର ।
ଯାଅ ଯା ଗୋସାଇଁ ବୋଲି କଲେ ନମସ୍କାର'' ॥

ସ୍ଥାନୀୟ ସୂତ୍ରରୁ ଜଣାଯାଏ ଯେ ଜୟୀ ରାଜଗୁରୁ ପ୍ରଥମେ ଖୋରଧା ପଶ୍ଚିମ ଦିଗରେ ଥିବା ବେଙ୍ଗିଟାଙ୍ଗି ଜଙ୍ଗଲରେ ଆତ୍ମଗୋପନ କଲେ । ଏହାପରେ ସେ ଗଡ଼ମାଣତ୍ରୀ ଜଙ୍ଗଲ ନିକଟବର୍ତ୍ତୀ ଗୁପ୍ତଗଡ଼ରେ କିଛିକାଳ ଅବସ୍ଥାନ କଲେ । ସେତେବେଳେ ଛକଡ଼ି ମାନସିଂହ, ବନ୍ଧୁ ଖଣ୍ଡେଇତରାୟ ଓ ବାଳକୃଷ୍ଣ ଛୁଆଳସିଂହ ପ୍ରଭୃତି ତାଙ୍କ ପାଖେ ରହୁଥିଲେ । ଇଂରେଜ ସୈନ୍ୟ ତାଙ୍କୁ ଧରିବାପାଇଁ ଚାରିଆଡ଼େ ଘୂରି ବୁଲୁଥିଲେ । ସେଠାରେ ରହିବା ନିରାପଦ ମନେ ନ କରିବାରୁ ରାଜଗୁରୁ ଗଭୀର ରାତ୍ରିରେ ଜଙ୍ଗଲ ଓ ଗହୀର ଅତିକ୍ରମ କରି ବାଲଝାଡ଼ି ଗଲେ ଓ ସେଠାରେ ବୈରାଗୀ ବାହିନୀପତିଙ୍କ ଗୃହରେ ଆତ୍ମଗୋପନ କଲେ । ବୈରାଗୀ ବାହିନୀପତିଙ୍କ ଦାୟାଦ ଆର୍ତ୍ତତ୍ରାଣ ବାହିନୀପତିଙ୍କ ଦେଇଥିବା ତଥ୍ୟରୁ ଜଣାଯାଏ ଯେ ବୈରାଗୀ ବାହିନୀପତିଙ୍କ ଗୋଟିଏ କୋଠିଘର ଥିଲା । କୋଠିଘରର ଉପରେ ଧାନ ରଖା ଯାଇଥିଲା । ତଳେ ଲୁଚିବା ଭଳି ଗୃହ ଥିଲା । ଜୟୀ ରାଜଗୁରୁ ସେଠାରେ କିଛି କାଳ ନିର୍ଭୟରେ ରହିଲେ । କିନ୍ତୁ ସେ ସେଠାରେ ରହିଥିବା କଥା କୌଣସି ସୂତ୍ରରୁ ଇଂରେଜମାନେ ଜାଣିପାରିଲେ । ସେମାନେ ସଙ୍ଗେ ସଙ୍ଗେ ବାଲଝାଡ଼ି ଗ୍ରାମକୁ ସୈନ୍ୟ ପଠାଇଲେ । ଜଣେ ସୈନ୍ୟ ଆସି ବୈରାଗୀ ବାହିନୀପତିଙ୍କୁ ଜୟୀ ରାଜଗୁରୁଙ୍କ ରହିବା କଥା ପଚାରିଲେ । ମାତ୍ର ବୈରାଗୀ ନିଜର ଅଜ୍ଞତା ପ୍ରକାଶ କଲେ । ସୈନ୍ୟ ଜଣକ ତାଙ୍କ କଥାରେ ବିଶ୍ୱାସ କରି ଫେରିଗଲେ ।

ଜୟୀ ରାଜଗୁରୁ ଅବିଳମ୍ବେ ସେ ସ୍ଥାନ ଛାଡ଼ିବାକୁ ସ୍ଥିର କଲେ । ସେ ନିକଟବର୍ତ୍ତୀ ରଣପୁର ଗଡ଼ଜାତ ଅଞ୍ଚଳକୁ ଯିବାପାଇଁ ବସିଲେ । ବାହିନୀପତି ମଧ୍ୟ ତାଙ୍କୁ ବାଟ ଦେଖାଇବାପାଇଁ କମଳ ବଡ଼ଜେନା ନାମକ ବ୍ୟକ୍ତିଙ୍କୁ ନିଯୁକ୍ତ କଲେ । ରାତ୍ରିର ଘନ ଅନ୍ଧକାରରେ ଜୟୀ ରାଜଗୁରୁ କମଳକୁ ସାଙ୍ଗରେ ଧରି ରଣପୁର

ଅଭିମୁଖେ ଯାତ୍ରା କଲେ । ମାତ୍ର କମଳ ବଡ଼ଜେନା ଜୟୀ ରାଜଗୁରୁଙ୍କ ଯିବା ବିଷୟ ଇଂରେଜ କର୍ତ୍ତୃପକ୍ଷଙ୍କୁ ଆଗରୁ ଜଣାଇ ଦେଇଥିଲେ । ରଣପୁର ଯିବା ବାଟରେ ଇଂରେଜ ସୈନ୍ୟମାନେ ଗୁପ୍ତରେ ରହିଲେ । କିଛି ବାଟ ଯିବା ପରେ ଜୟୀ ରାଜଗୁରୁ କିଛି ଦୂରରେ ଆଲୁଅ ଜଳୁଥିବା ଦେଖି କମଳଙ୍କୁ ଏ ବିଷୟରେ ପଚାରିଲେ । ମାତ୍ର ମଇଁଷିଗୋଠ ଆଲୁଅ ବୋଲି କମଳ ଉତ୍ତର ଦେଲେ । ଆଲୁଅ ପାଖ ହୁଅନ୍ତେ ଲୁଚି ରହିଥିବା ଇଂରେଜ ସୈନ୍ୟମାନେ 'ଷଣ୍ଢ ଆସିଲାରେ' ବୋଲି ପାଟି କରି ତାଙ୍କୁ ଧରିବାକୁ ଦୌଡ଼ି ଆସିଲେ । ଜୟୀ ରାଜଗୁରୁ ମଧ୍ୟ ଦୂର ପାହାଡ଼ ଆଡ଼କୁ ଦ୍ରୁତ ଗତିରେ ଦୌଡ଼ିବାକୁ ଲାଗିଲେ । ତାଙ୍କ ପାଖେ କୌଣସି ଅସ୍ତ୍ର ଶସ୍ତ୍ର ନ ଥିଲା । ଶେଷରେ ସେ ଧରା ପଡ଼ିଲେ ।

କମଳ ଷଡ଼୍‌ଯନ୍ତ୍ର କରି ତାଙ୍କୁ ଧରାଇଦେଇଥିବା କଥା ଜୟୀ ରାଜଗୁରୁ ଜାଣି ପାରିଲେ । କ୍ରୋଧରେ ସେ ନିଆଁ ହୋଇଗଲେ । ତାଙ୍କ ତୁଣ୍ଡରୁ ବାହାରି ପଡ଼ିଲା –''ରେ ପାପିଷ୍ଠ ! କ'ଣ କଲୁ ? ତୁ ଯଦି ଏଥିରେ ଥିବୁ ତୋର ବଂଶ ସମୂଳେ ଧ୍ୱଂସ ହୋଇଯିବ । ତୋ କୁଳରେ ପାଣି ଦେବାକୁ କେହି ରହିବେ ନାହିଁ । ତୋ ଡିହରେ ବିଲୁଆ ଡେଇଁବ । ମୁଁ ଯଦି ବ୍ରାହ୍ମଣ ହୋଇଥିବି, ମୋର ଅଭିଶାପ ନିଶ୍ଚୟ ଫଳିବ ।''

କମଳର ଆଉ ଟେର୍ ମିଳି ନ ଥିଲା । ତାର ରହିବା ଗୃହ ପରିତ୍ୟକ୍ତ ହୋଇ ଏବେ ପଡ଼ିଛି । କେହି ତାହାକୁ କିଣୁ ବି ନାହାନ୍ତି । ସେଥିରେ ବିଲୁଆ ଡେଉଁଛନ୍ତି ।

ଜୟୀ ରାଜଗୁରୁ ଯେଉଁଠି ଧରା ପଡ଼ିଥିଲେ ସେ ସ୍ଥାନକୁ ଷଣ୍ଢମାରୁ କୋଣ ଲୋକେ କହୁଛନ୍ତି ।

ପ୍ରାୟ ଶହେ ସିପାହୀ ରାଜଗୁରୁଙ୍କୁ ଧରି ଫ୍ଲେଚରଙ୍କ ପାଖକୁ ଆଣିଲେ । ତାଙ୍କୁ ଆଣିବା ବେଳେ ହାହାକାର ପଡ଼ି ଯାଇଥିଲା । ଏକଥା ମଧ୍ୟ ବିପ୍ର ମଧୁସୂଦନ ଅତି ସୁନ୍ଦର ଭାବେ ବର୍ଣ୍ଣନା କରିଛନ୍ତି–

''ଲୋକେ ଦେଖିଣ ଯେ କରନ୍ତି ହାହାକାର ।
କାହିଁଥିଲେ କେମନ୍ତେ ଧରିଲେ ବୋଲି ବିଚାରନ୍ତି ନର ।।''

କେହି କେହି ପିଣ୍ଡିକି ହରିଚନ୍ଦନଙ୍କୁ ଏଥିପାଇଁ ଦାୟୀ କରିଥିଲେ । ଇଂରେଜମାନେ ଜୟୀ ରାଜଗୁରୁଙ୍କୁ ଧରାଇଦେବାକୁ ପିଣ୍ଡିକିଙ୍କୁ ନିଯୁକ୍ତ କରିଥିଲେ ।

''କେ ବୋଲଇ ଏକା ମତଲପ ଓକିଲ
ରାଜଗୁରୁ ପ୍ରାଣ ଉପରେ ହେଲା ସଲ ।।''

## ଫାଶୀ

ଶତାଧିକ ସୈନ୍ୟ ଜୟୀ ରାଜଗୁରୁଙ୍କୁ ଧରି ମେଜର ଫ୍ଲେଚରଙ୍କ ପାଖକୁ ଆଣିଲେ । ଇଂରେଜମାନେ ଜୟୀ ରାଜଗୁରୁଙ୍କ ଉପରେ ତ ରକ୍ତଚାଉଳ ଚୋବାଉଥିଲେ: ତାଙ୍କୁ ଦେଖି ଫ୍ଲେଚର କ୍ରୋଧରେ ପ୍ରଜ୍ୱଳିତ ହେବାକୁ ଲାଗିଲେ ।

ହତ୍ୟା କରିବା ପୂର୍ବରୁ ମେଜର ଫ୍ଲେଚର ଜୟୀ ରାଜଗୁରୁଙ୍କୁ ଭର୍ତ୍ସନା କରିବାକୁ ଲାଗିଲେ -

''ତୁ ପରା ମରହଟା ରଖାଇଲୁ ଶରଣ ।
ତୁ ପରା କଟକୁ ଯାଇଥିଲୁ ପୁଣ ।।
ଜମିଦାରମାନଙ୍କୁ କରାଉଥିଲୁ ମେଳି ।
ଟିକା ଟଙ୍କା ଅସୁଲକରୁ ପରଜାଙ୍କୁ ଦଳି ।।
ଗଜପତି ଛାମୁରେ ହୁଅ ଆଗୁସାର ।
ଭୁଲାଇ ରାଜାଙ୍କୁ ରାଜ୍ୟ କଲୁ ନାରଖାର ।।
ବ୍ରାହ୍ମଣ ହୋଇ ତୁ ରାକ୍ଷସି ଆଚରିଲୁ ।
ଅରଖିତ ଖାଏ ବିତ୍ତ ବିଦେଶୀ ପୋଷିଲୁ ।।
ପାଇକ କୁଳ ପାଳିଣ କରପୀଡ଼ା କଲୁ ।
ଆଗେ ସୈନ୍ୟ ସାଜି ତେଲାଙ୍ଗକୁ ଗଲୁ ।।
ଗର୍ବେଶ୍ୱର ରାଜା ନ ଜାଣଇ କିଛି ।
ରାଜ୍ୟର ଭରା ତୋ ଶିରରେ ଦେଇଅଛି ।।
ଏବେ ଯେ ଆମ୍ଭ ହସ୍ତେ ପୂରିଲା ତୋ କାଳ
ଆଜ ପରଯନ୍ତେ ଥିଲା ତୋ ଶୁଭ ବେଳ ।।

ଜୟୀ ରାଜଗୁରୁ ମଧ୍ୟ ନିର୍ଭୀକ ଭାବରେ ଉତ୍ତର ଦେଲେ -

''ସହଜେ ମୁହିଁ ଯେ କରି ସିନା ଦୋଷ ।
ମୋହ ଲାଗି ରାଜ୍ୟଭ୍ରଷ୍ଟ ହୋଇଲେ ନରେଶ'' ।।

ମୃତ୍ୟୁକୁ ଜୟୀ ରାଜଗୁରୁଙ୍କର ତିଳେମାତ୍ର ଭୟ ନ ଥିଲା, ସେ କହିଲେ -

''ମାର ତାର ଅବା ନାହିଁ ମୋର ଭୟ !
ଏତେ ବୋଲି ବ୍ରାହ୍ମଣ ଚିନ୍ତିଲେ ଦେବରାୟ'' !

ଏହାପରେ ଜୟୀ ରାଜଗୁରୁଙ୍କୁ ସର୍ବସାଧାରଣରେ ଖୋରଧାର ଏକ ବରଗଛରେ ଚାରି ଡାଳିଆ କରି ଫାଶୀ ଦିଆଗଲା ।

ମୃତ୍ୟୁ ପୂର୍ବରୁ ଜୟୀ ରାଜଗୁରୁ 'ନାରାୟଣ' 'ନାରାୟଣ' ଜପି ଚାଲିଥିଲେ । କ୍ରୋଧ ସମ୍ବରଣ କରି ନ ପାରି ଅଭିଶାପ ମଧ୍ୟ ଦେଇଥିଲେ –

''କ୍ରୋଧେ ଅଭିଶାପ୍ୟ ଦେଲେକ ଦ୍ୱିଜବର ।
ପ୍ରଥମ ସମରେ ତୁମ୍ଭେ ମରରେ ଅସୁର ।।''

ଗଜପତି ପୁଣି ରାଜ୍ୟ ପାଇବେ ବୋଲି ଜୟୀ ରାଜଗୁରୁ ଆଶାବାଦୀ ହୋଇଛନ୍ତି –

''ଗଜପତି ପୃଥ୍ୱୀ ହେବ ଆତଯାତ ।
ନାରାୟଣ ସଂହାର କରନ୍ତୁ ଦିତ୍ୟ ଗୋତ୍ର ।''

ଏହାପରେ ଖୋରଧାର ମଧ୍ୟସ୍ଥଳରେ ଥିବା ଏକ ବରଗଛରେ ଜୟୀରାଜଗୁରୁଙ୍କୁ ଚାରିଡାଳିଆ କରି ଫାଶୀ ଦିଆଗଲା ।

ଜୟୀ ରାଜଗୁରୁଙ୍କୁ ଫାଶୀ ଦେବାବେଳେ କେହି ପ୍ରତିରୋଧ କରି ନ ଥିବା ଜଣାଯାଏ । ଏବେବି ଖୋରଧା ଅଞ୍ଚଳରେ ପ୍ରବାଦ ଅଛି–

'କାଉ ବୋଲେ ରାଉ ରାଉ
ଜୟୀ ରାଜଗୁରୁ ଫାଶୀ ପାଇଲା
କେହି ନ କହିଲେ ଥାଉ' ।।

ଜୟୀ ରାଜଗୁରୁଙ୍କୁ ହତ୍ୟା କରିବାପାଇଁ ଉପରୁ ଆଦେଶ ନ ଥିଲା । ବରଂ ଉପର କର୍ତ୍ତୃପକ୍ଷ ଏ କାଣ୍ଡ ଭିଆଇଥିବା ସେନାପତିଙ୍କୁ କୈଫିୟତ ମାଗିବାରୁ ସେ ଜବାବ ଦେଲେ ଯେ, ଜୟୀ ରାଜଗୁରୁ ବ୍ରାହ୍ମଣ ଥିବାରୁ ତାଙ୍କୁ ଫାଶୀ ଦିଆଗଲା । ଏହା ୧୯୨୭ ମସିହାରେ ପ୍ରକାଶ ପାଇଥିବା 'ଖୁରଧା ଦର୍ପଣ'ରୁ ଜଣାଯାଏ । ଏହାର ଲେଖକ ଦିଗମ୍ବର ଶ୍ରୀଚନ୍ଦନ ଇଂରେଜ ଶାସନର ଜଣେ ପଦାଧିକାରୀ ଥିଲେ । ସ୍ଥାନୀୟ ଗବେଷକ ଦିବ୍ୟସିଂହ ଚମୁପତି ମଧ୍ୟ ଜୟୀ ରାଜଗୁରୁଙ୍କୁ ଖୋରଧାର ଏକ ବରଗଛରେ ଫାଶୀ ଦିଆଯାଇଥିବା କଥା 'ବକ୍ସି ଜଗବନ୍ଧୁ ବଂଶର ନୂତନ ଇତିହାସ' ଶୀର୍ଷକ ପୁସ୍ତକରେ ଉଲ୍ଲେଖ କରିଛନ୍ତି ।

ଜୟୀ ରାଜଗୁରୁଙ୍କୁ ଯେଉଁରି ନିର୍ମମ ଭାବରେ ହତ୍ୟା କରାଗଲା, ଓଡ଼ିଶା ବା ଭାରତ କାହିଁକି ପୃଥିବୀ ଇତିହାସରେ ତା'ର ଦୃଷ୍ଟାନ୍ତ ନାହିଁ । ଏହି ନାରକୀୟ ହତ୍ୟା ଖ୍ରୀଷ୍ଟଙ୍କ କ୍ରୁଶବିଦ୍ଧ ହତ୍ୟାଠାରୁ ବଳି ଯାଇଥିଲା । ଜାତିପାଇଁ ଲଢ଼ି ଓ ଶେଷରେ ପ୍ରାଣପାତ କରି ସେ ହୋଇଗଲେ ଦେଶର ପ୍ରଥମ ଅମର ସହିଦ ।



## ପାଇକ ବିଦ୍ରୋହର କର୍ଣ୍ଣଧାର
# ବକ୍ସି ଜଗବନ୍ଧୁ

୧୮୫୭ ମସିହାରେ ବ୍ରିଟିଶ ଶାସନ ବିରୋଧରେ ଯେଉଁ ବିଦ୍ରୋହ ହୋଇଥିଲା ତାହା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ବୋଲି ଐତିହାସିକମାନେ ମତ ଦିଅନ୍ତି । ମାତ୍ର ତାହାର ଚାରି ଦଶନ୍ଧି ପୂର୍ବେ ୧୮୧୭ ମସିହାରେ ଖୋର୍ଦ୍ଧାରେ ଯେଉଁ ବିଦ୍ରୋହ ଆରମ୍ଭ ହେଲା, ତାହା ଥିଲା ଅଭୂତପୂର୍ବ । ଓଡ଼ିଶା ଇତିହାସରେ ତାହା ପାଇକ ବିଦ୍ରୋହ ବୋଲି ନାମିତ ହୋଇଅଛି । ଏହି ବିଦ୍ରୋହରେ ବକ୍‌ସି ଜଗବନ୍ଧୁ, ପିଣ୍ଡିକି ବାହୁବଳେନ୍ଦ୍ର ପ୍ରଭୃତି ମୁଖ୍ୟ ଅଂଶ ଗ୍ରହଣ କରି ଯେପରି ଭାବରେ ଜୀବନ ଉତ୍ସର୍ଗ କଲେ, ତାହା ଓଡ଼ିଶା ଇତିହାସର ଏକ ଗୌରବୋଜ୍ଜ୍ୱଳ ଅଧ୍ୟାୟ ହୋଇ ରହିଅଛି ।

### ପୃଷ୍ଠଭୂମି

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଖୋର୍ଦ୍ଧା ଅଧିକାର କଲେ । ଏହାକୁ ଖାସମାହାଲରେ ପରିଣତ କରାଗଲା ଓ ଏହାର ପରିଚାଳନା ଭାର ମେଜର ଫ୍ଲେଚରଙ୍କ ହସ୍ତରେ ନ୍ୟସ୍ତ ହେଲା । ସେ ୧୮୦୪ ପ୍ରଥମ ବନ୍ଦୋବସ୍ତ ଆରମ୍ଭ କଲେ । ଏହା ଖୋର୍ଦ୍ଧାର ପ୍ରଥମ ତହସିଲଦାର ଗୋଲାମ କାଦିରଙ୍କଦ୍ୱାରା ଶେଷ ହେଲା । ଏହି ବନ୍ଦୋବସ୍ତରେ ଖୋର୍ଦ୍ଧାର ଜମା ଟ.୧୧୮୬, ୧୫୦-୭-୬-୩

ଧାର୍ଯ୍ୟ ହେଲା । ଏହାପରେ ୧୮୦୫-୦୬ରେ ତିନି ବର୍ଷିଆ ବନ୍ଦୋବସ୍ତ ହେଲା । ତୃତୀୟ ବନ୍ଦୋବସ୍ତ ଏକ ବର୍ଷ ଓ ଚତୁର୍ଥ ବନ୍ଦୋବସ୍ତ ତିନି ବର୍ଷପାଇଁ ହୋଇଥିଲା । ୧୮୧୩-୧୪ରେ ଦୁଇ ବର୍ଷିଆ ଓ ୧୮୧୫-୧୬ରେ ଏକ ବର୍ଷପାଇଁ ବନ୍ଦୋବସ୍ତ ହୋଇଥିଲା । ଏହି ବର୍ଷ ଖୋର୍ଦ୍ଧାର ଜମା ଟ.୧୫୪, ୧୯୫୩, ୭୦କୁ ବୃଦ୍ଧି ପାଇଥିଲା । ଏହିସବୁ ଘନ ଘନ ବନ୍ଦୋବସ୍ତ ଫଳରେ ଜମା ବୃଦ୍ଧି ପାଇବାରୁ ଖୋର୍ଦ୍ଧାର ଅଧିବାସୀ ଅତିଷ୍ଠ ହୋଇପଡ଼ିଲେ ।

## ରାଜସ୍ୱ ବୃଦ୍ଧି

ରାଜସ୍ୱ ଆଦାୟ ପ୍ରଣାଳୀ ମଧ୍ୟ ତ୍ରୁଟିପୂର୍ଣ୍ଣ ଥିଲା । ଇଂରେଜମାନେ ପ୍ରତ୍ୟକ୍ଷ ଭାବେ ଖଜଣା ଆଦାୟ ନ କରି ମୁସ୍ତାଦାରୀ ପ୍ରଥାରେ ଖଜଣା ଆଦାୟ କରୁଥିଲେ । ଏଥିପାଇଁ ପ୍ରକାଶ୍ୟ ନିଲାମରେ ଜମିଦାରମାନେ ନିଯୁକ୍ତ ହେଲେ । ସେମାନେ ପ୍ରଜାଙ୍କଠାରୁ ଖଜଣା ଆଦାୟ କରି ସରକାରଙ୍କ ପାଖରେ ପୈଠ କରୁଥିଲେ । ସେହି ଜମିଦାରମାନେ କଡ଼ାକ୍ରାନ୍ତି ପର୍ଯ୍ୟନ୍ତ ଖଜଣା ଆଦାୟ କରୁଥିଲେ । ଅତ୍ୟାଚାରୀ ଜମିଦାରମାନେ ବେଆଇନ ଭାବେ ନ୍ୟାଯ୍ୟ ରାଜସ୍ୱର ବହୁଗୁଣ ଆଦାୟ କରୁଥିଲେ । ପ୍ରଜାମାନେ ଆପତ୍ତି କଲେ ମଧ୍ୟ ତାହା ଶୁଣୁ ନ ଥିଲେ । ଫଳରେ ସେମାନଙ୍କ ମଧ୍ୟରେ ଘୋର ଅସନ୍ତୋଷ ଦେଖାଦେଲା ।

## ଜମିଦାର କୁଳ ଧ୍ୱଂସ

ଓଡ଼ିଶାର ପୁରାତନ ଜମିଦାରମାନେ ମଧ୍ୟ ଇଂରେଜ ଶାସନରେ ନ୍ୟାୟ ପାଉ ନ ଥିଲେ । ୧୮୦୬ରେ ଅନାଦେୟ କାରଣରୁ ଜମିଦାରୀମାନ ନିଲାମ ହେବାର ବ୍ୟବସ୍ଥା ହେଲା । ମାତ୍ର ଏହି ନିଲାମ ଓଡ଼ିଶାରେ ନ ହୋଇ କଲିକତାରେ ହେଲା । ସେତେବେଳେ କଲିକତାକୁ ଯାତାୟାତର ସୁବିଧା ନ ଥିଲା । ରେଳ ଚଳାଚଳ ଆରମ୍ଭ ହୋଇ ନ ଥାଏ । ଫଳରେ ଜାହାଜରେ କଲିକତାକୁ ଯିବାକୁ ପଡୁଥିଲା । ଏହା ସମୟସାପେକ୍ଷ ଓ ବ୍ୟୟବହୁଳ ଥିଲା । କଲିକତାରେ ମଧ୍ୟ ଓଡ଼ିଶା ଜମିଦାରମାନଙ୍କର କେହି ପ୍ରତିନିଧି ନ ଥିଲେ । ବଙ୍ଗାଳୀ କର୍ମଚାରୀମାନଙ୍କର ହେରଫେର ଯୋଗୁଁ ଓଡ଼ିଆ ଜମିଦାରମାନେ ନିଲାମ ଧରିବାରୁ ବଞ୍ଚିତ ହେଉଥିଲେ । ଫଳରେ ସେମାନେ ଜମିଦାରୀ ହରାଇଲେ । ପ୍ରଥମ ବନ୍ଦୋବସ୍ତରେ ଓଡ଼ିଆ ଜମିଦାରଙ୍କ ସଂଖ୍ୟା ୨୩୪୦ ଥିଲା । ମାତ୍ର ୧୮୧୬ ମସିହା ଶେଷ ଆଡ଼କୁ ସେମାନଙ୍କ ସଂଖ୍ୟା ୧୪୪୯କୁ ଖସିଆସିଲା । ସେଥି ମଧ୍ୟରୁ ୩୬୦ଟି ଜମିଦାରୀ ବଙ୍ଗୀୟମାନେ ଖରିଦ କରି ନେଇଥିଲେ । ଜମିଦାରୀ ହରାଇ ପ୍ରାଚୀନ ସଂଭ୍ରାନ୍ତ ଓଡ଼ିଆ ଜମିଦାରମାନେ ତଳିତଳାନ୍ତ ହୋଇଗଲେ ।

## ଅଣଓଡ଼ିଆ କର୍ମଚାରୀ

ନୂତନଭାବେ ପ୍ରତିଷ୍ଠିତ ବ୍ରିଟିଶ ସରକାର ଓଡ଼ିଆ ପରିବର୍ତ୍ତେ ବଙ୍ଗାଳୀ, ବିହାରୀ ଓ ମୁସଲମାନମାନଙ୍କୁ ଚାକିରିରେ ନିଯୁକ୍ତ କଲେ । ଖୋର୍ଦ୍ଧାରେ ଇଂରେଜ ଶାସନ ଆରମ୍ଭରେ ପ୍ରାୟ ସମସ୍ତ କର୍ମଚାରୀ ଅଣଓଡ଼ିଆ ଥିଲେ । ମେଜର ଫ୍ଲେଚରଙ୍କ ଅଧୀନରେ ଖୋର୍ଦ୍ଧାର ପ୍ରଥମ ତହସିଲଦାର ଥିଲେ ଗୋଲାମ କାଦିର । ଖୋର୍ଦ୍ଧାର ପ୍ରଥମ ଦାରୋଗା ଥିଲେ ମୀର୍ଜା ମେହେଦି । ପିପିଲିର ଦାରୋଗା ଥିଲେ ହାଇଦର ଅଲ୍ଲୀ । ଖୋର୍ଦ୍ଧାର ରାଜସ୍ୱ ଆଦାୟ ପ୍ରଥମେ ବଙ୍ଗଳାର ଶ୍ୟାମାନନ୍ଦ ରାୟଙ୍କ ହସ୍ତରେ ନ୍ୟସ୍ତ ହେଲା । ୧୮୦୪ରୁ ୧୮୧୦ ମସିହା ପର୍ଯ୍ୟନ୍ତ ପୁରୀର ତହସିଲଦାର ଥିଲେ ଗୌରହରି । ସେହି ସମୟରେ ଚନ୍ଦ୍ରପ୍ରସାଦ ସିଂହ ଥିଲେ ସିରସ୍ତାଦାର । ଏହିସବୁ ଅଣଓଡ଼ିଆ କର୍ମଚାରୀମାନେ ଅତ୍ୟାଚାରୀ ଥିଲେ । ଅସତ୍ ଉପାୟରେ ସେମାନେ ଅଳ୍ପ ସମୟରେ ବିପୁଳ ସମ୍ପତ୍ତିର ଅଧିକାରୀ ହୋଇପଡ଼ିଲେ । ମୌଲବି ସାଲିମ ଅଲ୍ଲୀ ଫୌଜଦାରୀ ସିରସ୍ତାଦାରଭାବେ ନିଯୁକ୍ତି ପାଇଥିଲେ । ସେ ଖୋର୍ଦ୍ଧାରେ ଥିଲାବେଳେ ଅବୈଧ ଉପାୟରେ ୧୭,୦୦୦ ଟଙ୍କା ଆଦାୟ କରିଥିଲେ । ପରେ ତାଙ୍କୁ ଉତ୍କୋଚ ନେବା ଅପରାଧରେ ନଅ ବର୍ଷ କାରାଦଣ୍ଡ ଭୋଗ କରିବାକୁ ପଡ଼ିଥିଲା । ଶ୍ୟାମାନନ୍ଦ ରାୟ ଖୋର୍ଦ୍ଧାର ପୋଲିସ ଇନ୍‌ସପେକ୍ଟର ଭାବେ କାର୍ଯ୍ୟ କରୁଥିଲେ । ସେ ଅବସର ଗ୍ରହଣ କଲାପରେ ଖୋର୍ଦ୍ଧା ଇଲାକା ନିଲାମରେ କିଣିଲେ । ସଙ୍ଗେ ସଙ୍ଗେ ଦୁଇ ଗୁଣ ଜମା ବୃଦ୍ଧି କଲେ । ଆଉ ଜଣେ କୁଖ୍ୟାତ ଦାରୋଗା ଥିଲେ ମୀର୍ଜା ମେହେଦି । ସେ ପ୍ରଥମେ ପିପିଲିର ଦାରୋଗା ଭାବେ ନିଯୁକ୍ତ ହୋଇଥିଲେ । ମାତ୍ର ତାଙ୍କ ଅତ୍ୟାଚାର ଅସହ୍ୟ ହେବାରୁ ପିପିଲିର ଜନସାଧାରଣ ତାଙ୍କ ବିରୋଧରେ ସରକାରଙ୍କୁ ଆବେଦନ କଲେ । ଫଳରେ ପୁରୀର ତତ୍କାଳୀନ କଲେକ୍ଟର ସେକ୍ ତାଙ୍କୁ ଖୋର୍ଦ୍ଧାକୁ ବଦଳି କଲେ । ଖୋର୍ଦ୍ଧାରେ ମଧ୍ୟ ତାଙ୍କ ଅତ୍ୟାଚାରର ସୀମା ରହିଲା ନାହିଁ । ଅବୈଧ ଉପାୟରେ ସେ ବହୁ ଅର୍ଥ ସଂଗ୍ରହ କଲେ । ବହୁ ଜମିଦାରୀ ନିଲାମରେ କ୍ରୟ କଲେ । ପ୍ରାସାଦ ନିର୍ମାଣପାଇଁ ବିନା ପାରିଶ୍ରମିକରେ ଲୋକଙ୍କୁ ଖଟାଇଲେ । ଖୋର୍ଦ୍ଧାର ଜନସାଧାରଣ ତାଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଲେ । ପରେ ବିଦ୍ରୋହୀମାନେ ତାଙ୍କ ଘରେ ନିଆଁ ଲଗାଇଦେବା ଫଳରେ ପ୍ରାୟ ୫୦,୦୦୦ ଟଙ୍କାର ସମ୍ପତ୍ତି ଧ୍ୱଂସ ପାଇଥିଲା । ମୀର୍ଜା ମେହେଦିଙ୍କ ନିଯୁକ୍ତି ଖୋର୍ଦ୍ଧାବାସୀଙ୍କପାଇଁ ଏକ ଅଭିଶାପ ସଦୃଶ ଥିଲା ।

## ପାଇକମାନଙ୍କଠାରୁ ଖଜଣା ଆଦାୟ

ବ୍ରିଟିଶ ସରକାର ମଧ୍ୟ ପାଇକମାନଙ୍କଠାରୁ ଖଜଣା ଆଦାୟ ବ୍ୟବସ୍ଥା ଆରମ୍ଭ କଲେ ।

ଓଡ଼ିଶାର ହିନ୍ଦୁରାଜାମାନଙ୍କ ଅମଳରେ ଓଡ଼ିଶା କେତେଗୁଡ଼ିଏ ମହଲାରେ ବିଭକ୍ତ ହୋଇଥିଲା । ସେହି ମହଲାମାନଙ୍କର ମୁଖ୍ୟମାନଙ୍କୁ ଦଳାଇ, ଦଳବେହେରା କୁହାଯାଉଥିଲା । ସେମାନେ ଯୁଦ୍ଧ ସମୟରେ ରାଜାଙ୍କ ପକ୍ଷରେ ରହି ଯୁଦ୍ଧ କରୁଥିଲେ । ଅନ୍ୟ ସମୟରେ ସେମାନେ କୃଷି କାର୍ଯ୍ୟରେ ନିଯୁକ୍ତ ଥିଲେ । ବେତନ ପରିବର୍ତ୍ତେ ସେମାନେ ନିଷ୍କର ଜମି ଭୋଗଦଖଲ କରୁଥିଲେ । ମୁସଲମାନ ଶାସନ ସମୟରେ ଏହି ବ୍ୟବସ୍ଥା ଅପରିବର୍ତ୍ତିତ ଥିଲା । ଜମି ଚାଷପାଇଁ ସେମାନଙ୍କୁ କର ଦେବାକୁ ପଡୁ ନ ଥିଲା । ମରହଟ୍ଟାମାନେ ମଧ୍ୟ ଏଥିରେ ହସ୍ତକ୍ଷେପ କରି ନ ଥିଲେ । ଇଂରେଜମାନେ କିନ୍ତୁ ଏହି ବ୍ୟବସ୍ଥା ଗ୍ରହଣ କରି ନ ଥିଲେ । ସେମାନେ ନୂଆ ରାଜସ୍ୱ ନୀତି ପ୍ରବର୍ତ୍ତନ କଲେ । ପାଇକମାନଙ୍କୁ ସେମାନଙ୍କର ସେନାବାହିନୀପାଇଁ ଅଯୋଗ୍ୟ ମନେ କଲେ । ସେମାନଙ୍କ ଜମି ଉପରେ ଖଜଣା ଧାର୍ଯ୍ୟ କରାଗଲା । ଦଳେଇ, ଦଳବେହେରାମାନଙ୍କ କ୍ଷେତ୍ରରେ ମଧ୍ୟ ଏହି ନୀତି ପ୍ରୟୋଗ କରାଗଲା । ମେଜର ଫ୍ଲେଚର ପ୍ରଥମ ବନ୍ଦୋବସ୍ତ ବେଳେ ସେମାନଙ୍କ ଜମି ଉପରେ ଖଜଣା ଧାର୍ଯ୍ୟ କରି ନ ଥିଲେ । ମାତ୍ର ପରବର୍ତ୍ତୀ ବନ୍ଦୋବସ୍ତମାନଙ୍କରେ ସେମାନଙ୍କର ଜମି ଉପରେ ଖଜଣା ଧାର୍ଯ୍ୟ ହେଲା । ଇଂରେଜ ଶାସନ ଆରମ୍ଭରେ ପାଇକମାନଙ୍କର ସଂଖ୍ୟା ୧୦,୦୦୦ ଥିଲା । ସେମାନଙ୍କୁ କୌଣସି ପ୍ରକାର ସୁବିଧା ଦେବାକୁ ନୂଆ ସରକାର ଉଚିତ ମନେ କଲେ ନାହିଁ । ସେମାନଙ୍କ ଜମି ଉପରେ ମନଇଚ୍ଛା ଖଜଣା ଧାର୍ଯ୍ୟ କଲେ । ଫଳରେ ଦଳାଇ, ଦଳବେହେରା ଓ ପାଇକମାନେ ଖଜଣା ଦେବାକୁ ଅସମର୍ଥ ହେଲେ । କେତେକ ଜାଗିରି ଜମି ଫେରାଇବାକୁ ବାଧ୍ୟ ହେଲେ । କେତେକଙ୍କଠାରୁ ଜାଗିରି କାଢ଼ି ନିଆଗଲା । ୮୭୩ ଜଣ ଏହି ଭାବରେ ଜାଗିରି ଜମି ହରାଇଥିବା ଜଣାଯାଏ । ଜାଗିରି ଜମି ହରାଇ ସେମାନେ ଦାଣ୍ଡର ଭିକାରି ହୋଇପଡ଼ିଲେ । ସେମାନଙ୍କ ମଧ୍ୟରେ ତୀବ୍ର ଅସନ୍ତୋଷ ଦେଖାଦେଲା । ପ୍ରାୟ ସମସ୍ତ ଦଳାଇ, ଦଳବେହେରା ଓ ପାଇକମାନେ ୧୮୧୭ ମସିହା ପାଇକ ବିଦ୍ରୋହରେ ଯୋଗ ଦେଇଥିବାର ଜଣାଯାଏ ।

## କୃଷକମାନଙ୍କର ଦୁରବସ୍ଥା

ଇଂରେଜ ଶାସନରେ କୃଷକମାନଙ୍କର ମଧ୍ୟ ଦୁର୍ଦ୍ଦଶାର ସୀମା ରହିଲା ନାହିଁ । କୃଷକମାନେ ସାଧାରଣତଃ ଜମିଦାରଙ୍କ ଉପରେ ନିର୍ଭର କରିଥାନ୍ତି ।

ସେମାନଙ୍କର ଅଭାବ ଅସୁବିଧା ବେଳେ ଜମିଦାରମାନେ ସାହାଯ୍ୟ କରିଥାନ୍ତି । ମାତ୍ର ଇଂରେଜ ଶାସନରେ ଜମିଦାରମାନେ ଖଜଣା ବୃଦ୍ଧିରେ ହନ୍ତସନ୍ତ ହେଲେ । ନିଅଣ୍ଟ ଭରଣା କରିବାପାଇଁ ଚାଷୀମାନଙ୍କ ଉପରେ ଅଧିକ କର ବସାଇଲେ । ବାହାର ଜମିଦାରଙ୍କ ଅମଳରେ ଚାଷୀମାନେ ଅଧିକ ନିଷ୍ପେଷିତ ହେଲେ । ସେହିସବୁ ଜମିଦାରମାନେ କଲିକତା ପ୍ରଭୃତି ଦୂରସ୍ଥାନରେ ରହୁଥିଲେ । ନିଜ ଜମିଦାରୀରେ ଗୁମାସ୍ତାମାନଙ୍କୁ ନିଯୁକ୍ତ କରୁଥିଲେ । ଏହି ଗୁମାସ୍ତାମାନଙ୍କ ମଧ୍ୟରୁ ଅଧିକାଂଶ ଅଣଓଡ଼ିଆ ଥିଲେ । ସେମାନେ ପ୍ରଜାମାନଙ୍କର ଅଭାବ ଅସୁବିଧା ବୁଝୁ ନ ଥିଲେ । ସେମାନେ ପ୍ରଜାମାନଙ୍କୁ ନାନା ଭାବରେ ଶୋଷଣ କରୁଥିଲେ । ଏପରିକି ଜମିର ଖଜଣା ଦୁଇ ଗୁଣରୁ ଅଧିକ ବୃଦ୍ଧି ପାଇଥିଲା । ଏହି ସମୟରେ ପ୍ରାୟ ପାଞ୍ଚ ହଜାରରୁ ଛଅ ହଜାର ପର୍ଯ୍ୟନ୍ତ ପରିବାର ସେମାନଙ୍କର ଜମି, ହଳ, ବଳଦ, କଂସାବାସନ, ଘରଦ୍ୱାର ଏପରିକି ସ୍ତ୍ରୀ ପିଲାଙ୍କୁ ବିକ୍ରୟକରି ଅନ୍ୟତ୍ର ପଳାଇଥିବା ଜଣାଯାଏ ।

### କଉଡ଼ି ମୂଲ୍ୟ ହ୍ରାସ

ହିନ୍ଦୁ ରାଜାମାନଙ୍କ ସମୟରେ ଭୂରାଜସ୍ୱ ଶସ୍ୟ ଆକାରରେ ଦିଆଯାଉଥିଲା । ପରେ କଉଡ଼ିର ପ୍ରଚଳନ ହେବା ଫଳରେ କଉଡ଼ିରେ ରାଜସ୍ୱ ନିଆଗଲା । ମରହଟ୍ଟାମାନଙ୍କ ସମୟରେ ମଧ୍ୟ କଉଡ଼ିରେ ରାଜସ୍ୱ ଆଦାୟ ହେଉଥିଲା । ଇଂରେଜ ଶାସନର ପ୍ରଥମ ବର୍ଷରେ ରାଜସ୍ୱ କଉଡ଼ି ଆକାରରେ ଆଦାୟ କରାଗଲା । ୧୮୦୫ ଖ୍ରୀଷ୍ଟାବ୍ଦରେ ଟଙ୍କାର ପ୍ରଚଳନ ହେଲା । ଫଳରେ ରାଜସ୍ୱ ମଧ୍ୟ ଟଙ୍କାରେ ଦେବାର ବ୍ୟବସ୍ଥା ହେଲା । ୧୮୦୬ରେ ଏକ ଟଙ୍କାର ବିନିମୟ ହାର ଚାରି କାହାଣ ଛଅ ପଣ ଥିଲା । ୧୮୦୫–୦୬ରେ ଭୂରାଜସ୍ୱ କଉଡ଼ିରେ ମଧ୍ୟ ଆଦାୟ ହେଲା । ଏହାର ପରବର୍ଷ ଅର୍ଥାତ୍, ୧୮୦୮ ଖ୍ରୀଷ୍ଟାବ୍ଦରେ ସରକାର କେବଳ ଟଙ୍କାରେ ରାଜସ୍ୱ ଆଦାୟ କରିବାକୁ ଆଦେଶ ଦେଲେ । ସମସ୍ତେ ତେଣୁ କଉଡ଼ି ବିନିମୟରେ ଟଙ୍କା ପାଇବାକୁ ଆଗ୍ରହୀ ହେଲେ । ଏହା ଫଳରେ ଟଙ୍କାର ମୂଲ୍ୟ ବୃଦ୍ଧି ପାଇଲା । କଉଡ଼ିର ମୂଲ୍ୟ ହ୍ରାସ ପାଇଲା । ଏହି ସମୟରେ ଦେଶରେ ରୁପାର ଅଭାବ ମଧ୍ୟ ଦେଖାଦେଇଥିଲା । ସୁତରାଂ କଉଡ଼ିର ମୂଲ୍ୟ ଅତି ଦ୍ରୁତ ଗତିରେ ହ୍ରାସ ପାଇଲା । ଜିନିଷପତ୍ରର ଦାମ୍ ମଧ୍ୟ ବୃଦ୍ଧି ପାଇଲା । ଜମିଦାରମାନେ କ୍ଷତିଗ୍ରସ୍ତ ହେଲେ । ସେମାନେ ସାଧାରଣତଃ ରାଜସ୍ୱ ପୈଠ ବେଳେ ମହାଜନମାନଙ୍କଠାରୁ ଧାର ନେଇଥାନ୍ତି । ଏହାର ସୁଯୋଗ ନେଇ ଅସାଧୁ ବ୍ୟବସାୟୀମାନେ କଉଡ଼ିର ମନଇଚ୍ଛା ବିନିମୟ ହାର ବୃଦ୍ଧି କଲେ । କେଉଁଠି କେଉଁଠି ଟଙ୍କାର ବିନିମୟ ହାର ସାତ କାହାଣ କଉଡ଼ି

ହୋଇଗଲା । କଉଡ଼ିର ମୂଲ୍ୟ କ୍ରମାଗତ ହ୍ରାସ ପାଇବା ଫଳରେ ଜମିଦାରଙ୍କ ଅବସ୍ଥା ଶୋଚନୀୟ ହୋଇପଡ଼ିଲା । ସେମାନେ ଟଙ୍କା ଆକାରରେ ରାଜସ୍ୱ ଦେବାକୁ ଅସମର୍ଥ ହେଲେ । ଫଳରେ ଜମିଦାରୀ ହରାଇ ଦାଣ୍ଡର ଭିକାରି ହେଲେ । ପ୍ରଜାମାନେ ମଧ୍ୟ ଅକଥନୀୟ ଦୁଃଖଦୁର୍ଦ୍ଦଶାର ସମ୍ମୁଖୀନ ହେଲେ ।

## ଏକଚାଟିଆ ଲୁଣ ବ୍ୟବସାୟ

ଏଥି ସାଙ୍ଗକୁ ଲୁଣର ଅଭାବ ତଥା ମୂଲ୍ୟ ବୃଦ୍ଧି ହେଲା । ଓଡ଼ିଶାର ଉପକୂଳବର୍ତ୍ତୀ ଅଧିବାସୀମାନେ ଲୁଣ ମାରି ଜୀବିକା ନିର୍ବାହ କରୁଥିଲେ । ଓଡ଼ିଶା ଅଧିକାର କରିବା ପରେ କମ୍ପାନୀ ସରକାର ଲୁଣମରାରେ ଏକଚାଟିଆ ନୀତି ପ୍ରବର୍ତ୍ତନ କଲେ । ସମୁଦ୍ରରୁ ଲୁଣ ମାରିବା ବନ୍ଦ ହେଲା । ସରକାର ନିଜେ ଲୁଣ ଉତ୍ପାଦନ କରି ବ୍ୟବସାୟ ଚଳାଇଲେ । ସଙ୍ଗେ ସଙ୍ଗେ ଲୁଣର ଦାମ୍ ବୃଦ୍ଧି ପାଇଲା । ଏଥି ପୂର୍ବରୁ ଲୁଣ ମହଣ ଚଉଦ ଅଣା ମାତ୍ର ଥିଲା । କିନ୍ତୁ ୧୮୧୪ ମସିହା ୨୨ ରେଗୁଲେସନ ଅନୁଯାୟୀ ଲୁଣ ମହଣ ପୂର୍ବର ମୂଲ୍ୟଠାରୁ ଚାରି ପାଞ୍ଚ ଗୁଣ ଅଧିକ ହୋଇଗଲା । ବିଦ୍ରୋହ ପୂର୍ବରୁ ଲୁଣ ମହଣ ୩ ଟଙ୍କା ହୋଇଥିବାର କଥା ଏଜେଣ୍ଟ ବିଚରଙ୍କ ରିପୋର୍ଟରୁ ଜଣାଯାଏ । ୧୮୧୭ ମସିହା ବେଳକୁ ଲୁଣ ମହଣ ୪ ଟଙ୍କା ହୋଇଥିଲା ବୋଲି ଡବ୍ଲ୍ୟୁ.ଇ.ଆୟାର ତାଙ୍କ ରିପୋର୍ଟରେ ଦର୍ଶାଇଥିଲେ ।

ଲୁଣର ମୂଲ୍ୟ ବୃଦ୍ଧି ସଙ୍ଗେ ସଙ୍ଗେ ଏହାର ଅଭାବ ଅନୁଭୂତ ହେଲା । କଟକର କଲେକ୍ଟର ଟ୍ରାଓ୍ୱାର ମଧ୍ୟ ତାଙ୍କର ଗସ୍ତ ସମୟରେ ଆବଶ୍ୟକୀୟ ପରିମାଣର ଲୁଣ ପାଇବାକୁ ସମର୍ଥ ହୋଇ ନ ଥିଲେ । ନିତ୍ୟ-ବ୍ୟବହାର୍ଯ୍ୟ ଏହି ଜିନିଷର ଉତ୍କଟ ଅଭାବ ଲୋକମାନଙ୍କୁ ଘୋର ବାଧିଲା ।

## ଜନସାଧାରଣଙ୍କ ଦୁର୍ଦ୍ଦଶା

ଏହିପରି ନାନା ଦୁଃଖଦୁର୍ଦ୍ଦଶାର ସମ୍ମୁଖୀନ ହୋଇ ଖୋର୍ଦ୍ଧା ଅଧିବାସୀମାନେ ଅନ୍ୟତ୍ର ପଳାଇ ଯାଇଥିବା କଥା ଆଗରୁ ଉଲ୍ଲେଖ କରାଯାଇଛି । ଏହି ଦୁଃଖଦୁର୍ଦ୍ଦଶା ସମସ୍ତଙ୍କୁ ଜଣାଥିଲେ ମଧ୍ୟ ଏହାକୁ ଦୂର କରିବାପାଇଁ ସରକାର କୌଣସି ପଦକ୍ଷେପ ନେଇ ନ ଥିଲେ । ଜଗବନ୍ଧୁ ନିଜେ ମଧ୍ୟ ଖୋର୍ଦ୍ଧା ଅଞ୍ଚଳର ଅଧିବାସୀମାନଙ୍କ ଦୁଃଖଦୁର୍ଦ୍ଦଶା ସରକାରଙ୍କୁ ଜଣାଇଥିଲେ । ତାଙ୍କ ଆବେଦନପତ୍ରରୁ ଖୋର୍ଦ୍ଧା ଅଧିବାସୀଙ୍କର ଦୟନୀୟ ଅବସ୍ଥାର ଚିତ୍ର ମିଳେ –''ଦାରୁଠେଙ୍ଗଠାରୁ ଛତ୍ରଗଡ ପର୍ଯ୍ୟନ୍ତ ଅଞ୍ଚଳଗୁଡ଼ିକ ନିଲାମ ଦିଆଗଲା । କରଭାର ଅତ୍ୟଧିକ ହୋଇଗଲା । ଲୁଣର ମୂଲ୍ୟ ହୁ ହୁ ହୋଇ ବଢ଼ିଗଲା । ଲୋକମାନେ ଖାଦ୍ୟ

ବିନା ଘାସ ଓ ପାଣି ପିଇ ରହିବାକୁ ବାଧ ହେଲେ । ଏପରିକି ଶେଷରେ ପାଣି ମଧ ପିଇବାକୁ ପାଇଲେ ନାହିଁ । ସେମାନଙ୍କର ଏପରି ଶୋଚନୀୟ ଅବସ୍ଥା କାହାରି ଦୃଷ୍ଟିରେ ପଡ଼ିଲା ନାହିଁ ... ।''

ଏହି ପରିସ୍ଥିତିରେ ଖୋର୍ଦ୍ଧା ଅଧିବାସୀମାନେ ଯେକୌଣସି ପରିବର୍ତ୍ତନକୁ ସ୍ୱାଗତ କରିବା ଅତି ସ୍ୱାଭାବିକ ବୋଲି କଟକର କଲେକ୍ଟର ଟ୍ରାୱାର ତାଙ୍କ ରିପୋର୍ଟରେ ଜଣାଇଥିଲେ । କରଭାର, ଅଭାବ, ଅତ୍ୟାଚାର, ଶୋଷଣ ଯେତେବେଳେ ଶେଷ ସୀମାରେ ପହଞ୍ଚିଲା, ସେତେବେଳେ ସେମାନେ ବିଦ୍ରୋହ ଅଗ୍ନିରେ ଝାସ ଦେଲେ । ଏହି ବିଦ୍ରୋହର ନେତୃତ୍ୱ ନେଲେ ବକ୍ସି ଜଗବନ୍ଧୁ ।

## ବକ୍ସି ଜଗବନ୍ଧୁ

ବକ୍ସି ଜଗବନ୍ଧୁ ବ୍ରହ୍ମଗିରି ଅନ୍ତର୍ଗତ ରୋଡ଼ଙ୍ଗ ଗ୍ରାମର ଅଧିବାସୀ ଥିଲେ । ତାଙ୍କର ନାମ ଥିଲା ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ମହାପାତ୍ର । ମାତ୍ର ସେ ବକ୍ସି ଜଗବନ୍ଧୁ ନାମରେ ପରିଚିତ ଥିଲେ । ସେ ଖୋର୍ଦ୍ଧା ରାଜାଙ୍କ ବଂଶାନୁକ୍ରମିକ ସେନାପତି ଥିଲେ । ତାଙ୍କର 'ବିଦ୍ୟାଧର' ପଦବୀରୁ ସେ ଭୋଇ ରାଜବଂଶୀୟ ହୋଇଥିବାର ଜଣାଯାଏ । ତାଙ୍କର ମଧ ଘୁମୁସର ଓ ଶେରଗଡ଼ ରାଜାଙ୍କ ସହିତ ବୈବାହିକ ସମ୍ପର୍କ ଥିଲା । ବଡ଼ମ୍ବା ରାଜା ମଧ ତାଙ୍କର ସମ୍ପର୍କୀୟ ଥିଲେ ।

ଜଗବନ୍ଧୁ ଦେଖିବାକୁ ସ୍ୱାସ୍ଥ୍ୟବାନ୍ ଓ ସୁନ୍ଦର ଥିଲେ । ତାଙ୍କର ବିଶାଳ ବପୁ, ଦୀର୍ଘାକାର ଶରୀର ସମସ୍ତଙ୍କୁ ଆକର୍ଷିତ କରୁଥିଲା । କଥିତଅଛି ଯେ ସେ ଖୋର୍ଦ୍ଧାର କୌଣସି ମନ୍ଦିରରେ ପଡ଼ି ରହିଥିବା ଏକ ବିରାଟ ପଥରଖଣ୍ଡକୁ ଟେକି ଉଠାଇ ପାରୁଥିଲେ । ଆଉ ମଧ ଶୁଣାଯାଏ ଯେ ସେ ସ୍ନାନ କରିବା ପୂର୍ବରୁ ନେଡ଼ିଏ ସୋରିଷତେଲ ଦେହରେ ମାଲିସ କରୁଥିଲେ । ତାଙ୍କ ଦାଣ୍ଡଦୁଆରେ ଦୁଇ ମହଣିଆ ଦୁଇଟି ବର୍ତ୍ତୁଳାକାର ପଥର ପଡ଼ିରହିଥିଲା । ସେ ସେହି ପଥରକୁ ଗୋଡ଼ରେ ଗଡ଼େଇ ଗଡ଼େଇ ଗାଧୁଆ ତୁଠକୁ ନେଉଥିଲେ ଓ ସ୍ନାନ ପରେ ଗଡ଼େଇ ଗଡ଼େଇ ପୁଣି ଘରକୁ ଆଣୁଥିଲେ ।

ଜଗବନ୍ଧୁ ପୂର୍ବପୁରୁଷଙ୍କ ଭଳି ଖୋର୍ଦ୍ଧା ରାଜାଙ୍କ ବକ୍ସି ପଦରେ ନିଯୁକ୍ତ ହେଲେ । ସେ ଲିମ୍ବାଇ, ରାହାଙ୍ଗ, ସେରାଇ ଓ ଚବିଶକୁଦ ପ୍ରଗଣାଗୁଡ଼ିକ ନିଷ୍କର ଭୋଗଦଖଲ କରୁଥିଲେ ।

## ରୋଡ଼ଙ୍ଗ ଉପରେ ଲୋଲୁପ ଦୃଷ୍ଟି

୧୮୦୪-୦୫ ମସିହାରେ ଖୋର୍ଦ୍ଧାରେ ପ୍ରଥମ ବନ୍ଦୋବସ୍ତ ହେଲା । ଏହି ବନ୍ଦୋବସ୍ତରେ ଜଗବନ୍ଧୁ ଏହି ଚାରୋଟି ପ୍ରଗଣାକୁ ନିଜର ଜାଗିରି ଜମି ବୋଲି

ଦାବି କଲେ । ମାତ୍ର ମେଜର ଫ୍ଲେଚର ଏହି ଦାବିକୁ ଅଗ୍ରାହ୍ୟ କରିଦେଲେ । ସେ କିନ୍ତୁ ରୋଡ଼ଙ୍ଗର ଜମିଦାରଭାବେ ସ୍ୱୀକୃତ ହେଲେ । ୧୮୦୫-୦୮ ତିନିବର୍ଷିଆ ବନ୍ଦୋବସ୍ତରେ ସେ ରୋଡ଼ଙ୍ଗର ଜମିଦାର ଭାବେ ସ୍ୱୀକୃତି ପାଇଥିଲେ । ଏଥି ମଧ୍ୟରେ କିନ୍ତୁ ତାଙ୍କୁ ରୋଡ଼ଙ୍ଗରୁ ଉଚ୍ଛେଦ କରିବାପାଇଁ ଚକ୍ରାନ୍ତ ଆରମ୍ଭ ହୋଇଗଲା ।

୧୮୦୪ରେ ଚାର୍ଲ୍‌ସ ଗ୍ରୋମ୍ ପୁରୀର କଲେକ୍ଟର ଥିଲାବେଳେ ଜନୈକ ବଙ୍ଗ ଅଧିବାସୀ କୃଷ୍ଣଚନ୍ଦ୍ର ସିଂହ ତାଙ୍କର ଦେୱାନ ଥିଲେ । ୧୮୦୫ରେ ୱେବ୍ ପୁରୀର କଲେକ୍ଟର ହେଲେ । ସେତେବେଳେ କୃଷ୍ଣଚନ୍ଦ୍ର ଚାକିରିରୁ ଇସ୍ତଫା ଦେବାରୁ କୃଷ୍ଣଚନ୍ଦ୍ରଙ୍କର ଜଣେ ଆତ୍ମୀୟ ଚନ୍ଦ୍ରପ୍ରସାଦ ସିଂହ ସିରସ୍ତାଦାରଭାବେ ନିଯୁକ୍ତ ହେଲେ । ତାଙ୍କର ଭାଇ ଗୌରହରି ପୁରୀର ତହସିଲଦାର ୧୮୧୦ ମସିହା ପର୍ଯ୍ୟନ୍ତ ଥିଲେ । ସେ ୧୮୦୯/୧୦ ଆଡ଼କୁ ପରିଚ୍ଛା ଭାବେ ନିଯୁକ୍ତ ହେଲେ । ଫଳରେ ସେ ଖାସମାହାଲ ଅଞ୍ଚଳରୁ ରାଜସ୍ୱ ଆଦାୟ କରିବାର କ୍ଷମତା ପାଇଲେ । କୃଷ୍ଣଚନ୍ଦ୍ର ଇସ୍ତଫା ଦେବା ପରେ କଟକରେ ବସବାସ କରି ରହିଲେ । ସେ ୧୮୧୦ରେ ରାହାଙ୍ଗ ସମେତ କେତେକ ମୂଲ୍ୟବାନ୍ ଜମିଦାରୀ ନିଲାମରେ କିଣିଲେ । ଏହାପରେ କୃଷ୍ଣଚନ୍ଦ୍ରଙ୍କର ଲୋଲୁପ ଦୃଷ୍ଟି ଜଗବନ୍ଧୁ ଭୋଗ ଦଖଲ କରି ଆସୁଥିବା ରୋଡ଼ଙ୍ଗ ଜମିଦାରୀ ଉପରେ ପଡ଼ିଲା ।

କୃଷ୍ଣଚନ୍ଦ୍ର ରୋଡ଼ଙ୍ଗ ଜମିଦାରୀ ପ୍ରତି ଆକୃଷ୍ଟ ହେବାର ଦୁଇଟି କାରଣ ଥିଲା । ପ୍ରଥମତଃ, ରୋଡ଼ଙ୍ଗର ରାଜସ୍ୱ ଖୁବ୍ କମ୍ ଥିଲା । ଦ୍ୱିତୀୟରେ, ଏହା ରାହାଙ୍ଗ ପ୍ରଗଣାକୁ ଲାଗିକରି ଥିଲା । ରାହାଙ୍ଗ ଏବଂ ରୋଡ଼ଙ୍ଗ ପ୍ରଗଣାକୁ ମିଶାଇ ଏକ ବଡ଼ ଜମିଦାରୀରେ ପରିଣତ କରି ତାକୁ ଦଖଲ କରିବାପାଇଁ ସେ ଆଗ୍ରହୀ ହେଲେ । ଏଥିରେ ତାକୁ ସାହାଯ୍ୟ କଲେ ପୁରୀର ତହସିଲଦାର ଗୌରହରି ସିଂହ ଓ ସିରସ୍ତାଦାର ଚନ୍ଦ୍ରପ୍ରସାଦ । ଉଭୟେ କୃଷ୍ଣଚନ୍ଦ୍ରଙ୍କ ଆତ୍ମୀୟ ଥିଲେ ।

**ଷଡ଼଼୍‌ଯନ୍ତ୍ର ଓ ଉଚ୍ଛେଦ**

ଚାର୍ଲ୍‌ସ ୱେବ୍‌ଙ୍କ ବନ୍ଦୋବସ୍ତର ଦ୍ୱିତୀୟ ବର୍ଷରେ ଚନ୍ଦ୍ରପ୍ରସାଦ ସିଂହ ଜଗବନ୍ଧୁଙ୍କୁ ରୋଡ଼ଙ୍ଗ ଜମିଦାରୀ ଖଜଣା କଲେକ୍ଟରଙ୍କ ରାଜକୋଷରେ ଦାଖଲ ନ କରି ତହସିଲଦାରଙ୍କ ଅଫିସରେ ଦାଖଲ କରିବାକୁ ପରାମର୍ଶ ଦେଲେ । ଜଗବନ୍ଧୁ ଏହାର ତାତ୍ପର୍ଯ୍ୟ ବୁଝିପାରିଲେ ନାହିଁ । ସେ ତାଙ୍କ ପରାମର୍ଶ ଅନୁଯାୟୀ ପୁରୀ ତହସିଲଦାର ଅଫିସରେ ଖଜଣା ଦାଖଲ କଲେ । ଗୌରହରିଙ୍କୁ ଏହା ଫଳରେ ସୁବିଧା ମିଳିଲା । ସେ ରୋଡ଼ଙ୍ଗ ପ୍ରଗଣାର ଖଜଣା ନ ଦର୍ଶାଇ 'ରାହାଙ୍ଗ ଓଗେରା'ର ଖଜଣା ଭାବେ ଖାତାରେ ଦର୍ଶାଇଲେ । ତେଣୁ ରୋଡ଼ଙ୍ଗ ପ୍ରଗଣାର

ଖଜଣା ଅନାଦେୟ ହୋଇ ରହିଲା । ଜଗବନ୍ଧୁ ତା'ର ପର ଦୁଇ ବର୍ଷ ଖଜଣା ପୈଠ କରିଥିଲେ ମଧ ତାହା 'ରାହାଙ୍ଗ ପ୍ରଗଣା ଓଗେରା'ର ଖଜଣାଭାବେ ଖାତାରେ ଚଢ଼ିଲା । ଖଜଣା ଅନାଦେୟ ଫଳରେ ରୋଡ଼ଙ୍ଗ ଜମିଦାରୀ ନିଲାମ ହେଲା । ଯୋଜନା ଅନୁଯାୟୀ କୃଷ୍ଣଚନ୍ଦ୍ର ସିଂହ ଏହାକୁ କିଣିଲେ । କୃଷ୍ଣଚନ୍ଦ୍ରଙ୍କ ଗୁମାସ୍ତା ରୋଡ଼ଙ୍ଗ ଜମିଦାରୀକୁ ହାତକୁ ନେବାକୁ ବସିଲେ । ମାତ୍ର ଜଗବନ୍ଧୁ ଏହାର ବିରୋଧ କଲେ । ଜଗବନ୍ଧୁଙ୍କ ସମର୍ଥକ ଓ କୃଷ୍ଣଚନ୍ଦ୍ରଙ୍କ ସମର୍ଥକଙ୍କ ମଧରେ ମାଡ଼ଗୋଳ ହେଲା । ଉଭୟ ଦଳ ବନ୍ଦୋବସ୍ତ କମିସନର ସି.ବୁଲର୍ଙ୍କ ପାଖେ ଦରଖାସ୍ତ ଦେଲେ । ଏଥି ମଧରେ କୃଷ୍ଣଚନ୍ଦ୍ରଙ୍କ ପ୍ରରୋଚନାରେ ଜଗବନ୍ଧୁଙ୍କ ଦାଦାପୁଅ ଭାଇ ଗଦାଧର ରୋଡ଼ଙ୍ଗ ଜମିଦାରୀରେ ତାଙ୍କର ଅଂଶ ଅଛି ବୋଲି ଦାବିକରି ଦେବାନୀ ଅଦାଲତରେ ମୋକଦ୍ଦମା ଦାଏର କଲେ । ଦୁହିଁଙ୍କ ମଧରେ ଶେଷରେ ଗୋଟାଏ ରାଜିନାମା ହେଲା । ରୋଡ଼ଙ୍ଗ ଜମିଦାରୀର ଦଶ ଅଣା ଭାଗ ଜଗବନ୍ଧୁ ଓ ଗଦାଧର ଛଅ ଅଣା ଭାଗ ପାଇବାର ସ୍ଥିର ହେଲା ।

ଏହି ସମୟରେ କଟକର କଲେକ୍ଟର ସ୍କଟ ୱାରିଙ୍ଗ୍ ବୋର୍ଡ଼ ଅଫ ରେଭିନ୍ୟୁକୁ ଦେଇଥିବା ଏକ ପତ୍ରରେ ଜଗବନ୍ଧୁଙ୍କୁ ରୋଡ଼ଙ୍ଗର ଜମିଦାର ଭାବେ ସ୍ୱୀକାର କରିଥିଲେ ।

୧୮୧୩ ମସିହା ରେଗୁଲେସନ ଅନୁଯାୟୀ କୃଷ୍ଣଚନ୍ଦ୍ର 'ରାହାଙ୍ଗ ଓଗେରା' ଜମିଦାରୀ–ସ୍ୱତ୍ୱର ନବୀକରଣ କଲେ । ଏହା ପରେ ସେ ରୋଡ଼ଙ୍ଗ ଦଖଲ କରିବାପାଇଁ ବସିଲେ । ଜଗବନ୍ଧୁ ରିଚାର୍ଡ଼ସନ୍‌ଙ୍କ ପାଖେ ଆପତ୍ତି କଲେ । ଏହାର ବିହିତ ଅନୁସନ୍ଧାନ ମଧ ହେଲା । ଏଥିରୁ ରୋଡ଼ଙ୍ଗ ଜମିଦାରୀ ଅବୈଧ ଉପାୟରେ ହସ୍ତାନ୍ତର ହୋଇଥିବା ଜଣାପଡ଼ିଲା । କଟକର କଲେକ୍ଟର ଟ୍ରାୱାର ଜଗବନ୍ଧୁଙ୍କ ଦାବିକୁ ସମର୍ଥନ କଲେ । ରୋଡ଼ଙ୍ଗ ଏକ ପୃଥକ୍ ଜମିଦାରୀ ଓ ଏହା ରାହାଙ୍ଗ ଅନ୍ତର୍ଭୁକ୍ତ ହେବା ଅନ୍ୟାୟ ଓ ଅବୈଧ ବୋଲି ମତ ଦେଲେ । କେବଳ ସେତିକି ନୁହେଁ, ରୋଡ଼ଙ୍ଗ ଜମିଦାରୀକୁ ଜଗବନ୍ଧୁଙ୍କୁ ଫେରାଇଦେବାପାଇଁ ସେ ପ୍ରସ୍ତାବ ଦେଲେ । ତାହାହେଲେ ରାହାଙ୍ଗର ରାଜସ୍ୱ ହ୍ରାସ ହେବ ବୋଲି ସେ ମତ ଦେଲେ । କିନ୍ତୁ କୁଚକ୍ରୀ ବଙ୍ଗାଳୀ କର୍ମଚାରୀ ଗୋଷ୍ଠୀ ଏହାକୁ କାର୍ଯ୍ୟକାରୀ କରାଇଦେଲେ ନାହିଁ । ରୋଡ଼ଙ୍ଗ ଉପରେ ଜଗବନ୍ଧୁଙ୍କ ଦାବି ଯଥାର୍ଥ ନୁହେଁ ବୋଲି ଆପତ୍ତି କଲେ । ଫଳରେ ରେଭିନ୍ୟୁ ବୋର୍ଡ଼ କର୍ତ୍ତୃପକ୍ଷ ଜଗବନ୍ଧୁଙ୍କୁ ତାଙ୍କ ସ୍ୱତ୍ୱ ଅଦାଲତରେ ସାବ୍ୟସ୍ତ କରିବାପାଇଁ ନିର୍ଦ୍ଦେଶ ଦେଲେ ।

ଏହି ନିର୍ଦ୍ଦେଶ ପାଇବାପରେ ଜଗବନ୍ଧୁ ହତାଶାରେ ଭାଙ୍ଗିପଡ଼ିଲେ । କଚେରିରେ ମୋକଦ୍ଦମା କରିବାପାଇଁ ତାଙ୍କର ଆଗ୍ରହ ନ ଥିଲା । ପ୍ରଥମତଃ, ତାଙ୍କର ଆର୍ଥିକ

ଅବସ୍ଥା ସ୍ୱଚ୍ଛଳ ନ ଥିଲା । ଦ୍ୱିତୀୟରେ, ଏକ ବିତ୍ତଶାଳୀ ବଙ୍ଗାଳୀଙ୍କ ସଙ୍ଗେ ଲଢ଼ି ନ୍ୟାୟ ପାଇବା ଆଶା ତାଙ୍କର ନ ଥିଲା । ସେ ତାଙ୍କର ଦୁରବସ୍ଥାପାଇଁ ଇଂରେଜ କର୍ତ୍ତୃପକ୍ଷଙ୍କୁ ଦାୟୀ କଲେ । ତାଙ୍କ ବିରୋଧରେ ବିଷୋଦ୍‌ଗାର କରିବାକୁ ଲାଗିଲେ । ଇଂରେଜମାନଙ୍କୁ ଦେଶରୁ ବିତାଡ଼ିତ କରି ସୁଶାସନ ପ୍ରତିଷ୍ଠାପାଇଁ ସେ ସଙ୍କଳ୍ପବଦ୍ଧ ହେଲେ । ସେ ଖୋର୍ଦ୍ଧାବାସୀଙ୍କୁ ଏଥିପାଇଁ ସଙ୍ଗଠିତ କରିବାରେ ଲାଗିପଡ଼ିଲେ । ବିଶ୍ୱସ୍ତ ଅନୁଚରମାନଙ୍କ ଜରିଆରେ ଖୋର୍ଦ୍ଧା ଅଞ୍ଚଳର ଦଳାଇ, ଦଳବେହେରାମାନଙ୍କ ସହିତ ସେ ଯୋଗାଯୋଗ ସ୍ଥାପନ କଲେ । ୧୮୧୭ ଜାନୁଆରୀ ମାସ ଆଡ଼କୁ ଦକ୍ଷିଣରୁ ପିଣ୍ଡାରୀମାନଙ୍କ ଆକ୍ରମଣ ସମ୍ବାଦ ପହଞ୍ଚିଲା । ପିଣ୍ଡାରୀମାନେ ଗଞ୍ଜାମର ମାଳ ଅଞ୍ଚଳରେ ପ୍ରବେଶ କରି ଲୁଟତରାଜ ଆରମ୍ଭ କରିଦେଲେ । ସେମାନେ ଖୋର୍ଦ୍ଧା ଆଡ଼କୁ ଆସୁଥିବାର ଖବର ପ୍ରଚାରିତ ହେଲା । ଜଗବନ୍ଧୁ ମଧ୍ୟ ପିଣ୍ଡାରୀମାନଙ୍କ ସହିତ ସମ୍ପର୍କ ରଖିଥିବାର ଅନୁମାନ କରାଯାଏ । କୁଦିଆରିର ଜମିଦାର ଚରଣ ପଟ୍ଟନାୟକ ଜଗବନ୍ଧୁଙ୍କର ବିରୋଧୀ ଥିଲେ । ଜଗବନ୍ଧୁ ପିଣ୍ଡାରୀମାନଙ୍କ ସହିତ ଯୋଗାଯୋଗ ରଖିଥିବା ଖବର ସେ ପୋଲିସ ଦାରୋଗାଙ୍କୁ ଜଣାଇଲେ । ଜଗବନ୍ଧୁ ମଧ୍ୟ ଦଳାଇ, ଦଳବେହେରାମାନଙ୍କୁ ସଙ୍ଗଠିତ କରାଉଥିବା ଖବର ଦେଲେ । ଦାରୋଗା ସଙ୍ଗେ ସଙ୍ଗେ ଜଗବନ୍ଧୁଙ୍କୁ ଗିରଫ କରିବାକୁ ବସିଲେ । ଜଗବନ୍ଧୁ ଏହାର ସୁରାକ ପାଇ ଆଉ କାଳବିଳମ୍ବ ନ କରି ବିଦ୍ରୋହ ଆରମ୍ଭ କରିବାକୁ ସ୍ଥିର କଲେ । ଖୋର୍ଦ୍ଧାବାସୀଙ୍କର ଦୁର୍ଦ୍ଦଶା ଦୂର କରିବାପାଇଁ ସେ ନେତୃତ୍ୱ ନେଇଛନ୍ତି ବୋଲି ଏକ ପତ୍ରରେ ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଜଣାଇଦେଲେ ।

## ବିଦ୍ରୋହ ଆରମ୍ଭ

ଏହି ବିଦ୍ରୋହ ପ୍ରଥମେ ଘୁମୁସରର କନ୍ଧମାନଙ୍କଦ୍ୱାରା ଆରମ୍ଭ ହେଲା । ଜଗବନ୍ଧୁଙ୍କର ପ୍ରେରଣାରେ ଏହା ହୋଇଥିବା ସମ୍ଭବ । ଜଗବନ୍ଧୁଙ୍କର ଘୁମୁସର ରାଜାଙ୍କ ସହିତ ବୈବାହିକ ସମ୍ପର୍କ ଥିଲା । ଜଗବନ୍ଧୁ ମଧ୍ୟ ଏହା ପୂର୍ବରୁ ବହୁବାର ଘୁମୁସର ଅଞ୍ଚଳକୁ ଯାଉଥିଲେ । ତେଣୁ ସେ କନ୍ଧମାନଙ୍କୁ ସଙ୍ଗଠିତ କରି ବିଦ୍ରୋହ ଆରମ୍ଭ କରିଥିବା ଅନୁମାନ କରାଯାଏ ।

୧୮୧୭ ମାର୍ଚ୍ଚ ମାସ ଶେଷ ସପ୍ତାହଆଡ଼କୁ ପ୍ରାୟ ଚାରି ଶହ କନ୍ଧ ବାଣପୁର ଅଞ୍ଚଳକୁ ଆସି ଲୁଟତରାଜ ଆରମ୍ଭ କଲେ । ସେମାନେ ବିଶେଷତଃ ଇଂରେଜମାନଙ୍କ ସମ୍ପତ୍ତିକୁ ଲୁଟ କରିବାରେ ଲାଗିଗଲେ । ଖୋର୍ଦ୍ଧାର ସଙ୍ଗଠିତ ପାଇକମାନେ ଅବିଳମ୍ବେ ବାଣପୁର ଅଞ୍ଚଳକୁ ଯାତ୍ରା କଲେ ଓ କନ୍ଧମାନଙ୍କ ସହିତ ଯୋଗଦେଲେ ।

ନେତୃସ୍ଥାନୀୟ ଦଳାଇ, ଦଳବେହେରାମାନଙ୍କର ବାଣପୁରରେ ଏକ ବୈଠକ ବସିଲା । ସେଠାରେ ଇଂରେଜମାନଙ୍କ ଉପରେ ଆକ୍ରମଣ କରିବାକୁ ଏକ ଯୋଜନା ପ୍ରସ୍ତୁତ ହେଲା । ଚମ୍ପାଝରର ଦଳବେହେରା ପିଣ୍ଡିକ ସାନ୍ତରା କିନ୍ତୁ ସରକାରୀ ଅଫିସ ପୋଡ଼ିବା ପରିବର୍ତ୍ତେ କଟକ ଯାଇ ବ୍ରିଟିଶ କର୍ତ୍ତୃପକ୍ଷଙ୍କୁ ଦୁଃଖଦୁର୍ଦ୍ଦଶା ଜଣାଇବାକୁ ପ୍ରସ୍ତାବ ଦେଲେ । ମାତ୍ର ତାହା ଅଗ୍ରାହ୍ୟ ହେଲା । ଏହାପରେ ବିଦ୍ରୋହୀମାନେ ଦଳବଦ୍ଧ ହୋଇ ସରକାରୀ କଚେରି ଓ ଅନ୍ୟାନ୍ୟ କାର୍ଯ୍ୟାଳୟ ଉପରେ ଆକ୍ରମଣ କଲେ ଓ ଅବାଧ ଲୁଟତରାଜ ଚଳାଇଲେ । ପ୍ରାୟ ଶହେ ଜଣ ବାଣପୁରରେ ନିହତ ହେଲେ । ସରକାରୀ ତହବିଲର ୧୫,୦୦୦ ଟଙ୍କା ବିଦ୍ରୋହୀମାନଙ୍କ ହାତରେ ପଡ଼ିଲା । ଦକ୍ଷିଣାଞ୍ଚଳରେ ଲୁଣ ଏଜେଣ୍ଟ ସି. ବେଚରଙ୍କୁ ମଧ୍ୟ ବିଦ୍ରୋହୀମାନେ ଆକ୍ରମଣ କଲେ । ଚିଲିକା ଭିତରେ ଥିବା ତାଙ୍କ ଡଙ୍ଗା ଉପରେ ଆକ୍ରମଣ କଲେ । ବେଚର କିନ୍ତୁ ଅଳ୍ପକେ ରକ୍ଷା ପାଇଗଲେ ।

ଏହାପରେ ବିଦ୍ରୋହୀମାନେ ସଦଳବଳ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ବାଟରେ ପାଇକମାନେ ଶହ ଶହ ସଂଖ୍ୟାରେ ତାଙ୍କ ସହିତ ଯୋଗ ଦେଲେ । ବିଦ୍ରୋହୀମାନେ ଦ୍ୱିଗୁଣ ଉତ୍ସାହରେ ଖୋର୍ଦ୍ଧାରେ ଥିବା ସରକାରୀ ଅଫିସ ଉପରେ ଆକ୍ରମଣ କଲେ । ଇଂରେଜମାନେ ବିଦ୍ରୋହୀମାନଙ୍କ ଆସିବା ପୂର୍ବରୁ ଅଫିସ ପ୍ରଭୃତି ଛାଡ଼ି ପଳାଇଲେ । ବିଦ୍ରୋହୀମାନେ ଖଜଣାଖାନା ଲୁଟ କଲେ ଓ ସରକାରୀ ଅଫିସଗୁଡ଼ିକରେ ଅଗ୍ନିସଂଯୋଗ କରିଦେଲେ । ବିଶେଷତଃ, ଥାନା, କଚିରି ଓ ତହସିଲଦାରଙ୍କ ଅଫିସ ଉପରେ ପାଇକମାନେ ଚଢ଼ାଉ କରିଥିଲେ । କିନ୍ତୁ ସେମାନେ କୌଣସି ବ୍ୟକ୍ତିବିଶେଷଙ୍କ ଗୃହ ବା ବ୍ୟକ୍ତିବିଶେଷଙ୍କ ଉପରେ ଆକ୍ରମଣ ଚଳାଇ ନ ଥିଲେ । ଖୋର୍ଦ୍ଧାରେ ଜଣେ ବରକନ୍ଦାଜଙ୍କୁ ହତ୍ୟା କରାଗଲା ।

ଆଉ ଏକ ବିଦ୍ରୋହୀ ଦଳ ଲିମ୍ବାଇ ଅଭିମୁଖେ ଯାତ୍ରା କଲେ । ସେଠାର ସରବରାକାର ଥିଲେ ଚରଣ ପଟ୍ଟନାୟକ । ସେ ଜଗବନ୍ଧୁଙ୍କର ମୁଖ୍ୟ ଶତ୍ରୁ ଥିଲେ । ବିଦ୍ରୋହୀମାନେ ରଥିପୁର ଗ୍ରାମରେ ପହଞ୍ଚି ଚରଣ ପଟ୍ଟନାୟକଙ୍କୁ ହତ୍ୟା କଲେ ।

ବିଦ୍ରୋହ ମଧ୍ୟ ପଞ୍ଚଗଡ଼କୁ ବ୍ୟାପିଲା । ସେତେବେଳେ ସମ୍ବଲପୁରର ରାଣୀ ମୁକ୍ତା ଦେଈ ପଞ୍ଚଗଡ଼ରେ ରହୁଥିଲେ । ପ୍ରଜାମାନେ ସେଠାରେ ନିଷ୍ପେଷିତ ହେଉଥିଲେ । ତାଙ୍କର ଦେବାନଙ୍କର ଅତ୍ୟାଚାର ମଧ୍ୟ ଚରମ ସୀମାରେ ପହଞ୍ଚିଥିଲା । ଜଗବନ୍ଧୁ ବିଦ୍ରୋହୀମାନଙ୍କ ସହିତ ବୋଲଗଡ଼ରେ ପହଞ୍ଚିଲେ । ସେଠାରେ ଘୋର ଉତ୍ତେଜନା ସୃଷ୍ଟି ହେଲା । ସେଠାର ଦଳାଇ ଓ ଦଳବେହେରାମାନେ ସାଙ୍ଗେ ସାଙ୍ଗେ ବିଦ୍ରୋହୀମାନଙ୍କ ସହ ଯୋଗ ଦେଲେ । ବିଦ୍ରୋହୀମାନେ ରାଣୀ ମୁକ୍ତା ଦେଈ ଓ ଦେବାନଙ୍କ ଗୃହରେ ଅଗ୍ନିସଂଯୋଗ

କରିଦେଲେ । ଦେବାନଙ୍କୁ ମଧ୍ୟ ସେଠାରେ ହତ୍ୟା କରାଗଲା । ମାତ୍ର ରାଣୀ ନିରାପଦରେ ପଳାୟନ କଲେ ଓ କଟକରେ ପହଞ୍ଚିଲେ ।

## ସାମରିକ ପଦକ୍ଷେପ

କଟକରେ ଅବିଳମ୍ବେ ବିଦ୍ରୋହ ଖବର ପହଞ୍ଚିଲା । ବ୍ରିଟିଶ କର୍ତ୍ତୃପକ୍ଷ ଏହାକୁ ଦମନ କରିବାପାଇଁ ଆବଶ୍ୟକୀୟ ପଦକ୍ଷେପ ନେଲେ । ଲେଫଟନାଣ୍ଟ ପ୍ରାଇଡ୍‌ଙ୍କ ନେତୃତ୍ୱରେ ବହୁସଂଖ୍ୟକ ସାମରିକ ସୈନ୍ୟ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ସେହିପରି ଆଉ ଦଳେ ସୈନ୍ୟ ଲେଫ୍‌ଟନାଣ୍ଟ ଫେରିସ୍‌ଙ୍କ ନେତୃତ୍ୱରେ ପିପିଲି ଓ ଲିମ୍ବାଇ ଗଲେ । କଟକର ମାଜିଷ୍ଟ୍ରେଟ ଇମ୍ପେ ମଧ୍ୟ ଦଳେ ସୈନ୍ୟ ସହ ଖୋର୍ଦ୍ଧା ଆଡ଼କୁ ଅଗ୍ରସର ହେଲେ । ୧୮୧୭ ଅପ୍ରେଲ ମାସ ୨ ତାରିଖରେ ସେ ଗଙ୍ଗପଡ଼ାଠାରେ ପହଞ୍ଚିଲେ । ବିଦ୍ରୋହୀମାନେ ଏ ଖବର ଆଗରୁ ଜାଣିପାରି କାଠ, ପଥର ଓ ଢିମା ପକାଇ ରାସ୍ତା ବନ୍ଦ କରିରଖିଲେ । ଇମ୍ପେଙ୍କ ସୈନ୍ୟ ସେଠାରେ ପହଞ୍ଚିବାମାତ୍ରେ ବିଦ୍ରୋହୀମାନେ ଗୁଳି ଚଳାଇଲେ । ଇମ୍ପେ ରାତ୍ରିରେ ସେଠାରେ ରହିବାକୁ ବାଧ୍ୟ ହେଲେ । ସେ ସେଠାରୁ ଲେଫଟନାଣ୍ଟ ପ୍ରାଇଡ୍‌ଙ୍କ ସଙ୍ଗେ ଯୋଗାଯୋଗ କରିବାକୁ ଚେଷ୍ଟା କଲେ । ମାତ୍ର ପ୍ରାଂଇଡ଼ଙ୍କର କୌଣସି ପତ୍ତା ମିଳିଲା ନାହିଁ । ଇମ୍ପେଙ୍କର ଖାଦ୍ୟ ମଧ୍ୟ ଶେଷ ହୋଇ ଆସିଲା । ସେଠାରେ ବା ଖୋର୍ଦ୍ଧାରେ ମଧ୍ୟ ମିଳିବାର ସମ୍ଭାବନା ନ ଥିଲା । ସେ ତାଙ୍କର ସୈନ୍ୟମାନଙ୍କୁ କଟକ ଫେରିବାକୁ ଆଦେଶ ଦେଲେ । ସେତେବେଳକୁ ଗଙ୍ଗପଡ଼ାଠାରେ ତିନି ହଜାର ପାଇକ ଠୁଳ ହୋଇଥାଆନ୍ତି । ସେମାନେ ଫେରୁଥିବା ଇଂରେଜ ସୈନ୍ୟମାନଙ୍କ ଆଡ଼କୁ ଗୁଳି ଚଳାଇଲେ ମଧ୍ୟ ସେମାନଙ୍କର କିଛି କ୍ଷତି ହୋଇ ନ ଥିଲା । ସେମାନେ ବହୁ କଷ୍ଟରେ ବାଲକାଟି ବାଟେ କଟକରେ ଅପ୍ରେଲ ମାସ ୪ ତାରିଖରେ ପହଞ୍ଚିଲେ ।

ଏଥି ମଧ୍ୟରେ ଲେଫଟନାଣ୍ଟ ପ୍ରାଇଡ୍ ଖୋର୍ଦ୍ଧାରେ ପହଞ୍ଚି ସାରିଥିଲେ । ସେ ଲିମ୍ବାଇଠାରେ ଥିବା ଫେରିସ୍‌ଙ୍କ ସୈନ୍ୟଙ୍କୁ ଆସିବାକୁ ନିର୍ଦ୍ଦେଶ ଦେଲେ । ଫେରିସ୍ ମାତ୍ର ପଚାଶ ସୈନ୍ୟ ନେଇ ଖୋର୍ଦ୍ଧାକୁ ଆସୁଥିବାବେଳେ ବାଟରେ ଗଙ୍ଗପଡ଼ାଠାରେ ପାଇକମାନଙ୍କ ହାବୁଡ଼ରେ ପଡ଼ିଲେ । ପାଇକମାନଙ୍କ ଆକ୍ରମଣରେ ଲେଫ୍‌ଟନାଣ୍ଟ ଫେରିସ୍ ମୃତ୍ୟୁ ବରଣ କଲେ । ତାଙ୍କ ସଙ୍ଗେ ଥିବା ଜଣେ ଇଂରେଜ ଜମାଦାର ମଧ୍ୟ ନିହତ ହେଲେ । ଦୁଇ ଜଣ ସିପାହିଙ୍କର ନାକ କାଟି ଦିଆଗଲା ।

ପାଇକମାନେ ମଧ୍ୟ ଲେଫଟନାଣ୍ଟ ପ୍ରାଇଡ୍‌ଙ୍କୁ ଆକ୍ରମଣ କଲେ । ମାତ୍ର ସେ ଅଳ୍ପକେ ରକ୍ଷା ପାଇଗଲେ । ସେ କଟକ ପଳାଇଲେ, ମାତ୍ର ତାଙ୍କ ଜିନିଷପତ୍ର ବିଦ୍ରୋହୀଙ୍କ ହାତରେ ପଡ଼ିଲା ।

ଇମ୍ପେ କଟକରେ ପହଞ୍ଚିବାପରେ ବିଦ୍ରୋହ ଅବସ୍ଥା କର୍ତ୍ତୃପକ୍ଷଙ୍କୁ ଜଣାଇଲେ । ରାଜାଙ୍କ ପ୍ରତି ବିଦ୍ରୋହୀମାନଙ୍କର ଆନୁଗତ୍ୟ ଥିବା ଦର୍ଶାଇ ଖୋର୍ଦ୍ଧା ରାଜାଙ୍କୁ ଅବିଳମ୍ବେ ଗିରଫ କରିବାକୁ ପରାମର୍ଶ ଦେଲେ । ଖୋର୍ଦ୍ଧାରେ ମଧ୍ୟ ତୁରନ୍ତ ସାମରିକ ଆଇନ ଜାରି କରିବାକୁ ସୁପାରିସ କଲେ । ତାଙ୍କ ପରାମର୍ଶ ଅନୁଯାୟୀ ପାଇକ ଓ ସର୍ଦ୍ଦାରମାନଙ୍କୁ ଗିରଫ କରିବାପାଇଁ ୫୦୦୦ ଟଙ୍କା ଲେଖାଏଁ ପୁରସ୍କାର ଘୋଷଣା କରାଗଲା ।

## ପିପିଲିରେ ବିଦ୍ରୋହ

କ୍ରମେ ବିଦ୍ରୋହ ପିପିଲି ଅଞ୍ଚଳକୁ ବ୍ୟାପିଲା । ବିଦ୍ରୋହୀମାନେ ସେଠାରେ ଥାନା ପୋଡ଼ିଦେଲେ । ଖଜଣାଖାନା ଲୁଟ କଲେ । ସମସ୍ତ ପିପିଲି ଅଞ୍ଚଳ ବିଦ୍ରୋହୀମାନଙ୍କ ହାତରେ ପଡ଼ିଲା । ଅପ୍ରେଲମାସ ୭ ତାରିଖରେ ସେଠାର ତିନି ଶହ ପାଇକ ଗଡ଼ ପଦ୍ମପୁରର ଖଣ୍ଡାୟତ ରାଜବଲ୍ଲଭ ଛୋଟରାୟଙ୍କ ନେତୃତ୍ୱରେ ହରିହରପୁର ଗ୍ରାମ ଘେରାଉ କଲେ । କୋଟଦେଶର ତହସିଲଦାର ସେଠାକୁ ଖଜଣା ଆଦାୟ କରିବାକୁ ଯାଇଥିଲେ । ବିଦ୍ରୋହୀମାନେ ତହସିଲଦାରଙ୍କ କର୍ମଚାରୀମାନଙ୍କୁ ଆକ୍ରମଣ କଲେ । ସେମାନଙ୍କୁ ମାରଧର କରିବା ସଙ୍ଗେ ସଙ୍ଗେ ସେମାନଙ୍କର ଜିନିଷପତ୍ର ଲୁଟ୍ କରିନେଲେ । ସରକାରୀ ନଥିପତ୍ର ନଷ୍ଟ କରିଦେଲେ । ତହସିଲଦାର ମଧ୍ୟ ଏଥିରୁ ଛାଡ଼ ପାଇ ନ ଥିଲେ । ପାଇକମାନେ ବନ୍ଧ ଦାରୋଗାଙ୍କୁ ଆକ୍ରମଣ କଲେ ଓ ତାଙ୍କ ଜିନିଷପତ୍ର ଲୁଟ୍ କରିନେଲେ । ତାଙ୍କର ପିତୃବ୍ୟଙ୍କୁ ଧରିନେଲେ ।

ପିପିଲିରୁ ପାଇକମାନେ ପୁରୀ ଆଡ଼କୁ ଯାତ୍ରା କଲେ । ବଳରାମପୁର ଓ ଚୁଡ଼ାଖେରାର ନୂଆ ଜମିଦାରମାନଙ୍କୁ ଆକ୍ରମଣ କରି ସେଠାରୁ ଘଉଡ଼ାଇ ଦେଲେ ।

କ୍ୟାପ୍‌ଟେନ ୱାଲିଙ୍ଗଟନ୍ ୧୮୧୭ ଅପ୍ରେଲ ମାସ ୨ ତାରିଖରେ ବିଦ୍ରୋହ ଦମନପାଇଁ ପହଞ୍ଚିଲେ । ସେ ସେଠାରେ ଅବସ୍ଥା ଶାନ୍ତ ଥିବାର ଦେଖିଲେ । ସେ ତେଣୁ ବିଦ୍ରୋହର କେନ୍ଦ୍ର ଖୋର୍ଦ୍ଧାକୁ ସୈନ୍ୟ ପଠାଇବାକୁ ଖବର ଦେଲେ । ସେହି ଅନୁଯାୟୀ କ୍ୟାପ୍‌ଟେନ ଲି ଫାବ୍ରେ ପାଞ୍ଚ ଶହ ପଚାଶ ସୈନ୍ୟ ସହ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ବାଟରେ ପାଇକମାନେ ତାଙ୍କୁ ବାଧା ଦେଇ ନ ଥିଲେ । ଖୋର୍ଦ୍ଧାରେ ପହଞ୍ଚି ସେ ଅପ୍ରେଲ ମାସ ୧୨ ତାରିଖରେ ସାମରିକ ଆଇନ ଜାରି କଲେ ।

## ବିଦ୍ରୋହୀଙ୍କ ପୁରୀ ଆକ୍ରମଣ

ଏଥି ମଧ୍ୟରେ ଜଗବନ୍ଧୁ ଦଳେ ପାଇକ ନେଇ ପୁରୀ ଅଭିମୁଖେ ଯାତ୍ରା କଲେ । ପୁରୀରେ ରହୁଥିବା ଗଜପତି ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଖୋର୍ଦ୍ଧାକୁ ଆଣି ଖୋର୍ଦ୍ଧା ସିଂହାସନରେ ବସାଇବା ତାଙ୍କର ଲକ୍ଷ୍ୟ ଥିଲା । ପୁରୀ ନିକଟବର୍ତ୍ତୀ ସୁକଳଠାରେ ଅପ୍ରେଲ ମାସ ୧୨ ତାରିଖରେ ପ୍ରାୟ ଦୁଇ ଶହ ପାଇକ ଠୁଳ ହେଲେ । ସେହି ସନ୍ଧ୍ୟାରେ ପ୍ରାୟ ଦୁଇ ହଜାର ସୈନ୍ୟ ଲୋକନାଥ ଘାଟ ଦେଇ ପୁରୀରେ ପହଞ୍ଚିଲେ । ରାତ୍ରି ନଅଟା ସମୟରେ ପାଇକମାନେ କଚେରିରେ ନିଆଁ ଲଗାଇଦେଲେ । ପୋଲିସ ଦାରୋଗାଙ୍କ ସମେତ ବହୁ ସରକାରୀ ଦପ୍ତରରେ ନିଆଁ ଲଗାଗଲା । ଇଂରେଜ ସୈନ୍ୟମାନେ ଲୁଣ ଏଜେଣ୍ଟ ସି. ବେଚରଙ୍କ ବଙ୍ଗଳାରେ ଆଶ୍ରୟ ନେଲେ ।

ତା'ର ପରଦିନ (ଅପ୍ରେଲ ମାସ ୧୩ ତାରିଖ) ସକାଳେ ଶହେ ପଚାଶ ଜଣ ପାଇକ ନାନା ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ହୋଇ ଇଂରେଜ ଜଜ୍‌ଙ୍କ ବଙ୍ଗଳା ଆଡ଼କୁ ଅଗ୍ରସର ହେଲେ । ସେଠାରେ ଥିବା ଇଂରେଜ ସୈନ୍ୟମାନେ ପାଇକମାନଙ୍କ ଉପରେ ଗୁଳି ଚଳାଇଲେ । ପାଇକ ସୈନ୍ୟମାନେ ମଧ୍ୟ ପାଲଟା ଗୁଳି ଚଳାଇଲେ । ଏହିପରି ଦୁଇ ଘଣ୍ଟା କାଳ ଖଣ୍ଡଯୁଦ୍ଧ ଚାଲିଲା । ଶେଷରେ ପାଇକମାନେ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ ।

ପନ୍ଦର ଜଣ ପାଇକ ସୈନ୍ୟ ଏଥିରେ ନିହତ ହେଲେ । କିନ୍ତୁ ଇଂରେଜମାନଙ୍କର ବିଜୟ କ୍ଷଣସ୍ଥାୟୀ ଥିଲା ।

ଅପ୍ରେଲ ମାସ ୧୪ ତାରିଖ ସକାଳେ ଜଗବନ୍ଧୁ ପ୍ରାୟ ପାଞ୍ଚ ହଜାରରୁ ଦଶ ହଜାର ଯାଏଁ ପାଇକ ଧରି ପୁରୀରେ ପହଞ୍ଚିଲେ । ସେମାନଙ୍କ ମଧ୍ୟରେ ଘୁମୁସରର ବହୁ କନ୍ଧ ମଧ୍ୟ ଥିଲେ । ପୁରୀର ଅଧିବାସୀମାନେ ସାଙ୍ଗେ ସାଙ୍ଗେ ବିଦ୍ରୋହୀମାନଙ୍କ ସହିତ ଯୋଗ ଦେଲେ । ରାଜାଙ୍କ ପ୍ରାସାଦରେ ଥିବା ପାଇକମାନେ ମଧ୍ୟ ଜଗବନ୍ଧୁଙ୍କ ବିଦ୍ରୋହରେ ଯୋଗ ଦେଲେ । ଇଂରେଜମାନଙ୍କ ପତନ ଆସନ୍ନ ଓ ଦ୍ୱିତୀୟ ମୁକୁନ୍ଦଦେବ ପୁଣି ରାଜଗାଦିରେ ବସିବେ ବୋଲି ମନ୍ଦିରର ପଣ୍ଡାମାନେ ଘୋଷଣା କଲେ ।

ଜଗନ୍ନାଥ ମନ୍ଦିର ନିକଟରେ ପୁଣି ପାଇକ ଓ ଇଂରେଜ ସୈନ୍ୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଏଥିରେ ଜଣେ ବ୍ରିଟିଶ ସୈନ୍ୟ ଓ ଅନ୍ୟ କେତେକ ସିପାହି ନିହତ ହେଲେ । ଫଳରେ ୱାଲିଙ୍ଗଟନ୍ ପଛଘୁଞ୍ଚା ଦେବାକୁ ବାଧ୍ୟ ହେଲେ । ଏଥି ମଧ୍ୟରେ ତାଙ୍କର ଖାଦ୍ୟପଦାର୍ଥ ଶେଷ ହୋଇ ଆସିଥାଏ । ଆଉ କୌଣସିଠାରୁ ଖାଦ୍ୟ

ପାଇବାର ସମ୍ଭାବନା ନ ଥିବାରୁ ଇଂରେଜମାନେ କଟକ ପଳାଇଯିବାକୁ ସ୍ଥିର କଲେ । କ୍ୟାପ୍‌ଟେନ ୱାଲିଙ୍ଗଟନ୍, ଜେ. କିଙ୍ଗ, ସି. ବେଚର ଓ ଏସ୍ ରୁସବି ପ୍ରଭୃତି ଉଚ୍ଚ କର୍ମଚାରୀମାନେ ପୁରୀରୁ କଟକ ପଳାୟନ କଲେ । ପୁରୀ ପାଇକମାନଙ୍କଦ୍ୱାରା ଅଧିକୃତ ହେଲା । ଏହାପରେ ସେମାନେ ପଣ୍ଡାମାନଙ୍କ ସଙ୍ଗ ମିଶି ସରକାରୀ ଅଫିସ ପ୍ରଭୃତି ଲୁଟ୍ କଲେ । ଖଜଣାଖାନାରେ ଥିବା ୩୯୦୦ ଟଙ୍କା ବିଦ୍ରୋହୀମାନଙ୍କ ହାତରେ ପଡ଼ିଲା । ସୁରକ୍ଷା ନିମନ୍ତେ ପାଇକମାନେ ମଧ ରାସ୍ତାଘାଟରେ ପ୍ରତିବନ୍ଧକମାନ ନିର୍ମାଣ କଲେ ।

ଏହା ପରେ ଜଗବନ୍ଧୁ ପାଇକମାନଙ୍କ ସହ ଦ୍ୱିତୀୟ ମୁକୁନ୍ଦଦେବଙ୍କୁ ଭେଟିଲେ । ଖୋର୍ଦ୍ଧା ରାଜସିଂହାସନରେ ବସାଇବା ଓ ତାଙ୍କର ପରିବାରବର୍ଗଙ୍କୁ ଖୋର୍ଦ୍ଧାକୁ ନେବାକୁ ରାଜାଙ୍କୁ ପ୍ରସ୍ତାବ ଦେଲେ । ରାଜା କିନ୍ତୁ ଏଥିରେ ରାଜି ହୋଇ ନ ଥିଲେ । ଜଗବନ୍ଧୁଙ୍କ ବିଦ୍ରୋହ ପ୍ରତି ତାଙ୍କର ସମର୍ଥନ ଯେ ଥିଲା, ଏଥିରେ ସନ୍ଦେହ ନାହିଁ । ତାଙ୍କର ସମର୍ଥନ ବା ସମ୍ମତି ବିନା ଜଗବନ୍ଧୁ ଯେ ଏତେ ବଡ଼ ବିଦ୍ରୋହ ଆରମ୍ଭ କରି ନ ଥାନ୍ତେ, ଏହା ଅତି ସ୍ପଷ୍ଟ । ତେବେ ସେ ଇଂରେଜମାନଙ୍କ ସଙ୍ଗେ ଶତ୍ରୁତା ଆଚରଣ କରିବାକୁ ଚାହିଁ ନ ଥିଲେ । ପାଗଳଙ୍କ ଭଳି ନିଜ ଜୀବନକୁ ବିପନ୍ନ କରି ପୁଣି ବଣଜଙ୍ଗଲରେ ବୁଲିବାପାଇଁ ତାଙ୍କର ଆଉ ଇଚ୍ଛା ନାହିଁ ବୋଲି ସେ ରୋକଠୋକ ଶୁଣାଇଦେଲେ । ଏପରିକି ବିଦ୍ରୋହ ଦମନପାଇଁ ଆବଶ୍ୟକୀୟ ସୈନ୍ୟ ପଠାଇବାପାଇଁ ସେ ଇଂରେଜମାନଙ୍କ ପାଖକୁ ଗୁପ୍ତରେ ଖବର ଦେଲେ । ସମ୍ଭବତଃ, ବିଦ୍ରୋହ ସଫଳତା ବିଷୟରେ ସେ ନିଶ୍ଚିତ ନ ଥିଲେ । ତେଣୁ ସେ ଅଯଥାରେ ବିପଦର ସମ୍ମୁଖୀନ ହେବାକୁ ଇଚ୍ଛା କରି ନ ଥିଲେ ।

କ୍ୟାପ୍‌ଟେନ ଲିଫାବ୍ରେ ଅପ୍ରେଲ ୯ ତାରିଖରେ ଏକ ବିରାଟ ସେନାବାହିନୀ ସହ ଖୋର୍ଦ୍ଧା ଅଭିମୁଖେ ଯାତ୍ରା କଲେ । ବାଟରେ କେହି ତାଙ୍କୁ ବାଧା ଦେଇ ନ ଥିଲେ । ଖୋର୍ଦ୍ଧାରେ ସେ ଜଗବନ୍ଧୁଙ୍କର କୌଣସି ପତ୍ତା ପାଇଲେ ନାହିଁ । ସେ ସେଠାରୁ ବାଜପୁର ଗଲେ । ବାଜପୁର ଓ କଦଳୀବାରିରେ ଥିବା ପାଇକ ଗ୍ରାମମାନଙ୍କରେ ନିଆଁ ଲଗାଇଦେଲେ । ସେ ଅପ୍ରେଲ ମାସ ୧୬ ତାରିଖରେ ତାପଙ୍ଗରେ ପହଞ୍ଚିଲେ । ତା'ପରଦିନ କଣାସରେ ପହଞ୍ଚି ଲୁଣା ନଦୀ ପାରହୋଇ ନୂଆଗାଁରେ ଡେରା ପକାଇଲେ । ସେ ଏହା ପରେ ଦୋବନ୍ଧାରେ ପହଞ୍ଚିଲେ ।

ବିଦ୍ରୋହର ଆଉ ଜଣେ ଟାଣୁଆ ନେତା କୃଷ୍ଣଚନ୍ଦ୍ର ବିଦ୍ୟାଧର ଏକ ହଜାର ପାଇକ ଧରି ଦୋବନ୍ଧାରେ ଇଂରେଜ ସୈନ୍ୟଙ୍କର ସମ୍ମୁଖୀନ ହେଲେ । ଇଂରେଜ ସୈନ୍ୟ ପାଇକମାନଙ୍କ ଅପେକ୍ଷା ସଂଖ୍ୟା ଦୃଷ୍ଟିରୁ କମ୍ ଥିଲେ । କିନ୍ତୁ ଆଧୁନିକ

ଅସ୍ତ୍ର ଶସ୍ତ୍ରରେ ସେମାନେ ସଜ୍ଜିତ ଥିଲେ । ଫଳରେ ପାଇକମାନେ ଇଂରେଜ ସୈନ୍ୟଙ୍କ ମୁକାବିଲା କରି ନ ପାରି ଦୟାନଦୀର ଅପରପାର୍ଶ୍ୱକୁ ପଳାୟନ କଲେ । ଇଂରେଜମାନଙ୍କ ଗୁଳିଚାଳନା ଫଳରେ ପାଇକ ସେନା ଛିନ୍ନଛତ୍ର ହେଲେ ।

ପୁରୀରେ ଲିଫାବ୍ରେ ପହଞ୍ଚିଲାବେଳକୁ ଜଗବନ୍ଧୁ ଦଳବଳ ଧରି ବାଣପୁର ଆଡ଼କୁ ପଳାଇ ଯାଇଥିଲେ ।

ଲିଫାବ୍ରେ ପୁରୀରେ ପହଞ୍ଚି ଅବସ୍ଥା ଅଣାୟତ୍ତ ହୋଇ ପଡ଼ିଥିବାର ଦେଖିଥିଲେ । କ୍ୟାପ୍‌ଟେନ ୱାଲିଙ୍ଗଟନ୍ ଓ ଅନ୍ୟାନ୍ୟ କର୍ମଚାରୀ ସେତେବେଳକୁ ପୁରୀ ଛାଡ଼ି ସାରିଥାନ୍ତି । ରାଜା ଦ୍ୱିତୀୟ ମୁକୁନ୍ଦଦେବ ମଧ୍ୟ ବିଶ୍ୱସ୍ତ ଅନୁଚରମାନଙ୍କୁ ଧରି ପଳାଇବାକୁ ପ୍ରସ୍ତୁତ ହେଉଥିଲେ । ଲିଫାବ୍ରେ ସଙ୍ଗେ ସଙ୍ଗେ ରାଜାଙ୍କୁ ବନ୍ଦି କଲେ ।

ଅପ୍ରେଲ ମାସ ୨୦ ତାରିଖରେ ମେଜର ହ୍ୟାମିଲଟନ୍ ପୁରୀ ଅଭିମୁଖେ ଯାତ୍ରା କଲେ । ବାଟରେ ଶାରଙ୍ଗଗଡ଼ଠାରେ ଧରମୁ ହରିଚନ୍ଦନଙ୍କ ନେତୃତ୍ୱରେ ଦଳେ ପାଇକଙ୍କୁ ଭେଟିଲେ । ସେହି ସଂଘର୍ଷରେ ପାଇକମାନେ ଶୋଚନୀୟଭାବେ ପରାସ୍ତ ହେଲେ । ବହୁ ପାଇକ ଆହତ ହେଲେ ।

କ୍ୟାପ୍‌ଟେନ ଆର୍ମଷ୍ଟ୍ରଙ୍ଗ୍‌ଙ୍କ ନେତୃତ୍ୱରେ ଦଳେ ସୈନ୍ୟ ପିପିଲି ଗଲେ । ସେମାନେ ପିପିଲି ଓ ତା'ର ନିକଟବର୍ତ୍ତୀ ଅଞ୍ଚଳର ସୁରକ୍ଷା ଦାୟିତ୍ୱ ଗ୍ରହଣ କଲେ ।

## କ୍ୟାପ୍‌ଟେନ ଆର୍ମଷ୍ଟ୍ରଙ୍ଗ୍

ଏହାପରେ କ୍ୟାପ୍‌ଟେନ ଆର୍ମଷ୍ଟ୍ରଙ୍ଗ୍ ପୁରୀ ଗଲେ । ସେ ପହଞ୍ଚିବା ପରେ ଲିଫାବ୍ରେ ରାଜାଙ୍କୁ ଧରି କଟକ ଅଭିମୁଖେ ଯାତ୍ରା କଲେ । ବାଟରେ ହଜାର ହଜାର ପାଇକ ରାଜାଙ୍କୁ ଛଡ଼ାଇନେବାକୁ ଆପ୍ରାଣ ଉଦ୍ୟମ କଲେ । ମାତ୍ର କ୍ୟାପ୍‌ଟେନ ଆର୍ମଷ୍ଟ୍ରଙ୍ଗ୍ ସେମାନଙ୍କୁ ଘଉଡ଼ାଇ ଦେଲେ । ନଅ ଜଣ ପାଇକ ଏଥିରେ ନିହତ ହେଲେ । ଆହତଙ୍କ ସଂଖ୍ୟା ଅଶୀରୁ ଶହେରେ ପହଞ୍ଚିଲା । କ୍ୟାପଟେନ୍ ଲିଫାବ୍ରେ ମେ ମାସ ୧୧ ତାରିଖରେ କଟକରେ ନିରାପଦରେ ପହଞ୍ଚିଲେ । ରାଜା ଦ୍ୱିତୀୟ ମୁକୁନ୍ଦଦେବଙ୍କୁ କଡ଼ା ପହରାରେ ବାରବାଟୀ ଦୁର୍ଗରେ ରଖାଗଲା ।

## ଗୋପରେ ବିଦ୍ରୋହ

ବିଦ୍ରୋହ କ୍ରମେ ଅନ୍ୟ ଅଞ୍ଚଳକୁ ବ୍ୟାପିଲା । ଜଗବନ୍ଧୁଙ୍କ ଦୁଇ ଜଣ ବିଶ୍ୱସ୍ତ ଖଣ୍ଡାୟତଙ୍କ ନେତୃତ୍ୱରେ ପ୍ରାୟ ପାଞ୍ଚ ଶହ ପାଇକ ଖୋର୍ଦ୍ଧାରୁ ରୁପସା ଅଭିମୁଖେ

ଯାତ୍ରା କଲେ । ସେମାନେ ଗୋପ ଓ କୁଜଙ୍ଗରେ ଲୋକଙ୍କୁ ଇଂରେଜମାନଙ୍କ ବିରୋଧରେ ସଙ୍ଗଠିତ କଲେ । ମରିଚପୁର, ହରିଶପୁର ଓ ଗୋଲରାର ପୂର୍ବତନ ଜମିଦାରମାନେ ସେଠା ବିଦ୍ରୋହର ନେତୃତ୍ୱ ନେଲେ । ସେଠାର ଖଣ୍ଡାୟତମାନେ ମଧ୍ୟ ଏଥିରେ ଯୋଗ ଦେଲେ । ଅସୁରେଶ୍ୱର ଓ ପ୍ରହରାଜପୁର ଅଞ୍ଚଳରେ ପାଇକମାନେ ଲୁଟତରାଜ ଚଳାଇଲେ । ନୂଆ ଜମିଦାର ଓ ତାଙ୍କର କର୍ମଚାରୀମାନଙ୍କୁ ଆକ୍ରମଣ କରି ସେଠାରୁ ଘଉଡ଼ାଇ ଦେଲେ । ସେମାନଙ୍କର ଧନସମ୍ପତ୍ତି ଲୁଟ୍ କରିନେଲେ ।

ରେନା ଲୁଣ ଗୋଦାମରେ ପାଇକମାନେ ଲୁଟତରାଜ ଚଳାଇଲେ । ମଲାଙ୍ଗିମାନେ ମଧ୍ୟ ବିଦ୍ରୋହୀଙ୍କ ସହିତ ଯୋଗ ଦେଲେ । ଗୋଦାମ ଦାରୋଗା ଓ ଅନ୍ୟାନ୍ୟ କର୍ମଚାରୀମାନଙ୍କୁ ଧରିନେଲେ । ସେହିପରି ବାଲୁଦ ଓ ଅସ୍ତରଙ୍ଗ ଅଞ୍ଚଳର ଲୁଣ ଦାରୋଗା ପାଇକମାନଙ୍କ ହାତରେ ପଡ଼ିଲେ । ପାଇକମାନେ ପୁରୋ ଜମିଦାରଙ୍କ କଚେରି ଉପରେ ଆକ୍ରମଣ କଲେ । ତାଙ୍କର ଧନସମ୍ପତ୍ତି ଲୁଟ କରିନେଲେ ।

ଗୋପ ଓ ତିରଣ ଅଞ୍ଚଳରେ ବିଦ୍ରୋହ ଲାଗି ରହିଥିବା ବିଷୟ କଟକରେ ମାଜିଷ୍ଟ୍ରେଟ ଇମ୍ପେ ଅପ୍ରେଲ ମାସ ୨୯ ତାରିଖରେ ସରକାରଙ୍କୁ ଏକ ପତ୍ରରେ ଜଣାଇଲେ । ଏପରିକି ପାଇକମାନେ କଟକ ଆକ୍ରମଣ କରିବା ଗୁଜବ ପ୍ରଚାରିତ ହେଲା । ଫଳରେ କଟକର ଅବସ୍ଥାପିତ କର୍ଣ୍ଣେଲ ହାର୍କୋନ୍ କଲେକ୍ଟରଙ୍କ ଖଜଣାଖାନାକୁ ମହାନଦୀ କୂଳକୁ ଉଠାଇନେଲେ ।

ଖୋର୍ଦ୍ଧା ଅଞ୍ଚଳରେ ତଥାପି ଗଣ୍ଡଗୋଳ ଲାଗି ରହିଥିଲା । ମେ ମାସ ୧୫ ତାରିଖରେ ମେଜର ଜେନେରାଲ ମାର୍ଟିଣ୍ଡେଲ୍ ମୁଖ୍ୟ ବିଦ୍ରୋହ ଅଞ୍ଚଳ ଖୋର୍ଦ୍ଧାରେ ପହଞ୍ଚିଲେ । ସେଠାରେ ରହି ପାଇକମାନଙ୍କ ଉପରେ ଆକ୍ରମଣ ଚଳାଇଲେ । ସେମାନଙ୍କର ଅସ୍ତ୍ରଶସ୍ତ୍ର ସବୁ ନଷ୍ଟ କରିଦେଲେ । ଫଳରେ ଗଣ୍ଡଗୋଳ ବନ୍ଦ ହୋଇଗଲା । ଖୋର୍ଦ୍ଧା ଅଞ୍ଚଳରେ ଶାନ୍ତି ଓ ଶୃଙ୍ଖଳା ଫେରାଇଆଣିବାପାଇଁ ଦଳେ ସୈନ୍ୟ ସେଠାରେ ରହିଲେ ।

ଖୋର୍ଦ୍ଧାର ଅବସ୍ଥା ଶାନ୍ତ ପଡ଼ିଗଲେ ମଧ୍ୟ ପାଇକମାନେ ଗୋପ ପ୍ରଭୃତି ଅଞ୍ଚଳକୁ ଯାଇ ସେଠାରେ ଗଣ୍ଡଗୋଳ ଆରମ୍ଭ କରିଦେଲେ । କୁଜଙ୍ଗ, ଅସୁରେଶ୍ୱର ପ୍ରଭୃତି ସ୍ଥାନରେ ବିଦ୍ରୋହ ଲାଗି ରହିଥିଲା । ଇଂରେଜ କର୍ତ୍ତୃପକ୍ଷ ତେଣୁ ଗୋପ, ତିରଣ, ଗୋର୍ଲା, ହରିଶପୁର ଓ କୁଜଙ୍ଗ ପ୍ରଭୃତି ଅଞ୍ଚଳରେ ସାମରିକ ଆଇନ ଜାରି କଲେ । ହରିହରପୁରରେ ମଧ୍ୟ ଜୁନ ମାସ ୩ ତାରିଖରେ ଏହି ଆଇନ ଜାରି ହେଲା ।

## ପଙ୍ଗାମୁଣ୍ଡାଇ, କୁଜଙ୍ଗର ବିଦ୍ରୋହ

କୁଜଙ୍ଗରେ ବିଦ୍ରୋହୀମାନେ ସକ୍ରିୟ ହୋଇ ଉଠିଥିଲେ । ସେଠାରେ ସେମାନେ ରାମପ୍ରସାଦଙ୍କ ଲୁଣ ଗୋଦାମ ଲୁଟ କଲେ । କର୍ମଚାରୀମାନଙ୍କୁ ଧରିନେଲେ । ପୋଲିସ ବରକନ୍ଦାଜମାନଙ୍କ ଉପରେ ଆକ୍ରମଣ କଲେ । କୁଜଙ୍ଗ ବିଦ୍ରୋହର ନେତା ଥିଲେ ହରିଶପୁରର ଜମିଦାର ମଧୁସୂଦନ ମଙ୍ଗରାଜ । ପୋଲିସ ତାଙ୍କୁ ଧରିବାକୁ ବହୁ ଚେଷ୍ଟା କଲେ ମଧ ସଫଳ ହୋଇ ନ ଥିଲେ । କିନ୍ତୁ ମଧୁସୂଦନଙ୍କ ଜଣେ ବିଶ୍ୱସ୍ତ ସହକର୍ମୀ ବନମାଳୀ ନରେନ୍ଦ୍ର ଧରାପଡ଼ିଲେ ।

ପଙ୍ଗାମୁଣ୍ଡାଇରେ ବିଦ୍ରୋହୀମାନେ ଭଙ୍ଗାରୁଜା କାମ ଚଳାଇଲେ । ପ୍ରାୟ ଦୁଇ ଶହ ପାଇକ ପଙ୍ଗାମୁଣ୍ଡାଇ ଥାନା ଆକ୍ରମଣ କରି ଦୁଇ ଜଣ ବରକନ୍ଦାଜଙ୍କୁ ହତ୍ୟା କଲେ । ଫଳରେ ଇଂରେଜ କର୍ତ୍ତୃପକ୍ଷଙ୍କୁ ତିରଣ, ହରିହରପୁର ଓ ପଙ୍ଗାମୁଣ୍ଡାଇ ଅଞ୍ଚଳରେ ଅଧିକ ସୈନ୍ୟ ମୁତୟନ କରିବାକୁ ପଡ଼ିଲା ।

## ବାଲେଶ୍ୱର ପରିସ୍ଥିତି

ଜଗବନ୍ଧୁ ମଧ ସୁଦୂର ବାଲେଶ୍ୱରରେ ବିଦ୍ରୋହପାଇଁ ଉଦ୍ୟମ କରିଥିଲେ । ସେ ଧେନାର ଜମିଦାର ଜଗନ୍ନାଥ ପ୍ରହରାଜ, ମାର୍ଥା ପ୍ରଗଣାର ଜମିଦାର ମୁକୁନ୍ଦରାମ ଭୂୟାଁ ଓ ଜାମକୋଣ୍ଡାର ଜମିଦାର ଦର୍ପନାରାୟଣଙ୍କ ପାଖକୁ ଗୁପ୍ତରେ ଦୂତ ପଠାଇଥିଲେ । ସେ ଦୂତ କିନ୍ତୁ ଉତ୍ତର ଆଣି ଫେରିଲାବେଳକୁ ବାଟରେ ଇଂରେଜମାନଙ୍କ ହାତରେ ଧରା ପଡ଼ିଲେ । ସେ ମଧ ଜଗବନ୍ଧୁଙ୍କର ଓ ସେ ଅଞ୍ଚଳର ଜମିଦାରମାନଙ୍କ ମଧରେ ପତ୍ର ଆଦାନ ପ୍ରଦାନ ହେଉଥିବା କଥା ପ୍ରକାଶ କଲେ । ଆଉ ଅଧିକ ଅନୁସନ୍ଧାନପାଇଁ ତାଙ୍କୁ କଡ଼ା ପହରାରେ ରଖାଗଲା ।

ଜଗବନ୍ଧୁ ଗଡ଼ଜାତ ଅଞ୍ଚଳରେ ବିଦ୍ରୋହପାଇଁ ଲାଗିପଡ଼ିଥିଲେ । ମାତ୍ର ଇଂରେଜମାନଙ୍କ ଭୟ ଯୋଗୁଁ କୌଣସି ଗଡ଼ଜାତ ରାଜା ଜଗବନ୍ଧୁଙ୍କୁ ସାହାଯ୍ୟ ଦେବାକୁ ସାହସ କରି ନ ଥିଲେ । କେବଳ ରଣପୁର ରାଜା ଜଗବନ୍ଧୁଙ୍କ ପ୍ରତି ସହାନୁଭୂତିଶୀଳ ଥିଲେ । ସେ ମଧ ଜଗବନ୍ଧୁଙ୍କୁ ପ୍ରତ୍ୟକ୍ଷ ସାହାଯ୍ୟ ଦେବାର କୌଣସି ପ୍ରମାଣ ମିଳି ନ ଥିଲା ।

## ଶେଷ ପର୍ଯ୍ୟାୟ

କୁଜଙ୍ଗ ପ୍ରଭୃତି ଅଞ୍ଚଳରେ ଦୀର୍ଘକାଳବ୍ୟାପୀ ଅଶାନ୍ତ ପରିସ୍ଥିତି ଲାଗିରହିଲା । ସେଠାରେ ପାଇକମାନେ ବାମଦେବ ପଟ୍ଟଯୋଶୀ ଓ ନାରାୟଣ ପରମଗୁରୁଙ୍କ ନେତୃତ୍ୱରେ ବିଦ୍ରୋହ ଚଳାଇ ରଖିଥିଲେ । କଟକର ମାଜିଷ୍ଟ୍ରେଟ ଇମ୍ପେ କୁଜଙ୍ଗର ରାଜା ମଧୁସୂଦନ ଷେଣ୍ଡଙ୍କୁ କଟକ ଆସି ତାଙ୍କୁ ଭେଟିବାପାଇଁ ନିର୍ଦ୍ଦେଶ ଦେଲେ ।

ମାତ୍ର ରାଜା କଟକ ଯାଇ ନ ଥିଲେ । ତେଣୁ ସେପ୍ଟେମ୍ବର ମାସ ପ୍ରଥମ ସପ୍ତାହରେ କୁଜଙ୍ଗରେ ସାମରିକ ଆଇନ ଜାରି କରାଗଲା । ବିଦ୍ରୋହ ଦମନପାଇଁ କ୍ୟାପ୍‌ଟେନ କେନେଟ୍‌ଙ୍କୁ କୁଜଙ୍ଗ ପଠାଗଲା । ସେ ସୈନ୍ୟ ସହ ସେପ୍ଟେମ୍ବର ମାସ ୧୩ ତାରିଖରେ କୁଜଙ୍ଗ ଅଭିମୁଖେ ଯାତ୍ରା କଲେ । ସେଠାରେ ତାଙ୍କୁ ପ୍ରବଳ ବାଧାର ସମ୍ମୁଖୀନ ହେବାକୁ ପଡ଼ିଲା । ଲେଫଟନାଣ୍ଟ ଫରେଷ୍ଟରଙ୍କ ନେତୃତ୍ୱରେ ଆଉ ଦଳେ ସୈନ୍ୟ କୁଜଙ୍ଗ ଯାଇ ପନ୍ଦର ଜଣ ପାଇକଙ୍କୁ ହତ୍ୟା କଲେ । ସେଇ ମାସ ୧୪ ତାରିଖ ସକାଳେ କ୍ୟାପ୍‌ଟେନ କେନେଟ୍ ନୂଆଗଡ଼ ଗ୍ରାମକୁ ଘେରାଉ କଲେ । ସେଠାରେ ଗୋଟିଏ ହାତୀ ଓ ଆଠୋଟି ଘୋଡ଼ା ସହ ବହୁ ଅସ୍ତ୍ରଶସ୍ତ୍ର ଜବତ କଲେ । ଶେଷରେ କୁଜଙ୍ଗର ରାଜା ଆତ୍ମସମର୍ପଣ କଲେ । ନାରାୟଣ ପରମଗୁରୁ ଓ ବାମଦେବ ପଟ୍ଟଯୋଶୀ ମଧ୍ୟ ଧରା ପଡ଼ିଲେ । କିନ୍ତୁ ସେଠା ବିଦ୍ରୋହର ଅନ୍ୟତମ ନେତା ମଧୁସୂଦନ ମଙ୍ଗରାଜ ଖସି ପଳାଇଲେ । କୁଜଙ୍ଗ ରାଜା, ନାରାୟଣ ପରମଗୁରୁ, ବାମଦେବ ପଟ୍ଟଯୋଶୀ ପ୍ରଭୃତିଙ୍କୁ କଟକ ଅଣାଗଲା ଓ ବାରବାଟୀ ଦୁର୍ଗରେ ରଖାଗଲା । ଶାନ୍ତିଶୃଙ୍ଖଳା ଅଞ୍ଚଳରେ ଫେରିଆସିବାରୁ ସାମରିକ ଆଇନ ପ୍ରତ୍ୟାହାର କରିନିଆଗଲା ।

ଗୋପରେ କରୁଣାକରଙ୍କ ନେତୃତ୍ୱରେ ପାଇକମାନେ ମେଳି ଆରମ୍ଭ କରିଥିଲେ । ସେମାନେ ଥାନା ଆକ୍ରମଣ କରି ପୋଡ଼ିଦେଲେ ଓ ପୋଲିସ କର୍ମଚାରୀମାନଙ୍କୁ ଘଉଡ଼ାଇ ଦେଲେ । କ୍ୟାପ୍‌ଟେନ ଫେଥଫୁଲ୍ ବିଦ୍ରୋହ ଦମନପାଇଁ ଅଶୀ ଜଣ ସୈନ୍ୟ ସହ ଗୋପ ଗଲେ । ସେଠାରେ ସେ ବିଦ୍ରୋହୀମାନଙ୍କ ପତ୍ତା ପାଇ ନ ଥିଲେ । ସେଠାରେ କ୍ୟାପ୍‌ଟେନ୍ ବେନସଙ୍କୁ ମୁତୟନ କରି ସେ ଫେରିଆସିଲେ । କ୍ୟାପ୍‌ଟେନ ବେନସ୍ ଅକ୍ଟୋବର ମାସ ଯାଏଁ ସେଠାରେ ରହିଲେ । କ୍ରମେ ସାଧାରଣ ଅବସ୍ଥା ଫେରିଆସିଲା ଓ ଶାନ୍ତିଶୃଙ୍ଖଳା ପ୍ରତିଷ୍ଠିତ ହେଲା ।

## ବିଦ୍ରୋହୀମାନଙ୍କ ବିଚାର ଓ ଦଣ୍ଡ

ଗଜପତି ରାଜା ଦ୍ୱିତୀୟ ମୁକୁନ୍ଦଦେବ ଓ ତାଙ୍କ ପୁତ୍ର ବାରବାଟୀ ଦୁର୍ଗରେ ରହିଥିଲେ । ତାଙ୍କପାଇଁ ଦୈନିକ ୨୫ ଟଙ୍କା ଭତ୍ତା ଦିଆଯାଉଥିଲା । ପୁରୀରେ ତାଙ୍କର ପରିବାରବର୍ଗଙ୍କର ଭରଣ ପୋଷଣପାଇଁ ମାସିକ ୫୦୦ ଟଙ୍କାର ବ୍ୟବସ୍ଥା ହୋଇଥିଲା । ବନ୍ଦୀ ଅବସ୍ଥାରେ ରାଜା ସେଠାରେ ମୃତ୍ୟୁବରଣ କଲେ ।

କୁଜଙ୍ଗ ରାଜାଙ୍କୁ ମଧ୍ୟ ବାରବାଟୀ ଦୁର୍ଗରେ ରଖାଯାଇଥିଲା । ତାଙ୍କର ବିଚାର ହେବାପାଇଁ କମିସନର ସୁପାରିସ କରିଥିଲେ । ମାତ୍ର ସେ ସ୍ୱେଚ୍ଛାକ୍ରମେ

ଆତ୍ମସମର୍ପଣ କରିଥିବାରୁ ତାଙ୍କୁ ଖଲାସ କରିଦିଆଗଲା । ତାଙ୍କ ଜମିଦାରୀ ମଧ୍ୟ ତାଙ୍କୁ ଫେରାଇ ଦିଆଗଲା ।

ବହୁ ବିଦ୍ରୋହୀଙ୍କୁ ବନ୍ଦି କରି ରଖାଯାଇଥିଲା । ଦେଶଦ୍ରୋହ ଅଭିଯୋଗରେ ସେମାନଙ୍କର ବିଚାର ହେଲା । ସେମାନଙ୍କ ମଧ୍ୟରୁ ୧୧୨ ଜଣଙ୍କୁ ଦୋଷୀ ସାବ୍ୟସ୍ତ କରାଗଲା । ସେଥିମଧ୍ୟରୁ ନଅ ଜଣଙ୍କୁ ଚଉଦ ବର୍ଷ ସଶ୍ରମ କାରାଦଣ୍ଡ ଓ ଅବଶିଷ୍ଟ ୧୦୩ ଜଣଙ୍କୁ ନିର୍ବାସନ ଦଣ୍ଡ ଦିଆଗଲା । କୁଜଙ୍ଗ ବିଦ୍ରୋହର ମୁଖ୍ୟ ନେତା ବାମଦେବ ପଟ୍ଟଯୋଶୀ ଓ ନାରାୟଣ ପରମଗୁରୁଙ୍କୁ ଆଲିପୁର ଜେଲରେ ଯାବଜ୍ଜୀବନ କାରାଦଣ୍ଡ ଭୋଗ କରିବାକୁ ପଡ଼ିଲା ।

୧୮୧୮ ଅପ୍ରେଲ ମାସ ୧୮ ତାରିଖରେ ବିଦ୍ରୋହର ଅନ୍ୟତମ ମୁଖ୍ୟ ନେତା ପରଶୁରାମ ପାଇକରାୟ ଓ ସଚ୍ଚିଦାନନ୍ଦ ପଟ୍ଟନାୟକଙ୍କୁ ଫାଶୀଦଣ୍ଡ ଦିଆଗଲା । ସେପ୍ଟେମ୍ବର ମାସରେ ଗୋପାଳ ଛୋଟରାୟ, ବିଶନ ପାଇକରାୟ, ରାମସିଂହ, ନିଧି ପ୍ରଧାନ, ନରସିଂହ ପ୍ରଭୃତି ଜଗବନ୍ଧୁଙ୍କ ବିଶ୍ୱସ୍ତ ସହଯୋଗୀମାନଙ୍କୁ ଗୁରୁତର ଦେଶଦ୍ରୋହ ଅପରାଧରେ ଫାଶୀ ଦିଆଗଲା ।

## ପିଣ୍ଡିକି ବାହୁବଳେନ୍ଦ୍ର

ପାଇକ ବିଦ୍ରୋହର ସବୁଠାରୁ ସାହସୀ ଓ ଜଗବନ୍ଧୁଙ୍କର ପ୍ରଧାନ ସହଯୋଗୀ ଥିଲେ ପିଣ୍ଡିକି ବାହୁବଳେନ୍ଦ୍ର । ସେ ଦାରୁଠେଙ୍ଗର ଦଳାଇ ଥିଲେ । ସେ ନିଜର ଦଳବଳ ସହ ବିଦ୍ରୋହରେ ଯୋଗ ଦେଇଥିଲେ । ତାଙ୍କର ମୁଖ୍ୟ ସହଯୋଗୀ ଥିଲେ ସାଧୁଚରଣ ମଙ୍ଗରାଜ ଓ ବିଷ୍ଣୁ ପାଇକରାୟ ।

ପିଣ୍ଡିକି ପୂର୍ବରୁ ବହୁବାର ଖଜଣା ଲୁଟ କରି ଇଂରେଜ ସରକାରଙ୍କ ମୁଣ୍ଡବ୍ୟଥାର କାରଣ ହୋଇଥିଲେ । ଇଂରେଜମାନେ ତାଙ୍କୁ ଧରିବାପାଇଁ ପ୍ରବଳ ଚେଷ୍ଟା ଚଳାଇଲେ । ତାଙ୍କ ଘର ଉପରେ ବାରମ୍ବାର ଚଢ଼ାଉ କଲେ । ସହଯୋଗୀ ସାଧୁଚରଣ ମଙ୍ଗରାଜ, ବିଷ୍ଣୁ ପାଇକରାୟ ଓ ଧନୀ ଜେନା ପ୍ରଭୃତି ଧରାପଡ଼ିଲେ । କିନ୍ତୁ ବାହୁବଳେନ୍ଦ୍ର ଖସି ପଳାଇଲେ । ତାଙ୍କୁ ଜୀବିତ ବା ମୃତ ଅବସ୍ଥାରେ ଧରାଇଦେବାପାଇଁ ପୁରସ୍କାର ଘୋଷଣା କରାଗଲା ।

ପିଣ୍ଡିକି ବାହୁବଳେନ୍ଦ୍ରଙ୍କର ବାଲ୍ୟବନ୍ଧୁ ଥିଲେ ମଳିପଡ଼ାର ଜମିଦାର ଧ୍ରୁବଜୟ ହରିଚନ୍ଦନ । ସେ ବହୁ ସମୟରେ ପିଣ୍ଡିକିଙ୍କୁ ସାହାଯ୍ୟ ଦେଉଥିଲେ । ବ୍ରିଟିଶ ସରକାର ପିଣ୍ଡିକିଙ୍କୁ ଧରାଇଦେବାପାଇଁ ମଳିପଡ଼ାର ଜମିଦାର ଧ୍ରୁବଜୟଙ୍କ ଉପରେ ଚାପ ପକାଇଲେ । ସେ ପ୍ରଥମେ ସମ୍ମତ ହୋଇ ନ ଥିଲେ ମଧ୍ୟ ଶେଷରେ ରାଜି ହେଲେ ।

ପିଣ୍ଡିକି ବୀର ଓ ଅତୀବ ସାହସୀ ଥିଲେ । ତାଙ୍କୁ ଜାଗ୍ରତ ଅବସ୍ଥାରେ ଧରିବା ସମ୍ଭବ ନ ଥିଲା । ତେଣୁ ଧ୍ରୁବଜୟ ହରିଚନ୍ଦନ ଗୃହକୁ ବନ୍ଧୁଙ୍କୁ ନିମନ୍ତ୍ରଣ କଲେ । ଦୁଦୁରାମିଶ୍ରିତ ଭାଙ୍ଗ ଦିଆଯାଇ ତାଙ୍କୁ ଅଚେତ କରାଗଲା । ମେଜର ଥୋମାସ୍ ଆଗରୁ ଦଳବଳ ସହ ଗୁପ୍ତ ଭାବରେ ଉପସ୍ଥିତ ଥିଲେ । ଆଠ ଦଶ ଜଣ ବେଠିଆ ପିଣ୍ଡିକିଙ୍କ ଉପରେ ବାଉଁଶ ପକାଇ ମାଡ଼ିବସିଲେ । ପିଣ୍ଡିକି ବନ୍ଦି ହେଲେ ।

ବାହୁବଳେନ୍ଦ୍ରଙ୍କୁ କଟକ ନିଆଯାଇ ବାରବାଟୀ ଦୁର୍ଗରେ ରଖାଗଲା । ତାଙ୍କ ଗୋଡ଼ରେ ଲୁହା ଶିକୁଳି ଲାଗିଥିଲା । ମାତ୍ର ହାତ ଦୁଇଟି ଖୋଲା ଥିଲା । ତାଙ୍କୁ ଅସ୍ତ୍ରଶସ୍ତ୍ର ସଫା କରିବାକୁ ଦିଆଯାଉଥିଲା । ଦିନେ ସେ ତରବାରି ସାହାଯ୍ୟରେ ବେଡ଼ିରୁ ମୁକ୍ତ ହୋଇ ପଳାୟନ କଲେ । ରକ୍ଷୀମାନେ ତାଙ୍କର ପଶ୍ଚାତ୍‌ଧାବନ କରିବାରେ ଲାଗିଲେ । ପିଣ୍ଡିକି ମାଠିଆ ସାହାଯ୍ୟରେ କାଠଯୋଡ଼ି ନଦୀ ପାର ହୋଇ ବାରଙ୍ଗ ପର୍ଯ୍ୟନ୍ତ ପଳାଇଲେ । ମାତ୍ର ପଛରୁ ଘନ ଘନ ଗୁଳି ବର୍ଷଣ ହେଲା । ସେ ଚାରୋଟି ଗୋଳା ମଧ ହାତରେ ଧରି ପଳାଇଲେ । ଶେଷରେ ଗୁଳି ମାଡ଼ରେ ଟଳିପଡ଼ିଲେ । ପାଇକ ବିଦ୍ରୋହ କାହିଁକି, ଯେକୌଣସି ବିଦ୍ରୋହରେ ମଧ ଏପରି ଭାବରେ ପ୍ରାଣଦାନର ଦୃଷ୍ଟାନ୍ତ ଇତିହାସରେ ନାହିଁ ।

## ଅନ୍ୟାନ୍ୟ ବିଦ୍ରୋହୀ ନେତା

କୁଜଙ୍ଗର ନେତା କରୁଣାକର ପରମଗୁରୁଙ୍କୁ ବନ୍ଦି କରି ରଖାଯାଇଥିଲା । ପରେ ତାଙ୍କୁ ଖଲାସ କରିଦିଆଗଲା । ଧରମୁ ହରିଚନ୍ଦନ, ଲୋକନାଥ ବଳିଆରସିଂହ, ରାମଚନ୍ଦ୍ର ସାମନ୍ତସିଂହାର, ଆଦିକନ୍ଦ ବିଦ୍ୟାଧର, ଉପେନ୍ଦ୍ର ଜଗଦେବ, ବିଶ୍ୱନାଥ ହରିଚନ୍ଦନ, ଶ୍ରୀହରି ମାନସିଂହ, ପୁରୁଷୋତ୍ତମ ମାନସିଂହ ପ୍ରଭୃତି ଆତ୍ମସମର୍ପଣ କରିଥିଲେ । ସେମାନଙ୍କୁ ପରେ କ୍ଷମା ଦିଆଗଲା । ବୌଦର ଜଣେ ବିଦ୍ରୋହୀ ନେତା ମିର ହାଇଦର ଅଲ୍ଲୀଙ୍କର ମୃତ୍ୟୁ ହେଲା । ଭଗବାନ ସିଂହ ନାମକ ଆଉ ଜଣେ ବିଦ୍ରୋହୀ ନେତା ମଧ ମୃତ୍ୟୁମୁଖରେ ପଡ଼ିଲେ ।

## ଜଗବନ୍ଧୁଙ୍କ ଅନୁସନ୍ଧାନ

ବିଦ୍ରୋହର ନେତାମାନେ ଜଣକ ପରେ ଜଣେ ଧରାପଡ଼ି ନିର୍ବାସନ ବା ଫାଶୀଦଣ୍ଡ ପାଇଲେ । ବିଦ୍ରୋହ ଅବସାନ ହେଲା; ତଥାପି ଇଂରେଜମାନେ ଆଶ୍ୱସ୍ତ ହୋଇ ପାରିଲେ ନାହିଁ । ତା'ର କାରଣ ଜଗବନ୍ଧୁ ବା ତାଙ୍କର ପ୍ରଧାନ ସହକର୍ମୀ କୃଷ୍ଣଚନ୍ଦ୍ର ସେ ପର୍ଯ୍ୟନ୍ତ ଧରାପଡ଼ି ନ ଥାନ୍ତି । ଇଂରେଜମାନେ ଯେତେ ଚେଷ୍ଟା କଲେ ମଧ ତାଙ୍କୁ ଧରିବାକୁ ସମର୍ଥ ହୋଇ ନ ଥିଲେ ।

ସମ୍ୱଲପୁରରେ ଅବସ୍ଥାପିତ ମେଜର ରଫସେଇ୍ ୧୮୧୮ ଜୁଲାଇ ମାସରେ ଭୂପ ଭ୍ରମରବର ସିଂହ ନାମକ ଜଣେ ଦୂତଙ୍କୁ ଗିରଫ କଲେ । ନାଗପୁରର ଭୋନ୍‌ସଲା ରାଜାଙ୍କ ସାହାଯ୍ୟପାଇଁ ଜଗବନ୍ଧୁ ତାଙ୍କୁ ପଠାଇଥିଲେ । ବାଟରେ ସେ ଧରାପଡ଼ି ସମସ୍ତ କଥା ସ୍ୱୀକାର କଲେ । ରଫସେଇ୍ ମଧ୍ୟ ଜଗବନ୍ଧୁ ବୌଦ ଅଞ୍ଚଳରେ ରହୁଥିବାର ଖବର ପାଇଲେ । ସେ କାଳବିଳମ୍ୱ ନ କରି ଧରାଇଦେବାକୁ ବୌଦରାଜାଙ୍କୁ ନିର୍ଦ୍ଦେଶ ଦେଲେ । ବୌଦରାଜା ମଧ୍ୟ ଏଥିରେ ସମ୍ମତ ହେଲେ । ମାତ୍ର ଜଗବନ୍ଧୁ ଏହାର ସୁରାକ ପାଇ ସେଠାରୁ ଖସି ପଳାଇଲେ ।

ଜଗବନ୍ଧୁଙ୍କୁ ଖୋର୍ଦ୍ଧା ଅଧିବାସୀମାନେ ସାହାଯ୍ୟ କରୁଥିଲେ । ତାଙ୍କ ପ୍ରତି ସେମାନଙ୍କର ଅଗାଧ ଶ୍ରଦ୍ଧା ଓ ଭକ୍ତି ଥିଲା । ପ୍ରିୟ ନେତାଙ୍କପାଇଁ ଖାଦ୍ୟପେୟର ବ୍ୟବସ୍ଥା କରୁଥିଲେ । ସେ ଅଞ୍ଚଳରେ ସମସ୍ତ ଖବର ମଧ୍ୟ ଜଗବନ୍ଧୁଙ୍କୁ ଦେଉଥିଲେ । ଜଗବନ୍ଧୁ ତାଙ୍କର ବିଶ୍ୱସ୍ତ ସର୍ଦ୍ଦାରମାନଙ୍କ ସହିତ ଗୁପ୍ତ ସ୍ଥାନମାନଙ୍କରେ ମିଳିତ ହୋଇ ଭବିଷ୍ୟତ୍ କର୍ମପନ୍ଥା ସ୍ଥିର କରୁଥିଲେ । ଇଂରେଜମାନେ ଏହି ସମୟରେ ରୋଡ଼ଙ୍ଗର ଭୁଗୁନି ଦାସ ନାମକ ଜଣେ ବ୍ୟକ୍ତିଙ୍କୁ ବିଦ୍ରୋହୀମାନଙ୍କ ସହିତ ସମ୍ପର୍କ ରଖିବା ହେତୁ ସତର୍କ କରିଦେଇଥିଲେ । ଆଠମଲ୍ଲିକରେ ଧରମୁ ସର୍ଦ୍ଦାର ନାମକ ଜଣେ ବ୍ୟକ୍ତିଙ୍କୁ ମଧ୍ୟ ଗିରଫ କରାଯାଇଥିଲା । ତଥାପି ଜଗବନ୍ଧୁଙ୍କୁ ଧରିବା ଉଦ୍ୟମ ସଫଳ ହୋଇ ନ ଥିଲା ।

ଏହାପରେ ମେଜର ରଫସେଇ୍ ଘୁମୁସର ରାଜାଙ୍କ ଜରିଆରେ ଜଗବନ୍ଧୁଙ୍କୁ ଧରିବାକୁ ଉଦ୍ୟମ କଲେ । ଏଥିପାଇଁ ସାମ ବିଶୋଇ ଓ ଆଉ ଜଣେ କନ୍ଧ ଜମିଦାରଙ୍କୁ ନିଯୁକ୍ତ କଲେ । ରଫ୍‌ସେଇ୍ ଏଥିରେ ନିଶ୍ଚିତଭାବେ ସଫଳ ହେବେ ବୋଲି ଆଶା ରଖିଥିଲେ । ମାତ୍ର ତାହା ମଧ୍ୟ ବିଫଳ ହେଲା ।

୧୮୧୯ ମେ ମାସରେ ଶେଓ ନାୟକଙ୍କ ନେତୃତ୍ୱରେ ବାଣପୁର ଅଞ୍ଚଳର ପାଣ ଓ କନ୍ଧମାନେ ପୁଣି ଥରେ ମେଳି ଆରମ୍ଭ କଲେ । ସେତେବେଳେ ଜଗବନ୍ଧୁ ଘୁମୁସର ସୀମାନ୍ତରେ ଏକ କନ୍ଧଗ୍ରାମରେ ରହୁଥିଲେ । ସେ ଏ ମେଳି ପରିଚାଳନା କରିଥିବାର ଅନୁମାନ କରାଯାଏ । ସେ ଯାହାହେଉ, ବ୍ରିଗେଡ଼ିୟର ଥୋମାସ୍ ଜଗବନ୍ଧୁଙ୍କୁ ଅତର୍କିତଭାବେ ଆକ୍ରମଣ କଲେ । କିନ୍ତୁ ତା' ପୂର୍ବରୁ ଜଗବନ୍ଧୁ ସେଠାରୁ ଖସି ପଳାଇଥିଲେ । ଦୁଇଟି ସୁନା ଓ ମୁକ୍ତାର ହାର, ଗୋଟିଏ ମୁକ୍ତା ମୁଦି, ଦୁଇଟି ମୁକ୍ତାର କାନଫୁଲ, ଚୁଡ଼ି ଓ ଏକ ଶହ ଟଙ୍କା ଥିବା ଗୋଟିଏ ବାକ୍ସ ଓ ଅନ୍ୟ ବିଦ୍ରୋହୀ ନେତାଙ୍କ ଜିନିଷପତ୍ର ଥୋମାସ୍‌ଙ୍କ ହାତରେ ପଡ଼ିଲା । ଜଗବନ୍ଧୁ ନୟାଗଡ଼ ଦେଇ ବୌଦକୁ ପଳାଇଲେ ।

## ସର୍ତ୍ତମୂଳକ କ୍ଷମା ପ୍ରସ୍ତାବ

ଇଂରେଜ କର୍ତ୍ତୃପକ୍ଷ ଜଗବନ୍ଧୁ ଓ ତାଙ୍କର ମୁଖ୍ୟ ସହଯୋଗୀ କୃଷ୍ଣଚନ୍ଦ୍ରଙ୍କୁ ଧରିବାରେ ବିଫଳ ହୋଇ ବିଚଳିତ ହୋଇପଡ଼ିଲେ । ୧୮୧୮ ଅକ୍ଟୋବର ଆଡ଼କୁ ସେମାନେ ଜଗବନ୍ଧୁଙ୍କୁ ଧରିବା ସମ୍ଭବ ନୁହେଁ ବୋଲି ଉପଲବ୍‌ଧି କଲେ । ସୁତରାଂ ତାଙ୍କୁ ସର୍ତ୍ତମୂଳକ କ୍ଷମାଦେବାପାଇଁ ବିଚାର ହେଲା । ଏ ବିଷୟରେ ଭାରତର ବଡ଼ଲାଟଙ୍କର ମତ ନିଆଗଲା । ଜଗବନ୍ଧୁ ନିର୍ଦ୍ଦିଷ୍ଟ ସମୟ ମଧ୍ୟରେ ଆତ୍ମସମର୍ପଣ କଲେ କ୍ଷମା ପାଇବା ଉଚିତ ବୋଲି ସେ ମତ ଦେଲେ । ଭରଣପୋଷଣପାଇଁ ମାସିକ ବୃତ୍ତି ଦେଇ କଲିକତା ନିକଟବର୍ତ୍ତୀ କୌଣସି ସ୍ଥାନରେ ଜଗବନ୍ଧୁଙ୍କୁ ରଖାଯିବାକୁ ସେ ପରାମର୍ଶ ଦେଲେ । ମାତ୍ର ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ ଜଗବନ୍ଧୁଙ୍କୁ ବାଲେଶ୍ୱର କିମ୍ବା ମେଦିନୀପୁରରେ ରଖିବାର ବ୍ୟବସ୍ଥା କରିବାକୁ ସୁପାରିସ କଲେ । ୩୦୦ ଟଙ୍କା ମାସିକ ବୃତ୍ତି ଦେବାପାଇଁ ସେ ମଧ୍ୟ ସୁପାରିସ କରିଥିଲେ । କମିସନର ରବର୍ଟ କର୍ ମାସିକ ୩୦୦ ଟଙ୍କା ବୃତ୍ତି ସପକ୍ଷରେ ନ ଥିଲେ । ଏହା ଅଧିକ ହୋଇଯାଉଛି ଦର୍ଶାଇ ତାହାକୁ ୨୦୦ ଟଙ୍କାରେ ସୀମିତ ରଖିବାପାଇଁ ସେ ପ୍ରସ୍ତାବ ଦେଲେ ।

କିନ୍ତୁ ଜଗବନ୍ଧୁଙ୍କଠାରୁ ଏ ବିଷୟରେ କୌଣସି ଉତ୍ତର ମିଳି ନ ଥିଲା । ୧୯୧୯ ଅପ୍ରେଲ ମାସରେ କମିସନର ରବର୍ଟ କର୍ ଜଗବନ୍ଧୁଙ୍କର କୌଣସି ପ୍ରତିନିଧିଙ୍କ ସହିତ ଆଲୋଚନା କରିବାପାଇଁ ଇଚ୍ଛାପ୍ରକାଶ କଲେ । ସେହି ସମୟରେ ଜଗବନ୍ଧୁଙ୍କର ପାଳିତ ପୁତ୍ର ପୁରୀର ଜଏଣ୍ଟ ମାଜିଷ୍ଟ୍ରେଟ୍ ଜେ. ମେଲଭାଇଲ୍‌ଙ୍କୁ ସାକ୍ଷାତ୍ କରି ଏକ ଚିଟାଉ ଦେଲେ । ସେହି ଚିଟାଉରେ ଜଗବନ୍ଧୁ ଖୋର୍ଦ୍ଧା ରାଜାଙ୍କୁ ରାଜଗାଦି ଓ ଜମିଦାରମାନଙ୍କୁ ଜମିଦାରୀ ଫେରାଇ ଦେବାପାଇଁ ଦାବି କରିଥିଲେ । ଇଂରେଜମାନେ ଏହି ଦାବିକୁ ଗ୍ରହଣ ନ କରିବା ସ୍ୱାଭାବିକ ।

ଜଗବନ୍ଧୁଙ୍କୁ ଧରିବାର ସମସ୍ତ ଉଦ୍ୟମ ବିଫଳ ହେଲା । ଇଂରେଜ କର୍ତ୍ତୃପକ୍ଷ ହତାଶ ହୋଇ ଶେଷରେ ତାଙ୍କୁ ଧରିବାକୁ ଆଉ ଏକ ପନ୍ଥା ଗ୍ରହଣ କଲେ । ୧୮୧୮-୧୯ ଆଡ଼କୁ ଜଗବନ୍ଧୁଙ୍କ ଦୁଇ ପତ୍ନୀ, ପାଳିତ ପୁତ୍ର, ଜନ୍ମିତ ପୁତ୍ର, ଗୁମାସ୍ତା, ଚାକର ପ୍ରଭୃତିଙ୍କୁ ଗିରଫ କରି ଖୋର୍ଦ୍ଧାକୁ ଅଣାଗଲା ଓ ସେମାନଙ୍କ ମଧ୍ୟରୁ ସାତ ଜଣଙ୍କୁ ବାରବାଟୀ ଦୁର୍ଗରେ ରଖାଗଲା । ଏହାଫଳରେ ଜଗବନ୍ଧୁ ଆତ୍ମସମର୍ପଣ କରିବାକୁ ବାଧ ହେବେ ବୋଲି ଇଂରେଜ କର୍ତ୍ତୃପକ୍ଷ ଭାବିଥିଲେ । ମାତ୍ର ଏହା ମଧ୍ୟ ବିଫଳ ହେଲା । ଜଗବନ୍ଧୁ ପୂର୍ବଭଳି ଆତ୍ମଗୋପନ କରି ରହିଲେ । ଇଂରେଜ କର୍ତ୍ତୃପକ୍ଷ ୧୮୨୦ ନଭେମ୍ବର ମାସ ଆଡ଼କୁ ଜଗବନ୍ଧୁଙ୍କ ପରିବାରକୁ ଖଲାସ କରିବାକୁ ବାଧ ହେଲେ ।

ଜଗବନ୍ଧୁଙ୍କୁ ପୁଣି ସର୍ତ୍ତମୂଳକ କ୍ଷମା ଦେବାକୁ କମିସନର ରବର୍ଟ କର୍ ଆଉ ଏକ ପ୍ରସ୍ତାବ ଦେଲେ । ଏଥିରେ ଜଗବନ୍ଧୁଙ୍କୁ କଟକରେ ମାସିକ ୨୦୦ ଟଙ୍କା ବୃତ୍ତି ପାଇ ରଖାଯିବାର ବ୍ୟବସ୍ଥା ଥିଲା । ଦେଓ୍ୱାନ କୃଷ୍ଣଚନ୍ଦ୍ର ମଧ୍ୟ ମାସିକ ୧୦୦ ଟଙ୍କା ବୃତ୍ତି ପାଇବାର ବ୍ୟବସ୍ଥା ହୋଇଥିଲା । ମାତ୍ର ଭାରତର ବଡ଼ଲାଟ ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ରଙ୍କ ମାସିକ ବୃତ୍ତି ଯଥାକ୍ରମେ ୧୦୦ ଟଙ୍କା ଓ ୫୦ ଟଙ୍କାକୁ କମାଇଦେବାକୁ ପରାମର୍ଶ ଦେଲେ । ୧୮୨୩ରେ ଜଗବନ୍ଧୁ ଓ କୃଷ୍ଣଚନ୍ଦ୍ରଙ୍କ ସମ୍ପତ୍ତି ବାଜ୍ୟାପ୍ତ କରାଗଲା । ତଥାପି ସେ ଦୁହେଁ ଆତ୍ମସମର୍ପଣ କଲେ ନାହିଁ ।

୧୮୨୩ ଜାନୁଆରୀ ମାସ ଆଡ଼କୁ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ ଉଇଲକିନ୍‌ସନ୍ ଜଗବନ୍ଧୁଙ୍କ ପାଳିତପୁତ୍ରଙ୍କ ସଙ୍ଗେ ଏ ବିଷୟରେ ପୁଣି ଆଲୋଚନା କଲେ । ମାତ୍ର ଖୋର୍ଦ୍ଧା ରାଜାଙ୍କୁ ରାଜଗାଦି ଫେରାଇଦେବା ଦାବିରେ ଜଗବନ୍ଧୁ ଅଟଳ ରହିବାରୁ ଏହି ଆଲୋଚନା ବିଫଳ ହେଲା ।

ଇଂରେଜ କର୍ତ୍ତୃପକ୍ଷଙ୍କ ଆଖିରେ ଧୂଳି ଦେଇ ଜଗବନ୍ଧୁ ଏତେକାଳ ଯେ ଆତ୍ମଗୋପନ କରି ରହିଥିଲେ, ତାହ ତାଙ୍କର ଅଭୂତପୂର୍ବ ଲୋକପ୍ରିୟତାର ପ୍ରମାଣ ଦିଏ । ଇଂରେଜ କର୍ତ୍ତୃପକ୍ଷ ଯେତେ ଚେଷ୍ଟା କଲେ ମଧ୍ୟ ତାଙ୍କର ଠିକ୍ ଖବର ପାଇ ପାରୁ ନ ଥିଲେ । ଖୋର୍ଦ୍ଧା ଓ ତାହାର ଆଖପାଖ ଅଞ୍ଚଳରେ ତାଙ୍କ ପ୍ରତି ଦୃଢ଼ ଜନ ସମର୍ଥନ ଥିଲା ।

୧୮୨୪ ଶେଷ ଭାଗରେ ଖୋର୍ଦ୍ଧାର ଜଏଣ୍ଟ ମାଜିଷ୍ଟ୍ରେଟ ଥିଲେ ଉଇଲକିନସନ୍ । ଜଗବନ୍ଧୁ ନୟାଗଡ଼ ଅଞ୍ଚଳରେ ରହୁଥିବା ଓ ନୟାଗଡ଼ ରାଜାଙ୍କ ଜ୍ଞାତସାରରେ ସେଠା ଲୋକେ ତାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ଦେଉଥିବାର ଖବର ସେ ପାଇଲେ । ସେ କାଳ ବିଳମ୍ୱ ନ କରି ନୟାଗଡ଼ ରାଜାଙ୍କୁ ଗିରଫ କରିବାପାଇଁ ମୁଖ୍ୟ ଶାସନ ସଚିବଙ୍କ ଅନୁମତି ଲୋଡ଼ିଲେ । ସେହି ବର୍ଷ ନଭେମ୍ୱର ମାସରେ କମିସନର ପାକେନହାମ୍ ମଧ୍ୟ ନୟାଗଡ଼ ରାଜାଙ୍କୁ ଗିରଫ କରିବାପାଇଁ ମୁଖ୍ୟ ସଚିବଙ୍କ ପାଖକୁ ପତ୍ର ଦେଲେ । ମାତ୍ର ଭାରତର ବଡ଼ଲାଟ ଏ ପ୍ରସ୍ତାବକୁ ଗ୍ରହଣ କରି ନ ଥିଲେ । ଏହାପରେ ଜଗବନ୍ଧୁଙ୍କୁ ଧରାଇଦେବାପାଇଁ ନୟାଗଡ଼ ରାଜାଙ୍କ ଉପରେ ଭୀଷଣ ଚାପ ପଡ଼ିଲା । ସେ ବା ତାଙ୍କର କୌଣସି କର୍ମଚାରୀ ଜଗବନ୍ଧୁଙ୍କୁ ସାହାଯ୍ୟ କଲେ ତା'ର ଫଳ ଭୋଗିବେ ବୋଲି ଜଣାଇଦିଆଗଲା । ତାଙ୍କ ବେବର୍ତ୍ତାଙ୍କୁ କଟକ ପଠାଇବାକୁ ମଧ୍ୟ ଆଦେଶ ଦିଆଗଲା ।

ବେବର୍ତ୍ତା ବରକୁ ପାଇକରାୟ ସଙ୍ଗେ ସଙ୍ଗେ କଟକରେ କମିସନରଙ୍କୁ ସାକ୍ଷାତ୍ କଲେ । ଜଗବନ୍ଧୁଙ୍କୁ ପ୍ରବର୍ତ୍ତାଇବାପାଇଁ ତାଙ୍କୁ କୁହାଗଲା । ଜଏଣ୍ଟ

ମାଜିଷ୍ଟ୍ରେଟ ଉଇଲକିନସନ୍ ନିଜେ ମଧ୍ୟ ନୟାଗଡ଼ ଯାଇ ନୟାଗଡ଼ ରାଜାଙ୍କୁ ଭେଟିଲେ । ଜଗବନ୍ଧୁ ଆତ୍ମସମର୍ପଣ ନ କଲେ ରାଜାଙ୍କ ବିରୋଧରେ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ବୋଲି ଜଣାଇଲେ । ନୟାଗଡ଼ ରାଜା ମଧ୍ୟ ସମର୍ଥନ ପ୍ରତ୍ୟାହାର କରିନେଲେ ଓ ଇଂରେଜମାନଙ୍କ ସର୍ତ୍ତରେ ରାଜି ହେବାକୁ ଜଗବନ୍ଧୁଙ୍କୁ ପରାମର୍ଶ ଦେଲେ । ନିଜ ହିତାକାଂକ୍ଷୀ ରାଜାଙ୍କର କୌଣସି କ୍ଷତି ନ ଘଟାଇବାପାଇଁ ଜଗବନ୍ଧୁ ଶେଷରେ ଆତ୍ମସମର୍ପଣ କରିବାକୁ ରାଜି ହେଲେ ।

## ଆତ୍ମସମର୍ପଣ ଓ ମୃତ୍ୟୁ

ଇଂରେଜ କର୍ତ୍ତୃପକ୍ଷ ଜଗବନ୍ଧୁଙ୍କୁ ନୟାଗଡ଼ରୁ ଆଣିବାପାଇଁ ସମସ୍ତ ବ୍ୟବସ୍ଥା କଲେ । ଗଡ଼ଜାତ ମାହାଲର ସୁପରିଣ୍ଟେଣ୍ଡେଣ୍ଟ ଅଫିସର ସିରସ୍ତାଦାର ୱାଜ ମହମ୍ମଦ ନୟାଗଡ଼ ଗଲେ । ଜଗବନ୍ଧୁଙ୍କୁ ସସମ୍ମାନେ ହସ୍ତୀ ପୃଷ୍ଠରେ ବସାଇ କଟକ ଆଣିଲେ ଓ କମିସନରଙ୍କ ସଙ୍ଗେ ସାକ୍ଷାତ୍ କରାଇଲେ । ତାଙ୍କୁ ମହାନଦୀ କୂଳସ୍ଥ ଏକ ଭଡ଼ା ଘରେ ନଜରବନ୍ଦୀରେ ରଖାଗଲା । ବିନା ଅନୁମତିରେ କଟକ ବାହାରକୁ ଯାଇପାରିବେ ନାହିଁ ବୋଲି ସେ ଚୁକ୍ତିପତ୍ରରେ ସ୍ୱାକ୍ଷର କଲେ । ତାଙ୍କୁ ପ୍ରଥମେ ଏକ ଶହ ଟଙ୍କା ଭତ୍ତା ଦେବାର ବ୍ୟବସ୍ଥା ହେଲା । ପରେ ତାହା ଏକ ଶହ ପଚାଶ ଟଙ୍କାକୁ ବୃଦ୍ଧି କରାଯାଇଥିଲା ।

ଜଗବନ୍ଧୁଙ୍କୁ ଧରାଇଦେଇଥିବାରୁ ନୟାଗଡ଼ର ରାଜା, ବେବର୍ତ୍ତା ବରଜୁ ପାଇକରାୟ ଓ ସିରସ୍ତାଦାର ୱାଜ ମହମ୍ମଦଙ୍କୁ ଯଥୋଚିତ ପୁରସ୍କାର ଦିଆଗଲା । ନୟାଗଡ଼ ରାଜାଙ୍କୁ ଏକ ବର୍ଷର ପେସ୍କସ ଛାଡ଼ କରାଗଲା । ବେବର୍ତ୍ତା ବରଜୁ ପାଇକରାୟଙ୍କୁ ୨୦୦୦ ଟଙ୍କା ଓ ୱାଜ ମହମ୍ମଦଙ୍କୁ ୧୦୦୦ ଟଙ୍କା ପୁରସ୍କାର ଦିଆଗଲା ।

ନଜରବନ୍ଦୀରୂପେ ଜଗବନ୍ଧୁ ୩ ବର୍ଷ ଆଠ ମାସ ରହିବା ପରେ ୧୮୨୯ ଜାନୁଆରୀ ୨୪ ତାରିଖରେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ଓଡ଼ିଶା ଇତିହାସରେ ଜଗବନ୍ଧୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ରୂପେ ରହିଛନ୍ତି । ଇଂରେଜ ରାଜତ୍ୱ ଆରମ୍ଭରେ ସେ ଅନ୍ୟ ରାଜା ଜମିଦାରଙ୍କ ଭଳି ଅନ୍ୟାୟ ଓ ଅବିଚାରର ଶିକାର ହୋଇଥିଲେ । ସେ ତାଙ୍କର ଜମିଦାରୀ ଫେରିପାଇବାପାଇଁ ସମସ୍ତ ଉଦ୍ୟମ ଚଳାଇଥିଲେ । ଶେଷପର୍ଯ୍ୟନ୍ତ ଖୋର୍ଦ୍ଧା ରାଜାଙ୍କୁ ତାଙ୍କ ନ୍ୟାଯ୍ୟ ରାଜଗାଦି ଫେରାଇବା ଦାବିରେ ସେ ଅଟଳ ରହିଥିଲେ । ଏ ଦେଶ ମାଟିରୁ ବିଦେଶୀ ଶାସକମାନଙ୍କୁ ହଟାଇ ଦେବାକୁ ଦୀର୍ଘକାଳ ଧରି ଦୁର୍ଗମ ବଣଜଙ୍ଗଲରେ କଷ୍ଟସାଧ୍ୟ ଜୀବନଯାପନ କରି ଯେଉଁଭଳି ସଂଗ୍ରାମ ଚଳାଇଥିଲେ, ଓଡ଼ିଶା ଇତିହାସରେ ତା'ର ପଟାନ୍ତର ନାହିଁ ।



# ସିପାହି ବିଦ୍ରୋହର ସାରଥି
# ଚନ୍ଦନ ହଜୁରୀ

୧୮୫୭ ମସିହା ସିପାହି ବିଦ୍ରୋହରେ ଓଡ଼ିଶାର ଚନ୍ଦନ ହଜୁରୀଙ୍କର ଅବଦାନ କମ୍ ନୁହେଁ । ସେ କିନ୍ତୁ ଅଜ୍ଞାତ ହୋଇ ରହିଛନ୍ତି । ଭାରତ ତ ଦୂରର କଥା, ନିଜ ପ୍ରଦେଶ ଓଡ଼ିଶାରେ ମଧ ତାଙ୍କ କାର୍ଯ୍ୟକଳାପର ଯଥାଯଥ ବିବରଣୀ ମିଳେ ନାହିଁ । କିନ୍ତୁ ମହାଭାରତ ଯୁଦ୍ଧରେ ଶ୍ରୀକୃଷ୍ଣ ସାରଥି ଭାବେ ଯୁଦ୍ଧ ଚଳାଉଥିବାଭଳି ରାଣୀ ଲକ୍ଷ୍ମୀବାଈଙ୍କ ପରାମର୍ଶଦାତା ହିସାବରେ ସିପାହି ବିଦ୍ରୋହରେ ଚନ୍ଦନ ହଜୁରୀଙ୍କର ଭୂମିକା ଥିଲା ଅତୀବ ଗୁରୁତ୍ୱପୂର୍ଣ୍ଣ ।

## ବଂଶ ପରିଚୟ

ଚନ୍ଦନ ହଜୁରୀଙ୍କର ପିତା ଥିଲେ ଭୀମସେନ ହଜୁରୀ । ସେ ପୁରୀର ହରଚଣ୍ଡୀ ସାହିରେ ରହୁଥିଲେ । ତାଙ୍କ ମାତାଙ୍କର ନାମ କମଳା ଦେବୀ ଥିଲା । ସେମାନେ ବହୁ କାଳ ଧରି ପୁତ୍ର ସୁଖରୁ ବଞ୍ଚିତ ଥିଲେ । ପୁତ୍ରଟିଏ ପାଇବାପାଇଁ ଜଗନ୍ନାଥଙ୍କ ପାଖେ ଗୁହାରି କରୁଥିଲେ । ଶେଷରେ ୧୮୨୭ ମସିହା କାର୍ତ୍ତିକ ମାସ ଶୁକ୍ଳ ଏକାଦଶୀ ଦିନ ଜଗନ୍ନାଥଙ୍କ ଚନ୍ଦନଲାଗି ସମୟରେ ପୁତ୍ରଟିଏ ଜନ୍ମ ହେଲା । ସେ ତା'ର ନାମ ଦେଲେ ଚନ୍ଦନ ।

ଚନ୍ଦନଙ୍କ ଡାକ ନାମ ଥିଲା ଚାଖି । ପିଲାବେଳେ ସେ ଭାରି ଚଗଲା ଥିଲେ । ମହାପ୍ରସାଦ ବିକାଳିଙ୍କ ଠାରୁ ଭଲ ଡାଲି ତରକାରି ଝାମ୍ପିନେଇ ଖାଇବା ତାଙ୍କର ଅଭ୍ୟାସ ଥିଲା । ତେଣୁ ଲୋକେ ତାଙ୍କୁ ଚାଖି ଖୁଣ୍ଟିଆ ବୋଲି ଡାକୁଥିଲେ ।

ଆଜିକାଲିକା ପରି ସେତେବେଳେ ଏତେ ସ୍କୁଲ ବା ବିଦ୍ୟାଳୟ ନ ଥିଲା । ବଡ଼ ବଡ଼ ଘରର ଲୋକମାନେ ନିଜର ସନ୍ତାନମାନଙ୍କୁ ଗୃହରେ ଶିକ୍ଷକ ରଖି ପାଠ ପଢ଼ାଉଥିଲେ । ଭୀମସେନଙ୍କର ଆର୍ଥିକ ଅବସ୍ଥା ସେପରି ଭଲ ନ ଥିଲା । ସେ ଚାଖିଙ୍କୁ ସଂସ୍କୃତ ପଢ଼ାଇବାକୁ ପୁରୀର ସେତେବେଳକାର ବଡ଼ ପଣ୍ଡିତ ହରିହର ବ୍ରହ୍ମାଙ୍କ ପାଖକୁ ପଠାଇଲେ । ମାତ୍ର ଚାଖିଙ୍କର ସଂସ୍କୃତ ଶିକ୍ଷା ଦିଗରେ ଆଗ୍ରହ ନ ଥିଲା । ଅଳ୍ପଦିନ ପଢ଼ିଲାପରେ ସଂସ୍କୃତ ବ୍ୟାକରଣ ଆୟତ୍ତ କରିବା ତାଙ୍କ ପକ୍ଷେ ସମ୍ଭବ ନୁହେଁ ବୋଲି ସେ ପିତାଙ୍କୁ ଜଣାଇଲେ । ପିତା ତେଣୁ ହିନ୍ଦୀ ପଢ଼ିବାକୁ ଆଉ ଜଣେ ପଣ୍ଡିତ ରାମଦୟାଲ ଠାକୁରଙ୍କ ପାଖକୁ ପଠାଇଲେ । ଚାଖି ମଧ୍ୟ ହିନ୍ଦୀ ଶିକ୍ଷା କରିବାକୁ ଆଗ୍ରହ ଦେଖାଇଲେ । ଅଳ୍ପକାଳ ମଧ୍ୟରେ ହିନ୍ଦୀ ଭାଷାକୁ ସେ ଆୟତ୍ତ କରିନେଲେ ।

ମାତ୍ର ବାର ବର୍ଷ ବୟସରେ ଚନ୍ଦନଙ୍କର ବିବାହ କାର୍ଯ୍ୟ ସମ୍ପନ୍ନ ହେଲା । ସ୍ତ୍ରୀଙ୍କ ନାମ ଥିଲା ସୁନ୍ଦରମଣି । ସେ ଅତି ସୁନ୍ଦରୀ ଥିଲେ । ଅସାଧାରଣ ପତିପ୍ରାଣା ଓ ଭକ୍ତିପରାୟଣା ମଧ୍ୟ ଥିଲେ ।

ଆଜିକାଲିକା ପରି ସେତେବେଳେ ମଧ୍ୟ ଭାରତର ବିଭିନ୍ନ ଅଞ୍ଚଳରୁ ଯାତ୍ରୀମାନେ ଜଗନ୍ନାଥ ଦର୍ଶନପାଇଁ ପୁରୀ ଆସୁଥିଲେ । ପଣ୍ଡାମାନେ ସେହି ଯାତ୍ରୀମାନଙ୍କୁ ଦର୍ଶନ କରାଉଥିଲେ । ସେମାନଙ୍କର ରହିବା, ଖାଇବା, ପିଇବା ପ୍ରଭୃତିର ବ୍ୟବସ୍ଥା କରୁଥିଲେ । ସମୟେ ସମୟେ ସେମାନେ ଯାତ୍ରୀମାନଙ୍କୁ ଆଣିବାପାଇଁ ସେମାନଙ୍କ ଅଞ୍ଚଳକୁ ଯାଉଥିଲେ । ସେଠାରେ ଯଜମାନମାନଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ । ଭୀମସେନ ମଧ୍ୟ ଜଗନ୍ନାଥଙ୍କ ସେବା ସଙ୍ଗେ ସଙ୍ଗେ ସୁବିଧା ଅନୁସାରେ ଯଜମାନମାନଙ୍କ ବାସସ୍ଥାନକୁ ଯାଉଥିଲେ । କେବେ କେବେ ତାଙ୍କ ପୁଅକୁ ସାଙ୍ଗରେ ମଧ୍ୟ ନେଉଥିଲେ ।

### କାଶୀଯାତ୍ରା

ଥରେ ଭୀମସେନ ପୁଅ ଚନ୍ଦନକୁ ନେଇ କାଶୀ ଗଲେ । ସେଠି ବିଶ୍ୱନାଥଙ୍କ ମନ୍ଦିର ସମ୍ମୁଖରେ ଜଣେ ଯଜମାନଙ୍କ ସଙ୍ଗେ ଦେଖା ହେଲା । ତାଙ୍କର ନାମ ଥିଲା ମେରାପନ୍ତ । ମେରାପନ୍ତ ସେତେବେଳକୁ ମରହଟ୍ଟା ଶାସକ ଚିମ୍ନାଜୀଙ୍କର ଦେବାନ୍ ଥିଲେ । ମେରାପନ୍ତଙ୍କର ସ୍ତ୍ରୀ ଗର୍ଭବତୀ ଥିଲେ । ସେ ରୁଦ୍ରାଭିଷେକପାଇଁ ବିଶ୍ୱନାଥଙ୍କ ମନ୍ଦିରକୁ ଆସିଥିଲେ । ବିଶ୍ୱନାଥ ମନ୍ଦିରର ପୂଜକ ତାଙ୍କର ଏକ ପୁତ୍ର ହେବ ବୋଲି କହିଲେ । ମାତ୍ର ତାଙ୍କର ଏକ କନ୍ୟା ଜାତ ହେବ ବୋଲି ଚନ୍ଦନ ଭବିଷ୍ୟଦ୍‌ବାଣୀ କଲେ ।

ଚନ୍ଦନଙ୍କ ଭବିଷ୍ୟଦ୍‌ବାଣୀ ପରେ ସତ୍ୟ ହେଲା । ୧୮୩୫ ମସିହା ନଭେମ୍ବର ମାସ ୧୭ ତାରିଖରେ ମୋରାପନ୍ତଙ୍କର ଏକ କନ୍ୟା ଜନ୍ମ ହେଲା । ସେହିଦିନଠାରୁ ହଜୁରୀ ଓ ମୋରାପନ୍ତଙ୍କର ପାରିବାରିକ ସମ୍ପର୍କ ପ୍ରତିଷ୍ଠିତ ହେଲା । ଝିଅକୁ ମଧ ଦୁଇ ବର୍ଷ ହେବାବେଳେ ମୋରାପନ୍ତ ବାଳ ପକେଇବା ନିମନ୍ତେ ପୁରୀକୁ ଆସିଲେ ଓ ହଜୁରୀ ପରିବାରର ଆତିଥ୍ୟ ଗ୍ରହଣ କଲେ । ମୋରାପନ୍ତଙ୍କର କନ୍ୟା ଅସାମାନ୍ୟା ସୁନ୍ଦରୀ ଥିଲେ । ତାଙ୍କ ନାମ ଥିଲା ମାନୁବାଈ । ତାଙ୍କର ବାଲ୍ୟଚପଳତା ସମସ୍ତଙ୍କୁ ମୁଗ୍ଧ କରୁଥିଲା ।

ଏହାର କେତେଦିନ ପରେ ମୋରାପନ୍ତ ଉତ୍ତର ଭାରତରେ ଅବସ୍ଥିତ ବିଠୁରକୁ ଗଲେ । ସେଠାରେ ସେ ପେଶବାଙ୍କ ଦରବାରରେ ମନ୍ତ୍ରୀଭାବେ ନିଯୁକ୍ତ ହେଲେ ।

## ବିଠୁର

ଗଙ୍ଗାନଦୀ କୂଳରେ ଅବସ୍ଥିତ ବିଠୁରରେ ସେତେବେଳକୁ ପେଶବା ଦ୍ୱିତୀୟ ବାଜିରାଓ ରହୁଥିଲେ । ସେ ଇଂରେଜମାନଙ୍କ ଠାରୁ ମାସିକ ପେନସନ ବା ବୃତ୍ତି ପାଉଥିଲେ । ପେଶବାଙ୍କ ସଙ୍ଗେ ଅନେକ ସମ୍ଭ୍ରାନ୍ତ ମରହଟ୍ଟା ପରିବାର ବିଠୁରରେ ରହୁଥିଲେ । ମାଧବ ରାଓ ସେମାନଙ୍କ ମଧ୍ୟରୁ ଜଣେ ଥିଲେ । ତାଙ୍କର ଦୁଇ ପୁଅ ଥିଲେ । ନାନା ସାହେବ ଓ ରାଓ ସାହେବ । ଦ୍ୱିତୀୟ ବାଜିରାଓ ନିଃସନ୍ତାନ ଥିଲେ । ସେ ମାଧବ ରାଓଙ୍କ ପୁତ୍ର ନାନା ସାହେବଙ୍କୁ ପୋଷ୍ୟପୁତ୍ର କଲେ ।

ବିଠୁରକୁ ମୋରାପନ୍ତ ଆସିବାର ଅଳ୍ପକାଳ ପରେ ବାଜିରାଓଙ୍କ ଦୃଷ୍ଟି କନ୍ୟା ମାନୁବାଈ ଉପରେ ପଡ଼ିଲା । ପିଲାର ଅନିନ୍ଦ୍ୟ ସୁନ୍ଦର ଚେହେରା ଦେଖି ପେଶବା ମୁଗ୍ଧ ହୋଇଗଲେ । ସେ ମାନୁବାଈଙ୍କୁ ନିଜ କନ୍ୟାରୂପେ ପାଳିବାର ଦାୟିତ୍ୱ ଗ୍ରହଣ କଲେ ।

ଉଆସରେ ନାନା ସାହେବ, ରାଓ ସାହେବ ଓ ମାନୁବାଈ ଏକାଠି ବଢ଼ିବାକୁ ଲାଗିଲେ । ଦୁଇ ଭାଇଙ୍କ ପରି ମାନୁବାଈ ଘୋଡ଼ା ଚଢ଼ା ଓ ତରବାରି ଚାଳନା ଶିକ୍ଷାକଲେ । ଭୀମସେନ ପୁଅ ଚନ୍ଦନକୁ ଧରି କେତେଥର ବିଠୁରକୁ ଆସିଥିଲେ । ମାନୁବାଈଙ୍କ ଅପୂର୍ବ ସୌନ୍ଦର୍ଯ୍ୟ ଓ ତୀକ୍ଷ୍ଣ ବୁଦ୍ଧି ଦେଖି ସେ ଦିନେ ରାଜରାଣୀ ହେବେ ବୋଲି ଭବିଷ୍ୟଦ୍‌ବାଣୀ କରିଥିଲେ । ସେତେବେଳେ କେହି ଏହାକୁ ବିଶ୍ୱାସ କରି ନ ଥିଲେ ।

## ଝାନ୍‌ସୀ ରାଣୀ

ତୀର୍ଥ ଗୁରୁ ଭୀମସେନ ହଜୁରୀଙ୍କ ଭବିଷ୍ୟଦ୍‌ବାଣୀ ୧୮୪୮ ମସିହାରେ ଫଳିଲା । ସେତେବେଳକୁ ମାନୁବାଈଙ୍କୁ ପନ୍ଦର ବର୍ଷ ହୋଇଥାଏ । ବୃଦ୍ଧ ପେଶବାଙ୍କ ଚେଷ୍ଟା ଫଳରେ ମାନୁବାଈଙ୍କର ଝାନ୍‌ସୀର ରାଜା ଗଙ୍ଗାଧରଙ୍କ ସହିତ ୧୮୪୮ ମସିହାରେ ବିବାହ ହେଲା । ସେ କ୍ରମେ ଝାନ୍‌ସୀର ରାଣୀ ଲକ୍ଷ୍ମୀବାଈ ନାମରେ ଖ୍ୟାତ ହେଲେ ।

ଗଙ୍ଗାଧର ରାଓ ଜଣେ ଦକ୍ଷ ଶାସକ ଥିଲେ । ସେ ସିଂହାସନରେ ବସିବା ପୂର୍ବରୁ ରାଜକୋଷ ସମ୍ପୂର୍ଣ୍ଣ ଶୂନ୍ୟ ଥିଲା । ଫଳରେ ଶାସନ କଳ ଅଚଳ ଅବସ୍ଥାକୁ ଆସିଯାଇଥିଲା । ଗଙ୍ଗାଧର ଶାସନ ଦାୟିତ୍ୱ ଗ୍ରହଣ କଲା ପରେ ଅବସ୍ଥା ସୁଧୁରିଲା । ସେ ବହୁ ଲୋକହିତକର କାର୍ଯ୍ୟ ହାତକୁ ନେଲେ । ଲକ୍ଷ୍ମୀବାଈ ମଧ ଶାସନ କାର୍ଯ୍ୟରେ ସ୍ୱାମୀଙ୍କୁ ପରାମର୍ଶ ଦେଉଥିଲେ । ଫଳରେ ଝାନ୍‌ସୀର ସର୍ବାଙ୍ଗୀଣ ଉନ୍ନତି ହେଲା । ଲକ୍ଷ୍ମୀବାଈଙ୍କର ଗୋଟିଏ ପୁତ୍ରସନ୍ତାନ ଜାତ ହେଲା । ମାତ୍ର ତିନି ମାସ ମଧରେ ଏକମାତ୍ର ପୁତ୍ରର ମୃତ୍ୟୁ ହେଲା । ଲକ୍ଷ୍ମୀବାଈ ଏଥିରେ ମାନସିକ ଭାରସାମ୍ୟ ହରାଇ ବସିଲେ । ସ୍ୱାମୀ ଗଙ୍ଗାଧର ରାଓ ମଧ ପୁତ୍ରଶୋକରେ ଓ ପତ୍ନୀଙ୍କ ଦୁଃଖରେ ପାଗଳ ହୋଇପଡ଼ିଲେ । ପୁତ୍ର ମୃତ୍ୟୁର ପ୍ରାୟ ତିନି ବର୍ଷ ମଧରେ ଗଙ୍ଗାଧର ରାଓଙ୍କର ମୃତ୍ୟୁ ହେଲା ।

ଗଙ୍ଗାଧରଙ୍କ ମୃତ୍ୟୁ ପୂର୍ବରୁ ଲକ୍ଷ୍ମୀବାଈ ଗାଦି ରକ୍ଷାପାଇଁ ୧୮୫୩ ମସିହାରେ ତାଙ୍କ ସମ୍ପ୍ରଦାୟର ଜଣଙ୍କୁ ପୋଷ୍ୟପୁତ୍ର କଲେ । ତାଙ୍କର ନାମ ଥିଲା ଆନନ୍ଦ ରାଓ । ପୋଷ୍ୟପୁତ୍ର ହେବା ପରେ ତାଙ୍କର ନାମ ଦାମୋଦର ରଖାଗଲା ।

ସେତେବେଳେ ଭାରତର ଗଭର୍ଣ୍ଣର ଜେନେରାଲ ଥିଲେ ଲର୍ଡ଼ ଡେଲହାଉସୀ । ସେ କଳେବଳେକୌଶଳେ ସମଗ୍ର ଭାରତକୁ ଇଂରେଜ ଶାସନାଧୀନ କରିବାକୁ ଚାହୁଁଥିଲେ । ଏଥିପାଇଁ ସେ ରାଜସ୍ୱତ୍ୱ ଲୋପ ନାମରେ ଏକ ନୀତି ପ୍ରଣୟନ କଲେ । ଏହି ନୀତି ଅନୁଯାୟୀ ଯଦି ଜଣେ ରାଜା ନିଃସନ୍ତାନ ଥିବେ, ତେବେ ସେ ପୋଷ୍ୟପୁତ୍ର ଗ୍ରହଣ କରିପାରିବେ । ସେହି ପୋଷ୍ୟପୁତ୍ର କିନ୍ତୁ ରାଜଗାଦି ପାଇବାପାଇଁ ହକଦାର ହେବ ନାହିଁ । ରାଜାଙ୍କ ବିଧବାପତ୍ନୀ ଏବଂ ପୋଷ୍ୟପୁତ୍ର ଭରଣ ପୋଷଣପାଇଁ କେବଳ ମାସିକ ଭତ୍ତା ପାଇବେ । ରାଜ୍ୟର ଶାସନଭାର ସରକାର ଗ୍ରହଣ କରିବେ ।

ମୃତ୍ୟୁ ପୂର୍ବରୁ ଗଙ୍ଗାଧର ରାଓ ସରକାରଙ୍କୁ ତାଙ୍କ ପୋଷ୍ୟପୁତ୍ରକୁ ସ୍ୱୀକୃତି ଦେବାକୁ ଅନୁରୋଧ କରିଥିଲେ । ସେ ପ୍ରାର୍ଥନା କରିଥିଲେ ଯେ ତାଙ୍କ ମୃତ୍ୟୁ ପରେ ଦାମୋଦର ଗାଦିରେ ବସିବେ । ଯଦି ତାଙ୍କର (ଗଙ୍ଗାଧର) ଅକାଳ ମୃତ୍ୟୁ ହୁଏ ତେବେ ଦାମୋଦରଙ୍କ ତରଫରୁ ତାଙ୍କ ସ୍ତ୍ରୀ ଲକ୍ଷ୍ମୀବାଈ ଶାସନ କାର୍ଯ୍ୟ ତୁଲାଇବେ । ଦାମୋଦର ରାଓ ପ୍ରାପ୍ତ ବୟସ୍କ ହେବାପରେ ରାଜ୍ୟର ସମସ୍ତ ଶାସନ ଦାୟିତ୍ୱ ଗ୍ରହଣ କରିବେ ।

ଏହାର କିଛିକାଳ ପରେ ଗଙ୍ଗାଧରଙ୍କର ମୃତ୍ୟୁ ହେଲା । ମାତ୍ର ଅଠର ବର୍ଷରେ ଲକ୍ଷ୍ମୀବାଈ ବିଧବା ହେଲେ । ସେ କିନ୍ତୁ ଏଥିରେ ଭାଙ୍ଗି ପଡ଼ି ନ ଥିଲେ । ଝାନ୍‌ସୀକୁ ରକ୍ଷା କରିବାପାଇଁ ସେ ଅଣ୍ଟା ଭିଡ଼ି ବାହାରିଲେ ।

ଏହି ସମୟରେ ବିଧବାରାଣୀ ପ୍ରାସାଦରେ ପୂଜା ପାଉଥିବା ଦୁର୍ଗାଙ୍କ ବିଗ୍ରହକୁ ଚନ୍ଦନ ହକ୍କୁରୀଙ୍କ ପାଖକୁ ପଠାଇ ଦେଇଥିଲେ । ଲକ୍ଷ୍ମୀବାଈ ମଧ୍ୟ ସ୍ୱାମୀ ଦେଇଥିବା ପତ୍ରର ଉତ୍ତରପାଇଁ ଡେଲହାଉସୀଙ୍କ ପାଖକୁ ପତ୍ର ଲେଖିଲେ । ମାତ୍ର କିଛି ଉତ୍ତର ମିଳି ନ ଥିଲା । ଡେଲହାଉସୀ ମଧ୍ୟ ପୋଷ୍ୟପୁତ୍ରକୁ ସ୍ୱୀକୃତି ଦେଲେ ନାହିଁ । ଭରଣ ପୋଷଣପାଇଁ ମାସିକ ୫୦୦୦ ଟଙ୍କା ପାଇ ରାଜପ୍ରାସାଦ ପରିବର୍ତ୍ତେ ଦୁର୍ଗ ମଧ୍ୟରେ ଅବସ୍ଥାନ କରିବାକୁ ଆଦେଶ ଦେଲେ । ଫଳରେ ଝାନ୍‌ସୀ ଇଂରେଜ ଶାସିତ ଅଞ୍ଚଳରେ ପରିଣତ ହୋଇଗଲା । ଝାନ୍‌ସୀ ଦୁର୍ଗ ଉପରେ ବ୍ରିଟିଶ୍ ପତାକା ଉଡ଼ିଲା । ଇଂରେଜ ସେନାପତି କ୍ୟାପ୍‌ଟେନ ସ୍କିନ୍ ଝାନ୍‌ସୀର ଶାସନକର୍ତ୍ତା ହେଲେ । ଅସହାୟା ବିଧବା ଲକ୍ଷ୍ମୀବାଈ ଏହାକୁ ମାନିନେବାକୁ ବାଧ୍ୟ ହେଲେ ।

ବୀରା ଲକ୍ଷ୍ମୀବାଈଙ୍କ ହୃଦୟରେ କିନ୍ତୁ ପ୍ରତିହିଂସାର ବହ୍ନି ଜଳିଉଠିଲା । ସେ ଇଂରେଜମାନଙ୍କ ବିରୋଧରେ ଯୁଦ୍ଧ କରିବାକୁ ଦୃଢ଼ସଂକଳ୍ପ କଲେ । ପ୍ରଥା ଅନୁଯାୟୀ ବିଧବାମାନେ ମୁଣ୍ଡର ସମସ୍ତ କେଶକୁ କାଟି ଦେଉଥିଲେ । କିନ୍ତୁ ଲକ୍ଷ୍ମୀବାଈ ଶପଥ କଲେ ଯେ ଇଂରେଜମାନଙ୍କୁ ଭାରତ ଭୂମିରୁ ନିକାଲି ନ ଦେବା ଯାଏ ସେ ମୁଣ୍ଡର ଲହରିତ କେଶଗୁଚ୍ଛକୁ କାଟିବେ ନାହିଁ ।

କାଳକ୍ରମେ ଦାମୋଦର ରାଓଙ୍କୁ ଛଅ ବର୍ଷ ପୂରିଲା । ବାଲ୍ୟବିବାହ ପରି ପିଲାଦିନେ ବ୍ରତୋପନୟନ ଏକ ପ୍ରଥା ଥିଲା । ଲକ୍ଷ୍ମୀବାଈ ପୁଅର ବ୍ରତଘର କରାଇବାପାଇଁ ସ୍ଥିର କଲେ । ମାତ୍ର ରାଜଭଣ୍ଡାର ରେସିଡେଣ୍ଟଙ୍କ ଦଖଲରେ ଥିଲା । ରାଣୀ ଏକ ଲକ୍ଷ ଟଙ୍କା ଖର୍ଚ୍ଚପାଇଁ ବ୍ରିଟିଶ୍ ସରକାରଙ୍କ ଅନୁମତି ଲୋଡ଼ିଲେ । ଇଂରେଜ ସରକାର ଟଙ୍କା ଦେବାପାଇଁ ରାଜି ହେଲେ, ମାତ୍ର ତାହା ସର୍ତ୍ତମୂଳକ ଥିଲା । ତାହା ହେଲା – ରାଜ୍ୟର ଚାରି ଜଣ ପ୍ରତିଷ୍ଠିତ ବ୍ୟକ୍ତି ଜାମିନଦାର ରହିବେ । ରାଣୀ ଏଥିରେ ଅପମାନିତ ବୋଧ କଲେ । କିନ୍ତୁ ବହୁ ଅସନ୍ତୁଷ୍ଟ ରାଜା ମହାରାଜାଙ୍କ ସହିତ ଭେଟ ହେବାର ସୁଯୋଗକୁ ହାତଛଡ଼ା କରିଦେବାକୁ ସେ ଚାହିଁଲେ ନାହିଁ । ଶେଷରେ ସେ ବ୍ରିଟିଶ ସରକାରଙ୍କ ହୀନ ସର୍ତ୍ତରେ ରାଜି ହେଲେ । ପୁଅର ବ୍ରତ କାର୍ଯ୍ୟ ଶେଷ ହେବା ପରେ ସେ ଚନ୍ଦନ ହକ୍କୁରୀଙ୍କୁ ଶୀଘ୍ର ଝାନ୍‌ସୀ ଆସିବାକୁ ପତ୍ର ଲେଖିଲେ । ସେଥିରେ ଲେଖା ଥିଲା –

''ଆପଣ ଆମର ତୀର୍ଥଗୁରୁ ଓ ପିତାଜୀଙ୍କର ଗୁରୁଭାଇ ଅଟନ୍ତି । ଆପଣଙ୍କର ବିଦ୍ୱତ୍ତା ଓ ବଳ ମୋର ନିରାଶା ଭିତରେ ଆଶା ସଞ୍ଚାର କରୁଛି । ମୁଁ ବର୍ତ୍ତମାନ ବଡ଼ ବ୍ୟଥିତା × × × ଗତ ବର୍ଷ ମୁଁ ମୋର ଋଣ ଶୁଝିବାକୁ ଚାହିଁଥିଲି । କିନ୍ତୁ କମ୍ପାନୀ ମୋ କଥାପ୍ରତି କର୍ଣ୍ଣପାତ କଲା ନାହିଁ । ବର୍ତ୍ତମାନ ମୁଁ ଧନହୀନା, ଅତି କଷ୍ଟରେ ଚଳୁଛି । ଏପରିକି ନିତ୍ୟ ଦାନର ଟଙ୍କା ନାହିଁ । ଦୁର୍ଦ୍ଦିନରେ ମତେ ସାହାଯ୍ୟ କରନ୍ତୁ । ମୁଁ ଆପଣଙ୍କର ଶୁଭାଗମନକୁ ଅପେକ୍ଷା କଲି ।''

ଚନ୍ଦନ ହକୁରୀ ଆଗରୁ ରାଣୀଙ୍କଠାରୁ ଝାନ୍‌ସୀ ଯିବାକୁ ବହୁବାର ଚିଠି ପାଇଥିଲେ । ମାତ୍ର ଏ ଚିଠି ପାଇବାପରେ ସେ ଝାନ୍‌ସୀ ଯିବାକୁ ସ୍ଥିର କଲେ ।

୧୮୫୭ ମସିହା ଜାନୁଆରୀ ମାସ ୨୪ ତାରିଖରେ ଚନ୍ଦନ ହକୁରୀ ଝାନ୍‌ସୀ ଅଭିମୁଖେ ଯାତ୍ରା କଲେ । ଇଂରେଜ ଶାସନ ବିରୋଧରେ ତୀବ୍ର ଅସନ୍ତୋଷ ଦେଖା ଦେଇଥିବା ସେ ଲକ୍ଷ୍ୟ କରିଥିଲେ । ମାତ୍ର ଇଂରେଜମାନଙ୍କ ବିରୋଧରେ ବିଦ୍ରୋହପାଇଁ ଉପଯୁକ୍ତ ସମୟ ଆସିଛି କି ନାହିଁ ସେ ବିଷୟ ଅନୁଧ୍ୟାନ କରିବାକୁ ଚାହିଁଲେ । ସେ ଛଦ୍ମବେଶରେ ଗ୍ରାମ ପରେ ଗ୍ରାମ, ନଗର ପରେ ନଗର ବୁଲି ତଥ୍ୟ ସଂଗ୍ରହ କଲେ । ଶେଷରେ ନାନା ସାହେବଙ୍କ ନେତୃତ୍ୱରେ ବିଦ୍ରୋହ ଆସନ୍ନ ବୋଲି ହୃଦୟଙ୍ଗମ କଲେ । ନାନା ସାହେବଙ୍କ ଅବସ୍ଥା ଦାମୋଦରଙ୍କ ଅବସ୍ଥାଠାରୁ ଖରାପ ଥିଲା । ଦ୍ୱିତୀୟ ବାଜିରାଓ ନାନା ସାହେବଙ୍କୁ ପୋଷ୍ୟପୁତ୍ର କରିଥିଲେ । ମାତ୍ର ବାଜିରାଓଙ୍କ ମୃତ୍ୟୁପରେ ଇଂରେଜମାନେ ରାଜସ୍ୱତ୍ୱ ଲୋପନୀତି ପ୍ରୟୋଗ କଲେ । ନାନା ସାହେବଙ୍କୁ ପେଶବା ପଦରେ ଅଧିଷ୍ଠିତ କରାଗଲା ନାହିଁ । ବାଜିରାଓଙ୍କୁ ମିଳୁଥିବା ଆଠ ଲକ୍ଷ ଟଙ୍କା ବାର୍ଷିକ ବୃତ୍ତିକୁ ମଧ୍ୟ ବନ୍ଦ କରିଦିଆଗଲା ।

ଇଂରେଜମାନଙ୍କୁ ଭାରତ ଭୂମିରୁ ବିତାଡ଼ିତ କରି ସ୍ୱାଧୀନ ରାଷ୍ଟ୍ର ଗଠନ ଦିଗରେ ନାନାସାହେବ ବ୍ରତୀ ହେଲେ । ଅସନ୍ତୁଷ୍ଟ ରାଜା-ଜମିଦାରମାନଙ୍କୁ ସଙ୍ଗଠିତ କରି ଇଂରେଜମାନଙ୍କୁ ଆକ୍ରମଣ କରିବା ତାଙ୍କର ଲକ୍ଷ୍ୟ ହେଲା । ଏଥିରେ ତାଙ୍କର ସହକର୍ମୀ ଥିଲେ ତାନ୍ତିଆଟୋପି । ସେ ରାଜପ୍ରାସାଦର ଏକ ସାମାନ୍ୟ ହିସାବନବିସ ଥିଲେ । ମାତ୍ର ପରେ ସିପାହି ବିଦ୍ରୋହର ନେତୃତ୍ୱ ନେଲେ । ଦୁହିଁଙ୍କର ପରାମର୍ଶରେ ବିଦ୍ରୋହପାଇଁ ପ୍ରସ୍ତୁତି ଚାଲିଲା । ଏହା ଏଭଳି ଗୋପନରେ ଚାଲିଲା ଯେ ଇଂରେଜ ଶକ୍ତି ତ ଦୂରର କଥା, ବିଠୁର ରାଜପ୍ରାସାଦର ଅଧିବାସୀ ଏହାର ସୁରାକ ପାଇପାରି ନ ଥିଲେ ।

## ନାନା ସାହେବଙ୍କ ସହ ସାକ୍ଷାତ୍

ଚନ୍ଦନ ହକୁରୀ ମଧ୍ୟ ବିଠୁର ଯାଇ ନାନା ସାହେବଙ୍କୁ ଦୁଇ ଥର ସାକ୍ଷାତ୍ କଲେ । ତୃତୀୟ ଥର ବିଠୁର ରାଜପ୍ରାସାଦସ୍ଥ ଭବାନୀ ମନ୍ଦିରରେ ଦୁହିଁଙ୍କର ସାକ୍ଷାତ ହେଲା । ଏଭଳି ମହାନ୍ କାର୍ଯ୍ୟରେ ଯୋଗ ଦେବାପାଇଁ ନିଜର ଅଭିଳାଷ ଚନ୍ଦନ ହକୁରୀ ଜଣାଇଲେ । ନାନା ସାହେବ ପ୍ରଥମେ ତାଙ୍କୁ ବିଶ୍ୱାସ କରିପାରି ନ ଥିଲେ । ଚନ୍ଦନ ଶପଥ କଲେ – ''ପେଶବା ! ମୁଁ ମା' ଭବାନୀଙ୍କ ସମ୍ମୁଖରେ ପ୍ରତିଜ୍ଞା କରି କହୁଛି ଯେକୌଣସି ଅସତ୍ ଉଦ୍ଦେଶ୍ୟ ନେଇ ମୁଁ ଆପଣଙ୍କ ନିକଟକୁ ଆସି ନାହିଁ । ଭାରତର ସ୍ୱାଧୀନତା ମୁଁ ମଧ୍ୟ କାମନା କରେ ଏବଂ ଯେତେବେଳେ ଆପଣ ଏହି ମହତ୍ କାର୍ଯ୍ୟର ନେତୃତ୍ୱ ନେଇଛନ୍ତି,

ସେତେବେଳେ ଆପଣଙ୍କୁ ସବୁ ପ୍ରକାରେ ସାହାଯ୍ୟ କରିବା ମୋର ପ୍ରଧାନ କର୍ତ୍ତବ୍ୟ ବୋଲି ମନେ କରେ ।''

ଝାନ୍‌ସୀର ବିଧବା ରାଣୀ ତାଙ୍କୁ ପଠାଇଥିବା କଥା ସେ ଜଣାଇଲେ । ସେ ପୁଣି କହିଲେ – ''ଝାନ୍‌ସୀର ଅବସ୍ଥା ବିଶେଷକରି ବିଧବା ରାଣୀ ଲକ୍ଷ୍ମୀବାଈଙ୍କ ଲାଗି ମୁଁ ଭାରି ଚିନ୍ତିତ । ଝାନ୍‌ସୀ ବି ମୋର ପ୍ରଧାନ କର୍ମକ୍ଷେତ୍ର । ମୋତେ କ'ଣ କରିବାକୁ ହେବ, ତାହା ଜଣାନ୍ତୁ ।''

ଶେଷରେ ନାନା ସାହେବଙ୍କ ବିଶ୍ୱାସ ଆସିଲା । ଝାନ୍‌ସୀରେ ବିଦ୍ରୋହ ନିଶ୍ଚୟ ହେବ ଓ ଭାରତୀୟ ସିପାହିମାନେ ଇଂରେଜମାନଙ୍କ ବିରୋଧରେ ଅସି ଧାରଣ କରିବେ ବୋଲି ସେ ସୂଚାଇ ଝାନ୍‌ସୀର ଜନଶକ୍ତିକୁ ସଂଗଠିତ କରିବାପାଇଁ ହକୁରୀଙ୍କୁ ପରାମର୍ଶ ଦେଲେ । ଅତି ସତର୍କତାର ସହ ଝାନ୍‌ସୀର ସୈନ୍ୟସଂଖ୍ୟା ବୃଦ୍ଧିପାଇଁ ମଧ୍ୟ ପରାମର୍ଶ ଦେଲେ ।

## ଝାନ୍‌ସୀ ପ୍ରତ୍ୟାବର୍ତ୍ତନ

ଏହା ପରେ ଚନ୍ଦନ ହକୁରୀ ଝାନ୍‌ସୀ ଫେରିଆସିଲେ । ରାଣୀ ଲକ୍ଷ୍ମୀବାଈଙ୍କ ସଙ୍ଗେ ତାଙ୍କର ଗୁପ୍ତ ଆଲୋଚନା ହେଲା । ହକୁରୀଙ୍କଠାରୁ ସମସ୍ତ ବୃତ୍ତାନ୍ତ ଶୁଣି ଲକ୍ଷ୍ମୀବାଈଙ୍କର ଆନନ୍ଦର ସୀମା ରହିଲା ନାହିଁ । ସେ ଚନ୍ଦନ ହଜରୀଙ୍କୁ ପ୍ରଧାନ ସହାୟକଭାବେ ଗ୍ରହଣ କଲେ । ତାଙ୍କର ନେତୃତ୍ୱ ଓ ନିର୍ଦ୍ଦେଶରେ ସେ ଏଣିକି କାମ କରିବେ ବୋଲି ଜଣାଇଲେ ।

ଅଳ୍ପ ଦିନ ମଧ୍ୟରେ ଦଳେ ବିଦ୍ରୋହୀ ଝାନ୍‌ସୀରାଣୀଙ୍କ ପ୍ରାସାଦ ଉପରେ ଆକ୍ରମଣ କଲେ । ଇଂରେଜ ସୈନ୍ୟଙ୍କ ସାହାଯ୍ୟରେ ଏହାକୁ ଦମନ କରାଗଲା । ମାତ୍ର ଚନ୍ଦନ ହକୁରୀ ଏହାକୁ ନିଜର ଅଭୀଷ୍ଟ ସାଧନରେ ଉପଯୋଗ କଲେ । ଭବିଷ୍ୟତ୍ ଆକ୍ରମଣର ମୁକାବିଲା କରିବାକୁ ରାଣୀ ନିଜ ସୈନ୍ୟବାହିନୀ ବୃଦ୍ଧି କରିବାକୁ କ୍ୟାପ୍‌ଟେନ ସ୍କିନ୍‌ଙ୍କୁ ପ୍ରସ୍ତାବ ଦେଲେ । ସ୍କିନ ମଧ୍ୟ ସଙ୍ଗେ ସଙ୍ଗେ ଏଥିପାଇଁ ଅନୁମତି ଦେଲେ । ସୈନ୍ୟ ନିଯୁକ୍ତ କରିବାର ସମସ୍ତ ଦାୟିତ୍ୱ ଲକ୍ଷ୍ମୀବାଈ ଗ୍ରହଣ କଲେ ।

ଲକ୍ଷ୍ମୀବାଈ ଅଳ୍ପ ସମୟରେ ଏକ ନୂଆ ସୈନ୍ୟବାହିନୀ ଗଠନ କଲେ । ଏହାର ପ୍ରଧାନ ସେନାପତି ଭାବେ କୁୟାର ଖୋଦାବକ୍‌ସ ନିଯୁକ୍ତ ହେଲେ । ଗୋଲାମ ଚୌସ ଗୋଲନ୍ଦାଜ ବାହିନୀର ସେନାଧ୍ୟକ୍ଷ ହେଲେ । ପୁରୁଣା କମାଣଗୁଡ଼ିକର ମରାମତି ଚାଲିଲା । ନୂଆ କମାଣ ମଧ୍ୟ ତିଆରି ହେଲା । ସମସ୍ତେ ମୋଗଲ ସମ୍ରାଟ୍ ବାହାଦୁର୍ ସାହାଙ୍କର ଛତ୍ର ତଳେ ବିଦ୍ରୋହ କରିବାକୁ ପ୍ରସ୍ତୁତ ହେଲେ ।

ସୈନ୍ୟ ସଙ୍ଗଠନର ସମସ୍ତ କାର୍ଯ୍ୟ ରାଣୀଙ୍କ ହସ୍ତେ ନ୍ୟସ୍ତ କରି ଚନ୍ଦନ ହଜୁରୀ ପୂର୍ବଭଳି ଇଲାକା ପରିଦର୍ଶନରେ ବାହାରିଲେ । ମାତ୍ର ସେ ଝାନ୍ସୀ ଜନଶକ୍ତିକୁ ସଙ୍ଗଠିତ କରିବାପାଇଁ ଯେ ବାହାରିଲେ, ଏହା ଅତି ସ୍ପଷ୍ଟ ।

ବିପ୍ଳବର ନେତୃତ୍ୱ ନେଇଥିଲେ ନାନା ସାହେବ, ତାଙ୍କର ସହଯୋଗୀ ତାନ୍ତିଆ, ଝାନ୍ସୀର ରାଣୀ ଲକ୍ଷ୍ମୀବାଈ, ଅଯୋଧାର ନବାବ ଓ୍ୱାହିଦ୍ ଅଲ୍ଲିସାହା, ଉଜୀର ତକୀ ଅଲ୍ଲିଖାଁ, ଅଜିମୁଲ୍ଲା ଖାଁ,ମୌଲବୀ ଅହମ୍ମଦ୍ ସାହା ଓ ପୁରୀର ଚନ୍ଦନ ହଜୁରୀ । ଯୁଦ୍ଧ ଖର୍ଚ୍ଚପାଇଁ ଅଯୋଧାର ବେଗମ ହଜରତ୍ ମହଲ ତାଙ୍କର ସମସ୍ତ ସମ୍ପତ୍ତି ଦାନ କଲେ ।

ବିପ୍ଳବର ବାର୍ତ୍ତାଧରି କର୍ମୀମାନେ ବିଭିନ୍ନ ଅଞ୍ଚଳକୁ ଯାତ୍ରା କଲେ । ସାଙ୍କେତିକ ଅଙ୍କରେ ପ୍ରସ୍ତୁତ ହୋଇ ଗୁପ୍ତ ପତ୍ର ବିଭିନ୍ନ ସଙ୍ଗଠନ କେନ୍ଦ୍ରମାନଙ୍କୁ ପଠାଗଲା । ପଦ୍ମଫୁଲ ଓ ହଳଦିପତ୍ରର ପିଠା ବିପ୍ଳବର ସଙ୍କେତ ରୂପେ ଗ୍ରହଣ କରାଗଲା । ଗୋଟିଏ ପଦ୍ମଫୁଲ ଶିବିରରେ ପହଞ୍ଚିବାମାତ୍ରେ ହାତକୁ ହାତ ହୋଇ ସେନା ଛାଉଣୀ ଭିତରେ ବୁଲି ଆସୁଥିଲା । ପାଲା, ସଙ୍ଗୀତ ପ୍ରଭୃତି ସାହାଯ୍ୟରେ ବିପ୍ଳବର ବାର୍ତ୍ତା ଲୋକମାନଙ୍କ ମଧ୍ୟରେ ପ୍ରଚାରିତ ହେଲା । ଇଂରେଜମାନଙ୍କ ବର୍ବରତାକୁ ଲକ୍ଷ୍ୟ କରି ଚନ୍ଦନ ହଜୁରୀ ସମ୍ଭବତଃ ଏହି ଜଣାଣଟି ରଚନା କରିଥିଲେ –

"ଧଣ୍ଡାମାଳ ବୁହା ଦୁର୍ଦ୍ଦଶା–ରାହୁ
ଚଣ୍ଡାଳ ଗ୍ରାସୁଅଛି ଚାହୁଁ ଚାହୁଁ

× × ×

ଭଣ୍ଡାରେ ଖଣ୍ଡା ନାହିଁକି ମଣିମା ।
ଗଣ୍ଡାକର ଦିଶୁ ନାହିଁ ମହିମା ।।"

**ବିଦ୍ରୋହ ଆରମ୍ଭ**

୧୮୫୭ ମସିହା ମେ ମାସ ୨୯ ତାରିଖରେ ବାରାକପୁର ସୈନ୍ୟ ଛାଉଣୀରେ ମଙ୍ଗଳ ପାଣ୍ଡେ ନାମକ ବ୍ରାହ୍ମଣ ସିପାହି ଗୋରା ଜେନେରାଲଙ୍କୁ ଗୁଳିକରି ହତ୍ୟା କରିବାଦ୍ୱାରା ବିଦ୍ରୋହ ଆରମ୍ଭ ହେଲା । ଏହି ବିଦ୍ରୋହ ବହ୍ନି ଚାରିଆଡ଼କୁ ବ୍ୟାପିଲା । କାନପୁରରେ ଜୁନ ମାସ ୪ ତାରିଖରେ ବିପ୍ଳବର ଶଙ୍ଖ ବାଜିଉଠିଲା । ଠିକ୍ ସେହିଦିନ ତା'ର ପ୍ରତିଧ୍ୱନି ହେଲା ଝାନ୍ସୀରେ । ଭାରତୀୟ ସୈନ୍ୟମାନେ ଜଣେ ହାବିଲଦାରଙ୍କ ନେତୃତ୍ୱରେ ବିଦ୍ରୋହ ଆରମ୍ଭ କଲେ । ସେମାନେ ଇଂରେଜମାନଙ୍କ ନିର୍ମିତ ଦୁର୍ଗ ଅଧିକାର କଲେ । ସମସ୍ତ ଗୁଳିଗୁଳା ସହିତ ଖଜଣାଖାନା ଲୁଟ କଲେ । ବିଦ୍ରୋହୀମାନେ ଝାନ୍ସୀ ଅଧିକାର କଲା ପରେ ଦିଲ୍ଲୀ ଅଭିମୁଖେ ଯାତ୍ରା କଲେ । ଲକ୍ଷ୍ମୀବାଈ ସଂଗ୍ରାମୀମାନଙ୍କୁ ଏକ ଲକ୍ଷ ଟଙ୍କାର ଅଳଙ୍କାର ଦେଲେ । ଝାନ୍ସୀ ଅଧିକୃତ ହେଲା ପରେ ସେନାପତି ଓ ଅନ୍ୟାନ୍ୟ

ବ୍ୟକ୍ତିମାନଙ୍କ ଅନୁରୋଧରେ ଲକ୍ଷ୍ମୀବାଈ ସିଂହାସନରେ ବସିଲେ । ପୁଣି ଝାନ୍‌ସୀ ଦୁର୍ଗରେ ଦେଶର ପତାକା ଉଡ଼ିଲା ।

ସେଦିନ ରାତ୍ରିରେ ନଅର ମଧ୍ୟରେ ମନ୍ତ୍ରଣାସଭା ବସିଲା । ସେଥିରେ ଉପସ୍ଥିତ ଥିଲେ ମନ୍ତ୍ରୀ ଲକ୍ଷ୍ମଣ ରାଓ, ପ୍ରଧାନ ସେନାପତି ଖୋଦା ବକ୍‌ସ, ଗୋଲନ୍ଦାଜ ବାହିନୀର ଗୋଲାମ ଚୌସ, ଚନ୍ଦନ ହକ୍କୁରୀ ଓ ଅନ୍ୟାନ୍ୟ ମୁଖ୍ୟ ସର୍ଦ୍ଦାରଗଣ । ଚନ୍ଦନ ହକ୍କୁରୀ ପ୍ରଥମେ ଆରମ୍ଭ କଲେ –

''ଝାନ୍‌ସୀର ଆଜି ଶୁଭ ଦିନ । ବିଦେଶୀ ଶକ୍ତି ଆଜି ପରାଜିତ ଓ ବିତାଡ଼ିତ । କିନ୍ତୁ ଏଥିପାଇଁ ଆମ୍ଭମାନଙ୍କର ଉତ୍‌ଫୁଲ୍ଲ ହେବାର କିଛି ନାହିଁ । ଆଜିଠାରୁ ଝାନ୍‌ସୀକୁ ଆହୁରି ଶକ୍ତି ସଂଗ୍ରହ କରିବାକୁ ପଡ଼ିବ; କାରଣ ବିଦେଶୀ ଶକ୍ତି ସମ୍ପୂର୍ଣ୍ଣରୂପେ ପରାଜିତ ବୋଲି ମୁଁ ମନେ କରୁ ନାହିଁ । ପୁଣି ସଂଗଠିତ ହୋଇ ସେମାନଙ୍କର ପ୍ରତି ଆକ୍ରମଣ କରିବାର ସମ୍ଭାବନା ପୂରା ଅଛି । ଏହାଛଡ଼ା ଆଉ ଏକ ବିଶେଷ ଦିଗ ପ୍ରତି ଆମ୍ଭମାନଙ୍କୁ ମୂଳରୁ ସତର୍କ ରହିବାକୁ ହେବ – ତାହା ହେଉଛି ଗୃହ ଶତ୍ରୁ ।''

ହକ୍କୁରୀଙ୍କର ପରାମର୍ଶ ଅନୁସାରେ ସମସ୍ତେ କାର୍ଯ୍ୟ କରିବାପାଇଁ ଶପଥ ନେଲେ । ଅଳ୍ପଦିନ ମଧ୍ୟରେ ଲକ୍ଷ୍ମୀବାଈଙ୍କୁ ଦୁର୍ବଳା ନାରୀ ଭାବି ଦୁଇ ଜଣ ଗୃହଶତ୍ରୁ ଝାନ୍‌ସୀ ଦଖଲ କରିବାକୁ ଚେଷ୍ଟା କଲେ । ସେମାନେ ହେଲେ ଗଙ୍ଗାଧର ରାଓଙ୍କ ଦୂର ସମ୍ପର୍କୀୟ ସଦାଶିବ ରାଓ ଓ ତେହେରିର ନବାବ ନାଥେ ଖାଁ । ସେମାନେ କିନ୍ତୁ ଦୁର୍ଦ୍ଧର୍ଷ ଝାନ୍‌ସୀ ସେନାବାହିନୀଦ୍ୱାରା ପରାଜିତ ହେଲେ ।

## ପୁଣି ଝାନ୍‌ସୀ ଆକ୍ରମଣ

ବିଦ୍ରୋହର ପ୍ରଥମ ଧକ୍କାରେ ପରାଜିତ ହେଲେ ମଧ୍ୟ ଇଂରେଜମାନେ ଦ୍ୱିଗୁଣ ବେଗରେ ଶକ୍ତି ସଞ୍ଚୟ କଲେ । ଦୁଇ ଜଣ ନିପୁଣ ସେନାପତି ସାର୍ ହ୍ୟୁଗରୋଜ୍ ଓ ସାର୍ କଲିନ୍ କ୍ୟାମ୍ପବେଲ୍ ଏକାଠି ହୋଇ ଗୋଟିଏ ପରେ ଗୋଟିଏ ସହର ଅଧିକାର କରିନେଲେ । ୧୮୫୮ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ସେନାପତି ହ୍ୟୁଗରୋଜ୍ ଝାନ୍‌ସୀ ଆକ୍ରମଣ କଲେ । ସେ ପ୍ରଥମେ ଆତ୍ମସମର୍ପଣ ଦାବିକରି ରାଣୀ ଲକ୍ଷ୍ମୀବାଈଙ୍କ ପାଖକୁ ଦୂତ ପଠାଇଲେ । ପୁଣି ଥରେ ଉଆସରେ ମନ୍ତ୍ରଣା ଚାଲିଲା । ପ୍ରଧାନମନ୍ତ୍ରୀ ଆତ୍ମସମର୍ପଣ କରିବାପାଇଁ ପରାମର୍ଶ ଦେଲେ । ଚନ୍ଦନ ହକ୍କୁରୀ ଖୋଦା ବକ୍‌ସଙ୍କ ସହିତ ଆଲୋଚନା କରି ତାଙ୍କର ବକ୍ତବ୍ୟ ଉପସ୍ଥାପିତ କଲେ – ''ମହାରାଣୀ ! ଝାନ୍‌ସୀର ସ୍ୱାଧୀନତା ଦେଶବାସୀଙ୍କ ସ୍ୱାଧୀନତା । ଝାନ୍‌ସୀର ବୀର ସେନାବାହିନୀ ରକ୍ତ ବଦଳରେ ଯେଉଁ ସ୍ୱାଧୀନତା ହାସଲ କରିଛନ୍ତି, ସେମାନେ ତାହାକୁ ରକ୍ଷା କରିବାକୁ ଦୃଢ଼ପ୍ରତିଜ୍ଞ । ଝାନ୍‌ସୀର ସ୍ୱାଧୀନତା ଅକ୍ଷୁଣ୍ଣ ରଖିବାର ଦାୟିତ୍ୱ ଆପଣଙ୍କ

ଉପରେ । ନିଜର ଦାୟିତ୍ୱରେ ହେଳା କରନ୍ତୁ ନାହିଁ । ଆତ୍ମସମର୍ପଣର ପ୍ରଶ୍ନ ଉଠୁ ନାହିଁ ।''

ଏହା ପରେ ପ୍ରଧାନ ସେନାପତି ଖୋଦାବକ୍ସ ମଧ କୋଷମୁକ୍ତ ତରବାରି ପାଦତଳେ ରଖି ତାହାର ଅମର୍ଯ୍ୟାଦା ନ କରିବାକୁ ରାଣୀଙ୍କୁ ନିବେଦନ କଲେ । ଖୋଦାବକ୍ସଙ୍କ ନିବେଦନ ଓ ଚନ୍ଦନ ହକୁରୀଙ୍କର ଉଦ୍‌ବୋଧନ ରାଣୀଙ୍କ ଦେହରେ ଅଭୂତପୂର୍ବ ଉନ୍ମାଦନା ସୃଷ୍ଟି କଲା । ସେ ଇଂରେଜ ଦୂତଙ୍କୁ ଡାକି କହିଲେ –

''କହି ଦିଜିୟେ, ମେରୀ ଝାନ୍‌ସୀ, ନହି ଦୁଂଗୀ ।''

୧୮୫୮ ମାର୍ଚ୍ଚ ୨୩ ତାରିଖରେ ହ୍ୟୁଗରୋଜ୍ ଝାନ୍‌ସୀ ଆକ୍ରମଣ କଲେ । ଆଗରୁ ଚନ୍ଦନ ହକୁରୀଙ୍କ ନିର୍ଦ୍ଦେଶକ୍ରମେ ଶତ୍ରୁ ଆସିବା ରାସ୍ତା ସବୁ ଧ୍ୱଂସ କରିଦିଆଯାଇଥିଲା । ମାତୃଭୂମିର ରକ୍ଷାପାଇଁ ଝାନ୍‌ସୀର ସେନାବାହିନୀ ପ୍ରାଣମୂର୍ଚ୍ଛା ଉଦ୍ୟମ କଲେ । ଦୀର୍ଘ ପାଞ୍ଚ ଦିନ ଧରି ଯୁଦ୍ଧ ଚାଲିଲା । ପରିସ୍ଥିତିର ଗୁରୁତ୍ୱ ଦୃଷ୍ଟିରୁ ରାଣୀ ତାନ୍ତିଆଟୋପିଙ୍କ ପାଖକୁ ଖବର ପଠାଇଲେ । ତାନ୍ତିଆଟୋପି ୨୦,୦୦୦ ସୈନ୍ୟ ସହ ଝାନ୍‌ସୀରେ ପହଞ୍ଚିଲେ । ମାତ୍ର ଶେଷରେ ତାନ୍ତିଆଟୋପି ପରାସ୍ତ ହେଲେ । ପରାଜିତ ସୈନ୍ୟମାନେ କାଲ୍ପି ପଳାୟନ କଲେ । ତଥାପି ରାଣୀ ଧୈର୍ଯ୍ୟ ହରାଇ ନ ଥିଲେ । ସେ ନିଜେ ହାତରେ ତରବାରି ଧରି ଯୁଦ୍ଧ ଚଳାଇଲେ । ପୁଣି ଅପୂର୍ବ ଉନ୍ମାଦନାରେ ଝାନ୍‌ସୀ ସେନା ଯୁଦ୍ଧ କଲେ । ଝାନ୍‌ସୀ ଅଜେୟ ହୋଇରହିଲା ।

କିନ୍ତୁ ଝାନ୍‌ସୀର ଗୃହଶତ୍ରୁମାନେ ସ୍ୱାର୍ଥ ଲୋଭରେ ଝାନ୍‌ସୀର ପତନ ଘଟାଇଲେ । ବିଶ୍ୱାସଘାତକ ଠାକୁର ଲାଲାଜୀ ଚନ୍ଦନ ହକୁରୀଙ୍କ ଚକ୍ଷୁରେ ଧୂଳି ଦେଇ ଦୁର୍ଗର ଦରଜା ଖୋଲିଦେଲେ । ବିଦେଶୀ ସୈନ୍ୟମାନେ ଦୁର୍ଗ ଭିତରକୁ ସୁଅଭଳି ମାଡ଼ିଆସିଲେ । ରାଣୀ ନିରୁପାୟା ହୋଇ ପୁତ୍ର ଦାମୋଦରଙ୍କୁ ପିଠିରେ ବସାଇ ଅଶ୍ୱପୃଷ୍ଠରେ ଝାନ୍‌ସୀ ତ୍ୟାଗକରି କାଲ୍ପି ଅଭିମୁଖେ ଯାତ୍ରା କଲେ । ତାଙ୍କ ସଙ୍ଗେ ତାନ୍ତିଆ ଟୋପି, ଚନ୍ଦନ ହକୁରୀ ଓ ମେରାପନ୍ତ ମଧ ଯାତ୍ରା କଲେ । ବାଟରେ ମେରାପନ୍ତ ଦନ୍ତୟା ନାମକ ସ୍ଥାନରେ ଧରା ପଡ଼ି ନିହତ ହେଲେ । ବହୁ ବାଧାବିଘ୍ନର ସମ୍ମୁଖୀନ ହୋଇ ରାଣୀ କାଲ୍ପିରେ ପହଞ୍ଚିଲେ ।

କାଲ୍ପିରେ ତାନ୍ତିଆ ଟୋପି, ଲକ୍ଷ୍ମୀବାଈ ଓ ରାଓ ସାହେବଙ୍କ ମଧରେ ମନ୍ତ୍ରଣା ଚାଲିଲା । ମେଜର ହ୍ୟୁଗ୍‌ରୋଜ୍ ମଧ ରାଣୀଙ୍କୁ ଅନୁସରଣ କରି ସୈନ୍ୟବାହିନୀ ସହ କାଲ୍ପିରେ ପହଞ୍ଚିଲେ । ସେଠାରେ ଭୀଷଣ ଯୁଦ୍ଧ ହେଲା । ରାଣୀ ବୀରତ୍ୱ ସହକାରେ ଯୁଦ୍ଧ କଲେ । ବହୁ ଇଂରେଜ ସୈନ୍ୟ ନିହତ ହେଲେ, ମାତ୍ର ରାଓ ସାହେବଙ୍କ ଦୂରଦୃଷ୍ଟି ଅଭାବରୁ ରାଣୀ ସେଠାରେ ପରାସ୍ତ ହେଲେ । ବହୁ

କଷ୍ଟରେ ପ୍ରାଣ ବଞ୍ଚାଇ ରାଣୀ ଗୋଆଲିଅର ପଳାଇଲେ । ଚନ୍ଦନ ହକ୍କୁରୀ ମଧ୍ୟ ଅନେକ ଆଡ଼େ ବୁଲି ବୁଲି ଗୋଆଲିଅରରେ ପହଞ୍ଚିଲେ । ଗୋଆଲିଅରରେ ବ୍ରାହ୍ମଣମାନଙ୍କୁ ମିଷ୍ଟାନ୍ନ ଦିଆଯାଉଥିଲା । ଛଦ୍ମବେଶରେ ଚନ୍ଦନ ହକ୍କୁରୀ ସେଠାରେ ଉପସ୍ଥିତ ହେଲେ । ରାଣୀଙ୍କ ସଙ୍ଗେ ସାକ୍ଷାତ୍ ହେଲାବେଳେ ସେ କାୟା ସଙ୍ଗେ ଛାୟା ଭଳି ରହିବେ ବୋଲି ପ୍ରତିଶ୍ରୁତି ଦେଲେ । ତାଙ୍କପାଇଁ ଜୀବନ ମଧ୍ୟ ଦେବାକୁ ପ୍ରସ୍ତୁତ ଅଛନ୍ତି ବୋଲି ଜଣାଇଲେ ।

ଚନ୍ଦନ ହକ୍କୁରୀ ଗୋଆଲିଅରରେ କୋଟାଲୀସରାଇ ନିକଟରେ ଏକ କୁଟୀର ନିର୍ମାଣ କରି ଛଦ୍ମବେଶରେ ରହି ଯୁଦ୍ଧର ଫଳାଫଳକୁ ଲକ୍ଷ୍ୟ କଲେ ।

## ଲକ୍ଷ୍ମୀବାଈଙ୍କର ମୃତ୍ୟୁ

ମେଜର ହ୍ୟୁଗରୋଜ ମଧ୍ୟ ସୈନ୍ୟବାହିନୀ ଧରି ଅବିଳମ୍ବେ ଗୋଆଲିଅରରେ ପହଞ୍ଚିଲେ । ସେଠାରେ ଭୀଷଣ ଯୁଦ୍ଧ ହେଲା । ରାଣୀ ଲକ୍ଷ୍ମୀବାଈ ସେଠାରେ ଯେପରି ବୀରତ୍ୱର ସହ ଯୁଦ୍ଧ କଲେ, ତା'ର ପଟାନ୍ତର ନାହିଁ । ଶେଷରେ ଶତ୍ରୁ ପକ୍ଷର ବନ୍ଧୁକ ମୁନ ତାଙ୍କର ବକ୍ଷ ବିଦ୍ଧ କଲା । ରକ୍ତର ଧାରା ଛୁଟିଲା । ତଥାପି ସେ ଯୁଦ୍ଧ ଚଳାଇଲେ । ଗୋଟିଏ ହାତରେ ଖଣ୍ଡା ଧରି ସେ ଶତ୍ରୁର ମୁକାବିଲା କଲେ । ସେହି ସମୟରେ ଆଉ ଜଣେ ବ୍ରିଟିଶ ସିପାହି ଜଙ୍ଘରେ ଛୁରିକାବିଦ୍ଧ କଲା । ସେ ପୁଣି ଅଶ୍ୱପୃଷ୍ଠରେ ପଳାଇ ଯିବାକୁ ବସିଲେ । ମାତ୍ର ଅଶ୍ୱ ଆଉ ଚଳି ନ ଥିଲା । ଏହି ସମୟରେ ଜଣେ ଇଂରେଜ ସୈନିକର ତରବାରି ଆଘାତରେ ଲକ୍ଷ୍ମୀବାଈ ଡାହାଣ ଆଖି ହରାଇଲେ । ତଥାପି ସେ ଯୁଦ୍ଧ କରୁଥାନ୍ତି । ଶେଷରେ ଦୁଇ ଜଣ ପ୍ରଭୁଭକ୍ତ ସୈନିକ ତାଙ୍କର ଅବଶ ଶରୀରକୁ ନିକଟସ୍ଥ ସାଧୁ ଗଙ୍ଗା ଦାସ ବାବାଙ୍କ ଆଶ୍ରମକୁ ନେଇଗଲେ । ଆହତା ଲକ୍ଷ୍ମୀବାଈଙ୍କ ଆଖିରେ ପଡ଼ିଲେ ପ୍ରିୟ ଚନ୍ଦନ ହକ୍କୁରୀ । ମୁଖରୁ ତାଙ୍କର ଭଗବଦ୍‌ଗୀତାର ଶ୍ଳୋକ ବାହାରି ଆସୁଥାଏ । ତୀର୍ଥଗୁରୁଙ୍କ କୋଳରେ ତାଙ୍କର ଶେଷ ନିଶ୍ୱାସ ଉଡ଼ିଗଲା । ଶେଷକୃତ୍ୟ ସମ୍ପାଦନ କଲେ ଚନ୍ଦନ ହକ୍କୁରୀ । ଉପସ୍ଥିତ ଥିଲେ ରାମଚନ୍ଦ୍ର ରାଓ ଦେଶମୁଖ ଓ ରଘୁନାଥ ସିଂହ ।

## ଆତ୍ମଗୋପନ

ଲକ୍ଷ୍ମୀବାଈଙ୍କର ମରଶରୀରକୁ ଚିତାଗ୍ନିରେ ଦାହ କରିବାପରେ ଚନ୍ଦନ ହକ୍କୁରୀ, ରାମଚନ୍ଦ୍ର ରାଓ ଦେଶମୁଖ ଓ ରଘୁନାଥ ସିଂହ ଇଂରେଜମାନଙ୍କ ହାତରୁ ରକ୍ଷା ପାଇବାପାଇଁ ଅରଣ୍ୟରେ ଆତ୍ମଗୋପନ କଲେ । ରଘୁନାଥ ସିଂହ ଦୈବାତ୍ ବ୍ରିଟିଶ ସୈନ୍ୟମାନଙ୍କ ହାତରେ ଧରାପଡ଼ିଲେ । ଚନ୍ଦନ ହକ୍କୁରୀ ତେଣୁ ସେଠାରୁ ଚାଲିଯାଇ ରାୟବରେଲୀ, ସୁଲତାନପୁର, ଓନାଓ ପ୍ରଭୃତି ସ୍ଥାନରେ

କିଛି କାଳ ରହିଲାପରେ କାଲାକାଙ୍କରରେ ପହଞ୍ଚିଲେ । କାଲାକାଙ୍କରରେ ସେ ରାଜଗୁରୁ ହିସାବରେ ବହୁଦିନ ଧରି ରହିଲେ ।

ଚନ୍ଦନ ହଜୁରୀ କାଲାକାଙ୍କରରେ ରହିଥିଲାବେଳେ ଝାନ୍‌ସୀର ଜଣେ ଯାତ୍ରୀ ଜଗନ୍ନାଥ ଦର୍ଶନପାଇଁ ପୁରୀ ଯାଉଥିଲେ । ଲୋକେ ତାଙ୍କୁ ଚନ୍ଦନ ହଜୁରୀଙ୍କ ବିଷୟରେ ପ୍ରଶ୍ନ କଲେ । ଚନ୍ଦନ ହଜୁରୀ ଯୁଦ୍ଧରେ ପ୍ରାଣ ହରାଇଥିବା କଥା ସେ ପ୍ରକାଶ କଲେ । ଏହି ଖବର ପୁରୀରେ ପ୍ରଚାରିତ ହୋଇଗଲା । ଗଜପତି ରାଜା ଦିବ୍ୟସିଂହଦେବ ଏହି ସମ୍ବାଦରେ ମର୍ମାହତ ହୋଇପଡ଼ିଲେ । ସବୁଆଡ଼େ ଶୋକର ଛାୟା ଖେଳିଗଲା । ହିନ୍ଦୁ ଶାସ୍ତ୍ର ଅନୁଯାୟୀ ହଜୁରୀଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମାପନ କରାଗଲା । ତାଙ୍କର ସ୍ତ୍ରୀ ବିଧବା ହେଲେ ।

## ଗୃହ ପ୍ରତ୍ୟାବର୍ତ୍ତନ

ବିଦ୍ରୋହର ବହୁ ପରେ ଚନ୍ଦନ ହଜୁରୀ ଏକ କୁମାର ପୂର୍ଣ୍ଣିମା ଦିନ ପୁରୀରେ ପହଞ୍ଚିଲେ । ସେତେବେଳକୁ ବ୍ରିଟିଶ ଶାସକମାନଙ୍କର ଦମନ ଲୀଳା ପ୍ରାୟ ବନ୍ଦ ହୋଇଆସିଥିଲା । ସେ ପ୍ରଥମେ ବନ୍ଧୁ ଦିବ୍ୟସିଂହ ମିଶ୍ରଙ୍କ ଗୃହକୁ ଗଲେ । ସେ ଚନ୍ଦନ ହଜୁରୀଙ୍କୁ ଦେଖି ଆଶ୍ଚର୍ଯ୍ୟ ହୋଇପଡ଼ିଲେ । ଯାହାହେଉ ସେ ତାଙ୍କୁ ଘରେ ରଖି ଘଟି ଯାଇଥିବା ସମସ୍ତ ବିଷୟ ଜଣାଇଲେ । ତା'ପରଦିନ କାର୍ତ୍ତିକ ମାସ ପଡୁଥିବାରୁ ଚନ୍ଦନ ଆଉ ନିଜ ଗୃହକୁ ଯିବାକୁ ଉଚିତ ମନେ କଲେ ନାହିଁ । ପୁଣି ତାଙ୍କୁ ଦିବ୍ୟସିଂହଙ୍କ ଗୃହରେ ଏକ ମାସ ଆତ୍ମଗୋପନ କରିବାକୁ ପଡ଼ିଲା । ତାଙ୍କ ସ୍ତ୍ରୀ ଦିନେ ମନ୍ଦିରକୁ ଆସିଥିବାବେଳେ ଚନ୍ଦନ ଗୋପନରେ ତାଙ୍କୁ ଦେଖା କଲେ । ଚନ୍ଦନଙ୍କ ଭଉଣୀ ପାରିନାନୀ ତାଙ୍କୁ ଚହ୍ନି ପାରିଲେ । ଆନନ୍ଦରେ ସେ କହିଉଠିଲେ

''ନଇରେ ବାଳିଆ ଚହଟିଲା,
କଜ୍ଜ୍ୱଳ ସିନ୍ଦୂର ନାଆଲୋ ରାଣ୍ଡ
ପୁଣି ଚାଖି ଲେଉଟିଲା ।''

ସମସ୍ତଙ୍କ ମନରେ ଆନନ୍ଦର ଢେଉ ଖେଳିଗଲା । ମୁକ୍ତିମଣ୍ଡପ ପଣ୍ଡିତଙ୍କ ସିଦ୍ଧାନ୍ତ ଅନୁଯାୟୀ ଚାଖି ଖୁଣ୍ଟିଆଙ୍କ ସ୍ତ୍ରୀ ପୁଣି କାଚ ସିନ୍ଦୂର ଲଗାଇ ସଧବା ହେଲେ ।

## ଶେଷ ଜୀବନ

ଚନ୍ଦନ ହଜୁରୀଙ୍କୁ ସମ୍ଭବତଃ ବନ୍ଦି କରାଗଲା । ତାଙ୍କ ସମ୍ପତ୍ତି ମଧ ବାଜ୍ୟାପ୍ତ କରାଯାଇଥିଲା । ବିଦ୍ରୋହରେ ଭାଗ ନେଇଥିବା ବ୍ୟକ୍ତିମାନଙ୍କ ଅଟକ, ବିଚାର ଓ ଦଣ୍ଡପାଇଁ ୧୮୫୮ ମସିହା ମାର୍ଚ୍ଚ ମାସରେ ଜଣେ କମିସନର ନିଯୁକ୍ତ

ହେଲେ । ସମ୍ଭବତଃ, ପୁରୀର ତତ୍କାଳୀନ ମାଜିଷ୍ଟ୍ରେଟ ଚନ୍ଦନ ହଜୁରୀଙ୍କ ବିଷୟରେ କମିସନର କେ.ସି. ଉଇଲସନ୍‌ଙ୍କ ପାଖକୁ ପତ୍ର ଦେଇଥିଲେ । ଅଗଷ୍ଟ ମାସ ୧୨ ତାରିଖ୍‌ରେ କମିସନର ଚିଠିର ଉତ୍ତର ଦେଇଥିଲେ । ଚାଖି ଖୁଣ୍ଟିଆଙ୍କ ବିରୋଧରେ ତଦନ୍ତ ହୋଇ ଯେଉଁସବୁ ତଥ୍ୟ ସଂଗୃହୀତ ହୋଇଥିଲା, ତାହାକୁ ଭିତ୍ତିକରି ଅଧିକ କାଳ ତାଙ୍କୁ ଅଟକ ରଖିବା ଉଚିତ ନୁହେଁ ବୋଲି ଏ ପତ୍ରରେ ଦର୍ଶାଯାଇ ତାଙ୍କୁ ତୁରନ୍ତ ଖଲାସ କରିଦେବାକୁ ନିର୍ଦ୍ଦେଶ ଦିଆଯାଇଥିଲା । ଚାଖିଙ୍କ କାର୍ଯ୍ୟକଳାପ ସନ୍ଦେହଜନକ ହୋଇଥିବା କଥା ଜଣାଇଦେବାକୁ ପୁରୀ ମାଜିଷ୍ଟ୍ରେଟଙ୍କୁ ମଧ୍ୟ ପରାମର୍ଶ ଦିଆଯାଇଥିଲା । ପୁରୀ ମନ୍ଦିରରେ ଚାଖି ସିପାହି ପଣ୍ଡା ଭାବେ କାର୍ଯ୍ୟ କରିପାରିବେ ନାହିଁ ବୋଲି ମଧ୍ୟ ଜଣାଇ ଦିଆଗଲା ।

୧୮୫୮ ମସିହା ନଭେମ୍ବର ମାସ ୧୦ ତାରିଖରେ ପୁରୀର ମାଜିଷ୍ଟ୍ରେଟ ଆଉ ଏକ ପତ୍ର କମିସନରଙ୍କ ପାଖକୁ ଲେଖିଥିଲେ । ନଭେମ୍ବର ମାସ ୧୫ ତାରିଖରେ ତା'ର ଉତ୍ତର ଦେଇ କମିସନର କକ୍‌ବର୍ଣ୍ଣ ଜଣାଇଲେ ଯେ ମହାରାଣୀଙ୍କ କ୍ଷମା ଘୋଷଣା ଅନୁଯାୟୀ ଚାଖି ଖୁଣ୍ଟିଆ ତୁରନ୍ତ ମୁକ୍ତ ହେବେ, ତାଙ୍କ ବିରୋଧରେ ସମସ୍ତ କାର୍ଯ୍ୟାନୁଷ୍ଠାନ ସ୍ଥଗିତ ରହିବ । ବାଜ୍ୟାପ୍ତ ହୋଇଥିବା ସମ୍ପତ୍ତିର ମୂଲ୍ୟ ତାଙ୍କୁ ଫେରାଇ ଦିଆଯିବ ।

ଚନ୍ଦନ ହଜୁରୀ ଜଗନ୍ନାଥଙ୍କ ସେବାରେ ଅବଶିଷ୍ଟ ଜୀବନ କଟାଇଲେ । ମାତ୍ର ପୋଲିସ ନଜର ସଦାସର୍ବଦା ତାଙ୍କ ଉପରେ ରହିଲା । ଦିନେ ସେ ମନ୍ଦିରକୁ ଯାଇଥିବା ସମୟରେ ତାଙ୍କ ଘର ଖାନତଲାସ କରାଯାଇଥିଲା; କିନ୍ତୁ କୌଣସି ଆପତ୍ତିଜନକ ଜିନିଷ ମିଳି ନ ଥିଲା । ପୋଲିସର ସତର୍କ ଦୃଷ୍ଟି ତାଙ୍କ ଉପରେ ସଦାସର୍ବଦା ଲାଗିରହିଲା ।

ଏହି ସମୟରେ ପୁରୀକୁ ଜଣେ ମୁସଲମାନ ଫକିର ଗୁପ୍ତରେ ଆସିଥିବାର ଖବର ପ୍ରଚାରିତ ହେଲା । ସଙ୍ଗେ ସଙ୍ଗେ ଚନ୍ଦନଙ୍କୁ ଏକ ନୋଟିସ ଜାରି ହେଲା । ୧୮୫୭ ମସିହା ବିଦ୍ରୋହର ଆଉ ଜଣେ ତୁଙ୍ଗ ନେତା ଅଜିମୁଲ୍ଲା ଖାଁଙ୍କ ସଙ୍ଗେ ତାଙ୍କର କି ସମ୍ପର୍କ ଅଛି ସେ ବିଷୟରେ ସବିଶେଷ ତଥ୍ୟ ଯୋଗାଇବାକୁ କୁହାଗଲା । ପ୍ରତ୍ୟହ ପୋଲିସ ଫାଣ୍ଡିରେ ହାଜିରା ଦେବାକୁ ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା ।

ଚନ୍ଦନ ହଜୁରୀଙ୍କୁ ବହୁ କାଳ ପର୍ଯ୍ୟନ୍ତ ପ୍ରତ୍ୟହ ଫାଣ୍ଡିରେ ହାଜିରା ଦେବାକୁ ପଡ଼ିଲା । ପ୍ରଥମେ ପ୍ରଥମେ ତାଙ୍କୁ ଅସ୍ୱସ୍ତିକର ଲାଗୁଥିଲା । କାଳକ୍ରମେ ତାହା ତାଙ୍କର ଅଭ୍ୟାସରେ ପରିଣତ ହୋଇଗଲା । ଜୀବନର ଶେଷ ଭାଗରେ ସେ ଭଗବତ୍ ଆରାଧନା ଓ ସାହିତ୍ୟ ସେବାରେ ନିଜକୁ ନିୟୋଜିତ କଲେ ।

## ସାହିତ୍ୟ ସୃଷ୍ଟି

ଚାଖି ଖୁଣ୍ଟିଆ ଜଗନ୍ନାଥଙ୍କର ପରମ ଭକ୍ତ ଥିଲେ । ସାହିତ୍ୟ ପ୍ରତି ତାଙ୍କର ଅନୁରାଗ ଥିଲା । ତାଙ୍କ ରଚିତ କାବ୍ୟ 'ମାନୁବାଈ' ଉତ୍କଳୀୟ ସାହିତ୍ୟ ଗନ୍ତାଘରର ଏକ ଅମୂଲ୍ୟ ରତ୍ନ ବୋଲି ଗଣାହୁଏ ।

ସେ କେତେକ ଭଜନ ଓ ଜଣାଣ ରଚନା କରିଛନ୍ତି । ତାହା ସଂଖ୍ୟା ଦୃଷ୍ଟିରୁ କମ୍ ହୋଇପାରେ, ମାତ୍ର ଗୁଣ ଦୃଷ୍ଟିରୁ ତା'ର ସ୍ଥାନ ଅତି ଉଚ୍ଚରେ । ଚାଖି ଖୁଣ୍ଟିଆଙ୍କର ସବୁଠାରୁ ଲୋକପ୍ରିୟ ଭଜନ ହେଉଛି -

''ଚକାନୟନକୁ ପତିତ କହି
ଡକାଇ ଖର ନିଃଶ୍ୱାସ ପକାଇ
ଡକା ପକାଇ ଗରୁଡ଼ ପଛରେ
ବକାରି ମୋ ଆର୍ତ୍ତ ଶୁଣ ସତ୍ୱରେ ହେ
ଢକ୍କା ବାଜୁଛି ମହିମା ହେ
ଠକାର କରି କର୍ଣ୍ଣେ ଗିର ନ ଶୁଣ
କାହିଁକି ବିଚିତ୍ର କର୍ମା ହେ ।

× × ×

ମନ୍ଦର ଧର ନୀଳଗିରି ବାସୀ
କନ୍ଦର ବାସୀ ପ୍ରାୟେ ଅଛ ବସି
ପନ୍ଦର ନେତ୍ର ଧାତା ପୁରନ୍ଦର
ବନ୍ଦନ କରନ୍ତି ଯେଉଁ ପୟର ହେ
ଛନ୍ଦ ଛାଡ଼ ଦେବରାଜ ହେ,
ନନ୍ଦ ନନ୍ଦନ ଶ୍ରୀଚରଣର ବିନ୍ଦେ
ଚନ୍ଦନ ହଜୁରୀ ଭଣେ ହେ ।''

ସରଳ, ସାବଲୀଳ, ସୁମଧୁର ଓ ସୁନ୍ଦର ଶବ୍ଦ ମାଧ୍ୟମରେ କବି ତାଙ୍କର ଭକ୍ତି ଉଚ୍ଛ୍ୱାସକୁ ଏହି ଭଜନ ମାଧ୍ୟମରେ ପ୍ରକାଶ କରିଛନ୍ତି । ଆଲୋଚକ ହରିହର ବାହିନୀପତିଙ୍କ ଭାଷାରେ, ''ଶୋକତାପଭରା ହୃଦୟରେ ଚନ୍ଦନ ହଜୁରୀଙ୍କର ଏହି ଭଜନ ସୁବାସିତ ଚନ୍ଦନ ପ୍ରଲେପ ଭଳି ଲାଗେ ।''

ନିକଟରେ ଆଉ ଏକ ଭଜନ ଲୋକଲୋଚନକୁ ଆସିଥିବାର ଜଣାଯାଏ । ଏହା ହେଉଛି ବଡ଼ଶୃଙ୍ଗାର ପଞ୍ଚଦଶୀ । ଏହା ୧୯୭୮ ମସିହାରେ ଚାଖି ଖୁଣ୍ଟିଆ ସ୍ମୃତି ପରିଷଦ ପକ୍ଷରୁ ପ୍ରକାଶିତ ହୋଇଛି । ଏହି ଭଜନରେ ଜଗନ୍ନାଥଙ୍କ ବଡ଼ଶୃଙ୍ଗାର ବେଶ ସମୟର ନୀତିନିୟମ ବର୍ଣ୍ଣିତ ଅଛି । 'ଗୀତଗୋବିନ୍ଦ' ବା

ତୁଳସୀ ଦାସଙ୍କ ଭଜନ ଦେବଦାସୀଦ୍ୱାରା ଗାନ ହୁଏ । ମଳିନ ଆଲୋକରେ ପ୍ରଭୁ ଆଲଟ ଲାଗି ହୁଅନ୍ତି । ଅପୂର୍ବ ବେଶରେ ଶୃଙ୍ଗାର ଅଭିମୁଖୀ ହୋଇ କ୍ରମେ କ୍ରମେ ନିଦ୍ରିତ ହୋଇଯାଆନ୍ତି । ତାହା ଚାଖି ଖୁଣ୍ଟିଆଙ୍କ ଭଜନରେ ପ୍ରକାଶ ପାଇଛି –

''ଚାଖିଆ ରହି ଦୂରେ  ଚିନ୍ତଇ ନେତ୍ର ସ୍ଥିରେ
ଯେ ବେଶ ବଡ଼ ଶୃଙ୍ଗାରକୁ
ଚିନ୍ତିବା ମାତ୍ରେ ମନ  ଶୀତଳ ପ୍ରାଣ ଯେସନ
ବରଷା ନାମେ ଧନକୁ
ରେ ପାପ ନେତ୍ର
ରାଧାନାମେ ଅଙ୍କିତ  ମହାଭାବ ଜଡ଼ିତ
ରଚନା ଅଟେ ଅପ୍ରାକୃତ, ରେ ପାପନେତ୍ର ।
ଖଣ୍ଡୁଆ ତଳେ ରଖି  ଏକୁ ଆରେକେ ଦେଖି
ନୀଳାଦ୍ରି କେଶରୀ ମଣନ୍ତି
ଶୟନ ସୁଖ ସାର  ଏ ବେଶ ମନୋହର
ପିନ୍ଧିଣ ସୁଖେ ପହୁଡ଼ନ୍ତି
ରେ ପାପ ନେତ୍ର
ମୋ ନେତ୍ରେ ପଟେ ଲାଖି  ହେଉ ନିରତ ସୁଖୀ
ଚନ୍ଦନ ହଜୁରୀ ଭଣତିରେ
ରେ ପାପ ନେତ୍ର ।''

ଚନ୍ଦନ ହଜୁରୀଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ ପୁରୀରେ ଏକ ସ୍ମୃତି ପରିଷଦ ଗଠିତ ହୋଇଅଛି । ତାଙ୍କର ଖାଇବା ଥାଳି, ଦୁଧ ପିଇବା ବେଲା, ଭାର ଉଠାଇବାପାଇଁ ବ୍ୟବହୃତ ପଥର ଓ ବ୍ୟାୟାମ କଲାବେଳେ ଦରକାର ହେଉଥିବା ଗଦା ପ୍ରଭୃତି ଏଥିରେ ସଂରକ୍ଷିତ ଅଛି । ତାଙ୍କର ସ୍ମୃତି ଜାଗରୂକ କରିବାପାଇଁ ପ୍ରତିବର୍ଷ ଜାନୁଆରୀ ମାସ ୫ ତାରିଖରେ ଜୟନ୍ତୀ ଉତ୍ସବ ପାଳିତ ହେଉଛି ।

ଏକାଧାରରେ ବିପ୍ଳବୀ, ବୀର, ଜଗନ୍ନାଥଙ୍କ ଭକ୍ତ ଓ ସାହିତ୍ୟରଥି ହିସାବରେ ଚନ୍ଦନ ହଜୁରୀ ଉତ୍କଳର ଜନମାନସରେ ଚିରଦିନ ବନ୍ଦନୀୟ ହୋଇ ରହିବେ ।



## ବିପ୍ଳବୀ ବୀର
# ସୁରେନ୍ଦ୍ର ସାଏ

ସମ୍ବଲପୁରର ବିପ୍ଳବୀ ବୀର ସୁରେନ୍ଦ୍ର ସାଏ କେବଳ ସମ୍ବଲପୁର ନୁହେଁ, ଓଡ଼ିଶାର ତଥା ଭାରତର ସ୍ୱାଧୀନତା ସଂଗ୍ରାମର ମନ୍ତ୍ରଦାତା ରୂପେ ଚିର ସ୍ମରଣୀୟ । ସମ୍ବଲପୁରକୁ ଇଂରେଜମାନଙ୍କ ହାତରୁ ରକ୍ଷା କରି ସ୍ୱାଧୀନ କରିବାର ସ୍ୱପ୍ନ ଦେଖି ସେ ଯେଉଁ ଗଣବିପ୍ଳବ ତୋଳିଥିଲେ, ତାହା ଥିଲା ଅଭୂତପୂର୍ବ ।

### ପରିବାର ଓ ବାଲ୍ୟଜୀବନ

ସମ୍ବଲପୁରର ପ୍ରଥମ ଚୌହାଣ ରାଜା ବଳରାମଦେବଙ୍କଦ୍ୱାରା ପ୍ରତିଷ୍ଠିତ ହୋଇଥିଲା । ଆରାଧ୍ୟା ଦେବୀ ସମଲେଶ୍ୱରୀଙ୍କ ନାମ ଅନୁସାରେ ସହରର ନାମକରଣ ହୋଇଥିବାର ଜଣାଯାଏ ।

ସମ୍ବଲପୁର ରାଜବଂଶର ଚତୁର୍ଥ ରାଜା ମହାରାଜା ମଧୁକର ସାଏଙ୍କର ଚାରି ଗୋଟି ପୁତ୍ର ଥିଲେ । ପ୍ରଥମ ପୁତ୍ର ହେଲେ ବଳିଆର ସିଂହ । ଅନିରୁଦ୍ଧ ସାଏ ଦ୍ୱିତୀୟ ପୁତ୍ର ଥିଲେ । ସେ ପିତାଙ୍କଠାରୁ ଖିଣ୍ଡା ଓ ରାଜପୁର ଜମିଦାରୀ ପାଇଥିଲେ । ତୃତୀୟ ପୁତ୍ର ମଦନଗୋପାଳ ସୋନପୁର ଅଞ୍ଚଳ ପାଇଥିଲେ । ଚତୁର୍ଥ ପୁତ୍ର ବଂଶୀଗୋପାଳ ସନ୍ନ୍ୟାସୀ ହୋଇଥିଲେ । ଅନିରୁଦ୍ଧ ସାଏ ମଧ ତାଙ୍କ ଜମିଦାରୀ ଦୁଇଟିକୁ ତାଙ୍କ ଦୁଇ ପୁତ୍ରଙ୍କ ମଧ୍ୟରେ ବାଣ୍ଟି ଦେଇଥିଲେ । ଜ୍ୟେଷ୍ଠପୁତ୍ର

ମାଧବ ସିଂହ ଖିଣ୍ଡା ଜମିଦାରୀ ଓ ରାଜସିଂହ ରାଜପୁର ଜମିଦାରୀ ପାଇଲେ । ମାଧବ ସିଂହଙ୍କର ଉତ୍ତରାଧିକାରୀ ଥିଲେ ଧରମ ସିଂହ । ତାଙ୍କର ଜ୍ୟେଷ୍ଠପୁତ୍ର ହେଲେ ସୁରେନ୍ଦ୍ର ସାଏ ।

ସୁରେନ୍ଦ୍ର ସାଏ ୧୮୦୯ ମସିହା ଜାନୁଆରୀ ୨୩ରେ ନିଜ ଗ୍ରାମ ଖିଣ୍ଡାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ମାତାଙ୍କ ନାମ ରେବତୀ ଦେବୀ । ସୁରେନ୍ଦ୍ର ଛଅ ଭାଇ ଥିଲେ । ସେମାନେ ହେଲେ ଉଦନ୍ତ ସାଏ, ଧ୍ରୁବ ସାଏ, ଉଜ୍ଜ୍ୱଳ ସାଏ, ଛବିଳ ସାଏ ଓ ମେଦିନୀ ସାଏ । ଏକମାତ୍ର ଭଉଣୀର ନାମ ଥିଲା ଅଞ୍ଜନା । ସେମାନଙ୍କ ପିତା ଧରମ ସିଂହ ଥିଲେ ଅତ୍ୟନ୍ତ ଶାନ୍ତ, ଶିଷ୍ଟ ଓ ଧର୍ମପରାୟଣ । ସେ ତାଙ୍କର ସନ୍ତାନମାନଙ୍କୁ ଉପଯୁକ୍ତ ଶିକ୍ଷାଦେବାର ବ୍ୟବସ୍ଥା କରିଥିଲେ । ସୁରେନ୍ଦ୍ର ସାଏଙ୍କ ସମେତ ଭାଇମାନେ ବିଦ୍ୟାଶିକ୍ଷା ଦିଗରେ ସେପରି ଆଗ୍ରହ ଦେଖାଇ ନ ଥିଲେ । ଅଧିକାଂଶ ସମୟ ଶରୀର ଚର୍ଚ୍ଚା, ଘୋଡ଼ାଦୌଡ଼, ଶରସନ୍ଧାନ, ତରବାରି ଚାଳନା ପ୍ରଭୃତିରେ କଟାଉଥିଲେ । ପିତାଙ୍କ ମୃତ୍ୟୁ ପରେ ସେମାନେ ପିତୃବ୍ୟ ବଳରାମ ସାଏଙ୍କ ଦ୍ୱାରା ଲାଳିତ ପାଳିତ ହୋଇଥିଲେ । ସେ ସେମାନଙ୍କର ବନ୍ଧୁ, ଉପଦେଷ୍ଟା ଓ ପଥପ୍ରଦର୍ଶକ ଭାବେ କାର୍ଯ୍ୟ କରିଥିଲେ । ସୁରେନ୍ଦ୍ର ସାଏଙ୍କୁ ଇଂରେଜମାନେ ସୁରନ୍ଦର ସାହୀ ବୋଲି କହୁଥିଲେ ।

ସୁରେନ୍ଦ୍ର ସାଏ ଯଥାସମୟରେ ତତ୍କାଳୀନ ଛୋଟନାଗପୁର ଅଧୀନସ୍ଥ ଗାଙ୍ଗପୁର ରାଜ୍ୟର ହାତିବାଡ଼ି ଜମିଦାରଙ୍କ କନ୍ୟାଙ୍କୁ ବିବାହ କଲେ । ତାଙ୍କର ଏକମାତ୍ର ପୁତ୍ର ହେଲେ ମିତ୍ରଭାନୁ ସାଏ ।

## ପୃଷ୍ଠଭୂମି

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ମରହଟ୍ଟାମାନଙ୍କୁ ପରାସ୍ତ କଲେ । ୧୮୦୫ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ସମ୍ବଲପୁର ଇଂରେଜମାନଙ୍କ ଶାସନାଧୀନ ହୋଇ ରହିଲା । କିନ୍ତୁ ସେମାନେ ଦୃଢ଼ ଭାବେ ଶାସନ ଚଳାଇ ପାରିଲେ ନାହିଁ । ରାଜ୍ୟରେ ଇଂରେଜ ସୈନ୍ୟ ଓ ଅଧିବାସୀମାନଙ୍କ ମଧ୍ୟରେ ସଂଘର୍ଷ ବରାବର ଲାଗିରହିଲା । ଶେଷକୁ ରାଣୀ ରତନକୁମାରୀ ବିଦ୍ରୋହ ଆରମ୍ଭ କଲେ । ୧୮୦୬ ଖ୍ରୀଷ୍ଟାବ୍ଦରେ ମରହଟ୍ଟା ଓ ଇଂରେଜମାନଙ୍କ ମିଳିତ ଉଦ୍ୟମରେ ରାଣୀ ରତନକୁମାରୀଙ୍କ ବିଦ୍ରୋହ ଦମନ କରାଗଲା ।

୧୮୧୯ ଖ୍ରୀଷ୍ଟାବ୍ଦରେ ସମ୍ବଲପୁର ଇଂରେଜମାନଙ୍କର ପୁଣି ଶାସନାଧୀନ ହେଲା । ଏହାର ଏକ ବର୍ଷ ପରେ ଅର୍ଥାତ୍ ୧୮୨୦ ଖ୍ରୀଷ୍ଟାବ୍ଦରେ ଜୟନ୍ତ ସିଂହଙ୍କ ମୃତ୍ୟୁ ହେଲା । ଇଂରେଜମାନେ ତାଙ୍କର ପୁତ୍ର ମହାରାଜା ସାଏଙ୍କୁ ସିଂହାସନରେ

ବସାଇଲେ । ସେ କେବଳ ନାମକୁମାତ୍ର ରାଜା ହେଲେ । ଇଂରେଜମାନେ ପ୍ରକୃତରେ ଶାସନ ଚଳାଇଲେ । ଏହାର କେତେବର୍ଷ ପରେ ମହାରାଜା ସାଏଙ୍କର ମୃତ୍ୟୁ ହେଲା । ସେ ଅପୁତ୍ରକ ଥିଲେ । ତେଣୁ ଇଂରେଜମାନେ ତାଙ୍କର ବିଧବା ପତ୍ନୀ ମୋହନ କୁମାରୀଙ୍କୁ ସିଂହାସନରେ ବସାଇଲେ । ମାତ୍ର ତାହା ପରମ୍ପରା ବିରୋଧୀ ଥିଲା । ଜଣେ ବିଧବା ରାଣୀଙ୍କଦ୍ୱାରା ଶାସିତ ହେବାପାଇଁ ଲୋକେ ଚାହିଁଲେ ନାହିଁ । ତେଣୁ ଇଂରେଜ ସରକାରଙ୍କ ସମର୍ଥିତ ରାଣୀ ଓ ତାଙ୍କର ସମର୍ଥକମାନଙ୍କ ବିରୋଧରେ ବିଦ୍ରୋହ ଆରମ୍ଭ ହୋଇଗଲା ।

ସମ୍ବଲପୁର ସିଂହାସନପାଇଁ ବହୁ ବ୍ୟକ୍ତିଙ୍କର ଦାବି ଥିଲା । ପ୍ରଥମ ଦାବିଦାର ଥିଲେ ସମ୍ବଲପୁର ରାଜବଂଶର ଅଷ୍ଟମ ରାଜା ଅଜିତ ସିଂହଙ୍କ ଭ୍ରାତା ହରିବଂଶ ସିଂହଙ୍କର ପୌତ୍ର ରଣଜିତ ସିଂହ । ମହାରାଜା ସାଏ ତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ତାଙ୍କୁ ରାଜଗାଦିରେ ବସାଇବାର ଆଶା ଦେଉଥିଲେ । ଷଷ୍ଠ ରାଜା ରତନସିଂହଙ୍କ ଭ୍ରାତା ବିକ୍ରମ ସିଂହଙ୍କର ବଂଶଧର ବରପାଲି ଜମିଦାର ଭବାନୀ ସିଂହ ଦ୍ୱିତୀୟ ଦାବିଦାର ଥିଲେ । ମଧୁକର ସାଏଙ୍କ ତୃତୀୟ ପୁତ୍ର ମଦନଗୋପାଳଙ୍କର ବଂଶଧର ସୋନପୁର ରାଜା ପୃଥ୍ୱୀ ସିଂହଦେବଙ୍କ ସିଂହାସନ ଉପରେ ମଧ ଦାବି ଥିଲା । ଅନିରୁଦ୍ଧ ସାଏଙ୍କର ବଂଶଧର ଖିଣ୍ଡା ଜମିଦାର ତଥା ସୁରେନ୍ଦ୍ର ସାଏଙ୍କ ପିତୃବ୍ୟ ବଳରାମ ସାଏ ମଧ ସମ୍ବଲପୁର ରାଜସିଂହାସନରେ ବସିବାକୁ ଆଶା କରିଥିଲେ ।

ମହାରାଣୀ ମୋହନକୁମାରୀ ସିଂହାସନରେ ବସିଲାପରେ ଝାରସୁଗୁଡ଼ାରେ ଏକ ଜମିଦାରୀ ସୃଷ୍ଟି କରାଗଲା ଓ ରଣଜିତ ସିଂହଙ୍କୁ ଜମିଦାର କରି ସେଠାକୁ ପଠାଗଲା । ସୋନପୁରରେ ଅବସ୍ଥାପିତ ପୃଥ୍ୱୀ ସିଂହ ମଧ ସମ୍ବଲପୁରର ରାଜା ହେବା ସମ୍ଭବ ନ ଥିଲା । ରଣଜିତ ସିଂହ ଝାରସୁଗୁଡ଼ା ସିଂହାସନ ପାଇ ସନ୍ତୁଷ୍ଟ ନ ଥିଲେ । ସେ ତେଣୁ ରାଜଗାଦିପାଇଁ ବିଦ୍ରୋହ କଲେ । ରାଣୀ ମୋହନକୁମାରୀ ରଣଜିତ ସିଂହ ଓ ତାଙ୍କ ଦୁଇ ଭାଇ ଭୂପାଳ ସିଂହ ଓ ଭବାନୀ ସିଂହଙ୍କୁ ଗିରଫ କରି ସମ୍ବଲପୁରରେ ଅଟକବନ୍ଦି କରି ରଖିଲେ । ଏହା ପରେ ରଣଜିତଙ୍କ ପୁତ୍ର ଗୋବିନ୍ଦ ସିଂହଙ୍କ ନେତୃତ୍ୱରେ ବିଦ୍ରୋହ ତେଜି ଉଠିଲା । ଇଂରେଜ ସେନାପତି ଉଇଲକିନସନ୍ ଓ ଲେଫଟନାଣ୍ଟ ହିଗିନସ୍ ବହୁ କଷ୍ଟରେ ବିଦ୍ରୋହ ଦମନ କଲେ । ରଣଜିତ ସିଂହ, ଗୋବିନ୍ଦ ସିଂହ ପ୍ରଭୃତିଙ୍କୁ କ୍ଷମା ଦିଆଗଲା ଓ ଝାରସୁଗୁଡ଼ା ଜମିଦାରୀ ଫେରାଇ ଦିଆଗଲା । ୧୮୩୩ ଖ୍ରୀଷ୍ଟାବ୍ଦରେ ପୁଣି ବିଦ୍ରୋହ ଦେଖାଦେଲା । ରାଣୀ ସେ ବିଦ୍ରୋହ ଦମନ କରିବାକୁ ଅସମର୍ଥା ହେଲେ । ଇଂରେଜମାନେ ତେଣୁ ତାଙ୍କୁ ଗାଦିଚ୍ୟୁତ କଲେ ଓ ବରପାଲି ଜମିଦାର ଭବାନୀ

ସିଂହଙ୍କ ପିତୃବ୍ୟ ନାରାୟଣ ସିଂହଙ୍କୁ ୧୮୩୩ ଖ୍ରୀଷ୍ଟାବ୍ଦ ଅକ୍ଟୋବର ୧୧ ତାରିଖରେ ରାଜଗାଦିରେ ବସାଇଲେ । ରାଣୀ ମାସିକ ଭତ୍ତା ୬୦୦ ଟଙ୍କା ପାଇ ପ୍ରଥମେ କଟକ ଓ ପରେ ଖୋର୍ଦ୍ଧାରେ ରହିଲେ ।

ରାଜା ନାରାୟଣ ସିଂହ ରାଜ୍ୟର ଗୁରୁଦାୟିତ୍ୱ ତୁଲାଇବାକୁ ପ୍ରଥମେ ଅସାମର୍ଥ୍ୟ ପ୍ରକାଶ କରିଥିଲେ । ପରେ ରାଣୀଙ୍କ ପ୍ରରୋଚନା ଓ ଇଂରେଜମାନଙ୍କ ଚାପ ଫଳରେ ସେ ଦାୟିତ୍ୱ ଗ୍ରହଣ କଲେ । ସେ କିନ୍ତୁ ନାମକୁମାତ୍ର ରାଜା ଥିଲେ । ଇଂରେଜମାନେ ତାଙ୍କ ନାମରେ ଶାସନ ଚଳାଇଲେ ।

ସେତେବେଳେ ସମ୍ବଲପୁର କେତେଗୁଡ଼ିଏ ଜମିଦାରୀରେ ବିଭକ୍ତ ଥିଲା । ସେହି ଜମିଦାରମାନେ ମୁଖ୍ୟତଃ ଗଣ୍ଡ ଆଦିବାସୀ ସମ୍ପ୍ରଦାୟର ଥିଲେ । ସେହି ଜମିଦାରମାନେ ଅତ୍ୟନ୍ତ ପ୍ରଭାବଶାଳୀ ଥିଲେ । ସେମାନେ ନୂତନ ରାଜାଙ୍କ ଅଭିଷେକ ସମୟରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରୁଥିଲେ । ଏପରିକି ସେମାନେ ରାଜାଙ୍କୁ ସ୍ୱୀକାର ନ କଲା ପର୍ଯ୍ୟନ୍ତ ଅଭିଷେକ ଅପୂର୍ଣ୍ଣ ରହୁଥିଲା । ମାତ୍ର ଇଂରେଜମାନେ ଆଦିବାସୀ ଜମିଦାରମାନଙ୍କୁ କୌଣସି ଗୁରୁତ୍ୱ ଦେଲେ ନାହିଁ । ସେମାନଙ୍କ ଶାସନରେ ଆଦିବାସୀମାନେ ଅତ୍ୟାଚାରିତ ହେଲେ । ସେମାନଙ୍କ ଖଜଣା ବୃଦ୍ଧି କରାଗଲା । ବିଶେଷତଃ, ବିଦ୍ରୋହୀମାନଙ୍କ ଉପରେ ଅତ୍ୟାଚାର ଚାଲିଲା । ବିଦ୍ରୋହୀମାନଙ୍କର ଗାଁ-ଗଣ୍ଡା ପୋଡ଼ି ଦିଆଯାଇଥିଲା । ରାଜା ନାରାୟଣ ସିଂହ ମଧ୍ୟ ନିଜ ଇଚ୍ଛା ବିରୋଧରେ ଇଂରେଜମାନଙ୍କ ଚାପରେ ବହୁ ଲୋକଙ୍କୁ ଅନ୍ୟାୟରେ ଫାଶୀ ଦେଇଥିଲେ ।

## ସିଂହାସନ ଦାବି

ନାରାୟଣ ସିଂହଙ୍କୁ ସମସ୍ତେ ଘୃଣା କରୁଥିଲେ । ତାଙ୍କ ମାତା ନୀଚବଂଶୀୟା ଥିଲେ । ତାଙ୍କୁ 'ବାବୁ' ବୋଲି ସମ୍ବୋଧନ କରାଯାଉଥିଲା । ସେ ମଧ୍ୟ ରାଣୀ ମୋହନକୁମାରୀଙ୍କ ଦେହରକ୍ଷୀ ଥିଲେ । ସେ ରାଜା ହେବା ପରେ ରାଜ୍ୟରେ ଘୋର ଅସନ୍ତୋଷ ଦେଖାଦେଲା । ରାଜା ବ୍ରାହ୍ମଣ ଓ ଅନ୍ୟାନ୍ୟ ପ୍ରଭାବଶାଳୀ ବ୍ୟକ୍ତିମାନଙ୍କୁ ନିଜ ପଟକୁ ନେବାପାଇଁ ଲାଗିପଡ଼ିଲେ । ବ୍ରାହ୍ମଣମାନଙ୍କୁ ଉତ୍କୃଷ୍ଟ ଜମି ଦିଆଗଲା । ସେମାନେ ଅବୈଧଭାବେ ଅର୍ଥ ଆଦାୟ କଲେ । ଆଦିବାସୀମାନେ ଉତ୍କୃଷ୍ଟ ଜମି ହରାଇବା ଆଶଙ୍କାରେ ଆତଙ୍କିତ ହେଲେ । ଅପରପକ୍ଷରେ ସୁରେନ୍ଦ୍ର ସାଏଙ୍କ ବ୍ୟକ୍ତିତ୍ୱ ମହାନ୍ ଥିଲା । ତାଙ୍କର ସାହସ ଓ ବୀରତ୍ୱରେ ସମସ୍ତେ ମୁଗ୍ଧ ହେଉଥିଲେ । ତାଙ୍କର ମାତୃଭୂମି ପ୍ରତି ପ୍ରଗାଢ଼ ଶ୍ରଦ୍ଧା ଥିଲା । ତେଣୁ ସେମାନେ ସୁରେନ୍ଦ୍ର ସାଏଙ୍କୁ ହାର୍ଦ୍ଦିକ ସମର୍ଥନ କଲେ । ବଳରାମ ସାଏ

ମଧ୍ୟ ସମ୍ବଲପୁର ସିଂହାସନର ଆଶା ଛାଡ଼ି ଗଣ୍ଡ ଜମିଦାରମାନଙ୍କୁ ସଙ୍ଗଠିତ କରିବା ଦିଗରେ ଲାଗିପଡ଼ିଲେ । ସମ୍ବଲପୁର ରାଜଗାଦିପାଇଁ ନିଜର ଭ୍ରାତୃଷ୍ପୁତ୍ର ସୁରେନ୍ଦ୍ର ସାଏଙ୍କୁ ସମର୍ଥନ କରିବାପାଇଁ ସମସ୍ତଙ୍କୁ ପ୍ରବର୍ତ୍ତାଇଲେ । କ୍ରମେ ସୁରେନ୍ଦ୍ର ସାଏଙ୍କ ପ୍ରତି ସମର୍ଥନ ବୃଦ୍ଧି ପାଇଲା ।

ରାଜା ନାରାୟଣ ସିଂହ ସୁରେନ୍ଦ୍ର ସାଏଙ୍କ ଜନପ୍ରିୟତାରେ ଆତଙ୍କିତ ହୋଇପଡ଼ିଲେ । ସେ ସୁରେନ୍ଦ୍ର ସାଏଙ୍କୁ ଦମନ କରିବାପାଇଁ ଉଦ୍ୟମ କଲେ । ଲକ୍ଷ୍ମଣପୁରର ଗଣ୍ଡ ଜମିଦାର ବଳଭଦ୍ର ଦାଓ (ଦେଓ) ସୁରେନ୍ଦ୍ର ସାଏଙ୍କ ସମର୍ଥକ ଥିଲେ । ତାଙ୍କର ଏକ ଶକ୍ତିଶାଳୀ ସେନାବାହିନୀ ଥିଲା । ବିପ୍ଳବୀମାନେ ବାରପାହାଡ଼ ପର୍ବତର ଡେବ୍ରୀଗଡ଼ ଦୁର୍ଗରେ ଅସ୍ତ୍ରଶସ୍ତ୍ର ଧରି ରହୁଥିଲେ । ସୁରେନ୍ଦ୍ର ଓ ବଳଭଦ୍ର ଦାଓ ସେଠାରେ ବିଶ୍ରାମ ନେଉଥିବା ସମୟରେ ରାଜା ପାହାଡ଼ଗଣ୍ଡା ନାମକ ସୁରେନ୍ଦ୍ରଙ୍କ ଜଣେ ଅନୁଚରଠାରୁ ଖବର ପାଇ ଦଳେ ସୈନ୍ୟଙ୍କୁ ପଠାଇଲେ । ସେମାନେ ତାଙ୍କ ଉପରେ ଅତର୍କିତଭାବେ ଆକ୍ରମଣ କଲେ । ସେଥିରେ ବଳଭଦ୍ର ଦାଓ ନିହତ ହେଲେ । ସୁରେନ୍ଦ୍ର ସାଏ ଗୁରୁତରଭାବେ ଆହତ ହୋଇ ସେଠାରୁ ପଳାୟନ କଲେ । ବଳଭଦ୍ରଙ୍କ ମୃତ୍ୟୁ ଖବର ପାଇ ଆଦିବାସୀମାନେ ଶୋକାଭିଭୂତ ହୋଇପଡ଼ିଲେ । ସେମାନଙ୍କର ସୁରେନ୍ଦ୍ରଙ୍କ ପ୍ରତି ଅନୁରକ୍ତି ଆହୁରି ବୃଦ୍ଧି ପାଇଲା ।

ରାମପୁର ଜମିଦାର ରାଜା ନାରାୟଣ ସିଂହଙ୍କର ବଡ଼ ସମର୍ଥକ ଥିଲେ । ସେ ବିପ୍ଳବୀମାନଙ୍କର ସନ୍ଧାନ ରାଜାଙ୍କୁ ଦେଉଥିଲେ । ସେ ମଧ୍ୟ ନାରାୟଣ ସିଂହଙ୍କ ସପକ୍ଷରେ ଜନମତ ସୃଷ୍ଟି କରିବାକୁ ଉଦ୍ୟମ କରୁଥିଲେ । ସୁରେନ୍ଦ୍ର ସାଏ ଜଣେ ଦୂତ ପଠାଇ ରାମପୁର ଜମିଦାରଙ୍କୁ ସେଥିରୁ ନିବୃତ୍ତ ହେବାପାଇଁ ପରାମର୍ଶ ଦେଲେ । ମାତ୍ର ସେ ଅପମାନ ଦେଇ ଦୂତକୁ ବିଦା କରିଦେଲେ । ସୁରେନ୍ଦ୍ର ସାଏ ତେଣୁ କ୍ରୋଧାନ୍ୱିତ ହୋଇପଡ଼ିଲେ । ତାଙ୍କର କେତେଜଣ ସମର୍ଥକ ରାମପୁରଗଡ଼ ଅତର୍କିତଭାବେ ଆକ୍ରମଣ କରି ଦୁର୍ଗକୁ ଧ୍ୱଂସ କରିଦେଲେ ଓ ପରିବାରର କେତେଜଣଙ୍କୁ ହତ୍ୟା କଲେ । ଜମିଦାର ଅନ୍ୟ ଉପାୟ ନ ଦେଖି ହିମଗିରି ପଳାଇଲେ । ଏହା ପରେ ଗଣ୍ଡ ଜମିଦାରମାନେ ଚୌହାଣ ବୀରଙ୍କୁ ରାଜାର ସମ୍ମାନ ଦେଲେ ।

## ପ୍ରଥମ କାରାଦଣ୍ଡ

ଇଂରେଜମାନେ ଅବିଳମ୍ବେ ବିରାଟ ଫଉଜ ଧରି ରାମପୁର ଯାତ୍ରା କଲେ । ସୁରେନ୍ଦ୍ର ସାଏ ପାଟଣା ଯିବା ବାଟରେ ଇଂରେଜମାନଙ୍କୁ ଭେଟିଲେ । ଯୁଦ୍ଧରେ ସୁରେନ୍ଦ୍ର ପରାସ୍ତ ହେଲେ । ବିଚାରରେ ବଳରାମ ସାଏଙ୍କୁ ଆଜୀବନ କାରାଦଣ୍ଡ

ହେଲା । ସୁରେନ୍ଦ୍ର ସାଏଙ୍କୁ ପାଞ୍ଚ ବର୍ଷ ଓ ଉଦନ୍ତ ସାଏଙ୍କୁ ସାତ ବର୍ଷ କାରାଦଣ୍ଡ ହେଲା । ଜେଲ ଭିତରେ ବଳରାମ ସାଏଙ୍କ ମୃତ୍ୟୁ ହେଲା । ସୁରେନ୍ଦ୍ର ସାଏ ଓ ଉଦନ୍ତ ସାଏ ହଜାରିବାଗ ଜେଲରେ କାରାଦଣ୍ଡ ଭୋଗ କଲେ ।

କଟକର କମିସନର ଏକ ଦୀର୍ଘ ପତ୍ରରେ ସୁରେନ୍ଦ୍ର ସାଏଙ୍କ ଦଣ୍ଡ ଯୁକ୍ତିଯୁକ୍ତ ନୁହେଁ ବୋଲି ଦର୍ଶାଇଥିଲେ । ଏପରିକି ତାହା ଆଇନ ବିରୋଧୀ ବୋଲି ମତ ଦେଇଥିଲେ । କିନ୍ତୁ ବଙ୍ଗ ସରକାର ତାଙ୍କର ଯୁକ୍ତିକୁ ଗ୍ରହଣ କରି ନ ଥିଲେ । ଅନ୍ୟ ଉପାୟ ନ ଦେଖି ଆସାମୀମାନେ ସଶସ୍ତ୍ର ରାମପୁର ଯାଇ ଲୁଣ୍ଠନ ପ୍ରଭୃତି କରିଥିବା ଯୋଗୁଁ ଫାଶୀ ପାଇବାକୁ ହକ୍‌ଦାର ବୋଲି ଜଣାଇଥିଲେ ।

ସୁରେନ୍ଦ୍ର ସାଏ ହଜାରିବାଗ ଜେଲରେ ଥିବା ସମୟରେ ୧୮୪୯ ସେପ୍ଟେମ୍ବର ମାସ ୧୦ ତାରିଖରେ ରାଜା ନାରାୟଣ ସିଂହଙ୍କର ମୃତ୍ୟୁ ହେଲା । ସେ ଅପୁତ୍ରକ ଥିଲେ । ତାଙ୍କ ମୃତ୍ୟୁ ପରେ ତାଙ୍କ ପତ୍ନୀ ମୁଖପାଳ ଦେବୀ ଅଳ୍ପ କାଳ ଶାସନ କରିଥିଲେ । ମାତ୍ର ସେ ସମ୍ବଲପୁର ଶାସନଭାର ଇଂରଜମାନଙ୍କ ହସ୍ତରେ ନ୍ୟସ୍ତ କଲେ । ସମ୍ବଲପୁର ଇଂରେଜମାନଙ୍କ ଦଖଲକୁ ଆସିଲା ।

## ହଜାରିବାଗ ଜେଲରୁ ପଳାୟନ

୧୮୫୭ ମସିହାରେ ଇଂରେଜ ଶାସନ ବିରୋଧରେ ଏକ ମହାନ୍ ବିଦ୍ରୋହ ଆରମ୍ଭ ହେଲା । ସିପାହିମାନଙ୍କଦ୍ୱାରା ଏହି ବିଦ୍ରୋହ ହୋଇଥିବାରୁ ଏହାକୁ ସିପାହି ବିଦ୍ରୋହ କୁହାଯାଇଥିଲା । ହଜାରିବାଗ ଜେଲରେ ବଙ୍ଗଳାର ପଦାତିକ ବାହିନୀର ଦୁଇ ସୈନ୍ୟଦଳ ନିଯୁକ୍ତ ଥିଲେ । ମିରଟରେ ବିଦ୍ରୋହ ଆରମ୍ଭ ହେବାମାତ୍ରେ ସେମାନେ ବିଦ୍ରୋହରେ ଯୋଗ ଦେଲେ । ଜେଲର ସୁରକ୍ଷାପାଇଁ ରାଞ୍ଚିରୁ ରାମଗଡ଼ ସେନାବାହିନୀର ଏକ କ୍ଷୁଦ୍ର ପଦାତିକ ବାହିନୀ ହଜାରିବାଗ ଗଲେ । ସେମାନେ ହଜାରିବାଗରେ ପହଞ୍ଚିବା ମାତ୍ରେ ସେଠାକାର ସିପାହିମାନଙ୍କ ସହିତ ଯୋଗଦେଲେ । ଜୁଲାଇ ମାସ ୩୧ ତାରିଖରେ ସେମାନେ ହଜାରିବାଗ ଜେଲ ଭାଙ୍ଗି ବନ୍ଦୀମାନଙ୍କୁ ଖଲାସ କରିଦେଲେ ।

ବନ୍ଦିଶାଳାରୁ ଯେଉଁମାନେ ବାହାରିଆସିଲେ ସେମାନଙ୍କ ମଧ୍ୟରେ ଥିଲେ ସୁରେନ୍ଦ୍ର ସାଏ ଓ ତାଙ୍କର ଭାଇ ଉଦନ୍ତ ସାଏ । ସେମାନେ ବିଦ୍ରୋହୀ ସିପାହିମାନଙ୍କ ସହ କିଛି କାଳ କଟାଇ ଶେଷରେ ସିଂହଭୂମ ବିଦ୍ରୋହରେ ଭାଗ ନେବାପାଇଁ ଚାଇଁବସା ଅଭିମୁଖେ ଯାତ୍ରା କଲେ । ସୁରେନ୍ଦ୍ର ସାଏ କିନ୍ତୁ ପ୍ରଥମେ ମାତୃଭୂମି ସମ୍ବଲପୁରକୁ ଇଂରେଜମାନଙ୍କ ହାତରୁ ମୁକ୍ତ କରିବାକୁ ଚାହିଁଲେ । ସିପାହିମାନଙ୍କ ସହିତ ନ ଯାଇ ସେ ସମ୍ବଲପୁର ଫେରିଆସିଲେ ।

ସୁରେନ୍ଦ୍ର ସାଏଙ୍କ ସମ୍ବଲପୁର ଆସୁଥିବା ଖବର ପାଇ ତତ୍କାଳୀନ ସମ୍ବଲପୁରର ଆସିଷ୍ଟାଣ୍ଟ କମିସନର କ୍ୟାପ୍‌ଟେନ ଲି' ଆତଙ୍କିତ ହୋଇପଡ଼ିଲେ । ସୁରେନ୍ଦ୍ର ସାଏଙ୍କ ଗତିବିଧି ସମ୍ପର୍କରେ ଖବର ସଂଗ୍ରହପାଇଁ ଅଧିକ ଗୁପ୍ତଚର ନିଯୁକ୍ତ କଲେ । ସହର ତଥା ନିଜର ନିରାପତ୍ତାପାଇଁ ଅଧିକ ସୈନ୍ୟ ମୁତୟନ କଲେ । ପରିସ୍ଥିତି ଖରାପ ହେଲେ ସେ ଓ ତାଙ୍କ ସ୍ତ୍ରୀ ବାହାରକୁ ଖସି ଚାଲିଯିବାର ବ୍ୟବସ୍ଥା ମଧ୍ୟ ହେଲା । ଅଧିକ ସୈନ୍ୟ ପଠାଇବାକୁ ସେ କଟକରେ ଅବସ୍ଥାପିତ କମିସନର ଜେନେରାଲଙ୍କୁ ନିବେଦନ କଲେ । ଶେଷରେ ସୁରେନ୍ଦ୍ର ସାଏ ଓ ଉଦନ୍ତ ସାଏଙ୍କୁ ଧରାଇଦେବାପାଇଁ ୨୫୦ ଟଙ୍କା ଲେଖାଏଁ ପୁରସ୍କାର ଘୋଷଣା କରାଗଲା ।

## କ୍ୟାପ୍‌ଟେନ ଲି'ଙ୍କ ସହ ସାକ୍ଷାତ

ସେପ୍ଟେମ୍ବର ମାସ ଶେଷଆଡ଼କୁ ସୁରେନ୍ଦ୍ର ସାଏ ଓ ଉଦନ୍ତ ସାଏ ସମ୍ବଲପୁରରେ ପହଞ୍ଚିଲେ । ସେମାନଙ୍କ ଗତିବିଧି ଜାଣିବାପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା କରିଥିଲେ ମଧ୍ୟ ସରକାର କୌଣସି ସୂତ୍ରରୁ ସେମାନଙ୍କର ଆସିବା ଖବର ପାଇପାରି ନ ଥିଲେ । ସମ୍ବଲପୁରର ଗୌନ୍ତିଆ ଜମିଦାରମାନେ ସୁରେନ୍ଦ୍ରଙ୍କୁ ଆନ୍ତରିକ ସମର୍ଥନ କରୁଥିଲେ । ବହୁ ଜମିଦାର ତାଙ୍କୁ ପ୍ରତ୍ୟକ୍ଷଭାବେ ସାହାଯ୍ୟ ଦେଉଥିଲେ । ତାଙ୍କର ଖାଦ୍ୟପେୟର ବ୍ୟବସ୍ଥା କରୁଥିଲେ । ତାଙ୍କର ଅଭ୍ୟର୍ଥନାପାଇଁ ସମ୍ବଲପୁରର ଛଅ ମାଇଲ ଦୂରରେ ଥିବା ଶାସନ ଗ୍ରାମରେ ଅପେକ୍ଷା କରି ରହିଥିଲେ ।

ଦୀର୍ଘ ଦିନ କାରାଗାରରେ ରହି ଫେରିଲାପରେ ସୁରେନ୍ଦ୍ର ସାଏ ପ୍ରଥମେ କି ପ୍ରକାର କର୍ମପନ୍ଥା ଗ୍ରହଣ କରିବେ ତାହା ସ୍ଥିର କରିପାରି ନ ଥିଲେ । ଇଂରେଜମାନେ ସେତେବେଳକୁ ତାଙ୍କୁ ବିଦ୍ରୋହୀ ବୋଲି ଘୋଷଣା କରିଥାନ୍ତି । ସେମାନଙ୍କୁ ଧରାଇଦେବାପାଇଁ ପୁରସ୍କାର ଘୋଷଣା ମଧ୍ୟ ହୋଇଥାଏ । ପଥ ଶ୍ରମ ହେତୁ ଦେହର ସ୍ୱାସ୍ଥ୍ୟ ମଧ୍ୟ ଏକାବେଳକେ ଭାଙ୍ଗି ପଡ଼ିଥିଲା । ସୁତରାଂ ସେ କିଛି କାଳ ବିଶ୍ରାମ ନେବାକୁ ଚାହିଁଥିଲେ । ମାତ୍ର ଗଣ୍ଡ ଜମିଦାରମାନଙ୍କ ଆଗ୍ରହ ଥିବାର ଉପଲବ୍ଧି କରି ସେ ପୁଣି ବିଦ୍ରୋହ କରିବାକୁ ସ୍ଥିର କଲେ ।

ଇଂରେଜମାନଙ୍କ ମୁକାବିଲାପାଇଁ ସେ ପ୍ରଥମେ ସୈନ୍ୟ ସଂଗ୍ରହ କଲେ । ଅକ୍ଟୋବର ମାସ ୭ ତାରିଖରେ ପ୍ରାୟ ବାର ଶହ ସୈନ୍ୟ ସହ ସେ କ୍ୟାପ୍‌ଟେନ ଲି'ଙ୍କୁ ସମ୍ବଲପୁରରେ ଦେଖା କଲେ । ସେମାନଙ୍କୁ କାରାଦଣ୍ଡରୁ ଅବ୍ୟାହତି ଦେବାକୁ ଓ ତାଙ୍କୁ ସମ୍ବଲପୁରର ରାଜା ରୂପେ ସ୍ୱୀକାର କରିବାକୁ ସେ ଆବେଦନ କଲେ । ତାଙ୍କ ଆବେଦନପତ୍ରର ବିଚାରପାଇଁ ସେ ସରକାରଙ୍କୁ

ଅନୁରୋଧ କରିବେ ବୋଲି କ୍ୟାପ୍‌ଟେନ ଲି ତାଙ୍କୁ ପ୍ରତିଶ୍ରୁତି ଦେଲେ ଓ କିଛି ନିଷ୍ପତ୍ତି ହେବା ପର୍ଯ୍ୟନ୍ତ ସମ୍ବଲପୁରରେ ଅପେକ୍ଷା କରିବାପାଇଁ ନିର୍ଦ୍ଦେଶ ଦେଲେ । କ୍ୟାପ୍‌ଟେନ ଲି' ମଧ୍ୟ ତାଙ୍କ ସୈନ୍ୟମାନଙ୍କୁ ବିଦା କରିଦେବାକୁ ଅନୁରୋଧ କଲେ ।

ସୁରେନ୍ଦ୍ର ସାଏ କ୍ୟାପ୍‌ଟେନ ଲି'ଙ୍କ ନିର୍ଦ୍ଦେଶ ଅନୁଯାୟୀ ସମ୍ବଲପୁରରେ ରହିଲେ । ତାଙ୍କ ବାସସ୍ଥାନରେ କଡ଼ା ପହରାର ବ୍ୟବସ୍ଥା ହେଲା । ତାଙ୍କର ଗତିବିଧିକୁ ମଧ୍ୟ ନିୟନ୍ତ୍ରଣ କରାଗଲା । ଏଥି ମଧ୍ୟରେ ମାନ୍ଦ୍ରାଜ ସେନାବାହିନୀର ତିନି ଦଳ ସମ୍ବଲପୁରରେ ପହଞ୍ଚିଲେ । ଦୁଇ ପାର୍ବତୀୟ କମାଣ ବାହିନୀ ଓ ଛୋଟ ବନ୍ଧୁକଧାରୀ ଦଳ ମଧ୍ୟ କଟକରୁ ସମ୍ବଲପୁର ଅଭିମୁଖେ ଯାତ୍ରା କଲେ । ସମ୍ବଲପୁରରେ ତାଙ୍କର ରହିବା ନିରାପଦ ନୁହେଁ ବୋଲି ସୁରେନ୍ଦ୍ର ସାଏ ଜାଣିପାରିଲେ । ସେ ଆଉ କାଳବିଳମ୍ବ ନ କରି ସମସ୍ତଙ୍କ ଆଖିରେ ଧୂଳି ଦେଇ ସମ୍ବଲପୁରରୁ ପଳାଇଯାଇ ତାଙ୍କ ନିଜ ଗ୍ରାମ ଖିଣ୍ଡାରେ ପହଞ୍ଚିଲେ । ସେଠାରେ ଭାଇ ଉଦନ୍ତ ସାଏ ଥିଲେ । ସେ ସେଠାରେ ବିଦ୍ରୋହୀମାନଙ୍କୁ ସଙ୍ଗଠିତ କଲେ । ତାଙ୍କର ଆହ୍ୱାନରେ ଶହ ଶହ ସଂଖ୍ୟାରେ ବିଦ୍ରୋହୀମାନେ ତାଙ୍କ ସଙ୍ଗେ ଯୋଗଦେଲେ ।

## ଇଂରେଜମାନଙ୍କ ଆକ୍ରମଣ

କ୍ୟାପ୍‌ଟେନ ଲି' ବିଦ୍ରୋହୀମାନଙ୍କୁ ଧରିବାପାଇଁ ସମସ୍ତ ପ୍ରକାର ପଦକ୍ଷେପ ନେଲେ । ସୈନ୍ୟ ସଂଖ୍ୟା ବଢ଼ାଇ ଦିଆଗଲା । ଗୁପ୍ତଚରମାନଙ୍କ ସଂଖ୍ୟା ମଧ୍ୟ ବୃଦ୍ଧି ପାଇଲା । କ୍ୟାପ୍‌ଟେନ ଉଡ୍, କ୍ୟାପ୍‌ଟେନ ଉଡ୍‌ବ୍ରିଜ୍, କ୍ୟାପ୍‌ଟେନ ହେଡ଼ୋ ପ୍ରଭୃତି ଇଂରେଜ ସେନାଧ୍ୟକ୍ଷମାନେ ବିଦ୍ରୋହୀମାନଙ୍କୁ ଧରିବାପାଇଁ ଚେଷ୍ଟା ଚଳାଇଲେ । କଟକର ପ୍ରଧାନ ସେନାଧ୍ୟକ୍ଷ ମେଜର ବେଟ୍‌ସ ମଧ୍ୟ ବହୁ ସୈନ୍ୟ ଓ ଅସ୍ତ୍ରଶସ୍ତ୍ର ସହ ସମ୍ବଲପୁରରେ ପହଞ୍ଚିଲେ । ସମ୍ବଲପୁର ଜିଲ୍ଲା ଛୋଟନାଗପୁର କମିସନରଙ୍କ ଅଧୀନସ୍ଥ ଥିଲା । ମାତ୍ର ପ୍ରଶାସନିକ ସୁବିଧାପାଇଁ ତାକୁ କଟକ କମିସନରଙ୍କ ଅଧୀନକୁ ଅଣାଗଲା । କମିସନର କକବର୍ଣ୍ଣ ମଧ୍ୟ ସାମରିକ କାର୍ଯ୍ୟର ତଦାରଖପାଇଁ ମେଜର ଉଇଣ୍ଡହାମ୍‌ଙ୍କ ସହ ସମ୍ବଲପୁରରେ ରହିଲେ । ବିଦ୍ରୋହୀମାନଙ୍କ ସମ୍ପର୍କରେ ତଥ୍ୟ ସଂଗ୍ରହପାଇଁ ବଉଦମାଳର ତହସିଲଦାର ଦୀନବନ୍ଧୁ ପଟ୍ଟନାୟକଙ୍କୁ ସମ୍ବଲପୁରରେ ଅବସ୍ଥାପିତ କରାଗଲା ।

ବିଦ୍ରୋହ ବ୍ୟାପିବାକୁ ଲାଗିଲା । ବିଦ୍ରୋହୀମାନେ ଖିଣ୍ଡା ଗ୍ରାମରେ ମିଳିତ ହୋଇ କର୍ମପନ୍ଥା ନିର୍ଦ୍ଧାରଣ କରିବାକୁ ଲାଗିଲେ । ସେଠାରେ ପ୍ରାୟ ଏକ ହଜାରରୁ

ବାର ଶହ ବିଦ୍ରୋହୀ ଜମା ହୋଇଥିବାର ଖବର କ୍ୟାପ୍‌ଟେନ ଲି’ ପାଇଲେ । କୋଲାବିରାର ଜମିଦାର କରୁଣାକର ନାଏକ ମଧ୍ୟ ସୁରେନ୍ଦ୍ରଙ୍କୁ ସକ୍ରିୟ ସାହାଯ୍ୟ କରୁଥିବାର ଖବର ପାଇଲେ । ସେ ଆଉ କାଳବିଳମ୍ବ ନ କରି କ୍ୟାପ୍‌ଟେନ୍ ହେଡ଼ୋ ଓ କ୍ୟାପ୍‌ଟେନ ନକର୍‌ଙ୍କ ନେତୃତ୍ୱରେ ଦଳେ ସୈନ୍ୟ ସୁରେନ୍ଦ୍ର ଓ କରୁଣାକରଙ୍କୁ ଧରିବାକୁ ପଠାଇଲେ । ସେମାନେ ସମ୍ବଲପୁର ସହରର ୧୬ ମାଇଲ ଦୂର ଝରଘାଟି ନାମକ ସ୍ଥାନରେ ପହଞ୍ଚିଲେ ଓ ସେଠାରେ ସଶସ୍ତ୍ର ବିଦ୍ରୋହୀଙ୍କୁ ଭେଟିଲେ । ଉଭୟ ଦଳ ମଧ୍ୟରେ ଗୁଳି ବିନିମୟ ହେଲା । ପରେ ବିଦ୍ରୋହୀମାନେ ପଳାୟନ କଲେ । ଏହା ପରେ କ୍ୟାପ୍‌ଟେନ ହେଡ଼ୋ ଓ ନକର୍ କୋଲାବିରା ଅଭିମୁଖେ ଯାତ୍ରା କଲେ । ସେତେବେଳକୁ କୋଲାବିରା ଜନଶୂନ୍ୟ ହୋଇପଡ଼ିଥିଲା । ସେମାନେ ଗଡ଼ତିଆଙ୍କ ଘର ଉପରେ ଗୋଳାବର୍ଷଣ କରି ତାକୁ ଧ୍ୱଂସ କରିଦେଲେ । ଏହା ପରେ ସେମାନେ ଖିଣ୍ଡା ଗ୍ରାମରେ ପହଞ୍ଚିଲେ । ଖିଣ୍ଡା ମଧ୍ୟ ଜନଶୂନ୍ୟ ହୋଇଥିଲା । ସେମାନେ ବିଦ୍ରୋହୀ ନେତାଙ୍କୁ ଧରିପାରିଲେ ନାହିଁ; କିନ୍ତୁ ସେମାନେ ନିର୍ଜନ ବାସଗୃହଗୁଡ଼ିକୁ ଧ୍ୱଂସ କରି ସମ୍ବଲପୁର ଫେରିଆସିଲେ ।

ସୁରେନ୍ଦ୍ର ସାଏ ଏହା ପରେ ହିଂସ୍ର ହୋଇଉଠିଲେ । ଏହି ସମୟରେ ସରକାରୀ ସୈନ୍ୟଙ୍କ ଚିକିତ୍ସାପାଇଁ କଟକ କମିସନର କକବର୍ଣ୍ଣ ଗଞ୍ଜାମରୁ ଦୁଇ ଜଣ ୟୁରୋପୀୟ ଡାକ୍ତରଙ୍କୁ ସମ୍ବଲପୁର ପଠାଇଲେ । ସେମାନେ ହେଲେ ଆସିଷ୍ଟାଣ୍ଟ ସର୍ଜନ ଡକ୍ଟର ମୁର୍ ଓ ଗଞ୍ଜାମର ମେଡ଼ିକାଲ୍ ଅଫିସର ହାନସନ୍ । ସେମାନଙ୍କୁ ନିରାପଦରେ ଆଣିବାକୁ କ୍ୟାପ୍‌ଟେନ ଲି ଦୁଇ ଜଣ ଅଶ୍ୱାରୋହୀଙ୍କୁ ପଠାଇଲେ । ଡଃ ମୁର୍ ରେଢ଼ାଖୋଲର ରାମପୁରଠାରେ ବିଦ୍ରୋହୀମାନଙ୍କ କାର୍ଯ୍ୟକଳାପ ଜାଣିବାକୁ ପାଇଲେ । ରେଢ଼ାଖୋଲର ରାଜା ମଧ୍ୟ ଅଧିକ ସୈନ୍ୟ ଆସିବା ପର୍ଯ୍ୟନ୍ତ ରେଢ଼ାଖୋଲଠାରେ ଅପେକ୍ଷା କରିବାକୁ କହିଲେ । ମାତ୍ର ବିଳମ୍ବ ହେବାରୁ ସେମାନେ ୧୮୫୭ ନଭେମ୍ବର ମାସ ୨୫ ତାରିଖ ଦିନ ସମ୍ବଲପୁର ଅଭିମୁଖେ ଯାତ୍ରା କଲେ । ବାଟରେ କୁକୁମୁରା ନାମକ ସ୍ଥାନରେ ବୋଇସିଙ୍ଗା ଜମିଦାର ଗୌନ୍ତିଆଙ୍କ ନେତୃତ୍ୱରେ ବିଦ୍ରୋହୀମାନେ ସେମାନଙ୍କୁ ଅତର୍କିତଭାବେ ଆକ୍ରମଣ କଲେ । ଡକ୍ଟର ମୁର୍ ସେହି ସ୍ଥାନରେ ନିହତ ହେଲେ । ଡକ୍ଟର ହାନସନ୍ ଖସିଯାଇ ଅରଣ୍ୟରେ ଲୁଚିରହିଲେ ଓ କୌଣସିମତେ ପ୍ରାଣ ଘେନି ସମ୍ବଲପୁର ପଳାଇଲେ । ଏହାର କେତେଦିନ ପରେ କ୍ୟାପ୍‌ଟେନ ଲି’ ପଚାଶ ଜଣ ସୈନ୍ୟସହ ସେହି ସ୍ଥାନକୁ ଯାଇଥିଲେ । ବିଦ୍ରୋହୀମାନେ ତାଙ୍କୁ ମଧ୍ୟ ଆକ୍ରମଣ କରିଥିଲେ । ଫଳରେ ଅନେକ ନିହତ ହେଲେ ।

## ଅସହାୟ ଅବସ୍ଥା

ଏଇ ଅଭୂତପୂର୍ବ ପରିସ୍ଥିତିରେ କ୍ୟାପ୍‌ଟେନ ଲି ନିଜର ମାନସିକ ଭାରସାମ୍ୟ ହରାଇ ବସିଲେ । ସେ କ୍ୟାପ୍‌ଟେନ ଡାଲଟନ୍‌ଙ୍କ ପାଖକୁ ନିଜର ଅସହାୟ ଅବସ୍ଥା ଲେଖି ଏକ ପତ୍ର ଦେଲେ । ସେ ଲେଖିଥିଲେ – ''ଆଉ କିଛି ଦିନ ଜିଲ୍ଲା ଦାୟିତ୍ୱରେ ରହିଲେ ପାଗଳ ହୋଇଯିବି । ଏଠାରେ ପ୍ରତିକୂଳ ପରିସ୍ଥିତି ପ୍ରତିଦିନ ବୃଦ୍ଧି ପାଉଛି । ମୁଁ ମୁକ୍ତ କଣ୍ଠରେ ସ୍ୱୀକାର କରୁଛି ଯେ ମୁଁ ଏ ଗୁରୁଦାୟିତ୍ୱ ତୁଲାଇବାରେ ସମ୍ପୂର୍ଣ୍ଣ ଅସମର୍ଥ । ଗତ କେତେମାସ ଧରି ପରିସ୍ଥିତିର ମୁକାବିଲା କରିବାପାଇଁ ମୁଁ ଯଥାସାଧ୍ୟ ଚେଷ୍ଟା କରୁଛି, କିନ୍ତୁ ଅନୁଭବ କରୁଛି ଯେ ହୁଏତ ମୁଁ ଆଉ ପାରିବି ନାହିଁ । ମୁଁ ଇତିମଧ୍ୟରେ ଅତି ଜୀର୍ଣ୍ଣ ଶୀର୍ଣ୍ଣ ହୋଇଛି ଓ ମୋର ମନୋବଳ ଭାଙ୍ଗିପଡ଼ିଛି ।''

ସିପାହିମାନଙ୍କର ମଧ ମନୋବଳ ଭାଙ୍ଗି ପଡ଼ିଥିବା ଓ କର୍ତ୍ତବ୍ୟ ସମ୍ପାଦନ କରିବାରେ ଅନିଚ୍ଛା ପ୍ରକାଶ କଥା ସେ ସରକାରଙ୍କୁ ଜଣାଇ ଦେଇଥିଲେ ।

## ଛବିଲ ସାଏଙ୍କୁ ହତ୍ୟା

୧୮୫୭ ମସିହା ଡିସେମ୍ବର ମାସ ସାରା ବିଦ୍ରୋହ ଲାଗିରହିଲା । ବିଦ୍ରୋହୀମାନେ ଘୋର ଅରଣ୍ୟ ଭିତରେ ରହି ଯୁଦ୍ଧ ଚଳାଇଥାନ୍ତି; ଇଂରେଜସୈନ୍ୟଙ୍କ ପକ୍ଷରେ ସେମାନଙ୍କୁ ଧରିବା ସମ୍ଭବପର ହେଉ ନ ଥିଲା । ବିଦ୍ରୋହୀମାନଙ୍କୁ କାବୁ କରିବାପାଇଁ ଇଂରେଜମାନେ ନୂଆ କୌଶଳ ପାଞ୍ଚିଲେ । ଡିସେମ୍ବର ୩୦ ତାରିଖରେ କ୍ୟାପ୍‌ଟେନ ଲି ଓ କ୍ୟାପ୍‌ଟେନ ଉଡ୍‌ ବରଗଡ଼ ସବ–ଡିଭିଜନର ପାପଙ୍ଗା ପାହାଡ଼ ଉପରେ ଥିବା ବିଦ୍ରୋହୀମାନଙ୍କର ଏକ ଘାଟି ଆକ୍ରମଣ କରିବାପାଇଁ ଏକ ଯୋଜନା କଲେ । ଅଳ୍ପ କେତେକ ସୈନ୍ୟ ନେଇ ସେମାନେ ପାହାଡ଼ ଉପରକୁ ଉଠିଲେ । ବାକି ସୈନ୍ୟମାନେ ପାହାଡ଼ ତଳେ କୁଦୋପାଲି ନାମକ ଗ୍ରାମରେ ଗୋପନରେ ରହିଲେ । ବିଦ୍ରୋହୀମାନେ କ୍ୟାପ୍‌ଟେନ ଉଡ୍‌ଙ୍କୁ ଆକ୍ରମଣ କଲେ ଓ ସେମାନଙ୍କର ପଛେ ପଛେ ଆସି ସମତଳ ଅଞ୍ଚଳରେ ପହଞ୍ଚିଲେ । କୁଦୋପାଲିରେ ଥିବା ସୈନ୍ୟମାନେ ବିଦ୍ରୋହୀଙ୍କ ଉପରେ ଅଚାନକ ଆକ୍ରମଣ କଲେ । ଏପରି ଆକ୍ରମଣପାଇଁ ବିଦ୍ରୋହୀମାନେ ପ୍ରସ୍ତୁତ ନ ଥିଲେ । ସେମାନେ ଆତ୍ମରକ୍ଷାପାଇଁ ପଳାୟନ କଲେ । ପ୍ରାୟ ୫୩ ଜଣ ବିଦ୍ରୋହୀ ନିହତ ହେଲେ । ବହୁ ବିଦ୍ରୋହୀ ଆଘାତପ୍ରାପ୍ତ ହେଲେ । ସୁରେନ୍ଦ୍ର ସାଏ କୌଣସିମତେ ଖସି ପଳାଇଲେ । ମାତ୍ର ତାଙ୍କର ପଞ୍ଚମ ଭ୍ରାତା ଛବିଲ ସାଏ ଯୁଦ୍ଧରେ କ୍ଷତବିକ୍ଷତ ହୋଇ କୁଦୋପାଲି ଗ୍ରାମ ଭିତରେ ଦୌଡ଼ି ପଳାଉଥିବାବେଳେ ପଛରୁ ସୈନ୍ୟଙ୍କ

ଗୁଳିମାଡ଼ରେ ଟଳିପଡ଼ିଲେ । ଏବେ ମଧ୍ୟ ସମ୍ବଲପୁର ଅଞ୍ଚଳର ଛୋଟ ଛୋଟ ପିଲାମାନେ ଖେଳିବା ସମୟରେ ଗୀତ ଗାଇଥାନ୍ତି –

"ଭଲି, ଭଲି, ଭଲି, ଭଲି
ଛବିଳ ସାଏଙ୍କୁ ବାଜିଲା ଗୁଳି ଗୋ
କୁଦୋପାଲି ମଝି ଖୁଲି, ସଜନୀ ଗୋ..."

କୁଦୋପାଲି ଯୁଦ୍ଧରେ ଧରା ପଡ଼ିଥିବା ଏଗାର ଜଣଙ୍କ ମଧ୍ୟରୁ ଚାରି ଜଣଙ୍କୁ ଫାଶୀ ଦିଆଗଲା । ବିଦ୍ରୋହୀମାନଙ୍କ ପକ୍ଷ ନେଇଥିବା ଯୋଗୁଁ ଜଣେ ପୁଲିସ ବରକନ୍ଦାଜଙ୍କୁ ମଧ୍ୟ ଫାଶୀଦଣ୍ଡ ଦିଆଗଲା ।

ଛବିଳ ସାଏଙ୍କ ମୃତ୍ୟୁରେ ବିଦ୍ରୋହୀମାନଙ୍କ ମନୋବଳ ତିଳେମାତ୍ର ହ୍ରାସ ପାଇ ନ ଥିଲା କି କାର୍ଯ୍ୟପଳାପ ଶିଥିଳ ହୋଇ ନ ଥିଲା । ସେମାନେ ସମ୍ବଲପୁର ବାମଣ୍ଡା ମଧ୍ୟରେ ଥିବା ଚମ୍ପାରସା ଡାକଘରକୁ ଆକ୍ରମଣ କରି ପୋଡ଼ି ପକାଇଲେ । ୧୮୫୮ ଫେବୃୟାରୀ ମାସ ୧୨ ତାରିଖରେ କ୍ୟାପ୍‌ଟେନ ଉଡ୍ ଓ ଉଡ୍‌ବ୍ରିଜ୍ ପାହାଡ଼ ଉପରେ ଥିବା ଶିରିଗୁଡ଼ା ଦୁର୍ଗ ଉପରେ ଆକ୍ରମଣ କଲେ । ବିଦ୍ରୋହୀମାନେ ସେଥିପାଇଁ ପ୍ରସ୍ତୁତ ଥିଲେ । ସେମାନଙ୍କ ପାଲଟା ଆକ୍ରମଣରେ ଇଂରେଜ ସୈନ୍ୟ ଛତ୍ରଭଙ୍ଗ ଦେଲେ । କ୍ୟାପ୍‌ଟେନ ଉଡ଼୍‌ବ୍ରିଜ୍ ବିଦ୍ରୋହୀମାନଙ୍କଦ୍ୱାରା ନିହତ ହେଲେ, ଉଡ୍ କୌଣସିମତେ ପଳାଇଯାଇ ଆତ୍ମରକ୍ଷା କଲେ । ଉଡ୍‌ବ୍ରିଜ୍‌ଙ୍କ ଶବ ଉଦ୍ଧାରପାଇଁ ଦୁଇ ଦିନ ପରେ କ୍ୟାପ୍‌ଟେନ ଉଆଲୋ ପୁଣି ଶିରିଗୁଡ଼ା ଗଲେ । ମାତ୍ର ବିଦ୍ରୋହୀମାନେ ସେତେବେଳକୁ ଖସି ପଳାଇଥିଲେ । ସେ ମସ୍ତକବିହୀନ ଉଡ଼୍‌ବ୍ରିଜ୍‌ଙ୍କ ଶରୀର ସେଠାରୁ ଉଦ୍ଧାର କଲେ ।

୧୮୫୮ ମସିହା ମାର୍ଚ୍ଚ ମାସରେ ମେଜର ବେଟ୍‌ସ ସମ୍ବଲପୁରରେ ପ୍ରାଣତ୍ୟାଗ କଲେ । ମେଜର ଉଇଣ୍ଡହାମ କାର୍ଯ୍ୟଭାର ଗ୍ରହଣ କଲେ । ମାର୍ଚ୍ଚ ମାସ ଶେଷ ଆଡ଼କୁ ଗଣ୍ଡଗୋଳ ଥମିଆସିଲା । ତେଣୁ କକବର୍ଣ୍ଣ କଟକ ଫେରିଗଲେ । କର୍ଣ୍ଣେଲ ଫରେଷ୍ଟର୍ ପୋଡ଼ାହାଟରେ ଏକ ବିଦ୍ରୋହ ଦମନ କରି ପ୍ରଶଂସାର ପାତ୍ର ହେଲେ । ସେ ୧୮୫୮ ମସିହା ମାର୍ଚ୍ଚ ମାସ ୨୩ ତାରିଖରେ ସମ୍ବଲପୁରରେ ପହଞ୍ଚି କ୍ୟାପ୍‌ଟେନ ଲିଙ୍ଗଠାରୁ ଜିଲ୍ଲାର ଦାୟିତ୍ୱ ଗ୍ରହଣ କଲେ ।

**ଦମନ ଲୀଳା**

କ୍ୟାପ୍‌ଟେନ ଫରେଷ୍ଟର୍ ସମ୍ବଲପୁର ଅଞ୍ଚଳରେ ଶାନ୍ତି ଓ ଶୃଙ୍ଖଳା ଫେରାଇଆଣିବା ନିମନ୍ତେ କଠୋର ପଦକ୍ଷେପ ନେଲେ । ସେ ଜିଲ୍ଲାର ସମସ୍ତ ଜମିଦାରଙ୍କୁ ଡକାଇ ସରକାରଙ୍କୁ ସାହାଯ୍ୟ କରିବାକୁ ଚୁକ୍ତି କରାଇନେଲେ ।

ଭେଡ଼େନ, କୋଲାବିରା, କୁର୍କଟା ପ୍ରଭୃତି ଜମିଦାରୀ ଖାସ୍ ଦଖଲକୁ ନେଲେ । ବହୁ ବ୍ୟକ୍ତିଙ୍କୁ ଗିରଫ କଲେ । ସମ୍ବଲପୁର ଜେଲରେ ସେତେବେଳେ ତିନି ଶହ ପର୍ଯ୍ୟନ୍ତ ବନ୍ଦୀ ରହିଥିବାର ଜଣାଯାଏ । କେତେକଙ୍କୁ ବେତ ମାଡ଼ ହୋଇଥିଲା । ଉଜ୍ଜ୍ୱଳ ସିଂହଙ୍କ ପଳାୟନରେ ସାହାଯ୍ୟ କରିବା ହେତୁ ରାଜାଙ୍କୁ ଅର୍ଥଦଣ୍ଡ ଦିଆଗଲା । ଫଳରେ ସେ ଉଜ୍ଜ୍ୱଳ ସିଂହଙ୍କୁ ଧରି ସରକାର ପାଖରେ ସମର୍ପଣ କଲେ । ଉଜ୍ଜ୍ୱଳ ସିଂହଙ୍କୁ ବିନା ବିଚାରରେ ଫାଶୀ ଦିଆଗଲା । ପୋଡ଼ାହାଟର ବିଦ୍ରୋହୀ ନେତା ଜଗୁ ଦେବାନଙ୍କୁ ମଧ ଫାଶୀ ଦିଆଗଲା । ପୋଡ଼ାହାଟକୁ ଖାସ୍ ଦଖଲକୁ ଅଣାଗଲା ।

ଫରେଷ୍ଟର ସୁରେନ୍ଦ୍ର ସାଏଙ୍କୁ ଧରିବାକୁ ଆପ୍ରାଣ ଚେଷ୍ଟା କଲେ । ସୁରେନ୍ଦ୍ର ସାଏ ସେତେବେଳେ ମଧ୍ୟପ୍ରଦେଶର ରେବା ଅଞ୍ଚଳରେ ରହୁଥିଲେ । ସେ ମଧ ଖଡ଼ିଆଳ ଓ ମଧ୍ୟପ୍ରଦେଶର ରାୟପୁର ଜିଲ୍ଲା ସୀମାରେ ଥିବା ପାହାଡ଼ ମଧରେ ରହି ମେଳିର ଯୋଜନା କରୁଥିଲେ । ସୁରେନ୍ଦ୍ର ସାଏଙ୍କୁ ଖଡ଼ିଆଳରୁ ତଡ଼ିଦେବାପାଇଁ ଫରେଷ୍ଟର୍ ବାରମ୍ବାର ତାଗିଦା କଲେ ମଧ ରାଜା ସେଥିପ୍ରତି ଭ୍ରୂକ୍ଷେପ କଲେ ନାହିଁ । ସୁରେନ୍ଦ୍ର ସାଏ ମାଣିକଗଡ଼ରେ ଥିଲାବେଳେ ସେ ଦଳେ ସୈନ୍ୟ ସେଠାକୁ ପଠାଇଲେ । ବିଦ୍ରୋହୀମାନେ ଏ ଖବର ପାଇ କଳାହାଣ୍ଡିର କୁନାଗଡ଼ ଘାଟିକୁ ଚାଲିଯାଇଥିଲେ ।

ଆପ୍ରାଣ ଉଦ୍ୟମ କରି ମଧ ମେଜର ଫରେଷ୍ଟର୍ ସୁରେନ୍ଦ୍ର ସାଏଙ୍କୁ ବନ୍ଦି କରି ପାରି ନ ଥିଲେ । ସମ୍ବଲପୁର ଜିଲ୍ଲାରେ ଲାଗିରହିଥିବା ବିଦ୍ରୋହକୁ ମଧ ଦମନ କରିପାରିଲେ ନାହିଁ । ସୁରେନ୍ଦ୍ର ସାଏଙ୍କୁ ଜନସମର୍ଥନ ମିଳୁଥିଲା । ଫଳରେ ଇଂରେଜମାନଙ୍କ ସମସ୍ତ ଉଦ୍ୟମ ବ୍ୟର୍ଥ ହେଲା । ମେଜର ଇମ୍ପେ ୧୮୬୧ ଅପ୍ରେଲ ମାସରେ ସମ୍ବଲପୁର ଶାସନ ଦାୟିତ୍ୱ ଗ୍ରହଣ କଲେ ।

### ଉଦାର ନୀତି

ମେଜର ଇମ୍ପେ ବିଦ୍ରୋହୀମାନଙ୍କ ପ୍ରତି କଠୋର ପଦକ୍ଷେପ ନେବାକୁ ଚାହିଁ ନ ଥିଲେ । ସେ ସେମାନଙ୍କ ପ୍ରତି କୋହଳ ନୀତି ଅବଲମ୍ବନ କରିବାକୁ ସ୍ଥିର କଲେ । ପରିସ୍ଥିତି ଦୃଷ୍ଟିରୁ ସୁରେନ୍ଦ୍ରଙ୍କୁ କ୍ଷମା ଦିଆଗଲେ ଦେଶରେ ଶାନ୍ତି ପ୍ରତିଷ୍ଠିତ ହୋଇପାରିବ ବୋଲି ସେ ଉଚ୍ଚ କର୍ତ୍ତୃପକ୍ଷଙ୍କୁ ଜଣାଇଲେ । ବିଶେଷତଃ, ସୁରେନ୍ଦ୍ର ସାଏଙ୍କ ପୁତ୍ର ମିତ୍ରଭାନୁ ସାଏଙ୍କ ପ୍ରତି ଉଦାର ମନୋଭାବ ପୋଷଣ କରାଗଲେ ସୁରେନ୍ଦ୍ର ସାଏ ଓ ତାଙ୍କ ସହକର୍ମୀମାନେ ଆତ୍ମସମର୍ପଣ କରିବେ ବୋଲି ସେ ମତ ଦେଲେ । କଟକ କମିସନର ଏ.ଏନ୍. ଶୋର୍ ଇମ୍ପେଙ୍କ ପ୍ରସ୍ତାବକୁ ସମର୍ଥନ

କଲେ । ସୁରେନ୍ଦ୍ର ସାଏ, ଉଦନ୍ତ ସାଏ ଓ ମିତ୍ରଭାନୁ ପ୍ରଭୃତିଙ୍କୁ ଜୀବନରେ ମାରି ନ ଦେବାପାଇଁ ବଙ୍ଗ ସରକାରଙ୍କ ପାଖକୁ ଏକ ପତ୍ର ଦେଲେ । ବିଦ୍ରୋହୀମାନଙ୍କର ବାଜ୍ୟାପ୍ତ ସମ୍ପତ୍ତି ଫେରାଇଦେବାକୁ ମଧ୍ୟ ସୁପାରିସ କଲେ । ସରକାର ତାଙ୍କ ପ୍ରସ୍ତାବ ଗ୍ରହଣ କଲେ । ଆତ୍ମସମର୍ପଣ କରିଥିବା ବିଦ୍ରୋହୀମାନଙ୍କୁ ସରକାର କ୍ଷମାପ୍ରଦାନ କରିବାର ସ୍ଥିର ହେଲା । ଏଥିପାଇଁ ପ୍ରଥମ ଘୋଷଣା ୧୮୬୧ ଖ୍ରୀଷ୍ଟାବ୍ଦ ସେପ୍ଟେମ୍ବର ମାସ ୨୪ ତାରିଖରେ ଓ ଦ୍ୱିତୀୟ ଘୋଷଣା ଅକ୍ଟୋବର ୧୧ ତାରିଖରେ ପ୍ରକାଶ ପାଇଲା ।

ସାମରିକ ଅଭିଯାନ ଫଳରେ ବହୁ ବିଦ୍ରୋହୀ ଦୀର୍ଘ ଦିନ ଧରି ଜଙ୍ଗଲରେ କାଳ କଟାଇ କ୍ଲାନ୍ତ ହୋଇପଡ଼ିଥିଲେ । ସେମାନେ ପୁଣି ଗୃହକୁ ଫେରିଆସିବାକୁ ବ୍ୟଗ୍ର ଥିଲେ । ଅପରପକ୍ଷରେ ଇଂରେଜମାନଙ୍କ ହାତରେ ଧରାପଡ଼ି ବହୁ ବ୍ୟକ୍ତି ଫାଶୀ ପାଇଥିଲେ । ସେମାନଙ୍କ ମଧ୍ୟରେ ଘେଁସର ଜମିଦାରଙ୍କ ଜ୍ୟେଷ୍ଠପୁତ୍ର ହାତୀ ସିଂହ, ତାଙ୍କ ଭାଇ କୁଞ୍ଜଳ ସିଂହ, ଲକ୍ଷ୍ମଣପୁରର ଜମିଦାର ବଳଭଦ୍ର ଦାଓଙ୍କ ପୁତ୍ର କମଳ ସିଂହ ଓ ପୁତୁରା ଖଗେଶ୍ୱର ଦାଓ ପ୍ରଧାନ ଥିଲେ । ସେମାନେ ଆତ୍ମସମର୍ପଣ ପ୍ରସ୍ତାବର ଘୋର ବିରୋଧୀ ଥିଲେ ।

ସାଏ ପରିବାରରୁ ପ୍ରଥମେ ମିତ୍ରଭାନୁ ସାଏ ଆତ୍ମସମର୍ପଣ କଲେ । ସେ ସୁରେନ୍ଦ୍ର ସାଏଙ୍କର ଏକ ମାତ୍ର ପୁତ୍ର ଥିଲେ । ଯୌବନରେ ପଦାର୍ପଣ କରିବା ପୂର୍ବରୁ ଆନ୍ଦୋଳନରେ ଝାସ ଦେଇଥିଲେ । ସେ ୧୮୬୨ ମସିହା ଜାନୁଆରୀ ମାସ ୭ ତାରିଖରେ ଇମ୍ପେଙ୍କୁ ସାକ୍ଷାତ୍ କଲେ ଓ ଇମ୍ପେ ମଧ୍ୟ ତାଙ୍କୁ ସାଦରରେ ଗ୍ରହଣ କଲେ । ଏହାର ଦଶ ଦିନ ପରେ ଉଦନ୍ତ ସାଏ ଓ ଧ୍ରୁବ ସାଏ ଆତ୍ମସମର୍ପଣ କଲେ । ଫେବୃୟାରୀ ମାସ ପ୍ରଥମ ସପ୍ତାହରେ ଘେଁସ ଜମିଦାର ଆତ୍ମସମର୍ପଣ କଲେ ଓ ତାଙ୍କୁ ତାଙ୍କର ଜମିଦାରୀ ଫେରାଇଦିଆଗଲା । ସେହିପରି ଭୂସମ୍ପତ୍ତି ହରାଇଥିବା କୋଲାବିରା, କୁକୁର୍ଚା, ଭେଡ଼େନ ପ୍ରଭୃତିର ଜମିଦାରମାନେ ସେମାନଙ୍କର ଜମିଦାରୀ ଫେରିପାଇଲେ । ବିଦ୍ରୋହର ମୁଖ୍ୟ ନେତାମାନଙ୍କୁ ମେଜର ଇମ୍ପେ ନୂଆ ନୂଆ ବୃତ୍ତି ଖଞ୍ଜିଦେଲେ ।

## ସୁରେନ୍ଦ୍ର ସାଏଙ୍କ ଆତ୍ମସମର୍ପଣ

ସୁରେନ୍ଦ୍ର ସାଏ ମଧ୍ୟ ଇଂରେଜ ସରକାରଙ୍କ ସହିତ ସନ୍ଧି କରିବାପାଇଁ ଆଗ୍ରହ ଦେଖାଇଲେ । ସମସ୍ତ ସହକର୍ମୀ, ପୁଅ ଓ ଭାଇମାନଙ୍କ ଆତ୍ମସମର୍ପଣ ପରେ ସେ ନିଃସହାୟ ବୋଧ କଲେ । ଇଂରେଜମାନଙ୍କ ସୈନ୍ୟ ସଂଖ୍ୟା ଯେ ବହୁତ ବେଶି ତାହା ସେ ଜାଣିଥିଲେ । ପୁରୁଣା କାଳର ଅସ୍ତ୍ରଶସ୍ତ୍ର ନେଇ

ଶକ୍ତିଶାଳୀ ଇଂରେଜମାନଙ୍କ ସହ ସଂଗ୍ରାମ ଚଳାଇବା ଯେ କେତେ କଷ୍ଟକର ତାହା ସେ ଉପଲବ୍ଧି କରିଥିଲେ । ଇମ୍ପେ ମଧ୍ୟ ତାଙ୍କୁ ନିଜ ପକ୍ଷକୁ ନେବାପାଇଁ ଉଦ୍ୟମ ଚଳାଇଥିଲେ । ଶେଷରେ ସେ ଆତ୍ମସମର୍ପଣ କରିବାପାଇଁ ସମ୍ମତ ହେଲେ ।

ସୁରେନ୍ଦ୍ର ସାଏ ସମ୍ବଲପୁର ଗାଦି ଫେରାଇଦେଲେ ଆତ୍ମସମର୍ପଣ କରିବେ ବୋଲି ଇମ୍ପେଙ୍କୁ ଜଣାଇଲେ । ମାତ୍ର ଇମ୍ପେ ସେଥିରେ ସମ୍ମତ ହୋଇ ନ ଥିଲେ । ଆତ୍ମସମର୍ପଣ କଲେ ସରକାର ଭରଣପୋଷଣର ବ୍ୟବସ୍ଥା କରିବେ ବୋଲି ଇମ୍ପେ ତାଙ୍କୁ ପ୍ରତିଶ୍ରୁତି ଦେଲେ । ସୈନ୍ୟମାନଙ୍କ ବାକିଆ ଦରମା ଦେବାପାଇଁ ଆର୍ଥିକ ସାହାଯ୍ୟ ମାଗନ୍ତେ ଇମ୍ପେ ଅବିଳମ୍ବେ ସୁରେନ୍ଦ୍ର ସାଏଙ୍କ ପାଖକୁ ୫୦୦ ଟଙ୍କା ପଠାଇଲେ । ଇମ୍ପେଙ୍କ ଉଦାରତାରେ ସୁରେନ୍ଦ୍ର ସାଏ ଅଭିଭୂତ ହୋଇପଡ଼ିଲେ ଓ ଆତ୍ମସମର୍ପଣ କରିବାପାଇଁ ରାଜି ହେଲେ । ୧୮୬୧ ମେ ମାସ ୧୬ ତାରିଖ ଦିନ ଇମ୍ପେ ଓ ସୁରେନ୍ଦ୍ରଙ୍କ ମଧ୍ୟରେ ନିଭୃତ ଆଲୋଚନା ହେଲା । ସୁରେନ୍ଦ୍ର ସାଏ ବାର୍ଷିକ ୧୨୦୦ ଟଙ୍କା ପେନସନ ପାଇବାର ବ୍ୟବସ୍ଥା ହେଲା । ତାଙ୍କ ଉପରେ କୌଣସି ନିୟନ୍ତ୍ରଣ ନ ରହିବାର ସ୍ଥିର ହେଲା । ଏହା ପରେ ପିତୃବ୍ୟ, ଘନିଷ୍ଠ ସହକର୍ମୀ ଗଜରାଜ ସିଂହ, ଖଗେଶ୍ୱର ଦାଓ, ଫତେ ସିଂହ ପ୍ରଭୃତି ଆତ୍ମସମର୍ପଣ କଲେ । ସମସ୍ତେ ବ୍ରହ୍ମପୁର ମନ୍ଦିରରେ ଶପଥ କଲେ । ଫଳରେ ଚିଫ୍ କମିସନର ମେଜର ଇମ୍ପେଙ୍କ କାର୍ଯ୍ୟକୁ ପ୍ରଶଂସା କରିଥିଲେ ।

ସୁରେନ୍ଦ୍ର ସାଏ ପେନସନ ଗ୍ରହଣ କରି ଶାନ୍ତିପୂର୍ଣ୍ଣ ଜୀବନଯାପନ କରିଥିଲେ । ମାତ୍ର କୁଞ୍ଜଳ ସିଂହ ଓ କମଳ ସିଂହ ପ୍ରଭୃତି ଆତ୍ମସମର୍ପଣ କରି ନ ଥିଲେ । ସେମାନେ ଏହାର ଘୋର ବିରୋଧୀ ଥିଲେ । ସେମାନେ ବିଦ୍ରୋହ କରିବାକୁ ଚେଷ୍ଟା କରୁଥିଲେ । ସମ୍ବଲପୁରର ପୋଲିସ ସୁପରିଣ୍ଟେଣ୍ଡେଣ୍ଟ ବେରିଲ୍ ମଧ୍ୟ ଇମ୍ପେଙ୍କ ଉଦାର ନୀତିର ଘୋର ବିରୋଧୀ ଥିଲେ । ସୁରେନ୍ଦ୍ର କୁଞ୍ଜଳ ସିଂହ ପ୍ରଭୃତିଙ୍କୁ ସାହାଯ୍ୟ କରୁଥିବା ଅଭିଯୋଗ ସେ କରିଥିଲେ । ୧୮୬୩ ମାର୍ଚ୍ଚ ମାସରେ ମଧ୍ୟପ୍ରଦେଶର ଚିଫ କମିସନର ସାର୍ ରିଚାର୍ଡ଼ ଟେମ୍ପଲ୍ ସମ୍ବଲପୁର ପରିଦର୍ଶନ କରିବାକୁ ଆସିଲେ । ସେହି ଅବସରରେ ସହରରୁ ମାନ୍ୟଗଣ୍ୟ ବ୍ୟକ୍ତି ତାଙ୍କୁ ଭେଟି ସମ୍ବଲପୁରରେ ଦେଶୀୟ ଶାସନ ପୁନଃପ୍ରତିଷ୍ଠାପାଇଁ ନିବେଦନ କଲେ । ଏଥିରେ ମଧ୍ୟ ସୁରେନ୍ଦ୍ରଙ୍କ ହାତ ଅଛି ବୋଲି ଅଭିଯୋଗ ହେଲା । ସମସ୍ତ ଇଂରେଜ ଅଫିସରଙ୍କୁ ହତ୍ୟା କରାଯିବାକୁ ସୁରେନ୍ଦ୍ର ଷଡ଼ଯନ୍ତ୍ର କରୁଥିବାର ଗୁଜବ ମଧ୍ୟ ପ୍ରଚାରିତ ହେଲା । ମାତ୍ର ଇମ୍ପେ ଏଥିରେ ବିଶ୍ୱାସ କରୁ ନ ଥିଲେ । ସୁରେନ୍ଦ୍ର ସାଏଙ୍କ ଉପରେ ତାଙ୍କର ଗଭୀର ଆସ୍ଥା ଥିଲା । କେବଳ ବିଦ୍ରୋହୀ

ଜୀବନଯାପନ କରୁଥିବା, ଲୁଣ୍ଠନ ଏବଂ ଡକାୟତି ପ୍ରଭୃତି କାର୍ଯ୍ୟରେ ଲିପ୍ତ ଥିବା ବ୍ୟକ୍ତିମାନେ ତାଙ୍କ ନାମ ବ୍ୟବହାର କରୁଛନ୍ତି ବୋଲି ସେ ଭାବୁଥିଲେ । ସେ ସୁରେନ୍ଦ୍ର ସାଏଙ୍କ ବିରୋଧରେ କୌଣସି ପଦକ୍ଷେପ ନେବାପାଇଁ ରାଜି ନ ଥିଲେ ।

୧୮୬୩ ମସିହା ଡିସେମ୍ବର ମାସରେ ମେଜର ଇମ୍ପେ ସମ୍ବଲପୁରରେ ପ୍ରାଣତ୍ୟାଗ କଲେ । ଏଥି ସହିତ ତାଙ୍କ ଅନୁସୃତ ନୀତି ପରିହାର କରାଗଲା ।

## ନୀତି ପରିବର୍ତ୍ତନ

ମେଜର ଇମ୍ପେଙ୍କ ପରେ ମେଜର କମ୍ବର୍ଲି ୧୮୬୪ ଜାନୁଆରୀ ମାସ ୧୯ ତାରିଖରେ ଡେପୁଟି କମିସନର ଭାବେ ନିଯୁକ୍ତ ହେଲେ । ସେ ଇମ୍ପେଙ୍କ ଉଦାର ନୀତିକୁ ତ୍ୟାଗ କଲେ । ପୂର୍ବରୁ ବେରିଲ୍ ପୋଲିସ ବିଭାଗର ସର୍ବୋଚ୍ଚ କର୍ତ୍ତା ଭାବେ ଯୋଗ ଦେଇଥିଲେ । ସେ ସମ୍ବଲପୁରରେ ଲାଗି ରହିଥିବା ଗଣ୍ଡଗୋଳ ସହିତ ସୁରେନ୍ଦ୍ର ସାଏ ଜଡ଼ିତ ଥିବାର ବିଶ୍ୱାସ କରୁଥିଲେ । ସୁରେନ୍ଦ୍ର ସାଏଙ୍କ ପ୍ରତି କଠୋର ନୀତି ପ୍ରୟୋଗର ସେ ପକ୍ଷପାତୀ ଥିଲେ । ମାତ୍ର ମେଜର ଇମ୍ପେ ଥିବା ପର୍ଯ୍ୟନ୍ତ ସେ କୌଣସି କାର୍ଯ୍ୟାନୁଷ୍ଠାନ କରିପାରି ନ ଥିଲେ । ୧୮୬୩ ମସିହା ମେ ମାସ ୨ ତାରିଖରୁ ଜୁନ ୯ ତାରିଖ ଭିତରେ ୭ଟି ଓ ଜୁଲାଇ ୧୦ ତାରିଖରେ ତିନୋଟି ଡକାୟତି ହୋଇଥିଲା । ସୁରେନ୍ଦ୍ର ସାଏ ସେଥିରେ ସକ୍ରିୟଭାବେ ଯୋଗ ଦେଇଥିବା ଖବର ଦୟାନିଧି ମେହେର ନାମକ ଗୁପ୍ତଚରଠାରୁ ସେ ପାଇଲେ । ସୁରେନ୍ଦ୍ର ସାଏଙ୍କ ହସ୍ତଲିଖିତ ପତ୍ର ମଧ୍ୟ ବିଦ୍ରୋହୀମାନଙ୍କ ନିକଟରୁ ମିଳିଥିଲା । ପତ୍ରଟି କମଳ ସିଂହଙ୍କ ପାଖକୁ ଲେଖାଯାଇଥିଲା । ସୁରେନ୍ଦ୍ର ସାଏ ଅପରାଧରେ ଜଡ଼ିତ ଥିବା ସେଥିରୁ ପ୍ରମାଣିତ ହେଲା ।

କମିସନର ମଧ୍ୟ କମ୍ବର୍ଲିଙ୍କ ପ୍ରସ୍ତାବକୁ ଅନୁମୋଦନ କଲେ । ସମ୍ବଲପୁର ଅଞ୍ଚଳରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବାପାଇଁ ତାହା ଆବଶ୍ୟକ ବୋଲି ସେ ମତ ଦେଲେ । ସେ ସୁରେନ୍ଦ୍ର ସାଏ ଓ ତାଙ୍କର ସହଯୋଗୀମାନଙ୍କୁ ଏକ ସଙ୍ଗେ ବନ୍ଦି କରି ରାୟପୁର ଜେଲକୁ ଘଠାଇଦେବାକୁ ଚିଫ୍ କମିସନର କର୍ଣ୍ଣେଲ ଏଲିଏଟ୍‌ଙ୍କ ଆଦେଶ ଚାହିଁଲେ । ଏଲିଏଟ୍ ଅବଶ୍ୟ ସୁରେନ୍ଦ୍ର ସାଏ ପ୍ରଭୃତିଙ୍କ ବିରୋଧରେ ହୋଇଥିବା ରାଜଦ୍ରୋହ ଅଭିଯୋଗକୁ ଗ୍ରହଣ କରି ନ ଥିଲେ । ସେ କମିସନରଙ୍କଠାରୁ ଅନେକ ତଥ୍ୟ ଚାହିଁଲେ ମଧ୍ୟ ତା'ର ସନ୍ତୋଷଜନକ ଉତ୍ତର ପାଇ ନ ଥିଲେ । ତଥାପି ସମ୍ବଲପୁର ଅଞ୍ଚଳରେ ଶାନ୍ତି ଓ ଶୃଙ୍ଖଳା ରକ୍ଷା କରିବାପାଇଁ ସୁରେନ୍ଦ୍ର ସାଏ ପ୍ରଭୃତିଙ୍କୁ ଦୂରକୁ ପଠାଇବା ପ୍ରସ୍ତାବରେ ସେ ରାଜି

ହେଲେ । ୧୮୬୪ ମସିହା ଜାନୁଆରୀ ମାସ ୨୩ ତାରିଖରେ ସେ ସମ୍ବଲପୁର ପରିଦର୍ଶନରେ ଆସିଲେ । କମିସନରଙ୍କ ଏକ ଯୋଜନା ତାଙ୍କ ଦ୍ୱାରା ଅନୁମୋଦିତ ହେଲା ।

ଯୋଜନା ଅନୁଯାୟୀ କମିସନର ଓ ବହୁ ଇଂରେଜ କର୍ମଚାରୀମାନେ କମ୍ବର୍ଲିଙ୍କ ବାସଭବନରେ ରାତି ସାଢ଼େ ଦଶଟା ବେଳେ ଏକାଠି ହେଲେ । ସିଭିଲ ସର୍ଜନ ଡଃ ଗ୍ରାସ୍ ସେହି ଦଳରେ ଥିଲେ । ଇନ୍ସପେକ୍ଟର ମୋହନ ସିଂହଙ୍କ ନେତୃତ୍ୱରେ ସେମାନେ ଗୁପ୍ତ ଭାବେ ମହାନଦୀର ଗୋଟିଏ ଘାଟକୁ ଗଲେ । ସେଠାରୁ ନୌକାରେ କିଛି ବାଟ ଯାଇ ନଦୀ କୂଳରେ ଥିବା ସୁରେନ୍ଦ୍ର ସାଏଙ୍କ ଗୃହକୁ ଘେରାଉକଲେ । ସୁରେନ୍ଦ୍ର ସାଏ, ମିତ୍ରଭାନୁ ସାଏ, ଧ୍ରୁବ ସାଏଙ୍କ ପୁତ୍ର, ଧରଣୀ ମିଶ୍ର ପ୍ରଭୃତି ଶୋଇଥିବା ଅବସ୍ଥାରେ ଧରାପଡ଼ିଲେ । ଗୃହର ଭୃତ୍ୟଙ୍କୁ ମଧ ଛଡ଼ାଗଲା ନାହିଁ । ଏହା ପରେ କମ୍ବର୍ଲି ଓ ଏସ୍.ପି.ବେରିଲ୍ ୪୦ କିଲୋମିଟର ଦୂର ବନ୍ଧାଗ୍ରାମକୁ ଯାଇ ସେଠାରେ ଥିବା ଉଗ୍ର ବିପ୍ଳବୀ ନେତା ଖଗେଶ୍ୱର ଦାଓ ଓ ତାଙ୍କର ଭାଇମାନଙ୍କୁ ଗିରଫ କଲେ । ମାତ୍ର ଅନ୍ୟତମ ବିପ୍ଳବୀ କୁଞ୍ଜଲ ସିଂହ ଖସି ପଳାଇଲେ । କମ୍ବର୍ଲି ଓ ବେରିଲ୍ ଏଥିପାଇଁ ମଧ୍ୟପ୍ରଦେଶର ଅସ୍ଥାୟୀ ଚିଫ୍ କମିସନରଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲେ ।

ବହୁ ଚେଷ୍ଟା ପରେ କୁଞ୍ଜଲ ସିଂହ ଧରା ନ ପଡ଼ିବାରୁ ତାଙ୍କୁ ଧରିବାପାଇଁ ୨୦୦୦ ଟଙ୍କା ପୁରସ୍କାର ଘୋଷଣା କରାଗଲା । ଶାରଙ୍ଗଗଡ଼ରେ ଜଣେ ଫକିର ବେଶରେ ବୁଲୁଥିଲାବେଳେ ସେ ଧରାପଡ଼ିଲେ । ଶାରଙ୍ଗଗଡ଼ ରାଜା ଏଥିପାଇଁ ୨୦୦୦ ଟଙ୍କା ପୁରସ୍କାର ପାଇଲେ ।

## ଦ୍ୱିତୀୟ କାରାଦଣ୍ଡ

୧୮୬୪ ମସିହା ଜାନୁଆରୀ ମାସ ୨୬ ତାରିଖରେ ସୁରେନ୍ଦ୍ର ସାଏ, ଉଦନ୍ତ ସାଏ, ମେଦିନୀ ସାଏ, ମିତ୍ରଭାନୁ ସାଏ, ଧ୍ରୁବ ସାଏ ତାଙ୍କର ଚାରି ପୁତ୍ର, ଖଗେଶ୍ୱର ଦାଓ ଓ ତାହାଙ୍କ ଦୁଇ ଭାଇ, ଲୋକନାଥ ପଣ୍ଡା, ଧରଣୀ ମିଶ୍ର, ଶ୍ରଦ୍ଧାକର ମଲ୍ଲିକ ପ୍ରଭୃତି ନେତାମାନଙ୍କୁ ରାୟପୁର ଜେଲକୁ ପଠାଗଲା ।

ସମ୍ବଲପୁରର ଡେପୁଟି କମିସନର କମ୍ବର୍ଲି ଆସାମୀମାନଙ୍କ ବିରୋଧରେ ପ୍ରାମାଣିକ ତଥ୍ୟ ପ୍ରସ୍ତୁତ କଲେ । ଛତିଶଗଡ଼ କମିସନର ମୋକଦ୍ଦମା ବିଚାର କରି ୧୮୬୪ ମସିହା ଜୁନ ୨୩ ତାରିଖରେ ସୁରେନ୍ଦ୍ର ସାଏ ପ୍ରଭୃତି ଦଶ ଜଣଙ୍କୁ ଯାବଜ୍ଜୀବନ କାରାଦଣ୍ଡ ଓ ଚାରି ଜଣଙ୍କୁ ସାତ ବର୍ଷ କାରାଦଣ୍ଡ ଦେଲେ । ଅଭିଯୁକ୍ତ ବ୍ୟକ୍ତିମାନେ ଛତିଶଗଡ଼ କମିସନରଙ୍କ ରାୟ ବିରୋଧରେ ଜୁଡ଼ିସିଏଲ କମିସନର

ଜନ୍ ସ୍କାରଲେଟ କ୍ୟାମ୍ପବେଲ୍‌ଙ୍କ ଅଦାଲତରେ ଅପିଲ କଲେ । କ୍ୟାମ୍ପବେଲ୍ ପ୍ରାମାଣିକ ତଥ୍ୟଗୁଡ଼ିକ ଅନୁଧାନ କଲେ । ତନ୍ମଧ୍ୟରୁ ଅଧିକାଂଶ ଜାଲ ହୋଇଥିବା ଉପଲବ୍ଧି କରିଥିଲେ । ଆସାମୀମାନଙ୍କ ବିରୋଧରେ ମିଥ୍ୟା ମୋକଦ୍ଦମା ରୁଜୁ ହୋଇଥିବା ଦର୍ଶାଇ ସେସନ୍ସକୋର୍ଟର ରାୟକୁ ବାତିଲ କରିଦେଲେ ଓ ବନ୍ଦୀମାନଙ୍କୁ ନିର୍ଦ୍ଦୋଷରେ ଖଲାସ କଲେ ।

## ଶେଷ ଜୀବନ

ଜୁଡିସିଏଲ କମିସନର କ୍ୟାମ୍ପବେଲ୍‌ଙ୍କ ରାୟ ଇଂରେଜମାନଙ୍କ ହୀନଚକ୍ରାନ୍ତ ଓ ବିପ୍ଳବୀ ବୀରଙ୍କ ପ୍ରତି ଅମାନୁଷିକ ବ୍ୟବହାରକୁ ଯେ ପ୍ରମାଣିତ କରିଥିଲା, ଏଥିରେ ସନ୍ଦେହ ନାହିଁ । ତଥାପି ଇଂରେଜମାନେ ତାଙ୍କ ଜିଦ୍‌ରେ ଅଟଳ ରହିଲେ । ସୁରେନ୍ଦ୍ର ସାଏ, ଉଦନ୍ତ ସାଏ, ଧ୍ରୁବ ସାଏ, ମେଦିନୀ ସାଏ, ଖଗେଶ୍ୱର ଦାଓ ଓ ଲୋକନାଥ ପଣ୍ଡା ଏହିଭଳି ଛଅ ଜଣ ନେତାଙ୍କୁ ଯେକୌଣସି ପ୍ରକାରେ ଆଜୀବନ ବନ୍ଦି କରି ରଖିବାକୁ ଚେଷ୍ଟା କଲେ । ସେମାନେ ଯୁକ୍ତି କଲେ ଯେ ସୁରେନ୍ଦ୍ର ସାଏ ପ୍ରଭୃତି ଆଇନ ଦୃଷ୍ଟିରୁ ଅପରାଧୀ ନ ହେଲେ ମଧ୍ୟ ନୈତିକତା ଦୃଷ୍ଟିରୁ ଦୋଷୀ । ସମ୍ବଲପୁର ସିଂହାସନର ପ୍ରକୃତ ଉତ୍ତରାଧିକାରୀ ନ ହେଲେ ମଧ୍ୟ ସିଂହାସନ ପାଇବାପାଇଁ ଅଯଥା ବିଦ୍ରୋହ ଓ ଅଶାନ୍ତି ସୃଷ୍ଟି କରିଛନ୍ତି । ତେଣୁ ୧୮୧୩ ମସିହା ୩ ନମ୍ବର ରେଗୁଲେସନ ଅନୁଯାୟୀ ସୁରେନ୍ଦ୍ର ସାଏ ଓ ଅନ୍ୟ ପାଞ୍ଚ ଜଣଙ୍କୁ ଆଜୀବନ ବନ୍ଦି କରାଯିବା ଉଚିତ ।

୧୮୬୫ ମସିହା ଅପ୍ରେଲ ମାସ ଏକ ଆଦେଶନାମା ବଳରେ ବିପ୍ଳବୀ ବୀରମାନଙ୍କୁ ମଧ୍ୟପ୍ରଦେଶ ଅନ୍ତର୍ଗତ ଅସୀରଗଡ଼ ଦୁର୍ଗକୁ ପଠାଗଲା । ସେମାନଙ୍କର ବୃତ୍ତି ମଧ୍ୟ ବନ୍ଦ କରିଦିଆଗଲା । ବନ୍ଦୀ ହେବା ସମୟରେ ସୁରେନ୍ଦ୍ର ସାଏଙ୍କୁ ୬୦ ବର୍ଷ ବୟସ ହୋଇଥିଲା ।

୧୮୬୬ ମସିହାରେ ସୁରେନ୍ଦ୍ର ସାଏଙ୍କ ଓକିଲ ଏସ୍.ଟି. ପିଅରସନ୍ ବନ୍ଦୀମାନଙ୍କୁ ମୁକ୍ତି ଦେବାପାଇଁ ବଡ଼ଲାଟଙ୍କୁ ଆବେଦନ କଲେ । ବିଚାର ବିଭାଗୀୟ କମିସନରଙ୍କ ଦ୍ୱାରା ନିର୍ଦ୍ଦୋଷରେ ଖଲାସ ହେବା ସତ୍ତ୍ୱେ ବନ୍ଦୀ ଭାବେ ରହିବା ଆଇନସଙ୍ଗତ ନୁହେଁ ଓ ୧୮୧୮ ମସିହା ୩ ନମ୍ବର ରେଗୁଲେସନ ସେମାନଙ୍କପାଇଁ ପ୍ରଯୁଜ୍ୟ ନୁହେଁ ବୋଲି ସେ ଦର୍ଶାଇଲେ ମାତ୍ର ତାଙ୍କ ଆଦେଶ ପରିବର୍ତ୍ତନର କୌଣସି କାରଣ ନାହିଁ ବୋଲି ବଡ଼ଲାଟ ମତ ଦେଲେ; ତେବେ ସୁରେନ୍ଦ୍ରଙ୍କୁ କେତେକାଳ ବନ୍ଦି କରାଯିବ ବୋଲି ବଡ଼ଲାଟ ମଧ୍ୟପ୍ରଦେଶର ଚିଫ୍ କମିସନରଙ୍କୁ ପଚାରିଲେ । ସମ୍ବଲପୁରରୁ ସ୍ଥାନାନ୍ତରିତ ହେବା ପରେ ଶାନ୍ତିଶୃଙ୍ଖଳା ଫେରିଆସିଥିବା

ଦର୍ଶାଇ ସୁରେନ୍ଦ୍ର ସାଏଙ୍କୁ ନିକଟ ଭବିଷ୍ୟତ୍‌ରେ ମୁକ୍ତି ଦେବାର ଆଶା ନାହିଁ ବୋଲି ଚିଫ୍ କମିସନର ବଡ଼ଲାଟଙ୍କୁ ଜଣାଇଲେ ।

୧୮୬୯ ମସିହା ଜାନୁଆରୀ ମାସ ୨୮ ତାରିଖରେ ବନ୍ଦୀମାନଙ୍କର ମୁକ୍ତିପାଇଁ ବଡ଼ଲାଟ ଭୂତପୂର୍ବ ଚିଫ୍ କମିସନର ସାର ରିଚାର୍ଡ଼ ଟେମ୍ପଲ୍‌ଙ୍କ ମତ ମାଗିଲେ । ସେ ମଧ୍ୟ ଖଲାସପାଇଁ ସୁପାରିସ କରି ନ ଥିଲେ । ୧୮୭୧ରେ ଛତିଶଗଡ଼ କମିସନର ବନ୍ଦୀମାନଙ୍କର ମୁକ୍ତି ପ୍ରସ୍ତାବକୁ ମଧ୍ୟ ନାକଚ କରିଦେଲେ । ୧୮୭୬ ମସିହାରେ ସେମାନଙ୍କର ମୁକ୍ତିର ପ୍ରଶ୍ନ ପୁଣି ଉଠିଲା । ଛତିଶଗଡ଼ କମିସନର ସମ୍ବଲପୁରର କମିସନର କ୍ୟାପ୍‌ଟେନ ବୋଇଙ୍କ ସହ ପରାମର୍ଶ କଲେ । କ୍ୟାପ୍‌ଟେନ ବୋଇ ସେମାନଙ୍କୁ ମୁକ୍ତି ଦେବାକୁ ଆପତ୍ତି କରି ନ ଥିଲେ ମଧ୍ୟ କେବଳ ଧ୍ରୁବ ସାଏ ଓ ମିତ୍ରଭାନୁ ସାଏଙ୍କୁ ସର୍ତ୍ତମୂଳକ ମୁକ୍ତି ଦେବାକୁ ସୁପାରିସ କଲେ । ସେହି ବର୍ଷ ଜେଲରେ ଅନ୍ୟତମ ସଂଗ୍ରାମୀ ବୀର ମେଦିନୀ ସାଏଙ୍କର ମୃତ୍ୟୁ ହେଲା ।

୧୮୭୭ ମସିହା ଜାନୁଆରୀ ପହିଲା ତାରିଖ ଦିନ ଧ୍ରୁବ ସାଏ ଓ ମିତ୍ରଭାନୁ ସାଏଙ୍କୁ ସମ୍ବଲପୁରରେ ଖଲାସ କରିଦିଆଗଲା । ସର୍ତ୍ତ ଅନୁଯାୟୀ ବଣାଇ ରାଜାଙ୍କ ପିତୃବ୍ୟ ମିତ୍ରଭାନୁ ସାଏଙ୍କୁ ବଣାଇକୁ ନେଲେ । ମିତ୍ରଭାନୁ ପରେ ନିଜ ଗ୍ରାମ ଖିଣ୍ଡାରେ ରହିବାପାଇଁ ଆବେଦନ କଲେ । ମାତ୍ର ଡେପୁଟି କମିସନର ତାହା ଗ୍ରହଣ କରି ନ ଥିଲେ । ସେ ତେଣୁ ବଣାଇରେ ରହିବାକୁ ବାଧ ହେଲେ । ଧ୍ରୁବ ସାଏ ମଧ୍ୟ ସେଠାରେ ରହିଲେ । ୧୯୦୭ ମସିହାରେ ସେ ନିଜ ଗ୍ରାମ ଖିଣ୍ଡାକୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ସୁରେନ୍ଦ୍ର ସାଏ ବନ୍ଦି ହୋଇ ଅସୀରଗଡ଼ ଦୁର୍ଗରେ ଶେଷ ପର୍ଯ୍ୟନ୍ତ ରହିଲେ । ୧୮୬୬ ମସିହା ଜୁନ ୩୦ ତାରିଖର ଷାଣ୍ମାସିକ ରିପୋର୍ଟରୁ ଜଣାଯାଏ ଯେ ତାଙ୍କର ଓ ଅନ୍ୟ ଚାରି ଜଣଙ୍କର ସ୍ୱାସ୍ଥ୍ୟ ଖୁବ୍ ଭଲ ଥିଲା । ସେମାନେ ଅତି ସ୍ୱଚ୍ଛନ୍ଦରେ ଏକ ସ୍ୱତନ୍ତ୍ର କୋଠରିରେ ରହୁଥିଲେ । ସେମାନଙ୍କୁ ବ୍ୟାୟାମ କରିବାକୁ ଓ ମୁକ୍ତ ବାୟୁ ସେବନ କରିବାକୁ ସୁବିଧା ଦିଆଯାଇଥିଲା । ୧୮୬୯ ରିପୋର୍ଟରେ ସେମାନଙ୍କର ସ୍ୱାସ୍ଥ୍ୟ ଉତ୍ତମ ଥିବାର ଜଣାଯାଏ । ଶେଷଆଡ଼କୁ ରାୟପୁରରେ ରହିବା ସର୍ତ୍ତରେ ଖଲାସ ହେବାପାଇଁ ସୁରେନ୍ଦ୍ର ସାଏଙ୍କୁ ଆଦେଶ ହୋଇଥିଲା । ମାତ୍ର ତାହା କାର୍ଯ୍ୟକାରୀ ହୋଇ ନ ଥିଲା । ସମ୍ଭବତଃ, ସୁରେନ୍ଦ୍ର ସାଏ ଏ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରିଥିଲେ । ସେ ଅତିଶୟ ବୃଦ୍ଧ ହୋଇ ଅସୀରଗଡ଼ ଜେଲର ଡାକ୍ତରଖାନାରେ ଚିକିତ୍ସିତ ହେଉଥିବାର ଜଣାଯାଏ । ସେ ଅନ୍ଧ ହୋଇ

ନ ଥିଲେ ମଧ୍ୟ ବାର୍ଦ୍ଧକ୍ୟ ଯୋଗୁଁ ତାଙ୍କର ଦୃଷ୍ଟିଶକ୍ତି ହ୍ରାସ ପାଇଥିଲା । ଶେଷରେ ୯୦ ବର୍ଷ ବୟସରେ ୧୮୮୪ ମସିହା ଫେବୃୟାରୀ ମାସ ୨୮ ତାରିଖରେ ଡାକ୍ତରଖାନା ପିଣ୍ଡାରେ ତାଙ୍କର ମୃତ୍ୟୁ ହେଲା ।

ବାସ୍ତବରେ ସୁରେନ୍ଦ୍ର ସାଏଙ୍କର ଥିଲା ଏକ ଦୁର୍ଦ୍ଧର୍ଷ ସଂଗ୍ରାମୀ ଜୀବନ । ମହାରାଷ୍ଟ୍ରର ଛତ୍ରପତି ଶିବାଜୀ ଯେପରି ପାର୍ବତ୍ୟ ଅଧିବାସୀଙ୍କୁ ଧରି ମୋଗଲ ଶତ୍ରୁଙ୍କ ବିରୋଧରେ ଲଢ଼ିଥିଲେ, ସୁରେନ୍ଦ୍ର ସାଏ ସେହିପରି ସ୍ଥାନୀୟ ଅଧିବାସୀ, ଆଦିବାସୀ, ଗଉନ୍ତିଆ ଓ ଜମିଦାରଙ୍କୁ ଏକଜୁଟ କରି ଇଂରେଜମାନଙ୍କ ବିରୋଧରେ ଲଢ଼ାଇ କରିଥିଲେ । ସେ ହଜାରିବାଗ ଜେଲରୁ ପଳାଇଆସି ସମ୍ବଲପୁରରେ ପହଞ୍ଚିଲା ପରେ ତାଙ୍କୁ ଯେପରି ସମ୍ବର୍ଦ୍ଧନା ଦିଆଯାଇଥିଲା ତାହା କେବଳ ଫ୍ରାନ୍ସର ବିପ୍ଳବୀ ବୀର ନେପୋଲିୟନଙ୍କୁ ଏଲବା ଫେରିବାପରେ ଦିଆଯାଇଥିବା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ସହିତ ତୁଳନୀୟ ହୋଇପାରେ । ଶେଷରେ, ନେପୋଲିୟନ ଯେପରି ସେଣ୍ଟ ହେଲେନା ଦ୍ୱୀପରେ ଶେଷ ନିଶ୍ୱାସ ତ୍ୟାଗ କଲେ, ସେହିପରି ଗୃହ, ପରିବାର ଓ ଜନ୍ମଭୂମିର ବହୁଦୂରରେ ଅତି ଅସହାୟଭାବରେ ଅସୀରଗଡ଼ ଜେଲରେ ସୁରେନ୍ଦ୍ର ସାଏଙ୍କ ଜୀବନ ଦୀପ ନିର୍ବାପିତ ହୋଇଗଲା ।

---

# ସହାୟକ ଗ୍ରନ୍ଥମାଳା

## ଖାରବେଳ


### ଓଡ଼ିଆ

୧. ଓଡ଼ିଆ ଜାତିର ଇତିହାସ – ଡଃ ନବୀନ କୁମାର ସାହୁ
୨. ଓଡ଼ିଶାର ଇତିହାସ – ଡଃ ସତ୍ୟନାରାୟଣ ରାଜଗୁରୁ
୩. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୪. ଖାରବେଳ – କେଦାରନାଥ ମହାପାତ୍ର
୫. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ

### ଇଂରାଜୀ

1. History of Orissa, Part-I, (Utkal University) – Dr. N.K. Sahoo
2. History of Orissa (Hindu Period) – Dr. K.C. Panigrahy
3. The Early History of Kalinga Dharma Narayan Das


## ଯଯାତିକେଶରୀ


### ଓଡ଼ିଆ

୧. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୨. ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ – ଏଜନ
୩. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୪. ଓଡ଼ିଶାର ଇତିହାସ – ଡଃ ସତ୍ୟନାରାୟଣ ରାଜଗୁରୁ
୫. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୬. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ

### ଇଂରାଜୀ

1. History of Orissa (Part-I) – Dr. H. K. Mahtab
2. History of Orissa (Hindu Period) – Dr. K.C. Panigrahy
3. The Early History of Kalinga – Dharma Narayan Das
4. Archaeological Remains At Bhubaneswar – Dr. K.C. Panigrahy

## ଚୋଡ଼ଗଙ୍ଗଦେବ

### ଓଡ଼ିଆ

୧. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୨. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୩. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ
୪. ଓଡ଼ିଶାର ଇତିହାସ – ଡଃ ସତ୍ୟନାରାୟଣ ରାଜଗୁରୁ
୫. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୬. ଓଡ଼ିଶା ଇତିହାସ ଓ କିମ୍ବଦନ୍ତୀ – ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
୭. ଜଗନ୍ନାଥ ମାହାତ୍ମ୍ୟ – ହରିହର ବାହିନୀପତି
୮. ଓଡ଼ିଶାର ଧର୍ମ – ଭଗବାନ ପଣ୍ଡା

### ଇଂରାଜୀ

1. The Cult of Jagannath and the Regional Tradition of Orissa – A. Eschmann, H. Kulke, G. Tripathy
2. History of Orissa – Dr. K. C. Panigrahy
3. The cult of Jagannath – Dr. K. C. Misra
4. The cult and culture of Lord Jagannath – Daityari Panda & S. C. Panigrahy

## ନରସିଂହଦେବ

### ଓଡ଼ିଆ

୧. କୋଣାର୍କ – ପଣ୍ଡିତ କୃପାସିନ୍ଧୁ ମିଶ୍ର
୨. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୩. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୪. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ
୫. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୬. ଓଡ଼ିଶା ଇତିହାସ – ଡଃ ଯଜ୍ଞକୁମାର ସାହୁ

### ଇଂରାଜୀ

1. New Lights on the Sun Temple of Konark – Boner, Sarma & Das
2. History Orissa – Dr. K. C. Panigrahy
3. Orissa & Her Remains – M. M. Ganguly

## କପିଳେନ୍ଦ୍ରଦେବ

### ଓଡ଼ିଆ


୧. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୨. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୩. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ
୪. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୫. ଓଡ଼ିଶା ଇତିହାସ – ଡଃ ଯଜ୍ଞ କୁମାର ସାହୁ


### ଇଂରାଜୀ


1. History of Orissa (Hindu Period) – Dr. K. C. Panigrahy
2. History Gajapati kings of Orissa – P. Mukherji
3. Suryavamsi Gajapatis of Orissa – Dr. K. Subrahmanium


## ପୁରୁଷୋତ୍ତମଦେବ

### ଓଡ଼ିଆ


୧. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୨. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୩. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୪. ଓଡ଼ିଶା ଇତିହାସ – ଡଃ ଯଜ୍ଞ କୁମାର ସାହୁ
୫. ଜନଶ୍ରୁତି କାଞ୍ଚି କାବେରୀ – ଡଃ ଗଗନେନ୍ଦ୍ର ନାଥ ଦାସ
୬. ପୁରୁଷୋତ୍ତମଦେବ – ପଣ୍ଡିତ ଗୋଦାବରୀଶ ମିଶ୍ର


### ଇଂରାଜୀ


1. History of Orissa (Hindu Period) – Dr. K. C. Panigrahy
2. The Gajapati Kings of Orissa – P. Mukherji
3. Suryavamsi Gajapatis Orissa – Dr. K. Subrahmanium


## ଦ୍ୱିତୀୟ ମୁକୁନ୍ଦଦେବ

### ଓଡ଼ିଆ


୧. ମାଦଳାପାଞ୍ଜି (ସଂ) – ପ୍ରାଚୀ ସମିତି ପ୍ରକାଶିତ
୨. ଉତ୍ତ୍ରଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୩. ଓଡ଼ିଶା ଇତିହାସ – ଡଃ ହରେକୃଷ୍ଣ ମହତାବ
୪. ଓଡ଼ିଶା ଇତିହାସ – ଡଃ ଯଜ୍ଞ କୁମାର ସାହୁ
୫. ବାରବାଟୀ – ପଣ୍ଡିତ କୃପାସିନ୍ଧୁ ମିଶ୍ର

**ଇଂରାଜୀ**

1. History of Orissa (Hindu Period) – Dr. K. C. Panigrahi
2. History of Gajapati Kings of Orissa – P. Mukherji
3. Suryavamsi Gajapatis of Orissa – Dr. K. Subrahmanium
4. Barabati – Chintamani Das
5. Cuttack one thousand years Vol.1 – Cuttack City Millennium Committee. Cuttack.

## ପ୍ରଥମ ରାମଚନ୍ଦ୍ରଦେବ

**ଓଡ଼ିଆ**

୧. ଚକଡ଼ାପୋଥି (ସଂ) – ସୁଧାକର ପଟ୍ଟନାୟକ
୨. ମାଦଳାପାଞ୍ଜି (ସଂ) ପ୍ରାଚୀ ସମିତି ପ୍ରକାଶିତ
୩. ଉତ୍କଳଦେଶ ରାଜବଂଶାବଳୀ (ସଂ) – ଡଃ କାହ୍ନୁଚରଣ ମିଶ୍ର
୪. ଓଡ଼ିଶା ଇତିହାସ – ଡଃ ଯଜ୍ଞ କୁମାର ସାହୁ
୫. ଖୁର୍ଦ୍ଧା ଇତିହାସ – କେଦାରନାଥ ମହାପାତ୍ର

**ଇଂରାଜୀ**

1. History of Orissa Vol. II – Dr. H. K. Mahtab.
2. Forgotten Chapter of Orissan History – Dr. P. K. Pattnaik.

## ବାସୁଦେବ ସୁଢଳଦେବ

୧. ବାସୁଦେବ ଗ୍ରନ୍ଥାବଳୀ
୨. ଗଡ଼ଜାତ – ଭାଗୀରଥି ନେପାକ

## ଶ୍ରୀରାମଚନ୍ଦ୍ର ଭଞ୍ଜଦେବ

**ଓଡ଼ିଆ**

୧. ମହାରାଜା ଶ୍ରୀରାମଚନ୍ଦ୍ର – ଦିବ୍ୟସିଂହ ପାଣିଗ୍ରାହୀ
୨. ରାଜର୍ଷି ଶ୍ରୀରାମଚନ୍ଦ୍ର ଭଞ୍ଜଦେବ – ଡଃ ଭାଗବତ ପ୍ରସାଦ ଲେଙ୍କା

## ଜୟଦେବ

**ଓଡ଼ିଆ**

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟ ସଂସ୍କୃତି – ପଣ୍ଡିତ ନୀଳକଣ୍ଠ ଦାସ
୩. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ
୪. ଜୟଦେବ ଓ ଗୀତଗୋବିନ୍ଦ – କେଦାରନାଥ ମହାପାତ୍ର
୫. ଉତ୍କଳର କବି ଜୟଦେବ (ସଂ) – ସାରଳା ସାହିତ୍ୟ ସଂସଦ
୬. ଓଡ଼ିଶାର କବି ଜୟଦେବ (ସଂ) – ଓଡ଼ିଶା ସଂସ୍କୃତି ପରିଷଦ
୭. ଓଡ଼ିଆ ସାହିତ୍ୟରେ ଜୟଦେବ – ନଗେନ୍ଦ୍ରନାଥ ପ୍ରଧାନ
୮. ଜୟଦେବ – ଚକ୍ରଧର ମହାପାତ୍ର
୯. ସାରସ୍ୱତ ଗୌରବ – ଜାନକୀ ବଲ୍ଲଭ ମହାନ୍ତି

## ଇଂରାଜୀ

1. A. B. Mohanty Memorial Lectures -- Dr. S. K. Chatterji

## ସାରଳା ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ (୨ୟ ଭାଗ)– ଡଃ ବଂଶୀଧର ମହାନ୍ତି
୩. ଓଡ଼ିଆ ସାହିତ୍ୟର କ୍ରମ ପରିମାଣ – ପଣ୍ଡିତ ନୀଳକଣ୍ଠ ଦାସ
୪. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୫. ଓଡ଼ିଆ ସାହିତ୍ୟର ଇତିହାସ – ଗୌରୀକୁମାର ବ୍ରହ୍ମା
୬. ମାଟିର ମହାକବି – ଡଃ ମାୟାଧର ମାନସିଂହ
୭. ମହାକବି ସାରଳା ଦାସ – ସର୍ବେଶ୍ୱର ଦାସ
୮. ଉତ୍କଳବ୍ୟାସ ସାରଳା ଦାସ – ପ୍ରଭାକର ସ୍ୱାଇଁ
୯. ସାରଳା ମହାଭାରତ (ସଂ) – ଡଃ କୃଷ୍ଣଚରଣ ସାହୁ
୧୦. ସାରଳା ସାହିତ୍ୟର ଐତିହାସିକ ଚିତ୍ର – ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ
୧୧. ବିପ୍ଳବୀକବି ସାରଳା ଦାସ (ସଂ) – ଡଃ ଉପେନ୍ଦ୍ର ମହାନ୍ତି
୧୨. ସାରଳା ସାହିତ୍ୟ ପରିକ୍ରମା – ସୁରେନ୍ଦ୍ର ମହାରଣା
୧୩. ସାରଳା ସ୍ମରଣିକା (ସଂ) – ପ୍ରଜାତନ୍ତ୍ର ପ୍ରଚାର ସମିତି
୧୪. ସାରଳା ମହାଭାରତ – ସାଂସ୍କୃତିକ ବ୍ୟାପାର ବିଭାଗ,ଓଡ଼ିଶା

## ବଳରାମ ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ (୧ମ ଓ ୨ୟ) – ଡଃ ବଂଶୀଧର ମହାନ୍ତି
୩. ଓଡ଼ିଆ ସାହିତ୍ୟର ଆଦିପର୍ବ – ସୁରେନ୍ଦ୍ର ମହାନ୍ତି
୪. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୫. କବି ବଳରାମ ଦାସ (ଓଡ଼ିଶା ସାହିତ୍ୟ ଏକାଡେମୀ) – ଡଃ କୃଷ୍ଣଚରଣ ସାହୁ
୬. ବଳରାମ ଦାସ ଓ ଦାଣ୍ଡି ରାମାୟଣ – ଡଃ ନରେନ୍ଦ୍ର ନାଥ ମିଶ୍ର
୭. ପଞ୍ଚସଖା ବିଶେଷାଙ୍କ (ସଂ) – ଓଡ଼ିଶା ସାହିତ୍ୟ ଏକାଡେମୀ ପ୍ରକାଶିତ
୮. ଭକ୍ତକବି ବଳରାମ ଦାସ (ସଂକଳନ) – ଡଃ ବ୍ରଜମୋହନ ମହାନ୍ତି
୯. ଓଡ଼ିଶାର ଭକ୍ତକବି (ସଂକଳନ) – ଏଜନ
୧୦. ବାଲ୍ମୀକି ରାମାୟଣ ରାଧାରମଣ ପୁସ୍ତକାଳୟ ପ୍ରକାଶିତ
୧୧. ମାଣବସା ଲକ୍ଷ୍ମୀପୁରାଣ – ଏ ପୁସ୍ତକ ଭଣ୍ଡାର ପ୍ରକାଶିତ

## ଜଗନ୍ନାଥ ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର କ୍ରମ ପରିମାଣ – ପଣ୍ଡିତ ନୀଳକଣ୍ଠ ଦାସ
୩. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୪. ଓଡ଼ିଆ ସାହିତ୍ୟର ଆଦିପର୍ବ – ସୁରେନ୍ଦ୍ର ମହାନ୍ତି
୫. ଓଡ଼ିଆ ସାହିତ୍ୟର ଇତିହାସ (ପଞ୍ଚସଖା ବିଶେଷାଙ୍କ) – ଡଃ ବଂଶୀଧର ମହାନ୍ତି
୬. ଭକ୍ତକବି ଜଗନ୍ନାଥ ଦାସ – ଏକ ସମୀକ୍ଷା–ଏକନ
୭. ମହାପୁରୁଷ ଜଗନ୍ନାଥ ଦାସ ଓ ଭାଗବତ ସମୀକ୍ଷା – ସର୍ବେଶ୍ୱର ଦାସ
୮. ପଞ୍ଚସଖା ଧର୍ମ ଓ ସାହିତ୍ୟ – ସୁରେନ୍ଦ୍ର କୁମାର ମହାରଣା
୯. ପଞ୍ଚସଖା ଓ ଓଡ଼ିଆ ସାହିତ୍ୟ – ଦେବେନ୍ଦ୍ର ମହାନ୍ତି
୧୦. ଅତିବଡ଼ୀ ଜଗନ୍ନାଥ ପରିକ୍ରମା (ସଂ) – ପୂଜ୍ୟପୂଜା ସଂସଦ, ଓଡ଼ିଶା
୧୧. ଜଗନ୍ନାଥ ଦାସ ଓ ଓଡ଼ିଆ ଭାଗବତ ସଂସ୍କୃତି (ସଂକଳନ) – ଡଃ ବ୍ରଜମୋହନ ମହାନ୍ତି
୧୨. ଶ୍ରୀମଦ୍ଭାଗବତ – ରାଧାରମଣ ପୁସ୍ତକାଳୟ ପ୍ରକାଶିତ

## ଅଚ୍ୟୁତାନନ୍ଦ ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ (ପଞ୍ଚସଖା ବିଶେଷାଙ୍କ) – ଡଃ ବଂଶୀଧର ମହାନ୍ତି
୩. କୋଣାର୍କ (ପଞ୍ଚସଖା ବିଶେଷାଙ୍କ) – ଓଡ଼ିଶା ସାହିତ୍ୟ ଏକାଡେମୀ
୪. ପଞ୍ଚସଖା ଧର୍ମ ଓ ସାହିତ୍ୟ – ସୁରେନ୍ଦ୍ର କୁମାର ମହାରଣା
୫. ପଞ୍ଚସଖା ଓ ଓଡ଼ିଆ ସାହିତ୍ୟ – ଦେବେନ୍ଦ୍ର ମହାନ୍ତି
୬. ମହାପୁରୁଷ ଅଚ୍ୟୁତାନନ୍ଦ – ସର୍ବେଶ୍ୱର ଦାସ
୭. ଅଚ୍ୟୁତାନନ୍ଦ ରଚନାବଳୀ – ଡଃ ରତ୍ନାକର ଚଇନୀ
୮. ଯୋଗର୍ଷି ଅଚ୍ୟୁତାନନ୍ଦ – ଭାଗୀରଥି ନେପାକ
୯. ଅଚ୍ୟୁତାନନ୍ଦ ଦାସ – ବ୍ରଜମୋହନ ମହାନ୍ତି
୧୦. ମହାପୁରୁଷ ଅଚ୍ୟୁତାନନ୍ଦ – ଗୋକୁଳ ଚନ୍ଦ୍ର ଦାସ
୧୧. ସପ୍ତଖଣ୍ଡ ହରିବଂଶ – ରାଧାରମଣ ପୁସ୍ତକାଳୟ ପ୍ରକାଶିତ

## ଯଶୋବନ୍ତ ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ (ପଞ୍ଚସଖା ବିଶେଷାଙ୍କ) – ଡଃ ବଂଶୀଧର ମହାନ୍ତି
୩. କୋଣାର୍କ (ପଞ୍ଚସଖା ବିଶେଷାଙ୍କ) – ଓଡ଼ିଶା ସାହିତ୍ୟ ଏକାଡେମୀ
୪. ପଞ୍ଚସଖା ଓ ଓଡ଼ିଆ ସାହିତ୍ୟ – ଦେବେନ୍ଦ୍ର ମହାନ୍ତି
୫. ପଞ୍ଚସଖା ଧର୍ମ ଓ ସାହିତ୍ୟ – ସୁରେନ୍ଦ୍ର କୁମାର ମହାରଣା
୬. ସଖା ଯଶୋବନ୍ତ – ଗୌରାଙ୍ଗ ଚରଣ ରାୟ
୭. ଯଶୋବନ୍ତ ଦାସଙ୍କ ପ୍ରେମଭକ୍ତି ବ୍ରହ୍ମଗୀତା – ଡଃ ବୈଷ୍ଣବ ଚରଣ ସାମଲ
୮. ଯଶୋବନ୍ତ ଦାସଙ୍କ ଟୀକା ଗୋବିନ୍ଦଚନ୍ଦ୍ର (ସଂ) – ପ୍ରଦୀପ୍ତ କୁମାର ପଣ୍ଡା

## ଶିଶୁଅନନ୍ତ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ (ପଞ୍ଚସଖା ବିଶେଷାଙ୍କ) – ଡଃ ବଂଶୀଧର ମହାନ୍ତି
୩. ପଞ୍ଚସଖା ଓ ଓଡ଼ିଆ ସାହିତ୍ୟ – ଦେବେନ୍ଦ୍ର ମହାନ୍ତି
୪. ଯଶୋବନ୍ତ ଓ ଶିଶୁଅନନ୍ତ – ଭାଗୀରଥି ନେପାକ
୫. ଶିଶୁଅନନ୍ତ ପରିକ୍ରମା (ସଂ) – ତନୟା ଦାସ ଗୋସ୍ୱାମୀ
୬. ହେତୁଉଦୟ ଭାଗବତ (ସଂ) – ଡଃ ନଗେନ୍ଦ୍ରନାଥ ପ୍ରଧାନ
୭. ବ୍ରହ୍ମକୁଣ୍ଡଳୀ ଗୀତା (ସଂ) – ଡଃ ବଂଶୀଧର ମହାନ୍ତି

## ଦୀନକୃଷ୍ଣ ଦାସ

୧. କବି ଓ କବିତା – ଡଃ ମାୟାଧର ମାନସିଂହ
୨. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୩. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୪. ଓଡ଼ିଆ ସାହିତ୍ୟରେ ଦୀନକୃଷ୍ଣ – ଡଃ ନଗେନ୍ଦ୍ରନାଥ ପ୍ରଧାନ
୫. ଦୀନକୃଷ୍ଣ ସାହିତ୍ୟ ସମୀକ୍ଷା – ଏଛନ
୬. ରସକଲ୍ଲୋଳର ଭୂମି ଓ ଭୂମିକା – ଦେବେନ୍ଦ୍ର ମହାନ୍ତି
୭. କବି ଦୀନକୃଷ୍ଣ (ସଂ) – ବିପିନ ବିହାରୀ ପରିଷଦ
୮. ପ୍ରାଚୀନ କବି ଓ କବିତା – ଡଃ ଜାନକୀ ବଲ୍ଲଭ ମହାନ୍ତି

## ଉପେନ୍ଦ୍ର ଭଞ୍ଜ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୩. ଓଡ଼ିଆ ସାହିତ୍ୟର ମଧ୍ୟପର୍ବ – ସୁରେନ୍ଦ୍ର ମହାନ୍ତି
୪. ଉପେନ୍ଦ୍ର ଭଞ୍ଜ ଏକ ସମୀକ୍ଷା – ଡଃ ଜୟକୃଷ୍ଣ ମିଶ୍ର
୫. କବି ଓ କବିତା – ଡଃ ମାୟାଧର ମାନସିଂହ
୬. ଉପେନ୍ଦ୍ର ଭଞ୍ଜ–ଜୀବନୀ ଓ ପ୍ରତିଭା – ଭାଗୀରଥି ନେପାକ
୭. କବିଗୁରୁ ଉପେନ୍ଦ୍ର ଭଞ୍ଜ (ସଂ) – ମୁରାରୀ ମୋହନ ଜେନା
୮. ଓଡ଼ିଆ ସାହିତ୍ୟର ଇତିହାସ – ଗୌରୀକୁମାର ବ୍ରହ୍ମା
୯. ଭଞ୍ଜ ସନ୍ଦର୍ଭ – ଶ୍ରୀଧର ଶତପଥୀ
୧୦. କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ – ଅନନ୍ତ ପଦ୍ମନାଭ ପଟ୍ଟନାୟକ
୧୧. କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜ – ମାଗୁଣି ଦାସ
୧୨. ଉପେନ୍ଦ୍ର ଭଞ୍ଜ କବିସମ୍ରାଟ୍ କାହିଁକି ? – ବୈଷ୍ଣବ ଚରଣ ବଳ
୧୩. କବିସମ୍ରାଟ୍ ସ୍ମରଣିକା (ସଂ) – ହୃଦାନନ୍ଦ ରାୟ
୧୪. ପ୍ରାଚୀନ କବି ଓ କବିତା – ଡଃ ଜାନକୀ ବଲ୍ଲଭ ମହାନ୍ତି
୧୫. ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟକବିତା ଏକ ପୁନର୍ମୂଲ୍ୟାୟନ – ପ୍ରଫୁଲ୍ଲ କୁମାର ଜଗଦେବ

## ଅଭିମନ୍ୟୁ ସାମନ୍ତସିଂହାର

୧. ପ୍ରାଚୀନ ଉତ୍କଳ – ଜଗବନ୍ଧୁ ସିଂହ
୨. କବି ଓ କବିତା – ଡଃ ମାୟାଧର ମାନସିଂହ
୩. ରସିକ ଭକ୍ତ ଅଭିମନ୍ୟୁ – ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ
୪. ବିଦଗ୍ଧ କବି ଅଭିମନ୍ୟୁ – ଡଃ କାହ୍ନୁଚରଣ ମିଶ୍ର
୫. କବି ଅଭିମନ୍ୟୁ – ଡଃ ଜାନକୀ ବଲ୍ଲଭ ମହାନ୍ତି
୬. ସାମନ୍ତସିଂହାର ସମୀକ୍ଷା (ସଂ) – ମୁରାରି ମୋହନ ଜେନା
୭. ବିଦଗ୍ଧ କବି ଅଭିମନ୍ୟୁ– ଦୃଷ୍ଟି ଓ ଦିଗ୍‌ବଳୟ (ସଂ) – ଅଭିମନ୍ୟୁ ସଂସ୍କୃତି ସଂସଦ
୮. ଅଭିମନ୍ୟୁ ପରିକ୍ରମା – ଏଜନ
୯. ବିଦଗ୍ଧ ଚିନ୍ତାମଣି – ପ୍ରାଚୀ ସମିତି ପ୍ରକାଶିତ
୧୦. ବିଦଗ୍ଧ ଚିନ୍ତାମଣି ପରିଚୟ – ଡଃ ବଂଶୀଧର ମହାନ୍ତି

## ଭକ୍ତଚରଣ ଦାସ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୩. କବି ଭକ୍ତଚରଣ – ନଗେନ୍ଦ୍ରନାଥ ମଲ୍ଲିକ
୪. ଭକ୍ତଚରଣ ଦାସ ଓ ତଦୀୟ ରଚନାବଳୀ – ଫକୀରମୋହନ ଦାସ
୫. ଭକ୍ତକବି ଭକ୍ତଚରଣ – ଭାଗୀରଥି ନେପାକ
୬. ଓଡ଼ିଶାର ଭକ୍ତକବି (ସଂ) – ଡଃ ବ୍ରଜମୋହନ ମହାନ୍ତି
୭. ମଥୁରା ମଙ୍ଗଳ – ଶ୍ରୀ ଜଗନ୍ନାଥ ସିଂହ ପ୍ରକାଶିତ

## ବଳଦେବ ରଥ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. କବିସୂର୍ଯ୍ୟ ଗ୍ରନ୍ଥାବଳୀ – କୁଳମଣି ଦାସ କାବ୍ୟତୀର୍ଥ
୩. ବଳଦେବ ରଥ – ସଚ୍ଚିଦାନନ୍ଦ ମିଶ୍ର
୪. କବିସୂର୍ଯ୍ୟ କାବ୍ୟବିଭା – ଦାଶରଥି ଦାସ
୫. କବିସୂର୍ଯ୍ୟ ବଳଦେବ ରଥ – ଡଃ ଜାନକୀ ବଲ୍ଲଭ ମହାନ୍ତି

## ଗୋପାଳକୃଷ୍ଣ

୧. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୨. ଗୋପାଳକୃଷ୍ଣ ଗ୍ରନ୍ଥାବଳୀ
୩. କବି ଗୋପାଳକୃଷ୍ଣ – ଡଃ ରତ୍ନାକର ଚଇନୀ
୪. ଗୋପାଳକୃଷ୍ଣ ସୃଷ୍ଟି ସମୀକ୍ଷା – ଡଃ ଗଙ୍ଗାଧର ବଳ
୫. ଭକ୍ତକବି ଗୋପାଳକୃଷ୍ଣ – ଫକୀରମୋହନ ଦାସ

## ବନମାଳୀ

୧. କବି ବନମାଳୀ ଓ ତାଙ୍କ ପଦ୍ୟାବଳୀ – ଡଃ ରତ୍ନାକର ଚଇନୀ
୨. ବନମାଳୀ ଦାସ (ଓଡ଼ିଶା ସାହିତ୍ୟ ଏକାଡେମୀ) – ନୀଳମଣି ମିଶ୍ର
୩. ସଚିତ୍ର ବନମାଳୀ ପଦ୍ୟାବଳୀ – ପଠାଣି ପଟ୍ଟନାୟକ

## ବ୍ରଜନାଥ ବଡ଼ଜେନା

### ଓଡ଼ିଆ

୧. ବ୍ରଜନାଥ ଗ୍ରନ୍ଥାବଳୀ (ସଂ) – ସୁଧାକର ପଟ୍ଟନାୟକ
୨. ବଡ଼ଜେନା ସାହିତ୍ୟ ସମୀକ୍ଷା – ଡଃ ନଟବର ସାମନ୍ତରାୟ
୩. ବ୍ରଜନାଥ ବଡ଼ଜେନା (ସଂ) – ରମେଶ ଧଳ
୪. ବ୍ରଜନାଥ ବଡ଼ଜେନା – ଭାଗୀରଥି ନେପାକ
୫. ବ୍ରଜନାଥ ବଡ଼ଜେନା – ଡଃ ଜାନକୀ ବଲ୍ଲଭ ମହାନ୍ତି
୬. କବି ବ୍ରଜନାଥ ବଡ଼ଜେନା-ଜୀବନୀ ଓ ସାହିତ୍ୟ – ଉଦ୍ଧବ ନାୟକ

### ଇଂରାଜୀ

1. History of Oriya Literature – Dr. Mayadhar Mansingh

## ରାଧାନାଥ ରାୟ

୧. ରାଧାନାଥ ଗ୍ରନ୍ଥାବଳୀ
୨. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୩. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୪. କବି ଓ କଳାକାର – ଡଃ ମାୟାଧର ମାନସିଂହ
୫. ଯୁଗ ପ୍ରବର୍ତ୍ତକ ସ୍ରଷ୍ଟା ରାଧାନାଥ – ଡଃ ନଟବର ସାମନ୍ତରାୟ
୬. କବିବର କାବ୍ୟବିଭା – ଡଃ ନୃସିଂହ ଷଡ଼ଙ୍ଗୀ
୭. ଯୁଗଜ୍ୟୋତି ରାଧାନାଥ – ଦେବେନ୍ଦ୍ର ମହାନ୍ତି
୮. ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ସତ୍ୟବାଦୀ ଯୁଗ – ଡଃ ବୈଷ୍ଣବଚରଣ ସାମଲ
୯. କବିଗୁରୁ ରାଧାନାଥ – ଭାଗୀରଥି ନେପାକ
୧୦. କବିବର ରାଧାନାଥ – ସତ୍ୟନାରାୟଣ ମହାପାତ୍ର
୧୧. ରାଧାନାଥଙ୍କ ଅନନ୍ୟ ପ୍ରତିଭା – ପରମାନନ୍ଦ ଅଧିକାରୀ
୧୨. କବିଚରିତ ରାଧାନାଥ – କ୍ଷେତ୍ରବାସୀ ନାୟକ
୧୩. ଚିଲିକା ଓ ରାଧାନାଥ – ଗୌରୀକୁମାର ବ୍ରହ୍ମା

## ମଧୁସୂଦନ ରାଓ

୧. ମଧୁସୂଦନ ଗ୍ରନ୍ଥାବଳୀ
୨. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ
୩. ଓଡ଼ିଆ ସାହିତ୍ୟର ଇତିହାସ – ପଣ୍ଡିତ ବିନାୟକ ମିଶ୍ର
୪. ମଧୁ ସୃଷ୍ଟି ଅପୂର୍ବ ଦୃଷ୍ଟି – ଡଃ ଶରତ ଚନ୍ଦ୍ର ପ୍ରଧାନ
୫. ଭକ୍ତକବି ମଧୁସୂଦନ – ଡଃ ମଧୁସୂଦନ ପତି
୬. ସାତ୍ତ୍ୱିକ ଭକ୍ତ ମଧୁସୂଦନ – ଭାଗୀରଥି ନେପାକ
୭. ଭକ୍ତକବି ମଧୁସୂଦନ – ବ୍ରଜମୋହନ ମହାନ୍ତି
୮. ଭକ୍ତକବି ମଧୁସୂଦନ – ଉଦୟନାଥ ଦାସ
୯. ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ସତ୍ୟବାଦୀ ଯୁଗ – ଡଃ ବୈଷ୍ଣବ ଚରଣ ସାମଲ

## ଗଙ୍ଗାଧର ମେହେର

୧. ଗଙ୍ଗାଧର ଗ୍ରନ୍ଥାବଳୀ
୨. ଗଙ୍ଗାଧର ସାହିତ୍ୟ ସମୀକ୍ଷା – ଡଃ ନଟବର ସାମନ୍ତରାୟ
୩. କବିଚରିତ ଗଙ୍ଗାଧର – ହେମନ୍ତ କୁମାର ଦାସ
୪. ଗଙ୍ଗାଧର ସାହିତ୍ୟ ପରିକ୍ରମା – ପଠାଣି ପଟ୍ଟନାୟକ

୫. ଜୀବନୀ ଓ କବି ଗଙ୍ଗାଧର – ଡଃ ଅସିତ କବି
୬. କବି ଗଙ୍ଗାଧର ମେହେର – ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା
୭. ମେହେର ସୃଷ୍ଟି ସମୀକ୍ଷା – ଗଙ୍ଗାଧର ବଳ
୮. ଗଙ୍ଗାଧର ସାହିତ୍ୟ ଏକ ଅଧ୍ୟୟନ – ଗଣେଶରାମ ନାୟକ
୯. ରୂପଜୀବୀ ଗଙ୍ଗାଧର – ରଘୁନାଥ ମେହେର
୧୦. ଗଙ୍ଗାଧର ସ୍ମରଣିକା (ସଂ) – ଗଙ୍ଗାଧର ସ୍ମରଣିକା ପ୍ରକାଶନ କମିଟି
୧୧. ଓଡ଼ିଆ ସାହିତ୍ୟରେ ରାଧାନାଥ ଓ ସତ୍ୟବାଦୀ ଯୁଗ – ଡଃ ବୈଷ୍ଣବଚରଣ ସାମଲ
୧୨. ପ୍ରଣୟ ବଲ୍ଲରୀ ଓ ମେହେର ସାହିତ୍ୟ – ଦେବେନ୍ଦ୍ର ମହାନ୍ତି

## ନନ୍ଦକିଶୋର ବଳ

୧. ନନ୍ଦକିଶୋର ଗ୍ରନ୍ଥାବଳୀ
୨. ନନ୍ଦକିଶୋର ସାହିତ୍ୟ ସମୀକ୍ଷା – ଡଃ ନଟବର ସାମନ୍ତରାୟ
୩. ବିଶ୍ୱାସର ବସୁନ୍ଧରା – ଡଃ ରଘୁନାଥ ମହାପାତ୍ର
୪. ପଲ୍ଲୀକବି ସ୍ମାରକ ଗ୍ରନ୍ଥ
୫. ନନ୍ଦକିଶୋର ସନ୍ଦେଶ – ମୁରାରି ମୋହନ ଜେନା
୬. କବିଲିପି – ଡଃ ଦେବୀପ୍ରସନ୍ନ ପଟ୍ଟନାୟକ
୭. ପଲ୍ଲୀକବି ନନ୍ଦକିଶୋର – ସତ୍ୟନାରାୟଣ ମହାପାତ୍ର

## ଫକୀରମୋହନ ସେନାପତି

୧. ଫକୀରମୋହନ ଗ୍ରନ୍ଥାବଳୀ
୨. ଆତ୍ମଜୀବନୀ ଚରିତ – ଫକୀରମୋହନ ସେନାପତି
୩. ବ୍ୟାସକବି ଫକୀରମୋହନ – ଡଃ ନଟବର ସାମନ୍ତରାୟ
୪. ଫକୀରମୋହନ ସାହିତ୍ୟ ସମୀକ୍ଷା – ଏଜନ
୫. ଫକୀରମୋହନଙ୍କ ଉପନ୍ୟାସବଳୀ ସୁରେନ୍ଦ୍ର ମହାନ୍ତି
୬. ଯୁଗ ସ୍ରଷ୍ଟା – ସର୍ବେଶ୍ୱର ଦାସ
୭. ମନୀଷୀ ଫକୀରମୋହନ – ଡଃ କେ. ଭି. ବୋଲଟନ୍
୮. କଥାଶିଳ୍ପୀ ସେନାପତିଙ୍କ ଦୃଷ୍ଟି ଓ ଦିଗ୍‌ବଳୟ – ବାଳକୃଷ୍ଣ ଶତପଥୀ
୯. ଫକୀରମୋହନ ଶିକ୍ଷାଜଗତ ଓ ଶିକ୍ଷାରୀତି– ଡଃ ନୃସିଂହ ଷଡ଼ଙ୍ଗୀ
୧୦. ଯୁଗପୁରୁଷ ଫକୀରମୋହନ (ସଂ) – ସାରଳା ସାହିତ୍ୟ ସଂସଦ

## ଯଦୁମଣି ମହାପାତ୍ର

୧. ଯଦୁମଣି ଗ୍ରନ୍ଥାବଳୀ ଓ ଜୀବନଚରିତ – ଚକ୍ରଧର ମହାପାତ୍ର
୨. ଯଦୁମଣି ଗ୍ରନ୍ଥାବଳୀ (ସଂ) – ପଣ୍ଡିତ ବିନାୟକ ମିଶ୍ର
୩. ପ୍ରାଚୀନ କବି ଓ କବିତା – ଡଃ ଜାନକୀବଲ୍ଲଭ ମହାନ୍ତି
୪. ଯଦୁମଣି ରହସ୍ୟ ଚନ୍ଦ୍ରଶେଖର ନନ୍ଦ
୫. ଯଦୁମଣି ରହସ୍ୟ – ବିଷ୍ଣୁଦେବ ପଣ୍ଡା

## ସାମନ୍ତ ଚନ୍ଦ୍ରଶେଖର

୧. ସାମନ୍ତ ଚନ୍ଦ୍ରଶେଖର (ଜୀବନୀ) – ପଣ୍ଡିତ ଚନ୍ଦ୍ରଶେଖର ମିଶ୍ର
୨. ଓଡ଼ିଆ ବୈଜ୍ଞାନିକ ପଠାଣି ସାମନ୍ତ – ଚିତ୍ତରଞ୍ଜନ ତ୍ରିପାଠୀ
୩. ଭାରତୀୟ ବିଜ୍ଞାନ ଓ ବୈଜ୍ଞାନିକ (୨ୟ ଭାଗ) – ଡଃ ଦେବକାନ୍ତ ମିଶ୍ର
୪. ଗଡ଼ଜାତ – ଭାଗୀରଥି ନେପାକ
୫. ସିଦ୍ଧାନ୍ତ ଦର୍ପଣ – ସାମନ୍ତ ଚନ୍ଦ୍ରଶେଖର

## ଦାସିଆ ବାଉରି

୧. ଭକ୍ତ ବାଲିଗାଁ ଦାସ ଜୀବନୀ ଓ ରଚନା – ନୀଳମଣି ମିଶ୍ର
୨. ଦାର୍ଢ୍ୟତାଭକ୍ତି ରସାମୃତ – ରାମଦାସ
୩. ଓଡ଼ିଶାର ଭକ୍ତକବି (ସଂ) – ବ୍ରଜମୋହନ ମହାନ୍ତି

## ରଘୁ ଅରକ୍ଷିତ

୧. ଦାର୍ଢ୍ୟତାଭକ୍ତି ରସାମୃତ – ରାମଦାସ
୨. ବ୍ରଜନାଥ ବଡ଼ଜେନା (ସଂ) – ରମେଶ ଧଳ

## ସାଲବେଗ

**ଓଡ଼ିଆ**

୧. ଦାର୍ଢ୍ୟତାଭକ୍ତି ରସାମୃତ – ରାମଦାସ
୨. ଭକ୍ତକବି ସାଲବେଗ ଜୀବନୀ ଓ ପଦ୍ୟାବଳୀ – ନୀଳମଣି ମିଶ୍ର
୩. ଓଡ଼ିଶାର ଭକ୍ତକବି (ସଂ) – ବ୍ରଜମୋହନ ମହାନ୍ତି
୪. ସାଲବେଗ (ନାଟକ) – ଡଃ ଅମୂଲ୍ୟକୃଷ୍ଣ ମିଶ୍ର
୫. ଶ୍ରୀକ୍ଷେତ୍ର ମାହାତ୍ମ୍ୟ – ହରିହର ବାହିନୀପତି

**ଇଂରାଜୀ**

1. Salbeg – Nilamani Misra
Dr. Laxman Ku. Panda

## ଭୀମଭୋଇ

### ଓଡ଼ିଆ

| | | |
|---|---|---|
| ୧. ସନ୍ଥକବି ଭୀମଭୋଇ | – | ଡଃ କାହ୍ନୁଚରଣ ମିଶ୍ର |
| ୨. କନ୍ଧକବି ଭୀମଭୋଇ | – | ନିରାକାର ମହାଳିକ |
| ୩. କବି କୁଳଚାନ୍ଦ ଭୀମଭୋଇ | – | ଭାଗୀରଥି ନେପାକ |
| ୪. ମହିମାଧର୍ମରେ ଭୀମଭୋଇଙ୍କ ଭୂମିକା | – | ଏଜନ |
| ୫. ଭୀମଭୋଇଙ୍କ ଅଲୌକିକ କାହାଣୀ | – | ଏଜନ |
| ୬. ଭୀମଭୋଇ (ସଂ) | – | ଭୀମଭୋଇ ପ୍ରକାଶନ କମିଟି |

### ଇଂରାଜୀ

| | | |
|---|---|---|
| 1. Selected Extracts from Poems of Bhima Bhoi | – | G. C. Mohapatra |

## ଜୟୀ ରାଜଗୁରୁ

### ଓଡ଼ିଆ

| | | |
|---|---|---|
| ୧. ଉନବିଂଶ ଶତାବ୍ଦୀର ଓଡ଼ିଶା | – | ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ |
| ୨. ଉତ୍କଳ ଇତିହାସର ଏକ ଅଜ୍ଞାତ ଅଧ୍ୟାୟ | – | ଚକ୍ରଧର ମହାପାତ୍ର |
| ୩. ଓଡ଼ିଶା ଇତିହାସ | – | ଡଃ ଯଜ୍ଞକୁମାର ସାହୁ |

### ଇଂରାଜୀ

| | | |
|---|---|---|
| 1. Foundations of British Orissa | – | Dr. B. C. Roy |
| 2. History of Orissa, Part-VI, (Utkal University) | – | P. Mukherji |
| 3. History of Orissa, Vol.II | – | Dr. H. K. Mohatab |
| 4. Forgotten Chapter of Orissan History | – | Dr. P. K. Pattnaik |

## ବକ୍ସି ଜଗବନ୍ଧୁ

### ଓଡ଼ିଆ

| | | |
|---|---|---|
| ୧. ଉନବିଂଶ ଶତାବ୍ଦୀର ଓଡ଼ିଶା | – | ପଣ୍ଡିତ ସୂର୍ଯ୍ୟନାରାୟଣ ଦାସ |
| ୨. ପାଇକ ବିଦ୍ରୋହ | – | ଏଜନ |
| ୩. ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ | – | ନୀଳମଣି ମିଶ୍ର |
| ୪. ଓଡ଼ିଶା ଇତିହାସ | – | ଡଃ ଯଜ୍ଞକୁମାର ସାହୁ |

**ଇଂରାଜୀ**

1. Foundations of British Orissa – Dr. B.C. Roy
2. History of Orissa, Vol.-VI, (Utkal University) – P. Mukherji
3. History of Orissa, Vol.II – Dr. H. K. Mahatab
4. Forgotten Chapter of Orissan History – Dr. P. K. Pattnaik

## ଚନ୍ଦନ ହଜୁରୀ

୧. ଚନ୍ଦନ ହଜୁରୀ – ମିହିର କୁମାର ରାଓ
୨. ଝାନ୍‌ସୀରାଣୀ ଲକ୍ଷ୍ମୀବାଈ – ଯମେଶ୍ୱର ତ୍ରିପାଠୀ
୩. ଓଡ଼ିଶାର ଭକ୍ତକବି (ସଂ) ୨ୟ ଭାଗ – ଡଃ ବ୍ରଜମୋହନ ମହାନ୍ତି

## ସୁରେନ୍ଦ୍ର ସାଏ

**ଓଡ଼ିଆ**

୧. ସୁରେନ୍ଦ୍ର ସାଏ – ଅନିରୁଦ୍ଧ ଦାସ
୨. ସଂଗ୍ରାମୀ ସୁରେନ୍ଦ୍ର ସାଏ – ସତ୍ୟନାରାୟଣ ମହାପାତ୍ର
୩. ସମ୍ବଲପୁର ଇତିହାସ – ଶିବପ୍ରସାଦ ଦାସ
୪. ଓଡ଼ିଶା ଇତିହାସ (ଦ୍ୱିତୀୟ ଭାଗ) – ଡଃ ଯଜ୍ଞକୁମାର ସାହୁ
୫. ସ୍ମରଣିକା – ନବୋଦୟ ଉନ୍ନୟନ ପରିଷଦ (ଭୁବନେଶ୍ୱର)

**ଇଂରାଜୀ**

1. History of Orissa, Vol.II – Dr. H. K. Mahatab
2. Veer Surendra Sai – Dr. N. K. Sahu
3. Life of Surendra Sai – Aniruddha Das
4. Freedom Movement in Sambalpur – Chitta Ranjan Mishra

---

ଡକ୍ଟର ପ୍ରଫୁଲ୍ଲ କୁମାର ପଟ୍ଟନାୟକଙ୍କ 'ଯଶୋଦେହେ ଆୟୁଷ୍ମାନ୍ ପ୍ରଥମ ଭାଗ' ପୁସ୍ତକରେ ଓଡ଼ିଶାର ଯଶସ୍ୱୀ ସନ୍ତାନମାନଙ୍କର ଜୀବନଚରିତ ଲିପିବଦ୍ଧ । ପ୍ରାଚୀନ ଉତ୍କଳର ଯଶସ୍ୱୀ ଶାସକ ଖାରବେଳ, ନରସିଂହଦେବ, କପିଳେନ୍ଦ୍ରଦେବ ଓ ପୁରୁଷୋତ୍ତମଦେବଙ୍କଠାରୁ ଆରମ୍ଭ କରି ଓଡ଼ିଶାର କଳା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ବିଶିଷ୍ଟ ଅବଦାନ ଥିବା କୃତୀସନ୍ତାନମାନଙ୍କର ଯଶୋଗାଥା ଏଥିରେ ସରଳ ଓ ସାବଲୀଳ ଭାଷାରେ ବର୍ଣ୍ଣିତ ।

ସୁଦୂର ଅତୀତର ଇତିହାସ ଜୀର୍ଣ୍ଣପୃଷ୍ଠାରୁ ଯୁଗପୁରୁଷଙ୍କ ବ୍ୟକ୍ତିତ୍ୱ ଆବିଷ୍କାରପୂର୍ବକ ଲେଖକ ପାଠକଙ୍କପାଇଁ ଅମୂଲ୍ୟ ରତ୍ନଭଣ୍ଡାର ସୃଷ୍ଟି କରିଛନ୍ତି ।

ଆମ ଓଡ଼ିଶାର ସାଧାରଣ ଛାତ୍ର ଓ ବୁଦ୍ଧିଜୀବୀଙ୍କ ନିକଟରେ ଏହା ଗ୍ରହଣୀୟ ହେବ ବୋଲି ଆଶା ।

ISBN 81-7411-895-0




**ବିଦ୍ୟାପୁରୀ**
ବାଲୁବଜାର, କଟକ ୭୫୩୦୦୨
www.vidyapuri.com